# ସଂଗ୍ରାହକଙ୍କ ମନ୍ତବ୍ୟ

## ବଳରାମ ଦାସଙ୍କ କୃତ

## ଦାଣ୍ଡି ରାମାୟଣ ବା ଜଗମୋହନ ରାମାୟଣ

ଶ୍ରୀ ପରଂବହ୍ମ ପରମାତ୍ମା ଭଗବାନ୍ ବିଷ୍ଣୁଙ୍କର ଦଶଅବତାର ମଧ୍ୟରେ ଶ୍ରୀରାମ ଅବତାର ଅନ୍ୟତମ । ତ୍ରେତାଯୁଗରେ ରାକ୍ଷସମାନଙ୍କର ଉପଦ୍ରବରୁ, ଋଷି, ବୈଦିକ ଧର୍ମ ଓ ଯାଗଯଜ୍ଞ ଇତ୍ୟାଦି ରକ୍ଷା କରିବା ଲାଗି ପ୍ରଭୁଙ୍କର ରାମ ରୂପରେ ଅବତାର । ଏହି ଅବତାରରେ ଯେଉଁସବୁ ଘଟଣା ଘଟିଗଲା, ତାହାସବୁ ବାଲ୍ମୀକି ଋଷି ପଦ୍ୟକାରରେ ଲେଖିଲେ । ଏହି ରାମ ଚରିତ ନାରଦ ମୁନି ବାଲ୍ମୀକିଙ୍କୁ, ରାମ ଅବତାରର ବିଷୟବସ୍ତୁ ଘଟଣା ଘଟିବା ପୂର୍ବରୁ ଲେଖିଥିଲେ । ତେଣୁ ରାମାୟଣକୁ ଭବିଷ୍ୟ ପୁରାଣ ବୋଲି ମଧ୍ୟ କୁହାଯାଏ, ଅଷ୍ଟାଦଶ ପୁରାଣ ଓ ଚାରିପୁରାଣ ମଧ୍ୟରେ ଏହି ଭବିଷ୍ୟ ପୁରାଣର ଖ୍ୟାତି ବିଶେଷ ଭାବରେ ଜନ ସମାଜରେ ବ୍ୟାପୃତ ।

ବାଲ୍ମୀକିଙ୍କ କୃତ ରାମାୟଣକୁ ଭାରତର ବିଭିନ୍ନ ପ୍ରଦେଶରେ ବିଭିନ୍ନ ଭାଷାରେ ଅନୁବାଦ କରି ସେହି ସେହି କବିମାନେ ଲୋକପୂଜ୍ୟ ହୋଇ ଅଛନ୍ତି । ଆମ୍ଭମାନଙ୍କର ଉତ୍କଳରେ କବି ବଳରାମ ଦାସ ପଦ୍ୟାକାରରେ ଏହି ରାମାୟଣ ଲେଖିଅଛନ୍ତି । ହିନ୍ଦି ଭାଷାରେ ତୁଳସୀ ଦାସ, ବଙ୍ଗଳା ଭାଷାରେ କୃତିବାସ ପଣ୍ଡିତ ଇତ୍ୟାଦିଙ୍କ ରଚିତ ରାମାୟଣ ପରି ଓଡ଼ିଆ ରାମାୟଣ ଉତ୍କଳରେ ବିଶେଷ ଭାବେ ଆଦୃତ ହୋଇ ଆସୁଅଛି ।

ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀରେ ଯେତେବେଳେ ଭକ୍ତରାଜା ପ୍ରତାପରୁଦ୍ର ଦେବ ଓଡ଼ିଶାରେ ମହାରାଜା ପରେ ଅଭିଷିକ୍ତ ହୋଇ ରାଜ୍ୟ ପାଳନ କରୁଥିଲେ, ସେହି ସମୟରେ ଶ୍ରୀ ଚୈତନ୍ୟ ଦେବ ପୁରୀରେ କାଶୀ ମିଶ୍ର ନାମକ ଜନୈକ ବ୍ରାହ୍ମଣ ପ୍ରଦତ୍ତ ବସାଘରେ ବାସ କରୁଥିଲେ । ଆମ୍ଭମାନଙ୍କର କବି ବଳରାମ, ଭାଗବତର ଲେଖକ ଜଗନ୍ନାଥ ଦାସ ପ୍ରଭୃତି ଭକ୍ତମାନେ ଚୈତନ୍ୟ ଦେବଙ୍କ ସାନିଧ୍ୟ ଲାଭ କରି ହରିଭକ୍ତିର ଚରମ ସୀମାକୁ ଯାଇଥିଲେ । କଥିତ ଅଛି ବଳରାମ ଦାସ ଜଣେ ଦରିଦ୍ର ପଣ୍ଡିତ ଥିଲେ । ସତ୍ୟବାଦୀ, ନିଷ୍କପଟ, ଅମାୟିକ ଭକ୍ତ ବଳରାମଙ୍କର ଗୋଟିଏ ମାତ୍ର ଦୋଷ ଥିଲା ଯେ, ସେ ଏତେଗୁଡ଼ିଏ ସଦ୍‌ଗୁଣର ଆଧାର ହୋଇ ମଧ୍ୟ ବେଶ୍ୟାସକ୍ତ । ଦିନେ ବେଶ୍ୟାଘରେ ଶୟନ କରିଥିବା ଅବସ୍ଥାରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ରଥ ଯାତ୍ରାର ଘଣ୍ଟା, ମୃଦଙ୍ଗ, ଭେରୀ, ତୁରୀ ଇତ୍ୟାଦି ବାଦ୍ୟନାଦ ଶୁଣି ସେହି ଅଶୁଚି ଅବସ୍ଥାରେ ଦୌଡ଼ିଆସି ମହାପ୍ରଭୁଙ୍କର ରଥରେ ଉଠିଲେ ଏବଂ ଶ୍ରୀମୁଖ ଦର୍ଶନ କରି ସ୍ତୁତି ଗାନ କରି ଭାବରେ ତନ୍ମୟ ହୋଇଗଲେ । ଏହାଦେଖି ପ୍ରଭୁଙ୍କ ସେବକମାନେ ତାଙ୍କୁ ରଥରୁ ଧକ୍‌କା ଦେଇ ବାହାର କରିଦେଲେ । ଅପମାନରେ ଦାସେ ଯାଇ ସମୁଦ୍ରକୂଳ ବାଲିରେ ରଥ ତିନୋଟି ନିର୍ମାଣ କରି ମାନସରେ ରଥଯାତ୍ରା କଳ୍ପନା କଲେ । ମହାପ୍ରଭୁ, ଭାଇ ବଳରାମ ଓ ସୁଭଦ୍ରାଙ୍କୁ ସଙ୍ଗରେ ନେଇ ସେହି ବାଲି ରଥରେ ବିଜେକଲେ । ଏଣେ ବଡ଼ ଦାଣ୍ଡରେ ରଥ ତିନୋଟି ଅଚଳ ହୋଇ ରହିଲା । ନିଜେ ମହାରାଜା ପ୍ରତାପ ରୁଦ୍ର କଳା ବେଠିଆଙ୍କ ସଙ୍ଗରେ ରଥ ଟାଣିଲେ । ଏହାଦେଖି ସମସ୍ତ ଦର୍ଶକ ମଧ୍ୟ ରଥଟଣାରେ ଯୋଗଦେଲେ । ତଥାପି ରଥ ତିଳେମାତ୍ର ଘୁଞ୍ଚିଲା ନାହିଁ । ତପ୍ରରେ ମହାରାଜା କୁଶ ବିଛାଇ ତା ଉପରେ ଅଧିଆ ପଡ଼ିଲେ । ସ୍ୱପ୍ନରେ ଦେଖିଲେ ଯେ ସ୍ୱୟଂ ମହାପ୍ରଭୁ ଆସି ତାଙ୍କ ସମ୍ମୁଖରେ ଉଭାହୋଇ ଭକ୍ତ ବଳରାମ ଦାସଙ୍କର ଅପମାନ କଥା ବର୍ଣ୍ଣନ କରୁଅଛନ୍ତି ଏବଂ ଭକ୍ତର ଅପମାନର ପ୍ରତିଶୋଧ ନ ହେଲେ ରଥ ଚଳିବ ନାହିଁ ବୋଲି କହିଲେ । ତତ୍‌କ୍ଷଣାତ୍ ମହାରାଜା ଭକ୍ତଦ୍ରୋହୀ ସେବକମାନଙ୍କୁ ବାନ୍ଧି ସଦଳବଳେ ସିନ୍ଧୁକୂଳକୁ ଗଲେ । ସେଠାରେ ବଳରାମ ଦାସଙ୍କ ଓ ତାଙ୍କ ବାଲିରଥ ଦର୍ଶନ କରି ତନ୍ମୟ ହୋଇଗଲେ । ତପ୍ରରେ ବଳରାମ ଦାସଙ୍କୁ ସମ୍ମାନେ ଆଣି ରଥରେ ବସାଇଲେ ।

ରଥ ଚଳିଲା ଏବଂ ବଳରାମଙ୍କର ଖ୍ୟାତି ବୃଦ୍ଧି ପାଇଲା । ତପ୍ରେ ବଳରାମ ଦାସ ଶ୍ରୀ ଜଗନ୍ନାଥ ମନ୍ଦିରରେ ବସି ଶ୍ରୀମୁଖକୁ ଚାହିଁ ରାମାୟଣ ଲେଖିଲେ ।

ରାମାୟଣ ଯାହା ଯାହା ଲେଖନ୍ତି ତାହା ମୁକ୍ତିମଣ୍ଡପ ପଣ୍ଡିତମାନେ ପାଠକରନ୍ତି ଏବଂ ଠିକ୍ ଅଛି ବୋଲି ସ୍ୱୀକାର କରନ୍ତି; ଯେହେତୁ ସେ ସମୟରେ ମୁକ୍ତି ମଣ୍ଡପ ପଣ୍ଡିତ ସଭା ସ୍ୱୀକାର ନ କଲେ କୌଣସି ଧର୍ମଗ୍ରନ୍ଥ ଓଡ଼ିଶାରେ ଲୋକେ ଗ୍ରହଣ କରନ୍ତି ନାହିଁ ।

ଦିନେ ବଳରାମଙ୍କ ଲିଖିତ ଉକ୍ତ ରାମାୟଣରେ ଲକ୍ଷ୍ମଣଙ୍କ ଶକ୍ତିଭେଦ ବିଷୟ ପାଠ ହେଲା । କବି ଲେଖିଥିଲେ ଯେ ରାବଣ ପ୍ରହାର କରିଥିବା ଏକଘ୍ନୀ ଶକ୍ତିରେ ଲକ୍ଷ୍ମଣଙ୍କ ବକ୍ଷରେ ଶଗଡ଼ ତୁମ୍ବପରି ରନ୍ଧ୍ର ହୋଇଥିଲା । ପଣ୍ଡିତମାନେ ଉପହାସ କଲେ । ଛାତିରେ ଏତେ ଜାଗା କାହୁଁ ଆସିଲା ଯେ ଶଗଡ଼ ତୁମ୍ବପରି ରନ୍ଧ୍ର ହୋଇଗଲା । ଏ ପାଠ ଭୁଲ୍ । ତପ୍ରେ ରାତ୍ରରେ ସବୁ ପଣ୍ଡିତ ସ୍ୱପ୍ନରେ ଦେଖିଲେ ସ୍ୱୟଂ ମହାପ୍ରଭୁ ରାମଚନ୍ଦ୍ର ଦେଖାଦେଇ କହିଲେ, ଆହେ ପଣ୍ଡିତ, ବଳରାମ ଦାସ ତ୍ରେତାଯୁଗରେ ଥିଲେ ଦଳବାଳବୃନ୍ଦ ନାମକ ସେନାପତି । ସେ ହୁଳାଧରି ଲକ୍ଷ୍ମଣଙ୍କ ଶକ୍ତିଭେଦ ସ୍ଥାନ ଦେଖାଉଥାନ୍ତି । ତାଙ୍କ ଲେଖା ଅଶୁଦ୍ଧ କରିବାକୁ ତୁମ୍ଭେ କିଏ ?

ପୁଣି କହିଲେ ଶଗଡ଼ ତୁମ୍ବ ପରି ଜଳା ବୋଇଲେ ବେଶିକିଛି ନୁହେଁ, କେବଳ ଚାରି ଅଙ୍ଗୁଳ ବ୍ୟାସ ବିଶିଷ୍ଟ ଜଳା । ତୁମ୍ଭେ ବୁଝୁଛ ତୁମ୍ବ ଆକାରର ଜଳା । ତପରଦିନ ସମସ୍ତ ପଣ୍ଡିତ ମୁକ୍ତି ମଣ୍ଡପକୁ ଆସି ପ୍ରତ୍ୟେକ ଏହିପରି ସ୍ୱପ୍ନ ଦେଖିଥିବା ବିଷୟ କହିଲେ ଏବଂ ବଳରାମ ଦାସଙ୍କୁ ଡାକି ବହୁମାନ୍ୟ କଲେ ଏବଂ ତାଙ୍କ ଲେଖାକୁ ଶୁଦ୍ଧବୋଲି ସ୍ୱୀକାର କଲେ, ଇତ୍ୟାଦି କିମ୍ବଦନ୍ତୀ ଅଛି ।

ତପ୍ରେ ଦାସଙ୍କ ରାମାୟଣ ଘରେ ଘରେ ପାଠହେଲା ଏବଂ ରାମାୟଣର ଭାଷ୍ୟ ଅତି ସରଳ । ପଦଗୁଡ଼ିକ ଦୁଇ ଦୁଇ ପାଦରେ ରଚିତ ଓ ଅନ୍ୟ ମିଳନାତ୍ମକ ବା ମିତ୍ରାକ୍ଷର; କିନ୍ତୁ ସବୁ ପଦର ଅକ୍ଷର ସଂଖ୍ୟା ସମାନ ନୁହେଁ । ନ ହେଲେ ମଧ ସୁଖପାଠ୍ୟ । ଏହା ତାଳପତ୍ରରେ ଲେଖା ହୋଇଥିଲା କିନ୍ତୁ ସର୍ବତ୍ର ଶୁଦ୍ଧପୂତ ପୋଥିର ଅଭାବ ଲକ୍ଷିତ ହୁଏ ।

ତେଣୁ ମୁଁ ବହୁସ୍ଥାନ ବୁଲି ପ୍ରାଚୀନ ତାଳପତ୍ର ପୋଥି ଅନ୍ୱେଷଣ କରି କରି ପରିଶେଷରେ ପୁରୀ ଜିଲ୍ଲା ଖୋର୍ଦ୍ଧା କିଲା ଅନ୍ତର୍ଗତ ପୋଡ଼ାଡିହ ଗ୍ରାମବାସୀ ଶ୍ରୀ ଗୋପିନାଥ ସ୍ୱାଇଁଙ୍କ ସହାୟତାରେ କଟକ ଜିଲ୍ଲା ବଡ଼ମ୍ବା କିଲା ଅନ୍ତର୍ଗତ ବାଦଭୂଇଁ ଗ୍ରାମ ନିବାସୀ ଶ୍ରୀ ବାସୁଦେବ ମୁଦୁଲି ଓ ଶ୍ରୀ ନାରାୟଣ ମୁଦୁଲିଙ୍କ ଗୃହରୁ ପ୍ରାଚୀନ ପୋଥି ଲାଭ କଲି । ଏଣୁ ଉଲ୍ଲିଖିତ ସହୃଦୟ ବ୍ୟକ୍ତିମାନଙ୍କୁ ଅନ୍ତରର ଧନ୍ୟବାଦ ଅର୍ପଣ କରୁଅଛି । ସଁପୁର ଗ୍ରାମ ନିବାସୀ ପଣ୍ଡିତ ନୃସିଂହ ଚରଣ ପଟ୍ଟନାୟକ ସାହିତ୍ୟଶାସ୍ତ୍ରୀ ଓ ପୋଡ଼ାଡିହ ଗ୍ରାମ ନିବାସୀ ଶ୍ରୀ ଲିଙ୍ଗରାଜ ପଣ୍ଡା ଉକ୍ତ ପୁସ୍ତକ ଲେଖାରେ ବହୁ ସହାୟତା କରିଥିବାରୁ ତାଙ୍କୁ ମଧ ଅନ୍ତରର ଧନ୍ୟବାଦ ଅର୍ପଣ କରୁଅଛି ।

ଉକ୍ତ ପୁସ୍ତକଟିର ମୁଦ୍ରଣ ବ୍ୟୟଭାର ଧର୍ମଗ୍ରନ୍ଥ ଷ୍ଟୋରର ପ୍ରତିଷ୍ଠାତା ଶ୍ରୀ ବିଦ୍ୟାଧର ସାହୁ ମହାଶୟ ଗ୍ରହଣ କରି ପ୍ରକାଶ କରିଥିବାରୁ ଧନ୍ୟବାଦାର୍ହ ହୋଇଅଛନ୍ତି ।

ଉକ୍ତ ମୁଦ୍ରିତ ପୁସ୍ତକରେ ଯଦି ଭ୍ରମ ପ୍ରମାଦ ଥାଏ, ତେବେ ଯେଉଁ ସହୃଦୟ ବ୍ୟକ୍ତି ତାହା ଦୟାକରି ଆମ୍ଭଙ୍କୁ ଜଣାଇବେ ଆମ୍ଭେ ତାହା ବାରାନ୍ତରେ ସଂଶୋଧନ କରିବୁ ।

॥ ଇତି ॥

ବିନୀତ

ସଂଗ୍ରହକାରୀ

**କବିରାଜ ଶ୍ରୀ ତାରେଶ୍ୱର ଚୌଧୁରୀ, ଆୟୁର୍ବେଦାଚାର୍ଯ୍ୟ**

ମୁ: / ପୋ: ସଁପୁର, ଭାୟା- ବୋଲଗଡ଼, ଜି: ପୁରୀ

## ଆଦ୍ୟକାଣ୍ଡର

# ଭୂମିକା

### ପଞ୍ଚସଖା ସାଧକ ବଳରାମ ଦାସ ଓ ଦାଣ୍ଡି ରାମାୟଣ

ଭକ୍ତିଭାବ ପ୍ରଣୋଦିତ, ଯୋଗ ପଣ୍ଡିତ ମଧ୍ୟ ଯୁଗୀୟ ଓଡ଼ିଆ ସାହିତ୍ୟରେ ସିଦ୍ଧ ସାଧକ ସାହିତ୍ୟିକ ପଞ୍ଚସଖା ମଧ୍ୟରେ ବୟୋଜ୍ୟେଷ୍ଠ ଏବଂ ଜ୍ଞାନମାର୍ଗରେ ସାର୍ଥକ ସାଧକ ମତ୍ତ ବଳରାମ ଦାସ ଯେ କେବଳ ଓଡ଼ିଶାର ସିଦ୍ଧ ସାଧକମାନଙ୍କ ଦ୍ୱାରା ସମ୍ମାନିତ ହୋଇଥିଲେ ତା ନୁହେଁ, ତତ୍‌କାଳୀନ ଭିନ୍ନ ଧର୍ମମତାବଲମ୍ବୀ ଗୌଡ଼ୀୟ ସଂପ୍ରଦାୟର ପ୍ରବର୍ତ୍ତକ,ପ୍ରେମାବତାର ଶ୍ରୀ ଶ୍ରୀ ଚୈତନ୍ୟ ଦେବଙ୍କ ଦ୍ୱାରା ମଧ୍ୟ ଅଭିନନ୍ଦିତ ହୋଇଥିଲେ । ''ଚୈତନ୍ୟ ଚରିତାମୃତ' ଏବଂ 'ଚୈତନ୍ୟ ଭାଗବତ'ରେ ଏହା ବର୍ଣ୍ଣିତ ହୋଇଅଛି । ସାହିତ୍ୟକୃତି ଏବଂ କୀର୍ତ୍ତିରେ ବଳରାମ କୀର୍ତ୍ତିଷ୍ମାନ । ଶାରଳା ଦାସ ମହାଭାରତ, ଜଗନ୍ନାଥ ଦାସଙ୍କ ଭାଗବତ ପରି ବଳରାମ କୀର୍ତ୍ତିଷ୍ମାନ । ଶାରଳା ଦାସ ମହାଭାରତ, ଜଗନ୍ନାଥ ଦାସଙ୍କ ଭାଗବତ ପରି ବଳରାମ ଦାସଙ୍କ **'ଜଗମୋହନ ରାମାୟଣ ବା ଦାଣ୍ଡି ରାମାୟଣ'** ଓଡ଼ିଶାରେ ସର୍ବତ୍ର ସୁପରିଚିତ । କିନ୍ତୁ ଦାଣ୍ଡି ରାମାୟଣ, ସାରଳା ଦାସଙ୍କ ମହାଭାରତ ମହା ସମୁଦ୍ରର ଉତ୍ତାଳ ତରଙ୍ଗମାଳା ନୁହେଁ କିମ୍ବା ଜଗନ୍ନାଥ ଦାସଙ୍କର ଭାଗବତର ତତ୍ତ୍ୱ ଗଭୀର ବାଣୀ ମଧ୍ୟ ନୁହେଁ । ଏଥିରେ ଅଛି ସୁକୁମାର କବିତ୍ୱର ଲୀଳାୟିତ ତରଙ୍ଗମାଳା । ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ଏହାର ସ୍ଥାନ ତେଣୁ ସ୍ୱତନ୍ତ୍ର । ସମଗ୍ର ଉତ୍ତର ଭାରତରେ ପ୍ରାନ୍ତୀୟ ଭାଷାରେ ରାମାୟଣ ରଚନା କରିବାରେ ପ୍ରଥମ ସାର୍ଥକ ସ୍ରଷ୍ଟା ହେଉଛନ୍ତି ପ୍ରଥିତଯଶା କବି ବଳରାମ ଦାସ ।

ମହାତ୍ମା ତୁଳସୀ ଦାସଙ୍କ ରାମ ଚରିତ ମାନସ ୧୫୭୪ ଖ୍ରୀଷ୍ଟାବ୍ଦରେ ସମ୍ପୂର୍ଣ୍ଣ ହୋଇଥିଲା । କିନ୍ତୁ ବଳରାମ ଦାସଙ୍କ ଦାଣ୍ଡି ରାମାୟଣ ପଞ୍ଚଦଶ ଶତାବ୍ଦୀର ଶେଷ ଭାଗରେ ରଚିତ ହୋଇଥିଲା । ବଳରାମ ଦାସ ପୁରୀ ଶ୍ରୀଜଗନ୍ନାଥଙ୍କ ଜଗମୋହନରେ ବସି ଏ ରାମାୟଣ ରଚନା କରିଥିବାରୁ ଏହା ମଧ୍ୟ **ଜଗମୋହନ ରାମାୟଣ** ନାମରେ ଖ୍ୟାତ । ସ୍ୱୟଂ ଜଗନ୍ନାଥଙ୍କ ଆଜ୍ଞାରେ ସେ ରାମାୟଣ ଲେଖିଛନ୍ତି ବୋଲି ସ୍ୱୀକାର କରିଛନ୍ତି । ଉତ୍କଳୀୟ ବୈଷ୍ଣବମାନଙ୍କର ଆରାଧ୍ୟ ଥିଲେ ସ୍ୱୟଂ ଜଗନ୍ନାଥ । ପ୍ରଥମେ ଜଗନ୍ନାଥ ବନ୍ଦନା ଗାଇ ରାମାୟଣ ରଚନା କରିଛନ୍ତି ଯଦିଓ ଶ୍ରୀରାମ ହେଉଛନ୍ତି ରାମାୟଣର ଆରାଧ୍ୟ ଦେବତା ।

ଯୁଗେ ଯୁଗେ କବି ତା'ର ସମସ୍ତ ଶକ୍ତି, ଜ୍ଞାନ, କର୍ମାଦିକୁ କେଉଁ ଏକ ଅସୀମ ଅବ୍ୟକ୍ତ, ଅଚିନ୍ତ୍ୟ, ସର୍ବବ୍ୟାପୀ ଶକ୍ତି ନିକଟରେ ସମର୍ପଣ କରି ଆସିଛି । ଖାଲି ଯେ ବଳରାମ ଦାସ ଜଗନ୍ନାଥଙ୍କୁ ଆରାଧ୍ୟ ରୂପେ ବର୍ଣ୍ଣନା କରିଛନ୍ତି ତା' ନୁହେଁ, ପଞ୍ଚସଖାର ଅନ୍ୟତମ ସାଧକଗଣ, ଅଚ୍ୟୁତ, ଯଶୋବନ୍ତ, ଅନନ୍ତ, ଜଗନ୍ନାଥ ତଥା ଉତ୍କଳୀୟ ବୈଷ୍ଣବ ସମ୍ପ୍ରଦାୟର ଅନ୍ୟାନ୍ୟ କବି ମଧ୍ୟ ଜଗନ୍ନାଥଙ୍କୁ ଇଷ୍ଟ ରୂପେ ବର୍ଣ୍ଣନା କରିଛନ୍ତି ।

ଉତ୍କଳୀୟ **ବୈଷ୍ଣବ ଧର୍ମ**ରେ ବିଷ୍ଣୁ ବା ଜଗନ୍ନାଥ ଅବତାର ଓ **କୃଷ୍ଣ** ଏହାଙ୍କ ରୂପାନ୍ତର ବା ଅବତାର ରୂପେ ପରିକଳ୍ପିତ । ବ୍ରହ୍ମ ଏହି ଧର୍ମର ଆରାଧ୍ୟ । ଏଣୁ ଜଗନ୍ନାଥଙ୍କଠାରେ ଏହି ବ୍ରହ୍ମତ୍ୱ ଆରୋପିତ । ଏହି ଜଗନ୍ନାଥ ଧର୍ମର ଅମର ବୀଣା ଝଙ୍କାର ବହୁ କବିଙ୍କ ହୃଦୟ ତନ୍ତ୍ରୀରେ ନିନାଦିତ । ଜଗନ୍ନାଥ ଯେ ସର୍ବବ୍ୟାପୀ, ସର୍ବଶକ୍ତିମାନ୍ ଓ ସମସ୍ତ ଅବତାରର ଜନ୍ମଦାତା ତାହା ବଳରାମ ଦାସ ଦର୍ଶାଇଛନ୍ତି ।

ସର୍ବଦା ନୀଳାଦ୍ରୀରେ ସ୍ଥିତି । ଏଥୁ ସକଳ ଜାତ ହୋନ୍ତି ।
ସମସ୍ତ ଅବତାର ମାନ । ଜାତ ହୋଇଣ ପଶେ ପୁଣ ।
(ବେଦାନ୍ତ ସାର ଗୁପ୍ତଗୀତା)

ଶ୍ରୀ ଜଗନ୍ନାଥ ଦାସ ମଧ୍ୟ ଜଗନ୍ନାଥଙ୍କୁ ଅବତାରୀ ଓ କୃଷ୍ଣ ଅବତାର ସ୍ୱରୂପ ଦର୍ଶାଇଛନ୍ତି ।

ଶ୍ରୀ ଜଗନ୍ନାଥ ଷୋଳକଳା । ତହୁଁ କଳା ଏ ନନ୍ଦବଳା ।।
କଳାକୁ କଳା ଏକ କରି । ଗୋପେ ବିହରେ ନରହରି ।।
ପରମ ବ୍ରହ୍ମ ଜଗନ୍ନାଥ । ଅବତାର ପରେ ସଂସ୍ଥିତ ।।
କୋଟି କୋଟି ଯେ ଅବତାର । ଜଗନ୍ନାଥ ଅଙ୍ଗୁ ବାହାର ।।

**କୃଷ୍ଣଙ୍କ** ଉଦ୍ଦେଶ୍ୟରେ ଭାଗବତ ମଧ୍ୟ କହେ,

"ଏତେଚାଂଶ କଳାଃ ପୁଂସଂ କୃଷ୍ଣସ୍ତୁ ଭଗବାନ ସ୍ୱୟଂ
ଇନ୍ଦ୍ରାରି ବ୍ୟାକୁଳଂ ଲୋକଂ ମୃଡ଼ୟନ୍ତି ଯୁଗେ ଯୁଗେ ।

ଉତ୍କଳୀୟ ବୈଷ୍ଣବ ଧର୍ମର ଅନ୍ୟସାଧକ ଅଚ୍ୟୁତାନନ୍ଦ ଶୂନ୍ୟ ସଂହିତାରେ କହିଛନ୍ତି

ଅବତାର ଦଶ ଏହି ଦାରୁ ରୂପେ
ଏହି ଦାରୁରେ ସେ ଲୀନ
ଈଶ୍ୱର ସାକ୍ଷାତେ ଲୀଳାର ନିମନ୍ତେ
ବିଜେ ରତ୍ନ ସିଂହାସନ ।

ଶ୍ରୀ କ୍ଷେତ୍ରରେ ସୁଭଦ୍ରା ହେଉଛନ୍ତି ଶିବରୂପୀ ବଳଭଦ୍ରଙ୍କର ଶକ୍ତି । ଶ୍ରୀମନ୍ଦିରରେ ବିମଳାଙ୍କ ଅବସ୍ଥିତି ଯୋଗୁ ଏହା ତନ୍ତ୍ରପୀଠ ରୂପେ ବିବେଚିତ । ଜ୍ୟେଷ୍ଠମାସ ପୂର୍ଣ୍ଣମୀ ଦିନ ସ୍ନାନପରେ ଜଗନ୍ନାଥ ଗଣେଶ ବେଶ ପରିଧାନ କରି ଗାଣପତ୍ୟମାନଙ୍କର ପୂଜ୍ୟ । ଏ କ୍ଷେତ୍ରରେ ବିଦ୍ୟମାନ ସୁଦର୍ଶନ ସ୍ୱୟଂ ସୂର୍ଯ୍ୟ ରୂପେ ପୂଜ୍ୟ ହେଉଥିବାରୁ ସୌରୀମାନଙ୍କର ଏହା ଏକ ଆରାଧନା କ୍ଷେତ୍ର । ଜଗନ୍ନାଥ ନରାକାର ବ୍ରହ୍ମ, ସ୍ୱୟଂ ପୁରୁଷୋତ୍ତମ ଅବତାରୀ ଯୋଗୁ ଶ୍ରୀକ୍ଷେତ୍ର ନିତ୍ୟ ବୈକୁଣ୍ଠରେ ପରିଣତ ହୋଇଛି । ଜଗନ୍ନାଥ ନିତ୍ୟ ରାଧା ଓ ଶ୍ରୀକୃଷ୍ଣଙ୍କର ଏକାଙ୍ଗ ମୂର୍ତ୍ତି । ସୁତରାଂ ଶ୍ରୀ କ୍ଷେତ୍ର ଜଗନ୍ନାଥ **ଗୌଡ଼ୀୟ ବୈଷ୍ଣବ**-ମାନଙ୍କର ଗୋପୀଜନ ବଲ୍ଲଭ । ତେଣୁ ବୈଷ୍ଣବ, ଶୈବ, ଗାଣପତ୍ୟ, ସୌର, ବୌଦ୍ଧ ପ୍ରଭୃତିଙ୍କର ଉପାସ୍ୟ ।

ଉତ୍କଳୀୟ ବୈଷ୍ଣବ ଏବଂ ଗୌଡ଼ୀୟ ବୈଷ୍ଣବଙ୍କ ମତରେ ପାର୍ଥକ୍ୟ ଥିଲେ ମଧ୍ୟ ଜଗନ୍ନାଥ ସମସ୍ତଙ୍କ ଉପାସ୍ୟ ।

ଉତ୍କଳୀୟ ବୈଷ୍ଣବ ତଥା ବଳରାମ ଥିଲେ ଜ୍ଞାନମିଶା ଭକ୍ତିର ଉପାସକ, ଯୋଗସାଧନ ଏହି ଭକ୍ତିର ଅନ୍ୟତମ ମାର୍ଗ । ବ୍ରହ୍ମକୁ ଚିହ୍ନିବା ପାଇଁ ମୂଳମନ୍ତ୍ର ଥିଲା ଜ୍ଞାନମାର୍ଗର ଅବଲମ୍ବନ । ଯୋଗମାର୍ଗର ଓ ଜ୍ଞାନମାର୍ଗର ଅବଧାରଣାହିଁ ଜ୍ଞାନମିଶା ଭକ୍ତି । ଜ୍ଞାନମାର୍ଗର ସାଧନ ପାଇଁ ବିଭିନ୍ନ ଯୋଗର ଆବଶ୍ୟକ । କାୟା ସାଧନା ଦ୍ୱାରା ମୋକ୍ଷ ପ୍ରାପ୍ତ ହିଁ ଏମାନଙ୍କ ଅନ୍ତିମ ଲକ୍ଷ୍ୟ । ଏହି ସାଧନା ବଳରେ ଯୋଗୀ ନିଜ ଭିତରେ ସମଗ୍ର ବ୍ରହ୍ମାଣ୍ଡକୁ ଉପଲବ୍ଧି ଏବଂ ନିଜକୁ ଭଗବାନଙ୍କଠାରୁ ବିଚ୍ଛେଦ୍ୟ ଭାବରେ କଳ୍ପନା କରୁଥିଲେ । ପଞ୍ଚସଖା ସାଧକମାନେ ଏହି ପରମ୍ପରାର ଯୋଗ୍ୟ ଦାୟାଦ ଭାବେ ଓଡ଼ିଶାରେ ସୁପରିଚିତ । ତେଣୁ କବି ବଳରାମ ଦାସ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ମୁଖ ନିସୃତ ବାଣୀ ଭାବେ ସେ ଜଗମୋହନ ରାମାୟଣ ଲେଖିଛନ୍ତି, ଏଥିରେ ସନ୍ଦେହ ନାହିଁ ।

ଗୌଡ଼ୀୟ ବୈଷ୍ଣବଙ୍କ ମତେ କୃଷ୍ଣ ଭକ୍ତ ବାଞ୍ଛା କଳ୍ପତରୁ ମାଧୁର୍ଯ୍ୟ ରସର ଉତ୍କର୍ଷ ଏଥିରେ ପ୍ରତିପାଦିତ । କୃଷ୍ଣପ୍ରେମ, କୃଷ୍ଣ ଦାସତ୍ୱ ମୁକ୍ତିର ଚରମ ମାର୍ଗ ଏହି ସାଧନର ନଅଟି ଅଙ୍ଗ ହେଉଛି ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦସେବନ,ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ ଓ ଆତ୍ମ ନିବେଦନ । ଚିତ୍ତ ବିଶୁଦ୍ଧ ଏହି ଭକ୍ତିର କାରଣ । ଏହାପରେ ପ୍ରେମଭାବର ଆବିର୍ଭାବ । ଏହି ଭାବର ପରିପକ୍ୱତା ରତି, ପ୍ରେମ, ସ୍ନେହ, ମାନ, ରାଗ, ପ୍ରଣୟ, ଅନୁରାଗ, ଭାବ, ମହାଭାବ ମାଧ୍ୟମରେ ପହଞ୍ଚେ । ପ୍ରେମ ଭାବର ଶେଷସ୍ତର ମହାଭାବ ଓ ଏହା ପୁଣି ମୋଦନ ମାଦନ, ଦୁଇଟି ସ୍ତରରେ ବିଭକ୍ତ । ମାଦନହିଁ ପ୍ରେମ ଭାବରେ ଗଭୀର ସ୍ତର ଏବଂ ଏହି ଭାବ ଗୌଡ଼ୀୟ ବୈଷ୍ଣବ ସାହିତ୍ୟର କେନ୍ଦ୍ର ବିନ୍ଦୁ । ଏହା କୃଷ୍ଣ ପ୍ରେମର ନାଭିକେନ୍ଦ୍ର । କୃଷ୍ଣ ଅବତାରୀ ଅନ୍ୟ ସମସ୍ତେ ଅବତାର । ରାଧା ମହାଭାବ ସ୍ୱରୂପିଣୀ । କୃଷ୍ଣ ହ୍ଲାଦିନୀ ଶକ୍ତିରୁ ତାହାଙ୍କ ପରିପ୍ରକାଶ । ରାଧାକୃଷ୍ଣ ମିଳନ ପ୍ରକୃତି ପୁରୁଷଙ୍କ ମିଳନ ।

ଶ୍ରୀକୃଷ୍ଣ ହ୍ଲାଦିନୀ, ସନ୍ଧିନୀ ଓ ସଂବିତ ଶକ୍ତିର ଗନ୍ତାଘର । ଗୋପୀଭାବ ଏ ଯୁଗ ସାହିତ୍ୟର ଅନ୍ୟତମ କାରଣ । ଏହି ଭାବ ପରକୀୟା । ସ୍ୱକୀୟା ପ୍ରୀତି ସ୍ୱାର୍ଥ ବିଜଡ଼ିତ । କିନ୍ତୁ ପରକୀୟା ପ୍ରୀତି ସ୍ୱାର୍ଥଠାରୁ ବହୁ ଦୂରରେ । ନିସ୍ୱାର୍ଥପର ଉକ୍ତ ପରକୀୟା ପ୍ରୀତି ମାଧ୍ୟମରେ ଭାଗବତ ପ୍ରେମ ଲାଭ କରିପାରେ । ସ୍ୱୟଂ ଶ୍ରୀକୃଷ୍ଣ ଗୋପୀଅଙ୍ଗରେ ଲୀଳା ରଚନା କରନ୍ତି । ଗୋପୀମାନେ ଲାଜ, ଭୟ, ମାନ ସମ୍ମାନ ତ୍ୟାଗ କରି ଶ୍ରୀକୃଷ୍ଣଙ୍କଠାରେ ଆତ୍ମ ବିସର୍ଜ୍ଜନ କରନ୍ତି । ଗୋପୀ ପ୍ରେମ ବିନା କୃଷ୍ଣଙ୍କ ଜୀବନ ଅସହ୍ୟ ହୋଇ ଉଠେ । ତେଣୁ କୃଷ୍ଣପ୍ରିୟା ଗୋପୀଭାବ ଗୌଡ଼ୀୟ ବୈଷ୍ଣବ ସାହିତ୍ୟର ସମୁଜ୍ଜ୍ୱଳ ପ୍ରତିଭା ।

ଏପରି ସ୍ଥଳେ ଗୌଡ଼ୀୟ ବୈଷ୍ଣବମାନେ ଜଗନ୍ନାଥଙ୍କୁ ଗୋପୀଜନ ବଲ୍ଲଭ ରୂପେ କଳ୍ପନା କରିଛନ୍ତି ।

ଓଡ଼ିଆ ରାମାୟଣର ପ୍ରଥମ ସ୍ରଷ୍ଟା ବଳରାମ ଦାସଙ୍କ ଜନ୍ମ ଏବଂ ବଂଶାନୁଚରିତ ସମ୍ବନ୍ଧରେ ସଠିକ ଐତିହାସିକ ତଥ୍ୟ ମିଳେନାହିଁ । ଓଡ଼ିଆ ସାହିତ୍ୟର ଇତିହାସ ଲେଖକମାନେ ତେଣୁ

ଏ ସମ୍ବନ୍ଧରେ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇପାରି ନାହାନ୍ତି । ଅଚ୍ୟୁତାନନ୍ଦ ଦାସଙ୍କ "ଉଦୟ କାହାଣୀ "ର ବର୍ଣ୍ଣନାନୁସାରେ ବଳରାମ ଦାସ ୧୪୦୪ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ସୁରେନ୍ଦ୍ର ମହାନ୍ତି ଏ ମତକୁ ସ୍ୱୀକାର କରିଛନ୍ତି । ତାଙ୍କ ପିତାଙ୍କ ନାମ ସୋମନାଥ ମହାପାତ୍ର ଏବଂ ମାତାଙ୍କ ନାମ ଯମୁନା ଦେବୀ । ଛତିଶ ଗୁପ୍ତ ଗୀତାରେ ବଳରାମ ଦାସ ଉଲ୍ଲେଖ କରିଛନ୍ତି ଯେ ତାଙ୍କର ପିତା ପ୍ରତାପରୁଦ୍ର ଦେବଙ୍କର ଜଣେ ପାତ୍ର ଥିଲେ । ଭଗବଦ୍ ଗୀତାରେ ସେ ଲେଖିଛନ୍ତି -

ମହାପାତ୍ର ସୋମନାଥ ତନୟେ,
ବଳରାମ ଦାସ ଗୀତାରେ କହେ ।

ଏହିପରି ତାଙ୍କ ରାମାୟଣ ଲଙ୍କାକାଣ୍ଡରେ ଲେଖିଛନ୍ତି –

ସୋମନାଥ ମହାପାତ୍ର କୋଳେ ହୋଇଲି ସମ୍ଭୁତ
ଯହୁଁ ପିତା ମୋର ବିଷ୍ଣୁଙ୍କ ଭକତ ।
ତେଣୁ ଜଗନ୍ନାଥ ମୋତେ ଦୟାକଲେ
ରାମାୟଣ ଗ୍ରନ୍ଥ ମୁଖେ ବଖାଣିଲେ ।
× × × ×
ମହାବୀର ସୋମନାଥ ମହାପାତ୍ର
ବଳରାମ ଦାସ ମୁଁ ଯେ ତାହାଙ୍କର ପୁତ୍ର ।

ସେ ଜାତିରେ ଶୂଦ୍ର । ତେଣୁ ଶୂଦ୍ରମୁନି ରୂପେ ଖ୍ୟାତି ଲାଭ କରିଥିଲେ । ସେ ଶୂଦ୍ରଥାଇ ପ୍ରଥମେ ଶାରଳା ଦାସଙ୍କ ମହାଭାରତ ପରି ରାମାୟଣ ରଚନା କରିଥିଲେ । ସେଥିପାଇଁ ତାଙ୍କୁ ବହୁ ନିର୍ଯ୍ୟାତିତ ହେବାକୁ ପଡ଼ିଛି । ଈଶ୍ୱର ଦାସଙ୍କ ଚୈତନ୍ୟ ଭାଗବତରେ ବର୍ଣ୍ଣିତ ଅଛି ଯେ ସେ ଯାଜପୁର ନିକଟବର୍ତ୍ତୀ ଚନ୍ଦ୍ରପୁରରେ ଜନ୍ମଗ୍ରହଣ କରିଥିଲେ । ମାତ୍ର ଦାଢ୍ୟତା ଭକ୍ତି ରସାମୃତ ରେ ବର୍ଣ୍ଣିତ ଅଛି ଯେ ସେ ସକୁଟମ୍ବ ପୁରୀରେ ବାସ କରୁଥିଲେ ।

ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଏବଂ ଶିଶୁ ଅନନ୍ତ ଚୈତନ୍ୟଙ୍କ ସଞ୍ଚସଖା ନ ଥିଲେ । ଏମାନଙ୍କ ମଧ୍ୟରେ ବଳରାମ ବୟୋଜ୍ୟେଷ୍ଠ ଏବଂ ଜ୍ଞାନନିଷ୍ଠ । ପୁରାଣ ସେତେବେଳେ ସଂସ୍କୃତରେ ଥିଲା । ଏମାନେ ପ୍ରଥମେ ଓଡ଼ିଆ ଭାଷାରେ ପୁରାଣ ରଚନା କରି ସେତେବେଳେ ସମାଜରେ ଏକ ଚହଳ ପକାଇ ଦେଇଥିଲେ । ଶାରଳା ଦାସ, ମହାଭାରତ, ବଳରାମ, ରାମାୟଣ, ଜଗନ୍ନାଥ ଦାଶ, ଭାଗବତ, ଅଚ୍ୟୁତାନନ୍ଦ, ହରିବଂଶ ପ୍ରଥମେ ଓଡ଼ିଆ ଭାଷାରେ ରଚନା କରିଥିଲେ । ଅଚ୍ୟୁତାନନ୍ଦ "ଶୂନ୍ୟ ସଂହିତା' ଏବଂ ଯଶୋବନ୍ତଙ୍କ 'ଚୌରାଶି ଆଜ୍ଞା'ରେ ଏହି ପଞ୍ଚସଖାଙ୍କ ସମ୍ବନ୍ଧେ ଉଲ୍ଲେଖ ଅଛି । ଦିବାକର ଦାସଙ୍କ 'ଜଗନ୍ନାଥ ଚରିତାମୃତ'ରେ ମଧ୍ୟ ବଳରାମ ଦାସଙ୍କ ସମ୍ବନ୍ଧେ ଉଲ୍ଲେଖ ଅଛି । ଅଚ୍ୟୁତାନନ୍ଦ ତାଙ୍କ "ଦଶ ପଟଳ"ରେ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି ଯେ ସେମାନେ ଶ୍ରୀଦାମ, ସୁଦାମ, ବସୁଦାମ, ନନ୍ଦ ଏବଂ ସୁନନ୍ଦ ଥିଲେ । ସତ୍ୟ ଯୁଗରେ ମାର୍କଣ୍ଡ, କୃପାଜଳ, ଗାର୍ଗବ, ସ୍ୱୟମ୍ଭୁ ଏବଂ ନାରଦ ତ୍ରେତା ଯୁଗରେ ରାମ ସଖା ନଳ, ନୀଳ, ସୁଷେଣ, ଜାମ୍ବବ ଏବଂ

ହନୁମାନ ଦ୍ୱାପର ଯୁଗରେ କୃଷ୍ଣସଖା ସୁବଳ, ସୁବାହୁ, ଦାମ, ସୁଦାମ ଓ ଶ୍ରୀବତ୍ସ ଅର୍ଦ୍ଧ ଆତ୍ମାରୂପ ପଞ୍ଚସଖା ରୂପେ ଜନ୍ମଗ୍ରହଣ କରିଥିଲେ । ବଳରାମ ଦାସ ମଧ୍ୟ ତାଙ୍କ ଦାଣ୍ଡି ରାମାୟଣରେ ଜାତିସ୍ମର କଥା ଲେଖିଛନ୍ତି ।

ମୁଁ ବଳରାମ ଦାସ ରାମାୟଣ ଅବତାରେ ଥିଲି
ଦିହୁଡ଼ି ଧରିଣ ମୁଁ ସମସ୍ତ ଦେଖିଲି ।
ମତେ ଆଜ୍ଞା ଦେଲେ ମର୍ତ୍ତ୍ୟପୁରକୁ ଯିବୁ
କଳିଯୁଗେ ଶୂଦ୍ରମୁନି ହୋଇଣ ଜନମିବୁ ।
ଜନ୍ମହୁଁ କର୍ଣ୍ଣକଥା ସୁମରିବୁ ତୁହି
ଜଗନ୍ନାଥ ପ୍ରଭୁ ଯେ ମୋହର ଗୋସାଇଁ ।

ପ୍ରାକୃତ ଭାଷାରେ ଗ୍ରନ୍ଥ ରଚନା କରିଥିବାରୁ ଦିନେ ଯେପରି ଶାରଳାଦାସଙ୍କୁ ବହୁ ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ବଳରାମ ଦାସ ପ୍ରାକୃତ ଭାଷାରେ ଦାଣ୍ଡି ରାମାୟଣ ରଚନା କରିଥିବାରୁ ସେହିପରି ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ସେ ଶୂଦ୍ର, ତେଣୁ ବେଦ ଚର୍ଚ୍ଚା କରିବାର ଅଧିକାର ତାଙ୍କର ନାହିଁ ।

ବ୍ରାହ୍ମଣ ପଣ୍ଡିତମାନଙ୍କର ବ୍ରାହ୍ମଣେତର ବ୍ୟକ୍ତିମାନଙ୍କ ପ୍ରତି ହୀନ ମନୋଭାବ ପ୍ରତି ମଧ୍ୟଯୁଗୀୟ ପରମ୍ପରାରେ ବଳରାମ ଦାସଙ୍କ ଆହ୍ୱାନ ବାସ୍ତବିକ ସେ ଯୁଗରେ ସାମାଜିକ ବିପ୍ଳବର ଯଥାର୍ଥ ସଂକେତ ପ୍ରଦାନ କରିଥାଏ । ଭଗବତ ଗୀତା ଆଲୋଚନା ବେଳେ ମୁକ୍ତି ମଣ୍ଡପରେ ବଳରାମ ଦାସ ଉପସ୍ଥିତ ଥିବାରୁ ବ୍ରାହ୍ମଣ ପଣ୍ଡିତମାନେ ତାଙ୍କୁ ଭର୍ତ୍ସନା କଲେ । ରାଜା ପ୍ରତାପରୁଦ୍ର ଦେବଙ୍କୁ ବୁଝାଇ ସେଠାରୁ ବିତାଡ଼ିତ କରାଇବାକୁ ଚେଷ୍ଟାକଲେ । ମାତ୍ର ବଳରାମ ଦାସ ମୁର୍ଖ ବାଉରୀମୁଖରେ ବେଦ ଗାୟନ କରାଇବାକୁ ଆହ୍ୱାନ ଦେଲେ । ପରୀକ୍ଷା ହେଲା । ମୁର୍ଖ ହରିଦାସକୁ ବ୍ରାହ୍ମଣମାନେ ଆଣି ମୁକ୍ତିମଣ୍ଡପରେ ଉପସ୍ଥିତ କରାଇଲେ । ବଳରାମ ଦାସ, ହରିଦାସର ମସ୍ତିଷ୍କରେ ହସ୍ତ ସଂଚାଳନ କରିବା ମାତ୍ରେ ସେ ଅନର୍ଗଳ ବେଦ ଗାନ କଲା । ଜନତା ଆଶ୍ଚର୍ଯ୍ୟ । ବଳରାମ ଦାସ ଅଗ୍ନି ପରୀକ୍ଷାରୁ ଉତ୍ତୀର୍ଣ୍ଣ ହେଲେ । ବ୍ରାହ୍ମଣମାନଙ୍କର ଆସ୍ଫାଳନକୁ ବିଦୀର୍ଣ୍ଣ କଲେ । ବ୍ରହ୍ମବିଦ୍ୟାକୁ ମୁଷ୍ଟିମେୟ ତଥା କଥିତ ପଣ୍ଡିତମାନଙ୍କର ଚକ୍ରବ୍ୟୁହରୁ ମୁକ୍ତିକରି ଜନସାଧାରଣଙ୍କର ସରଳ ଭାଷା ମାଧ୍ୟମରେ ପ୍ରଚାର କଲେ । ସମଗ୍ର ମଧ୍ୟଯୁଗୀୟ ସାହିତ୍ୟରେ ବଳରାମଙ୍କ ସାହିତ୍ୟ ସମାଜ ବିପ୍ଳବର ଏକ ପ୍ରେରଣାମୟ ସଙ୍କେତ ଥିଲା ଭଗବତ୍ ଗୀତା, ବେଦାନ୍ତ ସାର ଗୁପ୍ତଗୀତା, ଗୁପ୍ତଗୀତା ଛତିଶଗୁପ୍ତ ଗୀତା, ବଟଅବକାଶ, ବ୍ରହ୍ମାଣ୍ଡ ଭୁଗୋଳ ଗ୍ରନ୍ଥଗୁଡ଼ିକରେ ସାହିତ୍ୟିକ ଉପାଦାନ ନ ଥିଲେ ହେଁ ଆଧାତ୍ମିକ ସରଳ ବ୍ୟାଖ୍ୟା ସଙ୍ଗେ ସଙ୍ଗେ ସମାଜ ବିପ୍ଳବର ସଙ୍କେତ ରହିଛି ।

## ବଳରାମଙ୍କ ରଚନା ବଳୀ

ବଳରାମ ଦାସଙ୍କ ତାଙ୍କର ଜୀବନ କାଳ ମଧ୍ୟରେ ବହୁଗ୍ରନ୍ଥ ରଚନା କରିଛନ୍ତି । ଆବିଷ୍କୃତ ରଚନାମାନଙ୍କ ମଧ୍ୟରେ (୧) ଜଗମୋହନ ରାମାୟଣ (୨) ବ୍ରହ୍ମପୁରାଣ (୩) ମହାଭାରତ

(୪) ଚଣ୍ଡୀ ପୁରାଣ, (୫) ଲକ୍ଷ୍ମୀ ପୁରାଣ (୬) କୁରାଳ ପୁରାଣ (୭) ନାମରତ୍ନ ଗୀତା (୮) ମୃଗୁଣୀ ସ୍ତୁତି (୯) ଦୁର୍ଗା ସ୍ତୁତି (୧୦) କାନ୍ତ କୋଇଲି (୧୧) କମଳଲୋଚନ ଚଉତିଶା, (୧୨) ବାରମାସୀ (୧୩) ଭାବ ସମୁଦ୍ର (୧୪) ବଟ ଅବକାଶ (୧୫)ଭକ୍ତି ରସାମୃତ ସିନ୍ଧୁ (୧୬) ସଭା ବିନୋଦ (୧୭) ରାମ ବିଭା (୧୮) କୃଷ୍ଣଲୀଳା (୧୯) ରସକେଳି (୨୦) ବ୍ରହ୍ମାଣ୍ଡ ଭୁଗୋଳ (୨୧) ଶରୀର ଭୁଗୋଳ (୨୨) ବେଢା ପରିକ୍ରମା (୨୩) ଅର୍ଜ୍ଜୁନ ଗୀତା (୨୪) ବ୍ରହ୍ମାଣ୍ଡ ଭୂଗୋଳ (୨୧) ଶରୀର ଭୂଗୋଳ (୨୨) ବେଢା ପରିକ୍ରମା (୨୩) ଅର୍ଜ୍ଜୁନ ଗୀତା (୨୪) ଗଜ ନିସ୍ତାରଣ ଗୀତା (୨୫) ଭଗବତ୍ ଗୀତା (୨୬) ଅମରକୋଷ ଗୀତା (୨୭) ଗୁପ୍ତ ଗୀତା (୨୮) ଛତିଶ ଗୁପ୍ତ ଗୀତା (୨୯) ଗରୁଡ଼ ଗୀତା (୩୦) ବିରାଟ ଗୀତା (୩୧) ଗଣେଶ ବିଭୁତି ଗୀତା (୩୨) ଗୀତାସାର (୩୩) ନୀଳ ସୁନ୍ଦର ଗୀତା (୩୪) କଳି ଭାରତ (୩୫) ବଉଳା ଅଧ୍ୟାୟ (୩୬) ପଣସ ଚୋରୀ ଗ୍ରନ୍ଥ ସମୂହ ପ୍ରଧାନ ।

ଏ ସମଗ୍ର ଗ୍ରନ୍ଥ ମଧ୍ୟରେ କେବଳ ଜଗମୋହନ ବା ଦାଣ୍ଡି ରାମାୟଣ ସାହିତ୍ୟର ରସ ପୁଷ୍ଟି ଦୃଷ୍ଟିରୁ ଉଚ୍ଚକୋଟୀର । ମାତ୍ର ଅନ୍ୟାନ୍ୟ ଗ୍ରନ୍ଥଗୁଡ଼ିକ ନିଗୁଢ ତତ୍ତ୍ୱରେ ପରିପୂର୍ଣ୍ଣ । ଶାରଳା ଦାସଙ୍କ ପରି ବଳରାମ ଦାସ ଦାଣ୍ଡି ବୃତ୍ତରେ ରାମାୟଣ ରଚନା କରିଥିବାରୁ ଏହାର ନାମ ଦାଣ୍ଡି ରାମାୟଣ । ବାଲ୍ମୀକି ରାମାୟଣର କଥାବସ୍ତୁ ଓ ବର୍ଣ୍ଣନାକୁ ସଠିକ୍ ଅନୁକରଣ ନ କରି ନିଜର ମୌଳିକ ପ୍ରତିଭା ଓ କବିତ୍ୱ ଦ୍ୱାରା ଓଡ଼ିଆ ରାମାୟଣକୁ ଅଭିନବ ରୂପ ପ୍ରଦାନ କରିଥିଲେ ଲୋକ ପ୍ରଚଳିତ ନାନା କାହାଣୀ, କିମ୍ବଦନ୍ତୀ, ସମାଜର ନାନା ଆଚାର ବ୍ୟବହାର ଓ ଓଡ଼ିଶାର ନଦନଦୀ, ଗିରି ବନ ପ୍ରଭୃତି ସୁନ୍ଦର ଭାବରେ ସେ ବର୍ଣ୍ଣନା କରିଛନ୍ତି । ଲୋକ ଚରିତ୍ରର ସଫଳ ବର୍ଣ୍ଣନା କବି ବଳରାମ ଦାସ ଏହି ଗ୍ରନ୍ଥରେ କରି ପାରିଛନ୍ତି । ବାଲ୍ମୀକି ରାମାୟଣର ଲଙ୍କାକାଣ୍ଡ କଳେବର ସମ ଏହାର ଆଦ୍ୟକାଣ୍ଡ ହୋଇଛି । ଦାଣ୍ଡି ରାମାୟଣର ଲଙ୍କାକାଣ୍ଡ ବାଲ୍ମୀକି ରାମାୟଣ ଚାରିଟା ଲଙ୍କାକାଣ୍ଡ ସମ ହୋଇଛି । ଯଥା ଦଶରଥଙ୍କ ୭୯୯ ରାଣୀଙ୍କର ବିସ୍ତୃତି ବର୍ଣ୍ଣନା ଏଥିରେ କରାଯାଇଛି । ପାର୍ବତୀ ରୋଗ ମୁକ୍ତିର କାରଣ ଜିଜ୍ଞାସା କରନ୍ତେ ଶିବ ରାମାୟଣ କଥା କହିଛନ୍ତି । ଏଥିରେ ତୁଳସୀ ଦାସଙ୍କ ପରି କେତେକ ସ୍ୱତନ୍ତ୍ର ବିଷୟମାନ ପ୍ରକାଶ ପାଇଛି । ସୀତା ସ୍ୱୟମ୍ବର ସମୟରେ ରାବଣ ଏବଂ ବାଣାସୁରର ଉପସ୍ଥିତ ହେବା କଥାମାନ ଏଥିରେ ଉଲ୍ଲେଖ କରାଯାଇଛି । ଏହି ରାମାୟଣର ମୂଳ ପ୍ରେରଣା ହେଉଛି ଆଧ୍ୟାତ୍ମ୍ୟ ରାମାୟଣ । ଦାଣ୍ଡୀ ରାମାୟଣରେ ମହାଭାରତ, ଦେବୀ ଭାଗବତ ଏବଂ ଅନ୍ୟାନ୍ୟ ପୁରାଣମାନଙ୍କରୁ ଉପାଖ୍ୟାନମାନ ଗୃହୀତ ହୋଇଛି । ବଳରାମ ଦାସ ମୂଳ ରାମାୟଣରୁ ଭିନ୍ନ ନିମ୍ନଲିଖିତ ଚରିତମାନ ଦାଣ୍ଡୀ ରାମାୟଣରେ ଯୋଗ କରିଛନ୍ତି ଋଷ୍ୟଶୃଙ୍ଗ ଜନ୍ମ ଚରିତ, ଅଗସ୍ତି ଚରିତ,ସୀତା ସ୍ୱୟମ୍ବରରେ ରାବଣ ଓ ବାଣାସୁରର ଉପସ୍ଥିତ ଓ ପରାଜୟ, ସହସ୍ରାର୍ଜ୍ଜୁନ ବଧ ପାଇଁ ପରଶୁରାମଙ୍କ ଏକୋଇଶ ବାର ପର୍ଯ୍ୟଟନ ଓ ଶେଷରେ ବିଷ୍ଣୁଙ୍କ ଉପାସନା ଦ୍ୱାରା ତାର ବଧ । ଏହିପରି ଅନେକ ନୂତନ ନୂତନ କଥାମାନ ଯୋଗ କରାଯାଇଛି । ଜଗମୋହନ

ରାମାୟଣର ସ୍ୱକୀୟ ବୈଶିଷ୍ଟ୍ୟ ହେଉଛି ଏଥିରେ ଅନେକ ଆଞ୍ଚଳିକ ଚିତ୍ର ସ୍ଥାନ ପାଇଛି । କଥାବସ୍ତୁ ଓ ଘଟଣାମାନଙ୍କୁ ଓଡ଼ିଶାର ମାଟି ପାଣି ସହିତ ସଂପୃକ୍ତ କରାଯାଇଛି । ଶିବଙ୍କ ନିଜ ସ୍ଥାନକୁ କୈଳାସ ପରିବର୍ତ୍ତେ ଓଡ଼ିଶାର କପିଳାସ ବୋଲି କହିଛନ୍ତି । ବିରଜାକ୍ଷେତ୍ର ଯାଯପୁରଠାରେ ରାବଣ ତପସ୍ୟା କରି ବର ପାଇବା ଏବଂ ବାନର ସେନାମାନଙ୍କର ଜନ୍ମ କୋଣାର୍କ, ଧବଳଗିରି, ବିରଜାକ୍ଷେତ୍ର, ବାମଣ୍ଡା, ରଣପୁର ଉଦୟଗିରି ତଥା ଶତଶୃଙ୍ଗଗିରି ପ୍ରଭୃତିରେ ହେବା ତାଙ୍କର ବ୍ୟକ୍ତିଗତ କଳ୍ପନା । ଏହିପରି କଥାବସ୍ତୁ ଓ ଘଟଣାମାନଙ୍କୁ ସଂପୃକ୍ତ କରିବା ଏବଂ ଜନ ଭାଷାରେ ରାମାୟଣ ହେଲା ତାଙ୍କର ମୌଳିକ ବିଶେଷତ୍ୱ ।

**ମତ୍ତ ବଳରାମ ଓ ଚକ୍ରତୀର୍ଥର ସୃଷ୍ଟି :**

ବଳରାମ ବେଶ୍ୟାସକ୍ତ ଥିବାର ପ୍ରମାଣ ମିଳେ । ଭାବ ସମୁଦ୍ର ଗ୍ରନ୍ଥରୁ ସୂଚନା ମିଳେ, ବେଶ୍ୟାସକ୍ତ ଥିବା ସମୟେ ଜଗନ୍ନାଥଙ୍କ ରଥଟଣାରେ ଘଣ୍ଟଧ୍ୱନି ତାଙ୍କ କର୍ଣ୍ଣ ଗହ୍ୱରରେ ପ୍ରବେଶ କଲା । ବଳରାମ ଭାବ ଗଦ୍ ଗଦ୍ ହୋଇ ହଳଦୀ ଲଗା ସେହି ଅପାଲଟା ଲୁଗା ନ ବଦଳାଇ ମତ୍ତ ହୋଇ ଧାଇଁଲେ ଜଗନ୍ନାଥଙ୍କ ରଥ ଅଭିମୁଖେ । ରଥରେ ଚଢି ସେଇ ଅସଞ୍ଜତ କେଶ ବିନ୍ୟାସ ବେଶ ଭୂଷାରେ ଜଗନ୍ନାଥଙ୍କୁ କୁଣ୍ଢାଇ ପକାଇଲେ । ପଣ୍ଡାଗଣ ତାଙ୍କର ଏ ବେଶ ଭୁଷା ଦେଖି ନାନାପ୍ରକାର କଟୁକ୍ତି ଭାଷା ବ୍ୟବହାର କରି ରଥ ଉପରୁ ତଳକୁ ପକାଇ ଦେଲେ । ସେତେବେଳେ ତାଙ୍କର ଚେତନା ଫେରି ଆସିଲା । ଲଜ୍ଜା ଓ ଅପମାନରେ ପଳାଇ ଗଲେ ଚକ୍ରତୀର୍ଥସ୍ଥିତ ସମୁଦ୍ରର ବେଳା ଭୂମିକୁ । ରଥ ଟଣାରୁ ଭକ୍ତ ଆଜି ବଞ୍ଚିତ । ବାଲିରେ ତିନି ରଥର ଚିତ୍ର ଲେଖି ଭାବ ସମୁଦ୍ରରେ ବୁଡ଼ିଗଲେ । ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଦେବୀ ବାଲି ରଥରେ ପ୍ରବେଶ କରି ଜ୍ଞାନ ନେତ୍ରରେ ଭକ୍ତକୁ ଦର୍ଶନ ଦେଲେ । ଭାବ ବିହ୍ୱଳ ହୋଇ ଭଗବାନଙ୍କୁ ନେଇ ଭକ୍ତ ରଚନା କଲେ ନୂତନ ଗୁଣ୍ଡିଚା ଯାତ୍ରା । ତେଣେ ବଡ଼ ଦାଣ୍ଡରେ ରଥ ଅଚଳ । ସମସ୍ତ ଶକ୍ତି ବଳରେ ରଥ ଆଗକୁ ଚାଲୁନି । ରାତ୍ରରେ ସ୍ୱପ୍ନାଦେଶ ହେଲା ପୁରୀ ଗଜପତିଙ୍କୁ । ଭକ୍ତ ଅଭିମାନରେ ବନ୍ଦୀ କରି ରଖିଛି ବଡ଼ ଠାକୁରଙ୍କୁ । ରଥ ଚାଲିବ କାହାକୁ ନେଇ । ତା' ପରଦିନ ଘଣ୍ଟ କାହାଳୀ, ଛତି, ତ୍ରାସ ନେଇ ବିଜେ ହେଲେ ପୁରୀ ଗଜପତି ପ୍ରତାପରୁଦ୍ର ଦେବ ଭକ୍ତର ମାନଭଞ୍ଜନ ପାଇଁ । ଜ୍ଞାନ ନେତ୍ର ଫେଇ ବଳରାମ ଚାହିଁ ରହିଲେ ବାସ୍ତବ ଜଗତକୁ । ସ୍ୱୟଂ ଠାକୁର ରାଜା ପଣ୍ଡା ପଢ଼ିଆରୀ ବିଜେ ହୋଇଛନ୍ତି ଭକ୍ତର ମନୋବାଞ୍ଛା ପୂରଣ ପାଇଁ । ଭକ୍ତରମାନ ରହିଲା । ରଥ ବଜ୍ର ନିର୍ଘୋଷ ଗତିରେ ଭକ୍ତକୁ ନେଇ ବଡ଼ ଦାଣ୍ଡରେ ଆଗେଇ ଚାଲିଲା ଗୁଣ୍ଡିଚା ମନ୍ଦିର ଅଭିମୁଖେ । କିନ୍ତୁ ବଳରାମ ଦାସ ଯେଉଁଠି ବାଲିରଥ ରଚନା କରିଥିଲେ ତାହା ଯୁଗେ ଯୁଗେ ସ୍ମରଣ ରଖିବା ପାଇଁ ତାର ନାମ କରଣ ହେଲା **ଚକ୍ରତୀର୍ଥ** ।

ବ୍ୟାସଦେବଙ୍କ କୃତ ଭଗବତ୍ ଗୀତାକୁ ସେ ସରଳ ଓଡ଼ିଆ ଭାଷାରେ ଅନୁବାଦ କରିଛନ୍ତି । ଏଥିରେ କବିତା ଅପେକ୍ଷା ଗୀତା ତତ୍ତ୍ୱ ଜ୍ଞାନର ଅଧିକ ପରିଚୟ ମିଳେ । ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନ ଉକ୍ତି ପ୍ରତ୍ୟୁକ୍ତି ଛଳରେ ସେ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ଜ୍ଞାନ ଯୋଗକୁ **ଗୁପ୍ତଗୀତା**ରେ ବର୍ଣ୍ଣନା କଲେ ।

ଶରୀର ମଧ୍ୟରେ ପୁଣି ସକଳ ତୀର୍ଥ ଓ ଚତୁର୍ଦ୍ଧା ମୂର୍ତ୍ତିର ଅବସ୍ଥିତି ବୋଲି ସେ ଏହି ଗ୍ରନ୍ଥରେ ମଧ୍ୟ ଉଲ୍ଲେଖ କରିଛନ୍ତି । ବ୍ରହ୍ମାଣ୍ଡ ଭୂଗୋଳରେ ସମଗ୍ର ଭାରତବର୍ଷର ଦର୍ଶନକୁ ହରି ଅର୍ଜ୍ଜୁନ ଉକ୍ତି ପ୍ରତ୍ୟୁକ୍ତି ଛଳରେ ବର୍ଣ୍ଣନା କରିଛନ୍ତି । **ବେଦାନ୍ତ ସାର ଗୁପ୍ତଗୀତାରେ** ମୂର୍ଖ ମୁଖରେ ବେଦ ଚର୍ଚ୍ଚା କରାଇଥିବା କଥା ଏବଂ ଅହଂମନ୍ୟ ପଣ୍ଡିତମାନଙ୍କ ଦ୍ୱାରା ନିର୍ଯ୍ୟାତିତ କାହାଣୀ ବର୍ଣ୍ଣିତ ହୋଇଛି । **ବଟ ଅବକାଶରେ** କବିଙ୍କର ଜଗନ୍ନାଥଙ୍କ ସହିତ ଲଙ୍କା ଦର୍ଶନ ଓ ସୁବର୍ଣ୍ଣ ଝରି ଚୋରି ଅପରାଧରେ ଦଣ୍ଡିତ ହେବା ଓ ଶେଷରେ ଜଗନ୍ନାଥ ରାଜାଙ୍କୁ ସ୍ୱପ୍ନ ହେତୁ ମୁକ୍ତି ଆଦି ବର୍ଣ୍ଣିତ ହୋଇଅଛି । ରାବଣ ସୀତାଙ୍କୁ ଚୋରିକରି ନେଇଯିବା କରୁଣ ଭାବକୁ କାନ୍ତ କୋଇଲିରେ ବର୍ଣ୍ଣିତ କରିଛନ୍ତି । ଏହିପରି **ବେଢା ପରିକ୍ରମା ବିରାଟଗୀତା, ସପ୍ତାଙ୍ଗ ଯୋଗ ସାରଟୀକା, ଗଣେଶ ବିଭୂତି ଟୀକା, ବଉଳ ଅଧାୟ ଓ ଲକ୍ଷ୍ମୀ ପୁରାଣ** ଆଦି ଗ୍ରନ୍ଥମାନ ରଚନା କରିଛନ୍ତି । ମୋଟ ଉପରେ ମଧ୍ୟ ଯୁଗୀୟ ଓଡ଼ିଆ ସିଦ୍ଧ ସାହିତ୍ୟ ପରମ୍ପରାରେ ହଠଯୋଗୀ ପିଣ୍ଡ ବ୍ରହ୍ମାଣ୍ଡ ଜ୍ଞାନମାର୍ଗୀ ବଳରାମ ଦାସ ଅନ୍ୟାନ୍ୟ ସାଧାରଣପ୍ରତିଭାର ଅଧିକାରୀ ଥିଲେ । ସେ ଥିଲେ ଜଣେ ମହାପୁରୁଷ, ସାହିତ୍ୟ ମାଧ୍ୟମରେ ଏକ ଆଧ୍ୟାତ୍ମିକ ବିପ୍ଳବ ସୃଷ୍ଟି କରି ପାରିଥିଲେ । ସେ ଓଡ଼ିଆ ଜାତିର ଚିର ନମସ୍ୟ ।

ଦାଣ୍ଡି ରାମାୟଣ ବୃହତ୍ କଳେବର ଦୃଷ୍ଟିରୁ ଏ ପର୍ଯ୍ୟନ୍ତ ଅପ୍ରକାଶିତ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ବଡ଼ମ୍ବାର ବାଦଭୂଇଁ ନିବାସୀ ଶ୍ରୀ ବାସୁଦେବ ମୁଦୁଲି ଓ ଶ୍ରୀ ନାରାୟଣ ମୁଦୁଲିଙ୍କ ପୋଥିରୁ ଏତେ ଦିନ ପରେ ଓଡ଼ିଆ ସାହିତ୍ୟର ବହୁ ଲୁପ୍ତ ଧର୍ମ ଗ୍ରନ୍ଥର ଉଦ୍ଧାରକ ଧର୍ମଗ୍ରନ୍ଥ ଷ୍ଟୋରର ସ୍ୱତ୍ୱାଧିକାରୀ **ଶ୍ରୀ ବିଦ୍ୟାଧର ସାହୁ** ତାକୁ ଗ୍ରହଣ କରିଥିବାରୁ ଓଡ଼ିଶାବାସୀ ତାଙ୍କ ନିକଟରେ ଚିର ଋଣୀ ହୋଇ ରହିବେ, ଏଥିରେ ସନ୍ଦେହ ନାହିଁ ।

ଜଗମୋହନ ରାମାୟଣ ଦାଣ୍ଡି ବୃତ୍ତରେ ନିରବଚ୍ଛିନ୍ନ ଭାବେ ଲେଖା ଯାଇ ଥିବାରୁ ତାହାର ସୂଚିପତ୍ର କରିବା ସମ୍ଭବପର ହେଲାନାହିଁ । ହିତୋପଦେଶ କଥାପରି ଗୋଟିଏ ବିଷୟ ଅବତାରଣା କରୁ କରୁ ତା ମଧ୍ୟରେ ଅନେକ ଉପାଖ୍ୟାନ ବର୍ଣ୍ଣିତ ହୋଇ ପ୍ରଥମୋକ୍ତ ବିଷୟ ସାଙ୍ଗ କରାଯାଇଛି । ତେଣୁ ଗ୍ରନ୍ଥସୂଚୀ କଷ୍ଟସାଧ୍ୟ ।

**ଶ୍ରୀ ବନମାଳୀ ବିଶ୍ୱାଳ**
ସା/ପୋ:- ଅଲରା, ନରସିଂହପୁର, କଟକ
ଶ୍ରୀ ଗୁଣ୍ଡିଚା ତା ୨୯/୨/୧୯୭୬




# ଜଗମୋହନ ରାମାୟଣ

## ବା

# ଦାଣ୍ଡି ରାମାୟଣ

## ଆଦ୍ୟକାଣ୍ଡ

ରାମ ଲକ୍ଷ୍ମଣ ପୂର୍ବଜଂ ରଘୁବରଂ ସୀତାପତି ସୁନ୍ଦରଂ,
କାକୁତ୍ସ୍ଥଂ କରୁଣାମୟଂ ଗୁଣନିଧି ବିପ୍ରପ୍ରିୟଂ ଧାର୍ମିକଂ ।
ରାଜେନ୍ଦ୍ରଂ ସତ୍ୟସନ୍ଧଂ ଦଶରଥତନୟଂ ଶ୍ୟାମଳଂ ଶାନ୍ତମୂର୍ତ୍ତି,
ବନ୍ଦେ ଲୋକାଭିରାମଂ ରଘୁକୁଳତିଳକଂ ରାଘବଂ ରାବଣାରି ।
ଦକ୍ଷିଣେ ଲକ୍ଷ୍ମଣା ଧନ୍ୱୀ ବାମେତଃ ଜାନକୀ ଶୋଭା,
ପୁରତୋ ମାରୁତିର୍ଯ୍ୟସ୍ୟ ତ୍ୱଂ ନମାମି ରଘୁତ୍ତମଂ ।
ରାମାୟ ରାମଚନ୍ଦ୍ରାୟ ରାମଭଦ୍ରାୟ ବେଧସେ
ରଘୁନାଥାୟ ନାଥାୟ ସୀତାୟାଃ ପତୟେ ନମଃ ।

---

### ଗଣେଶଙ୍କ ବନ୍ଦନା

ବନ୍ଦଇ ଗଣନାଥ ହେ ଗଉରୀ ନନ୍ଦନ ।
କପାଳ ଶୋଭିତ ଯାର ଶ୍ରୀଖଣ୍ଡି ଚନ୍ଦନ ।
ଅଯୋନି ସମ୍ଭୁତେ ଯାକୁ ଦୁର୍ଗା କଲେ ଜାତ
ସଦାଶିବ ତାତ ଯେ ପାର୍ବତୀ ଦେବୀ ମାତ ।
ନମୋ ଗଣନାଥ ମୋର ଘେନିବାକୁ ସେବା
ପ୍ରସନ୍ନ ହୋଇଣ ମୋତେ ପଦ କହିଦେବା ।



### ଜଗନ୍ନାଥଙ୍କ ବନ୍ଦନା

ବନ୍ଦଇ ଯେ ଜଗନ୍ନାଥ କମଳା ଦେବୀ ପତି
ନୀଳଗିରିରେ ବିଜୟ ଅପୂର୍ବ ମୂରତି ।
ସୁନ୍ଦର ଶ୍ରୀମୁଖ ଯେ ନୀଳେନ୍ଦ୍ରୀ ଜଳ କିଣି
ପାଖେ ଉଭା ଗରୁଡ଼ କିଙ୍କର ଖଗମଣି ।
ସୁନ୍ଦର ଦିଶଇ ଯେ ଚକୋର ନେତ୍ରଗୋଟି
ଶ୍ରୀଅଙ୍ଗକୁ ସୁନ୍ଦର କାଛଟି ବେଶଗୋଟି ।
ନରଗଣ ନିସ୍ତାରଣ ଦେବଗଣକୁ ସାହା
ଶୁଦ୍ଧ ସୁବର୍ଣ୍ଣ ଶଙ୍ଖ ଚକ୍ର ଚଉବାହା ।
ସର୍ବାଙ୍ଗରେ ଚନ୍ଦନ ଲେପନ ଦଇତାରି
ପବିତ୍ର ଝୀନ ବାସ ପରିହରଣ କରି ।
ଶିରରେ ମୁକୁଟ ଯେ ଦିଶେ ଶୋଭାବନ
ବିରାଜନ୍ତି ମଣିରତ୍ନ ଦିଶଇ ଛନ୍ନ ଛନ୍ନ ।
ଲଲାଟରେ ଶୋହଇ ଯେ କସ୍ତୁରୀ ଭାଲଚିତା
ହୃଦୟରେ ହାର ପଦ ସୁବର୍ଣ୍ଣ ପଇତା ।
ଗଗନେ ଉଦୟ ଯେହ୍ନେ ଚନ୍ଦ୍ରର କିରଣ
ବୈଜୟନ୍ତି ମାଳ ଗୋଟି ଦିଶେ ଶୋଭାବନ

ଅଳକା ପନ୍ତି ପନ୍ତି ଯେ ଗଜ ମୁକ୍ତା ଝରା
ଯେସନେ ଚନ୍ଦ୍ରକୁ ଯେ ବେଢ଼ିଛନ୍ତି ତାରା
ଗଣ୍ଡସ୍ଥଳେ ମଣ୍ଡିତ ଯେ ସିନ୍ଦୁର ଚାରୁଚିତା
ଇନ୍ଦ୍ରହାରା ମଣିମୟେ ଗଳାରେ ଜଗଜିତା ।
ସୁନ୍ଦର ଅଧର ପୁଣ ଦିବ୍ୟ ଅଳକା ଶିଖା
ଜଳଧାରା ମଧ୍ୟରେ କି ବିଜୁଳିର ରେଖା ।
ସୁସଞ୍ଚ ନାସିକାକୁ କି ପାଟନ୍ତର ଅଛି
ଆପେ ନିର୍ମାଣ ସେ ଯେ ଘଟଣ ହୋଇଛି ।
ତ୍ରୈଲୋକ୍ୟର ନାଥ ଯେ ଭକତ ଜନ ପାଇଁ
କରୁଣାସାଗର ସେ ଯେ ତ୍ରୈଲୋକ୍ୟଗୋସାଇଁ ।
କଟିରେ କଟିମେଖଳା ଶୋଭା ଦିବ୍ୟକାନ୍ତି
ବାମେ ଯମଦାଢ଼ ଯେ ପ୍ରଚଣ୍ଡ ଦିବ୍ୟ ଜ୍ୟୋତି
ରତ୍ନ ଚକା ଉପରେ ହଂସୁଲି ତୁଳି ପଡ଼ି
ବିଜୟେ ଜଗନ୍ନାଥ ବଡ଼ିମା ପଣ ବାଢ଼ି ।
ବ୍ରହ୍ମା ଶିବ ଇନ୍ଦ୍ରାଦି ଯେ ଛାମୁରେ ଅନୁକ୍ଷଣେ
ସେ ପ୍ରଭୁ ଅବତାର ଯେ ମାନବର ଜନ୍ମେ
ଅଭୟ ରୂପ ପୁଣ ସ୍ୱରୂପ ଯାର କାୟା
ଅବନୀ ଅଦିତି କି ଅଗୋଚର ମାୟା ।
ଅନନ୍ତ କୋଟି ବ୍ରହ୍ମାଣ୍ଡ ଏକଇ ଶରୀର
ପ୍ରତ୍ୟକ୍ଷେ ବିଜୟ ପ୍ରଭୁ ଦକ୍ଷିଣ ସିନ୍ଧୁତୀର ।
ଦଣ୍ଡ ସିଂହାସନ ଯେ ଚାମର ଦଣ୍ଡଛତ୍ର
ଯେ ରାଜାଧି ରାଜେଶ୍ୱର ନୃପତି ତିଳକ ।
ପାଟ ମହାଦେଇ ଯେ ରୁକ୍ମିଣୀ ସତ୍ୟଭାମା
ସଙ୍ଗତେ ବିଜୟ ଯେ ପ୍ରଭୁ ବଳରାମା ।
ଦୁର୍ଗା ସୁଭଦ୍ରା ଯେ ସମ୍ଭାଳେ ଅର୍ଥ ବିତ୍ତ
ଆବର ସଞ୍ଚନ୍ତି ପୁଣି ଅପୂର୍ବ ପଦାର୍ଥ ।
ବିଜୟେ ସିଂହାସନେ ପାଷାଣ ନବରେ
ଧ୍ୱଜ ଶଙ୍ଖ ଚକ୍ର ଯେ ପାତାଙ୍ଗ ଚକ୍ରାକାରେ ।
ଆପଣେ ଦ୍ୱାରପାଳ ଯେ ବିନତାର ବସ
ଦକ୍ଷିଣ ପାରୁଶରେ କଳପ ନାମେ ବଟ ।
ଲବଣ ସିନ୍ଧୁ ଜଳ ଅଛିକି ଅକଳଣା
ଲାଭକେଶ୍ୱର ଲିଙ୍ଗ ପଶ୍ଚିମ ଦିଗଠଣା ।
ସେ ପୁର ନାମଗୋଟି ଶ୍ରୀପୁରୁଷୋତ୍ତମ
ଶଙ୍ଖ ନାଭି ମଣ୍ଡଳ ଆକାରେ ଉତ୍ତମ ।
ଉତ୍ତର ଦିଗରେ ଯେ ମାରକଣ୍ଡେଶ୍ୱର
ଦକ୍ଷିଣ ଦିଗରେ ଯେ ଯମେଶ୍ୱର ମୂଳ ।
ପୂର୍ବ ଦିଗରେ ନୀଳକଣ୍ଠ ପଞ୍ଚାନନ
କପାଳ ମୋଚନ ପଶ୍ଚିମଦିଗରେ ମଧେଣ ।
ଚାରିପାଶେ ଅଟଇ ଯେ ଚାରିଘାଟ ଜାଣ
ମୂକତି ପସରା ବୋଲି ତାହାକୁ ମଣ ପୁଣ ।
ସୁବର୍ଣ୍ଣମୟ ପୁର କିରଣ ଦିଶେ ଶୋଭା
ଯହିଁରେ ନଭେଦେ ଯେ କଳିକାଳ ପ୍ରଭା ।
ଛୟାଣୋଇ ସସ୍ତ୍ରଘର ଅଷ୍ଟାଦଶ ଜତି
ସମସ୍ତେ ଚତୁର୍ଭୁଜ ଯେ ସ୍ୱର୍ଗକୁ ଦିଶନ୍ତି ।
ଭାଳିଣ ଦେବତାୟେ ପୁଛନ୍ତି ପିତାମହ
ଏଥିରେ ସଂଶୟ ପିତା ଆମ୍ଭଙ୍କୁ ସେ କହ ।
ମୃତ୍ୟୁପୁର ଭିତରେ ଜମ୍ବୁଦ୍ୱୀପ ଭ୍ରଥଖଣ୍ଡ
ଉତ୍କଳ ଦେଶରେ ଯେ ଅଭିନବ ମଣ୍ଡ ।
ଦକ୍ଷିଣ ସିନ୍ଧୁ ତୀରରେ ଯେବଣ ଯେ ପୁର
ନୀଳ ସୁନ୍ଦର ଗିରିରେ ବିଜୟ ଚକ୍ରଧର ।
ନଗର ପରିମଳ ଯେ ବହୁତ ଲୋକସେଥି
ସମସ୍ତେ ଦିଶନ୍ତି ପ୍ରତ୍ୟକ୍ଷରେ ଯେ ଶ୍ରୀବସି ।
ଶଙ୍ଖ ଚକ୍ର ଗଦା ଯେ ଦିଶନ୍ତି ଚତୁର୍ଭୁଜ
କିରୀଟି କୁଣ୍ଡଳ ଶୋହେ ବସନ୍ତ ବର୍ଣ୍ଣ ତେଜ ।
ସେଥିରେ ବିଜୟ କରି ଅଛନ୍ତି ଜଗନ୍ନାଥ
କେ ମନରେ ସେ କଥାକୁ ପାରିବ କଳିତ ।
ବେଦବର ବୋଲେ ତୁମ୍ଭେ ଦେବତା ଏ ଶୁଣ
ପୁରୁଷୋତ୍ତମ ଲୋକେ ସମସ୍ତେ ନାରାୟଣ ।
ସେଥିରେ ନିଦାବିଷ୍ଣୁ ପ୍ରତ୍ୟକ୍ଷେ ନରହରି
ଚର୍ମଲୋଚନରେ ଯାକୁ ଦେଖିଲେ ନିସ୍ତରି ।
ସେ ପୁରଲୋକ ଯହୁଁ ହୋଇଲେ ଚତୁର୍ଭୁଜ
ଆପେ ନୀଳଗିରି ନାଥ ହୋଇଲେକ ଭାଜ ।
ପାଦ କର ନ ବହିଲେ ତୁମ୍ଭର ଯେ ହିତେ
ଗୁପତ କଲେ ନାସା ଶ୍ରବଣ ସହିତେ ।
ଆଜହୁଁ ହେତୁ କର ସର୍ବ ସୁରେ ପୁଣି
ଆନନ୍ଦ ହୋଇଲେ ସର୍ବେ ଦେବଗଣେ ଶୁଣି ।
ବ୍ରହ୍ମା ସହିତରେ ଅଇଲେ ଦେବତାଏ ଦେଖି
ଚକ୍ଷୁ ସୁଫଳ ହୁଏ ଯେ ସେ ଦେବଙ୍କୁ ଦେଖି ।
କଟିରେ ପୀତବସନ ପିନ୍ଧି କାଛିକରି
ସେବାକାରୀ ନିମନ୍ତେ ଚତୁର୍ଧା ରୂପଧରି ।

ଆରତ ଭଞ୍ଜନ ଯାର ମହିମା ଯେ ସିଦ୍ଧି
ସୁଗନ୍ଧ କୁସୁମ ନାନା ବର୍ଣ୍ଣରେ ଯେ ବିଧି ।
ଫୁଲ ଚନ୍ଦନ ଅଗୁରୁ ଚନ୍ଦନ ସୁବାସ
ରତ୍ନ ଆଭରଣ ଅଙ୍ଗେ କମଳା ବିଳାସ ।
ଦେଖିଣ ଦେବତା ଯେ ହୋଇଲେ ତୁଷ୍ଟପତି
ଜାଣିଲେ ବାସୁଦେବ ବାସନା ପ୍ରକୃତି ।
ଦେବଙ୍କୁ ଦୁର୍ଲଭ ଅଟେ ମାନବେ ପ୍ରକାଶ
ଜୟ ଜୟ ଦେବ ତୁମ୍ଭେ ପରମ ପୁରୁଷ ।
ଅନନ୍ତ ପୁରୁଷୋତ୍ତମ ଅନନ୍ତ ମୂରତି
ସହସ୍ରେ ଫଣା ତୁ ଯେ ସହସ୍ରେ ମୂରତି ।
ସହସ୍ରେ ଫଣା ପୁଣ ସହସ୍ର ଲୋଚନ
ସହସ୍ରେ କୋଟି ଯାଗ କଲେ ବିମୋଚନ ।
ସହଜେତ ସହସ୍ରେ ମୂରତି ପୀତବାସ
ଦଶଦିଗେ ଦିଶନ୍ତି ଶାନ୍ତିଶୀଳ ରୂପ ।
ମନ୍ତ୍ରଙ୍କର ସାରସ୍ୱତ ଅଟୁନା ଗୋସାଇଁ
ଭାବଗ୍ରାହୀ ନାଥ ଅଟୁ ନାନା ଅର୍ଥେ ତୁହି ।
ଅପାର ମହିମା ତୋର ବିଚିତ୍ର ଅଟେ କେଳି
ଜାଣିତ ଭାର୍ଜନ ତୋତେ ନୋହେ ଦେବଶୂଳୀ ।
ଦାସବତ୍ସଳ ତୁମ୍ଭେ କରୁଣାମୟ ସିନ୍ଧୁ
ଧୈର୍ଯ୍ୟ ଲୋକର ମେରୁ ଦୁଃଖୀଲୋକର ବନ୍ଧୁ ।
ସୁରଗଣଙ୍କର ସଖା ଦଇତ କୁଳ କାଳ
ଜୟ ନାରାୟଣ ତୁମ୍ଭେ ଗୋବିନ୍ଦ ଗୋପାଳ ।
ନମସ୍ତେ ନାରାୟଣ ଶଙ୍ଖ ଚକ୍ରଧାରୀ
ନମସ୍ତେ ନାରାୟଣ ସୁରଙ୍ଗ ମଧୁହାରି ।
ନମସ୍ତେ ନାରାୟଣ ଜଗତଜନ ଆତ୍ମା
ଉତପତି ପ୍ରଳୟ କରୁଣା ମହାତ୍ମା ।
ସୃଷ୍ଟି ସର୍ଜନ ତୋର ଦୁଃଖ ଯେ ସୁଖଦାନୀ
ସଂସାରପାଳକ ନାଥ ଦୟାଳୁ ଦାତା ପୁଣି ।
ଯାହାକୁ ସୁଦୟା ତୁ କରୁ ବ୍ରହ୍ମରାଶି
ସେ ତୋର ଚରଣେ ଶରଣ ପଶେ ଆସି ।
ଇହଲୋକରେ ମୁକ୍ତି ଶାନ୍ତିରେ ସ୍ୱର୍ଗପାଇ
ଦେବଙ୍କର ସଙ୍ଗରେ ଯୁଗେ ଯୁଗେ ଥାଇ ।
ତୁମ୍ଭେ ଯେ ନାରାୟଣ ଶରଣ ରଖନ୍ତା
କୀଟୁ ଯେ ବ୍ରହ୍ମଯାଏ ସମସ୍ତେ ଦେଖନ୍ତା ।
ଧନି ନିର୍ଧନୀ ପୁରୁଷେ ନିର୍ବଳ ବଳ ନାହିଁ
ତୋହର ଆଗରେ ପ୍ରଭୁ ଜପ ମନ୍ତ୍ର କାହିଁ ।

ବେଦ ପୁରାଣରେ ତୁମ୍ଭେ ଅଟଗୋ ଅଧିପତି
ତୋହର ଆଗରେ ନାହିଁ ଆନ ଯେ ଯୁକତି ।
ବ୍ରହ୍ମା ତଟସ୍ଥ ହୋନ୍ତି ଶୁଣି ତୋର ନାମ
ଚନ୍ଦ୍ର ସମାନ ନୁହଇ ଯୋଗ ସାଧି ପୁଣ ।
ସର୍ବଦେବ ନିସ୍ତାରଣ ସର୍ବ ଅନ୍ତର୍ଯ୍ୟାମୀ ।
ବନ୍ଦଇ ନାରାୟଣ ପରମ ଦେବସ୍ୱାମୀ ।
ମୁଁ ତୋହର ଶରଣ ପଶିଲି ଜଗନ୍ନାଥ
ଉଦ୍ଧରି ଧର ମୋତେ ଶଙ୍ଖ ଚକ୍ର ହସ୍ତ ।
ତୁ ମୋତେ ଉଦ୍ଧର ତୋତେ ଭଜିଲି ମୁଁ ପୁଣ
ଭୟ ନ କରି ଚିତ୍ତେ ପଶିଲି ଶରଣ ।
ଯାହା ମୁଁ ପୁରାଣରେ ଶୁଣିଲି ଋଷିମୁଖେ
ତୋତେ ସେବା ମୁହିଁ ଯେ କରୁଛି ମୋର ସୁଖେ ।
ତୋହର ଆଜ୍ଞାରେ ପୁଣ ସୁରଗଣ ଦଳି
ତୋତେ ହିଂସା କରିଣ ଅସୁରେ ଗଲେ ତରି ।
ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଯେ ଚଉଦ ଭୁବନ
ତୋତେ ଆଶ୍ରେ କରି ଯେ ତରେ ସର୍ବ ଜନ ।
ତୋତେ ସେବିଣ ମୁହିଁ ଯେ ଅଛଇ ଗୋସାଇଁ
ବ୍ରହ୍ମାଣ୍ଡ ଭିତରେ ଆନ ସରିସମ ନାହିଁ ।
ଅକ୍ଷୟ ନାମ ତୋହର ଶ୍ରୀବତ୍ସ ମୁରାରୀ
କଉସ୍ତୁଭ ଭୂଷଣ ଅଟୁ ଦଇତାରି ।
ପୁରାଣ ପୁରୁଷେ କମଳା ପତି ପ୍ରତ୍ୟକ୍ଷ
ପ୍ରସନ୍ନ ହୁଅଇ ମୋତେ ପରମ ଜ୍ଞାନ ବସ୍ଥ ।
ବଳରାମ ଦାସ ମୁଁ ଯେ ଅଟଇ ତୋହର
ତୁଦେବ ହୃଦୟରେ ପଶ ଯେ ମୋହର ।
ଶ୍ରୀରାମ ଠାକୁର ଯେ ଜାନକୀ ଦେବୀ ପତି
ସମସ୍ତେ ଅବତାର ହୋଇଲେ ମଞ୍ଚରେଟି ।
ଧରଣୀ ଉଶ୍ୱାସେ ସେ ଦୁଷ୍ଟଙ୍କୁ ମାରି ପୁଣ
ସନ୍ଥଙ୍କୁ ରଖିବାକୁ ଛାଡ଼ିଲେ ନିଜ ସ୍ଥାନ ।
ସେ ଚରିତ୍ର ବାଲମିକେ ଉଚ୍ଚାରିଲେ ମନ
ପାର୍ବତୀଙ୍କ ଆଗେ ବଖାଣିଲେ ପଞ୍ଚାନନ ।
ବାଲମିକ ଋଷି ମନେ ମନେ ଭାଳିବାରୁ
ଯଶୋବନ୍ତିର ପୁରରେ ନାରଦ ଥବାରୁ ।
ସେ କଥାକୁ ନାରଦ ଜାଣିଲେ ଯୋଗବଳେ
ପ୍ରବେଶ ହୋଇଲେ ବାଲମିକ ଆଶ୍ରମରେ ।
ଦେଖିଣ ବାଲମିକ ଯେ ପାଦପୂଜା କଲେ
ମୃଗ ଛାଲ ନେଇଣ ଯେ ନାରଦଙ୍କୁ ଦେଲେ ।

ମୃଗ ଛାଲ ଉପରେ ବସିଲେ ମୁନିବର
ବାଲମିକ କହିଲେ ବଚନ ସୁଧୀର ।
ନାରାୟଣ ଜନ୍ମ ଯହୁଁ ମର୍ତ୍ତ୍ୟପୁରେ ହେଲେ
ଅସୁର ମାରିବାକୁ ଦେବେ ଜାତ କଲେ ।
ତାଙ୍କର ଚରିତ୍ର ମୁଁ ବର୍ଣ୍ଣିବାକୁ ଯେ ମନ
ଶୁଣିଣ ନାରଦ ସେ ବୋଲନ୍ତି ବଚନ ।
ଜାନକୀ ତୋହର ଦୁହିତି ଶ୍ରୀରାମ ଅଟେ ଜ୍ୱାଇଁ
ବିଭୂଷଣ ବିଡ୍‌ମ୍ବଣ ଅନେକ ସେ ହୋଇ ।
ସେ କଥାରେ ବିଚାର ନ କର ମୁନିବର
ବାଲମିକ ବୋଲେ କିଛି ବର୍ଣ୍ଣିବି ନିକର ।
ନାରଦ ବୋଇଲେ ଯେବେ ବର୍ଣ୍ଣିବାକୁ ମନ
ରାମାୟଣ ଆଦ୍ୟକାଣ୍ଡ କରହେ ବର୍ଣ୍ଣନ ।
ବେଦ ନାଟକ ଶୋକ ସାତଶ ପଞ୍ଚାଶରେ
ଏହିକାଣ୍ଡ ବର୍ଣ୍ଣନା କରହେ ମୁନିବରେ ।
ଏଥିରୁ ବଳି ପଢ଼ିଲେ ନରକ ଦରଶନ
ନିଶ୍ଚୟ ତୁମ୍ଭଙ୍କୁ ଯେ ହେବ ହେ ମୁନି ଜାଣ ।
ଶାମବେଦରୁ ଜାତ କରି ଶ୍ଳୋକ
ପଞ୍ଚାସ ସସ୍ର ଶ୍ଳୋକ କର ହେ ତୁମ୍ଭେ ଠିକ୍ ।
ଶାମ ବେଦରୁ ଜାତ ଚାରି ନାଟକ ହେବ
ଦେବ ନାଟକ ସୁନାଟକ ଅଟେ ଭାବ ।
ନବ ନାଟକ ଶ୍ଳୋକ ଲେଖାରେ ଚାରିଜାତି
ଶାମ ବେଦ ମଧ୍ୟରୁ ହେଲା ଉତପତି ।
ପ୍ରଥମରେ ତୁମ୍ଭର ଆଦ୍ୟକାଣ୍ଡ ଯେ ପୁଣ
ଦ୍ୱିତୀୟେ ଚାରିକାଣ୍ଡ କରିବ ଯେଉଁ ଜାଣ ।
ଲଙ୍କାର ଦ୍ୱିଜବର ନୟନ କେଶରୀ
ଅଯୋଧ୍ୟା ଆରଣ୍ୟକ କିଷିନ୍ଧ୍ୟାସିନ୍ଧୁରାଯେକରି ।
ସୁନାଟେକ ଶ୍ଳୋକ ସାତଶ ପଞ୍ଚସ୍ତରୀ
ପଞ୍ଚାଶ ସସ୍ର ଶ୍ଳୋକ କରିବ ଠୁଳକରି ।
ସେଠାବରୁ ପବନ ନନ୍ଦନ ହନୁମନ୍ତ
ଲଙ୍କାକାଣ୍ଡକୁ ପୁଣ କରିବ ସେ ଯେ ଜାତ ।
ମହା ନାଟକ ଶ୍ଳୋକ ସାତଶପଞ୍ଚାଶରେ
ତେତିଶ ସହସ୍ର ପଦ ସମ୍ପୂର୍ଣ୍ଣ ସେହୁ କରେ ।
ସେଠାରୁ ଋଷ୍ୟଶୃଙ୍ଗ କରିବେ ବର୍ଣ୍ଣନା
ସାତଶ ପଞ୍ଚାଶ ନବ ନାଟକ ଶ୍ଳୋକ ସିନା ।
ସେ ସାତଶ ପଞ୍ଚାଶରେ ସତର ସସ୍ର ପଦ
ଶାମବେଦ ଭିତରୁ ଯେ ସମସ୍ତେ ସମ୍ଭବ ।
ସେଠାରୁ ରାମାୟଣ ସମାପତ ହେବ
ଚାରି ଶ୍ଳୋକ ଚାରି ଋଷି କରିବେ ସମ୍ଭବ ।
ଶୁଣିଣ ବାଲମିକ ହରଷ ହୋଇଲେ
ନାରଦ କହିଣ ସେ ସ୍ୱର୍ଗକୁ ଚଳିଗଲେ ।
ସେ ଚାରି ଋଷି ବର୍ଣ୍ଣିବାର ଯେ ବିଧାନ
ପାର୍ବତୀ ଆଗେ ଏହା କହନ୍ତି ତ୍ରିଲୋଚନ ।
ସେ ଚରିତ୍ର ବର୍ଣ୍ଣିବାକୁ ମୋର ମନ ପୁଣ
ତେଣୁକରି ନାରାୟଣ ଚରଣେ ଶରଣ ।
ଚାରି ରାବଣ ଅସୁରକୁ ଧ୍ୱଂସିଲେ କେମନ୍ତେ
ସେ କଥା ଉଚ୍ଚାରଣ କଲେ ଯେ ଶିବ ଚିତ୍ତେ
ଈଶ୍ୱର କହୁଛନ୍ତି ଶୁଣନ୍ତି ପାର୍ବତୀ
ସେ କଥା ବର୍ଣ୍ଣିବାକୁ ଅଟେ ମୋର ମତି ।
ସ୍ୱାମୀଙ୍କର ଆଜ୍ଞାରେ ସେ ପ୍ରମାଣ ଶିରେ ଧରି
ଗ୍ରନ୍ଥ କରିବାକୁ ମୁଁ ଯେ ମନରେ ବିଚାରି ।
ଶୁଣିଣ ଶ୍ରୀରାମଙ୍କ ଚରିତ ମହିମା
ସଦାଶିବ ଅଗ୍ରତେ ଯେ କହେ ବେଦ ବ୍ରହ୍ମା
ପ୍ରସନ୍ନ ହୋଇଣ ଯେ କହିଲେ ଶୂଳପାଣି
ମୁଁ ତାହା ପଣ୍ଡିତଙ୍କ ମୁଖରୁ ଅଛି ଶୁଣି ।
ନୀଳଗିରି ଜଗନ୍ନାଥ ପ୍ରସନ୍ନରେ ପୁଣ
କହିବି ରାମାୟଣ ଅମୃତ ବଚନ ।
କପିଳାସ କନ୍ଦରେ ବିଜୟ ବିଶ୍ୱନାଥ
ଏସନକ ସମୟେ ମିଳିଲେ ଚଉମାଥ ।
ସଙ୍ଗରେ ତ୍ରିଦଶ ଯେ ଦେବତା ପୁଣଛନ୍ତି
ଦଶଦିଗପାଳ ଯାଇ ମିଳିଲେକ ସେଠି ।
ବରୁଣ କୁବେର ଯେ ନଇର୍ରତ ପୁଣ
କପିଳାସ କନ୍ଦରେ ବିଜୟ ସର୍ବେ ଜାଣ ।
ସଦାଶିବ ଦେହ ଯେ ବ୍ୟାଧିରେ ପୀଡ଼ିତ
ଦେଖିବାକୁ ସକଳ ଦେବତା ଉପଗତ ।
ସଦାନନ୍ଦର ଦେହ ଯେ ପାପରୁ ପୀଡ଼ିତ
ଦକ୍ଷ ପ୍ରଜାପତିକି ଯେଣୁ ସେ କଲେ ବଧ ।
ତେଣୁକରି ଶରୀରେ ବ୍ୟାପିଲା ଆସି ବ୍ୟାଧି
ପିତା ବଧ ଦୋଷ ଯେ ସଦାଶିବ ଅଙ୍ଗେ ଲାଗି ।
ପାର୍ବତୀଙ୍କ ତାତ ଯେ ଅଟନ୍ତି ପ୍ରଜାପତି
ଯୋଗୀ ବୋଲି ନ ବରିଲେ ସଦାଶିବଙ୍କୁ ସେଥି ।
ପାର୍ବତୀ ଶୁଣିଣ କୋପ କରିଣ ବେଗେ ଗଲେ
ଅଭିମାନ କରି ଯାଗକୁଣ୍ଡେ ଝାସଦେଲେ ।

ଜାଣିଣ ଈଶ୍ବର ଯେ ଗଲେ ସେହୁସ୍ଥାନ
ପ୍ରଜାପତି ଗଣ୍ଡିମୁଣ୍ଡ କଲେକ ଭିନ୍ନ ଭିନ୍ନ ।
ଗଣ୍ଡି ରଖି ମୁଣ୍ଡ ଯେ କୁଣ୍ଡରେ ନେଇ ଭରି
ଅଗ୍ନି ଦେବତା ତାଙ୍କୁ ଯେ ଦେଲେ ଭସ୍ମକରି
ଦେଖିଣ ଦେବତା ଋଷି ଭୟରେ ପଳାଇଲେ
ପ୍ରଜାପତି ଘରଣୀ ଶିବର ଆଗେ ମିଳେ ।
ସ୍ତୁତି କରନ୍ତେ ଦୟା କଲେ ଯେ ପଞ୍ଚାନନ
ଛାଗଳର ମୁଣ୍ଡ ନେଇ ଲଗାଏ ବହନ ।
ଜୀବନ୍ୟାସ କରିଣ ପ୍ରାଣ ତାଙ୍କୁ ଦେଲେ
ଜୀବ ପାଇ ପ୍ରଜାପତି ସ୍ତୁତି ଆରମ୍ଭିଲେ ।
ଶାନ୍ତି ହୋଇ ସଦାଶିବ କଇଲାସ ଆସି
ସହସ୍ରେ ବରଷ ଗଙ୍ଗାକୂଳେ ତପ କରି ବସି ।
ତପ ସିଦ୍ଧ ହେବାରୁ ଯେ ଜନମ ପାର୍ବତୀ
ହେମନ୍ତ ଘରଣୀ ଗର୍ଭରୁ ଉତପତି ।
କାଳେଣ ସଦାଶିବ ତାହାଙ୍କୁ ହେଲେ ବିଭା ।
ଆନନ୍ଦେ ଭୋଗକଲେ ବିଳସେ ଦୁର୍ଲ୍ଲଭା
ସେ ଲୀଳା ଦେଖି ବିଷ୍ଣୁ ମନରେ ବିରସ
କ୍ଷୀର ସାଗର ମନ୍ଥିଲେ ଘେନିଣ ତ୍ରିଦଶ ।
ପ୍ରଥମେ ତହିଁରୁ ଜାତ ହେଲେକ କମଳା ।
ବିଷ୍ଣୁଙ୍କ ଗଳାରେ ନେଇ ଲମ୍ବାଇଲେ ମାଳା ।
କାଳେଣ ବାସୁଦେବ ତାହାଙ୍କୁ ବିଭାହେଲେ
ହରଷରେ କମଳା ସଙ୍ଗରେ ଲୀଳା କଲେ ।
ଦ୍ୱିତୀୟ ମନ୍ଥନରେ ଅମୃତ ଜାତ ହେଲା
ତ୍ରିଦଶ ଦେବତାଙ୍କୁ ଶ୍ରୀହରି ନେଇ ଦେଲା ।
ଦେବତାଏ ଅମୃତ ଭକ୍ଷିଣ ଅମର
ତୃତୀୟ ମନ୍ଥନରେ ଉପୁଜେ ବିଷଘୋର ।
ଦେଖିଣ ତାହା ସଦାଶିବରେ ଯେ ଦେଲେ
କ୍ରୋଧରେ ସଦାଶିବ ବିଷ ଯେ ପାନକଲେ ।
ସେ ବିଷ ପାନରୁ ବ୍ୟାଧି ହେଲା ଯେ ଉତପତି
ସେଥିର ସକାଶେ ଚିନ୍ତା ପାର୍ବତୀଙ୍କ ପତି ।
କ୍ଷୀଣହେବାରୁ ବେଦବରଦେବଙ୍କୁ ସଙ୍ଗେ ଘେନି
ପଞ୍ଚାନନଙ୍କୁ ସର୍ବେ କରନ୍ତି ଦଇନି ।
ଦେଖିଣ କୃତ କୃତ ହୋଇଲେ ତ୍ରିପୁରାରି
ଉଠିଣ ବିଧାତା ଯେ କୋଳାଗ୍ରତ କରି ।
ପ୍ରୀତ ହୋଇଣ ସର୍ବେ ବସିଲେ ମେଳହୋଇ
ବେଦବରଙ୍କୁ ଦେଖିଣ ଆନନ୍ଦ ଉମାସାଇଁ ।

ଏକ ଆରକରେ ଯେ ପଚାରେ କୁଶଳ
ପୃଥ୍ୱୀର କଥା ଦାତା କହିଲେ ସକଳ ।
ସଦାଶିବ ବୋଇଲେ ଶୁଣ ହେ ପିତାମହ
ବଳକ୍ଷୀଣ ଭଗ୍ନ ଯେ ହୋଇଲା ମୋର ଦେହ ।
ପାର୍ବତୀ ମୋହର କଷ୍ଟ ଦେଖିଣ ବଡ଼ଦୁଃଖୀ
କେବଣ ଆକାରଏ ବୁଝ ହେ ଅଷ୍ଟଆଖି ।
ବେଦବର ବୋଇଲେ ଯେ ସେ କଥା ଅଛିଜାଣି
ତେଣୁ ମୁଁ ଅଇଲି ଯେ ତ୍ରିଦଶ ଦେବଘେନି ।
ଧର୍ମ ନଥାପି ମହାଯାଗ ଯେ ଭାଙ୍ଗିଲ
ଶ୍ବଶୁର ଦକ୍ଷ ପ୍ରଜାପତିଙ୍କି ଗଞ୍ଜିଲ ।
ସେ ଦୋଷରୁ ଶରୀର ତୋହର ସୁସ୍ଥ ନାହିଁ
ତୁହି ଯାଗ ଭିଆଣ କଲୁ ଯେ ଉମାସାଇଁ ।
ପାପ ପୁଣ୍ୟ ବୋଲିଣ ବିଚାର ଯେ ନ କଲୁ
ଏଡ଼େ ମହାଧର୍ମ ଯେ ହେଳେଣ ଝିଙ୍ଗାସିଲୁ ।
ସେଥିର ପାପରୁ ଯେ ବଢ଼ିଲା ତୋ ରୋଗ
ଶରୀର ଭିତରେ ସେ ରହିକରେ ଭୋଗ ।
ଏବେ ଯେ ସଦାଶିବ ମୋର ବୋଲ କର
ତାରକ ମହାମନ୍ତ୍ର ରାମନାମ ଯେ ଉଚ୍ଚାର ।
ଲକ୍ଷେ ପଦ ରାମ ନାମ କରତୁ ସୁମରଣା
ତେବେ ବ୍ୟାଧି ମୁକତ ହୋଇବ ଦେହୁଁ ସିନା ।
ନାମବ୍ରହ୍ମ ନାମବ୍ରହ୍ମ ସଂସାରୁ ଯେ ତରି
ରାମ ନାମ ସୁମରଣା କଲେ ତ୍ରିପୁରାରି ।
ବିଷ୍ଣୁ ପଦବାକ୍ୟ ଯେ ଅନୁଷ୍ଟୁପ ଛନ୍ଦ
ଯେଣୁ ରାମ ନାମ ପଦ ହୃଦରେ ଯେ ବାନ୍ଧ ।
ହେଉ ପରାପତି ତୋତେ ରାମନାମ ଗୋଟି
କ୍ଳେଶ ବିନାଶ ହେଉ ତୋହର ଦେହରୁଟି ।
ଏତେ ବୋଲିଣ ବ୍ରହ୍ମ ଯେ ଚତୁର୍ବେଦ ଘୋଷି
ଚନ୍ଦ୍ର ଶେଖରଙ୍କୁ ଯେ କହିଲେ ମନ ତୋଷି ।
କୃତାଞ୍ଜଳି ହୋଇଣ ଦେବ ସଦାଶିବ
ବ୍ରହ୍ମର ସୁକଲ୍ୟାଣ ଶିରରେ ଘେନିଦେବ ।
ଅନେକ ସନ୍ତୋଷ ଯେ ହୋଇଣ ଶୂଳପାଣି
ତ୍ରିଦଶ ଦେବତାଙ୍କୁ ଯେ ବ୍ରହ୍ମା ଘେନି ପୁଣି ।
ସଦାଶିବଙ୍କୁ କହିଣ ମେଲାଣି ବେଦବର
ଯେ ଯାହା ପୁରକୁ ଯେ ଗଲେ ଦେବାସୁର ।
ସଦାଶିବ ମନରେ ହେଜିଲେ ରାମ ବାଣୀ
ଶ୍ରୀରାମ ନାମ ଗୋଟିକୁ ଜପକଲେ ପୁଣି ।

ନିତ୍ୟ ସଦାଶିବ ଯେ ସାରିଣ ନିତ୍ୟକର୍ମ
ଜପ କରନ୍ତି ବେନି ଅକ୍ଷର ରାମନାମ ।
ଦିନକୁ ଦିନ ତାଙ୍କର ଶରୀର ହେଲା ସୁସ୍ଥ
ଶରୀର ସୁସ୍ଥ ହେବାରୁ ଆନନ୍ଦ ବିଶ୍ୱନାଥ ।
କ୍ଷଣେହେଁ ନ ପାଶୋରନ୍ତି ଶ୍ରୀରାମର ନାମ
ସତାଇଶ ଦିନେ ଲକ୍ଷେ ପଦ କଲେ ସମ୍ପୂର୍ଣ୍ଣ ।
ହୃଦପଦ୍ମେ ସୁମରଣା କଲେ ରାମ ନାମ
ନିଷ୍କଳଙ୍କ ହେଲେ ଦେହୁଁ ଗଲା ରୋଗ ତମ ।
ଏମନ୍ତେ ବେନିମାସ କାଳ ବହିଗଲା
ପାର୍ବତୀଙ୍କ ସଙ୍ଗେ ସର୍ବ ସୁଖେ ବିଳସିଲା ।
ପୂର୍ବ ପରାୟେ ଲୀଳା କରନ୍ତେ ବେନିଜନ
ରତିରଙ୍ଗେ ତୋଷ ଯେ ପାର୍ବତୀ ହେଲେ ପୁଣ ।
ଏକଦିନେ ସଦାଶିବ ପାର୍ବତୀ କୋଳେଘେନି
ପାର୍ବତୀ ବନରେ ଯେ ପ୍ରବେଶ ହେଲେ ପୁଣି ।
ପାର୍ବତୀ ସଦାନନ୍ଦ ତୃପତି ବିହାରରେ
ଆନନ୍ଦେ ବିହାର ଯେ କରନ୍ତି ବନରେ ।
ଆନନ୍ଦରେ ପାର୍ବତୀ ପଚାରେ ପଞ୍ଚାନନେ
ମାସ ପରିଯନ୍ତେ ତୁମ୍ଭର ଏକାନ୍ତ ଆସନେ ।
କେଉଁ ଦେବତା ଭଜ ତୁମ୍ଭ ଉପରେ କେ ବଡ଼
କାହାକୁ ଧ୍ୟାନ ତୁମ୍ଭେ କରହେ ଯୋଗାରୂଢ଼ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଆମ୍ଭେ ତିନି ମୂର୍ତ୍ତି ।
ଅଣାକାର ପୁରୁଷ ହୃଦରୁ ହେଲୁ ଜାତ
ବ୍ରହ୍ମା ସୃଷ୍ଟିପାଳେ ବିଷ୍ଣୁ ସଞ୍ଚିଲେ ଜଗତ ।
ମୁହିଁ ପଡ଼ି ଦିଅଇ ସକଳ ଜୀବେ ପୁଣ
ଏମନ୍ତେ ତିନି ଦେବପାଳୁ ଆମ୍ଭେ ଜାଣ ।
ନିରାକାର ବିଷ୍ଣୁ କ୍ଷୀରସାଗରେ ଶୟନ
ଅନନ୍ତ ମୁରତି ହୋଇ ସେଠାରୁ ମୁଁ ପୁଣ ।
ମୋର ପରେ ଶୟନ କରନ୍ତି ବାସୁଦେବ
ସେ ରୂପରୁ ଏ ରୂପ ପ୍ରକାଶ ମୋର ଭାବ ।
ବାସୁଦେବ ପ୍ରକାଶ ନାରାୟଣ ଦେହୁଁ
ନାଭିକମଳରୁ ବ୍ରହ୍ମା ଜାତ ହେଲେ ସେହୁ ।
ଦେବତାଙ୍କୁ ପାଳିଣ ଦେବ ଯେ ପରଂବ୍ରହ୍ମ
ମୃତ୍ୟୁପୁର ଗୋଟି ଯେ ବିଷ୍ଣୁର ଅଟେ ଭାବ ।
ପାତାଳପୁର ମୁହିଁ ପାଳଇ ଯେ ପୁଣ
ଏମନ୍ତେ ତିନିପୁର ବାଣ୍ଟିଣ ନେଲୁ ଜାଣ ।

ବ୍ରହ୍ମାର ନନ୍ଦନ ଯେ ଦକ୍ଷପ୍ରଜାପତି
ତାହାର ଦୁହିତା ମୋତେ ବିଭା ହେଲା ସତି ।
ସେହି ପ୍ରଜାପତି ଯେ ଯାଗ ପୁଣ କଲା
ଆମ୍ଭଙ୍କୁ ନ ଲୋଡ଼ିବାରୁ ଦୁହିତା ତାଙ୍କ ଗଲା ।
ଯଜ୍ଞ କୁଣ୍ଡରେ ଝାସ ଦେଲା ସେହୁ ସତୀ
ତାହାର ଛଳେ ମୁଁ ମାଇଲି ପ୍ରଜାପତି ।
ଗଙ୍ଗାକୂଳେ ତପ କରି ଯେତେ ମୁଁ ପାଇଲି
ଏବେ ମନ ମୋହର ଯେ ସନ୍ତୋଷ ତ କଲି ।
ପ୍ରଜାପତି ବଧ ଦୋଷ ମୋ ଅଙ୍ଗେ ପରାପତ
ତେଣୁ ମୋ ଦେହରେ ରୋଗହୋଇଲା ସଂଜାତ ।
ଜାଣିଣ ଦେବଙ୍କୁ ଘେନି ବିଧାତା ଅଇଲା
ତାରକ ମନ୍ତ୍ର କହି ସ୍ୱର୍ଗକୁ ପୁଣ ଗଲା ।
ଏ ମନ୍ତ୍ର ପଢ଼ନ୍ତେ ମୋର ଦେହ ସୁସ୍ଥହେଲା
ରୋଗ ବ୍ୟାଧି ମୋର ସେ ଦେହରୁ ପଳାଇଲା ।
ପାର୍ବତୀ ବୋଇଲେ ଯେ ମନ୍ତ୍ରର ନାମ କିସ
ଈଶ୍ୱର ବୋଇଲେ ରାମ ନାମ ଯେ ବିଶେଷ ।
ଅସୁର ମାରିବା ପାଇଁ ବାସୁଦେବ ପୁଣ
ଚତୁର୍ଦ୍ଧାମୂର୍ତ୍ତି ଧରି ମାନବେ ଜନ୍ମ ଜାଣ ।
ତପନର କୁଳରେ ଦଶରଥର ଘରେ
ଜମ୍ବୋଦ୍ୱୀପ ମଣ୍ଡଳେ ଅଯୋଧ୍ୟା ନଗରେ ।
ଶ୍ରୀ ରାମ ଲକ୍ଷ୍ମଣ ଯେ ଭରତ ଶତୃଘନ
ତିନି ମାତାଙ୍କ ଠାରୁ ଚାରିଭାଇ ଜାଣ ।
ଜନ୍ମ ହୋଇଣ ସେହୁ ଅସୁର ନାଶକଲେ
ସ୍ୱର୍ଗରେ ଦେବତାଙ୍କୁ ଉଦ୍ଧରି ଧଇଲେ ।
ପାର୍ବତୀ ବୋଇଲେ ଯେ ତାଙ୍କ ମନ୍ତ୍ର ସାର
ତାଙ୍କ ମନ୍ତ୍ର ଧଇଲେ ବ୍ୟାଧିହେଲା ଦୂର ।
କେଉଁ ଅସୁର ମାରିବାକୁ ଜାତ ବାସୁଦେବ
ସେକଥା ମୋର ଆଗେ କହ ହେ ମହାଦେବ ।
ଲକ୍ଷେ ନାମ ସୁମରଣା କଲ ଯେବେ ତୁମ୍ଭେ
ରାମ ରାମ ଲକ୍ଷେ ପଦ ଶୁଣାଅ ମୋତେହାଦେ
ଈଶ୍ୱର ବୋଇଲେ ତୁଗୋ ମନଦେଇ ପୁଣ
ଯେଉଁ ନାମ ଶୁଣିଲେ ପାତକ ଯିବ ଶୁଣ ।
ରାମ ନାମଗୋଟି ଯେ ତାରକ ମନ୍ତ୍ର ଜାଣ
ଯେଉଁ ନାମ ଧଇଲେ ନଦଣ୍ଡେ କାଳଯମ ।
ଆଦ୍ୟ ଅବତାରେ ମାଇଲେ ଶଙ୍ଖାସୁର
ମୀନରୂପେ ଅବତାର ସେ କାଳେ ତାହାର ।

ଦ୍ୱିତୀୟ ଅବତାର ହୋଇଲେ ଦେବହରି
କୂର୍ମରୂପରେ ମନ୍ଦର ଗିରିକି ସମ୍ଭାଳି ।
ତୃତୀୟ ଅବତାର ଶୂକର ରୂପ ହେଲେ
ବାସୁକୀ ଧରଣୀ ଛାଡ଼ି ଦନ୍ତରେ ଧଇଲେ ।
କଶ୍ୟପ ଅସୁରକୁ ମାଇଲେ ଦନ୍ତେ ଚିରି
ସେ ଦଇତ ସଙ୍ଗରେ ବହୁତ ହେଲେ ଦଳି ।
ଚତୁର୍ଥ ଅବତାର ନୃସିଂହ ମୁରତି ହେଲେ
ହିରଣ୍ୟ ଦୈତ୍ୟକୁ ଯେ ନଖରେ ବିଦାରିଲେ ।
ତାହାର ନନ୍ଦନ ଯେ ପ୍ରହଲାଦ ବୀର
ବାସୁଦେବ ଚରଣେ ଭକତି ଅଂଶେ ସାର ।
ସେ କୁମାର ସ୍ୱର୍ଗରେ ଇନ୍ଦ୍ର ସେ ନେଇକଲେ
ଦେବତା ନମା ନି ମର୍ତ୍ତ୍ୟପୁରରେ ରଖିଲେ ।
ତାହାର କୁମର ଯେ ବୈରୋଚନ ବୀର
ଘରଣୀ ରୂପରେ ତାକୁ ମାଇଲା ଚକ୍ରଧର ।
ପଞ୍ଚମ ଅବତାର ଜନମ ଋଷି କୁଳେ
ଦାନ ଦେଲା ବଳିକି ଯେ ଚାପିଲେ ପାତାଳେ ।
ଅନେକ ଅସୁର ମାରି ଶାନ୍ତ କଲେ ମହୀ
ତେବେ ସେ ଧରଣୀ ଯେ ରହିଲା ସ୍ଥିରହୋଇ ।
ଏଥୁ ଉତ୍ତାରୁ ଯେ ସତର ଯୁଗ ଗଲା
ଅନେକ ରାଜା ଦୁଷ୍ଟ ହୋଇଲେ ରାଜ୍ୟେପରା ।
ନର ରୂପରେ ସେ ପର୍ଶୁରାମ ମୁନି ଜାତ
ତାଙ୍କଠାରେ ବିଷ୍ଣୁ ଯେ ହେଲେ ଉପଗତ ।
ଅନେକ ଅସୁର ଦୁଷ୍ଟ ରାଜାମାନେ ମାରି
ଶତେବାର ପରିଯନ୍ତେ ବୁଲିଲେ ତିନିପୁରୀ ।
ନୃପତିଗଣ ଭୟରେ ସ୍ତିରୀରୂପ ଧରି
ପାଟରାଣୀଗଣଙ୍କ ସଙ୍ଗରେ ବିହରି ।
ଗରିଷ୍ଠ ଅସୁରଙ୍କୁ ନପାରେ ଋଷି ମାରି
ପାତାଳ ସମୁଦ୍ରରେ ରହିଲେ ଯାଇକରି ।
ଶୁଣିଣ ପାର୍ବତୀ ଯେ ବୋଲନ୍ତି ବଚନ
ଗରିଷ୍ଠ ଅସୁରକୁ କିମ୍ପା ନମାରେ ଋଷି ପୁଣ ।
କେଉଁମାନେ ଗରିଷ୍ଠ ଅସୁର ପୁଣ ଜାତ
ଏହାର ହାତରେ କେହୁ ମାରିବ ନିୟତ ।
ଏକଥା ମୋ ଆଗରେ ଫେଡ଼ି କହ ପୁଣ
ରାମାୟଣ ଗ୍ରନ୍ଥ ଯେ କେତେକ ପ୍ରମାଣ ।
ଈଶ୍ୱର ବୋଇଲେ ରାମ ନାମ ଲକ୍ଷେ ପଦ
ସେ ନାମ ଶୁଣିବାକୁ ମନରେ ତୋର ଭାବ ।
ସାତକାଣ୍ଡ ରାମାୟଣ ପୁରାଣ ଅଟଇ
ସାତ କାଣ୍ଡରେ ସମ୍ପୂର୍ଣ୍ଣ ଲକ୍ଷେ ନାମ ହୋଇ ।
ସପ୍ତମ ଅବତାର ହୋଇଲେ ନାରାୟଣ
ଅସୁରଗଣ ମାରିଣ ଧରଣୀ ସ୍ଥାପି ପୁଣ ।
ପାର୍ବତୀ ବୋଇଲେ ଯେବେ ହୁଅନ୍ତି ଅବତାର
ନିଜସ୍ଥାନେ ବିଚାରି କିମ୍ପା ନମାରେ ଅସୁର ।
ଚଉଦ ବ୍ରହ୍ମାଣ୍ଡ ଯେ ତିନିପୁର କଲା
ଧରଣୀ ସ୍ଥାପିଣ ଯେଉଁ ଦେବକୁ ରଖିଲା ।
ସେ ଦେବ ନିରଞ୍ଜନ କିମ୍ପାଇ ହୋନ୍ତି ଜାତ
ଏକଥାମାନ ମୋତେ ଲାଗଇ ଆଚମ୍ବିତ ।
ଈଶ୍ୱର ବୋଇଲେ ତୁଗୋ ଶୁଣ ଭଗବତୀ
ଦେବତାମାନଙ୍କର ଯେଣୁ ହେଲା ଗର୍ବମତି ।
ତେଣୁ ସେହି ରାମାୟଣ ଭିଆଣ ସେ କଲେ
ଅସୁର ବଳ ପ୍ରବଳ କରାଏ ଯେ ହେଲେ ।
ଅସୁରବଳ ପ୍ରବଳ ହୋଇ ଜିଣିଲେ ସ୍ୱର୍ଗପୁର
ଜୁର କରି ନିଅନ୍ତି ସାଇତା ଦ୍ରବ୍ୟ ସାର ।
ତେବେ ଦେବତାଏ ବାସୁଦେବଙ୍କୁ କଲେ ସ୍ତୁତି
ଦେବଙ୍କ ନିମନ୍ତେ ଜାତ କମଳାଙ୍କ ପତି
କମଳାଙ୍କୁ ଅନନ୍ତ ସଙ୍ଗରେ ଘେନି ପୁଣ
ଲୀଳା କରିବା ନିମନ୍ତେ ଜନମ ନରାୟଣ ।
ଲୀଳା କରିଣ ସେ ଯେ ମାରନ୍ତି ଅସୁର
ତିନିପୁରେ ବିଖ୍ୟାତ ହୁଅଇ ନାମ ତାର ।
ତେବେ ଯେ ଦେବତା ସ୍ୱର୍ଗରେ ସୁଖ ପାନ୍ତି
ଅସୁରଙ୍କ ଗର୍ବ ନାରାୟଣ ଯେ ଭାଙ୍ଗନ୍ତି ।
ଶୁଣିଣ ପାର୍ବତୀ ଦେବୀ ପଚାରନ୍ତି ପୁଣ
ସପ୍ତମ ଅବତାର କଥା କହବେ ପଞ୍ଚାନନ ।
କହନ୍ତି ତ୍ରିପୁରାରୀ ଶୁଣଗୋ ଗଉରୀ
ଆଦ୍ୟକାଣ୍ଡ କଥା ତୁମ୍ଭେ ଶୁଣ ହେତୁକରି ।
ଅଷ୍ଟ ଅବତାର ଉତ୍ତାରୁ ଷୋଳ ଯୁଗ ପୁଣ
ଏଥି ଦେବଙ୍କୁ ବିପତ୍ତି ହୋଇଲାକ ଜାଣ ।
ବୃତ୍ର ଅସୁର ଅଂଶରେ ମେଘାସୁର ଜାତ
ସମସ୍ତଙ୍କୁ ଜିଣି କ୍ଷୀରସାଗରେ ଉପଗତ ।
ବାସୁଦେବ ସଙ୍ଗେ ରଣ କରିବାକୁ ଗଲା
ଦ୍ୱାରୀ କ୍ଷେତ୍ରପାଳ ଯେ ତାହାକୁ ନାଶିଲା ।
ତାହାର ଦୁହିତା ଯେ ଅଟଇ ସୁରେଖା
ତାହାର ଗର୍ଭରୁ ଜାତ ସୁମେଘା ରୂପରେଖା ।

ସେ କୁମରଙ୍କୁ ନାଶକଲେ ନନ୍ଦି ଯେ ଭ୍ରୁକୁଟି
ତାହାର ଦୁହିତା ଯେ ବିଶାଖା ନାମଗୋଟି ।
ତାରଠାରୁ ଜାତ ଯେ ସହସ୍ରା ରାବଣ
ବିଲଙ୍କା ଦେଶରେ ଯେ ତାର ଘର ପୁଣ ।
ସାତଯୁଗ ପରିଯନ୍ତେ ଅସୁର ତପ କଲା
ତେବେ ସେ ମୋହଠାରୁ ବର ଯେ ପାଇଲା ।
ସହସ୍ରେ ବଦନ ଯେ କଲଇଁ ମୁହିଁ ତାର
ନର ବାନରେ ଅସୁରେ ସୁରେ ବଳିଆର ।
ପାତାଳପୁର ଆବର ମର୍ତ୍ତ୍ୟପୁର ଜିଣି
ସ୍ୱର୍ଗପୁର ଭିତରେ ପଶିଲା ବୀରମଣି ।
ଦେବତାଙ୍କୁ ଜିଣିଣ ଧରି ଘେନିଗଲା
ଚଉଦ ଯୁଗ ପର୍ଯ୍ୟନ୍ତ ନେଇଣ ବନ୍ଦି କଲା ।
ତ୍ରିଦଶ ଦେବତାଙ୍କୁ ଘେନିଣ ବେଦବର
ମୋ ନାମ ଧରି ସ୍ତୁତି କଲାକ ଅପାର ।
ବୃଷଭ ଚଢ଼ିଣ ଆମ୍ଭେ କପିଳାସ ଗଲୁ
ସହସ୍ର ମୁଖା ଆଗରେ ପ୍ରବେଶ ଯାଇ ହେଲୁ ।
ଦେଖିଣ ଦୈତ୍ୟବୀର ନମିଲା ଚରଣ
ପ୍ରସନ୍ନ ହୋଇଣ ତାକୁ କହିଲୁ ବଚନ ।
ବୋଇଲୁଁ ଦେବଗଣଙ୍କୁ କିମ୍ପା ବନ୍ଦି କଲୁ
ହାରିଲେ ଦେବତାଏ ମନରେ ନବିଚାରୁ ।
ଆମ୍ଭର ବୋଲ କରି ଛାଡ଼ିଦିଅ ତାଙ୍କୁ
ବୋଲ ନ କଲେ ଯିବୁ ଯେ ରାସାତଳକୁ ।
ଆମ୍ଭର ବଚନେ ସସାନନ କରଯୋଡ଼ି
ତ୍ରିଦଶ ଦେବତାଙ୍କୁ ବନ୍ଧନୁ ଦେଲା ଫେଡ଼ି ।
ପୁଣି ମୋର ଚରଣେ ଶୋଇଲା ଦୈତବୀର
ବୋଇଲା ପୁତ୍ର ନାତି ଅମର ମୋର କର ।
ମୁଁ ବୋଇଲି ବୀରମଣି ନୁହଇ ଉଚିତ
ତୋତେ ଅମର କଲି ପ୍ରସନ୍ନ ମୋର ଚିତ୍ତ ।
ପୁତ୍ର ନାତି ଅମର ଯେବେ ହୋଇବେ ତୋହର
ଜନ୍ତୁପତି ଦେବତାଙ୍କୁ ମନାଇଁ ମାଗବର ।
ଏତେ କହି ଦେବଗଣ ସଙ୍ଗରେ ଘେନିକରି
ପ୍ରବେଶ ହୋଇଲୁ ଆମ୍ଭେ କପିଳାସ ଗିରି ।
ଦେବତାମାନେ ଆମ୍ଭଙ୍କୁ କହିଣ ସ୍ୱର୍ଗଗଲେ
ଯେ ଯାହାର ନିଜ ସ୍ଥାନେ ଯାଇଣ ରହିଲେ ।
ପାର୍ବତୀ ବୋଇଲେ ଦୈତ୍ୟ କିସ ହେଲା ପୁଣ
ପୁତ୍ର ନାତି କେମନ୍ତେ ଅମର ହେଲେ ଜାଣ ।

ଈଶ୍ୱର ବୋଇଲେ ଦୈତ୍ୟ ସଞ୍ଜୀବନୀକି ଗଲା
ପଞ୍ଚାକ୍ଷର ମନ୍ତ୍ରେ ଶନି ଦେବତା ଧ୍ୟାଇଲା ।
ନିଶ୍ଚଳ ଆସନରେ ବସିଣ ବୀରମଣି
ଶନି ଦେବତାଙ୍କୁ ସୁମରେ ମନରେ ପୁଣି ।
ସହସ୍ରେ ବରଷରେ ପ୍ରସନ୍ନ ଜମ୍ବୁନାଥ
ବୋଇଲେ ପ୍ରସନ୍ନ ହେଲି ବର ମାଗ ଦୈତ୍ୟ
ସପ୍ତମାଥବୋଲେ ପୁତ୍ରନାତି ମୋ ଅମରହୋନ୍ତୁ
ଅମର ହୋଇଣ ବହୁ ଯୁଗେ ଯୁଗେ ଥାନ୍ତୁ ।
ଜମ୍ବୁନାଥ ବୋଇଲେ ଏକଥା ଅସ୍ତୁ ହେଉ
ବିନା ଶତ୍ରୁ ସଙ୍ଗରେ ଯେ ନ ଯୁଝିବ ଆଉ ।
ମୋହର ବଚନ ଯେ ମେଣ୍ଟିଣ ଯିବ ପୁଣ
ନିଶ୍ଚୟ ନାଶ ଯିବ କହିଲି ଏ ପ୍ରମାଣ ।
ଏ କଥା ଗୋଟିକ ଯେ ମନରେ ରଖିଥିବୁ
ପରବୋଲେ ବିନା ଶତ୍ରୁ ପାଶକୁ ନଯିବୁ ।
ଏମନ୍ତ ବଚନ ଶୁଣି ଜମ୍ବୁପତିଠାରୁ
ଓଳଗି ମେଲାଇ ଯେ ଗଲାକ ସେଠାବରୁ ।
ବିଲଙ୍କା କଟକରେ ହୋଇଲା ପରବେଶ
ଏମନ୍ତ ପ୍ରକାରେ ଯେ ସେ ଦଇତ୍ୟ ଭବିଷ୍ୟ ।
ପାର୍ବତୀ ବୋଇଲେ ସେଥି ଉତ୍ତାରୁ କିସ ହେଲା
ତାହା ମୋତେ ସଞ୍ଚପି କହହେ ଦେବପରା ।
ଶତେମୁଖା ରାବଣ ଯେ କେମନ୍ତେ ହେଲା ଜାତ
ତାହାର ନନ୍ଦନ ସେ ଯେ ହୋଇଲା ପ୍ରାପତ ।
ଈଶ୍ୱର ବୋଇଲେ ସେ ଯେ ସନନ୍ତ ଋଷିବଂଶେ
ଜଇନ୍ତ ଋଷି ଯେ ଜନମ ତାଙ୍କ ଅଂଶେ ।
ଜଇନ୍ତ ଋଷି ତପରେ ହୋଇଲେ ନିର୍ଜିତ
ଅଗ୍ନି ମହାଋଷି ଦୁହିତାକୁ ବିଭାହେଲେ ସେତ ।
ତାହାଙ୍କଠାରୁ କାଳ ବିକାଳ ଦୁଇପୁତ୍ର
ଜନମ ହୋଇ ସ୍ୱର୍ଗକୁ ଚଳିଲେ ତ୍ୱରିତ ।
ଦିଗପାଳଙ୍କ ମେଳରେ ରହିଲେ ଶୂନ୍ୟପୁରେ
ଗୋପନେ ରହିଣ ତହିଁ କହିଲେ ବିନୟରେ ।
ମଂଷାସୁର ଦଇତର ଦୁହିତା ଏଥି ଥିଲେ
ଜଇନ୍ତ ଋଷିକି ଯାଇ ସେଥି ସେ ବରିଲେ ।
ତାହାର ଗର୍ଭୁ ଜାତ ହୋଇଥିଲେ ଶତେଗ୍ରୀବ
ଅର୍କ ତୀର୍ଥରେ ଯାଇ କଲାକ ତପଭାବ ।
ତିନିଯୁଗେ ପ୍ରସନ୍ନ ହେଲେ ମରୁତ ଦେବତା
ବୋଇଲେ ବରମାଗ ଦେବଇଁ ଆରେ ପୁତା ।

ଶତେଗ୍ରୀବ ବୋଇଲା ମୁଁ ଅମର ହୋଇବି
ଯୁଦ୍ଧ କଲେ କାହାର ହସ୍ତରେ ନମରିବି ।
ଅମର ବର ତାକୁ ଦେଲେ ମରୁତ ଦେବତା
ଅତୁଟ ବିମାନେକନେଇ ଦେଲେକ ପାଶେ ତା ।।
ବଜ୍ରଅଙ୍ଗ କରିଣ ଅତୁଟ ତାକୁ କଲେ
ସମସ୍ତଙ୍କୁ ଜିଣିବୁ ବୋଲିଣ ବରଦେଲେ ।
ବୋଇଲେ କାହାରି ବୋଲ ନକରିବୁ ବଳା
ତୋର ମନେ ତୋରଣଙ୍କୁ ଜିଣିବୁ ହୋଇ ତୋରା
ନାରାୟଣ ମାନବରୂପେ ଜାତ ହେବ
ତାର ସଙ୍ଗେ ଶତ୍ରୁହେଲେ ବଂଶ କ୍ଷୟଯିବ ।
ଏତେ କହି ମରୁତ ତାହାକୁ ଘେନିଗଲେ
ଅଲଙ୍କାଗଡ଼ରେ ନେଇ ତାହାକୁ ରାଜା କଲେ ।
ସେ ଗଡ଼ରେ ରହି ଦୈତ ଅସୁର ସଙ୍ଗେ ରଣ
ସାତଦ୍ୱୀପ ଅସୁରଙ୍କୁ ଜିଣିଲା ଦୈତ୍ୟରାଣ ।
ପୁଣି ସାତଦ୍ୱୀପ ଯେ ବୁଲି ରଣ କଲା
ସାତ ଲକ୍ଷ ରାଜା ଘରୁ କନ୍ୟା ସେ ଆସିଲା ।
ସେ କନ୍ୟାମାନଙ୍କୁ ନିତ୍ୟ ହୋଇଲାକ ବିଭା
ପାତାଳରେ ପଶିଣ ଜିଣିଲା ଦୈତ୍ୟଗ୍ରୀବା ।
ସ୍ୱର୍ଗପୁରକୁ ଯାଇ ଦେବତାଙ୍କୁ ଜିଣିଲା
ଜିଣିଣ ଦେବତାଙ୍କୁ ଧରିଣ ଘେନିଗଲା ।
ସାତଯୁଗ ପରିଯନ୍ତେ ରଖି ସେ ବନ୍ଦି କରି
ପବନ ଦେବତାଙ୍କୁ ଦେବେ ସୁମରଣା କରି ।
ମରୁତ ଦେବତା ଆସି ଦୈତ୍ୟକୁ କହିଲେ
ଦେବତାଙ୍କୁ ବନ୍ଦିରୁ ମୁକୁଳାଇ ଦେଲେ ।
ପାର୍ବତୀ ବୋଇଲେ ବେନି ରାବଣ କଥା ପୁଣି
ଆବର ବେନି ରାବଣ କି କଲେ କହ ପୁଣି ।
ଈଶ୍ୱର ବୋଇଲେ ଦଶମୁଖା ଯେ ରାବଣ
ପିତା ତାର ବିଶ୍ରବା ଋଷି ଯେ ହେବ ଜାଣ ।
ମାତା ତାର ରାକ୍ଷସୀ ନଉକେଶା ପୁଣି
ସୁମାଳି ଦଇତର ଯେ ଅଟଇ ଦୁଲଣୀ ।
ତାହାର ଗର୍ଭରୁ ତିନି ପୁତ୍ର ଯେ ଦୁହିତା
ଜାତ ହୋଇ ତପରେ ହୋଇଲେ ନିର୍ଜିତା
ବେଦବର ଆସିଣ ଅମର ବର ଦେଲା
ନାରାୟଣ ବନିତା କମଳା ଅଟେ ପରା ।
ତାହାକୁ ହରିଲେକ ମରିବୁ ଜାଣ ତୁହିଁ
ଋଷିକୁଳରେ ଜାତ ଯେ କମଳା ଦେବୀ ହୋଇ ।।

ମାନବ କୁଳରେ ଜାତ ଯେତେବେଳେ ହେବ
ସୀତା ବୋଲି ନାମ ଯେ ତାହାର ବୋଲାଇବ ।
ତାହାକୁ ନ ହରିଲେ ନିଶ୍ଚିନ୍ତେ ଥିବୁ ତୁହି
ହରିଲେ ନିଷ୍ଟେ ମରିବୁ କହିଲି ଜାଣ ମୁହିଁ ।
ଶୁଣିଣ ଦଶଗ୍ରୀବ ବେଗେ ଚଳିଗଲା
ଚିତ୍ରପଟେ ଲେଖନ ଯେ କରିଣ ରଖିଲା ।
ସ୍ୱର୍ଗ ମଞ୍ଚ ବେନିପୁର ଜିଣିଲା ଭୁଜବଳେ
ଗୋ ବ୍ରାହ୍ମଣ ପରଜା ଖାଇଲା ଧରି ବଳେ ।
ପାତାଳ ଜିଣି ଦେବପୁରକୁ ଅଇଲା
ଦେବତାକୁ ଜିଣି ଧରିକରି ଘେନିଗଲା ।
ସେବାକାରୀ କରିଣ ରଖିଲାସୁରଗଣ
ରାବଣକୁ ବେଦବର କହୁଛନ୍ତି ପୁଣ ।।
ବେଦବ୍ରହ୍ମା ବଚନ ଶୁଣିଣ କ୍ରୋଧ ହେଲା ।
ଦେବତାଙ୍କ ସଙ୍ଗେ ଧାତା ରହ ଯେବୋଇଲା
ମୋର ଦ୍ୱାରେ ଚାରିବେଦ ପଢ଼ିବୁ ତୁ ପୁଣ
ଶୁଣି ବେଦବର ଗଲେ ଦେବତାଙ୍କ ସଙ୍ଗେଣ ।
ଆମ୍ଭେ ଶୁଣି ଲଙ୍କାପୁରେ ହେଲୁ ପରବେଶ
ଆମ୍ଭଙ୍କୁ ବୋଇଲା ତୁମ୍ଭେ ମାସକେ ଥରେ ଆସ ।
ସେ ବଚନ ଶୁଣି ଆମ୍ଭେ ଦୈତ୍ୟକୁ ବୁଝାଇଲୁ
ଦେବତାମାନଙ୍କୁ ଛାଡ଼ି ଦିଅରେ ବୋଇଲୁ ।
ରାବଣ ବୋଇଲା ତୁମ୍ଭେ ନକହ ସେ କଥା
ମୋଠାରେ କୁଟ ତୁମ୍ଭେ ଏତେ ସାମରଥା ।
ଛାଡ଼ିଲେ ମୋର ପରେ ବିପତ୍ତି ଦେବ ଆଣି
ଶୁଣିକରି ଆମ୍ଭେ ଯେ କହିଲୁ ତାରେ ବାଣୀ ।
ଯେବେ ତୁ ଦେବତାଙ୍କୁ ରୁନ୍ଧିଲୁ ଦୈତ୍ୟରାୟେ
ବରଷକେ ତିନିମାସ ଧର୍ମ ଏବେ ହୋଏ ।
ତିନିମାସ ଛାଡ଼ିଦେବୁ ଯେବେ ଯେଝାସ୍ଥାନ
ସନମତ କଲା ଯେ ଶୁଣିଣ ସେ ରାବଣ ।
ବୋଇଲା କେଉଁ କେଉଁ ମାସରେ ଯିବେ ଏହୁ
ଆମ୍ଭେ ତାକୁ ବୋଇଲୁ ଶୁଣ ଦୈତ୍ୟରାହୁ ।
ପ୍ରଥମେ ମାଘମାସ ଦ୍ୱିତୀୟ ବଇଶାଖ
ତୃତୀୟ ଧର୍ମ ମାସ ଯେ ଅଟଇ କାର୍ତ୍ତିକ ।
ରାବଣ ବୋଇଲା ଯେ ଏ ତିନିମାସ ପୁଣ
କେବଣ କେବଣ ଧର୍ମ କହ ତ୍ରିଲୋଚନ ।
ଶୁଣିଣ ତାହାକୁ ଆମ୍ଭେ କହିଲୁ ଏ ବାଣୀ
ପାହାନ୍ତି ସ୍ନାନ ହୁଅଇ ମାଘ ମାସେ ପୁଣି ।

ବଇଶାଖ ମାସରେ ହବିଷ୍ୟ ଏକବେଳେ
ଅଗ୍ନିର ଝାସକୁ ସେ ଘେନନ୍ତି ବିରୋଳେ ।
କାର୍ତ୍ତିକ ମାସରେ ଯେ ପୂଜନ୍ତି ଦାମୋଦର
ତେବେ ସିନା ଦେବତାଙ୍କର ଶୁଦ୍ଧଯେ ଶରୀର ।
ଶୁଣିଣ ଅସୁର ବୋଇଲା ଦେଲି ମୁହିଁ ଛାଡ଼ି
ଆଉନବମାସ ଦେବେ ସେବାକରିବେବେଢ଼ି ।
ଦେବତାଙ୍କୁ ଛାଡ଼ିଦେଲା ଗଲେ ନିଜ ବାସ
ସେଠାରୁ ଆମ୍ଭେ ଆସି ମିଳିଲୁ କପିଳାସ ।
ପାର୍ବତୀବୋଇଲେ ଦେବ ସେଠାରୁ କିସହେଲା
ଦେବତାଏ କିସ କଲେ କହ ମୋତେ ଭଲା ।
ଈଶ୍ୱରବୋଇଲେ ଦେବଦୈତ୍ୟର ପୁରେପୁଣ
ନବ ମାସ ରାବଣକୁ ସେବା କଲେ ଜାଣ ।
ଏମନ୍ତେ ସାତଗଣ୍ଡା ଯୁଗ ବହିଗଲା
ଅସୁର ପୁରେ ରହି ଦେବତା ଦୁଃଖୀ ଭଲା
କାନ୍ଦିଣ ବେଦବର ଆଗରେ କହିଲେ
ବିଧାତା ପୁରୁଷ ମୋତେ ସୁମରଣା କଲେ ।
ଦେବତାଙ୍କ ମେଳେ ମୁଁ ମିଳିଲି ଯାଇକରି
ମୋତେଦେଖି ଦେବତା ଯେ ବିକଳ ମନେଭାଳି
ମାୟାରେ ତ୍ରିଦଶ ରୂପ ଭିଆଣ ଆମ୍ଭେ କଲୁ
ମାୟାରୂପ ଅସୁରପୁରେ ଯେ ଭେଦି ଦେଲୁ ।
ଅସୁରପୁରେ ଯେ ମାୟାରୂପ ପରବେଶ
ଦେବ ବୋଲିଜାଣ ଦୈତ୍ୟ ମନରେ ହରଷ ।
ବେଦବ୍ରହ୍ମା ମୁହିଁ ଯେ ସକଳ ଦେବ ଘେନି
ବିଜୟ କଲୁ ଆମ୍ଭେ ରମ୍ୟକ ଦ୍ୱୀପେ ପୁଣି ।
ଯୋଗ ଲୟ କରିବାକୁ ଆମ୍ଭର ହେଲା ମୂଳ
ଦେବତାଏ ଜାଣିଲେ ଆସିବ ଅସୁର ।
ଶୁଣିକରି ବେଦବର ନାରଦକୁ ଡକାଇ
ଲଙ୍କାକୁ ଚଳ ବୋଲି ଦେଲେକ ପଠିଆଇ ।
ରାବଣର ଆଗରେ କହିବୁ ଛନ୍ଦବାଣୀ
ବୋଲିବୁ ତୋତେ ମାରିବାକୁ ଆସେସହସ୍ରାନନି ।
ଉଚ୍ଚାଟ କରି କଳି ଲଗାଇ ବେଗେ ଆସ
ଶୁଣିଣ କଳହପ୍ରିୟ ହୋଇଲେ ହରଷ ।
ଲଙ୍କାଗଡ଼େ ନାରଦ ପ୍ରବେଶ ହେଲେ ଯାଇଁ
ଦଶଗ୍ରୀବର ନବରେ ମିଳିଲେକ ତହିଁ ।
ଦେଖିଣ ଦଶଗ୍ରୀବ ହରଷ ମନ ହେଲା
ମୁନିଙ୍କ ଚରଣ ତଳେ ନମସ୍କାର କଲା ।

ବୋଇଲେ ମୁନିବର କି କାର୍ଯ୍ୟେ ଆଗମନ
ନାରଦ ବୋଇଲେ ତୁ ଶୁଣ ମୋ ବଚନ ।
ଅଲଙ୍କା ଗଡ଼କୁ ବୁଲି ଆମ୍ଭେ ଯାଇଥିଲୁ
ଶତେମୁଖା ରାବଣର ଆଗରେ ମିଳିଲୁ ।
ଅନେକ ମାନ୍ୟଧର୍ମ ନୃପତି ଆସି କଲା
ଦେବେ କି କୁଶଳରେ ଅଛନ୍ତି ବୋଇଲା ।
ଶୁଣିଣ ତାକୁ ଆମ୍ଭେ ବୋଇଲୁ ଦଣ୍ଡଧାରୀ
ଦଶଗ୍ରୀବ ରାବଣ ଦେବଙ୍କୁ ନେଲା ଧରି ।
ସତାଇଶ ଯୁଗ ହେଲା ରଖିଛି ତାର ପାଶ
ଶୁଣି ଅତିକ୍ରୋଧ ହେଲା ଜଇନ୍ତାମୁନିଶିଷ୍ୟ ।
ତୋର ସଙ୍ଗରେ ସଂଗ୍ରାମ କରିବାକୁ ମନ
ସୈନ୍ୟବଳ ତାହାର ଯେ ସାଧଇ ରାଜନ ।
ଶୁଣି ଦଶଗ୍ରୀବ ଯେ ହୋଇଲା କ୍ରୋଧାନଳ
ମୋତେ ଜିଣିବାକୁ କି ଅଟଇ ତାର ବଳ ।
ସାଧିଲାକ ସୈନ୍ୟ ଯେ ହୋଇଲା ମତୁଆଳ
ଦେବତାଙ୍କୁ ବୋଇଲା ଯାଅ ଯା ସ୍ୱର୍ଗପୁର ।
ଶତାନନକୁ ଜିଣିଲେ ମୋପୁରେ ତୁମ୍ଭେ ଆସ
ଏତେ ବୋଲି ଆଜ୍ଞା ଦେଲା ବିଶ୍ରବାର ଶିଷ୍ୟ ।
ଶୁଣିକରି ମାୟାଦେବେ ନିଜପୁର ଗଲେ
ଯେ ଯାହା ଅଙ୍ଗରୁ ଜାତ ସେସ୍ଥାନେ ରହିଲେ ।
ନାରଦ ଚଳିଗଲେ ଅଲଙ୍କା ଗଡ଼ ପୁର
ଶତେମୁଖା ରାବଣକୁ ଦେଖିଲେ ନବର ।
ନାରଦଙ୍କୁ ଦେଖି ଦୈତ୍ୟ ଆନନ୍ଦ ମନ ହେଲା
ଚରଣ ଧୋଇଦେଇ ଆସନେ ବସାଇଲା ।
ନାରଦ ବୋଇଲେ ତୋରେ ବିବାଦି ଦଶଗ୍ରୀବ
ତୋ ପୁରେ ଆସୁଅଛି କରିବ ସେ ବାଦ ।
ଶୁଣିଣ ଶତଗ୍ରୀବ ସାଧିଲା ତାର ବଳ
କହିଣ ନାରଦ ଯେ ଚଳିଲେ ସ୍ୱର୍ଗପୁର ।
ବେଦବର ଆଗରେ ଯାଇଣ କହିଲେ
ଶତେଗ୍ରୀବ ଦଶାନନ କଳହ ନିଷ୍ଠେ କଲେ ।
ମାୟାଦେବମାନେ ସର୍ବେ ଆସିଲେ ନିଜପୁର
ଶୁଣିକରି ସନ୍ତୋଷ ହେଲେ ବେଦବର ।
କ୍ଷୀରସାଗର ବୈକୁଣ୍ଠପୁରରେ ପ୍ରବେଶ
ଉତ୍ତର ଦ୍ୱାରରେ ବେଦ ରହିଲେ ବିଶେଷ ।
ଦେବଗଣ ଘେନି ବେଦବର ଆମ୍ଭେ ପୁଣ
ଶାମବେଦ ଗାୟନ କଲୁ ଯେ ସେସ୍ଥାନ ।

ସହସ୍ରେ ବରଷ ବାସୁଦେବଙ୍କୁ ସ୍ତୁତି କଲୁ
ତେବେ ଅନନ୍ତ ଶୟନ ଭାଙ୍ଗି ନ ପାରିଲୁ ।
ଅନେକ ଦୁଃଖରେ ଆମ୍ଭେ ସ୍ତୁତି କଲୁ ପୁଣ
ଅଙ୍ଗିରା ଋଷି ଯାଇ ମିଳିଲେ ସେ ସ୍ଥାନ ।
ପଚାରିଲେ ନିରାକାର ନିଦ କି ନ ଭାଙ୍ଗଇ
ଦେବଙ୍କ ବଚନ ତାଙ୍କ କାନକୁ ନ ଶୁଭଇ ।
ଏତେବୋଲି ମୁନି ଯେ ଭିତରେ ଯାଇ ମିଳି
ମୁନିଙ୍କି ଦେଖିଣ ଯେ କମଳା ମନେ ଭାଳି ।
ସରସ୍ୱତୀ ଘେନି ଆଡ଼ ହୋଇଗଲେ
ଆଖିର ଠେରଛ ନେଇ ତହୁଁ ଚଳିଗଲେ ।
ପାଞ୍ଚସାତ ଡାକେ ଯେ ନିଦ୍ରା ତେଜିଲେ ହରି
ଉଠିଣ ମୁନିଙ୍କି ଯେ ନମସ୍କାର କରି ।
ଅଙ୍ଗିରା ବୋଇଲେ ପ୍ରଭୁ ଦେବେବଡ଼ କଷ୍ଟି
ସହସ୍ରେ ବରଷ ହେଲା ତୋତେ ସୁମରନ୍ତି ।
ଶୁଣିଣ ବାସୁଦେବ ବୋଲନ୍ତି ବେଗେ ଚଳ
ସଦାଶିବ ବ୍ରହ୍ମାଙ୍କୁ କହିବ ଚଞ୍ଚଳ ।
ବୋଲିବ ବାସୁଦେବ ଯେ ଦେଖିବାରପାଇଁ
ଦେବଗଣ ଘେନିଣ ବେଗେ ଚଳ ତହିଁ ।
ଶୁଣିଣ ଅଙ୍ଗିରାଋଷି ବେଗେ ଚଳିଗଲେ
ଦେବଗଣ ଆଗରେ ଯାଇଣ ମିଳିଲେ ।
ବେଦବରଙ୍କୁ ଚାହିଁଣ ବୋଲନ୍ତି ମହାମୁନି
ଉଠିଲେ ନାରାୟଣ ଦର୍ଶନ କରି ପୁଣି ।
ଶୁଣିଣ ବେଦବର ହରଷ ହୋଇଲେ
ସକଳ ଦେବଙ୍କୁ ଘେନି ଭିତରକୁ ଗଲେ ।
ଦେଖିଲେ ବେଦବର ଅନନ୍ତ ନାରାୟଣ
ଅନନ୍ତ ଶଯ୍ୟା ତେଜି ବିଜୟ ଆପଣ ।
ବୈଡୁର୍ଯ୍ୟ ସିଂହାସନେ ବିଜୟ ଯାଇଁକରି
ଶ୍ୟାମଳ ସୁନ୍ଦର ରୂପ ନବଜଳଦ ପରି ।
କିରୀଟି କୁଣ୍ଡଳ ଯେ ସ୍ୱାମୀର ଅଙ୍ଗେ ଶୋଭା
ଶଙ୍ଖ ଚକ୍ର ଗଦା ପଦ୍ମ ଚାରିଭୁଜେ ପ୍ରଭା ।
ଅଳଙ୍କାର ହାରମାନ କର୍ଣ୍ଣକୁ ଶୋଭାପାଇ
ବକ୍ଷର ସ୍ଥଳେ ମଣିମାଳ ବିରାଜଇ ।
ବାହୁଟି କଙ୍କଣ ଯେ ବିରାଜେ ଚାରିଭୁଜେ
କଟିରେ କଟିମେଖଳା ଯେସନେ ଚକ୍ରତେଜେ ।
ଅମଳାନ ବସ୍ତ୍ର ଯେ ଅଙ୍ଗରେ ପରିଧାନ
ଅଗ୍ନି ଜ୍ୟୋତି ତିନ୍ତାଯେ ଶ୍ରୀଅଙ୍ଗେ ଲାଇ ପୁଣ ।
ଅଙ୍ଗୁଷ୍ଠିରେ ଅଙ୍ଗିଷ୍ଠମାନ ଯେ ଶୋଭାବନ
ନେପୂର ବାଜେଣି ଯେ ପୟରେ ବିତପନ ।
ସୁବର୍ଣ୍ଣର ପାଦୁକା ଦୁଇ ଯେ ପାଦେ ସାଜି
ନବଦଳ୍କ ଶରୀରକୁ ସାଜିଣ ଶୋଭା ଦିଶି ।
ତେଜରେ ଶୋହ୍ଳନ୍ତି ଜଗତଯାକ ପୁଣ
ଚଉଦ ବ୍ରହ୍ମାଣ୍ଡକୁ ଘୋଟିଛି କିରଣ ।
ନୀଳବର୍ଣ୍ଣ ସିଂହାସନ ଉପରେ ବିଜେକରି
ଶିରପରେ ସପ୍ତଫଣୀ ଅଛଇ ତାଙ୍କରି ।
ସଦାଶିବ ବେଦବର ଦର୍ଶନ କଲେ ଯାଇ
ଦେଖିଣ ଆନନ୍ଦ ଯେ ମନରେ ଦେବ ହୋଇ
ବେଦବର ସ୍ତୁତି ଯେ ପଢ଼ିଣ କରଯୋଡ଼ି
ନମସ୍ତେ ଦେବାଦି ନାଥ ନମସ୍ତେ ନରହରି ।
ନମସ୍ତେ କରୁଣାକର ନମସ୍ତେ ବାରାନିଧି
ନମସ୍ତେ ତ୍ରୈଲୋକ୍ୟନାଥ ନମସ୍ତେ ଦୟାନିଧି ।
ନମସ୍ତେ ଦେବାଧି ଦେବ କମଳାର ପତି
ନମସ୍ତେ ଶରଣ ରକ୍ଷଣ ଦାଶରଥି ।
ନିଳାଞ୍ଚଳେ ଶୟନ କ୍ଷୀରସାଗର ମଧ୍ୟେ
ତୋତେ ଆଶ୍ରେକରି ଆମ୍ଭେଦୁଃଖୀ ହେଲୁ ଏବେ ।
ଚଉଦ ବ୍ରହ୍ମାଣ୍ଡରେ ନମିଲେ ସ୍ଥାନ ଆଉ
ସବୁଠାରେ ଅସୁର ପ୍ରବଳ ହେଲେ ପ୍ରଭୁ ।
ଚାରି ରାବଣତ ଅଟନ୍ତି ବଳିୟାର
ତାଙ୍କବଳେ ଅସୁର ଦହିଲେ ତିନିପୁର ।
ଏତେବୋଲି ସ୍ତୁତି ଯେ ବେଦବର କଲା
କରଯୋଡ଼ି ଆଗରେ ବିଜୟ ବ୍ରହ୍ମା ହେଲା ।
ଶ୍ରୀହରି ଆଗରେ ପଞ୍ଚାନନ ହେଲେ ଉଭା
କରଯୋଡ଼ିଣ ଜଣାଣ କରନ୍ତି ତ୍ରୟପ୍ରଭା ।
ନମସ୍ତେ ବାସୁଦେବ ନମସ୍ତେ ଦେବହରି
ସମସ୍ତ ରଚନା କଲୁ ବିଚାରି ସଞ୍ଚରି ।
ଆଦ୍ୟରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଜାତକଲୁ
ଦ୍ୱିତୀୟେ ତ୍ରିଦଶ ଦେବତା ସଞ୍ଚରିଲୁ ।
ତୃତୀୟେ ନାଗବଳ କଲୁ ତୁ ରଚନା
ଚତୁର୍ଥେ ନର ବାନର ଜାତ କଲୁକିନା ।
ପଞ୍ଚମେ ଉଡ଼ନ୍ତା ଯେ ବୁଡ଼ନ୍ତା ସର୍ଜିଲୁ
ଚଳନ୍ତି ଅଚଳନ୍ତି ମନରୁ ଜାତକଲୁ ।
ଏଗିରି କନ୍ଦରରେ ଛତିଶ କୋଟି ଜୀବ
ସମସ୍ତଙ୍କ ପଛରେ ଅସୁର ଜନ୍ମଭାବ ।

ଯାହାକୁ ଯେଉଁ ଭାବ ଯେ ଭାବ ଦେଲୁ ହରି
ସମସ୍ତେ ତୋର ଆଜ୍ଞା ଶିରରେ ଛନ୍ତି ଧରି ।
ଯାହାକୁ ଯେଉଁବାଟେ ଯେଉଁ ଧର୍ମ ଦେବୁ
ସେ ବାଟରେ ଧର୍ମରେ ଦେଇ ଅଛନ୍ତି ସବୁ ।
ନର ଅସୁରିମାନେ ଯେ ତୋ ଆଜ୍ଞା ମେଣ୍ଟିଲେ
ଶରୀରେ ହିଂସା କରି ପ୍ରବଳ ଏବେ ହେଲେ ।
ଅସୁରେ ଦେବତାଙ୍କୁ ବଳେ ଯେ ଧରିନେଇ
ତପି ପ୍ରଜା ମାରିଣ ରୁଧିର ମାଂସ ଖାଇ ।
ତିନିପୁର ଚଉଦ ଭୁବନ ହେଲା ଭୟେ
ଏଥିର ସକାଶୁ ଆମ୍ଭେ ତୁମ୍ଭରି ପାଶେ ଥାଏ ।
ଏତେ ବୋଲି ସଦାଶିବ କରଯୋଡ଼ି ଉଭା
ତ୍ରିଦଶ ଦେବତାଙ୍କର ବଢ଼ିଲାକ ଶୋଭା ।
ନମସ୍ତେ ତ୍ରୈଲୋକ୍ୟନାଥ ବ୍ରହ୍ମାଣ୍ଡ ଠାକୁର
ତୋହର ରଖିବାରେ ଅଟେ ତିନିପୁର ।
ଏବେ ସେ ଦୈତ୍ୟରାଜା ନମିଲା ଦେବଗଣ
ପ୍ରବଳ ହୋଇଣ ନାଶକଲେ ତ୍ରିଭୁବନ ।
ତାଙ୍କର ଦାଉରେ ପ୍ରଜା ବଡ଼ ଦୁଃଖୀ
ଅସୁରଙ୍କ ଭୟରେ ଋଷି ଯେ ପଳାବନ୍ତି ।
ଦେବତାଙ୍କୁ ଦଣ୍ଡ ଯେ ଦିଅନ୍ତି ଦୈତ୍ୟବଳ
ସ୍ୱର୍ଗକୁ ଜିଣିଲା ଦିନୁ ଦହିଲା ତିନିପୁର ।
ଏତେ ବୋଲି ଦେବତାଏ କରଯୋଡ଼ି ଉଭା
ଶୁଣିଣ ନାରାୟଣ ବିଚାର କଲେ ପ୍ରଭା ।
ବୋଇଲେ ସଦାଶିବ ଯେ ତାଙ୍କୁ ଦେଲ ବର
ଦଶଦିଗପାଳେ ଯୋଡ଼ିଲେ ବେନି କର ।
ତୁମ୍ଭର ଭରସାରେ ସକଳ ଦେବ ରହି
ଭୟରୁ ନିସ୍ତାର ଏବେ କର ଭାବଗ୍ରାହୀ ।
ତୁମ୍ଭେ ନ ରଖିଲେ ଆମ୍ଭେ ହୋଇଲୁ ଅନାଥ
ଏତେବୋଲି କରଯୋଡ଼ି ଆଗରେ ଉଭା ସେତ ।
ଶୁଣିଣ ନାରାୟଣ ଦେବରଙ୍କୁ ଚାହିଁ
ବୋଇଲେ କାହା କୋଳେ ଜନମ ଦୟାହୋଇ ।
ବିଧାତା ବୋଇଲେ ଦେବ ଶୁଣ ମୋ ବଚନ
ସୁମେଘାସୁରର ପୁତ୍ର ସହସ୍ରାନନ ପୁଣ ।
ମେଘାସୁର ଦୁହିତା ବିଶାଖା ନାମେ ବାଳୀ
ତାହାଠାରୁ ଜାତହେଲା ସଉରୋଭ ଦୈତ୍ୟବଳି ।
ଏବେ ଯେ ବିଳଙ୍କା ଗଡ଼େ ଯାଇଣ ରାଜାହେଲା
ସଦାଶିବଙ୍କୁ ମନାଇ ବର ଯେ ପାଇଲା ।

ସହସ୍ରେକ ମୁଖ ଯେ ମାଗିଲା ତ୍ରିଲୋଚନେ
ସହସ୍ରେକ ମୁଖ ହେଲା ତତକ୍ଷଣେ ।
ନିଜପୁରେ ପଶିଣ ରହିଲା ବେନିଯୁଗ
ନାତି ଯେ ନାଶ ଗଲା ତାହାର ଦୁର୍ଯ୍ୟୋଗ ।
ସେଥିର ସକାଶରେ କ୍ରୋଧ ମନେ ହେଲା
ନାଶ କର ଦେବତା ଆଗରେ ମିଳିଲା ।
ବୋଇଲା ସଦାଶିବ ମୋତେ ଦେଲ ବର
ଅମର ବର ଦେଲେ ତ୍ରୈଲୋକ୍ୟ ଈଶ୍ୱର ।
ତୁ କିମ୍ପା ମୋହର ନାତିକି ଧରିଆଣି
ପିଣ୍ଡ ରଖି ପ୍ରାଣ ଯେ ହରିନେଲୁ ପୁଣି ।
ଶୁଣିଣ ନାଶକର ଡରିଣ ବର ଦେଲା
ତୋର କୁଳରେ କେହୁ ନ ନମରୁ ବୋଇଲା
ଇନ୍ଦ୍ରଙ୍କୁ ନାରାୟଣ ପଚାରିଲେ ପୁଣ
ଶତମୁଖା ରାବଣ କାହାର କୋଳେ ଜନ୍ମ ।
ବିନା ଶତ୍ରୁରେ ପରବୋଲେ ନ କରିବୁ ରଣ
ପର ବୋଲେ ରଣ କଲେ ବଂଶ କ୍ଷୟ ପୁଣ ।
ଏତେ ବୋଲି ନାତିକୁ ତାହାର ଆଣିଦେଲା
ସହସ୍ରାନନ ନାତି ଘେନି ନିଜପୁର ଗଲା ।
ତିନିଯୁଗ ଅନ୍ତରେ ସ୍ୱର୍ଗକୁ ଧାଡ଼ି ଦେଲା
ସକଳ ଦେବତାଙ୍କୁ ଧରିଣ ଘେନିଗଲା ।
ଚଉଦ ଯୁଗଯାଏ ବନ୍ଦି କଲା ନେଇ
ସଦାଶିବ କହନ୍ତେ ଦୈତ୍ୟ ଦେବଙ୍କୁ ଛାଡ଼ଇ ।
ବେଦବରଙ୍କୁ ପୁଣି ପଚାରିଲେ ଚକ୍ରଧର
କାହାର ହସ୍ତରେ ମୃତ୍ୟୁ ହୋଇବ ଦୈତ୍ୟବୀର
ବେଦବର ବୋଇଲେ ମୃତ୍ୟୁ କମଳା ହସ୍ତର
ଦୁଇଫାଳ ହେଲେ ତ ମରିବ ଦୈତ୍ୟବୀର ।
ସଦାଶିବ ବର ଦେଲାବେଳରେ ତାକୁ କହି
କମଳା ମାରିବ ତୋତେ ଶୁଣି ଯେ ଥାଅ ତୁହି ।
ଶ୍ରୀହରି ମାନବ ରୂପରେ ତୋ ବଂଶ ନାଶିବେ
ତପନ କୁଳରେ ବାସୁଦେବ ଜନ୍ମ ହେବେ ।
ଶୁଣିଣ ଅସୁର ଯେ ମନରେ ହେତୁକଲା
ନାରାୟଣ ସଙ୍ଗେ ରଣ କରିବି ବୋଇଲା ।
ଇନ୍ଦ୍ରକୁ ନାରାୟଣ ପଚାରିଲେ ପୁଣ
ଶତେମୁଖା ରାବଣ କାହାର କୋଳେ ଜନ୍ମ ।
ବଜ୍ରଧର ବୋଇଲେ ଦେବ ଶୁର ମୋ ବଚନ
ଅନୁରାଧା ଅସୁରୀ ଗର୍ଭରୁ ଜାତ ପୁଣ ।

ଜଇନ୍ତା ମହାମୁନି ତାହାଠାରେ ସ୍ନେହ କଲେ
ତାହାଙ୍କୁ ହରବାକୁ ଜନମ ଅସୁରେ ।
ଚେତା ପାଇଣ ଅସୁର ଅନେକ ତପ କଲା
କାଳେ ପବନ ଦେବତାଙ୍କୁ ସେ ମନା କଲା ।
ମରୁତ ଦେବତା ତାହାକୁ ଦେଲେ ବର
ବୋଇଲେ ସବୁଦିନେ ହୁଅ ତୁ ଅମର ।
ବାସୁଦେବ ଶଙ୍ଖାସୁର-ରୂପ ହେଲେ ଜାତ
ତେତେବେଳେ ତୋତେ ସେ ମାରିବେ ନିୟତ ।
ଅସୁର ବୋଇଲା ମୋର ହେଉ ଶତେମୁଖ
ଅତୁଟ ବିମାନ ମୋତେ ଦିଅ ହେ ମରୁତ ।
ଅତୁଟ ଶରୀର ମୋର ହୋଇବ ପ୍ରମାଣ
ଜଳ ପବନ ଅଗ୍ନିରେ ନ ତୁଟିବ ପୁଣ ।
ସମୁଦ୍ର ଭିତରେ ମୋତେ ଦେବ ଏକସ୍ଥାନ
ଶୁଣି ମରୁତ ବୋଲେ ଅସ୍ତୁ ହେଉ ଜାଣ ।
ଏତେ ବୋଲି ଅତୁଟ ବିମାନ ତାଙ୍କୁ ଦେଲେ
ଅଲଙ୍କା ଗଡ଼ରେ ନେଇ ରାଜା କରାଇଲେ ।
ଶୁଣିଣ ବାସୁଦେବ ଯେ ସଦାଶିବଙ୍କୁ ଚାହିଁ
ବୋଇଲେ ଏ ଅସୁର ଦେବଙ୍କୁ କିସ କରଇ ।
ସଦାଶିବ ବୋଇଲେ ଦେବଙ୍କୁ ହେଲା କାଳ
ତିନିପୁର ଜିଣିଲା ଘେନିଣ ଦୈତ୍ୟବଳ ।
ଦେବଲୋକକୁ ନେଇ ବନ୍ଦିରେ ରଖିଲା
ଗୋ ବ୍ରାହ୍ମଣ ପରଜା ଧରିଣ ଖାଇଲା ।
ପବନ ଦେବତାଙ୍କୁ କହିଲେ ସର୍ବଦେବ
ମରୁତ ଦେବତା କହିଲା ଦୈତ୍ୟଆଗ ।
ତେବେ ସେ ଦେବତାଙ୍କୁ ଛାଡ଼ିଦେଲା ଯେ ରିପୁ
ଶୁଣିଣ ବାସୁଦେବ ମନରେ କଲେ ବପୁ ।
ଦଶମୁଖା ରାବଣ ଯେ କାହାଠାରୁ ଜାତ
ସେ କଥା ମୋହଆଗେ କହ ହେ ତ୍ରିଅମ୍ବେକ ।
ଈଶ୍ୱର ବୋଇଲେ ଦେବ ଶୁଣ ବାସୁଦେବ
ନଉକେଶୀ ରାକ୍ଷସୀର ତିନି ଯେ ତନୁଜ ।
ରାବଣ, କୁମ୍ଭକର୍ଣ୍ଣ, ବିଭୀଷଣ ଜାଣ ପୁଣ ।
ବିଶ୍ରବା ଋଷିଙ୍କର ରେତରୁ ଜାଣ ।
ଅସୁରୁଣୀର ଶୋଭା ଦେଖି ପୌଲସ୍ତିର ପୁତ୍ର
ତାହାକୁ ଶୁଭ୍ର ଦେଖି ଭାବରେ ହେଲେ ରତ ।
ଋଷିର ବୀର୍ଯ୍ୟେ ଜାତ ହୋଇଣ ଜ୍ଞାନ ପାଇ
ଯୋଗଲୟ କଲେ ଯେ ନର୍ମଦା କୂଳେ ଯାଇ ।

ଅନେକ କାଳ ତପ କଲେ ସେ ବସିଣ
ଶିର କମଳ କାଟି ଅଗ୍ନିରେ ସମର୍ପିଣ ।
ଦେଖିଣ ବେଦବର ସେଠାବକୁ ଗଲେ
ଯାଚିଣ କୁଶଧ୍ୱଜ ବର ତାଙ୍କୁ ଦେଲେ ।
ବୋଇଲେ କାଳେ କାଳେ ଅମର ହୋଇଥାଅ
ସୀତାଙ୍କୁ ହରିଲେ ନିଶ୍ଚେ ମରଣ ତୁମ୍ଭେ ପାଅ ।
ଶୁଣିଣ ଦଶମୁଖ କୁମ୍ଭକର୍ଣ୍ଣ ଗଲେ
କୁବେର ତଡ଼ିଦେଇ ଲଙ୍କାରେ ରାଜାହେଲେ ।
ବିଭୀଷଣ ନଗଲା କରଇ ତପ ଘୋର
ବେଦବର ପ୍ରସନ୍ନରେ ତାଙ୍କୁ ଦେଲେ ବର ।
ବୋଇଲେ ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ଥାଅ
ବିଷ୍ଣୁଠାରେ ଭାବ ଯେ ଭକତି ତୁହି ବହ ।
ଶୁଣିଣ ଅସୁର ଯେ ସେଠାରୁ ଚଳିଗଲା ।
ଭାଇଙ୍କ ସଙ୍ଗରେ ଯାଇ ଲଙ୍କାରେ ରହିଲା ।
ଅନେକ ଅନ୍ୟାୟ କଲେ ରାବଣ କୁମ୍ଭକର୍ଣ୍ଣ
ଗୋବ୍ରାହ୍ମଣ ହତ୍ୟା କଲେକ ପ୍ରତିଦିନ ।
ପାତାଳ ମଞ୍ଚପୁର ପଶିଣ ଜୁର କଲେ
ପରଜାର ଧନ ହରି ଲଙ୍କାରେ ଠୁଳକଲେ ।
ତାହାକୁଳେ ଅନେକ କୁମାର ଜାତହେଲେ
ବ୍ରହ୍ମାଙ୍କୁ ମନାଇ ସର୍ବେ ବର ଯେ ପାଇଲେ ।
ସ୍ୱର୍ଗପୁରେ ପଶିଣ ଅନେକ ରଣ କଲା
ଧରିନେଇ ଦେବତାଙ୍କୁ ସେବାକାରୀ କଲା ।
ବେଦବର କହିବା କଥାକୁ ନ ମାନିଲା
ମୋର ଦ୍ୱାରେ ବେଦ ପଢ଼ ଯେ ବୋଇଲା ।
ଦେବତାଙ୍କ ସଙ୍ଗରେ ମୋର ପୁରେ ଥିବୁ
ମୋର ପୁରୁ ଗଲେ ନିଶ୍ଚେ ମୃତ୍ୟୁ ତୁ ପାଇବୁ ।
ଶୁଣିଣ ବେଦବର ଡରିଣ ତାଙ୍କୁ ପୁଣ
ଦେବତାଙ୍କ ସଙ୍ଗରେ ରହିଲେ ସେ ପୁଣ ।
ଶୁଣିଣ ବିରାଟ ପୁରୁଷ ଚାହିଁ ଜାଣ
ସୁର ରାଜାକୁ ପଚାରି କୁମ୍ଭକର୍ଣ୍ଣ ଗୁଣ ।
ସୁରଦେବ ବୋଇଲେ ସାଧିଣ ତିନିପୁର
ମନରେ ବିଚାର ଯେ କଲା ଦୈତ୍ୟବୀର ।
ପାଞ୍ଚିଣ ମନେ ଯେ ଅନନ୍ତ ଶୟନ କରିବଇଁ
ବାସୁଦେବ ସଙ୍ଗେ ସମାନ ହେବି ମୁହିଁ ।
ନର, ବାନର, ଅସୁର, ଦେବତା ଯେତେ ଜୀବ
ସମସ୍ତଙ୍କ ଉପରେ ମୋର ଅଧିକାର ଥିବ ।

ଅନନ୍ତ ଶୟନରେ ନିଶ୍ଚିନ୍ତ ହୋଇ ଶୋଇ
ଶ୍ରୀହରି ଅନନ୍ତ ଶୟନ କରିଛନ୍ତି ତହିଁ ।
ଦେବତା ଉପରେ ସେ ହୋଇଅଛି ବଡ଼
ଅସୁରଙ୍କ ଭିତରେ ମୁଁ ହେବି ଯୋଗାରୂଢ ।
ମୁହିଁ ପଲଙ୍କେ ଶୟନ କରିବି ଏଥିରେ
ଏତେ ବିଚାରି ବୀର ଶୋଇଲା ଶଯ୍ୟାରେ ।
ଆପଣା ନାରୀମାନଙ୍କୁ ସଙ୍ଗରେ ରଖିଲା
ସପ୍ତସ୍ୱର କର ବୋଲି ନାରୀଙ୍କି କହିଲା ।
ବିଷ୍ଣୁକୁ ଏକନାରୀ ଦିଅଇ ସୁନାଶିର
ଏକନାରୀ ଚରଣ ଯେ ମଞ୍ଚାଳେ ତାହାର ।
ସପ୍ତମନାରୀ ମୋର ସୂର ଯେ କରନ୍ତୁ
ନଉସସ୍ର ନାରୀ ମୋର ପଦ ମଞ୍ଚାଳନ୍ତୁ ।
ସପତ ଛତି ମୋର ଉପରେ ହେଉ ଟେକା
ସପତ ନାରୀ ଧରି ବସନ୍ତୁ ନିଶଙ୍କା ।
ଅନନ୍ତ ନାରାୟଣରୁ ହେବି ମୁହିଁ ବଡ଼
ତାହାର ସପତ ଫଣିକୁ ସପତ ଛତି ମୋର ।
ଅନନ୍ତ ଶୟନ ଯେ ସେ ଅସୁର ବିଚାରିଲା
ଅଚିନ୍ତା ହୋଇଣ ସେ ଅସୁର ନିଦ୍ରାଗଲା ।
ତିନିପୁରେ ଯେତେ ଅସୁରୁଣୀ ଥିଲେ
ତାଙ୍କର କୁଳ ପ୍ରଭୁ ଯେ ତାଙ୍କୁ ବିଚାରିଲେ ।
ଶୁଣି ବାସୁଦେବ ଯେ ଦ୍ରୁହସିଣ ହୋଇ
ମୋର ନାମକୁ ବଦଳ କଲା ରାବଣର ଭାଇ ।
ବାସୁଦେବ ବୋଇଲେ ଶୁଣ ସୁର ବ୍ରହ୍ମ
ଏକାମୁଖା ରାବଣ ଯେ କାହାର କୁଳେ ଜନ୍ମ ।
ବାସବ ବୋଇଲେ ସେ ରାବଣର ସୁତ
ମୋତେ ଜିଣିଣ ସେ ବୋଲାଏ ସକ୍ରାଜିତ ।
ତାହାର କୁମର ମହୀରାବଣ ବୀର
ଅଗ୍ନିରେ ପଶି ତପ କଲାକ ଅପାର ।
ସତସସ୍ର ବରଷରେ ଅଗ୍ନି ହୋଇଲେ ପ୍ରସନ୍ନ
ବୈଶ୍ୱାନର ଦେବତା ତାକୁ ଅମରକଲେ ପୁଣ ।
ତେଜବନ୍ତ ବିମାନ ତାକୁ ଆଣିଦେଲେ
ଏ ବିମାନେ ଥିବାଯାକ ଅତୁଟ ହୁଅ ଭଲେ ।
ତପନ କୁଳେ ଯେବେ ଅନନ୍ତ ଜାତ ହେବେ
ତେବେ ସେ ପୁରୁଷନିଷ୍ଟେ ତୋତେ ମାରିବେ ।
ସେ ବୋଇଲେ ଜଗତ ଜିଣିଲା ମୋର ବାପ
କେଉଁଠାରେ ରାଜା ମୁଁ ହୋଇବି ଜାଣତ ।

ବୈଶ୍ୱାନରବୋଲେ ତୋତେ ଅଛି ତିନିପୁର
ମୋତିଲଙ୍କା, ସୁଲଙ୍କା ଯେ ସମୁଦ୍ର ଭିତର ।
ସେ ରାଜ୍ୟରେ ଯୁଦ୍ଧକରି ସେ ରାଜାକୁ ମାରି
ସେ ରାଜ୍ୟରେ ରାଜାତୁ ହୋଇବୁ ଦଣ୍ଡଧାରୀ ।
ଶୁଣିଣ ମହୀରାବଣ ବେଗେ ଚଳିଗଲା
ଦୁଇରାଜା ମାରି ଦୁଇ ରାଜ୍ୟେ ରାଜାହେଲା ।
ଶୁଣିଣ ବାସୁଦେବ ବୋଇଲେ ତୁମ୍ଭେ ଶୁଣ
ପନ୍ଦର ଯୁଗ ଭିତରେ ଅସୁର ଜପି ପୁଣ ।
ଦାଳିକି ପାତାଳରେ ରଖିବାର ଯେ ମୋର
ତପନ କୁଳେ ହେଲା ନାହିଁ ମୋ ଅବତାର ।
ବୃହସ୍ପତିକି ବୋଇଲେ ଦେବଗୁରୁ ପୁଣ
ଏଥିରାଜାମାନେ କେମନ୍ତେ ଦୁଷ୍ଟ ପୁଣ ।
ବୃହସ୍ପତି ବୋଇଲେ ଅନେକ ଦୁଷ୍ଟଛନ୍ତି
ରାଜାକୁ ରାଜାମାନେ ହିଂସା ଯେ କରନ୍ତି ।
ବଳବନ୍ତ ପଣକରି କରନ୍ତି ସମର
ଶାନ୍ତିରାଜାମାନଙ୍କୁ କରନ୍ତି ନାରଖାର ।
ଋଷିମାନେ ଡରିଣ ନ ରହେ ତାଙ୍କ ପାଶ
ଶୁଣିଣ ନାରାୟଣ ଯେ ମନରେ ହରଷ ।
ବୋଇଲେ ଦେବତା ଏ ମୋର ବୋଲକର
ସକଳ ଦେବତାଏ ଏ ମର୍ତ୍ତ୍ୟପୁରେ ଚଳ ।
ବାନରଙ୍କ ସଙ୍ଗରେ କରଯାଇ ଲୀଳା
ଭାଲୁମାନଙ୍କର ଶୃଙ୍ଗାର କର ପରା ।
ନଉସାଗର ଯେ ଦେବତାଗଣ ତୁମ୍ଭେ
ଭାଲୁ, ବାନରଙ୍କ ସଙ୍ଗେ ରମଣ କର ବେଗେ ।
ସେମାନଙ୍କଠାରୁ ପୁତ୍ର ଯେଉଁରୂପେ ହୋଇ
ତେମନ୍ତ ବିଚାର ତୁମ୍ଭେ କରବେଗେ ଯାଇ ।
ଷାଠିଏ ସାଗର ଯେ ବାନର ଜାତ ହେବେ
ଶଙ୍ଖ ଚକ୍ର ଦୁଇ ଯେ ଆୟୁଧ ମୋର ଯିବେ ।
ତେବେ ସେ ଅସୁରବଳ ହୋଇବ ନିଧନ
ଅନ୍ୟରୂପରେ ତାଙ୍କର ନାହିଁ ଯେ ମରଣ ।
ରଘୁ ରାଜା ପୁତ୍ର ଯେ ଅଜ ନାମ ତାର
ଅଯୋଧ୍ୟା କଟକରେ ଅଟଇ ତାର ଘର ।
ଚାରି ସହସ୍ର ବରଷ କୁମରକୁ ହୋଇ
ଷଡ଼ ସହସ୍ର ବରଷ ବଞ୍ଚିବ ହାଦେ ସେହି ।
ତାହାର ନନ୍ଦନ ଯେ ହୋଇବ ଦଶରଥ
ଅଜରାଜା ଯିବାରୁ ଯେ ହେବ ନୃପନାଥ ।

ନବସସ୍ର ବରଷ ଯେ ସେ ଭୋଗ କରିବ
ଆଣ୍ଠୁକୁଡ଼ ଦୋଷରେ ଦିନ ତାର ଯିବ ।
ଲୋମପାଦ ରାଜା ସଙ୍ଗେ ସେ ରାଜାହେବ ମିତ ।
ବିଭାଣ୍ଡେକ ପୁତ୍ର ଋଷ୍ୟଶୃଙ୍ଗ ଜାତ ।
ଚମ୍ପାବତୀ ଦେଶ ରାଜା ତାହାକୁ ଅଣାଇବ
ଦଶରଥ ରାଜାର ଯେ ଦୁହିତାଏ ଥିବ ।
ସେ ଋଷିକି ବିଭା ଦେଇ କରିବ ସନ୍ତୋଷ
ଋଷ୍ୟଶୃଙ୍ଗ ଯଜ୍ଞ ଚରୁ ହୋଇବୁ ସମ୍ଭୁତ ।
ପଞ୍ଚ ଦଶ ବରଷ ଗଲେ ଯେ ଜନ୍ମ ହେବୁ
ଏଗାରସସ୍ର ବରଷ ପର୍ଯ୍ୟନ୍ତେ ଦୁଷ୍ଟବି ନାଶିବୁ ।
ଆଜ ମୋତେ ଶୟନରୁ ଉଠାଇଲ ପୁଣ
ମୋର ଅଂଶୁ ଜାତହେବେ ନରଦେହ ଜାଣ ।
ଯମଦଗ୍ନି ଦେହେ ସମ୍ଭବ ହେବି ଜାଣ
ରେଣୁକା ଗର୍ଭରେ ଜାତ ହେବି ମୁହିଁ ପୁଣ
ପର୍ଶୁରାମ ଅବତାର ହୋଇବ ସେ ଅଂଶ
ଅନେକ ଦୁଷ୍ଟ ରାଜାଙ୍କୁ ମୁଁ କରିବି ବିନାଶ ।
ଶତେବାର ତିନିପୁର ନିଛତ୍ର କରିବି ।
ଦୁଷ୍ଟଙ୍କୁ ନିବାରି ମୁହିଁ ସନ୍ଥଙ୍କୁ ପାଳିବି ।
ଯାଅ ଦେବଗଣେ ତୁମ୍ଭେ ମର୍ତ୍ତ୍ୟପୁରକୁ ଏବେ
ସହସ୍ରେ ବରଷ ଲୀଳା କରିବି ମୁଁ ଏବେ ।
ଶୁଣିଣ ଦେବତା ଯେ ଶିରେ କର ଦେଲେ
ମେଲାଣି ହୋଇଣ ଯେ ଯାହାପୁରେ ଗଲେ
ଯେ ଯାହା ସ୍ଥାନରେ ଯେ ନିଶ୍ଚିନ୍ତରେ ରହି
ଏଥୁ ଅନନ୍ତରେ ତୁ ଗୋ ଶୁଣ ମହାମାୟୀ ।
ଅନନ୍ତ ଶଯ୍ୟାକୁ ଯେ ତେଜିଲେ ନାରାୟଣ
କମଳାସଙ୍ଗତେ ଯେ ଲୀଳା କରନ୍ତି ଦେବପୁଣ
ଅନନ୍ତ ଲୀଳା କରି ଅଟେ ନାରୀ ସଙ୍ଗେ
ସେହି ଲୀଳା କରିଣ ନାଶିବେ ଦୁଷ୍ଟ ତେବେ ।
ଯମଦଗ୍ନିଙ୍କର ଯେ ରେଣୁକା ଘରଣୀ
ତାର କୋଳେ ଜାତ ହେଲେ ତିନିପୁତ୍ରପୁଣି ।
ଏମନ୍ତ ସମୟରେ ଶ୍ରୀହରି ବିଜେ କଲେ
ରେଣୁକା ସଙ୍ଗରେ ଋଷି କରନ୍ତି ବିହାର
ରେଣୁକାର ଗର୍ଭରେ ରହିଲେ ଚକ୍ରଧର ।
ଦଶମାସ ଉତ୍ତାରୁ ଜନମ ହେଲେ ପୁଣ
ଋଷି ଦେଖି ପଚାରିଲେ ଏହି ତ ନାରାୟଣ ।

ସହସ୍ରେ ବରଷ ତ ଏଥିରେ ବହିଗଲା
କାର୍ତ୍ତିକେଶ୍ୱର ସସ୍ରାର୍ଜ୍ଜୁନ ଥିଲା ।
ଯମଦଗ୍ନି ଋଷିକି ଅକାଳେ କଲା ନାଶ
ପର୍ଶୁରାମ ନଥିଲା ମାଇଲା ନରଈଶ ।
ବନସ୍ତେ ପର୍ଶୁରାମ ଆସନ୍ତେ ଦେଖିଲା
ସାତଦିନେ ସହସ୍ରା ଅର୍ଜ୍ଜୁନ ନାଶ କଲା ।
ରାଜାଙ୍କ ଉପରେ ହିଂସା କଲେ ପର୍ଶୁଧର
ଦୁଷ୍ଟ ରାଜାମାନ ଧରି ମାଇଲା କୁଠାର ।
ଆଣ୍ଠୁକୁଡା ରାଜାମାନେ ନାରୀବେଶ ହେଲେ
ପାଟରାଣୀ ମାନଙ୍କର ସଙ୍ଗରେ ଲୁଚିଲେ ।
ଯେଣୁ ସେ ଦୁଷ୍ଟଗଣ କଲାକ ବଧ ପୁଣ
ତିନିପୁର ଲୋକେ ଭୟପାଇଲେ ସେହୁ ଜାଣ ।
ପାର୍ବତୀ ବୋଇଲେ ଦେବ ଶୁଣ ତ୍ରିଲୋଚନ
ଅସୁରଙ୍କୁ କିମ୍ପା ବଧ ନ କଲେ ପର୍ଶୁରାମ ।
ଈଶ୍ୱରବୋଇଲେ ଅସୁରେ ତାହାରେ ନମରି
ଦୁଷ୍ଟଜନ ମାରିବାକୁ ଅବତାର ହରି ।
ପର୍ଶୁରାମେ ଅବତାରେ ଦୁଷ୍ଟଙ୍କୁ ନାଶକଲେ
ଅସୁରେ ଜାଣି ପର୍ଶୁରାମକୁ ଭୟ କଲେ ।
ପର୍ଶୁରାମ ଆଗରେ ନ ମିଳିଲେ ଅସୁର
ଯେଉଁ ଦୈତ୍ୟମାନେ ତାକୁ ମିଳେ ପଶୁଧର ।
ପାର୍ବତୀ ବୋଇଲେ ପର୍ଶୁଧର କିସ କଲେ
ସେକଥା ମୋର ଆଗେ କହହେ ଦେବ ଭଲେ ।
ଈଶ୍ୱର ବୋଇଲେ ସେ ବୈକଣ୍ଠେ କରେ ଲୀଳା
ସହସ୍ରେ ବରଷ ଯେ ଏଥିରେ ବହିଗଲା ।
ଅନନ୍ତ ଶୟନକୁ ମନେ ଯେ କଲେ ହରି ।
ଆଗରେ କମଳା ଯେ କହନ୍ତି କରଯୋଡ଼ି ।
ବୋଇଲେଭୋଦେବ ତୁମ୍ଭେମୋର ବୋଲ ଘେନ
ପ୍ରତିଦିନ ସଦାଶିବ ପାର୍ବତୀ ଘେନି ପୁଣ ।
ଗାୟତ୍ରୀ ସାବିତ୍ରୀ ଯେ ବ୍ରହ୍ମାକୁ ଘେନି ଲୀଳା
ଦେବତାମାନେ ଦେବୀଙ୍କୁ ନ ଛାଡ଼ିଦେବେ ସିନା ।
ଶୟନ କରିବାରୁ ମୁଁ ଏକା ହୋଇ ରହି
ଏବେ ମୋର ସଙ୍ଗେ ଲୀଳା କର ହେ ଭାବଗ୍ରାହୀ ।

ଦେବଙ୍କୁ କହିଲ ମୁଁ ଯେ ହୋଇବି ଜନମ
ପନ୍ଦରସସ୍ର ବରଷରେ ଜନ୍ମ ହେବ ପୁଣ ।
ମୋର ସଙ୍ଗେ ଏତେଦିନ ତୁମ୍ଭେ ଲୀଳା କଲ
ମାନବ ଜନ୍ମ ତୁମ୍ଭେ ହୋଇବ ଚକ୍ରଧର ।
ଶୁଣିକରି ବାସୁଦେବ ହରଷ ହୋଇଲେ
କମଳାଙ୍କୁ କୋଳେ ଧରି ନିଷ୍ଠିନ୍ତେ ଲୀଳା କଲେ ।
ପାର୍ବତୀ ବୋଇଲେ ଦେବ ଶୁଣ ମୋ ଉତ୍ତର
ବାସୁଦେବ ଆଜ୍ଞାରେ କି କଲେ ବେଦବର ।
ତୁମ୍ଭେ ପୁଣ କିସ କଲ ଦେବ କଲେ କିସ
ବାନର ଭାଲୁଙ୍କ ସଙ୍ଗେ କଲେ ଯେ ବିଶ୍ୱାସ ।
ସେ କଥା ମୋର ଆଗେ କହ ହେ ତ୍ରିଲୋଚନ
ଶୁଣିଣ ଈଶ୍ୱର ଯେ କହନ୍ତି ବଚନ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ଭଗବତୀ
କମଳାଙ୍କୁ ଘେନି ଲୀଳା କଲେକ ଦାଶରଥି ।
ବେଦବର ମୁହିଁ ଯେ ବୈକୁଣ୍ଠ ପୁରବାସୀ
କପିଳାସ କନ୍ଦରେ ମିଳିଲି ମୁହିଁ ଆସି ।
ବିଧାତା ପୁରୁଷ ଯେ ଯଶୋବନ୍ତ ପୁର ଗଲେ
କେତେଦିନ ଉତ୍ତାରେ ବ୍ରହ୍ମଙ୍କୁ ଠୁଳ କଲେ ।
ବୋଇଲେ ବାସୁଦେବ କହିଣଛନ୍ତି ଯାହା
ସେ କଥାକୁ ପାଶୋରିଲେ ଅସୁରେ କରି ଦୟା ।
ଯାଅ ଏବେ ମର୍ତ୍ତ୍ୟପୁରେ ମାୟାରୂପ ଧରି
ଶୁଣିଣ ଦେବତାଏ ଚଳିଲେ ବେଗକରି ।
ଷାଠିଏ ସାଗର ବାନରଙ୍କ ସଙ୍ଗେ ମେଳ
ତିରିଶ ସାଗର ଭାଲୁଙ୍କ ସଙ୍ଗରେ ବିହାର ।
କେହୁ ପାଞ୍ଚଦିନ କେହୁ ସାତଦିନ ରହି
ବୀର୍ଯ୍ୟ ନେଇଣ ଗର୍ଭେ ବଳାସ୍ଥିତ କଲେ ତହିଁ ।
ନଅ ସାଗର ଦାନର ଭାଲୁଙ୍କ ନାରୀ ସଙ୍ଗେ
ନିଷ୍ଠିନ୍ତେ ରମଣ ତାଙ୍କୁ କଲେ ସ୍ୱର୍ଗ ଦେବେ ।
ପୁତ୍ରମାନ ଜନମହେଲେ ଯେତେବେଳରେ ପୁଣ
ମୁକୁଟ କୁଣ୍ଡଳ ନେଇ ବର ଯେ ଦେଲେ ଜାଣ ।।
ବାନର ଭାଲୁଙ୍କୁ ଯେ ଭୂଷଣ କରାଇଲେ
ହରଷ କରାଇ ଯେ ସ୍ୱର୍ଗପୁର ଗଲେ ।
ଗିରି କନ୍ଦରେ ଥାଇ ବଢ଼ିଲେ ପୁତ୍ରମାନେ
ଦେବକାର୍ଯ୍ୟରେ ବାଳ ଯେ ହେଲେ ଅପ୍ରମାଣେ ।
ବିହରନ୍ତି ପୁତ୍ରମାନେ ସଙ୍ଗତେ ଶାର୍ଦ୍ଦୁଳ
ଏମନ୍ତ ଦେବତାଏ କଲେ ପୁତ୍ର ସାର ।

ପାର୍ବତୀ ବୋଇଲେ ଦେବ ପୁତ୍ର ଜାତ କଲେ
ଦିଗପାଳମାନେ କିସ କଲେ କହ ଭଲେ ।
ଈଶ୍ୱର ବୋଇଲେ ଯେ ମର୍ତ୍ତ୍ୟପୁର ଗଲେ
ଶ୍ରଦ୍ଧାଯୁକ୍ତେ ବାନରୀକି ରମଣ ସେହୁ କଲେ ।
ଦିଗପାଳେ ଗୋଟିକେ ଦୁଇ ଯେ ତିନିମେଳ
ଅନେକ ପୁତ୍ର ଜାତ କଲେ ଯେ ଦିଗପାଳ ।
ମୁକୁଟ କୁଣ୍ଡଳ ଯେ ଅନେକ ଅଳଙ୍କାର
ଦେଇ ପୁତ୍ରମାନଙ୍କୁ ମନ ଯେ କଲେ ଭୋଳ ।
ସୁର ରାଜାର ସଙ୍ଗେ ବିଜେ ହୋଇଗଲେ
ପାର୍ବତୀ ବନରେ ଯାଇ ପ୍ରବେଶ ହୋଇଲେ ।
ଖଡ଼ଗ ନୃପତି ଯେ ସେ ବନେ ଯାଇଥିଲା,
ସେ ବନକୁ ଯିବାରୁ ସ୍ତିରୀ ରୂପ ହେଲା ।
ସେ ସ୍ତରୀକୁ ଦେଖିବାରୁ ଇନ୍ଦ୍ରଦେବ ପୁଣ
ବୀର୍ଯ୍ୟ ତେଜ୍ୟା କରିବାରୁ ପଡ଼ିଲା ଉପରେଣ ।
ଇନ୍ଦ୍ରଙ୍କର ବୀର୍ଯ୍ୟ ଯାଇ ବାଳରେ ପଡ଼ିଲା
ବାନର ରୂପ ଧରି ପୁତ୍ରେକ ଜନ୍ମିଲା ।
ରବିର ବୀର୍ଯ୍ୟ ଯାଇ ଶରୀରେ ତାର ପଡ଼ି
ଶରୀର ଛୁଅନ୍ତେ ଯେ ପୁତ୍ରେକ ଅବତରି ।
ବେନିପୁତ୍ର ଘେନିଣ ସେ ନାରୀ ଚଳିଗଲା
ଗଉତମ ଋଷିଙ୍କର ଆଶ୍ରମେ ମିଳିଲା ।
ଋଷିଙ୍କି ସେଠାରେ ଦେଖିଣ ନାରୀ ପୁଣ
ପୂର୍ବକଥା କହନ୍ତେ ପାଇଲା କାରଣ ।
ବାଳକ କୋଳେ ଘେନି କିଷ୍କିନ୍ଧ୍ୟାକୁ ଗଲା
ଆପଣା ଘରଣୀର କୋଳେ ନେଇ ଦେଲା ।
ପାଳିବାରୁ କ୍ରମରେ ହୋଇଲେ ବଳିୟାର
ବାଳୀ ସୁଗ୍ରୀବର ନାମ ହୋଇଲା ତାଙ୍କର ।
ସେହି ଦୁଇଗୋଟି ପୁତ୍ର ବଳରେ ବଳିଷ୍ଠ
ବାନର ଭାଲୁ ସବୁ ହୋଇଲେ ଆୟତ ।
ବଳ ନିର୍ବଳମାନେ ସବୁଙ୍କୁ ସାଧ କଲେ
ବାନର ଭାଲୁଙ୍କ ପରେ ନୃପତି ହୋଇଲେ ।
ସକଳ ବାନର ଭାଲୁ ଯେ ଆସି ପୁଣ
ବାଳିରାଜ ଚରଣେ ଖଟିଲେ ସର୍ବେ ଜାଣ ।
ବାଳିକି ରାଜାକରି ସୁଗ୍ରୀବ ଯୁବରାଜା
ଦୁଇଙ୍କି ରାଜ୍ୟଦେଇ ଖଡ଼ଦରାଜ୍ୟ କଲେତେଜ୍ୟା ।
କେତେଦିନ ଅନ୍ତରରେ ସ୍ୱର୍ଗକୁ ସେହୁ ଗଲେ
ମର୍ତ୍ତ୍ୟପୁରେ ବାଳି ଯେ ବଳିୟାର ହେଲେ ।

ଶତ୍ରୁତାପଣ ଲୋକଙ୍କୁ ସେହି ହାଦେ ଜିଣି
ଏମନ୍ତ ବଳିଷ୍ଠ ପଣ ତିନିପୁରେ ବଖାଣି ।
ପାର୍ବତୀ ବୋଇଲେ ଦେବ ଶୁଣ ହେ ଈଶାନ
ସେ ବାଳୀ ବିଭା ହେଲା କେଉଁଠାରେ ପୁଣ ।
ଈଶ୍ୱର ବୋଇଲେ ତୁମ୍ଭେ ସେ କଥା ଗୋଶୁଣ
ତାରାକ୍ଷା ରାଜା ଦୁହିତା ଅଟଇ ତାର ଜାଣ ।
ତାକୁ ବିଭା ହେଲେ ବାଳୀ ଯେ ବନରାଜ
ସେ ତାରା ସୁନ୍ଦରୀ ତିନିପୁରେ ଯେ ତରିଯା ।
ସତୀବ୍ରତ ପାଳିଲା ତାରାକ୍ଷ ରାଜା ଝିଅ
ସେହି ବାଳୀ ରାଜାର ହୋଇଲେ ଏକ ପ୍ରିୟ ।
ତାହାର କନିଷ୍ଠ ଯେ ସୁଗ୍ରୀବ ନାମେ ବୀର
ରୁମାକୁ ବିଭା ହେଲା ଦେଖିଣ ସୁନ୍ଦର ।
ଯେ କୁମାର ପିତାନାମ ଅଟେ କଉରବ
ଦୁହିତା ବିଭା ହେବାରୁ ପିତାର ସଦ୍‌ଭାବ ।
ସେ ବାଳୀରାଜାର ଏକ ଭଗ୍ନୀଏ ପୁଣ ଥିଲା
ପ୍ରଭଞ୍ଜନ ବୋଲି ତାକୁ ପିତାମାତା ନାମ ଦେଲା ।
ସେ କନ୍ୟା ବିଭା ହେଲା କେଶରୀ କପି ପୁଣ
ଏମନ୍ତେ ଖଡ଼ଦ ନୃପତିର ଅଂଶ ଜାଣ ।
ପାର୍ବତୀ ବୋଇଲେ ଦେବ କପି ଭାଲୁ ମେଳେ
ସରଦାର ବାନର କେ ତାହାଙ୍କ ଉପରେ ।
ଡାଳର ମାଙ୍କଡ଼ ସିନା ବନସ୍ତରେ ଥାନ୍ତି
ଫଳ ମୂଳ ଖାଇକରି ଦିନ ସେ ବଞ୍ଚନ୍ତି ।
ଈଶ୍ୱର ବୋଇଲେ ଦେବ ଶୁଣ ଶାକମ୍ବରୀ
ଖଡଦ ନୃପତି ଭାଲୁ ବାନର ସାଧ କରି ।
ବାନର ଭାଲୁଯାକ ଯହୁଁ ସାଧ ହେଲେ
ଖଡଦ ନୃପତି ଯେ ମନରେ ବିଚାରିଲେ ।
ଜମ୍ବୁଦ୍ୱୀପ ମଣ୍ଡଳରେ ଲକ୍ଷେକ ନୃପତି
ବାଣ୍ଟି କରି ରାଜାଙ୍କୁ ଦେଇଣ ଅଛନ୍ତି ।
ବିଧାତା ପୁରୁଷ ଯେ ଆସିଣ ବାଣ୍ଟି ଦେଲା
ଲକ୍ଷପୁର କରିଣ ଜମ୍ବୁଦ୍ୱୀପକୁ ସଞ୍ଚରିଲା ।
ମୁହିଁ ଅଟେ ଏବେ ଲକ୍ଷେରାଜା କପିନୃପ
ନଗର ରାଜ୍ୟ ହେଉ କପିଙ୍କି ପରାପତ ।
ଏମନ୍ତ ବିଚାରି ସେ ଦିଗବିଜେ କଲା
ଗୋଟିଏ ରାଜ୍ୟରେ ଗୋଟିଏ ନୃପତି କରାଇଲା ।
ସରଦାର ମଲ୍ଲ ଯେ ମହାମଲ୍ଲ ପୁଣ
ଏମନ୍ତେ ପାତ୍ର ମନ୍ତ୍ରୀ କଲେକ ଭିଆଣ ।

ଏହିରୂପେ ଭାଲୁ ଅଂଶେ ନୃପତି ଭିଆଇଲା -
ପାତ୍ର ମନ୍ତ୍ରୀ ସଞ୍ଜୁଣ ଯେ ଆକଟ କରାଇଲା ।
ତାହାର ମୂଳେ ସୈନ୍ୟ ସବୁ ସମର୍ପିଲା
ଏହିରୂପେ ଅନେକ ନୃପତି ଭିଆଇଲା ।
ଲକ୍ଷେକ ରାଜ୍ୟରେ ନଉ ସାଗର ଭଲୁ କପି
ନଉ ସାଗର ଭାଲୁ ଯେ ତାହାର ଅଟନ୍ତି ।
ନାରୀଙ୍କର ସଙ୍ଗେ ଯେ ଦେବେ ଲୀଳା କଲେ
ବଳବୀର୍ଯ୍ୟ ନେଇଣ ପୁତ୍ରକୁ ସଞ୍ଚରିଲେ ।
ଦିଗପାଳ ନବଗ୍ରହ ଅଷ୍ଟବସୁର ମେଳେ
ସେମାନେ କପିଗଣ ସଙ୍ଗରେ ବିହରିଲେ ।
ବଳବୀର୍ଯ୍ୟ ଦେଇଣ ପୁତ୍ର ଯେ କଲେ ଜାତ
ସେ ପୁତ୍ରମାନେ ସବୁ ତେଜରେ ଅକଳିତ ।
ବାନର ଭାଲୁ ଶରୀର ଦେବଙ୍କର ବଳ
ତେଣୁକରି କପିମାନେ ହେଲେ ବଳୀୟାର ।
ପାର୍ବତୀ ବୋଇଲେ ଦେବ ତୁମ୍ଭେ କିସ କଲ
କେଉଁ ବାନରୀ ସଙ୍ଗେ ଲୀଳା ଭିଆଇଲ ।
ଈଶ୍ୱର ବୋଇଲେ ତୁମ୍ଭେ ସେ କଥା ଯେଶୁଣ
ସେତେବେଳେ ତୋର ମୋର ବନକୁ ଗମନ ।
ତେତେବେଳେ ବାନର ବାନରୀଙ୍କର ଲୀଳା
ତାହାଦେଖି ତୋହର ଯେ ଶରଧା ବଳିଲା ।
ତୁହି ହେଲୁ ବାନରୀ ମୁଁ ହେଲି ବାନର
ତୋର ସଙ୍ଗେ ରତିଲୀଳା ବାନର ପ୍ରକାର ।
ଶୃଙ୍ଗାର କରନ୍ତେ ଯେ ଖସିଲା ବଳବୀର୍ଯ୍ୟ
ତୋହର ଗର୍ଭରେତ ହୋଇଲା ସଂଯୋଗ ।
ସେ ବୀର୍ଯ୍ୟ ଉଛୁଳନ୍ତେ ତାହା ମୁଁ ଧଇଲି
ମରୁତ ଦେବତା ହସ୍ତରେ ନେଇ ଦେଲି ।
ଦେଖିଣ ମରୁତ ଯେ ସନ୍ତୋଷ ହୋଇଲା
ବ୍ରହ୍ମାଣ୍ଡ କରତା ବୀର୍ଯ୍ୟ ବୋଲିଣ ବିଚାରିଲା ।
ଏ ବୀର୍ଯ୍ୟ ରଖିଲେ ମୁଁ ଯେହୋଇବି ବଳବନ୍ତ
ଏତେ ବୋଲି ଭକ୍ଷିଲା ମରୁତ ଧାତୁ ସେତ ।
ଗର୍ଭରେ ପଡ଼ନ୍ତେଣ ଉନ୍ମାଦ ଦେଲା ଗାଢ଼
କାମରେ ବିହ୍ୱଳିତ ହୋଇଲା ସେ ବଡ଼ ।
ନିଜ ପୁରକୁ ସେ ଯେ କରନ୍ତେ ଗମନ
କେଶରୀ ନାରୀ ଯେ ପ୍ରଭଞ୍ଜନି ପୁଣ ।
ପାକସ୍ଥରଶ ଯେ ହୋଇଥିଲା ନାରୀ
ଶୁଦ୍ଧ ସ୍ନାନ ନିମନ୍ତେ ଯେ ପୁଷ୍କର ତୀରେ ମିଳି ।

ସୁଗନ୍ଧ ଲଗାଇ ଯେ କରୁଛି ତହିଁ ସ୍ନାନ
ପବନ ଦେବତା ଯେ ମିଳିଲେ ସେ ସ୍ଥାନ ।
ସେ ନାରୀକି ବୁଝାଇ ଶୃଙ୍ଗାର ରତିକଲା
କାମକ୍ରୀଡ଼ା ସରିବାରୁ ବିନ୍ଦୁ ଯେ ଖସିଲା ।
ପ୍ରଭଞ୍ଜନ ଗର୍ଭରେ ପ୍ରବେଶ ହେଲା ଯାଇ
ବୀର୍ଯ୍ୟ ସ୍ଖଳିତ ହେବାରୁ ମରୁତ ଚଳିଯାଇ ।
ସେ କାଳରେ ପ୍ରଭଞ୍ଜନ ହୋଇଲା ଗର୍ଭବାସ
ବାରବରଷ ପର୍ଯ୍ୟନ୍ତେ ନୋହିଲା ପ୍ରସବତ ।
ଆକୁଳରେ ପ୍ରଭଞ୍ଜନ ଗର୍ଭକୁ ପଚାରି
କେଉଁ ପୁରୁଷ ମୋ ଗର୍ଭେ ଅଛି ଅବତରି ।
ଆଲୁଅକୁ ନ ଆସି କିମ୍ପା ଅନ୍ଧାରେ ଅଛରହି
ପାପୀଜନ ହୋଇଲେ ତୁ ଯାଅ ଭସ୍ମହୋଇ ।
ଗର୍ଭରେ ଥାଇ ବାଳକ ଭିତରୁ ଡ଼ାକ ଦେଲା
ଜନମ ହେଲେ ଦୋଷୀ ହୋଇବି ବୋଇଲା ।
ମାତୃ ହରଣ ଦୋଷକୁ ଡ଼ର ଯେ ମୋହର
ତୁମ୍ଭେ ଜନନୀ ବାରେ ସୁଦୟା ମୋତେ କର ।
ମରୁତ ଦେବତାଙ୍କୁ ସୁମର ମନରେ
ସେ ତୁମ୍ଭର ପତି ଯେ ଅଟନ୍ତି ବେଭାରେ ।
ସେ ଯାଇ ଈଶ୍ବରଙ୍କଠାରୁ ବଜ୍ରକାଛଟାଆଣୁ
ସେ କାଛଟା ଗିଳିଲେ ମୁଁ ଜନମ ହେବିତେଣୁ ।
ସେ କାଛଟା ମୋର ହେବ ଡୋର ଯେ କୌପୁନି
ତେବେ ତୋର ଗର୍ଭରୁ ମୁଁ ଜନମିବି ପୁଣି ।
ଶୁଣିଣ ପ୍ରଭଞ୍ଜନ ମରୁତ ସୁମରିଲା
ତତ୍‌କ୍ଷଣେ ମରୁତ ଦେବତା ପାଶେ ମିଳିଲା
ପ୍ରଭଞ୍ଜନ ବୋଇଲା ଶୁଣିମା ହେ ଦେବ
ମୋତେ ଯେ ବିଡ଼ମ୍ବନ କଲ ହେ ସୁଲଭ ।
ତୋ ବୀର୍ଯ୍ୟେ ଦେବତା ମୋ ଗର୍ଭରେ ରହିଲା ।
ବାର ବରଷ ଯେ ଏଥିରେ ବହିଗଲା ।
ଜନମ ନୋହିଲା ଯେ କୁମର ଏବେ ପୁଣ
ଗର୍ଭକୁ ଆରତରେ କହିଲି ମୁହିଁ ଜାଣ ।
ସେ ଗର୍ଭର ଭିତରେ ପୁରୁଷେକ ଥାଇ
ବୋଇଲା ବଜ୍ରକାଛଟା ଗିଳିଲେ ଜନ୍ମ ହୋଇ
ସେଥିପାଇଁ ତୁମ୍ଭଙ୍କୁ ମୁଁ କଲି ସୁମରଣ
ତୁମ୍ଭେ ଯାଇଈଶ୍ବରଙ୍କଠାରୁ ବଜ୍ରକାଛଟାଆଣ ।
ଶୁଣିକରି ମରୁତ ଅଇଲା ବେଗ ହୋଇ
ସକଳ ଚରିତ୍ର ମୋର ଆଗେ ସେହୁ କହି ।

ଶୁଣିକରି ମୁଁ ତାହାକୁ ବଜ୍ର କାଛଟା ଦେଇ
ସେ ବଜ୍ରକାଛଟା ଘେନିଣ ଚଳିଯାଇ ।
ପ୍ରଭଞ୍ଜନ ପାଶରେ ହୋଇଲା ପରବେଶ
ବୋଇଲା ଆରେ ସଖୀରେ ବେଗକରି ଗ୍ରାସ ।
ନେଇଣ ପ୍ରଭଞ୍ଜନ ଗର୍ଭକୁ କ୍ଷେପି ଦେଲା
ଗର୍ଭରେ ଥାଇ ବାଳକ କାଛଟା ପିନ୍ଧିଲା ।
ମରୁତ ଦେବତା ଯେ ଗଲାକ ନିଜପୁର
ଏହି ସମୟରେ ଯେ ଜନ୍ମିଲା କୁମର ।
ମେଷ ସଂକ୍ରାନ୍ତି ଦିନ ଉଦୟ ବେଳରେ
ଜାତ ହୋଇ କୁମର ବସିଲା ଆଗରେ ।
ମାତାକୁ ବୋଇଲା ମୋତେ ଖାଇବାକୁ ଦିଅ
ମାତା ବୋଇଲାରେ ତୁ ଶୁଣ କୁମାର ପ୍ରିୟ ।
ପୂର୍ବ ଦିଗେ ରଙ୍ଗ ସୁରଙ୍ଗ ଫଳ ଦେଖ
ସେ ଫଳ ଗ୍ରାସକଲେ ହରଣ ହେବ ଭୋକ ।
ଶୁଣିଣ କୁମର ଯେ ଶୂନ୍ୟରେ ଚଳିଗଲା
ଆଦିତ୍ୟଙ୍କ ରଥପରେ ଯାଇଣ ବସିଲା ।
ସାତସରି କରି ଯେ ଲାଙ୍ଗୁଡ଼େ ବାନ୍ଧେ ତାକୁ
ଆକୁଳରେ ଆଦିତ୍ୟ ଚିନ୍ତିଲେ ଇନ୍ଦ୍ରଙ୍କୁ ।
ବଜ୍ର ଧରିଣ ଦେବ ବେଗେ ଚଳିଗଲେ
ହନୁକୁ ଦେଖିଣ ବଜ୍ରଶର ପ୍ରହାରିଲେ ।
ବଜ୍ରଶରେ ମୋହ ଯେ ହୋଇଲା ମାରୁତି
ଦେଖିଣ ପିତା ମରୁତ ରୁନ୍ଧିଲା ଚଉକତି ।
ସମସ୍ତେ ଆରତ ହେଲେ ପବନ ନ ବହିବାରୁ
ବ୍ରହ୍ମାଙ୍କଠାରେ ଯାଇ କହିଲେ ଦେବଗୁରୁ ।
ବୋଇଲେ ସୃଷ୍ଟି ଦେବ ସରିଲା ଆଜ ତ
ପୁତ୍ର ନାଶ ଯିବାରୁ ରୁନ୍ଧିଲା ମରୁତ ।
ଶୁଣିଣ ଦେବ ତ୍ରିଦଶ ଦେବତା ଅଇଲେ
ମାରୁତି ଆଗରେ ଯାଇ ପ୍ରବେଶ ହୋଇଲେ ।
ମାରୁତକି ଜୀଆଁଇ ଅନେକ ବଳ ଦେଲେ
ଚେତା ପାଇ ମାରୁତି ଉଠିଣ ବସିଲେ ।
ବୋଇଲା ଶଚୀପତିରେ କିସ ମୋର ହେଲା
ଅକାରଣେ କିମ୍ପା ମୋତେ ମାଇଲୁ ବୋଇଲା ।
ବେଦବର ବୋଇଲେ ଅନ୍ୟାୟ ହେଲା ତାର
ବାଳକ କୁମରକୁ ଯେ ମାର ବଜ୍ରଶର ।
ଏ ଦୋଷରୁ ଦୁଇମାସ ଇନ୍ଦ୍ରପଦ ତୁଟି
ଦୁଇମାସ ଗଲେ ଇନ୍ଦ୍ରହେବୁ ଯେ ତୁହିଟି ।

ଅଦୋଷରେ ଆସିଣ ବାନ୍ଧିଲୁ ତୁହି ପୁଣ
ଲଙ୍କାଗଡ଼େ ବନ୍ଧା ଥରେ ହେବୁ ତୁ ଯେଜାଣ ।
ଏତେ କହିସର୍ବଦେବେ ତାଙ୍କର ବଳଦେଲେ
ବେଦବର ମୁକୁଟ କୁଣ୍ଡଳ ସମର୍ପିଲେ ।
ବୋଇଲେ ଜନମହୋଇ ବଳ ତୋ ଅପ୍ରମିତ
ଯେଣୁ ସଦାଶିବର ବୀର୍ଯ୍ୟେ ହେଲୁ ଜାତ ।
ନିର୍ବଳ ହୋଇଣ ତୁ କିଛି ଦିନ ଥିବୁ
ଶ୍ରୀରାମକୁ ଦେଖିଲେ ତୁ ବଳବନ୍ତ ହେବୁ ।
ରାମାୟଣ ଯୁଦ୍ଧରେ ହୋଇବୁ କବାଟ ତ
ଏତେ କହି ବେଦବର ଗଲେକ ତୁରିତ ।
ବେଦବର କେଉଁ କପି ସଙ୍ଗରେ ବିହରି
ସେ କଥା ମୋର ଆଗେ କହ ଫେଡ଼ିକରି ।
ଶୁଣିଲେ ପ୍ରତେଯିବି ମନରେ ମୋହରି
ଈଶ୍ୱର ବୋଇଲେ ଦେବୀ ଶୁଣ ଶାକମ୍ଭରୀ ।
ଏକଦିନେ ବେଦବର ବିଚାର ମନେକରି ।
ସାବିତ୍ରୀ କନ୍ୟାକୁ ସଙ୍ଗେ ଘେନିଣ ବେଦବର
ବଦରି ବନରେ ଯାଇ ପ୍ରବେଶ ହେଲେ ପୁଣ ।
ଭାଲୁ ପଲ ଦେଖିକରି ମନରେ ବିଚାରିଲେ
ସାବିତ୍ରୀ କରଯୋଡ଼ି ଜଣାଣ ଆଗେ କଲେ ।
ଏ ବୋଇଲେ ଏଭାଲୁ ରୂପ ତୁମ୍ଭର ହୁଅନ୍ତା
ଭାଲୁ ନାରୀରୂପ ଯେ ମୋହର ସମ୍ଭବନ୍ତା ।
ତେବେ ଯାଙ୍କ ପରି ଯେ ଶୃଙ୍ଗାର ରତିଲୀଳା
ଏମାନଙ୍କ ଶୃଙ୍ଗାରକୁ ଚିତ୍ତ ମୋ ବଳିଲା ।
ଶୁଣିଣ ବେଦବର ହୋଇଲେ ଭାଲୁ ପୁଣ
ସାବିତ୍ରୀରୂପ ଗୋଟିକ ଗଲା ବଦଳିଣ ।
ରତିରସେ ବେନିଜନ ଲୀଳା ତହିଁ କଲେ
ବେଦବର ବୀର୍ଯ୍ୟକୁ ସାବିତ୍ରୀ ସମ୍ଭାଳିଲେ ।
ତତକ୍ଷଣେ ପୁତ୍ରେକ ଯେ ଜାତ ହେଲା ପୁଣ
ଦିବସ ନୁହଇ ଯେ ରଜନୀ ସମୟେଣ ।
ଚନ୍ଦ୍ର ଦେବତା ତେଜରେ ଦିଶଇ ନିର୍ମଳ
ଦେଖିଣ ସାବିତ୍ରୀ ଯେ ଧରିଣ ନଜ ଶରୀର ।
ବେଦବର ନିଜର ସ୍ୱରୂପ ଧଇଲେ
ଶଶଧରଙ୍କୁ ଡାକି ଯେ ଆଜ୍ଞା ତହିଁ ଦେଲେ ।
ବୋଇଲେ ଏ ପୁତ୍ରକୁ ତୁମ୍ଭେ ଯେ ସମ୍ଭାଳ
ରାମାୟଣ ଯୁଦ୍ଧରେ ହୋଇବ ଏହୁ ସାର ।
ଏ ଜମ୍ବୁବତୀଠାରେ ପୁତ୍ରକୁ ତୁ ଦେବୁ
ଜମ୍ବେବର ନାମ ଯାକୁ ଆମେ ଦେଲୁ ବାବୁ ।
ଏତେ କହି ସାବିତ୍ରୀ ସଙ୍ଗେ ଘେନି ଦେବ
ଜମ୍ବୋବତୀ ପୁରରେ ପ୍ରବେଶ ହେଲେବେଗ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ
ଜମ୍ବୋବତୀ ନାରୀ ଯେସେଠାରେ ଯାଇମିଳି ।
ବାଳକ ରୋଦନ ଦେଖି ଚନ୍ଦ୍ରକୁ ପଚାରେ
ସେଦିନ ଶୁଦ୍ଧ ସ୍ନାନ ହୋଇଛି ତାହାରେ ।
ତାହାର ପତି ସଙ୍ଗରେ ନାହିଁ ସେହିଦିନ
ମୁହିଁତ ନାରାୟଣଙ୍କୁ ଦର୍ଶନ କରେ ପୁଣ ।
ଜମ୍ବୋବତୀ ବୋଲେ ଏହି କୁମାର କାହାର
ଭାଲୁର ଶରୀର ତ ଅଟଇ ବଳୀୟାର ।
ଇନ୍ଦ୍ର ଦେବତା ବୋଲେବିଧାତା ଜାତକଲେ
ମୋତେ ଦେଇ ଏ ପୁତ୍ର ନିଜସ୍ଥାନେ ଗଲେ ।
ଏହି ପୁତ୍ର ନାମକୁ ଜମ୍ବେବ ଦେଇଛନ୍ତି
ସବୁଦିନେ ଅମର ଏହି ଦେହସ୍ଥିତି ।
ବୋଇଲେ ଏହି ପୁତ୍ରକୁ ଜମ୍ବୋବତୀକୁ ଦେବ
ତାହାକୁ ଦେଲେ ସେହି ଯତ୍ନରେ ପାଳିବ ।
ଶୁଣିକରି ଯମୁନା ଯେ ଆନନ୍ଦ ହୋଇଲା
ବିଧାତା ପୁରୁଷ ଯେ ମୋଠାରେ ଦୟାକଲା ।
ମୋହର ଶୁଦ୍ଧସ୍ନାନ ପାଳି ଆଜଦିନ
ତୁମ୍ଭଠାରେ ଶଶୀଧର ବଳିଲା ମୋର ମନ ।
ମୋର ସଙ୍ଗେ ତୁମେ ଆଜ କରିବ ଶୃଙ୍ଗାର
ମୋ ଗର୍ଭରେ ତୁମ୍ଭବୀର୍ଯ୍ୟେ ପୁତ୍ର ଜାତକର ।
ଶୁଣିଣ ଶଶୀଧର ଦେବତା ତୋଷ ହେଲେ
ଜମ୍ବୁନାରୀ ସଙ୍ଗରେ ରମଣ ରତି କଲେ ।
ରମଣ ସରିବାରୁ ଚନ୍ଦ୍ର ବୀର୍ଯ୍ୟ ଟଳି
ଜମ୍ବୁକାରୀ ଗର୍ଭରେ ତତ୍କ୍ଷଣେ ଯାଇ ମିଳି ।
ତତ୍କ୍ଷଣେ ଜମ୍ବୁଠାରୁ ପୁତ୍ର ଜାତହେଲା
ଭାଲୁର ଶରୀର ଗୋଟି ଅଙ୍ଗ ଦିଶେ ତୋରା ।
ଦେଖିଣ ଚନ୍ଦ୍ର ଦେବତା ଆକାଶରେ ରହି
ଜମ୍ବୁ ଦୁଇ ପୁତ୍ର ଆନନ୍ଦେ କ୍ଷୀର ଦେଇ ।
ତାହାର ସ୍ୱାମୀ ଯେ ଜମ୍ବେବ ନାମେ ଭାଲୁ
ବଦରି ନାରାୟଣ ଯେ ଦର୍ଶନ କରିବାରୁ ।

ନାରାୟଣ ପ୍ରସନ୍ନ ହୋଇଣ ତାଙ୍କୁ କହି
ଦୁଇଗୋଟି କୁମର ପ୍ରାପତ ତୋତେ ହୋଇ ।
ବ୍ରହ୍ମାଙ୍କର ଏକ ପୁତ୍ର ଚନ୍ଦ୍ରଙ୍କ ନନ୍ଦନ
ସାବିତ୍ରୀ ରୋହିଣିଠାରୁ ଜନମ ହେଲେ ପୁଣ ।
ଭାଲୁରୂପ ଧରି ଯେ କୁମର ଜାତ କଲେ
ତୋର ଘରଣୀ ସେ କୁମର ନେଇଦେଲେ ।
ସେ ଦୁଇ କୁମରକୁ ପାଳୁ ତୋ ଯୁବତୀ
ତୋତେ ସୁମରଇ ତୁହି ଯାଅରେ ତଡ଼ତି ।
ଦେବଙ୍କର ଉପକାରୀ ହେବ ଏ କୁମର
ଯତନରେ ପାଳିବୁ ତୁ ବହୁ ଧର୍ମ ତୋର ।
ଶୁଣିଣ ଆନନ୍ଦ ଯେ ଜମ୍ବେବ ନାମେ ଭାଲୁ
ସେଠାରୁ ଶୀଘ୍ରରେ ଚଳିଲା ବେଲୁ ବେଲୁ ।
ଯୁବତୀ ପାଶରେ ଯାଇ ହେଲା ପରବେଶ
ବାଳକଙ୍କୁ ଦେଖିଣ ହୋଇଲା ହରଷ ।
ଯୁବତୀ ପୁତ୍ର ଦେଖିଣ ନିଜସ୍ଥାନେ ଗଲା
ବେନି ପୁତ୍ରଙ୍କୁ ଯତନେ ସେ ନାରୀ ପାଳିଲା ।
ଶୁଣିଣ ପାର୍ବତୀ ଯେ ମନରେ ତୋଷ ହେଲେ
ନରାୟଣ ବଇକୁଣ୍ଠ କିସ ଲୀଳା କଲେ ।
ଈଶ୍ୱର ବୋଇଲେ ଅନନ୍ତ ନାରାୟଣ
କମଳାକୁ ଘେନି ସଙ୍ଗେ ବିଳସେ ଆପଣ ।
ମାସକେ ଦେବତା ଥରେ କରନ୍ତି ଦରଶନ
ପକ୍ଷକେ ଋଷିମାନେ ଦେଖନ୍ତି ଯାଇ ପୁଣ ।
ତିନିଦିନ ବେଦବର ଦେଖଇ ନେତ୍ରରେ
ପାଞ୍ଚଦିନରେ ମୁହିଁ ମିଳଇ ପାଶରେ ।
ଶ୍ରୀହରି ପାଟଣାରେ ଯେତେକଛନ୍ତି ବାସୀ
ରାତ୍ର ଦିନେ ଦର୍ଶନ କରନ୍ତି ସର୍ବେ ଆସି ।
ଏହି ରୂପେ ଷଡ଼ସସ୍ର ଯୁଗ ବହିଗଲା ।
ଆନନ୍ଦରେ ଶ୍ରୀହରି ବୈକୁଣ୍ଠେ ବିହରିଲା ।
ପାର୍ବତୀ ବୋଇଲେ ଯେ ଯୁଗେକ ବହିଗଲା ।
ରାବଣ ଦେବତାଙ୍କୁ କିମ୍ପାଇ ନ ଛୋଡ଼ିଲା ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ପ୍ରାଣସହୀ
ଶତମୁଖା ରାବଣ ସଙ୍ଗରେ ଯୁଝେ ଯାଇ ।
ସତ୍ୟ ଯୁଗରେ ସେ ଯେ ଚଉଦ ସହସ୍ର
ଏତେଦିନ ପରିଯନ୍ତେ ଯୁଝିଲା ଦଶଈଶ ।
ଶତେମୁଖା ଜିଣିଣ ଧରିଣ ଘେନିଗଲା
ନିଜ ମନ୍ଦିରେ ତାକୁ ନେଇଣ ବନ୍ଦିକଲା ।
ବାଳି ଯେ ବଳରେ ହୋଇଲା ବଳବନ୍ତ
ଚାରି ସମୁଦ୍ରେ ତର୍ପଣ କରଇ ଯାଇ ନିତ୍ୟ ।
ରଣଗୋଳ ବାଳି ଯେ କର୍ଣ୍ଣରେ ଶୁଣିଲା
ଅଲଙ୍କା ଗଡ଼ରେ ଯେ ପ୍ରବେଶ ଯାଇହେଲା ।
ଦେଖିଣ ଶତେମୁଖା ପଚାରେ ଖରକରି
କିରେ ବାନର କିପାଁ ତୁ ଅଇଲୁ ଏ ପୁରୀ ।
ସେ ବଳି ବୋଇଲା ତୁରେ ନଜାଣକିମୋତେ
ତୋର ବଳ କଳିବାକୁ ଆସିଅଛି ଏଥେ ।
ଶୁଣିଣ ଶତେମୁଖା ଧଇଲା ଯାଇ ବଳେ
ସେ ବାଳି ଡେଣା ମେଲାନ୍ତେ ପଡ଼ିଲାକତଳେ ।
ଉଠିଣ କରଯୋଡ଼ି କହଇ ଶତାନନ
ବୋଲେ ତୋବଳଙ୍କୁ ମୋବଳ ହୋଇଲାନିଉନ ।
ଶୁଣିଣ ବାଳିବୀର ସନ୍ତୋଷ ହୋଇଲା
ଏମନ୍ତ ସମୟରେ ବିଶ୍ରବାର ବଳା ।
ସତ୍ୟଯୁଗ ଶେଷ ଯାଇ ତ୍ରେତାଯୁଗ ହେଲା
ଦଶାନନ ରୋଦନ ବାଳି ଯେ ଶୁଣିଲା ।
ଶତେ ଗ୍ରୀବକୁ ପଚାରେ ବାନର ରାଜନ
ବୋଇଲା ତୋର ପୁରେ କେ କରଇରୋଦନ ।
ଶତେଗ୍ରୀବ ବୋଇଲା ସେ ବିଶ୍ରବାର ସୁତ ।
ମୋର ସଙ୍ଗେ ରଣ ସେ କଲାକ ବହୁତ ।
ମୋତେ ସେ ଦଶଗ୍ରୀବ ଯୁଦ୍ଧରେ ହାରିଲା
ବନ୍ଧନେ ରଖିଛି ଶୁଣ ଶୁଣ ବାଳି ଭଲା ।
ଶୁଣିଣ ବାଳି ବୀର ସେଠାରେ ମିଳିଲା
ରାବଣକୁ ବନ୍ଧନୁ ମୁକୁଳାଇ ଦେଲା ।
ମଇତ୍ର କରିଣ ସେହି ମେଳ କରାଇଲା
ସେଠାରୁ ରାବଣ ଯେ ଲଙ୍କାପୁର ଗଲା ।
ବାଳି ଯାଇ ପ୍ରବେଶ କିଷ୍କିନ୍ଧ୍ୟା କଟକରେ
ପୁଣି ଭଗବତୀ କହେ ଈଶ୍ୱର ଆଗରେ ।
ଏରୂପେ ସହସ୍ରେକ ବରଷ ବହିଗଲା
ସ୍ୱର୍ଗରେ ଦେବତାଏ ନିଶ୍ଚିନ୍ତେ ରହେ ପରା ।
ଭଗବତୀ ବୋଇଲେ ଶୁଣ ହେ ଈଶାନ
ସ୍ୱର୍ଗରେ ଦେବତାଏ ବିଚାର କଲେ ପୁଣ ।
କି ରୂପେ ନାରାୟଣଙ୍କୁ ଜନ୍ମ କରାଇଲେ
କି ରୂପେ ଦୈତ୍ୟ ମରାଇନିଶ୍ଚିନ୍ତ ସେ ହେଲେ ।
ତ୍ରିପୁରାରୀ ବୋଇଲେ ଦେବ ବିଚାରିଲେ କୁଟ
ପ୍ରତିଦିନ ବିଚାର କରନ୍ତି ସଭାରେତ ।

ମାସକରେ ଥରେ ବାସୁଦେବଙ୍କ ଆଗେ କହି
ଫେରିଣ ଆସି ନିଜ ନବରେ ଦେବେ ରହି ।
ତପନ କୁଳରେ ଯେ ରଘୁରାଜ ପୁଣ
ଶତେ ଯାଗ କରିବାକୁ ହୋଇଲେ ଭାଜନ ।
ଅଗସ୍ତି ଋଷିଙ୍କି ଯେ ବରଣ କରିନେଲେ
ଯାଗଶାଳ ଶୋଧାଇଣ ନିର୍ମଳ ଯେ କଲେ ।
ଲକ୍ଷଣବନ୍ତ ଘୋଡ଼ାକୁ ତା ପୁତ୍ର ହସ୍ତେଦେଲା
ସ୍ୱର୍ଗରେ ଇନ୍ଦ୍ର ଦେଖି ସେ ଘୋଡ଼ା ଅଟକିଲା ।
ଧନୁ ଧରିଣ ଆଗେ ଯେ ଯୁଝଇ ବାଳପୋଇ
ଦେବତାଗଣ ଘେନିଣ ଇନ୍ଦ୍ର ଯୁଝେ ଯାଇ ।
ବରଷେ ପରିଯନ୍ତେ ତା ସଙ୍ଗେ ଯୁଦ୍ଧ କଲା
ଇନ୍ଦ୍ରଙ୍କୁ ବାନ୍ଧିନେଇ ରଥରେ ପକାଇଲା ।
ଦେବଙ୍କୁ ମାରନ୍ତେ ସେ ପଳାନ୍ତି ଦେବଗଣ
ଦଶଦିଗପାଳେ ଯାଇ ହାରିଗଲେ ପୁଣ ।
ଇନ୍ଦ୍ର ଦେବତା ଯେ ଅଜକୁ କହେ ବାଣୀ
ସ୍ୱର୍ଗରେ ଇନ୍ଦ୍ର ଯାଇ ହୁଅଇ ପୁତ୍ରମଣି ।
ଦୁହେଁ ଯାଇ ମିଳି ଆମ୍ଭେ ହୋଇବା ନୃପତି
ଏତେବୋଲି ଦୁଇଜଣ ସ୍ୱର୍ଗରେ ମିଳନ୍ତି ।
ଦୁଇଜଣ ସଲାରେ ସ୍ୱର୍ଗରେ ଇନ୍ଦ୍ର ହେଲେ
ବରଷକ ଅନ୍ତେ ଇନ୍ଦ୍ର ଅଜ ଯେ ହୋଇଲେ ।
ପିତାର ଆଗରେ ପୁତ୍ର ଯାଇଣ କହିଲା
ବରଷକେ ମୁଁ ଇନ୍ଦ୍ର ହେଲି ବୋଲିଣ ବୋଇଲା ।
ଅନେକ ଯୁଦ୍ଧ କଲେ ମିଳିଣ ଦେବଗଣ
ସମସ୍ତେ ହାରିଣ ଯେ ଗଲେ ନିଜସ୍ଥାନ ।
ଇନ୍ଦ୍ର ହାରିବାରୁ ଯେ ସଙ୍ଗରେ ମୋତେନେଲା
ଅର୍ଦ୍ଧେକ ଇନ୍ଦ୍ରପଦ ମୋତେ ଯେ ସମର୍ପିଲା ।
ତୋତେ ଦେଖିବାନିମନ୍ତେ ଅଇଲୁଁ ଏଥିପିତା
ଶୁଣିଣ ରଘୁରାଜା ହୋଇଲା ଅଚିନ୍ତା ।
କୁଶ ତିଳପାଣି ଯେ କରେ ଧରି ପୁଣ
ଇନ୍ଦ୍ରକୁ ଦାନକରିଦେଲେ ଶତେ ଯୋଗଜାଣ ।
ଦାନ ଘେନି ଇନ୍ଦ୍ର ଯେ ସ୍ୱର୍ଗପୁର ଗଲା
ସୁର ରାଜା ପଣରେ ଯାଇଣ ବସିଲା
ସେଠାରେ ରଘୁରାଜା ଶତେକ ଯାଗକଲେ ।
ଦୁଇଶତ ବରଷରେ ଯାଗ ନିର୍ବାହେଲେ ।
ଦେବତାଏ ହବି ଖାଇ ହେଲେ ତୋଷମନ
ବାହୁଡ଼ିଣ ଋଷିକି ଯେ ଦେଲେ ବହୁଦାନ ।

ମୁନିଙ୍କି ମେଲାଣି ଦେଇ ସନ୍ତୋଷ କରାଇଲେ
ଦୁଃଖୀ ଦରିଦ୍ର ମାନଙ୍କୁ ଅନେକ ଧନଦେଲେ ।
ପୁତ୍ରକୁ ରାଜା କରି ଚଳିଲେ ରଘୁରାଜ
ବନସ୍ତେ ତପ କରି ଚଳେ ଯମୁନା ତଟଭାଗ ।
ଏକଦିନେ ରାବଣ ଅଶ୍ୱରେ ବୁଲିଗଲା
ରଘୁ ତପିକି ଦେଖି ସେ ଜୀବନେ ମାଇଲା ।
ରଘୁରାଜ ବୋଇଲେ ଶୁଣରେ ଅସୁର
ନିର୍ଦ୍ଦୋଷିକି କମାଇଲୁ ଦୋଷ ଯେହେଲା ତୋର ।
ମୋର ବଂଶର ହସ୍ତେ ନାଶହେବେ ତୋରବଂଶ
ନିର୍ମୂଳ ହୋଇବେତୋର ନ ରହିବେ ଅଂଶ ।
ଏତେକହି ରାଜନ ଯେ ସ୍ୱର୍ଗପୁର ଗଲା
ଦେଖିଣ ଇନ୍ଦ୍ର ଦେବତା ଗଉରବ କଲା ।
ଅମରାବତୀ ପୁରରେ ନେଇଣ ସ୍ଥାନ ଦେଲା
ଭାଗ୍ୟରଥି ମାନଧାତା ସଙ୍ଗରେ ରହିଲା ।
ପାର୍ବତୀବୋଇଲେତାର ପୁତ୍ରେକ୍ୟେ ରାଜା ହେଲେ
ପିତାର କଥା ଶୁଣି କିସ ସେ ବୋଇଲେ ।
ଈଶ୍ୱର ବୋଇଲେ ଅଜ ନୃପତି କର୍ଣ୍ଣେ ଶୁଣି
ଅନେକ ସୈନ୍ୟ ବଳ ସେ ସଜକଲା ପୁଣି ।
ନାରଦ ଆସିଣ ଯେ ଅଜକୁ ଦେଖାଇଲେ
ତୋର ହାତେ ତାର ମୃତ୍ୟୁ ନାହିଁସେବୋଇଲେ ।
ଗଲେ ତୁ ଅକାରଣ ହୋଇବ ତୋର ଯୁଦ୍ଧ
ପିତାଶାପ ଦେଇଣ ଗଲେ ସ୍ୱର୍ଗପୁର ମଧ ।
ଶୁଣିଣ ଅଜରାଜା ଶାନ୍ତ ହୋଇ ରହି
ପିତାର କ୍ରିୟା ସାରି ଅନେକ ଦାନ ଦେଇ ।
ଶତେକ ରାଣୀ ସେ ଯେ ବିଭା ହେଲା ପୁଣ
ସେହି ଯାଗ କରିଥିଲେ ପୁତ୍ର ନ ଥିବାରେଣ ।
ହବିର୍ଭାଗ୍ୟ ଖାଇ ଦେବସନ୍ତୋଷ ହୋଇଲେ
ବିପ୍ର ଋଷିମାନଙ୍କୁ ଅନେକ ଧନ ଦେଲେ ।
ଦୁଃଖୀ ଦରିଦ୍ରଙ୍କୁ ଅନେକ ଧନରତ୍ନ ନେଲେ ।
ପାତ୍ର ମନ୍ତ୍ରୀ ଅମନାତ୍ୟ ଆନନ୍ଦ ହୋଇଲେ ।
ଅନେକ ପ୍ରଶଂସା ଯେ କରନ୍ତି ସର୍ବଜନ
ଦଶ ସସ୍ର ବରଷ ରାଜ୍ୟ କଲା ସେ ରାଜନ ।
ଦେବଗଣ ସ୍ୱର୍ଗରେ ବିଚାର କଲେ ପୁଣ
ରାଜାର ପୁତ୍ର ହେଲେ ପ୍ରଜାର କାରଣ ।
ଏମନ୍ତ ବିଚାର ଦେବେ ବହୁତ ସ୍ତୁତି କଲେ
ବେଦବର ସେଠାରେ ଆସିଣ ମିଳିଲେ ।

ଦେବତାଏ ବୋଲେ ଅଜରାଜାର ହେଲେପୁତ୍ର
ଅନେକ ସେ ଉପକାର କରିବ ଆମ୍ଭନ୍ତ ।
ବେଦବର ଦେବଙ୍କୁ ଘେନିଣଚଳିଗଲେ
କଶ୍ୟପ ଋଷିପୁରେ ପ୍ରବେଶ ଯାଇ ହେଲେ ।
ଋଷିଙ୍କି ଦେଖି ସର୍ବେ କଲେ ନମସ୍କାର
ସୁକଲ୍ୟାଣ କରି ଋଷି ଆନନ୍ଦେ ହେଲେ ଭୋଳ ।
ସକଳ ଦେବତାଙ୍କୁ ପଚାରେ ପିତାମହ
କେବଣ କାରଣେ ଅଇଲ ମୋର ଗୃହ ।
ବେଦବର ବୋଇଲେ ଆମ୍ଭେ ଯେ ବଡ଼କଷ୍ଟି
ଦୈତ୍ୟବଳ ଆମ୍ଭଙ୍କୁ ଧରିଣ ଦ୍ୟନ୍ତି ଶାସ୍ତି ।
ଦେବାଧି ଦେବରାଜ ଯେ ବୋଲାନ୍ତି ଚକ୍ରଧର
କ୍ଷୀର ସାଗର ଭିତରେ ଶୟନ ତାଙ୍କର ।
ସହସ୍ରେ ବରଷ ପରିଯନ୍ତେ ଯେ ସୁମରିଲୁ
ଚିତ୍ତ ନିଶ୍ଚଳ କରି ଯେ ମନରେ ଧ୍ୟାଇଲୁ ।
ତେବେ ହେ ନିଦ୍ରାଭଙ୍ଗ ନୋହିଲା ଦେବଙ୍କର
ଅଙ୍ଗିରା ଋଷି ଯାଇ ମିଳିଲେ ସେଠାର ।
ଆମ୍ଭର ଧ୍ୟାଇବାର ଜାଣିଣ ଦେବହାରୀ
ସେ ଋଷିର ଆଗରେ କହିଲେ ବିସ୍ତାରି ।
ବୋଇଲେ ସେମାନଙ୍କୁ ଆଗକୁ ତୁମ୍ଭେ ଆଣ
ଶୁଣିଣ ମୁନିବର କହିଲେ ଯେ ପୁଣ ।
ଆଜ୍ଞା ପାଇ ଦେବତା ସକଳ ଆମ୍ଭେ ଗଲୁ
ଆମ୍ଭର ବେଦନା ଯେ ତାହାଙ୍କୁ ଜଣାଇଲୁ ।
ବୋଇଲେ ବାନରଭାଲୁ ରୂପେ ପୁତ୍ର କରଜାତ
ତେବେ ସେ ଅସୁରେ ଟି ମରିବେ ନିୟତ ।
ଆମ୍ଭେ ଜାତ ହୋଇବୁଟି ତପନର କୁଳେ
ଅଯୋଧ୍ୟା ନଗ୍ରରେ ଯେ ଦଶରଥଙ୍କ ଘରେ ।
ଦୈତ୍ୟଙ୍କୁ ମାରି ଆମ୍ଭେ ରହିବୁ ନିଶ୍ଚିନ୍ତ
ଏତେ ବୋଲି ଆଜ୍ଞା ଦେଲେ କମଳାରକାନ୍ତ ।
ତାହାଙ୍କର ଆଜ୍ଞାରେ ସମସ୍ତେ ଆମ୍ଭେ ଗଲୁଁ
ବାନର ଭାଲୁଙ୍କ ସଙ୍ଗେ ଯାଇଣ ପ୍ରୀତିକଲୁ ।
ନଉ ସାଗର କୁମର ଜାତ ଯେ କରାଇଲୁଁ
ବାସୁଦେବର ଆଜ୍ଞାରେ ସେ କଥା ଆମ୍ଭେକଲୁ ।
ଏବେ ତୁମ୍ଭଙ୍କୁ ଜଣାଣ କରୁଛୁ ଯେ ପୁଣ
ମର୍ତ୍ତ୍ୟପୁରେ ତୁମ୍ଭେ ଜାତ ହୋଇବ ଯେ ଜାଣ ।
ଅଜ ରାଜା କୋଳରେ ତୁମ୍ଭେ ଜାତ ହେବ
ଦଶରଥ ନାମ ଯେ ତୁମ୍ଭର ବୋଲାଇବ ।
ତୁମ୍ଭର କୋଳେ ଜାତହୋଇବେ ବାସୁଦେବ
ଦୁଇନାରୀ ଘେନି ତୁମ୍ଭେ ମର୍ତ୍ତ୍ୟପୁରେ ଯିବ ।
କଶ୍ୟପ ବୋଇଲେ ଆମ୍ଭର ଯିବା ହେଲାମୂଳ
ତେବେ ବାସୁଦେବ ଜନ୍ମ ହୋଇବେ ତୋକୋଳ ।
ଏତେ ବୋଲି ଋଷି ଯେ ଦେବଙ୍କୁ କହିଲେ
ଯାଅ ତୁମ୍ଭେ ଆମ୍ଭେଯିବୁଁ ବୋଲି ଯେ ବୋଇଲେ ।
ଏତେ ବୋଲି ମୁନି ଯେ ହକାରି ବେନିନାରୀ
ଅଦିତି ପ୍ରହେତି ଯେ ମିଳିଲେ ଯାଇକରି ।
କରଯୋଡ଼ି ଆଗେ ଯେ ଉଭା ଦେବନାରୀ
ମୁନି ବୋଇଲେ ତୁମ୍ଭେ ଶୁଣ ଗୋ ସୁନ୍ଦରୀ ।
ଦେବକାର୍ଯ୍ୟ ନିମନ୍ତେ ଯିବା ଯେ ମର୍ତ୍ତ୍ୟପୁରୀ
ତିନିଠାବ ହୋଇ ଜନ୍ମ ହେବ ଯେ ଆମ୍ଭରି ।
କକେଇ ରାଜାଘର କଉଶିକ ରାଜଘରେ
ତୁମ୍ଭେ ଦୁହେଁ ଜାତ ହେବ ଯାଇଣ ସତ୍ୱରେ ।
ତପନ କୁଳରେ ଯେ ଅଯୋଧ୍ୟା ନଗ୍ରରେ
ମୁହିଁ ଜାତ ହେବି ଯେ ଅଜ ରାଜା କୋଳେ ।
ସୂର୍ଯ୍ୟବଂଶ ମଣ୍ଡଳ ନୃପତି କାଳ ରାହୁ
ମୋର ନାମ ଦଶରଥ ହୋଇବ ଯେ ତହୁଁ ।
କକେଇ ରାଜା କୋଳରେ ପ୍ରହେତିଜାତ ହେଉ
ଚନ୍ଦ୍ରଦେଣ ଉଦରେ ଜନ୍ମ ହେବେ ତହୁଁ ।
ଦାଳେ ମୋତେ ପ୍ରାପତି ହୋଇବୁ ତହିଁ ପୁଣ
ବଡ଼ ପାଟ ମୋହର ହୋଇବୁ ତୁ ଜାଣ ।
ତୋହର ସମାନେ ଯେ ଚାରିଶତ ନାରୀ
ସମସ୍ତେ ମୋତେ ଯେ ଖଟିବେ ସମସରି ।
ସମସ୍ତଙ୍କୁ ବିଭା ଦେବି ହେବ ମୋର ପାଟ
ତାଙ୍କ ପରେ ତୁମେ ଯେ ହୋଇବ ପୁଣି ଶ୍ରେଷ୍ଠ
ଶୋଭା ପଣେ ଚନ୍ଦ୍ରର ରୋହିଣୀ ସଙ୍ଗେ ସରି
ତେବେ ମୋର ମନ ଯେ ମୋହିବୁ ସୁନ୍ଦରୀ ।
ଅଧେ ଅଂଶ ତୋହର ଯେ ଲୀଳାବତୀ ହେବ
ଗିରିଜା ମଣ୍ଡଳରେ ଜାତ ଯେ ହୋଇବ ।
ଅତ୍ୟନ୍ତ ସୁନ୍ଦର ଯେ ହୋଇବ ସେ ନାରୀ
ସେହିକନ୍ୟା କାଳେ ପୁଣ ମୋତେ ଦେବବରି ।
ମୁହିଁ ବିଭା ହୋଇଣ ସେ ଆଣିବି ନବର
ଚାରିଶତ ନାରୀରେ ଶ୍ରେଷ୍ଠ ହେବମୋର ।

ଏତେବୋଲି ପ୍ରହେତିକି ମଣାଇ କହିଲେ
ମୁହିଁ ଯାଉଅଛି ତୁମେ ପଛେ ଆସ ଭଲେ ।
ଶୁଣିକରି ପ୍ରହେତି ମନରେ ସନ୍ତୋଷ
ବୋଇଲା ମୁହିଁ ଯିବି ଗଲେ ଷଡମାସ ।
ଏକ ଅଂଶ ଗୋଟି ମୋର ଦୁଇଭାଗ ହେବ
ଅଧେ କକେୟା ଅଧେ ଲୀଳାବତୀ ଭାବ ।
ଚାରିଶତ ଦାସୀ ଯେ ଅଛନ୍ତି ମୋହର
ମୋହର ଅଂଶେଜାତ ହ୍ୱନ୍ତୁ ସେ ମର୍ତ୍ତ୍ୟପୁର
ପଞ୍ଚବିଂଶ ପ୍ରଜାଘର ଜନମ ହୋଇବ
ତୁମ୍ଭଙ୍କୁ ବରଣ କରି ସେହି ବିଭାହେବ ।
ମୋହର ସପତଣୀ ହୋଇବେ ସେମାନେ
ମୋର ସଙ୍ଗେ ସୁଖଭୋଗ କରିବେକ ତେଣେ
ଶୁଣିଣ କଶ୍ୟପ ଋଷି ସନ୍ତୋଷ ହୋଇଲେ
ଅଦିତିକି ଚାହିଁ ପୁଣ ବଚନ ବୋଇଲେ ।
ତୁମ୍ଭେ ଜାତ ହୁଅ କଉଶିକ ରାଜାକୋଳେ
କଉରବ ପୁର ରାଜା ଅଟଇ କୁଶଳେ ।
ଏକଅଂଶ ଗୋଟି ତୋର ଦୁଇଭାଗ ହେବ
ଅର୍ଦ୍ଧେକ ଅଂଶ ତୋର ସୁମନ୍ତ ପୁରେ ଯିବ ।
ଚନ୍ଦ୍ରାବତୀ ଗର୍ଭରେ ଯାଇଣ ଜାତ ହେବ ।
ସୁମିତ୍ରା ବୋଲିଣ ଯେ ହୋଇବ ତାରନାମ
କାଳେ ମୋତେ ବରିବୁ ହୋଇଣ ପରସନ ।
ତେବେ ତୋତେ ବିଭାହୋଇ ଅଯୋଧ୍ୟା ଆସିବି
ଶୋଭାରେ ତୁ ସୁନ୍ଦର ହୋଇବୁ ବାନ୍ଧବୀ ।
ତୋର ଅଂଶେ ଜାତ ହେବେ ତିନିଶତନାରୀ
ସମସ୍ତେ ସୁନ୍ଦର ତ ହୋଇବେ ଶୋଭାକାରୀ ।
ଅଦିତି ବୋଇଲେ ମୋର ତିନିଶ ପଞ୍ଚାଶ
ମୋହର ଅଂଶରେ ହୁଅନ୍ତୁ ଏହୁ ଜାତ ।
ଏ ଜନ୍ମେ ଦାସୀ ମୋର ହୋଇଛନ୍ତି ପୁଣ
ସେ ଜନ୍ମେ ସପତଣି ହୋଇବେ ମୋର ଜାଣ ।
ବତିଶ ରାଜାଘରେ ଯାଇଣ ଜନ୍ମହେବେ
କାଳେଣ ତୁମ୍ଭଙ୍କୁ ଯେ ବରଣ ଲଭିବେ ।
ମୋର ଅଂଶ ଗୋଟି ହେବ ଦୁଇଯେ ଶରୀର
ମୋରକୋଳେ ଜାତହେବେ କମଳାର ବର ।
ଆର ଅଂଶରେ ମୋର ଅନନ୍ତ ଜାତହେବେ
ଶୁଣିଣ କଶ୍ୟପ ଯେ ବୋଇଲେ ସଦଭାବେ ।

ପ୍ରହେତୀ ବୋଇଲେ ଯେବେ ଅନନ୍ତନାରାୟଣ
ତୋକୋଳେ ଜାତହେଲେ ମୁଁ ହୋଇ ଅକାରଣ
କଶ୍ୟପ ବୋଇଲେ ତୋତେ କାରଣ ବାଟ ଅଛି
ଏକା ନାରାୟଣ ଯେ ହୋଇବେ ତିନିମୂର୍ତ୍ତି ।
ତୋର ଗର୍ଭେ ଅଂଶେ ଯେ ସୁମିତ୍ରା ଗର୍ଭେ ଜାତ
ତିନିଙ୍କର କୋଳେ ବାସୁଦେବ ଯେ ସଂଯାତ ।
ଶୁଣିଣ ଦୁଇନାରୀ ସନ୍ତୋଷ ହୋଇଲେ
ଦେବତାଙ୍କୁ ଚାହିଁଣ ଋଷି ଯେ କହିଲେ ।
ବୋଇଲେ ନିଜପୁର ଚଳ ଭଲେ ଏବେ
ଆଜ ଆମ୍ଭେ ମର୍ତ୍ତ୍ୟପୁର ଯିବୁ ସଦଭାବେ ।
ଋଷିଗଣ କହିବାରୁ ଯେ ଦେବତାଗଣଗଲେ
ସୁଧର୍ମା ସଭାରେ ଯାଇ ସମସ୍ତେ ଠୁଳହେଲେ ।
ଏଥୁ ଅନନ୍ତରେ ତୁଗୋ ଶୁଣ ଭଗବତୀ
ଦୁଇ ରାଣୀକି କହିଣ କଶ୍ୟପ ଋଷି ଯାନ୍ତି ।
ମର୍ତ୍ତ୍ୟପୁରେ ଅଯୋଧ୍ୟା ନଗ୍ରରେ ପରବେଶ
ଜ୍ୟୋତି ରୂପଧରି ରାଜା ଦେହରେ ପରକାଶ ।
ତାହାର ଭାରିଯା ଯେ ଲଳିତା ନାମେ ନାରୀ
ଶତେ ମହାଦେଈ ପରେ ସେହୁ ଶ୍ରେଷ୍ଠନାରୀ ।
ସେ ନାରୀ ପାକସ୍ନରଣ ଆଗେ ହୋଇଥିଲା
ତେବେ ତାହାର ଶୁଦ୍ଧ ସ୍ନାନ ଯେ ହୋଇଲା ।
ରାତ୍ରରେ ପାଟରାଣୀ ସୁସଞ୍ଜ ବେଶ ହୋଇ
ନାନା ଅଳଙ୍କାର ଯେ ମଣ୍ଡିଲେ ଅଙ୍ଗେ ନେଇ ।
ନାନା ବର୍ଣ୍ଣରେ ପୁଷ୍ପ ଆଭରଣ କଲା
ଗନ୍ଧ ଚନ୍ଦନ ନେଇ ଅଙ୍ଗରେ ଲଗାଇଲା ।
ଦେବାଙ୍ଗ ପଟନି ଯେ ହୃଦେପଦ୍ମେ ତାର
ଇନ୍ଦ୍ର ଗୋବିନ୍ଦ ପାଟେ ଯେ ପିନ୍ଧିଲା ନାରୀବର ।
କାପ ମଲକଢ଼ି ଯେ ଅଳକା ମଥାମଣି
ତାଡ଼ ବିଦ ବାହୁଟି ଝମ୍ପା ଯେ ଲାଏ ପୁଣି ।
କମ ତାଡ ପାହୁଡ଼ ବାଜେଣି ନୂପୁର
ଏମନ୍ତ ପ୍ରକାର ଯେ ଭୂଷଣ ଅଳଙ୍କାର ।
ଏମନ୍ତ ପ୍ରକାରେ ଯେ ଭୂଷଣ ପାଟରାଣୀ
ସ୍ୱାମୀ ଛାମୁରେ ପ୍ରବେଶ ହେଲା ଜାଣୀ ।
ଓଳଗି ମେଲାଏ ଯେ ସ୍ୱାମୀଙ୍କୁ ଦେଖିଣ
ଚରଣ ତଳରେ ବସିଲା ଯାଇ ପୁଣ ।
ତାରସଙ୍ଗେ ଯେତେ ଯେ ଦାସୀ ଯାଇଥିଲେ
ରାଜାର ପାଶେ ଛାଡ଼ିଣ ବାହୁଡ଼ି ଅଇଲେ ।

ଦେଖିଣ ଅର୍ଦ୍ଧରାଜା ନେଇଣ କୋଳକଲା
ମୁଖରେ ଚୁମ୍ବନ ଦେଇ କୁଚ ମରଦିଲା ।
ନିବିବନ୍ଧ ଫିଟାଇଣ କଲାକ ରତିରଣ
ଖସିଲାକ ବୀର୍ଯ୍ୟ ଯେ ହୋଇଣ ତାନମାନ ।
ଲଳିତା ପାଟରାଣୀ ଗର୍ଭରେ ସମ୍ଭୁତ
କଶ୍ୟପ ରାଣୀ ଗର୍ଭେ ହୋଇଲେ ଥାଇତ୍ୱ ।
କଶ୍ୟପ ଜ୍ୟୋତି ରାଜା ନିସତ ହେଲା
ରାଣୀ ଗର୍ଭେ ରହିବାରୁ ହରଷ କରାଇଲା ।
କୋଳାଗ୍ରତ ହୋଇଣ ଶୁଣିଲେ ବେନିଜଣ
ପାହାନ୍ତି ନିଶି ହେବାରୁ ଅଇଲେ ଦାସୀଗଣ ।
କବାଟ ଫିଟାଇ ଯେ ରାଣୀକି ଉଠାଇଲେ
ପହଣ୍ଡ ମଣାଇ ଭିତରେ ପୁରେ ନେଲେ ।
ମର୍ଦ୍ଦନ ମାଜଣା ଯେ କଲେକ ବେଢ଼ିପୁଣ
ସୁବାସିତ ଜଳଧେ କରାଇଲେ ସ୍ନାନ ।
ନିତ୍ୟକର୍ମ ବିଧି ଯେ କରାଇ ଦାସୀଗଣ
ଅମୃତ ଭୋଜନ ରାଣୀ କଲେକ ଯାଇଣ ।
ସେ ଦିନରାଣୀ ଦେହ ଅଳସ ହୋଇଲା
ପଲଙ୍କ ସୁପାତିରେ ଯାଇଣ ବିଜେକଲା ।
ବିଡ଼ିଆ ଭୁଞ୍ଜିଣ ଯେ ଶୟନ ରାଣୀ କରି
ଦାସୀମାନେ ଚରଣ ଧରିଣ ମଞ୍ଚାଳି ।
ପାର୍ବତୀ ବୋଇଲେ ଦେବ କଥାଏ ରହିଲା
ରାଣୀର ସଙ୍ଗେ ରାଜା ସ୍ନେହ କରିଥିଲା ।
ସେ ପୁଣି କିସ କଲେ କହ ତ୍ରିଲୋଚନ
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ସେ ବଚନ ।
ରାଣୀ ଯିବାରୁ ରାଜା ଶୟନରୁ ଉଠିଲା
ବାହାରେ ଅବକାଶ ଯାଇ ପୁଣ ହେଲା ।
ମର୍ଦ୍ଦନ ମାଜଣା ଯେ ହୋଇଣ ସ୍ନାନ କଲେ
ଦେବାର୍ଚ୍ଚନ ବିଧିସାର ବିପ୍ରେ ଦାନଦେଲେ
ଭୁର ଭୋଜନ ଦେଇଣ ବିପ୍ରଙ୍କୁ କଲେ ତୋଷ
ଦୁଃଖୀ ଦରିଦ୍ରମାନଙ୍କୁ ଦେଲେ ଅନ୍ନବସ୍ତ୍ର ।
ମହେଶ୍ୱର ଦେବତା ଯେତେକ ସ୍ଥାନେ ଥିଲେ
ତାଙ୍କ ପଛେ ଗୋଧନ ଯେ କ୍ଷୀର ନିଉଡ଼ିଲେ ।
ବିଷ୍ଣୁ ମୂର୍ତ୍ତି ଯେତେଠାରେଥିଲେକ ଛାୟାରୂପ
ଅମୃତ ମଣୋହି ତାଙ୍କୁ କରାଇଲେ ନୃପ ।
ଯେତେଠାରେ ଗ୍ରାମ ଦେବତୀମାନେ ଥିଲେ
ବୋଦା ଛାଗଳ ଦେଇଣ ତାହାଙ୍କୁ ତୋଷିଲେ ।।

ବିରଞ୍ଚି ନାରାୟଣ ଅଟନ୍ତି ଇଷ୍ଟପୁଣ
ତାହାଙ୍କୁ ଦର୍ଶନ ଯାଇ କଲାକ ରାଜନ ।
ଶୀତଳ ପଦାର୍ଥମାନ ସେ ଯେ ଭୋଗଦେଲା
ନିଉନ ହୋଇଣ ରାଜା ଛାମୁରେ ଜଣାଇଲା ।
ମୋରଠାରୁ ଅଂଶ ହେଉ ଯେ ଅଛି ଶୂନ୍ୟେ
ପୁତ୍ର ଦାନ ଦିଅ ମୋତେ ବିରଞ୍ଚି ନାରାୟଣ ।
ଏତେ କହି ରାଜା ପ୍ରସାଦ ସେବାକଲା
ନିଜ ମନ୍ଦିରକୁ ସେ ଲେଉଟିଣ ଗଲା ।
ଅମୃତ ସମାନରେ ଭୋଜନ ରାଜାକରି
ବିଡ଼ିଆ ଭୁଞ୍ଜିଣ ଯେ ପଲଙ୍କେ ପହୁଡ଼ି ।
ନିଦ୍ରାରେ ଅଚେତନ ହୋଇଲେ ରାଜନ
ସ୍ୱପ୍ନରେ ଦେଖିଲା ଯେ ବିରଞ୍ଚି ନାରାୟଣ ।
ମସ୍ତକପରେ ବସିଣ ନାରାୟଣ ଯେ କହି
ଲଳିତା ରାଣୀ ଗର୍ଭରେ ଆଜ ଯେ ସ୍ଥିତ ହୋଇ ।
ଦେବକୀର ତାତ ଯେ କଶ୍ୟପ ଋଷି ପୁଣ
ତାହାର କୋଳରେ ହୋଇବେ ସେ ଉତପନ୍ନ ।
ସ୍ୱର୍ଗପୁର ତେଜିଣ କାଲି ସେ ଅଇଲେ
ତୋହର ଶରୀରେ ଜ୍ୟୋତି ପୁରୁଷ ପଶିଲେ ।
ସେ ଜ୍ୟୋତି ବୀର୍ଯ୍ୟ ରୂପ ହୋଇଲା ତୋହର
ପାଟରାଣୀ ଗର୍ଭରେ ବିଜୟ ମୁନିବର ।
ଦଶମାସ ଦଶଦିନେ କୁମର ହେବ ଜାତ
ସେ କୁମର ତୋହର କୋଳକୁ ପବିତ୍ର ।
ଦୁଇଗୋଟି ଚରଣ ଯେ ଅଷ୍ଟଗୋଟି ହସ୍ତ
ସେହି ପୁତ୍ରଗୋଟି ତୋହର ହୋଇବ ଶ୍ରୀମନ୍ତ
ଏତେକହି ନାରାୟଣ ଅନ୍ତର୍ଦ୍ଧାନ ହେଲେ
ଚେତାପାଇ ଅଜରାଜା ନିଦ୍ରାରୁ ଉଠିଲେ ।
କିମ୍ଭୁତ କଥା ନିଦ୍ରାରେ ଦେଖିଲି ବିଚାରି
ସତେ କି ମୋର କୁଳ ରଖିବେ ନରହରି ।
ଏମନ୍ତ ବିଚାରି ରାଜା ବାହାରେ ଅବକାଶ
ବଶିଷ୍ଠ ବାମଦେବ ମିଳିଲେକ ପାଶ ।
ତାହାଙ୍କୁ ଦେଖି ରାଜା ନମସ୍କାର କଲା
ବସିବାକୁ ନେଇ ଦିବ୍ୟ ଆସନ ଯେ ଦେଲା ।
ଆସନେ ବସାଇ ଯେ କହଇ କରଯୋଡ଼ି
ନିଦ୍ରାରେ ସ୍ୱପନ ଯେ ମୁଁ ଦେଖିଲି ଆଜଫେଡ଼ି ।
ମସ୍ତକ ପରେ ମୋର ଏକଇ ଦ୍ୱିଜବର
ଚତୁର୍ଭୁଜ ପ୍ରକାରେ ନିଳେନ୍ଦି ରୂପ ତାର ।

ମୋତେ ବୋଇଲେ ରାଜନ ଚିନ୍ତା ତୁ ନକର
ଆଜହୁଁ ଦଶମାସରେ ହୋଇବ କୁମର ।
ଦୁଇଗୋଟି ଚରଣ ଅଷ୍ଟଭୁଜ ତାର
କ୍ଷତ୍ରୀପଣେ ଅର୍ଗ୍ଗଳ ହେବ ସେ କୁମର ।
ଏତେ କହି ଅନ୍ତର୍ଦ୍ଧାନ ହୋଇଣ ସେ ଗଲେ
ବଶିଷ୍ଠ ବୋଇଲେ ଯେ ସେ କଥା ହେବଭଲେ ।
ତୋର ଇଷ୍ଟ ଦେବତାଯେ ଅଟଇ ଦ୍ୱିଜବର
କାହାରି ଆଗରେ ତୁ ଯେ ପ୍ରକାଶ ନକର ।
ଶୁଣିଣ ଅଜରାଜା ଯେ ସନ୍ତୋଷ ହୋଇଲା
ଦେବାର୍ଚ୍ଚନ ଭାଙ୍ଗିରାଜା ଭିତର ପୁରେଗଲା ।
ଅନ୍ତଃପୁର ଭିତରେ ଦାସୀକି ଯାଇ କହି
ମହାଦେଈ ଅଣାଇ ଖେଳରେ ଭୋଳ ହୋଇ ।
ପାଞ୍ଚମାସରେ ରାଜାର ଆଗେ ଦାସୀ କହି
ବଡ଼ ପାଟ ତୁମ୍ଭର ଗର୍ଭବାସ ହୋଇ ।
ଆଜକୁ ପାଞ୍ଚ ମାସ ଯେ ହୋଇଲା ଦେବ ପୁଣ
ଅଶକତ ହେଲେ ରାଣୀ ଏଥର ତୁମ୍ଭେ ଜାଣ ।
ଶୁଣିଣ ଅଜରାଜା ଆନନ୍ଦ ମନ ହେଲା
ନାରାୟଣଙ୍କୁ ମନରେ ସୁମରଣା କଲା ।
ଅଷ୍ଟମାସ ହୁଅନ୍ତେ ଯେ ଗର୍ଭଦାନ କରି
ଋଷ ବ୍ରାହ୍ମଣମାନଙ୍କୁ ଅନେକ ଦାନଭରି ।
ଭୁରି ଭୋଜନ ଅମୃତ ସମାନେ ପୁଣ ଦେଲେ
ଦରିଦ୍ର ଲୋକଙ୍କୁ ଯେ ଧନ ବିଳମ୍ବିଲେ ।
ହାଟ ବାଟ ଯୁର କରି ଧୋବା ତୁଠ ସ୍ୱର
ସମସ୍ତଙ୍କୁ ଧନ ଲେଖିଦେଲା ନୃପବର ।
ଏମନ୍ତେ ଦଶମାସ ଦଶଦିନ ଗଲା
ଲଳିତା ପାଟରାଣୀ ପେଟ ଯେ ବଥାଇଲା ।
ରାଜାର ଆଗରେ ଦାସୀ ଯାଇଣ ଯେ କହି
ରାଣୀର ଦେହେ ଶୂଳ ପ୍ରାସ ତ ଗୋସାଇଁ ।
ଏମନ୍ତ ସମୟରେ ଆର ଦାସୀ ଆସି
ପୁତ୍ର ଜନ୍ମ ହେଲା ବୋଲି କହିଲାକି ହସି ।
ଆରେକ ଦାସୀ ଆସି ରାଜାର ଆଗେ କହି
କୁମରେ ଜାତ ହେଲା ଯେ ଅସମ୍ଭାଳ ହୋଇ ।
ଦୁଇଗୋଟି ଚରଣ ଯେ ଅଷ୍ଟଗୋଟି ହସ୍ତ
ତଳେ ପଡ଼ିବାରୁ ପୁତ୍ର ବିଶେ ତେଜବନ୍ତ ।
ଶୁଣିଣ ରାଜନ ଯେ ଧାଈକି କହେ ବାଣୀ
ହେଳା ନକରି ଯତନ କର କୁମରମଣି ।

ରାଣୀକି ଉତ୍ତମ କରି ଯାଇଣ ପ୍ରତିପାଳ
ସେମାନଙ୍କୁ ବଧାଇ ଦେଲାକ ମହୀପାଳ ।
ପାଞ୍ଚଦିନେ ପଞ୍ଚୁଆତି ବିଧି ଯେ ରାଜାକଲେ
ପଞ୍ଚାମୃତରେ ସ୍ନାହାନ ରାଜା କରାଇଲେ ।
ରାଜାର କୋଳେ ରାଣୀ ଦେଲେକ ନନ୍ଦନ
କୋଳେ ଧରି ଆନନ୍ଦ ସେ ହୋଇଲେ ରାଜନ ।
ଅଳଙ୍କାର ଆଭରଣ ରାଜନ ପୁତ୍ର କଲେ
ଋଷିମାନେ ପଦଧୂଳି ଅର୍ଘ୍ୟ ନେଇ ଦେଲେ ।
ବଶିଷ୍ଠ ବୋଇଲେ ରାଜା ପୁତ୍ର ନାମ ଦିଅ
ରାଜନ ବୋଇଲେ ଗୁରୁ କିମ୍ପା ମୋତେ କହ ।
ବଶିଷ୍ଠ ବୋଇଲେ ଦେଖ ଦୁଇ ଯେ ଚରଣ
ଅଷ୍ଟଗୋଟି ହସ୍ତ ଅଟେ ପୁତ୍ରର ଏବେ ଜାଣ ।
ଆଉ ଯେବେ ଚାରିଗୋଟି ମୁଣ୍ଡ ଯାର ଥାନ୍ତା
ତେବେ ଏ କୁମର ଗୋଟି ମାନବ ବ୍ରହ୍ମାହନ୍ତା ।
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ତିନିଆଡ଼କୁ ନପାଇଲା
ତେଣୁକରି ଏ ପୁତ୍ରନାମ ଦଶରଥ ହେଲା ।
ନୃପତି ବୋଇଲେ ଦେବା ଦଶରଥ ନାମ
ଶୁଣିକରି ଆନନ୍ଦ ହୋଇଲେ ଋଷି ପୁଣ ।
ଋଷିମାନେ ବିଚାର ଯେ କରନ୍ତି ମନରେ
ନାରାୟଣ ଜାତ ହେବେ ଏ ପୁତ୍ର କୋଳରେ
ଏଥୁଁ ଅନନ୍ତରେ ଆଗୋ ପୁଣ ଭଗବତୀ ।
ରାଣୀର କୋଳେ ଯେ ପୁତ୍ର ଦେଲାକ ନୃପତି ।
ଷଉଚ ହୋଇଣ ବାହାରେ ଅବକାଶ
ଋଷିମାନଙ୍କୁ ଦାନ ଦେଲେକ ବହୁତ ।
ଋଷିଙ୍କର ମନତୋଷି ରଘୁରାଜା ସୁତ
ବିପ୍ରେ ଡାକି ଦାନ ସେହୁ ଦେଲେକ ବହୁତ
ଭଣ୍ଡାର ଘର ଫେଡ଼ି ଅନେକ ଧନ ଦେଲେ
ଋଷି ବ୍ରାହ୍ମଣଙ୍କୁ ଯେ ସନ୍ତୋଷ କରାଇଲେ ।
ଦୁଃଖୀ ଦରିଦ୍ରଙ୍କୁ ଯେ ତୋଷନ୍ତି ବସ୍ତ୍ରଦେଇ
ଅମୃତ ସମାନେ ଭରି ଭୋଜନ କରାଇ ।
ହାଟ ବାଟ ଧୋବାତୁଠ ଯୁର ହେଲା ଜାଣ
ଥେଣ୍ଟୁଆ ଜୁରିଆ ମିଶି ଯୁର କଲେ ଜାଣ
ଯୁର ଗଲା ଧନ ଯେ ଭଣ୍ଡାରୁ ଆଣିଦେଲେ
ଋଷି ବିପ୍ରବର ଯେ ମେଲାଣି ହୋଇଗଲେ ।
ପାତ୍ର ମନ୍ତ୍ରୀମାନଙ୍କୁ ଦେଲେ ସେହୁ ଶାଢ଼ୀ
ସେନାପତିମାନଙ୍କୁ ସନ୍ତୋଷ ରାଜା କରି ।

ବନ୍ଧୁଜନମାନଙ୍କୁ ବେଭାର ଦେଇ ବୋଧି
ସମସ୍ତଙ୍କୁ ମେଲାଣି କଲେକ ନୃପନିଧି ।
ନିଶ୍ଚିନ୍ତରେ ରାଜ୍ୟ କରେ ପରଜା ତାରସୁଖୀ
ଦିନୁଦିନ ଆନନ୍ଦ ପୁତ୍ରକୁ ରାଜା ଦେଖି ।
ପାର୍ବତୀ ବୋଇଲେ ଦେବ କଶ୍ୟପଜାତ ହେଲେ
ଦୁଇ ଭାରିଜା ତାଙ୍କର କିସ ପୁଣି କଲେ ।
ଈଶ୍ୱର ବୋଇଲେ ସ୍ୱାମୀ ତାଙ୍କର ଗଲେ
ଷଡ଼ମାସ ଉତ୍ତାରେ ସେ ନାରୀ ଚଳିଗଲେ ।
ମର୍ତ୍ତ୍ୟପୁରେ ପ୍ରବେଶ ହୋଇଲେ ଯାଇକରି
ହେତିର ଶରୀରକୁ ବିଭାଗ କଲେ ନାରୀ ।
ଅର୍ଦ୍ଧେକ ଅଂଶ ତାରଚନ୍ଦ୍ର ଦେଇପୁରେ ଗଲେ
ଅର୍ଦ୍ଧେକ ଅଂଶ ଗିରିଜା ମଣ୍ଡଳେ ମିଳିଲେ ।
କୈକେଇ ରାଜା ପୁରରେ ହେଲେ ପରବେଶ ।
ଜ୍ୟୋତିରୂପେ କକେଇ ଦେହରେ ପରବେଶ
ପଦ୍ମାବତୀ ରାଣୀ ଯେ ତାହାର ଅଟେ ଜ୍ୟେଷ୍ଠ
ସେ ରାଣୀର ଶୁଦ୍ଧ ଯେ ସ୍ନାହାନ ପାଳି ଶ୍ରେଷ୍ଠ ।
ଦାସୀକି ଘେନିଣ ବେଶ ଭୂଷଣ ହୋଇଲା
ନିଶିରେ ରାଜାପାଶେ ପ୍ରବେଶ ଯାଇ ହେଲା ।
ପଲଙ୍କ ସୁପାତିର ଉପରେ ବସେ ଯାଇ
ଏମନ୍ତ ସମୟରେ ରାଜନ ମିଳେ ତହିଁ ।
ହାସ୍ୟରସ କରିଣ ରାଣୀଙ୍କି ତୋଷ କଲେ
ନିବିବନ୍ଧ ଫିଟାଇ ରତିରଣ କଲେ ।
ଜ୍ୟୋତିବୀର୍ଯ୍ୟେ ଖସି ରାଣୀଗର୍ଭେ ଉପଗତ
ସେ ଦିନ ରାଣୀ ଗର୍ଭେ ହୋଇଲା ଥାଇତ୍ୱ ।
ବୀର୍ଯ୍ୟ ଖସିବାରୁ ରାଜାର ବଳ ତୁଟିଗଲା
ରାଣୀକି କୋଳେ ଧରି ମହୀପାଳ ଶୋଇଲା ।
ରଜନୀ ଶେଷରେ ଯେ ଦାସୀଗଣ ମିଳି
ରାଣୀକି ଶଯ୍ୟାରୁ ତୋଳିନେଲେ ଅନ୍ତଃପୁରୀ
ମର୍ଦ୍ଦନ ମାଜଣା ସାରି ସ୍ନାନ କରାଇଲେ
ଛଡ଼ରସେ ଭୋଜନ ରାଣୀ ପୁଣ କଲେ ।
ରାଣୀ ଗର୍ଭବାସ ହେବା ଜାଣିଲେ ନୃପତି
ଦାସୀମାନଙ୍କୁ କହି ସଦ୍‌ଭାବ କରନ୍ତି ।
ଅଷ୍ଟମାସେ ଗର୍ଭଦାନ ରାଜନ ପୁଣ କଲା
ଋଷି ବ୍ରାହ୍ମଣ ଡକାଇ ଅନେକ ଦାନଦେଲା ।
ଦଶମାସ ହେବାରୁ ଦୁହିତା ଗର୍ଭୁ ଜାତ
ରାଜାମାନେ ଦାସୀ ଆଗେ କହିଲେ ତୁରିତ ।

ପଞ୍ଚୁଆତି, ଷଷ୍ଠୀଘର ଉଠିଆରି ସାରି
ବାରରାତ୍ର ଏକୋଇଶା କଲେକ ଦୁଲାରୀ ।
ମାସିକିଆ ଦିନ ନାମକରଣ ତାକୁ ଦେଲେ
କୈକେୟୀ ନାମ ହେଉ ବୋଲିଣ ବୋଇଲେ ।
ଋଷି ବ୍ରାହ୍ମଣରେ ଭୂରି ଭୋଜନ ରାଜାକଲେ
ଧନରତ୍ନ ଦେଇଣ ତାହାଙ୍କୁ ତୋଷ କଲେ ।
ଏଥୁ ଅନନ୍ତରେ ଯେ ଶୁଣ ଗୋ ଭଗବତୀ
ହେତିର ଅର୍ଦ୍ଧେ ଅଂଶ ଗଲା ଯେ ତଡ଼ତି ।
ଛିଡ଼ିଛା ମଣ୍ଡଳେ ଯେ ଯାଜପୁର ନଗ୍ରେ
ନୀଳ ନାମେ ରାଜା ଯେ ଅଟଇ ତେଜଭାଗେ ।
ତାହାର ପାଟରାଣୀ ଚମ୍ପା ଯେ ବୋଲି ଜାଣ
ବାଉନ ନାରୀରେ ସେ ଅଟଇ ଶ୍ରେଷ୍ଠ ପୁଣ ।
ନୀଳରାଜା ଅଙ୍ଗରେ ହେତିର ଜ୍ୟୋତି ମିଳି
ସେହି ନୀଳରାଣୀ ଯେ ହୋଇଲା ରଜସ୍ୱଳି ।
ପଞ୍ଚଦିନରେ ରାଣୀ ଶୁଦ୍ଧ ସ୍ନାନ କଲା
ସୁବେଶ ହୋଇଣ ରାଣୀ ମନରେ ସୁଖି ହେଲା ।
ରଜନୀରେ ରାଜାପାଶେ ହୋଇଲାପରବେଶ
ରାଣୀକି ଧରି ରାଜା ଖେଳଇ ହରଷ ।
ଖେଳସାରି ରାଜା ଯେ କୋଳରେ ବସାଇଲା
ମୁଖରେ ଚୁମ୍ବନ ଦେଇଣ କୁଚ ମର୍ଦ୍ଦନକଲା ।
ନିବିବନ୍ଧ ଫିଟାଇଣ କଲାକ ରତିରଙ୍ଗ
ଶରୀରରୁ ଜ୍ୟୋତିବିର୍ଯ୍ୟ ଖସିଲାକ ବେଗ ।
ଚମ୍ପାବତୀ ଗର୍ଭରେ ହୋଇଲା ପରବେଶ
ରାଣୀର ଗର୍ଭେ ବୀର୍ଯ୍ୟ ହୋଇଲା ସ୍ଥକିତ ।
ସେ ଦିନ ଚମ୍ପାବତୀ ହୋଇଲା ଗର୍ଭବାସ
ପାଞ୍ଚମାସ ଅନ୍ତେ ଦାସୀ କହିଲେ ସନ୍ଦେଶ ।
ଶୁଣିଣ ରାଜନ ଯେ ହରଷ ମନ ହେଲା
ଅଷ୍ଟମାସ ହୁଅନ୍ତେ ଯେ ଗର୍ଭଦାନ ଦେଲା
ଋଷି ବିପ୍ର ଡାକିଣ ଅନେକ ଦାନ ଦେଲା
ଅମୃତ ସମାନରେ ଭୋଜନ ଚରଚିଲା ।
ଦୁଃଖୀ ଦରିଦ୍ରଙ୍କୁ ଯେ ଦେଲାକ ଅନ୍ନବସ୍ତ୍ର
ଏମନ୍ତେ ଦୁହିତା ଯେ ଜନମ ଦଶମାସ ।
ପାଞ୍ଚଦିନେ ପଞ୍ଚୁଆତି କଲେ ଯେ ଦାସୀ ଶ୍ରୋତା
ଷଡ଼ଦିନେ ଷଷ୍ଠୀଘର ଲିହିଲେ ହରଷିତା
ସାତଦିନେ ଉଠିଆରି ସେହୁ ଯେ କରିଲେ
ବାରଦିନେ ବାରରାତ୍ର ଭିଆଣ ପୁଣ କଲେ ।

ମାସକରେ ନଗ୍ରରେ ଉତ୍ସବ କରାଇଲେ
ଋଷି ବ୍ରାହ୍ମଣ ଡକାଇ ଦାନ ପୁଣ୍ୟ କଲେ ।
ଦୁଃଖୀ ଦରିଦ୍ରଙ୍କୁ ଯେ ଧନ ବସ୍ତ୍ର ଦେଲେ
ଭୁରି ଭୋଜନ ଋଷି ବ୍ରାହ୍ମଣରେ ଦେଲେ ।
ବିଷ୍ଣୁ ପ୍ରତିମାଙ୍କୁ ବେଶ ସେ କରାଇଲେ
ଶିବ ପ୍ରତିମା ମାନଙ୍କୁ କ୍ଷୀର ନିଉଡ଼ିଲେ ।
ଗ୍ରାମ ଦେବୀମାନଙ୍କୁ ଛାଗଳ ନେଇଦେଲେ
ପୂଜାକର୍ମ କରିସବୁ ସନ୍ତୋଷ ହୋଇଲେ ।
ଯମସ୍ତଙ୍କୁ ତୋଷ କଲେ ନୀଳ ଯେ ରାଜନ
କୈମୁଦ ଋଷିଙ୍କି ଘେନି ବସି ଭିତରେଣ ।
ହୋମ କରାଇଣ ଦୁହିତା ନାମ ଦେଲା
ଆପଣାର ନାମରେ ଯେ ତାହା ନାମ ହେଲା ।
ଲୀଳାବତୀ ନାମ ଯେ ହୋଇଲା ତାହାର
ବାହାରେ ବିଜେ କଲା ହରଷ ମନର ।
ହାଟ ବାଟ ଯୁର ଯେ କଲାକ ରାଜନ
ଧୋବା ତୁଠ ଯୁର ଯେ କରାଏ ରାଜନ ।
ଲେଖିବା ଦ୍ରବ୍ୟ ଯୁର ରାଜନ ପୁଣ ଦେଲା
ପାତ୍ର ମନ୍ତ୍ରୀ ସମସ୍ତଙ୍କୁ ତୋଷ କରାଇଲା ।
ପୁତ୍ରର ସମାନରେ ପରଜା ପାଳେ ରାଜା
ସମସ୍ତଙ୍କ କୁଶଳକୁ ମଣେ ସେହି ରାଜା ।
ପାର୍ବତୀ ବୋଇଲେ ଦେବ ଶୁଣ ମୋ ବଚନ
ହେତିର ଅଂଶେ ଚାରି ସସ୍ର ଯେ ଜନମ ।
ଜାତ ହେବେ ଟିକି ହେ କହ ଦେବମୋତେ
ସେ କଥା ଶୁଣିଲେ ମୋର ମନେହେବ ପ୍ରତେ ।
ବାସୁଦେବର ଜନନୀ ସମସ୍ତ ହୋଇବେ
ନାରାୟଣ ଜନ୍ମ ହୋଇ ମାତାବୋଲିଣଡ଼ାକିବେ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ବରଷକେ ଚାରିଶତ ନାରୀ ଯେ ଉତପତ୍ତି ।
ସତାଇଶ ରାଜା ଘରେ ଜନମ ଲଭିଲେ
ଶୋଭାପଣେ ସୁନ୍ଦର ଯେ ଜଗତ ମୋହିଲେ
ଦିନୁଁଦିନ ବଢନ୍ତି ଯେ ରାଜାର କୁମାରୀ
ଶୁକଳ ପକ୍ଷେ ଯେହ୍ନେ ବଢଇ ରାହୁ ଐରୀ ।
ପାର୍ବତୀ ବୋଇଲେ କଶ୍ୟପ ମୁନିଙ୍କର
ଦୁଇନାରୀ ତାଙ୍କର ଅଟନ୍ତି ପୁଣ ସାର ।
ଏକ ନାରୀ ଚାରିଶତ ଅଂଶରେ ଜାତହେଲା
ଆର ନାରୀ କିସ କଲା କିରୂପେ ଜନ୍ମିଲା ।

ସେ କଥା ମୋର ଆଗେ କହ ତ୍ରିଲୋଚନ
ବାସୁଦେବ ମାତା କଥା ଶୁଣିବାକୁ ମନ ।
ଈଶ୍ୱର ବୋଇଲେ ପ୍ରହେତି କଥା ଶୁଣ
ମର୍ତ୍ତ୍ୟପୁରକୁ ପ୍ରହେତି ଚଳିଲା ବହନ ।
ସବୁଦିନେ ଦେବତାଙ୍କ ମାତା ସେ ଅଟଇ
ଦଶଦିଗପାଳଙ୍କୁ ଯେ ଜାତ କଲା ସେହି ।
ଯେତେବେଳେ ସ୍ୱର୍ଗରୁ ଅଇଲା ଓହ୍ଲାଇ
ଦଶଦିଗପାଳେ ଯେ ପଛରେ ଗୋଡ଼ାଇ ।
ମରୁତ, କୁବେର ଯେ ବରୁଣ ଅଗ୍ନି ପୁଣ
ଚନ୍ଦ୍ର, ସୂର୍ଯ୍ୟ, କେତୁ ଯେ ବୃହସ୍ପତି ଜାଣ ।
ମଙ୍ଗଳ ଅଶ୍ୱିନୀ କୁମାର ସଙ୍ଗେ ମିଳି
ଦେଖିଣ କଶ୍ୟପ ନାରୀ ମନରେ ବିଚାରି ।
ପୁତ୍ରମାନେ ମୋର ଯେ କି କାର୍ଯ୍ୟେଆଉଆସି
ବିଚାରି ମୋତେ ମର୍ତ୍ତ୍ୟପୁରକୁ ଯେପେଷୀ ।
ଆଗେ ସ୍ୱାମୀ ଗଲେ ପଛେ ଗଲେ ସପତଣୀ
ମର୍ତ୍ତ୍ୟପୁରେ ଜନମ ହୋଇଲେ ସେହୁ ପୁଣି ।
ସପତଣୀ ସଙ୍ଗରୁ ଚାରିଶତ ନାରୀ
ସତାଇଶ ରାଜା ଘରେ ଯାଇ ଅବତରି ।
ସ୍ୱାମୀ ମୋର ତପନ କୁଳରେ ଅବତରି
ଦଶରଥ ରୂପ ଋଷି ରୂପ ତେଜ୍ୟାକରି ।
ଏମନ୍ତ ବିଚାରି ନାରୀ ପୁତ୍ରଙ୍କୁ ଚାହିଁଲେ
କିମ୍ପା ଆସୁଛ ବୋଲି ବଚନ କହିଲେ ।
ଦେବତାଏ ବୋଇଲେ ଜନନୀ ଏବେ ଶୁଣ
ଆମ୍ଭେମାନେ ତୋର ଦାସୀ ହୋଇଲୁଯେପୁଣ ।
ଆମ୍ଭର ସକାଶେ ମୋର ଦୁଃଖ ହେଲା ଏବେ
ହୃଦରେ କ୍ରୋଧ ନ ଧରି ଯାଅ ସଦଭାବେ ।
ପ୍ରହେତି ବୋଇଲା ମୋର ଅନେକ ସୁଖହେଲା
ଯେବେ ଅନୁଗ୍ରହ ମୋତେ ବାସୁଦେବ କଲା ।
ଗର୍ଭେ ଧରି ଯେବେ ମୁହିଁ କରିବଇଁ ଜାତ
ଏ ପାପନେତ୍ରରେ ମୁଁ ଚାହିଁକି ପଦ୍ମମୁଖ ।
କୋଳରେଥାଇମାତାସେବୋଲିବାକମୋତେ
ଏତେ ସୁଖ ଏତେକାଳେ ମିଳିଲାରେ ପୁତ୍ରେ ।
ବୈକୁଣ୍ଠେ ଠାକୁରେ ଯେ ଅନନ୍ତ ନାରାୟଣ
ମୋହର ଗର୍ଭରେ ସେ ଜାତହେବେ ପୁଣ ।
ଏତେସୁଖ ତୁମ୍ଭର ସକାଶୁଁ ମୋତେ ହେଲା
ସୃଷ୍ଟି କରତା ଯେବେ ହୋଇବେମୋରବଳା ।

ତୁମ୍ଭଙ୍କୁ ଅର୍ଚ୍ଚିବାରୁ ସୁଖ ମୋତେ ଦେଲେ
ଭଲଯୋଗେ ପୁତ୍ରମାନେ ଜନମ ହୋଇଲେ ।
ଏତେକହି ଅଦିତି ଦେବଙ୍କୁ ସନ୍ତୋଷ
ବୋଇଲେ ଦେବେ ଯାଅ ନାରାୟଣ ପାଶ ।
ତ୍ରୈଲୋକ୍ୟ ଠାକୁରଙ୍କୁ ଯାଇଣ ଅନୁସର
ମହିଁସାସାଗର ଯେ ଅଟନ୍ତି ଚକ୍ରଧର ।
ଦୁଃଖିଲୋକର ବାନ୍ଧବ ସୁଖୀଲୋକର ପ୍ରୀତି
ଦୁଷ୍ଟ ଲୋକମାନଙ୍କର ଶତ୍ରୁ ଯେ ଅଟନ୍ତି ।
ଭକତ ଭାବଗ୍ରାହୀ ବୋଲନ୍ତି ନରହରି
ଲୀଳା କରିବା ନିମନ୍ତେ ଅଛନ୍ତି ଅବତରି ।
ବୈକୁଣ୍ଠପୁରରେ ବିଚାରନ୍ତେ ପୁଣ
ଦୈତ୍ୟଗଣ ଛାର କି ରହିବେ ରାଜ୍ୟେଣ ।
ଚଉଦ ବ୍ରହ୍ମାଣ୍ଡ ଯାର ଗର୍ଭରେ ଅଛି ଜାଣ
ତିନି ଦ୍ୱୀପ ନବଖଣ୍ଡ ମେଦିନୀରେ ପୁଣ ।
ସ୍ଥିତି ଉତପତ୍ତି ପୁଣ ଯାହାଠାରୁ ହେଲା
ସେ କିମ୍ପା ଜନମ ହେବାକୁ ଭାବିଲା ।
ଦୁଷ୍ଟ ସିନା ତାକୁ ଅଟନ୍ତି ବଳିଯାର
ଦୁଷ୍ଟ ମାରିବାକୁ ଜାତ ମାନବ ଶରୀର ।
ତୁମ୍ଭର ଭାଗ୍ୟ ଅଛି ମୋହର ବହୁ ଯୋଗ
ଅମୃତ ବେଳରେ ଜାତ କଶ୍ୟପ ଦ୍ୱିଜ ଆଜ ।
ଏତେବୋଲି ଦେବତାଙ୍କୁ ପ୍ରବୋଧି କହିଲେ
ଝଟକ ବିଜୁଳି ପ୍ରାୟେ ଅନ୍ତରୀକ୍ଷରେ ଗଲେ ।
ଚନ୍ଦ୍ରଦେଇ ପୁରରେ ଯାଇଁ ହୋଇଲେ ପ୍ରବେଶ
କଉଶିକ ରାଜାର ଶରୀରେ ପ୍ରକାଶ ।
ଜ୍ୟୋତିରୂପରେ ସେ ଯେ ପ୍ରକାଶ ହେବାରୁ
ତେଜବନ୍ତ ରାଜା ଦିଶିଲା ସେଠାରୁ ।
କଉଶିକ ରାଜାର ଶତେକ ପାଟରାଣୀ
ଜ୍ୟେଷ୍ଠ ପାଟରାଣୀ ସାବିତ୍ରୀ ଠାକୁରାଣୀ ।
ପାଞ୍ଚଦିନେ ଶୁଦ୍ଧସ୍ନାନ କଲାକ ଯାଇ ପୁଣି
ଅଷ୍ଟରତ୍ନେ ଭୂଷଣ ହୋଇଲାକ ରାଣୀ
ବିଦ ଚୁଡ଼ି ମୁଦି ଯେ ହୃଦୟରେ ହାର ପୁଣି
ଦିବ୍ୟ ଅଳଙ୍କାର ଅଙ୍ଗେ ହୋଇଲା ମଣ୍ଡଣି ।
ନାନାଧଙ୍ଗେ ପୁଷ୍ପ ଆଭରଣ କଲା
ଚନ୍ଦନ ଅଗୁରୁ କସ୍ତୁରୀ ଲଗାଇଲା ।
ଗନ୍ଧ ସୁବାସରେ ହୃଦୟ ତାର ବାସି
ବେଶ ଦେଖିଲେ ମୋହି ହୋଇଯିବେ ଋଷି ।

ରଜନୀ ସାତଘଡ଼ିଠାରେ ରାଣୀ ଗଲା ଚଳି
ସ୍ୱାମୀର ପାଶରେ ମିଳିଲା ମନୋହାରୀ ।
ଦେଖିଣ ରାଜନ ହରଷ ହୋଇଲା
ପାଟରାଣୀକି ନେଇ କୋଳରେ ବସାଇଲା ।
ମୁଖରେ ଚୁମ୍ବନ ଦେଇ ହରଷ ମନରେ
ନିବିବନ୍ଧ ଫିଟାଇ ରତିକଲା ହରଷରେ ।
ରତିରଙ୍ଗ କରିବାରୁ ଖସିଲା ବଳବୀର୍ଯ୍ୟ
ରାଣୀ ଗର୍ଭରେ ସ୍ଥିତ ହୋଇଲା ତନୁଜ ।
ରାଜାର ସରସ ମନ ନିରସ ହୋଇଲା
ରାଣୀର ଶରୀର ଅଚେଷ୍ଟା ହୋଇଲା ।
ରାଣୀକି କୋଳରେ ଘେନି ଶୋଇଲା ରାଜନ
ନିଶି ପାହିବାରୁ ଅଇଲେ ଦାସୀଗଣ ।
ରାଣୀକି ଘେନିଣ ଆନପୁରକୁ ଗଲେ
ମର୍ଦ୍ଦନ ମାଜଣା କରି ସ୍ନାନ କରାଇଲେ ।
ଅମୃତ ଭୋଜନ କରାଇଲେ ପୁଣ
ଆଚମନ କରିଣ ବିଡ଼ିଆ ଭୁଞ୍ଜିଣ ।
ରତ୍ନ ପଲଙ୍କରେ ରାଣୀ ନିଦ୍ରାଗଲେ
ଦାସୀଗଣ ଆଲଟ ଚାମର ବିଞ୍ଚିଲେ ।
ଚରଣ ମଞ୍ଚାଳନ୍ତି ବସିଣ ଧାଈଗଣ
ଅଦିତି ହେଲା ଯାଇ ରାଣୀ ଗର୍ଭେ ଜାଣ ।
ପାର୍ବତୀ ବୋଇଲେ ଦେବ ରାଜନ କିକଲେ
ପଲଙ୍କ ଉପରେ ରାଜା ଶୋଇଥିଲେ ।
ଈଶ୍ୱର ବୋଇଲେ ରାଣୀ ଯିବାରୁ ସେଠାରୁ
ରାଜନ ଉଠିଣ ଗଲେ ପଲଙ୍କରୁ ।
ବାହାରେ ଅବକାଶ ହୋଇଲେ ରାଜନ
ସେବାକାରୀଲୋକ ଆସି ମିଳିଲେ ପାଶେଣ ।
ମାଜଣା ମର୍ଦ୍ଦନ କରି ସ୍ନାନ କରାଇଲେ
ଅମଳାନ ବସ୍ତ୍ର ନେଇ ପିନ୍ଧାଇଲେ ।
ମଳଚୂଳ ଭୂଷଣ କରାଇଲେ ପୁଣ
ଦେବାର୍ଚ୍ଚନ ମଣ୍ଡପରେ ବିଜୟ ରାଜନ ।
ଦେବାର୍ଚ୍ଚନ ବିଧିସାରି ବାହାରେ ଅବକାଶ
ଧର୍ମପୁରୁଷ ତାର ହୃଦରେ ପରକାଶ ।
ଋଷି, ବ୍ରାହ୍ମଣ ଅଣାଇ ରାଜନ ଦାନ ଦେଲା
ଦୁଃଖୀ ଦରିଦ୍ରମାନଙ୍କୁ ଧନ ବିକସିଲା ।
ହାଟ ବାଟ ଧୋବାଟୁଠ ହୋଇଲାକ ପୁର
ପାତ୍ର ମନ୍ତ୍ରୀମାନଙ୍କୁ ଦେଲେ ଧନସାର ।

ଯରଗଲା ଧନ ଭଣ୍ଡାରୁ ନେଇ ଦେଲେ
ଅମନାତ୍ୟଗଣଙ୍କୁ ଯାଚିଣ ବିଳୋହିଲେ ।
ବିଷ୍ଣୁ ପ୍ରତିମାମାନଙ୍କୁ ନାନାବର୍ଣ୍ଣେ ଭୋଗ
ଈଶ୍ୱର ଦେବତାଙ୍କୁ କ୍ଷୀର ଲାଗି ଯାଗ ।
ଦେବୀମାନଙ୍କୁ ବୋଦା ପୋଢୁଅ ନେଇଦେଲା
ବିପ୍ର ଋଷିମାନଙ୍କୁ ଭୂରି ଭୋଜନ ଦେଲା ।
ମେଲାଣି ହୋଇଣ ସମସ୍ତେ ଚଳିଗଲେ
ଏମନ୍ତେ କିଛିଦିନ ଗଲାକ ତହିଁ ଭଲେ ।
ପାଞ୍ଚମାସେ ଗର୍ଭ ହୋଇଲା ଯେଣୁ
ନୃପତି ଆଗରେ ଦାସୀ କହିଲେ ତେଣୁ ।
ବଡ଼ ପାଟରାଣୀ ଗର୍ଭ ପାଞ୍ଚମାସ ହେଲା
ଦିଚୁ ଦିନ ରାଣୀ ତେଜ ପ୍ରକାଶିଲା ।
ଶୁଣିଣ ମହାରାଜା ଆନନ୍ଦ ମନରେ
ପୂର୍ଣ୍ଣମୀ ଚନ୍ଦ୍ର ପ୍ରାୟେ ବିକାଶ ମୁଖ ତାରେ ।
ଷଷ୍ଠମାସରେ ରାଜା ଗର୍ଭଦାନ ଦେଲା
ବନ୍ଧୁଜନମାନଙ୍କୁ ବରିଣ ଆଣିଲା ।
ଋଷି ବ୍ରାହ୍ମଣ ଯେ ବରଣ କଲା ଜାଣ
ହୋମ କରାଇଣ ଦାନ ଦେଲାକ ରାଜନ ।
ଦେବତାମାନଙ୍କୁ ବେଶ କରାଇଲା ।
ଅମୃତ ସମାନ ଭୋଗ ବିଳସିଲା
ବନ୍ଧୁଜନମାନଙ୍କୁ ସଙ୍ଗରେ ଘେନି ପୁଣ
ସନ୍ତୋଷ ଭୋଜନ କଲା ଯାଇଣ ରାଜନ ।
ସମସ୍ତଙ୍କୁ ସନ୍ତୋଷରେ ମେଲାଣି ରାଜାଦେଲେ
ଯେ ଯାହାର ପୁରକୁ ସମସ୍ତେ ଚଳିଗଲେ ।
ଆନନ୍ଦେ ରାଜ୍ୟକଥା ବୁଝାଇ ରାଜନ
ମାସକେ କାହାଣେ କର ନିଏ ସେହୁ ପୁଣ ।
ମାସକେ ଥରେ ରାଜା ପୁଣୀ ଯୋଗୀ ହୋଇ
ହରିଗୋବିନ୍ଦ ମୁଣି ଧରିଣ ବୁଲି ଯାଇ ।
ନଗର ବୁଲିଣ ସେ ମାଗଇ ଭିକ୍ଷା ପୁଣ
ସେ ଭିକ୍ଷା ଭୋଜନ କରଇ ସେହିଦିନ ।
ଏକଦିନେ ରାଜନ ଶୟନ କରିଥିଲା
ନିଦ୍ରାବଳେ ଆସିଣ ନାରଦ କହିଲା ।
ବୋଇଲେ ମୁନିବର ଶୁଣ ତୁ ରାଜନ
ତୋରଘରେ ଜାତହେବେ କଶ୍ୟପ ନାରୀଜାଣ
କଶ୍ୟପ ଜାତହେଲେ ଅଜ ରାଜା ଘରେ
ତପନକୁଳରେ ସୂର୍ଯ୍ୟର ବଂଶରେ ।
ତାଙ୍କ ନାମ ଦଶରଥ ହୋଇଲାକ ପୁଣ
ତୋ ଦୁହିତା ବିଭା ତାକୁ କରିବୁ ରାଜନ ।
ତୋର ଦୁହିତା କୋଳରେ ଶ୍ରୀହରି ହେବେଜନ୍ମ
ତେବେ ସେ ଅସୁରବଳ ହୋଇବେ ନିଧନ ।
ନର ଦେବ ବାନରଙ୍କ ଭୟ ଯିବ ଜାଣ
ତୁମ୍ଭର ବହୁତ ସୁଫଳ ହେବ ପୁଣ ।
ଏତେ ବୋଲି ନାରଦ ଅନ୍ତରୀକ୍ଷେ ଗଲେ
ଚେତିଣ ରାଜନ ନିଦ୍ରାରୁ ଉଠିଲେ ।
ବିଚାରନ୍ତି ମୋର ଧର୍ମ ସୁଫଳ ଏବେ ହେଲା
ନାରାୟଣ ପୁରୁଷ ସୁଦୟା ମୋତେ କଲା ।
ନିଶ୍ଚୟ କର୍ମ ମୋର ହୋଇ ଉଜ୍ଜ୍ୱଳ
ମୋ ଦୁହିତା ଗର୍ଭେ ଜାତ ହେବେ ରଘୁବାଳ
ଏତେ ବିଚାରି ରାଜନ ହରଷ ହୋଇଲେ
ପଲଙ୍କ ସୁପାଡି ତେଜି ଦାସୀଙ୍କୁ ଡାକିଲେ ।
ଚନ୍ଦ୍ରଦୀପ ଆଲୋକରେ ଦାସୀଙ୍କ ସଙ୍ଗେଖେଳ
କରି ତୁଳରେ ରଜନୀ ବଢ଼ାଏ ନୃପବର ।
ରଜନୀ ଶେଷରେ ଦାସୀମାନେ ଗଲେ
ବାହାରେ ଅବକାଶ ରାଜନ ହୋଇଲେ ।
ଦଶମାସ ଦୁଇଦିନ ରାଣୀର ଗର୍ଭହେଲା
ଦୁଇଘଡ଼ି ସମୟରେ ପେଟ ବଥାଇଲା ।
ପଞ୍ଚଘଡ଼ି ସମୟରେ ଦୁହିତା ହେଲା ଜାତ
ଶୋଭା ସୁନ୍ଦରୀପଣରେ ରୋହିଣୀ ସଂଜାତ ।
ରାଜାର ଆଗରେ ଦାସୀମାନେ କହି
ପାଟରାଣୀ ଗର୍ଭରୁ ଦୁହିତା ଜାତ ହୋଇ ।
ସେହୁ ଦୁହିତା ଗୋଟି ଅତି ମନୋହର
କୋଳେ ପଡ଼ି ବାସୁଦେବ ସୁମରଣା ତାର ।
ଦୁଇ ଚରଣ ଅଳତା ରଙ୍ଗ ପ୍ରାୟେ ଦିଶେ
ପଦ୍ମନାଡ଼ ପରାଏ ବାହୁ ତା ବିକାଶେ ।
ମୁଖଗୋଟି ଚନ୍ଦ୍ରମା ପରାଏ ତାର ଜାଣ
ମୃଗ ନୟନ ପରାଏ ନେତ୍ର ଅଟେ ଜାଣ ।
ଉଲଟ କଦଳୀ ବୃକ୍ଷ ତାର ଜାନୁ
ଚିତ୍ରପଟେ ଲିଖନ କେ କରିପାରିବ ତନୁ
ଏମନ୍ତ ସ୍ୱରୂପ ତାର ରାଜାକୁ ଦାସୀ କହି
ଶୁଣିଣ ନୃପତି ମନରେ ତୋଷହୋଇ
ଏମନ୍ତ ପ୍ରକାରେ ଅଦିତି ହେଲା ଜନ୍ମ
ରାଜାରନଗର ଦିଶିଲା ଶୋଭାବନ ।

ଶ୍ରୀହରି ଚରଣରେ ବଳରାମ ଦାସ
ପାର୍ବତୀ ସଦାଶିବ ଦୁହିଁଙ୍କି କରି ଆଶ ।
ଏଥୁ ଅନନ୍ତରେ କହନ୍ତି ଭଗବତୀ
ଏଠାରୁ କିସ ହେଲା କହ ପ୍ରାଣପତି ।
ଈଶ୍ୱର ବୋଇଲେ ଦେବୀ ଶୁଣ ସାବଧାନେ
ରାଜାଆଗେ ଦାସୀକହେ ଜନ୍ମହେଲା ଯେହ୍ନେ ।
ଏମନ୍ତ ସମୟରେ ଦାସୀଏ ଆସିମିଳି
କରଯୋଡ଼ି ରାଜା ଆଗେ କହେ ପୁରସରି ।
ବୋଇଲା ଦେବ ଏବେ ବିଚିତ୍ର କଥା ଶୁଣ
ମର୍ତ୍ତ୍ୟପୁରେ ଏକଥା ଦେଖାନାହିଁ ପୁଣ ।
ତୁମ୍ଭର ଏ ଦୁହିତା ରାଣୀଠାରୁ ଜାତ
ସୁନ୍ଦର ପଣେ ସେ ଯେ ମୋହର ଜଗତ ।
ଦଶ ପାଞ୍ଚ ଥରେ ସେ ଯେ ଏକୋଇର ବଳା
ନିବର୍ତ୍ତ ହୋଇଣ ଏବେ ବଚନ କହିଲା ।
ବୋଇଲା ମୋ ପିତାଙ୍କୁ ଅଣାଅ ମୋର ପାଶ
ଶୁଣିଣ ତୁମ୍ଭ ପାଶକୁ ଅଇଲି ହରଷ ।
ଶୁଣିଣ ରାଜନ ପରମ ତୋଷ ହେଲା
ଦାସୀର ସଙ୍ଗତରେ ଭିତରପୁର ଗଲା ।
ଦୁହିତାର ପାଶେ ହୋଇଲା ପରବେଶ
କୁମାରୀକି ଦେଖି ରାଜା ମନରେ ହରଷ ।
ଦୁହିତା ବୋଇଲା ପିତା ସାବଧାନେ ଶୁଣ
ଦେବଙ୍କର କାର୍ଯ୍ୟେ ମୁଁ ତୋରଘରେ ଜନ୍ମ ।
ତପନ କୁଳରେ ଅଯୋଧ୍ୟା ମଣ୍ଡଳରେ
ରଘୁବଂଶେ ଜାତ ଦଶରଥ ନୃପବରେ ।
ଇନ୍ଦ୍ରଙ୍କୁ ଜିଣି ସ୍ୱର୍ଗେ ଇନ୍ଦ୍ର ସେ ହୋଇଲା
ଦେବତାଙ୍କର ଦୟା ତାହାଠାରେ ହେଲା ।
ତେଣୁକରି ତାର ଘରେ ଜନମ କଶ୍ୟପ
ସେ ପୁତ୍ରର ନାମ ଏବେ ହୋଇଲା ଦଶରଥ ।
ସେ ମୋହର ସ୍ୱାମୀ ପୂର୍ବରୁ ଏହା ଜାଣ
ତାହାଙ୍କୁ ବିଭା ମୋତେ ହେବ ନରରାଣ ।
ଏମନ୍ତ ବଚନ ଦୁହିତା କହେ ପୁରି
ଅଚେତ ହୋଇଲା ପିତାଙ୍କୁ କହି ବାଣୀ
ଦୂହିତା ବଚନ ଶୁଣି ରାଜା ସେଠାରୁ ଗଲା
ଏଥୁ ଅନନ୍ତରେ କଥା କେମନ୍ତ ହୋଇଲା ।
ପାଞ୍ଚଦିନେ ପଞ୍ଚୁଆତି ଆନନ୍ଦେ ପିତାକରି
ଷଢ଼ଦିନେ ଷଷ୍ଠିଘର କଲେକ ପରିବାରି ।

ସାତଦିନେ ଉଠିଆରୀ ଯାତରା କରିଲେ
ବାରଦିନେ ବାରଯାତ୍ରା ବିଧି ସେ ସାରିଲେ ।
ଏମନ୍ତେ ମାସକେ ଗଲା ତହିଁ ବହି
ଚନ୍ଦ୍ରାବତୀ ପୁରେ ରାଜା ଉତ୍ସବ କରାଇ ।
ରମ୍ଭାବୃକ୍ଷ ପୂର୍ଣ୍ଣକୁମ୍ଭ ଚୂତପତ୍ର ସବୁଦ୍ୱାରେ
ଆନନ୍ଦେ ଉତ୍ସବରାଜା ଆନନ୍ଦରେ କରେ ।
ଋଷି ବିପ୍ର ରାଜାଙ୍କୁ ଅଣାଏ ଡ଼କାଇ
ଲକ୍ଷେକ ବ୍ରାହ୍ମଣ ଯେ ମିଳିଲେ ତହିଁ ଯାଇ ।
ବେନିକୋଟି ଋଷିଯେ ସେଠାରେ ହେଲେମେଳ
ରାଜାର ନବରେ ଲାଗିଲା ଚହଳ ।
ଋଷିମାନେ ହୋମକଲେ ବିପ୍ର ପଢ଼େବେଦ
ଆନନ୍ଦ ଉତ୍ସବ ଲାଗିଲା ଯେ ସେହୁ ନଗ୍ର ।
ହୋମସାରି ବିପ୍ରମାନେ ଦୁହିତା ନାମଦେଲେ
କୌଶଲ୍ୟା ନାମହେଉ ବୋଲିଣ ଋଷିକଲେ ।
ତୀର୍ଥଜଳେ ଋଷିଗଣ କରାଇ ସ୍ନାହାନ
ତୀର୍ଥଜଳେ ପଞ୍ଚାମୃତେ ପବିତ୍ର କଲେପୁଣ ।
ସେଠାରୁ ରାଜନ ଯେ ବେଗେ ଚଳିଗଲେ
ବାହାର ଅବକାଶ ଯାଇଣ ହୋଇଲେ ।
ଋଷି ବ୍ରାହ୍ମଣଙ୍କୁ ଅନେକ ଦାନଦେଲେ
ଦୁଃଖୀ ଦରିଦ୍ରମାନଙ୍କୁ ସନ୍ତୋଷ କରାଇଲେ ।
ମାଗନ୍ତା ଲୋକଙ୍କୁ ଦେଲେ ବହୁଧନ
ହାଟବାଟ ଧୋବାତୁଠ ଯୁର ହେଲା ପୁଣ ।
ଯୁର ହେବା ପଦାର୍ଥ ଭଣ୍ଡାରୁ ନେଇଦେଲେ
ସମସ୍ତେ ମେଲାଣି ହୋଇ ସନ୍ତୋଷରେ ଗଲେ ।
ବନ୍ଧୁଜନମାନଙ୍କୁ ମେଲାଣି ରାଜା କଲା
ମୁକୁଟକୁଣ୍ଡଳ ହାରମାନ ଆଣିଦେଲା ।
ସନ୍ତୋଷ ହୋଇଣ ମୁନିବନ୍ଧୁମାନେ ଗଲେ
କଉଶିକ ରାଜାପୁର ଚହଳ ଭାଗେ ଭଲେ ।
ପାର୍ବତୀ ବୋଇଲେ ଦେବ ଶୁଣହେ ଈଶାନ
ଅଦିତି ଅଂଶରୁ କେତେ ଜାତ ହେଲେପୁଣ
ପ୍ରହେତି ଅଂଶରୁ ଚାରିଶତ ନାରୀ
ଅର୍ଦ୍ଧଅଂଶ ନୀଳାବତୀ ଜନ୍ମହେଲା ଫେରି ।
ଅଦିତି ଜନ୍ମ କୌଶଲ୍ୟା ସ୍ୱରୂପେ
ଅଙ୍ଗ ଅଙ୍ଗ କେମନ୍ତେ ସେ କହ ବିଶ୍ୱନାଥେ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ଅଦିତିଅଙ୍ଗେ ତିନିଶତ ପଞ୍ଚାଶ ଯୁବତୀ ।

ବତିଶ ରାଜାଘରେ ଜନମ ଏହୁ ହେଲେ
ପଛନ୍ତେ ଶୁଣିବ ରାଜାମାନେ ନାମ ଭଲେ ।
ଅଦିତି ଅଂଶର କଥା ଏବେ ଶୁଣ
ଚନ୍ଦ୍ରକଳା ବୋଲି ଏକ ନଗ୍ର ଅଟେ ପୁଣ ।
ସେ ଦେଶର ରାଜା ନାମ ଅଟଇ ସୁମନ୍ତ
ଚଉଷଠି ରାଣୀ ତାର ଅଟନ୍ତି ଶୋଭାବନ୍ତ ।
ବଡ଼ରାଣୀ ନାମ ଅଟେ ଚନ୍ଦ୍ରମଣି ପୁଣ
ସେ ରାଣୀ ପୁଷ୍ପବତୀ ହୋଇଲାକ ଜାଣ ।
ପାଞ୍ଚଦିନେ ରାଣୀ ଶୁଦ୍ଧ ସ୍ନାନ କଲା
ଶଉଚ ନିର୍ମଳତାର ଶରୀର ହୋଇଲା ।
ଦାସୀଗଣ ଘେନିରାଣୀ ସୁବେଶ ହୋଇଲା
ଜୁଡ଼ାବାନ୍ଧି ମଥାମଣି ଝୁମ୍ପା ଲଗାଇଲା ।
ମସ୍ତକରେ ଅଳକା କର୍ଣ୍ଣରେ ମଞ୍ଜିକଢ଼ୀ
ଚନ୍ଦ୍ର ଫାସିଆ ସଙ୍ଗରେ କୁଣ୍ଡଳ କର୍ଣ୍ଣେଜଡ଼ି ।
ନାସାରେ ସିନ୍ଧୁଫଳ ସଙ୍ଗରେ ପଦ୍ମପୁଷ୍ପ
ହୃଦରେ ପଦ୍ମମାଳା ବିକାଶ ପ୍ରକାଶ ।
ବେନିଭୁଜେ ରତ୍ନ ଚୂଡ଼ ବାହୁଟି ବିଦତାଡ଼
କଟିରେ କଟୀ ମେଖଳା ଦିଶଇ ଶୋଭାକର
ନୂପୁର ପାହୁଡ଼ ଯେ ଝୁଣ୍ଟିଆ ପାଦେଶୋହେ
କାଞ୍ଚୁଲା ପହରଣ ରାଣୀ କରେ ଦେହେ ।
ବେଶ ହୋଇ ରାଣୀ ସଙ୍ଗରେ ଦାସୀ ଘେନି
ନୃପତିର ପାଶରେ ବିଜୟ କଲାପୁଣି
ଦେଖିଣ ରାଜନ ପରସନ ହେଲା
ରାଣୀଙ୍କି ନେଇଣ କୋଳରେ ବସାଇଲା ।
ମୁଖରେ ଚୁମ୍ବଦେଇ ଫିଟାଏ ନିବିବନ୍ଧ
ରତିରସ କଲା ନୃପତି କୁଳଚନ୍ଦ୍ର ।
ରତିରସ ସାରିଣ କୋଳରେ ଘେନି ଶୋଇ
ରଜନୀ ଶେଷରେ ରାଣୀ ଚଳିଯାଇ ।
ରାଜାହିଁ ନିଦ୍ରାତେଜି ପଲଙ୍କୁ ଉଠିଲା
ବାହାର ଜଗତି ଉପରେ ବିଜେକଲା
ସେବାକାରୀଲୋକମାନେ ମାଜଣା ବିଧିକଲେ
ସୁବାସିତ ଜଳରେ ସ୍ନାନ କରାଇଲେ ।
ଦେବାର୍ଚ୍ଚନ ସାରି ଷଡ଼ ରସରେ ଭୋଜନ
କଲେ ଏଥୁଅନ୍ତେ ଆନ ଚରିତକୁ ଶୁଣ ।
ଚନ୍ଦ୍ରମଣୀ ରାଣୀ ଯେ ଭିତରେ ପୁରେ ଗଲା
ମର୍ଦ୍ଦନ ମାଜଣା ହୋଇ ସ୍ନାନ ବିଧିକଲା ।
ଷଡ଼ରସେ ଭୋଜନ କଲା ରାଣୀପୁଣ
ଅଶକତେ ପଲଙ୍କରେ କରିଲା ଶୟନ ।
ସେହିଦିନ ଗର୍ଭବାସ ହୋଇଲାକ ରାଣୀ
ପାଞ୍ଚମାସରେ ଦାସୀ ରାଜାଙ୍କ ଆଗେ ଭଣି ।
ଶୁଣିଣ ନୃପତି ହରଷମନ ହେଲା
ଅଷ୍ଟମାସରେ ରାଜନ ଗର୍ଭଦାନ କଲା ।
ଋଷି ବ୍ରାହ୍ମଣ ବରିଣ ବହୁତ ଦାନକଲା
ବିନୟ ହୋଇ ରାଜା ବଚନ କହିଲା ।
ଦଶମାସ ପାଞ୍ଚଦିନେ ଦୁହିତା ଜନ୍ମହେଲା
ଚନ୍ଦ୍ରଙ୍କ କିରଣପ୍ରାୟେ ଜ୍ୟୋତି ବିକାଶିଲା ।
ପାଞ୍ଚଦିନେ ପଞ୍ଚୁଆତି ଷଷ୍ଠିଘର କରି
ସପ୍ତଦିନେ ଉଠିଆରୀ କଲେ ଦାସୀ ଘେରି ।
ବାରଯାତ୍ରା ସାରି କିଛିଦିନ ଗଲାପୁଣ
ମାସକ ସମ୍ପୂର୍ଣ୍ଣ ଦିନ ବିଚାରି ରାଜନ ।
ଋଷି ବ୍ରାହ୍ମଣ ଡକାଇ ପବିତ୍ର ହୋମକଲା
ଦୁହିତାର ନାମ ସେହିଦିନ ହେଲା ।
ସୁମିତ୍ରା ବୋଲି ନାମଦେଲେ ଯେ ତାହାର
ଆନନ୍ଦ ହୋଇଲା ମନରେ ନୃପବର ।
ଋଷି ବ୍ରାହ୍ମଣଙ୍କୁ ଭୁରି ଭୋଜନ ଦେଲା
ଧନରତ୍ନ ଦେଇଣ ମେଲାଣି କରାଇଲା ।
ହେତି ପ୍ରହେତିବଂଶୁ ସାତପଞ୍ଚାଶନାରୀ ଜାତ
ଶୁଣିଣ ତୁମ୍ଭ ମନକି ହୋଇଲା ସନ୍ତୋଷ ।
ଉମାଦେବୀ ବୋଇଲେ ସେଠାରୁ କିସ ହେଲା
ସେ କଥା ମୋର ଆଗେ କହଦେବ ଭଲା
ତ୍ରିଲୋଚନ ବୋଇଲେ ସେ କଥା ଏବେଶୁଣ
ନାରୀମାନଙ୍କ ଜନମ ଦେଖିଣ ଦେବଗଣ ।
ସ୍ୱର୍ଗରେ ମେଳହୋଇ ବିଚାର ଦେବକଲେ
କୌଶଲ୍ୟା କୈକୟୀସୁମିତ୍ରାଗର୍ଭେ ଜାତହେଲେ ।
ଚାରି ରାବଣ ଦୁଷ୍ଟ ମାରିବେ ଜାତ ହୋଇ
ତେବେ ସେ ସ୍ଥିର ହୋଇ ରହିବ ଏ ମହୀ ।
ଏମନ୍ତ ବିଚାର ଦେବତା କଲେ ପୁଣ
ଯେଉଁପ୍ରାୟେ ରାମ ମାରିବେ ଦୁଷ୍ଟଜନ ।
ଯେରୂପେ ଦଶରଥ କୈକୟୀ ସତ୍ୟ ହେବ
ଯେଉଁରୂପେ ଶ୍ରୀରାମ ଲକ୍ଷ୍ମଣ ବନଯିବ ।
ଏମାନ ଭିଆଇବାକୁ କରିବା ଉପାୟେ
ଏତେ ବୋଲି କାଳଦେବୀକି ରାଇ ସୁରରାଏ ।

ଇନ୍ଦ୍ର ସୁମରଣାରେ ଅଇଲା ସେହୁ ନାରୀ
ଦେଖିଣ ଦେବରାଜା କହିଲା ବିଚାରି ।
ମର୍ତ୍ତ୍ୟମଣ୍ଡଳକୁ ଗୋଚଳ ଆମ୍ଭ ବୋଲେ
ଜମ୍ବୁଦ୍ୱୀପ ମଣ୍ଡଳରେ ଭରତ ଖଣ୍ଡରେ ।
ଚନ୍ଦ୍ରଦେଇ ପୁରକୁ ଚଳ ଯା ସତ୍ୱରେ
ସୁଦୀର୍ଘରେ ଜାତ ହେବୁ ଯାଇଣ ସଖିରେ ।
କୈକେୟୀ ରାଣୀର ହୋଇବୁ ଦାସୀ ପୁଣ
କୌଶଲ୍ୟା ଉଦରେ ଜନ୍ମିବେ ନାରାୟଣ ।
ଦେବଙ୍କର କାର୍ଯ୍ୟ ତୁହି ସେଠାରେ କରିବୁ
ଖଳଭାଷା କହି କୈକେୟୀକୁ ବୁଝାଇବୁ ।
କୈକୟୀ ଦଶରଥଙ୍କୁ ସତ୍ୟ କରାଇବ
ଶ୍ରୀରାମ ଲକ୍ଷ୍ମଣଙ୍କୁ ବନକୁ ପେଶିବ ।
ଶ୍ରୀରାମ ଙ୍କ ଘରଣୀ ମହାଲକ୍ଷ୍ମୀ ଜାଣ
ଶ୍ରୀରାମଙ୍କ ସଙ୍ଗେ ସେ ଗମିବେ କାନନ ।
ତେବେ ସେ ଦୈତ୍ୟବଳକରିବେ ନିଶୋଧନ
ଚାରି ରାବଣ ମଲେ ନିଶ୍ଚିନ୍ତ ଦେବଗଣ ।
ଶୁଣିଣ କାଳଦେବୀ ବହନ ଚଳିଗଲେ
ଚନ୍ଦ୍ରଦେଇ ପୁରରେ ବିଜୟେ ସେ କଲେ ।
ମଦନରେ ଢେମା ଘରେ ପ୍ରବେଶ ହେଲା
ଜ୍ୟୋତିରୂପ ଧରିଣ ଅଙ୍ଗେ ପ୍ରବେଶ ହୋଇଲା ।
ସେ ଢେମା ରମଣୀ ନାମ ଅନ୍ନପୂର୍ଣ୍ଣା ଜାଣ
ଶୁଦ୍ଧ ସ୍ନାନ ପାଳି ତାହାର ସେହି ଦିନ ।
ସ୍ୱାମୀ ପାଶରେ ପ୍ରବେଶ ରାତ୍ରରେ ହୋଇଲା
ରତିରସ କରିଣ ରଜନୀ ପୁହାଇଲା ।
ଦଇବ ବଶରେ ଯେ ହୋଇଲା ଗର୍ଭବାସ
ଦିନୁଦିନ ଗର୍ଭତାର ହୋଇଲା ପ୍ରକାଶ ।
ଦଶମାସ ସଂପୂର୍ଣ୍ଣରେ ଦୁହିତା ହେଲା ଜାତ
ତିନିଭଙ୍ଗ ତିନିକୁଜ ଦୁହିତା ସମ୍ଭୁତ ।
ଦେଖି ପିତା ମାତା ତାକୁ କଲେ ଅନାଦାର
ବୀରକେତେ ନାମ ଦେଲେ ମନ୍ଥୁଡ଼ି ତାହାର ।
ଏଥୁଅନନ୍ତରେ ବରଷ ଦଶଗଲା
ଦଇବ ଯୋଗରେ ଯେ ସେ ନାରୀ ବଢ଼ିଲା ।
କୈକେୟୀ ରାଜକୁମାରୀ କୈକେୟୀନାମେନାରୀ
ନବଯୁବା ତନୁ ଧଇଲା ସୁକୁମାରୀ ।
ପାଟ ମହାଦେଈ କହିଲା ରାଜା ଆଗେ
ଦୁହିତା ବିଭା କର ରାଜନ ଏବେ ବେଗେ ।

ଶୁଣିଣ ରାଜନ ହରଷ ମନ ହେଲା
ପାତ୍ର ମନ୍ତ୍ରୀଙ୍କି ବଚନ ବୋଇଲା ।
କୁମାରୀ ପାଇଁ ମୋର ବରବେଶ କର
ଅଯୋଧ୍ୟା ନଗରକୁ ଚଳ ହେ ସତ୍ୱର ।
ଶୁଣିଣ ପାତ୍ର ମନ୍ତ୍ରୀ ବେଗେ ଚଳିଗଲେ
ଅଯୋଧ୍ୟା ନଗରେ ପରବେଶ ହେଲେ ।
ଅଜ ରାଜାଙ୍କ ଆଗରେ କହିଲେ ଯାଇଣ
ଶୁର ଦେବ ଅଯୋଧ୍ୟା ଦେଶ ନରରାଣ ।
ଚନ୍ଦ୍ରଦେଇ ପୁର ରାଜା ନାମ ଯେ କୈକେୟ
କରୁଣାକର ଅଂଶରେ ଜନମ ତୀର ଦେହ ।
ଦୁହିତା ଗୋଟିଏ ଅଛଇଁ ତାର ଜାଣ
କୈକେୟୀବୋଲି ତାର ନାମଟି ଅଟେ ଜାଣ
ନବଯୁବା ରୂପେ ସେ ସୁନ୍ଦର ପଣେ ଜିତ
ତୁମ୍ଭପୁରକୁ ପେଶିଲେ କରିଣ ମଧ୍ୟସ୍ଥ ।
ତୁମ୍ଭର କୁମରଙ୍କୁ ସେ କନ୍ୟା ବିଭାଦେବେ
ବରଣ କରିବାକୁ ଆସୁଅଛୁ ଆମ୍ଭେ ।
ଶୁଣିଣ ରାଜନ ପରମ ତୋଷ ହେଲେ
ଜଉତିଷ ଡକାଇ ମେଳକ ବୁଝିଲେ ।
ବରକନ୍ୟାଙ୍କର ଯୋଗମେଳକହୋଇଲା ଉତ୍ତମ
ବିଭାଘର ନିଶ୍ଚୟ କଲାକ ରାଜନ ।
ଦିନ ବାର ବୁଝିଣ ସାମନ୍ତ ପାତ୍ର ଗଲେ
ଚନ୍ଦ୍ରଦେଇ ପୁରେ ପରବେଶ ହେଲେ ।
ରାଜନ ଆଗରେ ସକଳ କଥା କହି
ଶୁଣିଣ ରାଜନ ନଗ୍ରକୁ ମଣ୍ଡାଇ ।
ନାନା ବିଚିତ୍ରରେ କଟକ ମଣ୍ଡାଇଲା
ଧାଡ଼ି ଧାଡ଼ି ସୁବର୍ଣ୍ଣ କଳଶ ବସାଇଲା ।
ଦୂର ଦେଶକୁ ନିମନ୍ତ୍ରଣ ବନ୍ଧୁବର୍ଗ ଲୋଡ଼ି
ଅଠର ସମ୍ରାଜା ଅଣାଏଁ ଦଣ୍ଡଧାରୀ ।
ସମସ୍ତେ ଆସି ଅଯୋଧ୍ୟାନଗ୍ରରେ ଭୁଣ୍ଡହେଲେ
ବାଦ୍ୟର ଶବଦରେ କୁରୁମ ଉଛୁଳିଲେ ।
ଚତୁରଙ୍ଗ ବଳ ଯେ ସାରେଣି ବଳ ଅଶ୍ୱ
କି କହିବା ତା ସମ୍ପତ୍ତି କୁବେର ସଦୃଶ ।
ରତ୍ନ ବେଦୀ ଅଟାଳି ଜଗତି ବଡ଼ ଉଚ
ଦୁଇକୋଟି ଋଷି ଯେ ମିଳିଲେ ସେହି ରାଜ୍ୟ
ବାଟୁଆ ହାଟୁଆ ବଜାର ଦୋକାନ
ଦୁଇଲକ୍ଷ ବ୍ରାହ୍ମଣ ମଲଲେ ତହିଁ ପୁଣ ।

ସ୍ୱର୍ଗପୁରରେ ଦେବତାଏ ପ୍ରଶଂସା କଲେ
ଏଥୁ ଅନନ୍ତରେ କଥା ଶୁଣ ଭଲେ ।
ଗଉରୀ ବୋଇଲେ ଶୁଣ ହେ ଈଶାନ
କୈକେୟୀ ରାଜ୍ୟେ ଉତ୍ସବ ହେଲାତ ଏସନ ।
ତପନ କୁଳେ ରାଜା ଅଜ ନରପତି
ଦଶରଥ ଅଟନ୍ତି ତାଙ୍କର ସନ୍ତତି ।
ପୁଣି କେମନ୍ତେ କଲେ ବିଭାର ଉତ୍ସବ
ସେଥିର କଥା ମୋତେ କହିବା ହେଉଦେବ ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ପୁତ୍ର ବିଭା ନିମନ୍ତେ ଆନନ୍ଦ ନୃପତି ।
ଷାଠିଏ ସହସ୍ର ରାଜା ବରଣ କରି ଆଣି
ପାଞ୍ଚକୋଟି ରାଣୀଙ୍କି ବରିଲେ ନୃପମଣି ।
ଦୁଇଲକ୍ଷ ବିପ୍ରବର ଡକାଇ ଆଣିଲେ
ବତିଶ କ୍ଷଉଣୀବଳ ତକ୍ଷଣେ ସାଧିଲେ ।
ପଚିଶ କ୍ଷଉଣୀ ତାର ଅଟନ୍ତି ସରଦାର
ରଥି ସାରଥି ସାତକୋଟି ଯେ ତାହାର ।
ହସ୍ତୀ ତାର ଦୁଇଲକ୍ଷ ସରେଣୀ ପାଞ୍ଚଲକ୍ଷ
ଅଶ୍ୱ ତାର ନବଲକ୍ଷ ଅଟନ୍ତି ବରାକ୍ଷ ।
ବାଜନ୍ତରୀ ବଳ ଯେ ବତିଶ ଲକ୍ଷ ଜାଣ
ପୁରୋହିତ ଗୁରୁ ଯେ ବଶିଷ୍ଠ ଋଷି ପୁଣ ।
କଟକରେ ଉତ୍ସବ କଲେକ ନୃପବର
ସୁବର୍ଣ୍ଣର କଳଶ ଚିରାଳ ଅପାର ।
ଚିତ୍ରକାର ଡକାଇ ଚିତ୍ର କରାଇଲା
ଚିତ୍ରପଟ ଦେଖିବାରୁ ଭୁବନ ଦିଶେତ୍ୱରା ।
ଛାମୁଣ୍ଡିଆ ସବୁଠାରେ କଟକରେ କରି
ଚୂତପତ୍ର ନାରୀକେଳ ମାଳ ମାଳ ଭରି ।
ସବୁଦ୍ୱାରେ ପୂର୍ଣ୍ଣକୁମ୍ଭ ରାଜହଂସ ପନ୍ତି
ଅଯୋଧ୍ୟା ପୁରଗୋଟି ଶୋଭାରେ ଝଟକନ୍ତି ।
ଶ୍ୱେତପାରୁ ଆଗରେ ଶୋଭାରେ ଝିଙ୍କଦ୍ୟନ୍ତି
ଚାନ୍ଦୁଆ ଟଣାଇଲେ ବିବିଧ ପନ୍ତି ପନ୍ତି ।
ବାଦ୍ୟ ନିଶାଣରେ ପୂରଇ ଜଗତ
ଅତି ସମ୍ଭର୍ବରେ ବାହାରେ ନରନାଥ ।
ସୈନ୍ୟବଳଙ୍କୁ ଆଜ୍ଞାଦେଲେ ନୃପରାଣ
ଚନ୍ଦ୍ରଦେଈ ପୁରକୁ ଚଳ ସର୍ବେପୁଣ
ଏମନ୍ତ ସମୟରେ ବନ୍ଧୁଜନେ ମିଳି
ଦେଖିଣ ରାଜା ତାଙ୍କୁ ଗଉରବ କରି ।

ଷଡ଼ରସେ ଭୋଜନ କଲେକ ବନ୍ଧୁଗଣ
ସମସ୍ତେ ଭୋଜନ ସାରି ବାହାରିଲେ ପୁଣ ।
କୁମାର ଦଶରଥକୁ ଅନୁକୂଳ କରାଇ
ବିଷ୍ଣୁପ୍ରତିମା ଶିବ ପ୍ରତିମା ଦର୍ଶନ କରାଇ ।
ଦେବୀମାନଙ୍କୁ ଦର୍ଶନ କଲେ ଯାଇ ପୁଣ
ମଙ୍ଗଳ ଆରୋପଣ କଲେକ ରାଜନ
ବରବେଶ ଯେ ନାନାବିଧି କରାଇଲେ
ମସ୍ତକରେ ଜରି ପାଗ ନେଇଣ ବାନ୍ଧିଲେ ।
ଝଲକା ହୀରାଝୁମ୍ପା ନାନାବର୍ଣ୍ଣେ ଯତ୍ନ
ଶିରପେଚରେ ଦେଲେ ନେଇଣ ତ୍ୱରିତ ।
ବୀରବଲ୍ଲୀ ମୁକୁତା କର୍ଣ୍ଣରେ ଲଗାଇଲେ
ଝଲକା ଫିରିଫିରା ତାପରେ ଖଞ୍ଜିଲେ ।
ଚନ୍ଦ୍ର ଫାସିଆ ଫୁଲ କର୍ଣ୍ଣପରେ ପୁଣ
ଖଞ୍ଜିବାରୁ ରୂପଗୋଟି ଦିଶେ ଶୋଭାବନ ।
ହସ୍ତରେ ସୁବର୍ଣ୍ଣ କଙ୍କଣ ଲଗାଇଲେ
ବାହାରେ ବାହୁଟିମାନ ଶୋଭାଦିଶେ ଭଲେ ।
ହୃଦୟରେ ପଦକ ଆବର ଚନ୍ଦ୍ରଲୁଳେ
ଚାପସରି କଣ୍ଠମାଳ ହେମ ଶୋଭାକରେ ।
ବକ୍ଷସ୍ଥଳେ ନୀଳମଣି କରଇ ତହିଁ ଲୀଳା
ଯେସନେ ଚନ୍ଦ୍ରକୁ ବେଢ଼ି ରହେ ତାରା ।
ଅଙ୍ଗୁଷ୍ଠିରେ ବଜ୍ରମୁଦି ଦିଶେ ଶୋଭାବନ
କଟୀରେ ସୁନାସୂତା ଦିଶଇ ଶୋଭନ ।
ପାଦ ଅଙ୍ଗୁଷ୍ଠରେ ଅଙ୍ଗୁଷ୍ଠା ଶୋଭାପାଏ ।
ହୃଦରେ କାଞ୍ଚୁଲା ଜରି ଶଶି ପ୍ରାୟେ ।
ରତ୍ନର ପାଦୁକା ଲଗାଇ ବେନିପାଦେ
ଯେମନ୍ତେ ଶୋଭାପାଏ କୁମରର ଅଙ୍ଗେ ।
ବେନିକର ପ୍ରସାରିଣ ଉଠିଲା କୁମାର
ଦାସୀମାନେ କରେ ନେଇ ଦେଲେକ ତଣ୍ଡୁଳ ।
ଦୁଇକର ପୁରନ୍ତେ ଉପରେ ଗୁଆଦେଲେ
ଜନନୀର ଅଞ୍ଚଳରେ ଦିଅ ସେ ବୋଇଲେ ।
ଶୁଣିଣ ଦଶରଥ ଜନନୀ ପାଶେ ଗଲେ
ଜନନୀ ଅଞ୍ଚଳରେ ତଣ୍ଡୁଳକୁ ଦେଲେ ।
ଜନନୀଙ୍କି ନମସ୍କାର ହୋଇଣ କୁମର
ମନରେ ହରଷ ହୋଇଲା ଜନନୀର ।
ବେନିନୟନରେ ଅଞ୍ଜନ ରାଣୀଦେଲେ
ସିନ୍ଦୂର ଠିଆ ଚିତା ମସ୍ତକେ ଲଗାଇଲେ ।

ଭାଲରେ ଚନ୍ଦନ ବୋଳିଲେ ରାଣୀ ପୁଣ
ପଞ୍ଚବର୍ଣ୍ଣ ପୁଷ୍ପମାଳ ଜୁଡ଼ାରେ ଖଞ୍ଜିଣ ।
କଣ୍ଠରେ ଦୁଇଗୋଟି ମାଳ ଲମ୍ବାଇଲା
କୁମର ମେଲାଣି ହୋଇ ଜନନୀ ପାର୍ଶ୍ୱୁଁଗଲା ।
ପିତାର ପାଶରେ ପ୍ରବେଶ ହେଲା ଯାଇ
ଅଜ ନରପତି ଗୁରୁମୁଖ ଚାହିଁ ।
ବୋଇଲେ କୁମରକୁ ବିଧିମତ କର
ମୋହର ସମାନରେ ହେଉ ମୋ କୁମାର ।
ଶୁଣିଣ ବଶିଷ୍ଠ ସାମନ୍ତ ସୈନ୍ୟଘେନି
ମଙ୍ଗଳ ଆଳତି କଲେକ ତତ୍‌କ୍ଷଣି ।
ଆଳତୀ ଯେ ସାରିଣ ଆଡ଼େଣୀ ଧରାଇଲେ ।
ଆଲଟ ଚାମର ଆଗରେ ଢଳାଇଲେ ।
ଧୀରଧୀର ହୋଇଣ କୁମରମଣି ଚଳି
ଆଗରେ କଯେବାର ଉଚ୍ଚରେ ଡକାକରି ।
ସର୍ବମଙ୍ଗଳ ଦୁର୍ଗା ନୃସିଂହ ମାଧବ
ମତ୍ସ୍ୟ, କୂର୍ମ, ନୃସିଂହ, ଶୁକ୍ର ବାମନ ଦେବ ।
ଏମନ୍ତ ବଚନମାନ ଉଚ୍ଚରେ ଉଚ୍ଚାରଇ
କୁମର ଚଳିଯାଇ ସିଂହଦ୍ୱାରେ ହୋଇ ।
ଖଣ୍ଡିଆ ପ୍ରତିହାରୀ ମଣାଇଁ ଘେନିଗଲେ ।
କନକଧ୍ୱଜ ରଥରେ ନେଇ ବସାଇଲେ ।
ସିଂହାସନ ଉପରେ ବିଜୟେ ଦଶରଥ
ଦେଖିଣ ସମସ୍ତେ ହେଲେ ତୋଷଚିତ୍ତ ।
ଛାମୁରେ ଆଲଟ ଚାମର ବିଞ୍ଚଣୀ
ଆଡ଼େଣୀ ପଙ୍ଖା ଖଦୀ ଆଗରେ ଘେନି ପୁଣି ।
ରଥି ବସେ ରଥରେ ସେନାପତି ନଗରେ
ସର୍ଦ୍ଦାରମାନେ ବସିଲେ ଅଶ୍ୱର ପିଠିରେ ।
ସାହେଣୀମାନଙ୍କରେ ସାମନ୍ତ ପାତ୍ରଗଣ
ରାଜାମାନେ ବସିଲେ ରଥ ଉପରେଣ ।
ଋଷିମାନେ ବିଜେକଲେ ଚଉଦୋଳ ପରେ
ଆଗପଛେ ପଦାତି ଶସ୍ତ୍ରଧରି କରେ ।
ଦେଖିଣ ଅଜ ନୃପତି ରଥରେ ବିଜେକଲେ ।
ସିଂହଦ୍ୱାର ବଳିଯାନ୍ତେ ହୁଳହୁଳି ଦେଲେ ।
ପାଞ୍ଚଦିନେ ଚନ୍ଦ୍ରଦେଇ ପୁରରେ ପରବେଶ
ବାଟରୁ ପାଛୋଟି ରାଜା ନେଲେ ଯେ ହରଷ ।
ରାଜାଙ୍କ ସିଂହଦ୍ୱାରେ ହୋଇଲେ ପ୍ରବେଶ .
କୈକେୟ ରାଜନ ରଥେ ହୋଇଲେ ପରବେଶ ।।

କୁଆଁଇଁ କରଧର ଉଠାଇ ଘେନିଗଲେ
ଅନ୍ତଃପୁର ଭିତରେ ଯାଇଣ ପଶିଲେ ।
ଦାସୀମାନେ ସେଠାରୁ ଭିତରପୁର ନେଲେ
ସୁବର୍ଣ୍ଣ ସିଂହାସନ ଉପରେ ବସାଇଲେ ।
ସକଳ ନାରୀ ହଂସ ଦେଖିଣ ଆସେ ପୁଣ
ଦଶରଥଙ୍କୁ ଦେଖିଣ ହେଲେ ତୋଷମନ ।
ମଙ୍ଗଳକୃତ ବିଧାନ ଯେ ରାତ୍ରେ କଲେ
ଗ୍ରାମଦେବୀ ମନ୍ଦିରରେ ପାଣି ତୋଳାଇଲେ ।
ବରଙ୍ଘରୁ ସାତ ଘର କନ୍ୟାଆଡ଼ୁ ସାତଘର
ଚଉଦ ଘରର ପାଣି ଏ ଯେ ଠାବର ।
ବରକନ୍ୟା ଦୁହିଁଙ୍କି ସ୍ନାନ କରାଇଲେ
ହଳଦୀ ଲେପନରେ ରଜନୀ ବଞ୍ଚିଲେ ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ସମସ୍ତଙ୍କୁ ଚରଚା କଲାକ ନୃପତି ।
ଅନ୍ନ ବ୍ୟଞ୍ଜନ କଲେ ଘୃତ ଦଧି ଦୁଗ୍ଧ
ଲବଣୀ ମହ୍ଲା ଦହି ସଞ୍ଚାର ବିଧିଭାବ ।
ଅନ୍ନବସ୍ତ୍ର ସଦାବର୍ତ୍ତ କଲାକ ବହୁତ
ପାଣିପଣା ସବୁସ୍ଥାନେ ଦେଲା ବିଧିମତ ।
ଯାଆନ୍ତା ଯାଉଛନ୍ତି ଆସନ୍ତା ଆସୁଛନ୍ତି
ଚତୁରଙ୍ଗ ବଳ ସବୁ ଘେରି ରହିଛନ୍ତି ।
ରାଜାଙ୍କ ନବର ପାତ୍ରଙ୍କ ଉଆସରେ
ରାଉତ ମାହୁନ୍ତ ଯେ ରହିଲେ ସେଠାରେ ।
ସାତଟି ଘର ଭିତରେ ସେନାପତି ରହି
ବ୍ରାହ୍ମଣମାନେ ଋଷି ସଙ୍ଗତରେ ରହି ।
ସମସ୍ତଙ୍କୁ ଭୋଜନ ଦେଲାକ ନୃପବର
ମଙ୍ଗଳ କୃତ ସରିଲା ହେଲା ବିଭା ବେଳ ।
ପାଟ ଜଉତିଷମାନେ ଆସି କହି
ଅନୁକୂଳ ବେଳ ହୋଇଲା ନରସାଇଁ ।
ଶୁଣିଣ ରାଜନ ଭିତରପୁର ଗଲେ
ବରକୁ ବେଶକରି ବହନ ଆଣିଲେ ।
ରତ୍ନବେଦୀ ଉପରେ ବର ଯାଇ ମିଳି
ରତ୍ନ ପିଢ଼ା ଦୁଇଗୋଟି ଦେଲେ ନେଇକରି ।
ପିଢ଼ାର ଉପରେ ବସିଲେ ପିତା ପୁତ୍ର
ବରୁଣ ପୂଜା କଲେ ଋଷି ଯେ ବଶିଷ୍ଠ ।
ବରୁଣ ପୂଜାସାରି ପାଞ୍ଚ ମନ୍ତ୍ରିଲେ
ବାରିକ ନେଇ ପାଞ୍ଚବରକୁ ପିନ୍ଧାଇଲେ ।

ଲବଣ ଚଉରୀ କଲେ କନ୍ୟାକୁ ଆଣି ପୁଣି
ଫେରାଇଣ ଭିତରକୁ କନ୍ୟାକୁ ନେଲେ ପୁଣି ।
ଝୁମ୍ପୀ ଚଉଁରୀ ଭୂଷୀ ଯୋଡ଼ାକୁ ଘେର କରି
ପଞ୍ଚବର୍ଣ୍ଣେ ଫୁଲମାନ ଯୋଡ଼ା ଉପରେ ଭରି ।
ମସ୍ତକରେ ମଥାମଣି ଅଳକାଶିରେ ବାନ୍ଧି ।
ଅତି ଯତନରେ ଭିଡ଼ା ତାରପରେ ବାନ୍ଧି ।
ତଥିପରେ ଲୋଟଣୀ ଉପରେ ଫୁଲ ମାଳ
ଦେଇଣ ଦାସୀମାନେ କଲେକ ମଞ୍ଜୁଳ ।
କର୍ଣ୍ଣରେ କର୍ଣ୍ଣଫୁଲ କାପ ମଲ୍ଲୀକଢ଼ି
ଫିରିଫିରା ସଙ୍ଗରେ ଚନ୍ଦ୍ରଫାସିଆ ଜଡି ।
ରତ୍ନ ଚାପ ସରିମାଳ ଗଳାରେ ଖଞ୍ଜିଲେ
କଣ୍ଠରେ ରତ୍ନମାଳ ନେଇଣ ଦାସୀ ଦେଲେ ।
ନୂପୁର ପାହୁଡ ଝୁଣ୍ଟିଆ ସଙ୍ଗେ ଖଞ୍ଜି
ଅଷ୍ଟରତ୍ନେ ନିର୍ମିତ ଝଟକ ତେଜରାଜି ।
ରତ୍ନଝରି କାଞ୍ଚୁଲା ହୃଦରେ ନେଇ ଖଞ୍ଜି
ମସ୍ତକରେ ସିନ୍ଦୂର ବିନ୍ଦୁ ଯେ ବରାଜି ।
ଚନ୍ଦନପାଟି ଦୁଇ କପୋଳେ ଲେଖିଦେଲେ
ନୟନେ ଅଞ୍ଜନ ଯତନେ ରଞ୍ଜିଲେ ।
ଇନ୍ଦ୍ର ଗୋବିନ୍ଦ ଓଢ଼ଣୀ ପତନୀ ଦେଲେ ପୁଣ ।
ବେଶକରି କୈକେୟା କନ୍ୟାକୁ ଘେନିଗଲେ
ରତନ ବେଦୀର ଉପରେ ବସାଇଲେ ।
ବୈଶାଲ୍ୟା ରୋପଣ ସାରି ଋଷି ଯେ ବ୍ରାହ୍ମଣ
ବରକନ୍ୟାଙ୍କ କର କଲେ କୁଶରେ ବନ୍ଧନ ।
ହସ୍ତଗଣ୍ଠି ପକାଇ ସାମବେଦ ପଢ଼ି
ବିବାହିତ ଝିଅଟିକୁ ଡାକିଣ କୁଶ ଫେଡ଼ି ।
ବ୍ରାହ୍ମଣ, ଜଉତିଷ, ଋଷି ଯେ ତହୁଁ ପୁଣ
ହୋମ କଲେ ତହିଁ ବେଦକୁ ପଢ଼ିଣ ।
ଲାଜାହୋମ ସାରିଣ ପୂର୍ଣ୍ଣ ଆହୂତି କଲେ
ଅଗ୍ନିକି ସନ୍ତୋଷ କରି ଶୀତଳ କରିଲେ ।
ରତ୍ନବେଦୀ ଉପରୁ ବରକନ୍ୟା ଗଲେ
ଭିତରେ ଅନ୍ତଃପୁରେ ପ୍ରବେଶ ହୋଇଲେ ।
ରତ୍ନ ସିଂହାସନରେବସି ବରକନ୍ୟା
ରାଣୀହଂସମାନେ କରନ୍ତି ବନ୍ଦାପନା ।
ଅନେକ ଧନରତ୍ନ ପାଟରାଣୀ ଦେଲେ
ଆବର ରାଣୀମାନେ ଧନ ବିଳୋହିଲେ ।

ଲକ୍ଷେକ ପାଣିଦ୍ରବ୍ୟ ଆଣିଦେଲେ ପୁଣ
ବନ୍ଦାପନା କରିଣ ଖେଳାନ୍ତି ଜୁଆ ଜାଣ ।
ଜୁଆଖେଳ ସରନ୍ତେ ବର କନ୍ୟାଙ୍କୁ ନେଲେ
ପଞ୍ଚଗ୍ରାସି ଭୋଜନ ବିଧାନେ କରାଇଲେ ।
ଏମନ୍ତ ସମୟରେ ରଜନୀ ମଧ୍ୟେଣ
ମଧୁଶଯ୍ୟା ଘରକୁ ନେଲେକ ବେନିଜଣ ।
ପାତ୍ର ମନ୍ତ୍ରୀ ରାଜାଗଣ ଯେତେ ଯାଇଥିଲେ
ଚତୁରଙ୍ଗବଳ ସହିତ ଭୁରି ଭୋଜନ କଲେ ।
ଆରଦିନ ହରିଦ୍ରା ବିଧି କଲେ ଜାଣ
ହଳଦୀ ଚନ୍ଦନରେ ସମସ୍ତେ ବିଲେପନ ।
ଦୁଇକୁଳ ରଥି ଚତୁରଙ୍ଗ ସେନାପତି
ପାତ୍ର ମନ୍ତ୍ରୀ ସହିତେ ଯେତେକ ନୃପତି ।
ସମସ୍ତେ ବସନ୍ତବର୍ଣ୍ଣ କୁସୁମ ଲେପନରେ
ସ୍ନାନକରି ଷଡ଼ରସେ ଭୋଜନ ସାରିଲେ ।
ଦ୍ୱିତୀୟ ଦିନ ଯାନ୍ତେ ତୃତୀୟ ଦିନ ହେଲା
ଚନ୍ଦ୍ରଦେଇପୁର ବୁଲି ଦେଖିଲେ ସେ ତ୍ୱରା ।
ଚତୁର୍ଥ ଦିନ ଲାଜାହୋମ ବିଧିମାନ କଲେ
ବେଦଧାରା ପ୍ରମାଣରେ ଦୋଷ ଛଡାଇଲେ ।
ପଲଙ୍କ ସୁପାତିରେ ବିଜୟ ଦଶରଥ
କୈକୟୀଙ୍କୁ ବେଶ କରି ଆଣିଲେ ଦାସୀ ଯୂଥ ।
ବରକନ୍ୟା ଦୁହିଁଙ୍କୁ ଏକ ମେଳ କରି
ଚାମର ଆଲଟ ଯେ କୈକୟା କରେ ଧରି ।
ପଲଙ୍କରୁ ଦଶରଥ ଉଠିଣ ବସିଲେ
କୈକୟୀଙ୍କୁ ଧରିନେଇ କୋଳରେ ବସାଇଲେ ।
ମୁଖରେ ଚୁମ୍ବନ ଦେଇ କୁଚ ମର୍ଦ୍ଦନ କଲେ
ଦେଖିଣ ଦାସୀମାନେ ଅନ୍ତର ହୋଇଗଲେ ।
ଦାସୀମାନେ ଯିବାରୁ ରାଜାର କୁମାର
ନାନା ପରିବନ୍ଧନରେ ସୁରତିରସେ ଭୋଳ ।
ରତିରଙ୍ଗରେ ଯେ ରଜନୀ ପୁହାଇଲେ ।
ପ୍ରଭାତ ହୁଅନ୍ତେ ଶଯ୍ୟା ତ୍ୟାଗ କଲେ ।
ବିବସନ ବସନ ସମ୍ଭାଳି ସୁନ୍ଦରୀ
ସ୍ୱାମୀଙ୍କ ଚରଣ ତଳେ ପ୍ରଣିପାତ କରି ।
ଏମନ୍ତ ସମୟରେ ଦାସୀଗଣ ମିଳି
କୈକୟୀଙ୍କୁ ଘେନି ଅନ୍ତଃପୁରେ ଗଲେ ଚଳି ।
ଦଶବିଂଶ ଦାସୀ ପ୍ରବେଶ ଆସି ହେଲେ
ହାସ ପରିହାସରେ ସେ ଦଶରଥଙ୍କୁ ନେଲେ ।

ବାହାର ଜଗତୀ ଉପରେ ବସାଇ
ସୁବାସିତ ଜଳ ଦେଲେ ଦାସୀମାନେ ନେଇ ।
ଶ୍ରୀମୁଖ ପଖାଳିଲେ ରାଜାଙ୍କ କୁମର
ଏଥୁ ଅନନ୍ତରେ ଶୁଣ କଥା ସାର ।
ଦାସୀମାନେ କୈକୟୀଙ୍କୁ କଲେକ ମାଜଣା
ମର୍ଦ୍ଦନ ମାଜଣା ସାରି ବେଶରେ ଫୁଲଣା ।
ରାଜକୁମାରଙ୍କୁ ଘେରି ଦାସୀ ପରିଚାରୀ
ମର୍ଦ୍ଦନ ମାଜଣା ସାରି ସୁଭୂଷଣ କରି ।
ବରକନ୍ୟାଙ୍କୁ ଏକ ସ୍ଥାନେ ବସାଇଲେ ନେଇ
ଅମୃତ ରସାବଳୀ ଭୋଜନ ତାଙ୍କୁ ଦେଇ ।
ପାର୍ବତୀ ବୋଇଲେ କହ ହେ ଈଶାନ
ବରକନ୍ୟା ଏକ ଅଙ୍ଗ ରଜନୀରେ ପୁଣ ।
କେଉଁ ରୂପେ ସମସ୍ତଙ୍କୁ ମେଲାଣି ରାଜା କଲା
ସେ କଥା ଶୁଣିବାକୁ ମୋ ମନ ବଳିଲା ।
ଈଶ୍ୱର କହିଲେ ଏବେ ପ୍ରିୟେ ଶୁଣ
ରଜନୀ ପାହିବାରୁ ରାଜା ହରଷ ମନ ।
ଦ୍ୱିଜବରମାନଙ୍କୁ ମେଲାଣି ରାଜା କଲା
ଅନେକ ଧନ ରତ୍ନ ଭଣ୍ଡାରୁ ଆଣିଦେଲା ।
ଦୁଃଖୀ ଦରିଦ୍ର ଲୋକଙ୍କୁ ଦେଲା ଧନ ପୁଣ
ଚତୁରଙ୍ଗବଳଙ୍କୁ କଲା ସନମାନ ।
ସେନାପତି ରଥୀଙ୍କି ଅନେକ ଧନ ଦେଲା
କୋଟିଆ ସୁନିଆଁ ଲେଖାରେ ମାଳ ଦେଲା ।
ରାଜାମାନଙ୍କୁ ମେଲାଣି କରି ନୃପବର
ମନ୍ତ୍ରୀଙ୍କି କହଇ ହୋଇ ହର୍ଷଭର ।
ଲକ୍ଷେକ ରଥ ସେ ବେଗେ ଅଣାଇଲା
ପାଣିଦ୍ରବ୍ୟ ନେଇଣ ତହିଁରେ ଭରିଲା ।
କୋଟିଏକ ପଦାତି ଲକ୍ଷେକ ସେନାପତି
ଲକ୍ଷେକ ରଥ ସଙ୍ଗରେ ଦେଲାକ ନୃପତି ।
ଲକ୍ଷେକ ମଇଁଷି ଗୋଧନ ପଲ ଲକ୍ଷେ
ଅଭିଷେକ ସୁନିଆଁ ଦେଲାକ ନେଇ ଲକ୍ଷେ ।
ଏହି ପରକାରେ ମେଲାଣି ରାଜା କଲା
ଋଷି ବ୍ରାହ୍ମଣ ମେଲାଣି ହୋଇଗଲେ ପରା ।
ରାଜାମାନେ ମେଲାଣି ହୋଇଣ ଚଳିଗଲେ
ଯଉତୁକ ପଦାର୍ଥ ରାଜନ ଆଣି ଦେଲେ ।

ଝିଅ ଜୁଆଁଇଙ୍କି ରାଜା କହିଲେକ ପୁଣ
ବିନୟ ହୋଇଣ କହେ ସଧୀର ବଚନ ।
ଦୋଷ କଲେ ନ ଘେନିବ ମୋର ଦୁହିତାର
ଏମନ୍ତ କହିଲେ ଜୁଆଁଇ ଆଗର ।
ଦ୍ୱାଇଁଙ୍କି ପ୍ରବୋଧି ରାଜା ସେଠାରୁ ଚଳିଗଲା
କୈକେୟୀ ନୃପତି ଅଯୋଧା ରାଜାଙ୍କୁ ବୋଧିଲା
ଝିଅ ଜ୍ୱାଇଁଙ୍କି ରଥରେ ବସାଇଲେ ନେଇ
ସହସ୍ରେକ ଦାସୀ ଯେ ସଙ୍ଗରେ ଚଳିଯାଇ ।
ଦାସୀଙ୍କର ମଧ୍ୟରେ ମନ୍ଥୁଡ଼ି ଦାସୀ ସାର
ମନ୍ଥୁଡ଼ିକି ମଣାଇଁ କହେ ନୃପବର ।
ସେ ବୋଇଲେ ମୋହର ଦୁହିତା ତୋତେଲଗା
ରାଜପୁତ୍ରଙ୍କୁ ଯେମନ୍ତେ କରିଥିବୁ ସେବା ।
କ୍ରୋଧହେଲେ ଶାନ୍ତି ଯେ କରାଉଥିବୁ ପୁଣ
ଗରମକୁ ଶୀତଳ କରିବୁ ପ୍ରତିଦିନ ।
ଯେ ରୂପେ ଦୁହିତା ମୋର ସଦାଭାବେ ଥିବ
ରାଜକୁମର ସଙ୍ଗରେ ପ୍ରୀତି ଯେ କରିବ ।
ଶୁଣିକରି ମନ୍ଥୁଡ଼ି କହଇ କରଯୋଡ଼ି
ବୋଇଲାମୋବୋଲ ଯେବେ ଦୁହିତାତୋର କରି
ତେବେ ମୁଁ ରାଜାକୁ ବଶ କରାଇବି ଦଣ୍ଡଧାରୀ
ଯାହା ବୋଲିବେ ଦୁହିତା ସ୍ୱାମୀ ତାହା କରି ।
ଶୁଣିଣ ନୃପତି ପରମ ତୋଷ ହେଲେ
ବସନ୍ତ ବର୍ଣ୍ଣ ପଦକ ମାଳ ତାଙ୍କୁ ଦେଲେ ।
ମାଳ ନେଇ ମନ୍ଥୁଡ଼ି ହୋଇଲାକି ବେଶ ପୁଣ
ଜରିଲଗା କାଞ୍ଚୁଲା ପିନ୍ଧିଲା ତକ୍ଷଣ ।
ବେନିହସ୍ତେ କାଚ ତାଡ ନେଇଣ ଲଗାଇଲା
ଗଳାରେ ଚାପସରି ପଦକ ଲମ୍ବାଇଲା ।
ବାହୁଟି ତାଡ଼ ବିଦ ବାହୁରେ ଖଞ୍ଜିଣ
ନାସାରେ ରତ୍ନଗୁଣା ଖଞ୍ଜିଲା ଯତ୍ନେଣ ।
କେଶ ବାନ୍ଧି ବେଣି ତିନି ଶାଖାରେ ଲମ୍ବାଇ
ସାତଗୋଟି ଚଉଁରୀ ମଣ୍ଡିଦେଲା ତହିଁ ।
ଆରବେଣୀ ଉପରେ ଫିରିଫିରାକୁ ଖଞ୍ଜିଲା ।
ତିନିଗୋଟି ମାଳା ଯେ ଲମ୍ବାଇ ପୁଣ ନେଇ
ମନ୍ଦାର ଅରଖ ହିଙ୍ଗୁଳ ଫୁଲ ତହିଁ ।
ମସ୍ତକ ଉପରେ ପୋଲାଙ୍ଗ ନାମେ ଫୁଲ
ଲଗାଇ ହରଷରେ ମନ୍ଥୁଡ଼ି ଚାଲେ ଗେଲ ।

ବେନି ଗୋଡ଼େ ନୂପୁର ଅଙ୍ଗୁଷ୍ଠିରେ ମୁଦି
ଗାଲରେ ଚୂନକଳା ରଞ୍ଜିଲା ମରଦି ।
ତୁଣ୍ଡରେ ପାନଖିଲେ ମୁଣ୍ଡରେ ସିନ୍ଦୂର
ନୟନରେ ଅଞ୍ଜନ ରଞ୍ଜିଲା ସତ୍ୱର ।
ରଙ୍ଗଶାଢ଼ୀ ଗୋଟିଏ ପିନ୍ଧିଲା ଯତ୍ନକରି
ତିନି ବାଙ୍କେ ତିନିକୁଜ ଦିଶଇ ତାହାରି ।
ଢମାଳି ଗୀତଗାଇ ଚାଲଇ ଗେଲ ଗେଲ
ତିନିବାଙ୍କେ ଚଳିବାରେ ଦିଶେ ଅମଞ୍ଜୁଳ
ରାଜାଙ୍କର ନବରୁ ସେ ବାହାର ହୋଇଲା ।
ଢଗ ପହଡ଼ୀ ସେ ବହୁତ ବଖାଣିଲା ।
ସିଂହଦ୍ୱାରୁ ବାହାର ହେବାରୁ ସର୍ବେ ଦେଖି
ମୁଖରେ ଲୁଗାଦେଇ ହସିଲେ ନାଶାଟେକି ।
ରଥରେ ଯାଇଣ ଉଠିଣ ଦାସୀ ବେଗେ
ଢଗ ପହଡ଼ୀ ବୋଲି ଆନନ୍ଦ ସରାଗେ ।
ତାକୁ ଦେଖି ଦଶରଥ ହାସ୍ୟଭାବ କଲେ
କୈକୟୀଙ୍କୁ କୋଳେଧରି ବଚନ କହିଲେ ।
ଏହି ନାରୀ ବଡ଼ ପ୍ରବଳ ପଣ କରି
ତିନିକୁଜ ତାହାର ଶରୀରେ ଅଛି ଧରି ।
ବେଶ ଗୋଟି ବିଡ଼ମ୍ବନ ଛଳରେ ଅଛିହୋଇ
ନିର୍ଲ୍ଲଜପଣରେ ଯାକୁ ସରି କେହି ନାହିଁ ।
ରାଜାର ଘରେ ଯେବେ ଏରୂପେ ନାରୀଥାଇ
ମୁଖକୁ ଚାହିଁଲେ ଅମଙ୍ଗଳ ହୋଇ ।
ଖଦି ଚାମର ଆଲଟ ପଙ୍ଖାଧରି ଜାଣ
କେହୁ ସ୍ୱର୍ଣ୍ଣଝରୀରେ ଗଙ୍ଗାଜଳ ଧରି ପୁଣ ।
ବିଡ଼ିଆ ମୁଖବାସ ଧରେ କେ ଆଗରେ
ଏମନ୍ତେ ଦାସୀମାନେ ଯେଯାହା ସେବାକରେ ।
ମନ୍ଥୁଡ଼ୀ ମିଳିକରି ଦେଲା ହୁଳହୁଳି
ପହଡ଼ୀ ପଢ଼ିଲା ଦେଇଣ କରତାଳି ।
ପୁଷ୍ପଡାଲ ଗୋଟିଏ ଧରିଣ କରରେ
ନାଚିଲା ମନ୍ଥୁଡ଼ୀ ଦଶରଥ ଆଗରେ ।
ଏଥୁ ଅନନ୍ତରେ ସାରେଣୀ ହସ୍ତୀ ଅଶ୍ୱ
ପୁଞ୍ଜି ପୁଞ୍ଜି ହୋଇଣ ମିଳିଲେ ତ୍ୱରିତ ।
ରଥି ସେନାପତିମାନେ ମିଳିଲେ ସେ ବେଳ
ସକଳ ଋଷିମାନେ ହୋଇଲେ ବାହାର ।
ଦୁନ୍ଦୁଭି ବୀରବାଜା ଆଗରେ ବାଜେଟାଣ
ଶବ୍ଦରେ ମେରୁଗିରି କମ୍ପୁଅଛି ଜାଣ ।

ମଧ୍ୟରେ ରାଜାଗଣ ଆଗରେ ଦଶରଥ
ଚଳିଲା ଅନେକ ଯୌତୁକ ପଦାର୍ଥ ।
ପଛରେ ପଦାତି ରଥି ସେନାପତି
ଅନେକ ସମ୍ଭର୍ବରେ ବାହାର ନୃପତି ।
ଚନ୍ଦ୍ରଦେଇପୁର ରାଜା ପଛରେ ଗୋଡ଼ାଇ
ପାଞ୍ଚଦିନ ପରିଯନ୍ତେ ସଙ୍ଗରେ ସେ ଯାଇ ।
ଅଜ ରାଜାଙ୍କୁ ଚାହିଁ ବିନୟରେ କହି
ମୋ ଦୁହିତା ଦୋଷ ନ ଘେନିବ କେହି ।
ଏତେ କହି ମେଲାଣି ହୋଇଲେ ନୃପବର
ନିଜନ ବରକୁ ଫେରି ଅଇଲେ ସତ୍ୱର ।
ପାଞ୍ଚଦିନେ ଦଶରଥ ଅଯୋଧ୍ୟା ପ୍ରବେଶ
ଦେଖିଣ ନଗ୍ରଲୋକେ ହୋଇଲେ ସନ୍ତୋଷ ।
ସିଂହଦ୍ୱାରେ ରଥ ଯେ ପ୍ରବେଶ ହେଲାଜାଣ
ଅଜରାଜା ପାଟରାଣୀ ଅଇଲେ ତକ୍ଷଣ ।
ଶତେକ ସପତଣୀ ସହସ୍ରେ ଦାସୀଘେନି
ପୁତ୍ରବଧୂ ରଥପରୁ ଓହ୍ଲାଇଲେ ପୁଣି ।
ନିଉଛାଳି କରିଣ ଘରକୁ ଘେନିଗଲେ
ଅନ୍ତପୁର ଭିତରେ ସମସ୍ତେ ମିଳିଲେ ।
କୈକେୟୀ ଓଳଗିଲେ ସମସ୍ତ ଶାଶୁଙ୍କୁ
ସମସ୍ତେ କଲ୍ୟାଣ ବାଞ୍ଛିଲେ ବଧୂଙ୍କୁ ।
ଶୋଭାପଣେ କୈକୟୀ ସମସ୍ତଙ୍କୁ ବୋଧିଲା
ଅନ୍ଧାର ରଜନୀକୁ ଆଲୋକ କରାଇଲା
ଏଥୁ ଅନନ୍ତରେ ଶୁଣ ଭଗବତୀ
ଋଷି ବ୍ରାହ୍ମଣ ରାଜା ମେଲାଣି ହେଉଛନ୍ତି ।
ଅନେକ ଧନ ଆଣି ଭଣ୍ଡାରରୁ ଦେଲେ
ହରଷ ହୋଇଣ ଋଷି ବ୍ରାହ୍ମଣ ଚଳିଗଲେ ।
ରାଜାମାନଙ୍କୁ ମେଲାଣି କଲେ ମହୀପାଳ
ଧନରତ୍ନ ପାଇଣ ଚଳିଲେ ରାଜାବଳ ।
ଚତୁରଙ୍ଗ ବଳଙ୍କୁ ରାଜଶାଢ଼ୀ ଦେଲା
ରଥି ସେନାପତିଙ୍କୁ ମାନ ବିଳୋହିଲା ।
ସମସ୍ତଙ୍କୁ ମେଲାଣି ଦେଇଣ ନୃପବର
ମନ୍ତ୍ରୀଙ୍କି ଚାହିଁଣ ଆଜ୍ଞା ଦେଲାକ ସତ୍ୱର ।
ସାମନ୍ତ ପାତ୍ର ମନ୍ତ୍ରୀଙ୍କି ଅନେକ ଧନ ଦେଲେ
ଯଉତୁକ ଧନମାନ ଭଣ୍ଡାରେ ରଖାଇଲେ ।
ନିଶ୍ଚିନ୍ତରେ ରାଜନ ରହିଲେ ନିଜପୁରୀ
ଦୁଃଖୀଲୋକଙ୍କୁ ଅନ୍ନଦେଲେ ଡାକିକରି ।

ଏମନ୍ତେ ଚଉଦ ଦିବସ ବହିଗଲା
କୈକେୟୀ ସଙ୍ଗେ ଦଶରଥ ବିଳସିଲା ।
କଉଶିକ ପୁରରେ କଉଶଲ୍ୟା ଜାତ
କଉଶିକ ରାଜାଙ୍କର ଅଟନ୍ତି ଜ୍ୟେଷ୍ଠ ସେତ ।
ନବମ ବରଷରେ ନବଯୁଗ ହୋଇ
ଏଗାରବର୍ଷ ଛ'ମାସ ସୁତକୁ ଅଟଇ ।
ଅନ୍ନପୂର୍ଣ୍ଣା ରାଣୀ ଯେ ରାଜାଙ୍କୁ ଜଣାଇଲା
ଦୁହିତା ଗୋଟି ଆମ୍ଭର ନବଯୁବା ହେଲା ।
ସମ୍ଭାଳି ନୋହିବ ଅସମ୍ଭାଳ ସେ ଦୁହିତା
ସୁନ୍ଦର ଶୋଭା ପଣରେ ଅଟଇ ଜଗଜିତା ।
ଜନମ ବେଳରେ ଯେ କହିଅଛି ପୁଣ
ମୋର ସ୍ୱାମୀ ଜାତହେଲେ ଅଯୋଧ୍ୟା ନରେଶ ।
ଅଜରାଜା କୁମର ଅଟନ୍ତି ଦଶରଥ
ଅଷ୍ଟବାହୁ ପ୍ରମାଣ ଚରଣ ଦୁଇତ ।
ଏମନ୍ତ ରୂପ ଦେଖିଲେ ବରଣ କରିବ
ଏପରି ନ ଦେଖିଲେ ବରଣ ନ କରିବ ।
କହିଣ ଅଜ୍ଞାନ ହୋଇଲା ଦୁହିତା
ସେକଥାମାନ ପାଶୋର ନ କରକିମ୍ପା ଚେତା ।
କୌଶିକ ରାଜା ବୋଇଲେ ଏ ଅଟେ ପ୍ରମାଣ
କାଲି ପାତ୍ର ମନ୍ତ୍ରୀଙ୍କି ପେଷିବା ସେହିସ୍ଥାନ ।
ମୋର ମନେ ନଥିଲା ଚେତାଇ ଦେଲାମୋତେ
ଏତେବୋଲି ରାଜନ ବଳିଲା ତ୍ୱରିତେ ।
ବାହାର ଜଗତୀ ଉପରେ ବିଜେକଲା
ପାତ୍ରମନ୍ତ୍ରୀ ସମସ୍ତଙ୍କୁ ଡକାଇ ଆଣିଲା ।
ବୋଇଲେ ଅଯୋଧ୍ୟାକୁ ଯାଅ ହେ ବହନ
ଅଜରାଜା ନନ୍ଦନ ଯେ ଦଶରଥ ଜାଣ ।
ତପନକୁଳେ ଜାତ ଅଟଇ ସୂର୍ଯ୍ୟବଂଶୀ
ନିଷ୍କଣ୍ଟକ ରାଜା କଳଙ୍କ ନାହିଁ କିଛି ।
ଉପର ବଂଶରେ ତାର ସାଗର ଖୋଳାଇଲେ
ସପତ ସାଗର କରି ସେ ରାଜା ସ୍ୱର୍ଗଗଲେ ।
ବରୁଣ କୂଳରେ କୁମ୍ଭରଷି ଜାତହେଲେ
କଜ୍ଜରଷି ଦୁହିତାକୁ ସେହି ବିଭାହେଲେ ।
ସେ ରଷି କୁମାରୀକି ଘେନିଣ ତପ କଲେ
ଦକ୍ଷିଣ ମହୋଦଧି କୂଳରେ ସନ୍ତୋଷରେ ।
ବନଗିରି ପର୍ବତ ଅଟଇ ପରିମଳ
ସେ ଗିରିର ନାମ ଯେ ଅଟଇ ସୀମାଞ୍ଚଳ ।

ଲକ୍ଷେ ବରଷ ପର୍ଯ୍ୟନ୍ତ ସେଠାରେ ତପକଲେ
ମହୋଦଧିରେ ସ୍ନାହାନ ପଡ଼ିଲା ଯୋଗବଳେ ।
ଯେତେବେଳେ ନାରୀ ତାଙ୍କର ଗର୍ଭହୋଇଥିଲା
ସେ ସ୍ନାହାନ ଦିନେ ଅଛି ପ୍ରସବ ହୋଇଲା ।
ଛୁତିକିଆ ହେବାରୁ ନଗଲେ ମୁନିବର
ସକଳ ରଷି ସ୍ନାନକଲେ ସେ ତୀର୍ଥର ।
ଏକବିଂଶ ଦିନରେ ରଷିଙ୍କି ସୁମରିଲେ
ବେନିକୋଟି ରଷି ଆସି ପ୍ରବେଶ ହୋଇଲେ ।
ଫଳମୂଳ ଦେଇଣ ରଷିଙ୍କି ବୋଧ କଲେ
ପୁତ୍ରନାମ ସେଠାରେ ରଷିମାନେ ଦେଲେ ।
ଅଗସ୍ତି ବୋଲିକରି ଦେଲେ ପୁତ୍ରନାମ
ସନ୍ତୋଷେ ରଷିମାନେ ଗଲେ ଯେଝାସ୍ଥାନ ।
ସହସ୍ରେ ବରଷ ଏଥିରେ ବହିଗଲା
ତପବଳେ ନିର୍ଜିତ ଅଗସ୍ତି ରଷି ହେଲା ।
ଯଶୋବନ୍ତୀ ପୁରରୁ ଅଇଲେ ବେଦବର
ଶ୍ରେଷ୍ଠକରି ବ୍ରହ୍ମରଷି କଲେ ତାଙ୍କୁ ସାର ।
କାମଧେନୁ ଗୋଟିଏ ଦେଇଣ ଧାତା ଗଲା
ଧାତାଗଲା ବେଳେ ରଷି ବର ମନାସିଲା ।
ବୋଇଲା ଯେବେ ମୋର ତପ ସିଦ୍ଧମୂଳ
ଯାହା ମୁଁ ବିଚାରିବି ନୋହିବ ଅନ୍ତର ।
ଅସ୍ତୁକହି ବେଦବର ନିଜପୁରେ ଗଲା
ଏଥିମଧେ ପନ୍ଦର ବରଷ ବହିଗଲା ।
ପୁଣି କଜ୍ଜ ରଷି ଦୁହିତା ଗର୍ଭ ହେଲା
ଦଶମାସ ସମ୍ପୂର୍ଣ୍ଣ ପୁତ୍ରେକ ଜାତ କଲା ।
ଏକବିଂଶ ଦିବସେ ରଷିଙ୍କି ସୁମରି
ପାଞ୍ଚକୋଟି ରଷି ଆସି ମିଳିଲେ ବେଗକରି ।
ଫଳମୂଳ ଭୋଜନ ଦେଲେ ମୁନି ପୁଣ
ଭୋଜନ କଲେ ରଷି ସନ୍ତୋଷ ହୋଇଣ ।
ଦ୍ୱିତୀୟ ପୁତ୍ରନାମ ବଶିଷ୍ଠ ପୁର ଦେଲେ
ମେଲାଣି ହୋଇ ରଷି ଯେଝା ସ୍ଥାନେ ଗଲେ ।
ସେ ପୁତ୍ର ସିନ୍ଧୁକୂଳେ ଯାଇ ତପକଲା ।
ସହସ୍ରେ ବରଷ ତହିଁରେ ବହିଗଲା ।
ଯଶୋବନ୍ତୀ ପୁରରୁ ଅଇଲେ ବିଧାତା
ତପସିଦ୍ଧ ହେଲା ଉଠରେ ବ୍ରହ୍ମବେତା ।
ଶୁଣିକରି ବଶିଷ୍ଠ ଉଠିଲେ କରଯୋଡ଼ି
ବେଦବର ବୋଇଲେ ଯାଅ ନିଜପୁରୀ ।

ବହ୍ମମୁନି ବୋଇଲେ ନକର ମନେ ଛଳ
ମୋର ବୋଲ ଏବେ କରରେ କୁମର ।
ଏତେ ବୋଲି ସୁରଭିକି ସୁମରଣା କଲେ
ଗୋମାତା ଜାଣିଣ ସେଠାରେ ପ୍ରବେଶିଲେ ।
ସୁରଭି ପାଇଣ ବଶିଷ୍ଠ ତୋଷ ହେଲେ
ଦଇବ ବିଧାତାଙ୍କୁ ନମସ୍କାର କଲେ ।
ତୋଷ ହୋଇ କୁଶଧର ଗଲେ ନିଜପୁର
ବଶିଷ୍ଠ ମିଳିଲେ ଯାଇ ପିତା ସନ୍ନିଧିର ।
ଦେଖିଣ ଜନନୀ ମନରେ ତୋଷ ହେଲେ
ସନ୍ତୋଷରେ ପିତା ବହୁ ପ୍ରଶଂସା କଲେ ।
ଏମନ୍ତ ବାରବର୍ଷ ସେଠାରେ ଗଲା ବହି
ମହୋଦଧିରେ ସ୍ନାନ ପଢ଼ିଲା ଶୁଦ୍ଧ ହୋଇ ।
ଫାଲଗୁନ ମାସରେ ଗୋବିନ୍ଦ ଦ୍ୱାଦଶୀ
ଶୁକଳ ପକ୍ଷରେ ଯୋଗ ହେଲା ଆସି ।
ଦୁଇ ପୁତ୍ର ଘରଣୀ ଘେନି ସଙ୍ଗେ ଚଳି
ମହୋଦଧି ତୀରରେ ତୁରିତେ ଯାଇ ମିଳି ।
ମନ୍ତ୍ର ସୁମରି ସଂକଳ୍ପ କରି ସ୍ନାନ କଲେ
ଦୁଇପୁତ୍ର ଭାରିଯା ଆସି କୁଳରେ ମିଳିଲେ ।
ଏମାନେ ଆସିବାରୁ ଗଲେକ କୁମ୍ଭରଷି
ସ୍ନାହାନ କରନ୍ତି ଯେ ଲବଣ ଜଳେ ପଶି ।
ତରଙ୍ଗ ମନ୍ତ୍ରୀ ଫେନ ଋଷିଙ୍କି ଘେନିଗଲା
ନେଇଣ ଗଭୀର ଜଳରେ ବୁଡ଼ାଇଲା ।
ତିନିଦିନ ଯାଏଁ ପୁତ୍ର ଭାରିଯା କୂଳେ ରହି
ପିତାର ଶବ ଯାଇ କୂଳରେ ଲାଗେ ତହିଁ ।
ଶବଦେଖି ତିନିହେଁ କାରୁଣ୍ୟ କୁଳେ କଲେ
ଦୁଇପୁତ୍ରଙ୍କୁ ଜନନୀ ବୁଝାଇ କହିଲେ ।
ବୋଇଲେ ସ୍ୱାମୀ ମୋର ଗଲେ ସ୍ୱର୍ଗ ପୁର
ମୁହିଁ ଯାଉଅଛି ବାବୁ ନିରୋଧ ନ କର ।
ଏତେ ବୋଲି ଅଗସ୍ତି ମାତା ଜଳେ ଝାସ ଦେଲେ
ଦୁଇପୁତ୍ର କୂଳେ ବସି କାରୁଣ୍ୟ ପୁଣ୍ୟ କଲେ ।
ମାତାଶବ କୂଳରେ ଲାଗିଲା ଆସି ପୁଣ
ପିତାମାତାଙ୍କୁ କୁମର କଲେକ ଦହନ
କ୍ରୋଧରେ ଜର ଜର ଅଗସ୍ତି ମହାମୁନି
ମନ୍ତ୍ର ସୁମରଣା ମନେ କଲେ ତ ତକ୍ଷଣି ।
ସପତ ସମୁଦ୍ରକୁ ଚଳୁକରି ଧରି
ପିଅନ୍ତେ ଗର୍ଭରେ ଠୁଳ ହେଲା ଯାଇକରି ।

ମନ୍ତ୍ରପଢ଼ି ଅଗସ୍ତି ଜୀର୍ଣ୍ଣ କରି ଦେଲେ
ଶୁଖିଗଲା ସାଗର ଧରଣୀ ଦିଶିଲେ ।
ନାବ, ବୋଇତ, ଜାହାଜ, ଜଳଚରଗଣ
ଠାବେ ଠାବେ ଧରଣୀରେ ରହିଲେ ସେକାଣ ।
ସାତ ଦ୍ୱୀପଯାକ ଏକଦ୍ୱୀପ ହେଲା
ଚଉଦ ବ୍ରହ୍ମାଣ୍ଡ ମେଳ ଯେ ହୋଇଲା ।
ନବଖଣ୍ଡ ମେଦିନୀ ହୋଇଲା ସମତୁଲ
ନର ଅସୁର ସମସ୍ତେ ହେଲେ ଏକ ମେଳ ।
ରମ୍ୟକ ଦ୍ୱୀପରେ ଅନନ୍ତ ଶଯ୍ୟା ଥିଲା
ସାଗର ଶୁଖନ୍ତେ ତିନିପୁରକୁ ଦିଶିଲା ।
ଗରୁଡ଼ ଛାୟା ନବେକୋଟି ଘେନି ସୈନ୍ୟବଳ
ଶ୍ୱେତଦ୍ୱୀପ ଜଗି ରହିଲା ବିନତାର ବାଳ ।
ଏହିମତେ ଲକ୍ଷେ ବରଷ ବହିଗଲା
ସ୍ୱର୍ଗରେ ଦେବଗଣ ବିଚାର କଲେ ପରା ।
କୂଟରେ ଜାତ କଲେ କୁମର ଭାଗିରଥୀ
ତପନ କୁଳରେ ସେ ହୋଇଲା ଚକ୍ରବର୍ତ୍ତୀ ।
ଦେବତା ଆସିଣ ଭାଗିରଥୀ କି କହି
ତୋହର ଉପର ବଂଶେ ସାଗର କୀର୍ତ୍ତିହୋଇ ।
କୁମ୍ଭରଷି ସେଥିରେ ମରିବାରୁ ବୁଡି
ପୁତ୍ର ତାର ଅଗସ୍ତି ଚଳୁକଲା ରାଗି ।
ସପତ ସାଗରକୁ ଚଳୁରେ ଧଇଲେ
ଗର୍ଭକୁ କ୍ଷେପନ୍ତେ ସାଗର ଶୁଖିଲେ ।
ତୁମ୍ଭେ ଯେବେ ଗଙ୍ଗାକୁ ଆଣିପାରିଲେ ଯାଇ
ତୁମ୍ଭର କୀରତି ସିନା ସବୁ ଯୁଗେ ରହି ।
ଶୁଣିଣ ଭାଗିରଥୀ ଇନ୍ଦ୍ରଙ୍କୁ ପଚାରିଲେ
କି ରୂପ ଗଙ୍ଗା ଆସିବେ ସେ କଥା କହଭଲେ ।
ବାସବ ବୋଇଲେ ତୁମ୍ଭେ ବିଷ୍ଣୁଙ୍କୁ ସୁମର
ତୋହଠାରେ ଦୟା କରିବେ ଚକ୍ରଧର ।
ଶୁଣିଣ କପିଳାସକୁ ଭାଗିରଥୀ ଗଲେ ପୁଣ ।
ଦଶ ସହସ୍ର ବରଷ ସେଠାରେ ତପ କଲେ
ତେବେ ଯେ ସଦାଶିବ ପ୍ରସନ୍ନ ହୋଇଲେ ।
ସଦାଶିବଙ୍କୁ ଘେନି ବୈକୁଣ୍ଠପୁର ଗଲେ
ବିଷ୍ଣୁ ପାଦୁଁ ଗଙ୍ଗା ହର ଶିରରେ ଧଇଲେ ।

ଆସନ୍ତେ ସେ ମେରୁଠାରେ ବିଜୟ ପଞ୍ଚାନନ
ମସ୍ତକ ହରଷରେ ହଲନ୍ତେ ହର ପୁଣ ।
ଖସିଣ ଗଙ୍ଗାମାତା ମେରୁକ୍ରୋଡେ ପଡ଼ି
ମେରୁର ଘରଣୀ ଗୁପତେ ତାକୁ ଧରି ।
ମସ୍ତକୁ ଗଙ୍ଗା ଯିବାରୁ ହର କହେ ବାଣୀ
ଗଙ୍ଗା ପିତାଘର ଦେଖି ଖସିଗଲା ପୁଣି ।
ମେରୁକୁ ତପେ ତୋଷେ ପ୍ରସନ୍ନ ତୋତେହେଉ
ମର୍ତ୍ତ୍ୟପୁରକୁ ଗଙ୍ଗା ସନ୍ତୋଷ ହୋଇଯାଉ ।
ଶୁଣିଣ ଭଗିରଥି ମେରୁକୁ ଧ୍ୟାନ କଲେ
ସହସ୍ର ବରଷେ ସେ ପ୍ରସନ୍ନ ହୋଇଲେ ।
ଗଙ୍ଗାଙ୍କୁ ମେରୁରାଜା କହନ୍ତି ବଚନ
ଭଗିରଥୀ ତପକରେ ଯିବୁ ତୁ ମଞ୍ଚରେଣ ।
ଗଙ୍ଗା ବୋଇଲେ ପିତା ମୋଠାରୁ ଏବେଶୁଣ
ଭଗିରଥୀ କି ଯାଇ କହ ଯା ବହନ ।
ବୋଲି ସ୍ୱର୍ଗପୁରେ ଚଞ୍ଚଳ ଚଳିଯାଅ
ଐରାବତ ଗଜକୁ ଏଠାକୁ ଅଣାଅ ।
ସେ ଚଉଦନ୍ତ ଯେବେ ମାରିବ ତୋର ଦେହେ
ମଞ୍ଚପୁରେ କହିବି କହିଲି ପିତା ହେ ।
ଶୁଣିଣ ମେରୁରାଜା ଶୀଘ୍ର ଚଳିଗଲେ
ଭାଗୀରଥୀଙ୍କି ସବୁ ବୁଝାଇ କହିଲେ ।
ବୋଇଲେ ମହାରାଜା ବେଗେ ଚଳ ସ୍ୱର୍ଗ
ଐରାବତ ଗଜ ଆସିଲେ ଫିଟିବ ଏମାର୍ଗ ।
ଶୁଣିଣ ଭଗିରଥ ତହୁଁ ଚଳିଗଲେ
ଐରାବତ ଗଜକୁ ବିନୟେ ଜଣାଇଲେ ।
ସହସ୍ରେ ବରଷ ଗଜ ଅଇଲା ତାର ସଙ୍ଗେ
ତାଙ୍କ ଆଗେ ଭଗିରଥୀ ସମସ୍ତ କହି ବେଗେ ।
ଶୁଣିଣ ଐରାବତ କ୍ରୋଧରେ ଚଳିଗଲା
ଚଉଦନ୍ତ ନେଇ ମେରୁ ଅଙ୍ଗରେ ମାଇଲା ।
ମାରିଣ ଚଉଦନ୍ତ ଆଣନ୍ତେ ଓଟାରି
ଦନ୍ତେକ ଭାଙ୍ଗିଣ ରହିଲା ମେରୁଗିରି ।
ତିନିଦନ୍ତ ବାହାରନ୍ତେ ବାହାର ହେଲେ ଗଙ୍ଗା
କୋପାନଳେ ଆସଇ କରିଣ ପ୍ରତିଜ୍ଞା ।
ଭାଗିରଥୀକି ବୋଇଲେ ବେଗେ ତୁମ୍ଭେ ଚଳ
ସାଗର କୀର୍ତ୍ତି ତୋର ଦେଖାଅ ମହୀପାଳ ।
ଶୁଣିଣ ଭଗିରଥୀ ଆଗରେ ଚଳିଯାଇ
ରମ୍ୟକଦ୍ୱୀପରେ ପ୍ରବେଶ ହେଲେ ଯାଇ ।

ପ୍ରଥମେ କ୍ଷୀରସାଗର ହୋଇଲେ ପ୍ରବେଶ
ଲକ୍ଷେବର୍ଷେ କ୍ଷୀରସିନ୍ଧୁ ପୂରିଲା ବିଶେଷ ।
ମଧ୍ୟରେ ରମ୍ୟକଦ୍ୱୀପ ରହିଲା ଲକ୍ଷେପୁଣ
ଲକ୍ଷେ ବରଷେ ଦଧି ସମୁଦ୍ର ହେଲା ପୂର୍ଣ୍ଣ ।
ଦେଖିଣ ଭାଗିରଥୀ ସେଠାରୁ ଅଇଲା
କୁଶଦ୍ୱୀପ ଛାଡ଼ି ଘୃତ ସମୁଦ୍ର ପୂର୍ଣ୍ଣ କଲା ।
ଘୃତ ସମୁଦ୍ର ସୁରା ସମୁଦର ଭରି
ବହୁ କ୍ଳେଶରେ ଯାଇ ହିମାଳୟଠାରେ ମିଳି ।
କ୍ଷେମାଳ ଯିବାରୁ ମଧୁର ସିନ୍ଧୁ ହେଲା
ମଧୁର ଉତ୍ତାରୁ ଯେ ଲବଣ ପ୍ରକାଶିଲା ।
ଏମନ୍ତ ସପ୍ତ ସାଗର ଭରି ଭଗିରଥୀ
ସାତଲକ୍ଷ ବରଷରେ ପୂର୍ଣ୍ଣ ହେଲା ସେଥି ।
ସାତଦ୍ୱୀପ ସାତସିନ୍ଧୁ ଯହୁଁ ସେ ଦେଖିଲା
ହରଷରେ ଭାଗିରଥୀ ଗଙ୍ଗାକୁ କହିଲା ।
କପିଳ ଋଷି ମୋର ବଂଶକୁ ଦହିଯ୍ୟ କଲେ
ସେମାନଙ୍କୁ ଶୀତଳ କରି ତୁ ଯାଇ ଭଲେ ।
ଗଙ୍ଗା ବୋଇଲେ କୁମର ଆଗହୋଇ ଚଳ
ଶୁଣିକରି ଭାଗିରଥୀ ଚଳଇ ସାଗର ।
ପିତୃଲୋକ ଦହିଯ୍ୟ ଅଗ୍ନିରେ ଦେଲା ଝାସ
ଗଙ୍ଗା ଯାଇ ସେଠାରେ ହୋଇଲା ପ୍ରବେଶ ।
ଶାପରୁ ମୁକ୍ତ ହୋଇ ସଗର ନନ୍ଦନ
ତତ୍କ୍ଷଣେ ପିତୃଲୋକ ଗଲେ ସ୍ୱର୍ଗସ୍ଥାନ ।
ପୁଷ୍ପକ ଯାନେ ବସି ଆନନ୍ଦ ହୋଇଗଲେ
ଅଚିନ୍ତା ନବରରେ ଯାଇଣ ବସିଲେ ।
ଏଡ଼େକୁଳ ନିର୍ମଳ ଅଟଇ ସୂର୍ଯ୍ୟବଂଶୀ
ଶୁଣିଣ ପାତ୍ର ମନ୍ତ୍ରୀ ବଚନ ଶୁଣି ଭାଷି ।
ବୋଇଲେ ସେ ରାଜାର ଥିଲେ ଟିକି ପୁତ୍ର
କଉଶିକ ବୋଇଲେ ଦିଲ୍ଲୀପି ତାର ସୁତ ।
ଦିଲ୍ଲୀପିର ନନ୍ଦନ ଅଟେ ଶିବିରାଜା
ରାଜ୍ୟ ପରଜା ଧନ ମନରୁ କଲା ତେଜ୍ୟା ।
ଶିବିରାଜା ତନୁଜ ଜାମୁଘଣ୍ଟ ପର୍ଶୁରାମ
ଅଭ୍ୟାଗତ ଦୀକ୍ଷାରେ ସେ ରାଜା ନେଲା ଦିନ ।
ତାଙ୍କଠାରୁ ଜାତହେଲେ ଆରଣ୍ୟକ ପୁଣ ।
ରାବଣ ସଂଗରେ କଲେ ଘୋରରଣ ।
ଅସୁର ଜିଣିକରି ତାହାଙ୍କୁ ମାରିଗଲା
ତାହାଙ୍କଠାରୁ ହରିଚନ୍ଦନ ଜାତ ହେଲା ।

ଦାତାପଣେ ତାହାଙ୍କୁ କେହି ନୁହେଁ ସରି
ଭାର୍ଯ୍ୟାପୁତ୍ର ବିକି ଅଭ୍ୟାଗତ ସେବାକରି ।
ତାହାର ନନ୍ଦନ ଶିବି ନାମ ହେଲା
ସେଣାପକ୍ଷୀ ମାଗନ୍ତେ ଶରୀରୁ ମାଂସଦେଲା ।
ତାହାର କୁମର ଅଟେ ମାନଧାତା
ତାହାଙ୍କୁ ଗର୍ଭବାସ କଲେକ ବିଧାତା ।
ତିନିପୁର ସାଧକରି ଲକ୍ଷେ ବରଷ ବଞ୍ଚିଲେ
ସହସ୍ରେ ବର୍ଷ ପର୍ଯ୍ୟନ୍ତେ ଦେବସଭାରେ ବସିଲେ
ତାହାର କୁମର ବରୁଣା ରାଜାହେଲା
ରଣକରି ବରୁଣ ରାଜାଙ୍କୁ ଜିଣିଲା ।
ତାହାର କୁମର ରଘୁନାଥ ରାଜା ହୋଇ
ଶ୍ୱେତ ଯାଗ କରିଣ ସ୍ୱର୍ଗପୁର ଯାଇ ।
ଦଶଦିଗ ପାଳଙ୍କୁ ଜିଣିଲା ରଣରେ
ସେହିଠାରୁ ଜାତ ହୋଇଲେ ବଂଶରେ ।
ତାହାଙ୍କଠାରୁ ଜାତ ହୋଇଲେ କଶ୍ୟପ
ସେହିବଂଶେ ବଡ଼ାଇ ଧାର୍ମିକ ହେଲେ ନୃପ ।
ତାହାଠାରୁ ଜାତ ଅଜ ନାମରେ ନୃପତି
ଇନ୍ଦ୍ର ସଙ୍ଗେ ରଣ କରି ସ୍ୱର୍ଗରେ ହେଲା ସୁରପତି ।
ତାହାଙ୍କଠାରୁ ଜନମ ଦଶରଥ ହୋଇ
ଦୁଇଗୋଟି ଚରଣ ତାହାର ଅଟଇ ।
ଅଷ୍ଟଗୋଟି ଭୁଜ ଯେ ଏକଗୋଟି ମୁଖ
ସୂର୍ଯ୍ୟଙ୍କ ପ୍ରଜ୍ୟୋତି ତାହାର ପ୍ରକାଶ ।
ଯେ ପୁରକୁ ଯାଇଣ ତାହାଙ୍କୁ ବେଗେବର
ଆମ୍ଭ ଦୁହିତାକୁ ସେହି ହେବେ ବର ।
ସାମନ୍ତ ପାତ୍ରମନ୍ତ୍ରୀ ବୋଇଲେ କରଯୋଡ଼ି
ଅଗସ୍ତି ଋଷିଙ୍କ କଥା କହ ଦଣ୍ଡଧାରୀ ।
ମାତାପିତା ତାଙ୍କର ସମୁଦ୍ରେ ବୁଡ଼ିଲେ
କେଉଁସ୍ଥାନେ ବେନିଭାଇ କିରୂପେ ରହିଲେ ।
କଉଶିକ ବୋଇଲେ ଶୁଣ ତୁମ୍ଭେମାନେ
ଅଗସ୍ତି ବଶିଷ୍ଠ ଯେ ରହିଲେ ତପସ୍ଥାନେ
ଶିବାଳୟରେ ବସି ସେହି ତପକଲେ
ଦଶ ସହସ୍ର ବରଷ ଏଥିରେ ଗଲା ଭଲେ ।
ମେରୁ ସଙ୍ଗତରେ ମନ୍ଦର ଗିରିନାଦ
ବୋଇଲେ ମୁହିଁ ମେରୁରେ ହୋଇବି ପ୍ରସିଦ୍ଧ ।
ଦିନକେ ସହସ୍ରେ ପୁଣି ବଢ଼େ ଗିରିବର
ଶତଦିନେ ସୂର୍ଯ୍ୟଙ୍କୁ କଲାକ ଉହାଡ଼ ।
ଅସ୍ତଗିରି ଯିବାକୁ ରବି ନପାଇଲେ ବାଟ
ପକ୍ଷେ ପର୍ଯ୍ୟନ୍ତେ ସୂର୍ଯ୍ୟ ହୋଇଲେ ଆକଟ ।
ଦେଖିଣ ସମସ୍ତ ଦେବତା ଚଳିଗଲେ
ମନ୍ଦରଗିରିକି ପ୍ରବୋଧି କହିଲେ ।
କେବେହେଁ ନମାନିଲେ ମନ୍ଦର ଗିରିପୁଣ
ବୋଇଲା ମୁହିଁ ମେରୁରେ ହୋଇବି ପ୍ରମାଣ ।
ଶୁଣିଣ ଦେବତାଏ ରଣରଙ୍ଗ କଲେ
ବରଷେ ପରଯନ୍ତେ ତା ସଙ୍ଗେ ଲାଗିଲେ ।
ତେବେହେଁ ନଜିଣିଲେ ଭାଜିଲେ ଦେବଗଣ
ସେହିଠାରୁ ରବି ଫେରି ଆସିଲେକ ପୁଣ ।
ତେଣିକି ରାଜ୍ୟଯାକ ଅନ୍ଧାରମୟ ଦିଶି
ବିଧାତା ପୁରୁଷ ଯେ ମନରେ ହୁଏ ତ୍ରାସି ।
ସଦାଶିବଙ୍କୁ ଘେନି ଆସିଲେ ମର୍ତ୍ତ୍ୟପୁର
ଅଗସ୍ତି ଥିବାସ୍ଥାନେ ମିଳିଲେ ବେଦବର ।
ଶତେବରଷ ପର୍ଯ୍ୟନ୍ତ ସେଠାରେ ବିଜେକଲେ
ଅଗସ୍ତିଙ୍କ ତପଭାଙ୍ଗି ନ ପାରିଲେ ।
ସଦାଶିବ ବେଦବର ଚିନ୍ତାରେ ଅସ୍ଥିର
ତପବଳେ ଜାଣିଲେ ଅଗସ୍ତି ମୁନିବର ।
ନୟନ ଫେଡ଼ିଣ ଚାହିଁଲେ ସ୍ଥିରକରି
ଦେଖିଣ ଅଗସ୍ତି ନମସ୍କାର କରି ।
ଈଶ୍ୱର ବୋଇଲେ ଅଗସ୍ତି ତୁମ୍ଭେ ଶୁଣ
ତୁମ୍ଭର ନିମନ୍ତେ କନ୍ୟାଏ ଜାତପୁଣ ।
ସେ କନ୍ୟାକୁ ବିବାହ ହୋଇବ ମୁନିବର
ନୋହିଲେ ସେ କନ୍ୟାଟି ଝାସିବ ଅଗ୍ନିର ।
ଅଗସ୍ତି ବୋଇଲେ ସେ କାହାର ଦୁହିତା
ଈଶ୍ୱର ବୋଇଲେ ସେ ରବୀର ପୁତ୍ରୀ ଜିତା ।
ଛାୟା ଦେବୀର ଗର୍ଭରୁ ହୋଇଛି ସମ୍ଭୁତ
ଶୋଭା ପଣରେ ଦୁହିତା ମୋହର ଜଗତ ।
ଶୁଣିଣ ଅଗସ୍ତି ପ୍ରସନ୍ନମନ ହେଲେ
ଈଶ୍ୱରଙ୍କ ସଙ୍ଗରେ ସ୍ୱର୍ଗପୁରେ ଗଲେ ।
ବାଟରେ କୁଶଧର କହିଲେ ଅଗସ୍ତିଙ୍କି
ବୋଇଲେ ମୁନି ଯାଅ ଦେଖିଣ ବନଟିକି ।
ମନ୍ଦର ମନରେ ବିଚାର ଯେ କଲା
ମେରୁ ଦେବ ବୋଲି ଶୂନ୍ୟରେ ବଢ଼ିଲା ।
ରବି ଅସ୍ତ ହେବାକୁ ନମିଳିଲା ବାଟ
ଦେବତାଙ୍କୁ ପଡ଼ିଲା ଭୀଷଣ ସଂକଟ ।

ଶୁଣିଣ ଅଗସ୍ତି ମୁନି କହନ୍ତି ବଚନ
କିରୂପେ ମନ୍ଦର ଯେ ହୋଇବ ନିଧନ ।
ଈଶ୍ୱର ବୋଇଲେ ସେଠାକୁ ତୁମ୍ଭେ ଚଳ
ଚରଣେ ନମିବାବେଳେ କରିବ ତାକୁ ଧୀର
ବୋଲିବ ମନ୍ଦର ତୁ ଶୋଇଣ ଥାଅ ଭଲେ
ଆମ୍ଭଙ୍କୁ ଦେଖିଲେ ତୁ ଉଠିବୁ ତେତେବେଳେ
ଏତେକହି ତାକୁ ସ୍ୱର୍ଗପୁରକୁ ଆସିବ
ରବିର ଦୁହିତାକୁ ତେବେ ସେ ବିଭାହେବ ।
ଈଶ୍ୱର ବୋଇଲେ କଥାଏ ତେବେ ଶୁଣ
ବାଟରେ ଅସୁର ଦୁଇଗୋଟି ଗୁଣ ।
ପଥୁକୀ ଜନମାନଙ୍କୁ ମାରିଣ ଖାଆନ୍ତି
ମାୟାରେ ମେଣ୍ଢାଟି ଏ ପୋଷିଣ ଅଛନ୍ତି ।
ମେଣ୍ଢାକୁ ମାରି ମାଂସ ଖୁଆନ୍ତି ସେ ଜାଣ
ଯେ ଖାଏ ସେ ମାଂସ ତାର ପେଟ ଫାଟେ ପୁଣ ।
ସେମାନଙ୍କୁ ଭସ୍ମ କରି ଆସ ମୁନିବର
ଶୁଣିଣ ଅଗସ୍ତି ଋଷି ଚଳିଲେ ସତ୍ୱର ।
ସେହି ବନସ୍ତରେ ହୋଇଲେ ପ୍ରବେଶ
ଆତାପି ବାତାପି ଦେଖି ହୋଇଲେ ହରଷ ।
ବୋଇଲେ ମୁନିବର ଏଠାରେ ଆଜ ରହ
ଅମୃତ ଭୋଜନ କରି ସନ୍ତୋଷ ହୋଇଯାଅ ।
ଶୁଣିଣ ଅଗସ୍ତି ଋଷି ସେଠାରେ ରହିଲେ
ଆତାପି ମେଣ୍ଢା ଗୋଟିଏ ହୋଇଲାମାୟାରେ ।
ଚିଅଣ କରି ଋଷିଙ୍କି ଭୁରିଭୋଜନ ଦେଲେ
ଜଳ ମନ୍ତ୍ରୀ ପିଇଣ ଅଗସ୍ତି ଭସ୍ମ କଲେ ।
ବୋଇଲେ ଅସୁରରେ ମନ୍ଦ ବୁଦ୍ଧି କଲୁ
ଜାଣୁ ଜାଣୁ ଆମ୍ଭଙ୍କୁ ଏ ମାଂସ ଖୁଆଇଲୁ ।
ଗର୍ଭରେ ପଡ଼ନ୍ତେ ସେ ଭସ୍ମ ହୋଇଗଲା ।
ତୁହି ଭସ୍ମହୁଅ ଏବେ ଶାପ ମୋର ହେଲା ।
ତତ୍‌କ୍ଷଣେ ଅସୁର ଗଲା ଭସ୍ମ ହୋଇ
ଦୁହିଁଙ୍କି ଭସ୍ମକରି ମୁନି ଚଳିଯାଇ ।
ମନ୍ଦର ନିକଟରେ ପ୍ରବେଶ ହୋଇଲେ
ଦେଖିକରି ମନ୍ଦର ନମିଲା ପାଦତଳେ ।
ଅଗସ୍ତି ବୋଇଲେ ମନ୍ଦର ଏବେ ଶୁଣ
ଆମ୍ଭେ ଯାଉଅଛୁଁ ଯେ ପଶ୍ଚିମ ଦିଗେ ପୁଣ ।
ଆସିବ ପରିଯନ୍ତେ ଶୋଇଣ ଥିବୁ ତୁହି
ଉଠିଲେ ଭସ୍ମହେବୁ କହିଗଲି ମୁହିଁ ।

ମନ୍ଦରକୁ କହି ମୁନି ସେଠାରୁ ଚଳିଗଲେ
ପଶ୍ଚିମମୁଖ ହୋଇ ସ୍ୱର୍ଗରେ ମିଳିଲେ ।
ତେତିଶକୋଟି ଦେବତା ଆସି ଠୁଳ ହେଲେ
ହର ବେଦବର ଯାଇ ସେଠାରେ ମିଳିଲେ ।
ରବିର ଦୁହିତା ଅଟଇ ରୂପକାନ୍ତି
ତେଜ ଛାୟା ବୋଲିଣ ତାହାର ନାମଟି ।
ସେ କନ୍ୟାକୁ ଅଗସ୍ତି ଋଷିକୁ ବିଭାକଲେ
ତାହାଙ୍କୁ ଘେନି ଋଷି ମଢ଼ିଆକୁ ଗଲେ ।
ପର୍ବତ ଶିଖରେ ଗୋଟିଏ ମଠ କରି
କୁମ୍ଭଋଷି ନନ୍ଦନ ପ୍ରତିଜ୍ଞା ଅଟେ ଭାରି ।
ଶୁଣିଣ ପାତ୍ରମନ୍ତ୍ରୀ ହରଷ ହୋଇଲେ ।
ରାଜାକୁ ନମସ୍କାର କରିଣ ବାହାରିଲେ ।
ନିମନ୍ତ୍ରଣ ଯୋଗାଡ଼ ସଙ୍ଗରେ ଘେନି ପୁଣ
ରଥର ଉପରେ ରହିଲେ ପାଞ୍ଚଜଣ ।
ଅଯୋଧ୍ୟା ନଗରେ ଯାଇ ପ୍ରବେଶ ହୋଇଲେ
ରାଜାର ସିଂହଦ୍ୱାରେ ଯାଇଣ ମିଳିଲେ ।
ଦ୍ୱାରପାଳକୁ କହିଲେ ରାଜାକୁ କହ ଯାଇ
କଉଶିକ ରାଜା ପାତ୍ର ମନ୍ତ୍ରୀ ପଠିଆଇ ।
ଶୁଣିକରି ଦ୍ୱାରପାଳ ପ୍ରତିହାରୀକି କହି
ଯାଇଣ ପ୍ରତିହାରୀ ରାଜାଙ୍କୁ ଜଣାଇ ।
କରଯୋଡ଼ି ରାଜାଙ୍କୁ କହଇ ବଚନ
କଉଶିକା ରାଜା ପାତ୍ର ମନ୍ତ୍ରୀ ଯେ ଦ୍ୱାରେଣ ।
ଶୁଣି ରାଜନ ଡକାଇ ଘେନିଗଲେ
ପାତ୍ର ମନ୍ତ୍ରୀଙ୍କି ଦେଖିଣ ହରଷ ମନ ହେଲେ ।
ବୋଇଲେ କି କାର୍ଯ୍ୟରେ ପେଷିଲେ ରାଜନ
ମୋରିଠାରେ ସୁଦୟା ଅଛି ତାଙ୍କର ପୁଣ ।
ଅଜରାଜା ବଚନ ଶୁଣିଣ ପାତ୍ରମନ୍ତ୍ରୀ
ବୋଇଲେ ତୁମ୍ଭଠାରେ ବହୁତ ତାଙ୍କ ପ୍ରୀତି ।
ତାଙ୍କର ଦୁହିତା ଗୋଟିଏ ଜାତହେଲେ
କୋଟି ସ୍ତ୍ରୀ ସୁନ୍ଦରୀପଣେ ସମାନ ନୋହିଲେ ।
ସେ କନ୍ୟା ବିଭା ଦେବାକୁ ମନରେ ଚିନ୍ତାକଲେ
ନାରଦ ଋଷି ଯାଇ ରାଜାଙ୍କୁ କହିଲେ ।
ବୋଇଲେ ଅଯୋଧ୍ୟା ନୃପତି ଅଜରାଜା ଶିଷ୍ୟ
ଦଶରଥ ନାମ ରୂପରେ ସରସ ।
ଗୁଣବନ୍ତ ସୁରବନ୍ତ ଅଟନ୍ତି ସେ ପୁଣ
ତାକୁ ବିବାହ କର ତୋର ଦୁହିତାକୁ ଜାଣ ।

ଶୁଣିଣ ନରପତି ହରଷେ ବୋଇଲେ
ତୁମ୍ଭର କୁମରଙ୍କୁ ବରଣ କରିଲେ ।
ଆମ୍ଭଙ୍କୁ ଭେଦିଲେ ତୁମ୍ଭର ପାଶକୁ
ବୋଇଲେ କହିବ ଅଯୋଧ୍ୟା ରାଜାଙ୍କୁ ।
ମୋହର ଦୁହିତାକୁ ତାଙ୍କର ପୁତ୍ର ମେଳ
ମୁନିଙ୍କ ବଚନ ସତ୍ୟ ଯେ ନିର୍ମଳ ।
ବରଣ କରିଣ ବେଗେ ଘେନି ଆସ
ତାଙ୍କର ଆଜ୍ଞାରେ ଆସିଲୁଁ ତୁମ୍ଭ ପାଶ ।
ଶୁଣିଣ ଅଜରାଜା ସନ୍ତୋଷ ହୋଇଲେ
ପାତ୍ର, ମନ୍ତ୍ରୀ, ସାମନ୍ତଙ୍କୁ ଡକାଇ ଆଣିଲେ ।
ବୋଇଲେ କଉଶିକ ରାଜାଙ୍କ କଥା ଶୁଣ
ଦୁହିତା ଗୋଟିଏ ତାଙ୍କର ଅଛିଜାଣ ।
ମୋହର ପୁତ୍ରକୁ ବରଣ ସେ କଲେ
ନାରଦ କହିବାରୁ ରାଜା ପ୍ରତେ ଗଲେ ।
ଶୁଣିଣ ପାତ୍ର ମନ୍ତ୍ରୀ ହୋଇଲେ ହରଷ
ପାଟ ଜଉତିଷଙ୍କୁ ଡକାଇଲେ ପାଶ ।
ବର ରାଶି କନ୍ୟା ରାଶି ବୁଝିଲେ ସେ ଜାଣ
ଦଇବ ଘଟଣା ଯେ କରିଛି ଭିଆଣ ।
ଦଶ ମେଳକ ବୁଝି ସମସ୍ତେ ତୋଷହେଲେ
କଟକରେ ଉତ୍ସବ ରାଜନ କରାଇଲେ ।
ସୁବର୍ଣ୍ଣର କଳଶ ଚିରାଳ ପନ୍ତି ପନ୍ତି
ଜାଣ ପରିମଳ ଉପରେ ଛାଇ ଗୋଟି ।
ଇନ୍ଦ୍ର ଗୋବିନ୍ଦ ଚାନ୍ଦୁଆ ସବୁଠାରେ ଟଣା
ବିବିଧ ପ୍ରକାରେ ବାଜଇ ବାଜଣା ।
ନଟକାରୀମାନେ ବୁଲନ୍ତି ପଞ୍ଚା ପଞ୍ଚା
ଅପସରୀଙ୍କ ନୃତ୍ୟରେ ଉଲ୍ଲସେ କଳିଜା ।
ହାଟ, ବାଟ, ଦୋକାନ ହୋଇଲା ଚହଳ
ଚତୁରଙ୍ଗଦଳ ଯେ ଡକାଇ ମହୀପାଳ ।
ହାତୀରଥ ସେନାପତି ଅଶ୍ୱ ଯେ ସାରେଣୀ
ଏମାନଙ୍କୁ ବେଶ କରାଇ ନୃପମଣି ।
ବନ୍ଧୁ କୁଟୁମ୍ବଙ୍କୁ ରାଜା ବରଣ କରି ଆଣି
ପାଞ୍ଚ ସହସ୍ର ରାଜା ଠୁଳ ହେଲେ ପୁଣି ।
ଦୁଇକୋଟି ରାଜା ଦୁଇକୋଟି ଯେ ବ୍ରାହ୍ମଣ ।
ଏମାନଙ୍କୁ ବରି ଆଣିଲେ ନୃପଗଣ ।
ବାଟ ରଚ୍ଛାନ ଲକ୍ଷେକ ଅଟଇ ଦୋକାନ
ଶଗଡ଼ ବଳଦ ଯେ ସଜକଲେ ପୁଣ ।

ସକଳ ସମ୍ଭାର କରିଲେ ରାଜନ
ଅନ୍ତଃପୁରରେ ପ୍ରବେଶ ହୋଇଲେ ଯାଇପୁଣ ।
ଅନେକ ନାରୀଗଣ ଆସିଣ ପାଶେ ମିଳି
ଚରଣେ ଓଳଗି ସେ ହୋଇଲେକ ବାଳୀ ।
ଶତେକ ସପତଣୀ ସଙ୍ଗରେ ଘେନିପୁଣ
ବନ୍ଦାପନା କଲେ ରାଜାଙ୍କୁ ମନ ହରଷେଣ ।
କରଯୋଡ଼ି ବୋଇଲେ ଶୁଣିବା ହେଉ ବାଣୀ
ଗହଳ ଉତ୍ସବରେ କଟକ ପୁରେ ପୁଣି ।
ରାଜନ ବୋଇଲେ ଶୁଣ ସେହି କଥା
କଉଶିକ ରାଜାଙ୍କର ଏକଇ ଦୁହିତା ।
ଆମ୍ଭର କୁମରକୁ ବରଣ କଲେ ଜାଣ
ବିଭା କରିବା ନିମନ୍ତେ ପେଶିଲେ ମନ୍ତ୍ରୀପୁଣ ।
ଶୁଣିଣ ପାଟରାଣୀ ହରଷ ହୋଇଲା
କେଉଁଦିନ ବିବାହ ବୋଲିଣ ପଚାରିଲା ।
ରାଜନ ବୋଇଲେ କାଲି ସକାଳୁ ଅନୁକୂଳ
ବାରଦିନର ବାଟ ଯିବାକୁ ବହୁଦୂର ।
ଚଉଦଦିନ ଆଜକୁ ରହିଲା ବିଭାଘର
ଶୁଣିଣ ସକଳ ରାଣୀ ହରଷ ମନର ।
ଅନ୍ତଃପୁର ଭିତରେ ଲାଗିଲା ଚହଳ
ପୁତ୍ରର ବିଭାଘର ବୋଲି ଉତ୍ସାହ ସକଳ ।
କୈକୟୀ ମନ୍ଥୁଡ଼ିକି ଡାକିଣ ପଚାରି
ଶାଶୁଙ୍କ ଅନ୍ତଃପୁର ଗହଳତ ଭାରି ।
ମନ୍ଥୁଡ଼ି ବୋଇଲା ଯେ କୌଶିକ ରାଜାବରି
ତୁମ୍ଭର ସ୍ୱାମୀ କାଲି ସକାଳୁ ଯିବେଚଳି ।
ରାଜାର କୁମରକୁ କି କରିବା ନିରୋଧ
କୈକୟୀ ବୋଇଲେ ନୁହଇ କଥା ସିଦ୍ଧ ।
ଆମ୍ଭର ପୁତ୍ର ପୁଣ ନାହିଁ ଏବେ ଭଲେ
କହିଲେ ରୋଷମନ ହୋଇବେ ନୃପବରେ ।
ବୋଲିବେ ଦୁଷ୍ଟମତି ଅଟଇ ରାଜା ଝିଅ
ରାଜାର ପୁଅ ହେଲେ ଅନେକ କରେ ପ୍ରିୟ ।
ଶୁଣିଣ ମନ୍ଥୁଡ଼ି ହରଷ ମନ କଲା
ପୂର୍ବଜନ୍ମ କଥାକୁ ମନରେ ସ୍ମରିଲା ।
ବିପ୍ରଙ୍କୁ ଭୂରି ଭୋଜନ ଋଷିଙ୍କୁ ଫଳମୂଳ
ଚତୁରଙ୍ଗ ବଳଙ୍କୁ ରାଜା ସଞ୍ଚା ଦେଲେ ଠୁଳ ।
ରାଜାମାନଙ୍କୁ ଅମୃତ ସମ ଭୁଞ୍ଜାଇଲେ
ଶିବଲିଙ୍ଗରେ ଗୋଧନ କ୍ଷୀରନେଇ ଦେଲେ ।

ବିଷ୍ଣୁ ପ୍ରତିମାଙ୍କୁ ବେଶ କରାଇଲେ
ଉତ୍ତମ ପଦାର୍ଥରେ ମାର୍ଜଣା ମାନ କଲେ ।
ପୋଢ଼ୁଅ ବୋଦା ଛାଗଳ ଦେବୀଙ୍କି ସେ ଦେଲେ
ମଙ୍ଗଳ ଉତ୍ସବ କରି ବେଶ କରାଇଲେ ।
ଜୁଡ଼ା ବାନ୍ଧି ପଞ୍ଚବର୍ଣ୍ଣ ଫୁଲ ସେ ଖଞ୍ଜିଲେ

× × × ×

ବୀରବଲ୍ଲୀ ମୁକୁତା କର୍ଣ୍ଣରେ ଦେଲେ ଖଞ୍ଜି
ଝଲକା ଚନ୍ଦ୍ର ଫାସିଆ ଉପରେ ତାର ରଞ୍ଜି ।
ରତ୍ନକଙ୍କଣ ବାହୁଟି ହସ୍ତମାନେ ଦେଲେ
ଗଳାରେ ଚାପସରି ଯତନେ ଖଞ୍ଜିଲେ ।
ଚନ୍ଦ୍ରହାସ ପଦକ ମୋତି ମାଳମାନ
ରତନ ମାଳମାନ ନିବିଡ଼ ଯତନ ।
ଜରିଲଗା କାଞ୍ଚଲା ପିନ୍ଧିଣ କୁମର
କଟୀରେ କଟୀମେଖଳା ଚରଣେ ନୂପୁର ।
ଅଙ୍ଗୁଷ୍ଠିମାନଙ୍କରେ ମୁଦ୍ରିକା ଶୋଭାବନ
ସୁବର୍ଣ୍ଣ ପାଦୁକା ଦୁଇ ଚରଣେ ଲଗାଇଣ ।
ଚିତ୍ରପଟ ସଦୃଶ ନୃପତି ନନ୍ଦନ
ଦେଖିଲେ ଜଗଜନ ହୋଇବେ ମୋହନ ।
ତଣ୍ଡୁଳ ଆଞ୍ଜୁଳିପରେ ଗୁବାକ ଥୋଇଲେ
ଆପଣା ଜନନୀର ପଣନ୍ତେ ନେଇଦେଲେ ।
ସମସ୍ତ ମାତାମାନେ ବନ୍ଦାପନା କଲେ
ଫେରିଣ କୁମର ପିତା ପାଶରେ ମିଳିଲେ ।
ନମସ୍କାର କରିଣ ଛାମୁରେ ଉଭା ହେଲେ
ଦେଖିଣ ରାଜନ ସନ୍ତୋଷ ହୋଇଲେ ।
କନକ ରଥପରେ ନେଇଣ ବସାଇଲେ
ବେଶହୋଇ ରାଜନ ରଥରେ ବସିଲେ ।
ସକଳ ନୃପତିମାନେ ରଥର ଉପରେ
ଦିବ୍ୟ ବେଶ ହୋଇଣ ବସିଲେ ହରଷରେ ।
ବେନିକୋଟି ରଥୀ ଯେ ଆଗରେ ସଜ ପୁଣ
ଲକ୍ଷେକ ସାରେଣୀ ସଙ୍ଗରେ ଗଲେ ପୁଣ ।
ଦୁଇଲକ୍ଷ ହସ୍ତୀ ଯେ ସଙ୍ଗରେ ଗଲେ ଚଳି
ହସ୍ତୀଙ୍କର ଉପରେ ମାହୁନ୍ତ ବସି ଚାଳି ।
ବାରଲକ୍ଷ ସିପାହୀ ଘୋଡ଼ାପରେ ବସି
ତିନିଲକ୍ଷ ବାଜଣା ମେରୁ ଝଡ଼େ କମ୍ପି ।
କୋଡ଼ିଏ ଲକ୍ଷ ଛତି ଆଗରେ ଛାଇ ହେଲା
ଆଲଟ ବିଞ୍ଚଣା ଯେ ଆଲଟ ଦିଶେ ତ୍ୱରା ।

ପଦାତିମାନେ ଯେଝା ଆୟୁଧ ଧଇଲେ
ଋଷିମାନେ ଯାନର ଉପରେ ବିଜେକଲେ ।
ନଟକାରୀ ଅପସରୀ ଆଗରେ ଚଳିଲେ
ବାଜାକାରୀମାନେ ତାଙ୍କ ସଙ୍ଗରେ ଗମିଲେ ।
ଶଗଡ଼ ବଳଦ ଯେ ହଟାରୀ ବଜାରୀ
ସକଳପଦାର୍ଥ ଘେନି କରି ଚଳି ।
ଅନେକ ଶାଢ଼ୀମାନ ସାରେଣୀପରେଗଲା
ସମ୍ଭର୍ବରେ ବାହାର ରଘୁରାଜ ବଳା ।
ଦେଖଣାହାରୀ ଲୋକେ ହୁଳହୁଳି ଦେଲେ
ଚଉଦୋଳପରେ କଶ୍ୟପ ବଶିଷ୍ଠ ବିଜେକଲେ ।
ବାରଦିନେ ପ୍ରବେଶ କଉଶିକପୁରେ
ପାତ୍ରମନ୍ତ୍ରୀ ଯାଇଣ କହିଲେ ରାଜାରେ ।
ପାତ୍ରମନ୍ତ୍ରୀ ଆସିବା ଦିନୁଁ ରାଜା ନଗ୍ର ମଣ୍ଡାଇଥିଲା
ବାରସ୍ୱତୀପୁର ପ୍ରାୟେ ଚିତ୍ର ବିଚିତ୍ର କଲା ।
ମଙ୍ଗଳ ଉତ୍ସବ କରାଇ ଅଛି ପୁଣ
ଚତୁରଙ୍ଗ ବଳ ସଜ ହୋଇଣଛନ୍ତି ଜାଣ ।
କଟକର ଶୋଭା ଯେ କହିଲେ ନ ସରଇ
ଯେସନେକ ନିଶିରେ ଆକାଶରେ ଚାନ୍ଦ ଉଇଁ ।
ଶ୍ୱେତହସ୍ତୀ ଉପରେ ଚଢ଼ିଣ କଉଶିକ
ନଟକାରୀ ଅପସରୀ ଆଗରେ ଲକ୍ଷ ଲକ୍ଷ ।
ଆଲମ୍ୱ ପାଟଛତ୍ର ଆଗରେ ଅପ୍ରମିତ
ବାଟବରଣ ନିମନ୍ତେ ଚଳିଲେ ତ୍ୱରିତ ।
ଭାଟ କଏବାର କରନ୍ତି ଆଗେ ଦୂରି
ଦଶସହସ୍ର ରାଜା ସଙ୍ଗରେ ଛନ୍ତି ପୁରି ।
ରଥୀ, ହସ୍ତୀ, ପଦାତି ରଥ ଯେ ସାରେଣୀ
ଆଗପଛେ ଧୀରେ ଧୀରେ ସର୍ବେ ଚଳେ ପୁଣି ।
ବାଟରେ ଭେଟାଭେଟି ହୋଇଲେକ ଯାଇକରି
କଉଶିକ ନୃପତି ଯାଇ ବରକୁ ବରି ।
ସକଳ ରାଜାଙ୍କୁ ସେ ନିମନ୍ତ୍ରଣ କଲା
ବରଣ କରି ରାଜାଙ୍କୁ ସଙ୍ଗେ ଘେନିଗଲା ।
ରାଜାଙ୍କୁ ନବର ପାତ୍ରମାନଙ୍କୁ ଉଆସ
ଋଷିମାନଙ୍କୁ ବୃକ୍ଷ ମୂଳରେ ଦେଲେ ବାସ ।
ଚତୁରଙ୍ଗବଳଙ୍କୁ ବସାମାନ ଦେଲେ
ସକଳ ସାମଗ୍ରୀ ରଖି ରାଜନ ଚଳିଲେ ।
ଚରଚା କରିବା ପାଇଁ ପାତ୍ର ମନ୍ତ୍ରୀ ଚାର
ସମସ୍ତଙ୍କୁ ଚର୍ଚ୍ଚା କଲା ଯେ ବେଭାର ।

ଏଥୁ ଅନନ୍ତରେ ଶୁଣ ଭଗବତୀ
ବରକୁ ଘେନିଣ ଗଲେ କୌଶିକ ନୃପତି ।
ଅନ୍ତଃପୁର ଭିତରେ ନେଇ ପ୍ରବେଶିଲେ
ରାଣୀମାନେ ଆସିଣ ବରକୁ ଦେଖିଲେ ।
ଶୋଭା ସୁନ୍ଦର ଦେଖି ରାଣୀ ତୋଷ ହେଲେ
ମଙ୍ଗଳକୃତ୍ୟ ବେଭାର ରଜନୀରେ କଲେ ।
ରଜନୀ ଶେଷଣେ ମାଜଣା କରି ପୁଣ ।
ବରକୁ ବର ବେଶ କରଇ ତକ୍ଷଣ ।
କନ୍ୟାକୁ ସୁବେଶ ଦାସୀମାନେ କଲେ
ଚରଣ ଅଙ୍ଗୁଷ୍ଠିରେ ଝୁଣ୍ଟିଆ ଖଞ୍ଜିଲେ ।
ପାହୁଡ଼ ନୂପୁର ଖଞ୍ଜିଲେ ନେଇ ପୁଣ
କଟୀରେ କଟୀ ମେଖଳା ଖଞ୍ଜିଲେ ଯତ୍ନେଣ ।
ବେନି ଭୁଜେ ବିଦ ମୁଦି ବାହୁଟି ଯେ ତାଡ଼
ବକ୍ଷସ୍ଥଳେ କାଞ୍ଚୁଲା ପିନ୍ଧାଇଲେ ଦୃଢ଼ ।
ପଦକ ଚନ୍ଦ୍ରହାର ମୁକୁତା ହାରମାନ
ଚାପସରି କଣ୍ଠରେ ଦିଶଇ ଶୋଭାବନ ।
ନାସାରେ ସିନ୍ଧୁଫଳ ରତ୍ନଗୁଣା ନୋଥ
କର୍ଣ୍ଣରେ ମଲ୍ଲୀ କଢ଼ୀ ଝଲକା ରତ୍ନ କାପ ।
ମଥାରେ ମଥାମଣି ଅଳକା ବାନ୍ଧିଲେ
ଜୁଡ଼ାପରେ ତଥାପି ଝିଞ୍ଜିରେ ଖଞ୍ଜିଲେ ।
ଏମନ୍ତ ବେଶ କରିଣ ପତନୀ ପିନ୍ଧାଇଲେ ।
ଇନ୍ଦ୍ର ଗୋବିନ୍ଦ ପତନୀ ପହରଣ କଲେ ।
ଚନ୍ଦନ କର୍ପୁର ଅଙ୍ଗରେ ବୋଳି ତାର
ନାନାବର୍ଣ୍ଣେ ବେଶ କଲେ ପିନ୍ଧାଇ ଫୁଲମାଳ ।
ରତ୍ନ ପାଦୁକା ନେଇ ପାଦରେ ପିନ୍ଧାଇଲେ
ଚନ୍ଦ୍ରକୁ ବନ୍ଦିରୂପ ଝଟକି ଦିଶେ ଭଲେ ।
ଏମନ୍ତେ ବରକନ୍ୟା ବେଶ କଲେ ଜାଣ
ରତ୍ନବେଦୀ ଉପରକୁ କଲେକ ବରଣ ।
ଦ୍ୱିଜବର ଋଷି ବସିଣ ବେଦ ପଢ଼ି
ବରୁଣ ପୂଜାକରି ବିଭାବିଧି କରି ।
କନ୍ୟାକୁ ଅଣାଇଁ ଲବଣ ଚାମରୀ କଲେ
ଶିଳାରୋହଣ କରି କନ୍ୟା ଅଣାଇଁଲେ ।
ବରକନ୍ୟା ହସ୍ତ କୁଶରେ ବାନ୍ଧି ପୁଣ
ଶଙ୍ଖରେ ପାଣି ଦେଲେ ରାଜନ ତୋଷମନ ।
ପ୍ରଥମେ ଲକ୍ଷେ ରଥ ପାଣି ଦ୍ରବ୍ୟ ଦେଲେ
ଦ୍ୱିତୀୟ ଗାଈ ମହିଁଷି ଅଶ୍ୱ ବନ୍ଦାଇଲେ ।
ତୃତୀୟ ସକଳ ପଦାର୍ଥ ଦେଇ ପୁଣ
ଚତୁର୍ଥେ କନ୍ୟାଦାନ ଦେଲାକ ରାଜନ ।
ପଞ୍ଚମ ହସ୍ତଗ୍ରନ୍ଥି ଫେଡ଼ିଲେ ବରକନ୍ୟା
ବରକନ୍ୟାଙ୍କ ଶିରରେ ମୁକୁଟ ଶୋଭାବନ ।
ଅଗ୍ନିରେ ହୋମକରି ତ୍ରିପୁଟି କରାଇଲେ
ବିଭାସାରି ବରକନ୍ୟା ବେଦୀରୁ ଘେନିଗଲେ ।
ଅନ୍ତଃପୁର ଭିତରେ ପ୍ରବେଶ ନେଇକଲେ
ଯୁଆ ଖେଳାଇ ଦାସୀ ସନ୍ତୋଷ କରାଇଲେ ।
ରାଣୀମାନେ ବନ୍ଦାପନା କଲେ ହରଷେଣ
ଯଉତୁକ ଧନଦେଲେ ଲକ୍ଷେକ ରତନ ।
ଦିବ୍ୟ ଅଳଙ୍କାରମାନ ହରଷେ ବନ୍ଧାଇଲେ
ପଞ୍ଚଗ୍ରାସି କରିଣ ଭୋଜନ କରାଇଲେ ।
ରଜନୀ ଶେଷ ହୋନ୍ତେ ଦ୍ୱିତୀୟ ଦିନ ହେଲା ।
ଉତ୍ସବ ଯାତ୍ରା ରାଜା ସେହିଦିନ କରାଇଲା ।
ଆରଦିନ ବରଯାତ୍ରୀ ଫେରିଣ ନଗ୍ରଦେଖି
ମର୍ଦ୍ଦନ ମାଜଣା କରି ମଣୋହିରେ ସୁଖୀ ।
ଚତୁର୍ଥ ଦିନ ରାଜନ ଚତୁର୍ଥୀ ବିଧିକରି
ଋଷି ବିପ୍ର ଡକାଇ ରାଜା ହୋମକରି ।
ବିପ୍ର ଋଷିଙ୍କି ରାଜା ମେଲାଣି ଧନ ଦେଲେ
ସାମନ୍ତ ପାତ୍ର ମନ୍ତ୍ରୀମାନଙ୍କୁ ବୋଧକଲେ ।
ଯଉତୁକ ଦ୍ରବ୍ୟମାନ ଚାଳିଲେ ତୋଷହୋଇ
କରଯୋଡ଼ି ରଘୁବଂଶଙ୍କୁ କଉଶିକ କହି ।
ମୋର ଦୁହିତାର ଦୋଷ ନ ଘେନିବ କିଛି
ଆଜିଠାରୁ ତୁମ୍ଭର ହୋଇଲା ମୋର ବଛି ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ବରକନ୍ୟା ଦୁହିଁଙ୍କି ଦାସୀ ଭେଟକରି ।
ମଧୁଶଯ୍ୟା ପଲଙ୍କରେ ଏକାନ୍ତ କରାଇଲେ
କବାଟ ଦେଇଣ ଦାସୀମାନେ ଚଳିଗଲେ ।
ଚାମର ଧରିଣ ବିଞ୍ଚଇ କଉଶଲ୍ୟା
ଦେଖିଣ ଦଶରଥ ମନରେ ତ୍ୱରା ହେଲା ।
ବିଚାରିଲେ ଊମା ସଙ୍ଗରେ ଏ ସରି
କୈକେୟୀଠୁ ଶତେଗୁଣେ ଅଟେ ଏ ସୁନ୍ଦରୀ ।
ମୁଖଗୋଟି ଚନ୍ଦ୍ରମଣ୍ଡଳ ପ୍ରାୟେ ଦିଶି
ମୃଗ ନୟନୀ ଏ ଅଟଇ ଶୁଭ୍ରକେଶୀ ।
ଭୃଲତା ଚାହାଣୀ ମୋହର ମୋର ଅଙ୍ଗ
କେମନ୍ତ ଯୋଗରେ ମିଳିଲା ମୋର ସଙ୍ଗ ।

କେତେଦିନ ବଧାତା ଏହାଙ୍କୁ ନିର୍ମାକଲା
ସକଳ ଚିନ୍ତା ଛାଡ଼ି ବସିଣ ଗଢ଼ିଲା ।
ଏମନ୍ତ ବିଚାର ଦଶରଥ କଲେ
ଉଠିଯାଇ ରାଜଜେମାଙ୍କୁ କୋଳକଲେ ।
କୋଳରେ ବସାଇ ମୁଖେ ଦେଲେକ ଚୁମ୍ବନ
ହରଷ ମନରେ କଲେ କୁଚକୁ ମର୍ଦ୍ଦନ ।
ନାନା ପରିବନ୍ଧନରେ ରତିରଙ୍ଗ କଲେ
ଲଜ୍ୟାଭାବ ଗୋଟି ସେଠାରେ ତ୍ୟାଗ କଲେ ।
ନାନା କଉତୁକ ସେଠାରେ ପୁଣ କଲେ
ହାସରସ କଉତୁକେ ରଜନୀ ବଞ୍ଚିଲେ ।
କୌଶଲ୍ୟାଙ୍କୁ କୋଳେ ଧରି ଦଶରଥ ଶୋଇ
ଏମନ୍ତ ସମୟରେ ରଜନୀ ଗଲା ପାହି ।
ଦାସୀଏ ଆସି କୌଶଲ୍ୟାଙ୍କୁ ଘେନିଗଲେ
ହାସରସ କରିଣ ମାଜଣା ବିଧିକଲେ ।
ସୁବାସିତ ଜଳରେ ସ୍ନାହାନ କରାଇଲେ
ନୂତନ ପତନି ବାଛି ପିନ୍ଧାଇଲେ ।
ପହଣ୍ଡ ମଡାଇଣ ପଲଙ୍କେ ବସାଇଲେ
ସେଠାରୁ ଦାସୀଗଣ ବେଗେ ଚଳିଗଲେ ।
ଦଶରଥଙ୍କ ପାଶେ ପ୍ରବେଶ ହୋଇଲେ
ରାଜକୁମାରଙ୍କୁ ମଣାଇ ଆଣିଲେ ।
ହାସ ରସ କଉତୁକ ଅନେକ କହିଲେ
ମର୍ଦ୍ଦନ ମାଜଣା ବିଧାନରେ କଲେ ।
ସୁବାସିତ ଜଳରେ ସ୍ନାହାନ କରଇ
ନୂତନ ପତନୀ ପିନ୍ଧାଇଲେ ନେଇ ।
ରତ୍ନ ପଲଙ୍କ ଉପରେ ନେଇଣ ବସାଇଲେ
ଭୁଞ୍ଜିବାକୁ ଠାଆପାଣି ଯତନେ ବାଢ଼ିଲେ ।
ଷଡ଼ରସଭୋଜନ କଲେ କନ୍ୟା ବର
ଆଚମନ କଲେ ସୁବାସ ଜଳର ।
ରାଣୀମାନେ ଆସି ପ୍ରବୋଧି କହିଲେ
ଦୁହିତା ଦେଇ ଶରଣ ପଶିଲୁଁ ବୋଇଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଦିନକଠାରୁ ମେଲାଣି କରିଥିଲେ ନୃପତି ।
ଚତୁରଙ୍ଗବଳ ଋଷି ବିପ୍ର ଆଦି ଯେତେ
ରଥୀ, ହାତୀ, ସେନାପତି ରାଜା ସେ ସମସ୍ତେ ।
ସଜହୋଇ ବାହାର ହୋଇଲେକ ପୁଣ
ସେକାଳ ସମ୍ଭର୍ବ କହିନୁହେଁ ପୁଣ ।
ବରକନ୍ୟାଙ୍କୁ ଘେରିଣ ଚୌପାଶେ ବସିଲେ
ଖଦି ଚାମର ଆଲଟ ବିଞ୍ଚଣା ବିଞ୍ଚିଲେ ।
ସହସ୍ରେକ ଦାସୀ ବେଣ ହୋଇ ପୁଣ
ରଥର ଉପରେ ବସିଲେ ତତ୍‌କ୍ଷଣ ।
ଏଥୁ ଅନନ୍ତରେ ଶୁଣ ଶାକମ୍ଭରୀ
ଚଳିଲେ ରାଜନ ପୁତ୍ରବଧୂଙ୍କୁ ଘେନିକରି ।
ସଙ୍ଗରେ କଉଶିକ ରାଜା ଗୋଡ଼ାଇ ଆସି
ରଜନୀରେ ନଦୀକୂଳେ ରହିଲେ ବିଶେଷି ।
ରଜନୀ ଶେଷରେ କହିଣ ରଜା ପୁଣ
କଉଶିକ ରାଜା ଆସେ ଆପଣା ରାଜ୍ୟେଣ ।
ଅଯୋଧା ରାଜା ଯେ ଚଳିଲେ ହରଷେ
ବାରଦିନେ ପ୍ରବେଶ ଆପଣାର ଦେଶେ ।
ସିଂହଦ୍ୱାର ନିକଟରେ ରହିଲେ ସେ ଜାଣ
ଭିତରୁ ଦାସୀଗଣ ଅଇଲେ ତକ୍ଷଣ ।
ପୁତ୍ରବଧୂ ଦାସୀଗଣ ସଙ୍ଗରେ ଘେନିଗଲେ
ଅନ୍ତଃପୁରେ ନେଇ ବିଜେ କରାଇଲେ ।
ହୁଳହୁଳି ଶବଦରେ କମ୍ପଇ ମେଦିନୀ
ରାଣୀମାନେ ପ୍ରବେଶ ହୋଇଲେ ଆସି ପୁଣି ।
ଭିତରେ ପୁରକୁ ପୁତ୍ରବଧୂଙ୍କୁ ଘେନିଗଲେ
ରୂପ ଦେଖି ସମସ୍ତେ ମୋହିତ ହୋଇଲେ ।
ଗୋଟିଏ ନବରରେ ରହିବେ କଉଶଲ୍ୟା
ସହସ୍ରେକ ଦାସୀ ସଙ୍ଗରେ ହୋଇ ମେଳା ।
ଯେତେ ନୃପତି ଅଣାଇଁଥିଲେ ରାଜା
ମୁକୁଟ କୁଣ୍ଡଳ ଧନ ଦେଇଣ କଲେ ପୂଜା ।
ସେ ଦିନ ରହି ରାଜାଏ ପ୍ରଭାତୁ ଚଳିଗଲେ
ଆରଦିନ ଋଷିମାନଙ୍କୁ ବିଦାକଲେ ।
ମେଲାଣି ହୋଇଣ ଋଷି ବ୍ରାହ୍ମଣ ଚଳିଗଲେ ।
ଚତୁରଙ୍ଗବଳ ମେଲାଣି ରାଜା କଲେ ।
ଶାଢ଼ୀଧନ ଅନେକ ଆଣିଣ ବିଳୋହିଲେ
ସମସ୍ତ ସନ୍ତୋଷରେ ହରଷମନ ହେଲେ ।
ସେନାପତି ରଥୀଙ୍କି ଧନ ଦେଇ ତୋଷି
ଦୁଃଖୀ ଦରିଦ୍ରମାନଙ୍କୁ ଅନ୍ନବସ୍ତ୍ରେ ତୋଷି ।
କଉଶିକର ଯେତେକ ଲୋକ ଆସିଥିଲେ
ସନ୍ତୋଷରେ ମେଲାଣି ତାଙ୍କୁ ରାଜନ କଲେ ।
ଯଉତୁକ ଦ୍ରବ୍ୟମାନ ମନ୍ତ୍ରୀ ବୁଝାଇ ଘେନିଗଲା
ଭଣ୍ଡାର ଘର ଭିତରେ ନେଇଣ ଥୋଇଲା ।

ପାତ୍ର ମନ୍ତ୍ରୀ ସାମନ୍ତ ବଶିଷ୍ଠଙ୍କୁ ପୁଣ
ଅନେକ ଧନ ଦେଲେ ଅଯୋଧ୍ୟା ରାଜନ ।
ଲାଗିଲା ଚହଳ ସକଳେ ଗଲେ ଚଳି
ଏଥୁ ଅନନ୍ତରେ ଶୁଣ ଶାକମ୍ବରୀ ।
ଚନ୍ଦ୍ର କଳା ରାଜ୍ୟରେ ସୁମନ୍ତ ବୋଲି ରାଜା
ସୁମିତ୍ରା ବୋଲିକରି ତାହାର ତନୁଜା ।
ଏଗାର ବରଷ ଦୁଇମାସେ ହେଲା ନବଯୁବା ।
ଯେସନେ ଚନ୍ଦ୍ରକୁ ରୋହିଣୀ ବିଶେ ଶୋଭା ।
ଅନ୍ଧାରେ ଆଲୋକ ଦିଶଇ ତାର ରୂପ
ଚନ୍ଦ୍ରକଳା ରାଣୀ ଦେଖି ହୁଏ ବିକଳିତ ।
ରାଜାର ଆଗରେ ରାଣୀ ପୁଣ କହି
ନବଯୁବା ଦୁହିତାକୁ ଘରେ ରଖି ନୋହି ।
ବର ଦେଖି ବିଭା କରିବା ଦୁହିତାକୁ
ଦେଖିବାର ଚିନ୍ତା ଆସେ ମୋହର ମନକୁ ।
ଶୁଣିଣ ରାଜନ ବୋଲନ୍ତି ବଚନ
ତପନ କୁଳରେ ଅଜରାଜା ଜାଣ ।
ତାହାର କୁମର ଅଟେ ଦଶରଥ
ତାହାଙ୍କୁ ବିଭାଦେବା ଆମ୍ଭର ଦୁହିତ ।
ରାଜା ବଚନ ଶୁଣି ରାଣୀ କହେ ପୁଣି
କେଉଁ ଦେଶେ ଘର ତାର କହ ନୃପମଣି ।
ରାଜନବୋଇଲେ ତାର ଅଯୋଧ୍ୟା ଦେଶେଘର
କଜ୍ଜରଷି ନାତି ତାଙ୍କ ପୁରୋହିତ ସାର ।
କଣ୍ଡୁ ଋଷି ଜମନିକ ତୀର୍ଥରେ କରିମଠ
ତପ କରିବାରେ ସେ ହୋଇଲେ ସିଦ୍ଧାନ୍ତ ।
ଅନନ୍ତ ବାସୁଦେବରେ ପ୍ରୀତି ସେହୁ କଲା
ତେଣୁ କରି ପ୍ରଳୟେ ସେ ଋଷି ବଞ୍ଚିଲା ।
ଚନ୍ଦ୍ରକଳା ବୋଲେ ଦେବ ଋଷି କଥା କହ
କେଉଁ ଋଷି କୁମର ସେ କିରୂପେ ଦେବପ୍ରିୟ ।
ସୁମନ୍ତ ରାଜା ବୋଇଲେ ଶୁଣ ପାଟରାଣୀ
ଅଗ୍ନିର କୁମର ସେ ବଳରେ ଅଟେ ପୁଣି ।
ସାତଯୁଗ ପରିଯନ୍ତେ ତପ ସେହୁକଲା
ନିରାକାର ବିଷ୍ଣୁ ତାକୁ ପ୍ରସନ୍ନ ହୋଇଲା ।
ବୋଇଲେ କୁମରରେ ଚିନ୍ତା ନକରମନେ
ତୁ ଯାହା ମାଗିବୁ ମୁଁ ଦେବଇଁ ପରସନ୍ନେ ।
ଶୁଣିଣ ମାରକଣ୍ଡ ମନରେ ତୋଷହେଲେ
ପ୍ରଳୟରେ କ୍ଷୟ ମୁହିଁ ନୋହିବି ବୋଇଲେ ।
ହେଉବୋଲି ବାସୁଦେବ କହିଲେ ତାଙ୍କୁ ପୁଣ
ଶୁଣିଣ ସନ୍ତୋଷ କଣ୍ଡୁ ଋଷି ଜାଣ ।
ଯମନିକ ତୀର୍ଥରେ ରହିଲେ ମୁନିଯାଇ
ଅଠର ମନୁ ପର୍ଯ୍ୟନ୍ତ ତପି ସେହୁ ହୋଇ ।
ଅଠର ମନୁ ସଂପୂର୍ଣ୍ଣରେ ପ୍ରଳୟ ହୋଇଲେ
ଦେବାସୁର ନର ବାନର କ୍ଷୟଗଲେ ।
ତିନିପୁର ଘୋଟିଲା କାରୁଣ୍ୟ ଜଳଧି
ସମସ୍ତେ ଲୀନ ହେଲେ ଶୁଣ ସ୍ତିରୀନିଧି ।
ସେତେବେଳେ ମାରିକାଣ୍ଡ ସୁମରେ ନାରାୟଣ
ଡାକନ୍ତେ କର୍ଣ୍ଣରେ ଶୁଣିଲେ ପ୍ରଭୁ ପୁଣ ।
ଆଜାନୁବାହୁ ମେଲାଇ ତାହାକୁ ଘେନିଗଲେ
ମୁର୍ଖବାଟେ ଧରି ଗର୍ଭକୁ କ୍ଷେପିଦେଲେ ।
ସପତ ବ୍ରହ୍ମାଣ୍ଡ ନାରାୟଣ ଗର୍ଭେପୁଣ
ବୁଲିଣ ମାରକଣ୍ଡ ଦେଖିଲେ ସର୍ବସ୍ଥାନ ।
ମନୁଏ ପରିଯନ୍ତେ ଗର୍ଭରେ ରହିଲେ
ସମସ୍ତେ କ୍ଷୟ ଯିବାରୁ ସେ ବାହାର ହେଲେ ।
ଦେଖିଲେ ତିନିପୁରେ ଆଉ କେହି ନାହିଁ
ନଦେଖି ମାରକଣ୍ଡ ମନରେ ଚିନ୍ତା ହୋଇ ।
ନାରାୟଣ ସୁମରଣା ମୁନିମନେ କଲେ
ବାସୁଦେବ ରୂପେ ପ୍ରସନ୍ନ ତାଙ୍କୁ ହେଲେ ।
ମାରକଣ୍ଡ ବୋଇଲେ ଶୁଣିମା ଦେବହରି
ଦେବ ଅସୁର ସକଳେ ଗଲେ ମରି ।
ପ୍ରଳୟରେ ମେରୁଗିରି ସମସ୍ତେ ଲୀନ ହେଲେ
ଏବେ ସବୁ ସର୍ଜନା କରିବୁଟିକି ଭଲେ ।
ନାରାୟଣ ବୋଇଲେ ଶୁଣ କଜ୍ଜ ମୁନି
କିଛିଦିନ ଅନ୍ତେ ବିଚାରେ ଯେ ପୁଣି ।
ଏତେବୋଲି ହରି ଶୟନ ସ୍ଥାନେ ଗଲେ
କ୍ଷୀର ସାଗର ଭିତରେ ଶୟନ ସେ କଲେ ।
ନାଭି ମଣ୍ଡଳରେ ପଦ୍ମ ଯେ ଉତ୍‌ପତ୍ତି
ଚତୁର୍ମୁଖ ବ୍ରହ୍ମା ସେଥିରୁ ଉତ୍‌ପତ୍ତି ।
ନାରାୟଣ କହିବାରୁ ଞ୍ଜାତପ ହେଲାଚାର
ମନରୁ ଦୁହିତା ଜାତକଲେ ବେଦବର ।
ଦୁହିତା ଗୋଟିକ କିନ୍ତୁ ଋଷିଙ୍କି ବିଭାକଲେ
ଦେବତାଙ୍କୁ ଜାତକର ବୋଲିଣ ଆଜ୍ଞାଦେଲେ
ଦୁହିତାଠାରୁ ଜାତ କଶ୍ୟପ ଋଷି ହେଲେ
କଶ୍ୟପ ଋଷି ଠାରୁ ଦେବତାଏ ଜନ୍ମିଲେ ।

ତେତିଶକୋଟି ଦେବତା ଋଷି କଲେ ଜାତ
ତେବେ ସ୍ୱର୍ଗପୁର ହୋଇଲା ସମ୍ଭୃତ ।
ଚନ୍ଦ୍ରାବତୀ ବୋଇଲେ ଶୁଣିମା ଦେବ ହେଉ
ସେ କଶ୍ୟପ ଋଷି କନ୍ୟା ପାଇଲା ପୁଣ କାହୁଁ ।
ସୁମନ୍ତ ରାଜାବୋଲେ ଶୁଣ ପାଟରାଣୀ
ମାର୍କଣ୍ଡ ହେଲେ ଭଣ୍ଡାର ଅଧିପତି ପୁଣି ।
୫୦ର ମନୁ ପର୍ଯ୍ୟନ୍ତ ଭଣ୍ଡାରେ ଅଧିପତି
ମର୍ତ୍ତ୍ୟପୁର ଜୀବମାନେ କଲେ ଯେ ଅନୀତି ।
ଦେବତାଏ ବିଚାରି ଦେବରଙ୍କୁ କହି
ନର ଅସୁର ଦେବତା କାହାକୁ ନ ମାନଇଁ ।
ଶୁଣି ବେଦବର ସପ୍ତନିଧିଜାତ କଲେ
ଭଣ୍ଡାର ଅଧିପତି ତାହାଙ୍କୁ କରାଇଲେ ।
କଶ୍ଯୁରଷିଙ୍କି କହିଲେ ତୁମ୍ଭେ ହୁଅ ଜନ୍ତୁପତି
ଶୁଣିକରି ଋଷି ବୋଲେ ପଡ଼ିଲା ବିପତ୍ତି ।
ସଞ୍ଜିବନୀପୁରେ ମୁନିହେଲେ ଉପସ୍ଥିତ
ପ୍ରତିଦିନ କୋଟିଏ ଜୀବ ମରନ୍ତି ତ ।
ପାପ ପୁଣ୍ୟ ବିଚାରିଣ ତାଙ୍କୁ ଜାତ କରି
ଏରୂପେ ୫୦ର ମନୁ ଗଲା ଅପସରି ।
ତିଳାର୍ଦ୍ଧେ ସମୟ ନୋହିଲା ଋଷିଙ୍କର
କିଛି ନ ବୁଝିଲେ ମାର୍କଣ୍ଡ ମୁନିବର ।
ଦେବତାଏ ଦେଖିଣ ହରଷ ମନ ହେଲେ
ହେମ ଆଦିତ୍ୟ ପୁତ୍ରଙ୍କୁ ଜନ୍ତୁପତି କଲେ ।
ସେ ଜଞ୍ଜାଳରୁ ଋଷି ହୋଇଲେ ଖଲାସ
ଘରଣୀକି ଘେନିଣ ଅଇଲେ ମର୍ତ୍ତ୍ୟଦେଶ ।
ଯାମନିକ ତୀର୍ଥରେ ବସିଣ ତପ କଲେ
କାଳେହେଁ ଦୁହିତା ଗୋଟିଏ ଜାତ ହେଲେ ।
ସେ ଦୁହିତାଟିକି ବିବାହ କଲେ ଋଷି
କୁମ୍ଭଋଷିଙ୍କି ବରିଣ କନ୍ୟାଦାନ ଦ୍ୟନ୍ତି ।
ସେ କନ୍ୟା ସଙ୍ଗେଣ ଋଷି ରତିରସ କଲେ
ଜଇନ୍ତା କନ୍ୟାଗର୍ଭରୁ ଦୁଇପୁତ୍ର ହେଲେ ।
ଅଗସ୍ତି ବଶିଷ୍ଠ ତାଙ୍କର ନାମ ପୁଣ
କାଳେ ସେ ଦୁଇପୁତ୍ର ଋଷି କୁଳରେ ଗଣ ।
ଚନ୍ଦ୍ରାବତୀ ବୋଇଲେ ଶୁଣିମା ହେଉ ଦେବ
ହେମ ଆଦତ୍ୟ ପୁତ୍ର କେତେ କଲା ଭୋଗ ।
ସୁମନ୍ତ ବୋଇଲେ ଶୁଣ ଶୁଣ ପାଟରାଣୀ
ଏକସ୍ତରୀ ଗଣ୍ଡା ଯୁଗ ଭୋଗ କଲା ପୁଣି ।

ମତ୍ତଭରେ ମର୍ତ୍ତ୍ୟପୁରେ ବୁଲିଣ ସେ ଗଲା
ପାର୍ବତୀ ପୁତ୍ରଙ୍କୁ କପିଳାସରେ ଦେଖିଲା ।
ବିଜେ କରିଛନ୍ତି ଗଣନାଥ ପ୍ରଥମ ଦୁଆରେ
ଦେଖିଣ ଜନ୍ତୁପତି ବିଚାରେ ମନରେ ।
ଦୁଇଗୋଟି ଚରଣ ଦଶଗୋଟି ଭୁଜ
ପାଞ୍ଚଗୋଟି ମୁଣ୍ଡ ହସ୍ତୀପ୍ରାୟ ଶୁଣ୍ଢ ।
ଦେଖିଣ ଜନ୍ତୁପତି ମନେ କ୍ରୋଧ ହେଲା
କାଳପାଶକୁ ପାର୍ବତୀ ନନ୍ଦନ ଦେଖିଲା ।
ପାଶ ଅଙ୍କୁଶ ପେଷି କାଳକୁ କଲା ନାଶ
ନାଗଫାଶ ଶର ବିନ୍ଧିଲେ ଶିବଶିଷ୍ୟ ।
ନାଗ ଫାଶେ ଧରିଣ ତାହାକୁ ଘେନିଗଲେ
ତୋଟିର ଉପରେ ଏକ ଚରଣ ଲଦିଲେ ।
ଉଚ୍ଚରେ ରୋଦନ କରେ ଇନ୍ଦୂର ଯେ ଯମ
ତେତିଶକୋଟି ଦେବତା ହୋଇଲେ ଅଦମ ।
ସକଳ ଦେବତାଏ ହୋଇଲେ ଏକମେଳ
ହିମଗିରିକି ବୋଲି ଚଳିଲେ ସକଳ ।
କପିଳାସ କନ୍ଦରେ ହୋଇଲେ ପ୍ରବେଶ
ଗଣବ୍ରହ୍ମାଙ୍କୁ ଦେଖି ସ୍ତୁତି କରନ୍ତି ବିଶେଷ ।
ବୋଇଲେ ପାର୍ବତୀ ନନ୍ଦନ ରକ୍ଷାକର
ଜନ୍ତୁପତି ନରଖିଲେ ରାଜ୍ୟ ହୋଇବ ଛାରଖାର
ଗଣବ୍ରହ୍ମା ବୋଇଲେ ଏ ଅଟଇ ବଡ଼ ମୂଢ଼
ମତ୍ତଗର୍ବ ପଣୟାର ଅଟଇ ବଖଡ଼ ।
କାଳପାଶ ବିନ୍ଧିଲା ମୋତେ ମାରିବାକୁ
ଅନ୍ୟ ଲୋକଙ୍କର କି ରଖିବ ବଳବପୁ ।
ମଲା ଲୋକ ପାପପୁଣ୍ୟ ବୁଝିବାକୁ ପୁଣ
ପାତକ ଦେଖି ଦଣ୍ଡ ଦେବ ସେ କାରଣ ।
ଆୟୁଷ ଥିବା ଲୋକକୁ ନେବ ଯେବେ ଧରି
ନର, ବାନର, ଅସୁର ପକାଅ ନିବାରି ।
ବିଧାତା ବୋଇଲେ ଯାଉ ଯମପଣ ଯାଉ
ତୋହର ବାହନ ହୋଇ ଚରଣେ ଖଟି ଥାଉ ।
ଶୁଣିଣ ଗଣବ୍ରହ୍ମା ପେଟରୁ ଗୋଡ଼ କାଢ଼ି
ତତକ୍ଷଣେ ଯମ ଅସୁର ରୂପ ଧରି ।
ମୂଷିକ ବାହନ ହୋଇ ରହିଲା କପିଳାସ
ଚନ୍ଦ୍ରାବତୀ ବୋଲେ ଶୁଣ ରାଜନ ବିଶେଷ ।
ମାରକଣ୍ଡ ଋଷି ତପ କରି କରି ଗଲା
ଇନ୍ଦୁର ଜନ୍ତୁପତି କୈଳାଶେ ରହିଲା ।

ସଞ୍ଜୀବନୀ ପୁରେ କେ ହୋଇଲା ରାଜା
ସେ କଥା ଗୋଟି ମୋତେ କହ ଦେବରାଜା ।
ସୁମନ୍ତ ରାଜା ବୋଇଲେ ଶୁଣ ପାଟରାଣୀ
ତେଜବନ୍ତ ଆଦିତ୍ୟ କୁମର ଶନିପୁଣି ।
ତାହାଙ୍କୁ ଘେନି ଦଇବ ସଞ୍ଜିବନୀ ଗଲା
ଜନ୍ତୁପତି ଶାଢୀ ଦେଇ ମନାଇଁ କହିଲା ।
ଏମନ୍ତେ କଜ୍ଜ ଋଷି କଜ୍ଜେ ପର୍ଯ୍ୟନ୍ତ ବଞ୍ଜି
ଅଯୋଧ୍ୟା ରାଜକୁଳ ନିର୍ମଳ ଅଟେ ଅତି ।
ଶୁଣିଣ ପାଟରାଣୀ ଗଡ଼ଘାଇ ଶୋଇ
ବେଗେ ଦୁହିତାକୁ ବିଭାକର ପ୍ରାଣସାଇଁ ।
ଶୁଣିଣ ରାଜନ ରାଣୀକି କହେ ବାଣୀ
ନିକଟରେ ବିବାହ ଦେବା ଯେ ଦୁଲଣୀ ।
ଏତେବୋଲି ରାଣୀକି ପ୍ରବୋଧ କରି ରାଏ
ବାହାର ଜଗତିରେ କଲେକ ବିଜୟେ ।
ପ୍ରତିହାରୀ କି ଡକାଇ କହନ୍ତି ରାଜନ
ପାତ୍ର ମନ୍ତ୍ରୀ ସାମନ୍ତଙ୍କୁ ଡକାଅ ବହନ ।
ଶୁଣିଲା ପ୍ରତିହାରୀ ବେଗେ ଚଳିଗଲା
ପାତ୍ର ମନ୍ତ୍ରୀ ସାମନ୍ତଙ୍କୁ ଘେନିଣ ମିଳିଲା ।
ରାଜାଙ୍କୁ ଦେଖିଣ ସମସ୍ତେ ମାନ୍ୟକଲେ
କରପତ୍ର ଯୋଡ଼ିଣ ଆଗରେ ଉଭାହେଲେ ।
ରାଜନ ବୋଇଲେ ଶୁଣ ହେ ମନ୍ତ୍ରୀବର
ପାତ୍ର ସାମନ୍ତୁ ଘେନି ଯାଅ ଅଯୋଧ୍ୟାର ।
ରଘୁବଂଶେ ଜାତ ଆଜ ଯେ ନୃପତି
ସ୍ୱର୍ଗରେ ଇନ୍ଦ୍ର ହେଲେ ଦେବତାଙ୍କୁ ଜିତି ।
ସେ ରାଜା କୁଳ ନିର୍ମଳ ସବୁଦିନେ ଜାଣ
ଦଶରଥ ନାମରେ ତାଙ୍କର ନନ୍ଦନ ।
ସେହି କୁମରକୁ ବରି ଆଣ ହେ ସତ୍ୱର
ସୁମିତ୍ରା ଦୁହିତାକୁ ସେହି ଅଟେ ବର ।
ରତ୍ନମାଳା ଗୋଟିଏ ଘେନିଣ ବେଗେ ଚଳ
ସୁବର୍ଣ୍ଣର ରଥନିଅ ତୁମ୍ଭ ସଙ୍ଗତର ।
ପିତାଙ୍କୁ ନ କହିଣ ପୁତ୍ରଙ୍କୁ ବେଗେବର
ରତ୍ନମାଳା ଦେବ ନେଇ ତାହାର ଗଳାର ।
ବରଣ କରି ସାରିଲେ ରାଜାଙ୍କୁ କହିବ
ପୁତ୍ରକୁ ବିଭା କରିବାକୁ ଆସ ତୁମ୍ଭେ ଯିବ ।
ଶୁଣିଣ ପାତ୍ର ମନ୍ତ୍ରୀ ସାମନ୍ତ ବୋଲେ ହେଉ
ବରମାଳା ଆମ୍ଭଙ୍କୁ ଦିଅ ମହାବାହୁ ।

ଶୁଣିଣ ରାଜନ ବେଗେ ଚଳିଗଲେ
ଭଣ୍ଡାରୁ ରତ୍ନମାଳା ଗୋଟିଏ ଅଣାଇଲେ ।
ଦୁହିତା ହସ୍ତରେ ଦେଲେ ନେଇପୁଣ
ବୋଇଲେ ତୋର ନିମନ୍ତେବର କରିବା ବରଣ ।
ଶୁଣିଣ ପାଟରାଣୀ ଆସିଣ ତହିଁ ମିଳି
ଦୁହିତାକୁ ବୋଇଲେ ଦିଅଗୋ କରତୋଳି ।
ଶୁଣିଣକୁମାରୀ ସନ୍ତୋଷ ମନ ହେଲା
ବରିଲି ମୁହିଁ ବର ପିତାଙ୍କୁ କହିଲା ।
ରଘୁବଂଶେ ଜାତ ଅଟନ୍ତି ଦଶରଥ
ତାଙ୍କ ବିନୁ ମୋର ନଇଲେ ଆନେ ଚିତ୍ତ ।
ସେ ରାଜାଙ୍କୁ ବରିଲି ମୁଁ ନିଶ୍ଚେ ହେବି ବିଭା
ଅନ୍ୟ ବର ଆଣିଲେ ଜୀବନ ମୋର ତେଜ୍ୟା ।
ସୁମିତ୍ରା ବୋଇଲେ ପିତା ଶୁଣ ମୋ ବଚନ
ଦୁର୍ବାସା ଋଷି ଆସିଥିଲେ ଯେଉଁଦିନ ।
ଚରଣର ଉଦକକୁ ପାଇଲା ବେଳରେ
ମୋତେ ଦେଖି ସେହି ଋଷି କହିଲେ ତୋଷରେ ।
ବୋଇଲେ ସୁକୁମାରୀ ତୋର କର୍ମଭଲ
ଅନନ୍ତ ଜାତ ହେବେ ଗର୍ଭରେ ତୋହର ।
ଡାହାଣବର୍ତ୍ତ ଶଙ୍ଖ ବାସୁଦେବର ଜାଣ
ତୋର ଗର୍ଭେ ଜାତ ହେବେ ଦୁଇଟି ନନ୍ଦନ
ମଝିଆଣୀ ସଉତୁଣୀ କଉଶଲ୍ୟା ଜାଣ
ତାରଗର୍ଭେ ଜାତ ହେବେ ସାକ୍ଷାତେ ନାରାୟଣ ।
ଜ୍ୟେଷ୍ଠ ସପତଣୀ କୈକେୟୀ ହୋଇଥିବ
ତାରଗର୍ଭେ, ଜାତ ହେବେ ସୁଦର୍ଶନଚକ୍ରଦେବ ।
ଏମନ୍ତ ଚତୁର୍ଦ୍ଧାରୂପ ଅବତାର ହେବେ
ଅସୁର ଦୁଷ୍ଟଜନ ନାଶ ସେ କରିବେ ।
ଅଯୋଧ୍ୟା ରାଜନ ଆଜ ଯେ ନୃପତି
ତାରକୋଳେ ଦଶରଥ କୁମର ଉତ୍ପତ୍ତି ।
ତାରକୋଳେ ଜାତ ହେବେ ଅନନ୍ତବାସୁଦେବ
ଦଶରଥଙ୍କୁ ବର କହିଲୁଁ ତୋର ଆଗ ।
ସେଦିନୁ ସେ କଥା ମୋର ମନେଅଛି ଜାଣ
ମାତା ପିତା ବୋଇଲେ ଶୁଣ ଆମ୍ଭ ପଣ ।
ଯେଉଁ ବର ତୋର ମନେ କରିଅଛୁ ଚିନ୍ତା
ସେହି ବର ବରିବାକୁ ଆମ୍ଭର ଅଟେ ଇଚ୍ଛା ।
ଶୁଣିଣ ସୁମିତ୍ରା ସନ୍ତୋଷ ମନ ହେଲା
ଋଷି କହିବାର କଥା ଘଟଣା ହେଇପରା ।

ଯେ ଯିବାରୁ ରାଜନ ଉସବ ଭିଆଇଲା
କଟକଯାକ ଚିତ୍ରପଟ କରାଇଲା ।
ସୁବର୍ଣ୍ଣ କଳଶ ଚିରାଳ ପନ୍ତି ପନ୍ତି
ନବରଯାକ ଛାମୁଣ୍ଡିଆ ପଟନୀ ଟାଣିଛନ୍ତି ।
ଦାଣ୍ଡ ପରିମଳ ଉଆସ ନବର ଘର
ନବର ଉଆସ କଲେକ ଅପାର ।
ନଟକାରୀ ଅପସରୀ ବେଶକାରୀ ତ୍ୱରା
ହାଟବାଟ ଦାଣ୍ଡ ଯେ ଗହଳ ହେଲା ପରା ।
ଚତୁରଙ୍ଗବଳ ଡକାଇ ନରପତି
ବାଦ୍ୟ ନିଶାଣରେ ମେରୁଗିରି କମ୍ପି ।
ପାଞ୍ଚସହସ୍ର ରାଜା ଅଟନ୍ତି ବନ୍ଧୁ ତାର
ସେ ରାଜାମାନଙ୍କୁ ଅଣାଏଁ ନୃପବର ।
ବେନିକୋଟି ଋଷି ଅଣାଏଁ ରାଜନ
ଚତୁରଙ୍ଗବଳ ଗହଳ ହେଲେ ପୁଣ ।
ସକଳ ସମ୍ଭର୍ବ ତିଆରି ରାଜନ
ରତ୍ନବେଦୀ ଅନ୍ତଃପୁରେ ସଜାଡି ବହନ ।
ନଗ୍ରରେ ଘୋଷଣା ଦିଆଇଲା ପୁଣ
ଏଥୁ ଅନନ୍ତରେ ଭଗବତୀ ଶୁଣ ।
ପାତ୍ର, ମନ୍ତ୍ରୀ, ସାମନ୍ତମାନେ ଗଲେ ଚଳି
ଦଶଦିନେ ଅଯୋଧ୍ୟା ନଗରରେ ମିଳି ।
ଦେଖିଲେ ସୁବର୍ଣ୍ଣମୟ ଅଯୋଧ୍ୟା ନଗର
ରତ୍ନରେ ନିବାଡ଼ ହୋଇଅଛି ପୁର ।
ଦେଖିଣ ପାତ୍ରମନ୍ତ୍ରୀ ପ୍ରଶଂସା ଯେ କଲେ
ଦୁଇଘଡ଼ି ବେଳ ଅଛି ନଗ୍ରରେ ପଶିଲେ ।
ସେ ନଗ୍ରର ବଡ଼ଦାଣ୍ଡ ମୁଣ୍ଡରେ ଜାତଘର
ପାତ୍ର, ମନ୍ତ୍ରୀ, ସାମନ୍ତ ରହିଲ ସେଠାର ।
ଚଳନ୍ତି ଲୋକମାନେ କହିଲେ ତାଙ୍କ ଆଗେ
ବୋଇଲେ ଆଡିହୋଇ ରହ ତୁମ୍ଭେ ବେଗେ ।
ବାଟରେ ଗହଳ ହୋଇବ ଏହିକ୍ଷଣି
ମୃଗୟାବିନୋଦେ ପୁତ୍ର ଯାଇଛନ୍ତି ପୁଣି ।
ଶୁଣିଣ ପାତ୍ରମନ୍ତ୍ରୀ ଆନନ୍ଦ ହୋଇଲେ
ଆମ୍ଭର ଶୁଭଯୋଗ ବିଚାର ସେ କଲେ ।
ସୁବର୍ଣ୍ଣଥାଳିରେ ଫୁଲମାଳ ଥୋଇ
ଆପଣାର ଉଦବେଗେ ରହିଲେ ସଜହୋଇ ।
ଏମନ୍ତ ସମୟରେ ନୃପତି କୁମର
ମୃଗବେଶ ସାଜିକରି ଅଇଲେ ନବର ।

ବାଦ୍ୟ ନିଶାଣରେ ପୂରଇ ଜଗତ
ମୃଗ ଶମ୍ବର ଆଣିଛନ୍ତି ବହୁତ ।
ବୋଝଭାର କରିଣ ଆଣନ୍ତି ଲୋକେ ଜାଣ
ନବର ଭିତରେ ପଶିଲେ ହର୍ଷେଣ ।
ଅଶ୍ୱପରେ ସିପାହୀମାନେ ଯାନ୍ତି ଚଳି
ଫରିଖଣ୍ଡାଧରି ଚତୁରଙ୍ଗ ବଳ ମିଳି ।
ମଧ୍ୟରେ ବିଜୟେ ନୃପତି କୁମର
ଅତି ଆନନ୍ଦରେ ଆସନ୍ତି ଯେ ବୀର ।
ପାତ୍ର, ମନ୍ତ୍ରୀ, ସାମନ୍ତ ଦେଖିଲେ ତାଙ୍କୁ ପୁଣ
ଚାରି ଧନୁ ଧରିଛନ୍ତି ସେ କରେଣ ।
ସୌନ୍ଦର୍ଯ୍ୟ ମନରେ ଜଗତଜନ ମୋହି
ଅଷ୍ଟମ ବାହୁ ଯେ ବୃକ୍ଷାଳ ବିରାଜଇ ।
ହୟ ଉପରେ ଚଢ଼ି ଆସନ୍ତି କୁମର
ବୀରବର ବେଶହୋଇ ବଳୀୟାର ।
ଦେଖିଣ ପାତ୍ର ମନ୍ତ୍ରୀ ଓଗାଳିଲେ ଆଗେ
ସୈନ୍ୟବଳ ସ୍ଥକିତ ହୋଇ ରହି ବେଗେ ।
ସାମନ୍ତ କପୋଳରେ ଚନ୍ଦନ ଯେ ଦେଲା
ପାତ୍ର ଶିରପରେ ପୁଷ୍ପମାଳାକୁ ଖଞ୍ଜିଲା ।
ମନ୍ତ୍ରୀ ଚନ୍ଦ୍ରହାର ଗଳାରେ ନେଇ
ଅଶ୍ୱପରୁ ରାଜପୁତ୍ରଙ୍କୁ ଓହ୍ଲାଇ ।
ହସ୍ତଧରି ମନ୍ତ୍ରୀବେଗେ ଚଳିଗଲା
ସୁବର୍ଣ୍ଣ ରଥପରେ ନେଇଣ ବସାଇଲା ।
ସୁବାସ ଜଳରେ ଚରଣ ପଖାଳିଲା
ମୁଖଧୋଇ ରାଜପୁତ୍ର ନିଶ୍ଚିନ୍ତେ ବସିଲା ।
ଅମୃତ ଭୋଜନ ମନ୍ତ୍ରୀ ନେଇଥିଲା
ସେ ଦ୍ରବ୍ୟମାନ ସବୁ ଯୋଗାଡ଼ି ସେଥି କଲା
କର୍ପୂର ବିଡ଼ିଆ ଭୁଞ୍ଜିଲେ ରାଜପୁତ୍ର
ମନରେ ହରଷ ହୋଇଲେ ଦଶରଥ ।
ଏଥୁ ଅନନ୍ତରେ ଭଗବତୀ ଶୁଣ
ଚତୁରଙ୍ଗବଳ ସଙ୍ଗେ ରହିଲେକି ପୁଣ ।
କିଛିବଳ ତହୁଁ ସେଠାରୁଁ ଚଳିଗଲେ
ରାଜାଙ୍କ ଆଗରେ ସବୁ ଜଣାଇଲେ
ବୋଇଲେ କୁମର ପାରିଧିକି ଯାଇଥିଲେ
ବହୁତ ଜୀବଜନ୍ତୁ ମାରିଣ ଯଶ କଲେ ।
ଫେରି ଆସି ନବରେ ପଶିବାର ବେଳେ
କେଉଁରାଜାପାତ୍ର ମନ୍ତ୍ରୀ ଆସିତାଙ୍କୁ ବରଣ କଲେ ।

ଫୁଲ ଚନ୍ଦନ ଚନ୍ଦ୍ରହାର ନେଇଣ ତାଙ୍କୁ ଦେଲେ
ହୟବର ଉପରୁ ଓହ୍ଲାଇ ଘେନିଲେ ।
ସୁବର୍ଣ୍ଣ ରଥପରେ ବସାଇଲେ ନେଇ
ନିର୍ମଳ ଶଉଚ କରି ଭୋଜନ କରାଇ ।
ଶୁଣିଣ ରାଜନ ଚଞ୍ଚଳମନ କଲେ
ରଥର ଉପରେ ବିଜୟ କରିଣ ଗଲେ ।
ସେହିବଳ ଘେନିଣ ଚଳିଲେ ବଢ଼ଦାଣ୍ଡେ
କୁମରକୁ ଦେଖିଲେ ସମ୍ଭର୍ବ ହୋଇ ଚାଣ୍ଡେ ।
ଦେଖିଣ ପାତ୍ର ମନ୍ତ୍ରୀ ଓଳଗି ମେଲାଇଲେ
ରାଜାର ଚିଟାଉ ବଧାଇ ତାଙ୍କୁ ଦେଲେ
ପାଞ୍ଚ ସାତଦିନ ରହ ଯେ ବୋଇଲେ ।
ପାତ୍ର ମନ୍ତ୍ରୀ ବୋଇଲେ ନୁହଇ ଉଚିତ
ବରଣ କଲା ବର ଗୃହକୁ ନ ଯିବେତ ।
ଶୁଭ ଅନୁକୂଳ ଆଜଦିନ ଭଲ
ଏହିକ୍ଷଣି ଯିବୁଁ ଆମ୍ଭେ ଚନ୍ଦ୍ରକଳାପୁର ।
ବଶିଷ୍ଠ, କଶ୍ୟପ, ବାମଦେବ ପୁଣ
ତିନିଜଣଙ୍କୁ ତିନିରଥ ଦେଲେକ ରାଜନ ।
ରଥରେ ବସି ତୁମ୍ଭ ପୁତ୍ରର ସଙ୍ଗେ ଯାଅ
ପଛେ ଯାଉଅଛି ମୁଁ ବିଳମ୍ବ କରିଥାଅ ।
ଶୁଣିଣ ତିନିଋଷି ତିନିରଥ ଚଢ଼ି ।
କୁମର ସଙ୍ଗତରେ ଚଳିଲେ ଶୀଘ୍ରକରି ।
କଟକର ଭିତରେ ଚଳିଲେ ସେ ପୁଣ
ଚନ୍ଦ୍ରଦୀପ ଆଲୋକରେ ଦିଶେ ଭିନ୍ନ ଭିନ୍ନ ।
କଟକର ମଧରେ ପଡ଼ିଲା ହାଲ ହୋଳି
କନ୍ୟାଘର ଲୋକେ ବରକୁ ନେଉଛନ୍ତି ଧରି
ଏଥୁଅନନ୍ତରେ କଥା ଶୁଣ ଶାକମ୍ଭରୀ
ନବରୁ ବାହାରି ସରଯୁକୂଳେ ମିଳି ।
ସେହି ରଜନୀ ସେଠାରେ ରହିଲେ ସେ ପୁଣ
ଏଥୁ ଅନନ୍ତରେ କଥା ଭଗବତୀ ଶୁଣ ।
ଲେଉଟି ରାଜନ ମନ୍ତ୍ରୀଙ୍କି ଆଜ୍ଞାଦେଲେ ।
ଚତୁରଙ୍ଗ ଦଳ ସଜ କର ସେ ବୋଇଲେ ।
ଶୁଣିଣ ମନ୍ତ୍ରୀବର ସାଜିଲା ସୈନ୍ୟବଳ
ବାଦ୍ୟ ନିଶାଣରେ କମ୍ପିଲା ଗିରିମାଳ ।
ସୁମନ୍ତଙ୍କୁ ରାଜନ ଆଜ୍ଞାଦେଲେ ପୁଣି
ଚନ୍ଦ୍ର କଳାବତୀ ପୁରେ ଚଳହେ ବହନ ।

ଶୁଣିଣ ସକଳ ବଳ ଚଳନ୍ତି ହରଷରେ
ପ୍ରବେଶ ହୋଇଲେ ଯାଇ ସରଯୁ କୂଳରେ ।
ସମସ୍ତଙ୍କୁ ଚାଳି ଦେଇ ଅଜ ଯେ ରାଜନ
ଅନ୍ତଃପୁରେ ପ୍ରବେଶ ହେଲେ ଯେ ବହନ ।
ସକଳ ରାଣୀମାନେ ଦର୍ଶନ ଆସିକଲେ
କେଣେ ଗଲା ପୁତ୍ର କିଏ ନେଲା ପଚାରିଲେ ।
ରାଜନ ବୋଇଲେ ଶୁଣ ପାଟରାଣୀ
ଚନ୍ଦ୍ରକଳା ରାଜ୍ୟରେ ସୁମନ୍ତ ନୃପମଣି ।
ତାହାର ଦୁହିତା ଗୋଟିଏ ଅଛି ଜାଣ
ବାଟରୁ ବରଣ କଲା ମୋ ପୁତ୍ରକୁ ପୁଣ ।
ନବର ରାଜ୍ୟ ସମ୍ଭାଳି କିଛି ଦିନ ଥାଅ
ପୁତ୍ରବଧୂଙ୍କୁ ଘେନି ଆସଇ ମୁଁ ସ୍ନେହ ।
ଏତେକହି ରାଜନ ଅନୁକୂଳ କଲା
ରଥପରେ ଚଢ଼ିଣ ବେଗେ ଚଳିଗଲା
ସରଯୁ ନଦୀ ତୀରରେ ପୁତ୍ରକୁ ଭେଟ ପାଇ
ସୈନ୍ୟବଳ ଘେନି ରାଜା ଆନନ୍ଦମନ ହୋଇ
ଗହଳରେ ସମସ୍ତ ଚଳିଗଲେ ପୁଣ
ପାର୍ବତୀ ପଚାରିଲେ କହ ପଞ୍ଚାନନ ।
ଈଶ୍ୱର ବୋଇଲେ ଶୁଣ କିନା ତାହା
ଚିତ୍ରରେଖା ବୋଇଲେ ଶୁଣ ରାଜପ୍ରିୟା ।
ତୁମ୍ଭର ପ୍ରାଣନାଥ ମୃଗୟା ଯାଇଥିଲେ
ବାଟରୁ କେଉଁରାଜା ବରଣ କରିନେଲେ ।
କଉଶଲ୍ୟା ବୋଇଲେ ଶୁଣ ଚିତ୍ରରେଖା
ରାଜାଘରେ ସେ କଥା ନାହିଁକେବେ ଦେଖା ।
ଯାହାର ଯେତେକ ମନ ତେତେକ କରେରାଣି
ବରଣରେ ନ ଗଲେ ମାନ ହୁଏ ପୁଣି ।
ଶୁଣିଣ ଦାସୀଗଣ ହରଷମନ ହେଲେ
ମନ୍ଥୁଡ଼ା କୈକୟାର ଆଗରେ କହିଲେ ।
ବୋଇଲେ ତୋର ସ୍ୱାମୀ ପରିଧିକି ଗଲେ
ଲେଉଟି ଆସିବା ବେଳେ ରାଜା ବରଣ କଲେ ।
ଦୁହିତା ବିଭାଦେବେ ବୋଲିଣ ଘେନି ଯାଇ
ଶୁଣିଣ କୈକୟୀ ମନ୍ଥୁଡ଼ୀକି କହି ।
ବୋଇଲା ସଙ୍ଗାତୁଣୀ ଶୁଣ ମୋ ବଚନ
ସାତଶପଞ୍ଚାଶ ସପତଣୀ ଶୁଣ ମୋର ଜାଣ ।
ମନ୍ଥୁଡ଼ୀ ବୋଇଲା ତୋତେ କିରୂପେ ଜଣାଗଲା
କୈକୟୀ ବୋଇଲେ ମୋତେ ଋଷି କହିଲେ ପରା ।

ବାଳକାଳେ ପିତାଘରେ ଖେଳୁଥିଲି ମୁହିଁ
ଅଷ୍ଟବକ୍ର ଋଷି ମୋର ପିତା ଘରକୁ ଯାଇ ।
ମୋତେ ଦେଖି ଋଷିବର ହରଷ ହୋଇଲେ
ଦଶରଥ ପାଟରାଣୀ ହୋଇବୁ ବୋଇଲେ ।
ସାତଶ ପଞ୍ଚାଶ ସପତଣୀ ହେବେ ତୋର
ବଡ଼ପାଟ ହୋଇ ତୁ ହୋଇ ସାରୋଧାର ।
ଏତେ ରାଣୀ ତିନିରାଣୀ ହୋଇବ ତୁମ୍ଭେଭଲ
ତିନି ରାଣୀ ଗର୍ଭରୁ ଚାରି ପୁତ୍ର ଜନ୍ମସାର ।
ସେ କୁମରମାନେ ରାଜ୍ୟେ ହୋଇବେ ସାରୋଧାର
ନରବାନର ଦେବଙ୍କୁ କରିବେ ଉପକାର ।
ଦେତ୍ୟ ଦୁଷ୍ଟ ସଭିଙ୍କି କରିବେ ଯେ ନାଶ
ନିରୋଧ ନକରିବୁ ରାଜାଙ୍କୁ ରାଣୀ କରିବେ ବିଶେଷ ।
ସେ ଋଷି କହିଛନ୍ତି କଥା ମୋର ପୁଣ
ସେ କଥାମାନ ମୋ ଆଗେ ନକହ ଫୁଲାଇଣ ।
ଆଉବେଳେ କହିଲେ ତୋରଜୀବ ନେବିମୁହିଁ
ଏକ ଏକ ରାଜାର ତ ଲକ୍ଷେ ନାରୀ ହୋଇ ।
ମନ୍ଥୁଡ଼ୀ ବୋଇଲା ଯେବେ କଲୁ ମୋତେମନା
ତୋର ମୁଖ ଭାଗିଲା ମୋର ନୋହିଲା ଫୁଲଣା ।
ପ୍ରତିଦିନ ସ୍ୱାମୀ ସଙ୍ଗେ କରିବୁ ତୁ ଲୀଳା ।
ସେଥିର ସକାଶେ ମୋର ଆଗୋଳ ଦେବାପରା
କୈକୟୀ ବୋଇଲେ ମୋତେ ଋଷି ଛନ୍ତିକହି
ମାଷକେ ଦୁଇଦିନ ତୋରପୁରେ ସ୍ୱାମୀରହି ।
ତୋରସଙ୍ଗେ ହରଷରେ କରିବେ ରତିରଣ
ଦୁଇ ଦିନେ ମାସକେ ଶରଧା ଭାଙ୍ଗେ ପୁଣ ।
ଶୁଣିଣ ମନ୍ଥୁଡ଼ୀ ନିବର୍ତ୍ତ ହୋଇ ରହି
ଏଥୁ ଅନନ୍ତରେ ଶୁଣ ତୋଷ ହୋଇ ।
ସାମନ୍ତ ପାତ୍ର ମନ୍ତ୍ରୀ ଅଯୋଧ୍ୟା ଆସିପୁଣ
ଅଜରାଜା କୁମରଙ୍କୁ ବରିନେଲେ ପୁଣ ।
ସୈନ୍ୟବଳ ଘେନି ରାଜା ସଙ୍ଗ ହୋଇଗଲେ
ଚନ୍ଦ୍ରକଳା ରାଜ୍ୟରେ ପ୍ରବେଶ ହୋଇଲେ ।
ଆଗରେ ପାତ୍ର ମନ୍ତ୍ରୀ ପ୍ରବେଶ ହେଲେ ଯାଇ
ସୁମନ୍ତ ରାଜାଙ୍କୁ ବାରତା ଜଣାଇଁ ।
ବୋଇଲେ ଦଶରଥଙ୍କୁ ଆଣିଲୁଁ ଆମ୍ଭେବରି
ସୈନ୍ୟବଳ ଘେନିଣ ପିତା ଆସେ ତାରି ।
ଶୁଣିଣ ମହାରାଜା ଆନନ୍ଦ ହୋଇଲେ
ରଥପରେ ବସିରାଜା ବେଗେ ଚଳିଗଲେ ।

ପାଞ୍ଚସୁଣ ବାଟରୁ ବରଣ କରି ଆଣି
ଅଜ ନୃପବରଙ୍କୁ ବିନୟେ ରାଜାଭଣି ।
ଗଉରବ କରି ସଙ୍ଗରେ ରାଜା ଆଣି
ସମସ୍ତଙ୍କୁ ଚରଚାକରି କଟକେ ରଖେପୁଣି ।
ଦଶରଥଙ୍କୁ ଘେନିଣ ରାଜାଗଲେ ଚଳି
ଦେଖି ନଗ୍ରନରନାରୀ ଦେଲେ ହୁଳହୁଳି ।
ଜ୍ୱାଇଁଙ୍କି ଘେନିରାଜା ଅନ୍ତଃପୁରେ ଗଲେ
ଦେଖିଣ ରାଣୀ ହଂସେ ସନ୍ତୋଷ ହୋଇଲେ ।
ମଙ୍ଗଳବିଧି ସବୁ କଲେକ ରଜନୀରେ
ଗ୍ରାମଦେବତୀଙ୍କି ପାଣି ତୋଳି ଭଲେ ।
ଦାସୀମାନେ ଯାଇଣ ସୁମିତ୍ରାଙ୍କୁ କହି
ତୁମ୍ଭର ସ୍ୱାମୀ ଆମ୍ଭର ନବରେଛନ୍ତି ରହି ।
ଶୁଣିଣ ସୁମିତ୍ରା ମାତା ପାଶେ ଗଲେ
ଦେଖିଣ ଜନନୀ ହରଷମନ ହେଲେ ।
କୋଳରେ ବସାଇ କହେ ପାଟରାଣୀ
ଆଜିଠାରୁ ତେଜ୍ୟା କଲି ଗୋ ଦୁଲଣୀ ।
ଚିନ୍ତା ନକରିବୁ ହରଷମନେ ଥିବୁ
ସ୍ୱାମୀଠାରେ ଭକତି ଭାବ ରଖିଥିବୁ ।
ଏମନ୍ତେ ପ୍ରବୋଧି କହି ଦୁହିତାକୁ
ମଙ୍ଗଳକୃତ୍ୟ କଲେ ସଙ୍ଗତରେ ଘେନି ତାକୁ ।
ତୋଳାପାଣି ନବରୁ ତୋଳିଲେ ଦାସୀଗଣ
ଗ୍ରାମ ଦେବତୀଙ୍କି ଛ୍ୟାଇଁ ତତକ୍ଷଣ ।
ସେ ପାଣିରେ ଦୁହିତାଙ୍କୁ ସ୍ନାନ କରାଇଲେ
ଅପ୍ରତିଷ୍ଠା ଅଙ୍ଗତାଙ୍କ ପ୍ରତିଷ୍ଠା କରାଇଲେ ।
ଦେଖାଦେଇ ଅନ୍ତଃପୁର କୁମର ଚଳି ଆସି
ପିତାର ନବରେ ମନ୍ତ୍ରୀ ଛାଡ଼ିଲା ପ୍ରଶଂସି ।
ରଜନୀ ଶେଷ ହେଲା ଉଦୟ ହେଲା ଭାନୁ
ଜଉତିଷ ଦ୍ୱିଜବର ବସିଲେ ଆସି ଏଣୁ ।
ମଙ୍ଗଳ ସ୍ତିରୀମାନେ ପ୍ରବେଶ ଯାଇ ହେଲେ
ହୁଳହୁଳି ଶବଦରେ ପୁର କମ୍ପାଇଲେ ।
ବେଦିରେ ଅନୁକୂଳ କଲେ ସର୍ବେ ମିଳି
ଅଜ ନୃପତି ଆଗରେ କହିଲେ ମନ୍ତ୍ରୀ ଫେରି ।
ବୋଇଲେ ବେଦୀକି ଅନୁକୂଳ କର
କୁମରଙ୍କୁ ବେଶ କରନ୍ତୁ ବେଶକାର ।
ଶୁଣିଣ ରାଜନ ମନ୍ତ୍ରୀଙ୍କି ଆଜ୍ଞା ଦେଲେ
ପୁତ୍ରକୁ ବେଶ କରାଅ ବୋଲିଣ ବୋଇଲେ ।

ବଶିଷ୍ଠଙ୍କୁ ବୋଇଲେ ବହନ ତୁମ୍ଭେ ଚଳ
ବେଦୀପରେ ବସିଣ ବେଦାଧ୍ୟାନ କର ।
ଏତେ କହି ରାଜନ ବେଶ ଯେ ହୋଇଲେ
ରତ୍ନ ବେଦୀ ଉପରେ ହରଷେ ମିଳିଲେ ।
ଏଥୁ ଅନନ୍ତରେ ଶୁଣ ଶାକମ୍ବରୀ
ବରବେଶ ହୋଇଣ କୁମର ବାହାରି ।
ବାଟରୁ ବରଣକରି ନୃପତି ଘେନିଗଲେ
ରତ୍ନବେଦୀର ଉପରେ ଯତନେ ବସାଇଲେ ।
ବିପ୍ର ଋଷିମାନେ ବେଦାଧ୍ୟାନ କଲେ ପୁଣ
ବର ଶିରରେ ମୁକୁଟ ବାନ୍ଧିଲେ ଯତନ ।
ଲବଣ ଚଉଁରୀ ଯେ କନ୍ୟାକୁ କରାଇଲେ
ଘେନିଯାଇ କନ୍ୟାକୁ ଅନ୍ତଃପୁରେ ହେଲେ ।
କେଶ ସାମଳିଣ ବାନ୍ଧିଲେ ଯୁଡା ପୁଣ
ଚଉଁରୀ ଭଣ୍ଡି ଝରାକାଠି ଲଗାଇଲେ ଜାଣ ।
ଅଳକା ମଥାମଣି ଯତନେ ବାନ୍ଧିଲେ
ସିନ୍ଦୂର ପାଟି ଚନ୍ଦନ କପୋଳେ ରଞ୍ଜିଲେ ।
ପଞ୍ଚ ବର୍ଣ୍ଣରେ କୁସୁମ ମାଳମାନ ଦେଇ
ମସ୍ତକ ଗୋଟିକି ବେଶଦ୍ୱରା ସେ ଦିଶଇ ।
ନୟନରେ ଅଞ୍ଜନ ରଞ୍ଜିଲେ ଲାଞ୍ଜି ସରୁ
ନାସାରେ ରତ୍ନଗୁଣା ସିନ୍ଧୁ ଫଳ ଗୁରୁ ।
ଦାଣ୍ଡି, ନୋଥ ବିଚିତ୍ର ଚତ୍ନଦେଇ ରଞ୍ଜି
ଗଳାରେ ଚାପସରି ନାନାବର୍ଣ୍ଣେ ସଞ୍ଜି ।
ଅଷ୍ଟରତ୍ନେ ଜଡ଼ିତ ପଦକ ଚନ୍ଦ୍ରହରା
ମୁକୂତା କେରି କେରି ବକ୍ଷେ ସାଜେ ଦ୍ୱରା ।
କର୍ଣ୍ଣରେ ଫାସିଆ ଫିରିଫିରା ଝୁଲେ
କାପ ମଲ୍ଲକଢି କି ଖଞ୍ଜିଲେ କର୍ଣ୍ଣରେ ।
କର୍ଣ୍ଣଫୁଲ କାମଲତା ଝିଞ୍ଜିରିମାନ ଦେଲେ
ବିଦତାଡ଼ ବାହୁଟି ବାହାରେ ଖଞ୍ଜିଲେ ।
ହୀରା, ମାଣିକ୍ୟ, ଚୁଡି ଆଗରେ ରତ୍ନ ଖଡୁ
କତୁରି ଦାନ୍ତିଆ ଦ୍ୟନ୍ତେ ହସ୍ତକୁ ଲାଗେଗରୁ ।
ରତ୍ନ ମୁଦି ଦଶ ଆଙ୍ଗୁଳିରେ ଦେଲେ
ଚନ୍ଦନ ଅଗୁରୁ କର୍ପୁର ବୋଳିଲେ ।
ହେମମୟ କାଞ୍ଚୁଲା ଲଗାଇ ନେଇକରି
ନାନାବର୍ଣ୍ଣ ପୁଷ୍ପ ଯେ ଆଭରଣ କରି ।
ଅମଳାଣ ପତନୀ ବାଛି ପିନ୍ଧାଇଲେ
ଉପରେ କୁସୁମ ପହରଣ କଲେ ।

ଏମନ୍ତେ ବେଶକଲେ ନାରୀଗଣ ମିଳି
ତଣ୍ଡୁଳ ଆଞ୍ଜୁଳିଏ ହସ୍ତରେ ଦେଲେ ଭରି ।
ମୁଖବାସ ଗୁଆ ତଣ୍ଡୁଳପରେ ଦେଇ
ଧୀରକରି କନ୍ୟାକୁ ନେଲେକ ଚଳାଇ ।
ରତ୍ନବେଦୀ ଉପରେ ନେଇଣ ଉଭାକଲେ
ତଣ୍ଡୂଳ ଅଞ୍ଜଳି କନ୍ୟା ଥୋଇଣ ଭ୍ରମିଲେ
ରତ୍ନବେଦୀ ଉପରେ ବସିଲାକ ଯାଇ
ରତ୍ନ ମୁକୁଟ ଶିରରେ ବାନ୍ଧିଲେ ସେ ନେଇ ।
ବରୁଣ ପୂଜା ସାରି ଶିଳା ବରଣ କଲେ
କୁଶରେ ବରକନ୍ୟାଙ୍କ ହସ୍ତକୁ ବାନ୍ଧିଲେ ।
ନାନା ବର୍ଣ୍ଣେ ଯଉତୁକ ରାଜା ପୁଣି ଦେଲେ
ରତ୍ନ ଶଙ୍ଖ ଧରିଣ ପାଣି ନିଉଡ଼ିଲେ ।
ଲକ୍ଷେକ ଗୋଧନ ଲକ୍ଷେକ ମହିଷୀ ପୁଣ
ରଥ, ହାତୀ, ଅଶ୍ୱ, ସାରେଣୀ ଦେଲେ ଜାଣ ।
ଦଶ ସସ୍ର ଲେଖାଏଁ ଏଥରୁ ପୁଣ ଦେଲେ
ସହସ୍ରେକ ପାଣି ଦ୍ରବ୍ୟ ରଥ ସମର୍ପିଲେ ।
ସହସ୍ରେକ ଦାସୀ ପରିବାରୀ ପୁଣ
ଏତେଦ୍ରବ୍ୟ ଶଙ୍ଖେ ପାଣି ଦେଲେକ ରାଜନ ।।
ହସ୍ତଗ୍ରନ୍ଥି ଫେଇ ଦେଇ ବିବାଦୀ କୁମାରୀ
ରତ୍ନ ଆଞ୍ଜୋଳିଏ ଦେଇ ବେଗେ ଗଲାଚଳି ।
ହୋମଯଜ୍ଞ କରିଲେ ପଢ଼ି ଶାମବେଦ
ଶୀତଳ ଦ୍ରବ୍ୟ ନେଇ ନିବୃତ୍ତି କଲେ ବେଗ ।
କନ୍ୟାବର ଘେନିଣ ଭିତର ପୁରେଗଲେ
ବରକନ୍ୟାଙ୍କୁ ବସାଇ ଜୁଆଖେଳାଇଲେ ।
ଏକଠାବେ ବସାଇ ଭୋଜନ କରାଇଲେ
ରାଣୀମାନେ ଆସିଣ ପ୍ରବୋଧି କହିଲେ
ଦୁହିତାର କରଧରି ସମର୍ପିଲେ ଜାଣ
ବୋଇଲେ କୁମାରୀ ଦୋଷ କ୍ଷମାକର ପୁଣ ।
ଏତେ ବୋଲି ଦୁଇଲକ୍ଷ ରତ୍ନଦାନ ଦେଲେ
ପ୍ରବୋଧ କରାଇଣ ଭିତରେ ଚଳିଗଲେ ।
ଚତୁରଙ୍ଗ ବଳ ଯେ ପାତ୍ର ମନ୍ତ୍ରୀ ପୁଣ
ରଥୀପଦାତି, ହସ୍ତୀ, ଅଶ୍ୱସାରେଣୀମାନେ ଜାଣ ।
ଋଷି ବିପ୍ର ରାଜା ଯେ ସକଳ ସୈନ୍ୟବଳ
ସମସ୍ତଙ୍କୁ ଚରଚା କଲେ ମହୀପାଳ ।
ଅମୃତ ଭୋଜନ ଷଡ଼ ରସରେ ଦେଲେ
ସମସ୍ତଙ୍କ ମନ ସନ୍ତୋଷ କରାଇଲେ ।

ଆରଦିନ ନବର ଫେରିଣ ସର୍ବେ ଦେଖି
ସ୍ନାହାନ ଭୋଜନ କରି ହେଲେ ସୁଖୀ ।
ଆରଦିନ ମେଲାଣି ସମସ୍ତଙ୍କୁ କଲେ
ଅନେକ ଧନ ରତ୍ନ ରାଜନ ବିଲୋହିଲେ ।
ଆରଦିନ ହରିଦ୍ରା ଯାତ୍ରା କଲେ ଜାଣ
ଚନ୍ଦନ କୁଙ୍କୁମ ହୋଇଲେ ଲେପନ ।
ରାତ୍ରରେ ଚତୁର୍ଥୀ କର୍ମ ରାଜା କରାଇଲେ
ଲାଜା ହୋମ କରାଇ ହରଷମନ ହେଲେ ।
ମଧୁଶଯ୍ୟା ଶୟନ ଦାସୀମାନେ କରି
ରତ୍ନ ପଲଙ୍କରେ ସୁପାତି ଶଯ୍ୟାପାରି ।
ଅଗୁର, ଚୁଆଚନ୍ଦନ, କର୍ପୂର ବିଞ୍ଚିଣ
ନାନାବର୍ଣ୍ଣେ ପୁଷ୍ପ ଶଯ୍ୟାରେ ମଣ୍ଡିଣ ।
ଶଯ୍ୟାପରେ ବିଜୟ କଲେ ଦଶରଥ
ଚଉପାଶେ ମାଣିକ୍ୟ ଦୀପ ଜଳେ ସେତ ।
ବିଡ଼ିଆ ଭୁଞ୍ଜି କୁମର ଆଉଜିଣ ବସି
ଦାସୀ ପରିବାରୀମାନେ ଛାମୁରେ ମିଳେଆସି ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ସୁମିତ୍ରାଙ୍କୁ ବେଶକରି ଆଣିଲେ ଯୁବତୀ ।
ଶ୍ୱେତଚାମର ଧରି ଆସିଲେ ରାଜହଂସୀ
ତଳକୁମଥା କରି ନ୍ୱାଇଁ ମୁଖଶଶି ।
ମଧୁଶଯ୍ୟା ମନ୍ଦିରେ ହୋଇଲେ ପ୍ରବେଶ
ପହଣ୍ଡ ମଣାଇଁ ଦାସୀ ଆଣିଲେ ହରଷ ।
ସ୍ୱାମୀଙ୍କି ଦେଖି ଦେବୀ ଶ୍ୱେତ ଚାମର ଢ଼ାଳି
ଦେଖିଣ ଦଶରଥ ମନରେ ବିଚାରି ।
ବୋଇଲେ ଏ ନାରୀ ଲକ୍ଷଣବନ୍ତୀ ଜାଣ
ସୁକୁମାରୀ ସୁନ୍ଦରୀ ଅଟଇ ସୁଜାଣ ।
ଏମନ୍ତ ଭାବିଣ ରାଜକୁମର ଉଠିଲେ
ସ୍ୱତୀଙ୍କି କୋଳ କରିଣ ଭିତରକୁ ନେଲେ ।
ପଲଙ୍କ ଉପରେ କୋଳରେ ଘେନି ବସି
ମୁଖରେ ଚୁମ୍ବନ ଦେଇ ହେଲେ ଅତି ଖୁସି ।
କୁଚମର୍ଦ୍ଦନକଲେ କୋଳକୁ ଆଉଜାଇ
ଦେଖିଣ ଦାସୀମାନେ ଗଲେ ଅନ୍ତର ହୋଇ
ଝିଲିମିଲି କବାଟ ଆଉଜାଇ ପୁଣ
ବାହାର ପ୍ରାଙ୍ଗଣରେ ବସିଲେ ଦାସୀଗଣ ।
ସମସ୍ତେ ଯିବା ଦେଖି ଯେ ରାଜା କୁମର
ପଲ୍ୟଙ୍କରେ ବାଳାକୁ ଶୁଆଇଲେ ଧୀର ।
ନାନାପରିରମ୍ଭରେ କଲେ ରଚି ଲୀଳା
ରତିରଙ୍ଗ ସଂଗ୍ରାମରେ ଲାଗିଲେ ରାଜବଳା ।
କ୍ରୀଡ଼ା କୌତୁକ ସାରି ବସିଲେ ବେନିଜନ
ପଲଙ୍କ ଉପରେ ହାସ୍ୟରସ କଲେ ପୁଣ ।
ହାସରସ ସାରିଣ ପହୁଡ଼ି ବେନିଜନ
ରଜନୀ ଶେଷହେଲା ରାବିଲେ କାକ ପୁଣ
ଦାସୀମାନେ ଆସିଣ କବାଟ ଫେଡ଼ିଦେଲେ
ସୁମିତ୍ରାଙ୍କ କରଧରି ମଣାଇଁ ଘେନିଗଲେ ।
ଅନ୍ତଃପୁରେ ନେଇଣ ତାହାଙ୍କୁ ବସାଇଲେ
ମର୍ଦ୍ଦନ ମାଜଣା ସାରି ଆଳସ୍ୟ ଛଡାଇଲେ ।
ସୁବାସ ଜଳରେ ସ୍ନାହାନ କରାଇଲେ
ପୂର୍ବରେ ବେଶ ପରାଏ ଅଳଙ୍କାର ଦେଲେ ।
କୁସୁମଲାଗି କରାନ୍ତେ ଦିଶିଲେ ବଢ଼ଚ୍ଛରୀ
ଚନ୍ଦ୍ରାରୋହିଣୀ ପରାଏ ବିଳସେ ମୁଖପରା ।
ବେଶ ସରିବାରୁ ଉଠିଣ ବେଗେ ଗଲେ
ମାତାମାନଙ୍କ ଚରଣେ ଓଳଗି ହୋଇଲେ ।
ମାତାମାନେ ବୋଇଲେ ଶୁଣ ସୁଲକ୍ଷଣି
ଚନ୍ଦ୍ରମା ବଦନ ଗୋଟି ଲୁଚିଯିବ ପୁଣି ।
ସ୍ୱାମୀଙ୍କ ଚଉଣେ କରିବୁ ଭକତି
ଶାଶୁମାନଙ୍କୁ ସେବା କରୁଥିବୁ ନିତି ।
ଏତେ କହି ଦୁହିତାକୁ ପ୍ରବୋଧ କରାଇଲେ
ଅହ୍ୟ ସୁଲକ୍ଷଣୀ ପୁତ୍ରବତୀ ହୁଅ ଭଲେ ।
ଏଥୁ ଅନନ୍ତରେ ଶୁଣ ଶାକମ୍ବରୀ
ଅଜରାଜା କୁମର ପଲଙ୍କେ ପହୁଡ଼ି ।
ଯାମିନୀ ଶେଷ ହୁଅନ୍ତେ ଉଦୟ ଦିନମଣି
ଦାସୀମାନେ ଶଯ୍ୟାରୁ ଟୋଳିଲେ ଜାଣ ପୁଣି ।
ସୁବାସିତ ଜଳରେ ମୁଖ ପଖାଳିଲେ
ଚରଣ ଧୋଇଦେଇ ମଣାଇଁ ଘେନିଗଲେ ।
ବାହାର ଅନ୍ତଃପୁର ଜଗତି ପରେ ନେଇ
ମର୍ଦ୍ଦନ ମାଜଣା କଲେ ଦାସୀ ଚହିଁ ।
ସୁବାସ ଜଳରେ ସ୍ନାନ କରାଇଲେ
ନୂତନ ଅମଳାଣ ନେଇଣ ପିନ୍ଧାଇଲେ ।
ଷଡରସେ ଭୋଜନ କରାଇଲେ ପୁଣ
ଅପୂର୍ବ ବେଶ ହେଲେ ରାଜାଙ୍କ ନନ୍ଦନ ।
ସହସ୍ରେକ ଦାସୀ ବେଶରେ ତୋର ହେଲେ
ଆଲଟ ଚାମର ଆୟୁଧ ଧରିଲେ ।

ଆଗରେ ରାଜା କୁମର ତହିଁ ପଛେ ଦାସୀ
ଦିବ୍ୟବେଶେ ବାହାରିଲେ ସୁମିତ୍ରା ଷୋଡଶୀ ।
ସିଂହଦ୍ୱାର ଉପରେ ଯାଇଣ ବିଜେକଲେ
ଦଶରଙ୍କ କୋଳରେ ସୁମିତ୍ରା ବସେ ଭଲେ ।
ଆଲଟ ଚାମର ଧୂପକାଠି ଧରି ଦାସୀ
ଯେ ଯାହାର ସେବାରେ ସମସ୍ତେ ଯାଇ ବସି
ଝଲମଲ ପଟ୍ଟନୀ ଆଗରେ ଉହାଡ
ଦେଖିଣ ନୃପତି ହୋଇଲେ ତୋଷ ବଡ଼ ।
ହାତୀ, ରଥ, ପଦାତି, ସେନାପତି, ପୟେକାର
ସଜହୋଇ ସମସ୍ତେ ହୋଇଲେ ବାହାର ।
ଆଗରେ ସୈନ୍ୟବଳ ମଧରେ ପୁତ୍ରବଧୂ
ପଛରେ ପାତ୍ର ମନ୍ତ୍ରୀ ସାମନ୍ତ ପ୍ରିୟବନ୍ଧୁ ।
ତହିଁ ପଛେ ବେନି ରାଜା କରନ୍ତି ଗମନ
ରାଜାଙ୍କ ସଙ୍ଗରେ ଋଷି ବିପ୍ର ଜନ ।
ପଛରେ ହଟାରି ବଜାରି ଚାଲିଲେ ।
ନଗ୍ର ନରନାରୀମାନେ ହୁଳହୁଳି ଦେଲେ ।
ସେ ଦିନ ଆସିଲେ ଅନେକ ପଥ ମାଡ଼ି
ରଜନୀରେ ରହିଲେ ସମୁଦ୍ରକୁଳ ମାଡ଼ି ।
ଯଉତୁକ ଦେବା ଦ୍ରବ୍ୟ ପଛରେ ଯେ ଆସି
ଏମନ୍ତେ ସେଠାବରେ ପୁହାଇଲେ ନିଶି ।
ସୁମନ୍ତ ରାଜା କହି ଫେରିଣ ଅଇଲେ
ଚନ୍ଦ୍ରକଳା ରାଜ୍ୟରେ ପ୍ରବେଶ ହୋଇଲେ ।
ରାଜା ବନ୍ଧୁଗଣଙ୍କୁ ମେଲାଣି ଦେଇଣ
ନିଶ୍ଚିନ୍ତ ହୋଇଣ ରାଜା ରହିଲେ ରାଜ୍ୟେଣ ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ଅଯୋଧ୍ୟା ପୁର ରାଜନ ଚଳିଲେ ଝଟତି ।
ସାତଦିନେ ଆପଣା ରାଜ୍ୟରେ ପରବେଶ
ଦେଖିଣ ନଗ୍ରଜନେ ହୋଇଲେ ହରଷ ।
ଦାସୀଏ ପୁତ୍ର ବନ୍ଧୁଙ୍କୁ ଅନ୍ତଃପୁରେ ନେଲେ
ଶାଶୁମାନଙ୍କୁ ବୋହୁ ଓଳଗି ହୋଇଲେ ।
ବଡ଼ ପାଟରାଣୀକି ଓଳଗି ମେଲାଣି
ନିର୍ମଳ ନବରରେ ରହିଲେ ସେ ପୁଣି ।
ଏମନ୍ତେ ତିନିରାଣୀ ଦଶରଥ ବିଭା
ରୋହିଣୀ ଅହଲ୍ୟା ଶଚି ପ୍ରାୟେ ତାଙ୍କ ଶୋଭା ।
ଏମନ୍ତେ ତିନିମାସ ତହିଁ ବହିଗଲା
ପୁତ୍ର ବଧୂ ଦେଖି ରାଜା ହରଷ ମନ ହେଲା ।

ଅଙ୍ଗ, ବଙ୍ଗ, କଳିଙ୍ଗ, ବୈଧୃତି ଅମଳାଣ
କାଶୀ, ଗୟା, ପ୍ରୟାଗ, ମଗଧ ନିବେଦନ ।
ଅରୁଣ ବରୁର କରିଣ ମଗଧ
ନୀଳ ଉତ୍ପଳ ବିରାଟ ସ୍ୱର ସେ ସମ୍ପଦ ।
ଏମନ୍ତେ ପାଞ୍ଚଶ ଘରର ଦୁହିତା
ଚାରିଶତ କନ୍ୟା ଅଟନ୍ତି ଜଗଜିତା ।
ସମସ୍ତେ ନବଯୁବା ବୟସେ ସମାନ
ନବ ବରଷଠାରୁ ଏଗାର ବର୍ଷ ଜାଣ ।
ସ୍ୱୟମ୍ବର ନିମନ୍ତେ ରାଜାମାନ ବରି
ଅଠର ମଉଡ଼ମଣି ସଙ୍ଗରେ ରାଜା ଚଳି ।
ଅଯୋଧ୍ୟାର ରାଜା ଯେ ମଉଡ଼ମଣି ପୁଣ
ନିମନ୍ତ୍ରଣ ଦେଲେ ତାଙ୍କୁ ରାଜାଗଣ ।
କେଉଁ ରାଜା ପୁତ୍ର କେଉଁ ରାଜା ନାତି
କେଉଁ ରାଜା ଗଲା ଆଗେ ହୋଇ ଶାନ୍ତି ।
ଅଜରାଜା କୁମର ଦଶରଥ ଜାଣ
ସନ୍ତୋଷରେ ରାଜାଙ୍କୁ ଦେଲେକ ଭେଦିଣ ।
ହରଷରେ ଦଶରଥ ସୈନ୍ୟ ଘେନି ଚଳି
ପାତ୍ର, ମନ୍ତ୍ରୀ ସାମନ୍ତ ବଶିଷ୍ଠ ଜାବାଳି ।
ବଙ୍ଗଦେଶେ ଯାଇଣ ପ୍ରବେଶ ହୋଇଲେ
ସକଳ ରାଜା ଚଉଦ ଭାଇ ଅଟନ୍ତି ସେ ପୁଣ
ଅଠାଅଶି ଦୁହିତା ଅଟନ୍ତି ଯୁବା ଜାଣ ।
ସଭାରେ କନ୍ୟାମାନେ ମାଳା ଘେନି ଉଠି
ଦଶରଥଙ୍କ ଗଳାରେ ସମସ୍ତେ ଲମ୍ବାନ୍ତି ।
ଦେଖିଣ ରାଜାମାନେ ସମସ୍ତେ ଉଠିଗଲେ
ଅଠାଅଶି କନ୍ୟା ଦଶରଥ ବିଭା ହେଲେ ।
ସେଠାରେ ସମସ୍ତ ରଜାଙ୍କୁ ବରିଣ
ଅଙ୍ଗଦେଶ ରାଜା ଯେ ନେଲାକ ସଙ୍ଗେଣ ।
ନିଜରାଜ୍ୟେ ଯାଇ ହେଲେ ପରବେଶ
ସଭା ମଣ୍ଡାଇଲା ନୃପତି ବିଶେଷ ।
ପାଞ୍ଚଗୋଟି ଭାଇ ପୁଣ ରାଜାର ଅଟେ ଜାଣ
ପନ୍ଦର ଦୁହିତା ଅଟଇ ଯେ ପୁଣ ।
ସେ ଦୁହିତାଙ୍କ ହସ୍ତରେ ଫୁଲମାଳା
ଦେଇଣ ସଭାକୁ ପଠାଇଲେ ବାଳା ।
ସେ ଦୁହିତାମାନେ ଦଶରଥଙ୍କୁ ବରିଲେ
ରତ୍ନମାଳା ପୁଷ୍ପମାଳା ଗଳାରେ ନେଇଦେଲେ ।

ବରଣ କରିବାର ଉଠିଲେ ରାଜାଗଣ
ପନ୍ଦର କନ୍ୟାଙ୍କୁ ବିଭା ଦଶରଥ ପୁଣ ।
ସମସ୍ତ ରାଜାଙ୍କୁ କଳିଙ୍ଗ ଦେଶ ରାଜା
ବରଣ କରି ସେଠାରୁ ନେଲା ସର୍ବ ରାଜା ।
ଆପଣା ରାଜ୍ୟରେ ହୋଇଲେ ପ୍ରବେଶ
ରାଜାମାନଙ୍କୁ ଚରଚା କଲେ ସେ ବିଶେଷ ।
ସଭା ମଣ୍ଡପରେ ବସାଇ ରାଜା ଗଣ
ସେ ରାଜାର ଅଟନ୍ତି ସତର ଭାଇ ଜାଣ ।
ସତର ଭାଇଙ୍କର ସତୁରୀ ଦୁହିତା
ବରଣମାଳା ଘେନିଣ ପ୍ରବେଶ ହେ ଜିତା ।
ଦଶରଥଙ୍କ ଗଳାରେ ସମସ୍ତେ ମାଳା ଦେଲେ
ଦେଖିଣ ସକଳ ରାଜା ଉଠିଣ ତହୁଁ ଗଲେ ।
ଦଶରଥ ବିଭାହେଲେ ସତୁରି କନ୍ୟା ପୁଣ
ସେଠାରୁ ଉତ୍କଳ ରାଜା କଲେକ ବରଣ ।
ସକଳ ରାଜା ମେଳ ହୋଇଣ ଚଳିଗଲେ
ଉତ୍କଳଦେଶେ ଯାଇ ପ୍ରବେଶ ହୋଇଲେ ।
ରାଜାମାନଙ୍କୁ ଚରଚା କଲା ମହୀପାଳ
ସଭାକରି ବସିଲେ ସକଳ ଭୂପାଳ ।
ସେ ରାଜାର ବାରଭାଇ ଅଟନ୍ତି ପ୍ରମାଣ
ଷାଠିଏ ଦୁହିତା ତାଙ୍କର ଅଟନ୍ତି ଜାଣ ।
ଷାଠିଏ ଦୁହିତା ସଭାକୁ ଆସିଲେ
ଦଶରଥଙ୍କୁ ଦେଖିଣ ବରମାଳା ଦେଲେ ।
ଦେଖିଣ ସକଳ ରାଜା ଉଠିଲେ ସଭାରୁ
ଦଶରଥ ବେଦୀପରେ ବସିଲେ ସେଠାରୁ ।
ଷାଠିଏ ଦୁହିତାଙ୍କୁ ବିଭା ଦଶରଥ
ଦେଖିଣ ରାଜାମାନେ ହୋଇଲେ ଆଶ୍ଚର୍ଯ୍ୟିତ ।
ଏମନ୍ତେ ପଞ୍ଚାଶ ରାଜା ବରଣ କରିନେଲେ
ସମସ୍ତ ରାଜା ରୁଣ୍ଡ ହୋଇଣ ସଭାକଲେ ।
ସବୁ ରାଜଦୁହିତା ବରିଲେ ଦଶରଥ
ଚାରିଶତ କନ୍ୟା ବିଭାହେଲେ ଅଜସୁତ ।
ଭାଜିଲା ସ୍ୱୟମ୍ବର ରାଜାମାନେ ଗଲେ
ଯେ ଯାହାର ରାଜ୍ୟେ ପ୍ରବେଶ ହୋଇଲେ ।
ଏଥୁ ଅନନ୍ତରେ ଶୁଣ ଶାକମ୍ବରୀ
କନ୍ୟାଙ୍କୁ ସଙ୍ଗେ ଘେନି ଦଶରଥ ଆସେ ଫେରି ।
ଚାରିଶତ ଦାସୀ ଚାରିଶତ ରାଣୀ
ଚାରିସହସ୍ର ରଥରେ ବିଜେ କଲେ ପୁଣି ।

ଯଉତୁକ ଦ୍ରବ୍ୟ ଅବା କେତେକ କହିବ
ଲକ୍ଷେ ରଥ ଯଉତୁକ ଦେଲେ ପାଣି ଦ୍ରବ୍ୟ ।
ବାଆନେ ଲକ୍ଷ ଅଶ୍ୱ ସାରେଣୀ ଚାରିଲକ୍ଷ
ଗାଈ, ମହିଷୀ ଅଇଲେ ସଙ୍ଗରେ ଅସଂଖ୍ୟ ।
ସମୁଦ୍ର ଲହରୀ ପ୍ରାୟେ ଆସେ ସୈନ୍ୟବଳ
ଅଠର ଦିନେ ରାଜ୍ୟରେ ହେଲେ ଯାଇ ଠୁଳ
ଦେଖିଣ ରାଜ୍ୟଲୋକେ ରାଜ୍ୟରେ ଯାଇ କହି
ନୃପତି କୁମର ବଡ଼ ସମ୍ଭର୍ବେ ଆସଇ ।
ରାଜାଙ୍କର ଆଗେ ଚାର ବାରତା କହି
ସୈନ୍ୟବଳ ସଙ୍ଗେ ଘେନି କୁମର ଆସଇ ।
ଚାରିଶତ ବଧୂ ଚାରିଶତ ଦାସୀଗଣ
ଯଉତୁକ ଦ୍ରବ୍ୟମାନ କଳିନୁହେଁ ପୁଣ ।
ପ୍ରଳୟ ସିନ୍ଧୁ ପ୍ରାୟ ଆସନ୍ତି ସେ ମାଡ଼ି
ସମ୍ଭାଳକର ଦେବତା ତାହାଙ୍କୁ ଯାଇକରି ।
ଏକଥା ଶୁଣିଣ ବଳରାମ ଦାସ
ନୀଳଗିରି ଜଗନ୍ନାଥ ଚରଣେ ବିଶ୍ୱାସ ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ବଳରାମଙ୍କୁ ଶରଣ ରଖିଲେ ଦାଶରଥି ।
ଶୁଣି କରି ଅଯୋଧ୍ୟା ମହୀପାଳ ପୁଣ
ହରଷ ହୋଇ ରାଜା ବାହାର ତକ୍ଷଣ ।
ସରଜୁ ଗଙ୍ଗାକୂଳେ ପୁତ୍ରକୁ ଭେଟପାଇ
ଦେଖିଲେ ସାଗର ମାଡ଼ିଣ ଆସଇ ।
ବୋଇଲା ପୁତ୍ର ମଣି ଅଦୃଷ୍ଟ ତୋର ବଡ଼
ଅଠରି ମଉଡ ମଣରେ ତୁହ ହେଲୁ ସାର ।
ସୁଫଳରେ ଜନ୍ମ ହୋଇଣ ଅଛୁ ତୁହି
ତପନ କୁଳ ଉଜଳ ପ୍ରାୟେକ ଦିଶଇ ।
ଏମନ୍ତ କହିଣ ରାଜା ପୁତ୍ର ପାଶେ ଗଲା
ପିତାକୁ ଦେଖି ପୁତ୍ର ରଥରୁ ଓହ୍ଲାଇଲା ।
ପିତାଙ୍କୁ ଚରଣରେ କରି ନମସ୍କାର
କୁମରକୁ ରାଜା ନେଇ ବସାଏ କୋଳର ।
ସଧୀରେ ପିତା ପୁତ୍ର ଚଳି ଆସନ୍ତି ପୁଣ
ପ୍ରବେଶ ହୋଇଲେ ଅଯୋଧ୍ୟା ପୁରେଣ ।
ସିଂହଦ୍ୱାରେ ରଥରୁ ଓହ୍ଲାଇ ନୃପବର
ବିଜୟେ କଲେ ଯାଇ ଜଗତୀ ଉପର ।
ଏଥୁ ଅନନ୍ତରେ ଶୁଣ ଶାକମ୍ବରୀ
ଅନ୍ତଃପୁରେ ବାରତା ମିଳିଲା ଯାଇ କରି ।

ଦାସୀଏ ଆସ ପୁତ୍ରବଧୂଙ୍କୁ ଘେନିଗଲେ
ଶାଶୁଙ୍କୁ ବୋହୂମାନେ ଓଳଗି ହୋଇଲେ ।
ଚାରିଶ ବଧୂଙ୍କୁ ପଞ୍ଚଶ ଘରେ ରଖି
ପଞ୍ଚଶ ନବର ତହିଁରେ ଅଛି ରଚି ।
ଚାରିଶତ ରାଣୀ ଦିଶନ୍ତି ଭିନ୍ନ ଭିନ୍ନ
ଯେସନେ ଶୋଭାପାଏ ସ୍ୱର୍ଗରେ ତାରାମାନ ।
ଶାନ୍ତଶୀଳ ସମସ୍ତେ ନୁହନ୍ତି ଦୁଷ୍ଟ ମତି
ମାସକରେ ରାଣୀମାନେ ବଧୂଙ୍କୁ ଦେଖିଯାନ୍ତି ।
ବଧୂମାନଙ୍କୁ ଏକାପରାଏ ଦେଖନ୍ତି
ଦଶରଥ ସମସ୍ତଙ୍କୁ ସମାନ ପାଳନ୍ତି ।
ଏଥୁ ଅନନ୍ତରେ ଗଉରୀ ଦେବୀ ଶୁଣ
ଯୌତୁକ ଦ୍ରବ୍ୟ ରାଜା ଅଣାଇ ବାହନ ।
ସବୁ ବଧୂମାନଙ୍କୁ ବାଣ୍ଟ ଦେଲେ
ଉତ୍ତମ ନବରରେ ନେଇଣ ରଖାଇଲେ ।
ସୈନ୍ୟବଳ ହସ୍ତୀଘୋଡ଼ା ସାରେଣୀଗୋଧନ
ଏମାନଙ୍କୁ ସାଇତି ରଖିଲେ ରାଜନ ।
ରଥି, ସେନାପତି, ପଦାତି ବଳା ପୁଣ
ଉତ୍ସବ ନବର ପାଶେ ନବର କଲେ ପୁଣ ।
ନନ୍ଦିଗ୍ରାମ ବୋଲିତାହାର ନାମ ଦେଲେ ।
ବାରକୋଟି ଘର ବସ୍ତି ସେଠାରେ କରିଲେ
ସମସ୍ତଙ୍କୁ ରଖିଲେ ସେ କଟକରେ ନେଇ
ଅଜରାଜା ନନ୍ଦିଗ୍ରାମ କଟକ ଭିଆଇ ।
ଏମନ୍ତେ ବରଷେ ସେଥିରେ ବହିଗଲା
ବଧୂଙ୍କ କୁଶଳ ରାଜାରାଣୀଙ୍କି ପଚାରିଲା ।
ଶତେକ ରାଣୀ ଆସି ରାଜାଙ୍କ ଆଗେ କହି
ପୁତ୍ରବଧୂ ଆମ୍ଭ ନିଶ୍ଚିନ୍ତେଛନ୍ତି ରହି ।
ପୁତ୍ରର ସୁବୁଦ୍ଧିପଣ ବଧୂମାନେ ଧୀରା
ଶୁଣିଣ ରାଜନ ସନ୍ତୋଷ ହେଲେ ପରା ।
ଭାବପ୍ରୀତି ରାଣୀମାନଙ୍କ ସଙ୍ଗେ କରି
ଖେଳ ରସ କଉତୁକେ ସବୁରି ମନ ହରି ।
ଦିବସରେ ରାଜ୍ୟର ଭଲମନ୍ଦ ପୁଣ
ବୁଝିଣ ପରଜାଙ୍କୁ ସୁଖୀ କଲେ ଜାଣ ।
ଏମନ୍ତେ ବେନି ବରଷ କାଳ ବହିଗଲା
ପଶ୍ଚିମଦଗ ରାଜାଙ୍କର ସ୍ୱୟମ୍ବର ହେଲା ।
ପଶ୍ଚିମଦିଗ ରାଜା ହେଲେ ଏକମେଳ
ଉତ୍ତର ଦିଗ ରାଜାଙ୍କୁ ବରିଲେ ମହୀପାଳ ।

ଚାଳିଶିସସ୍ର ରାଜା ହୋଇଲେ ଯାଇ ଠୁଳ ।
ଅନାମିକା ଦେଶ ରାଜା ବରଣ କଲାମୂଳ ।
ସୁନାନୀଳ ଗଣ୍ଡକୀ ଭୈରବଦେଶ ରାଜା
ଚିତ୍ର ବିଚିତ୍ର ଗୁପତେ ରେଖାରେ ବିଡୋଜା ।
ଏମନ୍ତେ ବତିଶସସ୍ର ରାଜା ବରଣ କଲେ
ତିନିଶତ ପାଞ୍ଚ ଦୁହିତା ତାଙ୍କର ଭଲେ ।
ଏଥିରୁ ସାତଜଣା ଶୁଣ ଭଗବତୀ
ସେ ନୃପତି ସକଳ ରାଜାଙ୍କୁ ବରଣ କରନ୍ତି ।
ଅଯୋଧ୍ୟା ନଗ୍ରରେ ପ୍ରବେଶ ଆସି ପୁଣ
ଅଜ ନୃପତିଙ୍କି କଲେ ସେ ବରଣ ।
ଦଶରଥ କୁମର ଡାକି ମହୀପାଳ
ବୋଇଲେ ସ୍ୱୟମ୍ବରକୁ ବହନ ତୁ ଚଳ ।
ପିତାଙ୍କର ଆଜ୍ଞାରେ ଦଶରଥ ଚଳି
ବଶିଷ୍ଠ ବାମଦେବ ସୈନ୍ୟ ଘେନିକରି ।
ପ୍ରବେଶ ହୋଇଲେ ଯାଇ ରାଜାଙ୍କର ମେଳେ
ଭଇରବଦେଶ ରାଜା ସମସ୍ତେ ହେଲେ ଠୁଳେ ।
ସେ ରାଜା ଭୂରି ଭୋଜନ ଦେଇଣ ରଖାଇଲା
ଆରଦିନ ସଭା ମଣ୍ଡାଇଣ ବସାଇଲା ।
ସେ ରାଜାର ନବଗୋଟି ଅଟେ ସହୋଦର
ଛତିଶ କୁମାରୀ ଯେ ଅଛନ୍ତି ତାଙ୍କର ।
କୁମାରୀମାନଙ୍କୁ ବେଶ କରାଇ ନୃପତି
ରତ୍ନମାଳା ତାଙ୍କର ହସ୍ତରେ ଦିଅନ୍ତି ।
ମାଳାମାନ ଘେନିଣ କୁମାରୀମାନେ ଗଲେ
ଦଶରଥଙ୍କ ଗଳାରେ ନେଇ ଲମ୍ବାଇଲେ ।
ଦେଖିଣ ରାଜାମାନେ ସଭାରୁ ଉଠିଲେ
ଛତିଶ କନ୍ୟାଙ୍କୁ ଦଶରଥ ବିଭାହେଲେ ।
ଗଣ୍ଡକୀଦେଶ ରାଜା ବରଣ କରିନେଲା
ସକଳ ରାଜାଙ୍କୁ ସେ ଠୁଳ କରାଇଲା ।
ସଭାରେ ବସାଇଣ ମନରେ ରାଜା ଭାଳି
ଏକୋଇଶ ଭାଇ ଯେ ଅଟନ୍ତି ତାହାରି ।
ତେଷଠି କୁମାରୀ ତାଙ୍କର ଅଟେ ଜାଣ
ସେମାନଙ୍କୁ ବେଶ କରି ଅଣାଏଁ ରାଜନ ।
ସମସ୍ତଙ୍କ ହସ୍ତରେ କୁସୁମ ରତ୍ନମାଳା
ସଭାରେ ବିଜେ କଲେ ଦିଶନ୍ତି ଯେ ତ୍ୱରା ।
ଦଶରଥଙ୍କୁ ଦେଖିଣ ସମସ୍ତେ ବରିଲେ
ରତ୍ନ ପୁଷ୍ପମାଳା ଗଳାରେ ନେଇଦେଲେ ।

ଦେଖିଣ ରାଜାମାନେ ହୋଇଲେ ଆଚମ୍ଭିତ
ସଭାରୁ ଉଠିଣ ସର୍ବେ ଗଲେକ ତ୍ୱରିତ ।
ତେଷଠି କନ୍ୟାକୁ ଦଶରଥ ବିଭାହେଲେ
ଏମନ୍ତେ ତିରିଶି ରାଜା ବରଣ କଲେ ଭଲେ ।
ତିନିଶତ ଅଣଚାଳିଶି ତାଙ୍କର ଦୁହିତ
ସମସ୍ତେ ବରିଲେ ଅଜରାଜାଙ୍କର ସୁତ ।
ଏତେକ କନ୍ୟା ଦଶରଥଙ୍କୁ ବିଭାହେଲେ
ଦେଖିଣ ରାଜାମାନେ ମନରେ ଛଳ କଲେ ।
ବିଚିତ୍ରପୁର ରାଜା ପଛରେ ବରିଲା ।
ଚାରିଗୋଟି କୁମାରୀ ଅଟନ୍ତି ତାର ପରା ।
ନବଯୁବା ବୟସ ରୂପରେ ସୁନ୍ଦର
ସମସ୍ତ ରାଜାମାନେ ଆସି ହେଲେ ଜୁଳ ।
ଦେଖିଣ ନୃପତି ସଭା କରାଇଲା
ଖମ୍ଭେକ ସଭାତଳେ ପୋତିଣ ଅର୍ଗଳା ।
ସେଥିପରେ ମୁକୁତା ଝରିର ପିଞ୍ଜରା
ପିଞ୍ଜରା ଭିତରେ ରାଜା ସାରୀଏ ରଖିଲା ।
ଲାଖବିନ୍ଧା ଉପାୟ କରିଅଛି ତହିଁ
କୁରାଳ ଚକ୍ରପ୍ରାୟେ ପିଞ୍ଜରା ବୁଲାଇ ।
ତଳରେ ଖଲେଣା ଉପରେ କବାଟ
ଇନ୍ଦ୍ରର ଧନୁଗୋଟି ଡେରିଛି ମୁରାଟ ।
ରାଜାମାନଙ୍କୁ ବୋଇଲା ଶୁଣ ନୃପବର
ଚାରିଗୋଟି ଦୁହିତା ଅଟନ୍ତି ମୋହର ।
ପଦ୍ମ ପ୍ରାୟେ ଚାରିଗୋଟି ଅଟନ୍ତି ଶୋଭାବନ
ଏକାଦଶ ବରଷ କନ୍ୟାଙ୍କୁ ହେଲା ଜାଣ ।
ସେହୁ ଦୁହିତା ନିମନ୍ତେ ମୁଁ ଲାଖ ନିର୍ମା କଲି
ସପତ ବରଷରେ ଇନ୍ଦ୍ରଙ୍କୁ ମନାଇଲି ।
ସେ ସୁରରାଜା ମୋତେ ଧନୁଏକ ଦେଲା ।
ମୁଁ ବୋଇଲି ତୁମ୍ଭେ ବିଭାହୁଅ ଏବେ ଭଲା ।
ସେ ବୋଇଲେ ବିଷ୍ଣୁଙ୍କର ଚରଣେ ଭକତି
ନାରାୟଣ କଳାରେ ଜନ୍ମିଥିବ ପୃଥ୍ୱୀ ।
ସେ ଧନୁରେ ଗୁଣ ଦେଇ ଟଙ୍କାର କରିବ
ପଞ୍ଜରୀ ବିକ୍ରିକୁ ସେ ସମ୍ଭାଳି ରଖିବ ।
ପଞ୍ଜରୀ ଶାରୀକି ଯେହୁ ଶରରେ ମାରିପାରି
ତେବେ ସେ ଚାରିକନ୍ୟାଙ୍କୁ ବିଭା ହେବ ଫେରି ।
ଶୁଣିଣ ରାଜାମାନେ ଉଠିଲେ ଗଳଗାଜି
ଧନୁକୁ କେହି ଟୋଳି ନ ପାରିଲେ ଗର୍ଜି ।

କାହାର ଉପରେ ଧନୁ ମାଡ଼ିଣ ବସିଲା
କେହୁ ଧନୁ ଧରୁ ଧରୁ ଅଚେତେ ପଡ଼ିଲା ।
କେହୁ ଦେଖି ଡରିଲା ନଗଲା ହାଦେ ପୁଣ
ଚାଳିଶ ସହସ୍ର ରାଜାଧନୁ ଟୋଳି ନ ପାରିଲା ଜାଣ ।
କେ ଦେଖି ଫେରିଲା କେ ଧରିଲା ବଳକଛେ
ଗୁଣ ଦେଲେ ଅସମ୍ଭାଳେ ପଡ଼େ ଭୂମିଗତେ ।
ଏମନ୍ତେ ସମସ୍ତ ରାଜା ଭଜିଣ ରହିଲେ
ଆଉଥରେ ଡାକିଦେଲା ନୃପତି ଶିଖରେ ।
ଯେ ଧରିବ ଧନୁ ଯେ ପଞ୍ଜରୀ ଆଦିକରି
ମାରି ବାମ ଚରଣ ଆଣିବ ଓଟାରି ।
ତେବେ ତାକୁ ବିଭାଦେବି ମୋ ଚାରିକୁମାରୀ
ଏମନ୍ତ ବୋଲି ରାଜା ଉଚ୍ଚରେ ରାବକରି ।
ଶୁଣିକରି ରାଜାମାନେ ପୁଣିହିଁ ଉଠିଲେ
ଧନୁ ଟୋଳି ନପାରି ସମସ୍ତେ ଫାଟିଗଲେ ।
ଆଉଥରେ ମହୀପାଳ ଦିଅଇ ପୁଣ ଡାକ
ଧନୁ ଟୋଳି ଗୁଣଦେଇ ଯେ ରଖେ ପଞ୍ଜରୀତ ।
ସୁଚୀମୁନା ଦ୍ୱାରବାଟେ ଯେ ସାରିକି ଧରିବ
ବାମ ଚରଣ ଝିଙ୍କନ୍ତେ ସାରି ମୋହଯିବ ।
ଏମନ୍ତ ବଚନ ଶୁଣି ସର୍ବରାଜା ଗଲେ
କେ ଟୋଳି ଧଇଲା ଗୁଣ ଦେଇ ନପାରିଲେ ।
ଏମନ୍ତ ତିନିବେଳେ ରାଜା ଫେରିଲେ
ସେନାପତି ରଥୀମାନେ ଧନୁକୁ ଦେଖିଲେ ।
ସେହି ଡରି ପଳାଇଲେ ନପାରିଲେ ଟୋଳି
କୁରାଳ ଚକ୍ରପ୍ରାୟ ପିଞ୍ଜରୀ ବୁଲେ ଫେରି ।
ସମସ୍ତେ ଫେରିବା ଦେଖି ଉଠିଲେ ଦଶରଥ
ବୋଇଲେ ରାଜା ସତ୍ୟ ଅଟେ କି ନିୟତ
ନୃପତି ବୋଇଲେ ମୋର ତ୍ରିବାର ସତ୍ୟଜାଣ
ଯେ ବିନ୍ଧିପାରିବ ତାକୁ ଦେବି କନ୍ୟାଦାନ ।
ଶୁଣିଣ ଦଶରଥ ସଭାରୁ ଉଠିଗଲେ
ଲାଖର ପଟା ଉପରେ ବହନ ଚଢ଼ିଲେ ।
ଇନ୍ଦ୍ରଧନୁ ବାମକରେ ଧରି ଅଜ ସୁତ
ଗୁଣ ଚଢ଼ାଇବାକୁ ବିଚାର କଲେ ଚିତ୍ତ ।
ବାମ ଚରଣ ଅଙ୍ଗୁଷ୍ଠିରେ ଲଗାଏ ଧନୁହୁଳ
ଧନୁରେ ଗୁଣ ଦେଇଣ ଧଇଲେ ମହୀପାଳ ।
ଗୁଣ ଟଙ୍କାର କରି ଚାହିଁଲେ ସଭାକୁ
କାହାର ଶକ୍ତି ଅଛି ବିନ୍ଧ ଏ ଶରକୁ ।

ଶୁଣିଣ ନୃପତିମାନେ ମୁଖ ପୋତି ବସି
ଦଶରଥ ନୃପବର ଧନୁରେ ଶରଯୋଚି ।
ବଜ୍ରସୂଚୀ ଶରକୁ ସେଥିରେ ପୂରାଇଲେ
ଇନ୍ଦ୍ରଙ୍କୁ ସୁମରିଣ ଶରକୁ ବିନ୍ଧିଦେଲେ ।
ତକ୍ଷଣେ ଶର ଚଳିଗଲା ଅଦୃଶ୍ୟରେ
ପ୍ରବେଶ ହୋଇଲା ଯାଇ ପିଞ୍ଜରୀ ଭିତରେ ।
କୁରାଳ ଚକ୍ରକୁ ସେ ଧୀରେ ରଖାଇଲା
ଶାରୀର ବାମ ଗୋଡ଼କୁ ବାହାରେ ଆଣିଲା ।
ପିଠିରେ ବାଜି ଶର ହୃଦୟକୁ ଗଳିଗଲା
ଶାରୀର ଜୀବନ ପଞ୍ଜରୀରେ ହରାଇଲା ।
ଉପର ପୀଢ଼କୁ କାଟିଲା ଶର ଯାଇ
ଶୂନ୍ୟରୁ ପିଞ୍ଜରୀ ଭୂମିରେ ପଡ଼ିଲା ଯାଇ ।
ହାଟୁଆ ବାଟୁଆ ଦେଖଣାହାରୀମାନେ
ସମସ୍ତ ଦେଖିଲେ ଯାଇଣ ତତକ୍ଷଣେ ।
ପଦାନ୍ତି ରଥୀ ସାରଥି ସିପାହୀ ସରଦାର
ସେନାପତିମାନେ ଦେଖିଲେ ସତ୍ୱର ।
ରାଜାମାନେ ଉଠି ଯାଇ ଚଢ଼ିଲେ ପଟାରେ
ଦେଖିଲେ ଶାରୀ ମରିଛି ପିଞ୍ଜରା ଭିତରେ ।
ବାମଚରଣ ତାର ବାହାରେ ଅଛି ରହି
କୁରାଳ ପିଞ୍ଜରା ଭିତରେ ଅଛି ଶୋଇ ।
ଦେଖିଣ ରାଜାମାନେ ଫେରିଣ ଅଇଲେ
ସଭାରେ ବସିଣ ବିଚାରୁ ସର୍ବେକଲେ ।
ବୋଇଲେ ଆମ୍ଭେ ଏତେ ରାଜାଥାଇ ପୁଣ
ସବୁଠାରେ କନ୍ୟା ବରିଲେ ଯାଙ୍କୁ ଜାଣ ।
ଏହାଙ୍କୁ ମାରିଣ ଆମ୍ଭେ କନ୍ୟାଙ୍କୁ ଘେନିଯିବା
ତେବେ ଯେ ପୁରୁଷାର୍ଥ ପଣ ଅରଜିବା ।
ଏତେ ବୋଲି ସକଳ ରାଜା ଧନୁଧରି
ଆପଣାର ଯାନ ମାନ ବସିଲେ ଆବୋରି ।
ଦଶରଥ ଚାରିପାଖେ ଘେରିଲେ ପୁଣଯାଇ
ଧନୁମାନଙ୍କର ଗୁଣ ଝଙ୍କାର କଲେ ତହିଁ ।
ବଶିଷ୍ଠ ଯେ ସଭାର ଉପରେ ବସିଥିଲେ
କଳିର ଆଗମ ଦେଖି ମନ୍ତ୍ରୀକି ଡାକିଲେ ।
ବୋଇଲେ ରଥ ଘେନି ଯାଅ କୁମର ପାଶ
ରାଜାମାନେ କଳହ କରିବେ ବିଶେଷ ।
ଏହା ଶୁଣି ମନ୍ତ୍ରୀ ବେଗେ ରଥଘେନି ଚଳି
ଦଶରଥ ଆଗରେ ଯାଇଣ ବେଗେ ମିଳି ।

ଦେଖିଣ ଦଶରଥ ରଥରେ ବିଜେ କଲା
ଇନ୍ଦ୍ରଧନୁ ଧରିଛନ୍ତି ହସ୍ତେ ରାଜାବଳା ।
ଆଉ ତିନି ହସ୍ତରେ ଧନୁଧରେ ନେଇ
ଚାରିଧନୁ ଧରି ଗୁଣ ଟଙ୍କାର କରଇ ।
ରାଜାମାନେ ଡାକଦେଲେ ଅଜରାଜା ବଳା
ନିଶ୍ଚୟ ତୋହର ଆଜ କାଳ ଯେ ପୂରିଲା ।
ଆମ୍ଭ ସଙ୍ଗେ ରଣ କରି ଜିଣିବୁ ଯେବେପୁଣ
ତେବେ ଚାରିକନ୍ୟାକୁ ନେବୁରେ ନିଷ୍ଟେଜାଣ ।
ଦଶରଥ ବୋଇଲେ ଧର୍ମଯେବେ ସତ
ଆଜ ତୁମ୍ଭେ ସକଳ ରାଜାଏ ହେବ ହତ ।
ତିନିବେଳ ପରିଯନ୍ତେ ଡାକିଲେ ମହୀପାଳ
ଯେ ବିନ୍ଧିବି ସୂଚୀଲାଖ କନ୍ୟା ନେବ ମୋର ।
ସେ କଥା ତାଙ୍କର ଶୁଣି ଉଠିଣ ଅଇଲେ
ଧନୁ ତୋଳି ନପାରି ଲେଉଟି ପୁଣଗଲେ ।
ଏବେ ଧର୍ମରେ ତୁମ୍ଭେ କରୁଅଛ କଳି ।
ଏମନ୍ତେ କହନ୍ତେ ରାଜକୁମାର ତାଙ୍କୁ ପୁଣ
ରିପୁଧରି ରାଜାମାନେ ବିନ୍ଧିଲେ ଶର ଜାଣ ।
ରଥି, ସେନାପତି ଯେ ପାଦାନ୍ତି ବଳଘେନି
ଅନେକ ଶର ବୃଷ୍ଟିକଲେ ତହିଁ ପୁଣି ।
ଚାରି ଧନୁଧରି ଶର ଛେଦଇ ଦଶରଥ
ଯୁଥ ଯୁଥ ହୋଇଣ ଶର ବିନ୍ଧନ୍ତି ଅପ୍ରମିତ ।
ଦୁଇଦିନ ଦୁଇରାତ୍ର ବିନ୍ଧନ୍ତି ଯେ ଶର
ଶୁଣି ବିଚାରେ ଗଣ୍ଡୁକି ଦେଶ ମହୀପାଳ ।
ବଶିଷ୍ଠଙ୍କୁ ବୋଇଲେ ଶୁଣମୋ ବଚନ
ଚାଳିଶ ସସ୍ର ରାଜା ଯୁଝନ୍ତି ଏକାଜାଣ ।
ମୋର ସୈନ୍ୟ ଯାଇ କରିବେ କି ରଣ
ଶୁଣିକରି ବଶିଷ୍ଠ କହନ୍ତି ମଣାଇଣ ।
ବୋଇଲେ ଏତେରାଜାଙ୍କୁ ସମର୍ଥ ନୋହୁତୁହି
ତୋର ସଙ୍ଗେ ରଣକରି ଯୁଝିବେ ପୁଣ ଏହି ।
ସମ୍ଭାଳି ହୁଅ ରାଜା ନକର ତୁରେ ଦ୍ୱନ୍ଦ୍ୱ
କେତେ ରାଜାଛନ୍ତି ଜମ୍ବୁଦ୍ୱୀପର ନରେନ୍ଦ୍ର ।
ତୁମ୍ଭର ନବର ତୁମ୍ଭେ ରଖହେ ଜଗିଣ
ଦେଖ ତୁମ୍ଭେ କେ ହାରିବ କେ ଜିଣିବ ପୁଣ ।
ଶୁଣିଣ ମହୀପାଳ ନବର ଜଗାଇଲା
କଟକ ଲୋକଙ୍କୁ ସେହୁ ଜବତ ରଖାଇଲା ।

ଏଥୁ ଅନନ୍ତରେ ତୁ ଗୋ ଶୁଣ ଭଗବତୀ
ଅନେକ ଯୁଦ୍ଧ କରନ୍ତି ସକଳ ନୃପତି ।
ସବୁଙ୍କର ଶର ଯେ ଛେଦଇ ଦଶରଥ
ଦେଖିଣ ସୈନ୍ୟବଳ ହୋଇଲେ ଆଚମ୍ବିତ
ପାଞ୍ଚଦିନ ପାଞ୍ଚରାତ୍ର ତହିଁରେ ବହିଗଲା
ତେବେ ସେ ରଣଗୋଟି ନିବର୍ତ୍ତ ନୋହିଲା ।
ଅଜରାଜା କୁମର ଯେ ଶୂନ୍ୟକୁ ଚାହିଁଲା
ଦେବତାମାନଙ୍କୁ ଚାହିଁ ସାକ୍ଷ୍ୟ ତହିଁଦେଲା ।
ଅଷ୍ଟଦିଗ ପାଳ ଯେ ତୁମ୍ଭେ ଥାଇ ବୁଝ
ପାଞ୍ଚଦିନ ପାଞ୍ଚରାତ୍ର ରାଜାଏ କଲେ ଯୁଦ୍ଧ ।
ଏତେବେଳେ ଧର୍ମକୁ ତକେଇଛି ମୁହିଁ
ମୁହିଁ ଏକା ଅଟେ ଅନେକ ନରସାଇଁ ।
ନିର୍ଦ୍ଦୋଷରେ ମୋର ସଙ୍ଗେ କରନ୍ତି ଏ ରଣ
ଧର୍ମକୁ ଏମାନେ ସେ ଲଙ୍ଘୁଛନ୍ତି ପୁଣ ।
ମୋହର ଦୋଷ ନାହିଁ ବିଚାର ତୁମ୍ଭେ କର
ସୃଷ୍ଟିରେ ଆତଯାତ ଯେ ଅଟଇ ତୁମ୍ଭର ।
ଶୁଣିଣ ଦେବତାଏ ଶୂନ୍ୟରେ ଡାକଦେଲେ
ମାର ଦୁଷ୍ଟ ରାଜାଙ୍କୁ ମରନ୍ତୁ ଏଠାରେ ।
ଶୁଣିଣ ଦଶରଥ ଧନୁ ଟଙ୍କାର କଲା
ପ୍ରଥମେ ଅଗ୍ନି ଶରକୁ ଧନୁରେ ଯୋଚିଲା ।
ବୋଇଲା ଏଥରରେ ସମ୍ଭାଳ ମହୀପାଳ
ମାଇଲି ଶର ମୁହିଁ କେ କର ନିବାର ।
ଏତେ ବୋଲି ଦୁଇବେଳ ଅଗ୍ନିଶର ଯୋଚି
ଦୁଇଶର ଯିବାରୁ ରାଜାହେଲେ ଭସ୍ମରାଶି ।
ଲକ୍ଷକ ଶରକୁ ଯେ ବିନ୍ଧିଲା ଅଙ୍କ ଧଙ୍କ
ରଥୀ, ସେନାପତିଙ୍କି ବିନ୍ଧିଲା ଲକ୍ଷ ଲକ୍ଷ ।
ଆବର ଥରେ ଶର ଯେ ଟଙ୍କାରି ବିନ୍ଧିଟାଣି
କୋଡ଼ିଏ ପଦାତିକ ପକାଇଲା ହାଣି ।
ଆରବେଳେ ବଜ୍ରଶର ମାଇଲା ତିନିସସ୍ର
ତିନିସସ୍ର ରାଜା ଯେ ପଡ଼ିଲେ ଭୂମିଗତ ।
ପବନ ଶର ପେଷନ୍ତେ ଦଶ ସସ୍ର ମଲେ
କାଳ ବିକାଳ ଶର ଦଶରଥ ଧରିମାରେ ।
ରଥି ସେନାପତି ସବୁ ପଦାତି ବଳ ପୁଣି
ତିନିଲକ୍ଷ ପଡ଼ିଣ ଲୋଟିଲେ ଧରଣୀ ।
ପୁଣ ଆର ବେଳେ ଯେ ଦଶରଥ ବୀର
ଦେବଶର କଲା ଯେ ଜାଣିଣ ଅନ୍ଧାର ।

ପାଞ୍ଚସସ୍ର ରାଜା ସେ ପକାଏ ସେହୁ ଟାଣି
ମଲେ ଗରିଷ୍ଠ ରାଜା କୋଟିଏ ସସ୍ର ପୁଣି ।
ଦଶଲକ୍ଷ ପଦାତି ଦୁଇଲକ୍ଷ ସେନାପତି
ତିନିଲକ୍ଷ ରଥ ଯେ ପଡ଼ିଲେ ଧରିତ୍ରୀ ।
ବାକି କୋଟିଏ ସସ୍ର ରାଜା ବୁଝୁଥିଲେ
ଏମାନେ ପଡ଼ିବାରୁ ପଳାଇ ପୁଣି ଗଲେ ।
ବନଗିରି ମାଡ଼ିଣ ନପାନ୍ତି ସେହୁ ବାଟ
ଆପଣାର ରାଜ୍ୟକୁ ପଳାନ୍ତି ସମସ୍ତ ।
ଯେଉଁ ରାଜାମାନେ ମୃତ୍ୟୁ ଯେ ପାଇଲେ
ସୈନ୍ୟବଳ ତାଙ୍କର ଫେରିଣ ପୁର ଗଲେ ।
ବହିଲା ରକ୍ତ ନଦୀ ନାଚିଲେ କବନ୍ଧ
ଖେଚରୀ ଶାତ ଶୁଣି ହୋଇଲା ଆସି ବୃନ୍ଦ ।
କାଳୀ, କରାଳୀ, ଚଣ୍ଡୀ ଯେ ମହାମାୟୀ
ସମସ୍ତେ ରୁଧିର ପାନକଲେ ସେଥି ରହି ।
ଶ୍ୱାନ, ଶୃଗାଳ ଯେ ଗୃଧ୍ରପକ୍ଷୀ ପୁଣ
ଏମାନେ ଆନନ୍ଦରେ କରନ୍ତି ଭୋଜନ ।
ବିଭୁତ ଦିନ ଶ୍ୱାସଛଡ଼ ଦିବସ ରଣ ହେଲା
ସେ ରାଜ୍ୟରେ ଗହଳ ଅନେକ ଲାଗିଲା ।
ସ୍ୱର୍ଗରେ ଧନ୍ୟ ଧନ୍ୟ କଲେ ଦେବଗଣ
ସେ ରାଜ୍ୟରେ ନିର୍ଭୟ ହେଲେ ସର୍ବେ ଜାଣ ।
ଗଣ୍ଡକୀ ରାଜନ ଯେ ମନରେ ହେଲେ ସୁଖୀ
ବିଚାରିଲା ଇନ୍ଦ୍ର କହିବା କଥା ଫଳିଲା ଏବେକି ।
ଏଥୁ ଅନନ୍ତରେ ଶୁଣଗୋ ଶାକମ୍ଭରୀ
ରଣ ତେଜ୍ୟା କଲା ଯେ ଦଶରଥ ଦଣ୍ଡଧାରୀ ।
ଚାହିଁଲା ଚାରିଦିଗରୁ ଭାଜିଲା ଗହଳ
ଦେଖିଣ ସନ୍ତୋଷ ଯେ ନୃପତି କୁମର ।
ମନ୍ତ୍ରୀକି ବୋଇଲାରେ ରଥ ବେଗେ ଘେନ
କେଉଁଠାରେ ନଦୀଅଛି କରିବା ସ୍ନାହାନ ।
ଶୁଣିଣ ମନ୍ତ୍ରୀବର ରଥକୁ ବୋହିନେଲା
ଗଣ୍ଡକୀ ନଦୀ କୂଳରେ ନେଇଣ ରଖିଲା ।
ରଥରୁ ଓହ୍ଲାଇଲେ ଦଶରଥ ବୀର
ଗଣ୍ଡକୀ ନଦୀରେ ସ୍ନାନ କଲେକ ସତ୍ୱର ।
ସ୍ନାନସାରି ତର୍ପଣ ସନ୍ଧ୍ୟା କଲେ ପୁଣ
ଦେବତାଙ୍କୁ ଜଳଦାନ ଦେଲେକ ବିଚାରିଣ ।
ପୂଜାସାରି ତିଳକ ଲାଗି ସେଠାର ହେଲେ
ଏମନ୍ତ ସମୟରେ ରାଜା ମନ୍ତ୍ରୀ ସେ ମିଳିଲେ ।

ନୂତନ ରାଜାବେଶ ରାଜାପାଶେ ଦେଲେ
ଦେଖିଣ ଦଶରଥ ବେଗେ ବେଶ ହେଲେ ।
ରଥ ଉପରେ ଯେ ବସିଲେକ ରାଜପୁତ୍ର
ବଶିଷ୍ଠ ଛାମୁରେ ଯାଇ ହୋଇଲେ ଉପଗତ ।
ଦେଖିଣ ବଶିଷ୍ଠ ଯେ ନମସ୍କାର କଲେ
ସୁକଲ୍ୟାଣ ଋଷି ତାହାଙ୍କୁ ତହିଁ କଲେ ।
ଶିଳେ ମଣୋହି ଯେ ରାଜନ ଆଣିଦେଲା
ସନ୍ତୋଷେ ଭୋଜନ କଲେ ଅଜରାଜା ବଳା ।
ଆଚମନ ସାରିଣ ବିଡ଼ିଆ ଲାଗି ହେଲେ
ସୁପାତି ପଲଙ୍କରେ ଯାଇଣ ନିଦ୍ରାଗଲେ ।
ଏଥୁ ଅନନ୍ତରେ ଗୋ ପାର୍ବତୀ ଶୁଣ ଏବେ
ରଜନୀରେ ମଙ୍ଗଳକୃତ୍ୟ ହୋଇଲେ ସର୍ବେ ।
ଚାରି କନ୍ୟାକୁ ମଙ୍ଗୁଳିଣ ପାଣିତୋଳା କଲେ
ସେହି ତୋଳା ପାଣି ଚାରିକନ୍ୟା ଗାଧୋଇଲେ ।
ରଜନୀ ଶେଷ ହୁଅନ୍ତେ ଉଠିଲେ ସର୍ବଜନ
କଟକରେ ଉତ୍ସବ ଯେ କରାଏ ରାଜନ ।
ଦଶରଥ ସାମର୍ଥ୍ୟ ପଣ ଦେଖିଣ ରାଜନ
ଦେଖିବାକୁ ଯିବାକୁ ଚହଳ ପଡ଼ିଲା ପୁଣ ।
ସ୍ତ୍ରୀ ପୁରୁଷେ ଯାଇଣ ଦେଖିଣ ସର୍ବେ ଫେରି
ପ୍ରଶଂସା କରନ୍ତି ସର୍ବେ ଯୁଦ୍ଧ ଦେଖିକରି ।
ରଜନୀ ଶେଷରେ ବିଭା ଉତ୍ସବ କରାଇଲେ
ରତ୍ନ ବେଦୀ ଉପରେ ବର ନେଇଣ ବସାଇଲେ ।
ବରୁଣ ପୂଜା ସାରିଣ ଲବଣ ଚଉଁରୀ ।
ବର ଉପରେ ପଞ୍ଚ ମୁକୁଟ ବାନ୍ଧିକରି ।
ଚାରିକନ୍ୟାକୁ ବେଶକରି ବେଦୀକି ବେଗେ ଆଣି
ଶିଳା ବରଣ କରି ବେଦୀ ଉପରେ ପୁଣି ।
ଦଶରଥଙ୍କ କରେ କନ୍ୟାଙ୍କ କର କଲେକ ବନ୍ଧନ
ବର କନ୍ୟାଙ୍କର କୁଶ ରଜ୍ଜୁରେ ବାନ୍ଧିପୁଣ ।
ରତ୍ନ ଶଙ୍ଖରେ ରାଜା ପାଣି ଦେଇ ଦେଲେ
ଅନେକ ଧନରତ୍ନ ଯଉତୁକ ଦେଲେ ।
ଜୁଆ ଖେଳଖେଳାଇଣ ଭୋଜନ କରାଇଲେ
ଏକ ପତ୍ରରେ ବର କନ୍ୟା ଯେ ଭୁଞ୍ଜିଲେ ।
ଏହି ରୂପେ ଚାରିଦିନ ଗଲାକ ଯେ ବହି
ଲାଜ୍ୟା ହୋମ କରାଇଲେ ଋଷି ବିପ୍ରନେଇ ।
ରତ୍ନପଲଙ୍କ ଉପରେ ଦଶରଥ ବିଜେକଲେ
ବେଶ ବସନରେ ଚାରି କନ୍ୟା ଯେ ଅଇଲେ ।
ଦାସୀଗଣ ସଙ୍ଗରେ ସମର୍ପି ଦେଲେ ଆଣି
କବାଟ ଦେଇଣ ଯେ ଦାସୀଏ ଗଲେ ପୁଣି ।
ଚାରିକନ୍ୟାଙ୍କ ସଙ୍ଗେ କଲେକ ରତିରଣ
ଚାରି ପ୍ରହର ଅନିଦ୍ରା ଅଜର ନନ୍ଦନ ।
ରଜନୀ ଶେଷ ହେବାରୁ ଚାରିକନ୍ୟା ଗଲେ
ଦାସୀ ଗଣେ ପହଣ୍ଡ ମଣାଇ ଘେନିଗଲେ ।
ମର୍ଦ୍ଦନ ମାଜଣା ଯେ କରାଇ ଦାସୀ ଗଣ
ସ୍ନାହାନ ସାରି ସୁବେଶ କରାଇ ତତ୍କ୍ଷଣ ।
ଷଡ଼ରସରେ ଭୋଜନ କରାଇ ତତ୍କ୍ଷଣ
ବିଡ଼ିଆ ଲାଗି କରାଇ ବସାଇ ପଲଙ୍କେଣ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣଗୋ ଶାକମ୍ଭରୀ
ସୁବାସ ପାଣିରେ ସ୍ନାନ କରାଇଲେ ନାରୀ ।
ନୂତନ ଅମଳାଣ ନେଇଣ ପିନ୍ଧାଇଲେ
ରାଜନୀତି ବିଧିରେ ଭୋଜନ କରାଇଲେ ।
ରତ୍ନ ପଲଙ୍କ ଉପରେ ନେଇଣ ବସାଇଲେ
ସୁବାସିତ ବିଡ଼ିଆ ନେଇଣ ଭୁଞ୍ଜାଇଲେ ।
ଚାରିଶତ ଦାସୀ ଯେ ହୋଇଲେ ବେଶ ପୁଣ
ବଶିଷ୍ଠ ଆଜ୍ଞା ଦେଲେ ଶୁଣହେ ରାଜନ ।
ଝିଅ ଜୁଆଁଇ କି ତୁମ୍ଭେ ରଥରେ ବସାଅ
ଶୁଣିଣ ରାଜନ ଯେ ହରଷ ହେଲେ ପ୍ରାୟ ।
ଯୌତୁକ ପଦାର୍ଥ ସଜକରି ଦେଲା
ହାତୀ, ରଥୀ, ସେନାପତି, ପଦାତି ବଳପରା ।
ଚାରିଶତ ରଥରେ ପାଣି ଦ୍ରବ୍ୟ ଦେଲା
ଗାଈ ମହିଷି ଅଶ୍ୱଯେ ସାରେଣୀ ବିଳୋହିଲା ।
ଶାଳଗ୍ରାମ ସିଳାରୁ ଜୀଅଁନ୍ତା ବାରଲକ୍ଷ
ଶତେକ ରଥରେ ଯେ ନେଇ ଦେଲେକ ତୁରିତ ।
ଝିଅ ଜୁଆଇଁଙ୍କ ସଙ୍ଗରେ ଚାରି ଦାସୀ
ରଥରେ ବସାଇଲା ହୋଇଣ ତୋଷମତି ।
ଦଶ ଦୋଷ ମାଗିଣ ମେଲାଣି ରାଜା ହେଲା
ପାଞ୍ଚଯୁଣ ପରିଯନ୍ତେ ଗୋଡ଼ାଇ ଅଇଲା ।
ସେଠାରୁ ଫେରିଣ ନିଜ ପୁରେ ଚଳିଗଲା
ତହୁଁ ଦଶରଥ ଯେ ଚଳିଣ ଗଲେ ତ୍ୱରା ।
ବତିଶ ରାଜାଘରୁ କନ୍ୟାମାନେ ନେଲେ
ତିନିଶତ ରଥ ଘେନି କନ୍ୟାମାନେ ଚଳେ ।
ତିନିଶତ ଦାସୀ କନ୍ୟା ଘେନିଣ ଦଶରଥ
ଅନେକ ସୈନ୍ୟବଳ ଘେନିଣ ସଙ୍ଗତ ।

ରଥୀ ସେନାପତ ଯେ ପଦାତି ବଳ ବହୁ
ଗାଈ, ମହିଷୀ, ହସ୍ତୀ, ସାରେଣୀ ବଳ ସେହୁ ।
ଚଳନ୍ତେ ଗହଳ ଯେ ଅଟଇ ବଡ଼ଟାଣ
ମାସ ପାଞ୍ଚଦିନେ ମିଳିଲେ ରାଜ୍ୟ ପୁଣ ।
ରାଜାର ଆଗରେ ଚାର କହିଲେ ଯାଇକରି
କୁମର ଅଇଲେ ତୁମ୍ଭେ ଶୁଣ ହେ ଦଣ୍ଡଧାରୀ ।
ବଡ଼ ସମ୍ଭର୍ବରେ ସେ ଆସନ୍ତି କୁମରମଣି
ଏଥର ସ୍ୱୟଂମ୍ବରେ ଯଶ କଲେ ପୁଣି ।
ଇନ୍ଦ୍ରଧନୁ ତୋଳିଣ ନାରାଚ ବିନ୍ଧିଲେ
ଚାଳିଶିସସ୍ର ରାଜ ତୁମ୍ଭ ପୁତ୍ରଙ୍କୁ ହିଂସାକଲେ ।
ଛଡ ପରିଯନ୍ତେ କଲେକ ଘୋର ରଣ
ଚାଳିଶସସ୍ର ରାଜାଙ୍କୁ ପୁତ୍ର ଯେ ଏକଜାଣ ।
ସବୁ ରାଜାଙ୍କ ସୈନ୍ୟଙ୍କୁ ମାଇଲା ତୋ ନନ୍ଦନ
କୋଡ଼ିଏ ସସ୍ର ରାଜାଙ୍କୁ ପକାଏ ହାଣି ପୁଣ ।
ଆଉ ଯେତେ ରାଜା ଯେ ସୈନ୍ୟ ବଳ ଥିଲେ
ସମସ୍ତେ ପଳାଇଲେ ଗୋଟିଏ ନରହିଲେ ।
ଶୁଣିଣ ନୃପତି ଯେ ପରମ ତୋଷ ହେଲା
ଅନେକ ଧନ ଆଣି ବଧାଇ କରିଦେଲା ।
ଉସବ ମଙ୍ଗଳ ଯେ ରାଜ୍ୟରେ କରାଇଲେ
ଅନ୍ତଃପୁରରେ ରାଣୀମାନଙ୍କୁ କହିଲେ ।
ବେଶ ହୋଇ ରଥରେ ବସିଲା ନୃପବର
ଶୀତଳ ଗରମ ଜଳରେ ଦେଖିଲା ସୈନ୍ୟବଳ ।
ପୁତ୍ରଙ୍କୁ ଦେଖିଣ ଯେ ପରମ ତୋଷ ହେଲା
ପିତାଙ୍କୁ ଦେଖି ପୁତ୍ର ଓଳଗି ମେଲାଇଲା ।
ନନ୍ଦିଗ୍ରାମରେ ଆସି ହୋଇଲେ ସୈନ୍ୟବଳ
ବଡ଼ ଦାଣ୍ଡ ପୂରିଣ ଚଳିଲେ ଧରଧୀର ।
ସିଂହଦ୍ୱାରେ ପ୍ରବେଶ ହୋଇଲେ ଯାଇକରି
ଅନ୍ତଃପୁରୁ ଦାସୀଗଣେ ଅଇଲେ ଶୁଣିକରି ।
ସକଳ ବଧୂ ପୁତ୍ରଙ୍କୁ ମଣାଇ ଘେନିଗଲେ
ରାଣୀମାନେ ଆସିଣ ବନ୍ଧାପନା କଲେ
ବତିଶ ନବରରେ ରଖିଲେ ନେଇକରି
ଆନନ୍ଦେ ବଧୂମାନେ ଦାସୀଙ୍କ ସଙ୍ଗେ ଚଳି ।
ଏମନ୍ତେ ବେନି ବରଷ ସେଥିରେ ବହିଗଲା
ପାର୍ବତୀ ସଦାଶିବ ଆଗରେ ବିଚାରିଲା ।
ବୋଇଲା ବେନି ବରଷ ଉତ୍ତାରୁ ଯାଇଁ ତ
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଦେଇ ଚିତ୍ତ ।
ପୂର୍ବଦିଗେ ବୈତରଣୀ ତଟରେ ଏକନଗ୍ର
ଗିରିଜା ମଣ୍ଡଳ ସ୍ଥାନେ ବିଧାତା କଲେ ଯାଗ ।
ଗଙ୍ଗବଶ ରାଜା ଯେ ସେଥିରେ ନୃପତି
ବତିଶ ପାଟରାଣୀ ଚଉଷଣେ ଖଟନ୍ତି ।
ରାଣୀ ମନ ବୋଧ କରି ସେଠାରୁ ଅଇଲା
ପଞ୍ଚଭୂତ ଆମ୍ଭରେ ମନରେ ବିଚାରିଲା ।
ବାହାର ଜଗତି ଉପରେ ଯାଇ ମିଳି
ପାତ୍ର, ମନ୍ତ୍ରୀ, ସାମନ୍ତ ମିଳିଲେ ଆସିକରି ।
ଏମନ୍ତ ସମୟରେ କାଞ୍ଚନ ନାମେ ଋଷି
ରାଜାର ସନ୍ନିଧରେ ପ୍ରବେଶ ହେଲେ ଆସି ।
ଦେଖିଣ ଋଷିଙ୍କି ରାଜା ନମସ୍କାର କଲା
ଚରଣ ପଖାଳି ସିଂହାସନେ ବସାଇଲା ।
ରାଜାର କୁଶଳ ଯେ ପଚାରେ ମୁନିବର
ସକଳ ଭଲ ବୋଲି କହିଲେ ନୃପବର ।
ଗୋଟିକ କଥାରେ ଦେବା ମୋର ନାହିଁ ପୁତ୍ର
ଦୁଇଗୋଟି ଦୁହିତା ମୋ କୋଳେ ନାହିଁ ପୁତ୍ର ।
ଶୁଣିକରି ମୁନିବର ଧିର କରି କହି
ଦୁହିତା ଦାନ ଦେଲେ ପୁତ୍ର ଉପଜଇ ।
ତୁହି ଏବେ ଦୁହିତାଏ ଦାନ ଦିଅ ବେଗେ
ଏବେ ତୋର ବେନିପୁତ୍ର ନିଶ୍ଚୟ ହୋଇବେ ।
ରାଜନ ବୋଇଲେ ମୁଁ ଯେ ତୁମ୍ଭଙ୍କୁ ପଚାରି
ସ୍ୱୟମ୍ବର କରିବି କି ଆପେ ବର ବରି ।
ଉତ୍ତର ଦିଗରେ ଯେ ଅଯୋଧ୍ୟା କଟକରେ
ତପନ କୁଳ ରାଜା ରଘୁଙ୍କ ବଂଶରେ ।
ଅଜ ନାମେ ନୃପତି ରାଜ୍ୟଭାର ସହି
ତାହାର କୋଳରେ ଦଶରଥ ଜାତ ହୋଇ ।
ଧାର୍ମିକ ସୁନ୍ଦର ଯେ ଅଟନ୍ତି ସେହି ପୁଣ
ବିଭାକର ଦୁହିତା ତାହାଙ୍କୁ ବରିଣ ।
ନିଷଳଙ୍କ ସୂର୍ଯ୍ୟବଂଶ କଳଙ୍କ ତହିଁ ନାହିଁ
ତପନ କୁଳରେ ଜାତ ହୋଇବେ ଭାବଗ୍ରାହୀ ।
ଅସୁର ଦୁଷ୍ଟବଳଙ୍କୁ କରିବେ ସେ ନାଶ
ଦେବତାଙ୍କଠାରୁ ମୁଁ ଶୁଣିଛି ବିଶେଷ ।
ଏତେ କହି ମୁନି ଯେ ସେଠାରୁ ଚଳିଗଲେ
ଅଦୃଶ୍ୟ ହୋଇଣ ଅନ୍ତର୍ଦ୍ଧାନ ହେଲେ ।
ବଣରାଶି ଭୁବନେ ମିଳିଲେ ଋଷି ଯାଇ
ସିଂହଦ୍ୱାରି ବାଟରେ ଭିତରପୁରେ ଯାଇ ।

ସିଂହାସନ ପୁରେ ଶିବରାଜା ବସିଥିଲା
ଋଷିଙ୍କି ଦେଖିଣ ବହନ ଉଠିଲା ।
ଭକ୍ତିଭାବେ ମୁନିଙ୍କି କଲା ନମସ୍କାର
ଚରଣ ପଖାଳି ଦେଲା ଆଣି ଗଙ୍ଗା ନୀର ।
ରତ୍ନ ସିଂହାସନରେ ନେଇଣ ବସାଇଲେ
ତଳରେ କରଯୋଡ଼ି ରାଜନ ଉଭାହେଲେ ।
ମୁନି ପଚାରିଲେ ରାଜା ସର୍ବ କି କୁଶଳ
ପୁତ୍ର, ଦୁହିତା, ରାଣୀ ଅଛନ୍ତଟିକି ଭଲ ।
ପରଜା ପାଳି ଦୁଃଖୀ ଦରିଦ୍ରଙ୍କୁ ଦାନ
ଅନ୍ନବସ୍ତ୍ର ସଦାବର୍ତ୍ତ ଦେଉକି ପ୍ରତିଦିନ ।
ରାଜନ ବୋଇଲେ ଦେବ ସବୁକଥା ଭଲ
ଦୁଇବର୍ଷ ହେଲା ପିତୃ ଦୁଃଖୀ ହେଲେ ମୋର ।
ନବବରଷ ଦୁହିତା ଦୁହେଁ ଯୁବା ହେଲେ
ତାଙ୍କୁ ବିଭା ନକରିବାରୁ ପିତୃ ମୋ ଦୁଃଖୀ ହେଲେ ।
ଦୁଇଗୋଟି ବାଳକ ଅଟନ୍ତି ମୋର ସାନ
ପ୍ରତିଦିନ ମୁଁ ପୂଜା କରଇ ପଞ୍ଚାନନ ।
ଦୁହିତାଙ୍କର କଥା ମନରେ ମୋ ଚିନ୍ତା
ତାଙ୍କୁ ବିଭାଦେଲେ ପିତୃଙ୍କର ସୁଖ ହୋନ୍ତା ।
ମୁନି ବୋଇଲେ ତୋତେ କହିବା ଏବେଶୁଣ
ଅଯୋଧାର ରାଜା ସୂର୍ଯ୍ୟବଂଶୀ ଜାଣ ।
ସେହି ରାଜାର କୋଳରେ ଜନ୍ମ ଦଶରଥ
ଦୁଇଗୋଟି ଚରଣ ଯେ ଅଷ୍ଟ ଗୋଟି ହାତ ।
ଦଶରଥ କୋଳେ ନାରାୟଣ ଯେ ସମ୍ଭୂତ
ଚତୁର୍ଦ୍ଧା ମୂର୍ତ୍ତି ଧରି ଶ୍ରୀହରି ହେବେ ଜାତ ।
ସେ ଦଶରଥକୁ ତୋର କୁମାରୀ ବିଭାକର
ବଇମାତ୍ରୀ ମାତା ଯେ ହୋଇବେ ହରିଙ୍କର ।
ତୋର ପିତୃଲୋକକୁ ଉଦ୍ଧାର କରିବେ
ଦୁର୍ଲ୍ଲଭ ସୁଖ ବୁଝ ବୈକୁଣ୍ଠ ପୁଣି ଯିବେ ।
ଏତେ କହି ମୁନି ଯେ ସେଠାରୁ ଚଳିଗଲେ
ସ୍ୱର୍ଗପୁରରେ ଯାଇ ପ୍ରବେଶ ହୋଇଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ ।
କାଶୀରାଜା ଶୁଣିଣ ଯେବେ ଜନ୍ମହେବେ
ସେଠାରେ ଦୁହିତା ମୁଁ ବିଭାଦେବି ଭାବେ ।
ମନେ ବିଚାରି ରାଜା ପାତ୍ର ମନ୍ତ୍ରୀଙ୍କି କହିଲା
ସାମନ୍ତମାନଙ୍କୁ ସେ ସଙ୍ଗରେ ଭେଦିଦେଲା ।
ଦୁଇଗୋଟ ରତ୍ନମାଳ ଆଣିଣ ରାଜା ଦେଲା
ଦୁଇଗୋଟି ରଥରେ ତାଙ୍କୁ ବସାଇଲା ।
ବୋଇଲେ ଯେଉଁଠାରେ ଦେଖିବ ଦଶରଥ
ସେହିଠାରେ ବରଣ କରିବ ତ୍ୱରିତ ।
ଶୁଣିଣ ପାତ୍ର ମନ୍ତ୍ରୀ ସାମନ୍ତ ଚଳିଗଲେ
ଅଯୋଧା ନଗରେ ଯାଇ ପ୍ରବେଶ ହୋଇଲେ ।
ସେ ରାଜା ଇଷ୍ଟ ଦେବତା ବିରଞ୍ଚି ନାରାୟଣ
ଦେବଙ୍କ ସିଂହଦ୍ୱାରେ ରହିଲେ ଯାଇ ପୁଣ ।
ଏମନ୍ତ ସମୟରେ ରଜନୀ ପରବେଶ
ଘଡ଼ିମାରି ଚନ୍ଦ୍ରମା ହୋଇଲେ ପ୍ରକାଶ ।
ସେତେବେଳେ ରାଜାର କୁମର ଦଶରଥ
ନାରାୟଣ ଦର୍ଶନରେ ଚଳିଲେ ତ୍ୱରିତ ।
ଦେବଙ୍କୁ ଦର୍ଶନ କରି ଫେରିବାର ବେଳେ
ମନ୍ତ୍ରୀ ଦୁଇମାଳା ନେଇ ଲମ୍ବାଇଲେ ଗଳେ ।
ଦଶରଥ ପଚାରିଲେ କେଉଁ ଦେଶେ ଘର
ମନ୍ତ୍ରୀ ବୋଇଲେ କାଶୀନଗ୍ରରେ ଆମ୍ଭପୁର ।
ଦଶରଥ ବୋଇଲେ କି କାର୍ଯ୍ୟ ମାଳା ଦେଲ
ମନ୍ତ୍ରୀ ବୋଇଲେ ଶୁଣ ହେ ରଘୁ ଦୁଲାଳ ।
ବାରାଣସି ପୁରରେ ଶିବି ରାଜା ଘର
ଦୁହିତା ଦାନ ଦେବାକୁ ପେଶିଲେ ତୁମ୍ଭପୁର ।
ସେହି କାରଣରୁ ବରଣ ଆମ୍ଭେ କଲୁଁ
ରାଜାଠାରୁ ଏହି ଆଦେଶ ପାଇଥିଲୁଁ ।
ଶୁଣିଣ ଦଶରଥ ଆନନ୍ଦ ମନ ହେଲେ
ପାତ୍ରମନ୍ତ୍ରୀଙ୍କ ସଙ୍ଗରେ ସେଠାରେ ରହିଲେ ।
ଅଜରାଜା ଆଗରେ ଚାର ଯାଇ କହି
କାଶିରାଜା ମନ୍ତ୍ରୀ ଆସି କୁମର କରିନେଇ ।
ଶୁଣିଣ ରାଜାର ଯେ ବଶିଷ୍ଠ ମନ୍ତ୍ରୀ ଘେନି
ବିଜେକଲେ ରାଜା ଦେବାର୍ଚ୍ଚନାରେ ପୁଣି ।
ନାରାୟଣ ଦର୍ଶନ ରାଜା ଯାଇ କଲା
ଲେଉଟାଣି ବେଳରେ ପୁତ୍ରକୁ ଦେଖିଲା ।
ଦେଖିଣ ପୁତ୍ର ନମିଲା ପିତାଙ୍କ ପୟରେ
ପାତ୍ର, ମନ୍ତ୍ରୀ, ସାମନ୍ତ ନମିଲେ ରାଜାରେ ।
ବୋଇଲେ କାଶୀରାଜା ବରିଲେ ପୁତ୍ରକୁ
ଦୁଇଗୋଟି ଦୁହିତା ବିବାହ ଦେବ ତାଙ୍କୁ ।
ଶୁଣିଣ ନୃପତି ଯେ ସନ୍ତୋଷ ହୋଇଲେ
ପ୍ରଭାତୁ ଯିବୁଁ ବୋଲି ମନ୍ତ୍ରିଙ୍କି ଆଜ୍ଞା ଦେଲେ ।

ମନ୍ତ୍ରୀଙ୍କି ବୋଇଲେ ଏମାନଙ୍କୁ କର ଚର୍ଚ୍ଚା
ପୁତ୍ରଙ୍କ ସଙ୍ଗେ ରହିବାର ଯେବେ ଇଚ୍ଛା ।
ଏମନ୍ତ ସମୟରେ ଗଙ୍ଗବଂଶ ମନ୍ତ୍ରୀ
ରଥରୁ ଓହ୍ଲାଇ ପ୍ରବେଶ ହେଲେ ତଥି ।
ଦୁଇଗୋଟି ରତ୍ନମାଳା ଘେନିକରି ହସ୍ତେ ।
ଦଶରଥଙ୍କ ଗଳାରେ ଲମ୍ବାଇ ତ୍ୱରିତେ ।
ଦେଖିଣ ଅଜରାଜା ପଚାରିଲେ ତାଙ୍କୁ
କେଉଁଦେଶରୁ ତୁମ୍ଭେ ଆସିଲେ ଏଠାକୁ ।
ପାତ୍ର ମନ୍ତ୍ରୀ କହିଲେ ବିରଜା ମଣ୍ଡଳରୁ
ଗଙ୍ଗବଂଶ ରାଜା ସେ ସେଥିରେ ମହାମେରୁ ।
ଦୁଇଗୋଟି ଦୁହିତା ତାଙ୍କର ଅଛନ୍ତି
ତୁମ୍ଭ ପୁତ୍ରକୁ ବିବାହ ଦେବେ ଭାବିଛନ୍ତି ।
ଅଜରାଜା ବୋଇଲେ ଏଠାରେ ତୁମ୍ଭେ ରହ
କାଶିରାଜା ବରିଲା ଆଗେ କରି ସ୍ନେହ ।
ସଙ୍ଗ ହୋଇଣ ଯିବ କାଶୀପୁର ଯାଏ
ଆଗେ ସେଠି ବିବାହ ହୋଇବ ହେଲା ଥୟେ ।
ସେଠାରୁ ବିଭା ସରିଲେ ତୁମ୍ଭ ପୁରେ ଯିବ
ତୁମ୍ଭ ରାଜକନ୍ୟାଙ୍କୁ ବିଭା ହୋଇଣ ଆସିବ ।
ତାହା ଶୁଣି ବେନିକୂଳ ହରଷ ହୋଇଲେ
ପାତ୍ର, ମନ୍ତ୍ରୀ, ବଶିଷ୍ଠଙ୍କ ସଙ୍ଗରେ ରହିଲେ ।
ରାଜନୀତି ପ୍ରକାରେ ଭୋଜନ ହିଁ କଲେ
ନିଶ୍ଚିନ୍ତ ଭାବେ ତହିଁ ରଜନୀ କଟାଇଲେ ।
ପ୍ରଭାତରୁ ସ୍ନାହାନ ଶଉଚ ହୋଇ ପୁଣ
ଦିବ୍ୟ ରତ୍ନମାଳା ଯେ ଅଣାଇ ବହନ ।
ଋଷି, ସାମନ୍ତ ଘେନି ବସିଲେ ରଥରେ
ଦଶରଥ ବସିଲେ ଏଇ ଆସନରେ ।
ଚତୁରଙ୍ଗ ବଳ ସଙ୍ଗରେ ଘେନିଗଲେ
ତିନିଦିନେ ବାରାଣସୀ ନଗରେ ମିଳିଲେ ।
ଦେଖିଣ କାଶୀରାଜା ହରଷ ହୋଇଲେ
ସେହିଦିନ ମଙ୍ଗଳ ବିଧାନ ତହିଁ କଲେ ।
ରାଜ୍ୟରେ ଉତ୍ସବ କରାଇ ରାଜନ
ଅପସରୀ କିନ୍ନରୀ ନୃତ୍ୟ କଲେ ପୁଣ ।
ବାଦ୍ୟ ନିଶାଣରେ ପୂରିଲା ଜଗତ
ଦାସୀଗଣେ ଆସି ପାଣି ତୋଳିଲେ ତ୍ୱରିତ ।
କଳାବତୀ ଧେନୁବତୀ ଦୁଇ କନ୍ୟା ପୁଣ
ସ୍ନାହାନ କରାଇଲେ ରଜନୀ ଶେଷେଣ ।

ବିଧି ବିଧାନରେ ଦଶରଥ ସ୍ନାନ କଲେ
ବରବେଶ ହୋଇ ରତ୍ନବେଦୀରେ ବସିଲେ ।
ବରଣ ପୂଜାସାରି କନ୍ୟାଙ୍କୁ ଅଣାଇଲେ
ଲବଣ ଚାମରୀ କରି କନ୍ୟା ଫେରିଗଲେ ।
ବେଶଭୂଷଣ କରି କନ୍ୟାଙ୍କୁ ଆଣି ପୁଣ
ରତନ ବେଦୀରେ ବସାଇ ତକ୍ଷଣ ।
ଶିରରେ ମୁକୁଟ ବାନ୍ଧି ଶିଳାରୋହଣ କଲେ
ବର କନ୍ୟାଙ୍କର ହସ୍ତ କୁଶରେ ବାନ୍ଧିଲେ ।
ରତନ ଝରିରେ ପାଣି ଦେଲେ କି ରାଜନ
ଗାଈ, ମହିଷୀ, ଅଶ୍ୱ, ସାରଥି ରଥି ପୁଣ ।
ପାଣିଦ୍ରବ୍ୟ ଦୁଇସସ୍ର ଦେଲେ ସେହି ରାଜା
ଏମନ୍ତେ ଅନେକ ଧନ ଦେଇ କଲେ ପୂଜା ।
ହସ୍ତଗଣ୍ଠି ଫିଟାଇଣ ହୋମବିଧି କଲେ
ହୋମସାରି ବେଦୀପରୁ ବର କନ୍ୟା ନେଲେ
ଅନ୍ତଃପୁରେ ପ୍ରବେଶ ହୋଇଲେ ଯାଇକରି
ବନ୍ଦାପନା କଲେ ଯେ ରାଣୀ ହଂସ ମିଳି ।
ଦାସୀମାନେ ଜୁଆଖେଳାଇ ହାସ୍ୟ କଲେ
ବସି ବର କନ୍ୟା ଏକାପତ୍ରକେ ଭୁଞ୍ଜିଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଚାରିଦିନେ ଚତୁର୍ଥୀ କଲେକ ନୃପତି ।
ଲାଜାହୋମ ସାରିଲେ ବିପ୍ର ଋଷିଗଣ
ସେଦିନ ନୃପତି ଯେ ଦେଲେକ ବହୁଦାନ ।
ବିପ୍ରଋଷିମାନଙ୍କୁ ଭୂରିଭୋଜନ ଦେଲେ
ସମସ୍ତଙ୍କୁ ସନ୍ତୋଷରେ ଭୋଜନ କରାଇଲେ ।
ତେବେ ଯେ ସନ୍ତୋଷ ହୋଇଲେ ନୃପଈଶ
ଏଥୁ ଅନନ୍ତରେ ପାର୍ବତୀ ଦେବୀ ଶୁଣ ।
ଷଡରସେ ଝିଅ ଜ୍ୱାଇଁ କଲେକ ଭୋଜନ ।
ଆଚମନ ସାରିଣ ଦଶରଥ ଗଲେ
ରତନ ପଲଙ୍କ ଉପରେ ବିଜେ କଲେ ।
ଦୁଇକନ୍ୟାଙ୍କୁ ଦାସୀମାନେ କଲେ ବେଶ
ଅର୍ଘ୍ୟସ୍ଥଳୀ କରେ ଘେନିଲେ ପ୍ରୀତିବାସ ।
ଧୀରେ ଧୀରେ କନ୍ୟା ଦୁହେଁ ଯାନ୍ତି ଲଜ୍ୟା କରି
ଦଶରଥଙ୍କ ଛାମୁରେ ପ୍ରବେଶ ସୁନ୍ଦରୀ ।
ଦଶରଥଙ୍କୁ ଦେଖିଣ ବନ୍ଦାପନା କଲେ
ମାନ୍ୟଧର୍ମ ହୋଇଣ ଛାମୁରେ ଉଭା ହେଲେ ।

ଆଲଟ ପଙ୍ଖା ଧରି ପକାନ୍ତି ଦାସୀଗଣ
ଚଉପାଶେ ମାଣିକ୍ୟର ଦ୍ୱୀପ ଜଳେ ପୁଣ ।
ହରଷେ ଦଶରଥ ପଲଙ୍କୁ ଉଠିଲେ
ଦୁଇକନ୍ୟାଙ୍କୁ କୋଳ କରିଣ ଘେନିଗଲେ ।
ପଲଙ୍କପରେ ନେଇଣ ବସାଇଲେ
ମୁଖେ ଚୁମ୍ବନ ଦେଇ କୁଚ ମର୍ଦ୍ଦନ କଲେ ।
ଗଉରବ ଦେଖିଣ ଦାସୀଏ ଫେରିଲେ
କବାଟ ଫେଡ଼ିଣ ଯେ ପ୍ରାଙ୍ଗଣେ ଶୋଇଲେ ।
ନିଶବଦ ହେବାରୁ ଦଶରଥ ପୁଣ
କଳାବତୀ ନୀବିବନ୍ଧ ଫିଟାଇ ତକ୍ଷଣ ।
ରତିରସ କାମିନୀ ସଙ୍ଗରେ ପୁଣ କଲେ
ବିନ୍ଧ୍ୟାଗିରି ଶିଖରୁ ବିନ୍ଦୁ ଯେ ଖସିଲେ ।
କଳାବତୀ ବସନକୁ ପିନ୍ଧି ବୃଦ୍ଧକରି
ଶ୍ରମ ପାଇ ପଲଙ୍କେ ପହୁଡ଼ିଲା ନାରୀ ।
ଧେନୁବତୀକି କୋଳେ ଧରି କରନ୍ତି କ୍ରୀଡ଼ା ପୁଣ
ରଜନୀ ଶେଷ ହୋଇଲା କାକ କଲେ ସ୍ୱନ ।
ଦାସୀମାନେ ଆସିଣ କନ୍ୟାଙ୍କୁ ଘେନିଗଲେ
ମର୍ଦ୍ଦନ ମାଜଣା କରି ସ୍ନାନ ବଢ଼ାଇଲେ ।
ନୂତନ ବସନ ପିନ୍ଧି ବେଶ ହେଲେ ତ୍ୱରା
ଅମୃତ ଭୋଜନ କଲେ ହୋଇଣ ତତ୍ପରା ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ରତିଶ୍ରମ ପାଇ ଦଶରଥ ଶୋଇଛନ୍ତି ।
ଦାସୀଗଣ ଯାଇ ଡୋକିଲେକି ପୁଣ
କେତେବେଳ ଯାଏଁ ନିଦ୍ରା ଯାଇଛ ଆପଣ ।
ଶୁଣିଣ ନିଦ୍ରାତେଜି ଦଶରଥ ଉଠି
ନାରାୟଣ ସୁମରଣା ପ୍ରଭାତୁଁ କଲେଟି ।
ମର୍ଦ୍ଦନ ମାଜଣା ଯେ ଦାସୀମାନେ କଲେ
ସୁବାସିତ ଜଳରେ ସ୍ନାନ କରାଇଲେ ।
ନାନାରଙ୍ଗେ ବେଶସାଜି ନଟବର ମୂର୍ତ୍ତି କଲେ
ଦିବ୍ୟ ଅଳଙ୍କାର ରତ୍ନ ଭୂଷଣ ସେ ହେଲେ ।
ଅନ୍ତଃପୁରକୁ ଦଶରଥ ଗଲେ ଧୀର ହୋଇ
ଷଡ଼ରସେ ଭୋଜନ କରିଲେକ ତହିଁ ।
ମୁଖ ପଖାଳନ୍ତେ ଯେ ବିଡ଼ିଆ ଭୁଞ୍ଜାଇ
ଆଡ ଉହାଡେ ରାଣୀମାନେ ଦେଖିଲେକ ଯାଇଁ ।
ସେଠାରୁ ଦଶରଥ ବେଗେ ଚଳିଗଲେ
ବଶିଷ୍ଠ ଋଷିଙ୍କ ପାଶେ ପ୍ରବେଶ ହୋଇଲେ ।
ଋଷିଙ୍କି ଦେଖିଣ ଯେ ନମିଲେ ପୟରେ
ଋଷି ବୋଇଲେ ଯିବା ଗିରିଜା କଟକରେ ।
ଏମନ୍ତ ସମୟରେ ରାଜନ ଯାଇ ମିଳି
ଦେଖିଣ ଦଶରଥ ମାନ୍ୟ ଧର୍ମ କରି ।
ବଶିଷ୍ଠ ବୋଇଲେ ତୁମ୍ଭେ ଶୁଣ ନୃପବର
ଆମ୍ଭେ ଯାଉଅଛୁ ଯେ ଗିରିଜା ନାମେ ପୁର ।
ଗଙ୍ଗବଂଶ ନୃପତି କରିଛି ବରଣ ।
ତୁମ୍ଭ ବରଣ ଆଗେ ତାଙ୍କ ବରଣ ପଛେ ପୁଣ
ଆଗ ତୁମ୍ଭ ଘରେ ଜେମାମଣି ବିଭା ହେଲେ
ତହିଁ ଯାଉଛୁ ବିଭାଘର ହେବ ଭଲେ ।
ହରଷେ ନୃପତି ମେଲାଣି ତାଙ୍କୁ ଦେଲେ
ସନ୍ତୋଷେ ଦଶରଥ ରଥରେ ବସିଲେ ।
ପାତ୍ର ମନ୍ତ୍ରୀ ଋଷି ଯେ ବସିଲେ ରଥେ ଯାଇ,
ଚଳିଲାକି ରଥ ଯେ ଧୀର ଧୀର ହୋଇ ।
ବାହାର ପୁର ଭିତରେ ରାଜନ ପରବେଶ
ରାଣୀମାନଙ୍କୁ କହିଲେ ସକଳ ସନ୍ଦେଶ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଦଶରଥ ପ୍ରବେଶ ଗିରିଜା ନାମେ ପୁରୀ ।
ଚାର ଜଣାଇଲା ଯେ ରାଜାଙ୍କ ଆଗର
ପାତ୍ର ମନ୍ତ୍ରୀ ଘେନି ଆସିଲେ ଦେଖିଲୁ ବାଟର ।
ଶୁଣିଣ ରାଜନ ଯେ ବେଶ ଭୂଷଣ ହେଲେ
ରଥଉପରେ ଯାଇ ବେଗେ ସେ ବସିଲେ ।
ବୈତରଣୀ କୂଳରେ ବରକୁ ଭେଟ ପାଇ
ଦେଖିଣ ଦଶରଥ ନମସ୍କାର ହୋଇ ।
ବାଟ ବରଣ ରାଜା ସେଠାରେ କରାଇଲେ
ବାଦ୍ୟ ନିଶାଣ ଉତ୍ସବେ ନବରେ ଚଳେଧୀରେ ।
ସିଂହଦ୍ୱାରେ ରାଜା ଯେ ହୋଇଲେ ପ୍ରବେଶ
ମନ୍ତ୍ରୀଙ୍କି ଡକାଇଣ କହିଲେ ସନ୍ଦେଶ ।
ବୋଇଲେ ସମସ୍ତଙ୍କୁ ଚରଚା ବେଗେ କର
ଅନ୍ତଃପୁର ପ୍ରବେଶ କର ଯା ସତ୍ୱର ।
ଚିତ୍ରପଟ୍ଟ ନବରରେ ବରକୁ ନେଇ ରଖ
ସୁଖରେ ଚରଚିବୁ ବର ପାଇବେ ସୁଖ ।
ଋଷି ବିପ୍ର ପାତ୍ର ସାମନ୍ତ ଯେତେଛନ୍ତି
ବିପୁଳ ଘରେ ରଖିଣ କର ମନଶାନ୍ତି ।
ଶୁଣିଣ ମନ୍ତ୍ରୀବର ନିଶ୍ଚିନ୍ତେ ରଖିଲା
ଏଥୁ ଅନନ୍ତରେ ତୁମେ ଶୁଣଗୋ ଗଉରା ।

ମଙ୍ଗଳ ଉତ୍ସବ ଯେ ରାଜ୍ୟରେ କରାଇଲା
ଦେବତା ପୂଜାକରି ଦେବୀକି ବନ୍ଦାଇଲା ।
ତୋଳା ପାଣି ଅଣାଇକନ୍ୟାଙ୍କୁ କଲେ ସ୍ନାନ
ରଜନୀ ଶେଷ ହୁଅନ୍ତେ ମଙ୍ଗଳ ବିଧି ପୁଣ ।
ଗିରିଜା ମଣ୍ଡଳରେ ଉତ୍ସବ ଆନନ୍ଦ
ନଟଙ୍କାରୀ ଅପସରୀ ହୋଇଲେ ନାରୀବୃନ୍ଦ ।
ଦଶରଥଙ୍କୁ ବେଶକରି ନବରେ ଘେନିଗଲେ
ରତ୍ନବେଦୀ ଉପରେ ନେଇଣ ବସାଇଲେ ।
ଋଷି ବିପ୍ରଗଣ ଯେ ବେଦ ଧ୍ୟାନ କଲେ
ବରୁଣ ପୂଜାସାରି ଲବଣ ଚାମର କଲେ ।
ବେନିକନ୍ୟା ବେଶକରି ଆଣିଲେ ବେଦୀପର
ଦୁଇକନ୍ୟା ବସିଲେ ଦଶରଥଙ୍କ ପାଶର ।
ରତ୍ନମୁକୁଟ ଶିରେ ବାନ୍ଧିଲେ ତିନି କରି
ଶିଳା ବରଣ ସାରିଣ ବନ୍ଧନ କୁଶେ କରି ।
ରତ୍ନ ଶଙ୍ଖରେ ଶିର ଦେଲେ ଯେ ରାଜନ
ଅନେକ ଧନରତ୍ନ ହସ୍ତୀ ଘୋଡ଼ାମାନ ।
ଗାଈ, ମଇଁଷି, ପାହାନ୍ତି, ସାରେଣି ସେନାପତି
ପାଣିଦ୍ରବ୍ୟ ବିଚିଶସହସ୍ର ରଥ ଦ୍ୟନ୍ତି ।
ଏମନ୍ତ ଗଙ୍ଗବଂଶ ରାଜନ ଦ୍ରବ୍ୟ ଦେଲା
ବର କନ୍ୟାଙ୍କର କୁଶ ବନ୍ଧନ ଫେଡ଼ିଦେଲା ।
ହୋମ ବିଧି ବିତାଇଣ ବିଭା ଯେ ସାରି ପୁଣ
ଅନ୍ତଃପୁର ଭିତରକୁ କଲେ ସେ ଗମନ ।
ଦାସୀମାନେ ଆସିଣ ମଣାଇ ଘେନିଗଲେ
ଭିତର ପୁରରେ ନେଇ ପଶା ଖେଳାଇଲେ
ପଶାଖେଳ ସରନ୍ତେ ଅଇଲେ ରାଣୀ ହଂସ
ଝିଅ ଜୁଆଇଁ ବନ୍ଦାପନା କଲେକ ବିଶେଷ ।
ଅନେକ ଧନରତ୍ନ ଯଉତୁକ ଦେଲେ
ବରକନ୍ୟା ଏକସ୍ଥାନେ ଭୋଜନ କରାଇଲେ ।
ଆନନ୍ଦରେ ଉତ୍ସବ କରାନ୍ତି ପ୍ରତିଦିନ
ଏମନ୍ତେ ଚାରିଦିନ ଗଲାକ ବହି ପୁଣ ।
ଚତୁର୍ଥୀ ଦିନରେ ଯେ ଲଜ୍ୟା ହୋମ କଲେ
ଛଡ଼ରସ ଭୋଜନ କଲେକ କନ୍ୟାବରେ ।
ରତ୍ନଘର ଭିତରକୁ ଦାସୀଗଣ ଗଲେ
ରତ୍ନ ପଲଙ୍କରେ ଦଶରଥ ଯେ ବସିଲେ ।
ବିଡ଼ିଆଭୁଞ୍ଜିଣ ଯେ ହାସ୍ୟରସ କହି
ଭିତରେ ପ୍ରବେଶ ହେଲେ ଦାସୀମାନେ ଯାଇଁ ।

ନୀଳାବତୀ ଜ୍ୟୋତିବତୀ ଦୁହିଁଙ୍କି ବେଶକରି
ସଙ୍ଗରେ ଦାସୀମାନେ ଘେନିଣ ଗଲେ ଚଳି ।
ଦୁଇକନ୍ୟା ଦୁଇ ଯେ ଚାମର ଧରି ପୁଣ
ସ୍ୱାମୀଙ୍କର ପାଶେ ଯାଇ ପ୍ରବେଶ ହୋଇଣ ।
ଚାମର ମାନ ରଖି ଓଲଗି ଯେ ହେଲେ
ପୁଣି ଚାମର ଧରିଣ ଛାମୁରେ ଢାଳିଲେ ।
ଦାସୀମାନେ ଆଲଟ ବିଞ୍ଚଣୀ ପଙ୍ଖା ବିଞ୍ଚି
ଦଶରଥ ଦେଖିଣ ହୋଇଲେ ମନ ଖୁସି ।
ପଲଙ୍କପରୁ ଉଠି କନ୍ୟାଙ୍କୁ କୋଳ କଲେ
ଆଲିଙ୍ଗନ କରିଣ ପାଶରେ ବସାଇଲେ ।
ମୁଖେ ଚୁମ୍ବନ ଦେଇ ମର୍ଦ୍ଦିଲେ କୁଚ ପୁଣ
ଅନ୍ତର ହୋଇଗଲେ ଜାଣି ଦାସୀଗଣ ।
ବାହାର ପ୍ରାଙ୍ଗଣରେ ଦାସୀଗଣ ଶୋଇ
ଅନ୍ତର ହେବାରୁ ଦଶରଥ ତୋଷ ହୋଇ ।
ନୀଳାବତୀର ନୀବିବନ୍ଧ ଫିଟାଇଲେ
ରତିରଙ୍ଗ ବିବିଧ ଛନ୍ଦରେ ସେ କଲେ ।
ବୀର୍ଯ୍ୟ ଖସିବାରୁ ତେଜିଲେ ନାରୀବର
ଜ୍ୟୋତି ବତୀକି ତହୁଁ ସ୍ନେହକଲେ କୋଳ ।
ଜ୍ୟୋତିବତୀର ସଙ୍ଗେ ରତିରଙ୍ଗ ରସ
କରୁ କରୁ ରଜନୀ ହୋଇଗଲା ଶେଷ ।
କାକ ରାବିବାରୁ ଦାସୀଗଣ ଗଲେ ଉଠି
ନୀଳାବତୀ ଜ୍ୟୋତିବତୀଙ୍କୁ ନେଲେ ସେଠି ।
ଅନ୍ତଃପୁରେ ନେଇଣ ମାର୍ଜଣା ବିଧିକଲେ
ସୁବାସିତ ଜଳରେ ସ୍ନାନ କରାଇଲେ ।
ନିତ୍ୟକର୍ମ ସାରିଣ ଭୋଜନ ସେ କରି ।
ଷଡ଼ରସ ଭୋଜନରେ ତୃପତି ଦୁଇ ନାରୀ ।
ରତ୍ନ ପଲଙ୍କରେ ବସିଲେ ସେ ଯାଇ
ବିଡ଼ିଆ ଭୋଜନ କରି ଅଛ ସେ ନିଦ୍ରା ଯାଇ ।
ଏଥୁ ଅନନ୍ତରେ ଶୁଣ ଗୋ ହୈମବନ୍ତୀ
ଦଶରଥଙ୍କୁ ଘେନି ଗଲେ ଦାସୀ ପନ୍ତି ।
ମର୍ଦ୍ଦନ ମାର୍ଜଣା କରି ସ୍ନାନ କରାଇଲେ
ନୂତନ ବସ୍ତ୍ର ପିନ୍ଧି ତିଳକ ଲାଗି ହେଲେ ।
ଷଡ଼ରସେ ଭୋଜନ କରାଇଲେ ନେଇ
ଆଚମନ କରାଇ ବିଡ଼ିଆ ଭୁଞ୍ଜାଇ ।
ରତ୍ନ ପଲଙ୍କ ଉପରେ ନେଇ ବସାଇଲେ
ରାଜବିଧି ବେଶ ଦଶରଥଙ୍କୁ କରାଇଲେ ।

ନାନାବିଧି ଅଳଙ୍କାର ଶରୀରେ ଖଞ୍ଜିଦେଲେ
ଦେବତା ପ୍ରାୟେ ଦଶରଥ ବିରାଜିଲେ ।
ବେଶହୋଇ ଦଶରଥ ବାହାରକୁ ଗଲେ
ବଶିଷ୍ଠ ଋଷିଙ୍କ ନମସ୍କାର ହେଲେ ।
ଗଙ୍ଗବଂଶ ରାଜାଙ୍କୁ କଲେକ ନମସ୍କାର
ବଶିଷ୍ଠ ବୋଇଲେ ବେଗେ ଚାଲରେ କୁମର ।
କନକଧ୍ୱଜ ରଥ ଉପରେ ବିଜେକର
ଶୁଣିଣ ଦଶରଥ ଚଳିଗଲେ ଖର ।
କନକଧ୍ୱଜ ରଥ ଉପରେ ବସିଲେ
ଗଙ୍ଗବଂଶ ରାଜାଙ୍କୁ ବଶିଷ୍ଠ କହିଲେ ।
ବେଗେ ଆମ୍ଭଙ୍କୁ ବିଦାୟ କରହେ ରାଜନ
ଶୁଣି ନରପତି ଚଳିଲେ ବହନ ।
ବେଶକରି ଦୁହିତା ସମର୍ପିଦେଲେ ଆଣି
ଦୁଇଶତ ଦାସୀ ସଙ୍ଗରେ ଦେଲେ ପୁଣି ।
ଯଉତୁକ ପଦାର୍ଥ ସମ୍ଭର୍ବ କରିଦେଲେ
ହାତୀରଥି ପାଇକ ସଙ୍ଗରେ ଗମିଲେ ।
ବାଦ୍ୟର ଶବଦରେ ପୁରଇ ଜଗତ
ବିରଜା ମଣ୍ଡଳରୁ ବାହାର ଦଶରଥ ।
କୋଳରେ ଦୁଇକନ୍ୟା ଆଗରେ ଦାସୀଗଣ
ଆଲଟଚାମର ପଙ୍ଖା ପକାନ୍ତି ସେହୁ ପୁଣ ।
ବୈତରଣୀ ପାରହୋଇ ମେଳ ହୋଇଗଲେ
ମେଲାଣି ମାଗି ରାଜା ନିଜରାଜ୍ୟେ ଗଲେ ।
ସେଠାରୁ ଦଶରଥ କାଶୀଦେଶେ ମିଳି
ଦେଖିଣ କାଶୀ ରାଜା ଆନନ୍ଦ ମନେ ଭାଳି ।
ଯଉତୁକ ଦ୍ରବ୍ୟମାନ ବେଗେ ଆଣିଦେଲା
ଦୁହିତାଙ୍କୁ ବେଶକରି ନେଇଣ ସମର୍ପିଲା ।
ବଡାଇ ସମ୍ଭର୍ବରେ ଚଳେ ଦଶରଥ
ସଙ୍ଗରେ ଗଙ୍ଗା କୂଳକୁ ଅଇଲେ କାଶୀନାଥ ।
ଆପଣାର ରାଜ୍ୟରେ ପ୍ରବେଶ ସାତଦିନେ
ଚାର ଜଣାଇଲେ ରାଜା ଆଗରେ ତକ୍ଷଣେ ।
ଅତି ସମ୍ଭର୍ବରେ ଯେ ଅଇଲେ କୁମର
ପ୍ରବେଶ ହୋଇଲେ ଆସି ସରଯୁ ନଦୀତୀର ।
ଆନନ୍ଦେ ଆଜ ନୃପତି ବହନ ଚଳିଲେ
ଉଜ୍ଜଳଗିରି ତଳରେ ପୁତ୍ରକୁ ଭେଟିଲେ ।
ରଥରୁ ଓହ୍ଲାଇଣ କୁମର ବେଗେ ଆସି
ପିତାଙ୍କ ଚରଣେ ନମିଲେ ବିଶେଷି ।
ଦେଖିଣ ନୃପତି ହରଷମନ ହେଲେ
ଚତୁରଙ୍ଗ ବଳ ନନ୍ଦିଗ୍ରାମରେ ରଖିଲେ ।
ପୁତ୍ରବଧୂ ଘେନି ନିଜ ନବରେ ପ୍ରବେଶ
ଦାସୀଗଣ ଭିତରକୁ ନେଲେ ହୋଇ ହର୍ଷ ।
ଦୁଇ ନବରେ ଯାଇ ରହିଲେ ବଧୂଗଣ
ଏଠାରୁ ଦଶରଥଙ୍କୁ ବିଭା ହେଲେ ପୁଣ ।
ପାର୍ବତୀ ବୋଇଲେ ଦେବ ତୁମ୍ଭେ ଏବେଶୁଣ
ଦଶରଥ ରାଜାଙ୍କର ସାତଶ ପଚାଶରାଣୀ ଜାଣ ।
ବତିଶ ବରଷ ଯେ ଦଶରଥଙ୍କୁ ପୁଣ
ଦଶସହ୍ସ୍ର ବର୍ଷରୁ ସହ୍ସ୍ରେ ବର୍ଷ ଊଣା ଜାଣ
ଦଶ ବର୍ଷ ପୂରିଲେ ମରିବେ ଅଜରାଜା
ଈଶ୍ୱର ବୋଇଲେ ତୁମ୍ଭେ ଶୁଣଗୋ ଗିରିଜା ।
ପୁତ୍ରକୁ କିମ୍ପା ରାଜ୍ୟରେ ନକଲେ ସେ ରାଜା
ପୁତ୍ରର ସାମର୍ଥ୍ୟ ଯହିଁ ଦେଖିଲେ ପୁଣି ରାଜା ।
ଏଥିରେ ତିନି ବରଷକାଳ ବହିଗଲା
ଅଯୋଧ୍ୟା ନଗ୍ରେ ପୁତ୍ରକୁ ଅଭିଷେକ କଲା ।
ଷଡ଼ ମାସ ପର୍ଯ୍ୟନ୍ତେ ରବୀର ନନ୍ଦନ
ଜମ୍ବୁଦ୍ୱୀପ ଦେଖିବାକୁ କଲେ ଯେ ଗମନ ।
ଫେରିଣ ଶୂନ୍ୟରେ ଦେଖିଲେ ସବୁସ୍ଥାନ
ଅଯୋଧ୍ୟା ନଗରକୁ ଚାହିଁଲେ ଶନି ପୁଣ ।
ଅଜ ନାମେ ନୃପତି ପଶା ଖେଳୁଥିଲା
ତାଠାରେ କାଳଦେବତା ନଜର ପଡ଼ିଲା ।
ଚିତ୍ରଗୁପତଙ୍କୁ ପଚାରେ ଜନ୍ତୁପତି
ଏ ରାଜାର ଅଟଇ ଯେ ବଡ଼ ତେଜ ମୂର୍ତ୍ତି ।
ଚିତ୍ରଗୁପ୍ତ କହିଲେ ଶୁଣ ଦଣ୍ଡଧାରୀ
ତପନ କୁଳରେ ରାଜା ଅଂଶ ଯେ ତୁମ୍ଭରି ।
ସୁରବନ୍ତ ନାମରେ ଏକଇ ରବି ପୁଣ
ଛାୟାବତୀ ଠାରୁ ପୁତ୍ର ଜାତ ହେଲା ଜାଣ
ସେ ପୁତ୍ରନାମ ଦେଲା ଇନ୍ଦ୍ରର ଶନିଜାଣ
ପାପ ପୁଣ୍ୟ ବୁଝିଣ ପ୍ରାଣୀଙ୍କି ଦଣ୍ଡେ ଜାଣ
ଈଶ୍ୱରଙ୍କ ପୁତ୍ର ସଙ୍ଗେ ବିମନା ହୋଇଲା
କାଳେ ଗଣପତିର ବାହନ ହୋଇଲା ।
ସୁରବନ୍ତ ରବି ଯେ ମର୍ତ୍ତ୍ୟକୁ ଗଲା ଜାଣ
ବୀରଧୁ ରାଜାଙ୍କୁ ମାରି ପ୍ରୀତିକଲା ପୁଣ ।
ତାଠାରୁ ଜାତହେଲେ ସଗର ନୃପତି
ସପତ ସାଗର ଭିଆଣ ସେହିକଲେ ସ୍ଥିତି ।

ସେଠାରୁ ତପନକୁଳ ବୋଲାଇଲା
ଅନେକ ମହିମା ଯେ ବିଖ୍ୟାତ ତାର ହେଲା ।
ସେ ରାଜା ଯାଇ ଇନ୍ଦ୍ରଙ୍କୁ ଜିଣିଲା ଯେ ବଳେ
ବରଷେ ସୁରପୁରେ ରାଜା ଯେ ବାହୁବଳେ ।
ତେତିଶକୋଟି ଦେବତା ତାହାଙ୍କୁ ସେବାକଲେ
ବରଷକେ ଫେରି ସେ ମର୍ତ୍ତ୍ୟରେ ରହିଲେ ।
ସାତବରଷ ଆୟୁଷ ଅଛି ଯେ ଏହାର
ପୂରିଲେ ବୈକୁଣ୍ଠକୁ ଯିବ ନୃପବର ।
ଜନ୍ତୁପତି ବୋଇଲେ ଏହାକୁ ଆଣ ଧରି
ମନ୍ତ୍ରୀ ବୋଇଲେ ଅବିଚାର ନକରଦଣ୍ଡଧାରୀ ।
ଧର୍ମବନ୍ତ ରାଜା ଯେ ଅଟଇ ସେହୁ ଜାଣ
ଲଙ୍ଘିଲେ ବେଳରେ ତୁମ୍ଭେ ହେବ ଅକାରଣ ।
ଶୁଣିଣ ଜନ୍ତୁପତି ମନରେ କ୍ରୋଧହେଲା
ମର୍ତ୍ତ୍ୟପୁର ରାଜା କିସ କରିବ ବୋଇଲା ।
କାଳପାଶ ଶର ଅଜରାଜାପରେ ପଡ଼ି
ପଶାଖେଳଠାରେ ରାଜାର ପ୍ରାଣ ଗଲା ଛାଡ଼ି ।
ଦେଖିଣ ହାଲହୋଳି ପଡ଼ିଲା ନଗ୍ରରେ
ଦଶରଥ ଆଗରେ କହିଲେ ଯାଇ ଚାରେ ।
ପିତା ତୁମ୍ଭର ଖେଳ ଖେଳୁଥିଲେ ଜାଣ
ଅକାରଣେ ଜନ୍ତୁପତି ହରିଲା ତାଙ୍କ ପ୍ରାଣ ।
ଶୁଣିଣ ଦଶରଥ ଉଚ୍ଚେ ରୋଦନ କଲେ
କେଣେ ଛାଡ଼ିଗଲ ପିତା ବୋଲିଣ ବୋଇଲେ ।
ବଶିଷ୍ଠ ଋଷି ଆସିଣ ତାଙ୍କୁ ପ୍ରବୋଧିଲେ
ଅକାରଣେ ରୋଦନ ନକର ବୋଇଲେ ।
ଦଶରଥ ବୋଇଲେ କହ ହେ ମୁନିବର
କେତେଦିନ ଆୟୁଷ ଥିଲା ମୋ ପିତାଙ୍କର ।
ବଶିଷ୍ଠ ବୋଇଲେ ଆୟୁଷ ଶେଷ ହୋଇନାହିଁ
ସପତ ବରଷ ପିତା ରହନ୍ତେ ଦେହ ବହି ।
ଦଶରଥ ବୋଇଲେ ହୋଇଲା କଥାମନ୍ଦ
ଆୟୁଷ ନପୂରୁ ଯେବେ ଯମ କଲା ଦ୍ୱନ୍ଦ୍ୱ ।
ତେବେ ସେ ଧର୍ମ ଏବେ ଲଙ୍ଘିଲେ ଜନ୍ତୁପତି
ଧର୍ମ ଦେବତା ହୋଇ କରିଲା ଅନୀତି ।
ବଶିଷ୍ଠ ବୋଇଲେ ଯେ ହୁଅଇ ଜନ୍ତୁପତି
ସବୁଦିନେ ଅଧର୍ମ ଧର୍ମରେ ନୁହେଁ ମତି
ତାକୁ ଲଙ୍ଘିବାକୁ କେହି ନୁହେଁ ବଳବାନ
ଏହି କାରଣରୁ ସେ ପାଇଛି ବା ପଣ ।

ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ମାରକଣ୍ଡ ଋଷି ଯେ ପ୍ରବେଶ ହେଲେ ତଥି ।
ଦେଖିଣ ଦଶରଥ ନମିଲେ ମୁନିପାଦେ
ଶୋକଭର ହୋଇଣ କହିଲେ ଗଦ ଗଦେ ।
ବୋଇଲେ ମୋ ପିତାପ୍ରାଣ ଯମ ହରିନେଲା
ସପତ ବରଷ ଯେ ଆୟୁ ତାଙ୍କର ଥିଲା ।
ମାରକଣ୍ଡ ବୋଇଲେ ଶୁଣ ମୋ ବଚନ
ବିନାଦୋଷେ ଦଣ୍ଡ ଦେଲା ରବିର ନନ୍ଦନ ।
ପାରିବୁକି ସଞ୍ଜୀବନୀ ପୁରକୁ ତୁ ଯାଇ
ଜନ୍ତୁପତିର ପ୍ରାଣକୁ ପାରିବୁ କି ଦହି ।
ତେବେ ତୋର ପିତା ଯେ ପାଇବେ ଜୀବନ
ଶୁଣିଣ ଦଶରଥ କହିଲେ ନିଜନ ।
ସେକାଳ ଦେବତା ମୁଁ ଅଟଇ ମନୁଷ୍ୟ
ତାରସଙ୍ଗେ ଯୁଦ୍ଧକଲେ ନୋହିବ ମୋରଯଶ ।
ମାର୍କଣ୍ଡ ବୋଇଲେ ତେବେ ଦେଲୁ ଆମ୍ଭେବର
କାଳ ଦେବତା ଶରେ ତୋର ଅତୁଟଶରୀର ।
ବଜ୍ରଅଙ୍ଗ ହେଉ ତୋର ତୁଟ ନୋହୁ ବପୁ
କାଳ ଦେବତାକୁ ଜିଣି ରହୁ ତୋର ବପୁ ।
ଦଶରଥଙ୍କୁ ମୁନି କହିଲେ ବଚନ
ବଡ଼ ପାଟରାଣୀ ତୋର ସାଥିହେବ ପୁଣ ।
ଶୁଣିଣ ଦଶରଥ ଭିତର ପୁର ଗଲେ
କୈକୟୀ ରାଣୀ ପାଖରେ ରୋଦନ ସେ କଲେ
ପାଟରାଣୀ ବୋଇଲେ ଶୁଣ ହେ ପ୍ରାଣନାଥ
କାହାର ପିତା ମାତା ଅଛନ୍ତି ଜଗତ ।
ଦଶରଥ ବୋଇଲେ ଆୟୁଷ ବଳ ଥାଉଁ
ମର୍ତ୍ତ୍ୟପୁର ଧର୍ମ ଯେ ଲଙ୍ଘିଲା ଜନ୍ତୁରାହୁ ।
ପାଟରାଣୀ ବୋଇଲେ କି ଯୁଝିବ ତାରସଙ୍ଗେ
ଦଶରଥ ବୋଇଲେ ପ୍ରସନ୍ନ ହୁଅ ଏବେ ।
କୈକେୟୀ ବୋଇଲେ ମୁଁ କି ସହି କରିବି
ଦଶରଥ ବୋଇଲେ ସାରଥି ହୁଅ ବେଗି ।
କୈକେୟୀ ବୋଇଲେ ମୁଁ ସାରଥି ହେବି ଯେବେ
ସ୍ତିରୀପରି ବେଶଟିଏ ସାଜ ତୁମ୍ଭେ ତେବେ ।
ଶୁଣିଣ ଦଶରଥ ସ୍ତିରୀବେଶ ହେଲେ
ବିଦ ମୁଦି ବାହୁଟି ହସ୍ତରେ ଲଗାଇଲେ ।
ପାଦେ ପାଦ ଭୂଷଣ କଟିରେ ମେଖଳା
ଚାପସରି ମାଳା ମସ୍ତକେ ବେଶ ତ୍ୱରା ।

କୈକେୟୀ ପାଟରାଣୀ ଦ୍ୱାରାରେ ବେଶପୁଣ
ଦଶରଥ ଧରିଲେ ଚାରିଟି ଧନୁତୂଣ ।
ରଥର ଉପରେ ଯାଇଣ ବିଜେକଲେ
ଅନ୍ତରୀକ୍ଷେ ସାତବାରୁ ରଥରେ ଯୋଚିଲେ ।
ସେ ସାତ ବାରୁକୁ ବଶିଷ୍ଠ ବଜ୍ରକଲେ
ପ୍ରସନ୍ନ ହୋଇଣ ସେ ତାହାଙ୍କୁ ବରଦେଲେ ।
ବୋଇଲେ ଦେବତାପୁରେ ଅତୁଟ ତୁମ୍ଭେ ହୁଅ
ପାର୍ବତୀ ବୋଇଲେ ଦେବ ଲାଗିଲା ସନ୍ଦେହ ।
ଦଶରଥ ମାର୍କଣ୍ଡ ଋଷିର ବୋଲେ ଟାଣ
ସପ୍ତଅଶ୍ୱ ବଶିଷ୍ଠ ବରରେ ଟାଣ ଜାଣ ।
କୈକେୟୀ ରାଣୀକି କେହୁ ଯେ ବରଦେଲା
ରାଣୀର ଶରୀର କିପରି ବଜ୍ର ହେଲା ।
ଈଶ୍ୱର ବୋଇଲେ ଶୁଣ ଗୋ ଗଉରା
ଅପ୍ରାଜିତା ଋଷି ଯେ ସ୍ତିରୀଙ୍କ ଗୁରୁପରା ।
ତାହାଙ୍କୁ ସୁମରଣା କଇକେୟୀ କଲେ
ଋଷିଙ୍କି ଦେଖି କୈକେୟା ନମସ୍କାର ହେଲେ ।
ଚିତ୍ତଜାଣି ଋଷି ଯେ ବର ତାକୁ ଦେଲେ ।
ବୋଇଲେ ଅତୁଟ ଅମର ତୁ ଯେ ହୁଅ
ଯେବେ ଇଚ୍ଛା କରିବୁ ତେବେ ମୃତ୍ୟୁପାଅ ।
ଏତେ କହି ଋଷି ଯେ ବଶିଷ୍ଠ ପାଶେ ଗଲେ
ତିନି ଋଷି ମେଳ ହୋଇ ଏକତ୍ର ବସିଲେ ।
ବୋଇଲେ ଆନକଥା ହୋଇବ ଭିନ୍ନ ଭିନ୍ନ
ଶନିଙ୍କ ସଙ୍ଗେ ରଣ କରିବେ ରାଜନ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ନାରଦ ମହର୍ଷି ଯେ ଥିଲେ ସ୍ୱର୍ଗପୁରୀ ।
ସୁରପତିଙ୍କ ଆଗେ କହିଲେ ପବନ
ବୋଇଲେ ଦେବ ଶନି ଅନ୍ୟାୟ କଲେ ଜାଣ ।
ଧର୍ମକୁ ଲଙ୍ଘିଣ ଯେ ପାପ ଆଚରିଲେ
ତପନ କୁଳେ ରାଜା ଅଜ ନୃପତି ଥିଲେ ।
କୌଣସି ଦିନେ ଅଧର୍ମ ନାହିଁ ତାଙ୍କରିଟି
ତାହାକୁ ନାଶ କଲା କଶ୍ୟପର ନାତି ।
ସାତ ବରଷ ତାର ଅଛଇଁ ଆୟୁଷ
ତାଙ୍କୁ ଧରି ନାଶକଲା ବିରଞ୍ଚିର ଶିଷ୍ୟ ।
ତାହାର କୁମର ସେ ଦଶରଥ ପୁଣ
ବଶିଷ୍ଠଙ୍କୁ ପଚାରି ଧରିଲେ ଦୁର୍ଗୁଣ ।

ମାର୍କଣ୍ଡ ଅପ୍ରଚେତା ଋଷି ଯାଇ ମିଳି
ଦଶରଥଙ୍କୁ ଅତୁଟ ବର ଯେ ଆଞ୍ଜା କରି ।
ଶନି ସଙ୍ଗରେ ଯୁଦ୍ଧକୁ ସାଜ ଦଶରଥ
ନିଶ୍ଚେ ସଞ୍ଜୀବନୀ ପତି ହୋଇବ ଆଜହତ ।
ପବନଠାରୁ ଶୁଣି ବୋଲେ ଶଚିପତି
ଅଧର୍ମ ଅନୀତି ଯେବେ କଲା ଜନ୍ତୁପତି ।
ରବିର ନନ୍ଦନ ଗର୍ବ ତାର ହେଲା ବଡ଼
ପ୍ରାଭବ ନପାଇଲେ ନତୁଟିବ ହୁଡ଼ ।
ନାରଦଙ୍କୁ ବୋଇଲେ ସଞ୍ଜୀବନୀକି ଯାଅ
ଶନିକି କହିଣ ସଜାଡ଼ିଣ ଦିଅ ।
ଶୁଣିଣ ନାରଦ ଯେ ବେଗେ ଚଳିଗଲେ
ସଞ୍ଜୀବନୀ ପୁରେ ଯାଇ ପ୍ରବେଶ ହୋଇଲେ
ଦେଖିଣ ଜନ୍ତୁପତି ମାନ୍ୟଧର୍ମ କଲା
କେଣେ ଅଇଲ ଋଷି ବୋଲି ପଚାରିଲା ।
ନାରଦବୋଇଲେ ଆମ୍ଭେ ଅଇଲୁ ତୋତେ ଦେଖି
କାଲି ତୋର ସଞ୍ଜୀବନୀ ପୁର ହେବ ଦୁଃଖୀ ।
କ୍ରୋଧରେ ଜରଜର ହୋଇଣ ଶନି କହି
ମୋତେ ମାରିବାକୁ କେ ସମର୍ଥ ଅଟଇ ।
ନାରଦ ବୋଇଲେ ତୋର ମନକୁ ତୁ ବଡ଼
ପିତା ତୋର ରବି ସେ ନୋହିଲା ଏବେ ଗାଢ଼ ।
ମତ୍ତଗର୍ବେ ଦିନାକେତେ ମତ୍ତ ହୋଇଥିଲା
ସିଂହିକା କୁମର ରାହୁ ତ୍ରିପୁତି କରାଇଲା ।
ପିତା ତୋର ରାହୁର ସଙ୍ଗେ ଯୁଦ୍ଧକଲା
ତାଙ୍କୁ ଧରି ରାହୁ ଗର୍ଭକୁ କ୍ଷେପିଲା ।
ବାସୁଦେବଙ୍କୁ ସ୍ମରଣ କରିବାରୁ ଜାଣ
ରାହୁର ଗର୍ଭୁ ତୋ ପିତା ବାହାରିଲା ପୁଣ ।
ସେହି ମତ୍ତଗର୍ବ ଏବେ ଧରିଲୁରେ ବଳା
ଜୀବନ ରଖିବୁ ଯେବେ ସଞ୍ଜୀବନୀ ପଳା ।
ନୋହିଲେ ଦଶରଥ କରିବ ପ୍ରାଣେ ନାଶ
ନିଶ୍ଚୟ ନିୟତି ତୋର ପୂରିଲା ଅବଶ୍ୟ ।
ଦଶରଥ ପିତା ଯେ ଅଟଇ ଅଜରାଜା
ଦେବଙ୍କ ଉପକାର ଅଟଇ ସେ ତେଜା ।
ଇନ୍ଦ୍ର ଏହି ରୂପରେ ମତ୍ତଗର୍ବ ହେଲେ
ତାର ସଙ୍ଗେ ଯୁଝନ୍ତେ ହାରିଣ ପଳାଇଲେ ।
ବେଦବର କହିବାରୁ ଅଜ ଯେ ନୃପତି
ସ୍ୱର୍ଗପୁର ଇନ୍ଦ୍ରକୁ ଦାନ ଦେଲା ସେଟି ।

ତେବେ ସେ ନିଶ୍ଚିନ୍ତରେ ରହିଲେ ସୁରରାଜା
ତାହାର ଜୀବନ ଦୂରେ ହରିଅଛୁ ଦ୍ୱିଜା ।
ଖଣ୍ଡିଆ ହୋଇ ତୁହି ଏକଇ ଗୁମାନି
କେ ରକ୍ଷା କରିବ ଆଜ ଦେଖିବାରେ ପୁଣି ।
ବାପ ତୋହର ରବି ସମ୍ଭାଳୁ ଆସି ତୋତେ
ଦଶଦିଗପାଳେ ଆବୋରିବେକି ତୋତେ ।
ତ୍ରିଦଶ ଦେବେ ଯେବେ ଫଉୋଇ କରିବେ
ସ୍ୱର୍ଗପୁରେ ଗୋଟିଏ କେହି ନ ରହିବେ ।
ଶୁଣିଣ ଜନ୍ତୁପତି କ୍ରୋଧେ ପୁର କହି
ଦଶରଥକୁ ମୁନି ରଖ ଏବେ ଯାଇ ।
ନର ସିନା ମୁନିଙ୍କର ଅଟନ୍ତି ପ୍ରତିକାର
ମନ୍ତ୍ର ଧର୍ମ ଶୁଣାଇ ହୋଇଣ ଅଛ ବଡ଼ ।
ଏବେ ଯାଇ ତାହାକୁ ସହାୟ ତୁମ୍ଭେ ହୁଅ
କିକରି ପାରିବ ମୋତେ ଅଜ ରାଜା ପୁଅ ।
ଶୁଣିଣ ନାରଦ ଯେ କ୍ରୋଧଭରେ ବସି
କି ବୋଲି ବୋଇଲୁ ଲଙ୍କାଗଡ଼ ଦଣ୍ଡୁଆସି ।
ଶୁଣି ଶନିଶ୍ଚର ଭୟ ଦେଖାଇଣ ଚାହିଁ
ନାରଦ ବୋଇଲେ ତୁ କୂଳୁ କୂଳା ପ୍ରାୟ ହୋଇ ।
ଏମନ୍ତ କହି ନାରଦ ବେଗେ ଉଠିଗଲେ
ଅଯୋଧ୍ୟା ନଗରରେ ପ୍ରବେଶ ହୋଇଲେ ।
ନାରଦଙ୍କୁ ଦେଖିଣ ଦଶରଥ ଉଠି
ଚରଣ ତଳେ ପଡ଼ି କାନ୍ଦିଲେ କୁହାଟି ।
ନାରଦ ବୋଇଲେ ବାବୁ କି ଲାଗି କରୁକୋହ
ଦଶରଥ ବୋଲେ ମୋ ପିତାକୁ ମାରିଲା ରବିପୁଅ ।
ତୋ ପିତାକୁ ଯେବେ ମାରିଲା ମୁହାମ୍ଭା
ତୁ ତାକୁ ମାରିଲେ ତ ତୁଟିବ ସବୁ ଚିନ୍ତା ।
ଯାଅ ଏବେ ବାବୁରେ ଶନିକି ନାଶକର
ଏମନ୍ତ ଆଜ୍ଞା ତାକୁ ଦେଲେ ମୁନିବର ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଚିତ୍ର ଗୁପତକୁ ଡାକି ଭାଳେ ଜନ୍ତୁପତି ।
ଚିତ୍ର ଗୁପତ ବୋଇଲେ ଶୁଣ ଦଣ୍ଡଧର
ଦଶସସ୍ର ବରଷ ଯେ ପରମାୟୁ ତାର ।
ବତ୍ରୀ ଶହ ବର୍ଷ ଭୋଗ ହୋଇଛି ରାଜାର
ଜନ୍ତୁପତି ବୋଇଲେ ପ୍ରାଣ ହରିବି ତାହାର
ମନ୍ତ୍ରୀ ବୋଇଲେ ଏହା ନୁହଇ ଉଚିତ
ବଡ଼ପଣ ସରିଯିବ ଏକଥା ନିୟତ ।

ଧର୍ମକୁ ଲଙ୍ଘିଲେ ନ ରହେ କେହି ଚିର
ଧର୍ମହୀନ କର୍ମକଲେ ନାଶଟି ନିଜର ।
ଶନି ବୋଇଲେ ମୋର ସଙ୍ଗେ ତୁମ୍ଭେ ଚଳ
ଅନର୍ଥକଲେ ସେହୁ ମରିବ ଏ ବେଳ ।
ଚିତ୍ର ଗୁପତ ବୋଇଲେ ଆମ୍ଭେ ଯିବୁ ନାହିଁ
କେତେ ଯମ ଗଲେଣି ଆମ୍ଭେ ଅଛୁଁ ରହି ।
ସବୁ ଜୀବଠାରେ ପ୍ରସନ୍ନ ଆମ୍ଭେ ଦୃଶ୍ୟ
ତେଣୁ ପାପ ପୁଣ୍ୟ ସିନା କରୁ ପରକାଶ ।
ଈଶ୍ୱର ସର୍ବଦେହେ ବିଜୟ କରିଛନ୍ତି
ଜୀବଙ୍କର ଜୀବ ସେ ଈଶ୍ୱର ଅଟନ୍ତି ।
ପରମେଶ୍ୱର ଯେ ଅଟନ୍ତି ନାରାୟଣ
ପରମେଶ୍ୱର ଶରୀରେ ଚେତନା ସେ ଜାଣ ।
ଯେଉଁ ପ୍ରାଣୀମାନେ ମୂର୍ଖପଣେ ଥାନ୍ତି
ଜୀବ ପ୍ରତି ଦୟା ଧର୍ମ କିଛି ନ କରନ୍ତି ।
ଅଗ୍ନି ଯେ ଜୀବର ହୃଦୟ ଗତେ ଥାଇ
ଭକ୍ଷିବାକୁ ଆହାର ଜୀର୍ଣ୍ଣ କରିଦେଇ ।
ଗଙ୍ଗା ଯେ ଜୀବର ହୃଦରେ ପରକାଶ ।
ତେଣୁ ରକ୍ତମାଂସ ରିପୁ ପରକାଶ ।
ପଞ୍ଚ ଦେବତା ପଞ୍ଚସ୍ଥାନରେ ରହି
ପଚିଶ ପ୍ରକୃତିରେ ତାହାକୁ ଚଳାଇ ।
ତୁମ୍ଭର ଯେବେ ବଳ ଅଛି ରବିସୁତ
ଧର୍ମକୁ ଲଙ୍ଘି ତା ତୁଲେ କର ବଳ କୃତ ।
ଚିତ୍ର ଗୁପତ ମନ୍ତ୍ରୀ ଦୁଇ ଏହା କହି
ଆମ୍ଭେ ଗଲେ ସଞ୍ଜୀବନୀ ପୁର ନ ରହଇ ।
ଏହା ଶୁଣି ଯମ ଶମନକୁ ଅଣାଇଲା
କାଳ ବିକାଳ ଦୁହିଁଙ୍କୁ ଡକାଇ କହିଲା ।
ବୋଇଲା ମର୍ତ୍ତ୍ୟପୁରକୁ ଆମ୍ଭେ ଯିବା ପୁଣ
ଅଜୀବର ଜୀବରେ ମୋର ପ୍ରଭୁପଣ ।
ଦଶରଥ ରାଜାକୁ ଆଣିବା ସଞ୍ଜୀବନୀ
ମୋହର ଉପରେ ସେ ରାଗିଅଛି ପୁଣି ।
କାଳ ବିକାଳକୁ ସେ କହିଲା ଏ ବାଣୀ
ମୃତ୍ୟୁ ମହିଷି ଉପରେ ଚଢ଼ିଲା ଜନ୍ତୁମଣି ।
ଲୁହାର ରଥ ଗୋଟିଏ ସଙ୍ଗତରେ ନେଲା
ଜମ୍ବୁଦ୍ୱୀପ ମଧ୍ୟରେ ପ୍ରବେଶ ହୋଇଲା ।
ନାରଦ ବୋଇଲେ ଶୁଣ ଦଶରଥ
ଶନି ଦେବତା ଅଇଲେ ଦିଶୁଅଛି ତା ରଥ ।

ଶୁଣିଣ ଦଶରଥ ଚାରଧନୁ ଧରି
ଗୁଣଟଙ୍କାର କରିଣ ମୁଖରେ ଘୋଷେ ହରି ।
ଏମନ୍ତ ସମୟେ ଯମ ପ୍ରବେଶ ହୋଇଲା
ଦଶରଥକୁ ବାନ୍ଧି ମୃତ୍ୟୁଦେବକୁ କହିଲା ।
ମୃତ୍ୟୁଦେବତାବୋଲେ ଧନୁରେ ମୋତେଯୋଚ
ତେବେସିନା ମୁହିଁ ଯାଇ ଧରିବି ଦଶରଥ ।
ଶୁଣିଣ ଶନି ବେଗେ ଧନୁରେ ନେଇ ଯୋଚି
ଯୋଚିବାରୁ ସେ ଶର ଆସଇ ପୃଥ୍ୱୀଘୋଟି ।
ଦେଖିଣ ଦଶରଥ ଅନନ୍ତ ପାଶ ପେଶି
ମୃତ୍ୟୁ ଦେବତାଙ୍କୁ ବାନ୍ଧିଲା ଆକର୍ଷି ।
ଦେଖିଣ ଯମ କାଳପାଶକୁ ଯେ ପେଷି
ଦଶରଥ ବଜ୍ରଶରେ ତାହାକୁ ବିନାଶି ।
ବକ୍ଷସ୍ଥଳ ଫୁଟାଇ ଭୂମିରେ ବସିମାଡ଼ି
କାଳ ଦେବତା ଶରୀରୁ ଜୀବଗଲା ଛାଡ଼ି ।
ଦେଖିଣ ଶନିରାଜା ବିକାଳ ପେଷି ଦେଲା
ଆସନ୍ତେ ଦଶରଥ ଦୂରରୁ ଦେଖିଲା ।
ଶିବ ଶକ୍ତି ପେଷନ୍ତେ ପଶିଲା ବକ୍ଷସ୍ଥଳ
ଧରଣୀରେ ପକାଇ ଶକ୍ତି ବସିଲା ତାରପର ।
ଦେଖିଣ ଶନି ଦେବତା ପିତାଭ ଶର ପେଶି
ଦଶରଥ ଚନ୍ଦ୍ରଶରେ ବେଗେଣ ତାକୁ ନାଶି ।
ଦେଖିଣ ରବିସୁତ ବିନ୍ଧିଲା ଅଗ୍ନିଶର
ଦଶରଥ ଜଳଧାରା ଶରେ କଲେକ ନିବାର ।
ଦଶରଥ ରାଜନ ନୀଳବାଣ ମାରି ।
ମୃତ୍ୟୁ ମହିଷୀକି ଯେ ମୋହକଲେ ଧରି ।
ଧରଣୀର ଉପରେ ପଡ଼ିଲା ମହିଷି
ପର୍ବତ ସମାନରେ ଶରୀର ତା ଦିଶି ।
ମୃତ୍ୟୁ ମହିଷି ପଡ଼ନ୍ତେ ଶନି ବେଗେ ଗଲା
ଲୌହଦଣ୍ଡ ରଥରେ ନିଶ୍ଚିନ୍ତେ ବସିଲା ।
ପେଷିଲା ଅନେକ ଶର ରବିର ନନ୍ଦନ
ଦଶରଥ ବସିଣ ପେଶଇ ଶର ଘନଘନ ।
ଏମନ୍ତ ସାତଦିନ ସାତରାତ୍ର ବହିଗଲା
କେଭେ ଦଶରଥଙ୍କୁ ରବିସୁତ ନ ପାରିଲା ।
ଦେଖିଣ ଦଶରଥ କ୍ରୋଧରେ ଜରଜର
ନାରାୟଣ ଶରକୁ ବିନ୍ଧିଲା କୋପଭର ।
ଚଳିଲା ନାରାଚ ଗର୍ଜନ ନାଦ କରି
ଶନି ଦେବତା ଅଙ୍ଗରେ ପଡ଼ିଲା ଯାଇକରି ।
ହୃଦୟ ଫୁଟିଣ ରଥରେ ଯାଇ କଣ୍ଟି
ରଥର ଉପରେ ଶନି ପଡ଼ିଲାକ ଲୋଟି ।
ଦେଖିଣ ସାରଥି ତାର ରଥକୁ ବାହିନେଲା
ଜାଣିଣ ଦଶରଥ ମନଭେଦି କଲା ।
ଚଉପାଶ ନିରୋଧିଲା ଅଜର କୁମର
ବାଟ ନପାଇବାରୁ ଯେ ରହିଲା ରହୁବର ।
ଦେଖିଣ ବିରଞ୍ଚି ରବି ଆରତେ ଶୂନ୍ୟେ ହେଲା
ବେଦବରଙ୍କୁ ମନରେ ସୁମରଣା କଲା ।
ବିଧାତା ଯଶୋବନ୍ତୀ ପୁରରେ ଥାଇ ଜାଣି
ବାରସ୍ୱତୀ ଭୁବନରେ ମିଳିଲା ଆସି ପୁଣି ।
ଦଶଦିଗପାଳେ ଯେ ତ୍ରିଦଶ ଦେବଘେନି
ଶୀତଳଗିରି ଉପରେ ବିଜୟ କୁଶପାଣି ।
ତିନି ଋଷି ନାରଦ ସେ ସ୍ଥାନରେ ପ୍ରବେଶ
ଷୋଳହ ଚନ୍ଦ୍ରମାସ ବାରହ ଆଦିତ୍ୟ ।
ସମସ୍ତେ ବେଦବରଙ୍କୁ କଲେ ନମସ୍କାର
ରଥରୁ ଓହ୍ଲାଇଗଲେ ଦଶରଥ ବୀର ।
ବେଦ ବ୍ରହ୍ମାଙ୍କ ଚରଣେ ଶୋଇଲେ ଗଡ଼ଘାଲି
ଉଠବୋଲି ବିଧାତା କହିଲେ ଉଚ୍ଚକରି ।
ଦୁଇ ନୟନୁ ଲୋତକ ଯାଉଅଛି ବହି
ଦେଖିଣ ବେଦବର ତାଙ୍କୁ ନିବର୍ତ୍ତାଇ ।
ବୋଇଲେ ଦଶରଥ ତୋର ତେଜହେଲା
ଶନିକୁ ଜିଣିଣ ତୁ ପିତା କାର୍ଯ୍ୟକଲୁ ଭଲା ।
ଏବେ ଶର ବାଡ଼ ଯେ ନିବାରଣ କର
ଶୁଣିଣ ଦଶରଥ ସୁମରିଲା ଶର ।
ଦ୍ରୋଣରେ ଶର ଯାଇ ହୋଇଲା ପ୍ରବେଶ
ଦେଖିଣ ବେଦବର ହୋଇଲେ ହରଷ ।
ନାରାୟଣ ଶରକୁ ସେ ହୃଦରୁ କାଢ଼ିଲେ
ମୃତ୍ୟୁ ସଞ୍ଜିବନୀ ମନ୍ତ୍ରେ ଶନିକି ଜିଆଁଇଲେ ।
କାଳବିକାଳ ଶରୀରୁ କାଢ଼ିଲେ ଶରପୁଣ
ଜୀବନ୍ୟାସ ମନ୍ତ୍ରରେ ଜିଆଁଇଲେ ତାଙ୍କୁ ଜାଣ ।
ଦଶଦିନ ପଡ଼ନ୍ତେ ଶରୀର ମିଳିଥିଲା
ବେଦବର ମନ୍ତ୍ରପାଣିରେ ସ୍ନାନ କରାଇଲା
ପୂର୍ବର ଶରୀର ବଳ ତାହାର ଦେହେବ୍ୟାପି
କରଯୋଡ଼ି ଅଜରାଜ ଦେବଙ୍କ ପାଦେଖଟି ।
ବିଧାତା ବୋଇଲେ ଶୁଣ ହୋ ରବି ପୁତ୍ର
ଧର୍ମକୁ ନମାନୁଛ ଏକି ତୋ ଉଚିତ ।

ଆବର ବେଳେ ଧର୍ମକୁ ନମାନୁ ଯେବେ ତୁହି
ଶାପଦେଲି ଭସ୍ମ ଯେ ହୋଇ ତୋରଦେହୀ ।
ଦେବତାଙ୍କୁ ନମାନିଲେ ଜଳିବ ତୋ ଶରୀର
ଋଷିଙ୍କୁ ନ ମାନିଲେ ତୁ ହୋଇବୁ ପଥର ।
ଯାଅ ଏବେ ସଞ୍ଜୀବନୀପୁରର ନ୍ୟାୟ ବୁଝ
ଯମ ବୋଇଲା ଦେବମୋହର ନାହିଁ କାର୍ଯ୍ୟ ।
ମଉଗର୍ବ ହୋଇଲି ମୁଁ ଯେ ନୋହିବି ଜନ୍ତୁପତି
ଯେବେ ଜନ୍ତୁପତି ହେବି ଦିଅ ହେ ସଦ୍ ଗତି ।
ଚାରିଦ୍ୱାରେ ମୋର ରହିବେ ଚାରିଜଣ
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଧର୍ମ ନିରଞ୍ଜନ ।
ଚାରିଦ୍ୱାରେ ଲିଙ୍ଗ ପ୍ରତିମାରୂପେ ଥିବେ
ପଚାରିଲା ବେଳେ ଧର୍ମ ଅଧର୍ମ କହିବେ ।
ଶୁଣିଣ ବେଦବର ବୋଇଲେ ଏବେ ହେଉ
ଆଉବେଳକୁ ତୋର ଉପଦ୍ରବ ନୋହୁ ।
ଦଶରଥ ରାଜାଙ୍କୁ ଡାକିଲେ ଶନି ପୁଣ
ତୁ ଜିଣିଲୁ ମୁଁ ହାରିଲି ଦେଖିଲେ ଦେବଗଣ ।
ମାଗ ବର ରାଜନ ଦେବଇଁ ତୋତେ ମୁହିଁ
ପ୍ରସନ୍ନ ହୋଇଲିତୋତେ ଜାଣହେ ନରସାଇଁ ।
ଦଶରଥ ବୋଇଲେ ଯେବେ ଦେବ ବର
ରୋହିଣୀ ବୃଷରାଶି ନକ୍ଷତ୍ର ଅଟେ ମୋର ।
ଏ ରାଶି ନକ୍ଷତ୍ରେ ନ ବାଧିବ ତୋର ରିପୁ
କାଳ ଯୁଗକୁ ଏକଥା ହୋଇ ଯେ ରହୁ ବପୁ ।
ଆହୁରି କଥାଏ ମାଗୁଛି ରବି ସୁତ
ଆପଣା କୁଳକୁ ନ କରିବ ଘାତ ।
ତୁମ୍ଭେ ରବି ସୁତ ଆମ୍ଭେ ରବି ଦେବ ଅଂଶ
ଏଥିରେ ହିଂସା କଲେ ଲାଗିବ ଯେ ଦୋଷ ।
ଶନିଶ୍ଚର ବୋଇଲେ ଏକଥା ଅଟେ ମୂଳ
ଲଘିଲେ ନାଶଯିବି ଶୁଣ ହେ ମହୀପାଳ ।
ସୂର୍ଯ୍ୟବଂଶରେ ମୋହର ନୋହିବ ଆଉତ
ରୋହିଣୀ ବୃଷକୁ ନ ଭେଦିବି କଦାଷ୍ଟିତ ।
ଏତେବୋଲି ପ୍ରଣାମ ହେଲେ ଶନି ଯହୁଁ
ଦଶରଥ ରାଜନ ତୃପତି ହେଲେ ତହୁଁ ।
ନାରଦ କହିଲେ ସରିଲା ଏବେ କଥା
ଆମ୍ଭ ବୋଲ ନମାନିଲୁ ପାଇଲୁ ତୁ ବ୍ୟଥା ।
ମାଦ୍ୱଚି ସମସ୍ତଙ୍କୁ କରଇ ସାଧୁପଣ
ମାଡ଼ଭୟେ ଲଙ୍କାରେ ଦଣ୍ଡୁ ଆସି ହେଲୁ ଜାଣ ।।
ଜନନୀକି ମାରିବାରୁ ହୋଇଲୁ ଅପାଙ୍ଗ
ଦଶରଥ ମାରିବାରୁ ଡେଙ୍କିଲୁ ରିପୁ ଅଙ୍ଗ ।
ଆଉବେଳେ ଅସମ୍ଭାଳ ହୋଇବୁ ଯେବେଳା
ଆମ୍ଭର ଶାପ ରହିଲା ଭସ୍ମ ତୁ ହେବୁପରା ।
ଶୁଣିଣ ଯମଦେବ ଓଳଗେ ଶତେବାର
ଦୋଷ ମୋର କ୍ଷମାକର ହେ ମହର୍ଷିବର ।
ଶୁଣିଣ ନାରଦ ଯେ ସନ୍ତୋଷ ମନହେଲେ
ଶନିଙ୍କି ଘେନି ବ୍ରହ୍ମା ସଞ୍ଜୀବନୀ ଗଲେ ।
ସକଳ ଦେବତା ଗଲେ ସ୍ୱର୍ଗପୁର
ଯେ ଯାହାର ସ୍ଥାନରେ ରହିଲେ ସୁରମେଳ ।
ସଞ୍ଜୀବନୀପୁରେ ବ୍ରହ୍ମା ହେଲେକ ପ୍ରବେଶ
ଚାରିଦ୍ୱାରେ ଚାରିଲିଙ୍ଗ ସୁବର୍ଣ୍ଣରୂପେ ସେ ତ ।
ପିତୁଳା ଲେଖିଣ ଧାତା ସଜୀବ ତାକୁ କଲେ
ଶନି ପଚାରିବା ଧର୍ମ କହିବେ ସେ ଭଲେ ।
ଏତେ କହି କୁଶକର ଗଲେ ନିଜପୁର
ଗାୟତ୍ରୀ ସାବିତ୍ରୀ ଆସି ନମିଲେ ପୟର ।
ପାର୍ବତୀ ବୋଇଲେ ଦେବ ସେଠାରୁ କିସହେଲା
ଦଶରଥ ନୃପତି କେବଣ କୃତ୍ୟକଲା ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ସକଳ ଦେବତାଏ ସନ୍ତୋଷ କଲେ ମତି ।
ଯେ ଯାହା ସ୍ଥାନକୁ ସେହୁ କଲେକ ଗମନ
ଦେଖିଣ ଦଶରଥ ସନ୍ତୋଷ କଲେ ମନ ।
କୈକେୟୀ ରାଣୀ ପାଶରେ ପ୍ରବେଶ ଦଶରଥ
ବୋଇଲେ ତୋର ସକାଶେ ଜିଣିଲି ରବିସୁତ
ବର ମାଗ ଏବେ ଦେବଇଁ ତୋତେ ମୁହିଁ
ଶୁଣିଣ କୈକେୟୀ ଯେ ପାଦରେ ଓଳଗଇ ।
ବୋଇଲେ ପ୍ରାଣନାଥ ତୁମ୍ଭେ ମୋରେ ସ୍ୱାମୀ
ତୁମ୍ଭର କୁଶଳ ହେଲେ ମୁହିଁ ସୁଖଗାମୀ
ଆପଣଙ୍କର ଯେବେ ଦୟା ମୋର ଥିବ
କୌଣସିବେଳେମୋଠାରେ ମାୟାନକରିବ ।
ମୁଁ ଯେବେ ମାୟାକରି କହିବି ପ୍ରଭୁପଣ
ତିନିପୁରେ ଅପକୀର୍ତ୍ତି ମୋର ହେବ ଜାଣ ।
ଯେତେବେଳେ ପ୍ରସନ୍ନରେ ମାଗିବି ମୁଁ ଯାହା
ହୃଦୟରେ ଦୟା କରିଦେବ ମୋତେ ତାହା ।
ହେଉବୋଲି ଦଶରଥରାଣୀଙ୍କି ବରଦେଲେ
ଶୁଣିଣ ପାଟରାଣୀ ସେଠାରୁ ଚଳିଗଲେ ।

ଅନ୍ତଃପୁରେ ରାଣୀ ହୋଇଲେ ପ୍ରବେଶ
ଏଥୁ ଅନନ୍ତରେ ଶୁଣ ଦିବ୍ୟ ରସ ।
ଦଶରଥ ସେଠାରୁ ପିତାଙ୍କ ପାଶେ ଗଲା
ଶତେବୋର ପର୍ଯ୍ୟନ୍ତ ଓଳଗି ମେଲାଇଲା ।
ପାତ୍ର, ମନ୍ତ୍ରୀ, ସାମନ୍ତ ସମସ୍ତେଛନ୍ତି ପୁଣି
ଅଜରାଜା ବୋଇଲେ ଶୁଣ ପୁତ୍ରମଣି ।
ପିତାଙ୍କୁ ଜିଆଁଇ ତୁ ଯେ ଯମକୁ ଜିଣିଲୁ
କାଳଯୁଗକୁ କଥା ଜଗତେ ରଖାଇଲୁ ।
ଇନ୍ଦ୍ରକୁ ଜିଣି ମୁଁ ଯେ ସ୍ୱର୍ଗେ ଇନ୍ଦ୍ର ହେଲି
ପିତାଙ୍କ ବୋଲରେ ସ୍ୱର୍ଗ ଛାଡ଼ିଣ ଆସିଲି ।
ତୁ ଏବେ ଶନିକି ଜିଣି ମୋତେ ଜିଆଁଇଲୁ
ଉତ୍ତମ ଧର୍ମ ଗୋଟି ସଂସାରେ ରଖିଲୁ
ଏହିପରି ଅଜରାଜା ସୁକଲ୍ୟାଣ କରି ।
ପିତା ପୁତ୍ର ବେନି ସଙ୍ଗରେ ଋଷି ଘେନି
ନବରକୁ ଚଳିଲେ ହରଷ ମନେ ପୁଣି ।
ସାମନ୍ତ, ପାତ୍ର, ମନ୍ତ୍ରୀ ସୈନ୍ୟ ବଳ ଜାଣ
ସିଂହଦ୍ୱାରେ ପ୍ରବେଶ ସମସ୍ତେ ତକ୍ଷଣ ।
ନବରେ ପିତା ପୁତ୍ର ହୋଇଲେ ପ୍ରବେଶ
ପାଞ୍ଚମୁନି ଚରଣେ ନମିଲେ ଅଜ ଶିଷ୍ୟ ।
ଧନରତ୍ନ ଦେଇଣ ମୁନିଙ୍କି ସେବା କଲେ
ମେଲାଣି ହୋଇଣ ଯେ ମୁନିମାନେ ଗଲେ ।
ପାତ୍ର, ମନ୍ତ୍ରୀ, ସାମନ୍ତ ମେଲାଣି କଲେ ରାଜା
ଚତୁରଙ୍ଗ ବଳକୁ ଶାଢ଼ୀ ଦେଲେ ତେଜା ।
ସକଳ ଲୋକଙ୍କୁ ମେଲାଣି ଦେଇ ପୁଣ
ଦୁଃଖୀ ଦରିଦ୍ରଙ୍କୁ ଦେଲେ ଅନ୍ନବସ୍ତ୍ର ଦାନ ।
ସ୍ଥାନେସ୍ଥାନେ ସଦାବର୍ତ୍ତ ଦେଲେକ ଅନ୍ନଜଳ
ଉତ୍ସବ କରାଇଲେ ନବର ନଗ୍ରପୁର ।
ଏ ଧର୍ମକୁ ତୋତେ ପ୍ରାପ୍ତ ହୋଇବେ ଶ୍ରୀହରି
ପାର୍ବତୀ ବୋଇଲେ କହ ପ୍ରଭୁ ଏବେ
ଅଜରାଜା କେତେଦିନ ରହିଲେ ସେହିଠାବେ ।
ଈଶ୍ୱର ବୋଇଲେ ରହିଲେ ସପତ ବରଷ
ପୂର୍ଣ୍ଣ ହେବାରୁ ଅଜରାଜା ଗଲେ ସ୍ୱର୍ଗବାସ ।
ରାଜନ ଯିବାରୁ ଯେ ରାଣୀହଂସ ତାର
ପୁତ୍ର ଦଶରଥଙ୍କୁ କହିଲେ ସମାଚାର ।
ବୋଇଲେ କୁମରମଣି ଶୁଣ ଏବେ ତୁହି
ସ୍ୱାମୀ ସଙ୍ଗେ ଆମ୍ଭେ ଯିବୁ ବିଳମ୍ବ କିମ୍ପାଇଁ ।

ଶୁଣିଣ ଦଶରଥ ସନ୍ତୋଷମନ ହେଲା
ଅଗ୍ନିରେ ଆରୋପଣ ଆସିଣ କରାଇଲା ।
ଶତେକ ଜନନୀ ଯେ ଦାସୀଗଣ ଘେନି
ଅଗ୍ନିରେ ଝାସଦେଲେ ସକଳ କାମିନୀ ।
ସ୍ୱାମୀର ସଙ୍ଗେ ସର୍ବେ ସ୍ୱର୍ଗକୁ ଚଳିଗଲେ
ଅଚିନ୍ତା ନବରେ ପିତୃ ଲୋକରେ ରହିଲେ ।
ଦଶରଥ ନୃପତି ଯେ କ୍ରିୟା କର୍ମ କରି
ରାଜ ଋଷି ବ୍ରାହ୍ମଣଙ୍କୁ ବରଣ ଥିଲେ କରି ।
ସମସ୍ତଙ୍କୁ ସନ୍ତୋଷେ ଭୁରି ଭୋଜନ ଦେଲା
ଧନରତ୍ନ ଦେଇଣ ମେଲାଣି କରାଇଲା
ପ୍ରଜାଙ୍କୁ ପୁତ୍ର ସମାନେ ତହୁଁ ରାଜା ପାଳି
ଧର୍ମହିଁ ବିଚାର କରେ ପାପରେ ନବଳି ।
ପାର୍ବତୀ ବୋଇଲେ ଦେବ କଥାଏ ରହିଲା
ଦଶରଥ ସ୍ତିରୀ ବେଶ ଯେ ହୋଇଥିଲା ।
ସେ ବେଶ ରାଜନ କି ରଖିଲା ମୂଳକରି
ସେ କଥା ଫଳିଲା ଦେବ କହମୋତେ ଫେଡ଼ି ।
ଈଶ୍ୱର ବୋଇଲେ ଶୁଣ ଗୋ ଗଉରୀ
ସ୍ତିରୀବେଶ ଧରିଗଲା ଯେ ଦଶରଥ ଦଣ୍ଡଧାରୀ ।
ଯମଦଗ୍ନି ପୁତ୍ରକୁ ଡରିଣ ସେହୁ ପୁଣ
ସ୍ତିରୀବେଶ ଧରି ଯେ ରହିଲା ରାଜନ ।
ଚାଳିଶି ସହସ୍ର ରାଜା ସ୍ତିରୀ ବେଶ ହୋଇ
ଏ ରାଜାମାନଙ୍କର କୋଳରେ ପୁତ୍ର ନାହିଁ ।
କୁଳ ରଖିବା ପାଇଁ କି ରୂପ ଯେ ବଦଳ
କ୍ଷାର୍ପୂର୍ଣ୍ଣ୍ୟ ହେବାରୁ ନମାରେ ଯମଦଗ୍ନିବାଳ ।
ପାର୍ବତୀ ବୋଇଲେ ସେଠାରୁ କିସ ହେଲା
ଦେବଙ୍କ ଉପକାରେ ନାରାୟଣ ଉଠିଥିଲା ।
ଈଶ୍ୱର ବୋଇଲେ ସେ କଥା ଏବେ ଶୁଣ
ବାସୁଦେବ ଉଠିଲେ ଚେତିସହସ୍ରେ ବର୍ଷେଣ ।
କମଳାଙ୍କ ସଙ୍ଗେ ଲୀଳା କରନ୍ତି ହର୍ଷରେ
ସହସ୍ରେ ବରଷ ପୂରିଲା ଶୟନ ଅନ୍ତଃପୁରେ ।
ଉଠିବାର ସହସ୍ରେ ବରଷ ଜାଣ ହେଲା
ଦଶରଥଙ୍କୁ ସହସ୍ରେ ବରଷ ପୂରିଲା ।
ଶୟନ କରିବାକୁ ସଜହେଲେ ହରି
ଅନନ୍ତ ଶଯ୍ୟାକଲେ ରହିଲା ଆବୋରି ।

ଯେ ଯାହାର ଦ୍ୱାରେ ରହିଲା ଦ୍ୱାରପାଳ
ଦେଖିଣ ହରଷ ଯେ ହୋଇଲେ ଆଦିମୂଳ ।
ଲକ୍ଷ୍ମୀ ସରସ୍ୱତୀଙ୍କି ଡକାଇଲେ ପାଶ
ବୋଇଲେ ମୋର ଆଜ୍ଞା କର ହେ ପ୍ରକାଶ
ଦୁହିଁଙ୍କର ଅଧେ ଲେଖାଏଁ ଅଂଶ ରଖି
ମେରୁ ଘରେ ଜନ୍ମ ଅଧେ ଅଂଶରେ ହୁଅଟି ।
ବେଦମତି ଧରାମତି ହେବ ଦୁହେଁ ଜାଣ
ସାତସହସ୍ର ବରଷ ତପସ୍ୟା କରିବ ରହିଣ ।
ତେବେ ସେ ଜନ୍ମ ଯେ ଲଭିବ ମର୍ତ୍ତ୍ୟପୁରେ
ଏତେବୋଲି ଆଜ୍ଞାଦେଲେ ବ୍ରହ୍ମାଣ୍ଡଠାକୁରେ ।
ବାସୁଦେବ ଆଜ୍ଞାରେ ଲକ୍ଷ୍ମୀ ସରସ୍ୱତୀ
ଚାରିଗୋଟି ମୂର୍ତ୍ତି ସେ ଯେ ହୋଇଲେ ତହିଁ ।
ମାୟାରୂପ ଦୁଇଗୋଟି ମର୍ତ୍ତ୍ୟପୁରେ ଗଲେ
ନିଜରୂପ ବାସୁଦେବ ସଙ୍ଗରେ ରହିଲେ ।
ଅନନ୍ତଶଯ୍ୟାରେ ବାସୁଦେବ କଲେକଶୟନ
ପାଦ ମଞ୍ଜାଳନ୍ତି ଯେ କମଳା ବସିଣ ।
ସରସ୍ୱତୀ ବୀଣା ଯେ ତିମ୍ବୁର ଧରି ବସି
ମସ୍ତକପରେ ଗାଉଣା କରେ ଶୁଭ୍ରକେଶି ।
ଉପରେ ଅନନ୍ତ ଯେ ସପ୍ତଫଣା ଟେକି ।
ଯୋଗ ନିଦ୍ରାକଲେ ବ୍ରହ୍ମାଣ୍ଡ ବ୍ରହ୍ମରାଣି ।
ସକଳ ଦେବତାଏ ଅସୁର ପୁରେ ରହି
ଅନେକ କଷ୍ଟରେ ଦିନ ବଞ୍ଚନ୍ତି କଷ୍ଟସହି ।
ପାର୍ବତୀ ବୋଇଲେ କହ ପ୍ରାଣଧନ
କ୍ଷୀର ସାଗରେ ବାସୁଦେବ କଲେକ ଶୟନ ।
ଲକ୍ଷ୍ମୀ ସରସ୍ୱତୀଙ୍କି ଆଜ୍ଞା ଦେଇଥିଲେ
ବାସୁଦେବ ଆଜ୍ଞାରେ ସେ ଚାରିମୂର୍ତ୍ତି ହେଲେ
ସେ ପୁଣ କିସକଲେ କହ ତ୍ରିପୁରାରୀ
ଈଶ୍ୱର ବୋଇଲେ ଶୁଣଗୋ ଶାକମ୍ଭରୀ ।
ବାସୁଦେବ ଶୟନ ଯହୁଁ ପୁଣ କଲେ
ସେ ଦୁଇରୂପ ମର୍ତ୍ତ୍ୟପୁରକୁ ଆସିଲେ ।
ମେରୁ ନବରେ ଯାଇ ହୋଇଲେ ପ୍ରବେଶ
ମେରୁର ନାରୀ ଯେ ହୋଇଛି ପାକାସ୍ପର୍ଶ ।
ମେରୁ ଦେହରେ ଦୁହେଁ ଜ୍ୟୋତିରୂପରେ ପଶି
ଚାରିଦିନ ଏଥିରେ ବହିଗଲାକ ଆସି ।
ପାଞ୍ଚଦିନରେ ଶୁଦ୍ଧ ହୋଇଲା ତାର ଦେହ
ବେଶ ହୋଇ ଦେବୀର ଯେ ସ୍ୱାମୀରେ କଲେପ୍ରିୟ ।

ରଜନୀ କାଳରେ ସ୍ୱାମୀର ପାଶେ ଗଲା
ରତ୍ନପଲଙ୍କପରେ ସ୍ୱାମୀଙ୍କି ଭେଟିଲା ।
ଚାମର ଢାଳଇ ଯେ ଆଗରେ ରହି ପୁଣ
ଦେଖିଣ ମେରୁ ରାଜା ସନ୍ତୋଷ ମନେଣ ।
କୋଳକରି ନେଇଣ ପଲଙ୍କେ ବସାଇଲା
ଅଧର ଚୁମ୍ବିଣ ଗୌରବେ ପ୍ରୀତିକଲା ।
ନିବୀବନ୍ଧ ଫିଟାଇଣ ସୁରତି ରସେ ମାତି
ରତିରସ କରନ୍ତେ ବଳବୀର୍ଯ୍ୟ ଆସି ।
ବୀର୍ଯ୍ୟତାର ଆସନ୍ତେ ହୋଇଲା ନିର୍ବଳ
ଦୁଇଘଡ଼ି ଅନ୍ତରରେ ପଶିଲା ଅଙ୍ଗେ ବଳ ।
ପୁଣି ରାଜା ସଙ୍ଗରେ ରମଣ ଶ୍ରଦ୍ଧାକଲା
ଦୁଇଥର ସୁରତି ଯେ ରଜନୀରେ କଲା ।
ସେଦିନ ମେରୁନାରୀ ଗର୍ଭସ୍ଥିତ ହେଲା
ଦିନୁଦିନ ଗର୍ଭଯେ ବୃଦ୍ଧିତାର ହେଲା ।
ଦଶମାସ ହୁଅନ୍ତେ ପ୍ରସବ କଲା ନାରୀ
ଦୁଇଗୋଟି ଦୁହିତା ଗର୍ଭରୁ ଅବତରି ।
ଦାସୀମାନେ ଯାଇଣ ରାଜା ଆଗରେ କହି
ଦୁଇଗୋଟି ଦୁହିତା ହୋଇଲେ ଗୋସାଇଁ ।
ଶୁଣିଣ ମେରୁରାଜା ସନ୍ତୋଷ ମନହେଲେ
ଦାସୀମାନଙ୍କୁ ବଧାଇ ଧନ ଯେ ଆଣିଦେଲେ ।
ପାଞ୍ଚଦିନେ ପଞ୍ଚୁଆତି ଷଷ୍ଠିଘର କରି
ଉଠିଆରୀ ବାରରାତ୍ର ସାରିଣ ଦଣ୍ଡଧାରୀ ।
ମାସେ ହୁଅନ୍ତେ ମୁନିମାନଙ୍କୁ ସୁମରିଲା
ଅନେକ ମୁନିମାନେ ମିଳିଲେ ଆସିତ୍ୱରା ।
ବେଦପଢ଼ି ହୋମକରି ପବିତ୍ର ତାଙ୍କୁ କଲା
ବେଦମତୀ ଧାରାମତୀ ନାମ ତାଙ୍କୁ ଦେଲା ।
ସେହିରାଜା ବୋଇଲେ କହ ହେ ମୁନିବର
ଏ ଦୁହିତା ଜାତ ହେଲେ କେବଣ ପ୍ରକାର ।
ନାରଦ ବୋଇଲେ ଏ ଯେ ବାସୁଦେବନାରୀ
କମଳା ସରସ୍ୱତୀ ତୋରଘରେ ଅବତରି ।
ଅସୁର ମାରିବା ପାଇଁ ହେଲେ ଅବତାର
ନାରାୟଣ ହେବେ ଦୁଇ କନ୍ୟାର ବର ।
ଏହି କନ୍ୟା ଯାହା ତୋତେ କହିବେ ରାଜନ
ସେହି କନ୍ୟାକୁ ରାଜନ ନ ବରିବୁ ଆନ ।
ଆନ ନକରିଲେ ତୋହର ପ୍ରଭୁପଣ ଯିବ
ମନ୍ଦର ଉଠିଣ ଗିରିଜନ ହୋଇବ ।

ଏମନ୍ତ ବଚନ ଯେ ମୁନିମାନେ କହି
ସନ୍ତୋଷ ହେଲା ଗିରିରାଜା ଶୁଣି ତହିଁ ।
ମୁନିମାନଙ୍କୁ ମେଲାଣି ସନ୍ତୋଷରେ କଲା
ଶୀତଳ ଧନ ଦେଇ ମୁନିଙ୍କମନ ମୋହିଲା ।
ମେଲାଣି ପାଇ ମୁନି ଯେ ଯାହା ସ୍ଥାନ ଗଲେ
ବେଦମତୀ ଧୀରାମତି ମେରୁଘରେ ରହିଲେ ।
ଏଥିରେ ନବ ବରଷ ପୁଣ ବହିଗଲା
ନବଯୁବା ହୋଇଲେ ଦୁଇ ଦୁହିତା ତ୍ୱରା ।
ଏକଦିନେ ମେରୁ ଘରଣୀ ଭଳି ପୁଣ
ମେରୁରାଜା ଆଗରେ କହିଲା ଯାଇଣ ।
ବୋଇଲା ଦୁହିତା ହୋଇଲେ ନବଯୁବା
ଦେବପୁରେ ବରପାଇଁ କହ ହେ ଦେବରାଜା ।
ଗିରିରାଜା ବୋଇଲେ ଶୁଣ ଆଗୋ ରାଣୀ
ସେ ନାରୀଙ୍କବର ଅଟନ୍ତି ଚକ୍ରପାଣି ।
ନର ନାରାୟଣ ଦୁହେଁ ହେବେ ତାଙ୍କ ବର
ଆଠ ସହସ୍ର ବର୍ଷ ଯେ କରିବେ ନାରୀବର ।
ମେରୁନାରୀ ବୋଇଲେ ତୁମ୍ଭେକେମନ୍ତେ ଜାଣିଲ
ମେରୁରାଜା କହିଲେ ମୋତେ ବ୍ରହ୍ମାଙ୍କ କୁମର ।
ରାଣୀ ବୋଇଲେ ତାଙ୍କୁ କେମନ୍ତେ ସମ୍ଭାଳିବା
ପାଣି ଅବଳା ନାରୀ ଅବଳା ସମ୍ଭାଳିନୁହେଅବା ।
ମେରୁରାଜାବୋଇଲେ ତୁ ମନରେ ନକରଚିନ୍ତା
ଯେଉଁସ୍ଥାନକୁ ଗମନ କରିବେ ଯେ ସୁତା ।
ଶୁଣିଣ ମେରୁରାଣୀ ସନ୍ତୋଷ ମନ ହୋଇ
କେଉଁମାନେ ରଖିବ ରଖ ହେ ବେଗେନେଇ ।
ଶୁଣିଣ ମେରୁରାଜା ଦୁହିତା ପାଶେ ଗଲା
ବେନି ଦୁହିତାଙ୍କୁ ଯାଇଣ ପଚାରିଲା ।
ବୋଇଲା ତୁମ୍ଭ ପାଇଁ କି ଖୋଜିବା କି ବର
ସେ ବୋଲେ ଆମ୍ଭ ବର ବ୍ରହ୍ମାଣ୍ଡ ଠାକୁର ।
ନିର୍ମଳ ସ୍ଥାନ ଦେଖି ସେଠାରେ ନେଇ ରଖ
ତପସ୍ୟା କଲେ ଦୟା କରିବେ ଶ୍ରୀମୁଖ ।
ଇକାର ଉକାର ଧ୍ୱନି ଯେ ଆମ୍ଭେ କରୁଁ
'ଉକାର' ମହାମନ୍ତ୍ର ଅଟଇ ମହାମେରୁ ।
ଏଥିର ଭିତରେ ଯେବେ ଅନ୍ୟ କରଇକୃତ୍ୟ
ତେବେ ଅଗ୍ନିରେ ଝାସ ଦେବୁଁଟି ନିଅତ ।
ଶୁଣିଣ ମେରୁ ରାଜା ସନ୍ତୋଷମନ ହେଲା
ମୁନି କହିବା ବଚନ ଯାଙ୍କଠାରୁ ସମ୍ଭବିଲା ।

ଏତେ ବିଚାରି ରାଜା ରଥେକ ଅଣାଇଲା
ଦୁଇ କୁମାରୀ ବସ ବୋଲିଣ ବୋଇଲା ।
ବେଦମତୀ ବୋଇଲା ଅଣାଅ ତିନି ଦାନ
ଶତେ ଶତେ ଦାସୀ ଦିଅ ଆମ୍ଭ ସଙ୍ଗନ୍ତେଣ ।
ତିନିପୁର ଦ୍ରବ୍ୟ ସେ ଆଣିବେ ଏହୁହରି
ବିଚାରିଲେ ମନବାଞ୍ଛା ପୂରିବ ଆମ୍ଭରି ।
ଚାରିବେଦ ପଢ଼ିବେ କହିବେ ନ୍ୟାୟମାନ
ବୟାଳିଶୀ କାଣ୍ଡୀ ମନ୍ତ୍ର କରିବେ ଭିନ୍ନ ଭିନ୍ନ ।
ଏମନ୍ତେ ମୂଳ ମନ୍ତ୍ର ଏହି ପ୍ରକାଶ କରିବେ
ସେ ନାରୀମାନେ ଆମ୍ଭ ସଙ୍ଗତରେ ଥିବେ ।
ତେବେ ତପସିଦ୍ଧ ଯେ ହୋଇବ ଆମ୍ଭର
ଶୁଣିଣ ମେରୁ ରାଜା ସୁମରେ ମୁନିବର ।
ଜାଣିଣ ନାରଦ ଯେ ଅଇଲେ ସ୍ୱର୍ଗପୁରୁ
ଦେଖିଣ ମେରୁ ରାଜା ନମିଲାକ ଦୂରୁ ।
ନାରଦ ବୋଇଲେ କିମ୍ପା ସୁମରଣା କରୁ
ମେରୁରାଜା ବୋଇଲେ ଶୁଣହେ ମହାମେରୁ ।
ଦୁହିତା ଦୁହେଁ ଯିବେ ପାତାଳପୁର ଜାଣ
ସେ ବୋଇଲେ ତପ ଯେ କରିବୁଁ ଆମ୍ଭେ ପୁଣ ।
ତପର ମନ୍ତ୍ର ଯନ୍ତ୍ର ଆମ୍ଭଙ୍କୁ ଆଣିଦିଅ
ଚାରିବେଦ ଶବଦ ଯେମନ୍ତେ ହୁଏ ପ୍ରିୟ ।
ନାରଦ ତା ପୁରେ ଅଛନ୍ତି ଦାସୀଗଣ
ଯେଉଁସ୍ଥାନେ ରହିବ କର ହେ ଗମନ ।
ବେଦମତୀ ଧୀରାମତି ପାଶକୁ ଦେବଗଲେ
ଯେଉଁ ସ୍ଥାନେ ରହିବ ସେ ସ୍ଥାନକୁ ଚଳଭଲେ ।
ବେଦମତୀ ଧୀରାମତୀ ଶୁଣିଣ ରଥେ ବସି
ଶତେ ଶତେ ଦାସୀ ଯେ ସଙ୍ଗରେ ଘେନିଛନ୍ତି ।
ରଥର ଉପରେ ମେରୁ ନାରଦ ବସିଲେ
ତିନି ରଥ ଗମନ୍ତେ ପାତାଳପୁରେ ଗଲେ ।
ରୁନ୍ଧେକ ନାମେ ବିବର ଦ୍ୱାରରେ ପ୍ରବେଶ
ବାରଯୁଣ ପର୍ଯ୍ୟନ୍ତେ ନଯାଏ ଯାନ ତ ।
ତିନି ଯାନ ଉପରୁ ଓହ୍ଲାଇ ସର୍ବେ ଜାଣ
ସେ ବିବର ବାଟେ ସର୍ବେ କଲେକ ଗମନ ।
ସୁବର୍ଣ୍ଣ ଜ୍ୟୋତିପୁରେ ପ୍ରବେଶ ହେଲେପୁଣ
ନିବିଡ଼ ଅନ୍ଧାରରେ କରନ୍ତି ଗମନ ।
ସେ ଜଳ ମଧରେ ପଦ୍ମପୁଷ୍କର ଯେ ହୋଇ
ସେଥିରେ ଲୀଳା କଲେ ଡାହୁକ ହଂସରହି ।

ସ୍ୱାଦଜଳ ସଙ୍ଗରେ ସରି ସେହୁ ଜଳ
ବାସକରେ ଜଳ ଚନ୍ଦନ ଅଗୁର ପ୍ରକାର ।
ତହିଁର ମଧ୍ୟରେ ଅଛି ଏକଇ ମନ୍ଦିର
ପଚାଶକୋଳ ସେଥିରେ ରହନ୍ତି ଅପସରାମେଳ ।
ହାସରସ ଲୀଳାରେ ସେମାନେ ସ୍ନାନକରି
କିଛିଦିନ ରହିଣ ଯାଆନ୍ତି ସ୍ୱର୍ଗପୁରୀ ।
ସକଳ ଜୀବଙ୍କୁ ଗୁପ୍ତ ଅଟେ ସେହି ସ୍ଥାନ
ନର ବାନର ଅସୁର ନକରେ ଗମନ ।
ପୁଣିଲତା ଜଙ୍ଗଲ ଦଶ ସସ୍ର ଯୁଣ
ସେଥିରେ ଲୀଳାକରନ୍ତି ସରସୀ ଜୀବମାନ ।
ମୃଗସଏମ୍ବର ଯେ ହରିଣ ବାହୁଟିଆ
ଶଙ୍ଖା ଗଣ୍ଡା କସ୍ତୁରୀ ଜୁଆଦ ବଳିଆ ।
ଏମନ୍ତେ ନାନାଜୀବ ସେଥି କରନ୍ତି ଲୀଳା
ସେ ବନ ଯେ ଦିଶଇ ମହାଶୋଭା ତୁରା ।
ଫଳବନ ସେଥିରେ ପନ୍ଦର ସସ୍ର ପୁର
ନାନାଜାତି ଫଳ ଯେ ସେଥିରେ ଫଳେଜାଣ ।
ଲବଙ୍ଗ, ଅଳାଇଚ, ମରିଚ, ଜାଇଫଳ
ଶ୍ରୀଫଳ ମୁଖବାସ ଡାଳିମ୍ବ ସେଥି ତାଳ ।
ଜେଉଠ କରମଙ୍ଗା ଲେମ୍ବୁ ଯେ ନାରଙ୍ଗ
ଟଭା ଆମ୍ବ ପଣସ ମଲ୍ଲୀ ଯେ ପୁନାଙ୍ଗ ।
ରମ୍ଭା ବୃକ୍ଷ ଫଳ ଯେ ସବୁରି ପରେ ସାର
ଅନେକ ଫଳ ପାଣି ଯେ ପଡ଼ଇ ଭୂମିର ।
ପନ୍ଦରଯୁଣ ପର୍ଯ୍ୟନ୍ତେ ଫଳରେ ଶୋଭାବନ
ଡାଳଧରି ଫଳ ଧରଣୀରେ ଲୋଟେ ଜାଣ
ଫଳବନ ଉତ୍ତାରୁ ପୁଷ୍ପବନ ଯେ ତହିଁ
ଅନେକ ଜାତିରେ ପୁଷ୍ପ ସେଥିରେ ଅଛଇଁ ।
ମଲ୍ଲୀ ମନ୍ଦାର ଯେ ପାରିଜାତ ପୁଣ
ଅରୁଣ ବରୁଣ ଯେ ପୋଲାଙ୍ଗ ଶୋଭାବନ ।
ବଉଳ ଜାଈ ଯୁଈ ସେବତୀ ତରାଟ
ଚମ୍ପକ କନିଅର ସେବତୀ ଧଳାବଟ ।
ତୁଳସୀ ଦୟଣା ଅଗସ୍ତି ଅପ୍ରାଜିତା
ଅରଖ ଗୟସ ଯେ କରୁଣା ରକ୍ତ ଚିତା ।
ଏରୂପେ ଅନେକ ପୁଷ୍ପ ସେ ବନେ ଅଛିପୂରି
ବାରଯୁଣ ପର୍ଯ୍ୟନ୍ତେ ପୁଷ୍ପବନ ଘେରି ।
ଚାଳିଶିଯୂଣ ପର୍ଯ୍ୟନ୍ତେ ମେଲା ଦିଶେ ପୁଣ
କୋଡ଼ିଏ ଯୂଣ ପର୍ଯ୍ୟନ୍ତ ନବର ଅଟେ ଜାଣ ।
ଏରୂପେ ଶତେଯୂଣ ସେ ପୁରଗୋଟି ହୋଇ
ଚନ୍ଦ୍ର ସୂର୍ଯ୍ୟ ତେଜ ନାହିଁ କନକ ତେଜମହୀ
ହୀରାନୀଳା ବୈଦୁର୍ଯ୍ୟ ମୋତି ଯେ ମାଣିକ୍ୟ
ରୂପା ସୁନା ମିଶ୍ରିତ ତମ୍ବାରେ ଅଷ୍ଟରତ୍ନ ।
ଏମାନଙ୍କ ତେଜରେ ଏପୁର ଉଜ୍ଜ୍ୱଳ
ଯେସନେକ ଚନ୍ଦ୍ର ସୂର୍ଯ୍ୟ ଆକାଶ ମଣ୍ଡଳ ।
ଶୁଣିଣ ପାର୍ବତୀ ଯେ ବୋଲନ୍ତି ବଚନ
ଚନ୍ଦ୍ର ସୂର୍ଯ୍ୟ ନାହାନ୍ତି ନାହିଁ ଯେ ମେଘପୁଣ ।
କେଉଁରୂପେ ନଗର ସେଠାରେ ପୁଣ ରହି
ବରଷା ନାହିଁ ସେଥିରେ ଫଳ ଫଳେ କାହିଁ ।
ଚନ୍ଦ୍ର ସୂର୍ଯ୍ୟ ନଥିଲେ ନୁହନ୍ତି ଶସ୍ୟ ଜାଣ
କେମନ୍ତେ ସେପୁର ରହେ କହହେ ତ୍ରିଲୋଚନ ।
ଈଶ୍ୱର ବୋଲନ୍ତି ଭଗବତୀ ଶୁଣ
ସେପୁରରେ ଯେଉଁରୂପେ ଫଳଫଳେ ଜାଣ ।
ସାତଦିନେ ଚନ୍ଦ୍ର ସୂର୍ଯ୍ୟ ଥରେ ଜାନ୍ତି ଜାଣ
ସେ ପୁରେ ପ୍ରକାଶ ହୋନ୍ତି ରାତ୍ରଦିବସେଣ ।
ଶସ୍ୟ ସମୀର ବରଦାୟକ କରନ୍ତି ସେଥିରହି
ତିନିଯୁଣ ନିର୍ବନ୍ଧେକ ପୁଣ ଅଛି ରହି ।
ପାର୍ବତୀବୋଇଲେ ଯେ ସେଠାରୁ କିସହେଲା
ବେଦମତୀ ଧୀରାମତୀ ସେ ପୁରକୁ ଗଲା ।
ନାରଦ ମେରୁ ରାଜା ଅଛନ୍ତି ସଙ୍ଗରେ
ପ୍ରବେଶ ହୋଇଲେ ସେହୁ ସୁବର୍ଣ୍ଣ ଜ୍ୟୋତିପୁରେ ।
ଈଶ୍ୱର ବୋଇଲେ ସେ କଥା ଏବେ ଶୁଣ
ମୋ ପୁରେ ପ୍ରବେଶ ଯେ ହେଲେ ଚାରିଜଣ ।
ନିର୍ମଳ ଶଉଚ ଯେ ଦେଖିଣ ନବର
ସେ ଦୁଇସ୍ଥାନ ଦେଖିଲେ ଉତ୍ତମ ପରିମଳ ।
ସେ ଦୁଇ ସିଂହାସନରେ ବସିଲେ ଦୁଇନାରୀ
ବେଦ ମନ୍ତ୍ର ଶିଖାଇଲେ ନାରଦ ବ୍ରହ୍ମଚାରୀ ।
ଯାଗ ଯଜ୍ଞ ବିଧି କର୍ମ ତାଙ୍କୁ ବତାଇ ଦେଲେ
ଶତେ ଶତେ ଦାସୀ ତାଙ୍କ ସଙ୍ଗରେ ରହିଲେ ।
ବିଧିମତେ ରଖାଇ ନାରଦ ସ୍ୱର୍ଗେ ଗଲେ
ଯଶୋବନ୍ତୀ ପୁରରେ ପ୍ରବେଶ ହୋଇଲେ ।
ମେରୁରାଜା ଶାନ୍ତଶୀଳେ ଦେଇ ଚାଲିଗଲେ
ଆପଣା ନବରେ ପରବେଶ ହେଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ନିଶ୍ଚଳ ଆସନରେ ବସିଲେ ଦୁଇନାରୀ ।

ଅଗ୍ନି ଆରୋପଣ କରି ଘୃତ ସମିଧ ଦେଲେ
ବେଦମନ୍ତ୍ର ପଢ଼ିଣ ଅଗ୍ନିରେ ହୋମ କଲେ
ଏମନ୍ତେ ସପ୍ତସହସ୍ର ବର୍ଷ ଗଲା ବହି
ହୋମ ସିଦ୍ଧ ହେବାରୁ ଆସନ ଟଳଇ ।
ଆସନ ଟଳିବାରୁ ତେଜିଲେ ସେହୁଯଜ୍ଞ
ମନ୍ତ୍ର ସ୍ମରଣ କରନ୍ତି ଆତ୍ମା ପବିତ୍ର ଯୋଗ ।
ଆତ୍ମା ପବିତ୍ର ଉତ୍ତାରୁ ଭଜନ୍ତି ନାରାୟଣ
ନାରାୟଣ ନାମ ମନରେ କରୁଛନ୍ତି ଧ୍ୟାନ ।
ବିଚାରନ୍ତି ବାସୁଦେବ ହୋଇବେ ଆତ୍ମପତି
ତେବେ ଯେ ଆମ୍ଭେମାନେ ପାଇବୁ ମୁକତି ।
ଏମନ୍ତ ବିଚାରି ଯେ ଅନ୍ତର୍ଗତରେ ଭାବି
ଏଥୁ ଅନନ୍ତରେ ଶୁଣ ଗୋ ଶୋଭାଦେବୀ ।
ଏକଦିନରେ ବିଶ୍ରବା ନନ୍ଦନ ରାବଣ
ଦିଗବିଜେ ପାତାଳକୁ କରିଥିଲା ଜାଣ ।
ସନମାନ ହରଷରେ ଦଶାନନ ଗଲା
ଜେନାମଣି ପାଟଣାରେ ପ୍ରବେଶ ହୋଇଲା ।
ବଉଳା କେଶରୀ ରାଜା ପାଶରେ ପ୍ରବେଶ
ବାଣାସୁର ପୁତ୍ର ସାଙ୍ଗ ମିଳିଲା ବିଶେଷ ।
ସେଠାରୁ ଶାନ୍ତ ହୋଇ ବେଗେ ଚଳିଗଲା
ଶୀତଳ ହେମପୁରେ ପ୍ରବେଶ ହୋଇଲା ।
ସେ ପୁରେ ରାଜନ ଯେ ଅଟଇ ସୁମାଳି
ନାରାୟଣଙ୍କୁ ଡରି ଚାରିଦ୍ୱାର ପାଳି ।
ସୁମାଳିର ନାତି ଯେ ଦଶାନନ ପୁଣି
ସେ ଯିବାରୁ ଦ୍ୱାର ଯେ ଫେଡ଼ିଲା ଦ୍ୱାରୀଜାଣି
ସେ ବାଟରେ ରାବଣ ବେଗେ ଚଳିଗଲା
ସୁମାଳିର ସଙ୍ଗତରେ ସମ୍ଭାବନା ହେଲା ।
ଦଶଗ୍ରୀବ ପଚାରିଲା କି କାରଣେ ଦ୍ୱାରପାଳୁ
ସୁମାଳି ବୋଇଲା ଶୁଣ ହନ୍ତକାରୁ ।
ବୈକୁଣ୍ଠପୁରରେ କର୍ତ୍ତା ଯେ ନାରାୟଣ
ମୋହର ବଂଶ ସେହୁ କଲା ନିଶୋଧନ !
ତାହାକୁ ଭୟକରି ଦ୍ୱାର ଅଛି ସେହୁ କିଳି
ଏମନ୍ତ ବୋଲିଣ ଯେ କହଇ ସେହୁବଳି ।
ରାବଣ ବୋଇଲା ତୁ ନକର କିଛି ଭୟ
ଅଇଲେ ନାରାୟଣକୁ ମୁଁ ମାରିବି ନିଶ୍ଚୟ ।
ଏତେକହି ଦଶାନନ ସେଠାରୁ ଚଳିଗଲା
ରୁନ୍ଧକ ବିବରଦ୍ୱାରେ ପ୍ରବେଶ ହୋଇଲା ।

ରଥରୁ ଓହ୍ଲାଇ ବିବର ପାଶେ ଯାଇ
ତାକୁ ଦେଖି ଦୁଇକନ୍ୟା ଅନ୍ତର ହୋଇରହି ।
ବୁଲିଣ ଦେଖିଲା ସକଳ ପୁର ଯାଇ
ସେ ପୁର ଦେଖିଣ ଫେରିଲା ଲଙ୍କସାଇଁ ।
ବିବର ବାଟେ ଆସି ରଥରେ ପୁଣ ବସି
ବର୍ଷେ ପାତାଳରେ ବୁଲିଲା ପୌଲସ୍ତ୍ୟରନାତି ।
କୁଳ ଜାତି ସମସ୍ତ ମାନଙ୍କୁ ଶଙ୍କୋଳିଲା
ଦୁଷ୍ଟଜନମାନଙ୍କର ସଙ୍ଗରେ କଳିକଲା ।
ବଜ୍ର କବଚଠାରେ ହୋଇଲା ପ୍ରବେଶ
ତା ସଙ୍ଗରେ ରଣକଲା ବିଶ୍ରବାର ଶିଷ୍ୟ ।
ବରଷେ ପରିଯନ୍ତେ ତା ସଙ୍ଗେ ରଣ କଲା
ହାରିଣ ସପ୍ତ ବରଷ ବନ୍ଦୀରେ ରହିଲା ।
ବିଶ୍ରବା ଋଷି ଆସିଣ ତାକୁ ଘେନିଗଲା
ସହସ୍ରାର୍ଜ୍ଜୁନ ସଙ୍ଗେ ରାବଣ ରଣ କଲା
ରଣରେ ହାରିବାରୁ ପଡ଼ିଲା ଯେ ବନ୍ଧନ
ବାସ୍ତରି ବର୍ଷରେ ହେଲାକ ମୁକଳଣ ।
ପୌଲସ୍ତି ଋଷି ଆସି ତାହାକୁ ଘେନିଗଲେ
ଦଶଗ୍ରୀବ ଗଲା ଯେ ଲଙ୍କାପୁର ଭଲେ ।
ପାର୍ବତୀ ପଚାରିଲେ ସେଠାରୁ କିସ ହେଲା
ବେଦମତୀ ଧୀରାମତୀ କଥା କହ ଦେବପରା ।
ଈଶ୍ୱର ବୋଇଲେ ଶୁଣରେ ଭଗବତୀ
ବେଦମତୀ ଧୀରାମତି ଅନ୍ତର ହେଲେ ସେଥି
ରାବଣ ଯିବାରୁ ନିଜ ଆସନେ ଯାଇ ରହି
ପନ୍ଦର ସହସ୍ର ବର୍ଷ ଏଥିରେ ଗଲା ବହି ।
ଧୀରାମତୀ କି ବେଦମତୀ କହିଲେ ବଚନ
ବୋଇଲେ ମର୍ତ୍ତ୍ୟପୁରକୁ ମୁଁ କରୁଛି ଗମନ ।
ନାରାୟଣଙ୍କୁ ଭେଟିବା ଯାଏଁ ତୁହି ଏଥି ଥିବୁ
ରଘୁରାମ ଦର୍ଶନେ ପର୍ଶୁରାମଙ୍କୁ ବିଭାହେବୁ
ଏତେ କହି ବେଦମତୀ ତହୁଁ ଚଳିଗଲା
ଦାସୀଗଣ ସଙ୍ଗେ ଘେନି ମର୍ତ୍ତ୍ୟରେ ମିଳିଲା ।
ବିନ୍ଧ୍ୟଗିରି ନିକଟରେ ଚନ୍ଦନ ନାମେ ବନ
ସେଠାରେ ପ୍ରବେଶ ଯେ ବେଦମତୀ ପୁଣ ।
ନିର୍ମଳ ଶଉଚ ପୁଷ୍କରିଣୀ ଦେଖି
ସେଠାରେ ରହିଲା ମନରେ ହୋଇ ସୁଖି ।
ବେଦମତୀ ରହିବାରୁ ସ୍ୱର୍ଗରୁ ସୁରଗଣ
ଶୂନ୍ୟରେ ଥାଇଣ ସେ ବିଚାରନ୍ତି ପୁଣ ।

ବୋଇଲେ ଅଳ୍ପଦିନେ ଚାରି ରାବଣ ହେବେହତ
ଆମ୍ଭ ନିମନ୍ତେ କମଳା ଜନ୍ମ ହୋଇବେତ ।
ଏମନ୍ତ ବିଚାରି ବିଶ୍ୱକର୍ମା ଡାକନ୍ତି
ମର୍ତ୍ତ୍ୟପୁରକୁ ତୁମ୍ଭେ ଚଳ ହେ ତଡତି ।
ତ୍ରୈଲୋକ୍ୟର ଠାକୁରାଣୀ ଅଇଲେ ମର୍ତ୍ତ୍ୟପୁର
ପନ୍ଦର ସସ୍ର ବରଷ ରହିଲେ ପାତାଳର ।
ସହସ୍ରେ ବର୍ଷ ମର୍ତ୍ତ୍ୟପୁରରେ ରହିବେ
ଜୀବନ୍ତା ସାତ ବରଷ ସେହୁ ତପି ହେବେ ।
ରାବଣ ଦେଖିଲେ ଯେ ମୃତ୍ୟୁକୁ ଲଭିବେ
ମୃତ ଶରୀରରେ ତିନିଶତ ବରଷ ରହିବେ ।
ଦେବେ ସେ ନାରାୟଣ ମର୍ତ୍ତ୍ୟରେ ଜନ୍ମହେବେ
ଚତୁର୍ଦ୍ଧା ରୂପରେ ଯେ ଜନ୍ମିବେ ବାସୁଦେବ ।
ତୁମ୍ଭେ ମର୍ତ୍ତ୍ୟପୁରେ ଯାଇ କାର୍ଯ୍ୟ ଯେ କରିବ ।
ବାଚସ୍ପତି ଭୁବନ ଚନ୍ଦନ ବନରେ ତିଆରିବ
ତହୁଁ ସେ ବିଶ୍ୱକର୍ମା ବହନ ଚଳିଗଲା
ବିନ୍ଧ୍ୟଗିରି ନିକଟରେ ଯାଇଣ ମିଳିଲା ।
ଚନ୍ଦନ ବନରେ ସେ ହୋଇଲା ପ୍ରବେଶ
ରଜନୀରେ ବିଶ୍ୱକର୍ମା କରିଲା ପୁର ଶେଷ ।
ପାଚେରୀ ଗୋଟିଏ ଯୁଣେକ ପ୍ରତି କଲା
ବିପୁଳରେ ରତ୍ନପୁର ଭିତରେ ରଚିଲା ।
କୂପ, ବାମ୍ପୀ, ସରୋବର କଲାକ ଭିଆଣ
ନାନାବର୍ଣ୍ଣେ ଦ୍ରବ୍ୟମାନ ରଖିଲା ତହିଁ ପୁଣ ।
ସମସ୍ତ ପରିପୂର୍ଣ୍ଣ କରି ବିଶ୍ୱକର୍ମା
ବେଦମତୀ ଆଗେ ମିଳିଲା ସହସ୍ର ବ୍ରହ୍ମା ।
କରଯୋଡ଼ି ଆଗରେ କଲାକ ଜଣାଣ
ତ୍ରୈଲୋକ୍ୟ ଠାକୁରାଣୀ ହୁଅ ଗୋ ପ୍ରସନ୍ନ ।
ଦୁଷ୍ଟଜନ ନାଶକରି ସନ୍ଥଲୋକ ପାଳ
ତିନିପୁରର ଶତ୍ରୁକୁ ବେଗେକରି ମାର ।
ସୁର ନର ନାଗବଳ ରଖ ପ୍ରତିପାଳି
ସ୍ଥିର ହୋଇ ଯେମନ୍ତେ ରହିବ ମହୀଆଳି ।
କରୁଣାମୟୀ ଗୋ କରୁଣା ଏବେ କର
ତୋର ରଚିବାର ଏ ସବୁ ସଂସାର ।
ଜନ୍ମକଲା ଦେବତା ଅଟନ୍ତି ତୋର ଦେବୀ
ଏମାନଙ୍କୁ ସମ୍ପାଦି ରକ୍ଷାକର ଭାବି ।
ପ୍ରଭାନ୍ନବଦନୀ ତୋ ନାରାୟଣୀ ନାମ
ଦଶରୂପରେ ନାରାୟଣଙ୍କୁ ମୋହୁ ପୁଣ ।

ପ୍ରଥମେ କମଳା ନାମ ଅଟଇ ତୋହର
ଦ୍ୱିତୀୟେ ନାରାୟଣୀ ମୋହିଲୁ ଚକ୍ରଧର ।
ତୃତୀୟେ ମହାଲକ୍ଷ୍ମୀ ସମସ୍ତଙ୍କୁ ଦେଉ ଧନ
ଚତୁର୍ଥେ ସାଗର ଦୁଲଣୀ ନାମ ପୁଣ ।
ପଞ୍ଚମେ ଗଜବାହିନୀ ତୋର ନାମ ସାର
ଷଷ୍ଠେ ଅନ୍ନପୂର୍ଣ୍ଣା ସକଳଲୋକଙ୍କୁ ଦେଉ ଆହାର
ସପତମେ ସୀତା ରୂପରେ ଜାତ ହେଉ
ଦୁଷ୍ଟଙ୍କୁ ନିବାରିଣ ପୃଥ୍ୱୀକୁ ସୁଖ ଦେଉ ।
ଅଷ୍ଟମେ ବିଷ୍ଣୁ ବଲ୍ଲଭୀ କ୍ଷୀରସାଗରେ ରହି
ତ୍ରୈଲୋକ୍ୟ ଠାକୁରଙ୍କୁ ମର୍ଦ୍ଦନ କରୁ ତୁହି ।
ନବମେ ରୁକ୍ମିଣୀ ନାମ ଧରିଣ ହେଉ ଜନ୍ମ
ଚୌଷଠି ସହସ୍ର କନ୍ୟା ତୋହର ଅଂଶେ ପୁଣ ।
ସେ ଜନ୍ମେ ଚାରିଭାଗ ତୋହର ଶରୀର
ଚାରି ରୂପ ଧରି ହରି ସଙ୍ଗରେ ବିହାର ।
ନତ୍ୟ ସ୍ଥଳ ଗୋପ ଯେ ପାଟଣା ବୃନ୍ଦାବନ
ରାଧିକା ରୂପରେ ତୋର ଅଂଶରେ ଜନମ ।
ଷୋଳସହସ୍ର ଗୋପାଳୁଣୀଙ୍କ ଉପରେ ତୁ ଶ୍ରେଷ୍ଠ
ବାଳକାଳେ ଶ୍ରୀହରିଙ୍କି ମୋହିଣ କଲୁ ବଶ
ଏଗାର ବର୍ଷ ସେଥିରେ ତୁହି ଲୀଳା କଲୁ
ଅସୁର ମାରିବା ପାଇଁ ଅଂଶେକ ରୂପ ହେଲୁ ।
ଦ୍ୱିତୀୟେ ଜାତ ତୋର ହେବ ଋଷି କୋଳେ
କଶ୍ୟପର ଦୁହିତା ହୋଇଲେ ସେକାଳେ ।
ଷୋଳ ସହସ୍ର ଦେବଙ୍କ ଦୁହିତା ସଙ୍ଗେଘେନି
ନାମଶ୍ରେଷ୍ଠ ତୋହର କୁବୁଜୀ ମାଳୁଣୀ ।
ମଥୁରାରେ ତେରବର୍ଷ ଲୀଳାକଲୁ ରହି
କୁବୁଜା ମାଳୁଣୀବୋଲି ତୋ ନାମ ବୋଲାଇ ।
ତେର ବର୍ଷ ଉଭାରୁ ମଥୁରା ତେଜ୍ୟାକରି
ଦେବକନ୍ୟା ଘେନି ତୁ ଯେ ଗଲୁ ସ୍ୱର୍ଗପୁରୀ ।
ଦ୍ୱାରକାରେ ରୁକ୍ମିଣୀ ରୂପେ ମୋହିଲୁ ଶ୍ରୀହରି
ଅଷ୍ଟ ପାଟବଂଶୀ ଯେ ତୋ ଅଂଶେ ଅବତରି ।
ରାଜକନ୍ୟା ଷୋଳସସ୍ର ତୁମ୍ଭର ଅଂଶ ମେଳ
ଲକ୍ଷେ ଷାଠିଏ ସହସ୍ର ନନ୍ଦନ ତୋହର ।
ବତିଶ ସହସ୍ର କନ୍ୟା ତୋଠାରୁ ଜାତ ହେଲେ
ସହସ୍ରେ ଦେବତାଙ୍କୁ ବରିଣ ସ୍ୱର୍ଗେ ଗଲେ ।
ସେ ଜନ୍ମ ଅନ୍ତେ ହୋଇବ ଦଶମରେ ଜନ୍ମ
ବାସୁଦେବ ଅବତାର ନିରାକାର ଜାଣ ।

ସେହି ନିରାକାର ଯେ ଚତୁର୍ଦ୍ଧା ମୁରତି
ଦାରୁ ବ୍ରହ୍ମରୂପେ ନିଳାଚଳରେ ହେବେସ୍ଥିତି ।
ସେକାଳେ ଜନ୍ମ ତୋର ପରମେଶ୍ୱର ରୂପ
ଏହି ରୂପେ ଦଶରୂପ ହେବ ଯେ ସ୍ୱରୂପ ।
ଏତେବୋଲି ସହସ୍ର ବ୍ରହ୍ମା ଜଣାଣ ପୁଣକଲା
କରଯୋଡ଼ି ଆଗରେ ଉଭା ସେ ହୋଇଲା ।
ବେଦମତୀ ବୋଇଲେ ଶୁଣ ସହସ୍ର ବ୍ରହ୍ମା
ଆଗେ ବାସୁଦେବଙ୍କ ହୁକୁମ କର କି ନା ।
ଯାଅ ସ୍ୱର୍ଗପୁର କହଯା ସୁରରାଣ
ଶୁଣିଣ ସହସ୍ର ବ୍ରହ୍ମା ଚଳିଗଲା ପୁଣ ।
ସ୍ୱର୍ଗରେ ପ୍ରବେଶ ଯାଇ ହୋଇଲା ତକ୍ଷଣ
ବସିଥିଲେ ଇନ୍ଦ୍ର ଆଦି ସର୍ବ ସୁରଗଣ ।
ଦେବଙ୍କୁ ବୋଇଲେ ମୁଁ ଅଇଲି ବୋଧକରି
ସକଳ ମଣାଇଁ ଯେ କହିଲି ମହୀଆଳି ।
ଶୁଣିଣ ସୁରଗଣ ହୋଇଲେ ସନ୍ତୋଷ
ଏରୂପେ ବହିଗଲା ସହସ୍ରେ ବରଷ ।
ନବସସ୍ର ବରଷ ହୋଇଲା ପରବେଶ
ଶେଷରେ ଚାରି ରାବଣ ହୋଇଲେ ଯେ ନାଶ ।
ବେଦମତୀ ବୋଇଲେ ସେଠାରୁ କିସ ହେଲା
ବିଶ୍ୱକର୍ମା ରଚିବା ପୁରେ ବେଦମତୀତରହିଲା ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ବାରସ୍ୱତୀ ଭୁବନ ତପ କରନ୍ତି ବେଦମତୀ ।
ଏମନ୍ତେ ସପ୍ତବରଷ ସେଥିରେ ବହିଗଲା
ଚନ୍ଦନ ବନେ ବେଦମତୀର ତପ ସିଦ୍ଧହେଲା ।
ଏକଦିନକରେ ଲଙ୍କାପତି ଯେ ରାବଣ
ଜମ୍ବୁଦ୍ୱୀପ ବୁଲିବାକୁ ହୋଇଲା ତାର ମନ ।
ପୁଷ୍ପକ ବିମାନରେ ଚଢ଼ିଣ ଅସୁର
ଜମ୍ବୁଦ୍ୱୀପରେ ପ୍ରବେଶ ହୋଇଲା ବୀରବର ।
କେଶର ଫୁଲବନେ ମିଳିଲାକ ଯାଇ
ଦେଖିଲା ପର୍ଶୁରାମ ସେଠାରେ ଅଛି ରହି ।
ଧନୁ ନାରାଚ ଯେ ଗଦାହିଁ କୁଠାର
ଆଗରେ ଥୋଇ ତପ କରନ୍ତି ଋଷିବର ।
ଦେଖିଣ ରାବଣ ମନରେ କ୍ରୋଧ ହେଲା
ଋଷି ହୋଇ ଶସ୍ତ୍ର କିମ୍ପା ରଖିଛୁ ବୋଇଲା ।
ବିମାନୁଁ ଓହ୍ଲାଇଣ ଗଲାକ ବେଗହୋଇ
ପର୍ଶୁରାମ ଆଗରେ ମିଳିଲା ଯେ ଯାଇ ।

ବୋଇଲା ଋଷିରେ କେ ଦେଲା ତୋତେ ଶସ୍ତ୍ର
ବ୍ରାହ୍ମଣ ହୋଇ ତୁ ଯେ ହୋଇଲୁ ବୀରବେଶ ।
ଯେବେ ତୁ ବଳବନ୍ତ ମୋ ସଙ୍ଗେ ରଣ କର
ପର୍ଶୁରାମ ବୋଇଲେ ଶୁଣ ଲଙ୍କେଶ୍ୱର ।
ଧନୁ ଗଦା କୁଠାର ତିନିକି ତୋଳିଦିଏ
ତେବେ ମୋ କ୍ଷତ୍ରୀପଣ ନ ରହୁ ମୋ ଦେହେ
ଶୁଣିଣ ଦଶାନନ ଧନୁକୁ ତୋଳିଲା
ତୋଳନ୍ତେ ଧନୁ ତାକୁ ମାଡ଼ିଣ ବସିଲା ।
ଉତ୍ତାନ ହୋଇଣ ଯେ ପଡ଼ିଲା ଲଙ୍କା ମଲ୍ଲ
ଉଠିବାର ଶକ୍ତିନାହିଁ ହେଲା କଲବଲ ।
ଧରଣୀରେ ପଡ଼ି ଗଡ଼ି କରେ ଗରଜନ
ଦେଖିଣ ପର୍ଶୁରାମ ଉଠିଲେ ବହନ ।
କୁଠାର ଘେନିଣ ହାଣିଲେ ଦଶମୁଣ୍ଡ
ଛିଡ଼ି ଦଶମୁଣ୍ଡ ପୁଣି କଅଁଳି ହେଲା ଗୁଣ୍ଡ ।
ଦେବତାଏ ଶୂନ୍ୟରେ ଥାଇଣ ଡାକଦେଲେ
ତୁମ୍ଭର ହସ୍ତେ ମୃତ୍ୟୁ ନାହିଁ ସେ ବୋଇଲେ
ତପନ କୁଳରେ ଶ୍ରୀରାମ ଜାତ ହେବେ
ତାଙ୍କର ହସ୍ତରେ ତାର ପ୍ରାଣ ଯିବ ତେବେ ।
ଶୁଣିଣ ପର୍ଶୁରାମ ସେଠାରୁ ଚଳିଗଲା
କୁଠାର ଗଦା ନେଇ ଯମଦଗ୍ନି ବଳା ।
ବରଳ ବନସ୍ତରେ ହୋଇଲା ପ୍ରବେଶ
କ୍ରୋଧରେ ଜର ଜର ରେଣୁକାର ଶିଷ୍ୟ ।
ଏମନ୍ତେ ଏକ ବର୍ଷ ତହିଁରେ ବହିଗଲା
ନାରଦ ମୁନି ଲଙ୍କାରେ ପ୍ରବେଶ ହୋଇଲା ।
ମନ୍ଦୋଦରୀ ପୁରରେ ହେଲେ ପରବେଶ
ଦେଖିଣ ମନ୍ଦୋଦରୀ ଓଳଗେ ମୁନିପାଶ ।
ଚରଣ ଧୋଇଦେଲା ସୁବାସିତ ଜଳେ
ବୋଇଲା ମୁନିବର କିକାର୍ଯ୍ୟେ ବିଜେକଲେ ।
ନାରଦ ବୋଇଲେ କଥାଏ ରାଣୀ ଶୁଣ
ତୋହର ସ୍ୱାମୀ ଗଲା ଜମ୍ବୁଦ୍ୱୀପକୁ ପୁଣ ।
ପର୍ଶୁରାମ ନାମେ ଯେ ଏକଇ ଋଷିବର
ତାର ସଙ୍ଗେ ରଣ କରିବାକୁ ଗଲା ଖର ।
ସେ ବୋଇଲା ମୋର ଧନୁ ତୋଳରେ ଅସୁର
ଶୁଣିଣ ରାବଣ ଯେ ଧଇଲା ଧାଡିକାର ।
ତୋଳି ନପାରିଲା ଯେ ହୃଦରେ ବସେ ମାଡ଼ି
ବରଷେ ହେଲା ସେହୁ ପଡ଼ିଛି ମହୀଆଳି ।

ମନ୍ଦୋଦରୀ ବୋଇଲା ସେ କେମନ୍ତେ ଆସେ ପୁଣ
ନାରଦ ବୋଇଲେ ପିତା ଆଣିବ ପୁତ୍ର ଜାଣ ।
ମନ୍ଦୋଦରୀ ବୋଲେଦେବ ବେଗେ ଚଳିଯାଅ
ଉପାୟକର ସ୍ୱାମୀ ପାଆନ୍ତୁ ନିଜ ଦେହ ।
ନାରଦ ବୋଇଲେ ଏବେ କଥାଏ ସତ୍ୟକର
ଯେବେଳେ ଯା କହିବି ନମେଣ୍ଟିବୁ କଥା ମୋର ।
ମନ୍ଦୋଦରୀ ବୋଇଲା ତୁମ୍ଭେ ପରମ ଗୁରୁମୋର
ତୁମ୍ଭ କଥାରୁ ମୁଁ ଯେ ନୋହିବି ବାହାର ।
ସତ୍ୟ କରାଇ ନାରଦ ସେଠାରୁ ଚଳିଗଲେ
ବିଶ୍ରବା ଋଷିଙ୍କ ପାଶେ ପ୍ରବେଶ ହୋଇଲେ ।
ଦେଖିଣ ବିଶ୍ରବା ତାଙ୍କୁ ନମସ୍କାର କଲେ
ନିସ୍ତରିଲି ବୋଲିଣ ମୁଖେ ଉଚ୍ଚାରିଲେ ।
ପଚାରିଲେ କିମ୍ପା ବିଜେ କଲ ମୋର ପୁରେ
ନାରଦ ବୋଇଲେ ଶୁଣ ହେ ମୁନିବରେ ।
ଅସୁରୁଣୀ କୈକେଶକୁ ଦେଖି ବଶ୍ୟହେଲୁ
ତାହାକୁ ବିଭା ହୋଇଣ ରତିରଙ୍ଗ କଲୁ ।
ତିନିପୁତ୍ର ଦୁହିତା ତାଠାରୁ ହେଲେ ଜାତ
ସେ ପୁଣ ବର ପାଇ କରନ୍ତି ଉତ୍ପାତ ।
ରେଣୁକା କୁମର ଯେ ଅଟେ ପର୍ଶୁରାମ
ନାରାୟଣ ଅଂଶ ଘେନି ହୋଇଲା ଜନମ ।
ବହୁତ ଦୁଷ୍ଟପଣ ନିବାରଣ କଲା
ପାତାଳପୁରେ ନାଗବଳଙ୍କୁ ସାଧିଲା ।
ସପ୍ତ ଦ୍ୱୀପରୁ ମାଇଲା ଦୁଷ୍ଟ ରାଜାଗଣ
ତା ଧନୁ ଧରିବାକୁ କେ ନୋହିଲେ ଭାଜନ ।
ସ୍ୱର୍ଗରେ ପଶିଣ ସେ ଦେବଙ୍କୁ ଜିଣିଲା
ଶତେ ବର୍ଷରେ ଥରେ ବୁଲଇ ଋଷି ବଳା ।
ଶତେବାର ପର୍ଯ୍ୟନ୍ତ ବୁଲିଲା ତିନିପୁର
ସ୍ତିରୀ ଅଙ୍ଗ ନ ଛୁଅଁଇ ଋଷିର କୁମର ।
ସେ କଥା ଜାଣି ରାଜାଏ ସ୍ତିରୀବେଶ ହେଲେ
ସପ୍ତପୁରେ ଯେତେ ରାଜା ଆଣ୍ଟୁ କୁଡ଼ାଥିଲେ ।
ତୋହର କୁମର ଲଙ୍କାରେ ରାଜା ଜାଣ
ଜମ୍ବୁଦ୍ୱୀପକୁ ସେ ଗଲାକ ବୁଲିଣ ।
ପର୍ଶୁରାମକୁ ଦେଖିଣ ହୋଇଲା ଖଣ୍ଡିଆଳି
ବୋଇଲା ମୋ ସଙ୍ଗେ ରଣକର ଜଟାଧାରୀ ।
ଶୁଣିଣ ପର୍ଶୁରାମ ବୋଲେ ତାକୁ ବାଣୀ
ଏ ଧନୁଗୋଟି ଅସୁର ଆଣ ତୁରେ ତୋଳି ।

ଶୁଣିଣ ରାବଣ ଯେ ଧନୁ ତୋଳିଗଲା
ତୋଳନ୍ତେ ଧନୁ ତାକୁ ମାଡ଼ିଣ ବସିଲା ।
ବରଷେ ହୋଇଲା ପଡ଼ିଛି ତୋର ପୁତ୍ର
ଉପରେ ନାରାୟଣୀ ଧନୁ ବଳବନ୍ତ ।
ତାର ବିକଳ ଦେଖି ମୁଁ ଲଙ୍କାଗଡ଼ ଗଲି
ତାହାର ଘରଣୀ ମନ୍ଦୋଦରୀକି କହିଲି ।
ସେ ବୋଇଲା ଶ୍ୱଶୁରଙ୍କୁ କହିବ ତୁମ୍ଭେ ଯେବେ
ପୁତ୍ରକୁ ମୁକୁଳାଇ ଆଣିଦେବେ ତେବେ ।
ଶୁଣିଣ ବିଶ୍ରବା ଋଷି ନାରଦ ସଙ୍ଗେ ଘେନି
ବଉଳ ବନ ଭିତରେ ପ୍ରବେଶ ହେଲେ ପୁଣି ।।
ପର୍ଶୁରାମଙ୍କୁ ଦେଖି ବହୁତ ସ୍ତୁତି କଲେ
ଜୟ ତୁ ନାରାୟଣ ବଦଳ ରୂପ ଭଲେ ।
ଋଷିଙ୍କର ମଧ୍ୟରେ ଅଟୁ ସରଦାର
କ୍ଷତ୍ରୀଙ୍କର ମଧ୍ୟରେ ଅଟୁ ତୁ ସରଦାର ।
ଦେବଙ୍କର ମଧ୍ୟରେ ତୁ କାଳ ଦେବତା
ନାରାୟଣ ମଧ୍ୟରେ ଅଟୁ ତୁ ଜଗତ୍‌ଜିତା ।
ଈଶ୍ୱର ପରମେଶ୍ୱର ବେଦବର ତିନି
ଏ ତିନିଜଣ ତୋର ଶରୀରେ ଛନ୍ତି ପୁଣି ।
ଏମନ୍ତେ ବିଶ୍ରବା ଋଷି କଲେ ଯହୁଁ ସ୍ତୁତି
ପର୍ଶୁରାମ ଉଠିଣ ହୋଇଲେ ଶାନ୍ତମୂର୍ତ୍ତି ।
ବୋଇଲେ କି କାର୍ଯ୍ୟରେ ଅଇଲ ମୁନିବର
ବିଶ୍ରବା ବୋଇଲେ ତୁମ୍ଭେ ଶୁଣ ମୋ ଉତ୍ତର
ରାବଣ ନାମରେ ମୋର କୁମର ଅଟଇ
ତୁମ୍ଭର ହସ୍ତରେ ତାହାର ମୃତ୍ୟୁ ନାହିଁ ।
ଛାଡ଼ିଦିଅ ତାକୁ କ୍ରୋଧ ମନରୁ ଛାଡ଼
ଅଳ୍ପଦିନେ ନାଶଯିବ କିମ୍ପା କର ଗାଢ଼ ।
ପର୍ଶୁରାମ ବୋଇଲେ ସେ ଅଟଇ ବଡ଼ ଦୁଷ୍ଟ
ସେ ରାବଣ ମଲେ ଦେବଙ୍କର ଯିବ କଷ୍ଟ ।
ନାରଦ ବୋଇଲେ ତୁମ୍ଭେ ନ ପାରତାକୁ ମାରି
ବାସୁଦେବ ଅବତାର ହେବେ ମହୀଆଳି ।
ତେବେ ସେ ନାଶ ଯିବ ଅସୁର କୁଳଗୋତ୍ର
ନଉସାଗର ଗରିଷ୍ଠ ଅସୁର ହେବେ ହତ ।
ଶୁଣିଣ ପର୍ଶୁରାମ ସନ୍ତୋଷମନ ହେଲେ
ମୁନିଙ୍କି ଘେନିଣ ଯେ ବଉଳ ବନେ ଗଲେ ।
ରାବଣର ପାଶରେ ହେଲେ ପରବେଶ
ଉତ୍ଥାନ ହୋଇ ପଡ଼ିଛି ନଉକେଶା ଶିଷ୍ୟ ।

ଉପରୁ ଧନୁତୋଳି ଧରିଲା ପର୍ଶୁରାମ
ଧନୁ ତୋଳି ଧରନ୍ତେ ଉଠିଲା ରାବଣ ।
ପିତାର ଚରଣେ ସେ ନମସ୍କାର କଲା
ପର୍ଶୁରାମଙ୍କ ଚରଣେ ଭକ୍ତିରେ ନମିଲା ।
ନାରଦଙ୍କ ଚରଣେ ଓଳଗେ ଶତେବାର
ପର୍ଶୁରାମ ବୋଇଲେ ଶୁଣରେ ଅସୁର ।
ଆଉ ଯେବେ ମୋ ସଙ୍ଗେ କରିବୁ ଦୁଷ୍ଟପଣ
ନିଶ୍ଚୟେ ନାଶ ଯିବୁରେ ଜାଣିଥାଅ ପୁଣ ।
ତୋର ପିତା କହିବାରୁ ଏଥର ଛାଡ଼ିଦେଲି
ଅମର ହୋଇଲେ ତୁ ମାରନ୍ତି ତୋତେ ବଳି ।
ତୋର ଯାରହସ୍ତରେ ଥାଆନ୍ତି ମୃତ୍ୟୁପୁଣ
ତାହାକୁ ଡାକିଣ ମୁଁ ଆଣନ୍ତି ଯାଇଣ ।
ରଥ ଚଢ଼ି ରାବଣ କଲାକ ଗମନ
ଲଜ୍ୟାଭରେ ମୁଖ ତାର ଦିଶଇ ମଳିନ ।
ଜମ୍ବୁଦ୍ୱୀପ ଭ୍ରମଣ କରି ଯାଆନ୍ତେ ପୁଣି
ଚନ୍ଦନ ବନ ଭିତରେ ପ୍ରବେଶ ଲଙ୍କମଣି ।
ଯାଆନ୍ତେ ବାରସ୍ୱତି ଭୁବନ ଦେଖିଲା
ପୁଷ୍ପକ ବିମାନ ଯେ ସେଠାରେ ରୁହାଇଲା ।
ଭିତରେ ପଶିଲା ତହିଁ ଦୁଷ୍ଟ ଯେ ରାବଣ
ବେଦମତୀକି ଯାଇ ଦେଖିଲା ସେ ପୁଣ ।
ସଂସାର ବହୁଅଛି ବେଦମତୀର ତେଜ
ଦେଖିଣ ରାବଣ ଯେ ହୋଇଣ ଅଧୈର୍ଯ୍ୟ ।
ବିଚାରିଲା ଏପରି ସୁନ୍ଦରୀ କେହି ନାହିଁ
ତିନିପୁର ବୁଲି ମୁଁ ନଦେଖିଲି କାହିଁ ।
ବେଦମତୀ କି ରାବଣ କହିଲାକ ପୁଣ
ରତିଦାନ ଦେଇଣ ରଖ ମୋର ପ୍ରାଣ ।
କିମ୍ପାଇ ଏଠାବରେ ଏକାହୋଇ ରହ
ତ୍ରୈଲୋକ୍ୟରେ ସାରହେବୁ ପ୍ରୀତିମୋତେ ଦିଅ
ତିନିକୋଟି ପଞ୍ଚାଶ ରାଣୀରେ ହେବୁ ଶ୍ରେଷ୍ଠ
ତୋହର ଚରଣେ ଖଟିବେ ସମସ୍ତ ।
ହସିଣ କଥା କହ ନ ବାଧୁ କାମ ମୋତେ
ଏମନ୍ତ ବଚନ କହେ ବିଶ୍ରବାରେ ସୁତେ ।
ବେଦମତୀ ବୋଲେ ମୁଁ ଯେ ନ ଭଜଇତୋତେ
ବାସୁଦେବଙ୍କୁ ଭଜନ କରେ ମୁଁ ଅନ୍ତର୍ଗତେ ।
ବାସୁଦେବଙ୍କ ବିନୁ ଅନ୍ୟରେ ନାହିଁ କାର୍ଯ୍ୟ
ବୁଝିଣ ରାବଣ ତୁ ନହୁଅ ଯେ ଅଧୈର୍ଯ୍ୟ ।

ବଳତ୍କାର ପଣ ତୁରେ ନକର ମୋଠାର
ବଳବନ୍ତ ପଣକଲେ ମରିବୁ ନିଶାଚର ।
ନାରାୟଣ ସଙ୍ଗରେ ନୁହ ଯେ ତୁ ଭଗାରୀ
ସଚରାଚର ମେଦିନୀ ଅଟଇ ଯାହାରି ।
ସେ ବାସୁଦେବଙ୍କୁ ମୁଁ ସୁମରି ଯେ ନିତ୍ୟ
ପନ୍ଦର ସହସ୍ର ବର୍ଷ ହେଲାରେ ପାପିଷ୍ଠ ।
ଭେଟ ନ ପାଇଲି ସେ ଅଛନ୍ତି କେଉଁଠାରେ
ପ୍ରତିଦିନ ଭଜଇ ମୁଁ ତାଙ୍କ ଚରଣରେ ।
ରାବଣ ବୋଇଲା ସେ ମୋର ପ୍ରାୟ ହୋଇ
କ୍ଷୀର ସାଗର ଭିତରେ ରହିଅଛି ଶୋଇ ।
ଯେଉଁ ଦିନୁ ତିନିପୁରେ ମୋହର ପ୍ରଭୁପଣ
ସକଳ ଦେବତା ଖଟିଲେ ମୋତେ ଜାଣ ।
ସେହି ଦିନୁଁ ପ୍ରଭୁପଣ ସରିଲା ତାହାର
ଜଳର ଭିତରେ ଲୁଚି ରହିଛି ଚକ୍ରଧର ।
ମୋର ହସ୍ତେ ମରିବାକୁ ଭୟ ଯେ ତାରଜାଣ
ଡରିକରି କୂଳକୁ ନ ଆସେ ନାରାୟଣ ।
ମୋର ବୋଲ କରିଣ ମୋ ସଙ୍ଗେ ପ୍ରୀତିକର
ତ୍ରୈଲୋକ୍ୟରେ ଠାକୁରାଣୀ ହୋଇବୁ ନିକର ।
ବେଦମତୀ ବୋଇଲେ ତୁ ନଜାଣୁ ଅସୁର
ସେ ନାରାୟଣ ବସେ ସବୁରି ଶରୀର ।
ନର ବାନର ଦେବତା ଯେତେ ଜୀବ ଜାଣ
ସ୍ଥାବର ନାଗବଳ ସମସ୍ତଙ୍କର ପ୍ରାଣ ।
ତୋହର ପ୍ରାୟ କେତେ ଅସୁର ଏଥି ଥିଲେ
ନାରାୟଣ ସଙ୍ଗତେ ଅପ୍ରୀତି ହୋଇମଲେ ।
ଏବେ ତୁ ଅଳ୍ପ ଦିନରେ ଯିବୁ ନାଶ
ନାରାୟଣଙ୍କୁ ନିନ୍ଦାକରୁରେ ଅଳ୍ପାୟୁଷ ।
ମନକଲେ ପ୍ରଳୟ ସେହୁ କରିପାରେ
ଏକା ସେ ନାରାୟଣ ସକଳ ବିସ୍ତାରେ ।
ଶୁଣିଣ ରାବଣ ମନରେ କ୍ରୋଧ ହେଲା
ଆଜି ନାରାୟଣ ତୋତେ ରଖୁସେ ବୋଇଲା ।
ଏତେ ବୋଲି ବଳାତ୍କାରେ ଧଇଲା ତାକୁ ପୁଣ
କ୍ରୋଧରେ ବେଦମତୀ ଶାପଦେଲା ଜାଣ ।
ବୋଇଲେ ପାପିଷ୍ଠ ତୁ ଛୁଇଁଲୁ ମୋତେ ପୁଣ
ମୋର ଯୋଗେ ତୁହି ମରରେ ରାବଣ ।
ତୋହାର ବଂଶରେ କେହି ନରହିବେ ପୁଣ
ଶାପ ଦେଇ ବେଦମତୀ ଉଠିଲା ତକ୍ଷଣ ।

ଯଜ୍ଞକୁଣ୍ଡ ଅଗ୍ନିରେ ପଶିଲା ଯେ ଯାଇ
ମୁଖ ପାଦାଦି ତକ୍ଷଣେ ଭସ୍ମ ହେଲା ତହିଁ ।
ନିଜ କାୟାଗୋଟି ଅଗ୍ନିରେ ଅଛି ପୁଣ
ଅଗ୍ନିପାଶେ ରାବଣ ମିଳିଲା ତତ୍କ୍ଷଣ ।
ବିଂଶ ହସ୍ତରେ ଅଗ୍ନିକି ମର୍ଦ୍ଦନ କଲା ଯାଇ
ଶରୀର ମଝି ଖଣ୍ଡ ପାଇଲା ପୁଣ ତହିଁ ।
ମନଦୁଃଖେ ବିଂଶବାହୁ ଘେନିଣ ଅଇଲା
ପୁଷ୍ପକ ଯାନ ଉପରେ ନେଇଣ ଥୋଇଲା ।
ମନରେ ବିଚାର ଯେ କରଇ ରାବଣ
ବ୍ୟଞ୍ଜନ କରି ଏହାକୁ ଖାଇବଇଁ ପୁଣ ।
ସୁକୁମାରୀ ଶରୀର ଚିକ୍କଣ ମାଂସ ଯାର
ଏ ମାଂସ ଭକ୍ଷିଲେ ପୁଷ୍ଟ ହେବ ମୋ ଶରୀର ।
ଏମନ୍ତ ବିଚାରି ଯେ ଯାନପରେ ବସି
ଲଙ୍କାରେ ପ୍ରବେଶ ହେଲା ବିଶ୍ରବାର ବଂଶି ।
ଅମଳାନ ବସନରେ ପୂରାଇ ମୂର୍ଦ୍ଧନି
ବିମାନରୁ ଓହ୍ଲାଇଲା ବୀର ଲଙ୍କମଣି ।
ମନ୍ଦୋଦରୀ ପୁରେ ଯାଇ ହୋଇଲା ପ୍ରବେଶ
ଦେଖିଣ ମନ୍ଦୋଦରୀ ହୋଇଲା ସନ୍ତୋଷ
ବୋଇଲା ସୁନ୍ଦରୀ ମୋର ବୋଲ କର ।
ଏହି ବସ୍ତ୍ର ମଧ୍ୟରେ ଅଛି ମାଂସ ସାର ।
ଗୁପତ କରିଣ ବ୍ୟଞ୍ଜନ ଯାକୁ କର
କେହି ନ ଜାଣିବେ ମୁଁ କରିବି ଆହାର ।
ଏମନ୍ତ କହିଣ ତହୁଁ ଗଲା ଦଶାନନ
ବାହାର ଜଗତିରେ ବସିଲା ହର୍ଷମନ ।
ମର୍ଦ୍ଦନ ମାଜଣା ହୋଇଣ ସ୍ନାନ କଲା
ଦେବାର୍ଚ୍ଚନ ମନ୍ଦିରେ ପ୍ରବେଶ ହୋଇଲା ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ସ୍ୱର୍ଗ ଦେବତାଏ ବସିଲେ ସଭାକରି
ନାରଦଙ୍କୁ ଦେବତାଏ କଲେକ ସ୍ମରଣ
ପ୍ରବେଶ ହୋଇଲେ ଯାଇ ବ୍ରହ୍ମାଙ୍କ ନନ୍ଦନ ।
ଦେବତାଏ ବୋଇଲେ ଶୁଣହେ ମୁନିବର
ରାବଣକୁ ବନ୍ଧନରୁ କଲତ ଉଦ୍ଧାର ।
ସେଠାରୁ ଚଳିଯାଇ ଅନୀତି ବୁଦ୍ଧି କଲା
ବେଦମତି କନ୍ୟାକୁ ସୁରତି ମାଗିଲା ।
ବଳାତ୍କାରେ ଧରିବାକୁ ବିଚାରେ ଅସୁର
ଅନ୍ୟାୟ ଦେଖି ବେଦମତୀ ହୋଇଲେ କାତର ।

ଯଜ୍ଞ ଅଗ୍ନିରେ ଯାଇ ତକ୍ଷଣେ ପଶିଲେ
ପଶିଲା ବେଳେ ସତୀ ରାବଣେ ଶାପଦେଲେ ।
ବୋଇଲେ ମୋ ହେତୁ ମରରେ ଅସୁର
ଶୁଣିକରି ରାବଣ ହୋଇଲା କାତର ।
ବିଚାରିଲା ଏ ସତୀର ଶାପ ଯେ ମୋତେ ହେବ
କାଳେ କାଳେ ଏକଥା ମେଣ୍ଟିଣ ନୋହିବ ।
ଏମନ୍ତ ବିଚାରି ଅଗ୍ନିରେ ହାତ ଭରି
ମୃତ ଶବ ଅଗ୍ନିରୁ ଆଣିଲା କାଢ଼ିକରି ।
ଦେଖିଲା ପାଣି ପାଦ ମସ୍ତକ ଭସ୍ମ ହୋଇ
ମଝି ଗଣ୍ଡି ଖଣ୍ଡ ଅଛଇ ଯେ ରହି ।
ବ୍ୟଞ୍ଜନ କରିବ ବୋଲି ଗଣ୍ଡିକି ଘେନିଯାଇ
ବସ୍ତ୍ରରେ ଗୁଡ଼ାଇ ରଥରେ ଯତନ କରିଥୋଇ ।
ବିଚାରିଲା ଏହାକୁ ଭକ୍ଷିଲେ ଯିବ ଶାପ
ଭସ୍ମ ହେଲେ ତାହାର ସରିବା ସବୁ ଧାପ ।
ଏମନ୍ତ ବିଚାରି ସେ ରଥରେ ଘେନିଗଲା
ମନ୍ଦୋଦରୀ ଆଗରେ ନେଇଣ ତାହାଦେଲା
ବୋଇଲା ବ୍ୟଞ୍ଜନ ତୁ କରରେ ପ୍ରିୟସଖି
ବରଷେ ହେଲା ମୁହିଁ ମାଂସ ଯେ ନଭକ୍ଷି ।
ଏହିକ୍ଷଣି ମନ୍ଦୋଦରୀ କରିବ ରନ୍ଧନ
ଅସୁର ଭକ୍ଷିଲେ ନମରେ ସେଟି ପୁଣ ।
ବ୍ୟଗ୍ରରେ ଲଙ୍କାଗଡ଼କୁ ଚଳ ହେ ମୁନିବର
ଯେମନ୍ତେ ଅସୁର ନ ଭକ୍ଷେ ମାଂସ ତାର ।
ଉପାୟ କରିଣ ଯାଇ ତାକୁ ରଖ
ତେବେ ଯେ ଦେବତାଏ ପାଇବେ ବେଳେ ସୁଖ ।
ଏମନ୍ତ କହିବାରୁ ଦେବତା ଗଣେ ପୁଣ
ଲଙ୍କାଗଡ଼କୁ ମୁନି ଯେ ଚଳିଲେ ତତକ୍ଷଣ ।
ମନ୍ଦୋଦରୀ ଆଗରେ ମିଳିଲେ ଯାଇ ଋଷି
ଋଷିଙ୍କି ଦେଖିଣ ନମିଲା ଶୁଭ୍ରକେଶୀ ।
କି କାର୍ଯ୍ୟେ ମୋର ପୁରେ ବିଜୟ ଦେବ କଲ
ତୁମ୍ଭର ସକାଶୁଁ ମୁଁ ଯେ ପାଇଲଇଁ ବର ।
ନାରଦ ବୋଇଲେ ଏବେ ମୋର ବୋଲକର
ସ୍ୱାମୀଠାରେ ଯେବେ ଶରଧା ଅଛି ତୋର ।
ତୋହର ସ୍ୱାମୀ ଏବେ ଅବେଭାର କଲା
ଅସୁର ଜାତି ସିନା ମଦରେ ବ୍ୟାପିଲା ।
ସମସ୍ତଙ୍କ ସଙ୍ଗରେ ଭଗାରି ହୋଇ ଲାଗି
ଦୁଷ୍ଟ ବୋଲି ସମସ୍ତେ ନକହେ କେହିବେଗି ।

ମଲେ ସମସ୍ତଙ୍କର କଳଙ୍କ ଯିବ ପୁଣ
ସେଥି ସକାଶେ ସମସ୍ତେ କରନ୍ତି ବିଚାରିଣ ।
ଆମ୍ଭେ ତୋର ହିତରେ ଥିବାରୁ ଏବେ ଜାଣ
ପର୍ଶୁରାମଠାରୁ ଯେ କଲୁ ମୁକୁଳାଣ ।
ସେଠାରୁ ସ୍ୱାମୀ ତୋର ଆସିଲା ଯା ଚଢ଼ି
ଚନ୍ଦନ ବନ ଭିତରେ ପଶିଲାକ ଫେରି ।
ନାରାୟଣ ବନିତା ଯେ ବେଦମତୀ ଜାଣ
ତପ କରୁଥିଲା ସେ ବନରେ ରହିଣ ।
ତାହାକୁ ଦେଖିଣ ବଳାତ୍କାର କଲା
ବଳାତ୍କାର ଦେଖିଣ ସତୀ ଶାପ ଦେଲା ।
ଏତେବୋଲି ଅଗ୍ନିରେ ଝାସ ଦେଲା ପୁଣ ।
ଅଗ୍ନିରେ ପଶନ୍ତେ ପାଦପାଣି ଭସ୍ମ ହେଲା
ନିମଗ୍ନ ପିଣ୍ଡ ଗୋଟି ଅତୁଟ ରହିଲା ।
ସେ ପିଣ୍ଡ ଘେନିଣ ଯେ ତୋର ସ୍ୱାମୀ ଆସି
ବ୍ୟଞ୍ଜନ କରିବାକୁ ତତେ ଦେଲାରେ ଶୁଭ୍ରକେଶି ।
ତାହା ଜାଣି ଆମ୍ଭେ ଆସିଲୁଁ ତୋର ପୁର ।
ସ୍ୱାମୀରେ ଲୋଭ ଯେବେ ଅଛଇଁ ତୋହର
ତେବେ ସେ ପିଣ୍ଡକୁ ନକର ବ୍ୟଞ୍ଜନ
ସେ ମାଂସକୁ ଖାଇ ତୋର ସ୍ୱାମୀର ମରଣ ।
ଗର୍ଭରେ ପଡ଼ିଲେ ଫାଟିବ ତାର ପେଟ
ନିଶ୍ଚୟ ମରିବଟି ଏକଥା ନିରାଟ ।
ମନ୍ଦୋଦରୀ କହିଲା କରିବି ଏବେ କିସ
ନାରଦ ବୋଇଲେ ବ୍ୟଞ୍ଜନ କର ଅନ୍ୟ ମାଂସ ।
ସ୍ୱାମୀ ତୋର ନଜାଣିବ ଗୁପତ କରିଦେବୁ
ପଚାରିଲେ ସେହି ମାଂସ ବୋଲିଣ କହିବୁ ।
ଏବେ ସେ ମୁର୍ଦ୍ଧନୀକି ମଞ୍ଜୁଷରେ ଭର
ସୁବର୍ଣ୍ଣ ମଞ୍ଜୁଷଗୋଟି ବେଗେ ସେ ତିଆର ।
ଶୁଣିଣ ମନ୍ଦୋଦରୀ ଦାସୀକି ଘେନି ଚଳି
ସୁବର୍ଣ୍ଣର ମଞ୍ଜୁଷ ଆଣିଲା ବେଗକରି ।
ମଞ୍ଜୁଷ ଭିତରେ ବେଦମତୀର ମୁର୍ଦ୍ଧନୀ
ନୂତନ ବସନରେ ଶଯ୍ୟା କରି ପୁଣି ।
ମୁର୍ଦ୍ଧନୀକି ଥୋଇଣ ମଞ୍ଜୁଷ ମୁଦକଲେ
ସାଗର ଭିତରେ ନେଇଣ ମେଲିଦେଲେ ।
ପୁଣି ମେଷ ଗୋଟିଏ ମାରିଣ ମାଂସ ତାର
ମନ୍ଦୋଦରୀ ବ୍ୟଞ୍ଜନ କଲାକ ସତ୍ୱର ।

ମନ୍ଦୋଦରୀ କି ନାରଦ କହିଣ ଚଳିଗଲେ
ସ୍ୱର୍ଗପୁରେ ଯାଇଣ ପରବେଶ ହେଲେ ।
ଦେବାର୍ଚ୍ଚନ ସାରି ଅଇଲା ରାବଣ
ଭୋଜନ କରିଣ ସେ ସନ୍ତୋଷକଲା ମନ ।
ଆଚମନ ସାରିଣ ବିଡ଼ିଆ ଭୁଞ୍ଜିଲା
ରତ୍ନପଲଙ୍କରେ ନିଶ୍ଚିନ୍ତେ ନିଦ୍ରା ଗଲା ।
କଥା ଏକ ରହିଲା ପାର୍ବତୀ ପଚାରିଲେ
ବେଦମତୀ ସଙ୍ଗରେ ଯେତେକ ଦାସୀଥିଲେ ।
ସେମାନେ କିସକଲେ କହ ମୋ ଆଗେଣ
ତେବେ ମୋର ମନ ସନ୍ତୋଷ ହେବ ଜାଣ ।
ଈଶ୍ୱର ବୋଇଲେ ବେଦମତୀ ଝାସଦେଲା
ରାବଣକୁ ଶାପ ଦେଇ ଅଙ୍ଗକୁ ଧ୍ୱଂସିଲା ।
ବେଦମତୀ ମରିବାରୁ ବିଚାରି ସର୍ବଦାସୀ
ଅନେକ ପଶିଣ ହୋଇଲେ ଭସ୍ମରାଶି ।
ବୈଧୃମଣ୍ଡଳରେ ଜନକ ଋଷି ଘରେ
ଜନମ ହୋଇଲେ ସେ ଯାଇଣ ସତ୍ୱରେ ।
କିଛିଦିନ ଅନ୍ତରେ ଯୁବାରୂପ ହେଲେ
ପୂର୍ବର ପୁଣ୍ୟବଳେ ଜନକଙ୍କ ଆଳେ ।
ପାର୍ବତୀ ବୋଇଲେ ସେ ସ୍ଥାନ କିସହେଲା
ଈଶ୍ୱର ବୋଇଲେ ଅଗ୍ନିକା ମହର୍ଷି ରହିଲା ।
ପାର୍ବତୀ ବୋଇଲେ ମଞ୍ଜୁଷ କିସ ହେଲା
ଲବଣ ସମୁଦ୍ରରେ ମଞ୍ଜୁଷ ଭାସୁଥିଲା ।
ଈଶ୍ୱର ବୋଇଲେ ଶୁଣ ଗୋ ପାର୍ବତୀ
ସାଗର ମଧରେ ମଞ୍ଜୁଷ ମେଲି ସେଟି ।
ସପ୍ତଦିନ ପର୍ଯ୍ୟନ୍ତ ମଞ୍ଜୁଷ ଭାସୁଥିଲା
ସେହି ନାରଦ ଦେବଙ୍କ ଆଗରେ କହିଲା ।
ଦେବତାମାନେ ବସିଣ ବିଚାରକୁ କଲେ
ମାୟାଦେବୀଙ୍କୁ ଘେନିଣ ବେଗେ ଚଳିଗଲେ ।
ସାଗର କୂଳରେ ପ୍ରବେଶ ହୋଇଲେ
ଦେଖିଣ ତରଙ୍ଗ ମନ୍ତ୍ରୀ ମଞ୍ଜୁଷ ଆଣିଦେଲେ ।
ମାୟାଦେବୀ ଘେନିଣ ଚଳିଲେ ସେଥୁଁ ତ୍ୱରା
ମିଥିଳା ନଗରେ ଯାଇ ଜନକ ଯଜ୍ଞଶାଳା ।
ଗୁପ୍ତକରି ରଖିଲେ ଛ'ହାତ ଗଭୀରରେ
ସେଠାରୁ ମାୟାସ୍ତିରୀ ଚଳିଗଲେ ଖରେ ।
ଦେବତାଙ୍କ ଆଗରେ ଯାଇଣ କହିଲେ
ଶୁଣିକରି ସୁରଗଣେ ହରଷ ହୋଇଲେ ।

ବେଦବରଙ୍କୁ ସମସ୍ତେ ସୁମରଣା କଲେ
ଦେବତାଙ୍କୁ ସ୍ମରଣ ବିଧାତା ଜାଣିଲେ ।
ବଳରାମ ଦାସ ନମେ ଶ୍ରୀହରି ଚରଣ
ଅନାଦି ନାରାୟଣ କରହେ କାରଣ ।
ପାର୍ବତୀ ବୋଇଲେ ଦେବ ସେଠାରୁ କିସ ହେଲା
ବେଦମତୀ ଗୁପ୍ତଭାବେ ମିଥିଳାରେ ରହିଲା ।
ପାଦପାଣି ତାହାର ହୋଇଲା ଭସ୍ମରାଶି
କେମନ୍ତ ହେଲା କହ ହେ କପିଳାସ ବାସୀ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ବେଦବରଙ୍କୁ ସ୍ତୁତି କଲେ ସୁରପତି ।
ଜାଣିଣ କୁଶଧର ବେଗେ ଆସି ମିଳି
ଦେଖିଣ ଦେବତାଏ ଆନନ୍ଦେ ମାନ୍ୟକରି ।
ବେଦବର ବୋଇଲେ କିସକାର୍ଯ୍ୟ ଅର୍ଥେ
ଚିନ୍ତାକରି ଅଛ ଯେ କହ ସୁରନାଥେ ।
ଦେବତାଏ ବୋଇଲେ ଶୁଣ ହେ କୁଶପାଣି
ବେଦମତୀ କମଳା ଅଂଶରେ ଜନ୍ମପୁଣି ।
ପନ୍ଦର ସହସ୍ର ବର୍ଷ ସେହୁ ତପ କଲା ।
ତପସିଦ୍ଧି ହେବାବେଳେ ରାବଣ ଭେଟିଲା ।
ବିଡମ୍ବନ କହନ୍ତେ ସତୀ ଝାସଦେଲା
ଅଗ୍ନିରେ ପାଦପାଣି ମସ୍ତକ ଲୀନ ହେଲା
ପାଦପାଣି ଗଲାସିନା ମୂର୍ଦ୍ଧନୀଟି ଥିଲା ପୁଣ
ସେ ମୂର୍ଦ୍ଧନୀକି ଘେନି ଗଲାକ ରାବଣ
ମନ୍ଦୋଦରୀ ରାଣୀଠାରେ ଦେଲା ନେଇକରି
ବ୍ୟଞ୍ଜନ କରାଇବା ଏ ମାଂସ ସ୍ୱାଦ ଭାରି ।
ତାହାଜାଣି ନାରଦମୁନିଙ୍କୁ ପଠାଇଲୁ
ବେଦମତୀ ପିଣ୍ଡ ଗୋଟି ଆଣଯା ବୋଇଲୁ ।
ନାରଦ କହି ମଞ୍ଜୁଷ ଗୋଟି ଅଣାଇଲେ
ମଞ୍ଜୁଷ ଭିତରେ ଥୋଇ ସାଗରେ ଭସାଇଦେଲେ
ମାୟାଦେବୀ ପଠାଇ ସେଠାରୁ ଘେନିଗଲୁ
ମିଥିଳାର ଯାଗଶାଳେ ନେଇଣ ରଖାଇଲୁ ।
ତୁମ୍ଭଙ୍କୁ ସୁମରଣା କଲୁ ଯେ ଆମ୍ଭେ ପୁଣ
ଅସୁର ମରିବ ଯେହ୍ନେ କରି ବିଚାରଣ ।
ଅନନ୍ତ ଶଯ୍ୟାରେ ଯେ ଅଛନ୍ତି ନାରାୟଣ
କି ରୂପେ ଜନ୍ମହେବେ କରିବ ବିଚାରଣ ।
ବେଦବର ବୋଇଲେ ଆମ୍ଭେ ଯାଉଛୁ ମିଥିଳାକୁ
ନିରଞ୍ଜନ ରୂପ ଯେ କରିବା ସେ କାଳକୁ ।

ତାହାର ସକାଶରୁ ମରିବ ରାବଣ
ତୁମ୍ଭେ ଦେବତାଏ ଯେ ନିଶ୍ଚିନ୍ତେ ଥାଅପୁଣ ।
ଏତେକହି ବେଦବର ମିଥିଳାପୁର ଗଲେ
ମାୟାନାରୀ ପାଞ୍ଚଗୋଟି ସଙ୍ଗରେ ଦେବନେଲେ
ରଜନୀ କାଳରେ ଯାଇ ହୋଇଲେ ପ୍ରବେଶ
ପୋତିବାର ଠାବରୁ କାଢ଼ିଲେ ସେ ମଞ୍ଜୁଷ ।
ସେ ମୂର୍ଦ୍ଧନୀ ମର୍ଦ୍ଦିଣ ରୂପ ଯେ ପୁଣ କଲେ
କନକ ରତ୍ନରେ ପିତୁଳା ସଞ୍ଚପିଲେ ।
ଜୀବନ୍ୟାସ କରିଣ ମଞ୍ଜୁଷରେ ଭରିଲେ
ଯତନ କରିଣ ମଞ୍ଜୁଷ ଯେ ମୁଦିଲେ ।
ଗୁପତକରି ସେଠାରେ ରଖିଲେ କୁଶଧାରୀ
ସେ ଗୁପତତତ୍ୱ ନଜାଣିଲେ ତିନିପୁରୀ ।
ବୋଇଲେ ଯେତେବେଳେ ଶ୍ରୀହରିଜାତ ହେବେ
ତାହାଙ୍କର ସଙ୍ଗରେ କମଳା ଆସିବେ ।
କମଳା ହୋଇବ ତିନି ଅଂଶରେ ଜାତ ପୁଣ
ଜାନକୀ ସୁମାଳୁନୀ ମାଳୁନୀ ଗର୍ଭେ ପୁଣ ।
କୁଶଧର ରାଜାର ଘରଣୀ ଗର୍ଭେ ପୁଣ
ଦୁଇଅଂଶ ଜାତ ହେବେ ଯୋନି ଦ୍ୱାରେ ପୁଣ ।
ଚଉଦ କଳା ଘେନି ଜାନକୀ ଜାତ ହେବେ
ବେଦମତୀ ଶରୀରରେ ଆସି ସମ୍ଭାଇବେ ।
ଯାଗକଲାବେଳେଜନକ ଶୋଧିବ ସେହିସ୍ଥାନ
ତେବେ ଯେ କମଳା ଦେବୀ ପାଇବେ ଜୀବନ ।
ଦୁହିତା କରି ତାଙ୍କୁ ପାଳିବେ ଜନକ
ଶିବଧନୁ ଭାଙ୍ଗିବେ ଶ୍ରୀ ରଘୁ ନାୟକ ।
ଅସୁର ବଳମାରି ସୀତାଙ୍କୁ ବିଭା ହେବେ
ପିତା ସତ୍ୟ ପାଳି ଶ୍ରୀରାମ ବନ ଯିବେ ।
ଚତୁର୍ଦ୍ଧା ରୂପଧରି ହରି ହେବେ ଜାତ
କମଳା ହୋଇବେ ଚତୁର୍ଦ୍ଧା ସତୀ ସ୍ୱରୂପ ।
ତେବେ ସେ ଚାରି ରାବଣ ହେବେପ୍ରାଣେ ନାଶ
ବୁଝାଇ କହିଲେ ବେଦମତୀ ଦେବୀ ପାଶ ।
ବେଦମତୀଙ୍କୁ ବୁଝାଇ ସେଠାରୁ ଚଳିଗଲେ
ଗୁପତ ହୋଇଥାଅ ବେଦମତୀଙ୍କୁ କହିଲେ ।
ଶ୍ରୀହରି ଜନମ ହେବେ ଷଡ଼ମାସ ଗଲେ
ତୁହି ଜନ୍ମ ପ୍ରକାଶ ହେବୁ ସେହିକାଳେ ।
ତୁମ୍ଭ ଜନ୍ମର ଉଭାରୁ ଦୁଇଦିନେ ଜାଣ
ପାର୍ବତୀ ଜାତ ହେବେ ଜନକ କୋଳେଣ ।

କୁଶଧ୍ୱଜ ଋଷି ଘରେ ଚାରିଦିନେ ପୁଣ
ଦୁଇ ଅଂଶୁ ତାର କୋଳରେ ହେବେ ଜନ୍ମ ।
ଏମନ୍ତ ବୁଝାଇ ଯେ ବେଦମତୀକି ପୁଣ
ସେଠାରୁ ବେଦବର ସ୍ୱର୍ଗକୁ ଗଲେ ଜାଣ ।
ସୁଧର୍ମା ସଭାରେ ଯାଇ ହୋଇଲେ ପ୍ରବେଶ
ସକଳ ସୁରଗଣ ନମିଲେ ଆସି ପାଶ ।
ଦେବଙ୍କୁ ଘେନି ସଭାକଲେ ସୁରପତି
ସଭାଭାଙ୍ଗି ବେଦବର ଦେବତା ପାଶେ ଯାନ୍ତି ।
ଦେବଙ୍କୁ ଘେନି ରମ୍ୟକ ଦ୍ୱୀପରେ ପ୍ରବେଶ
ଯେଉଁଠାରେ ନାରାୟଣ କରିଛନ୍ତି ବାସ ।
ସେ ସ୍ଥାନରେ ବସିଣ ସକଳ ସୁରଗଣ
ଶ୍ରୀହରିଙ୍କର ନାମ କଲେକ ଉଚ୍ଚାରଣ ।
ଯୋଗାମୟା ଶ୍ରୀହରିଙ୍କି ସ୍ୱପନେ ଚେତାକରି
ନୟନ ଫେଡ଼ିକରି ଚାହିଁଲେ ଶ୍ରୀହରି ।
ସରସ୍ୱତୀ ବୋଇଲେ ଦେବତା ବେଦବର
ତୁମ୍ଭଙ୍କୁ ସୁମରଣା କରନ୍ତି ବସିଦ୍ୱାର ।
ଶୁଣିଣ ବାସୁଦେବ ଶୟନ ତେଜ୍ୟାକଲେ
କମଳା ସରସ୍ୱତୀଙ୍କି ଚାହିଁଣ ଆଜ୍ଞାଦେଲେ ।
ବୋଇଲେ ନିଜପୁର ଚଳ ବେନିଜଣ
ଲୀଳା କରିବା ସହସ୍ରେ ବର୍ଷ ଏଥିପୁଣ ।
ତେବେ ମର୍ତ୍ତ୍ୟପୁରେ ହୋଇବ ଯାଇ ଜାତ
ଏଗାର ସହସ୍ର ବର୍ଷ ଏଥିରେ ଲୀଳାଗତ ।
ଶୁଣିଣ ଦୁଇନାରୀ ବେଗେ ଚଳିଗଲେ
ନିଜପୁରେ ଯାଇଣ ପ୍ରବେଶ ହୋଇଲେ ।
ଅନନ୍ତଙ୍କୁ କହିଲେ ବାସୁଦେବ ପୁଣ
ଚଳ ନିଜ ମନ୍ଦିରେ ରହିବା ସହସ୍ରେ ବର୍ଷ ଜାଣ ।
ଅତୁଟ ନାରୀକି ଘେନି ସୁଖେ ତୁ ବିହର
ଶୁଣିଣ ଅନନ୍ତ ଯେ ଗଲେ ନିଜପୁର ।
ଗରୁଡଙ୍କୁ ଡାକିଣ ବାସୁଦେବ କହି
ଦେବତା ବେଦବରଙ୍କୁ ଅଣାଅବେଗେଯାଇଁ
ଶୁଣିଣ ଗରୁଡ଼ ଯେ ବେଗେ ଚଳିଗଲା
ଦେବତାମାନଙ୍କୁ ଯେ ଯାଇଣ କହିଲା ।
ବେଗେ ଆସ ଶ୍ରୀହରି ତୁମ୍ଭଙ୍କୁ ଆଜ୍ଞା ଦେଲେ
ଶୁଣି କରି ଦେବତା ମନରେ ତୋଷ ହେଲେ ।
ଦେବଗଣ ବେଦବର ବେଗେ ଚଳିଗଲେ
ବାସୁଦେବଙ୍କ ଚରଣେ ନମସ୍କାର କଲେ ।

ନିସ୍ତରିଲୁ ବୋଲିଣ ଯେ ଶିରେ କରଦେଲେ
ତୁଣ୍ଡରେ ଉଚ୍ଚାର କରନ୍ତି ଦେବଭଲେ ।
ବୋଇଲେ ନାରାୟଣ ତୁମ୍ଭର ଶ୍ରୀଚରଣ
ସେବାକରି ରହିବୁ ଭୟ କରହେ ନିବାରଣ
ଅସୁରଙ୍କ ଭୟ ଆମ୍ଭଙ୍କୁ ହୋଇଲା ବଡ଼ପୁଣ
ସେ ବ୍ୟାଧିରୁ ଉଦ୍ଧାର କର କମଳାରମଣ ।
ଦୁଃଖିଜନ ବାନ୍ଧବ ବୋଲାଅ ଦୀନବନ୍ଧୁ
ଆପେ ନମାରି କିମ୍ବା ଅସୁର ହାତେ ସାଧୁ ।
ଉତପତ୍ତି ସ୍ଥିତି ଯେ କରିଣ ଅଛୁ ପୁଣ
ପୁଣି ଶାସ୍ତି ଦେବାର ଅଟଇ କି କାରଣ ।
ଆମ୍ଭର ଯେବେ ଦୋଷ ଦେଖିଲେ ଶ୍ରୀହରି
ଶାରଙ୍ଗ ଧନୁରେ କିମ୍ବା ନିବାର ନକରି ।
ପରହସ୍ତେ ମାରିବାରୁ ବଡ଼ଦୁଃଖ ପୁଣ
ଘରଦ୍ୱାରେ ତେଜ୍ୟାକରି ଖଟିଲୁ ଅସୁରଚରଣ ।
ତୁମ୍ଭଦାସ ହୋଇଣ ଚଣ୍ଡାଳ ସେବାକରି
ଏକଥା ଦୂଷଣ ହେଲା ହେ ଶ୍ରୀହରି ।
ଏବେ ଯେ ଦାରୁଣ ପଣ ହୃଦୟରୁ ଛାଡ଼ି
ଦେବତାଙ୍କୁ ଧରିଣ ରଖ ହେ ସ୍ୱର୍ଗପୁରୀ ।
ଏମନ୍ତ ବୋଲି ଦେବେ ସ୍ତୁତିକଲେ ଯହୁଁ
ତୃପତି ହୋଇଲେ ଯେ ବାସୁଦେବ ତହୁଁ ।
ବୋଇଲେ କିସକଲେ ଦେବଗଣ ପୁଣ
ସକଳ କଥା ଯାହା କହିଥିଲୁ ଜାଣ ।
ଦେବତାଏବୋଇଲେ ଯାହାସେ ଆଜ୍ଞାଦେଲେ
ସେ କଥା ଆମ୍ଭେ ସବୁ ଭିଆଣ କଲୁ ଭଲେ ।
କଶ୍ୟପଙ୍କୁ ଜନ୍ମକଲୁ ଦଶରଥ କରି
ହେତିପ୍ରହେତିହେଲେକୌଶଲ୍ୟାକୈକେୟୀରନାରୀ
ନଉସାଗର କପି ଭାଲୁ ଜନ୍ମ କଲୁ
ବେଦମତୀ କି ଯାଗ ଶାଳରେ ରଖିଲୁ ।
ଆଠସହସ୍ର ବର୍ଷ ଏଥିରେ ବହିଗଲା
ଚାରି ରାବଣ ଦର୍ପ ସହିଣ ନୋହିଲା ।
ବାସୁଦେବ ବୋଇଲେ ଆଉ ସହସ୍ରେ ବରଷ
ତୁମ୍ଭଙ୍କୁ କଷ୍ଟ ଅଛି ଶୁଣ ହେ ସୂରେଶ ।
ନବ ଶତ ଅଠଷଠି ବରଷ ମୁହିଁ ପୁଣ
ସ୍ୱର୍ଗ ତେଜ୍ୟା କରିବି ଦେବତାଗଣେ ଶୁଣ ।
ଦଶରଥ କୋଳେ ଅଯୋଧ୍ୟା ନବରେ
ଅନନ୍ତ ଶଙ୍ଖ ଚକ୍ରଧରି ଜନ୍ମିବି ମର୍ତ୍ତ୍ୟପୁରେ ।

ତେବେ ସେ ଅସୁର ମରିବେ ମୋର ହସ୍ତେ
ପୃଥ୍ୱୀଦେବୀ ତେବେ ରହିବେ ସ୍ଥିର ଚିତ୍ତେ ।
ଆଜିଠାରୁ ଶୟନ ମୋହର ଆଉ ନାହିଁ
କମଳାଙ୍କ ସଙ୍ଗରେ ନୀଳା ମୋର ହୋଇ ।
ଅଳପ ଦିନରେ ତୁଟିବ ତୁମ୍ଭ ଦୁଃଖ
ଅସୁରଙ୍କ ସଙ୍ଗରେ ନୋହିବ ବିମୁଖ ।
ଶୁଣିଣ ଦେବତାଏ ସନ୍ତୋଷ ମନହେଲେ
ମେଲାଣି ହୋଇଣ ଯେ ଯାହା ସ୍ଥାନେ ଗଲେ ।
କମଳାଙ୍କ ସଙ୍ଗେ ଲୀଳା କରନ୍ତି ଶ୍ରୀଧର
କୋଟି କୋଟି ଦାସୀ ଯେ ଖଟନ୍ତି ନିରନ୍ତର ।
ଅନନ୍ତଲୀଳା କରେ ଅତୁଟ ନାରୀ ସଙ୍ଗେ
ସରସ୍ୱତୀ ଲୀଳାକରେ ବାସୁଦେବ ଆଗେ ।
ଏମନ୍ତେ ରମ୍ୟକ ଦ୍ୱୀପରେ ପ୍ରଭୁଲୀଳା
ଶ୍ରୀହରି ପାଟଣାକୁ କ୍ଷୀର ସାଗରବେଢ଼ା ।
ଅନେକ ସମ୍ବର୍ଦରେ ଆନନ୍ଦେ ଲୀଳା କରି
ବସନ୍ତ ସୁମେଧା ଯେ ସୁଗନ୍ଧ ବହେ ଧରି ।
ପାର୍ବତୀ ବୋଇଲେ ଦେବ ସେଠାରୁ କିସ ହେଲା
କୁମ୍ଭ ଋଷିର ପିତା ବରୁଣ ଦେବପରା ।
ତାଙ୍କ କୁମର କହିଲେ ଅଗସ୍ତି ବଶିଷ୍ଠ
ବରୁଣର ପୁତ୍ର ପୁଣି କି ରୂପେ ବଶିଷ୍ଠ ।
ଈଶ୍ୱର ବୋଇଲେ ଶୁଣ ଗୋ ଶାକମ୍ଭରୀ
ଲୀଳାର ଭାବରେ ରହିଲେ ଶ୍ରୀହରି ।
ସୁରଗଣ ସେଠାରୁ ଚଳିଣ ବେଗେ ଗଲେ
ଅମର ପୁରେ ଯାଇ ପ୍ରବେଶ ହୋଇଲେ ।
ଦେବତାଙ୍କୁ ଘେନିଣ ଇନ୍ଦ୍ର ହିଁ ବିଚାରି
କୃଶପାଣି କି ବୋଇଲେ ଯଜ୍ଞ ହିଁ ମୁହିଁ କରି ।
ବେଦବର ବୋଇଲେ କରିବ ଯେବେ ଯଜ୍ଞ
ଘୃତ ସମୁଦ୍ର ତୁ କହ ଯେ ଯାଇ ବେଗ ।
ଚାରିମେଘ ବୋହି ଆଣିବେ ଘୃତ ପୁଣ
ମୂଷଳଧାରା ପ୍ରମାଣେ ଆହୁତି ଦେବ ଜାଣ ।
ବଶିଷ୍ଠଙ୍କୁ ଆଚାର୍ଯ୍ୟ କରିଣ କରିବ
ସପତ ଋଷିଙ୍କି ଚରୁ ସମିଧ ଯେ ଦେବ ।
ସକଳ ଦେବତାଙ୍କୁ ଦେବ ହବିର୍ଭାବ
ତେବେ ସେ ସନ୍ତୋଷ ହୋଇବେ ଦେବସର୍ବ ।
ଶୁଣିଣ ଦେବରାଜା ସର୍ବଦେବଙ୍କୁ ବରି
ପ୍ରଜାପତି ବ୍ରହ୍ମାଙ୍କୁ ବରଣ ବେଗେ କରି ।
ସପତ ସମୁଦ୍ରକୁ କଲାକ ବରଣ
କୈଳାସେ ସଦାଶିବଙ୍କୁ ବରିଲେ ଯାଇଣ ।
ଘୃତ ସମୁଦ୍ରକୁ ମାଗିଲେ ଯାଇ ଘୃତ
ଦେବି ବୋଲି ବୋଇଲେ ସାଗର ତପୋବନ୍ତ ।
ବିଧାତାଙ୍କୁ ଘେନିଣ ଲଙ୍କାଗଡ଼ ଗଲା
ରାବଣ ଆଗରେ ଯାଇଣ କହିଲା ।
ବୋଇଲା ଯାଗ ମୁଁ ଯେ କରିବି ସ୍ୱର୍ଗପୁର
ସକଳ ଦେବତା ରହିବେ ମୋ ସାଙ୍ଗର ।
ବାରବର୍ଷ ପର୍ଯ୍ୟନ୍ତ ଦେବୁ ଯେବେ ଛାଡ଼ି
ତେବେ ମୋର ଯାଗଗୋଟି ହୋଇବନିବାଡ଼ି ।
ବେଦବର ବୋଇଲେ ଏକଥା ଏବେକର
ଯାଗକଲେ ତୋହର ହୋଇବ ଉପକାର ।
ରାବଣ ବୋଇଲା ଯେବେ ଇନ୍ଦ୍ର ଯାଗକରି
ତୁମ୍ଭର ବୋଲକୁ ବାରବର୍ଷ ଦେଲି ଛାଡ଼ି ।
ତେରବର୍ଷ ଗଲେ ଆସିଣ ମୋଠାରେ ଭେଟିବ
ଭେଟ ନୋହିଲେ ଯାଗର ଧର୍ମ ନ ପାଇବ ।
ସତ୍ୟକରି ଇନ୍ଦ୍ର ଯେ ସେଠାରୁ ଅଇଲା
ସପତ ଋଷିଙ୍କି ବରଣ ଆସିକଲା ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ନାରଦ ଜାଣିଣ ଚଳିଲେ ଝଟତି ।
ବିରାଟ ପୁରେ ଯାଇ ହେଲେ ପରବେଶ
ଦେଖିଲେ କ୍ଷୀର ନଦୀ ବହଇ ବିଶେଷ ।
ସେ ନଦୀରେ ପଶିଣ କ୍ଷୀରପାନ କଲେ
ସେ ରାଜ୍ୟରେ ରାଜା ଯେ ନିମି ରାଜା ଭଲେ ।
ଜୀବଜନ୍ତୁ କାହାକୁ ନକରେ ପୁଣ ଘାତ
ନରବାନର ସମସ୍ତଙ୍କୁ ପାଳଇ ଏକମତ ।
ସେ ରାଜା ଆଗରେ ମୁନି ପ୍ରବେଶ ଯାଇ ହେଲେ
ଦେଖିଣ ନିମି ରାଜା ପାଦ ତଳରେ ନମିଲେ ।
ଗଙ୍ଗା ଜଳ ଆଣିଣ ଚରଣ ଧୋଇ ଦେଲେ
ଝୀନ ବସନ ନେଇଣ ଚରଣ ପୋଛିଲେ ।
ରତ୍ନସିଂହାସନରେ ବସାଇଲେ ନେଇ
ପୂଜାକଲେ ଧୂପ ଦୀପ ଆଳତୀ ବନ୍ଦାଇ ।
ପଚାରିଲେ ମୁନି ହେ କି କାର୍ଯ୍ୟେ ବିଜେକଲ
ମୁନି ବୋଇଲେ ତୋର ଅଛି କି କୁଶଳ ।
ରାଜା ବୋଇଲେ ତୋର ପ୍ରସନ୍ନେ ମୋର ଭଲ
କୌଣସି ଚିନ୍ତା ନାହିଁ କାହାରି ନାହିଁ ସଲ ।

ମୁନି ବୋଇଲେ ତୁ ଯେ ମୋର ବୋଲ କର
ଯାଗ ଗୋଟିଏ କରି ପିତୃଙ୍କୁ ଉଦ୍ଧାର ।
ଲକ୍ଷେ ରାଜା ଋଷି ବ୍ରାହ୍ମଣଙ୍କୁ ବରି ଆଣ
ଯାଗର ବିଧାନ ଯେ କର ତତ୍‌କ୍ଷଣ ।
ରାଜା ବୋଇଲେ ତୁମ୍ଭେ ଆଚାର୍ଯ୍ୟ ହେବଟିକି
ମୁନି ବୋଇଲେ ତୁମ୍ଭେ ଶୁଣ ହେ ରାଜାଟି ।
ବଶିଷ୍ଠଙ୍କୁ ବର ଆଚାର୍ଯ୍ୟ କରିଣ
ବିଦ୍ୟାବନ୍ତ ଅଟନ୍ତି ବଶିଷ୍ଠ ଋଷି ଜାଣ ।
ପ୍ରଥମରେ ଯାଇଣ ବରଣ ତୁହି କର
ନୋହିଲେ ବଶିଷ୍ଠ ଯେ ଯିବେ ସ୍ୱର୍ଗପୁର ।
ଏତେକହି ନାରଦ ତହୁଁ ଚଳିଗଲେ
ଯାଗକଲେ ଆମ୍ଭଙ୍କୁ ସୁମରିବୁ ଭଲେ ।
ଯେଉଁ କଥା ତାର ନୋହିବ ପୂରଣ
ସେ କଥାକୁ ମୁହିଁ ଯେ ଦେବଇଁ ଆଣି ପୁଣ ।
ଶୁଣିଣ ରାଜନ ସନ୍ତୋଷ ମନ ହେଲା
ନାରଦ ଅନ୍ତର୍ଦ୍ଧାନ ହୋଇଲେ ତହୁଁ ପରା ।
ନାରଦଙ୍କ ବୋଲରେ ନିମିରାଜା ଗଲା
ଅଯୋଧାରେ ବଶିଷ୍ଠଙ୍କୁ ଭେଟ ସେ ପାଇଲା ।
ଯାଗକୁ ବରଣ କଲା ତାଙ୍କୁ ପୁଣ
ବରଣ ସାମଗ୍ରୀ ରଖିଲେ ଋଷି ଜାଣ ।
ଏମନ୍ତ ସମୟରେ ସ୍ୱର୍ଗରୁ ଇନ୍ଦ୍ର ଆସି
ଯାଗକୁ ବରଣ ଯେ କଲେ ବ୍ରହ୍ମଋଷି ।
ବଶିଷ୍ଠ ବୋଇଲେ ମୋତେ ବରିଲେ ନିମିରାଜ
ଇନ୍ଦ୍ର ବୋଇଲେ ମୁଁ ଯେ ସ୍ୱର୍ଗରେ ସୁରରାଜ ।
ବଶିଷ୍ଠ ଋଷି ବୋଇଲେ ନିମିରାଜାଙ୍କୁ ଚାହିଁ
ଦେବଙ୍କର ଯାଗକୁ ସାରିବି ଆଗେ ମୁହିଁ ।
ଯେ ଯାଗକୁ ସାରିଣ ତୋରପୁର ଯିବି
ତୋହର ଯାଗକର୍ମ ଉତ୍ତମ କରିବି ।
ଶୁଣିକରି ନିମି ରାଜା ନ କହେ ପୁଣ କିଛି
ଲାଜଭର ହୋଇଣ ମିଳିଲେ ରାଜ୍ୟରେଟି ।
ତଳକୁ ମୁଖକରି ଝରନ୍ତି ଶୋକପୁଣ
ସେ କଥା ଜାଣି ନାରଦ ଆସିଲେ ତକ୍ଷଣ ।
ନାରଦଙ୍କୁ ଦେଖିଣ ନମସ୍କାର କଲା
ଯାଗଗୋଟି ମୋର ସିଦ୍ଧ ଯେ ନୋହିଲା ।
ବଶିଷ୍ଠ ଋଷଙ୍କି ଆଗେ ବରଣ କଲି ମୁହିଁ
ପଛେ ସ୍ୱର୍ଗରାଜ ବରିଣ ଗଲା ନେଇ ।

ଶୁଣିଣ ନାରଦ ଯେ ବୋଇଲେ ଚିନ୍ତା ଛାଡ଼
ଗଉତମ ଋଷିଙ୍କି ବରଣ ଯାଇ କର ।
ସେହି ସତ୍ୟ ଲଙ୍ଘିଲେ ତୋହର ଦୋଷ ନାହିଁ
ଅନ୍ୟ ଋଷି ବରଣ କରରେ ତୁହି ଯାଇ ।
ଶୁଣି ନିମିରାଜା ବେଗେ ଚଳିଗଲା
ଗଉତମ ଋଷିଙ୍କି ବରଣ ଯାଇ କଲା ।
ବରଣ ଘେନିଣ ଋଷି ହୋଇଲେ ବାହାର
ନିମିରାଜା ବୋଇଲେ ଶୁଣ ହେ ମୁନିବର ।
ଜମ୍ବୁଦ୍ୱୀପରେ ଯେତେ ଅଛନ୍ତି ମୁନିଗଣ
ସମସ୍ତଙ୍କୁ ବରିଣ ଆଣ ହେ ସଙ୍ଗେ ପୁଣ ।
ଶୁଣିଣ ଗଉତମ ସୁମରଣା କଲେ
ନବକୋଟି ଋଷି ଆସିଣ ମିଳିଲେ ।
ଦେଖିଣ ନିମିରାଜା ପେଷିଲା ପୁଣ ଚାର
ଲକ୍ଷେ ରାଜା ବରିଣ ଆସିଲା ନିଜପୁର ।
ବେନିଲକ୍ଷ ବ୍ରାହ୍ମଣ ବରିଣ ଆଣିଲା
ହଟାରି ବଜାରୀଙ୍କି ଏକାଠି ଠୁଳ କଲା ।
ପୁଷ୍କର ଦ୍ରୋଣ ମେଘଙ୍କୁ କଲେ ସୁମରଣା
ଜାଣିଲେ ମେଘମାନେ ରାଜାର ସୁମରଣା ।
ନିମି ରାଜା ଆଗରେ ହୋଇଲେ ପରସନ୍ନ
ଦେଖିଣ ଚରଣେ ଯେ ନମିଲା ରାଜା ପୁଣ ।
ବରଣ କରିଣ ଯେ ରତ୍ନମାଳା ଦେଲା
କିସଅର୍ଥେ ବରିଲୁ ଦ୍ରୋଣ ପଚାରିଲା ।
ନିମିରାଜା ବୋଇଲେ ଯାଗଅର୍ଥେ ବରି
ଘୃତ ସମୁଦ୍ରଁ ଘୃତ ଦେବ ଆଣିକରି ।
ଦ୍ରୋଣ ମେଘ ବୋଇଲେ ଶୁଣ ହେ ରାଜନ
ଘୃତ ସମୁଦ୍ରକୁ ମନାଅ ତୁମ୍ଭେ ପୁଣ ।
ଶଣିଣ ନିମିରାଜା ଯାନ ଚଢ଼ିଗଲା
ଘୃତ ସମୁଦ୍ରକୁ ବହୁତ ସ୍ତୁତି କଲା ।
ପ୍ରସନ୍ନ ହୋଇଲେ ସାଗର ଦେହ ପୁଣ
ପ୍ରସନ୍ନ ହୁଅ ମୋତେ ସାଗର ନିଧି ଜାଣ ।
ବାରବର୍ଷ ପର୍ଯ୍ୟନ୍ତ ଯାଗକୁ ଘୃତ ଦେଉଥିବ
ଘୃତ ଦେଲେ ଦ୍ରୋଣ ଯାଗେବୃଷ୍ଟି କରାଇବ ।
ହେଉ ବୋଲି ଘୃତସମୁଦ୍ରକୁ କଲେକ ପ୍ରମାଣ
ସେଠାରୁ ନିମିରାଜା ଅଇଲେ ତତ୍‌କ୍ଷଣ ।

ଅଗୁରୁ ଚନ୍ଦନ କାଷ୍ଠ ଯେ ଅଣାଇଲା
ଯାଗଶାଳା ତୋଳାଇ କୁଣ୍ଡ ସଜାଡ଼ିଲା ।
ଯଜ୍ଞଶାଳ ସୋଧିଣ କଲେକ ଅନୁକୂଳ
ଯୋଗ ଲଗ୍ନବେଳାରେ ଶୋଧିଲେ ଯାଗଶାଳ ।
ଲଙ୍ଗଳ ଚାଳନ୍ତେ ତାହାଟିର ପଛ
ଏମନ୍ତ ସମୟରେ ନାରଦ ପରବେଶ ।
ଗଉତମ ଆଚାର୍ଯ୍ୟ ବରଣ ହୋଇଲେ
ମହା ଲଙ୍ଗଳ ପରେ ହସ୍ତ ଯେ ଦେଇଭଲେ ।
ଗଉତମ ବୋଇଲେ ନାରଦ ତୁମ୍ଭେ ଶୁଣ
ଫାଳ କିମ୍ପା ସ୍ଥକିତେ ରହିଲା ଏହି ସ୍ଥାନ ।
ନାରଦ ବୋଇଲେ ଏଠାରେ ଅଛି ଭଲ
ନିମିରାଜାର ଯାଗ ହୋଇବ ସଫଳ ।
ତାହାର କୋଳରେ ପୁତ୍ର ଯେଣୁ ନାହିଁ
ସେଥି ସକାଶେ ସୁଦୟା କଲେ ଭାବଗ୍ରାହୀ ।
ପୁତ୍ର ଲାଭ ତାକୁ କରାଇବେ ଜାଣ
ସୁଫଳ ହେଲା ଯଜ୍ଞ ଭୂମି ଯେ ଶୋଧନ ।
ଶୁଣିଣ ଗଉତମ ଲଙ୍ଗଳ କଢ଼ାଇଲେ
କୋଦାଳ ସାବେଳୀ ଘେନି ସେସ୍ଥାନ ଖୋଳିଲେ ।
ଦେଖିଲେ ମଞ୍ଜୁଷ ଗୋଟିଏ ତହିଁ ପୁଣ
ବାହାରକୁ କାଢ଼ି ଆଣିଲେ ତକ୍ଷଣ ।
ମଞ୍ଜୁଷ ଫେଲାଇଲି ଭିତରେ ଦେଖିଲେ
ପଲଙ୍କ ସୁପାତିରେ ଶୋଇଛି କୁମରେ ।
ବସନ୍ତ ବର୍ଣ୍ଣ ଦିଶେ ଶରୀର ତାହାରେ
ସଦାଶିବ ଅଂଶରେ ଜନ୍ମ ଅଟେ ତାର ।
ସେରୂପ ଦେଖିଣ ସମସ୍ତ ଋଷି ବୋଲେ
ବସନ୍ତ ବୋଲି ନାମ ଋଷି ଯେ ତାର ଦେଲେ ।
ନାମ ଦେବାରୁ କୁମର ଦେଲାକ ରୋଦନ
ଦେଖିଣ ଚମତ୍କାର ହେଲେ ସର୍ବଜନ ।
ନାରଦ ବୋଇଲେ ଶୁଣ ହେ ରାଜନ
ଆଣ୍ଟୁକୁଡ଼ା ଦୋଷ ତୋର ଗଲା ଏବେ ପୁଣ ।
ଜ୍ୟେଷ୍ଠାରାଣୀ ପାଶେ ପ୍ରବେଶ ନେଇ କର
ପାଳନ୍ତୁ କୁମରକୁ ଆନନ୍ଦ ମନର ।
ଶୁଣିକରି ରାଜନ କୋଳେ ଧରି ଚଳି
ବଡ଼ ପାଟରାଣୀ ଆଗରେ ଯାଇ ମିଳି ।
ଦେଖି ଚନ୍ଦ୍ରପାଟ ମହିଷୀ ପଚାରି
କାହାର କୁମର ଗୋଟି କୋଳରେ ଅଛି ଧରି ।

ବାଳ କାଳରୁ ସେ ଯେ ଦିଶଇ ସୁନ୍ଦର
କେଉଁଠାରୁ ଏହାକୁ ଆଣିଲ ପ୍ରାଣେଶ୍ୱର ।
ରାଜନ ବୋଇଲେ ଶୁଣ ପାଟରାଣୀ
କ୍ଷୀର ସାଗର ବାସୀ ନାରାୟଣ ପୁଣି ।
ସେ ମୋତେ ବାଳକ ଦେଲେ ପରସନ୍ନେ
ମୋହର ମନ ଜାଣିଲେ ସ୍ୱୟଂ ଭଗବାନେ ।
ଯାଗଶାଳାକୁ ମୁଁ ଶୋଧନ କଲାବେଳେ
ଲଙ୍ଗଳରେ ମଞ୍ଜୁଷ ଉକୁଟିଲା ଫାଳେ ।
[illegible]ଣ ଦେଖନ୍ତେ ଏହି କୁମର ଅଛି
ଆଣ୍ଟୁକୁଡ଼ା ଦୋଷ ମୋର ଖଣ୍ଡିଲେ ଶ୍ରୀବସି ।
ବସନ୍ତ ବର୍ଣ୍ଣ ଦେଖି ଋଷି ଯେ ନାମ ଦେଲେ
ବସନ୍ତ ନାମ ଏହାର ହେଉଯେ ବୋଇଲେ ।
ନାମକରଣ କରିବାରୁ ପୁତ୍ର ରୋଦନ କଲା
ନାରଦ ମୁନି ମୋର କୁଳରକ୍ଷା କଲା ।
ତାଙ୍କର ସକାଶୁଁ ମୁଁ ଯାଗଇଚ୍ଛା କରି
ଏ କୁମର ଗୋଟି ସହଜେ ଲଭିଲି ।
ଚନ୍ଦ୍ର ପାଟ ମହିଷୀ ବୋଲେ ଶୁଣ ପ୍ରାଣନାଥ
ଏହିପୁତ୍ରକୁ ଯେବେ ଦେଲେ ଜଗନ୍ନାଥ ।
ତେବେ ନାରାୟଣ ସବୁଦିନେ ସତ
ଯେବେ ସୁଦୟା କଲେ କମଳାଙ୍କ କାନ୍ତ ।
ମୋର ସ୍ତନରୁ ପ୍ରସରୁ ଏବେ କ୍ଷୀର
ଏତେବୋଲି କୁମର ଧଇଲେ କୋଳର ।
ବୋଇଲେ ନାରଦଙ୍କୁ ଡକାଅ ବେଗ କରି
ଶୁଣିଣ ସେଠାରୁ ସେ ଗଲେ ଦଣ୍ଡଧାରୀ ।
ନାରଦଙ୍କ ଆଗେ ହୋଇଲେ ପ୍ରବେଶ
ବୋଇଲେ ଅନ୍ତଃପୁରେ ଦେଖିବେ ରାଣୀହଂସ ।
ଶୁଣିଣ ନାରଦ ବହନ ଚଳିଗଲେ
ଅନ୍ତଃପୁର ମଧ୍ୟରେ ପ୍ରବେଶ ହୋଇଲେ ।
ନିମିରାଜାଙ୍କର ସପତ ରାଣୀ ଜାଣ
ମୁନିଙ୍କ ଚରଣେ ନମିଲେ ତକ୍ଷଣ ।
କଲ୍ୟାଣ କଲେ ମୁନି ହେଲେ ବଡ଼ ସୁଖୀ
ଅଚିନ୍ତା ସ୍ୱର୍ଗପୁର ଅନ୍ତେ ପାଇବଟି ।
ଶୁଣିଣ ରାଣୀହଂସ ହରଷେ କହେ ବାଣୀ
ଏ ପୁତ୍ରଗୋଟି ଯେବେ ଦେଲ ହେ ମୁନିମଣି ।
କ୍ଷୀର ସ୍ରବୁଁ ସ୍ତନରୁ ପୁତ୍ରକୁ ଧରୁ କୋଳେ
ଏହି ସୁଦୟା କର ବ୍ରହ୍ମାଙ୍କ ଦୁଲାଳେ ।

ନାରଦ ବୋଇଲେ ସପତ ରାଣୀ ଶୁଣ
ସମସ୍ତଙ୍କ ସ୍ତନରେ କ୍ଷୀର ହେଉ ପୁଣ ।
କୋଳରେ ଧରି ତୋଷ ହେଲେ ନାରୀଗଣ
ସମସ୍ତଙ୍କ ସ୍ତନରେ କ୍ଷୀର ହେଲା ଜାଣ ।
ନାରଦଙ୍କ ଚରଣେ ରାଣୀଏ ଓଳଗିଲେ
ଜୀବଦାନ ଦେଲ ବୋଲିଣ ବୋଇଲେ ।
ଏଥୁ ଅନନ୍ତରେ ଯେ ନାରଦ ଚଳିଗଲେ
ଯାଗଶାଳେ ଯାଇଣ ପରବେଶ ହେଲେ ।
ଅନୁକୂଳ କରିଣ ବସିଲେ ଯାଗଶାଳ
ବରୁଣ ପୂଜାସାରି ପୂଜିଲେ ବେଦବର ।
ସକଳ ଦେବଙ୍କୁ ପୂଜାରେ ବରିଲେ
ଅଗୁରୁ ଚନ୍ଦନ ଯାଗଶାଳରେ ସଂଯୋଗିଲେ ।
ବେଦପଢ଼ି ଅଗ୍ନି ଆରୋପଣ କରାଇଲେ
ପ୍ରଳୟ ଅଗ୍ନିପ୍ରାୟ ଯେ ହୁତାଶନ ଜଳେ ।
ଦ୍ରୋଣ ମେଘରୁ ସ୍ମରିଲେ ଯାଗଶାଳେ ପୁଣ
ଉଚ୍ଚାରଣ କଲେ ଯେ ମୁନି ବିପ୍ରଗଣ ।
ସମସ୍ତଙ୍କୁ ଚରଚା କରଇ ନିମି ରାଜା
ନଉ ସାଗର ଗୋଧନ ଦୋହନ କରେ ରାଜା ।
ପ୍ରଥମେ ଦୋହନ କଲେ ଭୂମିରେ ପଡ଼େ କ୍ଷୀର
ଧବଳ ନଦୀପ୍ରାୟ ଯେ କ୍ଷୀର ନଦୀ ଧୀର ।
ଅନେକ ଜୀବ କ୍ଷୀରପାନ କରନ୍ତି ସେଥିରୁ
ସାଗର ସୁଖପାଏ ସଙ୍ଗରେ ମିଶିବାରୁ ।
ଯେ ଯାହା ଇଚ୍ଛା କରଇ ସେହୁ ତାହା ଭୁଞ୍ଜି
ମନ ଇଚ୍ଛା ଭୋଜନରେ ସମସ୍ତ ମନରଞ୍ଜି ।
ଋଷି, ବିପ୍ର, ରାଜା, ପାତ୍ର, ମନ୍ତ୍ରୀ ଯେତେ
ଚତୁରଙ୍ଗବଳ ଜୀବଜନ୍ତୁ ଯେ ସହିତେ ।
ଯାଆନ୍ତା ଆସନ୍ତା ଯେ ଦେଖଣା ହାରୀ ପ୍ରଜା
ସମସ୍ତଙ୍କୁ ରାଜନ କରେ ପାଦ ପୂଜା ।
ସଦାବର୍ତ୍ତ ଦିଅଇ ଠାବେ ଠାବେ ପୁଣ ।
ଅନ୍ନ ବସ୍ତ୍ର ଦାନ ସେ ଦିଅଇ ଅବିଚ୍ଛିନ୍ନ ।
ଯେଉଁଠାରେ ଯାହା ଲୋଡ଼ନ୍ତି ଯେହୁ ପୁଣ
ସେଠାବରେ ତାହାକୁ ମିଳଇ ତାହା ଜାଣ
କଳ୍ପଦ୍ରୁମ ଯଜ୍ଞଶାଳେ ହୋଇଲା ରାଜନ
କୌଣସି କଥାକୁ ଛଳ ନୁହେଁ ତାର ମନ ।
ଏମନ୍ତ ପ୍ରକାରେ ଯାଗ ସେହୁ କରେ
ନରବାନର, ଅସୁର ଦେବ ତୋଷ ଭରେ ।

ସମସ୍ତ ନିଭନ ହୋଇଣ ରାଜା ରହି
ତେଜ ଗୋଟି ପ୍ରକାଶ ନକଲା ଯେ ତହିଁ ।
ପାର୍ବତୀ ବୋଇଲେ ଶୁଣ ହେ ଈଶାନ
ନିମି ରାଜା ଯାଗ କଥା ଶୁଣିଲି ମୁଁ କର୍ଣ୍ଣ ।
ସୁର ରାଜାସ୍ୱର୍ଗରେ ଯାଗକଲେ ବସି
କେଉଁମାନେ ସେଠାରେ ହୋଇଛନ୍ତି ତୋଷି ।
ଈଶ୍ୱର ବୋଇଲେ ଅନ୍ନପୂର୍ଣ୍ଣା ଶୁଣ
ଯେଉଁରୂପେ ଯଜ୍ଞକଲେ ସ୍ୱର୍ଗରେ ମଘବାନ ।
ତ୍ରିଦଶ ଦେବତାଙ୍କୁ ବରଣ କରିନେଲା
ଦେବ ମୁନି ବ୍ରହ୍ମ ମୁନି ନିମନ୍ତ୍ରି ଆଣିଲା ।
ବ୍ରହ୍ମା ସଦାଶିବଙ୍କୁ ବରିଆଣେ ପୁଣ
ବାରସ୍ୱତୀ ଭୁବନରେ ଯାଗଶାଳ ଜାଣ ।
ନଉସାଗର ଦେବତା ସେଠାରେ ଠୁଳ ହେଲେ
ଅକଳିତ ଋଷି ଆସି କଳିତ ଯେ କଲେ ।
ଚାରିମେଘ ସପ୍ତଋଷି ବାର ଯେ ଆଦିତ୍ୟ
ଷୋହଳ ଚନ୍ଦ୍ରମା ଦଶଦିଗପାଳ ସମସ୍ତ ।
ସମସ୍ତେ ଠୁଳ ହୋଇ ବରୁଣ ପୂଜାକଲେ
ସୁବର୍ଣ୍ଣ ଲଙ୍ଗଳେ ଯଜ୍ଞଶାଳ ଯେ ଶୋଧିଲେ ।
ବଶିଷ୍ଠ ଆଚାର୍ଯ୍ୟ ହୋଇଲେ ସୁରଯାଗେ
ଶୋଧନ୍ତେ ଯାଗଶାଳେ ଓଲଟେଫାଳ ରାଗେ ।
ପଛକୁ ଲଙ୍ଗଳ ଯେହୁଁ ଘୁଞ୍ଚିଣ ଆସଇ
ସପ୍ତ ଋଷି ବୋଇଲେ କିସ ଏଥିରେ ଅଛଇଁ ।
ଲଙ୍ଗଳ କାଢ଼ିଲା ବେଳେ କାଢ଼ିଲେ ତପୂରେ
ମଞ୍ଜୁଷ ଗୋଟିଏ ଦେଖିଲେ ତହିଁର ଭିତରେ ।
ସୁବର୍ଣ୍ଣ ମଞ୍ଜୁଶକୁ କାଢ଼ିଣ ଆନନ୍ଦରେ
ଫେଡ଼ି ଦେଖିଲେ ସର୍ବ ଦେବ ହରଷରେ ।
ଅମଳାଣ ପୁଷ୍ପ ଯେ ଅମ୍ଳାଣ ଶାଢ଼ୀ
କୋମଳ ପତ୍ର ସଞ୍ଚି ସେଥିରେ ଅଛି ଭରି ।
ଶୀତଳ ଜଳ ଅମୃତ ରସ ଫଳମୂଳ
ଏମନ୍ତ ଦ୍ରବ୍ୟମାନ ମଞ୍ଜୁଷରେ ଠୁଳ ।
ଦେଖିଣ ବେଦବର ହରଷମନ ହେଲେ
ମର୍ତ୍ତ୍ୟପୁରେ ସକଳ ନେଇ ବୃଷ୍ଟିକଲେ ।
ଚିତ୍ରକୁଟ ଗିରିଠାରୁ ସୁବଳୟା ଯାଏଁ
ପୁଷ୍ପ ଫଳ ମୂଳ ହରଷରେ ବୁଣିଦିଏ ।
ତହିଁର ସଙ୍ଗତରେ ଶୀତଳ ଜଳ ବୁଣି
ପଡନ୍ତେ ଧରଣୀରେ ହୋଇଲେ ବୃକ୍ଷ ପୁଣି ।

କୋମଳ ପତ୍ର ପୁଷ୍ପ ଯେ ଉପୁଜେ ପୁଣ ତହୁଁ
ଫଳମୂଳ ଉପୁଜିଲେ ଆବର ରସ ତହୁଁ ।
ବନସ୍ତରେ ରହିଣ ସୁଲଳିତ ହେଲେ
ଶ୍ରୀରାମ ବନ ଯିବାକୁ ବିହି ଏହା କଲେ ।
ନରବାନର ଖାଇଲେ ହୋଇବେ ସେଥିତୋଷ
ଆଗହୁଁ ବିଧାତା ଯହୁଁ କଲେକ ପ୍ରକାଶ ।
କ୍ରତହ ଦେବଋଷିଙ୍କି ବୋଇଲେ ବେଦବର
ଅମଳାଣ ବସ୍ତ୍ରକୁ ତୁମ୍ଭେ ସମ୍ଭାଳଣ କର
ଶ୍ରୀରାମ ଲକ୍ଷ୍ମଣ ସୀତା ଆସିବେ ତୋର ପୁର ।
ଏ ବସ୍ତ୍ରକୁ ତୁହି ଦେବୁ ତାହାଙ୍କର କର ।
ଅମଳାଣ ଚିକ୍କଣ ହରଷେ ରଖିଥିବୁ
ଜାନକୀଙ୍କି ଏହା ଯତନରେ ଦେବୁ ।
ଶୁଣିଣ ମୁନିବର ଯତନ କରି ରଖି
ଆଗହୁଁ ବିଧାତା ଜାଣିଣ ଏହା ସଞ୍ଚି ।
ସୁବର୍ଣ୍ଣ ନଳରେ ଚିକ୍କଣ ଅମଳାଣ
କୃତିବ୍ଧ ମହାଋଷି ସମ୍ଭାଳିଲେ ପୁଣ ।
ଏଥୁ ଅନନ୍ତରେ ଶୁଣ ଦେବୀ ଭଗବତୀ
ସେହି ଯାଗ ଅନୁକୂଳ ରାଜା ସେ କରନ୍ତି ।
ପୁଷ୍କର ମେଘ ଆଣି ଦିଅନ୍ତି ଘୃତ ଜାଣ
ମୂଷଳଧାରା ପ୍ରମାଣେ ବରଷନ୍ତି ପୁଣ ।
କୁଣ୍ଡରେ ନିଉଡନ୍ତି ନେଇଣ ସେ ଦେଲେ
ସେଠାରୁ ଅଗ୍ନି ଯେ ଜଳଇ ପ୍ରଖରେ ।
ମାସକେ ଏକଯାଗ ବରଷକେ ବାର
ସକଳ ଦେବେ ଯେ କରନ୍ତି ଆହାର ।
ଏମନ୍ତେ ବାର ବରଷ ସମ୍ପୂର୍ଣ୍ଣ ହୋଇଲା
ଶତେ ଚଉରାଳିଶ ଯାଗ ସୁରରାଜା କଲା ।
ପୂର୍ଣ୍ଣ ଆହୁତି ସେ କରିଣ ହରଷରେ
ସେଥିରେ ନାରାୟଣ ଆସି ଦୃଶ୍ୟ ହେଲେ ।
ଧନୁ କମାଣ ଯେ ଧରି ଦୁଇ କରେ
ଶାନ୍ତଶୀଳ ମୂର୍ତ୍ତି ଯେ ନୀଳନ୍ଦୀ ଶରୀରେ ।
ସେ ରୂପକୁ ଦେଖି ଦେବେ ନମସ୍କାର କଲେ
ବେଦବର ସଦାନନ୍ଦ ସ୍ତୁତି ପାଠ କଲେ ।
ବୋଇଲେ ଦେବାଧିଦେବ ରାଜା ଅଟହେ ଚକ୍ରଧର
ଅସୁର ମାରିଣ ଦେବଙ୍କୁ ରକ୍ଷାକର ।
ତିନିପୁର ଚଉଦ ବ୍ରହ୍ମାଣ୍ଡ ଅଟେ ତୋର
ନବଖଣ୍ଡ ମେଦିନୀ ସପତ ସାଗର ।

ସଚରାଚର ଦେବ ତୋହର ରଚନା
ପ୍ରଳୟ ସ୍ଥିତି ତୁ ଯେ କରୁ ଦେବ କିନା ।
ପ୍ରଳୟ କଲାବେଳେ ଏହି ଯେ ପ୍ରମାଣ
ପଦ୍ମବଟ ପତ୍ରପରେ କରୁ ଯେ ଶୟନ ।
ସିତି ଉତପତ୍ତି କଲାବେଳେ ସକଳ ଠାବେରହୁ
ଛପନକୋଟି ଦେବଙ୍କୁ ପଡ଼ି ତୁହି ଦେଉ ।
ତେତିଶ କୋଟି ଦେବଙ୍କୁ କରୁ ଭିନ୍ନ ଭିନ୍ନ
ପ୍ରକୃତିରେ ହିଂସାଦାର ହୁଅନ୍ତି ଦେବେ ଜାଣ ।
ନାଗବଳଙ୍କ ଶରୀରରେ ତୁହି ଯେ ପୁଣ ରହି
ବଳବପୁ ନାଗଙ୍କର ତାମସ ବିଷ ହୋଇ ।
ଜୀବ ମାନସେ ସେ ଯେ ବହିବ ହିଂସା ପୁଣ
ଛୁଇଁଲେ ନାଶ କରନ୍ତି ଘେନିଣ ଅବିଗୁଣ ।
ସେ ଦୋଷରୁ ତାଙ୍କ ମସ୍ତକେ ଭାରା ଦେଲୁ
ତିନିପୁର ଚଉଦ ଭୁବନ ଉପରେ ଲଦିଲୁ ।
ଦେବେ ଗର୍ବରେ ପ୍ରକୃତି ଧରି ବଳବନ୍ତ
ତାହାକୁ ବ୍ୟାଧିକଲୁ ଅସୁର କୁଳଗୋତ୍ର ।
ଅସୁରଙ୍କର ବ୍ୟାଧି ଆଗହୁଁ ପୁଣ ହେଲ
ଅବତାର ହୋଇ ଲୀଳା ରଙ୍ଗେ ନାଶକର ।
ବାହାର ଭିତରେ ସକଳଠାବେ ତୁହି
ତୁମ୍ଭବିନୁ ମୁଁ ଅନ୍ୟ କାହାକୁ ନ ଜାଣଇ ।
ଦେବଙ୍କର ଗର୍ବରେ ଅସୁରଙ୍କର ଭୟରେ
ବରଦେଉ ତୁ ଯେ ଜୀବନ ବିକଳରେ ।
ବର ନଦେଲେ ମୋତେ ଧରିଣ ମାରିବେ
ଜୀବ ରଖିବା ପାଇଁ ଭୟ ମୋର ହୃଦେ ।
ଏମନ୍ତେ ବେଦବର କରଇ ଜଣାଣ
ଶୁଣିକରି ସନ୍ତୋଷ ହେଲେ ନାରାୟଣ ।
ବୋଇଲେ ଅଳପଦିନେ ଅସୁର ଯିବେ ନାଶ
ତପନକୁଳରେ ଜାତ ହେବି ମୁଁ ଅବଶ୍ୟ ।
ଏତେକହି ଅନ୍ତର୍ଦ୍ଧାନ ହେଲେ ଦେବହରି ।
ବେଦବର ସୁରରାଜା ଯାଗ ସମ୍ପୂର୍ଣ୍ଣ କରି ।
ସପ୍ତନିଧି ଭଣ୍ଡାରୁ ଧନ ଅଣାଇଲେ
ସକଳ ଋଷିଙ୍କି ନେଇ ମନ ତୋଷ କଲେ ।
ଦେବତାମାନଙ୍କୁ ଦେଲେ ବହୁରତ୍ନ ପୁଣ
ଅମଳାଣ ବସ୍ତ୍ରଦେଲେ ସକଳ ଦେବେ ଜାଣ ।
ପାରିଜାତ ପୁଷ୍ପ ମାଳମାନ ଦେଇ
ସୁରଋଷି ସମସ୍ତଙ୍କୁ ସନ୍ତୋଷ କରାଇ ।

ଅଗ୍ନିକି ନିର୍ବତ କରି ସକଳ ଦେବେଗଲେ
ସମସ୍ତ ଋଷିମାନେ ସେଠାରୁ ଚଳିଲେ ।
ବେଦବର ସଦାଶିବ ଦୁହେଁ ଗଲେ ପୁଣ
ବିରାଟ ଦେଶରେ ପ୍ରବେଶ ତକ୍ଷଣ ।
ନିମି ରାଜା ଯାଗଶାଳ ଉପରେ ଥାଇ ଦେଖି
ତଳକୁ ଦୃଷ୍ଟିଦେଇ ରହିଲେ ଦେବ କୃଷ୍ଟି ।
ହବିର୍ଭାଗ ନିମନ୍ତେ ଉପରେ ଦେବେ ରହି
ଯାର ନାମେ ହବି ହୁଏ ସେହୁ ଦେବ ଖାଇ ।
ଆଗେ ଦେବତା ଋଷି ଯେ ବରିଥିଲେ ରାଜା
ନିମିତ୍ୟ ନିମନ୍ତେ ସର୍ବଦେବେ ହୋଇତେଜ୍ୟା ।
ପାର୍ବତୀ ବୋଇଲେ ଦେବ କଥା ଯେ ରହିଲା
ସ୍ୱର୍ଗ ରାଜନ ସ୍ୱର୍ଗରେ ଯାଗ ଯେ କରିଲା ।
ଅସୁରଙ୍କୁ ବରିଣ ସକଳ ଦେବଗଣ
ରାବଣଙ୍କୁ କହିଣ ଯାଗକଲେ ପୁଣ ।
କହିବାରୁ ଶାନ୍ତ ଚାରି ରାବଣ ହୋଇ
ଦେବତାଙ୍କୁ ଘଞ୍ଚାଳ କଲେ ଯାଗଠାଇଁ ।
ନିମି ରାଜା ଯାଗ ଯେ ବିରାଟ ଦେଶେ କଲା
ଅସୁରମାନଙ୍କୁ କି ସେହୁ ଜଣାଇ ଥିଲା ।
ଏକଥା ଗୋଟି କହନ୍ତୁ ଏକାଦଶ ରୁଦ୍ର
ମୋହର ମନକୁ ଲାଗୁଛି ଅସମ୍ଭବ ।
ଈଶ୍ୱର ବୋଇଲେ ଶୁଣ ପ୍ରାଣସହୀ
ନିମି ରାଜା ଅଟନ୍ତି ନାରାୟଣ ଦେହୀ ।
ବାଳକାଳୁଁ ସେହି ସୁମରେ ଚକ୍ରଧର
ସପ୍ତଘଡ଼ିରାତ୍ରଠାରେ ବାସୁଦେବ ନାମ ଯେଉଁଚାର
ଏମନ୍ତେ ନଉ ସହସ୍ର ବରଷ ବହିଗଲା
ତେବେ କିଛି ପୁତ୍ରପୌତ୍ରୀ ତାହାର ନୋହିଲା ।
ଅଗ୍ନିରେ ଝାସ ଦେବାକୁ ମନରେ ବିଚାରି
ଲିଙ୍ଗା କରିବାରୁ ପ୍ରସନ୍ନ ଚକ୍ରଧାରୀ ।
ରଜନୀରେ ଶୟନ ସ୍ଥାନରେ ସେ କହି
ଭକ୍ତବତ୍ସଳ ଯେ ଅଟନ୍ତି ଭାବଗ୍ରାହୀ ।
ବୋଇଲେ ଚିନ୍ତା ନକର ମନରେ ମହୀପାଳ
ନାରଦ କହିଲାବେଳେ ଯାଗ ତୁହି କର ।
ରାଜନ ବୋଇଲେ ଦୁଷ୍ଟ ଲୋକଙ୍କୁ ମୋର ଡର
କେମନ୍ତେ ଯାଗ ମୁଁ କରିବି ଚକ୍ରଧର ।
ବାସୁଦେବ ବୋଇଲେ ଯାଗର ଅନୁକୂଳେ
ଲଙ୍ଗଳରେ ଉକୁଟିବ ମଞ୍ଜୁଷ ଗୋଟି ଭଲେ ।

ସେ ମଞ୍ଜୁଷ ଭିତରେ ଏକଇ ବାଳଶିଷ୍ୟ
ଶୟନ କରିଥିବ ବସନ୍ତ ବର୍ଣ୍ଣ ରୂପ ।
ସେ କୁମର ତୋତେ ଯେ ହୋଇବ ପ୍ରାପତ
ତୋହର ଯାଗ ସେହୁ ରଖିବ ନିୟତ୍ତ ।
ଏତେ କହି ବାସୁଦେବ ଅନ୍ତର୍ଦ୍ଧାନହେଲେ
ଚେତିଣ ନିମି ରାଜା ସେଠାରୁ ଉଠିଲେ ।
ତିନିଦିନେ ନାରଦ ହୋଇଲେ ପ୍ରବେଶ
ଯାଗକର ବୋଲି ତାଙ୍କୁ କହେ ବ୍ରହ୍ମାଶିଷ୍ୟ
ତିନିପୁର ବରିଣ ସକଳ ସମ୍ପାଦିଲା
ଦେବତା ଋଷି ବ୍ରାହ୍ମଣ ରାଜାଙ୍କୁ ବରିଲା ।
କ୍ଷୀର ଜାହ୍ନବୀ ତଟରେ ଯାଗ ଆରମ୍ଭିଲା
ଗୌତମ ଋଷି ଯେ ଆଚାର୍ଯ୍ୟ ତହିଁ ହେଲା ।
ଲଙ୍ଗଳରେ ଉକୁଟନ୍ତେ ମଞ୍ଜୁଷ ବାହାର
ଫିଟାଇ ଦେଖନ୍ତେ ବାଳକୁମର ଭିତର ।
ବସନ୍ତରୂପ ଦେଖି ବସନ୍ତ ନାମଦେଲେ
ରାଣୀମାନେ ଧରନ୍ତେ କ୍ଷୀର ସ୍ତନରୁ ଦେଲେ ।
ସାତଗୋଟି ମାତା ଯେ ଏକଇ ପିତା ତାର
ଦିନୁଁଦିନ କୁମର ହୋଇ ବଳିଆର ।
ଏକୋଇଶ ଦିନରେ କ୍ଷୀର ତେଜ୍ୟା କଲା
ମିଷ୍ଟ ଅନ୍ନ ଷଡ଼ରସରେ ଭୁଞ୍ଜିଲା ।
ମାସକରେ ହୁଙ୍କାର ଶବଦ ପୁତ୍ର ଦେଲା
ପାଞ୍ଚମାସେ ଚାଲିବୁଲି କରି ସେ ଡେଇଁଲା ।
ସପ୍ତ ମାସରେ ବିଦ୍ୟା ପଢ଼ିଲା କୁମର
ଚାରିବିଦ୍ୟା ସାଧିଣ ହୋଇଲା ଧନୁର୍ଦ୍ଧର ।
ଦୁଇ ବର୍ଷେ ଅଶ୍ୱ ଯାନରେ ଚଢ଼ି ପୁଣ
ପାରଧିକି ଗଲେ ଗିରି କନ୍ଦରେଣ ।
ତିନିବର୍ଷ ଦୁଇମାସ ସମ୍ପୂର୍ଣ୍ଣ ଯହୁଁ ହେଲା
ଏକାମ୍ର ବନକୁ ପୁତ୍ର ବିଜୟ କଲା ।
ସେଦିନ ତୋର ମୋର ଗ୍ରୀସମ କାଳେ ଜାଣ
ସାବିତ୍ରୀ ଅମାବାସ୍ୟା ଅଟେ ସେହି ଦିନ ।
ସେ କୁମର ଭେଟିଲେ ବିନ୍ଦୁ ସାଗର ପରେ
ସୁନ୍ଦର ରୂପଦେଖି ଶରଧା ତୋର ବଳେ ।
ସେ କୁମରକୁ ଚାହାନ୍ତେ ଶୀତଳ ତୋର ଦେହୀ
ଚନ୍ଦନ ଘେନିଲା ପ୍ରାୟେ ଶୀତଳ ଲାଗଇ ।
ମୋର ଦେହ ଗୋଟି ଯେ ହୋଇଲା କୋମଦ
ବସନ୍ତ ପବନ ଯେ ବହିଲା ସୁଗନ୍ଧ ।

ଜୀବବୃକ୍ଷମାନେ ସର୍ବ ପଲ୍ଲବିତ ହେଲେ
ଶୁଷ୍କତରୁ ଜୀବମାନେ ପ୍ରାଣ ଯେ ପାଇଲେ ।
ତାହା ଦେଖି ଚୋରମନେ ହେଲା ଯେବିଚାର
ବିଚାରିଲୁ ଏ ବନ ତ ଲାଗିଲା ଶୀତଳ ।
ଏମନ୍ତ ସମୟରେ କୁମର ମଣି ଆସି
ଆମ୍ଭର ଚରଣ ତଳେ ଓଳଗିଣ ବସି ।
ସେ ପୁତ୍ରକୁ ଦେଖି ତୁମ୍ଭମନେ ଦୟାହେଲା
ପ୍ରସନ୍ନ ହୋଇଣ ତାକୁ କହିଲୁ ତୁହିପରା ।
କେଉଁଦେଶେ ଘରଚୋର କିମର୍ଥେ ବନଆସୁ
ସୁକୁମାର ତନୁ ମୋର କିମ୍ପାଇଁ ଝିଙ୍କାସୁ ।
କୁମର ବୋଇଲା ମୋର ବିରାଟ ଦେଶେଘର
ମୋର ନାମ ବସନ୍ତ ମୁଁ ନିମିରାଜା କୁମର ।
ସେ ରାଜାର ସାତରାଣୀ ଜନନୀ ମୋର ଅଟେ
କାହାର ଗର୍ଭରୁ ଜନ୍ମ କହଇ ସମ୍ମୁଖେ ।
ସେ ରାଜା ଯାଗକଲେ ନାରଦଙ୍କ ବୋଲେ
ଲଙ୍ଗଳ ଫାଳମୁନେ ଉକୁଟିଲା ବେଳେ ।
ମଞ୍ଜୁଷ ଭିତରୁ ମୁଁ ଯେ ହୋଇଲଇଁ ଜାତ
ବସନ୍ତ ବର୍ଣ୍ଣଦେଖି ବସନ୍ତ ବର୍ଣ୍ଣ ସେତ ।
ସେ କଥା ଶୁଣି ତାକୁ ତୁମ୍ଭେ ଯେ ପଚାରି
କେହୁ ତୋତେ ମଞ୍ଜୁଷ ଭିତରେ ରଖେଇରି ।
ସେବୋଇଲା ସେତେବେଳେ ଚେତା ମୋର ଥିଲା
ବ୍ରହ୍ମା, ବିଷ୍ଣୁ, ମହାଦେବ ସୁରରାଜା ପରା ।
କ୍ଷୀର ଜାହ୍ନବୀ ତଟରେ ଚାରିହେଁ ମେଳ ହେଲେ
ଆନନ୍ଦରେ ଚାରିବେଦ ବିଚାରି ଦେବେକଲେ ।
ଉତ୍ତମ ଶକ୍ତିମାନ ତହିଁରେ ଯୋଗ କଲେ ।
କୁମର ଜାତ ହେଲେ ହୋଇବ ଉପକାରୀ
ଅନେକ ଯୋଗ ସେ କରିବ ବିଚାରି ।
ଏମନ୍ତ ବିଚାରି ରତ୍ନମଞ୍ଜୁଷ ଅଣାଇଲେ
ବିଧାତାକୁ ବୋଇଲେ ଦିବ୍ୟ ପିତୁଳାକର ଭଲେ ।
ଶୁଣିଣ ବିଧାତା କ୍ଷୀର ଜାହ୍ନବୀ କି ଗଲା
କୋମଳ ମୃତ୍ତିକା ଯେ ସେଥିରୁ ଆଣିଲା ।
ରୂପଗୋଟି ସଞ୍ଚିଲା ଉତ୍ତମ କରି ଜାଣ
ମଞ୍ଜୁଷ ଭିତରେ ମୋତେ ଭରିଲେ ନେଇପୁଣ ।
ଦୈବ ବୋଇଲେ ତୁ ଥିବୁ ଶବ୍ଦ ନ କରିଣ
ସମୟ ହୋଇଲେ କରିବୁ ଶବ୍ଦ ଜ୍ଞାଣ ।

ଯେତେବେଳେ ନିମିରାଜା ଯାଗ ଆରମ୍ଭିବ
ଶୋଧନ କଲାବେଳେ ତୋତେ ଯେ ପାଇବ ।
ହରଷରେ ତୋତେ ଯେ ନାମ ଦେବ ପୁଣ
ତେବେ ତୁ ଶବଦ କରିବୁ ପ୍ରମାଣ ।
ଏତେବୋଲି ମଞ୍ଜୁଷ ସେଠାରେ ଗୁପ୍ତକଲେ
ଯେ ଯାହାର ସ୍ଥାନକୁ ଚାରିଦେବେ ଗଲେ ।
ସେଠାରେ ସହସ୍ର ବରଷ ପରିଯନ୍ତେ
ଗୁପତେ ରହିଲି ମୁଁ ଧରଣୀ ହୃଦଗତେ ।
ନିମି ରାଜା କାଳେ ଯେ ସ୍ଥାନେ ଯାଗକଲା
ମୋତେ ପାଇବାରୁ ରାଣୀମାନଙ୍କ କୋଳେଦେଲା ।
ଏକୋଇଶ ଦିନ ପର୍ଯ୍ୟନ୍ତ କ୍ଷୀରପାନ କଲି
ବରଷକେ ଚାରିବିଦ୍ୟା ଗୁରୁଠାରୁ ଶିଖିଲି ।
ତିନି ବରଷ ଦୁଇମାସେ ବନକୁ ଅଇଲି
କର୍ମର ସୁଯୋଗରେ ତୁମ୍ଭର ଭେଟହେଲି ।
ଶୁଣିଣ ସନ୍ତୋଷ ଯେ ହୋଇଲୁ ତୁହିପୁଣ
ବୋଇଲୁ କୁମରବର ମାଗ ତୁ ବହନ ।
ସେ ବୋଇଲା ମନଇଚ୍ଛାବରମୋତେ ଦେବୁ
ଅକ୍ଷୟତୃଣ ପିନାକୀ ଧନୁ ସମର୍ପିବୁ ।
ସମସ୍ତଙ୍କୁ ଜିଣିବି ମୁଁ ନ ହାରିବି କାହିଁ
ଯେବେ ଜନନୀ ମୋତେ ସୁଦୟା କଲୁ ତୁହି ।
ହେଉ ବୋଲି ବୋଇଲୁ ତୁ ପ୍ରସନ୍ନ ମନରେ
ଅକ୍ଷୟ ତ୍ରୋଣ ପିନାକୀ ଦେଲୁ ତା ହସ୍ତରେ
ପଶ୍ଚାତେ ବୋଇଲୁ ପିତାକୁ ମାଗବର
ନମସ୍କାର କରି କୁମର ଯୋଡ଼ିଲା ବେନିକର ।
ପାଶୁପତ ଶକ୍ତି ଗଦା ଯେ ମୁଦ୍‌ଗର
ପ୍ରସନ୍ନ ହୋଇଣ ମୁହିଁ ଦେଲଇଁ ତାରକର ।
ସନ୍ତୋଷ ହୋଇ କୁମର ସେଠାରୁ ଚଳିଗଲା
ବିରାଟ ଦେଶରେ ପ୍ରବେଶ ହୋଇଲା ।
ନିମି ରାଜା ଯାଗକଲା ତିନି ଯେ ବରଷ
ଚାରି ରାବଣ ସେଠାରେ ହୋଇଲେ ପ୍ରବେଶ ।
ଅନେକ ଗରିଷ୍ଠ ଅସୁର ଆସିମିଳି
ଯାଗର ଚାରିପାଶେ ରୁନ୍ଧିଲେ ଦୈତ୍ୟମିଳି ।
ଦେଖିକରି ନିମି ରାଜା ଚାଟକା ହୋଇଲା
ହୃଦପଦ୍ମ ମଧ୍ୟରେ ବାସୁଦେବଙ୍କୁ ସୁମରିଲା ।
ଶୂନ୍ୟରେ ବାସୁଦେବ ନାରଦଙ୍କୁ କହି
ବସନ୍ତ କୁମରକୁ କହ ବେଗେ ଯାଇ ।

ପିତାର ଯାଗରକ୍ଷା କଲେ ପୁଣ ପୁତ୍ର
ନୋହିଲେ ଦୈତ୍ୟ ସବୁ କରିଲେ ନିପାତ ।
ଶୁଣିଣ ନାରଦ ଯେ ବେଗେ ଚଳିଗଲେ
ବସନ୍ତ କୁମରକୁ ଯାଇଣ କହିଲେ ।
ପିତାର ଯାଗ ତୋର ହେବ ଛାରଖାର
ବେଢିଲେ ଅସୁରେ କରିବେ ହୁର ଢୂର ।
ଶୁଣିକରି କୁମର ବସିଲା ପିତାରଥେ
ପିନାକୀ ଧନୁ ଧରି ଅକ୍ଷୟ ତୂଣହସ୍ତେ ।
ଦେଖିଲା ଅସୁରବଳ ସାଗର ପ୍ରାୟେ ଘୋଟି
ପିନାକୀ ଧନୁରେ ଅକ୍ଷୟ ତୂଣ ଯୋଚି ।
ବିରାଟ ନଗରରେ ଯାଗଶାଳା ଜାଣ
କ୍ଷୀର ଜାହ୍ନବୀ ସହିତେ କଲାକ ରୁନ୍ଧନ ।
ଦେବରହିବା ଠାବରୁ ଭୂମିର ଲଗାନ୍ତେ
ରୁନ୍ଧିଲା ଶର ସତୁରୀ ଯୁଣ ପରିଯନ୍ତେ ।
ଦୀର୍ଘ ଯେ ସତୁରୀ ପ୍ରତି ଯେ ସତୁରୀ
ଏହିରୂପେ ଶରବାଡ କଲାକ ବିଚାରି ।
ଦେବତା ଋଷି ବ୍ରାହ୍ମଣ ନର ବାନର ଜାଣ
ରାଜା ହଟାରି ବଟାରୀ ଅଛନ୍ତି ଯେତେ ପୁଣ ।
ଚନ୍ଦ୍ର, ସୂର୍ଯ୍ୟ, ଦଶଦିଗପାଳ ଯେ ଆଦି
ସମସ୍ତେ ରହିଲେ ଯେ ଜାଗଶାଳ ଜଗି ।
ବାହାରେ ଅସୁର ବସନ୍ତ ନାରଦ
ନିବିଡ଼ ଅନ୍ଧାର ହୋଇଲା ଦଶଦିଗ ।
ପଥ ନଦିଶିଲା ଅସୁର ହେଲେ ବଣା
ଏହିରୂପେ ହରିଙ୍କର ତାଠାରେ କରୁଣା ।
ଏହିରୂପେ ସାତରାତ୍ର ସାତ ଯେ ଦିବସ
ନିବିଡ଼ ଅନ୍ଧାର ଜନ୍ତୁ ପାନ୍ତି କ୍ଲେଶ ।
ଜୀବମାନେ ସମସ୍ତେ ନାରାୟଣଙ୍କୁ ଭଜି
ଜାଣିଣ ପିତାମହ ହେଲେ ଗଳଗାଜି ।
ଶରବାଡ ଭିତରେ ଜଳା କାଟିଦେଲେ
ଚନ୍ଦ୍ର, ସୂର୍ଯ୍ୟ ଦୁହିଁଙ୍କି ବାଟ ଛାଡ଼ିଦେଲେ
ତେବେଂ ତିନିପୁର ହୋଇଲା ପୁଣ ଦୃଶ୍ୟ
ସକଳ ଜୀବଜନ୍ତୁ ହୋଇଲେ ହରଷ ।
ଯେତେକ ଅସୁର ଘୋଟିଣ ଥିଲେ ପୁଣ
ଭୟକରି ସମସ୍ତେ ଗଲେ ଯେଝାସ୍ଥାନ ।
ଚାରି ରାବଣ ସହିତେ ଗରିଷ୍ଠମାନେ ଗଲେ
ସେ ସ୍ଥାନରେ ଗୋଟିଏ ଅସୁର ନରହିଲେ ।

ବିଚାରିଲେ ଏହାକୁ ନପାରିବେ ରଣେ
ଚନ୍ଦ୍ର, ସୂର୍ଯ୍ୟଙ୍କୁ ଯେହୁ କଲାକ ଏକବାଣେ ।
ଏହାର ସଙ୍ଗେ ଲାଗିଲେ କୁଳକ୍ଷୟ ଯିବ
ସକଳ ଜୀବ ଜନ୍ତୁଙ୍କ ପ୍ରାଣହିଁ ସରିବ ।
ଏମନ୍ତ ବିଚାରିଣ ଅସୁରେ ଫେରିଗଲେ
ଯେ ଯାହାର ଭୁବନରେ ଯାଇଣ ରହିଲେ ।
ପାର୍ବତୀ ବୋଇଲେ ଶୁଣ ତ୍ରିଲୋଚନ
ବସନ୍ତ କୁମର ମାୟା କଲା ପୁଣ ।
ମାୟାଦେଖି ସମସ୍ତେ ଆଚମ୍ଭିତ ହେଲେ
ଅପଘାତ ଆଉ ସେଠାରେ ନ ରହିଲେ ।
ଗରିଷ୍ଠ ଦୁଷ୍ଟ ଯିବାରୁ ବସନ୍ତ କୁମର
କିସକଲା ମୋ ଆଗରେ କହ ବିଶ୍ୱମ୍ଭର ।
ଈଶ୍ୱର ବୋଇଲେ ସମସ୍ତେ ପଳାଇଲେ
ସମସ୍ତେ ଯିବାରୁ ନାରଦ କହିଲେ ।
ବୋଇଲେ କୁମରରେ ସମସ୍ତେ ଗଲେ ଫେରି
ଏ ମାୟାଶର ତୋତେ କେଦେଲା ଯାଚିକରି ।
କୁମର ବୋଇଲା ଜନନୀ ମୋର ଉମା
ଶରଗୋଟି ଦେଲେ ମୋତେ କରିଣ କରୁଣା
ସଦାଶିବଙ୍କ ବାମା ତ୍ରୈଲୋକ୍ୟ ଠାକୁରାଣୀ
ଏକାମ୍ରର ବନରେ ଦେଲେ ଯେ ଯାଚିପୁଣି ।
ନାରଦ ବୋଇଲେ ଫିଟାଅ ଶରବାଡ଼
ପିତାର ଯାଗଗୋଟି ହେଲା ତୋର ସାର ।
ଶୁଣିକରି କୁମାର ତୋତେ ସୁମରିଲା
ଅନେକ ସ୍ତୁତିକରି ଶରବାଡ଼ ସଂହରିଲା ।
ଅକ୍ଷୟ ତ୍ରୋଣ ଯେ ସମ୍ଭାଳ ହେଲା ପୁଣ
ଚନ୍ଦ୍ର ସୂର୍ଯ୍ୟ ଆନନ୍ଦ ଯେ ଆନନ୍ଦ ଦେବଗଣ
ରାଜା, ପାତ୍ର, ମନ୍ତ୍ରୀ, ଋଷି ପୁଣ ବ୍ରାହ୍ମଣ
ସମସ୍ତେ ପ୍ରଶଂସା କରନ୍ତି ପୁତ୍ରେଣ ।
ଏମନ୍ତେ ବାରବର୍ଷ ସଂପୂର୍ଣ୍ଣ ପୁଣ ହେଲା
ପୂର୍ଣ୍ଣ ଆହୁତି କଲେ ଋଷି ବ୍ରାହ୍ମଣ ପରା ।
ଆହୁତିବେଳେ ଅଗ୍ନି ଦିଶିଲେ ଉଜ୍ଜ୍ୱଳ
ଦେବତାଏ ବୋଇଲେ ଲଭିଲେ ସ୍ୱର୍ଗପୁର ।
ପୂର୍ଣ୍ଣ ଆହୁତି ବେଳେ ସକଳ ଦେବେ ଦୃଶ୍ୟ
ହବିର୍ଭାଗ ପାଇଣ ସମସ୍ତେ ହେଲେ ତୋଷ ।
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଚତୁର୍ଦ୍ଧା ରୂପଧରି
ଅଗ୍ନି ଭିତରେ ଦେଖିଲେ ଗୌତମ ତପଚାରୀ ।

ନମସ୍କାର କରିଣ ଅନେକ ସ୍ତୁତି କଲେ
ଜୟ ତୁ ନାରାୟଣ ବୋଲିଣ ବୋଇଲେ ।
ଜୟ ଜୟ ଜଗନ୍ନାଥ ସାଗର ଅଟୁ ଦେବହରି
ସକଳ କଥା ତୋର ହୃଦରୁ ଅବତରି ।
ମାନିଲେ ରଖୁ ନୋହିଲେ ନାଶ କରୁ ପୁଣ
ତୋର ଚରଣେ ଅଟେ ସକଳ ଦେବଗଣ ।
ଏମନ୍ତ ବୋଲି ସ୍ତୁତି ଗଉତମ କଲେ
ଅନ୍ତର ହୋଇ ଦେବେ ଅଦୃଶ୍ୟ ହୋଇଲେ ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ପୂର୍ଣ୍ଣ ଆହୁତି ସଙ୍ଗେ ଉଠିଲା ଚରୁଗୋଟି ।
ଶୁଣିଣ ନିମିରାଜା ନିଜପୁରେ ଗଲା
ସପତ ରାଣୀଙ୍କୁ ସଧୀରେ ପଚାରିଲା ।
ସପତ ରାଣୀ ବୋଇଲେ ନପାରୁ କରି ନିଷ୍ଠା
ବଡ଼ପାଟ ବୋଇଲେ ମୁଁ କରିଅଛି କାଷ୍ଠା ।
ଶୁଣିଣ ରାଜନ ଫେରିକରି ଗଲା
ବଡ଼ ପାଟରାଣୀ କାଷ୍ଠା କରିଛି ବୋଇଲା ।
ଗଉତମ ଚରୁ ଦେଲେ ନୃପତି ହସ୍ତରେ
ଏ ଚରୁ ଦିଅ ପାଟରାଣୀ କରେ ।
ଶୁଣିଣ ନୃପତି ଅନ୍ତଃପୁରେ ଗଲା
ବଡ଼ ପାଟରାଣୀକି ଡକାଇ ଚରୁ ଦେଲା ।
ସେ ଚରୁକୁ ଆନନ୍ଦେ ଭକ୍ଷିଲା ରାଣୀ ପୁଣ
ଏଥୁ ଅନନ୍ତରେ ଗୋ ଶାକମ୍ଭରୀ ଶୁଣ ।
ରାଜନ ଲେଉଟି ଅଇଲା ଯାଗଶାଳେ
ଅଗ୍ନିକି ଶୀତଳ କଲେ ସକଳ ତପଶୀଳେ ।
ଋଷି, ବ୍ରାହ୍ମଣଙ୍କୁ ସନ୍ତୋଷେ ଧନ ଦେଲେ
ମନର ସନ୍ତୋଷ ରାଜା ସବୁଙ୍କୁ ବୋଧ କଲେ
ରାଜାମାନଙ୍କୁ ରତ୍ନ ମୁକୁଟ କୁଣ୍ଡଳ
ନାନାରତ୍ନ ଦେଇ ତୋଷିଲେ ନୃପବର ।
ପାତ୍ର, ମନ୍ତ୍ରୀ, ଚତୁରଙ୍ଗବଳଙ୍କୁ ତୋଷ କଲେ
ହଟୀରି ବଜାରୀ ପରିବାରେ ଧନଦେଲେ ।
ମାଗନ୍ତା ଦୁଃଖୀ ଦରିଦ୍ରେ ଦେଲେ ଅନ୍ନବସ୍ତ୍ର
ସମସ୍ତଙ୍କୁ ଭୁରି ଭୋଜନ କରାଏ ବିଶେଷ ।
ସମସ୍ତେ ସନ୍ତୋଷ ହୋଇଣ ଚଳିଗଲେ
ଯାଗଶାଳେ ଗୋଟିଏ କେହି ନ ରହିଲେ ।
ଗୌତମ ଋଷିଙ୍କି ଅନେକ ଧନ ଦେଲେ
ନିଜ ମନ୍ଦିରକୁ ଋଷି ଚଳିଗଲେ ।

ନାରଦଙ୍କୁ ଘେନି ଚଳିଲା ଯଜ୍ଞସ୍ଥାନୁ
ନିଜପୁରୁ ରାଣୀହଂସ ଡକାଇ ଆଣି ତେଣୁ ।
ବସନ୍ତକୁମରଙ୍କୁ ସଙ୍ଗରେ ଘେନି ରାଜା
କ୍ଷୀର ଜାହ୍ନବୀ ନଦୀରେ ପ୍ରବେଶ ମହାରାଜା
ଜାହ୍ନବୀ ତୀରେ ଯାଇ ସ୍ନାନ କଲେ
ପିତୃ ତର୍ପଣ କରି ଦେବଙ୍କୁ ଅର୍ଘ୍ୟଦେଲେ ।
ରବିଙ୍କି ବନ୍ଦାପନା କଲେକ ସେଠାରେ ।
ଫୁଲ, ଚନ୍ଦନ, ଅଗୁରୁ, କସ୍ତୁରୀ ଭୂଷଣ
ନାନାଜାତି ଅଳଙ୍କାର ଶରୀରେ ମଣ୍ଡଣ ।
ରଥମାନଙ୍କରେ ବସିଣ ଆନନ୍ଦରେ
ବାଦ୍ୟ ନିଶାଣରେ ଚଉଦିଗ ପୁରେ ।
ହରଷେ ରାଜନ ଚଳଇ ଧୀର ଧୀର
ପ୍ରବେଶ ହୋଇଲେ ଆପଣା ସିଂହଦ୍ୱାର ।
ଦାଣ୍ଡରେ ରତ୍ନବୃଷ୍ଟି କରଇ ରାଜନ
ଇଷ୍ଟ ଦେବତାଙ୍କୁ କଲାକ ଦରଶନ ।
ବିଷ୍ଣୁ ପ୍ରତିମାଙ୍କୁ ଅମୃତ ଭୋଗଦେଲା
ଶିବ ପ୍ରତିମାମାନଙ୍କୁ କ୍ଷୀରଶାୟୀ କଲା ।
ଗ୍ରାମ ଦେବତୀମାନଙ୍କୁ ବୋଦା ଯେ ଛାଗଳ
ଦେଇଣ ତୋଷ କଲା ଦେବୀଙ୍କି ସକଳ ।
ନାରଦଙ୍କୁ ଅନେକ ଧନ ରତ୍ନ ଦେଲା
ବିନୟୀ ହୋଇଣ ବହୁତ ସ୍ତୁତି କଲା ।
ସନ୍ତୋଷ ହୋଇଣ ନାରଦ ମହାମୁନି
ଯଶୋବନ୍ତୀ ପୁରକୁ ଚଳିଗଲେ ପୁଣି ।
ବେଦବର ଆଗରେ ସକଳ କହିଲେ
ଶୁଣିକରି ବେଦବର ସନ୍ତୋଷ ହୋଇଲେ ।
ଏଥୁ ଅନନ୍ତରେ ଶୁଣ ଶାକମ୍ଭରୀ
ବଡ ପାଟରାଣୀ ଯେ ସୁଖରେ ମନ ଭରି ।
ନୂତନ ପାକ ରାନ୍ଧଣା ବିଧି କଲେ
ଷଡ଼ରସେ ରାଜନ ଭୋଜନ ବିଜେହିଲେ ।
ଏମନ୍ତେ ତିନିଦିନ ସେଥିରେ କହିଗଲା
ବଡ଼ ପାଟରାଣୀ ରଜସ୍ୱଳା ହେଲା ।
ପାଞ୍ଚ ଦିନରେ ରାଣୀ ସୁଦ୍ଧସ୍ନାନ କଲା
ସୁବେଶ ହୋଇଣ ରାଜାଙ୍କ ପାଶେ ଗଲା ।
ଦେଖିଣ ରାଜନ ପ୍ରସନ୍ନ ହୋଇଲେ ।
ମନର ସନ୍ତୋଷେ ରତିଲୀଳା କଲେ ।

ସେହିଦିନ ରାଣୀ ଗର୍ଭସ୍ଥିତ ହେଲା
ଯାଗ ସରିବାର ଠାରୁ ବିଂଶଦିନ ଗଲା ।
ବଶିଷ୍ଠ ସୁର ରାଜା ଯାଗକୁ ଯାଇଥିଲେ
ଅଯୋଧ୍ୟାପୁରେ ଯାଇ ପ୍ରବେଶ ହୋଇଲେ ।
ସ୍ୱର୍ଗପୁରରୁ ଯେତେ ଧନରତ୍ନ ନେଇଥିଲେ
ନିଜ ମଢ଼ିଆରେ ସକଳ ସମ୍ପାଦିଲେ ।
ଘରଣୀ କି କହିଣ ଚଳିଲେ ବେଗେ ପୁଣ
ବିରାଟର ଦେଶରେ ପ୍ରବେଶ ହେଲେ ଜାଣ ।
ନିମିରାଜା ପୁରରେ ହୋଇଲେ ପରବେଶ
ଦେଖିଣ ରାଜନ ହୋଇଲା ହରଷ ।
ବଶିଷ୍ଠ ବୋଇଲେ ମୋତେ ବରିଲୁ ତୁ ପୁଣ
ଗୌତମଙ୍କୁ ଯାଗ କରିଲୁ ରାଜନ ।
ଋଷି କୁଳରେ ମୋତେ ଲଜ୍ୟା କରାଇଲୁ
ନ୍ୟାୟବନ୍ତ ରାଜା ହୋଇ ଅଧର୍ମ ବିଚାରିଲୁ ।
ସେ ଦୋଷରୁ ଶାପ ତୋତେ ହେଉରେ ପ୍ରାପତ
ଯେବେ ଯାଗ ତୁହି କରିବୁ ଉପଗତ ।
ସେତିକି ବରଷ ଯାଏ ମୋର ଶାପ ଘେନ
ନର୍କ ଦର୍ଶନ ଯାଇ କରିବୁ ରାଜନ ।
ଶତେ ଚଉରାଳିଶି ଯାଗ କରିଲୁ ସଂପୂର୍ଣ୍ଣ
ତେତେ ବର୍ଷ କରଯା କୁମ୍ଭିପାକ ଦର୍ଶନ ।
ଏମନ୍ତ ଶୁଣି ରାଜନ କ୍ରୋଧରେ ବୋଇଲେ
କେଉଁନୀତିରେ ଶାପଦେଲେ ମୋତେ ଭଲେ ।
ଆଗରେ ଯାଇ ମୁଁ ତୁମ୍ଭଙ୍କୁ କରିଲି ବରଣ
ବରଣରଖି ସମ୍ମତ କଲତ ଆପଣ ।
ପଛେ ବରଣ କଲେ ସ୍ୱର୍ଗରେ ଦେବଗଣ
ମୋର ଯାଗ ଛାଡ଼ି ତେଣେ ଗଲଆଗେ ପୁଣ ।
ଅଧର୍ମ କଥା ଗୋଟି ଆଗେ ବିଚାରିଲୁ
କେଉଁ ଗୁଣେ ତୁହି ତାମସ ବୁଦ୍ଧି କଲୁ ।
ଦୋଷ ନଥିବା ଲୋକକୁ ଦେଲ ଶାପପୁଣ
ମୋହର ଶାପ ତୁମ୍ଭେ ଘେନ ଋଷି ରାଣ ।
ଯେତେଦିନ ଶରୀରରେ ଥିବ ତୁମ୍ଭ ପ୍ରାଣ
ତେତେଦିନ ଗଜମୁର୍ଖ ହୁଅ ହେ ଆପଣ ।
ଏ ଜନମ ଗଲେ ତୁ ପୁଣି ଜନ୍ମ ହେବୁ
ଚଣ୍ଡାଳର ଦୁହିତାକୁ ବିବାହ ହୋଇବୁ ।
ତେବେ ତୁ ଶାପରୁ ହୋଇବୁ ମୁକତ
ଏହିଶାପ ଗୋଟି ତୋତେ ହେଉ ପରାପତ ।

ଶୁଣିଣ ବଶିଷ୍ଠ ସ୍ତମ୍ଭୀଭୂତ ହୋଇ
ବିଧାତା ପୁରୁଷଙ୍କୁ ସୁମରିଲେ ତହିଁ ।
ବୋଇଲେ ନିଶ୍ଚେମୋତେ ଘୋଟିଲା ଆସିକାଳ
ଏ ଶରୀର ଥିବା ଯାଏଁ ରାଜବିଧି ମୋର
ତେବେ କି କାର୍ଯ୍ୟ ଯେ ଶରୀର ବହି ମୋର ।
ଏତେ କହି ବ୍ରହ୍ମଋଷି ବିକଳ ଅନ୍ତର ।
ବହୁତ ଆରତରେ ସୁମରେ ବେଦବର
ଯଶୋବନ୍ତୀ ପୁରେ ତାହା ଜାଣିଲେ କୁଶଧର
ହଂସ ବାହନ ଛାଡ଼ି ଅଇଲେ ଧାତିକାର
ପରବେଶ ହୋଇଲେ ବିରାଟ ନଗର ।
ଦେଖି ନିମି ରାଜା ଚରଣତଳେ ନମି
କରଯୋଡ଼ି ସ୍ତୁତି ଯେ କରଇ ନୃପମଣି ।
ବୋଇଲେ ମୋର ଦୋଷ ଶୁଣ ବେଦବର
ଯାଗକରିବାକୁ ମୋତେ କହିଲେ ନାରଦମୁନି
ତାଙ୍କର ବୋଲେ ଯାଗ ଆରମ୍ଭ ମୁଁ କଲି
ପ୍ରଥମେ ବଶିଷ୍ଠଙ୍କୁ ଆଚାର୍ଯ୍ୟେ ବରିଲି ।
ଦ୍ୱିତୀୟେ ସକଳ ଋଷିଙ୍କି କଲି ବରଣ
ତୃତୀୟେ ସର୍ବଦେବଙ୍କୁ ଦେଲି ନିୟନ୍ତ୍ରଣ ।
ଚତୁର୍ଥେ ବିପ୍ରବର ପଞ୍ଚମେ ରାଜା ବରି
ଷଷ୍ଠେ ଚାରି ମେଘ ଘୃତ ସମୁଦ୍ରକୁ ବରି ।
ସପ୍ତମେ ହଟାରି ବଜାରୀଙ୍କି ଠୁଳ କଲି
ଅଷ୍ଟମେ ଯାଗଶାଳ ବିଧିମତେ କଲି ।
ବଶିଷ୍ଠଙ୍କୁ ଡାକନ୍ତେ କହିଲେ ମୁନିବର
ଏବେ ନିମନ୍ତ୍ରଣ କରିଲା ସୁନାଶିର ।
ମୁଁ ବୋଇଲି ଧର୍ମ ଏହୁ ନୁହଇ ତୁମ୍ଭର
ଆଗେ ମୁଁ ବରଣକଲି ଯିବାର ବେଭାର ।
ସେ ବୋଇଲେ ବାରବର୍ଷ ଗଲେ ମୁହିଁଯିବି
ମୁଁ ବୋଇଲି ତେତେକାଳ ଯାଗକି ରଖିଥିବି ।
ସମସ୍ତଙ୍କୁ ବରିଲି ଅଇଲେ ମୋର ପୁର
ବଶିଷ୍ଠଙ୍କ ଲାଗି ଏକା ହେଲି ହରବର ।
ବଶିଷ୍ଠ ବୋଇଲେ ଦେବତାଏ ମୋତେ ବରି
ଆଗେ ଯିବି ସ୍ୱର୍ଗପୁର ଧର୍ମ ଏ ମୋହରି ।
ମୁଁ ବୋଇଲି ଅଧର୍ମ କିମ୍ପାଇ ଋଷି କର
ଯେ ବରିଲା ଆଗ ସେଠାକୁ ଯିବା ଚାଲ ।
ସେ ବୋଇଲେ ସ୍ୱର୍ଗ ଯାଗ ସାରିଲେ ମୁଁ ଯିବି
ଶୁଣିଣ ଚିନ୍ତାକୁଳେ ହୋଇଲି ମୁଁ ଭାବି ।

ବହୁତ ଭାବି ଚିନ୍ତା ସେଠାରୁ ଚଳିଲି
ଗୌତମ ଋଷିଙ୍କି ବରଣ କରି ନେଲି ।
ସେହିଋଷି ମୋର ଯାଗେ ହୋଇଲେ ଆଚାର୍ଯ୍ୟ
ନାରଦ ମୁନି ମିଳି ସର୍ବ କଲେ ସିଦ୍ଧ ।
ଯାଗ ଅନୁକୂଳେ ପ୍ରାପତ ମୋତେ ପୁତ୍ର
ସେହିଠାରୁ ଆନନ୍ଦ ହୋଇଲା ମୋର ଚତ୍ତ ।
ଦ୍ରୋଣ ମେଘ ଘୃତ ଆଣିଣ ମୋତେ ଦେଲା
ମୃଷଳ ଧାରା ପ୍ରମାଣ କୁଣ୍ଡେ ନିଭଢ଼ିଲା ।
ବରବରଷେ ଯାଗ ଅମାପତ ମୋର
ପୂର୍ଣ୍ଣ ଆହୁତି ବେଳେ ଚରୁ ଯେ ବାହାର ।
ସେ ଚରୁ ବଡ଼ ପାଟରାଣୀ ଯେ ଭକ୍ଷିଲା
ଆଜକୁ ସପ୍ତଦିନ ଗର୍ଭବାସ ହେଲା ।
ତେତେବେଳୁଁ ଜାଣହେଲା ବାସୁଦେବମାୟା
ଲକ୍ଷେ ଗରିଷ୍ଠ ଅସୁରେ ଫେରିଲେ କରିଭୟ ।
ଦେବତା ବ୍ରହ୍ମ ଋଷି ରାଜ ଋଷି ଜନ
ମେଲାଣି ହୋଇଣ ଗଲେ ଯେ ଯାହା ସ୍ଥାନ ।
ଦଶଦିନ ଉତ୍ତାରୁ ଏ ଋଷି ଆସି ପୁଣ
ଆଗ ଧର୍ମ ଲଙ୍ଘି ପଛରେ କ୍ରୋଧମନ ।
ନ୍ୟାୟକୁ ନ ବିଚାରି ଶାପ ମୋତେ ହୋଇ
ବୋଇଲେ ଶହେ ଚୌରାବନଶଯାଗପୂର୍ଣ୍ଣ ଦେଇ ।
ତେତେଦିନ ପର୍ଯ୍ୟନ୍ତ କୁମ୍ଭିପାକ ଯାଅ
ଯାତନାପୁରେ ଯାଇ ଦର୍ଶନକୁ ପାଅ ।
ଅଦୋଷରେ ଶାପ ମୋତେ ଦେଲେ ମୁନିବର
ସେଥିଯୋଗେ ମୁନିଙ୍କି ମୁଁ ଶାପ ଯେ ଦେବାର ।
ଗଜମୂର୍ଖ ହୁଅ ବୋଲିଣ ବୋଇଲି
ଏହି ଜନ୍ମଟି ଏହା ଭୋଗ ତୁ କହିଲି ।
ଏହି ଜନ୍ମଅନ୍ତେ ତୁ ଯେ ହେବୁ ବିଦ୍ୟାବନ୍ତ
ବିଦ୍ୟାବନ୍ତ ହେଲେ ମଧ ରହିବ କଳଙ୍କ ।
ଚଣ୍ଡାଳ ଦୁହିତାକୁ ବିଭା ହେବୁ ପୁଣ
ମୋର ଶାପ ଅନ୍ୟଥା ନୋହିବ ଯେ ଜାଣ ।
ଶୁଣିଣ ବେଦବର ରାଜନକୁ କହି
ଅଦୋଷରେ ମୁନିଯେ ତୋତେ ଶାପ ଦେଇ ।
ମୁନିଙ୍କର ବଚନ ତ କେବେହେଁ ନୁହେଁ ଆନ
ଚାରିମାସ ଚବିଶ ଦିନ ତୁ କର ନର୍କ ଦର୍ଶନ ।।

ନିମିରାଜା ବୋଇଲେ ମୁଁ କେଉଁଠାକୁ ଯିବି
ବେଦବର ବୋଇଲେ ଚଳ ତୁହି ବେଗି ।
ରାଣୀହଂସପୁରେ ତୋର ଯେତେକ ଛତ୍ରିସ୍ତିରୀ
ସେମାନଙ୍କର ଶ୍ୱେତଖାନା ଖଟ ଯାଇକରି ।
ଦିନ ପୂରିଲେ ତୁ ଯେ ସେଠାରୁ ଆସିବୁ
କନକସ୍ନାନ କରି ସିଂହାସନରେ ବସିବୁ ।
ନାରଦଙ୍କୁ ସୁମରଣା କରିବୁ ସେତେବେଳେ
ପବିତ୍ର ଅଙ୍ଗ ତୋର କରିବେ ମୁନିବରେ ।
ରାଜା କହିଲେ ଏକଥା ବଡ଼ ଅପମାନ
ନିଶ୍ଚୟ ଆଜ ମୁହିଁ ହାରିବି ଜୀବନ ।
ବିଧାତା ବୋଇଲେ ତୁ ଯାଚକପୁର ଯିବୁ
ଚଉରାଶି ନର୍କରେ ଯାଇଣ ପଡ଼ିବୁ ।
ଶାପ ତ ପାର ବାବୁ ନୁହେ କେତେବେଳେ
ଶ୍ୱେତଖାନାକୁ ଯିବୁ ସକାଳେ ସଞ୍ଜବେଳେ ।
ଯେତେବେଳେ ଚଣ୍ଡାଳ ନେବ ନର୍କ ଜାଣ
ସେତେବେଳେ ନର୍କ ତୁ କରିବୁ ଦର୍ଶନ ।
ଶୁଣିଣ ରାଜନ ସେଠାରୁ ଚଳିଗଲା
ଶ୍ୱେତଖାନା ପାଖରେ ଗୁପତେ ରହିଲା ।
ଯେତେବେଳେ ଚଣ୍ଡାଳ ଅଟଇ ଶ୍ୱେତଖାନ
ସେତେବେଳେ ନୃପତି ଦର୍ଶନ କରେ କିନ ।
ଏମନ୍ତେ ଚାରିମାସ ଚବିଶ ଦିନ ଗଲା
ଭୋଗିବାର ଦିନ ଯେ ସମ୍ପୂର୍ଣ୍ଣ ହୋଇଲା ।
ଶ୍ୱେତଖାନାଠାରୁ ଯେ ଅଇଲେ ନୃପବର
ନାରଦଙ୍କୁ ସୁମରଣା କଲେ ହୃଦୟର ।
ତକ୍ଷଣେ ମୁନିବର ପ୍ରବେଶ ଆସିହେଲେ
ଦେଖିକରି ନିମିରାଜା ଚରଣେ ନମିଲେ ।
କନକ ସ୍ନାନ ଯେ ରାଜାଙ୍କୁ କରାଇଲେ ।
ଗୋମୟ ପଞ୍ଚଗବ୍ୟ ନେଇଣ ପିଆଇଲେ ।
ଶାଳଗ୍ରାମ ସ୍ନାନ ପାଣି ପିଆଇଲେ ନେଇ
ପବିତ୍ର ଅଙ୍ଗ କଲେ ମୁନିବର ତହିଁ ।
ରତ୍ନ ସିଂହାସନରେ ନେଇଣ ବସାଇଲେ
ରାଜନୀତି ବେଭାର ଦର୍ଶନଦେବାର୍ଚ୍ଚନ କଲେ ।
ପାତ୍ର, ମନ୍ତ୍ରୀ, ଚତୁରଙ୍ଗ ବଳ ଯେ ଭେଟିଲେ
ବସନ୍ତ କୁମର ଆସି ଚରଣେ ଲୋଟିଲେ ।
ଛତିଶ ନିଯୋଗ ସେବାରେ ପରିପୂର୍ଣ୍ଣ
ବାଦ୍ୟ ନିଶାଣ ଯେ ଦଶଦିଗେ ସ୍ୱନ ।

ଇଷ୍ଟ ଦେବତାଙ୍କୁ ଦର୍ଶନ କଲେ ରାଜା
ପର୍ବତ ସମାନେ ଅମୃତ ଦ୍ରବ୍ୟ ପୂଜା ।
ଶିବଲିଙ୍ଗ ଉପରେ କ୍ଷୀର ନିଉଡ଼ିଲେ
ଦେବୀମାନଙ୍କୁ ବୋଦା ଛାଗଳ ପୂଜାକଲେ ।
କ୍ଷୀର ଜାହ୍ନବୀକି ଯାଇଣ ଦର୍ଶନ କରି
ଗୋଧନ ମେଳରେ ମିଳିଲେ ଦଣ୍ଡଧାରୀ ।
ସେଦିନ ଗୋଗୋଷ୍ଠରେ ରହିଲେ ରାଜାଜାଣ
ଗୋରଜ ଏଣେ ଯେ ପଡ଼ିଲା ଦେହେ ପୁଣ ।
ସକଳ ପାପ ରାଜା ଦେହରୁ ତ୍ୟାଗ ହେଲା
ନିଜ ମନ୍ଦିରରେ ଯାଇଣ ମିଳିଲା ।
ସ୍ନାହାନ ଭୋଜନ କଲା ସନ୍ତୋଷରେ
ନାରଦ ଅଛନ୍ତି ନୃପତି ସଙ୍ଗରେ ।
ସପ୍ତରାଣୀ ତାର ଅଟନ୍ତି ଶୋଭାକାର
ବଡ଼ ପାଟରାଣୀ ହୀରାବତୀ ଯେ ତାହାର ।
ହୀରାବତୀ ନୀଳାବତୀ ଲାବଣ୍ୟବତୀ ଜାଣ
କୋମଳଣୀ ସୁଧାରାଣୀ ବରଣୀରାଣୀ ପୁଣ ।
ଏମନ୍ତେ ସପ୍ତରାଣୀ ଅଟନ୍ତି ସରୋଧାର
ହିଂସାରାଗ ନାହିଁ କାହାରି ଅଙ୍ଗର ।
ସେ ଦିନ ମାଘମାସ ବସନ୍ତ ପଞ୍ଚମୀ
ଆନନ୍ଦ ଉତ୍ସବ କଲେ ରାଜାଘରେ ପୁଣି ।
ନାରଦ ପଚାରିଲେ ରାଜାଙ୍କୁ ଯେ ପୁଣ
ଚଉରେ କେଉଁ ରାଣୀ ଗର୍ଭ ହେଲା ଜାଣ ।
ରାଜନ ବୋଇଲେ ଜ୍ୟେଷ୍ଠରାଣୀ ମୋର
ହୀରାବତୀ ବୋଲିଣ ନାମଟି ତାହାର ।
ନାରଦ ବୋଇଲେ ଆଜକୁ କେତେମାସ ହେଲା ।
ରାଜନ ବୋଇଲେ ପାଞ୍ଚ ମାସ ଯେ ପୂରିଲା ।
ନାରଦ ବୋଇଲେ ତୋତେ ଏବେ ଶୁଭ ହୋଇ
ଏହିକ୍ଷଣୀ ପୁତ୍ର ଗୋଟି ଜନମିବ ମହୀ ।
ରାଜନ ବୋଇଲେ ମାସ ହୋଇନାହିଁ ପୁଣ
ଅଧା ଗର୍ଭରେ ଜାତ ହେବ କି ନନ୍ଦନ ।
ଏମନ୍ତ ସମୟରେ ଦାସୀ ଆସି କହି
ବଡ଼ ପାଟରାଣୀ ଠାରୁ ପୁତ୍ର ଜନ୍ମହୋଇ ।
ଇନ୍ତୁଡ଼ି ଇଚ୍ଛାରିଣ ନାଭି ଛେଦନ କଲେ
ପାଞ୍ଚଦିନେ ପଞ୍ଚୁଆତି ବିଧି ଯେ ସାରିଲେ ।
ଉଠିଆରୀ ଷଠିଘର ବାରଯାତ୍ରା ସାରି
ଏକୋଇଶା ଦିନ ଯେ ହୋଇଲା ଆସିକରି ।

ଲକ୍ଷେ ଋଷି ଛନ୍ତି ଦୁଇଲକ୍ଷ ବିପ୍ରବର
ତିରିଶ ସହସ୍ର ରାଜା ଚତୁରଙ୍ଗ ବଳ ।
ପାତ୍ର, ମନ୍ତ୍ରୀ, ଅମନାତ୍ୟ ଅନେକବାଦ୍ୟକାର
ନଗ୍ରରେ ଉତ୍ସବ ଯେ ଆନନ୍ଦ ସବୁଙ୍କର ।
ଦାନ ଧ୍ୟାନ ପୁଣ୍ୟବନ୍ତ ଅନେକ ଧନ ଦେଲା
ହଟାରୀ ବଜାରୀ ଧୋବା ତୁଠ ଦୂରକଲା ।
ଦୁଃଖୀ ଦରିଦ୍ରଙ୍କୁ ଦେଲେ ଅନ୍ନବସ୍ତ୍ର
ମାଗନ୍ତା ଲୋକମାନେ ହୋଇଲେ ହରଷ ।
ହୋମ କରିଣ ରାଜା ପୁତ୍ରର ନାମଦେଲେ
ଶ୍ୱେତବୋଲି ନାରଦ ତୁଣ୍ଡରେ ଉଚ୍ଚାରିଲେ ।
ସପତ ରାଣୀ ନେଇ ଧଇଲେ କୁମର
ଆପଣା ସ୍ତନରୁ ଦେଉଛନ୍ତି କ୍ଷୀର ।
ପୁତ୍ରକୁ ନାମ ଦେଇଣ ନାରଦ ଚଳିଗଲେ
ଯଶୋବନ୍ତୀ ପୁରରେ ପ୍ରବେଶ ହୋଇଲେ ।
ପାର୍ବତୀ ବୋଇଲେ ଶୁଣ ମୋ ବଚନ
ନିମି ରାଜାଙ୍କର ହେଲେ ଦୁଇଟି ନନ୍ଦନ ।
ଗୋଟିଏ ନନ୍ଦନ ଫାଳରୁ ଉଛୁଟିଲା
ଗୋଟିଏ କୁମର ପାଞ୍ଚମାସେ ଜନ୍ମ ହେଲା ।
ଏ ଦୁଇ ନନ୍ଦନ ପୂର୍ବରେ କାହିଁଥିଲେ
ଜନ୍ମ ହୋଇଣ ଏଡ଼େ ବଳବନ୍ତ ହେଲେ ।
ସଦାଶିବ ବୋଇଲେ ଶୁଣ ଭଗବତୀ
ବସନ୍ତ କୁମର ଅଟେ ମାନଚକ୍ରବର୍ତ୍ତୀ ।
ଚାରିଲକ୍ଷେ ବର୍ଷ ଆୟୁଷ ଅଟଇ ତାହାର
ସବୁଦିନେ ଅଯୋନି ଜନମ ତାହାର ।
ନବ ସହସ୍ର ବର୍ଷ ଯାଗ ସେ କରିବ
ତ୍ରିଦଶ ଦେବତାଙ୍କୁ ସନ୍ତୋଶ କରାଇବ ।
ସକଳ ଜୀବଙ୍କୁ ପାଳିବ ପୁତ୍ରପରି
ସେହି ଶରୀର ଧରିଣ ଯିବ ସ୍ୱର୍ଗପୁରୀ ।
ବସନ୍ତ ତଳରେ ଯେ ଅଟଇ ନନ୍ଦନ
ଯୋନିଦ୍ୱାରେ ଜନ୍ମହେଲା ଶ୍ୱେତ ତୋର ନାମ ।
ବେଣୁ ରାଜା ନାମ ପୂର୍ବେ ଅଟେ ତାର
ଦାନରେ ମୋହିବ ସେ ସକଳ ସୁରନର ।
ଚାରିଲକ୍ଷ ପଞ୍ଚାଶ ସହସ୍ର ବରଷରେ
ସ୍ୱଦେହ ଘେନିଣ ସେ ଜୀବ ସ୍ୱର୍ଗପୁରେ ।
ଆଉ ଦଶ ସସ୍ର ବର୍ଷ ନିମି ଯେ ରହିବେ
ସ୍ୱଦେହ ଘେନିଣ ସେ ସ୍ୱର୍ଗରେ ରହିବେ ।

ଶୁଣିଣ ପାର୍ବତୀ ହୋଇଲେ ତୋଷମନ
ବଶିଷ୍ଠ ଋଷିଙ୍କ କଥା କହ ପଞ୍ଚାନନ ।
ନିମିରାଜା ଶାପ ବଶିଷ୍ଠଙ୍କୁ ଦେଲେ
ବିଧାତା ଆସିଣ ସେଠାରେ ମିଳିଲେ ।
ବଶିଷ୍ଠ କେଉଁରୂପେ ପାଇଲେ ଯେ ଶାନ୍ତି
ଅଗସ୍ତିଙ୍କ ଭାଇ ସେ ଯେ ମାରକଣ୍ଠ ନାତି ।
ଈଶ୍ୱର ବୋଇଲେ ଶୁଣ ଶାକମ୍ଭରୀ
ବଶିଷ୍ଠଙ୍କୁ ଚାହିଁଣ କହନ୍ତି କୁଶଧାରୀ ।
ବହନ ଯାଇ ତୁମ୍ଭେ ସାଗର ଝାସଦିଅ
ଏ ଶରୀର ଗୋଟିକ ଲୀନ କରିଦିଅ ।
ଜ୍ୟୋତିରୂପ ଧରିଣ ବହନ ଚଳିଯିବ
ବରୁଣ ରାଜା ଶରୀରେ ଯାଇଣ ପଶିବ ।
ବରୁଣ ରାଜାର ରାଣୀ ନାମ ନୀଳାବତୀ
ତାହାର ଗର୍ଭରେ ତୁମ୍ଭେ ହୋଇବ ଉତପତି ।
ତେବେ ଯେ ବସୁଧା ତୁମ୍ଭଙ୍କୁ ହେବ ପରାପତ
ଅନ୍ୟାୟ କଲ ତୁମ୍ଭେ ଆଗ ତପୋବନ୍ତ ।
କ୍ରୋଧ ହେବାର ଫଳ ତୁମ୍ଭଙ୍କୁ ମିଳିଲା
ବ୍ରହ୍ମଋଷି ହୋଇଣ ଅନୀତି କଲପରା ।
ବଚନ ସତ୍ୟ ତୁମ୍ଭର ନୋହିଲାକ ଯେଣୁ
ଏହି ଦଣ୍ଡ ପ୍ରାପତ ହୋଇଲା ଆସି ତେଣୁ ।
ବଶିଷ୍ଠ ବୋଇଲେ ମୋର ଦୋଷ କ୍ଷମାକର
ଏ ରୂପ ତେଜିବ ଚେତା ରହିବ ମୋହର ।
ଏହି ସ୍ୱରୂପ ମୁହିଁ ଯେ ହୋଇବି ଘଟଣ
ସମସ୍ତେ ଜାଣିବେ ଋଷି ନୋହିଲେକ ଜନ୍ମ ।
ଶୁଣିଣ ବେଦବର ବୋଇଲେ ଅସ୍ତୁ ହେଉ
ଏତେଭଣି କୁଶପାଣି ଅନ୍ତର ହେଲେ ତହୁଁ ।
ବେଦବର ଯିବାରୁ ବଶିଷ୍ଠ ଚଳିଗଲେ
ଲବଣ ସମୁଦ୍ର ପାଶେ ପ୍ରବେଶ ହୋଇଲେ ।
ଜଳର ଭିତରେ ସେ କରନ୍ତି ଗମନ
ରାଘବ ତାହାଙ୍କୁ ଗିଳିଲା ବହନ ।
ପିଣ୍ଡରୁ ପ୍ରାଣଗଲା ଜ୍ୟୋତି ରୂପେ ଚଳି
ବରୁଣ ଶରୀରରେ ପଶିଲାକି ଗଳି ।
ବରୁଣ ରାଜାର ରାଣୀ ଅଟେ ନୀଳାବତୀ
ଶୁଦ୍ଧ ସ୍ନାନ ସେଦିନ କରିଛି ଯୁବତୀ ।
ସ୍ୱାମୀର ପାଶେ ପ୍ରବେଶ ହେଲାକ ସେ ପୁଣ
ଦେଖିଣ ବରୁଣ ରାଜା ସନ୍ତୋଷ ହୋଇଣ ।
ମନର ସନ୍ତୋଷରେ ରତିଲୀଳା କଲା
ଜ୍ୟୋତି ବିର୍ଯ୍ୟ ଆସନ୍ତେ ଗର୍ଭରେ ସ୍ଥିତ ହେଲା ।
ଭଜିଲାକ ରତିରସ ମନରୁ ସେ ପୁଣ
ରଜନୀ ଶେଷ ହୁଅନ୍ତେ ଗଲା ବାଣୀ ଜାଣ ।
ଅନ୍ତଃପୁରେ ଯାଇ ମର୍ଦ୍ଦନ ମାଜଣା ହେଲା
ଷଡ଼ ରସରେ ଭୋଜନ ଦ୍ରବ୍ୟ ସେ ଭୁଞ୍ଜିଲା ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ପାଞ୍ଚମାସ ଗର୍ଭ ହୋଇଲାକ ସତୀ ।
ଅଷ୍ଟମାସ ଉଭାରୁ ଜଳଧି ରାଜନ
ଗର୍ଭଦାନ କଲେ ଡାକିଣ ଦେବଗଣ ।
ଦଶମାସ ସମ୍ପୂର୍ଣ୍ଣେ ପୁତ୍ର ଜାତ ହେଲା
ପୂର୍ବରୂପେ ବଶିଷ୍ଠ ସ୍ୱରୂପ ସେ ଦିଶିଲା ।
ପଞ୍ଚୁଆତି ଷଷ୍ଠୀଘର ଉଠିଆରୀ କଲେ
ଏକୋଇଶ ଦିନରେ ନାମ କରଣ କଲେ ।
ବେଦବର ସଦାଶିବ ସକଳ ଦେବ ଘେନି
ବରୁଣ ପୁତ୍ରଙ୍କୁ ନାମଦେଲେ ଜାଣି ।
ପୂର୍ବର କଥା ବିଚାରି ବରୁଣ ନାମ ଦେଲେ
ସକଳ ଦେବତା ସୁକଲ୍ୟାଣ କଲେ ।
ବେଦବର ବୋଇଲେ ତୋର ପୂର୍ବର ହେତୁ ହଉ
ବେଦ ବିଦ୍ୟାରେ ତୋତେ ଜିଣନ୍ତା କେହି ନୋହୁ ।
ତୋହର ପ୍ରସାଦେ ଏବେ ଆମ୍ଭେ ପାଉ ସୁଖ
ଏତେକ କହିଲେ ଯେ ଦେବ ଚତୁର୍ମୁଖ ।
ସକଳ ଦେବଋଷି ବ୍ରହ୍ମଋଷି ଥିଲେ
ବଶିଷ୍ଠଙ୍କୁ ଦେଖିଣ ପ୍ରସନ୍ନ ହୋଇଲେ ।
ସମସ୍ତ ଦେବ ଗଲେ ଯେ ଯାହାର ସ୍ଥାନ
ବୃହସ୍ପତିଙ୍କି ବୋଇଲେ ଚତୁର ବଦନ ।
ପୂର୍ବର ବଶିଷ୍ଠ ଯେ ଏହାଙ୍କ ବିଦ୍ୟା ଦିଅ
ଯେ ରୂପେ ବିଖ୍ୟାତ ହୁଏ ବରୁଣର ପୁଅ ।
ଶୁଣିଣ ବୃହସ୍ପତୀ ସେଠାରେ ରହିଲେ
ଚତୁର ବଦନ ଯଶୋବନ୍ତୀ ପୁରଗଲେ ।
ପୂର୍ବର ପ୍ରାୟେ ଶିକ୍ଷା ଦେଲେକ ବୃହସ୍ପତି
ସକଳ ଶିଖିଣ ପୁତ୍ର ହୋଇଲାକି ଯତି ।
ସନ୍ତୋଷେ ବୃହସ୍ପତି ସ୍ୱର୍ଗେ ଗଲେ ପୁଣ
ବଶିଷ୍ଠେ ତପକଲେ ସାହେର ତୀରେଣ ।
ସହସ୍ରେ ବରଷ ତପ ସେହୁ କଲେ
ବେଦବର ଆସିଣ ତାଙ୍କୁ ବର ଦେଲେ ।

ହୋଇଲୁ ବ୍ରହ୍ମପତି ଯା ଅଜମ୍ବୁ ଦ୍ୱୀପ
ତପନକୁଳକୁ ତୁ ଯେ ହୁଅ ପରାପତ ।
ଶୁଣିଣ ବଶିଷ୍ଠ ବେଗେ ଚଳିଗଲେ
କୃଷ୍ଣବେଣୀ ନଦୀତୀରେ ପ୍ରବେଶ ହୋଇଲେ ।
ଅଗସ୍ତିଙ୍କ ଛାମୁରେ ହୋଇଲେ ଉପଗତ
ନମସ୍କାର କଲେ ଅଗସ୍ତି ପାଦଗତ ।
ଅଗସ୍ତି ବୋଇଲେ ଅଯୋଧ୍ୟାପୁର ଯାଅ
ଅନନ୍ତ ବାସୁଦେବ ହେବେ ଦଶରଥଙ୍କ ପୁଅ ।
ନାରାୟଣଙ୍କୁ ସାକ୍ଷାତେ ଦେଖିବୁ ତୁ ପୁଣ
ନାରାୟଣଙ୍କୁ ଦେଖି ହୋଇବୁ କାରଣ ।
ଶୁଣିଣ ବଶିଷ୍ଠ ବେଗେ ଚଳିଗଲେ
ଦଶରଥଙ୍କ ପାଶେ ପ୍ରବେଶ ହୋଇଲେ ।
ଅଯୋଧ୍ୟା ନୃପତି ଉଠିଣ ମାନ୍ୟ କଲେ ।
ନମସ୍କାର କରିଣ ବଚନ କହିଲେ ।
କେଣେ ଗଲା ଋଷି ହେ ଏତେକାଳ ପୁଣ
ତୁମ୍ଭଙ୍କୁ ନ ଦେଖି ମୋର ବ୍ୟାକୁଳିତ ମନ ।
ଋଷି ବୋଇଲେ ଆମ୍ଭେ ସ୍ୱର୍ଗରୁ ଅଇଲୁଁ
ତପ କରିବା ନିମନ୍ତେ ସାହେର କୁଳେଗଲୁଁ ।
ତପସିଦ୍ଧ ହୋଇଲା ଅଇଲୁ ତୋରପୁର
ଶୁଣିଣ ଦଶରଥ ହରଷ ମନର ।
ଯାନପରେ ନେଇଣ ଋଷିଙ୍କି ବସାଇଲେ
ନଗ୍ର ବୁଲାଇ ନିଜ ଆଶ୍ରମେ ଛାଡ଼ିଦେଲେ ।
ଅନେକ ଧନ ରତ୍ନ ଦେଲେ ନୃପବର
ଆନନ୍ଦରେ ଋଷି ରହିଲେ ନିଜପୁର ।
ବଶିଷ୍ଠ ଋଷିଙ୍କ ଜନ୍ମ ଶୁଣିଲୁ ପ୍ରିୟସହୀ
ଆଉ କେଉଁକଥା କହରେ ସୁମୁହିଁ ।
ପାର୍ବତୀ ବୋଇଲେ ଦେବ କଥାଏ ପଚାରଇ
ସକଳ କଥା ଯେ ପୂର୍ବରେ କିସ ପୁଣ
ତାଙ୍କ ଦୁହିତା କମଳା କିମ୍ପାହେବେ ଜାଣ ।
ସେହି କଥା ମୋତେ ଏବେ ଫେଡ଼ିକରି କହ
ସନ୍ଦେହ ଦୂର କର ଆହେ ପ୍ରାଣପ୍ରିୟ ।
ଈଶ୍ୱର ବୋଇଲେ ଶୁଣ ଗୋ ଶଉରୀ
ମିଥିଳା ନବର ଯେ ସବୁଦିନେ ମୋରି ।
ଯେଉଁଦିନେ ଶତମୁଖା ବେଦବର ଥିଲେ ।
ସେହିଦିନେ ଗୋଲକ ମର୍ତ୍ତ୍ୟପୁରେ ଆସିଥିଲେ ।

ସେହିଦିନ ମିଥିଳାରେ ଥିଲି ଯେ ମୁହିଁ ରହି
ସେକଥା ପାଶୋରିଲା କି ଶରତଚନ୍ଦ୍ର ମୁହିଁ ।
ଅଜନାମେ ମୁନି ଚନ୍ଦ୍ରର କୁମର
ତପକଲା ଯାଇ ସେ ଗୋମତୀ ନଦୀତୀର ।
ତିନିଯୁଗ ପର୍ଯ୍ୟନ୍ତେ ବସିଣ ତପ କଲା
ଶିବ ପଞ୍ଚାକ୍ଷର ମନ୍ତ୍ରେ ମୋତେ ସେ ଜପିଲା ।
ପ୍ରସନ୍ନ ହୋଇଣ ମିଳିଲି ତାର ପାଶ
ଦେଖିଲି ତାର ଦେହେ ନାହିଁ ରକ୍ତ ମାଂସ ।
ଅସ୍ଥି ଭିତରେ ତାର ପ୍ରାଣ ଅଛି ଜାଣ
ମୃତ୍ତିକା ଗିରିଗୋଟି ତାପରେ ଘେରିଣ ।
ସେଥି ଭିତରେ ମୁନି ବସିଛି ଲୁଚିକରି
କେବଳ ନେତ୍ର ତାର ଦୁଇଗୋଟି ଫେରି ।
ପ୍ରସନ୍ନରେ ଜାଣିଣ ହୋଇଲି ଆଗେ ଉଭା
ନେତ୍ରରେ ନମସ୍କାର କଲେ ମୁନିରାଜା ।
ନିଉନ ଦେଖି ତାର ପ୍ରସନ୍ନ ହୋଇଲି
କାହ୍ନୁ କନ୍ଦର୍ପ ହୁଅ ବୋଲିଣ ବୋଇଲି ।
ତକ୍ଷଣେ ଶରୀରରେ ରକ୍ତ ମାଂସ ହେଲା
ମୃତ୍ତିକା ଗିରି ଭିତରୁ ବାହାରିଲେ ତ୍ୱରା ।
ବାମଦେବକୁ ଜିଣି ଦିଶିଲା ରୂପ ତାର
କଳା ମେଘରେ ଯେହ୍ନେ ଉଦୟେ ନିଶାକର
କରଯୋଡ଼ିଣ ମୋତେ କଲା ନମସ୍କାର
ଦେଖିଣ ସୁଦୟା ହୋଇଲା ମୋହର ।
ବୋଇଲି ବର ମାଗ ଚନ୍ଦ୍ରର କୁମର
ମନଇଚ୍ଛା ବର ଦେବି ଯେ ନିକର ।
ସେ ବୋଇଲେ ବରଯେବେ ଦେବ ତ୍ରିଲୋଚନ
ତୋହର ବିଶ୍ରାମ ସ୍ଥାନ ମିଥିଳା ଭୁବନ ।
ଚଉରାଶି ଯୁଣ ଅଟଇ ଦୀର୍ଘପ୍ରତି
ସେ ସ୍ଥାନ ଖଣ୍ଡି ମୋତେ ଦିଅ ପଶୁପତି ।
ମୁଁ ବୋଇଲି ତୋତେ ଦେଲି ଏହିସ୍ଥାନ
ଆଉ କିଛି ମାଗୁଅଛୁ କହ ବେଗେ ପୁଣ ।
ସେ ବୋଇଲା ଯେବେ ମୁହିଁ ଦାନ ବିପ୍ରହେବି
ସବୁବିପ୍ରଙ୍କ ଉପରେ ଶ୍ରେଷ୍ଠ ବୋଲାଇବି ।
ମୁଁ ବୋଇଲି ବିପ୍ର ମାଗ ଅନ୍ୟ ବର
ସେ ବୋଇଲା ଦେବମୋତେ ବେଦମନ୍ତ୍ରସାର ।
ଋଷି ବ୍ରାହ୍ମଣ ଦେବତା ନପାରିବେ ଜିଣି
ଅଜୀବମାନଙ୍କୁ ମୁଁ ଜୀବ ଦେବି ପୁଣି ।

ମୁଁ ବୋଇଲି ଆଭଇଚ୍ଛା ଥିଲେ ମାଗବର
ବୋଇଲା ମନେକଲେ ତପସିଦ୍ଧ ମୋ ବଂଶର ।
ଧନରତ୍ନହେବ ବ୍ରହ୍ମାବିଷ୍ଣୁ ହେବେମୋର ବନ୍ଧୁ
ତୁ ମୋହର ଅଂଶହେଲୁ ମାୟା ନକର ଇନ୍ଦୁ ।
ଶୁଣିଣ ମୋର ମନ ସନ୍ତୋଷ ହୋଇଲା
ହେଉ ସର୍ବକଥା ତୋର ନିଶ୍ଚିନ୍ତହୁଅବଳା ।
ପାଶୁପତ୍ର ପିନାକୀ ଅକ୍ଷୟ ତ୍ରୋଣ ଦେଲି
ଅନେକଶର ଦେଇ ସେ ରାଜ୍ୟେ ରାଜାକଲି ।
ଶଙ୍ଖେ ପାଣିଦେଇ ମୁହିଁ ଦାନ ଦେଲି ତାକୁ
ସେହିଦିନୁ ତେଜ୍ୟାକଲି ମିଥିଲା ପୁରକୁ ।
ସୈନ୍ୟବଳ ଧନ ରତ୍ନ ସବୁଛାଡ଼ି ଦେଲି
ସକଳପଦାର୍ଥ ଚନ୍ଦ୍ରରାଜାକୁ ସମର୍ପିଲି ।
ବୋଇଲି ଋଷି କ୍ଷତ୍ରୀୟ ଏମାନେ ବନ୍ଧୁ ତୋର
ସତାଇଶ ପୁରୁଷେ ବାଦ ବହେ ଚକ୍ରଧର ।
ଅସୁର ମାରିବାକୁ ଜନ୍ମ ହେବେ ହରି
ତୁମ୍ଭର ବଂଶେ ଜାତ ହେବେ ମନୋହରି ।
ତାହାର ନାମ ଯେ ସୀତାୟା ହୋଇବ ଯେ ପୁଣ
ଏକମୂର୍ତ୍ତି ହୋଇବ ଚତୁର୍ଦ୍ଧା ରୂପରେ ଜାଣ ।
ବାସୁଦେବ ଚତୁର୍ଦ୍ଧାରୂପରେ ଜାତ ହେବେ
ସେ ଚାରି ଭାଇ ଚାରି ଭଉଣୀକି ବିଭାହେବେ
ବାସୁଦେବଙ୍କ ପିତା ହେବେ ଦଶରଥ
ଅଯୋଧ୍ୟାର ଭୂପତି ତପନ କୁଳେ ଜାତ ।
ବେଦଙ୍କର ଋଷି ଯେ କଶ୍ୟପ ଋଷି ଜାଣ
ସେହି ଦଶରଥ ରୂପରେ ହେବେ ଜନ୍ମ ।
ତୋହର ବଂଶରେ ମିଥିଲା ଋଷି ପୁଣ
ରାଜାହୋଇ ପ୍ରଜା ପାଳିବେ ସୁପ୍ଲେଣ ।
ପୁତ୍ର ଦେଇ ମୋର ଧନୁ ଦେଲି ତାକୁ ଯାଚି
ତାହାର କୁମର ନାମ ବଇଧୃତି ଋଷି
ଚାଳିଶି ସହସ୍ର ବର୍ଷ ତପେ ମୋତେ ତୋଷି ।
ତାହାର ଘରଣୀ ଯେ ହେମଲତା ଜାଣ
ତାରଗର୍ଭୁ ଜାତ ହେବେ ତିନି ଯେ ନନ୍ଦନ ।
ପ୍ରଥମରେ ଜନକ ଦ୍ୱିତୀୟେ ବାଲ୍ମିକ
ତୃତୀୟେ କୁଶଧ୍ୱଜ ଅଟଇ ସାନପୁତ୍ର ।
ବଇଧୃତି ଋଷି ଯେ ଅଟଇ ଚକ୍ରବର୍ତ୍ତୀ
ଅମରାବତୀ ରାଜ୍ୟରେ ଶୁଦ୍ରେକନାମେ ଭୂପତି ।

ସେ ରାଜା ବଇଧୃତି ସଙ୍ଗେ ବାଦକରି
ଶତେ ବରଷ ପର୍ଯ୍ୟନ୍ତ ସଂଗ୍ରାମ ସେ କରି ।
କାଳେ ସେ ରାଜବଂଶ ହେଲେ ନିଶାଧନ
ସେପୁରେ ରାଜା କଲେ କୁଶଧ୍ୱଜକୁ ପଣ ।
ମିଥିଳା ନବରେ ରାଜା ଜନକ ଋଷି ହେଲା
ଜନକଙ୍କୁ କୁଶଧ୍ୱଜ ଡାକିଣ କହିଲା ।
ବୋଇଲେ ଶିବଧନୁ ଅଛି ଆମ୍ଭପୁର
ପ୍ରସନ୍ନରେ ଦେଇଛନ୍ତି ପଞ୍ଚମୁଖ ହର ।
ସେ ଧନୁ ସକାଶେ ତୁମ୍ଭେ ଦେଖିବ ନାରାୟଣ
ଚତୁର୍ଦ୍ଧା ମୁରତି ରୂପେ ବାସୁଦେବ ଜନ୍ମ ।
ଦୁଇ ଭାଇଙ୍କର ଚାରି ଦୁହିତା ଜନ୍ମ ହେବେ
ଚାରିଭାଇଙ୍କି ବିଭା କରିବ ତୁମ୍ଭେ ଶୁଭେ ।
ଏତେବୋଲି ବୈଧୃତି ବାଲ୍ମିକଙ୍କୁ ଘେନି
ବନସ୍ତେ ବସିଣ ରାଜା ତପ କଲେ ପୁଣି ।
କାଳେଣ ସ୍ୱର୍ଗକୁ ଗଲେ ବିପ୍ରବର
ବାଲ୍ମିକ ତପକଲେ ରହିଣ ବନର ।
କାଳେଣ ତପ ସିଦ୍ଧ ହେଲା ସେ ଋଷିର
ସୁରଭି ଗୋଟିଏ ତାଙ୍କୁ ଦେଲେ ବେଦବର ।
ଅଗମ୍ୟ ବନରେ ସେ ମଢ଼ିଆ କରି ରହି
ଅଷ୍ଟବକ୍ର ଋଷି ଏକଦିନେ ବୁଲିଯାଇ ।
ସେ ଋଷିଙ୍କି ଦେଖିଣ ସନ୍ତୋଷ ମନହେଲେ
ଆପଣାଦୁହିତା ଶୋଭାକୁ ନେଇଣ ବିଭାକଲେ ।
ସେ କନ୍ୟା ସଙ୍ଗରେ ଋଷି କଲେ ରତିଲୀଳା
ଦଶଗୋଟି ସେ କନ୍ୟାର ଅଟନ୍ତି ଦାସୀତ୍ୱରା ।
ପାର୍ବତୀ ବୋଇଲେ ତୁମ୍ଭେ ମିଥିଳାଦେଶଗଲ
କେଉଁ ପୁଣ୍ୟବଳରେ ଏମନ୍ତ ପୁଣକଲ ।
ଈଶ୍ୱର ବୋଇଲେ ଶୁଣ ପ୍ରାଣ ସହି ।
ଶୋଣିତ ବନସ୍ତରେ ରହିଲୁଁ ଆମ୍ଭେ ଯାଇଁ ।
କେତେ ଦିନ ଉତ୍ତାରୁ କଲା ସେ ମୋତେ ଦାନ
ପିତା ମାତା ଯିବାରୁ ବଳିର ପୁତ୍ର ଜାଣ ।
ସେପୁର ଗୋଟି ବାଣାସୁରକୁ ମୁଁ ଦେଲି
ଭକତି ହେବାରୁ ପ୍ରସନ୍ନ ତାକୁ ହେଲି ।
ପାର୍ବତୀବୋଇଲେ ବାଣାସୁରର କେହୁ ପିତା
ସେ କିମ୍ପା ପାତାଳ ଗଲା କହୁ ସେହୁକଥା ।
ଈଶ୍ୱର ବୋଇଲେ ସେ କଶ୍ୟପର ଅଂଶ
ଉପଦ୍ରବ କରିବାରୁ ଶ୍ରୀହରି କଲେ ନାଶ ।

ତାହାର କୁମର ଯେ ପ୍ରହଲାଦ ବୀର
ନାରାୟଣଙ୍କଠାରେ ଭକ୍ତି ଭାବ ତାର ।
ତାହାକୁ ଦୟା କଲେ ଅନନ୍ତ ନାରାୟଣ
ସ୍ୱର୍ଗରେ ଇନ୍ଦ୍ର କରି ସଞ୍ଚିଲେ ନେଇ ପୁଣ
ପ୍ରହଲାଦ କୁମର ବୈରୋଚନ ବୀର
ପିତାଙ୍କୁ ନମାନି ସେ କଲା ଅବେଭାର ।
ସ୍ୱର୍ଗରେ ଜିଣିଣ ସୁରଙ୍କୁ ଧରି ନେଲା
ସହସ୍ରେ ବରଷ ନେଇଣ ଛିଡ଼ା କଲା ।
ଦେବତାଏ ଚିନ୍ତା କଲେ ଅନନ୍ତ ମାଧବଙ୍କୁ
ସ୍ତିରୀରୂପ ଧରି ହରି ମୋହିଲେ ଅସୁରଙ୍କୁ ।
ଅସୁରଙ୍କୁ ମାରିଣ ବୈକୁଣ୍ଠପୁର ଗଲେ
ପାର୍ବତୀ ବୋଇଲେ କଥା ରହିଲା ଏଠାରେ ।
ବାସୁଦେବ ଘରଣୀ ତାହାର ହୋଇଲେ
ଆପଣାର ସ୍ୱାମୀକି କିପରି ନାଶ କଲେ ।
ତାକୁ ମାରିବାକୁ ନାରାୟଣ ବିଚାରିଲେ
ଈଶ୍ୱର ପାର୍ବତୀ ଆଗେ ଏ କଥା କହିଲେ ।
ପାର୍ବତୀ ବୋଇଲେ କହହେ ଫେଡ଼ିକରି
ଗୁପତ କରିଛ କିମ୍ପା କଥାକୁ ନ ବିଚାରି ।
ଈଶ୍ୱର ବୋଇଲେ ତାକୁ ମାରିବାର ପାଇଁ
ସ୍ତିରୀରୂପ ଧଇଲେ ଗୁପତେ ଭାବଗ୍ରାହୀ ।
ଏକଦିନେ ଅସୁର ଘରଣୀ ପାଶେ ବସି
ବୋଇଲେ ମୋ ମୁଣ୍ଡେ ଗଭା ବାନ୍ଧ ସଖୀ
ଶୁଣିକରି ଅନ୍ନପୂର୍ଣ୍ଣା କେଶ ସାଞ୍ଚେଇଲା
କେଶର ଭିତରେ ଏକ ନୟନ ଦେଖିଲା ।
ନୟନ ବୁଜି ଦେବୀ ମନରେ ବିଚାରି
ଠଣାଗୋଟି ନେଇକରି ମାଇଲେ ସୁନ୍ଦରୀ ।
ପ୍ରାଣଛାଡ଼ି ଦଇତ ସଞ୍ଜିବନୀ ଗଲା
ଅସୁରକୁ ମାରି ବାସୁଦେବ ହେଲେ ତ୍ୱରା ।
ମାୟାସ୍ତିରୀ ଗର୍ଭରୁ ପୁତ୍ରେକ ଜନ୍ମିଥିଲା
କାଳେ ତାରନାମ ବଳୀ ନୃପତି ହୋଇଲା
ସେ କୁମର ତପରେ ଜିଣିଲା ତିନିପୁର
ପ୍ରହଲାଦକୁ ସ୍ୱର୍ଗରୁ ତଡ଼ିଦେଲା ବୀର ।
ବାଚସ୍ପତି ଭୁବନରେ ରାଜା ସେହୁ ହେଲା
ଯୁଗେ ପରିଯନ୍ତେ ସ୍ୱର୍ଗପୁରେ ସେ ରହିଲା ।
ଯେତେକ ସ୍ୱର୍ଗରେ ଭଣ୍ଡାର ଦ୍ରବ୍ୟ ଥିଲା
ଦାନୀ ହୋଇ ସକଳ ଭଣ୍ଡାର ଦାନ ଦେଲା ।
ଦେବତାଙ୍କର ବଳ ନୋହିଲା ତାରଠାରେ
ଏଣୁ ସେ ବିଷ୍ଣୁ ଅଂଶରେ ଜନ୍ମ ପୂର୍ବରେ ।
ସକଳ ଦେବେ ମିଳି ବାସୁଦେବଙ୍କୁ କହି
ସ୍ୱର୍ଗର ସମ୍ପଦ ସରିଲା ଭାବଗ୍ରାହୀ ।
ତୋହର ଅଂଶରୁ କୁମର ଜାତ ହେଲା
ଦେବଙ୍କୁ ପାଦତଳେ ତାର ଖଟାଇଲା ।
ଏବେ ଭଣ୍ଡାର ସବୁ ଦେଇଛି ଦଉକରି
ସମ୍ଭାଳ ସ୍ୱର୍ଗପୁର ଆହେ କୁଶଧାରୀ ।
ଶୁଣିକରି ବାସୁଦେବ ବେଗେ ଚଳିଗଲେ
ମାୟାରେ ବ୍ରାହ୍ମଣ ବାମନରୂପ ହେଲେ ।
ଦାନରେ ହରିଲେ ତାର ସର୍ବ ଶିରୀ
ପୂର୍ବର ଇନ୍ଦ୍ରକୁ ଡକାଇ ରାଜା କରି ।
ତାହାକୁ ତିନିପୁର ତଳରେ ରଖିଲେ
ସେହିଠାରେ ଦୀନବନ୍ଧୁ ଦ୍ୱାରପାଳ ହେଲେ ।
ତାହାର କୁମର ବାଣାସୁର ପୁଣ ମୋତେ
ତପକରି ତୋଷିଲା ସେ ପୁଣ ଯୁକତେ ।
ଦୟାକରି ତାକୁ ଯେ ଶୋଣିତ ନଗ୍ର ଦେଲି
ଚିତ୍ର ଉତ୍ପଳା ନଦୀ ତୀରନେ ବାସଦେଲ ।
ଏକାଦଶ ରୂପ ଯେ ସେଠାରେ ମୁଁ ହେଲି
ସେଠାରୁ ଯାଗବିଧି ଆରମ୍ଭ କରିଲି ।
ଯାଗ ସମ୍ପୂର୍ଣ୍ଣେ ଦୁର୍ଗା ଯାଚିଲେ ମୋତେ ପୁଣ
ବୋଇଲେ ଏରୂପ ମୁଁ ଯେ ଲଭିବି ତ୍ରିଲୋଚନ ।
ସେ ରୂପ ଗୋଟି ତାକୁ ଦେଇଣ ଅଇଲି
ଏକାମର ବନରେ ଆସିଣ ବାସ କଲି ।
ଭୁବନେଶ୍ୱର ଲିଙ୍ଗ ସେଠାରେ ବୋଲାଇଲି
ଧବଳ ରୂପଗୋଟି ସେଠାରେ ବିକାଶିଲି ।
ଅନନ୍ତ ବାସୁଦେବ ମୋ ସଙ୍ଗେ ଲୀଳା କଲା
ତୋତେ ସେବାକରି ମୋ ସଙ୍ଗେ ଲୀଳା କଲା ।
ଦେଖିଣ ଅବିଗୁଣ ପାଇଲୁ ସୁନ୍ଦରୀ
ବୋଇଲୁ ଏ ସ୍ଥାନ ଯେ ଯିବା ତେଜ୍ୟାକରି
ବିଶ୍ୱନାଥ ସ୍ୱରୂପ ସେଠାରେ ମୁହିଁ ଘେନି
ସପତଣୀ ସେ ତୋହର ଲଭିଲା ମୋତେପୁଣି ।
ତାଙ୍କ ସଙ୍ଗେ ଲୀଳାମୋର ହେବାରୁ ପ୍ରତିଦିନ
ମନରେ ମାନକରି ରହିଲୁ ତୁ ଶୁଣ ।
ତୋହର ମାନଜାଣି ମାନତେଜ୍ୟା କଲି
ନବକୋଟି ମାୟାରୂପ ତାଙ୍କୁ ଦେଇଣ ଆସିଲି ।

କପିଳାସ କନ୍ଦରରେ ସବୁଦିନେ ମୋର
ତୋତେ ଘେନି ଲୀଳା ମୁଁ କରଇ ନିରନ୍ତର ।
ଶୁଣିଣ ପାର୍ବତୀ ବୋଇଲେ ପ୍ରିୟବାଣୀ
ମୋହଠାରେ ଦୟା ସକଳ ଗୁଣେ ପୁଣି ।
ମିଥିଳା ନଗ୍ରେ ଯେଉଁ ବିପ୍ରଙ୍କୁ ରଖାଇଲି
ତାହାର ଉପର ବଂଶ ଚରିତ୍ର କହିଲି ।
ଜନକ ଋଷି ଝିଅଙ୍କୁ ନାରାୟଣ ହେବେ ବିଭା
ପୂର୍ବେ କେଉଁ ସୁକୃତ କଲା ସେ ଦେବରାଜା ।
ତ୍ରିଜଟା କୁଳରେ ହୋଇଲା ସେ ଜାତ
ସେ କଥା ମୋ ଆଗରେ କହ ହେ ନିୟତ ।
ଈଶ୍ୱର ବୋଇଲେ ସେ କଥା ଦେବା କହି
ପୂର୍ବରେ ଜନକ ଋଷି ଯେମନ୍ତେ ଥିଲା ରହି ।
ଅରୁଣ, ବରୁଣ, ତରଙ୍ଗ ବେନି ଭାଇ
ସେ ତିନିଜଣ ପୂର୍ବେ ବ୍ରାହ୍ମଣ ରୂପ ହୋଇ ।
ସହସ୍ରେ ବର୍ଷ ପର୍ଯ୍ୟନ୍ତେ ତପସ୍ୟା ସେ କଲେ
ନାରାୟଣ ସନ୍ତୋଷ ତାଙ୍କଠାରେ ହେଲେ ।
ତାହାଙ୍କୁ ବର ଦେଲେ ଗୋଲକ କୃଷ୍ଣପୁର
ଜଳରାଜା ହୋଇ ହୁଅ ଦିଗପାଳ ଜାଣ ।
ସପତ ସାଗରେ ହୋଇବ ଅଧିପତି
ଲୀଳାବତୀର ତୁମ୍ଭେ ହୋଇବ ଯେ ପତି ।
ବିଷ୍ଣୁଙ୍କର ଶ୍ୱଶୁର ହେବ ତୁମ୍ଭେ ପୁଣ
କମଳା ତୁମ୍ଭ କୁଳେ ହେବେ ଉତପନ୍ନ ।
ସେ ଦୁହିତା ତୁମ୍ଭର ତ୍ରୈଲୋକ୍ୟ ଠାକୁରାଣୀ
ବାସୁଦେବଙ୍କ ମନ ମୋହିବ ସେ ପୁଣି ।
ସେ ବାସୁଦେବ ତୁମ୍ଭର ହୋଇବେ ଜ୍ୱାଇଁ ପୁଣ
ସବୁଦିନେ ତୁମ୍ଭର ବାନ୍ଧବ ସେ ଜାଣ ।
ଚଉଦ ବ୍ରହ୍ମାଣ୍ଡ ନବଖଣ୍ଡ ଯେ ମେଦିନୀ
ସେଠାରେ କର୍ତ୍ତା ନାରାୟଣ ଅନ୍ତର୍ଯ୍ୟାମୀ ।
ସପତ ଦ୍ୱୀପ ବାସୁଦେବ ଯେ କରିବ
ଦ୍ୱୀପମାନଙ୍କୁ ଜଳଧି ବାଡ଼ି ଦେବ ।
ଭିନ୍ନ ଭିନ୍ନ କରିଣ ରଖିବ ପୁରମାନ
ଜୀବ ଗୋଟିକେ ସ୍ୱଭାବ ଦେବ ଭିନ୍ନ ଭିନ୍ନ ।
ପଚିଶ ପ୍ରକୃତି ପାଞ୍ଚ ମନ କରି
ସଂସାର ଭିଆଇବେ ଜଗତ ନରହରି ।
ଦେବ ଅସୁର ନରବାନର ନାନାଜାତି
ଉଡ଼ନ୍ତି ବୁଡ଼ନ୍ତି ଚଳନ୍ତି ଅଚଳନ୍ତି ।
ସ୍ଥାବର ଜଙ୍ଗମ ପାଷାଣ ମୃତ୍ତିକା
ଏମାନ ସବୁ ରଚିଲା ଜଗତ କରତା ।
ଦଶଦିଗପାଳ ଅଷ୍ଟବସୁ ମୂଳେ
ତେତିଶ କୋଟି ଦେବଙ୍କୁ ରଖିଲା ସ୍ୱର୍ଗପୁରେ ।
ମଞ୍ଚରେ ସୁରନର ଛପନକୋଟି ରଖି
ପାତାଳେ ନାଗବଳ ଅଠରକୋଟି ବ୍ୟାପୀ ।
ଏମନ୍ତେ ତିନିପୁର ରଚିଲେ ନାରାୟଣ
ତୁମ୍ଭେ ଏବେ ମର୍ତ୍ତ୍ୟପୁରକୁ ଚଳ ପୁଣ ।
ତେବେ ଦିଗପାଳ କରିବେ ବାସୁଦେବ
ଶୁଣିଣ ତିନିଜଣ ଅଇଲେ ତହୁଁ ବେଗ ।
ନାରାୟଣ ଆଗରେ ଆସିଣ ଭେଟ ହେଲେ ।
ସପତ ସାଗରରେ ତାହାଙ୍କୁ ରାଜାକଲେ
ସମସ୍ତ ଜଳଜୀବ ତାହାଙ୍କୁ ଖଟିଲେ ।
କାଳେ ଦୁହିତା ତାଙ୍କର କମଳା ଜାତହେଲା
ତାହାଙ୍କୁ ନାରାୟଣ ନେଇଣ ପତ୍ନୀ କଲା ।
କାଳେ ସେ କମଳା ଯେ ଲଭିଲେ ନାରାୟଣ
ଅବତାର ମାନଙ୍କର ଜଳଧି ରାଜା ଜାଣ ।
ଏବେ ଅରୁଣ ବରୁଣ ତିନି ଭାଇ ଆସି
ଜନକ ବାଲ୍ମିକ କୁଶଧ୍ୱଜ ସେଠି ।
ତାଙ୍କର କୋଳରେ କମଳା ଜାତ ହେବେ
ଏକରୂପ ଗୋଟି ଚାରି ପ୍ରକାର ହୋଇବେ ।
ବାସୁଦେବ ଏକରୂପ ଚତୁର୍ଦ୍ଧା ମୂର୍ତ୍ତି ହେବେ
ଚାରି ଭାଇଙ୍କି ଚାରି ଭଗ୍ନିକି ବିଭା ଦେବେ ।
ଅସୁର ସାରିଣ ପୃଥିବୀ କରିବେ ସ୍ଥିର
ଆଠପୁତ୍ର ଚାରି ଦୁହିତା ଜନମ ଚାରିଙ୍କର ।
ଅଂଶରଖି ବାସୁଦେବ ନିଜ ସ୍ଥାନେ ଯିବେ
ଦୁଷ୍ଟଜନ ନାଶକଲେ ଧରଣୀ ସ୍ଥିର ହେବେ ।
ଏରୂପେ ବରୁଣ କଶ୍ୟପ ଋଷି ଜନ୍ମ
ସତୀବ୍ରତ ପାଳିବେ ଚାରି ଦୁହିତା ପୁଣ ।
ପତ୍ନି ବ୍ରତରେ ଚାରି ଭାଇ ଦିନ ନେବେ
ଆଉ ସ୍ତିରୀମାନଙ୍କୁ ମନ ନକରିବେ ।
ଶୁଣିକରି ପାର୍ବତୀ ମନରେ ତୋଷ ହେଲେ
କଥାଏ ପଚାରିବି ରହିଲା ବୋଇଲେ ।
ନିମି ରାଜା ବଶିଷ୍ଠ ଋଷିଙ୍କି ଶାପ ଦେଲା
ଚଣ୍ଡାଳ ଘରେ ତୁ ବିଭା ହୁଅ ସେ ବୋଇଲା ।

ସେ କଥା ବଶିଷ୍ଠଙ୍କୁ ଫଳିଲାକି ଫଳ
ଚଣ୍ଡାଳ ଝିଅକୁ ବିଭା ହେଲେ କି ତପଶୀଳ ।
ସେ କଥା ମୋର ଆଗେ କହ ତ୍ରିଲୋଚନ
ଶୁଣିକରି ସନ୍ତୋଷ ହୋଇବ ମୋର ମନ ।
ଈଶ୍ୱର ବୋଇଲେ କଥା ଏବେ ଶୁଣ
ବଶିଷ୍ଠ ଋଷି ଯେ ଶାପକୁ ମେଣ୍ଟିଣ ।
ଅଯୋଧ୍ୟା ନଗ୍ରରେ ହୋଇଲେ ପ୍ରବେଶ
ଏମନ୍ତେ ହୋଇଗଲା କେତେକାଳ ଶେଷ ।
ଏକଦିନେ ଘରଣୀ ତାଙ୍କର ଆଗେ କହି
ମୋତେ ଏବେ ଗର୍ଭଦାନ ଦିଅ ପ୍ରାଣସାଇଁ ।
ବଶିଷ୍ଠ ବୋଇଲେ ତୋ କର୍ମେ ନାହିଁ ପୁଣ
ଅପୁଂସକ ଲକ୍ଷଣେ ଜନମ ତୋର ଜାଣ ।
ତୋର ଗର୍ଭରେ ଫଳ ନୋହିବ ଗୋ ନାରୀ
ଶୁଣିଣ ମନରେ ରୋଷ କଲା ସୁକୁମାରୀ ।
ନିର୍ଲ୍ଲଜ ବିଧାତା ମୋତେ କିମ୍ପା ଏ ରୂପ ଦେଲା
ସ୍ତିରୀ ଜନମ କରିଣ ଫଳ ନ ଲେଖିଲା ।
ଏମନ୍ତ ବିଚାର ନାରୀ ମନରେ ଚିନ୍ତାକରୁ
ବୋଇଲା ଏ ଶରୀର ହୋଇଲା ମୋତେ ଗରୁ ।
ଏମନ୍ତ ବିଚାରି ଅଗ୍ନିରେ ଝାସଦେଲା
ଦେଖିଣ ବଶିଷ୍ଠ ମନରେ ଚିନ୍ତା କଲା ।
ଏ ବୋଇଲେ ଏକଥା ହୋଇଲା ପ୍ରମାଦ
ଚାଣ୍ଡାଳୁଣୀ ନାରୀ ପାଇବ କେଉଁ ପଦ ।
ପୁତ୍ର ନଥିବା ନାରୀ ଅନେକ ଛନ୍ତିରହି
ଏ ବୁଦ୍ଧି କିମ୍ପାଇଁ କଲ ପ୍ରାଣସହୀ ।
ଏମନ୍ତ ବିଚାରି ବଶିଷ୍ଠ ଶବ ଦାହ କଲେ
କ୍ରିୟା କର୍ମ ସାରିଣ ପବିତ୍ର ଅଙ୍ଗ ହେଲେ ।
ଏମନ୍ତେ କେତେକାଳ ତାହିଁ ବହିଗଲା
ଦଶରଥଙ୍କୁ ନବ ସହସ୍ର ବରଷ ହେଲା ।
ବତିଶି ବରଷ ଗଲା ଏଥିରେ ଯେ ପୁଣ
ବାସୁଦେବ ଜାତହେବେ ତା କୋଳରେ ଜାଣ
ଦେବତାଏ ବିଚାର କରନ୍ତି ସ୍ୱର୍ଗେ ଥାଇ
ଚମ୍ପାବତୀ ରାଜ୍ୟ ଏବେ ଅପାଳକ ହୋଇ ।
ତେବେସିନା ଋଷ୍ୟଶୃଙ୍ଗ ଅଯୋଧ୍ୟା ଆସିବେ
ଋଷିଶୃଙ୍ଗ ଅଇଲେ ବାସୁଦେବ ଜନ୍ମ ହେବେ ।
ଏମନ୍ତ ବିଚାର ଯେ ଦେବତାଏ କହି
ଶୁଣିଣ ବେଦବର ବିଚାର କଲେ ତହିଁ ।

ହୋମ ଅପସରି କି ଡକାଇଲେ ପାଶ
ବୋଇଲେ ମର୍ତ୍ତ୍ୟପୁରକୁ ଯାଅ ତୁ ହରଷ ।
କୌଶିକ ନଦୀତୀରେ ପଲାଶ ବନ ପୁଣ
ରୋମାଞ୍ଚ ଋଷି ତହିଁ କରଇ ତପ ପୁଣ ।
ସେ ତପ ସ୍ଥାନେ ଯାଇ ହେବୁ ପରବେଶ
ତାଙ୍କର ମନ ହରିଲେ ତପ ହେବ ନାଶ ।
ଶୁଣିଣ ହେମଲତା ହରଷେ ଚଳିଗଲା
କୌଶିକ ନଦୀତୀରେ ପ୍ରବେଶ ହୋଇଲା ।
ରୋମାଞ୍ଚ ଋଷି ମଠ ଦେଖିଲା ସେଠାରେ
କୌଶିକ ନଦୀ ନିର୍ମଳ ଜଳ ଯେ କୂଳରେ ।
ଚନ୍ଦନ କର୍ପୂର ହରିଦ୍ରା ବୋଳି ହୋଇ
ଏକେତ ବାରଙ୍ଗନା ଯୁବା ଯେ ଅଟଇ ।
ସର୍ବାଙ୍ଗ ସୁନ୍ଦର ଯେ ମୋହଇ ତିନିପୁର
ଦେବତାମାନେ ତାକୁ ଦେଖିଲେ ଅସ୍ଥିର ।
ଗନ୍ଧଲଗାଇ ସେ ନଦୀର ଜଳରେ ସ୍ନାନ କରି
ଏମନ୍ତ ସମୟରେ ରୋମାଞ୍ଚ ଋଷି ମିଳି ।
ଅପସରୀକି ଦେଖି ମନରେ ଋଷି ଭାଳି
ଅପୂର୍ବ ସୁନ୍ଦରୀ ଏ କାହୁଁ ଏଥି ମିଳି ।
ବିଚାରିଲେ ଏ ନାରୀ ଆଶା କରିବ ରତିରସ
ଅବଶ୍ୟ ତପ ମୋର କରିବ ଏହୁ ନାଶ ।
ଏମନ୍ତ ବିଚାରି ମୁନି ନାରୀ ପାଶେ ଗଲେ
କେଉଁଠାରୁ ଅଇଲୁ ବୋଲିଣ ପଚାରିଲେ ।
ସେ ବୋଇଲା ମୋର ଘର ଅମର ସ୍ୱର୍ଗପୁରେ
ଏବନକୁ ବୁଲି ମୁଁ ଆସିଲି ଆନନ୍ଦରେ ।
ମୋହର ଜନନୀ ଗନ୍ଧକା ଅପସରୀ
ତାର କୋଳେ ଜାତ ଆମ୍ଭେ ଦୁଇଟି କୁମାରୀ ।
ହେମଲତା କୁନ୍ଦଲତା ଦୁହିଁଙ୍କୁ ଜାତକଲା
ଜ୍ୟେଷ୍ଠ ଭଗ୍ନି କୁନ୍ଦଲତାସୁର ରାଜାପୁତ୍ରକୁ ଭଜିଲା ।
ମୋର ସଙ୍ଗେ କେହି ବିଭା ନୋହିବାରୁ ପୁଣ
ମାତା ମୋତେ ପଠାଇଲେ ମର୍ତ୍ତ୍ୟପୁର ଜାଣ ।
ସେ ସକାଶୁଁ ଆସି ମୁଁ ଯେ ନଦୀରେ କରେ ସ୍ନାନ
ଶୁଣିଣ ରୋମାଞ୍ଚ ଋଷି ହୋଇଲେ ମଉନ ।
ଘଡ଼ିକ ଉତ୍ତାରେ ଋଷି ଚେତାପାଇ ଉଠି
ବୋଇଲେ ଏ ନାରୀ ଆସି ପକାଏ ମୋତେ ଧ୍ୱଂସି ।
ଅଧମ ନାରୀ ଏ ଯେ ଏଠାରେ ମିଳିଲା
ମୋର ତପ ଭାଙ୍ଗିବା ନିମନ୍ତେ ଅଇଲା ।

ଏମନ୍ତ ବିଚାରି ମୁନି କହିଲେ ତାଙ୍କୁ ବାଣୀ
ମୋ ଆଶ୍ରମେ ପଶିଲୁ ପାପିଷ୍ଠା ଦୋଚାରୁଣୀ ।
ମୋହର ଶାପ ଏବେ ଅଙ୍ଗରେ ତୋରବହ
ମୃଗୁଣୀ ହୋଇଣ ତୁ ଏ ବନରେ ରହ ।
ବତିଷ ବର୍ଷରେ ପୁତ୍ରେକ ଜାତ କର
ପୁତ୍ର ଜାତ କରି ନିଜରୂପେ ସ୍ୱର୍ଗେ ଚଳ ।
ଶୁଣିଣ ହେମଲତା ମୃଗୁଣୀ ରୂପ ହେଲା
କଙ୍କାଶିଳ ମନରେ ସେ କଷ୍ଟରେ ରହିଲା ।
ପାର୍ବତୀ ବୋଇଲେ କହ ଦିଗମ୍ବର
ବଶିଷ୍ଠ ଘରଣୀ ତେଜ୍ୟାକରିଲେ ଶରୀର ।
ସେ ଋଷିଆଣୀ ପୁଣି କେଉଁ ଜନ୍ମ ହେଲା
ସେ କଥା ଶୁଣିଲେ ଚିତ୍ତବୋଧ ହେବ ପରା ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ସେ ସତୀ ଶରୀର ଅଗ୍ନିରେ ଧ୍ୱଂସିଲାଟି ।
ଆତ୍ମ ଘାତକ ଦୋଷ ତାଠାରେ ପ୍ରକାଶ
କାଳବିକାଳ ନେଲେ ଯମରାଜା ପାଶ ।
ଜନ୍ମୁପତି ଦେଖିଣ ଅନେକ ଗାଳିଦେଲା
ଆତ୍ମା ଘାତିନୀ ମୁଖ ଚାହିଁବା ନୋହିଲା ।
ଚମ୍ପାବତୀ ପୁରେ ଅଛି ଅଦିତି ଚଣ୍ଡାଳ
ତାର ପତ୍ନୀ ଉଦରେ ଏହାକୁ ଜାତକର ।
ଶୁଣିଣ ଚିତ୍ରଗୁପ୍ତ ବେଗେ ଘେନିଗଲେ
ଚମ୍ପାବତୀ ନଗ୍ରରେ ପ୍ରବେଶ ହୋଇଲେ ।
ଅଦିତିଚଣ୍ଡାଳ ଗୃହରେ ନେଇ ଛାଡ଼ି
ଜ୍ୟୋତି ରୂପ ଧରିଲା ବଶିଷ୍ଠର ନାରୀ ।
ଅଦିତି ଚଣ୍ଡାଳର ହୃଦରେ ସମ୍ଭାଇଲା
ସେଦିନ ଚଣ୍ଡାଳ ଘରଣୀ ରଜସ୍ୱଳା ହେଲା ।
ଚାରିଦିନେ ଶୁଦ୍ଧସ୍ନାନ ହୋଇଲା ତାହାର
ପାଞ୍ଚଦିନେ ସ୍ୱାମୀ ପାଶେ ମିଳିଲା ନାରୀବର ।
ସ୍ୱାମୀର ସଙ୍ଗରେ ରତିଲୀଳା କଲା
ଯୋନିରେ ବୀର୍ଯ୍ୟ ଖସନ୍ତେ ନାରୀ ଗର୍ଭହେଲା ।
ଦଶ ମାସରେ ଦୁହିତା ଜନ୍ମ ହେଲା ତାର
ପଦ୍ମିନୀ ଅଂଶରେ ଜାତ ଚଣ୍ଡାଳର ଘର ।
ଆପଣାର ନାମ ଯେ ଚଣ୍ଡାଳି ବୋଲି ଦେଲା
ଅଦିତିକୁମାରୀ ସେଠାରେ ରହିଲା ।
କର୍ମରେ ବିହି ତାର ଲେଖିଦେଲା ତହିଁ
ବଶିଷ୍ଠ ଋଷିଙ୍କି ବିଭା ହୋଇବୁ ଯେ ତୁହି ।

ଷୋଳ ବରଷରେ ନବଯୁବା ହେବୁ
କୋଡ଼ିଏ ବର୍ଷରେ ବଶିଷ୍ଠଙ୍କୁ ବିଭା ହେବୁ ।
ବିଧାତା ଲେଖିବା କଥା କେ କରିବ ଆନ
ଏମନ୍ତେ ପାଞ୍ଚବରଷ ବହିଗଲା ଦିନ ।
ସୁରଙ୍ଗ ଅଧର ତାର ଦିଶେ ଶୋଭାବନ
ମୁଖ ଗୋଟି ବିଳାସଇ ପୂର୍ଣ୍ଣିମାର ଜହ୍ନ ।
ଚାଲିଲେ ଅବେଣ୍ଡ ଫୁଲ ଫୁଟଇ ପାଦରେ
କୋମଳ ଭାଷା କହଇ ସୁରଙ୍ଗ ଅଧରେ ।
ନଗ୍ରଲୋକେ ଦେଖିଣ ପ୍ରଶଂସା ତାକୁ କରି
ଚଣ୍ଡାଳୁଣୀ ଗର୍ଭରେ ମାଣିକ୍ୟ ଜାତ କରି ।
ବନପାଦ ରାଜାର ନନ୍ଦନ ଲୋମପାଦ
ତାର ଆଗେ ପାତ୍ର ମନ୍ତ୍ରୀ କହିଲେ ସମ୍ବାଦ ।
ଆମ୍ଭର ଶ୍ୱେତଖାନା ଖଟିବା ମାହାର
ତାର ଘରେ ଦୁହିତା ଜନ୍ମ ଅଟେ ସାର ।
ଶୋଭାପଣରେ ମୋହିପାରେ ତିନିପୁର
ଚନ୍ଦ୍ରଚକୋର ମୁଖଗୋଟି ଯେ ତାହାର ।
ଚାଲିଲେ ଅବେଣ୍ଡା ଫୁଲ ଫୁଟେ
ହସିଲେ ମୁକୁତା ଝଡ଼େ ତାର ଓଷ୍ଠେ ।
ଶୁଣିକରି ରାଜନ ତାହାକୁ ଡକାଇଲେ
ସେ କନ୍ୟାଗୋଟିକି ରାଜନ ଦେଖିଲେ ।
ସକଳ ଲକ୍ଷଣ ଅଛଇ ତାଠାରେ
କେବଳ ଜନ୍ମ ତାର ଚଣ୍ଡାଳୀ ଯୋନିରେ ।
ରାଜନ ବୋଇଲେ ଏ ବଡ଼ କୁଳରେ ଥିଲା
କେଉଁ ଦୋଷରେ ଚଂଣ୍ଡାଳ ଘରେ ଜନ୍ମହେଲା ।
ଚଣ୍ଡାଳକୁ ବୋଇଲେ ଶୁଣ ଆମ୍ଭ ବାଣୀ
ଏ ଦୁହିତା ଗୋଟିକୁ ଅଭକ୍ଷ ନଦେବୁ ଜାଣି
ଦେବନାରୀ ଏହି ତୋର ଘରେ ହେଲା ଜାତ
ଆମିଷ ପଦାର୍ଥ ନ ଦେବୁ କଦାଚିତ ।
ରାଜା କହିବାରୁ ଚଣ୍ଡାଳ ସନମତ କଲା
ପ୍ରତିଦିନ ନୂତନ ହାଣ୍ଡିରେ ଅନ୍ନ ଦେଲା ।
ଘୃତ ସର ଲବଣୀ ମିଷ୍ଟ ଅନ୍ନ ଦେଇ
ଏମନ୍ତେ ସେ ଦୁହିତା ଚଣ୍ଡାଳ ଘରେ ରହି ।
ସପତ ବର୍ଷ ଅଦିତି ନଗ୍ର ବୁଲିଯାଇ
ଧାନଗଛ ଗୋଟିଏ ପଥରେ ଦେଖେ ସେହି ।
ସେ ଧାନ ବୃକ୍ଷକୁ ଧରିଣ ହରଷରେ
ପ୍ରବେଶ ହେଲା ଯାଇ ଆପଣା ମନ୍ଦିରେ ।

ଗୋମୟ ମଳଦେଇ ବୃକ୍ଷ ଲଗାଇଲେ
ମଉହୋଇ ସେ ଗଛରେ ଫଳ ଯେ ଫଳିଲେ ।
ଅଡ଼ା ଏକଧାନ ଅମଳ ହେଲା ପୁଣ
ସେ ଧାନ ଅନ୍ୟ ସ୍ଥାନେ କଲା ଯେ ରୋପଣ ।
ବେଦବର ସେ ଲକ୍ଷେ ଭରଣ ଧାନ ହେଲା
ଜାଣିଣ ନାରଦ ମୁନି ସେଠାରେ ମିଳିଲା ।
ଅଦିତି ଚଣ୍ଡାଳଙ୍କୁ ଡକାଇ ମହାମୁନି
ବୋଇଲେ ତୋଘରେ ଜାତ ପଦ୍ମିନୀ ନାରୀ ପୁଣି ।
ସେ ଦୁହିତା ବଡ଼କୁଳେ ହୋଇବ ବିଭାଘର
ଲକ୍ଷେ ଭରଣ ଧାନ ଅର୍ଜିଛି ନାରୀବର ।
ତାର ଧାନ କାହାକୁ ନଦେବୁ ତୁହି ପୁଣ
ମେଣ୍ଟିଲେ ଆରଜନ୍ମେ ଶୂକର ହେବୁ ଜାଣ ।
ଶୁଣିକରି ଅଦିତି ଚଣ୍ଡାଳ ସତ୍ୟକଲା
ଯେ କନ୍ୟାକୁ ବିଭାହେବ ଦେବଇଁ ବୋଇଲା ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ସତ୍ୟ କରାଇ ନାରଦ ଚଳିଲେ କ୍ଷୀପ୍ରଗତି ।
ସ୍ୱର୍ଗପୁରେ ପ୍ରବେଶ ହୋଇଲେ ଯାଇକରି
ଏଣେ ଯେ ଚମ୍ପାବତୀ ନବର ଦଣ୍ଡଧାରୀ ।
ସେ ରାଜାର ଶତେରାଣୀ ଅଟଇ ଯୁକତେ
କାହାରି କୋଳରେ ସନ୍ତତୀ ନୋହିଲା ପରାପତେ ।
ଏକଦିନେ ରାଜା ପାରିଧିକି ବିଜେ କଲା ।
ଚତୁରଙ୍ଗ ବଳ ଘେନି ବନସ୍ତକୁ ଗଲା ।
ମୃଗୟା ବିନୋଦରେ ବୁଲଇ ବନଲତା
ଏଥୁ ଅନନ୍ତରେ ଶୁଣ ଦିବ୍ୟ କଥା ।
ଅଯୋଧ୍ୟା ରାଜନ ଦଶରଥ ପୁଣ
ସେହି ସେଦିନ ମୃଗୟାକୁ କରଇ ଗମନ ।
ଚତୁରଙ୍ଗ ବଳ ତାର ସଙ୍ଗରେ ଘେନିପୁଣ
ସେ ବନରେ ପ୍ରବେଶ ହେଲାକ ରାଜନ ।
ଦୁଇ ରାଜାଙ୍କର ଭେଟ ପଡ଼ିଲା ବନରେ
ଗୁଳୁଚି ଲତା ତଳେ ବସିଲେ ଦୁଇବୀରେ ।
ଲୋମପାଦ ପଚାରିଲେ ଦଶରଥଙ୍କୁ ପୁଣ
କେଉଁ ନଗ୍ରେ ଅଟେ ତୁମ୍ଭର ପ୍ରଭୁ ପଣ ।
ପ୍ରଜାଏ କୁଶଳ କି ରାଜ୍ୟ ପରିମଳ
ଧନ ରତ୍ନ ଭଣ୍ଡାର ଅଛି କି କୁଶଳ ।
ସାତଶ ପଞ୍ଚାଶ ରାଣୀ ଖଟନ୍ତି ପୟର
କେବଳ ଗୋଟିଏ କଥା ଊଣା ଅଟେ ମୋର ।
ପୁତ୍ର ପୌତ୍ରୀ ମୋହର କିଛି ନାହିଁ ପୁଣ
ସେ କଥାରେ ଅଭାବ ଅଟଇ ମୋର ଜାଣ ।

ନବ ସହସ୍ର ବରଷ ହେଲା ମୋତେ ଆସି
ପୁତ୍ର ମୁଖ ନ ଚାହିଁଲି ପୂର୍ବରୁ ମୁଁ ଦୋଷୀ ।
ଆଣ୍ଠୁକୁଡ଼ା ଦୋଷରେ ଦିନ ଗଲା ମୋର
ଦଇବ ଦେଲା କିଛି କହିବି କା ଆଗର ।
ଶୁଣିଣ ଲୋମପାଦ ବୋଲନ୍ତି ବଚନ
ମୁହିଁତ ବଡ଼ ଦୁଃଖି ଶୁଣ ହେ ରାଜନ ।
ଶତେକ ରାଣୀ ମୋର ଅଟନ୍ତି ଚାରୁହଂସି
କାହାରି କୋଳରେ ପୁତ୍ର ଦୁହିତା ନାହିଁଟି ।
ଧନ ରତ୍ନ ଦ୍ରବ୍ୟ ଅନେକ ଅଛି ମୋର
ଆଣ୍ଠୁକୁଡ଼ା ଦୋଷରେ ବିଅର୍ଥ ଏ ଶରୀର ।
ପ୍ରଭାତ କାଳରେ ଲୋକ ନ ଚାହାନ୍ତି ମୋର ମୁଖ
ଅନୁକ୍ଷଣେ ଚିନ୍ତା ଯେ ଅନ୍ତର୍ଗତେ ଦୁଃଖ ।
ସାତ ସହସ୍ର ବର୍ଷ ହେଲା ମୋତେ ପୁଣ
ନ ଚାହିଁଲି ପୁତ୍ର ମୁଖ ଦୁଃଖର କାରଣ ।
ଦଶରଥ ବୋଇଲେ ଶୁଣ ହେ ନୃପବର
ଭଲ ଯୋଗେ ଭେଟ ପଡ଼ିଲେ ଅରଣ୍ୟର ।
ମୋର ଘର ଅଯୋଧ୍ୟା ତୁମ୍ଭର ଚମ୍ପାବତୀ
ତୁମ୍ଭର ନାହିଁ ପୁତ୍ର ମୋର ନୋହିଲା ସନ୍ତତି ।
ଲୋମପାଦ ବୋଇଲେ ଶୁଣ ହେ ମହୀଧର
ତୁମ୍ଭର ମୋହର ମଇତ୍ର ହୋଇବା ଏଠାର ।
ଏତେ ବୋଲି ଦୁଇଜଣ ମଇତ୍ର ହୋଇଲେ
ନିର୍ମଳ ହୃଦୟରେ ଧର୍ମକୁ ସାକ୍ଷୀ କଲେ ।
ସନମାନେ ଦୁଇଜଣ ହେଲେ ତହିଁ ମେଳ
ସେଠାରୁ ମୃଗୟା ବେଣ୍ଟ ଦୁଇ ରାଜନର ।
ପାରିଧି ସାରି ଯେ ଯାହାପୁରେ ଚଳିଗଲେ
ନିଜ ମନ୍ଦିରରେ ଯାଇ ପ୍ରବେଶ ହୋଇଲେ ।
ମୃଗ ସୟମ୍ବର ହରିଣ ବାହୁଟିଆ
ଯୁଆଦ ଖୁରାଣ୍ଟ ଯେ କର୍ପୂର ବରେହା ।
ଗଣ୍ଡା, ଗୟଳ, ଗୁରାଣ୍ଡି, ଝିଙ୍କ, ଶଶ, ଜାଣ
ଏମନ୍ତେ ଅନେକ ଜୀବ ବନରୁ ମାରିପୁଣ ।
ବୋଝ ଭାର କରିଣ ନିଅନ୍ତି ରାଜ୍ୟେବହି
ଆନନ୍ଦରେ ଚତୁରଙ୍ଗ ବଳ ଚଳିଯାଇ ।
ନିଜ ନବରେ ଯହିଁ ହେଲେ ପରବେଶ
ପାରିଧି କଲା ଜୀବଙ୍କୁ ବାଣ୍ଟିଲେ ହରଷ ।
ଏଥିରେ ପନ୍ଦରଦିନ ଏମନ୍ତ ବହିଗଲା
ଲୋମପାଦ ରାଜା ଚତୁରାଗହିଁ ସାଧିଲା ।

ନାନାବର୍ଣ୍ଣେ ଉପହାରମାନ ସେ ଭିଆଣ
ଅଷ୍ଟରତ୍ନ ଅଳଙ୍କାର ସଙ୍ଗରେ ନେଲେ ପୁଣ ।
ଚମ୍ପାବତୀ ନଗ୍ରକୁ ଅଯୋଧ୍ୟା ଶତେଯୁଣ
ବାହାର ହୋଇଲେ ରାଜା ଅନେକ ସମ୍ଭର୍ବେଣ ।
ବାଦ୍ୟରେ ନିଶାଣରେ କମ୍ପଇ ଧରଣୀ
ଦଶଦିନେ ଅଯୋଧ୍ୟା ନଗ୍ରରେ ମିଳେ ପୁଣି ।
ଦଶରଥ ନୃପତି ଆଗରେ ଚାର କହି
ଚମ୍ପାବତୀ ଦେଶ ରାଜା ପାଛୋଟି ଆସଇ ।
ଶୁଣିଣ ଦଶରଥ ବେଗେ ସଜ ହେଲେ
ଚତୁରଙ୍ଗବଳ ସାଜିଣ ଠୁଳ କଲେ ।
ପାତ୍ର ପନ୍ତ୍ରୀ ଅମାତ୍ୟ ସାମନ୍ତମାନେ ଘେନି
ରଥି ସେନାପତି ସେ ଅଶ୍ୱନାଗ ପୁଣି ।
ସକଳ ସୈନ୍ୟ ଘେନି ରଥରେ ବସିଣ
ଗଙ୍ଗାକୂଳେ ଲୋମପାଦ ରାଜାଙ୍କୁ ଭେଟିଣ ।
ଦେଖିଣ ଲୋମପାଦ ରଥରୁ ଓହ୍ଲାଇଲେ
ଦଶରଥ ରାଜାଙ୍କୁ ନମସ୍କାର କଲେ ।
ଦଶରଥ ମାନ୍ୟକଲେ ଲୋମପାଦଙ୍କୁ ପୁଣ
ହରଷ ହୋଇ ଚଳିଲେ ଅଯୋଧ୍ୟା ଭୁବନ
ଅଯୋଧ୍ୟା ନଗ୍ରରେ ଯାଇ ହେଲେ ପରବେଶ
ଦେଖିଣ ସକଳ ଲୋକ ହୋଇଲେ ହରଷ ।
ନିଜ ନଗ୍ରେ ଦୁହେଁ ଯାଇ ପ୍ରବେଶ ହୋଇଲେ
ଉପହାର ଦ୍ରବ୍ୟମାନ ପାତ୍ରମନ୍ତ୍ରୀ ନେଲେ ।
ଅଳଙ୍କାର ରତ୍ନମାଳା ରାଜାନଘେନିଗଲେ
ଅନ୍ତଃପୁରେ ରାଣୀଗଣ ବାଣ୍ଟିଣ ଯେ ନେଲେ ।
କୌଶଲ୍ୟା, କୈକୟୀ, ସୁମିତ୍ରା କହେ ପୁଣ
ଏ ସର୍ବ କେ ଦେଲା କହ ହେ ପ୍ରାଣଧନ ।
ଦଶରଥ ବୋଇଲେ ମଇତ୍ର ଲୋମପାଦ
ଶଙ୍ଖୋଳିବା ନିମନ୍ତେ ଆଣିଛନ୍ତି ଏହି ଦ୍ରବ୍ୟ ।
କୈକୟୀ ବୋଇଲେ କେଉଁଠାରେ ଦେଖା ଦେଲ
ଦଶରଥ ବୋଇଲେ ପାରିଧି ଦିନ ମୋର ।
ବନସ୍ତରେ ଭେଟ ହୋଇଲେ ମହୀପାଳ
ଦୁଃଖ ସୁଖ ଶଙ୍ଖୋଳା ପଡ଼ିଲା ଦୁହିଁଙ୍କର ।
ଆମ୍ଭର ନାହିଁ ସନ୍ତାନ ତାଙ୍କର ନାହିଁ ସନ୍ତାନ
ଏଣୁକରି ମଇତ୍ର ହୋଇଲୁଁ ବେନିଜନ ।
ତାଙ୍କର ଶତେରାଣୀ ମୋର ସାତଶ ପଞ୍ଚାଶ
ତାଙ୍କ ରାଜ୍ୟ ଚମ୍ପାବତୀ ମୁଁ ଅଯୋଧ୍ୟା ନରେଶ ।
ସକଳ ରାଣୀହଂସ ମୋର ଦାସୀ ସେହି
ବସ୍ତ୍ର ଅଳଙ୍କାର ଆଣି ଅଛି ଲିହି ।

କୌଶଲ୍ୟା କହିଲେ ତାର ପ୍ରୀତିସୁଖପୁଣ
ଶଙ୍ଖୋଳି ଅଇଲେ ସେ ଯେ ଆମ୍ଭର ପୁରେଣ ।
ସୁମିତ୍ରା ବୋଇଲେ ଆମ୍ଭର ଅଟେ ସୁଖ
ପରମ ବନ୍ଧୁ ହୋଇଲେ ଚମ୍ପାବତୀ ଈଶ ।
ମାନ ସାନନ୍ଦେ ଦ୍ରବ୍ୟ କର ଗୋ ଗ୍ରହଣ
ନୀଳାବତୀ ବୋଇଲେ ଅଛି ଯେ କାରଣ ।
କଳାବତୀ ବୋଇଲେ ହୋଇବ ଉପକାର
ଭଲ ଯୋଗେ ମଇତ୍ର ହୋଇଲେ ପ୍ରାଣେଶ୍ୱର ।
ଶୁଣିଣ ଦଶରଥ ବେଗେ ଚଳିଗଲେ
ଲୋମପାଦ ରାଜାଙ୍କୁ ଗଉରବ କଲେ ।
ପାଞ୍ଚଦିନ ରହି ଲୋମପାଦ ରାଜ୍ୟ ଦେଖି
ପ୍ରଶଂସା କରିଲେ ରାଜ୍ୟ ଧନ୍ୟପୁର ଗୋଟି ।
ଦେବାଳୟ ପୁର ପ୍ରାୟ ଏ ରାଜ୍ୟ ମୋତେ ଲାଗି
ବିଷ୍ଣୁ ଦେବତା ପ୍ରସନ୍ନ ରାଜ୍ୟ ସଉଭାଗୀ ।
ଦାଣ୍ଡ ନିର୍ମଳ ଯେ ପ୍ରଜାଏ ବଡ଼ ସୁଖୀ
ସୁବର୍ଣ୍ଣର ଚିରାଳ ଉଡେ ପନ୍ତି ପନ୍ତି ।
ସବୁଙ୍କର ଦ୍ୱାରେ ମଙ୍ଗଳ ଉତ୍ସବ ।
ନଟକାରୀଏ ନୃତ୍ୟ କରନ୍ତି ସଦ୍‌ଭାବ ।
କନ୍ଦି ବିକନ୍ଦି ଏଥିରେ କଳଣା ନ ଯାଇ
ମନରେ ବିଚାର କରନ୍ତି ନରସାଇଁ ।
ଲୋକ ବର୍ଗ ଡ଼କାଇ ନିର୍ମଳ ରାଜ୍ୟକଲା
ଭଙ୍ଗା ତୁଟାଯାକ ବିଶ୍ୱକର୍ମା ସଜାଡ଼ିଲା ।
ଚିରାଳ କଳସ ସେ ବସାଇ ବିନ୍ଧାଣୀ
ସୁବର୍ଣ୍ଣର ଚଉରା ରଚିଲା ତହିଁ ପୁଣି ।
କନ୍ଦି ବିକନ୍ଦି ଯେ ସବୁରି ଦ୍ୱାରେ ଜାଣ
ମଙ୍ଗଳ ଉତ୍ସବ କଲାକ ରାଜନ ।
ଚିତ୍ରପଟ୍ଟ ପିତୁଳାମାନ ଯେ ଲେଖାଇଲା
ସ୍ଥାନେ ସ୍ଥାନେ ଛାମୁଣ୍ଡିଆ ଚାନ୍ଦୁଆ ଟଣାଇଲା ।
ନଗ୍ରର ଚାରିପାଶେ ଚତୁରଙ୍ଗ ବଳ ।
ଜାଣିଣ ଚରଚି ଦେଲେ ସବୁଠାର ।
ଏଥୁ ଅନନ୍ତରେ ପକ୍ଷେକ ବହିଗଲା
ଦଶରଥ ରାଜା ସୈନ୍ୟ ସଜକଲା ।
ଚତୁରଙ୍ଗ ବଳମାନ ସଙ୍ଗରେ ଘେନି ପୁଣ
ଚମ୍ପାବତୀ ରାଜ୍ୟକୁ କଲେକ ଗମନ ।
ରତ୍ନ ଅଳଙ୍କାରମାନ ସମ୍ଭର୍ବରେ ନେଲେ
ଉତ୍ସବ ଆନନ୍ଦରେ ରାଜନ ଚଳିଲେ ।

ସାମନ୍ତ ପାତ୍ର ମନ୍ତ୍ରୀ ଅମାନତ୍ୟ ବଳ
ବଶିଷ୍ଠ ବାମଦେବ ଅଛନ୍ତି ସଙ୍ଗତର ।
ହସ୍ତୀ ଅଶ୍ୱରଥି ଯେ ସେନାପତି ବଳ
ପ୍ରବେଶ ହୋଇଲେ ଯାଇ ଚମ୍ପାବତୀ ପୁର ।
ଦଶଦିନରେ ଶତେଯୁଣ ଚଳିଗଲେ
କଟକର ଚାର ଯେ ରାଜାରେ କହିଲେ ।
ତୋ ରାଜ୍ୟକୁ ଅଯୋଧ୍ୟା ନୃପତି ଆସେ ଜାଣ
ଶୁଣିଣ ଲୋମପାଦ କଲେକ ଗମନ ।
ବାଟରେ ଭେଟହେଲେ ଅଯୋଧ୍ୟା ନରେନ୍ଦ୍ର
ମାନ୍ୟ ଧର୍ମ କଲେ ରାଜା ଲୋମପାଦ ।
ଅଯୋଧ୍ୟା ରାଜନ ମାନ୍ୟ ଧର୍ମ କଲେ
ମେଳହୋଇ ସେଠାରୁ ନିଜ ପୁରେ ଗଲେ ।
ରାଜ୍ୟର ନରନାରୀ ଦେଖିଲେ ଦଶରଥ
ଦୁଇଗୋଟି ଚରଣ ଅଷ୍ଟଗୋଟି ହସ୍ତ ।
ନିଜ ନବରେ ରାଜା ପ୍ରବେଶ ହୋଇଲେ ।
ଆୟେଦାୟେ ଅଳଙ୍କାର ଲୋମପାଦ ନେଲେ
ଅନ୍ତଃପୁର ରାଣୀହଂସ ପୁରରେ ମିଳିଲେ ।
ଦେଖିଣ ଶତେରାଣୀ ଓଳଗି ମେଲାଇଲେ
ରତ୍ନ ଅଳଙ୍କାର ରାଜା ସବୁଙ୍କୁ ବାଣ୍ଟି ଦେଲେ
କଳାବତୀ ନୀଳାବତୀ ବେନି ପାଟରାଣୀ
ପଚାରିଲେ ଏ ରତ୍ନକୁ ଆଣିଲ କାହୁଁ ପୁଣି ।
ଲୋମପାଦ ରାଜା କହେ ମଇତ୍ର ଦଶରଥ
ଅଯୋଧ୍ୟା ନଗ୍ରର ଅଟନ୍ତି ନରନାଥ ।
ଶଙ୍ଖୋଳି ଆସିଛନ୍ତି ଆୟେଦାୟେ ଘେନି
ଶୁଣିଣ ରାଣୀମାନେ ସନ୍ତୋଷ ହେଲେ ପୁଣି ।
ଶରଧାରେ ରତ୍ନ ଆଭରଣ ମଣ୍ଡି ହେଲେ
ନୂତନ ବେଶହେଲା ପ୍ରାୟେକ ଦିଶିଲେ ।
ନାରୀଙ୍କ ପାଶୁ ଅନ୍ତର ହେଲେ ଦଣ୍ଡଧାରୀ
ଦଶରଥଙ୍କ ପାଶେ ମିଳିଲେ ଯାଇକରି ।
ଲୋମପାଦଙ୍କ ରାଜ୍ୟ ବୁଲିଣ ଦେଖିଲେ
ମେଲାଣି ହୋଇଣ ଦଶରଥ ବାହୁଡ଼ିଲେ ।
ଅଯୋଧ୍ୟା ନଗ୍ରରେ ଯାଇ ହୋଇଲେ ପ୍ରବେଶ
ଦେଖିଣ ନରନାରୀ ହୋଇଲେ ସନ୍ତୋଷ ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ଚମ୍ପାବତୀ ରାଜା ଯେ ଘେନିଣ ପାତ୍ର ମନ୍ତ୍ରୀ ।
ଚତୁରଙ୍ଗ ବଳ ଘେନି ପାରିଧିକି ଗଲା
କଣ୍ଟୁକ ବନେ ଯାଇ ପ୍ରବେଶ ହୋଇଲା ।
ଧର ଧର ମାର ଶବଦ କଲା ଟାଣ
ଗର୍ଭିଣୀ ମୃଗୁଣୀ ଜିଆଦ କସ୍ତୁରୀ ଜୀବ ପୁଣ ।
କେହୁ ଦଶମାସ ପେଟ କେହୁ ନବମାସ
ଅଳସରେ ଜୀବମାନେ ଗଲେ ଦୂରଦେଶ ।
ଶବଦ ଶୁଣିଣ ସର୍ବେ କାତର ମନହେଲେ
ଏ ଦଣ୍ଡରୁ ଧର୍ମଦେବ ରଖବୋଲିଣ ସୁମରିଲେ ।
ଅତି ଆରତରେ ଇଁକାର କଲେ ଯହୁଁ
ଶୂନ୍ୟରେ ବିଚାର ଯେ କଲେ ପ୍ରଭୁ ତହୁଁ ।
ଚାରିମେଘକୁ ସୁମରଣା କଲେ ରବି ପୁଣ ।
ମିଳିଲେ ଚାରିମେଘ ଆସିଣ ତତ୍‌କ୍ଷଣ ।
ବୋଇଲେ କି କାର୍ଯ୍ୟରେ ସୁମରଣା କଲ
ବିରଞ୍ଚି ବୋଇଲେ ଧରତିରେ ବୃଷ୍ଟି କର ।
ଚମ୍ପାବତୀ ନଗ୍ରରେ ମହୀପାଳ ଆସି
କଣ୍ଟୁକ ନରେ ପଶି ଜୀବଙ୍କୁ ମାରୁଅଛି ।
ଗର୍ଭିଣୀ ପଶୁମାନେ ମୋତେ ସୁମରିଲେ
ବାରେକ ମୋତେ ରଖ ବୋଲିଣ ସ୍ତୁତି କଲେ ।
ତାଙ୍କର ଆରତ ଦେଖିଣ ତୁମ୍ଭଙ୍କୁ ସୁମରିଲୁ
ରକ୍ଷାକର ପଶୁଜୀବ ତୁମ୍ଭଙ୍କୁ କହିଲୁ ।
ଶୁଣିକରି ବନଜୀବ ମେଘମାନେ କ୍ରୋଧକଲେ
ଛାୟା ମାୟା ସାଧିଣ ଜଳ ବୃଷ୍ଟି କଲେ ।
ମୂଷଳ ଧାରା ପ୍ରମାଣେ ବର୍ଷା କଲେ ଜଳ
ପବନ ବହିଲା ଯେ ଅତିହିଁ ଅସମ୍ଭାଳ ।
ହସ୍ତୀ, ଅଶ୍ୱ, ସେନାପତି ରଥି ଯେ ପଦାତି
ସମସ୍ତେ କାତର ହେଲେ ବର୍ଷା ଘୋର ଦେଖି ।
ନିବିଡ଼ ଅନ୍ଧକାର ବର୍ଷା ଘୋର କଲା
ରଜନୀ ଦିବସ ଯେ ବାରଣ ନ ଗଲା ।
ରାତ୍ର ଦିବସ ଯେ ବରଷା କଲେ ଜଳ
କାତର ହେଲେ ରାଜା ବନସ୍ତ ଭିତର ।
ରଜନୀ ଶେଷରେ ଭାଙ୍ଗିଲା ପୁଣି ମେଘ ।
ଆଲୋକ ଦିଶିଲା ଯେ ପୁଣି ଦଶଦିଗ ।
ଦେଖିଣ ରାଜନ ସୈନ୍ୟକୁ ଚାହିଁ କହି
ଧର୍ମରେ ପାଳୁ ଯେ ଅଧର୍ମ କିସପାଇଁ ।
ସୈନ୍ୟବଳ ମୋର ଯେ ଅନେକ କ୍ଷୟଗଲେ
ହସ୍ତୀ ଘୋଡ଼ା ଅନେକ ପଦାତି ଯେ ମଲେ ।
ଧର୍ମ ଛାଡ଼ି ଅଧର୍ମ କଲେକ ମେଘମାଳ
ମୋର ଶାପ ତୁମ୍ଭଙ୍କୁ ଘୋଟୁରେ ଏବେ କାଳ ।

ଦିନରେ ନ ବର୍ଷି ଅଦିନେ କର ବୃଷ୍ଟି
ଆଉବେଳେ କୋପମନ ନୋହୁ ଯେ ତୋର ବୃଷ୍ଟି ।
ଏତେ ବୋଲିଣ ରାଜନ ସୈନ୍ୟବଳ ଖୋଜି
ରଣଭଗ୍ନ ହୋଇଲେ ରାଜ୍ୟକୁ ଗଲା ବେଗି ।
ଆପଣା ରାଜ୍ୟରେ ଯାଇ ହେଲା ପରବେଶ
ମନଦୁଃଖେ ରାଜନ ରହିଲା ନିଜ ବାସ ।
ଚାରିମେଘ ମେଘ ହୋଇ ଇନ୍ଦ୍ରପୁରେ ଗଲେ
ମାନ୍ୟ ଧର୍ମ କରି ଇନ୍ଦ୍ରକୁ କହିଲେ ।
ବୋଇଲେ ଜମ୍ବୁଦ୍ୱୀପରେ ଚମ୍ପାବତୀ ପୁର
ଲୋମପାଦ ରାଜା ଯେ ସେଥିରେ ମହୀପାଳ ।
ମୃଗୟା ବିନୋଦରେ କଣ୍ଟକ ବନ ଗଲା
ସେଥିରେ ଅନେକ ପଶୁଗର୍ଭିଣୀ ଥିଲେ ପରା ।
ସେ ସ୍ତ୍ରୀମାନେ ରବିଙ୍କୁ ସୁମରିଲେ
ଗର୍ଭ ଭାରି ହେବାରୁ ପଳାଇ ନ ଗଲେ ।
ବିରଞ୍ଚି ସୁମରଣା କଲେ ଯେ ଆମ୍ଭଙ୍କୁ
ଆମ୍ଭେମାନେ ତାଙ୍କ ଆଗରେ ମିଳିଲାକୁ ।
କଶ୍ୟପ ନନ୍ଦନ କହେ ଶୁଣ ହେ ତୁମ୍ଭେମାନେ
ଚମ୍ପାବତୀ ରାଜା ଯେ ପାରିଧି କରେ ବନେ ।
ସେ ଜୀବମାନେ ଆକୁଳ ହେଉଛନ୍ତି ବନ
ଗର୍ଭ ହେବାରୁ କେଣିକି ନପାରେ ଯାଇଣ ।
ଶୁଣିକରି ଆମ୍ଭେମାନେ ଜଳବୃଷ୍ଟି କଲୁ
ଗର୍ଭିଣୀ ଜୀବମାନଙ୍କୁ ଆମ୍ଭେ ଉଦ୍ଧାରିଲୁ ।
ଲୋମପାଦ ରାଜା ଆମ୍ଭଙ୍କୁ ଗାଳିଦେଲା
ଧିକାର ବଚନ ଯେ ଅନେକ ବୋଇଲା ।
ଶୁଣିକରି ସୁରରାଜା କହିଲା ବଚନ
ଅଧର୍ମୀ ରାଜା ରାଜ୍ୟେ ନକର ବରଷଣ ।
ବାରବର୍ଷ ପର୍ଯ୍ୟନ୍ତେ ସେ ରାଜ୍ୟେ ନପାଳିବ
ମରନ୍ତୁ ଜୀବଜନ୍ତୁ ନାଶ ହୋନ୍ତୁ ସର୍ବ ।
ସେହି ପାପୀ ରାଜା ଶରୀରରେ ପୁଣ ବହୁ
ଗରବ ଝୀଙ୍ଗାସ ହୃଦରେ ପୁଣ ବହୁ ।
ଯେତେବେଳେ ବିଭାଣ୍ଡକ ପୁତ୍ର ଋଷ୍ୟଶୃଙ୍ଗ
ପ୍ରବେଶ ହୋଇ କହିଲେ ବୃଷ୍ଟି ଯେ କରିବ ।
ଶୁଣିଣ ଚାରିମେଘ ଯେ ଯାହାସ୍ଥାନେ ଗଲେ
ଈଶ୍ୱର କହିବାରୁ ପାର୍ବତୀ ଶୁଣିଲେ ।
ପାର୍ବତୀ ବୋଇଲେ ଦେବ ଶୁଣ ମୋ ବଚନ
କେମନ୍ତେ ଋଷ୍ୟଶୃଙ୍ଗ ହୋଇଲେକ ଜନ୍ମ ।

ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଜରତାକାମେନି ଗଲେ ଋଷ୍ୟଶୃଙ୍ଗ ଆସିବେଟି ।
ଏକଦିନ ଦେବପୁରେ ଦେବ ସଭାକଲେ
ନାରାୟଣ ଜନ୍ମ ନିକଟେ ବିଚାରିଲେ ।
ଏହି ସମୟରେ ଅପସରୀ ଗଣ
ପ୍ରବେଶ ହୋଇଲେ ଯାଇ ସଭାର ତଳେଣ ।
ରମ୍ଭାକୁ ଦେଖିଣ ଯେ ଦେବତା ବିଚାରି
ରମ୍ଭାଙ୍କୁ ବୋଇଲେ ଶୁଣ ଗୋ ଦେବନାରୀ ।
ରାବଣ ଅସୁର ଯେ ବଳାତ୍କାର କଲା
ଧରିଣ ବାଟରେ ତୋତେ ସେ ହରିଲା ।
ଯେତେ କଥା ବୁଝାଇ କହିଲୁ ତାହାରେ
ନମାନିଲା ଅସୁର ବ୍ରହ୍ମାର ବରରେ ।
ଧର୍ମ ଦେଖାଇଣ କହିଲୁ ତୋର ବଧୂ
ତୋର ପୁତୁରା ନୀଳ ଯେ ମୋର ପ୍ରୀତିବନ୍ଧୁ ।
ଯେତେବେଳେ ସେ ରାବଣ ତୋତେ ପୁଣ କହି
ସେ ଦେବତାମାନେ ମୋର ସେବାକାରୀ ହୋଇ ।
ନର, ବାନର, ଅସୁର, ଦେବ ସାଧ କଲି
ସମୁଦ୍ର ଭିତରେ ଲଙ୍କା ଗଡ଼ରେ ରଖିଲି ।
ନାରାୟଣ ସଙ୍ଗରେ ଅନନ୍ତ ପୁଣ ଥିଲା
ଭାଇ କୁମ୍ଭକର୍ଣ୍ଣ ମୋର ଅନନ୍ତ ମୂର୍ତ୍ତି ହେଲା ।
ପୁତ୍ରମୋର ସୁରପୁରେ ରାଜନ ହେଲା ପୁଣ
ଯେଉଁଦିନ ଇନ୍ଦ୍ରକୁ ଧରିନେଲା ଯାଣ ।
ଭାଇ ମୋର ବିଭୀଷଣ ହୋଇବ ଏବେଗୁରୁ
ମୁହିଁହେବି ବାସୁଦେବ ହେବି ମହାମେରୁ ।
କ୍ଷୀର ସାଗର ଜଳଧି ଲଙ୍କାକୁ ଅଣାଇବି
ଲବଣ ସିନ୍ଧୁଜଳ ମୁଁ ବହନ କରାଇବି ।
ଲଙ୍କାଗଡ଼ ଜମ୍ବୁଦ୍ୱୀପ ମଣ୍ଡଳେ ଯେତେଗ୍ରନ୍ଥି
ସମସ୍ତେ କ୍ଷୀର ଭକ୍ଷିଣ ହେବେ ଶାନ୍ତିମୂର୍ତ୍ତି ।
ନାରାୟଣ ବନିତା କମଳାକୁ ମୁଁ ନେବି
ତାଙ୍କୁ ହରିଲେ କମଳା କାନ୍ତ ବୋଲାଇବି ।
ତେବେ ମୋର ମନ ଯେ ହୋଇବ ତୃପତି
ଏତେବୋଲି ରାବଣ ହରିଲା ତୋର ମତି ।
ଧରିଣ ରତିରଙ୍ଗ କଲା ସେ ଅସୁର
ନାରାୟଣଙ୍କୁ ଜିଣି ନାରାୟଣ ହେବା ମନତାର
ସେ ଛଳଗୋଟି ତୋର ଅଛିଟିକି ମନେ
ଶାପ୍ୟ ଦେଇଅଛୁ ଅସୁରକୁ ସେ ଦିନେ ।

ସେ ରାବଣ ଦୈତ୍ୟଙ୍କୁ ମାରିବୁ ଆମ୍ଭେ କୁଟେ
ନାରାୟଣ ଜନ୍ମହେବେ ଅଳ୍ପଦିନ ଅନ୍ତେ ।
ତୁମ୍ଭର ଦୁହିତା ଯେ ଦୁଇଗୋଟି ଜାଣ
ସ୍ତମ୍ଭନ ମୋହନ ତୁ ଦେଲୁ ତାଙ୍କ ନାମ ।
ସେ ଦୁହିଁଙ୍କି ଭେଦି ଏବେ ଚମ୍ପାବତୀ ନଗ୍ର
ନଟକାରୀ ଘରରେ ଜନ୍ମହୋନ୍ତୁ ବେଗ ।
ମୁକୁତା ମାଣିକ୍ୟ ଯେ ନଟକାରୀ ବେନି
ଲୋମପାଦ ରାଜାଙ୍କର ଅଟନ୍ତି ଖଟଣୀ ।
ସେ ଦୁଇନାରୀ ଗର୍ଭେ ଏ ଦୁଇ ଜନମିବେ
ବାରବର୍ଷ ନବଯୁବା ସ୍ୱରୁପ ବହିବେ ।
ଚାହିଁଲେ ଋଷିମାନେ ହୋଇବେ ତାଙ୍କୁ ମୋହି
ବଶ୍ୟ ଉଚ୍ଚାଟ ନଶିଖାଇବେ ତାଙ୍କ ଦୁଇ ଆଇ
ଚମ୍ପାବତୀ ନଗ୍ର ଯେ ଅପାଳକ ହେବ
ସୁର ରାଜା ବିପ୍ର ଶାପ ସେ ରାଜା ଲଭିବ ।
ଜରତା କାମମୋହିନୀ ଏମାନଙ୍କ ନାମ ହେବ
ଋଷ୍ୟଶୃଙ୍ଗଙ୍କୁ ଆଣିବାକୁ ଯିବେ ଯେ ଉଦବେଗ ।
ଋଷ୍ୟଶୃଙ୍ଗଙ୍କୁ ଭେଟହେବେ କୌଶିକବନରେ
ଉଚ୍ଚାଟ ମୋହିନୀ ଯେ ଲଗାଇବେ ତାରେ ।
ସେ ଋଷ୍ୟଶୃଙ୍ଗରେ କରିବେ ରତିଲୀଳା
ଦୁଇ ପୁତ୍ର ଦୁଇ ନାରୀ ଗର୍ଭୁ ଜନ୍ମ ପରା ।
ବେନିପୁତ୍ର ବିଭାଣ୍ଡେକ ଆଶ୍ରମଦେଇ ପୁଣ
ଚବିଶ ବର୍ଷେ ତୋର ସଙ୍ଗତରେ ମିଳେଯାଣ ।
ତେବେ ସେ ରାବଣ ହୋଇବ ପ୍ରାଣେ ନାଶ
ଏତେ ବୋଲି ଦେବତାଏ କହିଲେ ବିଶେଷ ।
ଶୁଣିଣ ରମ୍ଭାନାରୀ ମନରେ ତୋଷ ହେଲା
ଦୁଇ କୁମାରୀଙ୍କି ଡାକିଣ ଫାଙ୍କା ଦେଲା ।
ବୋଇଲା ମର୍ତ୍ତ୍ୟପୁରେ ଯାଅ ଗୋ ବେଗେପୁଣ
ଦେବଙ୍କ କାର୍ଯ୍ୟକଲେ ମରିବ ରାବଣ ।
ଏ ଜନ୍ମ କଥା ତୁମ୍ଭର ମନରେ ଚେତାଥିବ
ନବଯୁବା ହୋଇଣ ସମ୍ଭାଳି ହୋଇବ ।
ଋଷ୍ୟଶୃଙ୍ଗଙ୍କୁ ଦେଖିଲେ କରିବ ରତିରଙ୍ଗ
ଅନ୍ୟ ସଙ୍ଗେ ରତିକଲେ ସ୍ୱର୍ଗନୋହେ ଭୋଗ ।
ଦୁହିଁଙ୍କର ଗର୍ଭରୁ ଦୁଇପୁତ୍ର ହେବେ
ଋଷିକୁମାର ତପୋବନ୍ତ ବୋଲାଇବେ ।
ଶୁଣିକରି ଦୁଇ କୁମାରୀ ଚଳିଗଲେ
ଚମ୍ପାବତୀ ନଗ୍ରେଯାଇ ପ୍ରବେଶ ହୋଇଲେ ।

ମୋତି ମାଣିକ୍ୟ ନଟକାରୀ ଗୃହରେ ପ୍ରବେଶ
ସେଦିନ ସେହୁ ଯେ ହେଲେ ପାକା ଯେ ସ୍ୱରସ ।
ଚାରିଦିନେ ଦୁଇନାରୀ ଶୁଦ୍ଧ ଯେ ସ୍ନାନ କଲେ
ଅଗୁରୁ ଚନ୍ଦନ ଯେ କର୍ପୁର ଲଗାଇଲେ ।
ଅତର, ଚୁଆ, କୁଙ୍କୁମ ତିନିକି ବୋଳି ହୋଇ
ନବଯୁବା ସ୍ୱରୁପ ପ୍ରଥମେ ସେହୁ ହୋଇ ।
ସାତଦିନ ଦୁଇକନ୍ୟା ବିଚାର କଲେ ବସି
ପଞ୍ଚବର୍ଣ୍ଣେ ପୁଷ୍ପମାଳା ଧରିଣ ଧଣ୍ଡା ରଞ୍ଜି ।
ବୋଇଲେ ଏ ଅଙ୍ଗଗୋଟି ପବିତ୍ର ଅଙ୍ଗକରି
ଦୁଇଗୋଟି ବିପ୍ରଙ୍କୁ ଆଣିବା ଚାଲ ବରି ।
ଏମନ୍ତ ବିଚାରି ଦୁହେଁ ବେଶ ଭୋଗ ହେଲେ
ଆୟ ଅଳଙ୍କାରେ ଦୁହେଁ ଭୂଷଣ ହୋଇଲେ ।
ପାଞ୍ଚଘଡ଼ି ରାତ୍ରଠାରେ ଗଲେ ଯେ ନଗ୍ରବୁଲି
ନବଯୁବା ସ୍ୱରୁପ ଦୁଇ ବିପ୍ର ଗଲେ ଚଳି ।
ଦୁହେଁ ଅଗୋଳିଣ ବରଣ ତାଙ୍କୁ କଲେ
ଆମ୍ଭର ନବରେ ଆଜି ଆସ ହେ ବୋଇଲେ ।
ଉଚ୍ଚାଟ କରିବାରୁ ଦୁଇ ବିପ୍ରେ ଗଲେ
ମୋତି ମାଣିକ୍ୟ ଗୃହରେ ପ୍ରବେଶ ଯାଇ ହେଲେ ।
ପଲଙ୍କ ଉପରେ ବସିଲେ ଦୁଇବିପ୍ର
ଏହି ସମୟରେ ରମ୍ଭା ନାରୀ ହେ ଦୋହିଁତ ।
ଯୋତିରୂପ ଧରିଣ ବିପ୍ରଙ୍କ ଅଙ୍ଗେ ପଶି
ଏହି ସମୟରେ ମୋତି ମାଣିକ୍ୟ ଯେ ଆସି
ତାହାଙ୍କୁ ଦେଖି ବିପ୍ର ମୋହଗଲେ
ଦୁଇ ନାରୀଙ୍କୁ ଦୁଇ ବିପ୍ର କୋଳ କଲେ ।
ଅଧର ଚୁମ୍ବିଣ କୁଚ ମର୍ଦ୍ଦନ କଲେ
ନୀବିବନ୍ଧ ଫିଟାଇ ରତିରେ ଭୋଳ ହେଲେ ।
ଜ୍ୟୋତି ବୀର୍ଯ୍ୟ ଖସିଣ ନାରୀଙ୍କ ଗର୍ଭେ ରହି
ସେ ଦିନ ଗର୍ଭବାସ ହୋଇଲେ ଯେ ଦୁଇ ।
ରଜନୀ ଶେଷ ଅନ୍ତେ ବିପ୍ରେ ଚଳିଗଲେ
ଶଉଚ ହୋଇ ନିଜ ମନ୍ଦିରେ ମିଳିଲେ ।
ମୋତି ମାଣିକ୍ୟ ଯେ ଦୁଇ ନଟକରୀ
ମର୍ଦ୍ଦନ ମାଜଣା ସାରି ବେଗେ ସ୍ନାନକରି ।
ତିନିଦିନ ଉତ୍ତାରୁ ରାଜାର ସେବାକରି
ନୃତ୍ୟରଙ୍ଗ ଶବଦରେ ରାଜାଙ୍କୁ ତୋଷକରି ।
ଦଶମାସ ଗର୍ଭ ଯେ ହୋଇଲା ତାହାଙ୍କର
ଦୁହିତା ଦୁଇଗୋଟି ଜନ୍ମ ଶୁଭବେଳ ।

ପଞ୍ଚୁଆତି ଷଠିଘର ଗଲାକ ଉଠିଆରି
ବାରଯାତ୍ରା ଦିନ ସେ ଶଉଚ ବିଧିକରି ।
ଜ୍ୟୋତିଷ ଡକାଇ ନାମ ତାକୁ ଦେଲେ
ଜରତା କାମମୋହିନୀ ଜ୍ୟୋତିଷ ବୋଇଲେ
ନାମ ଦେଇ ଖଡ଼ିରତ୍ନ ନିଜପୁର ଗଲା
ଦୁଇକନ୍ୟା ନିର୍ଣ୍ଣିନ୍ତେ ରହିଲେ ତହିଁ ପରା ।
ଦିନକୁ ଦିନ କୁମାରୀ ବଢ଼ିଲେ ଶଶୀପ୍ରାୟେ
ଶୋଭା ସୁନ୍ଦର ପଣ କହିଲେ ନ ଯାଏ ।
ପାର୍ବତୀ ବୋଇଲେ ଦେବ ଅସୁର ମାରିବାକୁ
କେତେ କୁଟ ଯେ ବିଚାର କଲେ ତାକୁ ।
ଈଶ୍ୱର ବୋଇଲେ ସେ ଯେ ଅମରବରପାଇ
ଦେଲା ଦ୍ରବ୍ୟମାନ ହସ୍ତକୁ ନ ଆସଇ ।
ରୋପିଲାର ବୃକ୍ଷକୁ ଯେହ୍ନେ କୁଷନପାଏ ପୁଣ
ଥୋଇଲାର ପଦାର୍ଥକୁ ଚୋରନିଏ ଜାଣ ।
ହଜିଲା ପଦାର୍ଥ ଯେ ଲୋଡ଼ିଲେ ନ ପାଇ
ଯୁବା କାଳରେ ବଳ କି ବୃଦ୍ଧ କାଳରେ ରହି ।
ପାର୍ବତୀ ବୋଇଲା ଦେବ ଶୁଣ ହେ ଈଶାନ
ଲୋମପାଦ ରାଜା ଯେ କିସ କଲା ପୁଣ ।
ଈଶ୍ୱର ବୋଇଲେ ଯେ ରାଜ୍ୟରେ ତାର ରହି
ବିଚାରିଲେ ଦେବତାଏ ବିପକ୍ଷ ମୋତେ ହୋଇ
ମୃଗୟା ବିନୋଦରେ ଗଲି ଯେ ମୁହିଁ ପୁଣ
ଅକାଳ ଦୃଷ୍ଟିରେ ନାଶ ଗଲେ ସୈନ୍ୟଜାଣ ।
ଏତେ ବିଚାରି ରାଜା ଯେ ସାମନ୍ତ ପାତ୍ର ଡାକି
ବୋଇଲେ ଯାଗ ମୁଁ ଯେ କଲେକ ଧର୍ମ ଅଛି ।
ସକଳ ପଦାର୍ଥ ଯେ କିଣାଇ ଆଣ ବେଗ
ରାଜାମାନଙ୍କୁ ବରଣ କରହେ ସଦଭାବ ।
ବନ୍ଧୁମାନଙ୍କ ପାଶକୁ ଦୂତ ବେଗେ ଚଳିଗଲେ
ଦୂର ଦେଶକୁ ଚୋର ଭେଦିଣ ଦେଲେପୁଣ
ସାମନ୍ତମାନେ ଗଲେ ଅଯୋଧା ଦେଶ ଜାଣ
ପାତ୍ର ମନ୍ତ୍ରୀ ବେଗେ ଯେ ଯାନ ଚଢ଼ିଗଲେ
କଉରବ ଦେଶରେ ପ୍ରବେଶ ହୋଇଲେ ।
ସକଳ ଦେଶ ରାଜା ନୃପତି ଯେ ବରି
ଦୁହିତା ସ୍ୱୟମ୍ବରେ ଅଛଇଁ ସମ୍ଭାଳି ।
ସକଳ ରାଜାମାନଙ୍କୁ ନିମନ୍ତ୍ରଣ କରାଇଲେ ।
ଚନ୍ଦନ ଗୁଆପାନ ନୃପତିମାନଙ୍କୁ ଦେଲେ
ଚମ୍ପାବତୀ ରାଜ୍ୟରେ ଲୋମାପାଦ ରାଜା
ଯାଗ କରିବାକୁ ମନକଲେ ରାଜା ।
ସକଳ ନୃପବର ହୋଇଲେ ସନମାନ
ବୋଇଲେ ସ୍ୱୟମ୍ବର ସରିଲେ ଯିବୁ ପୁଣ ।
ଶୁଣିଣ ପାତ୍ରମନ୍ତ୍ରୀ ବେଗେ ଚଳିଆସି
ଲୋମପାଦ ରାଜା ଯେ ଦେଖିଣ ହେଲେ ତୋଷି ।
ସକଳ ସାମଗ୍ରୀ ଯେ ରଖିଲା ସ୍ଥାନେ ସ୍ଥାନେ
ନଗ୍ରେ ଉତ୍ସବ କଲା ହରଷର ମନେ ।
ପାତ୍ରଙ୍କ ପାଇଁ ନବର ରାଜାଙ୍କୁ ଉଆସ
ସୈନ୍ୟମାନଙ୍କ ପାଇଁ ସ୍ଥାନହିଁ ବିଶେଷ ।
ବୃକ୍ଷମୂଳ ମାନଙ୍କରେ ବେଦୀ କରାଇଲେ
ଫଳମୂଳ ଚନ୍ଦନ ଘୃତ ସମ୍ପାଦିଲେ ।
ବଳରାମ ଦାସ ଯେ ବିଚାରେ ମନରେ
ଶରଣ ଗଲି ମୁଁ ବାସୁଦେବଙ୍କ ଚରଣରେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ଲୋମପାଦ ରାଜା ସାମଗ୍ରୀ ରଖେ ଭରି ।
ହଟାରୀ ବଜାରୀ ସାମଗ୍ରୀ ସଦାବର୍ତ୍ତୀ
ସ୍ଥାନେ ସ୍ଥାନେ ସବୁ ରଖିଲା ନରପତି ।
ବିଶ୍ୱକର୍ମା ଯାଇଣ ଯାଗଶାଳା ନିର୍ମାକଲା ।
ଦୁର୍ବାସା ଋଷିଙ୍କି ରାଜା ଆନନ୍ଦେ ବରିଲା ।
ବୋଇଲା ଯାଗରେ ମୋର ହୁଅହେ ଆଚାର୍ଯ୍ୟ
ଶୁଣିଣ ମୁନିବର ଅଇଲେ ପୁଣ ବେଗ ।
ଚମ୍ପାବତୀ କଟକରେ ପ୍ରବେଶ ଯାଇଁ ହେଲେ
ରାଜାର ନବରଯାକ ଯାଇଁଣ ଦେଖିଲେ ।
ସ୍ଥାନେ ସ୍ଥାନେ ସବୁ ଚିରାଳ ସୁବର୍ଣ୍ଣରେ
ସୁବର୍ଣ୍ଣର ଚଉରା ଦିଶଇ ଶୋଭାକାରେ ।
ପ୍ରତିଦ୍ୱାରେ ରମ୍ଭାବୃକ୍ଷ ପୂର୍ଣ୍ଣକୁମ୍ଭ ଅଛି
ଚିତ୍ର ପିତୁଳାମାନେ କାନ୍ଥରେ ଲେଖିଛି ।
ନାରିକେଳ ଚୂତପତ୍ର ଡାଳ ଯେ ମାଳମାଳ
ଉପରେ ଛାମୁଣ୍ଡିଆ ହୋଇଛି ନିବାଡ଼ ।
ନୃତ୍ୟକାରୀମାନେ ନୃତ୍ୟ ରଙ୍ଗକରି
ନଟକାରୀମାନେ ବେଶରେ ବିହରି ।
ଯୁବାସ୍ତିରୀମାନେ ତହିଁରେ ଆନନ୍ଦ
ବୃଦ୍ଧା ସ୍ତିରୀମାନେ ଗାୟେଣୀ କରନ୍ତି ଗୋବିନ୍ଦ ।
ଯୁବା ପୁରୁଷମାନେ ସାତ ପାଞ୍ଚ ମେଳ
ଅତି ସୁନ୍ଦରରେ ବୁଲନ୍ତି ନବର ।
ବୃଦ୍ଧ ନରମାନେ ହରିନାମ ଗାବନ୍ତି ଟାଣେ
ଶୁଆ ଶାରୀ ପଢ଼ନ୍ତି ଶ୍ରୀକୃଷ୍ଣ ନାମ ତେଣେ ।

ବାଳକ ବାଳିକାଏ କରନ୍ତି ଖେଳରସ
ଏମନ୍ତେ ଆନନ୍ଦ ହେଲେ ସେନଗ୍ରେଯେତେଲୋକ
ଦେଖିଣ ଋଷିମାନେ ଆନନ୍ଦ ଭାବହେଲେ ।
ଧର୍ମରେ ଅଛନ୍ତି ବୋଲି ମନରେ ବିଚାରିଲେ
ନବର ବୁଲିଣ ଯେ ଯାଗଶାଳା ବୁଲି
ଦେଖିଣ ଯାଗଶାଳ ହୋଇନ୍ତି ବକ୍ରସ୍ଥଳୀ ।
ବିଚାରିଲେ ପ୍ରମାଦ କି ହୋଇବ ଏପୁରେ
ଯାଗଶାଳ ଗୋଟିଏ ବକ୍ର ଯେ ବିହିତରେ ।
ଏମନ୍ତ ବିଚାରି ମୁନି ରାଜାଙ୍କୁ ଡକାଇଲେ
ଲୋମପାଦ ରାଜା ଋଷି ପାଶରେ ମିଳିଲେ ।
ଦୁର୍ବାସା ବୋଇଲେ ରାଜା ଆମ୍ଭଠାରୁ ଶୁଣ
ଯାଗଶାଳ ଶୋଧିବା ଋଷି ବ୍ରାହ୍ମଣଙ୍କୁ ଆଣ ।
ରାଜନ ବୋଇଲେ ଦେବମୋଠାରୁ ଏବେଶୁଣ
ଋଷିମାନଙ୍କୁ ତୁମ୍ଭେ ଅଣାଅ ଆପଣ ।
ଦ୍ୱିଜବରମାନଙ୍କୁ ମୁଁ ଅଣାଉଛି ପୁଣ
ଶୁଣିଣ ଦୁର୍ବାସା ଯେ ସୁମରେ ଋଷିଗଣ ।
ଦୁର୍ବାସା ସୁମରନ୍ତେ ସକଳ ଋଷି ଜାଣି
ଅଇଲେ ଚମ୍ପାବତୀ ରାଜ୍ୟକୁ ଋଷି ପୁଣି ।
ନବକୋଟି ଋଷି ଯେ ଯାଇଣ ଠୁଳ ହେଲେ
ବୃକ୍ଷ ମୂଳମାନଙ୍କରେ ସକଳ ରହିଲେ ।
ଅଗୁରୁ ଚନ୍ଦନ ନେଇ ଘୃତ ସଙ୍ଗେ ଦେଲା
କନ୍ଦମୂଳ ଫଳ ନେଇ ଋଷିଙ୍କି ସମର୍ପିଲା
ଦେଖିଣ ଋଷିମାନେ ହରଷମନ ହେଲେ
ଶୌଚ ନିର୍ମଳ ହୋଇ ବିଧି କଲେ ।
ଚାରିବେଦ ଗାୟନ କଲେ ମୁନିବର
ଏଥୁ ଅନନ୍ତରେ ରାଜା ଡକାଇ ବିପ୍ରବର ।
ପାଞ୍ଚ ସାତ ରାଜ୍ୟରୁ ବିପ୍ରବର ବରି
ଦୁଇ ଲକ୍ଷ ବ୍ରାହ୍ମଣ ମିଳିଲେ ସେହୁ ବରି ।
କୁଶପାତ୍ରୀ ତମ୍ବାଗଡ଼ୁ ଘେନିଣ ଦ୍ୱିଜବର
ପ୍ରବେଶ ହୋଇଲେ ଯାଇ ଆନନ୍ଦ ମନର ।
ବିପ୍ରଙ୍କୁ ଦେଖିଣ ରାଜା ନମସ୍କାର କଲା
ଆଦର ବିପ୍ରଙ୍କୁ ଯେ ଗୌରବ କରାଇଲା ।
ବିପ୍ରଙ୍କୁ ଘେନିଣ ଋଷି ଯାଗଶାଳ ଶୋଧି
ଯବ ତୀଳ ଧାନ ବୁଣିଲେ ଋଷି ବୁଦ୍ଧି ।
ତିନିଦିନେ ସେଠାରେ ଉଠିଲେ ବୃକ୍ଷମାନ
ସ୍ୱରୂପ ଦିଶିଲା ରୁଧିର ବର୍ଣ୍ଣ ପୁଣ ।
ଦେଖିଣ ତପନିଧି ମନରେ ବିଚାରିଲେ
ହେବ ଉତ୍ପାତ ଏ ରାଜ୍ୟେ ବୋଲିଣ ବୋଇଲେ ।
ଯାଗରେ ଅନୁକୂଳ କଲେ ଋଷିଗଣ
ମେଷ ଯାଗ ଆରମ୍ଭ କଲାକ ରାଜନ ।
ଏମନ୍ତ ସମୟରେ ରାଜାଗଣ ମିଳି
ରାଜାର ବନ୍ଧୁମାନେ ମିଳିଲେ ବେଗକରି ।
ଦେଖିଣ ଲୋମପାଦ ମାନ୍ୟଧର୍ମ କଲା
ସକଳ ରାଜାଙ୍କୁ ଯାଇ ଓଳଗି ମେଲାଇଲା ।
ରାଜାଙ୍କୁ ନବର ଯେ ପାତ୍ରୀଙ୍କୁ ଉଆସ
ସୈନ୍ୟବଳମାନଙ୍କୁ ଘର ଯେ ବିଶେଷ ।
ନାଗବଳ ଅଶ୍ୱବଳ ସାରଥି ରଥୀଙ୍କି
ଏମାନଙ୍କୁ ସ୍ଥାନଦେଲା ବନସ୍ତରେ ଡାକି ।
ଅନେକ ଚାର ସେଥିରେ ଚର୍ଚ୍ଚା କଲେ ରହି
ସନମାନ ପାଇଣ ନୃପତି ସର୍ବେ ତହିଁ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ଯାଗଶାଳାରେ ରାଜା ଦେଖିଲା ଯାଇକରି ।
ଋଷି ବ୍ରାହ୍ମଣ ଠୁଳ ହୋଇ ଯାଗ କଲେ
ଚାରିବେଦ ଉଚ୍ଚାରି ଅଗ୍ନିକି ବରିଲେ ।
ଚନ୍ଦନ ଅଗୁରୁ କାଠରେ ଲଗାଇ ହୁତାଶନ
ଘୃତଦ୍ୟନ୍ତେ ଅଗ୍ନି ପବନ ହେଲେ ପୁଣ ।
ଆହୁତି ଦେଲେ ଯେ ଦେବଙ୍କ ନାମ ଧରି
ଦଶରଥ ରାଜା ଯେ ମିଳିଲେ ଯାଇକରି ।
ରାଜାର ଶାଳକଗଣ ଆସିଣ ସର୍ବେ ମିଳି
ମାନ୍ୟ ଧର୍ମ କଲେ ସେ ରାଜାଙ୍କୁ ଯାଇକରି ।
ଦଶରଥ ରାଜାର ଯେ ଶାଳକଗଣ ଥିଲେ
ଦଶରଥ ରାଜାଙ୍କୁ ଦେଖିଣ ଓଳଗି ମେଳାଇଲେ ।
କୁଶଳ ପୁଚ୍ଛା ପୁଚ୍ଛି ହୋଇଲେ ସକଳ
ଆନନ୍ଦରେ ନୃପତି ଯେ ବିହରେ ସେହିପୁର ।
ଏଥୁ ଅନନ୍ତରେ ଏବେ ଭଗବତୀ ଶୁଣ
ଯାଗରେ ବସିଲେ ଲୋମପାଦ ରାଜା ପୁଣ ।
ସମସ୍ତଙ୍କ ଚର୍ଚ୍ଚା ଯେ ପାତ୍ର ମନ୍ତ୍ରୀ କଲେ
ସ୍ଥାନ ବୁଝିଣ ସବୁ ଅନ୍ନ ଦାନ ଦେଲେ ।
ସଦାବ୍ରତ ପଣରେ ଦେଲେକ ଭୋଜନ
ବିଷ୍ଣୁ ପ୍ରତିମା ମାନଙ୍କୁ ଭୋଗ ସେ ଦେଇଣ ।
ଶିବାଳୟରେ ବେଲପତ୍ର ଚମ୍ପା ଦେଲେ
ଧେନୁ କ୍ଷୀର ନେଇଣ ଶିରରେ ନିଉଡିଲେ ।

ଦେବୀମାନଙ୍କୁ ଦେଲେ ବୋଦା ଯେ ଛାଗଳ ।
ଦେଇ ତୋଷ କଲେ ମନ ଯେ ତାଙ୍କର ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ରାଜାମାନଙ୍କୁ ଚାର କହିଲେ ଯାଇକରି ।
ଶୁଣିମା ନରେନ୍ଦ୍ର ହେ ରାଜ୍ୟର ଅଧିକାରୀ
ଅସମ୍ଭବ କଥାଏ ଦେଖିଲୁ ଦଣ୍ଡଧାରୀ ।
ଚଣ୍ଡାଳ ଘରେ ଜାତ ପଦ୍ମିନୀ ନାମେ କନ୍ୟା
ସେ କନ୍ୟା ଅରଜିଲା ଅନେକ ଧନସିନା ।
ବେନିଲକ୍ଷ ଭରଣ ଧାନ ଯେ ଗଦାକରି
ମେରୁଗିରି ସମାନେ ରଖିଛି ଠୁଳ କରି ।
ତାହାର ପିତା ପୁଣି କରିଣ ଅଛି ସତ୍ୟ
ମୋ ଦୁହିତା ବିଭାହେଲେ ମୁଁ ଦେବଇଁ ନିୟତ ।
ଶୁଣିଣ ରାଜାମାନେ ଯେ ଚମତ୍କାର ହେଲେ
ସେ ଚଣ୍ଡାଳ ଦୁହିତା ଦେଖିଣ ବୋଇଲେ ।
ଯାଗାସୁର ଦେଖିବା ଅଣାଇ ସବୁ ପୁଣ
ଏବେ ତାକୁ ଦେଖିବାର ନୁହଇ କାରଣ ।
ଏତେ ବୋଲି ବିଚାର ଯେ କଲେ ରାଜାଗଣ
ଏଥୁ ଅନନ୍ତରେ ସେ ପାର୍ବତୀ ଦେବୀ ଶୁଣ ।
ଯାଗକଲେ ସେ ରାଜା ବେନିମାସ ପୁଣି
ସମ୍ପୂର୍ଣ୍ଣ ହୋଇଲା ଯାଗ ବେଳକାଳ ଜାଣି
ଯାଗ ସମ୍ପୂର୍ଣ୍ଣ ହେବାରୁ ପୂର୍ଣ୍ଣାହୁତି ଦେଲେ
ତ୍ରିଦଶ ଦେବତାଏ ଆସିଣ ମିଳିଲେ ।
ସମସ୍ତେ ହବିର୍ଭାବ କଲେକ ଭୋଜନ
ଚାରିମେଘ ସୁରରାଜା ନ ଆସେ ସେ ସ୍ଥାନ ।
ଦେଖିଣ ଦେବଗଣ ବିକଳ ମନହେଲେ
ତୁମ୍ଭେ ନ ଭକ୍ଷ କିମ୍ପା ବୋଲିଣ ପଚାରିଲେ ।
ସୁରରାଜା ବୋଇଲେ ସେ ମୋତେ ଗାଳିଦେଲା
ଅନେକ ଧିକାରି ମୋତେ ବଚନ ବୋଇଲା ।
କ୍ରୋଧରେ ମୁହିଁ ତାକୁ ଦେଲି ଯେ ଶାପପୁଣ
ତୋର ରାଜ୍ୟ ନ ପାଳିବି ବାରବର୍ଷ ଜାଣ ।
କେତେ ବଳବନ୍ତ ରାଜା ଅଟରେ ନରଦେହୀ
ମନୁଷ୍ୟ ହୋଇଣ ତୋର ଏତେ ଗର୍ବ ହୋଇ ।
କେମନ୍ତେ ହବି ଆଉ ମୁଁ କରିବି ଭୋଜନ
ଶୁଣିଣ ଦେବତାଏ ହୋଇଲେ ମଉନ ।
ଏଥୁ ଅନନ୍ତରେ ଶୁଣଗୋ ଶାକମ୍ଭରୀ
ଦୁର୍ବାସା ଋଷି ଯେ ପୂର୍ଣ୍ଣାହୁତି ସାରି ।
ତପୋବଳେ ଋଷି ଯେ ଜାଣିଲେ ତାହା ପୁଣ
ସୁରରାଜା ମେଘମାନେ ନ କଲେ ଭୋଜନ ।
ପୂର୍ଣ୍ଣାଆହୁତି ସାରିଣ ରାଜାଙ୍କୁ ଋଷି କହି
ସକଳ ଦେବତା ହବି ଭୋଜନ କଲା ରହି ।
ସୁରରାଜା ଚାରିମେଘ ନ କଲେ ଭୋଜନ
ତୋତେ ଅମାନ୍ୟ କଲେ ଯେ ସ୍ୱର୍ଗ ଇନ୍ଦ୍ର ପୁଣ ।
ରାଜନ ବୋଇଲେ ସେ ଆଗେ ଦୁଃଖ ଦେଲା
ଅକାଳ ବୃଷ୍ଟିକରି ସୈନ୍ୟ ମୋ ମରାଇଲା ।
ପଛେ ହବି ନ ଭୁଞ୍ଜେ ମୋହର ଯୋଗେ ପୁଣ
ନିଶ୍ଚୟ ନାଶ ମୋତେ କରିବ ସୁରରାଣ ।
ଧାର୍ମିକ ହୋଇ ଯେବେ ଅଧର୍ମ ପଣ କଲା
ଦେବତା ହୋଇ ଯେବେ ମନରେ କ୍ରୋଧ ହେଲା ।
ଯୁଗାନ୍ତରେ ଶାପ ଯେ ମୋହର ତାରେ ରହୁ
ସମସ୍ତ ମୁଖରେ ଯେ ଯେ ଗାଳି ନିନ୍ଦା ପାଉ ।
ଦୁର୍ବାସା ବୋଇଲେ ତୁ ଯେ ମନ୍ଦକୃତ୍ୟ କଲୁ
ପାଳିବା ଅଧିପତିଙ୍କି ନଜାଣି ଗାଳିଦେଲୁ ।
ରାଜନ ବୋଇଲେ ସେ ଯେ ମାଇଲେ ମୋର ବଳ
ବର୍ଷା ଦିନ ନୁହଇ ଅଟଇ ଖରାକାଳ ।
ଦୁର୍ବାସା ବୋଇଲେ ରାଜା ପାରିଧି ବନେ ଗଲୁ
ଗ୍ରୀଷମ କାଳରେ କିମ୍ପା ଅଗ୍ନି ଲଗାଇଲୁ ।
ସେ କଣ୍ଟକି ବନରେ ଯେତେକ ଜୀବଜନ୍ତୁ
ଜୀବଙ୍କର ନାରୀମାନେ ସେଥିରେ ପାଏ ହେତୁ ।
ବର୍ଷା ଶେଷରେ ସେ ଗର୍ଭ ହୋନ୍ତି ପୁଣ
ବିଷମ ତାପରେ ତାବ୍‌ଦାରେ ପିଲାମାନ ।
ଗ୍ରୀଷ୍ମ ଶେଷରେ ଆମ୍ଭେ ହେଲୁ ଯେ ପ୍ରବେଶ
ସେ ନାରୀମାନେ ଦେଖିଲେ ବିପତ୍ତି କାଳସେତ ।
ଆରତ ହୋଇଣ ସେ ଆମ୍ଭଙ୍କୁ ସୁମରିଲେ
ସୁରରାଜା ଜାଣିଲେ ସୁରପୁରେ ଛାତପରେ ।
ବିଚାରିଣ ଜଳବୃଷ୍ଟି ସେହୁ ପୁଣ କଲେ
ଅନେକ ଗର୍ଭସ୍ତିରୀଙ୍କି ସେହି ଉଦ୍ଧାରିଲେ ।
ତୁ ରାଜନ ବ୍ୟାଧି ଯେ ହୋଇଣ ଥିଲୁ ତାଙ୍କୁ
ମରନ୍ତୁ ଗର୍ଭସ୍ତିରୀ ହରନ୍ତୁ ତାଙ୍କ ବପୁ ।
ସେ ହେତୁକରି ଯେ ଦେବଙ୍କୁ ଦୋଷ ଦେଲେ
ନ ରଖିଲେ ଦୋଷ ତୋ ଉପରେ ପଡୁ ଭଲେ
ସେଥିର ସକାଶରୁ ଉଦ୍ଧାର ତାଙ୍କୁ କଲା
ତୋତେ କୁଟ ହୋଇଣ ଶାସ୍ତି ଯେ ବିହିଲା ।
ଗର୍ଜ୍ଜନରେ ଭାର୍ଜ୍ଜନ ହେଲୁରେ ତୁହି ପୁଣ
ବ୍ୟାଧ ଜାତିରେ ହେଲୁ ତୁହିରେ ରାଜନ ।

ସେ ହେତୁ ତୋର ଦ୍ରବ୍ୟ ଭୋଜନ ନ କରେ
ଅନେକ କଷ୍ଟ ଦେବ ସୁରରାଜା ତୋରେ ।
ନ ପାଳିବ ରାଜା ତୋର ନଦେବ ସେହୁଶସ୍ୟ
ଅନେକ କଷ୍ଟ ତୋତେ ବିହିବ ସୁରରାଷ୍ଟ୍ର ।
ଶୁଣିକରି ଲୋମପାଦ ହୋଇଲେ ମଉନ
ଋଷିଙ୍କି ପଚାରିଲା ଶୁଣ ହେ ସାବଧାନ ।
ଆଉ କେଉଁଠାରେ ଯେ ଉଦ୍ଧାର ତରେ ପୁଣ
ଜୀବମାନଙ୍କୁ ଉଦ୍ଧାର କରନ୍ତି ଦେବଗଣ ।
ଦୁର୍ବାସା ବୋଇଲେ ସେଥିର କଥା ଶୁଣ
ହର ବନରେ ହର ପାର୍ବତୀ ବିଶ୍ରାମ ।
ସେ ବନରେ ଅନେକ ମୃଗ ଯେ ମୃଗୁଣୀ
ମହାଦେବ ପ୍ରାସାଦେ ସେ ବନେ ଥାନ୍ତି ପୁଣି ।
ମୃଗୁଣୀର ସଙ୍ଗରେ ମୃଗ ଯେ ପ୍ରୀତିକଲା
ଶୃଙ୍ଗାର କରିବାରୁ ମୃଗୁଣୀ ଗର୍ଭ ହେଲା ।
ଦଶମାସ ମୃଗୁଣୀ ଗର୍ଭ ପୁଣ ହେଲା
ଆଳସ୍ୟରେ ମୃଗୁଣୀ ଯେ ଚାଲି ନ ପାରିଲା ।
ସଙ୍ଗରେ ବେନିବାଳ ଘେନିଣ ମୃଗୁଣୀ
ପୁଷ୍କରିଣୀ ତଟରେ ରହିଲା ଯାଇଣ ପୁଣି ।
କୋମଳ ତୃଣ ଆହାର ଅମୃତ ପାନକଲା
ସେ ସ୍ଥାନେ ରହିଲା ମୃଗୁଣୀ କିଛିଦିନ ପରା ।
ଏକ ଦିନେ ବ୍ୟାଧ ଯେ ସେ ସ୍ଥାନକୁ ଗଲା
ତୀର କମାୟଣ ଧନୁ ସେହି ଧରିଥିଲା ।
ଦେଖିଲା ମୃଗୁଣୀ ସେ ଅଛଇ ବନରେ
ଜାଲ ବାଡ଼ ଦେଇଣ ନିରୋଧ କଲା ତାରେ ।
ଅଗ୍ନି ଲଗାଇଣ ସେ ଶ୍ୱାନ ମେଲିଦେଲା
ଧର ଧର ବୋଲିଣ ଶବଦ ଉଚ୍ଚେ କଲା ।
ଧନୁ ଧରି ନାରାଚ ଯେ ଯୋଚିଲା ତ୍ରୋଣରେ
ମାରିବ ବୋଲି ବିଚାର କଲାକ ମନରେ ।
ସେ ହେମ ହରିଣୀ ଯେ ଦେଖିଣ ଭୟକଲା
ବେନି ବାଳକଙ୍କୁ ନେଇ ପାଖରେ ରଖିଲା ।
ନାରାୟଣ ସୁମରଣା କଲାକ ହୃଦୟରେ
ବୈକୁଣ୍ଠେ ଥାଇ ତାହା ଜାଣିଲେ ଚକ୍ରଧରେ ।
ଚାରିମେଘକୁ ଚାହିଁ ବେଗେ ଆଜ୍ଞା ଦେଲେ
ହରବନେ ବ୍ୟାଧକୁ ନାଶ କରେ ବୋଇଲେ ।
ସେ ହର ବନରେ ହରିଣୀ ଅଛି ପୁଣ
ତାହା ବ୍ୟାଧ ଯାଇ ଓଗାଳିଲା ଜାଣ ।
ସେ ହରିଣୀ ମୋତେ ଯେ ଆରତେ ସୁମରିଲା
ଭୋ ବିହି ମୋତେ ଏବେ ସଙ୍କଟ ପଡ଼ିଲା ।
ଏ ଦଣ୍ଡରୁ ଉଦ୍ଧାର କର ହେ ନାରାୟଣ
ନୋହିଲେ ପାଞ୍ଚଜଣ ଆମ୍ଭେ ନାଶ ହେଲୁ ପୁଣ ।
ତୁମ୍ଭ ବିନୁ ମୋର ଯେ ଅନ୍ୟରେ ନାହିଁ ଆଶ
ଏତେ ବୋଲି ହରିଣୀ ଉଚ୍ଚେ କଲାକ ଆଭାଷ ।
ଏକଥା ଜାଣିଣ ମୁଁ ତୁମ୍ଭଙ୍କୁ ସୁମରିଲି
ମୃଗୁଣୀ ରଖି ବ୍ୟାଧକୁ ନାଶ ହେ ବେଗ କରି ।
ଶୁଣି ଚାରିମେଘ ଯେ ବେଗେ ଚଳିଗଲେ
ଘୋର ଜଳ ବରଷିଣ ଅନଳ ଲିଭାଇଲେ ।
ବଜ୍ରମାରି ବ୍ୟାଧକୁ ପୁଣ କଲେ ନାଶ
ପବନରେ ଜାଲ ବାଡ଼ ଛିଣ୍ଡାଇ ତୁରିତ ।
ସେ ସ୍ଥାନରେ ସର୍ପ ଯେ ଅଜଗର ଥିଲା
ଅଚଳନ୍ତି ଜୀବମାନେ ନ ଚଳିଲେ ପରା ।
ଭୟ ପାଇ ଶ୍ୱାନ ତା ପାଶରେ ଆଉଜିଲା
ଦେଖିଣ ଅଜଗର ତାହାକୁ ଭକ୍ଷିଲା ।
ନୟନ ଫେଡ଼ିଣ ଯେ ସର୍ପ ଚାହେଁ ପୁଣ
ଆଗରେ ବ୍ୟାଧ ଗୋଟି ପଡ଼ିଛି ମରିଣ ।
ହେଠ ମାଥ ହୋଇଣ ସେଠାରୁ ଚଳିଗଲା
ମୃତ୍ୟୁ ମନୁଷ୍ୟକୁ ଯାଇଣ ଭକ୍ଷିଲା ।
ଦେଖିଣ ମୃଗୁଣୀ ଯେ ସର୍ପକୁ ଭୟ କଲା
ବେନି ବାଳକ ଘେନିଣ ସେଠାରୁ ଚଳିଗଲା ।
ସେ ବନ ଉତ୍ତର ପାର୍ଶ୍ୱେ ପୁଷ୍କରିଣୀ ନିକଟେ
ନାରାୟଣଙ୍କୁ ସୁମରଣା କରଇ ସେହୁ ପଥେ
କେତେଦିନ ଉତ୍ତାରେ ପ୍ରସବ ପୁଣ ହେଲା
ଦୁଇଗୋଟି ଦୁହିତା ଜନମ ହେଲେ ପରା ।
ପୁତ୍ର ପୌତ୍ର କେତେଦିନ ଯେ ପାଳିଲା
ପୁତ୍ରଙ୍କର ସଙ୍ଗରେ ପୌତ୍ରୀ ସମର୍ପିଲା ।
କାଳେ ତାର ଶରୀର ହୋଇଲା ଯେ ଆନ
ଚଳିଲା ସ୍ୱର୍ଗପୁର ଆନନ୍ଦ ଭାବେଣ ।
ଅଚିନ୍ତା ସ୍ୱର୍ଗପୁରେ ଯାଇଣ ମିଳିଲା
ଅପସରୀଙ୍କ ସଙ୍ଗରେ ଯାଇ ବିହରିଲା ।
ଲୋମପାଦ ବୋଇଲେ ଶୁଣ ହେ ମୁନିବର
ପୂର୍ବରେ କିସ ନାମ ଅଟେ ଯେ ତାହାର ।
କି ଦୋଷେ ପଶୁଜନ୍ମ ହୋଇଲା ଯେ ପୁଣ
ସେଥିର କଥା ମୋତେ କହ ହେ ବିସ୍ତାରଣ ।

ଦୁର୍ବାସା ବୋଇଲେ ଶୁଣ ହେ ଲୋମପାଦ
ମେନକା ଅପସରୀର ସ୍ୱର୍ଗର ସମ୍ବାଦ ।
ଚନ୍ଦ୍ର ଦେବତାଙ୍କୁ ଖଟଇ ସେହୁ ନାରୀ
ତାହାର ଗର୍ଭରୁ ଶୋଭା କନ୍ୟାଏ ଅବତରୀ ।
ଯତନରେ ପାଳିଲା ମେନକା ତାକୁ ପୁଣ
ସପତ ବରଷ ଯେ ଦୋହିତା ହେଲା ଜାଣ ।
ସେ ଦୋହିତା ଏକ ଦିନେ ଦାଣ୍ଡରେ ଖେଳୁଥିଲା
ଅଷ୍ଟବକ୍ର ଋଷି ଯେ ସେ ସ୍ଥାନରେ ଗଲା
ଋଷିଙ୍କି ଅସୁନ୍ଦର ଦେଖିଣ ସେହୁ ନାରୀ
ଦୁଇ ଚରଣ ଦୁଇ ହସ୍ତେ ଚାଲଇ ଗେଲ କରି ।
ଖତାଇ ହେଲା ପ୍ରାୟେ ଯେ ଋଷିଙ୍କି ପ୍ରତେ ହେଲା
କ୍ରୋଧରେ ଶାପ ତାଙ୍କୁ ଋଷି ଯେ ଦେଲେ ଭଲା ।
ବୋଇଲେ ମୋତେ ଦେଖିତୁ ହୋଇଲୁ ମୃଗୁଣୀ
ମୃଗୁଣୀର ସ୍ୱରୂପ ହୁଅ ଏହିକ୍ଷଣି ।
ମର୍ତ୍ତ୍ୟପୁର ଯାଇ ତୁ ହରବନେ ରହ
ହେମ ହରିଣୀନାମ ସେଥିରେ ବୋଲାଅ ।
ପ୍ରଥମ ଗର୍ଭରେ ବେନି ବାଳକ ତୋର ହେବ
ଦ୍ୱିତୀୟ ଗର୍ଭବେଳେ ବ୍ୟାଧ ଯେ ଘୋଟିବ ।
ତେତେବେଳେ ନାରାୟଣ ସୁମରଣା କରି
ମୃଗୁଣୀ ରୂପ ଛାଡ଼ି ନିଜ ସ୍ଥାନରେ ମିଳି ।
ସେ ଶାପ ଘେନିଣ ମୃଗୁଣୀ ହୋଇଥିଲା
ନାରାୟଣ ସୁମରନ୍ତେ ନିଜ ସ୍ଥାନେ ଗଲା ।
ଲୋମପାଦ ବୋଇଲା ମୁଁ ସେ କଥା ଶୁଣିଲି
ଶ୍ୱାନ ବ୍ୟାସ କିସ କଲେ ଏକଥା ନ ଜାଣିଲି ।
ଦୁର୍ବାସା ବୋଇଲେ ସେ କଥା ଏବେ ଶୁଣ
ଶୋଣିତ ବନରେ ଉମା ମହେଶ୍ୱର ପୁଣ ।
ମାଳୀ ବ୍ରାହ୍ମଣ ଯେ ତାଙ୍କର ସେବାକାରୀ
ଶିବ ଦ୍ରବ୍ୟ ସବୁ କାଳରେ ସେହୁ ଭୋଗକରି ।
ସେ ଦୋଷରେ ଶ୍ୱାନ ଯେ ବ୍ୟାଧଜାତ ହେଲେ
ମୃଗୁଣୀକି ହିଂସାକରି ଅମର ସ୍ୱର୍ଗକଲେ ।
ନାରାୟଣ ଶବଦ ମୃଗୁଣୀ ଯହୁଁ କଲା
ସେ ଶବ୍ଦ ଶୁଣି ଦୁହେଁ ମୁକ୍ତି ହେଲେ ପରା ।
ଲୋମପାଦ କହିଲେ ମୋର ଜନ୍ମ କହ ଭଲା
କେଉଁଦୋଷୁ ଦେବତାକୁ କ୍ରୋଧ ମୋର ହେଲା ।
ଦୁର୍ବାସା ବୋଇଲେ ସେ କଥା ଏବେ ଶୁଣ
ବୃତାନାମେ ଅସୁର ପଶ୍ଚିମ ଦିଗେ ପୁଣ ।
କୁନ୍ତଳା ଅସୁରୀ ଗର୍ଭେ ଯେ ଜାତ ହେଲା
ଇନ୍ଦ୍ର ତାକୁ ସମର କରିଣ ମାଇଲା ।
ମନୁରାଜା ରୂପରେ ସେଠାରୁ ଜାତ ହୋଇ
ସେହି ରୂପେ ନାରାୟଣଙ୍କୁ ଭକ୍ତି ହୋଇ ।
ସେ ରୂପ ତେଜିବାରୁ ହୋଇଲୁ ଚକ୍ରବର୍ତ୍ତୀ
ଚକ୍ରବର୍ତ୍ତୀ ରୂପଧରି ହୋଇଲୁ ଦୁଷ୍ଟମତି ।
ସେ କାଳେ ଇନ୍ଦ୍ର ସଙ୍ଗେ ବିବାହ ତହୁଁ କଲୁ
ଚାରିଲକ୍ଷ ବରଷରେ ମୃତ୍ୟୁ ଯେ ପାଇଲୁ ।
ଏବେ ଜାତ ହୋଇଲା ଯେ ଲୋମପାଦ ହୋଇ
ଚମ୍ପାବତୀ କଟକରେ ରାଜନ ବୋଲାଇ ।
ଏ ଜନ୍ମରେ ସ୍ୱର୍ଗ ତୋତେ ହୋଇବ ପ୍ରାପତ
ଦଶରଥ ଘରେ ଜାତ ହୋଇବେ ଅଚ୍ୟୁତ ।
ଚତୁର୍ଦ୍ଧା ମୂର୍ତ୍ତି ଧରିଣ ପ୍ରଭୁ ଜାତ ହେବେ
ଏଗାର ସସ୍ରବର୍ଷରେ ତୋତେ ସଙ୍ଗରେ ଘେନିଯିବେ ।
ଅଚିନ୍ତା ବୈକୁଣ୍ଠ ପୁରେ ରହିବୁ ଯାଇ ପୁଣ
ବନ୍ଦହେବ ତୋହର ଯୋନିଜନ୍ମ ପୁଣ ।
ଏ ଜନ୍ମରେ ନାରାୟଣ ସୁଦୟା ତୋତେ କରି
ନାରାୟଣଙ୍କ ନାମ ଜପ ହୃଦେ ଧରି ।
ତୋଠାରୁ ସୁରରାଜା କ୍ରୋଧ ତେବେ ଯିବ
ଅନନ୍ତ ବାସୁଦେବ ଯେ ସୁଦୟା ତୋତେ ହେବ ।
ଶୁଣିଣ ଲୋପମାଦ ସନ୍ତୋଷମନେ ହେଲା
ଦୁର୍ବାସା ଋଷି ଚରଣେ ଯାଇଣ ନମିଲା ।
ଅନେକ ଧନରତ୍ନ ଦେଲା ଯେ ଆଣି ପୁଣ
ଯହୁଁ ସେ ସଦ୍‌ଜ୍ଞାନ କହିଲେ ମୁନି ଜାଣ ।
ସକଳ ଋଷିଙ୍କି ଅନେକ ଧନରତ୍ନ ଦେଲା
ଚରଣେ ନମିଣ ଯେ ବିନୟ ଭାବ ହେଲା ।
ରାଜାମାନଙ୍କୁ ମେଲାଣି ସମ୍ଭର୍ବରେ କଲା
ମୁକୁଟ କୁଣ୍ଡଳ ଯେ ଧନ ରତ୍ନ ଦେଲା ।
ରାଜାମାନଙ୍କର ଯେତେ ବଳ ଥିଲେ
ସମସ୍ତେ ମେଲାଣି ହୋଇଲେ ସନ୍ତୋଷରେ ।
ଦୁଃଖୀ ଦରିଦ୍ରଙ୍କୁ ତହୁଁ ଅନ୍ନ ବସ୍ତ୍ର ଦେଲା
ମାଗନ୍ତା ଲୋକମାନଙ୍କର ଯେ ମନତୋଷ କଲା ।
ପାତ୍ର ମନ୍ତ୍ରୀ ଅମନାତ୍ୟ ସମସ୍ତେ ଯେତେ ଥିଲେ
ସେମାନଙ୍କୁ ଧନରତ୍ନ ଦେଲେ ନୃପବରେ ।
ନଟକାରୀ ନୃତ୍ୟକାରୀ ଯେତେକ ଥିଲେ ତହିଁ
ସମସ୍ତଙ୍କୁ ରାଜା ଯେ ସନ୍ତୋଷ କରାଇ ।

ବନ୍ଧୁ ବର୍ଗ ଯେତେକ ଆସିଲେ ପୁଣ
ସମସ୍ତେ ସନ୍ତୋଷ ହେଲେ ସମ୍ମାନ ପାଇଣ ।
ବ୍ରାହ୍ମଣ ଯେ ଦୁଇଲକ୍ଷ ରୁଣ୍ଡ ହୋଇଥିଲେ
ସମସ୍ତେ ମେଲାଣି ହେବାର ସେ ବିପ୍ରେ ଦେଖିଲେ ।
କିଛି ହିଁ ନ ଦେଖିଣ ନିବର୍ତ୍ତି ହୋଇ ରହି
ପାତ୍ରର ମନେ ନାହିଁ ରାଜାହିଁ ପାଶୋରଇ ।
ଯେଉଁ ବ୍ରାହ୍ମଣମାନେ ଆପେ ଯେ ମେଲାଣି
ସେମାନଙ୍କ କଥା ଯେ ପାଶୋରେ ନୃପମଣି
ଦ୍ୱିଜବରମାନେ ଯେ ମନରେ କ୍ରୋଧ ହେଲେ
କିସ କରିବ ରାଜା ବୋଲି ମନେ ବିଚାରିଲେ ।
ନିଶ୍ଚୟ ଶାପ ଦେଇଣ ଯିବା ନିଜ ପୁର
ଏତେ ବୋଲି ବିଚାର କଲେକ ବିପ୍ରବର ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣଗୋ ଭଗବତୀ
ସବୁରାଜା ମିଳି ଲୋମପାଦଙ୍କୁ କହନ୍ତି ।
ତୁମ୍ଭ ରାଜ୍ୟେ ଆଦିତ୍ୟ ଚଣ୍ଡାଳ ଘରେ ପୁଣ
ପଦ୍ମିନୀ କନ୍ୟା ଜାତ ଦେଖିବା ତାକୁ ଆଣ ।
ଶୁଣିଣ ଲୋମପାଦ ଡକାଏ ମାହାରକୁ
ରାଜାମାନେ ଦେଖିବେ ଆଣ ତା ଦୁହିତାକୁ ।
ଋଷିମାନେ ଦେଖିବେ ଦେଖନ୍ତୁ ପାତ୍ରମନ୍ତ୍ରୀ
ଶୁଣିଣ ଚଣ୍ଡାଳ ଯେ ଚଳିଲା ଝଟତି ।
ଆପଣାର ଗୃହରେ ପ୍ରବେଶ ଯାଇ ହେଲା
ଆପଣାର କୁମାରୀକି ବେଶ କରାଇଲା ।
ଘେନିଣ ଅଇଲା ସବୁରାଜାଙ୍କର କତି
ଘେନିଣ ସକଳରାଜା ହେଲେ ତୋଷମତି ।
ପାତ୍ର ମନ୍ତ୍ରୀ ଦେଖିଣ ହରଷ ମନ ହେଲେ
ସୈନ୍ୟବଳ ଆଚମ୍ଭିତ ମନେ ସୁମରିଲେ ।
ଋଷିମାନେ ଦେଖିଣ ବିଚାରକଲେ ମନେ
ଦେବକନ୍ୟାଜାତହେଲା ଚଣ୍ଡାଳ ଘରେ କେମ୍ନେ ।
କାଳେତ ଏହୁ ନର ଲଭିବ ଦେବଆଳ
ଏତେ ବୋଲିଣ ବିଚାର କରନ୍ତି ସକଳ ।
ନୃପତିମାନେ ବୋଇଲେ ଚାଲୁ ଯେ ପଥରେ
ଅବେଷ୍ଟ ପଦ୍ମ କେମନ୍ତେ ଫୁଟଇ ପାଦରେ ।
ଶୁଣିଣ ଚଣ୍ଡାଳ ଯେ ଆଗରେ ପନ୍ଥାଦେଖି
ଝିଅର ହସ୍ତଧରି ନେଲା ଯେ ତହିଁକି ।
ଚାଲନ୍ତେ ଅବେଷ୍ଟ ପଦ୍ମ ଫୁଟଇ ପାଦରେ
ଦେଖିଣ ସମସ୍ତରାଜା ହେଲେ ଚମତ୍କାରେ ।
ଚଣ୍ଡାଳକୁ ଚାହିଁଣ ନୃପତି ପଚାରିଲେ
ଜାତିରେ ଦେବୁକିକନ୍ୟା ବୋଲିଣବୋଇଲେ ।

ଚଣ୍ଡାଳ ବୋଇଲା ମୁଁ ଯେ କରିଅଛି ସତ୍ୟ
ଜାତିରେ ନଦେବି କନ୍ୟା ବଡ଼ଲୋକକୁପ୍ରାପତ ।
ଋଷି ବ୍ରାହ୍ମଣେ ଅବା ଦେବତା ରାଜାଗଣ
ସାମନ୍ତ ପାତ୍ରମନ୍ତ୍ରୀ ଯେ ଭଦ୍ରଲୋକ ଜାଣ ।
ଏମାନଙ୍କ ମନଥିଲେ ନେବେ ଦୁହିତା
ଜାତିକି ଯାହାଙ୍କର ମନରେ ନାହିଁ ଚିନ୍ତା ।
ଯେହୁ ତ ନେବ ସେହୁ ଜାତି କୁଳରେ ରହିବ
ବେଚାଳ ହେଲେ ସେହୁ ସତ୍ୟକୁ ଲଙ୍ଘିବ ।
ଶୁଣିକରି ସମସ୍ତଙ୍କ ମନ ତୁଟିଗଲା
ଋଷିମାନେ ଚଳିଲେ ଯେ ଯାହା ସ୍ଥାନେ ପଶା ।
ରାଜାମାନେ ପାତ୍ର ମନ୍ତ୍ରୀ ବନ୍ଧୁମାନେ ଗଲେ
ଯେ ଯାହାନବରରେ ଯାଇ ପ୍ରବେଶହୋଇଲେ
ଭାଜିଲା ଚହଳ ଯେ ଚମ୍ପାବତୀ ପୁରୁ
ବିପ୍ରମାନେ ବିଚାରିଲେ ସମସ୍ତେ ଯିବାରୁ ।
ରାଜାମାନଙ୍କୁ କହିଲେ ଯାଇ ପୁଣ
ସମସ୍ତେ ମେଲାଣି ହେଲେ ଶୁଣ ହେ ରାଜନ ।
ରାଜା ପାତ୍ର ମନ୍ତ୍ରୀ ଯେ ସାମନ୍ତ ଋଷିଗଣ
ଦୁଃଖୀ ଦରିଦ୍ର ଯେ ମାଗନ୍ତା ଲୋକମାନ ।
ନୃତ୍ୟକାରୀ ନଟକାରୀ ମାଗନ୍ତା ସର୍ବଜନ
ସମସ୍ତେ ଧନରତ୍ନ ନେଲେ ଯେ ସନ୍ତୋଷେଣ ।
ତୋହରଦ୍ୱାରରେସିନା ବ୍ରାହ୍ମଣେ ଦୋଷୀ ହେଲୁ
ତୁହିତ ବ୍ରାହ୍ମଣଙ୍କୁ ବରଣ କରିଥିଲୁ ।
ଆଗ ସିନା ଆମ୍ଭଙ୍କୁ କରନ୍ତୁ ସନ୍ତୋଷ
ଆମ୍ଭଠାରେ ଗର୍ବ ତୁହି ବହିଲୁ ନରଈଶ ।
ବେଦେ ନିଶ୍ଚେ ବ୍ରାହ୍ମଣ ଦେବତା ସୃଷ୍ଟିଜାଣ
ଚନ୍ଦ୍ର, ସୂର୍ଯ୍ୟ, ଆତଯାତ ଯେବେ ହୋନ୍ତିଜାଣ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତ୍ରିଦଶ ଦେବତା
ସତେଯେବେ ଧରଣୀ ଧରିଛି ନାଗମାତା ।
ବେଦ ବିଦ୍ୟା ସଂସାରେ ଅଟଇ ଯେ ସାର
ଆମ୍ଭର ଶାପ ଏବେ ଘେନ ନୃପବର
ବାରବର୍ଷ ପରିଯନ୍ତେ ତୋହର ରାଜ୍ୟେପୁଣ
ଇନ୍ଦ୍ର ନ ପାଳିବ ତୁ କାଙ୍ଗାଳ ହେବୁ ପୁଣ ।
ଆମ୍ଭର ଶାପ ତୋତେ ହେଉରେ ପ୍ରାପତ
ଅସ୍ତୁ ହେଉ ବୋଲି ବିପ୍ରେ କହିଲେ ତୁରିତ ।
ଏତେକହି ବିପ୍ରବର ଦୁଃଖେ ଚଳିଗଲେ
ଶୁଣିକରି ଲୋମପାଦ ତାଟକା ହୋଇଲେ ।
ପାତ୍ର ମନ୍ତ୍ରୀଙ୍କି ପଚାରେ ଏକଥା କେମନ୍ତ
ବିପ୍ରବର ମେଲାଣିକି ନୋହିଲେ ଆଗତ ।

ପାତ୍ର ମନ୍ତ୍ରୀ ବୋଇଲେ ଆମ୍ଭର ମନେ ନାହିଁ
ଜଞ୍ଜାଳରେ ରହିଲି ରାଜାଙ୍କ ପାଶେ ମୁହିଁ ।
ଲୋମପାଦ ବୋଇଲେ ମୋ ଧର୍ମ ନାଶଗଲା
ରାଜ୍ୟ ଏବେ ବ୍ରାହ୍ମଣଙ୍କ ଶାପରେ ସରିଲା ।
ଏତେ ବୋଲି ରାଜନ ଯେ ଚଳିଗଲା ଖର
ବ୍ରାହ୍ମଣଙ୍କୁ ଓଳଗିଲେ ନ୍ୟୂନ ପ୍ରକାର ।
ଦନ୍ତରେ ତିରଣ ଯେ ଗଳାରେ କୁଠାର
ବିପ୍ରଙ୍କର ଚରଣେ ନମିଲା ନୃପବର ।
ବୋଇଲାକ ଦୋଷ ମୋର କ୍ଷମାକର ଏବେ
ଏତେ କହି ପ୍ରାର୍ଥନା କରଇ ଲୋମପାଦେ ।
ବିପ୍ରବର ବୋଇଲେ ଶୁଣ ତୁ ମହୀପାଳ
ଆମ୍ଭର ଶାପଟି ତୋତେ ଫଳିବୁ ନିକର ।
ବାରବର୍ଷ ପ୍ରାନ୍ତେ ଯେବେ ଆଣିବୁ ଋଷ୍ୟଶୃଙ୍ଗ
ସେ ଅଇଲେ ତୋରରାଜ୍ୟେ ବରଷିବ ମେଘ ।
ରାଜନ ବୋଇଲେ ସେ ଯେ କାହାର କୁମର
ଦ୍ଵିଜବର ବୋଇଲେ ବିଭାଣ୍ଡକ ମୁନିବର ।
କୌଶିକ ନଦୀ ତୀରରେ ତାଙ୍କର ଆଶ୍ରମ
ତାଙ୍କର କୁମର ଋଷ୍ୟଶୃଙ୍ଗ ନାମ ଜାଣ ।
ବାରବରଷର ଅନ୍ତେ ଆଣ ତାଙ୍କୁ ଯାଇଁ
ଆରତ ହୋଇଲେ କିଛି ନୋହିବ ନରସାଇଁ
ସେ ଆସିଲେ ଜଳବୃଷ୍ଟି ପୃଥ୍ୱୀତୋର ହେବ
କୁଳଧର୍ମକୁ ତୋହର ସେ ଋଷି ରଖିବ ।
ଶୁଣିଣ ଲୋମପାଦ ମନ୍ତ୍ରୀଙ୍କି ଆଜ୍ଞାଦେଲା
ବେଗେଣ ଧନ ଅଣାଅ ବୋଲିଣ ବୋଇଲା
ବେଗେ ଧନ ଅଣାଇ ରାଜନ ବିପ୍ରେ ଦେଲା
ସନ୍ତୋଷ କରାଇଣ ସେ ବିପ୍ରଙ୍କୁ କହିଲା ।
ଧନପାଇ ବିପ୍ରବର ସନ୍ତୋଷ ହୋଇଗଲେ
ଯେ ଯାହା ଆଶ୍ରମରେ ଯାଇଣ ମିଳିଲେ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣଗୋ ଭଗବତୀ
ସମସ୍ତେ ଗଲେ ରହିଲା ଅଯୋଧ୍ୟା ନୃପତି ।
ଲୋମପାଦ ବୋଇଲେ ଶୁଣ ଆହେ ମଇତ୍ର
ବିଧାତା ଯେ ବାମ ମୋତେ ହୋଇଲା ନିୟତ ।
ମୋର କର୍ମ ବାମଯେ ଦେବତା ମୋରେ ବାଦୀ
ବିପ୍ରେ ମୋତେ ଶାପ ଦେଲେ ମୋ ଧର୍ମକୁ ନିନ୍ଦି ।
ବାରବର୍ଷ ପର୍ଯ୍ୟନ୍ତେ ଯେ ନାହିଁ ଜଳବୃଷ୍ଟି
କେମନ୍ତେ ବଞ୍ଚିବେ ପ୍ରଜା ନାଶଗଲି ମୁଁ ଟି ।
ଦଶରଥ ବୋଇଲେ ଯେ ଶୁଣ ହେ ମଇତ୍ର
ଦେବ ଲେଖନ କଥା କେ କରେ ଆନତ ।

ବିପ୍ରଙ୍କ ତୁଣ୍ଡରୁ ଯେ ମୁଁ ଶୁଣିଲି ସାର
ବିଭାଣ୍ଡକ କୁମର ଆସିବେ ତୁମ୍ଭ ପୁର ।
ଋଷ୍ୟଶୃଙ୍ଗ ଆସିଲେ ତୁମ୍ଭର ନଗ୍ର ଶାନ୍ତି ହେବ
ଜଳ ବରଷିବ ଯେ ସନ୍ତାନ ଉପୁଜିବ ।
ବାରବର୍ଷ ସିନା ତୁମ୍ଭେ ପାଇବ କଷ୍ଟ
ତେଣିକି ତୁମ୍ଭର ଯେ ହୋଇବ ସୁଖ ଜାତ ।
ରାଜ୍ୟକୁ ଜାଗ୍ରତ କରି ଫେରାଅ ଧେଣ୍ଡୁରା
କୂପ ବାମ୍ପୀ ପୋଖରୀ ପୁଷ୍କରିଣୀ ଖୋଳା ।
ନଦୀ ସରୋବରମାନ କରନ୍ତୁ ଆକଟ
ଜଳ ଶୂନ୍ୟ ନୋହିବ ବିଚାର କର ତୁତ ।
ଆହାର ଜାଗ୍ରତ କରି ରଖନ୍ତୁ ପ୍ରଜାଗଣ
ଧାନସୁଆଁ ମାଣ୍ଡିଆଚୂନାକୋଦୁଅ ଯେତେଜାଣ ।
କିଣା ବିକା କରିଣ ଆଣନ୍ତୁ ଅନ୍ୟରାଜ୍ୟେ
ଜାଣିବାକୁ ଧେଣ୍ଡୁରା ଫେରାଅ ବେଗେତୁଯେ ।
ଶୁଣିଣ ଲୋମପାଦ ସନ୍ତୋଷ ମନ ହେଲା
ପାତ୍ର ମନ୍ତ୍ରୀଙ୍କି ରାଜନ ବେଗେ ଡକାଇଲା ।
ପାତ୍ର ମନ୍ତ୍ରୀ ଆସିଣ ମିଳିଲେ ଆଗେଣ
ଚାହିଁଣ ତାଙ୍କୁ ଆଜ୍ଞା ଦେଲେକ ରାଜନ ।
ବୋଇଲେ ବିପ୍ରଙ୍କର ଶୁଣିଲ ନିକର
ବାରବର୍ଷ ଅପାଳକ ବୋଲେ ବିପ୍ରବର ।
ସେ କଥାକୁ ବିଚାର କର ହେ ଏବେମନ
ରାଜ୍ୟରେ ଧେଣ୍ଡୁରା ଦିଅ ଆହେ ପୁଣ ।
ଶୁଣିଣ ପାତ୍ର ମନ୍ତ୍ରୀ ବେଗେ ଚଳିଗଲେ
ଚାରି ଦିଗକୁ ଯେ ଚିଟାଉ ଲେଖିଲେ ।
ବିଷୋଇ ମାନଙ୍କୁ ସେ ଦେଲେକ ଖବର
ଭେଦିଲେ ଦୂତମାନେ ଗଲେ ସେ ସତ୍ୱର ।
ଦଶପୁର ପାଟଣା ନଗ୍ର ଯେ କଟକ
ସବୁଠାରେ ଦୂତେ ଯାଇ କଲେକ ଅଟକ ।
ଜାଣିଣ ସମସ୍ତ ପ୍ରଜା ତବଦ ହୋଇଲେ
ଘରେ ଥିବା ଦ୍ରବ୍ୟମାନ ନିଷ୍ଟୁରେ ରଖିଲେ ।
ଧନ ଦ୍ରବ୍ୟ ଘେନି ପର ରାଜ୍ୟକୁ ଗଲେ ଚଳି
ଶଗଡ଼ ବଳଦରେ ଆଣିଲେ ଲଦିକରି ।
ଠାବେ ଠାବେ ଜଳକୁ କଲେକ ବନ୍ଧପୁଣ
ଶୁଭିଲା ଚମ୍ପାବତୀ ରାଜ୍ୟରେ ଘୋଷଣ ।
ରାଜାର ଅନ୍ୟାୟରେ ପ୍ରଜା ଆମ୍ଭେ ମଲୁ
ବ୍ରହ୍ମଶାପେ ଆମ୍ଭେମାନେ ଉଚ୍ଛନ୍ନ ହୋଇଲୁ ।
ଏମନ୍ତ ବିଚାର ଯେ କରନ୍ତି ନରନାରୀ
ଧାନ ଖରିଦ କଲେକ ପରରାଜ୍ୟେ ଫେରି ।

ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଅଯୋଧ୍ୟା ନରେନ୍ଦ୍ର ଯେ କହିଣ ଚଳିଯାନ୍ତି ।
ନିଜ କଟକରେ ଯାଇ ପ୍ରବେଶ ହୋଇଲେ
ଲକ୍ଷଭରଣ ଧାନ ଯେ ରାଜ୍ୟେ ଚାଳିଦେଲେ ।
ଶତେକ ଶାଳକ ଯେ ଲୋମପାଦର ଥିଲେ
ସେମାନେ ଶତେଲକ୍ଷେ ଭରଣଧାନ ଦେଲେ ।
ପ୍ରତିଲୋକମାନେ ଶୁଣିଣ ଧାନ ଦେଲେ
ସକଳ ଧନ ରାଜା ପ୍ରଜାରେ ବାଣ୍ଟି ଦେଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ଛଡମାସ ଏଥିରେ ଗଲାଦିନ ସରି ।
ଚମ୍ପାବତୀ ନଗ୍ରରେ ନ କଲା ବୃଷ୍ଟି ମେଘ
ଆକୁଳେ ପ୍ରଜାନନେ ସମ୍ଭାଳ ସମ୍ପଦ ।
ଦଶରଥର ସୁଭାଗ୍ୟ ହୋଇଲା ଆସିପୁଣ
କଉଶଲ୍ୟା ରାଣୀ ରଜସ୍ୱଳା ହେଲା ଜାଣ ।
ଚାରିଦିନେ ଶୁଦ୍ଧ ସ୍ନାହାନ ରାଣୀ କଲା
ପାଞ୍ଚଦିନେ କୌଶଲ୍ୟା ସୁବେଶ ହୋଇଲା ।
ରଜନୀରେ ସ୍ୱାମୀପାଶେ ହେଲାକ ପ୍ରବେଶ
ଦେଖିଣ ଦଶରଥ ମନରେ ହେଲେ ତୋଷ ।
ହାସ୍ୟରସ ଖେଳ ଯେ କଲେକ ଭିଆଣ
ରାଣୀକି ନେଇ ରାଜା ଧଇଲେ କୋଳେପୁଣ ।
ରଜବୀର୍ଯ୍ୟ ଖସନ୍ତେ ପ୍ରବୋଧ ରାଜା ହୋଇ
ଗର୍ଭସ୍ଥିତ ହେଲେ ରାଣୀ ସେହିଦିନ ଯାଇଁ ।
ରଜନୀ ଶେଷରେ ଦାସୀଗଣ ଆସି ପୁଣ
ରାଣୀକୁ ଘେନିଗଲେ ଅନ୍ତଃପୁରକୁ ଜାଣ ।
ମର୍ଦ୍ଦନ ମାଜଣା ସେ ସାରିଣ ଦାସୀଗଣ ।
ସୁବାସିତ ଜଳରେ କଲେକ ସ୍ନାହାନ ।
ଷଡ଼ରସେ ଭୋଜନ ରାଣିକି କରାଇଲେ ।
ରତ୍ନପଲଙ୍କ ଉପରେ ନେଇ ଶୁଆଇଲେ ।
କର୍ପୂର, ତାମ୍ବୁଳ ଭୁଞ୍ଜାଇଲେ ଦାସୀଗଣ
ଏମନ୍ତେ ଗଲା ତହିଁ ବେନିମାସ ପୁଣ ।
ପଞ୍ଚମାସ ହୋଇଲା ତହୁଁ ଦିନ ଜାଣ
ରାଜାର ଆଗରେ ସେ କହିଲେ ଦାସୀଗଣ ।
ବୋଇଲେ କୌଶଲ୍ୟା ରାଣୀ ଯେ ଗର୍ଭହୋଇ
ଆଜକୁ ପାଞ୍ଚମାସ ଶୁଣହେ ନରସାଇଁ ।
ଶୁଣିଣ ରାଜନ ଯେ ପରମ ତୋଷ ହେଲେ
ବଧାଇ ଅଣାଇଣ ଦାସୀଙ୍କି ରାଜା ଦେଲେ ।

ଏମନ୍ତେ ଅଷ୍ଟମାସ ହୋଇଲା ଆସି ପୁଣ
ଗର୍ଭଦାନ ନିମନ୍ତେ ବିଚାର କଲେକ ରାଜନ ।
ସାମନ୍ତ ପାତ୍ର ମନ୍ତ୍ରୀ ଡକାଇ ଅଣାଇଲା ।
ବଶିଷ୍ଠଙ୍କୁ କହିଣ ଋଷିଙ୍କି ଅଣାଇଲା ।
ବିପ୍ରମାନଙ୍କୁ ବରିଣ ଆଣିଲା ରାଜନ
ଦାନ ପୁଣ୍ୟ କଲା ଯେ ଅନେକ ଧନରତ୍ନ ।
ଋଷି ବ୍ରାହ୍ମଣରେ ଅନେକ ଧନ ଦେଲା
ସମସ୍ତଙ୍କୁ ସନ୍ତୋଷ ରାଜନ କରାଇଲା ।
ଏଥୁ ଅନନ୍ତରେ ଶୁଣ ଗୋ ଗଉରୀ
ଦଶମାସ ସମ୍ପୂର୍ଣ୍ଣ ହୋଇଲା ଆସିକରି ।
ପେଟ ବଥାଇଣ ଯେ ଶୂଳ ତୋଳାଇଲା
ଦୁହିତା ଗୋଟିଏ ଯେ ପୁଣ ତହିଁ ହେଲା ।
ରାଜାର ଆଗରେ ଯାଇ ଦାସୀଗଣେ କହି
ରାଣୀ ଗର୍ଭୁ ଦୁହିତା ଗୋଟିଏ ଜନ୍ମ ହୋଇ ।
ଶୁଣିଣ ରାଜନ ଯେ ସନ୍ତୋଷମନ ହେଲେ
ଦାସୀମାନଙ୍କୁ ବଧାଇ ଉପହାର ଦେଲେ ।
ପଞ୍ଚୁଆତି ଷଠିଘର ଉଠିଆରି ସାରି
ବାର ଯାତ୍ରା କରନ୍ତେ ସ୍ନାନ ଯାଇକରି ।
ନାମ ବର୍ଣ୍ଣ କରିବାକୁ ରାଜା ବିଚାରିଲେ
ବଶିଷ୍ଠଙ୍କୁ କହିଣ ଋଷିଙ୍କି ଅଣାଇଲେ ।
ମନ୍ତ୍ରିଙ୍କି କହିଣ ଅଣାଇଲେ ବନ୍ଧୁଜନ ।
କଶ୍ୟପଙ୍କୁ କହିଣ ଅଣାଏ ବିପ୍ରଗଣ ।
ମାସକ ସମ୍ପୂର୍ଣ୍ଣ ଅନ୍ତେ ଦିନେକ ମିଳି
ଚାରିବେଦ ଉଚ୍ଚାରଣ ଋଷି ବ୍ରାହ୍ମଣେ କରି ।
ପବିତ୍ର ହୋମ ସେଠାରେ କଲେ ଶୁଆଇଣ ।
ହୋମ ବିଧି ସାରିଣ ସକଳ ଋଷି ପୁଣ
ଦୁହିତାର ନାମ ଯେ କଲେକ ଉଚ୍ଚାରଣ ।
ସର୍ବାଙ୍ଗ ସୁନ୍ଦରୀ ଯେ ଦେଖିଲେ କୁମାରୀର
ଚିତ୍ରାଏଣି ରୂପ ପରାଏ ଅଟଇ ସୁନ୍ଦର
ଋଷିମାନେ ବିଚାରିଲେ ଏକଥା ସୁନ୍ଦର
ରଜାଘରେ ଏ କନ୍ୟା ଜନ୍ମିବ ମୁନିବର ।
ପଦ୍ମିନୀ ଅଂଶେ ଜାତ ନାହିଁ ଯେ ଏହାର
ନିଶ୍ଚୟ ବିପ୍ରକୁ ଏ ଲଭିବ ନାରୀବର ।
ଏମନ୍ତ ବିଚାର ଯେ ମୁନିମାନେ କଲେ
ମୁଖଗୋଟି ଚନ୍ଦ୍ରମା ଆକାର ଦେଖିଲେ ।
ବୋଇଲେ ଏ କନ୍ୟାନାମ ସାଆନ୍ତାହେଉପୁଣ
ଶଶିଧର ପ୍ରାୟେ ଯାର ମୁଖ ଦିଶେ ଜାଣ ।

ବିଷ୍ଣୁ ଋଷି ମିଳି ନାମ ଦେଲେକ ଏହାର
ଅନ୍ତଃପୁରେ ସର୍ବେ ଯେ ହୋଇଲେ ବାହାର ।
ରାଜନ ହରଷରେ ମେଲାଣି ବେଗେ ଦେଲା
ଧନ ରତ୍ନ ଦେଇଣ ସନ୍ତୋଷ କରାଇଲା ।
ବନ୍ଧୁ ବର୍ଗ ରାଜନର ଯେତେକ ଆସିଥିଲେ
ସମସ୍ତେ ସନ୍ତୋଷରେ ଯେ ଯାହା ପୁରଗଲେ ।
କୌଶିକ ରାଜାପୁତ୍ର ଅଳଙ୍କାର ଆଣିଥିଲା
କନ୍ୟାର ଅଙ୍ଗରେ ମଣ୍ଡିଣ ସେହୁ କଲା ।
ଲୋମପାଦ ରାଜା ଯେ ଦେଲେ ଉପହାର
ସମସ୍ତଙ୍କଠାରେ ସ୍ନେହ ଦଶରଥ ରାଜାଙ୍କର ।
ଅନେକ ଭାଷାମାନ ଯେ ଲୋମପାଦଙ୍କୁ କହି
ମେଲାଣି ହୋଇଣ ଯେ ନିଜପୁରକୁ ଯାଇ ।
ଏଥୁ ଅନନ୍ତରେ ଶୁଣଗୋ ଶାକମ୍ଭରୀ
ଦିନକୁ ଦିନ କୁମାରୀ ବଢ଼ିଲେ ଶଶୀପରି ।
ପାଞ୍ଚ ବରଷ ଯାଇଣ ସପ୍ତ ବରଷ ହେଲା
ବିଦ୍ୟାପଢ଼ି କୁମାରୀ ସୁଜାଣ ହୋଇଲା ।
ସକଳ ମାତାଙ୍କ ପୁରେ ବିହରେ ଦୁହିତା
ସକଳ ମାତାଙ୍କର ତାଠାରେ ସୁରତା ।
ତୋଳାଦୁଲା କୁମାରୀ ସେ ଏକଇ ଦୁହିତା
ନୃତ୍ୟ ରଙ୍ଗ ଗୀତ ଯେ କରଇ ଦୁହିତା ।
ନବବର୍ଷ ଆସିଣ ହେଲା ତାକୁ ପୁଣ
କୋମଳ ବିକଶିତ ହୋଇଲା ହୃଦରେଣ ।
ରଜସ୍ୱଳା ହୋଇଲା ଯେ ସୁଯୋଗର ବେଳେ
ଦାସୀମାନେ କହିଲେ ଯେ ରାଜନ ଆଗରେ ।
ଦୁହିତା ନିମନ୍ତେ କର ବର ହେ ଘଟଣ
ଶୁଣିକରି ରାଜନ ଚିନ୍ତାରେ ମଗନ ।
ଏଥୁ ଅନନ୍ତରେ ଶୁଣଗୋ ଶାକମ୍ଭରୀ
ଲୋମପାଦ ରାଜା ଗଲେ ଯେ ଶଙ୍ଖୋଳି ।
ଅଯୋଧ୍ୟା କଟକରେ ପ୍ରବେଶ ଯାଇ ହେଲା
ଦଶରଥଙ୍କୁ ଦେଖିଣ ମାନ୍ୟଧର୍ମ କଲା ।
ବୋଇଲା ବିପତ୍ତି ମୋତେ ହୋଇଲାକ ବଡ଼
ଜଳ ଆହାର ନିମନ୍ତେ ପ୍ରଜାମରେ ମୋର ।
କି କରିବି ବୁଦ୍ଧି ମୋତେ ନ ଦିଶଇ ପୁଣ
ଏତେ ବୋଲି ରାଜନ ଯେ କଲେକ ରୋଦନ ।
ଦଶରଥ ବୋଧିଲେ ଯେ ଶାନ୍ତିକଥା କହି
ସମସ୍ତଙ୍କୁ ଦୁଃଖ ଶୋକ ଲାଗଇ ଦେହବହି ।
ଶରୀର ବହିଲେ ବିପତ୍ତି ହୋଏ ଜାଣ
ରାଜ୍ୟରେ ରାଜା ହେଲେ ଶୁଭଇ ଦୂଷଣ ।
ଦେବତାମାନେ ଯେଣୁ ବଡ଼ ସେ ବୋଲନ୍ତି
ଅମର ପୁରେ ଥାଇ ଗର୍ବ ସେ କରନ୍ତି ।
ତାଂହାଙ୍କୁ ଦଣ୍ଡ ଯେ ପଡ଼ଇ ପୁଣ ଜାଣ
ଅସୁରେ ଧ୍ୱଂସନ୍ତି ତାଙ୍କର ପୁରମାନ ।
ବାସୁଦେବଙ୍କୁ ସେମାନେ ସୁମରଣା କଲେ
ନାରାୟଣ ସୁଦୟାରେ ଦୁଃଖଯାଏ ଦୂରେ ।
ଏବେ ଦଶମୁଖା ରାବଣ ତାକୁ ବାଦୀ
ସବୁ ଦେବତାଙ୍କୁ ଧରିଣ ଅସୁର ବୁଦ୍ଧି ।
ସେବାକାରୀ ପରିରେ ନେଇ ପାଶରେ ଖଟାଏ
ଧରିଣ ଅନେକ ଶାସ୍ତି ଅସୁର ରାଏ ଦିଏ ।
ବାସୁଦେବଙ୍କୁ ସୁମରଣା କରୁଛନ୍ତି ନିତି
ବାସୁଦେବ ଜନ୍ମହେଲେ ଅସୁର ନିପାତି ।
ଅସୁର କୁଳକୁ ଦେବ କରିବେ ପୁଣ ନାଶ
ନାରାୟଣ ପୁରୁଷ ସେ ସବୁରି ବିଶ୍ୱାସ ।
ମାନବରୂପେ ଅବତାର ହେବେ ଜାଣ
ତେବେ ସେ ସକଳ ଦୁଷ୍ଟ ନାଶହେବେ ପୁଣ ।
ଚିନ୍ତା ନକର ଯେ ଅଳପ ଦିନକୁ
ତିନିବର୍ଷ କଷ୍ଟ ସହ ହେ ଦେହକୁ ।
ତୁମ୍ଭର ଦୁଃଖକୁ ମୋର ଦୁଃଖ ବଳି
ଦୂଲଣା ଗୋଟିଏ ଯେ ହୋଇଲା ମୋହରି ।
ସେ ଦୁହିତା ନବଯୁବା ଯେ ଏବେ ହେଲା
ଉତ୍ତମ ସ୍ଥାନେ ବର ଘଟଣ ନୋହିଲା ।
ଋଷିମାନେ ଦେଖିଣ କହିଲେ ମୋତେ ପୁଣ
ଦୁହିତାକୁ ମୁନିଙ୍କି କରିବୁ ସମର୍ପଣ ।
କେଉଁ ମୁନି ବରିବ ନ ଗଲା ଜଣା ମୋତେ
ସେ କଥାକୁ ସୁମରି ଭାଳଇ ମୋର ଚିତ୍ତେ ।
ଶୋଣିତ ରୋଗମୋଦେହ କଲେ ପିତୃମୋର
ଧର୍ମରେ ହାନି ମୁଁ ହୋଇଛି ନୃପବର ।
ଏମନ୍ତ ଭାଳିବାରେ ଚିନ୍ତା ଯେ ମୋର ମନ
କି ବୁଦ୍ଧି କରିବି ଯେ ନସରେ ଦିନଜାଣ ।
ଲୋମପାଦ ବୋଇଲେ କଥାଏ ଏବେ କର
ମୋହର ପୁତ୍ର ଦୁହିତା ନାହିଁ ହେ ନୃପବର ।
ଏକଆତ୍ମା ବେନିଜନ ଭିନ୍ନ ଭିନ୍ନ ନାହିଁ
କିଛିଦିନ ମୋରପୁରେ ଦୁହିତା ନେବି ମୁହିଁ ।

ଦୁହିତାକୁ ରାଣୀହଂସ ଦେଖିବଟି ପୁଣ
ମନରେ ସନ୍ତୋଷ ଯେ ହୋଇବ ତୁମ୍ଭେଜାଣ ।
ରାଜ୍ୟ ଭଲମନ୍ଦ ପାଶୋରି ମୋର ଯାଉ
ରାଣୀହଂସ ମାନଙ୍କର ମନରେ ସୁଖହେଉ ।
ଶୁଣିକରି ଦଶରଥ ମନରେ ସନ୍ତୋଷ ହେଲେ
ରାଣୀହଂସ ପୁରରେ ପଚାରଇ ବୋଇଲେ ।
ଏତେ ବିଚାରି ରାଜନ ବାହାରି ଚଳିଗଲେ
ଭିତରପୁରେ ଯାଇ ପ୍ରବେଶ ରାଜାହେଲେ ।
ସକଳ ରାଣୀକି ଯେ ଡକାଇ ନୃପବର
କୌଶଲ୍ୟା କୈକୟୀ ସୁମିତ୍ରା ସଙ୍ଗତର ।
ବୋଇଲା ସକଳ ଯେ ରାଣୀ ହଂସ ଶୁଣ
ଲୋମପାଦ ରାଜା ଯେ ମୋର ମୈତ୍ର ଜାଣ ।
ବ୍ରାହ୍ମଣ ଶାପରେ ଯେ ଚମ୍ପାବତୀ ପୁର
ଇନ୍ଦ୍ରବୃଷ୍ଟି ନକରିବାରୁ ସମସ୍ତେ ବିକଳ ।
ଆମ୍ଭଙ୍କୁ ଶଙ୍ଖୋଳା ନିମନ୍ତେ ମୈତ୍ର ଏଥେଆସି
ଚିନ୍ତାଭରେ ମୈତ୍ର ନେତ୍ରରେ ଲୋତକଟି
ଅନେକ କାରୁଣ୍ୟ ଯେ ମୋହର ଆଗେକରେ
ଧର୍ମଙ୍କୁ ଅନାଇ ଯେ ମୁଁ ନିବର୍ତ୍ତ କଲି ତାରେ ।
ନିବର୍ତ୍ତ ହୋଇଣ ସେ ଯେ କହିଲା ମୋତେ ପୁଣ
ବୋଇଲେ ଦୁହିତାକୁ ନେବି ମୋ ଭୁବନ ।
ଦେଖିଲେ ରାଣୀ ହଂସ ପାଇବେ ସୁଖମୋର ।
ମୋରଦିନ ସରିବ ହେ ଶୁଣ ନୃପବର ।
ତୁମ୍ଭର ମୋହର ତନୁ ନୁହଇ ବେଗଳ
ଏତେବୋଲି ପ୍ରାର୍ଥନା କରଇ ମୈତ୍ର ମୋର ।
ଶୁଣିଣ ରାଣୀହଂସ ଆନନ୍ଦମନ ହେଲେ
ତୁମ୍ଭଙ୍କୁ ଯୋଗାଇଲେ ଯାଉ ଯେ ବୋଇଲେ ।
ରାଜନ ବୋଇଲେ ଗଲେ ସେ କାର୍ଯ୍ୟ ବଡ଼ଭଲେ
ତିନିବର୍ଷ ଗଲେ ଆସିବେ ମୁନିବରେ ।
ବିଭାଣ୍ଡକ କୁମର ଯେ ଋଷ୍ୟଶୃଙ୍ଗ ଜାଣ
ଚମ୍ପାବତୀ ନଗ୍ରକୁ ଆସିବେ ଋଷି ପୁଣ ।
ଜଳ ବୃଷ୍ଟି କରିବେ ରାଜାର ହେବ ସନ୍ତାନ
ଶୁଣିଣ ରାଣୀ ହଂସ କହନ୍ତି ବଚନ ।
ତୁମ୍ଭଙ୍କୁ ସେ କଥା କହି ରୂପେ ଜଣାଗଲା
ଦଶରଥ ବୋଇଲେ ଯେ ବ୍ରାହ୍ମଣେ କହିଲା ।
ରାଣୀହଂସ ବୋଇଲେ ବ୍ରାହ୍ମଣେ ଶାପଦେଲେ
ଶାପଦେଇ କିମ୍ପା ସୁଦୟା ବିପ୍ରେକଲେ ।

ରାଜନ ବୋଇଲେ ଦ୍ୱିଜଙ୍କୁ ଯଜ୍ଞରେ ବରେରାଜା
ଯଜ୍ଞ ସରନ୍ତେ ରାଜନ ନ କଲେ ତାଙ୍କୁ ପୂଜା ।
ସେହି ଅବିଗୁଣ ଧରି ବିପ୍ରେଶାପ ଦେଲେ
ବାର ବରଷ ଇନ୍ଦ୍ର ଯେ ନ ପାଳୁ ବୋଇଲେ
ଶାପ ଦେଇ ବିପ୍ର ଯେ ଚଳିଲେ ନିଜପୁର
ଗୋଡାଇ ତାଙ୍କୁ ଆଗେ ଓଗାଳି ନୃପବର ।
ଧନରତ୍ନ ଦେଇଣ ଯେ ବିନୟୀ ହୋଇଲେ
ସୁଦୟାକର ବୋଲିଣ ଚରଣେ ନମିଲେ ।
ରାଜାର ନିଉନଭାବ ଦେଖି ମୁନିବର
ବୋଇଲେ ରାଜନ ହେ ଶାପ ନୁହେ ଦୂର ।
ଅବଶ୍ୟ ଅପାଳକ ଏରାଜ୍ୟରେ ତୋର ହେବ
ଋଷ୍ୟଶୃଙ୍ଗ ଆସିଲେ ଯେ ବରଷା କରିବ ।
ସନ୍ତାନ ହେବତୋର ଋଷ୍ୟଶୃଙ୍ଗ ଦେଲେଚରୁ
ଏତେକ କହିଣ ବିପ୍ର ଗଲେକ ସେଠାରୁ ।
ଶୁଣିଣ ରାଜନ ଯେ ଚିନ୍ତାଭରେ ଗଲା
ସକଳ ପ୍ରଜାଙ୍କୁ ପୁଣ ଯାଇଣ କହିଲା ।
ନବମ ବରଷ ଆଜ ସରିକି ଗୋ ପୁଣ
ଜଳବୃଷ୍ଟି ନହେଲା ମୋହର ରାଜ୍ୟେଜାଣ ।
ମୋର ସଙ୍ଗେ ମଇତ୍ର ଆଗହୁଁ ହୋଇଥିଲେ
ଅନେକ ଯତନରେ ପ୍ରୀତିଭାବ କଲେ ।
ପୁତ୍ର ପୌତ୍ରୀ ଯେ ନଥିବାରୁ ତାଙ୍କର
ଆମ୍ଭ ଦୁହିତାକୁ ପାଳିବେ ତାଙ୍କର ବିଚାର ।
ଶୁଣିକରି ରାଣୀମାନେ ବୋଇଲେ ଏବେଯାଉ
ସେ ରାଜାର ଚିନ୍ତା ଯେ ମନରୁ ଦୂରହେଉ ।
ଲୀଳାବତୀ ବୋଇଲେ ନୁହଇ ଏ ବେଭାର
ସୁମରିବା ନାରଦ ଆସନ୍ତୁ ଆମ୍ଭପୁର ।
ଏତେବୋଲି ବ୍ରହ୍ମସୁତ ସୁମରିଲେ ଗୀତେ
ଜାଣିଣ ନାରଦ ମୁନି ଅଇଲେ ତୁରିତେ ।
ନାରଦଙ୍କୁ ଦେଖିଣ ରାଜନ ଚଳିଗଲା ।
କରଯୋଡ଼ି ଆଗରେ ଯାଇଣ ଛିଡ଼ାହେଲା ।
ସକଳରାଣୀମାନେ ପାଦେ ଆସି ପଡ଼ି
ସୁକଲ୍ୟାଣ କରନ୍ତି ନାରଦ ତପଶାଳୀ ।
ନାରଦ ବୋଇଲେ ତୁମ୍ଭେ ରାଣୀହଂସ ଶୁଣ
ରାଜନ ସଙ୍ଗରେ କିସ ଭାଳୁଅଛ ପୁଣ ।
ଲୀଳାବତୀବୋଇଲେ ଆମ୍ଭେ ଅଟୁ ନାରଖାର
ପୁତ୍ର ନଥିବାରୁ ଆମ୍ଭେ ହୋଇଲୁ ଅସାର ।
ବୃଦ୍ଧକାଳେ ଗୋଟିଏ ଦୁହିତା ଜାତହେଲା
ସେ ଝିଅ ପାଇଁ ବର ଖୋଜିଲେ ନ ମିଳିଲା ।

ସେହି ସକାଶେ ରାଜାର ମନଦୁଃଖ ଜାଣ
ଆମ୍ଭ ସଙ୍ଗରେ ବସି ଭାଳନ୍ତି ଅନୁକ୍ଷଣ ।
ନାରଦ ବୋଇଲେ ମାଗୋ ଆମ୍ଭଠାରୁ ଶୁଣ
ବିଭାଣ୍ଡକ ଋଷି ପୁତ୍ର ଋଷ୍ୟଶୃଙ୍ଗ ଜାଣ ।
ଏହି କନ୍ୟା ତାରପାଇଁ ହୋଇଅଛି ଜନ୍ମ
ଚମ୍ପାବତୀ ଦେଶକୁ ଆସିବ ସେ ଯେ ପୁଣ ।
ସେ ଆସିଲେ ଜଳବୃଷ୍ଟି ସେ ରାଜ୍ୟେହୋଇବ
ତୁମ୍ଭର ଦୁହିତାକୁ ସେ ଋଷି ବିଭାହେବ ।
ଦୁଇରାଜାଙ୍କୁ ପୁତ୍ର ଦେବ ଯେ ଋଷି ଜାଣ ।
ରାଣୀହଂସ ବୋଇଲେ ହେ ରାଜ୍ୟ ମହୀପାଳ
ଆମ୍ଭର ସଙ୍ଗରେ ପ୍ରୀତି ଯେ ଅଟଇ ତାର ।
ସେ ବୋଲନ୍ତି ଦୁହିତାକୁ ଅନ୍ତଃପୁରେ ନେବେ
କିଛିଦିନ ଅନ୍ତରେ ଆଣିଣ ଛାଡ଼ିଦେବେ ।
ନାରଦ ବୋଇଲେ ସେ ରାଜାର ସଙ୍ଗେପୁଣ
ସେ ରାଜ୍ୟକୁ ଏ ଦୁହିତା ଯାଉ ତା ସଙ୍ଗେଣ ।
ପ୍ରୀତିହେଉ କାର୍ଯ୍ୟହେଉ କୁଳହେଉ ରକ୍ଷା
ଶୋଣିତ ଆପ୍ୟାନରୁ ପିତୃଙ୍କୁ କର ରକ୍ଷା ।
ଏ କନ୍ୟା ବିଭାହେଲେ ପିତୃପକ୍ଷରେ ଭଲ
ଋଷ୍ୟଶୃଙ୍ଗ ଆସିଲେ ବିଭାହୋଇବ ନାରୀବର
ଅଳ୍ପଦିନେ ତୁମ୍ଭର ଆଣ୍ଠୁକୁଡ଼ା ଦୋଷଯିବ
ଆଉ ଚାରିବର୍ଷ ଅଛି ଦଶରଥର ଅଭାବ ।
ଏତେ କହିଣ ନାରଦ ସ୍ୱର୍ଗପୁର ଗଲେ
ଶାନ୍ତା ଦୁହିତାକୁ ରାଣୀହଂସ କହିଲେ ।
ମଉସା ମାଉସୀମାନେ ଶ୍ରଦ୍ଧା ଯେତେକଲେ
ଦେଖିବାକୁ ତାଙ୍କପୁରେନେବାକୁ ବୋଇଲେ ।
ଶାନ୍ତା ବୋଇଲା ମୁଁ ଯେ ଯିବି ତାଙ୍କପୁର
ମାଉସୀ ମାଆଙ୍କୁ ଦେଖିବାକୁ ଶ୍ରଦ୍ଧା ଯେ ମୋହର ।
ଶୁଣିଣ ମାତାମାନେ ସୁବେଶ କରାଇଲେ
ରତ୍ନ ହାଦୋଳାରେ ଦୁହିତାକୁ ବିଜେ କରାଇଲେ ।
ଶତେଜଣ ଦାସୀ ଯେ ଦୁହିତା ସଙ୍ଗେ ଗଲେ
ଚମ୍ପାବତୀ ଦେଶରାଜା ଆନନ୍ଦରେ ଚଳେ ।
ଦଶରଥଙ୍କୁ କହିଣ ନିଜରାଜ୍ୟେ ଗଲେ
ଆପଣାର ଦେଶରେ ସେ ପ୍ରବେଶହୋଇଲେ ।
ଚମ୍ପାବତୀ ରାଣୀମାନେ ଦୁହିତାକୁ ନେଲେ
ଶତେକ ରାଣୀହଂସ ଏକଠାବେ ମିଳିଲେ ।
ଦୁହିତାକୁ ଦେଖିଣ ପରମ ତୋଷ ହେଲେ
କୋଳରେ ବସାଇଣ ଚୁମ୍ବନ ରାଣୀ ଦେଲେ ।

ଗୋଟିକା ସର ଲବଣୀ ଭୁଞ୍ଜିବାକୁ ଦେଇ
ଅନେକ ଗଉରବ କଲେକ ସର୍ବେ ତହିଁ ।
ପାର୍ବତୀ ବୋଇଲେ ଦେବ ଶୁଣ ମୋ ବଚନ
ଚଣ୍ଡାଳ ଝିଅ ଅଦିତି କିସ କଲା ପୁଣ ।
ଈଶ୍ୱର ବୋଲୁଛନ୍ତି ଶୁଣଗୋ ପ୍ରାଣସହୀ
ନିର୍ଜଳ ହେଲା ରାଜ୍ୟ ଜଳ ନମିଳଇ ।
କୂପବାମ୍ପୀ ପୋଖରୀ ଶୁଖିଲା ସବୁଠାରୁ
ପୁଷ୍କରିଣୀ, ହ୍ରଦ ଯେ ଅନ୍ତର ଜଳରୁ ।
କେବଳ ନଦୀମାତ୍ର ସରଯୁ ଘୋଟିଅଛି
ଗଙ୍ଗା ମିଶିବାରୁ ସେହି ନଦୀ ଯେ ବହୁଛି ।
ସେ ନଦୀରୁ ସର୍ବେ ଜଳ ନେଉଛନ୍ତି ପୁଣ
ଅନେକ ବିକଳ ଯେ ହେଲେ ପ୍ରଜାଜନ ।
ଦୁଃଖୀ ଦରିଦ୍ର ଯେ ଅନେକ ତହୁଁ ମଲେ
ଅପାଳକ କାଳରେ ସମ୍ଭାଳି ନପାରିଲେ ।
ରାଜାର ସିଂହଦ୍ୱାରରେ କରନ୍ତି ବୋବାଳି
କଟକ ଲୁଟି କରିଣ କଲେକ ହୁରିଳୁରି
ଦେଖିକରି ରାଜନ ତାଟକା ମନହେଲା
ଅମ୍ବିକା ଚଣ୍ଡାଳକୁ ଡକାଇ ଆଣିଲା ।
ବୋଇଲା ତୋରଧନ ଦିଅରେ ପ୍ରଜାରେ
ରକ୍ଷ୍ୟାହୋନ୍ତୁ ପ୍ରଜାମାନେ ଖାଇ ଏ ରାଜ୍ୟରେ ।
ଚଣ୍ଡାଳ ବୋଇଲା ମୁଁ ଧର୍ମକୁ ନ ଲଙ୍ଘିବି
ଦୁହିତା ଯେହୁ ନେବେ ତାହାକୁ ଧାନ ଦେବି ।
ଦୁହିତାକୁ ଦାନଦିଅ ଧାନ ତୁମ୍ଭେ ନିଅ
ବଳାତ୍କାର କଲେ ତୁମ୍ଭେ ସ୍ତିରୀହତ୍ୟା ପାଅ ।
ଅଳପ ଅଧର୍ମରେ ଯେ ଏତେ ଶାସ୍ତି ହେଲା
ମୁହିଁ ଧର୍ମ ଲଙ୍ଘିଲେ ତୁମ୍ଭ ଦୋଷପରା ।
ଶୁଣି ପୁଣ ରାଜନ ଯେ ନକହିଲା କିଛି
ବୋଇଲା ମୋର ଜୀବନ କିମ୍ପାଇ ରହିଛି ।
ସକଳ ସୃଷ୍ଟି ସିନା ବିଧାତା ସର୍ଜିଲା
ଜୀବଜନ୍ତୁ କରିଣ ଯେ ଆହାର ଖଞ୍ଜିଲା
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦିମାନେ
ସମସ୍ତଙ୍କୁ ଜନ୍ମ କଲେ ସେ ବିଧାନେ ।
ସେ ଏବେ ଅଧର୍ମ କଲାକ ନ ବିଚାରି
ମୋହର ବୁଦ୍ଧି ସିନାରେ ଯେହୁ ନେଲା ହରି ।
ମୁହିଁ ମଲେ ତାହାଠାରେ ଏଣୁ ମୋରଦୋଷ
ଏହାଙ୍କ ବିକଳ ସହିବା ନୁହେଁ ବିଶେଷ ।
ପ୍ରାଣକୁ ହାରିବି ଆତ୍ମାଘାତକି ହେବି ମୁହିଁ
ଏତେବୋଲି ଏକାନ୍ତରେ ବସେ ରାଜା ଯାଇ ।

ତିନିଦିନ ତିନିରାତ୍ର ବସି ଯେ ନିର୍ଜନରେ
ବିଧାତା ପୁରୁଷ ଯେ ଜାଣିଲେ ସ୍ୱର୍ଗପୁରେ ।
ଯଶୋବନ୍ତ ପୁରେ ଥାଇ ହୋଇଲେ ବିକଳ
ବୋଇଲେ ରାଜା ମୋତେ ଦେଲେ ମହୀଭାର ।
ଏମନ୍ତେ ବିଚାର କଲେ ଚତୁର ବଦନ
ନାରଦଙ୍କୁ ବୋଇଲେ ତୁ ଶୁଣରେ ନନ୍ଦନ ।
ଯେତେକ ବ୍ରହ୍ମଋଷି ଅଛନ୍ତି ତିନିପୁର
ସମସ୍ତଙ୍କୁ ଡାକିଆଣ ମୋହର ନବର ।
ଶୁଣିଣ ନାରଦ ଯେ ବେଗେ ଚଳିଗଲେ
ତିନିପୁର ବ୍ରହ୍ମଋଷି ଡାକିଣ ଆଣିଲେ ।
ସକଳ ଋଷି ମିଳିଲେ ଯଶୋବନ୍ତୀପୁର
ବେଦବରଙ୍କୁ ଦେଖିଣ କଲେ ନମସ୍କାର ।
ବେଦବର ବୋଇଲେ ସକଳ ପୁତ୍ରେ ଶୁଣ
ଚମ୍ପାବତୀ ନଗ୍ରେ ବୃଷ୍ଟି ନକଲା ମେଘ ଜାଣ ।
ଶସ୍ୟହାନି ହେଲା ଯେ ନ ଫଳିଲା ଫଳ
ଜଳହିଁ ଶୁଖିଲା ଯେ ନମିଳେ ଆହାର ।
ନବବର୍ଷ ଅତି କଷ୍ଟରେ ପ୍ରଜାସଞ୍ଚ
କ୍ଷୁଧାରେ ଜୀବମାନେ ହୋଇଲେ ବଡ଼କଷ୍ଟି ।
ଦେଶପାଟଣା ପୁର ନଗ୍ର ଯେ କଟକ
ସମସ୍ତ ଜୁର ହେଲା ନ ଦେଲା ଅଟକ ।
ଭୋଜନ ନ ମିଳିବାରୁ ପତ୍ର ଚୋବାଇଲେ
ଲୋଡ଼ିଣ ଜଳ ଯେ ପ୍ରଜାମାନେ ନ ପାଇଲେ ।
ସମ୍ଭାଳି ନ ପାରିଣ ରାଜ୍ୟଭାର ରାଜା
ବୋଇଲେ ଏ ଜୀବନ କରିବି ମୁହିଁ ତେଜ୍ୟା ।
ତୃଣ ଶଯ୍ୟା କରିଣ ଶୋଇଛି ରାଜନ
ନିଶ୍ଚୟ ଜୀବନ ଯେ ହାରିବଇଁ ପୁଣ ।
ସେ ରାଜ୍ୟର ଚଣ୍ଡାଳ ଅମ୍ବିକା ନାମେ ଜାଣ
ଦୁହିତା ନାମ ଅରୁନ୍ଧତୀ ଶୁଣ ମୁନିଜନ ।
ସେ ଦୁହିତା ପଦ୍ମିନୀ ଅଂଶରେ ଜାତ ହେଲା
ଦୁଇଲକ୍ଷ ଭରଣ ଧାନ ସମ୍ପାଦିଲା ।
ସତ୍ୟ କରିଅଛି ପିତା ଧର୍ମକୁ ଚାହିଁଣ
ଦେବତା ବ୍ରାହ୍ମଣ ଋଷି ରାଜା ନେବେ ଧନ ।
ଦୁହିତାକୁ ନେଲେ ମୋର ନିଶ୍ଚୟ ମୁହିଁଦେବି
ସତ୍ୟ କଲି ଅଲଙ୍ଘିତ କେବେହେଁ ନୋହିବି ।
ସତ୍ୟବାଣୀ ଚଣ୍ଡାଳଠାରେ ବୋଇଲେ ବଳବନ୍ତ
ବଳବନ୍ତ ବଳପଣ କଲେ ନାଶଯିବ ସୃଷ୍ଟିତ ।
ପଦ୍ମିନୀ କନ୍ୟା ସେ ଯେ ନିଶ୍ଚେ ଝାସ ଦେବ
ଶାପରେ ତିନିପୁର ଭସ୍ମ ସେ କରିବ ।
ପୁତ୍ରମାନେ ତୁମ୍ଭେ ମୋର ବଚନ ଶୁଣ ଏବେ
ସେ କନ୍ୟାକୁ ବିଭା ଯେ ହୁଅ ଜଣେ ତୁମ୍ଭେ ।
ନାରଦ ବୋଇଲା ସେ କଥା ସେ ନୁହଁଇ
ଅଙ୍ଗିରା ବୋଇଲେ ଚଣ୍ଡାଳ ଜାତି ସେହି ।
ଅଗସ୍ତି ବୋଇଲେ ଏ ଦୂଷଣକଥା
ପୌଲସ୍ତି ବୋଇଲେ ଏହୁ ନୁହଇ ବ୍ୟବସ୍ଥା ।
ଗୌତମ ବୋଇଲେ ଅଗତିକଥା ସେହୁ
ଦୁର୍ବାସା ବୋଇଲେ ସେ କଥା ହେବ କାହୁଁ ।
କପିଳ ବୋଇଲେ ସେ ନୁହଇ କଦାବାରେ
ସନତ ସନାତନ ସେ କହେ ବେଦବରେ ।
ଉଜ୍ଜଳକୁଳ କିମ୍ପା ନିଉନ କୁଳକୁ ଜୀବ
ପ୍ରାଣ ନ ହାରି କିମ୍ପା ଅଭକ୍ଷ ଭକ୍ଷିବ ।
ମହର୍ଗକାଳେ ବାଲି ପିଇଲେ କି ଜୀଇ
ଧନବନ୍ତ ଲୋକ ତପ କଲେ କି ନମରଇ ।
ରାଜାହେଲେ ପ୍ରଭୁ ପଣ ସେ ରାଜ୍ୟେ ବୋଲାଇ
ପ୍ରଭୁହେଲେ ତାହାକୁ କି ପାତକ ନ ଲାଗଇ ।
ଜାତିକି ଜାତିସିନା ଉପକାର ଜାଣ
ଦେବେନରଲୋକଙ୍କୁ କି ଦେବେ ଅମୃତପାନ ।
ବିଦ୍ୟାବନ୍ତ ଲୋକକୁ ସୁଖ ଦେବଦାନ
ଏକହାଣ୍ଡିକରେ କି ଭୁଞ୍ଜିବେ ସର୍ବଜନ ।
ଜମ୍ବୁଦ୍ୱୀପ ମଣ୍ଡଳରେ କଲେ ଯେ ରାଜପଣ
ଯେ ରାଜାଙ୍କୁ ସାହାକିମ୍ପା ନୋହିଲେ ରାଜାଗଣ ।
ଆପଣାର ଜାତି ଯେ ହେଉଛୁ ପ୍ରାଣତେଜ୍ୟା
ସେ କଥାକୁ ଗୁରୁ କିମ୍ପା ନକଲା ମହାରାଜା ।
ବେଦବର ବୋଇଲେ ଶୁଣ ହେ ପୁତ୍ରମଣି
ଦେବଙ୍କୁ ଦୁଃଖ ଦେଲେ ଯେ ଅସୁର ଦୁଷ୍ଟପୁଣି ।
ଅସୁରେ ମାରିବାକୁ ଯେବେ କୂଟକଲେ
ଚଣ୍ଡାଳ ଘରେ ପଦ୍ମିନୀ କନ୍ୟା ଜାତକଲେ ।
ଚମ୍ପାବତୀରଦେଶକୁ ବୃଷ୍ଟି ଯେ ନକରାଇ
ବାସୁଦେବ ଜାତହେବେ ଅଯୋଧ୍ୟାରେ ଯାଇଁ ।
ତେବେ ଅସୁରେ ହେବେ ପ୍ରାଣନାଶ
ଶୁଣିଣ କପିଳ ଯେ ହୋଇବେ ହରଷ ।
ବାସୁଦେବ ଯେବେ ଅଯୋଧ୍ୟାରେ ଜାତ ହେବେ
ଚମ୍ପାବତୀ ରଜକିମ୍ପା ପାପ କଲା ପୂର୍ବେ ।
ତାହାଙ୍କର ରାଜ୍ୟ କିମ୍ପା ନ ପାଳିଲା ଇନ୍ଦ୍ର
ସେଥିରେ କେଉଁ କଥା କହ ହେ ସନ୍ଦେହ ।
ବେଦବର ବୋଇଲେ ଶୁଣରେ କୁମର
ବେଳହୁଁ ଦୋଷ କରିଛି ଲୋମପାଦ ବୀର ।

ଦେବଙ୍କୁ ଗାଳିଦେବାରୁ କ୍ରୋଧ ସେ ହୋଇଲେ
ଅପାଳକ ତାର ରାଜ୍ୟେ ବିଚାରି କରାଇଲେ ।
ଲୋମପାଦ ହେତୁରୁ ଆସିବେ ଋଷ୍ୟଶୃଙ୍ଗେ
ଋଷ୍ୟଶୃଙ୍ଗ ଆସିଲେ ବାସୁଦେବଜନ୍ମହେବେ ।
ଋଷି ବୋଇଲେ ଯେବେ ଦେବତାଭଲହେବେ
ଦେବେକିମ୍ପା ବିଭା ତାହାକୁ ନୁହଁନ୍ତି ଏବେ ।
ବେଦବର ବୋଇଲେ ଶୁଣରେ ନନ୍ଦନ
ଦେବତାମାନେ ଆଗହୁଁ ଜନ୍ମହେଲେ ପୁଣ ।
ନରବାନର ଯେ ଭାଲୁ ରୂପ ଧରି ଜାଣ
ସମସ୍ତେ ଜନ୍ମହେଲେ ଧରଣୀରେ ପୁଣ ।
ସେ କନ୍ୟାକୁ ବିଭା ହେବାକୁ ଯୋଗ ନାହିଁ
କମଳାଙ୍କ ଅଁଶରେ ସେ ନାରୀ ଜନ୍ମହୋଇ ।
ଅଙ୍ଗିରା ପଚାରିଲେ କେଉଁ ଦୋଷ କଲା
ଚଣ୍ଡାଳ ଯୋନିରେ ସେ କିମ୍ପାଇ ଜନ୍ମହେଲା ।
ବେଦବର ବୋଇଲେ ଶୁଣରେ ନନ୍ଦନ
ଧର୍ମଙ୍କର ଦୁହିତା ବେଳରେ ସେ ଜାଣ ।
ବସନ୍ତ ଦେବତାଙ୍କୁ ବିଭା ଦେଲେ ପୁଣ
କାଳେ ସେ କନ୍ୟାକୁ ବସନ୍ତ ଭୋଗକଲେ ଜଣ ।
ସେ କନ୍ୟା ବସନ୍ତର ବୋଲି ନମାନିଲା
ସେଥି ସକାଶେ ଚଣ୍ଡାଳ ଘରେ ଜନ୍ମହେଲା ।
ଏ ଜନ୍ମରେ ସେ କନ୍ୟାତ ହୋଇବ ମୁକତ
ନାରଦବୋଇଲେ ସେ କାହାକୁ ହୋଇବ ବିଭାତ ।
ବେଦବର ବୋଇଲେ ଯେବେଦେଲେ ଆମ୍ଭଭାଗ
ପୂର୍ବର କଥା ଏବେ ଶୁଣ ଅସମ୍ଭବ ।
କାଳ ଦେବତାଏ କୂଟ ଯେ ବିଚାରିଲେ
ବଶିଷ୍ଠଙ୍କୁ ଯାଗ ସେ କରିବାକୁ ନେଲେ ।
ନିମିରାଜା ଆଗେ ତାକୁ ବରଣ କରିଥିଲା
ସୁରରାଜା ଅପ୍ରୋଧରେ ନନ୍ଦନ ମୋର ଗଲା ।
ତେଣୁ ସେ ରାଜନ ଯେ ଶାପ ଦେଲା ପୁଣ
ଚଣ୍ଡାଳ ଘରେ ବିଭା ହୁଅରେ ତୁ ଜାଣ ।
ମୋତେ ସେ କଥା ଜଣାପୁଣ ଗଲା
ପୁତ୍ର କଥା ଜାଣିଣ ବିକଳ ମନ ହେଲା ।
ପଦ୍ମିନୀ କନ୍ୟାକୁ ମୁଁ ଯେ ଜାତ କଲି ଆଣି
ପୂର୍ବରେ ବଶିଷ୍ଠରେ ଅଟଇ ତରୁଣୀ ।
ନାରଦ ବୋଇଲେ ତୋରେ ଜଣା ଯେବେ ଅଛି
ଆମ୍ଭମାନଙ୍କୁ ତୁମ୍ଭେ କିମ୍ପା ଛାଡ଼ିଲ ପିତା ଗୋଛି ।
ବେଦବର ବୋଇଲେ ବଶିଷ୍ଠ ହେବେ ବିଭା
ସେ କଥାକୁ ସମସ୍ତେ ପ୍ରତିଷ୍ଠା କରିବା ।
ସେ ପାକକଲେ ଆମ୍ଭେ ଭୁଞ୍ଜିବାକ ପୁଣ
ଚାରିବେଦ ପଢ଼ି ତାକୁ ବିଭା କରିବା ଜାଣ ।
ନାରଦ ବୋଇଲେ ପିତା ଏକଥା ଯଥାର୍ଥ
ବିଚାର କାର୍ଯ୍ୟ ନ କଲେ ପଛେହୋନ୍ତି ରୁଷ୍ଟ ।
ବେଦବର ବୋଇଲେ ସମସ୍ତେ ଚାଲଯିବା
ସେ କନ୍ୟାକୁ ଚଣ୍ଡାଳ ଘରରୁ ଆଣିବା ।
ଅଗସ୍ତି ବୋଇଲେ ଏକ କଥା ଆମ୍ଭର ମୂଳ
ଆମ୍ଭର ଭାଇ ଯେ ନୋହୁ ସେ ବିଟାଳ ।
ଶାପକୁ ନ ମେଣ୍ଟିବା ଆଣ ଚଣ୍ଡାଳୁଣୀ
ପବିତ୍ର କଲେ ସିନା ତିନିପୁର ଜାଣି ।
ସେ କନ୍ୟା ହାତରେ ଯେହୁ ନ ଭୁଞ୍ଜିବ ପୁଣ
ନିଶ୍ଚୟ ଚଣ୍ଡାଳ ସେ ହୋଇବ ସର୍ବଜନ ।
ଶୁଣିଣ ସକଳ ଋଷି ସନ୍ତୋଷ ହୋଇଲେ
ପିତାଙ୍କୁ ଘେନିଣ ଚମ୍ପାବତୀ ନଗ୍ରେ ଗଲେ ।
ଅମ୍ବିକା ଚଣ୍ଡାଳର ନଗ୍ରରେ ପ୍ରବେଶ
ଦେଖିକରି ଚଣ୍ଡାଳ ନମିଲା ପାଦଗତ ।
କି କାର୍ଯ୍ୟେ ନାରଦ ମୋର ପୁରକୁ ଆଗମନ
ବ୍ରହ୍ମାଙ୍କ ସୁତ ବୋଇଲେ ଶୁଣ ହେ ଉତ୍ତମ ।
ତୋହର ଘରେ ଯେତେ ଧାନ ଅଛି ପୁଣ
ଏହି ରାଜ୍ୟ ରାଜାକୁ ତୁ ଦିଅରେ ବହନ ।
ରାଜାର ଚିନ୍ତା ଯାଉ ପ୍ରଜାଏ ଖାନ୍ତୁ ନେଇ
ଦୁର୍ଭିକ୍ଷେ ମରନ୍ତି ପ୍ରଜା ଆହାର ନ ପାଇ ।
ଚଣ୍ଡାଳ ବୋଇଲା ମୁଁ ଲଙ୍ଘିବି ନାହିଁ ଧର୍ମ
ମୋହର ସେ ଧାନ ନୁହେଁ ଦୁହିତାର ପୁଣ ।
ତାହାକୁ ଆଗେ ନେଲେ ଧାନକୁ ପଛେ ନେବ
ବଳେ ନେଲେ ଦୁହିତା ମୋ ଆତ୍ମଘାତି ହେବ ।
ବେଦବର ବୋଇଲେ ଯେ ସତ୍ୟ ଏ ବଚନ
ଚଣ୍ଡାଳ ବୋଇଲା କେହୁ ବିଭାହେବ ପୁଣ ।
ନାରଦ ବୋଇଲେ ଭାଇ ବଶିଷ୍ଠ ବିଭାହେବ
ଶୁଣିଣ ଚଣ୍ଡାଳ ଯେ ହୋଇଲେ ତୋଷଭାବ ।
କନ୍ୟାର ହସ୍ତରେ ନେଇ ପୁଷ୍ପମାଳା ଦେଲା
ଆପଣାର ଘରୁ ଦୁହିତାକୁ ଅଣାଇଲା ।
ବେଦବର ଆଗରେ ଉଭା କଲା ନେଇ
ଦେଖିଣ ବେଦବର ସନ୍ତୋଷ ମନ ହୋଇ ।

ବଶିଷ୍ଠଙ୍କୁ ବୋଇଲେ ଆଗକୁ ଆସ ବଳା ।
ଅରୁନ୍ଧତୀ କନ୍ୟାଠାରୁ ଘେନ ପୁଷ୍ପମାଳା ।
ଶୁଣିକରି ବଶିଷ୍ଠ ଆଗରେ ଉଭା ହେଲେ
ଅରୁନ୍ଧତୀ ପୁଷ୍ପମାଳା ଲମ୍ବାଏ ଗଳାରେ ।
ବେଦବର ବୋଇଲେ ଶୁଣରେ କୁମାରୀ
କେତେ ଗଦାଧାନ ତୋ କର ଲଗାଅ ଯାଇ କରି ।
କୁମାରୀ ବୋଇଲା ଧାନ ଦଶଗଦା ମୋର
ମୋର ସଙ୍ଗେ ଆସି ପିତା ଦେଖ ହେ ସକଳ ।
ଶୁଣିକରି ବେଦବର ବଧୂ ସଙ୍ଗେ ଗଲେ
ସମସ୍ତ ଗଦାରେ ହାତଦେଲା କନ୍ୟା ଭଲେ ।
ବେଦବର ବୋଇଲେ ଧାନ ଅସରନ୍ତି ହେଉ
ଚମ୍ପାବତୀର କଷ୍ଟ ଯେ ଆଜଠାରୁ ଯାଉ ।
କୁମାରୀ ବୋଇଲା ପିତା ସନ୍ତୋଷ ହେଲି ଜାଣ
ଚମ୍ପାବତୀ ରାଜ୍ୟ ଅଟେ ଚାରିଶତ ଯୁଣ ।
ଏ ଧାନରେ ଏ ରାଜ୍ୟର ଦୁର୍ଭିକ୍ଷ କ୍ଷୟ ପାଉ
କାଳଯୁଗ କଥା ମୋହର ରହିଥାଉ ।
ଏତେ ବୋଲି ବିଧାତା ସଙ୍ଗରେ ବଧୂଚଳି
ପୁଷ୍ପକ ଯାନପରେ ବସିଲା ଯାଇ ବାଳି ।
ବଶିଷ୍ଠ କନ୍ୟାକୁ ଘେନି ବସିଲେ ସେ ଯାନ
ବେଦବର ଚଢ଼ିଲେ ସେ ହଂସକ ବାହନ ।
ମନ ପବନ ଚଢ଼ି ଋଷିମାନେ ଗଲେ
ନାରଦଙ୍କୁ ଚାହିଁ ବେଦବର ଆଜ୍ଞା ଦେଲେ ।
ଲୋମପାଦ ରାଜାକୁ କହ ଯାଇକରି
ଲୋମପାଦ ବାଣ୍ଟିଦେଉ ଧାନ ନେଇକରି ।
କହିଣ ସେ ରାଜାଙ୍କୁ ଆସିଲେ ବହନ
ଶୁଣିଣ ନାରଦ ଯେ ଚଳିଲେ ତତ୍କ୍ଷଣ ।
ଚମ୍ପାବତୀ କଟକରେ ପ୍ରବେଶ ହୋଇଲେ
ରାଜାର ନଗ୍ର ଅନ୍ତଃପୁରରେ ମିଳିଲେ ।
ଦେଖିଣ ରାଣୀହଂସ ଓଳଗି ଆସି ହେଲେ
କରଯୋଡ଼ି ନାରଦଙ୍କ ଆଗରେ ଉଭା ହେଲେ ।
ମହାମୁନି କହିଲେ ରାଜନ କାହିଁ ପୁଣ
ରାଣୀହଂସ ବୋଇଲେ ଚିନ୍ତାରେ ଛନ୍ତି ଜାଣ ।
ରାଜ୍ୟର ଚିନ୍ତାରେ ଯେ ନିମଗ୍ନେ ଛନ୍ତି ରହି
ଶୁଣିକରି ନାରଦ କହିଲେ କହ ଯାଇଁ ।
ବେଗେ ଯାଇ ରାଜାଙ୍କୁ ଘେନାଇ ଆସ ଜାଣ
ବୋଲିବ ନାରଦ ବିଜୟ କଲେକ ପୁଣ ।
ନ ଆସିଲେ ଅଜୟ ନିଶ୍ଚୟ ଏବେ ହେବ
ଆସିଲେ ଚିନ୍ତା ଜଳରୁ ଉଦ୍ଧାର ହୋଇବ ।

ଶୁଣିଣ ରାଣୀହଂସ ଯେ ବେଗେ ଚଳିଗଲେ
ରାଜାଥିବା ପୁରେ ଯାଇ ପ୍ରବେଶ ହୋଇଲେ ।
ଚରଣେ ଓଳଗି ଯେ ହୋଇଲେ ସର୍ବରାଣୀ
କରଯୋଡ଼ି ଆଗରେ କହନ୍ତି ମୃଦୁବାଣୀ ।
ବୋଇଲେ ବେଦବରଙ୍କ କୁମର ନାରଦ
ଆମ୍ଭରପୁରେ ଆସିଣ କହିଲେ ପ୍ରମାଦ ।
ବୋଇଲେ ରାଜାଙ୍କୁ ଯାଇ ବେଗକରି ଆଣ
ନୋହିଲେ ଏ ପୁର ଦହିବିଟି ଆଜ ଜାଣ ।
ଏତେ ବୋଲି କ୍ରୋଧ ହେଲେ ବ୍ରହ୍ମାଙ୍କ କୁମର
ବେଗେ ଆସ ପ୍ରାଣଧନ ଯିବା ତା ଆଗର ।
ଶୁଣିଣ ରାଜନ ଯେ ଚିନ୍ତା ଦୂର କଲା
ଡରିଣ ନାରଦଙ୍କୁ ଯେ ବେଗେ ଚଳିଗଲା ।
ଅନ୍ତଃପୁରେ ମୁନି ପାଶେ ହେଲାକ ପ୍ରବେଶ
ମୁନି ଚରଣେ ନମିଲା ବନମାଳୀ ଶିଷ୍ୟ ।
ନାରଦ ବୋଇଲେ ତୁ କିମ୍ପାଇ ଚିନ୍ତାକରୁ ।
ନବବର୍ଷ ସରିଲା ମନରେ କିମ୍ପା ଭାଳୁ ।
ଲୋମପାଦ ବୋଲେ ମୋର ପ୍ରଜାଜନ ମଲେ
ଅନ୍ନଜଳ ନ ପାଇ ବିକଳ ମନ ହେଲେ ।
କ୍ଷୁଧାରେ ହରିଜୁରି କଲେକ ରାଜ୍ୟେ ପୁଣ
ଥିବାନଥିବା ଲୋକେ ହୋଇଲେ ସମଜାଣ ।
ସମ୍ଭାଳି ନପାରି ରାଜା ଦ୍ୱାରେ ହୁରିକଲେ
ପ୍ରାଣରଖ ବୋଲିଣ ଉଚ୍ଚରେ ଡାକଦେଲେ ।
ସେ ବିକଳ ଦେଖିଣ ମୁଁ ମନରେ ହେଲି ଦୁଃଖୀ
ବିଚାରିଲି କିମ୍ପାଇ ଜୀବନ ଥିବି ରଖି ।
ଏମନ୍ତ ବିଚାରନ୍ତେ କଥାଏ ମନ ପଡ଼ି
ବେଦବର ସିନା ଯେ ସକଳ ଜାତ କରି ।
ତିନିପୁର ଚଉଦ ବ୍ରହ୍ମାଣ୍ଡ ସଞ୍ଚରିଲା
ଛପନ କୋଟିଏ ଜୀବ ଏଥିରେ ରଚିଲା ।
ତ୍ରିଦଶ ଦେବତା ଅଠରକୋଟି ନାଗବଳ
ସମସ୍ତଙ୍କୁ ଖଞ୍ଜିଲା ଯେ ଯାହାର ଆହାର ।
ପୁଣି ଅନ୍ୟାୟ କଥା କିମ୍ପା ବିଚାରିଲା
ସକଳ ରାଜ୍ୟପାଳି ମୋତେ ଯେ ଦଶାଦେଲା ।
ଏତେଲୋକ ଯେବେ ବିକଳ ହୋଇଲେ
ବନଜୀବମାନେ ଯେବେ ବନସ୍ତରେ ମଲେ ।
ମୁଁ କିସ କରିବି ରହିଣ ଏଥେ ପୁଣ
ବିଚାରିଲେ ନିଶ୍ଚେ ମୁଁ ଯେ ଛାଡ଼ିବି ଜୀବନ ।
ଏ ଆତ୍ମାଘାତକ ଦୋଷଲାଗୁ ବେଦବରକୁଜାଣ
ସମସ୍ତଙ୍କର ଅଟନ୍ତି ପିତା ସେହୁ ପୁଣ ।

ଏମନ୍ତ ବିଚାରି ଯେ ଆହାର ତେଜ୍ୟାକଲି
ମରିବାର ବାଞ୍ଛା ଯେ ମନରେ ବିଚାରିଲି ।
ନାରଦ ବୋଇଲେ ଏଯେ ନୁହଇ ଭଲପଣ
ବିପତ୍ତିବେଳେ କିମ୍ପା କାତର ହେବ ଜାଣ ।
ଆଉ ତିନିବର୍ଷରେ ଶୁଭ ତୋତେ ହେବ
ବିଭାଣ୍ଡକ କୁମର ତୋ ରାଜ୍ୟକୁ ଆସିବ ।
ଉତ୍ତମ ସନ୍ତାନ ଯେ ହୋଇବ ତୋର ଜାତ
ରାଜ୍ୟରେ ମେଘମାନେ ପାଳିବେ ତୁରିତ ।
ସକଳ କଥା ତୋ ଚିତ୍ତରୁ ଦୂରହେବ
ଅଳପ ଦିନକୁ କିମ୍ପାଇ କରୁ ଦୁଃଖଭାବ ।
ଯେଉଁଦିନ ଦଶରଥ କୁମାରୀ ଏଥେ ମିଳି
ସେହିଦିନୁ କଷ୍ଟ ତୋର ସରିଛି ମହୀଧାରୀ ।
ସେ କନ୍ୟାଥିଲେ ତୋତେ ବହୁତ ସୁଖଦେବ
ଚିତ୍ରାଏଣି କନ୍ୟା ସେ ସବୁଠାରେ ଶୁଭ ।
ରାଜାର ଦୁହିତା ହୋଇ ମୁନିକି ସେବିବ
ପବିତ୍ର ମୁନିଙ୍କର ସେ ଘରଣୀ ହୋଇବ ।
ଶୁଣିଣ ରାଣୀହଂସ ଯେ ନମିଲେ ପାଦତଳେ
ବୋଇଲେ ମୁନିସୁଦୟ କର ହେ ଆମ୍ଭରେ ।
ସେ ମୁନି ଆସିଲେ ଯେ ସନ୍ତାନ ହେବ ଜାଣ
ବିଭାଣ୍ଡକ ନନ୍ଦନ ଯେ ଋଷ୍ୟଶୃଙ୍ଗ ଜାଣ ।
ଏବେ ବି ଜଣାଇବା ତାହାକୁ ପୁର ଯାଇ
ନାରଦ ବୋଇଲେ ସେ କଥା ଉଚିତ ନୁହଁଇ ।
ଜନ୍ମ ହେଲାଠାରୁ ଯେ ଋଷ୍ୟଶୃଙ୍ଗ ଜାଣ
ତପ କରୁଅଛି ସେ ବସିଣ ନିର୍ଗୁଣ ।
ପନ୍ଦର ବର୍ଷରେ ତପ ଯେ ହେବ ସିଦ୍ଧି
ସେତେବେଳେ ତୁମ୍ଭର ପୁରୁକୁ ତାରଗତି ।
ବାରବର୍ଷ କୁମରକୁ ହୋଇଲାକ ପୁଣ
ତିନିବର୍ଷ ଗଲେ ସେ ତପରେ ନିର୍ବାଣ ।
ରାଣୀହଂସ ବୋଇଲେ ଶୁଣ ହେ ମୁନିବର
ସେ ମୁନି ବିଭାହେବ କି କହ ଆମ୍ଭ ଆଗର ।
ନାରଦବୋଇଲେ ଶୁଣଗୋ ରାଣୀମାନେ ତୁମ୍ଭେ
ସେ ମୁନି ଦଶରଥକୁ ମାରି କି ବିଭାହେବେ ।
ତୁମ୍ଭଙ୍କୁ ପୁତ୍ରଦାନ ଦେବେ ଯେ ସେହୁପୁଣ
ଜଳବୃଷ୍ଟି କରାଇବେ ଏ ରାଜ୍ୟରେ ଜାଣ ।
ଦଶରଥ ଦୁହିତା ଗଲେ ତୁମ୍ଭଙ୍କୁ ଅଶୁଭ
ଏହିଠାରେ ବିଭାକଲେ ବଡ଼ ସେ ସୁଲଭ ।

ଶୁଣିଣ ରାଣୀହଂସ ହରଷ ମନହେଲେ
ଭଲ ସୁଯୋଗରାଜା ଭେଟ ଯେ ହୋଇଲେ ।
ନାରଦ ବୋଇଲେ ଦିନବେଳ ଯେ ଶୁଭପୁଣ
ଷଷ୍ଠମଚନ୍ଦ୍ର ଅଟେ ତୁମ୍ଭ ରାଜାକୁ ସେଦିନ ।
ଦଶରଥକୁ ସେଦିନ ଏକାଦଶଚନ୍ଦ୍ର
ଦୁହିଁଙ୍କି ଶୁଭହେଲା ଯୋଗ ଏକାଚନ୍ଦ୍ର ।
ରାଣୀହଂସ ବୋଇଲା ଶୁଣ ହେ ମୁନିବର
ଋଷ୍ୟଶୃଙ୍ଗ କିସ ଯେ ଅଟନ୍ତି ତୁମ୍ଭର ।
ନାରଦବୋଇଲା ସେଯେ ନାରଦ ଅଟେ ମୋର
ବିଭାଣ୍ଡକ ଋଷି ଅଟେ ବ୍ରହ୍ମାର କୁମର ।
ବେଦବର ନାତି ଯେ ଅଟଇ ଋଷ୍ୟଶୃଙ୍ଗ
ଶୁଣିଣ ରାଣୀମାନେ ହୋଇଲେ ଆନନ୍ଦ ।
ରାଣୀହଂସ ପଚାରିଲେ ନାରଦଙ୍କୁ ପୁଣ
ତୁମ୍ଭେ ଋଷିମାନେ ଯେ ଜନ୍ମ ଭିନ୍ନ ଭିନ୍ନ ।
ବ୍ରହ୍ମାର କୁମର ଯେ କେଉଁରୂପରେ ହୁଅ
କହ ହେ ମୁନି ସେସନ୍ଧି ସେଥିରେ ଆମ୍ଭେ ପ୍ରିୟ ।
ନାରଦ ବୋଇଲେ ଶୁଣ ଗୋ ପାଟରାଣୀ
ତପରେ ନିର୍ଜିତ ହେ ହୁଅନ୍ତି ସେହୁ ପୁଣି ।
ଅନେକ କାଳରେ ସେ ତପକୁ ସିଦ୍ଧ କଲେ
ସୁରଭି ଗୋଟିଏ ତାକୁ ଦିଅନ୍ତି ବେଦବରେ ।
ସେ ସୁରଭି ଦେବତା ତପସିଦ୍ଧ ଜାଣ
ତେଣୁ ସେ ବୋଲାବନ୍ତି ବ୍ରହ୍ମାର ନନ୍ଦନ ।
ତାଙ୍କର ପୁତ୍ରମାନେ ବ୍ରହ୍ମାର ହୁଅନ୍ତି ନାତି
ତପସିଦ୍ଧ ହୋଇଲେ ବୋଲନ୍ତି ବ୍ରହ୍ମଯତି ।
ପାଟରାଣୀ ବୋଇଲେ ଶୁଣ ହେ ମୁନିବର
କଥାଏ ପଚାରିବୁ କହ ହେ ବିସ୍ତାର ।
ବ୍ରହ୍ମମୁନି ଉତ୍ତାରୁ ସେ କିସ ବୋଲାବନ୍ତି
ନାରଦ ବୋଇଲେ କହିବା ତାହା ବାଛି ।
ବ୍ରହ୍ମମୁନି ହୋଇଣ ସେ ଯେ ତପକରି
ସିଦ୍ଧମୁନି ସଙ୍ଗରେ ଗଣିତା ହୋଇପାରି ।
ସିଦ୍ଧମୁନି ହେଲେ ପାତାଳକୁ ଯାନ୍ତି ପୁଣ
ଆହାର ଶୂନ୍ୟ ତାଙ୍କର ପବନ ଭକ୍ଷ ଜାଣ ।
ଯାହା ବିଚାରନ୍ତି ତାହା ହୁଅଇ ତକ୍ଷଣ
ଯାହାକୁ ଯାହା କହନ୍ତି ମିଳଇ ଅଭୂତେଣ ।
ବିଚାରିବା କଥା ଯହୁଁ ହୁଅଇ ତାଙ୍କର
ପାତାଳକୁ ତେଜ୍ୟାକରି ଯାନ୍ତି ସ୍ୱର୍ଗପୁର ।

ସ୍ୱର୍ଗପୁରେ ଦେବରଷ ସଙ୍ଗେ ଗଣାହୁଏ
ଦେବଙ୍କର ସଙ୍ଗରେ ଅମୃତ ଭୁଞ୍ଜି ରହେ ।
ପ୍ରଳୟ ପର୍ଯ୍ୟନ୍ତେ ସଙ୍ଗରେ ଥାନ୍ତି ପୁଣ
ଦେବତା ସଙ୍ଗରେ ବନ୍ଧୁବର୍ଗ ଜାଣ ।
ପ୍ରଳୟ ବେଳେ ସେ ଦେବଙ୍କ ସଙ୍ଗେ ନାଶ
କେବଳ ସଦାଶିବ ବିଷ୍ଣୁରେ ହୋନ୍ତି ଶେଷ ।
ପାଟରାଣୀ ବୋଇଲେ ଶୁଣ ହେ ମୁନିବର
ତିନିପୁର ରାଜା ପୁଣି କେମନ୍ତ ପ୍ରକାର ।
ରାଜାହୋଇ ଜନ୍ମହେଲେ ମରନ୍ତେ ହୋନ୍ତିକିସ
ସେ କଥା ଆମ୍ଭ ଆଗେ କହ ହେ ବିଶେଷ ।
ନାରଦ କହିଲେ ସେ କଥା ଏବେ ଶୁଣ
ରାଜାମାନେ ବିଧାତା ଅଟନ୍ତି ସର୍ବେ ଜାଣ ।
ସଂସାର ପାଳନ୍ତି ସେ ଯେ ରାଜା ବ୍ରହ୍ମାରୂପେ
ଅଧର୍ମ କଲେ ପଡ଼ନ୍ତି ଯାଇ କୁମ୍ଭୀପାକେ ।
ଧର୍ମକଲେ ସ୍ୱର୍ଗପୁରେ ପାଆନ୍ତି ପୂଜାପୁଣ
ଅମୃତ ଭୁଞ୍ଜିଣ ସେ ରହନ୍ତି ସୁଖେଣ ।
ରାଜାଙ୍କର ଅମରେ ସୁରରାଜା ହୋଇ
ତପଙ୍କର ଅଂଶେ ସେ ବେଦବର କହି ।
ନାଗଙ୍କର ପ୍ରଭୁ ଯେ ଅଟନ୍ତି ସଦାଶିବ
ଜନ୍ତୁଙ୍କର ପ୍ରଭୁ ଯେ ପ୍ରଜାପତି ହେବ ।
ସମସ୍ତଙ୍କର ପରେ ପ୍ରଭୁ ଅଟନ୍ତି ବାସୁଦେବ
ବାସୁଦେବଙ୍କ ବିଳେ ଅନ୍ୟତ୍ରେ ନାହିଁ ଭବ ।
ବାସୁଦେବଙ୍କୁ ଭଜିଲେ ସକଳ କାର୍ଯ୍ୟସାର
ବାସୁଦେବ ପ୍ରୀତିକଲେ ସଂସାରୁ ଉଦ୍ଧାର ।
ଅଚିନ୍ତା ବୈକୁଣ୍ଠରେ ମିଳଇ ସେହୁ ନର
ପାପ ପୁଣ୍ୟ ଭଲମନ୍ଦ ନାହିଁ ତା ମନର ।
ଦିନକେ ଯୁଗେପ୍ରାୟେ ମଣଇ ସେହୁପୁରେ
ବିଷ୍ଣୁପ୍ରଳୟ ଯେବେ ହୁଅଇ କେଉଁ ବରେ ।
ତେବେ ସେ ନାଶ ଯାନ୍ତି ବାସୁଦେବର ସଙ୍ଗେ
ସେ ବାସୁଦେବ ଜଳ ହୁଅଇ ତରଙ୍ଗେ ।
ସମସ୍ତେ ତାହାର ଯେ ଶରୀରେ ଲୀନଯାନ୍ତି
ପୁଣି ସଂସାର କଲେ ସମସ୍ତେ ସଂଚରନ୍ତି ।
ଶୁଣିଣ ନାରୀମାନେ ସନ୍ତୋଷମନ ହେଲେ
ନାରଦଙ୍କ ଚରଣେ ସମସ୍ତେ ଶୋଇଲେ ।
ନାରଦ ବୋଇଲେ ତୁମ୍ଭଙ୍କୁ ସୁକଲ୍ୟାଣ ହେଉ
ପୁତ୍ରବତୀ ହୁଅ ମାନ୍ୟଧର୍ମ ଯେ ରହୁ ।
ଉଠିଣ ରାଣୀହଂସ ଶିରେ କରଦେଲେ
କେମନ୍ତ ହେଲା କଥା ବୋଲିଣ ପଚାରିଲେ ।

ଶତେରାଣୀ ଆମ୍ଭେ ଅଟୁ ଯେ ରାଜ୍ୟର
ଶତେକ କୁମର ଯେ ହୋଇବ ଆମ୍ଭର ।
ନାରଦ ବୋଇଲେ ଆମ୍ଭର ପ୍ରସନ୍ନେ
ପୁତ୍ରବତୀ ହୋଇଲେ ନଭାଳ ତୁମ୍ଭେ ମନେ ।
ଶତେ ରାଣୀଙ୍କର ଶତେକ ପୁତ୍ର ଜାତ ହେବ ।
ଋଷ୍ୟଶୃଙ୍ଗ ଯାଗରୁ ଚରୁ ସେ ଭକ୍ଷିବ ।
ରାଣୀମାନେ ବୋଇଲେ ଶୁଣ ମୁନିବର
ତୁମ୍ଭର ପ୍ରସନ୍ନରେ ଆମ୍ଭର ମନ ସ୍ଥିର ।
ପୁରୁଷମାନେ ସିନା ଏମନ୍ତ ଗତିପାଇଁ
ସ୍ତିରୀମାନେ କେମନ୍ତେ ହୁଅନ୍ତି ଗୋସାଇଁ ।
ନାରଦ ବୋଇଲେ ଯେ ସ୍ତିରୀ ଇଷ୍ଟଦେବୀ
ଦେବୀଙ୍କର ଇଷ୍ଟ ଯେ ଦୁର୍ଗା ନାମ ଭଜି ।
ଦୁର୍ଗା ଯେ ପାର୍ବତୀ ଚରଣେ ପୁଣ ସେବି
ପାର୍ବତୀ ଦୟାକଲେ ହୁଅନ୍ତି ସଦଭାବି ।
ପରମ ବୈଷ୍ଣବୀ ବୋଲନ୍ତି ସେହୁ ପୁଣ
ସମସ୍ତଙ୍କର କାରଣ ପାର୍ବତୀ ତୁମ୍ଭେ ଜାଣ ।
ଗ୍ରାମଦେବୀ ପିଚାସୁଣୀ ଡାକେଣି ହୋନ୍ତି ପାପୀ
ସଧର୍ମରେ ଥିଲେ ବାକି ଯେ ଥୋକେ ହୋନ୍ତି ।
ଧର୍ମବନ୍ତ ସ୍ତିରୀମାନେ ସଙ୍ଗରେ ଥାନ୍ତି ପୁଣ
ପ୍ରଳୟବେଳେ ଲୀନ ଶରୀରେ ଯାନ୍ତି ଜାଣ ।
ଉତ୍ପତ୍ତିବେଳେ ପୁଣ ତାହାଙ୍କୁ ଜନ୍ମ କରି
ସଂସାର ପାଳଇ ଅତୁଟ ଦେବନାରୀ ।
ଏମନ୍ତେ ସ୍ଥିତି, ଉତ୍ପତ୍ତି ପ୍ରଳୟ ହୋଇଜାଣ
ପୂର୍ବରେ ଯେଉଁରୂପେ ଜନ୍ମଇ ସେ ରୂପେଣ ।
ରାଣୀମାନେ ବୋଇଲେ ଶୁଣିଣ ସକଳ
ଅଯୋଧ୍ୟା ମହୀପାଳ ମଇତ୍ର ଆମ୍ଭର ।
ତାଙ୍କର ପୁତ୍ର ଜାତ ହୋଇବଟିକି ପୁଣ
ଆମ୍ଭ ପ୍ରାୟେ ତାଙ୍କକୋଳ ହୋଇଅଛି ଶୂନ୍ୟ ।
ନ୍ୟାୟବନ୍ତ ରାଜା ଯେ ବିଚାରବନ୍ତ ପୁଣି
ଧାର୍ମିକପଣେ ରାଜା ଅଟଇ ଶିରୋମଣି ।
ଟାଣ ପଣରେ ରାଜା ଶନିକି ଜିଣିଲା
ନପାରି ଜନ୍ତୁପତି ଫେରିଣ ପୁଣ ଗଲା ।
ଶାନ୍ତି ପଣେ ଶୀତଳ ତାହାଙ୍କୁ ନାହିଁ ବଢ଼
ସାତଶ ପଚାଶ ରାଣୀ ଅଟନ୍ତି ପୟର ।
ସମସ୍ତଙ୍କୁ ରାଜନ ସୁଖରେ ଅଛି ପାଳି
ରାଜାର ବଚନ ସେ ନ ଲଘନ୍ତି ନାରୀ ।

ନାରଦ ବୋଲନ୍ତି ତୁମ୍ଭେ କେମନ୍ତ ଜାଣିଲ
ତାଙ୍କର ସଙ୍ଗରେ ସଙ୍ଗ ତୁମ୍ଭର ନାହିଁ ମୂଳ ।
ରାଣୀମାନେ ବୋଇଲେ କଥାରୁ ଜଣାଗଲା
ରାଜା ଆମ୍ଭର କହିବାରୁ ଦୁହିତା ସେ ନେଲା ।
ଯେତେ ବିଚାରନ୍ତି ପ୍ରୀତିହେଲେ ଅଭ୍ୟନ୍ତର
ଜଣେ ନାସ୍ତି କଲେ ଜଣେ ବୋଲନ୍ତି ହେଲାଭଲ ।
ଶୁଣିଣ ନାରଦ ବୋଲନ୍ତି ତୁମ୍ଭେ ଜାଣ
ପ୍ରୀତିରେ ବଶ୍ୟ ରାଜାରାଣୀ ହେଲେ ପୁଣ ।
ଆମ୍ଭଙ୍କୁ ସୁମରିବାରେ ଆମ୍ଭେ ଯେ କହିଲୁ
ତୁମ୍ଭ ଭାବଭକ୍ତି ଦେଖି ସନ୍ତୁଷ୍ଟ ହୋଇଲୁ ।
ଆମ୍ଭର ବଧୂହେବ ତୁମ୍ଭର ଦୁହିତା
ଦିଅ ଚମ୍ପାବତୀ ନଗ୍ରେ ନକର ମନେ ଚିନ୍ତା ।
ଏ ଦୁହିତା ସକାଶେ ସନ୍ତାନ ତୋର ହେବ
ଋଷ୍ୟଶୃଙ୍ଗ ତୋର ପୁରକୁ ନିଶ୍ଚୟ ଆସିବ ।
ଆମ୍ଭଠାରୁ ଶୁଣି ରାଜ ଦୁହିତା ଚାଳିଦେଲା
ନୀଳାବତୀ ବୋଇଲେ ଏକଥା ସତ୍ୟ ଭଲା ।
ଜ୍ଞାତପ ନୋହିଲେ କି ରାଜନ ଦ୍ୟନ୍ତେ ଛାଡ଼ି
ଆମ୍ଭେ ବିଗିଡ଼ିବାକୁ ଆଗହୁଁ ଅଛି ପଡ଼ି ।
ରାଣୀମାନେ ବୋଇଲେ ଶୁଣହେ ମୁନିବର
ଆମ୍ଭଙ୍କୁ ଶତେକୁମାର ଯେବେ ଦେଲ ବର ।
ସେ ରାଜାର କେତେ କୁମର ହେବେ କହ
ଅନେକ ରାଣୀ ଯେ ଅଟନ୍ତି ରାଜାର ପ୍ରିୟ ।
ନାରଦ ବୋଇଲେ ରାଜାର ହେବେ ଚାରିପୁତ୍ର
ତିନିରାଣୀ ଗର୍ଭରୁ ଯେ ହୋଇବେ ସମ୍ଭୂତ ।
ତ୍ରିଲୋକ୍ୟ ଠାକୁର ସେ ଅଟନ୍ତି ବାସୁଦେବ
ଚତୁର୍ଦ୍ଧା ମୂର୍ତ୍ତିରେ ସେହୁ ଜାତହେବ ।
ତେବେ ଗରିଷ୍ଠ ଅସୁର ମରିବେ ରାଜ୍ୟରୁ
ତେବେ ସୁଖୀ ହୋଇବେ ତାଙ୍କର କୃପାରୁ ।
ଦୁର୍ଜନ ଲୋକମାନେ ସବୁହେବେ ନାଶ
ମର୍ତ୍ତ୍ୟପୁର ରାଜାମାନେ ହୋଇବେ ବିଶ୍ୱାସ ।
ଗଲାବେଳେ ସମସ୍ତଙ୍କୁ ସଙ୍ଗରେ ପ୍ରଭୁନେବେ
ଥିଲା ଯାକ ସମସ୍ତଙ୍କୁ ଭାବ କରିଥିବେ ।
ଏଗାର ସହସ୍ର ବର୍ଷେ ମାରିବେ ଅସୁର
ସନ୍ତାନ ରଖିଣ ପ୍ରଭୁ ଯିବେ ନିଜପୁର ।
ତାଙ୍କର ସଙ୍ଗରେ ତୁମ୍ଭେମାନେ ସର୍ବଯିବ
ନାତି ସିନା ତୁମ୍ଭର ଏ ରାଜ୍ୟେ ରାଜାହେବ ।

ପୁତ୍ରବଧୂ ସମସ୍ତେ ଯିବେ ଏକାବେଳେ
ଶ୍ରୀହରି ପାଟଣାରେ ରହିବେ ସର୍ବକାଳେ ।
ଯେବେ ତାଙ୍କଠାରେ ବିଶ୍ୱାସ ତୁମ୍ଭେ ହେବ
ତେବେ ତୁମ୍ଭେ ଭବଜଳ ନଦୀରୁ ପାରିହେବ ।
ଦଶରଥ କୁମର ହୋଇବେ ଆଦିମୂଳ
ନରବାନର ଦେବତା ଖଟିବେ ପାଦତଳ ।
ନାଗବଳ ଆଦିସର୍ବେ ହୋଇବେ କିଙ୍କର
ଚେତାରଖ ମନରେ ଯେ ନକର ଅନ୍ତର ।
ହୃଦରେ ଭଗତି ହେବ ମନରେ ହରଷ
ପ୍ରୀତିକଲେ ତରିବ ନୋହିଲେ ଯିବନାଶ ।
ଶୁଣିଣ ରାଜାରାଣୀ ସନ୍ତୋଷ ହୋଇଲେ
ପାଏଡ଼ା ପାଡ଼ି ସମସ୍ତେ ଭୂମିରେ ଶୋଇଲେ
ମୁନିଙ୍କ ଚରଣଧରି କହନ୍ତି ଯେ ବାଣୀ
ଉତ୍ତମ ଗତି ଆମ୍ଭଙ୍କୁ ଦେଲ ମୁନିମଣି ।
ଅଜ୍ଞାନ ଯିବ ଆମ୍ଭେ ଜ୍ଞାନ ଯେ ପାଇଲୁ
ତୁମ୍ଭର ପ୍ରସାଦରେ ମୁକ୍ତ ଯେ ଲଭିଲୁ ।
ମଇତ୍ର ପୁତ୍ର ଯେବେ ହୋଇବେ ବାସୁଦେବ
ଆମ୍ଭଙ୍କୁ ନିଶ୍ଚୟ ଦେବେ ସଦଗତି ଭାବ ।
ଚିନ୍ତାଜଳୁ ଆମ୍ଭଙ୍କୁ ଯେ ଶାନ୍ତି କରାଇଲ
ଦାବାନଳ ଅଗ୍ନିରେ ଗଙ୍ଗାଜଳ ଦେଲ ।
ଭଗୀରଥି ଆଜ ଯେ କଲ ସୁଦୟାରେ ।
ଶୃଗାଳକୁ ସିଂହ କଲ ହେ ମୁନିବରେ
ଶ୍ୱାନ ଆମ୍ଭ ସିଂହାସନେ ବସୁ ତୁମ୍ଭବୋଲେ ।
ଶୂକରକୁ କାମଧେନୁ କଲ ଋଷି ଆସି
କେଉଁ ଶୁଭଯୋଗେ ଆମ୍ଭେ ଜନ୍ମ ଲଭିଲୁଟି ।
ବାନରକୁ ପାନ ଯେ ଭୁଞ୍ଜାଇଲେ ପୁଣ
ଅନ୍ଧହସ୍ତେ ବସ୍ତମୁଦି ଦେଲ ହେ ଆପଣ ।
ଜନ୍ମ ଦରିଦ୍ରଙ୍କୁ କୋଟିଏ ଧନ ଦେଇ
ଅକଳିତ ବାରାନିଧି କିଳା ଯେ ପୋଡିଲ ।
ଅନ୍ଧକୁ ଚକ୍ଷୁଦାନ ଭଲ୍ଲୁକେ ସୁବର୍ଣ୍ଣ ପଞ୍ଜୁରୀ
ଘୁଷୁରୀକି ଖୁଆଇଲେ ପାଚିଲା କଦଳୀ ।
ମୁଗୁନି ପଥରକୁ ଜଳରେ ଭସାଇଲ
ବେଙ୍ଗଙ୍କ ମେଳରେ ନେଇ ଘୃତଛତ୍ରଦେଲ ।
କାକକୁ ମିଷ୍ଟାନ୍ନ ଦେଲତ ଆପଣ
ଏତେବୋଲି ନମିଲେ ଯେ ମୁନିଙ୍କ ଚରଣ ।
କୃତ୍ୟ କୃତ୍ୟ ହୋଇକରି କରନ୍ତି ଦଉନି
ନିଶ୍ଚୟେ ବାସୁଦେବଙ୍କୁ ଦେଖିବୁ ଆମ୍ଭେ ପୁଣି ।

ନାରଦ ବୋଇଲେ ଗୋ ରାଣୀମାନେ ଶୁଣ
ଚାରିବର୍ଷେ ଦେଖିବ ତ୍ରୈଲୋକ୍ୟ ସ୍ୱାମୀପୁଣ ।
ସତର ବର୍ଷରେ କମଳାଙ୍କୁ ଦେଖିବ
ବାସୁଦେବ ସଙ୍ଗରେ ଈଶ୍ୱର ଜନ୍ମହେବ ।
ତିନିପୁର ଦେବଙ୍କୁ ଦେଖିବ ନୟନରେ
ପାତକ ଛାଡ଼ିଯିବ ଶରୀରୁ ତୁମ୍ଭରେ ।
ନାରଦ ବଚନ ଶୁଣି ହେଲେ ତୋଷମନ
ବାସୁଦେବ ଦେଖିବାକୁ ହର୍ଷକଲେ ମନ ।
ରାଜ୍ୟର ଚିନ୍ତା ଯେ ମନରୁ ଛାଡ଼ିଲେ
ସମସ୍ତେ ଉଲ୍ଲାସ ହୋଇ ଆନନ୍ଦ ହୋଇଲେ ।
ନାରଦ ବେଦବର ବୋଲରେ ଗଲେ ପୁଣ
ରାଜାର ଦୁଃଖମାନ କଲେ ନିବାରଣ ।
ଚଣ୍ଡାଳର ଦୁହିତା ଯେ ସ୍ୱର୍ଗପୁର ଗଲା
ବଶିଷ୍ଠ ଋଷିଙ୍କୁ ଯହୁଁ ବରଣ ସେ କଲା ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
କଥାଏ ରହିଲା ଏବେ କହ ମୋତେ ପୁଣ ।
ସେ ଧାନ କିସ ହେଲା କିଏ ଦେଲା ପୁଣ
ନାରଦ ରାଜାଙ୍କୁ କି ସେହୁ ଦେଲେ ଧାନ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ନାରଦ ରାଜା ନଗ୍ରେ ପ୍ରବେଶ ଯାଇହୋନ୍ତି ।
ରାଜା ପ୍ରଜାଙ୍କ ଚିନ୍ତାରେ ନିମଗ୍ନ ହୋଇଥିଲା
ଶୀତଳ କହି ନାରଦ ରାଜାଙ୍କୁ ମୋହିଲା ।
କଥାର ସମ୍ବାଦ ଯେ ସରିଲା ଯହୁଁ ପୁଣ
ରାଜନ ବୋଇଲେ ଆମ୍ଭପୁରେ ରହ ଆଜଦିନ ।
ନାରଦ ବୋଇଲେ ତୁ ଶୁଣରେ ରାଜନ
ପାତ୍ର ମନ୍ତ୍ରୀଙ୍କି ତୋର ଡକାଅ ବହନ ।
ଚାରିଶତ ଯୁଣ ଯେ ଅଟଇ ତୋର ସ୍ଥାନ
ନଗ୍ରପୁର ପାଟଣା କଟକ ରାଜ୍ୟମାନ ।
ସକଳ ରାଜ୍ୟରେ ତୁମ୍ଭେ ଦିଆଅ ଘୋଷଣ
ଧାନ ବୋହି ନେବାକୁ ଆସନ୍ତୁ ସର୍ବଜନ ।
ବଳଦ କୁଣ୍ଢାଇ ଯାହାର ଯେଉଁ ସଜ
ସମସ୍ତେ ଆସିଣ ଧାନ ବୋହିନ୍ୟନ୍ତୁ ବେଗ ।
ଆଜଠାରୁ ଦୁର୍ଭିକ୍ଷ ଭାଗୁଁ ତୋର ପୁର
ତିନିବର୍ଷକୁ ଧାନ ନ୍ୟନ୍ତୁ ପ୍ରଜାନର ।
ଦୁଃଖୀ ଦରିଦ୍ର ଯେ ଚଣ୍ଡାଳ ନାନବର୍ଣ୍ଣେ
କନ୍ଧ ଶବର ଆଦି ଯେତେଛନ୍ତି ପୁଣ ।
ସମସ୍ତେ ଆସିଣ ଯେ ଧାନ ବୋହି ନ୍ୟନ୍ତୁ
ବିଳମ୍ବ ନକରି ରାଜା ଲୋକ ସୁଖପାନ୍ତୁ ।
ରାଜନ ବୋଇଲେ ହେ କେଉଁଠାରେ ଧାନ
କେଉଁଠାରୁ ନେବେ ସକଳ ପ୍ରଜାଜନ ।
ନାରଦ ବୋଇଲେ ମାଣିକ୍ୟପୁରେ ଧାନ
ଅମ୍ବିକା ଚଣ୍ଡାଳ ଯେ ସାଧୁତମା ପୁଣ ।
ସେ ଧାନ ତୋର ପ୍ରଜାଘେନି ବୋହିଯାନ୍ତୁ
ଅଟକ ନାହିଁ ରାଜନ କର ମନେହେତୁ ।
ରାଜନ ବୋଇଲେ ସେ ଚଣ୍ଡାଳ ସତ୍ୟକଲା
ଦୁହିତାନେଲେ ଧନ ଦେବଇଁ ବୋଇଲା ।
ନାରଦ ବୋଇଲେ ସେ ସତ୍ୟହେଲା ତାର
ତାହାର ଦୁହିତାକୁ ନେଲେ ବେଦବର ।
ସେକନ୍ୟାର ଧାନ ତୋତେ ଦେଲେ କୁଶଧର
ମୋତେ ଭେଦିଦେଲେ କହିବ ରାଜାର ।
ତାଙ୍କର ବୋଲରେ ମୁଁ ତୋର ପୁରେ ଆସି
ଏବେ ଧାନ ନିଅନ୍ତୁ ସକଳ ପୁରବାସୀ ।
ରାଜନ ବୋଇଲେ ତୁମ୍ଭେ ଶୁଣ ମୁନିବର
ଚଣ୍ଡାଳ ଦୁହିତାକୁ ଯେ ନେଲେ ବେଦବର ।
ଆପେ ବିଭାବେଳେ କି ପୁତ୍ରଙ୍କୁ ବିଭାକଲେ
ନାରଦ ବୋଇଲେ ଯେ ବଶିଷ୍ଠ ବରିଲେ ।
ବଶିଷ୍ଠଙ୍କର ଭାରିଯା ଆମ୍ଭର ଭାଉଜ
ଶୁଣିଣ ରାଜନ ଯେ ହୋଇଲେ ଆଶ୍ଚର୍ଯ୍ୟ ।
ବୋଇଲେ ମୋର ଛାର ପାଇଁକି ତୁମ୍ଭେ ପୁଣ
ଚଣ୍ଡାଳ ଝିଅକୁ ନେଇ ତେଜିଲ ମାନ୍ୟଧର୍ମ ।
ନାରଦ ବୋଇଲେ ସେ ଧର୍ମର ନନ୍ଦିନୀ
ବଶିଷ୍ଠ ଋଷି ତାଙ୍କୁ ବିଭା ହେଲେ ପୁଣି ।
ପଦ୍ମିନୀ ଅଂଶରେ ସେ ସବୁଦିନେ ଜାତ
ବେଦବ୍ରହ୍ମାର ବଧୂ ସେ ଅଟଇ ସମ୍ଭୁତ ।
ଅନେକ କାଳ ଭୋଗ କଲେ ସେ ବଶିଷ୍ଠ
କାଳେ ତାଙ୍କୁ ଆସିଣ ମିଳିଲା ପୁଣି କଷ୍ଟ ।
ନିମିରାଜା ଯାଗ ଯେ ଆରମ୍ଭ ପୁଣି କଲା
ବଶିଷ୍ଠଙ୍କୁ ଆଚାର୍ଯ୍ୟ ବରଣେ ବରିଲା ।
ବରଣ କରିବାରୁ ବଶିଷ୍ଠ ତୋଷ ହେଲେ
ତୋହର ଯୋଗେଯିବି ବୋଲିଣ ବୋଇଲେ ।
ଶୁଣିକରି ନିମିରାଜା ସକଳ ଭିଆଇଲା
ରାଜ୍ୟ ପ୍ରଜା ଦେବତା ସଭିଙ୍କି ବରିଲା ।

ଋଷି ବିପ୍ର ସମସ୍ତେ ଠୁଳ ହେଲେ ଆସି
ଶୁଣିଣ ସୁରରାଜା ବୋଇଲେ ତାଙ୍କୁ ହସି ।
ରାଜାର ଯାଗ ନାଶ କରିବା ନିମନ୍ତେ
ଯାଗ ଆରମ୍ଭ ଯେ କଲେକ ସୁରନାଥେ ।
ସକଳ ଦେବତାଙ୍କୁ ବରିଲେ ତୋଷମନେ
ସକଳ ସମ୍ଭର୍ବ ଯେ କଲେକ ଭିଆଣେ ।
ଦେବଋଷି ନବରି ସେ ବଶିଷ୍ଠଙ୍କୁ ବରିଲେ
ଓପ୍ରଧରେ ମୁନି ତାଙ୍କ ସଙ୍ଗେ ଚଳିଗଲେ ।
ନିମିରାଜା ବୋଇଲେ ଯେ ଆଗେ ମୁଁ ବରିଲି
ତୁମ୍ଭର ବୋଲରେ ମୁଁ ସକଳ ଭିଆଇଲି ।
ମୋର ଯାଗ ଛାଡ଼ିଣ ଗଲ ସ୍ୱର୍ଗପୁର
ବଶିଷ୍ଠ ବୋଇଲେ ଦେବ ଯାଗ ସୁର ନର ।
ସ୍ୱର୍ଗରୁ ଅଇଲେ ତୋର ଯାଗ କରିବା ଜାଣ
ଶୁଣି ନିମି ରାଜନ କହେ କିଛି ପୁଣ ।
ବିଚାରିଲା ଦେବତା ମୋ ସଙ୍ଗେ ବାଦୀହେଲା
ବଶିଷ୍ଠ ଋଷି ଏବେ ଅଧର୍ମ ଆଚରିଲା ।
ତିନିପୁର ସେହି ପ୍ରଭୁ କଲେକ ଭିଆଣ
ମୋର ଧର୍ମ ଏବେ ଯେ ଯାଉଛି ନାଶ ପୁଣ ।
ସେହି ନାରାୟଣ ପାଦେ ପଶିବି ଶରଣ
ସେ ମୋତେ ଏ କଷ୍ଟରୁ ଉଦ୍ଧରିବେ ପୁଣ ।
ଏମନ୍ତେ ବିଚାରି ସେ ନିରୋଳାସ୍ଥାନେ ଗଲା
କ୍ଷୀର ଜାହ୍ନବୀ କୂଳେ ଏକାନ୍ତେ ବସିଲା ।
ବାସୁଦେବଙ୍କୁ ଚିନ୍ତା କରଇ ମନରେ
ଜାହ୍ନବୀ ଶବଦ ଯେ କଲାକ ସେଠାରେ ।
ନାରାୟଣର ଦୟା ତାଠାରେ ହେଲା ପୁଣ
ଗଉତମ ଋଷିଙ୍କୁ କରତୁ ବରଣ ।
ବେଗ ଯାଗକର ସୁଫଳ ହେବ ଭଲ
ନିମିରାଜା ବୋଇଲେ ମୁଁ ଦେବଙ୍କ ସଲ ।
ମୋର ସଙ୍ଗେ ସୁର ରାଜା କଲାକ ବିବାଦ
ଦେବ ଅସୁରେମୋର ଯାଗକରିବେ ନିରୋଧ ।
ଜାହ୍ନବୀ ବୋଇଲେ ତୋତେ ବାସୁଦେବସାୟ
ଯାଗଶାଳ ଶୋଧନ୍ତେ ଉପୁଜିବ ପୁଅ ।
ତିନିବର୍ଷ କୁମର ଯାଗ ତୋ ରକ୍ଷାକରି
ସକଳ ସୁର ଅସୁର ପଳାଇବେ ଡରି ।
ଶୁଣିଣ ନିମିରାଜା ବେଗେ ଚଳିଗଲା
ଗୌତମ ଋଷିଙ୍କି ବରଣ ଯାଇକଲା ।
ସେ ଋଷି ଆସିଣ ଯେ ଯାଗଶାଳା ଶୋଧି
ପୁତ୍ରେକ ଜାତହେଲା ବୃଷ୍ଟିରେ ବାରାନିଧି ।
ଧନୁ କମାଏଣ ଧରି ପୁତ୍ରେକ ହେଲେ ଜାତ
ମଞ୍ଜୁସର ଭିତରୁ ବାହାର ହେଲେ ସୁତ
ଋଷିଙ୍କି ମାନ୍ୟକରି ପିତାଙ୍କୁ ନମସ୍କାର
ବୋଇଲେ ଯାଗକୁ ତୁମ୍ଭେ ଭୟ ନ କର ।
ଗଉତମ ବୋଇଲେ ଶୁଣରେ କୁମର
ଅସମ୍ଭବ କଥା ତୁ କହୁରେ ଧନୁର୍ଦ୍ଧର ।
ତୁଯେବେ ଯାଗରଖିବୁ ସଂପ୍ରତେ ମୋତେ ଦିଅ
ନିମିରାଜାର ଯେବେ ତୁ ନିଷ୍ଟେ ହେଲୁ ପୁଅ ।
କୁମର ବୋଇଲେ ମୋର ସଂକେତ ଏବେ ଘେନ
ରାଜାର ସଙ୍ଗତେ ରାଣୀ ଅଟନ୍ତି ଯେ ପୁଣ ।
ନଉ ସସ୍ର ବର୍ଷ ହେଲା ଫଳ କେବେ ନାହିଁ
ନପୁଂସକ ଲକ୍ଷଣ ଶରୀରେ ଛନ୍ତି ବହି ।
ସେମାନଙ୍କ ସ୍ତନରୁ କ୍ଷୀର ଏବେ ଝରୁଁ
ମୋତେ କ୍ଷୀରଦେଲେ ଯ ମନୋରଥ ପୂରୁଁ ।
ଶୁଣିକରି ସମସ୍ତେ ଆନନ୍ଦ ଚିତ୍ତ ହେଲେ
ରାଜନ ପୁତ୍ରକୁ ନେଇ ରାଣୀରେ ସମର୍ପିଲେ ।
ସମସ୍ତ ରାଣୀଠାରୁ କୁମର କଲେ କ୍ଷୀରପାନ
ଦେଖିଣ ସନ୍ତୋଷ ଯେ ହେଲେ ରାଣୀ ପୁଣ ।
ସମସ୍ତେ ପ୍ରତେଗଲେ ନାମ ଯେ ଦେଲେତାର
ବସନ୍ତ ବୋଲିନାମ ପ୍ରକାଶ ତାଠାର ।
କ୍ଷୀରପାନ କରନ୍ତେ ସେ ଯୁବା ରୂପହୋଇ
ଦେଖିଣ ନିମିରାଜା ଯାଗ ଯେ କରଇ ।
ଯାଗ ଅନୁକୂଳେ ଦେବତାଏ ବାଦୀହେଲେ
ଚାରିମେଘକୁ ସୁରରାଜା ବରି ସେ ବୋଇଲେ ।
ଶୁଣିଣ ଚାରିମେଘ ବରଷିଲେ ପାଣି
ଦେଖିଣ ନିମିରାଜା ତାଟକା ହେଲେ ପୁଣି ।
କୁମରକୁ ବୋଇଲେ ଶୁଣରେ ନନ୍ଦନ
ଇନ୍ଦ୍ରବିବାଦ ଯେ ମୋଠାରେ କଲେ ପୁଣ ।
ଶୁଣିଣ କୁମର ପବନାଶର କଲା
ଚାରିମେଘ ଉଡାଇ ଶୂନ୍ୟରୁ ଘେନିଗଲା ।
ଦେଖିଣ ଦେବତାଏ ହେଲେ କ୍ରୋଦ୍ଧମନ
ବୋଇଲେ ନିମି ରାଜାଙ୍କୁ ଧ୍ୱଂସ କରିବା ପୁଣ
ଜାଣିଣ ସେଠାରୁ ଯେ ବେଗେ ଚଳିଗଲି
ବସନ୍ତ କୁମର ଆଗରେ ଧତ୍ୱର ମିଳିଲି ।
ବୋଇଲି ଦେବତାଏ ହୋଇଲେ ତୋରବାଦୀ
ଶୁଣିଣ କୁମର ଯେ ଦେବତାଙ୍କୁ ରୁନ୍ଧି ।

ନାରାୟଣ ଶରରେ ସକଳଦେବେ ବନ୍ଦୀ
ଇନ୍ଦ୍ର ଯାଗ ଛାଡ଼ି ନିମିରାଜା ଯାଗେ ବନ୍ଦୀ ।
ହବିର୍ଭାବ ଦେବତାଏ କଲେକ ଆହାର
ତିନିପୁର ଅସୁରେ ଗରିଷ୍ଟ ବଳିଆର ।
ବାର୍ତ୍ତା ପାଇଣ ସେହୁ ମିଳିଲେକ ଯାଇ ।
ଦେଖିଣ ବସନ୍ତ ଯେ ଶରବାଡ଼ି ଦେଇ ।
ଶତେକ ଯୁଣ ଦୈର୍ଘ୍ୟ ପ୍ରତି ସେ ଶରବାଡ଼କଲା
ଦେବତା ଅସୁରଚନ୍ଦ୍ର ସୂର୍ଯ୍ୟଙ୍କୁ ରଖିଲା ।
ବାହାରେ ରହିଲା ଯେ ଧନୁଶର ଧରି
ବିଜୁଳିପ୍ରାୟେ ତେଜ ଅଟେ ଯେ ତାହାରି ।
ନିବିଡ଼ ଅନ୍ଧାର ଯେ ହେଲା ଦଶଦିଶ
ଚମକି ପଡ଼ିଲା ଯେ ସେହୁ ରାଜ୍ୟଯାଗ ।
ଦେଖିଣ ନରବାନର ଅସୁରବଳ ପୁଣ
ଭୟରେ ବିକଳ ଯେ ହୋଇଲେ ତହିଁ ପୁଣ
ଦେଖିଣ ବିଧାତା ଶରବାଡ଼ ଜଳା କଲା
ଚନ୍ଦ୍ର, ସୂର୍ଯ୍ୟ ଦୁହିଁଙ୍କି ଯେ ଜଳାରେ ଛାଡ଼ିଦେଲା ।
ତିମିରୀ ତୁଟିବାରୁ ଅସୁରେ ପଳାଇଲେ
ଶରବାଡ଼ ହରଣ କଲେକ କ୍ରମରେ ।
ଯାଗସାରି ପୂର୍ଣ୍ଣ ଆହୁତି ସାରିଲେ
ହବି ଖାଇ ଦେବତାଏ ସ୍ୱର୍ଗପୁର ଗଲେ ।
ପୂର୍ଣ୍ଣଆହୁତିରୁ ଚରୁ ଉପୁଜିଲା ଭଲେ
ସେ ଚରୁରୁ ଶ୍ୱେତନାମେ ପୁତ୍ରେକ ହୋଇଲେ ।
ଶ୍ୱେତ ବସନ୍ତ ବୋଲିଣ ହେଲେ ଦୁଇଭାଇ
ତେରବର୍ଷେ ସମସ୍ତେ ମେଲାଣି ହୋଇଯାଇ ।
ଯାଗଭଗ୍ନ କରି ନିମିରାଜା ନବରେ ପ୍ରବେଶ
ଦୁଇପୁତ୍ର ପାଇ ରାଜା ହୋଇଲେ ସନ୍ତୋଷ ।
ସ୍ୱର୍ଗର ଯାଗସାରି ବଶିଷ୍ଠ ଯାଇ ମିଳି
ଦେଖିଲେ ନିମିରାଜା ଯାଗଗଲା ସରି ।
କ୍ରୋଧରେ ବଶିଷ୍ଠ ରାଜାଙ୍କୁ ଶାପ ଦେଲେ
କୁମ୍ଭିପାକ ନର୍କରେ ପଡ଼ରେ ବୋଇଲେ ।
ନିମିରାଜା ବୋଇଲେ ଅଧର୍ମ କିମ୍ପା କଲୁ
ପାପକୁ ନ ଡରି ଏବେ କ୍ରୋଧରେ ଶାପ ଦେଲୁ
ମୋହର ଶାପରେ ତୁହି ମୂର୍ଖ ହୁଅ ପୁଣ
ଏ ଜନ୍ମରେ ବିଦ୍ୟାତୋର ନୋହୁ ମୁନିପୁଣ ।
ଆରଜନ୍ମେ ବିଭାହୁଅ ଚଣ୍ଡାଳ ଘରେ ପୁଣି
ଶୁଣିକରି ବଶିଷ୍ଠ ତାଟକା ହେଲେ ଜାଣି ।
ତାହା ଜାଣି ବେଦବର ସେଠାରେ ମିଳିଲେ
ନିମିରାଜାକୁ ଶାପରୁ ମୁକ୍ତ ପୁଣି କଲେ ।

ଦେଖିଣ ବଶିଷ୍ଠ ଯେ ଛାଡ଼ିଲେ ଶରୀର
ଜନମ ଲଭିଲେ ସେହୁ ବରୁଣର ପୁର ।
ଘରଣୀ ତାଙ୍କର ସେ ଶକୁନ୍ତଳା ନାରୀ
ଶୁଣିକରି ଅଗ୍ନିରେ ପଶିଲେ ବେଗକରି ।
ଅମ୍ବିକା ଚଣ୍ଡାଳ ଘରେ ହୋଇଲାକ ଜାତ
ପଦ୍ମିନୀର ଶରୀର ସେ ହୋଇଲା ତଦନ୍ତ ।
ବଶିଷ୍ଠ ବରୁଣର ପୁରରେ ଜାତ ହେଲେ
ଜନ୍ମ ହୋଇ ନିଜ ଶରୀର ଧଇଲେ ।
ବେଦବର ଆସିଣ ଯେ ବିଦ୍ୟା ଶିଖାଇଲେ
ପାଞ୍ଚଦିନେ ସକଳ ବିଦ୍ୟା ସେ ଶିଖିଲେ ।
ସାତଦିନେ ସୁରଭୀକି ବିହି ଆଣିଦେଲେ
ସୁରଭୀ ଘେନିଣ ଋଷି ଅଯୋଧ୍ୟାକୁ ଗଲେ ।
ଅଯୋଧ୍ୟାରେ ଦେଖିଲା ଘରଣୀ ଗଲାନାଶ
ବିଚାରିଲା ନିମିରାଜା ଶାପ ଯେ ପ୍ରାପତ ।
ଦଶରଥ ରାଜାର ସଭାରେ ବସିଲା
ଦେଖିଣ ରାଜନ ଯେ ମାନ୍ୟ ଧର୍ମ କଲା ।
ଆମ୍ଭେ ସେ କଥା ଜାଣିଣ ଅଇଲୁ ତୋର ପୁର
ମାଣିକ୍ୟ ପାଟଣାରେ ମିଳିଲୁ ହାଡ଼ିଘର ।
ତାହାକୁ ଡକାଇଣ ଆମ୍ଭେ ଯେ କହିଲୁ
ପଦ୍ମିନୀ କନ୍ୟାଜାତ ତୋ ଘରେ ବୋଇଲୁ ।
ଅଶୁଦ୍ଧ ଲୋକକୁ ତୁ ନ ଦେବୁ ତାକୁ ଜାଣ
ସେ କନ୍ୟା ଦେବଲୋକରେ ହୋଇବ ଭୂଷଣ ।
ସତ୍ୟ କରାଇଲୁ ନ ଦେବୁ କନ୍ୟା କାହିଁ
ଋଷି ବ୍ରାହ୍ମଣ ଦେବତା ରାଜା ନେଲେ ଦେ ।ଇ ।
ଅନେକ ଧନ ଏ କନ୍ୟାର ହୋଇବ ପୁଣ
ଏ ଚାରି ଜାତିରେ ଯେହୁନେବ କନ୍ୟାଦାନ ।
ସେ ଅର୍ଜିଲା ଧନ ତାର ସଙ୍ଗେ ସମର୍ପିବୁ
ନୋହିଲେ ଚଣ୍ଡାଳରେ ନିଶ୍ଚୟ ମରିବୁ ।
ଏତେ କହିଣ ଆମ୍ଭେ ସ୍ୱର୍ଗପୁର ଗଲୁ
ଏଗାର ବର୍ଷ ଯେ ଏଥିରେ ଗଲା ବାବୁ ।
ସେ ଦୁହିତାର ନିଜ ଅର୍ଜିଲା ଧନ ପୁଣ
କୃଷିକରି ଧାନ କଲା ଦୁଇଲକ୍ଷ ଭରଣ ।
ଧନ ହେବାରୁ ଚଣ୍ଡାଳ ନାମ ଯେ ପ୍ରକାଶ
ପଦ୍ମିନୀ କନ୍ୟା ଜାତ ସେ ଜାଣିଲେ ସମସ୍ତ ।
ଧନଦେଖି ଜାତିଲୋକ ଆସି ଲୋଭ କଲେ
ଝିଅକୁ ବିଭା ହେବୁ ବୋଲିଣ ବୋଇଲେ ।

ସମସ୍ତଙ୍କୁ ଭାଙ୍ଗିଦେଲା ଅମ୍ବିକା ଚଣ୍ଡାଳ
ଜାତି ବାଛିବାରୁ ଯେ ମିଳିଲେ ବିପ୍ରବର ।
ସତ୍ୟଶୁଣି ବିପ୍ରମାନେ ପଳାଇଣ ଗଲେ
ମହୀପାଳେ ମିଳିବାରୁ କହିଲେ ସେ ଭଲେ ।
ନୁହଇଁ ବୋଲିଣ ରାଜା ଫେରିଗଲେ ତେଣୁ
ଚୋର ତସ୍କର ସେ ସତ୍ୟକୁ ଲଙ୍ଘି ତେଣୁ ।
ତୁ ରାଜା ତାହାକୁ ଯେ ମଣାଇ ମାଗିଲୁ
ସତ୍ୟ ଶୁଣି ତୁହି ପୁଣି ଘୁଞ୍ଚିଣ ଅଇଲୁ ।
ପୂର୍ବରେ ଇନ୍ଦ୍ର ତୋର ଅଟଇ ବଇରୀ
ସେ କଥା ଜାଣି ତୋର ସଙ୍ଗେ କଲା କଳି ।
ତୋର ରାଜ୍ୟ ଅପାଳକ ନିର୍ଜଳ ପୁଣ ହେଲା
ବିପ୍ରମାନଙ୍କ ହସ୍ତରେ ଶାପ ଯେ ବିହିଲା ।
ସେ ଶାପରେ ବାରବର୍ଷ ଜଳ ହେଲା ଶୂନ୍ୟ
ନବବର୍ଷ ଏଥିରେ ପୁଣ ଗଲା ଦିନ ।
ଅନେକ କଷ୍ଟରେ ପ୍ରଜା ତୋର ଜୀଇ
ଦେଖିଣ ବିକଳ ଯେ ହେଲା ତୋର ଦେହୀ ।
ପ୍ରଜାଙ୍କୁ ଭଣ୍ଡାର ଧନ ସକଳ ତୁ ଯେ ଦେଲୁ
ବନ୍ଧୁ କୁଟୁମ୍ବଠାରୁ ମାଗିଣ ଧନନେଲୁ ।
ପ୍ରତିରାଜାମାନଙ୍କଠାରୁ ଅଣାଇଲୁ ଧନ
ପ୍ରଜାଙ୍କୁ ଦବାରେ ନସରେ ତାଙ୍କ ଦିନ ।
ବିକଳେ ଦଶରଥ ପୁରକୁ ତୁ ଯେ ଗଲୁ
ଆକୁଳରେ ରୋଦନ ବହୁ ସେଠିକଲୁ ।
ସେ ରାଜା ଅନେକ ତୋତେ ଶୀତଳ କରାଇଲା
ବେଦବରକୁ ସୁମର ବୋଲିଣ ବୋଇଲା ।
ସେ କଥା ହେତୁ କଲୁ ମନରେ ରାଜନ
ଶାନ୍ତା କନ୍ୟାକୁ ଘେନିକରି ଗଲୁ ତୁ ନିଜ ସ୍ଥାନ ।
ଏକାନ୍ତେ ବେଦବରକୁ କଲୁ ସୁମରଣ
ଆତ୍ମାଘାତକୀ ହେବୁ ବୋଲି କଲୁ ବିଚାରଣ ।
ଜାଣିଣ ବିଧାତା ସକଳ ଋଷିଙ୍କି ନେଲା ଡାକି
ବୋଇଲା ଚଣ୍ଡାଳ ଝିଅକୁ ବିଭା ହୁଅରେ ତପୀ ।
ସକଳ ମୁନି ଯହୁଁ ନାସ୍ତି ଯେ ପୁଣ କଲେ
ବଶିଷ୍ଠଙ୍କୁ ବେଦବର ଡକାଇ କହିଲେ ।
ନିମିରାଜା ଶାପରେ ଘରଣୀ ତୋର ମଲା
ଚଣ୍ଡାଳ ଘରେ ଆସି ଜାତ ପୁଣ ହେଲା ।
ସେ କନ୍ୟାତୁ ବିଭା ହୁଅ ଏବେରେ କୁମର
ଶୁଣିଣ ବଶିଷ୍ଠ ଯେ କଲେ ସିଉକାର ।
ବଶିଷ୍ଠ ସିଉକାର କରିବା ଶୁଣିଣ
ଅଗସ୍ତି ଶାପ ଦେଲେ ବିଚାରି ମନେଣ ।
ଯେହୁ ମନେ ଏକଥା ଅନ୍ତର କରିବ
ନର, ବାନର ଦେବତା ଋଷିହେଲେ ମରିବ ।
ବେଦବର ସମସ୍ତଙ୍କୁ ଘେନିଣ ସଙ୍ଗତର
ମାଣିକ୍ୟପୁରେ ପ୍ରବେଶ ହେଲ କୁଶଧର ।
ସେହି ନଗ୍ରରାଜା ମନରେ ବିଚାରିଲା
ଅରୁନ୍ଧତୀ କନ୍ୟାକୁ ଦିଅରେ ବୋଇଲା ।
ଚଣ୍ଡାଳ ବୋଇଲା ମୋହର ଭାଗ୍ୟ ହେଲା
ବ୍ରହ୍ମାଣ୍ଡ କର୍ତ୍ତା ମୋର ଦୁହିତାକୁ ନେଲା ।
ଏତେ ବୋଲି ଦୁହିତା ହସ୍ତରେ ମାଳନେଇ
ବେଦବର ଛାମୁରେ ମିଳିଲେ ବେଗେ ଯାଇ ।
ବରଣମାଳା ଦୁହିତା କାହାକୁ ସେ ଦେବ
ବିଧାତା ବୋଇଲେ ବଶିଷ୍ଠଙ୍କୁ ବରିବ ।
ଶୁଣିଣ ପଦ୍ମିନୀ ବଶିଷ୍ଠେ ମାଳା ଦେଲା
ବିଧାତା ପୁରୁଷ ଯେ ଚଣ୍ଡାଳେ ପଚାରିଲା ।
ବୋଇଲା ଏ ତୋହର କେତେ ଅଛି ଧାନ
ହରଷରେ ଚଣ୍ଡାଳ ଯେ କହଇ ବଚନ ।
ଶୁଣିଣ ଚଣ୍ଡାଳ ବୋଲେ ସବୁ ଧାନ ପୁଣି
ନିଅ ତୋର ଧାନ ଯାହାକୁ ଦିଅ ପୁଣି ।
ଶୁଣିକରି ବିଧାତା କନ୍ୟାକୁ ବୋଇଲେ
କେତେ ଗଦାଧାନ ତୋର ହସ୍ତ ମାରଭଲେ ।
ଶୁଣିଣ ପଦ୍ମିନୀ ଯେ ବେଗେ ଚଳିଗଲା
ଦଶ ଗଦା ଧାନରେ ସେ ହସ୍ତ ଲଗାଇଲା ।
ଫେରିଣ ଆସନ୍ତେ ବିଧାତା ବେଗେ ଚଳି
କନ୍ୟା ଋଷିଗଣଙ୍କୁ ସଙ୍ଗରେ ଘେନିକରି ।
ମୋତେ ବୋଇଲେ ରାଜାକୁ ବେଗେ ଯାଇ କହ
ଶୁଣିକରି ମୁହିଁ ତୋର କହିଲି ସନ୍ଦେହ ।
ରାଜନ ବୋଇଲେ ଦୟାକର କୁଶପାଣି
ମୋର ଲାଗି ଚଣ୍ଡାଳ ଦୁହିତା ନେଲ ପୁଣି ।
ତାହାର ଅର୍ଜିଲା ଧାନମୋତେ ଯେବେ ଦେଲେ
ଜଳ କିମ୍ପାଇ ନ ଦେଲେ ମୌନ ହୋଇଗଲେ ।
ବୃଷ୍ଟି ନ କରିବ ସିନା ମୋହର ରାଜ୍ୟରେ
ଗଙ୍ଗା କିମ୍ପା ଅନ୍ତର ଯେ ହୋଇଲା ଏ ପୁରେ
ଗଙ୍ଗାରେ ଦୋଷୀହାଦେ ନୁହଇଁ ମୁହିଁ ପୁଣ
କି କାରଣେ କୋପ ହେ ମୋଠାରେ କଲେ ଜାଣ ।

ନାରଦ ବୋଇଲେ ତାକୁ କରିବା ସୁମରଣା
କେଉଁ ଦୋଷେ ଅନ୍ତର କରୁଛି ସେହୁ ସିନା ।
ଏମନ୍ତ କହି ମୁନି ନିଷ୍ଠେ ବସିଲେ
ଗଙ୍ଗାଙ୍କୁ ସୁମରଣା ମନରେ ମୁନି କଲେ ।
ପ୍ରସନ୍ନ ହୋଇଲା ସେହୁ ମେରୁର ଦୁଲଣୀ
ବୋଇଲା କି କାର୍ଯ୍ୟରେ ଭାଳିଲ ଦେବମୁନି ।
ନାରଦ ବୋଇଲେ ଏ ରାଜ୍ୟକୁ କିମ୍ପା ଛାଡୁ
ଧର୍ମପଥ ଛାଡ଼ିଣ ଅଧର୍ମ କିମ୍ପା ହୁଡୁ ।
ଗଙ୍ଗା ବୋଇଲେ ମୋତେ ସୁର ରାଜାର ମନା
ନାରଦ ବୋଇଲେ ପାପ ଜନ୍ମିଲା ତାର ସିନା ।
ପରଜା ମାରିବାକୁ ଡରିଲେ ବେଦବର
ଚଣ୍ଡାଳ ଦୁହିତାକୁ ବଧୂ କଲେ ତାର ।
ଯେତେକ ଧାନ ଥିଲା ପ୍ରଜାରେ ଦେଇଗଲା
ଜଳ ନ ମିଳିବାରୁ ଗରୁ ଚିନ୍ତା ହେଲା ।
ଗଙ୍ଗା ବୋଇଲେ ଯେବେ ପାପ ହେବ ମୋର
ଦେବତାଙ୍କୁ ବୋଇଲେ କାର୍ଯ୍ୟ କିମ୍ପା ମୋର ।
ବେଦବର ବୋଇଲେ ମୋଠାରେ ଦୟାକଲା
କୁମର ହସ୍ତରେ ମୋତେ ଡକାଇ କହିଲା ।
ଏବେ ମୁଁ ଦୟାକଲି ତୁମ୍ଭର ବୋଲେ ପୁର
କୂପ, ବାମ୍ପୀ, ପୋଖରୀ, ପୁଷ୍କରିଣୀ, ସରୋବର ।
ଏଥିରେ ମୋର ବୋଲେ ପଡୁ ଏବେ ଝର
ଝର ଦେଖି ସନ୍ତୋଷ ହୋନ୍ତୁ ପ୍ରଜା ନର ।
ସକଳ ଜୀବଜନ୍ତୁ କରନ୍ତୁ ଏବେ ଗ୍ରାସ
ଏତେ କହି ଜାହ୍ନବୀ ଗଙ୍ଗା ଅର୍ନ୍ତଗତେ ତୋଷ ।
ସକଳ କୀର୍ତ୍ତିସ୍ଥାନ ମାନଙ୍କେ ସ୍ରବିଲା
କଟକ ନଗ୍ରପୁରେ ପାଟଣା ଯେତେ ଥିଲା ।
ସବୁଠାରେ ଜଳ ପୂରିଲା ତତ୍‌କ୍ଷଣ
ଆନନ୍ଦ ହେଲେ ସକଳ ଜୀବଇଁ ଦେଖିଣ ।
ସ୍ନାହାନ ଭୋଜନ ଶୀତଳ ହେଲେ ସୁଖୀ
ବିଚାରିଲେ ବିଧାତା ଦୟାକଲେ ଦୁଃଖଦେଖି ।
ଉଠିକରି ନାରଦ ରାଜାରେ ଆଜ୍ଞା ଦେଲେ
ଜଳ ଚିନ୍ତା ଏବେ ତୋର ଗଲାଯେ ବୋଇଲେ ।
ଜାହ୍ନବୀ ସୁଦୟା କଲେକ ଏବେ ପୁଣ
ବେଣ୍ଟ ପୋଖରୀ କୂପ ଦେଖରେ ଯାଇ ପୁଣ ।
ଶୁଣିଣ ରାଣୀ ହଂସ ରାଜା ଚଳିଗଲେ
ଆପଣା ନବରେ କୂପ ବାମ୍ପୀକୁ ଦେଖିଲେ ।

କୂପ, ବାମ୍ପୀ, ପୋଖରୀ, ସରୋବର ମାନ
ନିର୍ମଳ ଶଉଚ ଜଳ ଭରି ଯେ ପୂର୍ଣ୍ଣ ଜାଣ ।
ଦେଖିଣ ରାଜା ରାଣୀ ଅନେକ ତୋଷ ହେଲେ
ନାରଦଙ୍କ ଚରଣେ ଓଳଗି ଶୋଇଲେ ।
କରଧରି ନାରଦଙ୍କୁ ସେଠାରୁ ଘେନିଗଲେ
ରତ୍ନ ସିଂହାସନରେ ନେଇଣ ବସାଇଲେ ।
ପାତ୍ର ମନ୍ତ୍ରୀ ସାମନ୍ତ ଡକାଏ ରାଜାପୁଣ
ବୋଇଲେ ଚାର ଭେଦ ସକଳ ରାଜ୍ୟେଣ
ମାଣିକ୍ୟପୁରୁ ଧାନ ନିଅନ୍ତୁ ସର୍ବେ ବହି
ଅନ୍ନଜଳ ପାତ୍ର ମୋତେ ଦେଲେ ବେଦସାଇଁ ।
ଶୁଣିକରି ଧେଣ୍ଟୁରା ଫେରାଏ ରାଜ୍ୟରେ
ସକଳ ପ୍ରଜା ଜନେ ଜାଣିଲେ ଶବଦରେ ।
ଧେଣ୍ଟୁରା ଫେରାଇ ଯେ ଚାରମାନେ କହି
ସକଳ ରାଜ୍ୟେ ବାରତା ଦେଲେ ନରସାଇଁ ।
ଶୁଣିଣ ପାତ୍ର ମନ୍ତ୍ରୀ ସାମନ୍ତ ରାଜା ପୁଣ
ନାରଦଙ୍କୁ ଘେନିଣ ଚଳିଲେ ସେ ସ୍ଥାନ ।
ମାଣିକ୍ୟପୁରରେ ହେଲେ ଯେ ପ୍ରବେଶ
ଆସ୍ଥାନ କରିଣ ସେଥିରେ ରହିଲେ ସମସ୍ତ ।
ଗ୍ରାମେ ଗ୍ରାମେ, ପୁରେ ପୁରେ ପୁରୁଷି ଅଣାଇଲେ
ତିନି ବର୍ଷକୁ ତାକୁ ବଣ୍ଟରା କରିଦେଲେ ।
ଧନୀଲୋକମାନେ ଶଗଡ଼ ବଳଦରେ ନେଲେ
ଦୁଃଖୀ ଲୋକମାନେ ବୋଝଭାରରେ ବୋହିଲେ ।
ଧାନ ଶେଷ ହେଲା ଯେ ରାଜ୍ୟ ହେଲା ସ୍ଥିର
ଲକ୍ଷେ ଭରଣ ଧାନ ତହୁଁ ନେଲେ ନୃପବର ।
ସାମନ୍ତ ପାତ୍ର ମନ୍ତ୍ରୀ ଅନେକ ବହିନେଲେ
ଚାରିଶତ ଯୁଗ ରାଜ୍ୟ ସମସ୍ତ ତୋଷ ହେଲେ ।
ଲକ୍ଷେକ ଗ୍ରାମ ପାଟଣା ନୋହିଲେ କେହି ବଣା
ସମସ୍ତେ ରାଜାଙ୍କୁ ପ୍ରଶଂସା କଲେ କିନା ।
ଆମ୍ଭର ଆୟୁଷ ଘେନିଣ ବଞ୍ଚହୋ ରାଜନ ସିନା
ସମସ୍ତଙ୍କୁ ତୋଷକରି ନାରଦ ଚଳିଗଲେ
ଯଶୋବନ୍ତୀ ପୁରେ ଯାଇ ପ୍ରବେଶ ହୋଇଲେ ।
ଦେଖିଣ କୁଶଧର ପଚାରେ ନାରଦଙ୍କୁ
ଚମ୍ପାବତୀ ଦେଶପୁର ତୋଷକରି କି ପ୍ରଜାଙ୍କୁ ।
ନାରଦ ବୋଇଲେ ତୁମ୍ଭର କୃପାରେ
ସମସ୍ତେ ତୋଷ ହୋଇ ଧାନ ବହି ନେଲେ ।
ଜଳ ନଥିବାରୁ ବିକଳ ମନ କଲେ
ଗଙ୍ଗାକୁ ସୁମରଣା କଲି ଯେ ଯୋଗ ବଳେ ।

ତେବେ ପ୍ରସନ୍ନ ଯାହ୍ନବୀ ସେ ପୁରେ
କୂପ, ବାମ୍ପୀ, ପୁଷ୍କରିଣୀ ପୂରିଲା ଗଙ୍ଗାଜଳେ ।
ସକଳ ପ୍ରଶଂସା ତୁମ୍ଭଙ୍କୁ ସେଥି କଲେ
ସକଳ ଜୀବଜନ୍ତୁ ହରଷମନ ହେଲେ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ତ୍ରିଲୋଚନ
ଚଣ୍ଡାଳ ଦୁହିତାକୁ ନେଲେ ବ୍ରହ୍ମାଙ୍କ ନନ୍ଦନ ।
ବଶିଷ୍ଠ ଯିବାରୁ ନାରୀ ବରଣମାଳା ଦେଲା
ସେ କନ୍ୟା ଯଶୋବନ୍ତୀ ପୁରକୁ ବେଗେ ଗଲା ।
କିସ କଲା ଯେ ନାରୀ କହ ବେଗେକରି
ସେ କଥା ଶୁଣିବାକୁ ଶ୍ରଦ୍ଧା ଯେ ମୋହରି ।
ଈଶ୍ୱର ବୋଇଲେ ଯେ କଥା ଦେବାକହି
ହରଷର କଥା ଯେ ସେ ବିରସ ନୁହଇ ।
ଯଶୋବନ୍ତୀ ପୁରେ ଯେ ସକଳ ଋଷି ମିଳି
ତିନିପୁର ଋଷିଙ୍କି ନେଲେ ବ୍ରହ୍ମାବରି ।
ତ୍ରିଦଶ ଦେବଙ୍କୁ ନିମନ୍ତ୍ରଣ କରି ଆଣି
ଦଶ ଦିଗପାଳଙ୍କୁ ବଳିଲେକ ପୁଣି ।
ଅଷ୍ଟବସୁ ସୁରନାଥ ବରଣ କରିନେଲେ
ବାର ଆଦିତ୍ୟ ଷୋଳ ଚନ୍ଦ୍ରମା ବରିଲେ ।
ନବଗ୍ରହଙ୍କୁ ବରି ଆମ୍ଭଙ୍କୁ କଲେ ପୂଜା
ଚଉଦକୋଟି ଜୀବଘେନି ମୁଁ ଏଥୁ ଗଲି ଦୁର୍ଗା ।
ସମସ୍ତେ ଯଶୋବନ୍ତୀ ପୁରରେ ଠୁଳ ହେଲୁ
ଧର୍ମ ନିରଞ୍ଜନଙ୍କୁ ଡକାଇ ଘେନି ଗଲୁ ।
ବୋଇଲୁ ତୋର ନନ୍ଦିନୀ ଚଣ୍ଡାଳ ଘରେ ଜାତ
ଏ ଦୁହିତା ପବିତ୍ର କରହେ ନିଷ୍ଠାବନ୍ତ ।
ନିରଞ୍ଜନ ବୋଇଲେ ଶୁଣ ହେ ଦେବଗଣ
ଯେଉଁ ଖ୍ୟାତ କଲ ସେହୁ କଲ ହେ କାରଣ ।
ଶୁଣିଣ ବେଦବର ପିତୁଳାଏ ଲିହି
ଜୀବନ୍ୟାସ କଲେ ସେ ଜୀବନ୍ୟାସ ଦେଇ ।
ଅରୁନ୍ଧତୀର ପ୍ରାଣ ହରି ନେଲେ ପୁଣ
ପିତୁଳାର ଭିତରେ ଭରିଲେ ନେଇ ଜାଣ ।
ଅରୁନ୍ଧତୀର ପିଣ୍ଡକୁ ଭସ୍ମ କରିଦେଲେ
ଅରୁନ୍ଧତୀ ସ୍ୱରୂପେ ସେ ରୂପେ ଜାତ କଲେ ।
ପବିତ୍ର ଜଳ ଘେନି ପବିତ୍ର କଲେ ତାର ଅଙ୍ଗ
ସକଳ ତୀର୍ଥ ଜଳେ ସ୍ନାନ କଲେକି ବେଗ ।
ଅଗୁର, ଚନ୍ଦନ, କର୍ପୂର ସଙ୍ଗେ ବୋଳି
ସୁକୁମାର ତନୁ କୋମଳ ତାର କରି ।

ରତ୍ନ ଅଳଙ୍କାରମାନ ଭୂଷଣ ତାର ଅଙ୍ଗେ କଲେ
ହୀରା ମାଣିକ୍ୟ ଚୂଡ଼ି ହସ୍ତରେ ତାର ଦେଲେ ।
ତାଡ଼ ବିଦ ବାହୁଟି ଖଞ୍ଜିଲେ ନେଇ କରି
ଗଳାରେ ଚାପସରି ଅଷ୍ଟରତ୍ନରେ ଭରି ।
ପଦକ ଚନ୍ଦ୍ରହାର ବିଦ୍ଧି ମୁଦି ଦେଲେ
ରତ୍ନ କାଞ୍ଚୁଲା ଗୋଟିଏ ଶରୀରେ ପିନ୍ଧାଇଲେ ।
କଟୀରେ କଟୀ ମେଖଳା ଖଞ୍ଜିଲେ ନୂପୁର
ପାହୁଡ଼ି ବଳା ଖଞ୍ଜିଲେ ତଳିପା ଉପର ।
ଅଙ୍ଗୁଷ୍ଠିମାନଙ୍କରେ ଝୁଣ୍ଟିଆ ନେଇ ଦେଲେ
ପାଦରେ ଅଳତା ରଙ୍ଗ ବୋଳିଦେଲେ ।
ନାଶାରେ ସିନ୍ଧୁଫଳ ରତ୍ନଗୁଣା ଦେଇ
କର୍ଣ୍ଣରେ କାପରେ ଯେ ମଲ୍ଲକଡି ଲାଇ ।
ଚନ୍ଦ୍ରଫାସିଆ ଫିରିଫିରା ନୀଳାରେ ଘଷଡି
ଅଳକା ମଥାମଣି ଶିରରେ ନେଇ ଭିଡ଼ି ।
ଝିଞ୍ଜରୀ ଝୁମ୍ପୀଲଗା ଚଉଁରୀ ମୁଣ୍ଡି ପୁଣ
ଅନେକ ଅଳଙ୍କାର ଭୂଷଣ କଲେ ଜାଣ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ
ସେ କନ୍ୟା ଶୋଭାରେ ସବୁଙ୍କୁ ମୋହକରି ।
ବେଶ କରି କନ୍ୟାକୁ ବେଦବର ନେଲେ
ଗାୟତ୍ରୀ ସାବିତ୍ରୀ ପାଶେ ନେଇଣ ସମର୍ପିଲେ ।
ରତ୍ନବେଦୀ ଗୋଟିଏ ତିଆରି କଲେ ପୁଣ
ବଶିଷ୍ଠ ବସିଲେ ଯେ ବେଦୀ ଉପରେଣ ।
ବାଟ ବରଣ ସାରି ବରୁଣ ପୂଜା କଲେ
ଲବଣ ଚଉଁରୀ ଉଭାରୁ ବେଦ ଉଚ୍ଚାରିଲେ ।
ବରକନ୍ୟା ଏକଠାବେ ବସାଇଲେ ନେଇ
ମୁକୁଟ ବାନ୍ଧିଣ ଶିଳା ବରଣ କରାଇ ।
କୁଶରେ ହସ୍ତଗ୍ରନ୍ଥି କଲେକ ବନ୍ଧନ
ବେଦ ଅନୁଗତେ ହସ୍ତ ଗ୍ରନ୍ଥି ଯେ ଫେଡ଼ିଣ ।
ହୋମସାରି ଶୀତଳ ଅଗ୍ନିକି କରାଇଲେ
ଯାଉଁଳି ଲଜ୍ୟାହୋମ ସେଥିରେ ସାରିଲେ ।
ବରକନ୍ୟା ଉଠାଇଣନେଲେ ଯେ ନବର
ଗାୟତ୍ରୀ ସାବିତ୍ରୀ ବୋଇଲେ ତତପର ।
ଜୁଆ ଖେଳାଇଣ ବଧୂକୁ ନେଲେ ପୁଣ
ରନ୍ଧନ ପାକ କଲେ ଅରୁନ୍ଧତୀ ଯାଇଣ ।
ଦେବରଷିମାନଙ୍କୁ ଯୋଗାଡ ପରଶେ
ସମସ୍ତେ ଭୁଞ୍ଜିଣ ଯେ ଅରୁନ୍ଧତୀର ହସ୍ତେ ।

ଦେବତାଏ ସନ୍ତୋଷ ଋଷି ହେଲେ ତୋଷ
ନାଗବଳ ଆଦିସର୍ବେ ହୋଇଲେ ସନ୍ତୋଷ ।
ବେଦବରକୁ ମେଲାଣି ମାଗି ଚଳିଯାଇ
ସମସ୍ତେ ତୋଷହେଲେ ବଶିଷ୍ଠଙ୍କୁ ଚାହିଁ ।
ସୁକଲ୍ୟାଣ କରିଣ ଦେବତାମାନେ ଗଲେ
ଯେ ଯାହାର ସ୍ଥାନରେ ପ୍ରବେଶ ହୋଇଲେ ।
ନାଗବଳ ଗଲେ ଯେ ଗଲେକ ସିଦ୍ଧଋଷି
ଦେବଋଷି ଚଳିଲେ ଯେ ସୁକଲ୍ୟାଣ ବାଞ୍ଛ ।
ମର୍ତ୍ତ୍ୟପୁର ଋଷି ଯେ ସକଳ ଚଳି ଭଲେ
ବେଦବର ଅଗସ୍ତିଙ୍କି ଡାକିଣ କହିଲେ ।
ନାରଦ ଦୁର୍ବାସା ଯେ ଅଗସ୍ତି ମାର୍କଣ୍ଡ
ଏମାନ ଡକାଇଣ କହିଲେ ବ୍ରହ୍ମାଣ୍ଡ ।
ବୋଇଲେ ବଶିଷ୍ଠଙ୍କୁ ମର୍ତ୍ତ୍ୟପୁର ନିଅ
ଅଯୋଧ୍ୟାପୁରରେ ନେଇଣ ରଖାଅ ।
ଅଗସ୍ତି ବୋଇଲେ ଶୁଣିମା ହେଉ ସ୍ୱାମୀ
ବଶିଷ୍ଠ ମର୍ତ୍ତ୍ୟପୁର ନିଶ୍ଚୟ ଯିବେ ପୁଣି ।
ରେଣୁକା କୁମର ଯେ ଅଟଇ ପର୍ଶୁରାମ
କ୍ଷତ୍ରୀପଣରେ ଯେ ଯେ ଅଟଇ ଉତ୍ତମ ।
ରାଜାମାନଙ୍କୁ ସଙ୍ଗେ ଖଣ୍ଡିଆଳ ହୋନ୍ତେ
ଲାଗଇ ପର୍ଶୁରାମ ମାରିବା ନିମନ୍ତେ ।
ପର୍ଶୁରାମକୁ ବଶିଷ୍ଠ ନ କହେ କିଛି ପୁଣ
ତେବେ ମର୍ତ୍ତ୍ୟପୁରକୁ ବଶିଷ୍ଠ ଯିବଜାଣ ।
ବେଦବର କହିଲେ ଶୁଣରେ କୁମର
ପର୍ଶୁରାମ ଅଟନ୍ତି ସାକ୍ଷାତେ ନିରାକାର ।
ଯେତେକ ଋଷି ତୁମ୍ଭେ ମର୍ତ୍ତ୍ୟପୁରେ ଅଛ
ପର୍ଶୁରାମକୁ ଭଜିଲେ ହୋଇବତୁମେ ମୋକ୍ଷ ।
ନ ଭଜିଲେ କରି ପାରଇ ସେ ନାଶ
ଦେବତାଏ ଯାହାକୁ ପାଉଣଛନ୍ତି ତ୍ରାସ ।
ଯାହାର ଭୟରେ ଚାରି ରାବଣ ଫେରିଯାନ୍ତି
ଯାହାକୁ ନାଗରାଜା କରଇ ମନେ ସ୍ତୁତି ।
ଯାହାକୁ ସପ୍ତବ୍ରହ୍ମା ବୋଲନ୍ତି ଦେବ ଶୁଣ
ଯାହାର ଦେହ ଅଟେ ଗୋଲକ ନାରାୟଣ ।
ଯାହାକୁ ପ୍ରଭାତରୁ ମୁଁ କରିଣ ସୁମରଣା
ଯାହାର ସକାଶେ ନୃପତି ଗଣସିନା ।
ଚାଳିଶ ସସ୍ର ନୃପତି ସ୍ତିରୀ ବେଶ ହୋଇ
ରାଣୀମାନଙ୍କ ସଙ୍ଗରେ ଗୁପତେ ଛନ୍ତି ରହି ।

ଯାହାର ଯୋଗରୁ ମର୍ତ୍ତ୍ୟପୁର ସମ୍ଭାଳ ହୋଇ
ସେ ନଥିଲେ ଅସ୍ତମୟ ହୁଅନ୍ତାନି ମହୀ ।
ଯାହାକୁ ସଦାଶିବ କରନ୍ତି କଲ୍ୟାଣ
ପାର୍ବତୀ ଦେଖିଣ ଯାହାକୁ କରନ୍ତି ବନ୍ଦାଣ ।
ଦେବନାରୀ ଦେଖିଲେ ଆନନ୍ଦ ଯାକୁ ହୋନ୍ତି
ଶଶୀ ଦେଖିଲେ ଯାକୁ ଅମୃତ ପରଶନ୍ତି ।
ମୋହର ଦୁଇନାରୀ ଗାୟତ୍ରୀ ସାବିତ୍ରୀ
ଏକଦିନେ ମୋର ପୁରେ ଅଇଲେ ପଶୁପତି ।
ବଇଷବା ଧନୁ ଧରିଣ ଅଛି କରେ
କୋଠାର ଅଛିତାର ଡାହାଣ ହସ୍ତରେ ।
ବାମ ହସ୍ତେ କଉମୁଦି ତାହା ଅଛି ପୁଣ
ବାହନ ନାହିଁ ଶୂନ୍ୟରେ ଅଇଲା ବିକ୍ରମିଣ ।
ଶୀତଳ ସିଂହାସନ ପରେ ଅଛି ବସି
ଦେଖିଣ ମୋର ପୁର ହୋଇଲା ତମରାଶି ।
ବୋଇଲେ ତୋର ନାମ ଅଟଇ ବେଦବହ୍ମା
ଅଚିନ୍ତା ହୋଇଣ ଯେ ବସିଛ ଏହିସୀମା ।
ସଂସାରର କର୍ତ୍ତା ଅଟୁ ପରା ତୁହି
ସକଳ ଜୀବକୁ ସଞ୍ଚରୁ ପୁଣ ମହୀ ।
ମାଗିଲେ ବରତୁରେ ଦେଉ ଯେ ଅସୁରକୁ
କେଡ଼େ ପରିବାର ତୁରେ ଅଟୁରେ ରାଜ୍ୟକୁ ।
ମୋହରି ସଙ୍ଗେ ରଣ କରିବୁ ଯେବେଆଜ
ତେବେ ଜାଣିବାରେ ଦେବାର ସଂଯୋଗ ।
ଏତେ ବୋଲି କୌମୁଦୀ ଗଦା ଧରି ପୁଣ
ଉତ୍ତାନ କରି ମୋତେ ପକାଏ ବହନ ।
ମୋହର ହୃଦରେ ସେ ଗଦାକୁ ଲଦିଦେଲା
ଚନ୍ଦ୍ର ସୂର୍ଯ୍ୟପ୍ରାୟେ ନେତ୍ରତେତେବେଳେକଲା ।
ସେ ଗଦା ଅଚଳ ଯେ କଲାକ ମୋତେପୁଣ
ବୋଇଲା ଆଜି ତୋତେ କରିବି ନାଶ ପୁଣ ।
ଏତେବୋଲି ପର୍ଶୁରାମ ହେଲେ ବଡ଼ରାଗୀ
ଦେଖିଣ ବେନିନାରୀ ବିକଳ ଭାବେ ସେବି ।
ତେତେବେଳେ କ୍ରୋଧରେ ପର୍ଶୁରାମ ପୁଣ
ତାମସ ରୂପ ଗୋଟି ହୋଇଲା ତାର ଜାଣ ।
ଶୂନ୍ୟରୁ ରୂପଗୋଟି ମର୍ତ୍ତ୍ୟପୁର ଘୋଟି
ଚନ୍ଦ୍ର, ସୂର୍ଯ୍ୟ ଦୁହେଁ ଦୁଇ ଚକ୍ଷୁ ହୋନ୍ତି ।
ଗାୟତ୍ରୀ ସାବିତ୍ରୀ ଯେ ବନ୍ଦାପନା କଲେ
ଅନେକ ନିବର୍ତ୍ତି ଯେ କରିଣ କହିଲେ ।

ବୋଇଲେ ପର୍ଶୁଧରରେ କୁହ ତୁହି ରାଗି
ବେଦବରଙ୍କୁ ନମାର ବାସୁଦେବଙ୍କୁ ସେବି ।
ନ୍ୟାୟରେ ଥିଲେ ସିନା ତାକୁ ବଡ଼ କହି
ଅନ୍ୟାୟକୁ ଗଲେ ସମସ୍ତେ ଅନ୍ୟାଚାର ହୋଇ ।
ମାତା ହୋଇ ଯେବେ କରନ୍ତି ଅବେଭାର
ପିତାର ବଚନ ପୁତ୍ର ମେଣ୍ଟାନ୍ତି ତିନିବାର ।
ସେ ମାତା ପୁତ୍ରକୁ ପିତା କରଇ ନିସ୍ନେହଦୂର
ତେବେ ତାର ଧର୍ମ ଗୋଟି ସୁଫଳରେ ବୀର ।
ସେ ମାତାରେ ସ୍ନେହ କଲେ ଚଣ୍ଡାଳ ବୋଲାଇ
ସୁପୁତ୍ର ହୋଇଲେ ପୁଣ ମାତା ପିତା ପାଇ ।
ଧର୍ମରେ ଦୋଷ ତାକୁ ନ ଲାଗେ ସୁନ୍ଦରୀ
ଅଧର୍ମକଲେ ତାକୁ ଦେବେ ହୁଅନ୍ତି ଭଗାରୀ ।
ଗୃହସ୍ଥ ହୋଇ ଯେବେ ଘରଣୀରେ ଦୟା
ସେ ପୁରୁଷ ଗୋଟାରେ କେବେହେଁ ନାହିଁ ମାୟା ।
ସେହୁ ଘରଣୀ କି ଯେବେ ଆଗେପରେ ନେଇ
ତାଠାରେ ସ୍ନେହକଲେ ଆୟୁଷକ୍ଷୟ ଯାଇ ।
ତିନିପୁରେ ଅପଖ୍ୟାତି ମିଳେ ତାକୁ ପୁଣ
ପ୍ରୀତିରୁ ସତୀ ପଣ ହୁଏ ଅକାରଣ ।
ସେ ମାତା ବୁଦ୍ଧିବନ୍ତ ହୁଅନ୍ତି ଯେବେ ପୁଣ
ବୋଲନ୍ତି ଏ ସ୍ୱାମୀରେ ନାହିଁ ମୋ କାରଣ ।
ପ୍ରାଣ ତେଜ୍ୟା କରଇ ସ୍ୱାମୀର ସ୍ନେହଭାଙ୍ଗି
ତେବେ ତାକୁ ଧର୍ମ ଯେ ହୁଅଇ ସୌଭାଗୀ ।
ତ୍ରୈଲୋକର ପିତା ଯେ ସବୁଙ୍କୁ ଜାତକଲା
କାଳେ ବଡ଼ସାନ କରିଣ ରଖିଲା ।
ପୁଣି ବର ଦିଅଇ କରଇ ଅମର
ଏହି କଥା ଗୋଟି ନୁହଇ ବେଭାର ।
ଜାତ କଲା କୁମର ବଡ଼ସାନ କିମ୍ପା
ନୁହଇ ଏ ବେନିଭାର ଶୁଣ ଅନୁକମ୍ପା ।
ଦୟାଳୁପଣ କଲେ ଆପଣେ ହୁଏ ନାଶ
ଆପଣାର ଘରଣୀ ଅଟଇ ବିଶେଷ ।
ମାଗିଲେ ଘରଣୀକି ଦେବ ସେ ପରରେ
କି କାର୍ଯ୍ୟ ଲଭିଲା ଆଉ ଦୟାଳୁ ଭାବରେ ।
ଏଥିର ସକାଶୁଁ ମୋହର କୋପମନ
ଶୁଣିଣ ସାବିତ୍ରୀ ଯେ ବୋଲନ୍ତି ବଚନ ।
ଶୁଣରେ ପର୍ଶୁଧର ଆମ୍ଭର ବାଣୀ ପୁଣ
ବଳବନ୍ତ ପଣ ପରେ ଯେହୁ ଜାଣ ।

ତାକୁ ଉଦୁସି ହେବାର ଅଟଇରେ ବାବୁ
ବିଧାତାର ଦୋଷ ଏ ନୁହଇ ଯେ ସବୁ ।
ଅବିଗୁଣ ନ ଧରି ବେଗେ ଚଳିଯାଅ
ବିହିକି ଦଣ୍ଡ ହେବାର ନୁହଁଇ ତୋର ପ୍ରିୟ ।
କ୍ଷୀର ସାଗରରେ ଅଛନ୍ତି ନାରାୟଣ
ତାହାଙ୍କୁ ପଚାର ଯାଇ କାହାର ଦୋଷପୁଣ ।
ଶୁଣିଣ ପର୍ଶୁରାମ ରାଗ କ୍ରୋଧ ନାଶି
କୌମୁଦୀ ଗଦାକୁ ଉପରୁ କାଢେ ଆସି ।
ତେତେବେଳେ ପ୍ରାଣକୁ ଯେ ପାଇଲି ମୁଁ ପୁଣ
ମୋତେ ପଚାରିଲା ପର୍ଶୁଧର ଜାଣ ।
ବୋଇଲା ଚାରିରାବଣ ମରିବେ କାହା ହସ୍ତେ
ମୁଁ ବୋଇଲି ମରିବେ ବାସୁଦେବଙ୍କ ହସ୍ତେ ।
ସେ ବୋଇଲା ବାସୁଦେବ କେଉଁଠାରେ ଅଛି
ନ ମାରଇ ଅସୁର ନ ଜାଣେ ସେ କିଛି ।
ମୁଁ ବୋଇଲି ସବୁଜାଣେ ସମ୍ଭାଳି କାର୍ଯ୍ୟକରେ
ଅବେଭାର କଥା ଯେ ନୁହଁଇ ତା ହସ୍ତରେ ।
ପର୍ଶୁରାମ ବୋଇଲେ ମୁଁ ଯିବଇଁ ସେ ପୁର
ମୁଁ ବୋଇଲି କ୍ଷୀରସାଗର ତାଙ୍କ ଘର ।
ପର୍ଶୁରାମ ବୋଇଲେ ତୋତେ ଜନନୀ ଆଜିରଖି
ନୋହିଲେ ସଞ୍ଜୀବନୀ ଦେଖନ୍ତୁ ଯାଇ ତୁଟି ।
ମୁଁ ବୋଇଲି ମୋର ଦୋଷ ନାହିଁରେ କୁମର
ସବୁ ସିନା ଭିଆଇଲା ଅଭୟ ନିରାକାର ।
ସକଳ ମାୟା ଜାଣନ୍ତି ଶ୍ରୀହରି ଯେ ପୁଣ
ନାନା କଥା କୂଟ ଯେ କରଇ ଭିଆଣ ।
ପର୍ଶୁରାମ ବୋଇଲା କିମ୍ପାଇ କଟକରେ
ଉଚିତ କଥା ନୁହଇ ବ୍ରହ୍ମାଣ୍ଡ ଠାକୁରେ ।
ମୁଁ ବୋଇଲି କ୍ଷଣ ଭଙ୍ଗୁର ଅଟଇ ସଂସାର
ଉଶ୍ୱାସ ପାଇଲେ ସେ କରନ୍ତି ଯେବେ ବଡ ।
ରାଜାହିଁ ଉଶ୍ୱାସରେ ବୋଲନ୍ତି ଯେ ପୁଣ
ଆମ୍ଭେ ଦେବତାଏ ଅଟୁ ସକଳ ଦେବଗଣ ।
ଏ ଦୁଇକୁଳ ସକାଶେ ଅସୁର ଜାତ ହୋନ୍ତି
ଏମ୍ମାନଙ୍କର ବଳ ଅସୁର ହରି ଦ୍ୟନ୍ତି ।
ତେବେ ସେ ଆରତ ଯେ ହୁଅନ୍ତି ସକଳ
ତେତେବେଳେ ଶ୍ରୀହରିଙ୍କି ଭଜନ୍ତି କରିସାର ।
ଭକତିପଣ କଲେ ଶ୍ରୀହରି ହୋନ୍ତି ଜାତ
ତେବେ ସେ ଅସୁରକୁ ମାରନ୍ତି ଜଗନ୍ନାଥ ।

ପର୍ଶୁରାମ ବୋଇଲେ ଶୁଣ ହେ ପିତାମହ
ଦେବତାଙ୍କ ପରାକ୍ରମ ଏବେ ମୋତେ କହ ।
କେଉଁଗୁଣେ ଦେବତାଏ ମତ ସେ ହୁଅନ୍ତି
କେଉଁଗୁଣେ ଗର୍ବ ସେ କହନ୍ତି ଶ୍ରୀବତ୍ସି ।
ମୁଁ ବୋଇଲି ଶୁଣରେ ଗୋଲ୍ଲକ ନାରାୟଣ
ଦେବଙ୍କ ପ୍ରବଳରେ ଅଟଇ ଯେଉଁଦିନ ।
ସେଦିନ ଦେବତାଏ ମନେ ବିଚାରନ୍ତି
ଆମ୍ଭେ ବିଷ୍ଣୁ ହେବ ବୋଲି ସେହୁ ବିଚାରନ୍ତି ।
ପ୍ରବଳ୍ପ ସରିଲେ ହୁଅନ୍ତି ମଧ୍ୟଭାବ
ତେତେବେଳେ ହୁଅନ୍ତି ନାରାୟଣ ସର୍ବ ।
ପର୍ଶୁରାମ ବୋଇଲେ ପ୍ରବଳ କଥା କହ
କେମନ୍ତେ ପ୍ରବଳ ଯେ ହୁଅଇ ଦେବଦେହ ।
ମୁଁ ବୋଇଲି ଶୁଣରେ ରେଣୁକା କୁମର
ବାସୁଦେବ ଯେତେବେଳେ ଦୟା ତାଙ୍କଠାର
ତେତେବେଳେ ପ୍ରବଳ ହୁଅନ୍ତି ଦେବଗଣ
ଯେତେବେଳେ ନିର୍ଦ୍ଦୟା ହୁଅନ୍ତି ନାରାୟଣ ।
ତେତେବେଳେ ନିଉନ ସକଳ ସୁର ହୋନ୍ତି
ନିଉନ ହେଲେ ନିର୍ବଳ ହୋଇଣ ଭଜନ୍ତି ।
ପର୍ଶୁରାମ ବୋଇଲେ ଏଥିର ଫଳକହ
ନିର୍ବଳ ବଳବନ୍ତ ନିମନ୍ତେ ହେଲେ ପ୍ରିୟ ।
ମୁଁ ବୋଇଲି ଶୁଣରେ ଯମଦଗ୍ନି ସୁତ
ଦେବତାଏ ପ୍ରବଳ ହେବାର ଚରିତ୍ର ।
ଅସୁର ଦୁଷ୍ଟଜନ କରନ୍ତି ହରି ନାଶ
ପୃଥ୍ୱୀ ଉଶ୍ୱାସ କରି ଦେବଙ୍କୁ ଦିଅଇ ଆୟୁଷ ।
ତେତେବେଳେ ବଳ ପାଆନ୍ତି ଦେବଗଣ
ସଦାଶିବ ମୋତେ ଘେନି ମାନନ୍ତି ପୁଣ ।
ନାନା ଅନ୍ୟାୟ କରନ୍ତି ହୋଇଣ ମତାସେହୁ
ବୋଲନ୍ତି ବ୍ରହ୍ମା ବିଷ୍ଣୁ ହର ଯେ ଆମ୍ଭେ ସବୁ ।
ସେ ପ୍ରବଳ ଦେଖି ଆମ୍ଭେ ନିବର୍ତ୍ତ ପୁଣ ହେଉ
ଜ୍ୟୋତି ସ୍ୱରୂପେ ଅସୁରଙ୍କୁ ଶରୀରେ ରିପୁଦେଉ ।
ରିପୁଘେନି ଅସୁରେ କରନ୍ତି ତପଟାଣ
ତପକଲେ ବରତାଙ୍କୁ ଦେଉ ଯେ ଆମ୍ଭେପୁଣ
ବରପାଇ ଦେବଙ୍କୁ କରନ୍ତି ସେହୁ ସାଧ
ତେବେ ଯେ ଶ୍ରୀହରିଙ୍କି ଭଜନ୍ତି ସର୍ବଦେବ ।
ତାଙ୍କର ନିର୍ବଳ ଦେଖି ବାସୁଦେବର ଦୟା
ଧ୍ୱଂସନ୍ତି ଅସୁରଙ୍କୁ କରିଣ ନାନାମାୟା ।

ପର୍ଶୁରାମ ବୋଇଲେ ଦେବତାଏ ଏଥିମନ୍ଦ
ସକଳ କଥାରେ ଦ୍ୱନ୍ଦ୍ୱ କରନ୍ତି ଦେବବୃନ୍ଦ
ଦେବତାଙ୍କୁ ମାଇଲେ ସକଳ ଦ୍ୱନ୍ଦ୍ୱ ଯାଇ
ଏତେବୋଲି ପର୍ଶୁରାମ ବେଗେ ଗଲା ଧାଇଁ ।
ବୋଇଲା ସ୍ୱର୍ଗପୁର ଯିବି ଏହିକ୍ଷଣି
ସକଳ ଦେବତାଙ୍କୁ ମାରିବି ଆଜି ପୁଣି ।
ମୁଁ ବୋଇଲିଦେବତାଏ ନାହାନ୍ତି ସ୍ୱର୍ଗପୁରେ
ସମସ୍ତଙ୍କୁ ଧରିନେଲା ସେ ଲଙ୍କା ମହୀପାଳେ ।
ପର୍ଶୁରାମ ଧରିନେଲା ସେ ଲଙ୍କାକୁ ଯିବି ମୁହିଁ
ଦେବତା ଅସୁରଙ୍କୁ ମାରିବି ଆଜ ଯାଇଁ ।
ମୁଁ ବୋଇଲି ଯେ ଅସୁର ତୋରେ ନାଶନୋହେ
ବାସୁଦେବ ଜାତ ହେଲେ ମାରିବେ ସ୍ୱଦେହେ ।
ତାଙ୍କ ସଙ୍ଗେ ଯୁଦ୍ଧ କଲେ ହାରିବୁ ପର୍ଶୁଧର
ଶୁଣ ହେ ଯମଦଗ୍ନି ସୁତ ମୁଁ କହିଲି ନିକର ।
ଶୁଣିଣ ପର୍ଶୁରାମ ଯେ କ୍ରୋଧ ଶାନ୍ତିକଲା
ରାଜାର ପ୍ରବଳ କଥା କହରେ ବୋଇଲା ।
ମୁଁ ବୋଇଲି ଶୁଣରେ ରେଣୁକା ନନ୍ଦନ
ସପତ ଦ୍ୱୀପ ପୃଥ୍ୱୀ ଯେ ଅଟଇ ଏହିପୁଣ ।
ସପ୍ତ ସାଗର ସେ ଅଛଇ ଯାକୁ ବେଢ଼ି
ଦ୍ୱୀପଗୋଟିକେ ଲକ୍ଷେରାଜା ଅଛନ୍ତି ଯେପୂରି ।
ଷଡ଼ ଦ୍ୱୀପେ ଛଅଲକ୍ଷ ରାଜନ ଅଛନ୍ତି
ପ୍ରଥମେ ଜମ୍ବୁଦ୍ୱୀପଟି ଅର୍ଚ୍ଚିଲେ ଶ୍ରୀବତ୍ସି ।
ଲବଣ ସମୁଦ୍ର ଯେ ତହିଁକି ଘେରାଇଲା
ସମୁଦ୍ର ଭିତରେ ନବ ସାଗର ଗଢ଼ କଲା ।
ସେଥିରେ ଅସୁରେ ରହିଲେ ଯାଇକରି
ଜମ୍ବୁଦ୍ୱୀପକୁ ଆବୋରି ରହିଲେ ଦୈତ୍ୟଘେରି ।
ଏ ଜମ୍ବୁଦ୍ୱୀପରେ ଅଠର କୋଟି ଗିରି
ଅଠର କୋଟି କନ୍ଦର ଜଗତ ହେତୁକରି ।
ଏମାନ ସମସ୍ତ ସେ ମେରୁର ବଇର
ରାଜା ଅସୁରେ ଅଟଇ ମୋର ଅନୁଚର ।
ଏ ଦ୍ୱୀପରେ ଜନ୍ତୁପତି ଶନିଅଟେ ପୁଣ
ଧର୍ମବଳ ସରିଲେ ହରଇ ତାଙ୍କ ପ୍ରାଣ ।
ଏ ଦ୍ୱୀପର ଉତ୍ତାରୁ ଯେ କୁଶଳ ଦ୍ୱୀପହୋଇ
ସେ ଦ୍ୱୀପେ ଲକ୍ଷେ ଯେ ନୃପତି ଛନ୍ତି ରହି ।
ସେହି ଦ୍ୱୀପରେ ଯେ ଗିରି କନ୍ଦର ଏତିକି
ତାହାଙ୍କର ନୃପତି ଅଟଇ ମେରୁଟିକି ।

ମଧୁର ସମୁଦ୍ର ଯେ ସେ ଦ୍ୱୀପକୁ ଘେରି
ନବ ସାଗର ଟାଣ ଅଟଇ ତାକୁ ଘେରି ।
ସେ ଦ୍ୱୀପେ ନର ବାନର ଅଛନ୍ତି ଅସୁର
ସେ ପୁରରେ ପିତା ମୁଁ ଯେ ଅଟଇ ପର୍ଶୁଧର ।
ଯମ ସେଥିରେ ଦିତି ଆଦିତ୍ୟର ସୁତ
ତାର ନାମ ଯେ ଅଟଇ ଦେବଦତ୍ତ ।
ଧର୍ମ ଅଧର୍ମ ଯେ ବିଚାରି କାର୍ଯ୍ୟକରେ
ଅଧର୍ମରେ ସମସ୍ତଙ୍କର ପ୍ରାଣ ହରେ ।
ସେଥିର ଉତ୍ତାରୁ ଯେ ନୀଳ ନାମେ ଦ୍ୱୀପ
ଦୁଇଲକ୍ଷ ରାଜାଗିରି କନ୍ଦରେ ସ୍ୱରୂପ ।
ଜାହ୍ନବୀ ଧବଳ ସମୁଦ୍ର ଦ୍ୱୀପକୁ ଘେରି
ଅଠର ସାଗର ଗଡ଼ ସେ ମଧରେ ପୂରି ।
ସେଥିର ମଧରେ ଦୈତ୍ୟଛନ୍ତି ବାସକରି
ସମସ୍ତଙ୍କୁ ପାଳଇ ଶୁଣ ହେ ପର୍ଶୁଧାରୀ ।
ତୃତୀୟ ରବିକୁମର ଯେଥି ପୁଣ
ଜନ୍ତୁପତି ହୋଇ ବୁଝେ ଧର୍ମ ଅଧର୍ମ ଜାଣ ।
ଧର୍ମରେ ଥିଲା ଲୋକର ପାଶକୁ ନ ଯାଇ
ଅଧର୍ମ ଥିଲା ଲୋକକୁ ନାଶ ସେ କରଇ ।
ତାର ନାମ ହୟ ବୋଲିଣ ସର୍ବେ ବୋଲି
ଏମନ୍ତେ ତିନିପୁର ଶୁଣିଲୁ ବ୍ରହ୍ମଚାରୀ ।
ଆରେକ ପୁର କଥା ତୋତେ ଯେ ପୁଣ କହି
ସେ ପୁରନାମ ହୀରାଜ୍ୟୋତି ଯେ ବୋଲାଇ ।
ସେ ପୁରେ ଦୁଇଲକ୍ଷ ରାଜାଙ୍କର ଘର
ଅଠର କୋଟି ଗିରି କନ୍ଦର ସାଗର ।
ଦଧି ସମୁଦ୍ର ସେ ପୁରକୁ ଘୋଟିଅଛି ପୁଣ
ବାର ସାଗର ସେଥିରେ ଗଡ଼ ଅଟେ ଜାଣ ।
ସେ ଟାପୁଗଡ଼ରେ ସେ ଅସୁରେ ଅଛନ୍ତି
ସେ ଅସୁର ଦୁଷ୍ଟପଣ କେବେହେଁ ନକରନ୍ତି ।
ସେ ରାଜାମାନେ ଦୁଷ୍ଟ ନୁହଁନ୍ତି କେବେ ପୁଣ
କାହାକୁ କେହି ହିଂସା ନ କରନ୍ତି ଜାଣ ।
ଚତୁର୍ଥ ରବିର ନନ୍ଦନ ଅଟେ ଯମ
ଗଲା ରସିଲା ବେଳେ ହରଇ ତାର ପ୍ରାଣ ।
କାଞ୍ଚିଦ୍ୱୀପକୁ ଯେ ପଞ୍ଚାଣ ବୋଲି କହି
ସେ ଦ୍ୱୀପରେ ତିନିଲକ୍ଷ ନୃପତି ଅଛଇ ।
ଧର୍ମରେ ଆଚଯାତ ସକଳ ଦ୍ୱୀପ ପୁଣ
ହିଂସା ତମ ନାହିଁ ସେଥିରେ ଅବିଗୁଣ ।

ସେ ଦ୍ୱୀପରେ ବୃହସ୍ପତି ନନ୍ଦନ ଜନ୍ତୁପତି
ତାହାର ନାମଗୋଟି ନବୀନ ନାମେ ମୂର୍ତ୍ତି ।
ସେ ଦ୍ୱୀପକୁ ଘେରିଅଛି ଘୃତ ଦଧି ସମୁଦ୍ର ।

× × × ×

ସେଥିରେ ମଧ ଅଛି ଅପାର ଗଡ଼ ସନ୍ଧି
ସେଥିରେ ଅସୁରେ ଯେ ଅଛନ୍ତି ବଡ଼ ଯୋଦ୍ଧି ।
ଧର୍ମରେ ଧରା ଯେ ଯାହାଭାବେ ରହି
ଧାରାରୁ ବିଧାରା ଯେ ନୁହଁନ୍ତି ପୁଣ କେହି ।
ଚଉଷଠି କୋଟି ଯୋଗ୍ନୀ ସେଥିରେ ଛନ୍ତିପୁଣ
କ୍ଷୀର କନ୍ଦର ସେଥିରେ ଅଟଇ ଦ୍ୱିଗୁଣ ।
ସେ ସମୁଦ୍ର ଉତ୍ତାରୁ ଦ୍ୱୀପେକ ପୁଣ ଅଛି
ଝଟକ ଜ୍ୟୋତି ଦ୍ୱୀପନାମ ତାର ଗଛି ।
ସେ ଦ୍ୱୀପରେ ସାତଦ୍ୱୀପ ଅଟଇ ମହୀଧର
ବତିଶ କୋଟି ଗିରି ଯେ କଲେକ ଅପାର ।
ବାହାନ କୋଟି ପିତୃ ପୁଣି ସେ ଦ୍ୱୀପରେ ଠୁଳ
ଅଧର୍ମ ଧର୍ମ ନାହିଁ ସମସ୍ତେ ଏକ ଚାଲ ।
ସେ ସମୁଦ୍ର ଭିତରେ ସକଳ ଦେବଙ୍କର ପୁର

+ + + +

ସେଥିରେ ଜନ୍ତୁପତି ମଣ୍ଡୁକି ନାମେ ଅହି
ଯୁଗ ସରିଲେ ତାର କାଗଜ ବୁଝା ଯାଇ ।
ସେ ଦ୍ୱୀପର ନାମ ଅଟଇ ରମ୍ୟକଦ୍ୱୀପଜାଣ
ସେଥିରେ ବାସୁଦେବ ଶୟନ ସ୍ଥାନ ପୁଣ ।
ସେ ଦ୍ୱୀପରେ ଜନ୍ତୁପତି ବିନତା ନାମେ ଖଗ
ଅଠର ମନୁରେ ଯେ କାଗଜ କରେ ଭଗ ।
ସେଥିରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ଅନନ୍ତ
ଏମାନେ ପାତ୍ର ମନ୍ତ୍ରୀ ଅଟନ୍ତି ସାକ୍ଷାତ ।
ସେଥିରେ ଏକରାଜା ବାସୁଦେବ ପୁଣ
ସକଳ କଥା ଜାଣନ୍ତି ରହିଣ ନାରାୟଣ ।
ଷୋଳ ଯୁଗରେ ଥରେ ନିଦ୍ରା ଯେ ଚେତନ୍ତି
ସକଳ ଲୋକଙ୍କର ନ୍ୟାୟ ଯେ ବୁଝନ୍ତି ।
ଚଉଦଗୋଟି ବ୍ରହ୍ମ ଦେହରୁ ଉପାଡ଼ିଣ
ସାତଦିଗକୁ ଭେଦନ୍ତି ଜୀବନ୍ୟାସରେ ପୁଣ ।
ସାତଦିଗକୁ ପ୍ରତିଉତ୍ତର କରି ଯାନ୍ତି
ଦୁଷ୍ଟ ମାରି ସନ୍ଥପାଳି ଲେଉଟି ଆସନ୍ତି ।
ସେମାନେ ଅଇଲେ ଯେ ବାସୁଦେବ ଜାଣ
ଶୟନ କରନ୍ତି ଅନନ୍ତ ଉପରେଣ ।

ସେ ଦ୍ୱୀପକୁ କ୍ଷୀର ଯେ ସାଗର ଅଛି ଘେରି
ବୟାଳିଶ ସାଗର ଟାପୁ ସେଥି ପୂରି ।
ସକଳ ଟାପୁରେ ଅଛନ୍ତି ପକ୍ଷୀଖଗ
ସମସ୍ତଙ୍କ ଉପରେ ଗରୁଡ଼ ରାଜଖଗ ।
ବିଷ୍ଣୁର ବାହନ ସେ ଅଟଇ ଯୁକତେ
ସବୁ ପକ୍ଷୀପରେ ସାର ବିନତାର ସୁତେ ।
ଦେବନାଶନ ବଟ ସେଥିରେ ଅଛି ଜାଣ
ଦେବତାମାନେ ନାଶଗଲେ ଯାଆନ୍ତି ସେଥିଜାଣ ।
ଦେବୀନାଶନ ବଟ ସେଥିରେ ଅଛି ରହି
ସେ ବଟତଳେ ଦେବୀମାନେ ଯେ ନାଶ ହୋଇ ।
ସେହିଠାରୁ ପ୍ରଳୟ ହୁଅଇ ଜାତ ପୁଣ
ସେ ବଟ ପୁଟରେ ଶୟନ ନାରାୟଣ ।
ଅଠର ମନୁ ପର୍ଯ୍ୟନ୍ତ ଘୋଟଇ ଦାବାନଳ
ସମସ୍ତଙ୍କୁ ଭସ୍ମ ସେ କରଇ ଅନଳ ।
ପର୍ଶୁରାମ ବୋଇଲେ ସପ୍ତଦ୍ୱୀପ ସପତ ସାଗର
ଏମାନଙ୍କର ନ୍ୟାୟ କହ ମୋ ଆଗର ।
ଚଉଦ ବ୍ରହ୍ମାଣ୍ଡ ଯାକ କଥାଏବେ କହ
ବେଦବର ବୋଇଲେ ଶୁଣହେ ସନ୍ଦେହ ।
ସାତଦ୍ୱୀପ ସାତସିନ୍ଧୁ ଯାକୁ ବୋଲି ଜାଣ
ଚଉଦ ବ୍ରହ୍ମାଣ୍ଡ ଯେ ଅଟଇ ଯେ ଜାଣ ।
ପର୍ଶୁରାମ ବୋଇଲେ ମେଦିନୀ ନବଖଣ୍ଡ
କେଉଁରୂପେ ପୁଣ ଲାଗିଲା ପ୍ରମାଦ ।
ମୁଁ ବୋଇଲି ପର୍ଶୁଧର ସେଥିର କଥାଶୁଣ
ପୁର କେ ତିନି ମେଦିନୀ ଅଟଇ ଯେ ପୁଣ ।
ପର୍ଶୁରାମ ବୋଇଲେ ମେଦିନୀ କେ ଅଟଇ
ସେଥିର ନାମ ମୋତେ ନିର୍ମୁଳ ଦିଅ କହି ।
ବେଦବର ବୋଇଲେ ଶୁଣ ହେ ପର୍ଶୁଧର
ସ୍ୱର୍ଗରେ ତିନି ମେଦିନୀ ଅଟଇ ପ୍ରକାର ।
ବନ ଗିରି ଲତାକୁ ମେଦିନୀ ବୋଲି କହି
ପ୍ରଜାଜନକରି ମେଦିନୀ ଏବେ ହୋଇ ।
ରାଜାମାନଙ୍କର ମେଦିନୀ ଅଟେ ପୁଣ
ତିନିପୁରେ ନବଖଣ୍ଡ ମେଦିନୀ ତୁଲେ ଜାଣ ।
ପର୍ଶୁରାମ ବୋଇଲେ ଜାଣିଲି ଏଥର
ବସୁନ୍ଧରୀ ତିନିପୁରେ ଅଟେ କେତେସାର ।
ବେଦବର ବୋଇଲେ ଶୁଣ ରେଣୁକା କୁମର
ପ୍ରଥମେ ସ୍ୱର୍ଗପୁର ସେ ଯେ ହେଲା ସାର ।

ଶୁକ୍ରିସବ ଅସୁରଙ୍କୁ ମାରିଲେ ନରହରି
ତାହାରି ମାଂସରେ ସ୍ୱର୍ଗକୁ ତିଆରି ।
ବତ୍ରିଶ କୋଟି ବସୁନ୍ଧରୀ ଅଟଇ ସେ ପୁର
ନୌସାଗର ଦେବତା କଲେ ଘର ।
ଜାଣିଣ ବାସୁଦେବ ସେପୁରେ କଲେ ଭଜ
ପର୍ଶୁରାମ ବୋଇଲେ ଶୁଣ ହେ ଦେବରାଜ ।
ସ୍ୱର୍ଗପୁରେ ସପ୍ତ ସାଗର ଅଟେ ପୁଣ
ନଦୀ ପୋଖରୀ କୂପବାମ୍ପୀ ନାମହିଁ ସେ ଜାଣ
ବେଦବର ବୋଇଲେ ସକଳ ଅଛି ତହିଁ
ତିନିଗୋଟି ସାଗର ଯେ ତିନି ଦ୍ୱୀପେ ରହି ।
ନଦୀ ପୁଷ୍କରିଣୀ ଯେ ସରକୁ ଗଙ୍ଗା ଜାଣ
କୂପ ବାମ୍ପୀ ପୋଖରୀ ଅଛି ସେ ସର୍ବଜାଣ ।
ପର୍ଶୁରାମ ବୋଇଲେ କି ସହେ ତାଙ୍କର ଆହାର
ବେଦବର ବୋଇଲେ ଶୁଣ ତୁ ସେଥିସାର ।
ଅମୃତ ଭୋଜନ ଯେ ଅମଳାଣ ବସ୍ତ୍ର
ଅମଳାଣ ପୁଷ୍ପ ଭାଙ୍ଗି ଘେନନ୍ତି ସେହୁ ଦାସ ।
ନାନାରତ୍ନେ ଅଳଙ୍କାର ଆଭରଣ ହୋଇ
ବେଶ୍ୟାମାନେ ଅପସ୍ୱରା ସେଥିରେ ବୋଲାଇ ।
ସଭାମଧେ ସାର ଯେ ସୁଧର୍ମା ଅଟେ ସାର
ସକଳ ଦେବତାରେ ନରେନ୍ଦ୍ର ଇନ୍ଦ୍ରବୀର ।
ପର୍ଶୁରାମ ବୋଇଲେ ମର୍ତ୍ତ୍ୟପୁରର କଥା
ଆଗକୁ କହତ ଶୁଣିବି ବ୍ୟବସ୍ଥା ।
ବେଦବର ବୋଇଲେ ଅଛି ସେଥିରେ କଥା
ପଞ୍ଚାଶ କୋଟି ବସୁନ୍ଧର ଅଟେ ସାରସ୍ୱତା ।
ମଧୁ କୈଟଭ ଅସୁରଙ୍କୁ ମାରି ମେଦ ମାଂସ
ମର୍ତ୍ତ୍ୟପୁର ମେଦିନୀ କଲେକ ବିଶେଷ ।
ସପ୍ତ ସାଗରକୁ ସାତ ଦ୍ୱୀପ କଲା
ମଧପୁର ବୋଲିଣ ହରିଙ୍କି ବାସ ଦେଲା ।
ଏମନ୍ତେ ମର୍ତ୍ତ୍ୟପୁର ତିଆଣ ହୋଇଅଛି
ଶୁଣିକରି ପର୍ଶୁରାମ ହୋଇଲେକ ତୋଷି ।
ବଳରାମ ଦାସ ସେ ଯେ ଶ୍ରୀହରି ଚରଣେ
ଅଧମ ଜନ ମୁହିଁ ଦେବଟି କାରଣେ ।
ପାର୍ବତୀ ବୋଇଲେ ଶୁଣ ହେ ତ୍ରିଲୋଚନ
ପର୍ଶୁରାମେ ବେଦବର ସମ୍ବାଦ ଦେଲେ ପୁଣ ।
ଦୁଇପୁର କଥା ଯେ ନିରୋଳା ଜଣାଗଲା
ତଳପୁର କଥା ପୁଣ କେମନ୍ତ ହୋଇଲା ।

ସେ କଥା ମୋର ଆଗେ କରହେ ବଖାଣ
ଶୁଣିଲେ ତୋଷ ହେବ ମୋର କାନ ପୁଣ ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ପର୍ଶୁରାମ ପଚାରିବାରୁ ବେଦବର କହନ୍ତି ।
ପର୍ଶୁରାମ ବୋଇଲେ ଶୁଣ ହେ କୁଶପାଣି
ତିନିପୁର କଥା ମୋତେ କହ ହେ ବଖାଣି ।
ବେଦବର ବୋଇଲେ ଶୁଣ ହେ ପର୍ଶୁଧର
ପାତାଳ ପୁରରେ ପୁଣି ପଞ୍ଚାଶ ସାଗର ।
ପାଞ୍ଚଗୋଟି ପୁର ଯେ ତହିଁରେ ପୁଣ ସାର
ଅଠର କୋଟିନାଗ ବଳ ପାତାଳରେ ଠୁଳ ।
ସଦାଶିବ ସଙ୍ଗତରେ ବେଦବର ପୁଣି
ଏମାନେ ପାତାଳପୁରରେ ଛନ୍ତି ଘେନି ।
ଗୋଲକ ବୈକୁଣ୍ଠ ଯେ ଅଛଇ ଭୁବନ
ରାଧା କୃଷ୍ଣ ଲୀଳା ଯହିଁ ହେଉଛି ଅନୁକ୍ଷଣ ।
ସୃଟି ଉପ୍ରତି ଉଦୟ ଅସ୍ତ ନାହିଁ ତହିଁ
ଦିବସ ରଜନୀ ଯହିଁ ସେଠାରେ ଭେଟନାହିଁ ।
ପ୍ରଳୟ ସଂସାର ଯେ ସେଠାରେ ନ ଭେଦଇ
କ୍ଷୁଧା ତୃଷା ସେଠାରେ କାହାକୁ ନ ଲାଗଇ ।
ଶଉଚ ଅଶଉଚ ଯେ ନୋହୁ ସ୍ଥିତି
ରାଧା ରମଣୀ ଗୋଟିକ ଚନ୍ଦ୍ରଜ୍ୟୋତି ।
ଗୋଟିକ କାମଜାଣ ପ୍ରାୟ ଯେ ରୂପବିରାଜନ୍ତି
କୃଷ୍ଣର କୀରତି ଗୋଟି ଦିଶେ ସୂର୍ଯ୍ୟ ଜ୍ୟୋତି
ସେ ପୁର ମହିମା ସବୁପୁର ଠାରୁ ସାର
ସକଳ ସାରସ୍ୱତ ଯେ ଯେ ପୁରରେ ଠୁଳ ।
ପର୍ଶୁରାମ ବୋଲେ ପାଞ୍ଚଦ୍ୱୀପର ନାମକହ
ବେଦବର ବୋଲେ ଶୁଣ ନାରାୟଣ ଦେହ ।
ପାତାଳପୁର ଗୋଟି ବିସ୍ତାର ତାରମୂଳ
ଦୁଇଲକ୍ଷ ଯୁଣ ଯେ ଅଟଇ ଦୀର୍ଘତାର ।
ଲକ୍ଷଣ ଗୁଣରେ ଜାଣ ନାଗବଳ ରହି
ପାଞ୍ଚସସ୍ର ଯୁଣରେ ରହିଲେ ଦେହବହି ।
ଗୋଲକ ପୁରଟି ପଚିଶ ସହସ୍ର ପୁଣ
ସପ୍ତ ବ୍ରହ୍ମାଙ୍କର ସ୍ଥାନ ବାରସହସ୍ର ଯୁଣ ।
ନାଗ ଋଷି କ୍ରୋଧ ଋଷି ଦେବର୍ଷି ବ୍ରହ୍ମର୍ଷି
ଏମାନେ ତେର ସସ୍ର ଯୁଣରେ ଛନ୍ତି ବସି ।
ଅନେକ ରତ୍ନପୁର ସେଥିରେ ଅଛି ପୁଣ
ଦେବଙ୍କର ଦୁହିତା ଗିରିପୁତ୍ରି ସ୍ଥାନ ।

ବଳିରାଜା ସେଥିର ଭିତରେ ଅଛି ଆଣି
ସମସ୍ତେ ମଧ୍ୟ ଯେ ପୁଣ ଅଟନ୍ତି ଅବରଣୀ ।
ଗଙ୍ଗା ଯମୁନା ଯେ ପୁଣି ନାନା ତୀର୍ଥ ଜଳ
ନଦୀ ଯେ ପୁଷ୍କରିଣୀ କୂପ ବାମ୍ପୀ ମାଳ ।
ଏହିରୂପରେ ସରଚାରର ଛନ୍ତି ଘୋଟି
ଶୁଣ ତୁମ୍ଭେ ପର୍ଶୁରାମ ସେପୁର ଆକୃତି ।
କର୍ତ୍ତା ସେଥିରେ ପୁଣ ଅଟଇ ସଦାଶିବ
ସେ ପୁରକୁ ଘୋଟିଅଛି ଲାଦ୍ରବ ସମୁଦ୍ର ।
ବାଇଶି କୋଟି ଗିରି କନ୍ଦର ବହୁତ
ଏମାନେ ଅଛନ୍ତି ଦକ୍ଷିଣ ଦିଗତଟ ।
ସେ ଦିଗରେ ଜମ୍ବୁପତି ଅଟେ ସସ୍ର ଫଣି
ଶତେକ ବରଷରେ କାନନ ଅଛି ପୁଣି ।
ଧର୍ମବନ୍ତ ଲୋକକୁ ଧର୍ମରେ ରଖେ ପୁଣ
ଅଧର୍ମ କଲା ଲୋକର ହରଇ ପରାଣ ।
ସେ ଦ୍ୱୀପ ଭିତରେ ନବଲକ୍ଷ ଘର
ସେଥିରେ ଖଗ ମୃଗେ କରନ୍ତି ବିହାର ।
ସେ ଦ୍ୱୀପର ଉଭାରୁ ସୁତାଳ ନାମେ ଦ୍ୱୀପ
ସେଥିରେ ନକ୍ଷତ୍ର ତାରା ହୋନ୍ତି ଆତଯାତ ।
ସେ ଦ୍ୱୀପକୁ ଘେରିଅଛି ଯମୁନା ସାଗର
ସେ ସାଗର ଭିତରେ ଅନେକ ଅଛି ଘର ।
ପଶୁ ପକ୍ଷୀମାନେ ସେ ଦ୍ୱୀପରେ ବାସ କରି
କୌଣସି କଥାରେ କିଛି ଭୟ ନକରି ।
କୁପଳ ବୋଲି ଦ୍ୱୀପ ସେ ସାଗର ଉଭାରୁ
ସୁତାଳର କଥା ସେ ଅଟଇ ବଡ଼ ଗୁରୁ ।
ନର ବାନର ଦେବତା ଅସୁରେ ଏକମେଳ
ନାଗବଳ ସିଦ୍ଧି ବଳ ସେଥିରେ ଅଛି ଠୁଳ ।
ନବଲକ୍ଷ ରାଜା ଯେ ଷାଠିଏ କୋଟି ଜୀବ
ଆହାରେ ଲୋଭୀ ସେ ପଦାର୍ଥ ବଡ଼ଭୋଗ ।
ସେ ପୁରକୁ ବେଢ଼ିଅଛି ଦ୍ୱିଗନ୍ଧ ସମୁଦ୍ର ।
ସେ ସମୁଦ୍ର ଭିତରେ ଅସୁର ସର୍ବେ ରୁଣ୍ଡ ।
କୋଟିଏ ଗଡ଼ ଯେ ସେଥିରେ ଅଛନ୍ତି ପୂରି
ସବୁଠାରେ ଜୟ ଯେ କରିଣଛନ୍ତି ମେଳି ।
ସେ ସାଗର ଉଭାରୁ ରମ୍ୟକନାମେ ଦ୍ୱୀପ
ନାନା ବର୍ଣ୍ଣରେ ଜୀବ ସେଥିରେ ବ୍ୟାପିତ ।
ସେ ଦ୍ୱୀପକୁ ଘେରି ଅଛି ମଳୟ ସାଗର
ସାଗରର ସେହୁ ବାସ ଅଟଇ ଯେ ସାର ।

ଭ୍ରମର ନୀଳା ଯେ ସେଥିରେ ପୁଣ କରି
ସେ ସାଗରର ବନସ୍ତ ଲକ୍ଷେକ ପୁଣ ପୁରି ।
ସେ ସାଗର ଉତ୍ତାରୁ ରସାତଳ ଦ୍ୱୀପ
ମର୍ତ୍ତ୍ୟପୁର ପ୍ରାୟେ ଯେ ସେଥିରେ ସର୍ବଲୋକ ।
ସେଥିରେ ତିନି ଲକ୍ଷ ରାଜା ସରୋଧାର
ବଳବନ୍ତ ପଣ ନାହିଁ ସମସ୍ତେ ଧର୍ମସାର ।
ବିରାଟ ପୁରୁଷ ଯେ ସେଥିରେ ଅଛି ଜାଣ
ମନ୍ଦର ଦ୍ୱୀପକୁ ଆଦରେ ସେହି ପୁଣ ।
ତାହାକୁ ଘେରିଅଛି ବିକର୍ଣ୍ଣ ସାଗର
ସେଠାରୁ ଅନ୍ଧକାର ହୋଇଛି ସଂସାର ।
ଅନ୍ଧାର ଉତ୍ତାରୁ ପୁଣ ଅଗ୍ନି ଯେ ସାଗର
ଏରୂପେ ତିନିପୁର ଚଉଦ ବ୍ରହ୍ମାଣ୍ଡ କଲେ ସାର ।
ପର୍ଶୁରାମ ବୋଇଲେ ଯେବେ ଏମନ୍ତ ପ୍ରକାର
ଏଥିରେ ଅନ୍ତ ଅବା ଜାଣନ୍ତି ଚକ୍ରଧର ।
ପର୍ଶୁରାମ ବୋଇଲେ ମୁଁ ସମସ୍ତ ଦ୍ୱୀପ ଯିବି
ଦିଅ ହଂସ ତୋର ସେଥିରେ ବସିବି ।
ଶୁଣିଣ ବେଦବର ହଂସକୁ ଆଣିଦେଲେ
ହଂସପରେ ବସିରାମ ଅନନ୍ତ ଶଯ୍ୟାଠାକୁଗଲେ ।
ଉତ୍ତର ଦ୍ୱାରେ ଯାଇ ଦେଖିଲା କ୍ଷେତ୍ରପାଳ
ବାଟ ନ ଛାଡ଼ିଲା ସେ ଯେ ଦୁର୍ଗାର ବାଳ ।
ଦେଖିକରି ରେଣୁକା ନନ୍ଦନ କୋପ କଲା
କ୍ଷେତ୍ର ପାଳ ଉପରେ କୋଠାର ମଡାଇଲା ।
ପୂର୍ବ ଦ୍ୱାରରେ ପ୍ରବେଶ ହୋଇଲା ଯାଇକରି
ଗରୁଡକୁ ଦେଖିଲା ଯେ ଦୁଆର ଆବୋରି ।
ବାଟ ଛାଡ଼ ବୋଲିଣ ତାହାକୁ ବେଗେ କହି
ସେ ବୋଇଲା ମନ ଅଛି ଭିତର ନ ଯା ତୁହି ।
ଶୁଣିଣ ପର୍ଶୁଧର ରାଗରେ ପ୍ରଜ୍ୱଳି
କୌମୁଦୀ ଗଦାକୁ ଗରୁଡ଼ ଉପରରେ ଭରି ।
ଭାରା ନସହି ଗରୁଡ଼ ଧରଣୀରେ ଶୋଇ
ଗଦା ତାର ଉପରେ ମାଡ଼ିଣ ବସଇ ।
ସେଠାରୁ ପର୍ଶୁରାମ ବେଗେ ଚଳିଗଲା
ଦକ୍ଷିଣ ଦ୍ୱାରେ ଯାଇ ପ୍ରବେଶ ହୋଇଲା ।
ସେଠାରେ ଦ୍ୱାର ପାଳ ରବି ଚନ୍ଦ୍ର ଦୁଇ
ତେଜରେ ପର୍ଶୁରାମ ବସି ନପାରଇ ।
ବଜ୍ରରୁପ ଧରିଣ ତାଙ୍କର ପାଶେ ମିଳି
ସେ ବୋଇଲେ କିମ୍ପାଇରେ ଯାଉଅଛୁ ପେଲି ।

ଶୁଣକରି ପର୍ଶୁରାମ କୋପମନ କଲା
ବୈଷ୍ଣବୀ ଧନୁ ତାଙ୍କର ପରେ ମଡାଇଲା ।
ଧନୁର ଘାତ ସେ ଯେ ସମ୍ଭାଳି ନ ପାରିଲେ
ଦ୍ୱାରେ ଶୋଇଲେ ଧନୁଶର ରହିଲା ଉପରେ ।
ଦେଖିଣ ପର୍ଶୁରାମ ସେଠାରୁ ଚଳିଗଲା
ପଶ୍ଚିମ ଦ୍ୱାରେ ଯାଇ ପ୍ରବେଶ ହୋଇଲା ।
ଦେଖିଲା ସେ ଦୁଆର ହୋଇଅଛି ମୁଦ
ବିଚାରିଲା ଆଜ ମୋତେ ପଡ଼ିଲା ପ୍ରମାଦ ।
ହଂସପୁର ଉତୁରି ପର୍ଶୁନାମେ ବୀର
ବସିଲା ଆସନ ସେ କରିଣ ନିବିଡ଼ ।
ରାଧାକୃଷ୍ଣ ନାମ ଯେ କଲା ଉଚ୍ଚାରଣ
ପର୍ଶୁରାମ ନେତ୍ରରୁ ନୀର ବହେ ପୁଣ ।
ହୃଦୟରେ ଚିନ୍ତା ତାର ନେତ୍ରୁ ବହେ ବାରି
ବାରବର୍ଷ ପରିଯନ୍ତେ ତପ ସେହ୍ନୁ କରି ।
ଅନନ୍ତ ନାରାୟଣର ଆସନ କମ୍ପିଲା
ସରସ୍ୱତୀ ବୀଣା ଯନ୍ତ୍ର ତଳରେ ରଖିଲା ।
କମଳା ଚରଣରୁ କାଢିଲେ ହସ୍ତ ବେଗେ
ଅନନ୍ତ ଫଣା ମୁଦ୍ରିତ କମ୍ପମାନ ରାଗେ ।
ଜାଣିଣ ବାସୁଦେବ ଶଯ୍ୟାରୁ ଉଠିବସି
କମଳା ବୋଇଲେବଳେରଣେ କିମ୍ପାଉଠି ।
ବାସୁଦେବ ବୋଇଲେ ଅଇଲେ ପର୍ଶୁରାମ
ବାଟନ ଛାଡ଼ି ଦ୍ୱାରପାଳ ହୋଇଲେ ଅଜ୍ଞାନ ।
କମଳା ବୋଇଲେ ଯେ କାହାର ନନ୍ଦନ
କାହାର କୋଳେ ଜାତ ହୋଇଛି ସେହ୍ନୁପୁଣ ।
ବାସୁଦେବ ବୋଇଲେ ସେ ଆମ ଅଂଶେ ଜାତ
ରାଧା କୃଷ୍ଣ ଦୁହିଁଙ୍କର ବଳରେ ବଳିଷ୍ଠ ।
ମର୍ତ୍ତ୍ୟପୁରେ ରେଣୁକା ଗର୍ଭରେ ଜାତହେଲା
ଯମଦଗ୍ନି ରାଜାକୁ ଖର ରାଜା ମାରିଗଲା ।
ଗୋଲକ ଠାକୁରଙ୍କୁ ମନେ କଲା ଧ୍ୟାନ
ଅନ୍ତର୍ଗତେ ଭାବିଲା ଦୃଢକରି ମନ ।
ଗୋଲକ ଠାକୁର ଯେ ତାକୁ ଦୟା କଲେ
ନିଜ ଅଙ୍ଗୁ ଅଷ୍ଟକନ୍ୟା ନେଇକରି ଗଲେ ।
ସେଠାରୁ ବର ପାଇ ଯମଦଗ୍ନି ସୁତ
ତିନିପୁର ଲୋକଙ୍କୁ କଲେ ସେହ୍ନୁ ହତ ।
ବେଦବରକୁ ଆଣିଣ ପାଞ୍ଚିଲାକ ପୁଣ
ମୋତେ ସେ ଦେଖିବ ବୋଲି କରିଅଛି ମନ ।

ତିନି ଦ୍ୱାର ପାଳଙ୍କୁ କହିଲା ସେ ଆସି
ଦ୍ୱାର ନଛାଡ଼ିଲାରୁ କ୍ରୋଧେ ଗରୁ ହାସି ।
କୋଠାର ଧନୁ ଗଦା ମତାଇ ତାଙ୍କୁ ଦେଲ ।
ପଶ୍ଚିମ ଦ୍ୱାର ଯାଇ ପ୍ରବେଶ ହୋଇଲା ।
ସେ ଦ୍ୱାର କିଳା ଯେ ହୋଇଛି ଦେଖିଲା
ବିଚାରିଲା ବାସୁଦେବ ମାୟା ମୋତେ କଲା ।
ଆପଣା ଦେବାଅଙ୍ଗ ଭିନ୍ନ ଯେ ପଚାରିଲେ
କାହିଁପାଇଁ ମୋତେ ଯେ ମର୍ତ୍ତ୍ୟକୁ ପଠାଇଲେ ।
ଏମନ୍ତ ବୋଲିଣ ଯେ କରଇ ରୋଦନ
ତାହାର ରୋଦନରେ କମ୍ପିଲା ମେରୁ ମାନ ।
ତୁ ଯାଇଣ କବାଟ ଫିଟାଇ ଘେନି ଆସ
ମୁଁ ଯାହା କରୁଛି ଦେଖ ରେଣୁକାର ଶିଷ୍ୟ ।
ଦର୍ଶନ କଲା ଉତ୍ତାରୁ ହୋଇବା କଥା ପୁଣ
ଏତେବୋଲି ଶୟନ କଲେକ ନାରାୟଣ ।
ଅନନ୍ତ ଫଣାକୁ ଟେକିଲେ ତହିଁ ପୁଣ
ଶୁଣିକରି କମଳା ଯେ ଉଠିଲେ ବହନ ।
ପଶ୍ଚିମଦ୍ୱାର ଯାଇ ଫେଡ଼ିଣ ବେଗେଦେଲେ
ପର୍ଶୁରାମ ରୋଦନ କରୁଛି ଦେଖିଲେ ।
କମଳା ବୋଇଲେରେ ନରବର ବଳା
ବାସୁଦେବଙ୍କର ତୋତେ ସୁଦୟାହୋଇଲା ।
ଚାହିଁଲା ପର୍ଶୁରାମ କମଳାଙ୍କ ବଦନ
କରଯୋଡ଼ି ଭୂମିରେ ଶୋଇଲା ବେଗେପୁଣ ।
କମଳା ଯାଇଣ ତାହାକୁ ଉଠାଇଲେ
ପର୍ଶୁରାମ କମଳାର ଚରଣ ଧୋଇଲେ ।
ପଦ ଉଦକ ଯେ ଗର୍ଭକୁ କ୍ଷେପିଦେଲେ
ନିସ୍ତରିଲି ବୋଲିଣ ମନରେ ଚିନ୍ତା କଲେ ।
ଭକତି ଭାବ ଦେଖି ବରୁଣ ଦୋହିତ
ଉଠାଇଣ ନେଲେ ସେ ଯେ ରେଣୁକାର ସୁତ ।
ଶୟନ ସ୍ଥାନ ତାକୁ ନେଇଣ ଦେଖାଇଲେ
ଦେଖିଣ ପର୍ଶୁରାମ ମନରେ ତୋଷ ହେଲେ ।
ଚରଣରେ ନମିଲେ ଶତେକ ବାରପୁଣ
ବୋଇଲେ ଏଥୁ ନିସ୍ତାର କରହେ ନାରାୟଣ ।
ହୃଦୟରେ ଭାବ ହୋଇଲା ଯହୁଁ ପୁଣ
ଶଯ୍ୟାରୁ ଉଠିଲେ ଯେ ବେଗ ନାରାୟଣ ।
ବୋଇଲେ କିମ୍ପାଇଁ ରୋଦନ କର ବଳା
ପର୍ଶୁରାମ ବୋଇଲେ ଧର୍ମ ଛାଡ଼ିଲା ଏବେପରା ।
ଆପଣା ଶରୀରକୁ ଆପଣେ କର ମାୟା
କିମ୍ପାଇ ଯାତ କଲ ମୋହର ଏହୁ କାୟା ।
ପୁଣି ନିଜରୂପ ମୋଠାରେ କାହିଁ ଦେଲ
ପ୍ରଶ୍ନହୋଇ କିମ୍ପା ମୋତେ ଦୂର ଏବେକଲ ।
ବାସୁଦେବ ବୋଇଲେ ଶୁଣରେ ପର୍ଶୁଧର
ବେଦବରଙ୍କୁ କିମ୍ପା ଦଣ୍ଡିଲ ଆରେବୀର ।
ପର୍ଶୁରାମ ବୋଇଲେ ସେ ସବୁଙ୍କୁ ଦୁଷ୍ଟକଲା
ବରଦେଇ ସଭିଙ୍କି ବଳବନ୍ତ କଲା ।
ବାସୁଦେବ ବୋଇଲେ ଶୁଣରେ ପର୍ଶୁଧର
ଅସୁର ଯେ ସେବିଲେ ବ୍ରହ୍ମାଙ୍କ ପୟର ।
ସେଥି ସକାଶେ ବ୍ରହ୍ମା ଅସୁରେ ବରଦେଲା
ସେ ଅସୁରଙ୍କ କର୍ମରେ ପୁଣି ହିଁ ଲେଖିଲା ।
ତୁମ୍ଭଙ୍କୁ ନାରାୟଣ କରନ୍ତୁ ଏବେ ନାଶ
ଶୁଣିଣ ପର୍ଶୁରାମ ବୋଲଇ ସନ୍ଦେଶ ।
ଏତେ ପ୍ରଭୁ ହୋଇ କିମ୍ପା ହେ ଜନମ ଲଭିବ
ଆଜ୍ଞାଦେଲ ସୁଦର୍ଶନ ତୁମର ହେଜିବ ।
ବାସୁଦେବ ବୋଇଲେ ଯେ ନୁହଇ ସେକଥା
ଜନ୍ମହେଲେ ସମସ୍ତେ ଜାଣିବେ ମୋର କଥା ।
ସ୍ଥାବର ଜଙ୍ଗମ ଯେ ସକଳ ଜୀବଜନ୍ତୁ
ଜାଣିଲେ ତାଙ୍କୁ ଦେହେ ରହିବସିନା ହେତୁ ।
ପର୍ଶୁରାମ ବୋଇଲେ ଶୁଣହେ ନାରାୟଣ
କେତେକାଳ ଜନ୍ମ ଲଭିବ ତୁମ୍ଭେ ପୁଣ ।
ବାସୁଦେବ ବୋଇଲେ ଅଳ୍ପଦିନେ ପରା
ମାରି ଅସୁର ଶୁଣ ରେଣୁକାର ବଳା ।
ପର୍ଶୁରାମ ବୋଇଲେ ତୁମ୍ଭେ ହୋଇଲେ ଜନ୍ମ
ମୁଁ କାରଣ ଲଭିବି ଶୁଣ ହେ ନାରାୟଣ ।
ମୋହର ଅପ୍ରାଧ ସବୁ କ୍ଷମାକର
ବାସୁଦେବ ବୋଇଲେ ତୁ ମୋହର ଶରୀର
ପର୍ଶୁରାମ ବୋଇଲେ ମୋର ଅଟେ ଯେ ପ୍ରାଣ
ଚାରିଜଣ ମୋ ଶରୀରେ ଲଗାଅ ଚରଣ ।
ଶୁଣିଣ ନାରାୟଣ ଉଠିଲେ ଯେ ଖରେ
ଚରଣ ଲଗାଇଲେ ପର୍ଶୁରାମଙ୍କ ଶିରେ ।
କମଳଙ୍କୁ ଠାରିଦେଲେ ଉଠିଲେ ଦେବଦୁଲଣି
କନ୍ଧରେ ପାଦ ନେଇ ଲଗାଇଲେ ପୁଣି ।
ଅନନ୍ତ ଉଠିଣ ହୃଦରେ ପାଦ ଲଦି
ସରସ୍ୱତୀ କନ୍ଧରେ ଲଗାଏ ପାଦଦେଖି ।

ଚାରି ଚରଣ ଲାଗିଲା ତାହାର ଦେହେ ପୁଣ
ପର୍ଶୁରାମ ବୋଇଲେ ମାଇଲି କାରଣ ।
ବାସୁଦେବ ବୋଇଲେ ଶୁଣ ହେ ପର୍ଶୁଧର
ଗଦା କୁଠାର ଧନୁ ଆଣରେ ତୋହର ।
ଦ୍ୱାରପାଳ ମାନଙ୍କର କିଛି ନାହିଁ ଦୋଷ
ତାଙ୍କ ଦୁଃଖ କିମ୍ପା ଆରେ ରେଣୁକା ଶିଷ୍ୟ
ଏବେ ଯାଇ ତୋହର ଆୟୁଧ ଘେନିଆସ
ତାହାଙ୍କ ସଙ୍ଗେ ଆଣ ଯମଦଗ୍ନି ସୁତ ।
ପର୍ଶୁରାମ ବୋଇଲେ ଶୁଣିବା ଦେବହରି
ସେମାନେ ବଡ଼ ଦୋଷୀ ଅଟନ୍ତି ତୁମ୍ଭରି ।
ଜୟ ବିଜୟ ପଶ୍ଚିମ ଦ୍ୱାର ପାଳ
ତୋହର କମଳାକୁ କଲେକ ଦୂରାନ୍ତର ।
ନ ବିଚାରିଲେ ମନେ ଆମ୍ଭେ ଯେ ସେବାକାରୀ
କିସ ଯେ ଠାକୁରାଣୀକି କହିବା ଆଗଫେରି ।
ଦୁଷ୍ଟାକ୍ଷର ବାଣୀଶୁଣି ସାଗର ଦୁଲଣି
ଶାପ ଦେଲ ଅସୁରକୁ ହୁଅ ବୋଲିକରି ।
ସେ ବୋଇଲେ ତୁ ଯେ ଆମ୍ଭର ଘର ଯିବୁ
ଅସୁର ରିପୁ କଥା କର୍ଣ୍ଣରେ ଶୁଣିବୁ ।
ଭୟ ନ କରି ଶାପ ଦେଲେ ଦ୍ୱାରପାଳ
ଜନ୍ମହୋଇ ଏବେ ଦହନ୍ତି ତିନିପୁର ।
କମଳା ଅଙ୍ଗରୁ ଅଧେକ ଚାଳି ଦେଲ
ବେଦମତି କରିଣ ତାହାକୁ ଜାତକଲ ।
କାଳେ ସେ ଅସୁର ତାକୁ ଲଙ୍ଘିଲାକ ଯାଇ
ସେ ଶରୀର ବେଦମତି ଅଗ୍ନିରେ ଝାସଦେଇ ।
ଏବେ ବିଚାରଇ ମୁହିଁ ହେବି ବାସୁଦେବ
ସକଳ ଜନ୍ତୁରେ ହୋଇବ ଆଦିକନ୍ଦ ।
ଦୀନବନ୍ଧୁ ନାମ ହୋଇବ ମୋର ଯେବେ
ବାସୁଦେବମାରି କମଳାକୁ ଭୋଗକରିବ ତେବେ ।
ଲବଣ ସମୁଦ୍ରକୁ ମୁଁ ବଦଳ କରିବି
କ୍ଷୀରସାଗର ଜମ୍ବୁଦ୍ୱୀପକୁ ଫେରାଇବି ।
ଶ୍ରୀହରି ପାଟଣା କରିବି ଲଙ୍ଘିବଳ
ତେବେ ମନୋରଥ ପୂର୍ଣ୍ଣ ମୋହର ପ୍ରବଳ ।
ତାହା ଶୁଣିଣ ମୁଁ ଯେ ରାଗେ ଜର୍ଜର
ବିଚାରିଲି ପ୍ରଭୁଠାରେ ଅପ୍ରାଧ ଏହାର ।
ଏହାକୁ ମାରିଣ ମୁଁ ଯେ କରିବି ଧୂଳି ପାଂଶ
ତିନିପୁର ଅସୁରଙ୍କୁ କରିବି ମୁହିଁ ନାଶ ।
ବିଧାତା ପୁରୁଷ ମୋତେ ମନାକଲା ଯାଇ
ବୋଇଲା ତୋର ହସ୍ତରେ ମରଣ ତାରନାହିଁ ।

ଶୁଣିଣ ପର୍ଶୁରାମ ବେଗେ ଚଳିଗଲା
ପଶ୍ଚିମ ଦ୍ୱାରେ ଯାଇ ପ୍ରବେଶ ହୋଇଲା ।
ପରମ ହଂସକୁ ଯେ ଚାହିଁଲା ବୋଲିକରି
ଯାଅ ଯଶୋବନ୍ତିପୁରେ କହେ ବେଦଧାରୀ ।
ପର୍ଶୁରାମ ଭେଟିଲେ ବାସୁଦେବ ଠାରେ
ତୋତେ ଦୟା କଲି ଯେ ପରମ ନିରାକାରେ ।
ଶୁଣିଣ ପରମ ହଂସ ବେଗେ ଉଠିଗଲା
ବେଦବରଙ୍କୁ ଯାଇ ଦର୍ଶନ ବେଗେ କଲା ।
ବେଦବର ବୋଇଲା କେଣେ ଗଲା ଋଷି
ପରମହଂସ ବୋଲେ ଶୁଣହେ ଦେବଧ୍ୱଂସି ।
ଅନନ୍ତ ଶୟନରେ ପ୍ରବେଶ ଯାଇ ହେଲେ
କମଳା ତାକୁ ଆଦର କରିଣ ଘେନିଗଲେ ।
ବାସୁଦେବ ସଙ୍ଗରେ ହୋଇଲେ ଯାଇମେଳ
ଶୟନ ତେଜିଲେ ଦେଖିଣ ଚକ୍ରଧର ।
ଶୁଣିକରି ପର୍ଶୁଧର ବେଗେ ଚାଳିଦେଲେ
ନିୟୁନ ହୋଇ ତୋତେ ଅନେକ କହିଲେ ।
ବୋଇଲେ ଏ ହଂସକୁ ବେଗେ ଚାଳିଦିଅ
ବିନତା ସୁତ ଉପରେ ବିଜେକରି ଯାଅ ।
ବୋଇଲା ବାସୁଦେବର ସୁଦୟା ତାଙ୍କଠାରେ
ମୋର ପାଏ କୋଟିଏକି ମରିଥାଏ ରଣରେ ।
ଏମନ୍ତ ବୋଲିଣ ସେ କହିଲା ବିନୋଇ
ଶୁଣିଣ ବେଦବର ତୋଷଭର ହୋଇ ।
ହଂସ ପଚାରିଲା ବ୍ରହ୍ମାର ମୁଖ ଚାହିଁ
ସେ ପର୍ଶୁରାମ ପୁଣି କିଏ ସେ ଅଟଇ ।
ବିଧାତା ବୋଇଲେ ସେ ଗୋଲକ ନାରାୟଣ
ମୋର ପ୍ରାୟେକସୁତେ ବ୍ରହ୍ମା କରିପାରେପୁଣ ।
ଶାନ୍ତଶୀଳ ସକାଶେ ମୋତେ ସେ ରଖିଲା
ବାସୁଦେବଠାରୁ ଶୁଣି ଶୀତଳ ହୋଇଲା ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ପର୍ଶୁରାମେ ନମିଣ ଦ୍ୱାରେ ମିଳି ଧାତି ।
ଚନ୍ଦ୍ର ସୂର୍ଯ୍ୟ ଦୁହିଁଙ୍କର ଉପରୁ ଧନୁ କାଢି
ବୋଇଲା ବାସୁଦେବଙ୍କୁ ଦେଖା ଯାଇକରି ।
ସେଠାରୁ ପୂର୍ବଦ୍ୱାରେ ହେଲାକ ପ୍ରବେଶ
ମରୁତ ଠାରୁ କାଢ଼ିଲା କୁଠାର ସନ୍ଦେଶ ।
ବୋଇଲା ଶ୍ରୀହରିକି ଦର୍ଶନ କର ଯାଇ
ଦୟା ଧର୍ମ ବାସୁଦେବ ଅଛି ପୁର ତହିଁ ।
ଏତେ କହି ସେଠାରୁ ପର୍ଶୁରାମ ଗଲା
ଉତ୍ତର ଦ୍ୱାରେ ଯାଇ ପ୍ରବେଶ ହୋଇଲା ।

କ୍ଷେତ୍ରପାଳ ଅଙ୍ଗରୁ କାଢ଼ିଲା ଗଦା ପୁଣ
ବୋଇଲା ବାସୁଦେବରେ ପଶ ଯା ଶରଣ ।
ଶୁଣିଣ କ୍ଷେତ୍ରପାଳ ବେଗେ ଚଳିଗଲା
ପର୍ଶୁରାମ ତାହାର ପଛରେ ଯେ ଗଲା ।
ଦ୍ୱାରପାଳମାନେ ଯାଇ ଦର୍ଶନ ଯେ କଲା
ଦେଖିଣ ବାସୁଦେବ ହରଷ ହୋଇଲା ।
ଦ୍ୱାରପାଳ ବୋଇଲେ ଶୁଣ ହେ ଶ୍ରୀରଙ୍ଗ
ପର୍ଶୁରାମ ଯତିର ଆମ୍ଭଠାରେ ରାଗ ।
ନିରଞ୍ଜନ ବୋଇଲେ ଶୁଣରେ ଦ୍ୱାର ପାଳ
ଗୋଲକ ନାରାୟଣ ଅଟନ୍ତି ପର୍ଶୁଧର ।
ତାଙ୍କର ବୋଲ ଯହୁଁ ନକଲ ତୁମ୍ଭେ ପୁଣ
ତେବେ ଯେ ଦଣ୍ଡଦେଲ ଜାଣିଣ ତୁମ୍ଭ ମନ ।
ଦ୍ୱାରପାଳ ବୋଲେ ଆମ୍ଭେ ନୋହିବୁ ସମ୍ଭାଳ
ଏ ରୂପେ ଅଦିତି ଯେବେ କରିବେ ସକଳ ।
ବାସୁଦେବବୋଇଲେ ଯେ ମୋର ଅଙ୍ଗଗୋଟି
ଅଷ୍ଟମ ଅବତାରେ ଏରୂପ ହୋଇଛନ୍ତି ।
ପାଞ୍ଚନି ଅବତାର ହୋଇବଟି ପୁଣ
ସେ ମାଇଲା ଦୁଷ୍ଟକୁ ମୁଁ ମାରିବି ହୟଗଣ ।
ଶୁଣିକରି ଦ୍ୱାରପାଳ ସନ୍ତୋଷମନ ହେଲା
କରଯୋଡ଼ି ଚରଣ ତଳରେ ଶୋଇଲା ।
ଉଠିଣ ଶିରେ କର ଦେଲେ ଦ୍ୱାରପାଳ
ଶ୍ରୀହରି ବୋଇଲେ ଶୁଣ ବିନତା କୁମର ।
ପର୍ଶୁରାମକୁ ପିଠିରେ ବସାଇ ଘେନିଯାଅ
ତିନିପୁର ଚଉଦ ବ୍ରହ୍ମାଣ୍ଡ ଯେ ବୁଲାଅ ।
ନବ ଖଣ୍ଡ ମେଦିନୀ ଯେ ସାଗର ପନ୍ଦର
ଦେଖିଣ ପର୍ଶୁରାମର ମନ ହେଉ ସ୍ଥିର ।
ଶୁଣିଣ ଯେ ପର୍ଶୁରାମ କରପତ୍ର ଧରି
ଏତେବେଳେ ଏକଥା ନକର ନରହରି ।
ସମସ୍ତେ ପଚାରିବେ ଏମନ୍ତ କଥାମାନ
ବୋଇଲେ ପର୍ଶୁରାମ ଯେବେ ଅଟେ ନାରାୟଣ ।
ଗରୁଡ଼ ଉପରେ ସେ ବସିଣ ବିହରୁଛି ।
ବୈକୁଣ୍ଠରେ ବାସୁଦେବ କିପରି ଅଛି
ଯେତେବେଳେ ଦିଗବିଜେ କରିବି ମୁଁ ପୁଣ
ତେତେବେଳେ ସୁମରିଲେ ଦେବେଖଗଗଣ ।
କେବଳ ମୋତେ ନେଇ ଜମ୍ବୁଦ୍ୱୀପରେ ଛାଡୁ
ଶୁଣିଣ ବାସୁଦେବ ବିଚାର କଲେ ଗରୁ ।
ପର୍ଶୁରାମକୁ ବୋଇଲେ ଷଷ୍ଠ ଅବତାର
ପ୍ରକାଶ ହେବ ଯେମନ୍ତେ କରିବୁ ବିଚାର ।
ଯେତେକ ମେଦିନୀ ସକଳଠାରେ ମିଳି
ନିଛତ୍ର କରିଣ ଦୁଷ୍ଟଜନଙ୍କୁ ସଂହାରି ।
ଏହା ଶୁଣି ପର୍ଶୁରାମ ବାସୁଦେବଙ୍କୁ ନମିଲା
ଅନନ୍ତ ପାଦତଳେ ଓଳଗି ହୋଇଲା ।
ଲକ୍ଷ୍ମୀ ସରସ୍ୱତୀଙ୍କି ଲାବଣ୍ୟ ଭାଷାବାଣି
ଆୟୁଧ ଧରିଣ ପର୍ଶୁରାମ ଗଲେ ବେଗି ।
ପଶ୍ଚିମ ଦ୍ୱାରରେ ଯାଇଣ ହେଲେକ ପ୍ରବେଶ
ଗରୁଡ଼ ଉପରେ ଯାଇ ଚଳିଲା ତୁରିତ ।
ଘଡ଼ିକର ଭିତରେ ସାଗର ଲଙ୍ଘିଗଲା
ଜମ୍ବୁଦ୍ୱୀପ ମଣ୍ଡଳରେ ପ୍ରବେଶ ହୋଇଲା ।
କମଳ ତାର ସ୍ଥାନରେ ଅଟଇ ଧ୍ୱଜବନ
ସେଠାରେ ମିଳିଲା ଯାଇ ରେଣୁକା ନନ୍ଦନ ।
ମରୁତର ପିଠିର ଉଭରୁ ବେଗେ ପୁଣ
ଗରୁଡ଼କୁ ବୋଇଲେ ଯାଅ ହେ ନିଜସ୍ଥାନ ।
ଶୁଣିକରି ଗୁରୁଡ଼ ଯେ ବେଗେ ଚଳିଗଲା
ଶୟନର ପୂର୍ବଦ୍ୱାରେ ଯାଇଣ ରହିଲା ।
କ୍ଷେତ୍ରପାଳ ରବିଚନ୍ଦ୍ର ରହିଲେ ବେନିଦ୍ୱାରେ
ପଶ୍ଚିମ କବାଟ ଅନନ୍ତ ଦେଲାକ ନିବିଡ଼େ ।
ସହସ୍ରେକ ବରଷ ଯେ ବାସୁଦେବ ଭଲେ
ଚେତାରେ ଲୀଳାକଲେ ଯେ କମଳାସଙ୍ଗରେ ।
ଅତୁଟ ନାରୀ ସଙ୍ଗରେ ଅନନ୍ତ ଲୀଳା କଲା
ଲୀଳା ସରିବାରୁ ଯେ ଶୟନ କଲେ ପରା ।
ଅନନ୍ତ ଉପରେ ବାସୁଦେବ ଶୁଏ ପୁଣ
ଫଣା ଟେକି ଅନନ୍ତ ରଖିଲେ ଉନ୍ନିଦ୍ରେଣ ।
କମଳା ବସିଣ ଶ୍ରୀପୟର ମଞ୍ଚା କଲେ
ସରସ୍ୱତୀ ବୀଣା ଶବଦ ତହିଁ କଲେ ।
ଏମନ୍ତେ ରୂପ ହାଦେ ଅଟଇ ପର୍ଶୁରାମ
ଦୁଷ୍ଟପଣ କଲେ ମାରିବ ଯେ କରିଛି ନିୟମ ।
ମାଳବ କହନ୍ତି ଯେ ପର୍ଶୁରାମ ଋଷି
ସାକ୍ଷାତ ପରଂବ୍ରହ୍ମ ନାରାୟଣ ଋଷି ।
ଶୁଣିଣ ସକଳ ଋଷି ତୋଷଭର ହେଲେ
ବଶିଷ୍ଠଙ୍କୁ ଘେନିଣ ସେଠାରୁ ଚଳିଗଲେ ।
ଯାନ ପରେ ବସିଲେ ସକଳ ମୁନିଗଣ
ଅରୁନ୍ଧତୀକି ଘେନିଣ ବଶିଷ୍ଠ ତପୋଧନ ।
ଅଯୋଧ୍ୟା ନଗ୍ରରେ ଯାଇ ହେଲେକ ପ୍ରବେଶ
ବଶିଷ୍ଠ ମଢିଆରେ ମିଳିଲେ ସମସ୍ତ ।

ମଢିଆ ପବିତ୍ର କରି ମିଳିଲେ ତପୋଧନ
ଅରୁନ୍ଧତୀ ପାକକଲା ଭୁଞ୍ଜିଲେ ସର୍ବ ପୁଣ ।
ସେ ରାଜ୍ୟର ରାଜା ଯେ ଦଶରଥ ପୁଣ
ବଶିଷ୍ଠ ଚରଣେ ଯାଇ କଲେ ମାନ୍ୟଧର୍ମ ।
ପାତ୍ର ମନ୍ତ୍ରୀ ସାମନ୍ତ ସମସ୍ତେ ମିଳେ ଯାଇ
ସମସ୍ତେ ବସି ପାକରେ ଭୋଜନ କଲେ ଯାଇ ।
ବଶିଷ୍ଠ ନ ଥିବାରୁ ମନରେ ବିରସ
ଦେଖିଣ ମୁନିକି ସର୍ବେ ହେଲେକ ହରଷ ।
ସକଳ ଋଷି ମେଲାଣି ହୋଇଗଲେ ପୁଣ
ଅଗସ୍ତି ନାରଦଗଲେ ଯେ ଯାହାର ସ୍ଥାନ ।
ନିଶ୍ଚିନ୍ତରେ ବଶିଷ୍ଠ ଯେ ପୁରେ ରହିଲେ
ରାଜାପାତ୍ର ମନ୍ତ୍ରୀ ସର୍ବେ ହରଷ ହୋଇଲେ ।
ପାର୍ବତୀ ବୋଇଲେ ଶୁଣ ହେ ମହେଶ୍ୱର
କେମନ୍ତ କଲ ଲୋମପାଦ ନୃପବର ।
ଅମ୍ବିକା ଚଣ୍ଡାଳ ଧାନ ରାଜ୍ୟେ ବାଣ୍ଟିଦେଲା
ନାରଦ ପ୍ରସାଦେ ଜଳ ଠାବେ ଠାବେହେଲା ।
ରାଜ୍ୟଯାକ କୁଶଳ ହୋଇଲା ତାହାର
ରାଜ୍ୟ ପ୍ରଜା କିସ ଯେ କରନ୍ତି ବିଚାର ।
ସେ କଥା ମୋର ଆଗେକହ ହେ ତ୍ରିଲୋଚନ
ଈଶ୍ୱର ବୋଇଲେ ଗୋ ଭଗବତୀ ଶୁଣ ।
ଲୋପପାଦ ରାଜ୍ୟରେ ସକଳ ପ୍ରଜାଗଣ
ଧାନ ନେଇ ଜଳଖାଇ ହର୍ଷହେଲେ ପୁଣ ।
ଦୁଃଖ ଦାରିଦ୍ର୍ୟ ଯେ ନାନାଦି ଲୋକମାନ
ତିନିବର୍ଷକୁ ସେ ବାଣ୍ଟିନେଲେ ଧାନ ।
ପ୍ରତି ଘରେ ଉତ୍ସବ ମଙ୍ଗଳ ଗୀତ ନାଦ
ନୃତ୍ୟ ରଙ୍ଗ କରନ୍ତି ଯେ ଯାହାର ଶବଦ ।
ଏମନ୍ତେ ବେନି ବର୍ଷ ଗଲା ଏଥି ବହି
ଆବର ବର୍ଷକେ ଯେ କାଳ ଅଛଇଁ ତହିଁ ।
ପାତ୍ର ମନ୍ତ୍ରୀ ସାମନ୍ତ ଡକାଇ ରାଜାପୁଣ
ବୋଇଲା ଶାପ ଶେଷ ହୋଇଲା ଆସି ଜାଣ
କେଉଁଠାରେ ବିଭାଣ୍ଡକ କରିଛି ଆଶ୍ରମ
ଜନ୍ମ ହୋଇଛି ଯେ ଋଷ୍ୟଶୃଙ୍ଗ ନାମଜାଣ ।
ପିତାର ପାଶେ ଅଛିକି ଯାଇଛି ତପ କରି
ସେ କଥା ଜାଣିଲେ ଉପାୟ ସିନାକରି ।
ପାତ୍ର ମନ୍ତ୍ରୀ ବୋଇଲେ ଏକଥା ଅଟେ ସତ୍ୟ
ମୂଳ କରି ସଙ୍କେତ ପାଇଲେ ବୁଝିବାତ ।
ଭେଦିବାକ ଚାର ବୁଲାନ୍ତୁ ବନଗିରି
କେଉଁଠି ଅଛନ୍ତି ବିଭାଣ୍ଡକ ତପଚାରୀ ।
ଶାପର ପ୍ରମାଣ ଅଛଇ ଯେ ଜାଣ
ଋଷିଶୃଙ୍ଗ ଆସିଲେ ବରଷିବ ଘନ ।
ନୋହିଲେ ମେଘମାନେ ବରଷା ନକରି
ଋଷ୍ୟଶୃଙ୍ଗ ଅଟନ୍ତି ବର୍ଷାର ଅଧିକାରୀ ।
ଏମନ୍ତ ବିଚାର ସମସ୍ତେ ବସିକଲେ
ସହସ୍ରକ ଲୋଧା ଡକାଇ ଆଣିଲେ ।
ଅନ୍ନବସ୍ତ୍ର ଦାନ ଦେଲେ ତାଙ୍କୁ ପୁଣ
ବାଟକୁ ଧନ ଦେଲେ ଖର୍ଚ୍ଚ ନିମନ୍ତେଣ ।
ବୋଇଲେ କେଉଁଠି ବିଭାଣ୍ଡକ ଋଷି ଅଛି
ସେ ସ୍ଥାନ ତଥ୍ୟକରି ବୁଲିଣ ଦେଖସି ।
ତାହାର କୁମର ଋଷ୍ୟଶୃଙ୍ଗ ଜାଣ
ଅଛିକି ବାପ ପାଖରେ ଦେଖିବା ପ୍ରମାଣ ।
ଥିଲେ ଯେ ଋଷିଙ୍କି ପଚାରିବ ପୁଣ
ବୋଲିବ ଦର୍ଶନ ଆମ୍ଭେ କରିବୁଁ ଯେ ପୁଣ ।
ମନୁଷ୍ୟ ଶରୀର ଦୁଇ ଶୃଙ୍ଗ ଶିରେ
ବସନ୍ତ ବର୍ଣ୍ଣ ତାର ଜାଣିଥା ନିକରେ ।
ଏମନ୍ତ କହିଣ ରାଜା ତାଙ୍କୁ ବରଗିଲେ
ଲୋଧା କନ୍ଧ ଜାଣିଣ ନିଜ ସ୍ଥାନେ ଗଲେ ।
ଟାଙ୍ଗୀ ଧନୁ ନାରାଚ ଧରି ସଜହେଲେ
କୋଡ଼ିଏ କୋଡ଼ିଏ ହୋଇ ସମସ୍ତେ ବୁଲିଲେ ।
ଗିରିକନ୍ଦର ବନସ୍ତ ବୁଲି ଯାଇ ପୁଣ
ଅନେକ ରାଜ୍ୟକୁ କଲେ ସେ ଗମନ ।
ସହସ୍ରେକ ରାଜା ଋଷି ମାସେ ବୁଲିଲେ
କୌଶିକ ବନରେ ଯାଇ ପ୍ରବେଶିଲେ ।
ଦେଖିଲେ ନଦୀକୂଳ ଯୁଗେକ ଛଡ଼ାରେ
ମଠେକ ଦେଖିଲେ ଅଗମ୍ୟ ବନରେ ।
ନିର୍ମଳ ଶଉଚ ସେ ସ୍ଥାନ ଅଛି ହୋଇ
ଦ୍ୱାରରେ ବେଲଗଛ ଶୋଭନ ଦିଶଇ ।
କୃଷ୍ଣାଜିନ ମୃଗଛାଲ ଉପରେ ଋଷି ବସି
କପୋଳ ଭସ୍ମଚିତା ଉବୁରି ବିରାଜୁଛି ।
ବେଲ ଗଛକୁ ଆଉଜି ବସିଛନ୍ତି ମୁନି
କୁଶ ପାତ୍ରୀ କମଣ୍ଡଳୁ ପାଉଛି ଶୋଭାବନି ।
ଦେଖିଣ ଚାରଗଣେ ଓଳଗି ମେଲାଇଲେ
କରଯୋଡ଼ି ଋଷିଙ୍କି ଆଗରେ ଉଭା ହେଲେ ।

ଋଷି ପଚାରିଲେ କେଉଁଦେଶେ ତୁମ୍ଭଘର
କିମ୍ବା ଏ ବନକୁ ଅଇଲ ବ୍ୟାଧ ବୀର ।
କନ୍ଧ ବୋଇଲେ ଦେବ ପାରିଧିକି ଆସୁ
ଜୀବ ମାରିବାକୁ ବନସ୍ତରେ ପଶୁ ।
ଏ ବନସ୍ତରେ ପଶିଣ ଖୋଜିଲୁ ଜୀବଗଣ
ଶୁଭ ଯୋଗେ ଭେଟିଲୁ ଆପଣାଙ୍କୁ ପୁଣ ।
ଆମ୍ଭଘର ଚମ୍ପାବତୀ ରାଜ୍ୟରେ ଅଟଇ
ସେ ଦେଶରେ ଇନ୍ଦ୍ର ବୃଷ୍ଟି ନ କରଇ ।
ବ୍ରାହ୍ମଣ ଶାପରେ ରାଜ୍ୟଲୋକେ ଦୁଃଖୀ
ଅନେକ ରାଜ୍ୟ ଫେରିଣ ପେଟ ପୋଷୁଛନ୍ତି ।
ଆମ୍ଭର କଷ୍ଟ ଦେବ କହିଲେ ନସରି
କେତେକଲୋକ ଅନାହାରେ ଗଲେଣି ଯେ ମରି ।
ଆଜଦିନ ଶୁଭ ଦେଖିଲୁଁ ତୁମ୍ଭଙ୍କୁ
ତୁମ୍ଭ ନାମ କହ ହେ ଆମ୍ଭଙ୍କୁ ।
ଋଷି ବୋଇଲେ ଏବେ ବ୍ୟାଧଗଣ ଶୁଣ
ବିଭାଣ୍ଡକ ଋଷି ଅଟଇ ଆମ୍ଭ ନାମ ।
ମୋହର ପିତାଙ୍କନାମ ସୁଭାଣ୍ଡକ ହୋଇ
ଏ ସ୍ଥାନେ ମୋ ଜନକ ମଢିଆ କରି ରହି ।
ପିତା ସ୍ୱର୍ଗ ଯିବାରୁ ମୁଁ ଏ ସ୍ଥାନରେ ଅଛି
ସୁରଭୀ ଗୋଟିଏ ମୋତେ ବ୍ରହ୍ମାଦେଲେ ଯାଚି ।
ସେ ସୁରଭୀ ପ୍ରସାଦେ ସକଳ ମୋର ଭଲ
ସିଂହ ଶାର୍ଦ୍ଦୁଳକୁ ଭୟ ନଥାଏ ମୋହର ।
କନ୍ଧ ବୋଇଲେ ଦେବ ଅରଣ୍ୟେ ବାସତୋର
ଦୈତ୍ୟମାନେ ଦୁଷ୍ଟ ଯେ ଅଟନ୍ତି ବଳିଆର ।
ଦୁଷ୍ଟଙ୍କୁ ଡରନ୍ତି ରାଜା ପ୍ରଜା ଯେ ସମସ୍ତେ
ସେମାନେ କି ଉପଦ୍ରବ ନ କରନ୍ତି ଏଥେ ।
ମୁନି ବୋଇଲେ ଶୁଣ ବ୍ୟାଧବୀର
ତପୀ ଜନମାନଙ୍କୁ କି କରେ ଦୈତ୍ୟ ଛାର ।
ଧନ ଦ୍ରବ୍ୟନାହିଁ ଆମ୍ଭର ନେବାକୁ ସେବୋହି
ଫଳମୂଳ ଖାଉ ଆମ୍ଭେ ଅରଣ୍ୟରେ ଥାଇ ।
କନ୍ଧ ବୋଇଲେ ଦେବ ଏକସିନା ତୁମ୍ଭେ
ସୁରଭୀଟିଏ ତ ଅଛି ତୁମ୍ଭ ସଙ୍ଗେ ।
ଦାସୀ ପରିବାରୀ ତ ଋଷି ଆଣି ନାହିଁ
ସେ ସଞ୍ଚାର କିଛି ଆମ୍ଭେ ଦେଖିଲୁ ତ ନାହିଁ ।
ଋଷି ବୋଇଲେ ତୁମ୍ଭେ ଶୁଣ ଆରେ କନ୍ଧ
ସେ ଗହଳେ ଆମ୍ଭର ନାହିଁ ଯେ ଶରଧା ।

କୁମର ଗୋଟିଏ କେବଳ ଅଛି ମୋର
ସେହି କୁମର ମୋତେ ଦେଲେ ବେଦବର ।
ଦେବତାଙ୍କର ସାହାରେ କୁମର ମୁଁ ପାଇ
ସେହି ପୁତ୍ର ଗୋଟି ମୋର କାରଣ ଅଟଇ ।
କନ୍ଧ ବୋଇଲେ ଦେବ ଘରଣୀ ତୋର ନାହିଁ
କେମନ୍ତେ ପୁତ୍ର ଗୋଟି ପାଇଲୁ ଗୋସାଇଁ ।
ପୁତ୍ର ନାମ କିସ ଅଟଇ ତୋହର
କେହୁ ଦେଲା କୁମର କହ ମୁନିବର ।
ବିଭାଣ୍ଡକ ବୋଇଲେ ଶୁଣ ଲୋଧା ଜାତି
ମୃଗୁଣୀର ଗର୍ଭରୁ ସେ ହୋଇଲା ଉତ୍‌ପତ୍ତି ।
ସର୍ବାଙ୍ଗ ସୁନ୍ଦର ତାର ମାନବ ସଦୃଶ୍ୟ
ମସ୍ତକରେ ଦୁଇ ଶୃଙ୍ଗ ମୃଗୁଣୀ ଦୃଶ୍ୟ ।
ସେ କୁମର ଗୋଟିକ ମୃଗୁଣୀ ଜାତକଲା
କ୍ଷୀର ନଦେଇ ମୃଗୁଣୀ ସ୍ୱର୍ଗ ଗାମୀ ହେଲା ।
ସେ ସନ୍ତୋଷ ରୋଦନ କରଇ ଏଥି ଜାଣ
ରୋଦନ ଶୁଣିଣ ମୁଁ ମିଳିଲି ଆଗେଣ ।
ଦେଖିଲି ଯେ କୁମର ଆଶ୍ଚର୍ଯ୍ୟରେ ଜନ୍ମ
ମାନବ ଶରୀର ତାର ମସ୍ତକେ ଶୃଙ୍ଗ ଜାଣ ।
ଦେଖିଣ ଭାଳେଣି ମନରେ ମୋର ହେଲା
ଆଶ୍ଚର୍ଯ୍ୟିତ କଥାତ ଏଠାରେ ଦେଖାଦେଲା ।
ଏମନ୍ତ ସମୟରେ ତ୍ରିଦଶ ସୁରଗଣ
ସ୍ୱର୍ଗରେ ଦେବତାଏ ଡାକିଲେକ ପୁଣ ।
ମୋତେ ବୋଇଲେ ତୋର କୋଳେ ପୁତ୍ରନାହିଁ
ଏ କୁମର ପାଳିଲେ ଧର୍ମର ତୋର ହୋଇ ।
ମୁଁ ବୋଇଲି ଏ କୁମର ଅସମ୍ଭବ ପୁଣ
କେ ପାଳିବ ଯାକୁ ମୋତେ ଦେବ ବିଡମ୍ବଣ ।
ଦେବ ଇନ୍ଦ୍ର ବୋଇଲେ ଶୁଣ ମୁନିବର
ତୋହର କୁମରକୁ କିମ୍ପାଇଁ ନେବପର ।
ମୁଁ ବୋଇଲି ମୋହର ସେ କିରୂପେ କୁମର
ମୃଗୁଣୀ ସଙ୍ଗତେ ମୁଁ ତ କରିନି ବିହାର ।
ସୁର ରାଜା ବୋଇଲେ ଶୁଣ ମୁନିବର
ସ୍ୱର୍ଗ ନାୟିକାକୁ ଦେଖିବୀର୍ଯ୍ୟ ଛାଡ଼ିଲୁ ମୁନିବର ।
ସେ ବୀର୍ଯ୍ୟ ତୋର ପୁଷ୍କରିଣୀରେ ଭାସୁଥିଲା
ତୃଷାତୁରେ ମୃଗୁଣୀ ସେ ଜଳ ପିଇଲା ।
ସେ ବୀର୍ଯ୍ୟ ଜଳ ସଙ୍ଗେ ପିଇଲା ମୃଗୁଣୀ
ଗର୍ଭବାସ ହେଲା ବୀର୍ଯ୍ୟ ନୋହିଲା ହାନିପୁଣି ।

ମୁଁ ବୋଇଲି ସେ କଥା ନିରୋଳାମୋତେକହ
ମେନକା ଦୁହିତାରେ କେମନ୍ତେ ମୋର ସ୍ନେହ ।।
ସୁରରାଜା ବୋଇଲେ ଶୁଣ ମୁନି ମଣି
ବିହି ଲେଖନକୁ କେ ଆନକରେ ପୁଣି ।
ଦିନେକ ମେନକା ସୁଗନ୍ଧା ନାମେ ନାରୀ
ନବବର୍ଷରେ ନବଯୁବା ଯେ କୁମାରୀ ।
ଶୃଙ୍ଗାର ନିମନ୍ତରେ ଅନେକ ବିରହୀ
ମାତକୁ ବୋଇଲା ମୋତେ ପତି ଦିଅ ତୁହି ।
ଜନନୀ ବୋଇଲା ଶୁଣ ଲୋ ଦୁହିତା
ତୁ ଯେବେ କାମରେ ହୋଇଲୁ ବିହ୍ୱଳିତା ।
ମର୍ତ୍ତ୍ୟପୁରକୁ ଏବେ ଚଳ ଗୋ ତ୍ୱରିତ
ସୁଭାଣ୍ଡକ ଋଷି ସୁତ ବିଭାଣ୍ଡକ ଋଷି ତ ।
କୌଶିକ ବନରେ ସେହି ଋଷି ଅଛି ରହି
ତାହାର ନିକଟକୁ ଚଳ ବେଗ ହୋଇ ।
ସେ ଋଷି ମଢିଆର ନିକଟେ ସରୋବର
ସେ ସରୋବରେ ନିଜ ରୂପେ ତୁ ବିହର ।
ସେ ଋଷି ସଙ୍ଗେ ମେଳ ହୋଇଣ ବିହର
ବଳବନ୍ତ ପଣରେ ନକରିବୁ ବେଭାର ।
ଯେବେ ସେ ଋଷିମନ ନଟଳିବ ତୋରେ
ଫେରିଣ ଆସିଣ ତୁ କହିବୁ ମୋହରେ ।
ଏହିପରି ମେନକା ଦୁହିତାକୁ କହି
ଶୁଣିଣ ଗନ୍ଧକା ମନରେ ତୋଷ ହୋଇ ।
ପୁଷ୍ପକ ଯାନ ଗୋଟି ବେଗେ ସଜକଲା
ଉତ୍ତର ବେଶ ହୋଇ ରଥରେ ବସିଲା ।
ଚୁଆ ଚନ୍ଦନ ଯେ ଅଗୁରୁ କସ୍ତୁରୀ
କୁଙ୍କୁମାଦି ସୁଗନ୍ଧ ନବ ହରଧରି ।
ସେ ବନରେ ଆସି ହୋଇଲା ପ୍ରବେଶ
ମୋହର ପୁଷ୍କରିଣୀରେ ମିଳିଲା ହରଷ ।
ରଥରୁ ଓହ୍ଲାଇଣ ପୁଷ୍କରିଣୀ ଦେଖି
ନିର୍ମଳ ଜଳ ଦେଖି ମନରେ ହେଲା ସୁଖି ।
ସୁଗନ୍ଧ ଲଗାଇ ଜଳେ କରଇ ସେହୁ ଲୀଳା ।
ଯାନୁ ଯୌବନ ତାର ଦିଶଇ ଯେ ତ୍ୱରା ।
ବସନ ଅଙ୍ଗୁକାଢ଼ି କରଇ ସ୍ନାହାନ
ଦେଖିଣ ଦେବତା ହେଲେ ତୋଷମନ ।
ସୁନ୍ଦର ପଣେ ତାକୁ ସରିସମ ନାହିଁ
ମନକଲେ କ୍ଷଣକେ ସଂସାର ପାରେ ମୋହି ।
ଏମନ୍ତ ସମୟରେ ମୁନିବର ପୁଣ
ସ୍ନାହାନ କରିବାକୁ ଗଲେ ସେ ସ୍ଥାନେଣ ।
କମଣ୍ଡଳୁ ହସ୍ତେ ଘେନିଣ ପ୍ରବେଶତ
ତାକୁ ଦେଖି ତୁମ୍ଭ ମନ ହେଲା ପ୍ରଳୟତ ।
ପଞ୍ଚଶର ତୋର ହୃଦରେ ପୀଡ଼ିଲା
ମଦନ ଶର ଯେ ବିହ୍ୱଳିତ କଲା ।
ଜଳରେ ପଶିଣ କରନ୍ତେଣ ସ୍ନାନ
ଜାନୁ ଯଉବନ ଦେଖିଲ ତାର ପୁଣ ।
ପଞ୍ଚଶର ତୋର ହୃଦରେ ପଡ଼ିଲା
କାମରସ ସୁରତିରେ ମନଟି ବଳିଲା ।
ତେଣୁକରି ବୀର୍ଯ୍ୟ ଉଚ୍ଛୁଳେ ତୋହର
ଉଚ୍ଛୁଳିଣ ବୀର୍ଯ୍ୟ ପଡ଼ିଲା ଜଳର ।
ବୀର୍ଯ୍ୟ ଯିବାରୁ ଅଚେଷ୍ଟ ମତ ହେଲୁ
ଜଳର ଭିତରେ ଢ଼ଳିଣ ପଡ଼ିଲୁ ।
ମସ୍ତକ ରହିଲା କୂଳରେ ଆସି ତୋର
ହୃଦୟ ରହିଲା ଜଳର ଭିତର ।
ଅଚେଷ୍ଟା ଦେଖିଣ ସୁଗନ୍ଧା ବିଚାରଇ
ଚେତା ପାଇଲେ ଋଷି ମୋତେକୋପହୋଇ ।
ଏମନ୍ତ ବିଚାରିଣ ବସନ ଦେହେ ପିନ୍ଧି
ତିନ୍ତିଣ ଜର ଜର କେଶହିଁ ନବାନ୍ଧି ।
ମନରେ ବିଚାରିଲା ଏହି ଦେବ ଶାପ
ଏତେବୋଲି ରଥରେ ଚଢ଼ିଲା ତ୍ୱରିତ ।
ଯାନପରେ ବସିଣ ସ୍ୱର୍ଗପୁରେ ଗଲା
ଜାନକୀ ଛାମୁରେ ପ୍ରବେଶ ହୋଇଲା ।
ବୋଇଲା ମୋତେ ତୁହି ଭେଦିଲୁମର୍ତ୍ତ୍ୟପୁର
ମୁଁ ଯାଇ ବିହ୍ୱଳିତ କଲି ମୁନିବର ।
ମୋତେ ଦେଖିଣ ସେ ଅଜ୍ଞାନ ହୋଇଲା
ବୀର୍ଯ୍ୟ ଟଳିଲାରୁ ମୁନି ମୋହରେ ପଡ଼ିଲା ।
ସେ ଋଷି ଅଜ୍ଞାନ ଦେଖି ମନେ ବିଚାରିଲି
ଶାପ ଦେବ ବୋଲି ଭୟ ମୁଁ କରିଲି ।
ଯାନପରେ ବସିଣ ଅଇଲି ପଳାଇ
କିସ ତୋର ମନକୁ ଅଇଲା ଗୋ ଆଈ ।
ମେନକା ବୋଇଲା ଏକଥା ଭଲ ହେଲା
ଥିଲେ ଋଷି ଶାପ ଦିଅନ୍ତା ତୋତେ ପରା ।
ଭଲ ବୁଦ୍ଧି କରି ତୁରେ କି ଅଇଲୁ
କର୍ମ ତୋର ସୁଫଳ ସେଠାରୁ ଉବୁରିଲୁ ।
ବ୍ରହ୍ମମୁନି ଅଟେ ବିଭାଣ୍ଡକ ମୁନିବର
ତାଠାରେ ଦୋଷୀ ନୋହିଲୁ ସୁଭାଗ୍ୟ ତୋହର ।

ଶୁଣିକରି ଗନ୍ଧକା ଯାନରୁ ଓହ୍ଲାଇଲା
ଜନନୀର ଚରଣେ ଓଳଗି ହୋଇଲା ।
ସୁବାସିତଜଳରେ କଲାକ ସ୍ନାହାନ
ବସ୍ତ୍ରକୁ ଚୁପୁଡ଼ିଲା ପୋଛିଲା ଅଙ୍ଗପୁଣ ।
ନୂତନ ଅମଳାଣ ବସନ ଆଣି ପିନ୍ଧି
ଅମୃତ ଭୋଜନ କଲା ସନ୍ତୋଷ ସାରଙ୍ଗୀ ।
ଆଚମନ ସାରିଣ ବିଡ଼ିଆ ଭୁଞ୍ଜି ପୁଣ
ରତ୍ନ ପଲଙ୍କରେ ନିଦ୍ରା ଗଲା ଅଚେତଣ ।
କେତେବେଳେ ଉତ୍ତାରୁ ଉଠିଲା ଶୁଭ୍ରକେଶି
ରତ୍ନକାଞ୍ଚନ ଆଭରଣ କଲା ହୃଦେବସି ।
ଗଭାବାନ୍ଧି ପୁଷ୍ପମାଳା ଯତ୍ନେ ଲମ୍ବାଇଲା
ସମସ୍ତ ଅଳଙ୍କାର ଶରୀରେ ମଣ୍ଡିଲା ।
ବିଦମୁଦି ବାହୁଟି କଙ୍କଣ ସୁନ୍ଦର
ଅଳତା ଝୁଣ୍ଟିଆ ଲଗାଏ ପୟର ।
ବେଶହୋଇ ସୁନ୍ଦରୀ ବସେ ପ୍ରାଙ୍ଗଣରେ
ରଜନୀ ହୋଇଲା ଏମନ୍ତ ସମୟରେ ।
ଅଶ୍ୱିନୀ କୁମାର ବେଶହୋଇ ପୁଣ
ପ୍ରବେଶ ହେଲେ ଯାଇ ତାହାର ପୁରେଣ ।
ଦେଖିଣ ଗନ୍ଧକା ଆନନ୍ଦ ମନ ହେଲା
ଜନନୀ ଆଗରେ ଯାଇଣ ଜଣାଇଲା ।
ବୋଇଲା ଅଶ୍ୱୀନୀ କୁମାର ବିଜେକଲେ
ଶୋଭା ଦେଖାଇ ମୋରମନ ଲୋଭକଲେ ।
ମେନକା ବୋଇଲା ଯେବେ ତୋର ମନ ତୋଷ
ସ୍ୱାମୀଙ୍କର ମନକୁ କର ଗୋ ହରଷ ।
ଶୁଣିଣ ଗନ୍ଧକା ନାରୀ ବେଗେ ଚଳିଗଲା
ଅଶ୍ୱିନୀ କୁମାରଙ୍କର ଚରଣେ ଓଳଗିଲା ।
ଦେଖିଣ କୁମରମଣି ତାକୁ କୋଳକଲେ
ମୁଖରେ ଚୁମ୍ବନ ଦେଇ ପଲଙ୍କେ ବସିଲେ ।
କୁଚ ମର୍ଦ୍ଦନ କରି କଲେ ଆଲିଙ୍ଗନ
ନିବିବନ୍ଧ ଫିଟାଇ ରତି କଲେ ଜାଣ ।
ସେ ନାରୀର ସ୍ୱାମୀ ହେଲେ ଅଶ୍ୱିନୀ କୁମାର
ଏଥୁ ଅନନ୍ତରେ ଶୁଣ କଥା ସାର ।
ସେ ଅପସରା ଯିବାରୁ ତୁମ୍ଭେ ଚେତା ପାଇ
ଚାହିଁଲା ଅପସରୀକୁ ସେଠାରେ ସେ ନାହିଁ ।
ନ ଦେଖି ତୁମ୍ଭ ମନ ହୋଇଲାକ ସ୍ଥିର
ମନରେ ବିଚାର କଲା ମୁନିବର ।
ଦେଖାଦେଇ ଅସ୍ଥିର କଲା ମୋରମନ
ଜାଣିଣ ପଳାଇଲା ନ ରହି ଏ ସ୍ଥାନ ।
ଥିଲେ ଶାପ ଦିଅନ୍ତା ହୁଅନ୍ତା ଏଥି ଭସ୍ମ
ଏମନ୍ତ ବିଚାର କଲୁ ହୃଦରେଚ ।
ସେଠାରେ ସ୍ନାହାନ ସଉଚ ବେଗେ ସାରି
ମଢ଼ିଆରେ ପ୍ରବେଶ କମଣ୍ଡଳୁ ଧରି ।
ତପରେ ତତ୍‌ପର ହୋଇଣ ବସିଲୁ
ବିଚଳିତ ହେବା କଥା ମନେ ଚିନ୍ତାକଲୁ ।
ଏଥୁ ଅନନ୍ତରେ ଶୁଣ ମୁନିବର
ସୁଶୀଳା ହରିଣୀ ଅଇଲା ତୋ ପଛର ।
ତୃଷାରେ ଆରତ ହୋଇଣ ହରିଣୀ
ତୁ ଯିବାରୁ ପୁଷ୍କରିଣୀ ତଟରେ ମିଳେ ଜାଣି
ଆରତରେ ଜଳ କରଇ ଆହାର
ସେ ଜଳରେ ଭାସୁଥିଲା ବୀର୍ଯ୍ୟ ଯେ ତୋହର ।
ସେହି ବୀର୍ଯ୍ୟକୁ ମୃଗୁଣୀ ଜଳ ସଙ୍ଗେ ଭକ୍ଷି
କାଳେ ଗର୍ଭବାସ ହୋଇଲା ମୃଗୁଣୀଟି ।
ଋଷି ବୋଇଲେ ଜାତିରେ ପଶୁ ପୁଣ
ମନୁଷ୍ୟର ବୀର୍ଯ୍ୟେ କିମ୍ପା ଜାତହେଲା ଜାଣ
ଅଣ ଋତୁରେ କିମ୍ପା ଗର୍ଭରେ ବୀର୍ଯ୍ୟ ରହି
ଋତୁ ହେଲେ ସ୍ୱାମୀ ସଙ୍ଗରେ ରମେ ସେହି ।
ସୁର ରାଜା ବୋଇଲେ ଶୁଣ ହେ ମୁନିବର
ସେ ମୃଗୁଣୀ ଅଟଇ ଅପସରା କୁଳର ।
ସୁଶୀଳା ଅପସରାର ଅଟଇ ଦୁହିତା
ଅନଙ୍ଗ ଗନ୍ଧର୍ବ ଯେ ଅଟଇ ତାର ପିତା ।
ଗନ୍ଧର୍ବ କୋଳେ ଜାତ ହେବାରୁ ସେ କୁମାରୀ
ସୁନ୍ଦର ପଣେ ତାକୁ ଦୁର୍ଗା ନୁହେଁ ସରି ।
ସେ ସୁନ୍ଦରୀକି ବୟସ ସାତ ପାଞ୍ଚ ଜାଣ
କୁମାରୀଙ୍କ ସାଙ୍ଗରେ ଖେଳଇ ସେ ପୁଣ ।
ପଶୁଙ୍କ ପ୍ରାୟେ ଅମଙ୍ଗଳ ବାଟ ଚାଲେ
ଅଷ୍ଟବକ୍ର ଋଷି ଯେ ଆସନ୍ତି ଇନ୍ଦ୍ରପୁରେ ।
ଛେପରା ଭଙ୍ଗା ଖଣ୍ଡ ଦେଖିଣ ତାହାର
ଶୋଇଲେ ମୋତେ ଦେଖି ବାହୁନି ଶରୀର ।
ଅବିଗୁଣ ବିଚାରି ତାଙ୍କୁ ଯେ ଶାପ ଦେଲେ
ଶୁଣିକରି କୁମାରୀ ମନରେ ଭାଳିଲେ ।
କରଯୋଡ଼ିଣ କୁମାରୀ ଯେ କହଇ ଋଷିଙ୍କି
ଦୋଷ କରିନାହିଁ ଶାପ ବିହିଲ କାହିଁକି ।

ମୋର ଇଚ୍ଛାରେ ମୁଁ ଯେ ଖେଳୁଥିଲି ଖେଳ
ନଜାଣି କିମ୍ପା ଶାପ ଦେଲ ଋଷି ବାଳ ।
ଋଷି ବୋଇଲେ ଯେବେ ଦୋଷ ନାହିଁ ତୋର
ଅଳ୍ପଦିନେ ଶାପରୁ ତୁହି ହେବୁ ପାର ।
ନୋହିବ ମୋର ଶାପ ଆଉ ଆନ
ବାରବର୍ଷରେ ତୁ ଯେ ଆସ ନିଜସ୍ଥାନ ।
ପନଶୀଳା ବୋଇଲା ମୁଁ କେଉଁଠାକୁ ଯିବି
କେଉଁ ରୂପ ହୋଇଣ ମୁଁ ବନରେ ରହିବି ।
ବକ୍ରଋଷି ବୋଇଲେ ଯେ କୌଶିକ ବନେ
ସରଯୁ ନଦୀକୂଳେ ରହ ଯାଇ ତେଣେ ।
ବିଭାଣ୍ଡକ ଋଷିର ଯେ ସ୍ଥାନେ ଆଶ୍ରମ
ସେହିସ୍ଥାନେ ଯାଇଣ ତୁ କରଯା ବିଶ୍ରାମ ।
ମୃଗୁଣୀ ରୂପ ଧରି ସେ ସ୍ଥାନରେ ଥିବୁ
ଏଗାର ବର୍ଷରେ ନବଯୁବା ହେବୁ ।
ଶୁଦ୍ଧସ୍ନାନ ଦିନ ଯେ ତୋତେ ହେବ ଯୋଗ
ସେ ଋଷିର ଘରଣୀ ନାହିଁ ସଦଭାବ ।
ପୁଷ୍କରିଣୀରେ ଋଷି ସ୍ନାନ କରୁଥିବ
ଅପ୍‌ସରାକୁ ଦେଖିଲେ ବୀର୍ଯ୍ୟ ଉଚ୍ଛୁଳିବ ।
ସେ ବୀର୍ଯ୍ୟ ଜଳସଙ୍ଗେ ଭକ୍ଷିବୁ ସେ ଦିନ
ଗର୍ଭବାସ ହେବୁ ଋଷିର ବୀର୍ଯ୍ୟେ ଜାଣ ।
ଦଶମାସ ଗର୍ଭ ପ୍ରସବ ତୋର ହେବ
ସେ ପୁତ୍ରଗୋଟି ଋଷି ସ୍ୱରୂପ ହୋଇବ ।
ତୋହର ଚିହ୍ନମାତ୍ର ତାହାରଠାରେ ରହି
ଦୁଇଗୋଟି ଶୃଙ୍ଗ ମସ୍ତକେ ଥିବ ବହି ।
ଜନ୍ମକରି ତୁହି ଆସିବୁ ଏ ସ୍ଥାନ
ସେ ପୁତ୍ରକୁ ପାଳିବ ବିଭାଣ୍ଡକ ତପୋଧନ ।
ସେ କୁମାର କାଳେ ଅଚିନ୍ତା ତପୀ ହେବ
ଦେବଙ୍କ ଉପକାରୀ ବିଷ୍ଣୁଙ୍କୁ ଜନ୍ମାଇବ ।
ଋଷ୍ୟଶୃଙ୍ଗ ନାମ ହୋଇବ ତାହାର
ଏମନ୍ତ କହି ଇନ୍ଦ୍ର ଗଲେ ନିଜପୁର ।
ଶୁଣିଣ ମୃଗୁଣୀ ରୂପ ଧଇଲା ତକ୍ଷଣ
ଏଥି ପ୍ରବେଶ ଆସି ହୋଇଲା ସେହି ପୁଣ ।
ତୋହର ବୀର୍ଯ୍ୟରେ ଦଶମାସ ଧରି
ପୁତ୍ରଜାତ କରିଣ ଗଲା ନିଜପୁରୀ ।
ଶୁଣିଣ ବିଭାଣ୍ଡକ ମନରେ ତୋଷହେଲେ
ଦେବଙ୍କୁ ବୋଇଲେ ଏବେ ଶୁଣ ତୁମ୍ଭେ ଭଲେ ।
ମୃଗୁଣୀ ଦଶମାସ ଗର୍ଭରେ ରଖିଲା
ଛାଡ଼ିଯିବାରୁ ମାତା ସ୍ନେହ ସେ ତେଜିଲା ।
ମୁଁ ଏବେ ଦଶମାସ ପାଳିବି ଯେ ପୁଣ
ଦଶମାସେ ଯୁବା ହେବ କରହେ କଲ୍ୟାଣ ।
ହେଉ ବୋଲି ଦେବଗଣେ ବୋଇଲେ ଉତ୍ତର
ବିଭାଣ୍ଡକ ବୋଇଲେ ଶୁଣ ହେ ଶବର ।
କୁମରର ଶରୀର କୋମଳ ଅଟେ ଜାଣ
ବସନ୍ତ ପବନ ଯାକୁ ନ ଛାଡ଼ିବ କ୍ଷଣ ।
ବାର ବରଷରେ ଯେ ହୋଇବ ବଳି ପୁଣ
ବରଷକେ ସବୁ ବିଦ୍ୟା ଶିଖିବ ଏ ଜାଣ ।
ତପ ସିଦ୍ଧ କରିଣ ବ୍ରହ୍ମର୍ଷି ହୋଇବ
ପନ୍ଦର ବରଷେ ଏ ବିଷ୍ଣୁଙ୍କୁ ଜନ୍ମାଇବ ।
ଶୁଣିଣ ବୃହସ୍ପତି ବୋଇଲେ ଅସ୍ତୁ ହେଉ
ବରଷକେ ବିଦ୍ୟା ପଢ଼ୁ ନ ଜାଣନ୍ତୁ କେହୁ ।
ବାର ବରଷେ ମୁନିଙ୍କି ବ୍ରହ୍ମବର ଦେଉ
ବ୍ରହ୍ମମୁନି ହୋଇଣ କାମଧେନୁ ପାଉ ।
ଚନ୍ଦ୍ର ଚାହିଁଣ କହିଲେ ବିଭାଣ୍ଡକ
ତୋର ପ୍ରାୟେ ଶୋଭା ପାଇ ମୋହର ବାଳକ ।
ଶଶୀଧର ବୋଇଲେ ଏକଥା ହେଉ ପ୍ରାପ୍ତ
ମୋହ ପରେ ହେଉ ମୋହର ସଦୃଶ୍ୟତ ।
ରବିଙ୍କି ଚାହିଁଣ ବିଭାଣ୍ଡକ କହି
ଅଳପ ତେଜ ତୋଠାରୁ ବହୁ ଯାର ଦେହୀ ।
ରବି ବୋଲେ ସେ କଥା ତତକାଳେ ହେବ
ଏ କୁମର ତେଜରେ ଜଗତ ମୋହିବ ।
ଏମନ୍ତ ବର ଦେଇ ଗଲେ ଦେବଗଣ
ସେ କୁମରକୁ ପାଳିଲା ସୁରଭି ମୋର ଜାଣ ।
କନ୍ଧ ବୋଇଲେ ଦେବ ସେ ପୁତ୍ର ତୋର କାହିଁ
ବିଭାଣ୍ଡକ ବୋଇଲେ ସେ ମଢ଼ିଆରେ ଅଛଇଁ ।
କନ୍ଧ ବୋଇଲେ ଦେବ ଦେଖନ୍ତୁ ଆମ୍ଭେବାରେ
ଶୁଣିଣ ବିଭାଣ୍ଡକ ବୋଇଲେ ହର୍ଷଭରେ ।
ଦେଖ ମୋର କୁମରକୁ ପାତକ ହେବ କ୍ଷୟେ
ଏତେବୋଲି ଋଷ୍ୟଶୃଙ୍ଗଙ୍କୁ ଅଣାଏଁ ।
ବୋଇଲେ କୁମରରେ ଏଣେ ଆସି କିନା
ମଢ଼ିଆ ଭିତରେ ବସିହେଉଛୁ କେତେଅନା ।
ବିଭାଣ୍ଡକ ଡ଼ାକିବାରୁ ଅଇଲେ ଋଷ୍ୟଶୃଙ୍ଗ
ପିତାର ଚରରେ ନମିଲା ଯେ ବେଗ ।

ଦେଖିକରି ଯେ ଯୋଡ଼ିଲେ ବେଳିକର
ଋଷ୍ୟଶୃଙ୍ଗ ଚରଣେ କଲେକ ନମସ୍କାର ।
ମସ୍ତକେ ଦୁଇଶୃଙ୍ଗ ତେଜୋବନ୍ତ ରୂପ
ତମ୍ଭାନାଗ ପ୍ରାୟେ ଦେହ ଦିଶୁଛି ସ୍ୱରୂପ ।
ଦେଖିଣ ସକଳ କନ୍ଧ ସନ୍ତୋଷ ହୋଇଲେ
ସେଦିନ ତାଙ୍କୁ ଦେଖି ଛାଡ଼ି ନ ପାରିଲେ ।
ରଜନୀରେ ସୁରଭୀ ପ୍ରସାଦରେ ଜାଣ
ଉତ୍ତମ ଅନ୍ନ ଭୋଜନ ସର୍ବ କଲେ ପୁଣ ।
ରଜନୀରେ ଶେଷ ମୁନିଙ୍କ ଆଗେ କହି
ସକଳର ଚାର କନ୍ଧ ସେଠାବରୁ ଯାଇ ।
ପାର୍ବତୀ ବୋଇଲେ ଦେବ କଥାଏ ରହିଲା
ସେ କଥାରେ ମୋରମନ କଳ୍ପିତ ହୋଇଲା ।
ବରଷକେ ବିଦ୍ୟା ବାର ବର୍ଷେ ତପ ସିଦ୍ଧ
ସେ କଥା ହେଲାଟିକି କହ ମୋର ଆଗ ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ଦଶମାସ ପାଳିଲେ ବିଭାଣ୍ଡକ ଯତି ।
କ୍ଷୀରପାନ ସବୁଦିନ ସୁରଭୀଠାରୁ ଦେଇ
ତପତେଜ୍ୟା କଲେ ଋଷି କୁମରକୁ ପାଇ ।
ଦଶମାସ ସମ୍ପୂର୍ଣ୍ଣେ ଋଷ୍ୟଶୃଙ୍ଗ ଯୁବା
ଦେଖିଣ ମୁନିମନ ହରଷରେ ପ୍ରଭା ।
ବିଦ୍ୟା ଆରମ୍ଭକରି ପଢ଼ାଇଲେ ପାଠ
ବର୍ଷକେ ବିଦ୍ୟାବନ୍ତ ହୋଇଲା ପୁତ୍ର ଶ୍ରେଷ୍ଠ ।
ସକଳ ବିଦ୍ୟାରେ ହେଲେକ ନିପୁଣ
ଚାରିବିଦ୍ୟା ଶିଖିବାରୁ ଜ୍ଞାନ ହେଲା ପୁଣ ।
ଦୁଇ ବର୍ଷ ଏଥିରେ ଦିନ ବହିଗଲା ।
ପିତାଙ୍କୁ ଋଷ୍ୟଶୃଙ୍ଗ ଯାଇ ଜଣାଇଲା ।
ବୋଇଲା ତପ ମୁଁ କରିବି କେଉଁ ସ୍ଥାନେ
ବିଭାଣ୍ଡକ ବୋଇଲେ ଶୁଣରେ ନନ୍ଦନେ ।
ଯେବେ ତୋର ମନ ଜପରେ ପ୍ରସନ୍ନ
ଯମୁନା ତଟକୁ ଚଳ ତୁ ବହନ ।
ତାହାର ଦକ୍ଷିଣରେ ମନ୍ଦାକିନୀ ନଦୀ
ସେଠାରେ ତପକଲେ ସକଳ କାର୍ଯ୍ୟସିଦ୍ଧି ।
ଶୁଣିଣ କୁମର ପିତାର ଚରଣରେ
ପ୍ରଣାମ କରିଣ ତୋଷ ହୋଇଲା ମନରେ ।
ପିତାଙ୍କୁ କହିଣ ବେଗେ ଚଳିଗଲା
ମନ୍ଦାଗ୍ନି କୁଳରେ ପ୍ରବେଶ ହୋଇଲା ।
ଚିତ୍ରକୂଟ ପର୍ବତ ବନସ୍ତ ଭିତରେ
ନଦୀକୂଳେ ଆସନ କରିଣ ବସେ ଧୀରେ ।
ବାରବର୍ଷ ପର୍ଯ୍ୟନ୍ତ ତପ ସେଥିରେ କଲା
ପବନ ଆହାର କରି କୁମର ବଞ୍ଚିଲା ।
ତପରେ ନିର୍ଜିତ ହୋଇଲା କୁମର
ବେଦବର ଆସିଣ ଦେଲେ ତାଙ୍କୁ ବର ।
ବୋଇଲେ କୁମରରେ ବ୍ରହ୍ମମୁନି ହୁଅ
ସକଳ ପାପ ହୃଦରୁ ଗଲା ତୋର କ୍ଷୟ ।
ଏମନ୍ତ ବୋଲି ବ୍ରହ୍ମା କାମଧେନୁ ଦେଲା
ଶରୀରେ ବଳ ହେଉ ବୋଲିଣ ବୋଇଲା ।
ଶୁଣିଣ କୁମର ତେଜ୍ୟାକଲା ତପ
କାମଧେନୁ ଘେନିଣ ଚଳିଲା ତନୁଜ ।
ପିତାର ଆଶ୍ରମରେ ହେଲେ ପରବେଶ
ଦେଖିଣ ବିଭାଣ୍ଡକ ହୋଇଲେ ହରଷ ।
ପିତା ପୁତ୍ର ଦୁହେଁ ହେଲେ ଏକଠାବେ ।
ପିତା ତପକରଇ ପୁତ୍ର ଆଶ୍ରମେ ଥାଇ ଭାବେ
ତିନିଦିନେ ପିତା ପୁତ୍ର ପାଶେ ଆସି
ଦୁଇ ଦିନ ରହି ଚଳଇ ତପେ ସେଟି ।
ଏମନ୍ତେ ଚଉଦ ବର୍ଷ ବହିଗଲା
ପନ୍ଦର ବର୍ଷ ଋଷ୍ୟଶୃଙ୍ଗଙ୍କୁ ହୋଇଲା ।
ପୁରୁଷ ବ୍ୟତୀତ ସ୍ତିରୀ ଦେଖା ନାହିଁ
ବିଭାଣ୍ଡକ ଆଶ୍ରମେ କୁମର ଚଳଇ ।
ଏମନ୍ତ ସମୟରେ ଲୋମ ପାଦ ଚାର
କୌଶିକ ବନରେ ଦେଖିଲା ମୁନିବର ।
ଦେଖିଲା ଭକତି ତାହାରେ ହୋଇଲେ
ନିଜ ଆଶ୍ରମକୁ ତହୁଁ ଯେ ଚଳିଗଲେ ।
ଆପଣା ରାଜ୍ୟରେ ଯାଇ ପ୍ରବେଶ ହୋଇଲେ
ଚମ୍ପାବତୀ ରାଜା ଆଗେ ବାରତା କହିଲେ ।
ବୋଇଲେ ଋଷ୍ୟଶୃଙ୍ଗଙ୍କୁ ଦେଖିଲୁ ନୃପବରେ
କୌଶିକ ବନରେ ସରଜୁ ନଦୀତୀରେ ।
ଆଶ୍ରମ କରିଣ ବିଭାଣ୍ଡକ ଋଷି
କୌଶିକ ବନରେ ନିଶ୍ଚିନ୍ତେ ରହିଅଛି ।
ଶୁଣିଣ ଲୋମପାଦ ହରଷ ହୋଇଲା
ଗୁପ୍ତରେ ଆଣିବାକୁ ବିଚାର ପୁଣ କଲା ।
ନାରଦଙ୍କୁ ସୁମରଣା କଲେ ନୃପବର
ଆସିଣ ମିଳିଲେ ବ୍ରହ୍ମାଙ୍କ କୁମର ।

ଦେଖିକରି ଲୋମପାଦ ନମସ୍କାର କଲା
ଗଙ୍ଗାଜଳ ଘେନିଣ ଚରଣ ପଖାଳିଲା ।
ରତ୍ନ ସିଂହାସନରେ ବସାଏ ରାଜାନେଇ
ଚରଣ ପଖାଳିଣ ପୂଜା ସେ କରଇ ।
ଆରତୀ ବନ୍ଦାପନା ମୁନିଙ୍କି କରାଇଲା
କରଯୋଡ଼ି ଛାମୁରେ ଉଭା ଯେ ହୋଇଲା ।
ବୋଇଲା ଭୋ ମୁନି ସରିଲା ଆସି କାଳ
ଏଗାର ବର୍ଷ ଗଲା ବର୍ଷେକ ଅଛି ବେଳ ।
ମୁନି ବୋଇଲେ ଏଥିରୁ ଏଗାର ମାସଗଲେ
ମାସେ ଥିବ ଋଷ୍ୟଶୃଙ୍ଗଙ୍କୁ ଅଣାଇବୁ ଭଲେ ।
ଲୋମପାଦ ବୋଇଲେ କେମନ୍ତେ ଅଣାଇବି
ନ ଆସିଲେ ଋଷ୍ୟଶୃଙ୍ଗ କେମନ୍ତେ ଆଣିବି ।
ନାରଦ ବୋଇଲେ ରାଜା ଚିନ୍ତାଦୂର କର
ନିଶ୍ଚୟ ତୋ ପୁରକୁ ଆସିବେ ମୁନିବର ।
ଲୋମପାଦ ବୋଇଲେ ସେ କଥାରେ ମୋର ଚିନ୍ତା
ଋଷ୍ୟଶୃଙ୍ଗ ଆସିଲେ ମୋ ଦେହହେବ ସୁସ୍ଥ ।
ନାରଦ ବୋଇଲେ ଋଷ୍ୟଶୃଙ୍ଗ ଆସିବାର କଥା
ସ୍ତିରୀ ଭିନ୍ନ ପୁରୁଷ ଯେ ନପାରେ ଆଣିଣ ।
ଜାଣିଲେ ବିଭାଣ୍ଡକ ଛାଡ଼ିଣ ନ ଦେବ
ନାହିଁ କଲେ ବେଦବର ହେଲେ ଆଣି ନପାରିବ ।
ଗୁପତେ ଆସିଲେ ସିନା ଆସିବ ପୁତ୍ରମଣି
ପୁରୁଷ ଭେଦିଲେ ନ ଆସିବ ସେହୁ ପୁଣି ।
ଲୋମପାଦ ବୋଇଲେ ହୋଇଲା କଥା ଛନ୍ଦ
କେଉଁସ୍ତିରୀ ଆଣିବ ନୋହିବ ତହିଁ ମନ୍ଦ ।
କିଛି ଚିନ୍ତା ତୁଟିଲା ଏବେ ହେଲା ବ୍ୟଥା
ପ୍ରମାଦ ପଡ଼ିଲା ପ୍ରାୟେ ଲାଗଇ ଏକଥା ।
ନାରଦ ବୋଇଲେ ଅଛଇ ଭଲ ଯୋଗ
ଦୁର୍ଭିକ୍ଷରୁ ପାରିହେବୁ ସନ୍ତାନ ହେବ ଲାଭ ।
ଲୋମପାଦ ବୋଇଲେ ଏଥିର କଥା କହ
କେମନ୍ତେ ଆସିବେ ବିଭାଣ୍ଡକ ପୁଅ ।
ନାରଦ ବୋଇଲେ ଶୁଣ ରାଜା ଏବେ
ଏଗାର ମାସଗଲେ ଶୁଭ ହେବ ତେବେ ।
ତେତେବେଳକୁ ରାଜନ କରିବୁ ଉପାୟେ
ଦାଣ୍ଡରେ ରତ୍ନ ଚାଙ୍ଗୁଡ଼ା ବୁଲାଇବୁ ରାଏ ।
ଯେଉଁନାରୀ ବୋଲିବ ଆଣିବି ମୁହିଁ ଯାଇ
ତାହାକୁ ରତ୍ନ ଚାଙ୍ଗୁଡ଼ା ଦେବୁ ତୋଷହୋଇ ।

ପ୍ରାର୍ଥନା କରି ତାକୁ କହିବୁ କୋମଳ
ସେ ସ୍ତିରୀ ଗଲେ ଆସିବ ଋଷିଙ୍କ ଦୁଲାଳ ।
ଯେଉଁ ସ୍ତିରୀବଚନ କହି ଜାଣେ ଜାଣ
ସେହି ସ୍ତିରୀକି ଚାଳି ଦେବୁ ହେ ରାଜନ ।
ସେ ସ୍ତିରୀ ଯାହା ମାଗିବ ଯାଚି ତାହା ଦେବୁ
ହେଳା କଲେ କାର୍ଯ୍ୟ କେବେ ହେଁ ନପାଇବୁ ।
ମୋହିନୀ ଉଚ୍ଚାଟ ଛନ୍ଦ ଜାଣଇ ଯେଉଁନାରୀ
ସେହି ସୁନ୍ଦରୀ ଗଲେ ମୋହିବ ତପଚାରୀ ।
ଏତେ କହି ନାରଦ ଅନ୍ତର୍ଦ୍ଧାନ ଗଲେ
ରାଜନ ଶୁଣିଣ ହରଷ ମନ ହେଲେ ।
ରାଜ୍ୟରେ ରାଜନ ଫେରଇ ପ୍ରତିଦିନ
ଅଯୋଧ୍ୟାର ଚାର ଯେ ଭେଟଇ ଆସିପୁଣ ।
ବୋଲଇ ଅଯୋଧ୍ୟାରୁ ଆସୁଅଛି ମୁହିଁ
ଦଶରଥ ମହାରାଜା ଅଛନ୍ତି ପଠିଆଇ ।
ବୋଇଲେ ମିତ୍ରକୁ ମୋର ଘେନିଆସ ଯାଇ
ତାହାଶୁଣି ରାଜନ ହରଷ ହୁଅଇ ।
ପାତ୍ର ମନ୍ତ୍ରୀଙ୍କି ଡକାଇ ରାଜନ କହିଲା
ଅଯୋଧ୍ୟା ଯିବଇଁ ମୁଁ ସଜକର ଭଲା ।
ଶୁଣି ଚତୁରଙ୍ଗ ବଳ ସଜହେଲେ ପୁଣ
ଅନ୍ତଃପୁରେ ଯାଇଣ କହିଲେ ରାଜନ ।
ବୋଇଲେ ମଇତ୍ର ଭେଦିଛନ୍ତି ଦୂତ
କିପାଇଁ ଡକାଇଛନ୍ତି ନ ଜାଣେ ତା ତଥ୍ୟ ।
ରାଣୀହଂସ ବୋଇଲେ ଯେବେ ଡକାଇଲେ
ଆମ୍ଭର ସୁଫଳ ଯିବାର ତେବେ ଭଲେ ।
ରଜନୀରେ ରାଜନ ଭୁଞ୍ଜିଣ ତୁଷ୍ଟହେଲେ
ରାଣୀମାନଙ୍କ ସଙ୍ଗେ ଲୀଳା ରଙ୍ଗ କଲେ ।
ପ୍ରଭାତୁ ଅନୁକୂଳ କରିଣ ରାଜା ଯାଇ
ଦଶଦିନେ ପ୍ରବେଶ ହୋଇଲେକ ତହିଁ ।
ଏକୁ ସ୍ତିରୀ ବେଶ ଲୋମପାଦ ରାୟେ
ଦଶରଥ ପାଛୋଟି ଖଣ୍ଡେ ଦୂରେ ଆୟେ ।
ମାନ୍ୟଧର୍ମ ଲୋମପାଦ ଦଶରଥଙ୍କୁ କଲେ
ସେବକ ଦଳ ଆସିଣ ଚରଣ ଧୋଇଦେଲେ
ସିଂହାସନେ ଦୁଇରାଜା ବସିଲେକ ପୁଣ
କୁଶଳ ପୁଛିଲେ ତାଙ୍କୁ ଅଯୋଧ୍ୟା ରାଜନ ।
ଲୋମପାଦ ବୋଇଲେ ସକଳ ଭଲ ମୋର
ବ୍ରାହ୍ମଣଙ୍କ ଯୋଗେ ମେଣ୍ଟିଲା ଦୁର୍ଭିକ୍ଷ କାଳ ।

ଅନ୍ନଜଳ ମୋତେ ଦେଲେକ ବେଦବର
ସୁଦୟା କଲେ ଆସି ନାରଦ ମୁନିବର ।
ଚଣ୍ଡାଳ ଦୁହିତାକୁ ବଶିଷ୍ଠ ବିଭା ହେଲେ
ତେଣୁ ସେ ମୋ ରାଜ୍ୟ ସମ୍ଭାଳି ହୋଇଲେ ।
ଏବେ ଦୁହିତା ପାଇଁ ଖୋଜିବା ଯେ ବର
ଲୋମପାଦ ବୋଇଲେ ଆଉ ବରଷେ ସମ୍ଭାଳ ।
ଜନ୍ମ ବୃହସ୍ପତି ହୋଇଛି କୁମାରୀକି
ଏବର୍ଷ ବର ଘଟଣା ତାହାକୁ ନୋହିବଟି ।
ଶୁଣିଣ ସେ କଥାକୁ ସମ୍ମତ ରାଜାକଲା
ଋଷ୍ୟଶୃଙ୍ଗ ଆସିବାର ବାରତା ପୁଛିଲା ।
ଲୋମପାଦ ବୋଇଲେ ଶୁଣହେ ମଇତ୍ର
ବାରବର୍ଷ ପୂରିଲେ ଆସିବେ ଋଷିପୁତ୍ର ।
ଶୁଣିଣ ଦଶରଥ ପରମ ତୋଷ ହେଲେ
ବଶିଷ୍ଠଙ୍କୁ ଦେଖିବାକୁ ଦୁଇରାଜା ଗଲେ ।
ଋଷିଙ୍କ ମଢ଼ିଆରେ ହୋଇଲେ ପ୍ରବେଶ
ଦେଖିଣ ବଶିଷ୍ଠ ମନେହେଲେ ତୋଷ ।
ମଙ୍ଗଳ ଆଳତି ଦୁଇ ରାଜାଙ୍କୁ କଲେ
ଆସନ ଦେଇ ରାଜାଙ୍କୁ ପାଛୋଟି ଆଣିଲେ ।
ଦଶରଥ ବୋଇଲେ ପାକ କରହେ ତିଆର
ଦୁଇରାଜା ଭୁଞ୍ଜିବେ ଚତୁରଙ୍ଗ ବଳ ।
ଶୁଣିକରି ବଶିଷ୍ଠ ବେଗେ ଚଳିଗଲେ
ଅରୁନ୍ଧତୀ ଆଗରେ ସଂପାଦି କହିଲେ ।
ବୋଇଲେ ଷଡ଼ ରସରେ ପାକ କରପୁଣ
ଦୁଇରାଜା ଭୁଞ୍ଜିବେ ଚତୁରଙ୍ଗ ବଳସଙ୍ଗେଣ ।
ଶୁଣିଣ ଅରୁନ୍ଧତୀ ବେଗେ ଚଳିଗଲେ
ପାକଶାଳେ ବସିଣ ରନ୍ଧନ ବିଧି କଲେ ।
ବଶିଷ୍ଠ ଯାଇଣ ସୁରଭିକି କହି
ସକଳ ସୈନ୍ୟ ଭୁଞ୍ଜିବେ ଚରଚା କର ତୁହି ।
ଶୁଣିଣ ସୁରଭି ପ୍ରସନ୍ନ ମନ ହେଲା
ସକଳ ପଦାର୍ଥ ଦଣ୍ଡକେ ସଞ୍ଚିଲା ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ବଶିଷ୍ଠ ଶତେକ ଋଷିଙ୍କି ସୁମରନ୍ତି ।
ନାରଦ, ଅଙ୍ଗିରା, ଦୁର୍ବାସା, ଅଗସ୍ତି
କପିଳ, ସନାତନ, ପରାଶର ଆସି ।
ଅଷ୍ଟବକ୍ର ଆନଶ୍ରେଷ୍ଠ ମୂଳରେ ଶତେଋଷି
ବଶିଷ୍ଠଙ୍କ ଆଶ୍ରମେ ମିଳିଲେ ସର୍ବେ ଆସି ।

ଦେଖିଣ ବଶିଷ୍ଠ ମାନ୍ୟଧର୍ମ କଲେ
ବିଜୟାମାଳ ଦେଇ ଋଷିଙ୍କି ତୋଷିଲେ ।
କପିଳ ପଚାରିଲେ ବଶିଷ୍ଠଙ୍କୁ ପୁଣ
କି କାର୍ଯ୍ୟେ ଆମ୍ଭଙ୍କୁ କଲ ସୁମରଣ ।
ବଶିଷ୍ଠ ବୋଇଲେ ଅଇଲେ ଦୁଇରାଜା
ସଂଗରେ ପାତ୍ର ମନ୍ତ୍ରୀ ଅଛନ୍ତି ପରଜା ।
ସେ ମୋତେ ମାଗିଲେ ଭୁରି ଭୋଜନ ଦିଅ
ତେଣୁ ସ୍ମରଣ କଲି ତୁମ୍ଭଙ୍କୁ କରି ପ୍ରିୟ ।
ସେମାନଙ୍କୁ ମୁହିଁ ଦେବି ଭୁରି ଯେ ଭୋଜନ
ସମସ୍ତଙ୍କୁ କୁଶଳ କରାଅ ବହନ
ଶୁଣିଣ ସମସ୍ତ ଋଷି ସନ୍ତୋଷ ହୋଇଲେ
ପାତ୍ର ମନ୍ତ୍ରୀ ସାମନ୍ତ ରାଜାଙ୍କୁ ଘେନିଗଲେ ।
ତାହାଙ୍କ ସଙ୍ଗେ ବ୍ରାହ୍ମଣ କଲେକ ବରଣ
ଆସନ ଦେଇଣ ତାଙ୍କୁ ବସାଇ ସଙ୍ଗେଣ ।
ଅମୃତ ସମାନରେ ଭୁରି ଭୋଜନ ଦେଲେ
ଚତୁରଙ୍ଗ ବଳଙ୍କୁ ନେଇଣ ସମର୍ପିଲେ ।
ସମସ୍ତେ ମିଷ୍ଟାନ୍ନ ବ୍ୟଞ୍ଜନ ଭୁଞ୍ଜିପୁଣ
ସନ୍ତୋଷ ହୋଇଲେ ସକଳ ସୈନ୍ୟ ଜାଣ ।
ଯିବା ଆସିବାର ପଥୁକୀ ଜନଥିଲେ
ଦୁଃଖୀ ଦରିଦ୍ର ମାଗନ୍ତା ଲୋକ କେତେଥିଲେ ।
ସମସ୍ତେ ଭୁଞ୍ଜିଣ ସଂତୋଷ ମନ ହେଲେ
ସାଧୁ ବ୍ରହ୍ମଋଷି ବୋଲିଣ ବୋଇଲେ ।
ସକଳ ଋଷି ମିଳିଣ କଲେକ ଭୋଜନ
ଅରୁନ୍ଧତୀ ପାକଅନ୍ନେ ସର୍ବେ ତୋଷମନ ।
ଭୋଜନ ସାରି ସେଦିନ ସେଠାରେ ରହିଲେ
ନୃତ୍ୟରଙ୍ଗ କରିଣ ଉତ୍ସବ କରାଇଲେ ।
ରଜନୀ ଶେଷରେ ସମସ୍ତେ ଚଳିଗଲେ
ରାଜାର ସିଂହଦ୍ୱାରେ ଯାଇଣ ମିଳିଲେ ।
ଏଥୁ ଅନନ୍ତରେ ଶୁଣ ଶାକମ୍ଭରୀ
ଲୋମପାଦ ଦଶରଥ ରାଜାଙ୍କୁ ପଚାରି ।
ବଶିଷ୍ଠପୁରେ କିମ୍ପାଇଁ ଭୋଜନ ଆମ୍ଭର
ଦଶରଥ ବୋଇଲେ ଶୁଣ ନୃପବର ।
ବଶିଷ୍ଠ ଅରୁନ୍ଧତୀ କନ୍ୟାକୁ ବିଭାହେଲେ
ସକଳ ଋଷି ଦେବତା ତା ହସ୍ତେ ଭୁଞ୍ଜିଲେ ।
ବୋଇଲେ ସର୍ବଦେବ ବିଧାତାଠାକୁ ପୁଣ
ଯେ ଭୁଞ୍ଜେ ଅରୁନ୍ଧତୀ ହସ୍ତେ ସେ ଲକ୍ଷେକାରଣ ।

ଅଭ୍ୟନ୍ତର ବିଚାରିଲେ ସପତ ପୁରୁଷ
ଚଉରାଶି ନର୍କରେ ପଡ଼ିବେ ଅବଶ୍ୟ ।
ସେ କଥାକୁ ଦୁର୍ବାସା ଗଲେ ମୋତେ କହି
ଶୁଣି ତୋଷହେଲେ ଚମ୍ପାବତୀ ନରସାଇଁ ।
ଲୋମପାଦ ବୋଇଲେକ ଶୁଣ ହେ ମଇତ୍ର
କେଉଁ ଗୁଣେ କେଉଁରାଜାଙ୍କୁ ବିପ୍ରେଦେଲେ ଶାପ ।
ଶୁଣିଥିଲେ ଦେଖିଥିଲେ କହ ଯେ ସଂକ୍ଷେପ ।
ଶୁଣିକରି ଦଶରଥ ବୋଇଲେ ଶୁଣ ନୃପ ।
ସତ୍ୟଯୁଗେ ବେଣୁରାଜା ଥିଲା ମହାବଳୀ
ତିନିପୁର ସାଧିଣ ଦୁର୍ଗାଙ୍କୁ ସେ ଯେ ମାରି ।
ତିନିପୁରେ ପ୍ରଭାଶୀଳ ସେ ରାଜା ହୋଇଥିଲା
ଦେବତା ବ୍ରାହ୍ମଣ ରାଜା କାହାକୁ ନମାନିଲା ।
କାଳେଣ ଯାଗ ସେହୁ କଲାକ ନୃପବର
ଦେବତା ବିପ୍ରଋଷି ଲୋଡ଼ିଲା ଯଜ୍ଞର ।
ଲକ୍ଷେକ ନୃପବର ବରଣ କରି ଆଣି
ଚାରିମେଘଙ୍କୁ ବରଣ କଲାକ ସେ ପୁଣି ।
ଘୃତ ସମୁଦ୍ରକୁ ବରଣ ସେ କଲେ
ସେ ସାଗର ତାହାଙ୍କୁ ବହୁତ ଘୃତ ଦେଲେ ।
ମୂଷଳଧାରା ପ୍ରମାଣେ ଢାଳଇ ଘୃତଧାରା
ସେ ଯାଗର ଆଚାର୍ଯ୍ୟ ହୋଇଲେ ଅଙ୍ଗିରା ।
ବାରବର୍ଷ ପର୍ଯ୍ୟନ୍ତେ ରାଜା ଯାଗ କଲା
ଶତେ ଚୌରାଳିଶ ଯାଗ ସମ୍ପୂର୍ଣ୍ଣ ହୋଇଲା ।
ପୂର୍ଣ୍ଣ ଆହୁତି କରିଣ ରାଜନ କଳ୍ପଦ୍ରୁମ
ଯେ ଯାହା ମାଗଇ ତାକୁ ଯାଚିଦିଏ ପୁଣ ।
ବାରବର୍ଷକୁ ବାରଦିନ ହେଲା କଳ୍ପଦ୍ରୁମ
ଲକ୍ଷେକ ଭଣ୍ଡାରୁ ଦାନ ଦେଲା ପୁଣ ।
ଶତେଲକ୍ଷ ଭରଣ ଧାନ ଦେଲା ସେ ତ୍ୱରିତ
କୋଡ଼ିଏ ନାଗଦାନ ଦେଲା ନରନାଥ ।
ସାତକୋଟି ଅଶ୍ୱଦାନ ଦେଲା ଯେ ଉଷତ
ଦୁଇଲକ୍ଷ ସାରେଣି ପାଞ୍ଚଲକ୍ଷ ରଥ ।
ଲକ୍ଷେକ ସ୍ତିରୀଦାନ ଦେଲାକ ନୃପତି
ବ୍ରାହ୍ମଣେ ଦାନଦେଲା ଭୂମି ଲକ୍ଷବାଟି ।
ଶତେକ ଶାସନ ତାର ରାଜ୍ୟରେ ବସାଇଲା
ଦାନରେ ରାଜନ ଗର୍ବିତ ହୋଇଲା ।
ଦେବତାଙ୍କୁ ଅନେକ ବିନୟୀ କହିଲା
ସ୍ୱର୍ଗରୁ ଆଣିବା ଦ୍ରବ୍ୟ ତାହାଙ୍କୁ ଫେରାଇଲା
ରାଜାମାନଙ୍କର ଯେତେକ ଦ୍ରବ୍ୟ ଆଣି
ରାଜାମାନଙ୍କୁ ସନ୍ତୋଷ ଦେଲା ନୃପମଣି ।
ହାଟୁଆ ବାଟୁଆ ଯେ ଦେଖଣା ହାରିଲୋକ
ସମସ୍ତଙ୍କୁ ଧନଦେଇତୋଷେ ନୃପଶିଖ ।
ସରନ୍ତି ଦାନବେଳେ କଳ୍ପଦ୍ରୁମ ଜାଣ
ଏ ସମୟେ ମିଳିଲା ଏକଇ ବ୍ରାହ୍ମଣ ।
ବୋଇଲା ରାଜନ ମୋତେ ଦାନଦିଅ ଏବେ
ବେଣୁରାଜା ବୋଇଲାକି ସମାଗୁଛମାଗବେଗେ ।
ବୋଇଲେ ବ୍ରାହ୍ମଣ ତୁଯେହୋଇଲୁ କଳ୍ପଦ୍ରୁମ
ତୋହର ପାଟରାଣୀକି ମୋତେ ଦେବୁ ଦାନ
ଶୁଣିକରି ରାଜନ ମନରେ କୋପ କଲା
ବନ୍ଦୀଆରକୁ ଡକାଇ ବହୁତ ମାଡ଼ ଦେଲା ।
କ୍ରୋଧରେ ବିପ୍ରବର ଶାପ ଦେଲା ତାକୁ
କଳ୍ପଦ୍ରୁମ ହେବାରୁ ମାଗିଲି ତୁମ୍ଭଙ୍କୁ ।
ସେଥି ନିମନ୍ତେ ମୋତେ ବହୁତ ଶାସ୍ତି ଦେଲୁ
ସକଳ ଧର୍ମ ତୁହି ଏଠାରେ ନାଶ କଲୁ ।
ଏବେ ମୋର ଶାପ ଘେନ ନୃପବର
ହୃଦୟ ଫାଟିଣ ପ୍ରାଣ ଯାଉଟି ତୋହର ।
ଏମନ୍ତ ଶାପ ଯହୁଁ ଦେଲେ ବିପ୍ରବର
ଶରୀର ଦୁଇଫାଳ ହେଲା ରାଜାଙ୍କର ।
ଜୀବ ପରମ ଦୁହେଁ ଗଲେ ସ୍ୱର୍ଗପୁର
ଅମର ପୁରେ ଯାଇ ରହିଲେ ନୃପବର ।
ଜାଣିକରି ତାର ରାଣୀ ବାହାର ହୋଇଲା
ସ୍ୱାମୀଙ୍କି ଦେଖିଣ ବହୁତ ଶୋକ କଲା ।
ଦାସୀଙ୍କ ହସ୍ତରେ ନେଇଗଲା ଧାତି
ତଇଳ କୁଣ୍ଡରେ ପକାଇ କଲା ସ୍ଥିତି ।
ବସିଣ ଚିନ୍ତାଭରେ ଭାଳଇ ରାଣୀ ପୁଣ
ଶୁଣିଲେ ବିପ୍ରବର ରାଜାର ମରଣ ।
ସମସ୍ତ ବିପ୍ରମାନେ ସେଠାରେ ହେଲେ ରୁଣ୍ଡ
କ୍ରୋଧରେ ବ୍ରାହ୍ମଣ ହୋଇଲେ ପରଚଣ୍ଡ ।
ବୋଇଲେ ସକଳ ସେହୁ ନାଶ କଲା
ଆମ୍ଭର ଦାନ ବାଡ଼ି ସବୁ କ୍ଷୟେ ଗଲା ।
ଏମନ୍ତ ପଚାରି ବିପ୍ରେ ତୈଳଭାଣ୍ଡ ମନ୍ଥି
କୁଟିଳ ଶରୀର ତାର ମନ୍ଥନେ ରୂପବ୍ୟାପି ।
କାଳ ପୁରୁଷ ଗୋଟିଏ ହେଲେ ଉତପନ୍ନ
ବିପ୍ରବର ମାନଙ୍କୁ ହେଲେ କ୍ରୋଧମନ ।
ଦେଖି ବିପ୍ରବର ତାକୁ ଶାପ ଦେଲେ
ଭସ୍ମ ହୋଇଯାଅ ବୋଲି ସମସ୍ତେ କହିଲେ ।
ତେଣୁ ସେ ଭସ୍ମ ହେଲା ବିକାଳ ପୁରୁଷ
ଆଉଥରେ ମନ୍ଥନ କଲେ ବିପ୍ରବଂଶ ।

ଆରତେ ନାରାୟଣଙ୍କୁ ସୁମରଣା କଲେ
ଅନନ୍ତ ଶଯ୍ୟାରେ ବାସୁଦେବ ତା ଜାଣିଲେ ।
ବ୍ରାହ୍ମଣେ ବୋଇଲେ ଦେବ ଆମ୍ଭେ ହେଲୁ ନାଶ
ବାରେକ ଆସି ଉଧର କମଳା ବିଳାସ ।
ଜାଣିକରି ନାରାୟଣ ସେଠାରେ ମିଳିଲେ
ତୈଳକୁଣ୍ଡକୁ ବ୍ରାହ୍ମଣେ ପୁଣି ମନ୍ଥନ କଲେ ।
କମଳାଙ୍କୁ ଘେନିଣ ବିଜୟ ବାସୁଦେବ
ତଇଳକୁଣ୍ଡ ଭିତରେ ଦେଖିଲେ ଯେ ସର୍ବ ।
ଶଙ୍ଖ ଚକ୍ର ଗଦା ପଦ୍ମ ଅଛି କରେ
ବିଜୟ ବାସୁଦେବ କମଳାଦେବୀ କୋଳେ ।
ଦେଖିକରି ବିପ୍ରମାନେ ସମସ୍ତେ ସ୍ତୁତିକଲେ
ଅଭୟ ବରଦିଅ ବୋଲିଣ ବୋଇଲେ ।
ବେଣୁରାଜା ଶରୀର ଅଗ୍ନିରେ ଜାଳିଦେଲେ
ରାଜାସଙ୍ଗେ ପାଟରାଣୀ ଅଗ୍ନିରେ ଝାସିଲେ ।
ସେ ନାରାୟଣ ତକ୍ଷଣେ ହେଲେ ଯୁବାରୂପ
ତାହାର ନାମ ବିପ୍ରେ ଦେଲେ ବେଦମତ ।
ପୃଥୁରାଜା ବୋଲିଣ ତା ନାମ ବିଖ୍ୟାତ
ପାଳିଲାକ ମହୀ ପିତାର ସଂଜାତ ।
ଏମନ୍ତେ ଶତେ ବର୍ଷ ଏଥିରେ ବିତିଗଲା
ବେଣୁରାଜାଙ୍କ ଯଜ୍ଞରେ ଅଗ୍ନିଙ୍କର ବ୍ୟାଧିହେଲା ।
ଅନେକ ଘୃତ ଯହୁଁ ଖାଇଲେ ବୈଶ୍ୱାନର
ତହୁଁ ଲୁଦୁବୁଦୁ ବ୍ୟାଧି ଘୋଟିଲା ଶରୀର ।
ବ୍ୟାଧିହେବାରୁ ବୈଶ୍ୱାନର ମନରେ ବିଚାରିଲେ
ସକଳ ଦେବତାଙ୍କୁ ଯାଇଣ କହିଲେ ।
ଦେବତାଏ ବୋଇଲେ ରାଜାଙ୍କୁ ଯାଇ କହ
ଶୁଣିଣ ବୈଶ୍ୱାନର ଇନ୍ଦ୍ରଙ୍କୁ କଲେ ପ୍ରିୟ ।
ଇନ୍ଦ୍ରଙ୍କୁ ବୋଇଲେ ବ୍ୟାଧିରେ ମୋଦେହ ପୀଡ଼ା
ଦାନଦିଅ ଖାଣ୍ଡବ ବନ ଗୋଟା ପରା ।
ଇନ୍ଦ୍ର ବୋଇଲେ ତୁରେ ଅଟୁ ବଡ଼ ମନ୍ଦ
ଲୋଭରେ ଘୃତ ସମୁଦ୍ର ଭକ୍ଷିଲୁ କରିଛନ୍ଦ
ଘୃତଖାଇ ପାକ କରି ନପାରୁ ତୁ ଜାଣ
ଖାଣ୍ଡବ ବନ ତୁ ମୋର କରିବୁ ଦହନ ।
ତିନିପୁର ଔଷଧି ସେଥିରେ ଅଛି ପୂରି
ନିଷ୍ଠୁର ତୋର ହୃଦୟ ସେ ବନଖାଉ ଲୋଡ଼ି ।
ଅନେକ ଝିଙ୍ଗାସ ଅଗ୍ନିକି ଗାଳି ଦେଲା
ଶୁଣିକରି ଅଗ୍ନିଦେବ କ୍ରୋଧମନରେ କଲା ।
ନିଜସ୍ଥାନେ ରହିଣ କରଇ ଶୋକ ପୁଣ
ତିନିପୁର ତେଜ ଯେ ମଳିନ ହେଲା ଜାଣ ।
କଞ୍ଚା ନ ସିଝିଲା ଶୁଖିଲା ନ ଜଳିଲା
ତିନିପୁର ଲୋକଙ୍କର ମନରେ ଭୟ ହେଲା ।
ଦେଖିଣ ବେଦବର ନିର୍ବିକାର ହେଲେ
ସନାତନ ଋଷିଙ୍କି ଡାକିଣ କହିଲେ ।
ବୋଇଲେ କୁମରରେ ମୋର ବୋଲକର
ତୁହି ଅଗ୍ନି ଦେବତା ପୁରକୁ ବେଗେ ଚଳ ।
ବୋଲିବୁ ପୃଥୁରାଜା ସଂସାରରେ ସାର
ତୁ ଯାଇ ତାହାଙ୍କୁ ପ୍ରାର୍ଥନା ବେଗେକର ।
ଶୁଣିକରି ସନାତନ ବେଗେ ଚଳିଗଲେ
ବୈଶ୍ୱାନରଙ୍କ ପାଶରେ ପ୍ରବେଶ ହୋଇଲେ ।
ବୋଇଲେ ଦେବତା ହୋଇ କିମ୍ପାଇଁ ଚିନ୍ତାକରୁ
ଭାଇ ଭଗାରୀ ବୋଲରେ ପଡ଼ିକରି ମରୁ ।
ଅଗ୍ନି ବୋଲେମୋହର ଦେହରେ ବ୍ୟାଧି ହେଲା
ଇନ୍ଦ୍ରକୁ କହିବାରୁ ସେ ମୋତେ ଗାଳିଦେଲା ।
ବୋଇଲା ଖାଣ୍ଡବ ବନ ନଦେବି ତୋହର ।
ମଲେ ତୁ ଭଲ ହେବ ଜୀଇଁଲେ ହେବ ସଲ
ଖାଣ୍ଡବ ବନ ଥିଲେ ସମସ୍ତଙ୍କୁ ଭଲ
ତୁହି ବଞ୍ଚିଲେ କିରେ ସଂସାର ମଙ୍ଗଳ ।
ସନାତନ ବୋଇଲେ ଭର୍ତ୍ସନାଯେବେ କଲା
ତୁ କିମ୍ପା ଓପ୍ରଧରେ କରୁଛୁ ଏବେପରା ।
ଅଗ୍ନି ବୋଇଲା ମୋର ସାହା କେହିନାହିଁ
ବଳରେ ଇନ୍ଦ୍ରକୁ ଯେ ଜିଣି ନ ପାରଇ ।
ବଳବନ୍ତ ପଣକରି ଭକ୍ଷିବି ଯେବେ ବନ
ଜଳ ବରଷି ମୋତେ କରିବ ନିଧନ ।
ସନାତନ ବୋଇଲା ମୋରଠାରୁ ଶୁଣ
ପୃଥୁ ରାଜାକୁ ଯାଇ କହତୁ ବହନ ।
ସେହି ରାଜାକୁ ବଳରେ ନପାରେ ସୁରରାଜା
ଖାଣ୍ଡବ ବନ ତୋତେ ଦେବ ସେହୁ ରାଜା ।
ଏତେ କହି ସନାତନ ଅନ୍ତର୍ଦ୍ଧାନ ହେଲେ
ଜାଣିଣ ଅଗ୍ନିଦେବତା ସେଠାରୁ ଚଳିଗଲେ ।
ବୈଧୃତି ପୁରେ ଅଗ୍ନି ହେଲେକ ପ୍ରବେଶ
ଦେଖିଲେ ପୃଥୁରାଜା ବସିଛି ହରଷ ।
ଚାରିଗୋଟି ଭୁଜ ଯେ ଏକଗୋଟି ଶିର
ବେନି ଗୋଟି ଚରଣ ଶୁଣ ହେ ନୃପବର ।

ନୀଳ ଶ୍ୟାମଳ ବର୍ଣ୍ଣତନୁ ତାର ଦିଶି
ଚାରି ଭୁଜରେ ଯେ ଆୟୁଧ ଧରିଅଛି ।
ବାହାର ସିଂହାସନେ ବସିଛି ବୀରବର
ଆଗରେ ସାରଙ୍ଗ ଧନୁକୋଦଣ୍ଡ ଶୋଭାକର ।
ଅଗ୍ନି ଦେବତା ଯେ ଦୂରରୁ ଦେଲେ ଚାହିଁ
ବିଚାରିଲା ଏତ ଅଟଇ ଭାବଗ୍ରାହୀ ।
ନିଜରୂପ ଛାଡ଼ିଣ ବ୍ରାହ୍ମଣ ରୂପ ହେଲା
ଛତା, ଧୋତି, ବେଦପୋଥି କାଖରେ କେପରା ।
ଅଙ୍ଗୁଷ୍ଠିରେ କୁଶ ବଟୁ ତମ୍ବା ପାତ୍ରୀ ହସ୍ତେ
କୁଶତକ ଅଛି ଯେ ପାତ୍ରୀର ସଙ୍ଗତେ ।
ନବଗୁଣ ପଇତା କନ୍ଧରେ ବିରାଜି
ରୁଦ୍ରାକ୍ଷ ମାଳ ଗୋଟା ହୃଦରେ ତାର ସାଜି ।
ଚତୁର୍ବେଦ ମୁଖରେ କରୁଛି ଗାୟନ
ରାଜାର ସିଂହଦ୍ୱାରରେ ପ୍ରବେଶ ବ୍ରାହ୍ମଣ ।
କୁଶ ମଶୁଣିରେ ଆସନ ବିପ୍ରକଲା
ଚରଣ ଧୋଇ ବିପ୍ର ଆସନେ ବସିଲା ।
ଶ୍ୟାମବେଦ ଗାୟନ କଲେକ ବିପ୍ରବର
ବେଦ ପଢ଼ିବାରେ ଚମକେ ନବର ।
ରାଜାଙ୍କ ସିଂହାସନ ପାତ୍ରଙ୍କ ଆସନ
ସାମନ୍ତ ଋଷିମାନଙ୍କ ବସିବାର ସ୍ଥାନ ।
ଭୂମି କମ୍ପିଲା ପ୍ରାୟେ କମ୍ପୁଛି ସର୍ବସ୍ଥାନ
ସ୍ତମ୍ଭୀଭୂତ ହୋଇଲେ ସକଳ ଜନେପୁଣ ।
ପୃଥୁରାଜା ବୋଇଲେ ହୋ ଆଷ୍ଟମ୍ଭିତ ଆଜ
ଭୂମି କିମ୍ପା କମ୍ପିଲା ହେବକି ପ୍ରମାଦ ।
ଏମନ୍ତ ସମୟରେ ସିଂହଦ୍ୱାରପାଳ
ପୃଥୁରାଜା ଆଗରେ ଓଳଗେ ସତ୍ୱର ।
କରଯୋଡ଼ି ଆଗରେ କରଇ ଜଣାଣ
ବିପ୍ରବର ଗୋଟିଏ ଅଇଲା କାହୁଁ ପୁଣ ।
ଚାରିବେଦ ଦ୍ୱାରେ ବସିଣ ପଢୁଅଛି
ତମ୍ଭାର ପ୍ରାୟେ ତାର ଦେହ ଦିଶୁଅଛି ।
ପଚାରିଲେ କିଛି ଯେ ନ କହଇ ପୁଣ
ବେନି ନୟନରୁ ବାରି ବହୁଅଛି ପୁଣ ।
କ୍ରୋଧରେ ଜର ଜର ତାହାର ଦେହଗୋଟି
ସତେକି ହୃଦୟ ତାର ଯିବ ଏବେଫାଟି ।
ଶୁଣିଣ ପୃଥୁରାଜା ମନରେ ବିଚାରିଲେ
ଅଗ୍ନି ଦେବତାମୋଠାକୁ ରଥରେ ଅଇଲେ ।

ଫେଡ଼ି ନ କହିଲେ ସେ କାହାର ଆଗର
ସାକ୍ଷାତ ନାରାୟଣ ଜନ୍ମ ଯେ ନାରାୟଣ ।
ଶୁଣିଣ ବେଗହୋଇ ସିଂହାସନୁ ଉଠି
ସିଂହଦ୍ୱାରେ ପ୍ରବେଶ ହୋଇଲେ ତଡ଼ତି ।
ଦେଖିଲେ ବେଦବର ଯେ ପଢ଼ଇ ବେଦପୁଣ
କିସ ଅର୍ଥେ ଆସିଛ ହେ ବେଦାନ୍ତି ବ୍ରାହ୍ମଣ ।
ବେଦବର ବୋଇଲେ ଶୁଣ ହେ ନୃପତି
ଦାନ ମାଗି ତୋରପୁରେ ମୁହିଁ ଆସିଅଛି ।
ମାୟା ନକର ସତ୍ୟରେ ଦେବୁ ଦାନ
ଦେବତା ମଞ୍ଚେ ଜନ୍ମିଲେ ମରେପୁଣ ।
ଚିର ହୋଇ କେହି ଯେ ନରହେ ମର୍ତ୍ତ୍ୟପୁର
କେବଳ ଧର୍ମଭାଗ ହୁଅଇ ବିସ୍ତାର ।
ସତ୍ୟକଲେ ମାଗିବି ନୋହିଲେ ଯିବିଫେରି
କାଳ ଯୁଗକୁ କଥା ରହିବ ତୁମ୍ଭରି ।
ଶୁଣିଣ ପୃଥୁରାଜା ବୋଇଲେ ତାକୁ ପୁଣ
ନିଶ୍ଚୟ ଦେବୁ ଆମ୍ଭେ କଲୁ ଯେ, ସତ୍ୟଜାଣ ।
ମନ୍ତ୍ରୀ ବୋଇଲେ ଦେବ ନୁହଇ ଉଚିତ
ମାୟାରେ କେଉଁ ଦେବତା ବ୍ରାହ୍ମଣ ସ୍ୱରୂପ ।
ବଳିରାଜା ମାୟାରେ ପଡ଼ି ମେଦିନୀ ତେଜିଲା
ସଦାଶିବ ମାୟାରେ ଅସୁରେ ବରଦେଲା ।
ବେଦବର ମାୟାରେ ପଡ଼ିହେଲେ ଧନ୍ଦି
ଦେବଙ୍କର ମାୟାରେ ଅସୁରେ କରେ ବନ୍ଦୀ ।
ପୃଥୁରାଜା ବୋଇଲେ କର ହେ ବିଚାର
ମାୟାରେ କେଉଁ ଲୋକ ହୋଇଲେଣି ସାର ।
ବଳୀକି ମାୟା କଲେ ବାମନ ନାରାୟଣ
ସମ୍ପଦ ହରିଲେ ବିଚାର କରି ପୁଣ ।
ତାରଦ୍ୱାରେ ଦ୍ୱାରପାଳ ହୋଇଣ ରହିଛନ୍ତି
ଅସୁର ତପକରି ଯେ, ମାଇଲେ ତ୍ରିଜଟୀ ।
ମାୟାରେ ସକଳ ଯେ, ଅସୁରେ ନାଶଗଲେ
ପାର୍ବତୀଙ୍କ ଲୀଳା ଛାଡ଼ି ଈଶ୍ୱର ପଳାଇଲେ ।
ବେଦବର ସଙ୍ଗରେ ଅସୁରେ କଲେ ପ୍ରୀତି
ମାୟାକରି ହରିଲେ କି ବ୍ରହ୍ମାର ବିଭୂତି ।
ଦେବତାଏ ମତ୍ତଗର୍ବ ହୁଅନ୍ତି ଯେ ପୁଣ
ଅସୁରେ ଗଞ୍ଜନ୍ତି ତାଙ୍କୁ ଲାଗିଣ ବାଦୀ ଜାଣ ।
ସ୍ୱର୍ଗରୁ ବାହାରକି ଦେବତା ହୋଇଛନ୍ତି
ଗର୍ବ ସରିଲେ ତାହାର ଯେ ଯାହାର ସ୍ଥାନେ ରହନ୍ତି ।

ଅସୁରମାନେ ନାହାନ୍ତି ଚିରଞ୍ଜୀବୀ ହୋଇ
ମାୟାରେ ସେମାନେ ଯେ ନାଶନ୍ତି ପୁଣିହିଁ ।
ବିରଞ୍ଚି ନାରାୟଣ ଯେ ଅଟନ୍ତି ଧର୍ମସୁତ
ଧର୍ମରେ ପୃଥିବୀ ଯେ ହୁଅଇ ଆତଯାତ ।
ଧର୍ମରେ ଆକାଶରେ ଉଦୟ ହୁଅଇତ
ଅମୃତକୁ ସୁଖପାଏ ବିଷ୍ଣାକୁ ନକରଇ ହିତ ।
ସବୁଠାରେ ତେଜ ଯେ ଲାଗଇ ତାହାର
କେଉଁ ଅଂଗ ପବିତ୍ର କେଉଁ ଅଂଗ ସାର ।
ଅଗ୍ନି ଯେ ଉତ୍ତମ ଭୋଗକରେ ଜାଣ
ଅମେଧ ପଦାର୍ଥକୁ ଭକ୍ଷଇ କେହ୍ନେ ପୁଣ ।
ସର୍ବ କର୍ମ ମିଥ୍ୟା ଅଟେ ଧର୍ମ ଅଟେ ସତ
ଧର୍ମରେ ବାସୁକୀ ଯେ ଧରେ ରସାଂଗତ ।
ମନ୍ତ୍ରୀ ବୋଇଲେ ଦେବ ଏକଥା ମୋତେକହ
ସପ୍ତ ସାଗର କିମ୍ପା ଅଧର୍ମ ଅଟେ ଦେହ ।
ପୃଥୁରାଜା ବୋଇଲେ ଶୁଣରେ ଚେତାବୀର
ସହସ୍ରେ ବର୍ଷ ଯେ ସାଗରେ ତପ କର ।
ତପରେ ତ୍ରିପୁତ ନୋହେ ତାହାର ଶରୀର
ତାର ହୃଦେ ମିଳିଲେ ମାରଇ ନିକର ।
ବାସୁଦେବ ନାମ ଧରି କରିବ ଯେ ତପ
ଦିନେ ତପକଲେ ବର୍ଷକର ଯାଏ ପାପ ।
ଶତେବର୍ଷ ବେଦରେ ତପରେ ନିର୍ଣ୍ଣିତା
ଶରୀର ତେଜିଣ ସେ ହୁଅଇ ଦେବତା ।
ରାଜାହୋଇ ଯେବେ ପ୍ରଜା ଦଣ୍ଡ କରଇ
ପକ୍ଷପାତ ହୋଇ ଯେ ସତରେ କହଇ ।
ତାହାକୁ ଧର୍ମ ନ ସହିବ ବୋଲି ଜାଣ
ଚଣ୍ଡାଳ ଯୋନିରେ ଜନ୍ମ ସେହୁ ହୁଏ ପୁଣ ।
ବିପ୍ର ହୋଇ ଯେବେ ନ ପଢ଼ନ୍ତି ବେଦ
କିଛି ନ ଜାଣି ଦାନନେଲେ ନପଢ଼େ ପ୍ରମାଦ ।
ଦେବତା ହୋଇ ଯେବେ ଜୀବରେ ନିର୍ଦ୍ଦୟା
ସେ ଦେବତା ଯେବେ ଜନ୍ତୁପତି ମାୟା ।
ବାଣିଜ୍ୟ କରି ଯେବେ କରିବ ବଡ଼ଲୋଭ
ତାହାର ସମ୍ପତ୍ତିକୁ ହରି ନିଅନ୍ତି ଦେବ ।
ବୈଶ୍ୟ ହୋଇ ଯେବେ, କୃଷି ନ କରଇ
ମାଗନ୍ତା ଜନକୁ ଯେବେ ମୁଠିଏ ନ ଦିଅଇ ।
ସେହି ପ୍ରାଣୀକି ଯେ, ମୃତ୍ୟୁ ହୁଅଇ ପୁଣ
ଗୃଧ୍ର ପକ୍ଷୀ ଭକ୍ଷନ୍ତି ତାହାର ମାଂସ ଜାଣ ।

ଶୁଣିକରି ପାତ୍ର ମନ୍ତ୍ରୀ ସନ୍ତୋଷ ହୋଇଲେ
ବ୍ରାହ୍ମଣଙ୍କୁ ଚାହିଁଣ ପୃଥୁରାଜା ବୋଲେ ।
କିହୋ ଦ୍ୱିଜବର ମୁଁ କଲି ସତ୍ୟ ପୁଣ
ନମାଗି ତୁନି କିମ୍ପା ହୋଇଲ ବ୍ରାହ୍ମଣ ।
ଦ୍ୱିଜବର ବୋଇଲେ ତୁ କାହିଁ ହେଁ ନଦେବୁ
ପ୍ରୀତିଭାବ କରି ଯେବେ ବଶ୍ୟତାକୁ ହେବୁ ।
ତେବେ ମୋର ମାଗିବାରହୋଇବ କିସପୁଣ
ଏଥିର ସକାଶୁଁ ଯେ ବିଚାରୁଛି ଜାଣ ।
ପୃଥୁରାଜା ବୋଇଲେ ଏ ଶରୀର ଜୀବ ଥିଲେ
ସତ୍ୟ ନ ଲଙ୍ଘିବି ସଞ୍ଜ ଦେବି ତୋ ଭଲେ ।
ଶୁଣିଣ ଅଗ୍ନିଦେବତା ବୋଇଲେ ବଚନ
ନନ୍ଦନ ବନକୁ ତୁମ୍ଭେ ଦିଅହେ ମୋତେ ଦାନ ।
ପୃଥ୍ୱୀରାଜା ବୋଇଲେ ସେ ବନେ କିସ କାର୍ଯ୍ୟ
ବିପ୍ର ବୋଇଲେ ଯେ ବନେ ଔଷଧି ସର୍ବ ।
ପୃଥ୍ୱୀରାଜା ବୋଇଲେ ଔଷଧି କିମ୍ପା ନେବ
ଅଗ୍ନି ବୋଇଲେ ମୋର ବ୍ୟାଧି ମୁକ୍ତ ହେବ ।
ପୃଥ୍ୱୀରାଜା ବୋଇଲେ କି ବ୍ୟାଧି ହେଲାତୋର
ଅଗ୍ନି ଦେବତା ବୋଲେ ଲୁଦୁବୁଦୁ ବ୍ୟାଧିଅଚଳ ।
ପୃଥ୍ୱୀରାଜା ବୋଇଲେ କି ଦୋଷ ତୁହିକଲୁ
ଅଗ୍ନି ବୋଇଲେ ରାଜା ଭକ୍ଷିଲି ଘୃତ ସବୁ ।
ପୃଥ୍ୱୀରାଜା ବୋଇଲେ ତୋତେ ଘୃତକିଏଦେଲା
ଅଗ୍ନି ବୋଇଲେ ବେଣୁରାଜା ଭୋଗ କଲା ।
ଘୃତ ସମୁଦ୍ରରୁ ଘୃତ ଆଣି ପୁଣ
ବାର ବର୍ଷ ପର୍ଯ୍ୟନ୍ତେ ମୋ ମୁଖେଦେଲା ଜାଣ ।
ମୋହର ବ୍ୟତିରେକ ତାହା ନଭକ୍ଷେ ଆନଜାଣ
ବାକ୍ୟ କରି ବାସନାରେ ତୋଷ ଦେବଗଣ ।
ଅକଳିତ ବାରାନିଧି ଭକ୍ଷିଲି ଯେ ମୁହିଁ
ବ୍ୟାଧି ଘୋଟିଲା ଯେ ଶରୀରେ ମୋର ରହି ।
ପୃଥ୍ୱୀରାଜା ବୋଇଲେ ସୁରରାଜାକୁ ନ ମାଗିଲୁ
ଅଗ୍ନି ବୋଲେ ମାଗିଲେ କ୍ରୋଧରେହେଲେ ଗରୁ ।
ଧିକ୍‌କାର ବଚନ ସେ ଅନେକ ବୋଇଲା
ତେଣୁ ପିତା ମୋହର ଦେହରେ ରହିଲା ।
ପୃଥୁରାଜା ବୋଇଲେ ଦେଖଇ ନିଜରୂପ ହୁଅ
ଦେଖନ୍ତୁ ସର୍ବଜନେ ବ୍ୟାଧି କେମନ୍ତେ ଦେହ ।
ଶୁଣିଣ ଦେବତା ନିଜରୂପ ହେଲା
ଲୁଦୁବୁଦୁ ବ୍ୟାଧି ତାର ଶରୀରେ ରୁନ୍ଧେପରା ।
ଦେଖିଣ ପୃଥୁରାଜା ଯେ ବୋଇଲେ ଅଗ୍ନିକି
ନିଜଯାନ ସୁମର ଯିବା ହେ ତହିଁକି ।

ଶୁଣିଣ ଅଗ୍ନି ଦେବତା ଯାନକୁ ସୁମରିଲା
ଶୀତଳ ବିମାନ ଆସି ପାଶରେ ମିଳିଲା ।
ସେ ବିମାନର ଉପରେ ବସିଲା ବୈଶାନର
ଶୀତଳ ବିମାନ ପରେ ବିଜୟ ପୃଥ୍ୱୀଧର ।
ଶାରଙ୍ଗ ଧନୁକରେ କୌମୁଦକୀ ଗଦା
ବୀରବେଶ ହୋଇଣ ବସିଲେ ମହାରାଜା ।
ନନ୍ଦନବନ ଘାସେ ହୋଇଲେ ପ୍ରବେଶ
ଅଗ୍ନି ଦେବତା ବୋଇଲେ ଶୁଣ ମୋ ସନ୍ଦେଶ ।
ଏ ଇନ୍ଦ୍ର ତୋର ସଙ୍ଗେ କରିବ ଯୁଦ୍ଧ ପୁଣ
ବର୍ଷା କରିବେ ମେଘେ ଶୁଣ ହେ ରାଜନ ।
ତ୍ରିଦଶ ଦେବତା ଧରି ମେଳି ସେ କରିବ
ଅନେକ ଅନର୍ଥ ତୋର ସଙ୍ଗେ ଆଜ ହେବ ।
ପୃଥ୍ୱୀରାଜା ବୋଇଲେ କିମ୍ପାକର ତୁମ୍ଭେ ଚିନ୍ତା
ଦ୍ୱନ୍ଦ୍ୱକଲେ ଇନ୍ଦ୍ର ସଙ୍ଗେ ଭାଙ୍ଗିବି ତାର ମତା ।
ଅଗ୍ନି ଦେବତା ବୋଇଲେ ତୁ ଧରଧନୁଶର
ଅଗ୍ନିଶର ବିନ୍ଧିଲେ ମୁଁ କରିବି ଆହାର ।
ଶୁଣିଣ ପୃଥ୍ୱୀରାଜା ସାରଂଗ ଧନୁଧରି
ଅଗ୍ନିଶର ବସାଇଣ ବିନ୍ଧିଲେ ବେଗକରି ।
ଶରର ସଙ୍ଗରେ ଯେ ଅଗ୍ନି ଚଳିଗଲା
ନନ୍ଦନ ବନେ ଯାଇଣ ପ୍ରବେଶ ହୋଇଲା ।
ଜିହ୍ୱାକୁ ବୁଲାଇଣ କରଇ ଆହାର
ମିଳିଲାକ ହୁତାଶନ ତେଜ ମହାଘୋର ।
ଦେଖିଣ ଗନ୍ଧର୍ବ ଖର ଧାଇଁଲେକ ଖରେ
ବୋଇଲେ ଅଗ୍ନି ଦେବତା ଭକ୍ଷୁତୁ କିମ୍ପାବେଳେ ।
ବୈଶ୍ୟାନରବୋଲେ ମୋତେ ପୃଥ୍ୱୀରାଜା ଦେଲା
ବଳଥିଲେ ତାର ସଂଗେ କଳିକର ପରା ।
ଶୁଣିଣ ଗନ୍ଧର୍ବ ଗଣ ଧାଇଁଲେକ ପୁଣ
ଛେଲ ଚକ୍ର କୁନ୍ତ ଭାଲି ଧରିଣ ବେଗ ପୁଣ ।
କୁହୁଡ଼ି ପ୍ରାୟେ ବରଷା ନାରାଚ କଲେ ଯାଇ
କୋନ୍ତ ଭାଲି ଛେଲ ଚକ୍ର ମାରନ୍ତି ତୁହାଇ ।
ଦେଖିଣ ପୃଥ୍ୱୀରାଜା ସାରଂଗ ଧନୁଶର
ବୈଷ୍ଣବ ଧନୁକୁ ଧରିଲେ ରାଜା କର ।
ଦୁଇ ଧନୁରେ କ୍ରୋଣ ଚଢ଼ାଇଲେ ବେଗ
ପୁରାଣ ଶର ବିନ୍ଧିଲେ ପୃଥ୍ୱୀରାଜ ।
ଛେଲ ଚକ୍ର କୋନ୍ତ ଭାଲି ଛେଦି ପକାଇଲେ
ନାରାଚ ଧନୁ ଝଡ଼ି ପଡ଼ିଲାକ ତଳେ ।
ଦେଖିଣ ଗନ୍ଧର୍ବ ଯେ ଯାଇଣ ଘେରିଲେ
ପୁଣ ଯୁଦ୍ଧ କଲେ ରହିଣ ଆଗରେ ।

ମାରନ୍ତି ଦୁର୍ଭାର ଛେଲ ଚକ୍ର ଯେ ନିର୍ଭର
ବିନ୍ଧନ୍ତି ନାରାଚ ଯେ କୋଟି କୋଟି ଶର ।
ଶ୍ରାବଣ ମାସରେ ବର୍ଷା ଯେହ୍ନେ କରି
ଦେଖିଣ ପୃଥ୍ୱୀରାଜା ଛେଦଇ ବେଗକରି ।
ତେଣୁ ଦାବାନଳ ଭକ୍ଷଇ ଘନ ଘନ
କାହାରିକୁହିଁ ଉପ୍ରୋଧ ନକରିଣ ମନ ।
ଅନେକ ସମର ଗନ୍ଧର୍ବଗଣ କଲେ
କେବେ ହେଁ ପୃଥ୍ୱୀରାଜାକୁ ଜିଣି ନପାରିଲେ ।
ଦୁଇଦିନ ସମରେ ହୋଇଣ ଅସକତ ।
ସେ ବନରୁ ପଳାଇଲେ ଘେନି ପିତାମାତା ।
ଅନ୍ୟ ସ୍ଥାନେ ଯାଇଣ ସକଳ ଠୁଳ ହେଲେ
ପୃଥ୍ୱୀରାଜା ଶରରେ ରହି ନପାରିଲେ ।
ସେଠାରେ ଗନ୍ଧର୍ବ ଗଣ ଧାଇଁଗଲେ ବେଗେ
ସୁଧର୍ମା ସଭାରେ ପ୍ରବେଶ ହେଲେ ବେଗେ ।
ଦେଖିଲେ ତ୍ରିଦଶ ଦେବତାଅଛନ୍ତି ସେଠାରେ
ସଭା କରିଣ ବସିଛନ୍ତି ନିରନ୍ତରେ ।
ଗନ୍ଧର୍ବଦେବ ବୋଇଲେ ଶୁଣିଯା ଦେବରାଜ
ନନ୍ଦନ ବନକୁ ଅଗ୍ନୀ କରିଛି ଦହିଜ ।
ପୃଥ୍ୱୀରାଜା ତାହାକୁ ଦେଲାକ ହେ ବନ
ତାରବଳେ ଦହିର୍ଯ୍ୟ କରେ ସେହୁ ପୁଣ ।
ଅନେକ ସମର ଆମ୍ଭେ କଲୁ ଯେ ଯାଇପ୍ରଭୁ
ପୃଥ୍ୱୀରାଜାକୁ ଜିଣି ନପାରୁ ଯେ ସବୁ ।
ଅନେକ ସମର କଲେକ ସେହୁ ରାଜା
ବୋଇଲା ଏବନରୁ ପଳାଇ ଏବେ ଯାଯା ।
ନୋହିଲେ ଜୀବନ ଘେନିବି ତୁମ୍ଭର
ଏତେବୋଲି ଗର୍ଜନ କଲା ମହାବୀର ।
ବୋଇଲା ତୁମ୍ଭର ରାଜାର ଆଗେ କହ
ଶୁଣିଣ ସମସ୍ତେ ପଳାଉଁ ଘେନି ଦେହ ।
ଶୁଣିଣ ସୁର ରାଜା ମନରେ କ୍ରୋଧ ହେଲା
ଚାରି ମେଘକୁ ଡାକିଣ ବେଗେ ଆଜ୍ଞା ଦେଲା ।
ବୋଇଲା ମୂଷଳ ଧାରା ପରାଏ ବରଷିବ
ବଜ୍ର ସୁଚିମାରି ପୃଥ୍ୱୀ ରାଜାକୁ ବିନାଶିବ ।
ଶୁଣିଣ ମେଘମାଳ ବେଗେ ଚଳିଗଲେ
ଘୋର ଜଳ ବରଷିଣ ଗର୍ଜନ ନାଦ କଲେ ।
ଦେଖିଣ ପୃଥ୍ୱୀରାଜା ସାରଙ୍ଗ ଧନୁଧରି
କାଳପାଶେ ବସାଇ ବିନ୍ଧିଲେ ବେଗକରି ।
ସକଳ ମେଘମାନ ବାନ୍ଧିଲା ଯତ୍ନ କରି
ଦେବତାମାନେ ସବୁ ପଳାଇଲେ ଛାଡ଼ି ।

ସୁର ଦେବତା ଆଗରେ ଯାଇଣ କହିଲେ
ଚାରିମେଘକୁ ବାନ୍ଧି ନେଲାବୋଲିଣ ବୋଇଲେ ।
ଶୁଣିଣ ସୁରରାଜା ସକଳ ଦେବ ଘେନି
ବାହାର ଯାନ ଚଢ଼ି ବାହାର ହେଲେ ପୁଣି ।
ନଉସାଗର ଦେବତା ଘେନିଣ ଧନୁସର
କାହାର ବଳରେ ଘୋରବନ ଦହୁଛୁ ବୈଶାନର
ବୈଶାନର ବୋଇଲେ ଶୁଣରେ ଅଜ୍ଞାନ
ଭରଷା ନ ପାଇଲେ କିରେ ଦହନ୍ତି ଏବନ ।
ପୃଥ୍ୱୀରାଜା ମୋତେ ଯେ ଦେଲାକ ଦାନକରି
ବଳଥିଲେ ମାରରେ ଯାଇଣ ତାକୁ ଘେରି ।
ଶୁଣିଣ ସୁରରାଜା ବେଗେ ଚଳିଗଲା
ପୃଥ୍ୱୀରାଜା ଆଗରେ ପ୍ରବେଶ ଯାଇ ହେଲା ।
ବୋଇଲାମାନବାରେ ଏଢ଼େ ଯେ ଗର୍ବତୋର
ମୋର ନନ୍ଦନ ବନେ ତୋର କି ଅଧିକାର ।
ଆପଣା ଜୀବନ କି ସମର୍ଥ ପଣ ତୋର
କେଢ଼େ ଗାରିମା ତୋରରେ ମନୁଷ୍ୟ ଶରୀର ।
ପୃଥ୍ୱୀରାଜା ବୋଇଲେ କହିଲେ କିସ ହେବ
ନନ୍ଦନବନ ଯେବେ ରଖିବୁ ସୁରଦେବ ।
ତୋହର ଶଚୀକି ଯେବେ ବିଧବା କରିପାରି
ତେବେ ଯେ ମୋର ନାମ ଜଗତେ ବିସ୍ତାରି
ଯେତେ ଦେବତା ତୋର ସଙ୍ଗତେ ଛନ୍ତିପୁଣ
ସମସ୍ତେ ସଞ୍ଜିବନୀ ନବରେ ଆଜ ଜାଣ ।
ଆନଦେବତା ଆନ ରାଜା ସ୍ୱର୍ଗପୁରେ ହେବ
ତେବେ ତୁ ଜାଣିବୁ ମାନବ ରାଜାଭାବ ।
ଶୁଣିଣ ସୁରରାଜା କ୍ରୋଧରେ ଜର୍ଜର
କୋଟିଏ ବଜ୍ରସୂଚୀ ମାଇଲା ବେଗର ।
କୋଟି କୋଟି ଚଢ଼ଚଢ଼ି ତହିଁପରେ ମାରି
ନବକୋଟି ବ୍ରହ୍ମଶର ବିନ୍ଧଇ ତନଘାଇକରି ।
ସ୍ୱର୍ଗପୁର ଗୋଟି ଯେ ତକ୍ଷଣେ ହେଲା ଛାଇ
ଦେଖିଣ ଅନନ୍ତ ଶର ପୃଥୁରାଜା ପେଷଇ ।
ସକଳ ଶରଯାକ ପକାଇଲା ଧ୍ୱଂସି
ଦେଖିଣ ସୁରଗଣ ବେଢ଼ିଲେ ତାକୁ ଆସି ।
ମାଇଲେ ଅନେକ ଶର ହେଲା ଯେ ଅଦୃଶ୍ୟ
ପୃଥୁରାଜା ଭେଦିଲେ ଯେ ସୁଦର୍ଶନ ଚକ୍ର ।
ସେ ଚକ୍ର ସବୁ ଶର କଲେ ନିବାରଣ
ଘନ ଘନ କରିଣ ବିନ୍ଧନ୍ତି ଦେବଗଣ ।

ଏମନ୍ତେ ସାତଦିନ ଅନେକ ଯୁଦ୍ଧ କଲେ
କେବେହେଁ ପୃଥୁରାଜାକୁ ଜିଣି ନ ପାରିଲେ ।
ଦେଖିଣ ପୃଥୁରାଜା ହେଲେ କ୍ରୋଧମନ
ମୋହନା ଶର କାଢ଼ିଣ ବିନ୍ଧିଲେ ବହନ ।
ସକଳ ଦେବତାଙ୍କୁ ମୋହକଲେ ପୁଣ
ନଉସାଗର ଦେବତା ମୋହରେ ଲୋଟିଣ ।
ଅଚେତା ହୋଇଣ ଯେ ସମସ୍ତେ ଶୋଇଲେ
ନାଗଫାଶେ ବାନ୍ଧିଲା ଐରାବତକୁ ବଳେ ।
ଚାରିମେଘଙ୍କ ସଙ୍ଗରେ ଚଉଦନ୍ତ ରହି
ଇନ୍ଦ୍ରକୁ ମୋହଶରେ ଅଚେତ କରାଇ ।
ଚୌରାଶୀ ଯୂଣ ଯେ ନନ୍ଦନ ବନ ଗୋଟି
ବୈଶାନର ଭକ୍ଷଇ ହୋଇଣ ଅଚିନ୍ତାଟି ।
ତିନିଦିନ ପର୍ଯ୍ୟନ୍ତ ପଡ଼ି ରହିଲେ ଯେ ଦେବ
ବାରଦିନ ପର୍ଯ୍ୟନ୍ତ ଭକ୍ଷିଲା ଅଗ୍ନିଦେବ ।
ବ୍ୟାଧି ଶେଷ ହେବାରୁ ତେଜ ଯେ ପ୍ରକାଶ
ଚୌରାଶି ଯୋଜନଯେତୁ କଲାକ ସେହୁ ଧ୍ୱଂସ ।
ବ୍ୟାଧିରୁ ମୁକ୍ତ ଯେ ହୋଇଲା ବୈଶାନର
ବୋଇଲା ସାଧୁ ଅଟୁରେ ମାନବ ନୃପବର ।
ବାସୁଦେବ ବୋଇଲେ କି ମୋର କଷ୍ଟ ଫେଡ଼ି
ଏତେ ବୋଲି ବୈଶାନରଙ୍କ ପୁତ୍ର ଯୋଡ଼ି ।
ଚରଣେ ଲୋଟିପଡ଼ି ଶୋଇଲା ବୈଶାନର
ବୋଇଲା ଶରଣମୋତେ ରଖ ହେ ଚକ୍ରଧର ।
ହେଲି ମୁହିଁ ମୁକ୍ତ ଯେ ତୋହର ପ୍ରସାଦେ
ବୈଶାନର ଜଣାଇଲା ପୃଥୁରାଜା ଆଗେ ।
ପୃଥ୍ୱୀରାଜା ବୋଇଲାକି ମନେ ହେଲା ତୋଷ
ନନ୍ଦନବନ ହେବ ପୂର୍ବର ସଦୃଶ ।
ଅଗ୍ନିଦେବତା ବୋଇଲେ ତୁମ୍ଭର ପ୍ରାସାଦରେ
ଏକସ୍ତରୀ ଗଣ୍ଡା ଯୁଗ ବ୍ୟାଧି ଖଣ୍ଡିଲି ଏଠାରେ ।
ଶୁଣିଣ ପୃଥୁରାଜା ଯେ ପରମ ତୋଷ ହୋଇ
ଜୀବନ୍ୟାସ ଶର ଯେ ଧନୁରେ ଯୋଚଇ ।
ଚାରିବେଦ ସୁମରଣା କଲେକ ଦେବରାଜ
ପୃଥ୍ୱୀ ସର୍ଜିବାର ଯେଉଁ ଯେ ମୂଳ ବୀଜ ।
ସ୍ଥାବର ଜନ୍ମ ହେବାର ନାମ ବାର ଆଦି
ଔଷଧି ନାମ କରି ଯେତେ କଲେ ବ୍ୟାଧି ।

ସମସ୍ତଙ୍କୁ ସୁମରଣା କଲେକ ନାରାୟଣ
ବୋଇଲେ ସର୍ବଜୀବ ପାଇଲେ ତକ୍ଷଣ ।
ପୂର୍ବର ପ୍ରାୟେ ତୁମ୍ଭେ ପଲ୍ଲବିତ ହୁଅ
ଫୁଲ ଫଳ ଘେନିଣ ତୁମ୍ଭେ ଆନନ୍ଦରେ ରହ ।
ଜୀବକୁ ଜୀବ ସିନା ଦେଇଣ ଅଛି ମୁହିଁ
ତୁମ୍ଭଙ୍କୁ ଜୀବଦେଲି ବଞ୍ଚ ହୋ ବେଗହୋଇ ।
ଏତେ ବୋଲି ସଞ୍ଜିବନୀ ମନ୍ତ୍ରକୁ ପଢ଼ିଲେ
ଜୀବନ୍ୟାସମନ୍ତ୍ର ବେଗେ ଛାଡ଼ିଦେଲେ ।
ଶେଷରେ ସର୍ବ ବୃକ୍ଷ ଦେହରେ ଛୁଇଁଗଲେ
ତହୁଁ ପରେ ବସନ୍ତ ଶରକୁ ପେଷିଲେ ।
ପୂର୍ବର ପ୍ରାୟେକ ବନ ପଲ୍ଲବିଲା ଆସି
ପତ୍ର କଅଁଳିଣ ସେ ଯେ ସୁନ୍ଦର ପୁଷ୍ପ ଦିଶି ।
ଫଳ ପୁଷ୍ପରେ ପୁଣ ମୂଳକୁ ହେଲା ଗରୁ
ସ୍ୱର୍ଗପୁର ଯାକକୁ ବାସନା କଲା ଦୂରୁ ।
ଶତୁ ଶତେ ଗୁଣ ଯେ ପଲ୍ଲବିଲା ବନ
ଗୋଟିଏ ବୃଦ୍ଧ ନାହିଁ ସମସ୍ତେ ନୂତନ ।
ଶୀତଳ ହୋଇଣ ବନ କୋମଳ ଆନନ୍ଦ
ଯାହାକୁ ନାରାୟଣ କରାଏ ମନ୍ତ୍ରଭେଦ ।
ଯେଉଁ ନାରାୟଣ କହିଲେ ସୃଷ୍ଟି ଜାତହୋଇ
ବିଚାରିଲେ ପ୍ରଳୟ କରଇ ପୁଣ ସେହି ।
ଯାର ହୃଦୟରୁ ଦେବତା ଜାତ ଜାଣ
ଯହୁଁ ସଞ୍ଚରିଲା ସକଳ ଜୀବପୁଣ ।
ତାହାକୁ ଆଶ୍ଚର୍ଯ୍ୟିତ ଅଟେ କି ସେ କଥା
ଗର୍ବ ନ ସହଇ ଯେ ସୃଷ୍ଟିର କରତା ।
ବିଚାରିଲେ ସଂହାରଣେ କଲେ ଏହିକ୍ଷଣି
ନିଜ ରୂପ ଦେଇଣ ସଞ୍ଚାର କଲେ ପୁଣି ।
ପୃଥ୍ୱୀରାଜା ବିଚାରିଲେ ଦେବଙ୍କୁ ଗର୍ବ ଗଲା
ମାରିବ ବୋଲି ମୋତେ ବିଚାର ହୋଇଥିଲା ।
ଏବେ ତ ଜାଣିଲି ମୁଁ ଯେ ତାହାଙ୍କୁ ବଡ଼ପଣ
କାରଣ କରିବ ଯେ କେହି ନାହିଁ ପୁଣ ।
ଏତେବୋଲି ଜୀବନ୍ୟାସ ଶରକୁ ବେଗେ ରୁନ୍ଧି
ସକଳ ଦେବତା ଯେ ଉଠିଲେ କୋହତେଜି ।
ନୌସାଗର ଦେବତା ପାଇଲେ ଜୀବଯେଣୁ
ପଳାଇଲେ ସମସ୍ତେ ନ ରହିଲେ ତେଣୁ ।
ଦେବତା ଯିବାରୁ ଯେ ବିଚାରି ଦେବରାଜ
ଗନ୍ଧର୍ବ ଗଣକୁ ଯେ ଜିଆଇ ଦେଲେବେଗ ।

ଉଠିଣ ଗନ୍ଧର୍ବେ ଯେ ନନ୍ଦନ ବନେ ପଶି
ସେ ଯାହାସ୍ଥାନ ଆବୋରି ରହିଲେ ସେହି ପାଞ୍ଚ ।
ଚାରିମେଘ ଦିଗପାଳଙ୍କୁ ବନ୍ଧନୁଁ ଫେଡ଼ିଦେଲେ
ପଳାଇଲେ ମେଘମାନ ପୃଥ୍ୱୀରାଜା ଡରେ ।
ନାଗଫାଶ ବନ୍ଧନରୁ ଫେଡ଼ିଲେ ଐରାବତ
ମୁକ୍ତହୋଇ ଐରାବତ ଉଠିଲେ ତ୍ୱରିତ ।
ଉତ୍ତର ପାରୁଶରେ ଚନ୍ଦନ ବନଦେଶ
ଦକ୍ଷିଣ ପାରୁଶକୁ ଚାହିଁଲା ନାଗ ତ୍ରାଶ ।
ପୃଥ୍ୱୀରାଜା ଅଗ୍ନି ନେତ୍ରରେ ଦେଖିଲା
ପୂର୍ବଦିଗକୁ ପୁଣ ହସ୍ତୀ ଦୃଷ୍ଟି ଦେଲା ।
ଦେଖିଲା ଦେବଗଣ ନାହାନ୍ତି କେହି ପୁଣ
ବାହାନମାନେ ନାହାନ୍ତି ନାହିଁ ଧ୍ୱଜଚକ୍ର ।
ପଶ୍ଚିମ ଦିଗକୁ ଚାହିଁଲା ନିରୋଳେ
ଗନ୍ଧର୍ବଗଣ ଗହଳ ବନରେ ଭିତରେ ।
ଦେଖିଣ ଐରାବତ ହୃଷ୍ଟମନ ହେଲା
ସୁରରାଜା ପଡ଼ିବାରେ ନେତ୍ରରେ ଦେଖିଲା ।
ଦେଖିଲା ଇନ୍ଦ୍ରଙ୍କଠାରେ କ୍ରୋଧ ପୃଥ୍ୱୀବୀର
ମୁଁ କହିଲେ ମୋତେ ପୁଣମାରିବେନିଶ୍ଚେବୀର ।
ଏମନ୍ତ ବିଚାରି ନାଗ ସେଠାରୁ ଚଳିଗଲା
ଶଚୀଙ୍କ ଆଗରେ ବାରତା ପୁଣ ଦେଲା ।
ତୋ ସ୍ୱାମୀଙ୍କି ନାଶକଲା ପୃଥୁ ମହୀପାଳ
ପଡ଼ି ଅଛି ଧରଣୀରେ ହୋଇଣ ଅଚଳ ।
ଶୁଣିକରି ଶଚୀଦେବୀ ଆରତେ ଚଳେପୁଣ
ହାଦୋଳାରେ ଚଢ଼ିଯାଇ ମିଳିଲା ପାଶେଣ
ନନ୍ଦନବନ ନିକଟେ ପ୍ରବେଶ ହୋଇଲା
ଶୟନ କରିଛି ସ୍ୱାମୀ ନେତ୍ରରେ ଦେଖିଲା ।
ଦକ୍ଷିଣ ଦିଗକୁ ଦେବୀ ଚାହିଁଲା ବେଗକରି
ପୃଥ୍ୱୀରାଜା ବସିଛି ଶୀତଳ ରଥ ଘେରି ।
ତାରପାଶେ ବୈଶାନର ଅଛଇ କେବଳ
ବେନିଧନୁ ଧରିଅଛି ବେଣୁର କୁମର ।
କୌମୁଦୀ ଗଦା ଚକ୍ର ଅଛି ତା କରରେ
ଦୁଇଗୋଟି ଶିର ଅଛି ତା କନ୍ଧରେ ।
ନିଳେନ୍ଦୀ ଜଳବର୍ଣ୍ଣେ ଦିଶଇ ଚକ୍ଷୁ ପୁଣ
କୋମଳ ଶରୀର ଗୋଟି ରସାଣ ନିର୍ବାଣ ।
ସୁରଙ୍ଗ ବର୍ଣ୍ଣେ ତାର ଅଧରଟି ଦିଶି
ଶାମଳ ବର୍ଣ୍ଣେ ଜୁଡ଼ା ଦୁଇଗୋଟି ଅଛି ।

କିରିଟୀକୁଣ୍ଡଳ କାଞ୍ଚନ ଶୋଭାବନ
ସୁବଳିତ ସୁବାହୁ ଦିଶଇ ଶୋଭନ ।
ଉଲଟ ଜାନୁ ତାର ରମ୍ଭା ବୃକ୍ଷ ନିନ୍ଦି
ବେନିଚରଣରେ ଚମ୍ପା କଢ଼ି ବନ୍ଦି ।
ଦେଖିଣ ଶଚୀ ଦେବୀ ପଚାରେ ନାଗରେ
ବାସୁଦେବ ବିଜେକଲେ ଆସିଣ ଏଠାରେ ।
ଐରାବତ ବୋଇଲା ମୁଁ ନଜାଣଇଁ ପୁଣ
ବେଣୁ ରାଜାର ପୁତ୍ର ଅଟଇ ପ୍ରମାଣ ।
ଶଚୀ ପଚାରିଲା ଏକା ରାଜା କି ଯୁଦ୍ଧ କଲା
ନାଗ ବୋଇଲା ସକଳ ଦେବତା ଏଥିମେଳା ।
ଶଚୀ ପଚାରିଲେ ଗୋଟି ଏଥି ନାହିଁ
ନାଗ ବୋଇଲା ଏ ରାଜା ସବୁଙ୍କୁ ମାରଇ ।
ଶଚୀ ବୋଇଲେ ତାଙ୍କର ନାହିଁ ମୃତ୍ୟୁ ଶବ
କେବଳ ପଡ଼ି ଅଛନ୍ତି ସୁରଦେବ ।
ନାଗ ବୋଇଲା ମାଏ ସମସ୍ତେ ଜୀବପାଇ
ଡରିଣ ଏ ରାଜାଙ୍କୁ ପଳାଇଗଲେ ସେହି ।
ଶଚୀ ଦେବୀ ବୋଇଲେ କିମ୍ପାଇ ଗୋଳହେଲା
ରାଜା କିମ୍ପା ଶତ୍ରୁହେଲେ ଦେବପରା ଭଲା ।
ଐରାବତ ବୋଇଲେ ନନ୍ଦନ ବନ ପୋଡ଼ି
ବ୍ୟାଧିରେ ବୈଶାନର ଛାଡୁଥିଲେ ରଡ଼ି ।
ତୁମ୍ଭ ସ୍ୱାମୀଙ୍କି ଶତେବର୍ଷ ପରିଯନ୍ତେ
ମାଗିଲା ଔଷଧ ନଦେଲା ସୁରନାଥେ ।
ମାନକରି ଅଗ୍ନି ପୃଥୁରାଜା ପାଶେ ଗଲା
ଦେଖିଣ ବେଣୁରାଜା ନନ୍ଦନ ଦୟାକଲା ।
ନନ୍ଦନ ବନକୁ ତାକୁ ଦାନ କରିଦେଲା
ଔଷଧ ଭକ୍ଷନ୍ତେ ବୈଶାନର ଭଲହେଲା ।
ଦେବୀ ବୋଇଲେ ନନ୍ଦନବନ ନୁହଇ ତ ଭସ୍ମ
କିମ୍ପା କଳିକଲେ ସୁରରାଜା ତାଙ୍କ ପାଶ ।
ଐରାବତ ବୋଇଲା ହୋଇଲା ବିଡ଼ମ୍ବଣ
ନନ୍ଦନବନ ଗୋଟି ଚଉରାଶି ଯୁଣ ।
ସମସ୍ତଙ୍କୁ ଭକ୍ଷିଣ ଅନଳ କଲା ଭସ୍ମ
ତେଣୁ ସେ ବୈଶାନର କନ୍ଦର୍ପ ସଦୃଶ୍ୟ ।
ବ୍ୟାଧିଭଲ ହେବାରୁ ଅଗ୍ନି ହୋଇଲେ ସନ୍ତୋଷ
ପୃଥୁରାଜା ଭେଦିଲେ ଜୀବନ୍ୟାସ ସସ୍ର ।
ଗତୁଁ ଶତେଗୁଣେ ଏବେ ହେଲା ପଲ୍ଲବିତ
ଫଳ ଫୁଲ ମଣ୍ଡିଣ ତୁ ଖୋଜ ଯାଇ ଦେଶ ।

ସମସ୍ତେ ଜୀବପାଇ ପଳାଏ ନିଜସ୍ଥାନ
ଏ ବନରେ ଗନ୍ଧର୍ବ ଅଛନ୍ତି ଦେଖ ପୁଣ ।
ଶଚୀ ଦେବୀ ବୋଇଲା ମୋର ସ୍ୱାମୀ ଦୋଷୀ
ଭାଇଙ୍କି ନ ପୋଷିଣ ପରରେ ହୁଏ ଝାସି ।
ବୈଶାନର ଅଟନ୍ତି ତାଙ୍କର ନିଜ ଭାଇ
ଭାଇରତ ହିଂସାଭାଗ ଦେବାରତ ହୋଇ ।
ଯେଉଁ ବାସୁଦେବ ସ୍ୱର୍ଗରେ ଇନ୍ଦ୍ର କଲା
ସେହି ନାରାୟଣ ତାକୁ ଅଗ୍ନି ରୂପ ଦେଲା ।
ଯେଉଁ ବାସୁଦେବ ଦଶଦିଗପାଳ କରି
ନବଗ୍ରହ ଅଷ୍ଟସବୁ ସକଳ ତିଆରି ।
ତ୍ରିଦଶ ଦେବତାଙ୍କୁ ଭିନ୍ନ କଲା
ନଉ ସାଗର ଦେବତାଙ୍କୁ ସ୍ୱର୍ଗରେ ରଖିଲା ।
ସେଥି ଉପରେ ଯେ ଇନ୍ଦ୍ରକୁ ରାଜା କଲା
ଇନ୍ଦ୍ର ପଣ ପାଇ ଦେବେତାମସ ହୋଇଗଲା
ଅଯୋଗ୍ୟ ତନୁରେ ସିନା ତାକୁ ଲେଖାକରି
ଏହାକୁ ମାରିବାର ତ ଉଚିତ ତାହାରି ।
ପ୍ରଜା ନଥିଲେ କି ରାଜା ରହିବଟି ଏକା
ପରଜାର ଧର୍ମୁସିନା ଅଟେ ତାକୁ ଶାଖା ।
ପ୍ରଜାଙ୍କର ଘର ବହନ ଏ ରାଜା ଦଣ୍ଡି
ରାଜାର ଯେତେଧନ ଚୋର ଖାନ୍ତି ଭଣ୍ଡି ।
ତିନିପୁର ଚଉଦ ବ୍ରହ୍ମାଣ୍ଡ ନବଖଣ୍ଡ
ଏମାନ ଭିଆଇଣ ରାଜାଙ୍କୁ କଲା ରୁଣ୍ଡ ।
ରାଜ୍ୟରେ ପରଜା ଅନେକ ଜାତ କଲା
ପ୍ରଜାଙ୍କ ଉପରେ ପୁରୁଷି ଭିଆଇଲା ।
ପୁରୁଷି ଉପରେ ପୁଣି ପାତ୍ର ମନ୍ତ୍ରୀ ହୋଇ
ପାତ୍ର ମନ୍ତ୍ରୀଙ୍କ ଉପରେ ରାଜା ଯେ ବୋଲାଇ ।
ରାଜାଙ୍କ ଉପରେ ବିଧାତା ଅଟେ ସାର
ବିଧାତାର ଉପରେ ଅଟଇ ଦିଗମ୍ବର ।
ଦିଗମ୍ବର ଉପରେ କର୍ତ୍ତା ବାସୁଦେବ
ଦୁଷ୍ଟଙ୍କୁ ନିବାରିଣ ପାଳଇ ସନ୍ଥ ସର୍ବ ।
ଭକତ ଭାବଗ୍ରାହୀ ସାଗରରେ ବାସ
ସେ ନାରାୟଣଙ୍କୁ ବଳିବାକୁ ଇନ୍ଦ୍ରର କି ସାହସ ।
ବୈଶାନର ଶରୀର ଆରୋଗ୍ୟ ହୋଇଲା
ପୂର୍ବର ଭାବେ ନନ୍ଦନବନ ସେ ରଖିଲା ।

ଦେବତାଙ୍କୁ ଦୟାକରି ଜିଆଁଇଣ ଦେଲା
ସୁରରାଜା ସୁରପୁରେ ରଖିବ ନାହିଁକଲା ।
ଭାଇତ ସୋଦରଠାରେ କିମ୍ପା ଛନ୍ଦ
ଏକଆତ୍ମା ଦୁହେଁ ତ କିମ୍ପା କଲା ଛନ୍ଦ ।
ଏହି ରାଜାର ମୁଖ କେବେ ହେଁ ନଚାହିଁ
ବାରବର୍ଷ ପର୍ଯ୍ୟନ୍ତେ ବନରେ ରହୁ ଏହି ।
ଶୁକର ରୂପ ଧରିଣ ନର୍କ ଭୋଗକରୁ ।
ଗର୍ବତାର ଚୁର ହେଲେ ସ୍ୱର୍ଗେପଣ କରୁ ।
ଏମନ୍ତ ବୋଲିଣ ଯୁହଁ ଶାପ୍ୟଦେଲେ ଶଚୀ
ପୃଥୁରାଜା ରଥରୁ ଓହ୍ଲାଏ ତଡ଼ତି ।
ଶଚୀ ଦେବୀଙ୍କ ପାଶେ ପରବେଶ ହେଲେ
କିମ୍ପାଇଁ କ୍ରୋଧ ହେଲୁ ବୋଲିଣ ବୋଇଲେ ।
ଶଚୀଦେବୀ ବୋଇଲେ ଶୁଣ ନାରାୟଣ
ଏ ରାଜା ପଦଅଟେ ସବୁଦିନେ ଜାଣ ।
ସାକ୍ଷାତେ ବାସୁଦେବ ଅଟୁ ତୁହି ପୁଣ
ତୋହର ସଞ୍ଚିଲା ଧନ ଦେଲୁ ଅନ୍ୟେଜାଣ ।
ଆସ୍ତି ନାସ୍ତି କରିବାକୁ ତୁ ଯେ କର୍ତ୍ତା ଅଟୁ
ତୋତେ ନ ଚିହ୍ନିଲେ ଏମନରେ କରିହେଟୁ ।
ଦେବରାଜା ହୋଇଣ ଆଉ କିସ କାର୍ଯ୍ୟ
ଏ ଚଣ୍ଡାଳ ଅଟଇ ଦେବଙ୍କ ଅକାର୍ଯ୍ୟ ।
ବାରବରଷ ଗଲେ ହୋଇବ ସୁର ରାଜା
ବନସ୍ତରେ ରହିକରି ହେଉ ଯେ ଅପୂଜା ।
ପୃଥୁରାଜା କହିଲେ ସୁରକୁ କେ ପାଳିବ
କେମନ୍ତେ ସୁରପୁର ସମ୍ଭାଳ ଏବେହେବ ।
ଶଚୀଦେବୀ ବୋଇଲେ କୋଟିଏ ଇନ୍ଦ୍ରଛନ୍ତି
ଯାହାକୁ ମନହେବ କର ହେ ନୃପତି ।
ତୁହିସିନା ସକଳ କଥାକୁ ଭିଆଇଲୁ
ନୃପତି କରିବା ପାଇଁ ମୋତେ ପଚାରିଲୁ ।
ପୃଥୁରାଜା ବୋଇଲେ ଏ ନୁହଁଇ ଉଚିତ
ତୋର ମନ ନୋହିଲେକି ହେବ ନୃପନାଥ ।
ଶଚୀଦେବୀ ବୋଇଲେ ଦେବଙ୍କ ଗର୍ବଗଞ୍ଜି
ପ୍ରହଲ୍ଲାଦ କୁମରକୁ ଦିଅ ଇନ୍ଦ୍ରପଦ ।
ପ୍ରହଲ୍ଲାଦ ଯେବେ ସ୍ୱର୍ଗରେ ଇନ୍ଦ୍ର ହେବ
ଅସୁର ରାଜାହେଲେ ଦେବଙ୍କ ଗର୍ବଭାଙ୍ଗିବ ।

ପ୍ରହଲ୍ଲାଦକୁ ବାସୁଦେବ କଲେ ସୁମରଣା
ଅର୍ଦ୍ଧସ୍ୱର୍ଗରୁ ବହନ ଅଇଲେ ଦୈତ୍ୟରଣା ।
ପୃଥୁରାଜା ଚରଣେ ଓଳଗି ହେଲା ପୁଣି
ବାସୁଦେବ ବୋଇଲେ ଶୁଣ କୁମରମଣି ।
ତୋତେ ପ୍ରସନ୍ନ ହୋଇଲା ଦେବଶଚୀ
ସ୍ୱର୍ଗରେ ଇନ୍ଦ୍ର ହୋଇବୁ ଚଳତୁ ତଡତି ।
ଦେବୀର ମନ ତୁ ଯେ କରିବୁ ତୋଷ ପୁଣ
ଦେବତାଙ୍କୁ ଯେ ଯାହାର ଧର୍ମରେ ରଖପୁଣ ।
ତିନିପୁର ପାଳିବୁ ନ ଦେବୁ ଜୀବେ ଶାସ୍ତି
ଶଚୀ ଦେବୀଙ୍କି ବୋଇଲେ ଯାଅ ତୁ ତଡତି ।
ଦେଖିଣ ପ୍ରହଲ୍ଲାଦ ନମସ୍କାର କଲା
ଶଚୀ ଦେବୀଙ୍କ କର ଯାଇଣ ଧଇଲା ।
ଐରାବତ ଉପରେ ବସାଇଲେ ନେଇ
କୋଳରେ ବସିଲେ ଶଚୀ ମହାମାୟୀ ।
ବାରସ୍ୱତୀ ଭବନକୁ ବେଗେ ଚଳିଗଲେ
ମର୍ଦ୍ଦନ ମାଜଣା କରି ସ୍ନାନବିଧି କଲେ ।
ଅମୃତ ଭୋଜନ କରି ତୋଷ କଲେ ମନ
ବିଡ଼ିଆ ଭୁଞ୍ଜିଣ କଲେକ ଶୟନ ।
ଦେବୀ ସଙ୍ଗେ ପ୍ରହଲ୍ଲାଦ ସ୍ୱର୍ଗରେ ଯେ ଭୋଳ
ନାନାରଙ୍ଗେ ଲୀଳା କଲେ ତା ସଙ୍ଗର ।
ଆରଦିନ ସଭା ମଣ୍ଡାଇଲେ ପୁଣି
ସକଳ ଦେବତାଙ୍କୁ ବରଣକରି ଆଣି ।
ସମସ୍ତଙ୍କୁ କହିଲେ ଯେ ଯାହା ଭାବେରହ
ନୋହିଲେ ନାଶଯିବ ଏକଥା ନିଶ୍ଚୟ ।
ଏ ପୃଥୁରାଜା ନିଶ୍ଚେ କରିବେ ପ୍ରାଣ ନାଶ
ମର୍ତ୍ତ୍ୟପୁର ଜୀବରୂପ ହୋଇବ ଅବଶ୍ୟ ।
ସ୍ୱର୍ଗରୁ ଇନ୍ଦ୍ର ଏବେ ମର୍ତ୍ତ୍ୟପୁର ଗଲା
ଶୁକର ରୂପ ଧରିଣ ନର୍କ ଭୋଗ କଲା ।
ଶୁଣିଣ ସକଳ ଦେବତା ହୋଇଲେ କାର୍ପଣ୍ୟ ।
ଲୋମପାଦ ବୋଇଲେ ସେଠାରୁ କିସ ହେଲା
ଦଶରଥ ବୋଇଲେ ସ୍ୱର୍ଗେ କଶ୍ୟପର ବଳା ।
ଇନ୍ଦ୍ରକୁ ଜୀବନ୍ୟାସ ଶରରେ ଜିଆଇଁ
ଉଠିଣ ସୁର ରାଜା ଆଗରେ ଉଭାହୋଇ ।
ଏମନ୍ତ ସମୟେ ଘୋଟିଲା ତାକୁ ଶାପ
ତକ୍ଷଣେ ହୋଇଲା ସେ ଶୂକର ସ୍ୱରୂପ ।

ଇନ୍ଦ୍ର ବୋଇଲା ଦେବ ଏରୂପ କିମ୍ପା ହେଲା
ପୃଥୁରାଜା ବୋଲେ ତୋତେ ଶାପଯେ ପଡ଼ିଲା ।
ତୁମ୍ଭର ଘରଣୀ ମହାମାୟୀ ଶଚୀ
ତୁମ୍ଭର ନ୍ୟାୟକୁ ବାଛିଲା ଏଥେ ବସି ।
ଅନ୍ୟାୟ ଦେଖିଣ ସେହୁ ଶାପ ଦେଲା
ଶୂକର ରୂପହୁଅ ବୋଲିଣ ବୋଇଲା ।
ବାରବର୍ଷ ଗଲେ ତୁ ଶାପରୁ ମୁକୁଳିବୁ
ଅନ୍ୟାୟକଲେ ପୁଣ ପଶୁ ଜନ୍ମ ହେବୁ ।
ଶୁଣିଣ ଇନ୍ଦ୍ର ଯେ ସେଠାରୁ ପଳାଇଲା
ମର୍ତ୍ତ୍ୟଭୁବନରେ ପରବେଶ ହେଲା ।
ଦକ୍ଷିଣ ଦିଗରେ ସାହେର କୂଳରେ
କୌମୁଦୀ ଚଣ୍ଡାଳ ଘରେ ପ୍ରବେଶ ହେଲାଖରେ ।
ସେ ଯିବାରୁ ପୃଥୁରାଜା ଅଗ୍ନିକି କହିଲା
ଯାଅ ଯା ନିଜପୁରକୁ କୁଶଳେ ରହଭଲା ।
ଶୁଣିଣ ବୈଶାନର ନମସ୍କାର କଲା
ଆପଣା ପୁରରେ ପରବେଶ ହେଲା ।
ଦେଖିଣ ବାମା ବନ୍ଦାପନା କଲାଜାଣ
ବୋଇଲା ବ୍ୟାଧି ଖଣ୍ଡନ କେହୁ କଲାପୁଣ ।
ବୈଶାନର ବୋଇଲେ ନାରାୟଣ ଦୟାକଲେ
ନନ୍ଦନବନ ମୋତେ ଦାନକରି ଦେଲେ ।
ତେଣୁ ସେ ବ୍ୟାଧି ଅଙ୍ଗୁ ହୋଇଲାକ ହତ
ଶୁଣିଣ ନାରୀ ଯେ ମନରେ ଉଷତ ।
ଅଗ୍ନିଯିବାରୁ ପୃଥୁରାଜା ସେଠାରୁ ଅଇଲେ
ବଇଧୃତି ନଗରେ ପରବେଶ ହେଲେ ।
ଯାନରୁ ଓହ୍ଲାଇଣ ନିଜପୁର ଗଲେ
ମର୍ଦ୍ଦନ ମାଜଣା ସାରି ସ୍ନାହାନ ସାରିଲେ ।
କମଳା ଆସିଣ ପୁଣ ବନ୍ଦାପନା କଲେ
ଦେବାର୍ଚ୍ଚନ ବିଧି ଭାଜନ ବଢ଼ାଇଲେ ।
ଅମୃତ ଭୋଜନ କଲେକ ରାଜାପୁଣ
ଭୋଜନ ସାରିଣ କଲେ ଆଚମନ ।
ବିଡ଼ିଆ ଭୁଞ୍ଜିଣ ପଲଙ୍କେ ନିଦ୍ରାଗଲେ
ପାତ୍ର ମନ୍ତ୍ରୀ ମିଳିବାରୁ ରାଜନ ଉଠିଲେ ।
ରାଜ୍ୟର ଭଲମନ୍ଦ ସକଳ କଥା ବୁଝି
ଲୋମପାଦ ବୋଇଲେ ବୁଝିଲି କଥାସନ୍ଧି ।
ଦଶରଥବୋଲେ ବିପ୍ର ଦୟାକଲେ ତୋତେ
ପ୍ରାଣେ ନମାରି ଦୁଃଖ ଦେଲେକ ଅନିମିତ୍ତେ ।
ଲୋମପାଦ ବୋଇଲେ ସେ ଇନ୍ଦ୍ର କିସକଲା
ଦଶରଥ ବୋଇଲେ ଶୂକର ରୂପ ହେଲା ।

ବାରବର୍ଷ ପରିଯନ୍ତେ କଲା ନର୍କପାନ
ବାର ବରଷେ ନିଧନ ହୋଇଲା ରାଜନ ।
ସ୍ୱର୍ଗରୁ ବିମାନ ଆସନ୍ତେ ସେହୁ ଗଲା
ବାରସ୍ୱତୀ ଭବନେ ପ୍ରବେଶ ହୋଇଲା ।
ଶଚୀକି ବୋଇଲେ ମୁହିଁ ହେବିଟି ରାଜନ
ସକଳ ଦେବତାଏ କହିଲେ ଆସି ପୁଣ ।
ଶଚୀଦେବୀ ବୋଇଲେ ପାତକ ତାର ଅଛି
ଚଣ୍ଡାଳରୂପ ହୋଇଣ ନର୍କ ସେ ଭୋଗିଛି ।
ଶତେକ ବରଷ ତପ କଲେ ହେବ କ୍ଷୟେ
ତୋରେ ଯେବେ ନାରାୟଣ କରିବେ ସଦୟେ ।
ଶୁଣିଣ ଇନ୍ଦ୍ରଦେବ ଖାଣ୍ଡବ ବଣେ ଗଲା
ନିଶ୍ଚଳ ଆସନରେ ସେହୁ ତପ କଲା ।
ଶତେକ ବରଷ ପୁଣ ଗଲା ତହିଁ ବହି
ତପସିଦ୍ଧ ହେବାରୁ ଉଠିଲା ଶଚୀ ସାଇଁ ।
ବାରସ୍ୱତୀ ଭବନେ ପରବେଶ ହେଲା
ରାଜନ ହେବ ପରା ଶଚୀଙ୍କି ବୋଇଲା ।
ଶୁଣିଣ ଶଚୀ ଦେବୀ ବୋଇଲେ ବେଗେ ଯାଅ
ପୃଥୁରାଜାଙ୍କ ଆଗରେ ତୁମ୍ଭ କଷ୍ଟ କହ ।
ସେହି ରାଜା ଅଟନ୍ତି ବାସୁଦେବ ଜାଣ
ତାଙ୍କ ସଙ୍ଗେ ବିମନା ହୋଇଛ ଆପଣ ।
ସେ ବୋଇଲେ ରାଜାସିନା ହେବ ସ୍ୱର୍ଗପୁରେ
ଯାଠାରେ ଦୋଷୀ ହେଲେ ସେବତା ପୟରେ ।
ଶୁଣିଣ ସୁରରାଜା ବେଗେ ଚଳିଗଲା
ବୈଧୃତି ମଣ୍ଡଳରେ ପ୍ରବେଶ ହୋଇଲା ।
ପୃଥୁ ନୃପତିଙ୍କୁ କଲାକ ଦର୍ଶନ
ଶତେକ ବର୍ଷ ଯେ ରହିଲା ସେହୁସ୍ଥାନ ।
ଏକଦିନେ ପୃଥୁରାଜା ମୃଗୟାକୁ ଗଲା
ବନସ୍ତରେ ପଶି ବେଣ୍ଟ ପାରିଧି କଲା ।
ଅଗମ୍ୟ ବିପିନେ ଅଟଇ ଘୋର ଲତା
ଗ୍ରୀଷ୍ମ କାଳରେ ପଶିଲେ ବେଣୁରାଜା ବେଟା ।
ରାଜାଙ୍କ ତୃଷାବେଳେ ଜଳ ନେଇ ଦେଲା
ନରନାରାୟଣ ଜଳ ତା ହସ୍ତୁଁ ପାନକଲା ।
ସକଳ ପାପ ଯେ ତାହାର କ୍ଷୟ ଗଲା
ଗତୁ ଶତେ ଗୁଣରେ ତେଜ ବିକାଶିଲା ।

ଜାଣିଣ ପୃଥୁରାଜା ତାହାଙ୍କୁ ଆଜ୍ଞା ଦେଲା
ପୂର୍ବ ସ୍ଥାନରେ ତୋହର ରହଯା ବୋଇଲା ।
ଶୁଣିଣ ସୁର ରାଜା ବେଗେ ଚଳିଗଲା
ଶଚୀର ପାଶରେ ପ୍ରବେଶ ହୋଇଲା ।
ପ୍ରହଲ୍ଲାଦକୁ ବୋଇଲେ ଚଳା ହେ ସତ୍ୱର
ଅଳକା ପୁରରେ ରହ ଭକ୍ତ ବୀର ।
ନାରାୟଣଙ୍କୁ କେବଳ କରୁଥାଅ ଧ୍ୟାନ
ସେହି ଏକା ପ୍ରଭୁ ଦେବେ ଗତି ଦାନ ।
ସେ ଦେବ ପ୍ରସନ୍ନ ହେଲେ ତୁମ୍ଭ ଆମ୍ଭ ମେଳ
ଶୁଣିଣ ବେଗେ ଚଳିଲେ ହିରଣ୍ୟଙ୍କ ବାଳ ।
ଅଳକା ପୁରରେ ପ୍ରବେଶ ହୋଇଲେ
ସପ୍ତନିଧିର ସଙ୍ଗେ ନିଶ୍ଚିନ୍ତେ ରହିଲେ ।
ଭଣ୍ଡାର ଅଧିପତି ହୋଇଲେ ସେ ପୁଣ
ଏମନ୍ତ ପରାକ୍ରମ ନାରାୟଣଙ୍କର ଜାଣ ।
ଶୁଣିଣ ଲୋମପାଦ ହରଷ ହୋଇଲେ
ଦଶରଥ ରାଜାଙ୍କୁ ଓଳଗି ମେଲାଇଲେ ।
ଯାନର ଉପରେ ବସିଲେ ଯାଇକରି
ଦଶରଥ ବୋଇଲେ ଶୁଣ ହେ ଦଣ୍ଡଧାରୀ ।
ଋଷ୍ୟଶୃଙ୍ଗ ଅଇଲେ ମୋତେ ବାର୍ତ୍ତାଦେବ
ହେଳା ନକରିଣ ଚାର ପେଷିଦେବ ।
ଶୁଣିକରି ଲୋମପାଦ ଚଳିଗଲେ ବେଗେ
ନିଜରାଜ୍ୟେ ପ୍ରବେଶ ହୋଇଲେକ ରାଙ୍ଗେ ।
ଦେଖିଣ ରାଜ୍ୟଲୋକେ ଆନନ୍ଦ ହୋଇଲେ
ନିଜ ନବର ମଧ୍ୟରେ ପ୍ରବେଶ ହୋଇଲେ ।
ଅନ୍ତଃପୁରେ ପ୍ରବେଶ ହୋଇଲେ ରାଜନ
ସକଳ ରାଣୀ ଆସି ନମିଲେ ଚରଣ ।
ଶାନ୍ତା କନ୍ୟା ଆସି ଓଳଗି ମେଲାଇଲା
ପିତା ଆମ୍ଭର କି କରୁ ଅଛନ୍ତି ବୋଇଲା ।
ଲୋମପାଦ ବୋଇଲେ ସେ ଅଛନ୍ତି କୁଶଳେ
ବରଷେ ପୂରିଲେ ଯାଏ ଯିବ ତାର ଆଳେ ।
ତୋହର କୁଶଳେ ପିତାର ଶୁଭକଥା
ବରଷକରେ ତୁହି ଦେଖିବୁ ସବୁ ମାତା ।
ପାର୍ବତୀ ବୋଇଲେ ଶୁଣ ହେ ଈଶାନ
କଥାଏ ରହିଲା କହିବ ମୋତେ ପୁଣ ।
ସେ ନନ୍ଦନ ବନକୁ ଶୁଭ କେହୁ ଦେଲା
ଏକସ୍ତରୀ ଗଣ୍ଡା ଯୁଗରେ ଅଗ୍ନି ଯେ ଭକ୍ଷିଲା ।
ଆଉ ବନମାନେ ଅଛନ୍ତି ଅନେକ
ସେ ମନରେ ମୌଷଧି ରହିଲା କିମ୍ପାଇଁ ତ ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ସେ ବନକୁ ଶୁଭଦେଲେ ବେଦପତି ।
ଯତନେ ବନଗୋଟି କରିବାର ପାଇଁ
ନିର୍ମଳ ସ୍ଥାନ ଦେଖିଣ ଇନ୍ଦ୍ର ବିଚାରଇ ।
ବୋଇଲା ଏ ସ୍ଥାନରେ କରିବି କାନନ
ବିଚାରିଲା ବେଳେ ତାକୁ ଚତୁର୍ଥ ଚନ୍ଦ୍ର ଜାଣ
ବୃହସ୍ପତି ସପ୍ତମ ଚନ୍ଦ୍ରରେ ଦେବଗଣ
ସୁରରାଜା ବିଚାର କଲା ଯେ ବେଳେଣ ।
ଐରାବତ ଚଢିବେଗେ ତହୁଁ ଗଲା
ଯଶୋବନ୍ତୀ ପୁରରେ ପ୍ରବେଶ ହୋଇଲା ।
ଦେଖିଲା ଶତେମୁଖା ବେଦବରପୁଣ
ଓଳଗି ମେଲାଇ ଗଲା ସୁରରାଣ
କଥାଏ ବିଚାରିଛି ଯିବ ଯେ ଆପଣ ।
ସ୍ୱର୍ଗରେ ଚାରିବରେ କରିବାକୁ ଇଚ୍ଛା
ତୁମ୍ଭେ ଶୁଭଦେଲେ ମୋର ପୂରିବ ମନୋବାଞ୍ଛା ।
ଶୁଣିଣ ବେଦବର କଲେକ ଗମନ
ସେ ସ୍ଥାନରେ ପ୍ରବେଶ ହୋଇଲେ ବହନ ।
ପ୍ରଥମେ ନନ୍ଦନ ବନକୁ ଶୁଭଦେଲେ
ଦେବଗଣ ବୃହସ୍ପତି ଅଛନ୍ତି ତାଙ୍କ ତୁଲେ ।
ନନ୍ଦନ ବନରୁ ଗଲେକ ଶୁଭଦେଇ
ଖାଣ୍ଡବବନ ବୋଲି ବୋଲେ ସାବିତ୍ରୀ ସାଇଁ
ସେଠାରୁ ବେଦବର ଫେରିଣ ଯେ ଗଲେ
ନିଜ ନବରେ ଯାଇ ପ୍ରବେଶ ହୋଇଲେ ।
ସାବିତ୍ରୀଦେବୀ ଆସି ମାନ୍ୟଧର୍ମ କଲେ
ଗାୟତ୍ରୀ ଅଶଉଚ ସକାଶେ ନ ଆସିଲେ ।
ବେଦବର ପଚାରିଲେ ସାବିତ୍ରୀଙ୍କି ପୁଣ
ଜ୍ୟେଷ୍ଠ ସପତଣୀ ଗୁପତ କିମର୍ଥେଣ ।
ସାବିତ୍ରୀ ବୋଇଲେ ଆଜ ନ ଚାହେଁ ତୁମ୍ଭମୁଖ
ତାହାଙ୍କର ଶରୀର ଆଜ ହୋଇଛି ଭେଦଦୁଃଖ ।
ଏ ସକାଶେ ଦେବୀ ନ ଚାହେଁ ତୁମ୍ଭ ବଦନ
ଶୁଣିଣ ବେଦବର ବିଚାର କଲେ ମନ ।
ଭାବିଲେ ବନରେ ପ୍ରମାଦ ପଡ଼ିବ
ମନେକଲେ ଥରେ ଲେଖାଏଁ ଦହିର୍ଯ୍ୟ ହୋଇବ ।

ଆରବେଳେ ଷୋଳ ଯୁଗେ ପଡ଼ିବ ବିପତ୍ତି
ସେ ବନକୁ ବୈଶାନର କରିବ ବିନସ୍ୱତି ।
ଏ ବନ ଦହିଲା ବେଳେ କରିବ ଦୟାଦେବ
ଦହନ ସରିଲେ ବନ ପୂର୍ବବତ ହେବ ।
ଆରବନ ଦହିର୍ଯ୍ୟରେ ସକଳ ଯିବ ନାଶ
ରୋପିଲେ ବନହେବ ନ ରୋପିଲେ ଶେଷ ।
ଏମନ୍ତ ବିଚାର କଲେକ ବେଦବର
ସେ କଥା ପ୍ରାପତ ହେଲା ଏବେ ବନର ।
ଏଥୁ ଅନନ୍ତରେ ଶୁଣ ଜମା ଦେବୀ
ବାଚସ୍ପତି ଭୁବନେ ବିଜୟ ଇନ୍ଦ୍ର ବେଗି ।
ଦାସୀମାନେ ଆସିଣ ଇନ୍ଦ୍ରକୁ ଘେନିଗଲେ
ଶଚୀ ନ ଆସିବାରୁ ଇନ୍ଦ୍ର ପଚାରିଲେ ।
କିମ୍ପାଇ ଆଜ ଦେବୀ ନ ଆସେ ମୋର ପାଶ
ହରଷ ଦିନରେ କିମ୍ପା ହୋଇଛି ବିରସ ।
ଦାସୀମାନେ କହିଲେ ଅଶଉଚ ସେହି
ଚାରିଦିନ ପର୍ଯ୍ୟନ୍ତେ ତୁମ୍ଭ ମୁଖ ନ ଚାହିଁ ।
ଶୁଣିଣ ସୁରରାଜା ହୋଇଲେ ଅଜ୍ଞାନ
ବୋଇଲେ ଅକାରଣ ହୋଇଲା ଆଜଦିନ ।
ଦୁଇବନ ଅନୁକୂଳ ବିଅର୍ଥ ହୋଇଲା
ଦୁଇବନ ଦହିବ ବୈଶାନର ପରା ।
ତାକୁ ଆଜି ଶୁଭଦିନ ମୋତେ ଯେ ଅଶୁଭ
ଏମନ୍ତ ବୋଲି ମନରେ ଭାବିଲେ ସୁରଦେବ ।
ବେଳକୁ ଏଥିରେ ବିପତ୍ତି ଅଛି ଜାଣ
ଶୁଣିଣ ପାର୍ବତୀ ହୋଇଲେ ତୋଷମନ ।
ଏମନ୍ତ ପ୍ରକାରେ ନନ୍ଦନ ବନ ଗତି
ସଦାଶିବ କହିବାରୁ ଶୁଣିଲେ ପାର୍ବତୀ ।
ପାର୍ବତୀ ବୋଇଲେ ସେଠାରୁ କିସ ହେଲା
ଈଶ୍ୱର ବୋଇଲେ ଏଠାରୁ ଏଗାରମାସ ଗଲା ।
ଲୋମପାଦ ରାଜା ହରଷ ମନହେଲା
ପାତ୍ର ମନ୍ତ୍ରୀ ସାମନ୍ତ ଋଷିଙ୍କି ଡାକିଲା ।
ବୋଇଲା କାଳଶେଷ ହୋଇଲା ଆସି ପୁଣ
କେମନ୍ତେ ବିଭାଣ୍ଡକ ତନୟ ଆସେ ଜାଣ ।
ପାତ୍ର ମନ୍ତ୍ରୀ ବୋଇଲେ ଶୁଣ ହେ ରାଜନ
ସେ କଥାରେ ତତପର କର ହେ ଆପଣ ।
ଡକାଅ ଚାରଗଣଙ୍କୁ ବୁଲନ୍ତୁ ନଗ୍ରରେ
କିଏ ଆଣିଦେବ ବିଭାଣ୍ଡକର କୁମରେ ।

ଶୁଣିଣ ନ ପବର ଭଣ୍ଡାର ଫେଡ଼ିଲା
ହୀରା ମାଣିକ୍ୟ ଚୁଡ଼ୀ ଭଣ୍ଡାରୁ ଅଣାଇଲା ।
ସୁବର୍ଣ୍ଣ ଚାଙ୍ଗୁଡାରେ ପୂରାଇ ଚାରିଚୂଡ଼ୀ
ତହିଁ ରଖିଲା ଦୁଇଟି ଅମଳାଣ ଶାଢ଼ୀ ।
ପଞ୍ଚବର୍ଣ୍ଣ ଫୁଲ ଗଭା ସେଥିରେ ଭରିଲା ।
କାଞ୍ଚନ ରତ୍ନମାଳା ସେଥିରେ ଥୋଇଲା ।
ଆଗରେ ବାଜା ବାଜେ ପଛରେ ଚାଙ୍ଗୁଡ଼ି
କଟକରେ ବୁଲିବାରେ ପଡ଼େ ହାଲହୋଳି ।
ବିଭାଣ୍ଡକ କୁମର ଋଷ୍ୟଶୃଙ୍ଗ ଜାଣ
କେ ଆଣିଦେବ ତାକୁ ନିଅ ରତ୍ନ ପୁଣ ।
ଶୁଣିଣ ଅନେକ ସ୍ତିରୀ ପଛରେ ଗୋଡାଇଲେ
ବିପରୀତ ବାଣୀ ଶୁଣି ଫେରିଣ ଅଇଲେ ।
ନବଯୁବା ପୁରୁଷେ ପଚାରିଲେ ଯାଇ
କିସ ଅର୍ଥେ ବାଜାବାଜେ ଆଗେ କହ ତୁହି ।
ବାଜନ୍ତରୀ ବୋଇଲେ ଶୁଣ ମୋର ବାଣୀ
ଚମ୍ପାବତୀ ଦେଶରାଜା ଆଜ୍ଞା ଦେଲେ ପୁଣି ।
ବୋଇଲେ ବିଭାଣ୍ଡକ ତନୟ ଋଷ୍ୟଶୃଙ୍ଗ
ସେ ଋଷିଙ୍କି ଯେ ଆଣିଦେବ ଅଳଙ୍କାର ନେବ
ଋଷ୍ୟଶୃଙ୍ଗ ଆସିଲେ ଏ ରାଜ୍ୟ ଭଲହେବ ।
ମେଘବୃଷ୍ଟି କରିବ ଦୁର୍ଭିକ୍ଷ କ୍ଷୟଯିବ ।
ଶୁଣିଣ ଯେ ପୁରୁଷ ଆଶ୍ଚର୍ଯ୍ୟିତ ହେଲେ
ଏହିକଥା ଆମ୍ଭ ହସ୍ତେ ନୁହଁଇ ବୋଇଲେ ।
ବୁଧଜନମାନେ ପଚାରିଲେ ଆସି
ଆଶ୍ଚର୍ଯ୍ୟିତ କଥା ଶୁଣି ନ ନେଲେ ଭରସି ।
ନୂତନ ସ୍ତିରୀମାନେ ପଛରେ ଗୋଡ଼ାବନ୍ତି
ଆନନ୍ଦ ହୋଇଣ ହୁଳହୁଳି ଦ୍ୟନ୍ତି ।
ଆଗରେ ବାଜନ୍ତରୀ ପଛରେ କଟୁଆଳ
ରତ୍ନ ଚାଙ୍ଗୁଡ଼ା ଘେନି ବୁଲଇ ନଗ୍ରପୁର ।
ଗ୍ରାମ କନ୍ଦି ବିକନ୍ଦି ହାଟ ବାଟ ଜାଣ
କେହି ନ ବୋଇଲେ ଯିବ ଯେ ମୁହିଁ ପୁଣ ।
ବିରସ ମନ କରି ଫେରିଣ ଆସନ୍ତି
ବଡ଼ଦାଣ୍ଡ ଭିତରେ ଯାଇଣ ବୁଲନ୍ତି ।
ସମସ୍ତେ ବିଚାରିଲେ ଏକଥା ହେଲା ଛନ୍ଦ
କେଉଁଠାରେ ଛନ୍ତି ବିଭାଣ୍ଡକର ତନୁଜ ।
ଏମନ୍ତ କୁହା କୁହି ହୁଅନ୍ତି ସକଳ
ବିରସ ମନ କରି ଫେରିଲା କଟୁଆଳ ।

ନଟକାରୀ ସାଇରେ ପଶିଲେ ଯାଇକରି
ଦେଖିଣ ବଜାନ୍ତରୀ ବଜାନ୍ତି ବେଗକରି ।
ଦେଖିଣ ନଟକାରୀମାନେ ଯେ ପଚାରି
କିମ୍ପାଇଁ ଘୋଷଣା ଦେଉଛ ରାଜ୍ୟ ଫେରି ।
କଟୁଆଳ ବୋଇଲେ ରାଜା ଆଜ୍ଞା ଦେଲେ
ଋଷ୍ୟଶୃଙ୍ଗ କେ ଆଣିବ ପଚାର ଯାଇ ଭଲେ ।
ତିନିସସ୍ର ନଟକାରୀ ପଚାରି ଫେରିଗଲେ
ଧନର ଲୋଭରେ କିଏ ପଛେ ଗୋଡାଇଲେ ।
ଏମନ୍ତେ ନଟକାରୀ ସାଇରେ ଯାଇ ଫେରି
ଜରତା ଆଗରେ କହିଲେ ଦାସୀ ଫେରି ।
ରାଜା ଧେଣ୍ଡୁରା ଫେରାଏ ରାଜ୍ୟରେ ଆମ୍ଭର
ଡାକୁଆ ଡାକୁଅଛି ଆଗରେ ତାହାର ।
ବୋଲଇ ବିଭାଣ୍ଡକ ତନୟ ଋଷ୍ୟଶୃଙ୍ଗ
ତାଙ୍କୁ କେ ଆଣିଦେବ ରତ୍ନ ନିଅ ବେଗ ।
ଦାସୀଙ୍କଠାରୁ ଏପରି ବାରତା ଶୁଣିଣ
ଆନନ୍ଦ ହୋଇଲେ ଦୁଇଭଗ୍ନୀ ଜାଣ ।
ବେଶ ଭୂଷଣ ସେ ହେଲେ ତତ୍‌କାଳ
ଅମଳାଣ ଶାଢ଼ୀ ଦିବ୍ୟ କାଞ୍ଚୁଲା ହୃଦର ।
ଅଳତା ମଥାମଣି ଯୁଡା ଫୁଲଗଭା
ବିଦମୁଦି ବାହୁଟି ତାଡ଼ ଯେ ଚୂଡ଼ି ପ୍ରଭା ।
ମଲ୍ଲୀକଢ଼ୀ ଫାସିଆ ଫିରିଫିରା କାପ
ରତ୍ନଗୁଣା ସିନ୍ଧୁଫଳ ନୋଥ ଭିନ୍ନ ରୁପ ।
ପାହୁଡ ଝୁଣ୍ଟିଆ ବଳା ଖୁଣ୍ଟିଆ ମେଖଳା
ବେଶହୋଇ ଦୁଇଭଗ୍ନୀ ଦିଶିଲେ ବଡ଼ ତ୍ୱରା ।
ତାମ୍ବୁଳ ଭୁଞ୍ଜିଣ ଧୀରେ ଧୀରେ ଚାଲିଗଲେ
ଅତି ଉସତ ହୋଇଣ ଦାଣ୍ଡେ ଉଭା ହେଲେ ।
ବାରହ କାମିନୀ ସଙ୍ଗେ ଛନ୍ତି ପୁଣ
ମନେ ମନେ ହସନ୍ତି ଅପାଙ୍ଗ ଢାଳିଣ ।
ଏମନ୍ତ ସମୟରେ ଢାକୁଆ ଡାକ ଦେଲା
କେଉଁନାରୀ ରତ୍ନ ନେବ ବେଗେ ଆସ ଭଲା ।
ତାର ପଛେ ବଜାନ୍ତରୀ କରନ୍ତି ଶବଦ
ବୋଲନ୍ତି ରାଜ୍ୟର ଶୁଭ କରିବ ନାରୀବୃନ୍ଦ ।
ପଛରେ କଟୁଆଳ ରତ୍ନ ଚାଙ୍ଗୁଡ଼ା ଧରି ଚଳି
ଜରତା ବୋଇଲା ଆହେ ରହ ହେ ସମ୍ଭାଳି ।
କି କାରଣେ ବୁଲୁଅଛ କହ ତା ବୁଝାଇ
କିମ୍ପାଇ ରାଜା ତୁମ୍ଭଙ୍କୁ ଫେରାଏ କଟକାଇ ।
କଟୁଆଳ କହିଲେ ରାଜା ଆଜ୍ଞାଦେଲେ
ଚମ୍ପାବତୀ କଟକରେ ଘୋଷଣା ଦିଅ ଭଲେ ।
ବିଭାଣ୍ଡକ କୁମର ଋଷ୍ୟଶୃଙ୍ଗ ଜାଣ
କିଏ ଆଣିଦେବ ବୁଝହେ ଯାଇଣ ।
ଦୁଇ ଲକ୍ଷ ସୁନିଆଁର ଅଳଙ୍କାର ଦେଲେ
ଯେ ଋଷିଙ୍କି ଆଣିଦେବ ସେ ନେବବୋଇଲେ ।
ଜରତା ବୋଇଲା ଯେବେଆସିବେ ଋଷ୍ୟଶୃଙ୍ଗ
ରାଜାର କିସ କାର୍ଯ୍ୟ କରିବ କହ ବେଗ ।
କଟୁଆଳ ବୋଇଲା ଋଷ୍ୟଶୃଙ୍ଗ ଆସିଲେ
ମେଘ ବୃଷ୍ଟି କରିବ ଏ ରାଜ୍ୟରେ ଭଲେ ।
ଜରତା ବୋଇଲା ଏହା କେମନ୍ତେ ଜଣାଗଲା
କଟୁଆଳ ବୋଇଲେ ଶୁଣ ଅପସରା ।
ଯେତେବେଳ ରାଜାଙ୍କୁ ଶାପଦେଲେ ବ୍ରାହ୍ମଣ
ବୋଇଲେ ବାରବର୍ଷ ନ ବର୍ଷିବ ଘନ ।
ଋଷ୍ୟଶୃଙ୍ଗ ଅଇଲେ ବରଷିବ ଘନ
ବାରବର୍ଷ ଗଲେ ବିଚାରିବୁ ହେ ରାଜନ ।
ନିଅ ରତ୍ନ ଚାଙ୍ଗୁଡ଼ି ପୂରୁ ତୋ ମନୋରଥ
ଦେହରେ ପିନ୍ଧିଲେ ଦିଶିବୁ ଦେବୀର ସଂଜାତ ।
ଦେଖିକରି ନିଅ ଯେତେକ ଆଯେଦାଯେ
ପଛନ୍ତେ ଏକଥାଟି ପଡ଼ିବଟି ନାଯେ ।
ଶୁଣିଣ ଜରତାବୋଲେ ଘୋଡ଼ଣି ବେଗେକାଢ
ଶୁଣିଣ କଟୁଆଳ ଥୋଇଲା ଦାଣ୍ଡର ।
ଅମଳାଣ ଶାଢ଼ୀ ଯେ ଉପରୁ କାଢ଼ିଦେଲା
ଚାରିମୁଠି ଚୁଡ଼ିଅଛି ଜରତା ଦେଖିଲା ।
ବିଦିମୁଦି ବାହୁଟି ତାଡ଼ ନାନାରତ୍ନ ହାର
ରତନ କାଞ୍ଚୁଲା ହୀରା ବସିଛି ମାଳର ।
ଆୟ ଅଳଙ୍କାର ଦେଇଛି ରାଜା ପୁଣ
ଲଗାଇଲେ ମୋହିତ ହୋଇବେ ଋଷିଗଣ ।
ଦୁଇ ସହସ୍ର ସୁନିଆଁ ତହିଁରେ ଅଛଇଁ
ଦୁଇଗୋଟି ଅମଳାଣ ଶାଢ଼ୀ ଯେ ଅଛଇଁ ।
ଦେଖିକରି ଜରତା ଚାଙ୍ଗୁଡ଼ା ଧଇଲା
ରାଜାଙ୍କୁ କହ ଯାଇ ବୋଲିଣ ବୋଇଲା ।
ରାଜା ଲୋଡାକଲାବେଳେ ଘେନିଯିବେ ମୋତେ
ଏତେ କହି ରତ୍ନ ଚାଙ୍ଗୁଡ଼ା ନେଲାକ ତ୍ୱରିତେ ।
ଦେଖି କଟୁଆଳ ଆନନ୍ଦମନ କଲା
ନିଶ୍ଚୟ ଏ ରାଜ୍ୟର ସୁସମୟ ହେଲା ।

ବାଜନ୍ତରୀ ଡାକୁଆ କଟୁଆଳ ତିନି
ବେଗେ ଚଳିଗଲେ ହରଷ ହୋଇ ପୁଣି ।
ରାଜାର ଆଗରେ ଯାଇ ହୋଇଲେ ପ୍ରବେଶ
କରଯୋଡ଼ି ରାଜାଆଗେ କହିଲେ ସନ୍ଦେଶ ।
ଦାଣ୍ଡ ହାଟ କନ୍ଦି ବିକନ୍ଦି ବୁଲିଲୁଁ
ସେଥିରେ ସଞ୍ଚାର କିଛି ନ ପାଇଲୁ ।
ନଟକାରୀଙ୍କ ପାଶରେ ପ୍ରବେଶ ହେଲୁଁ ଯାଇ
ଅନେକ ନଟକାରୀ ପଚାରିଲେ ତହିଁ ।
କହିବାରୁ ସମସ୍ତେ ହୋଇଣ ମତିଭଗ୍ନ
ଧନ ରତ୍ନ ଦେଖିଣ ମନରେ ଲୋଭ ପୁଣ ।
ସେଠାରୁ କିଛିଦୂର କଲୁଟି ଗମନ
ବାଟରେ ଓଗାଳିଲେ ଜରତା କନ୍ୟାପୁଣ ।
କାମମୋହିନୀ ସଙ୍ଗରେ ଅଛଇଁ ତାହାର
ଆବର ବାର ବନିତା ଅଛନ୍ତି ସଙ୍ଗର ।
ବୋଇଲା ଋଷ୍ୟଶୃଙ୍ଗଙ୍କୁ ଆଣିଦେବି ମୁହିଁ
ଏତେବୋଲି ରତ୍ନ ଚାଙ୍ଗୁଡ଼ା ଘେନିଯାଇ ।
ଜଗତ ମୋହିପାରେ ସେ ମୋହିନୀ ପୁଣ
ତା ସଙ୍ଗେ କାମମୋହିନୀ ତାକୁ ଶତେଗୁଣ ।
ବାରହ ବନିତା ତାହାର ସଦୃଶ
କି କହିବି ରୂପରାଶି ଦେଖିଲେ ହେବ ବସ ।
ଅଳପ ବୟସ ନୂତନ ନବଯୁବା
ମୁନିମାନେ ଦେଖିଲେ କାମେ ହେବେ ଲୋଭା ।
ଶୁଣିଣ ରାଜନ ସନ୍ତୋଷମନ ହେଲା
ସେ ନାରୀମାନଙ୍କୁ ଡାକି ଆଣ ହେ ବୋଇଲା ।
ଶୁଣିକରି କଟୁଆଳ ବେଗେ ଚଳିଗଲା ।
ଜରତା କନ୍ୟା ଦ୍ୱାରେ ପ୍ରବେଶ ହୋଇଲା ।
ବୋଇଲା ଅପସରୀଏ ଶୁଣ ମୋର ବାଣୀ
ରାଜନ ଶୁଣିଣ ସନ୍ତୋଷ ମନପୁଣି ।
ବୋଇଲେ ମୋର ପାଶକୁ ବେଗେ ତାକୁଆଣ
ହରଷେ ଆଜ୍ଞାଦେଲେ ଚମ୍ପାବତୀ ରାଣ ।
ଶୁଣିଣ ଜରତା କାମ ମୋହିନୀ ପୁଣ
ବାରବନିତାଙ୍କୁ ଘେନି ବେଶ ତତକ୍ଷଣ ।
ବେଶ ହୋଇ ବାହାର ହୋଇଲେ ସକଳ
ରାଣୀହଂସପରି ଦିଶିଲେ ମଞ୍ଜୁଳ ।

ଗଜପ୍ରାୟେକ ଗମନ କରେ ଧୀର ଧୀର
ରାଜହଂସ ପରାଏ ଗମନ କାହାର ।
ଚରଣେ ପାଦୁକାମାନ ଲଗାଇ ସର୍ବେ ଜାଣ
ପ୍ରବେଶ ହୋଇଲେ ରାଜାଙ୍କ ଆଗେଣ ।
ଦେଖିଣ ନୃପତି ପରମ ତୋଷ ହେଲେ
ନିଶ୍ଚୟ ଆଣିବେ ଏହୁ ମନେ ବିଚାରିଲେ ।
ରାଜନ ପଚାରିଲେ କହ ରମ୍ୟନାରୀ
ତୁମ୍ଭର କ୍ରୋଧରେ କି ଆସିବେ ବ୍ରହ୍ମଚାରୀ ।
ଆଣିଲେ ବହୁତ ସୁଖ ଉପୁଜିବ
ସେ ଅଇଲେ ଏ ରାଜ୍ୟରେ ବରଷା କରିବ ।
ହରଷରେ ଅଣାଇବ କହିଲି ସନ୍ଦେଶ
ବିରସ ହେଲେ ସକଳେ ହୋଇବ ବିନାଶ ।
କୁଶଳରେ ଅନେକ କାର୍ଯ୍ୟ ସେ କରିବ
ବିରହ ହେଲେ ଋଷି ଏ ପୁର ଜାଳି ଦେବ ।
ଅର୍ଦ୍ଧେ ଜୀବନ ଘେନି ଆମ୍ଭେ ଅଛେ ରହି
ଆହାର ନ ମିଳଇ ଜଳ ଯେ ନପାଇ ।
ସେ କଥାକୁ ନ୍ୟାୟଭାବେ ଆଣିବ ବ୍ରହ୍ମଚାରୀ
ତେବେ ସେ ପ୍ରଶଂସା ପାଇବ ସର୍ବନାରୀ ।
ରାଜାର ବଚନ ଶୁଣି ଜରତା କହେ ବାଣୀ
କେତେଦୂର ପଥ ଯେ କହ ନୃପବାଣୀ ।
ଗହଳରେ ଧାଟ ଯେ ନଯିବ ସ୍ଥାନକୁ
ଆମ୍ଭମାନଙ୍କ ବେଗରେ ନଦେଖେ କାହାକୁ ।
ପୁରୁଷ ଦେଖିଲେ ପୁଣି ସେ ଋଷି ବିଚାରିବ
ଅବିଗୁଣ ପାଇ ଅବା ସେ ଋଷି ନ ଆସିବ ।
ଏ କଥାକୁ ବିଚାର କର ହେ ରାଜ୍ୟେଶ୍ୱର
ଆମ୍ଭେ କି କହିଁବୁ ତୁମ୍ଭେ ଆମ୍ଭର ଈଶ୍ୱର ।
ଲୋମପାଦ ବୋଇଲେ ଶୁଣ ନାରୀବର
ଋଷିଙ୍କ ଆଶ୍ରମେ ଅଟେ ଶତେଯୁଣ ଦୂର ।
କଉଶିକ ବନରେ ଅଛଇଁ ବ୍ରହ୍ମଚାରୀ
ଅଗମ୍ୟ ଲତା ସେ ଯେ ଗମନ ନୁହେ କରି ।
ଜନ ମନୁଷ୍ୟ ସେଠାରେ ଆଉନାହିଁ ଦେଖା
ପଶୁ ଜୀବମାନେ ଯେ ମେରୁ ଗିରି ଶାଖା ।
ପିତା ତାର ବିଭାଣ୍ଡକ ତପରେ ନିର୍ଜିତା
ଅବିଗୁଣ ପାଇଲେ ଦେବତା ନୁହେ ଶାଖା ।

ଗୁପତେ ଆସିଲେ ଆସିବ ଋଷି ପୁଣ
ଜରତା ବୋଇଲା ଶୁଣ ହେ ରାଜନ ।
ସେ ଋଷି ଆସିବାର ବଡ଼ କଷ୍ଟ ଜାଣ
ମୋହର ବିଚାର ଯେବେ କରିବ ରାଜନ ।
ଶତେକ ଯୁଣ ଯେବେ ଅଗମ୍ୟ ଲତା ପୁଣି
ଆମ୍ଭେ ଚାଲି ଯାଇ ଯେ ନପାରୁ ନୃପମଣି ।
କଣ୍ଟା ଖୁଣ୍ଟ ଶାର୍ଦ୍ଦୁଳ ଅନେକ ନାଗବଳ
ଆମ୍ଭଙ୍କୁ ଦେଖିଲେ ଯେ ପୂରାଇବେ କାଳ ।
ସରଯୁ ନଦୀ ଧାରା ଅଛି କି ସେଠାକୁ
ବୁଝିଲେ ଚାପ ସଜ କରିବା ଯିବାକୁ ।
ରାଜନ ବୋଇଲେ ଆମ୍ଭେ ବେଳହୁଁ ବିଚାରି
କନ୍ଧ ପଠାଇଣ ଯେ ଋଷିଙ୍କି ଠାବକରି ।
ନଦୀର କୂଳେ କୂଳେ ଆସିଣ ହେଲେ ମେଳ
ରାଜ୍ୟର ପଶ୍ଚିମଭାଗେ ତୁଠ ଯେ ନିର୍ମଳ ।
ସେ ତୁଠରେ ଉଠିଣମୋତେ ଦେଖାଦେଲେ
ସକଳ କଥା ମୋତେ ମଣାଇଁ କହିଲେ ।
ତାହାଙ୍କର କଥାକୁ ପ୍ରତେ ଗଲା ମନ
ସବୁଦିନ ସେ ଯେ ବନର ମୋକ୍ଷପାନ ।
ଶୁଣିଣ ଜରତା ପରମ ତୋଷ ହେଲା
ଷଡ଼ଗୋଟି ବଡ଼ ନାବ ଅଣାଅ ବୋଇଲା ।
ଦୁଇ ନାବ ଏକଚାପ କରିବ ଭିଆଣ
ତିନିଗୋଟି ଚାପ ଏବେ କର ତିଆରଣ ।
ଏତେକହି ଜରତା ମଉନ ଭାବ ହେଲା
ବଳରାମ ଦାସ ତା ପଛରେ ବିଚାରିଲା ।
କଳିଯୁଗେ ନିଳାଞ୍ଚଳେ ବିଜେ ଜଗନ୍ନାଥ
ସେହି ମୋତେ କହିବାରୁ ଲେଖିଲିରାମ ଚରିତ ।
ଏଥୁଅନନ୍ତରେ ଶୁଣ ଶାକମ୍ଭରୀ
ଜରତା କନ୍ୟା ଯେ ରାଜାଙ୍କୁ ତିଆରି ।
ବୋଇଲେ ତିନିନାବ ଯତନେ ନିର୍ଭାହେବ
ତହିଁପରେ ରୁଅଶେଣି ଚନ୍ଦନ କାଠ ଥିବ ।
ଚୂଆ ଅତର ସୁବାସ ଘଷିବ ସେଥିରେ
ଉପରେ ଧବଳ ଶାଢ଼ୀ ଦେବ ଯତନରେ ।
ତଳେ ପିତୁଳା ଲେଖିଥିବ ଯେ ସେଥିରେ
ଚିତ୍ରପଟ ଲେଖା ଯେ ହୋଇବ ଭିତରେ ।
ଏକ ନାବେ ପଲ୍ୟଙ୍କ ସୁପାତି ଥିବ ପୁଣ
ଦୁଇନାବେ ନାନାବର୍ଣ୍ଣେ ଥିବ ଦ୍ରବ୍ୟମାନ ।
କଦଳୀ ନଡିକାଳ ଆମ୍ବ ଯେ ପଣସ
ପଣା ପଇଡ଼ ଯେ ନବାତ କନ୍ଦରସ ।
ଲେମ୍ବୁ, ନାରଙ୍ଗ, କମଳା, ଟଭା ପୁଣ
ନାନାବର୍ଣ୍ଣରେ ଫଳ ସେଥିରେ ଥିବ ଜାଣ ।
ହାଣ୍ଡି ତଣ୍ଡୁଳ ଯେ ବ୍ୟଞ୍ଜନକୁ ନାନାଦ୍ରବ୍ୟ
ଘୃତ ସର ଲବଣୀ ଗୋଧନ ଦଧିଭାଣ୍ଡ ।
ଚନ୍ଦ୍ର ଦୀପ ଦିହୁଡ଼ି ଅନେକ ଥିବ ପୁଣ
ମାଣିକ୍ୟରେ ମୋତି ଯେ ଜଳିବ ଅନୁକ୍ଷଣ ।
କସ୍ତୁରୀ ଅଗୁରୁ କର୍ପୁର ଚନ୍ଦନ
ନାନାବର୍ଣ୍ଣେ ବାସ ଫୁଲ ସେଥିରେ ଥିବ ପୁଣ ।
ଅମଳାଣି ପତନୀ ଦେବଙ୍କୁ ଯେହୁ ଶୋଭା
ଲୋଟଣୀ ରଙ୍ଗରେ ହୋଇଥିବ ଫୁଲ ଗଭା ।
ଦେଖିଲେ ମୋହ ମନ ଖାଇଲେ ହେବେ ବଶ
ତେବେ ସିନା ଆସିବ ବିଭାଣ୍ଡକ ଶିଷ୍ୟ ।
ବାରଗୋଟି ନାଉରୀ ଆହୁଲା କାତ ଘେନି
ସରଜୁ ନଦୀରେ ନାବ ଚାଳିବେ ଧୀରେ ପୁଣି ।
କଇବର୍ତ୍ତ ସମସ୍ତେ ହୋଇବେ ସ୍ତିରୀବେଶ
କେହି ପୁରୁଷ ବେଶେ ନଯିବେ ତାଙ୍କ ପାଶ ।
କଟକ ଚିତ୍ରପଟ ଲେଖିଣ ଉଜକର
ଠାବେ ଠାବେ ଛାମୁଣ୍ଡିଆ କର ନୃପବର ।
ମଙ୍ଗଳ ଉଛବ କର ନଗ୍ରରେ ତୋହର
ତେବେ ସିନା ଅନୁକୂଳ କରିବା ବେଭାର ।
ତର ତର ନୋହିଲେ କାର୍ଯ୍ୟ ନୁହଇ ଭଲ
ବିଚାର ସଇଲେରେ କାର୍ଯ୍ୟ ନିର୍ଭାକର ।
ସେ ଆସିଲେ ରାଜ୍ୟସୁଖ କୁଳ ହେ ଉଜ୍ଜ୍ୱଳ
ସେଥିରେ ପରିଶ୍ରମ ହେବାରେ ସବୁ ଭଲ ।
ସକଳ ଦେବତାଙ୍କୁ କରାଅ ଭଜ ଯାଇଁ
ବିଷ୍ଣୁ ପ୍ରତିମାମାନଙ୍କୁ ଅମୃତ ଭୋଗଦେଇ ।
ଶିବଙ୍କ ଶିରରେ ନେଇ ଗୋକ୍ଷୀରକୁ ଢାଳ
ତଣ୍ଡୁଳ ବେଲ ପତ୍ରିକି ଦିଅ ମସ୍ତକର ।
ଦେବୀମାନଙ୍କୁ ମାଜଣା କରାଅ ବହନ
ବୋଦା ଛାଗଳ ଦେଇଣ ତୋଷ ତାଙ୍କ ମନ ।
ନଟକାରୀ ନର୍ତ୍ତକୀ ଡକାଇ ଆଣ ପୁଣ
ବାଦ୍ୟକାର ଦୁନ୍ଦୁଭି ଶବ୍ଦ କରନ୍ତୁ ପୁଣ ।



# ଆଦ୍ୟକାଣ୍ଡ ୭ଯ

ପାର୍ବତୀ ବୋଇଲେ ଦେବ ଶୁଣହେ ଈଶାନ
ଜରତା ପରା ଗଲା ଋଷିଙ୍କ ଭୁବନ ।
ସେ ପୁଣି କିସ କଲେ କହ ମୋହ ଆଗ
ତେବେ ମୋର ମନେ ଯେ ହୋଇବ ସଦଭାବ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣଗୋ ଭଗବତୀ
ଜରତା ସଙ୍ଗେ ଗଲେ ତୋର ସତୀ ଝଟତି ।
ଏକଚାପେ ବସିଲେ ସକଳ କାମିନୀ
ହର୍ଷରେ ନୃତ୍ୟକରେ ମନମୋହିନୀ ପୁଣି ।
ଗାଉଣା ବାଜଣା ଯେ ନାଚିବାର ସଙ୍ଗ
ଭ୍ରୂଲତା ଭାଙ୍ଗି ବକ୍ର କରିବାର ବ୍ୟଙ୍ଗ ।
ଚାତୁରୀ ମାଧୁର୍ଯ୍ୟରେ ନୟନ ବୁଲାଇ
ହସ୍ତକ ଦେଖାଇ ତାକୁ ଭୁଲିବା ମତିଦେଇ ।
ନାନାରଙ୍ଗେ ଗୀତଗାଇ ଯେ କରନ୍ତି ନାଟରଙ୍ଗ
ଶବଦ ଭେଦରେ ଆକାଶ ହୋଏ ରଙ୍ଗ ।
ଆକାଶୁଁ ପୁଷ୍ପ ବୃଷ୍ଟି ହୋଇଲାକ ପୁଣ
ଜଳ ବରଷିଲା ପ୍ରାୟେ ପଡ଼ଇ ପୁଷ୍ପ ଜାଣ ।
ନାଉରିଆ ଡାକଦେଲେ ଶୁଣହେ ଅପସରୀ
ଶୂନ୍ୟରୁ ପୁଷ୍ପ ବୃଷ୍ଟି ହୁଏ ଦେଖାଗୋ ଚତୁରୀ ।
ଶୁଣିଣ କାମ ମୋହିନୀ ବାରଙ୍ଗେ ବନିତା
ସବୁ ନୃତ୍ୟ ରଖିଣ ମନରେ ହେଲେ ଶ୍ରୋତା
ତିନି ଚାପେ ବସିଲେ ଯାଇଣ ବାଣ୍ଟି ହୋଇ
ଦେଖିଲେ ଆକାଶରୁ ପୁଷ୍ପ ବୃଷ୍ଟି ହୋଇ ।
ଅମଳପଣ ପୁଷ୍ପ ହେ ସଉରଭ ବ୍ରତ
ଦେଖିଣ ଜରତା ଯେ ମନରେ ବିଚାରିତ ।
ବୋଇଲା ନିଶ୍ଚୟ ବାସୁଦେବ ଜାତହେଲେ
କହିଲେ ଦେବତା କିମ୍ବା ପୁଷ୍ପ ବୃଷ୍ଟି କଲେ
ଏମନ୍ତ ବିଚାରି ନାରୀ ଯେ ଆକାଶକୁ ଚାହିଁ
ବିଦ୍ୟାଧରୀ ଅପସରୀ ଶୂନ୍ୟରେ ଛନ୍ତି ରହି ।
ନୃତ୍ୟ ଗାନକରନ୍ତି ଯେ ଦେବଗଣଙ୍କର ଆଗେ
ଦୁନ୍ଦୁଭି ଶବଦ ଶୁଭୁଛି ଶୂନ୍ୟମାର୍ଗେ ।

ହରଷ ମନରେ ଯେ ଜରତା ଉଠିଲା
ବାରବନିତାକୁ ଘେନି ହୁଳହୁଳି ଦେଲା ।
ଆକାଶରେ ଥାଇ ଦେବେ ଡାକନ୍ତି ସୁନ୍ଦରୀ
ବେଗେ ଦେବତାଙ୍କୁ ତୁମ୍ଭେ କଷ୍ଟରୁ କରପାରି ।
ଋଷ୍ୟଶୃଙ୍ଗ ଅଇଲେ ଯେ ସବୁରି ଦେହ ଭଲ
ମର୍ତ୍ତ୍ୟପୁର ଜନ୍ମ ତୋର ସରିଲା ଏଥର ।
ମାସେ କୋଡ଼ିଏ ଦିବସେ ଆସିବୁ ସ୍ୱର୍ଗକୁ
ଋଷ୍ୟଶୃଙ୍ଗଙ୍କୁ ବେଗେ ଆଣ ଅଯୋଧ୍ୟା ନଗ୍ରକୁ ।
ଲେଉଟି ଚମ୍ପାବତୀ ନଗ୍ରକୁ ଦେଖିବୁଁ
କାମ ମୋହିନୀ ଘେନିଣ ସଂଗରେ ଆସିବୁ ।
ଏତେବୋଲି ଦେବତା ଶବଦ ଉଚ୍ଚେ କଲେ
ଶୁଣିଣ ଜରତା ଯେ ଆନନ୍ଦ ମନହେଲେ ।
ସେଦିନ ପଞ୍ଚଯୁଣ ପଥ ଗଲେ ବାହି
ମେଲା ପଥ ଅଟଇ ଲତା ବୃକ୍ଷ ନାହିଁ ।
କିଳାମାରି ନାବକୁ ଖଟାଇଲେ ପୁଣ
ମେଲାରେ ରାନ୍ଧଣା ଯେ କଲେ ସର୍ବ ଜନ ।
ଷଡ଼ରସ ଭୋଜନ କରିଣ କଲେ ଆଚମନ
ତାମ୍ବୁଳ ଭୁଞ୍ଜିଣ ନାବେ ବସିଲେ ବହନ ।
ନାବରେକେଉଁଆଳମାନେ ଚେତାରେ ରହିଲେ
କନ୍ୟାମାନେ ସେଥିରେ ଶୟନ ଯାଇକଲେ ।
ପାର୍ବତୀ ବୋଇଲେ ଦେବ ଶୁଣ ହେ ତ୍ରିଲୋଚନ
ଲୋମପାଦକୁ କହିଲେ ଦଶରଥ ରାଜନ ।
ଋଷ୍ୟଶୃଙ୍ଗ ବାରତା କହିବ ମୋତେ ପୁଣ
ଏବେ ଜରତା ଯାଉଛି ଋଷିଙ୍କି ଆଣିଣ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଠାକୁରାଣୀ
ଲୋମପାଦ ଗଲେ ଯେ ନବରେ ତାର ପୁଣି ।
ଆରଦିନେ ହରଷେ ପଠାଏ ଦୂତ ବେଗେ
ପାଞ୍ଚସାତ ଜଣକୁ ଦେଲା ଆଜ୍ଞା ସଂଗେ ସଂଗେ
ବୋଇଲା ବେଗେ ଯାଅ ଅଯୋଧ୍ୟା ନବର
ଦଶରଥଙ୍କ ଆଗରେ କରରେ ଗୋଚର ।

ବୋଲିବ ଋଷ୍ୟଶୃଙ୍ଗଙ୍କୁ ଆଣିବା ପାଇଁ ଯେ ଭେଦି
ଜରତା କାମମୋହିନୀ ଗଲେଣି ପୁଣି ବେଗି ।
ଏତେ ବୋଲି ଧନ ଯେ ଦେଲାକ ରାଜନ
ଚଳିଲେ ଚାରଗଣ ହୋଇଣ ପ୍ରସନ୍ନ ।
ଦଶଦିନେ ସେହି ପଥ ବେଗେ ଚଳିଗଲେ
ଅଯୋଧ୍ୟା କଟକରେ ପ୍ରବେଶ ହୋଇଲେ ।
ଦଶରଥଙ୍କୁ ଦେଖିଣ ଓଳଗିଲେ ପୁଣ
ବୋଇଲେ ମଇତ୍ର ହେ ଦେଖିଲ ତୁମ୍ଭେ ଜାଣ ।
ଋଷ୍ୟଶୃଙ୍ଗ ଆଣିବାକୁ ଗଲେଣି ଅପସରି
ଜରତା କାମମୋହିନୀ ସଙ୍ଗରେ ବାରନାରୀ ।
ତିନିଗୋଟି ଚାପରେ ଯେ ନାନା ଦ୍ରବ୍ୟଭରି
ସରଯୁ ନଦୀରେ ଚାପ ଚାଳିଲେ ଦଣ୍ଡଧାରୀ ।
ଶୁଣିଣ ଦଶରଥ ଆନନ୍ଦ ମନ ହେଲେ
ଅଇଲେ ବାରତା ମୋତେ କହିବ ବୋଇଲେ ।
ଖଡୁ ନୋଳି ଶାଢୀ ସନ୍ତୋଷରେ ଦେଲେପୁଣ
ଆନନ୍ଦରେ ଦୂତଗଣ ଗଲେକ ଫେରିଣ ।
ଚମ୍ପାବତୀ ରାଜ୍ୟରେ ସେ ହେଲେକ ପ୍ରବେଶ
ଲୋମପାଦ ରାଜା ଆଗେ କହିଲେ ବିଶେଷ ।
ବୋଇଲେ ତୁମ୍ଭ ଥାଳି ଘେନିଣ ଚଳିଗଲୁଁ
ଅଯୋଧ୍ୟା ନୃପତିଙ୍କୁ ବାରତା କହିଲୁଁ ।
ଆନନ୍ଦ ହୋଇମନେ ଅନେକ ତୋଷହେଲେ
ଅଇଲେ ମୋରଠାରେ ଆସିବ ବୋଇଲେ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
ଦଶରଥ ରାଜା ଯେ ବାର୍ତ୍ତା ଥାଏ ପୁଣ ।
ରହିକରି ଦୂତ ଯେ ଫେରିଣ ଅଇଲେ
କିସ ବିଚାର କଲା ପୁଛନ୍ତେ ରାଜ୍ୟେଶ୍ୱରେ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଦଶରଥ ରାଜାର ତୁମ୍ଭେ ଶୁଣ ଚରିତି ।
ଖବର କରିଣ ଦୂତେ ଆସିଲେ ଫେରିଣ
ଦଶରଥ ରାଜା ଯେ ବିଚାର କଲେ ମନ ।
ପାତ୍ର ମନ୍ତ୍ରୀ ଅମନାତ୍ୟ ସାମନ୍ତ ଡାକିଲା
ବଶିଷ୍ଠଙ୍କୁ ଡକାଇ ବେଗେ ଅଣାଇଲା ।
ସଭାକରି ବସିଲେ ସେ ନୃପତି ଶେଖର
ବଶିଷ୍ଠଙ୍କୁ ବୋଇଲେ ଶୁଣ ମୋ ଉତ୍ତର ।
ନବସହସ୍ର ବରଷ ହୋଇଲାକ ମୋତେ
ମୋ' କୋଳେ ପୁତ୍ର ନାହିଁ ନଦେଖିଲି ନେତ୍ରେ ।

ବାକି ଅଛି ସହସ୍ରେ ବରଷ ଆୟୁଷତ ମୋହର
ବିଚାରୁଅଛି ମୁଁ ଯେ ଯିବଇଁ ବନ ଘୋର ।
କେଉଁ କାର୍ଯ୍ୟ ଏ ଜନ୍ମରେ ମୋଜୀବ ଅସାର୍ଥକ
ସାତଶ ପଞ୍ଚାଶ ରାଣୀରେ ନୋହିଲା ସୁତ ।
ବଶିଷ୍ଠ ବୋଇଲେ ଯେ ଅନେକ ରାଜାଗଣ
ମର୍ତ୍ତ୍ୟପୁରେ ଦେହବହି ଅଛନ୍ତି ସର୍ବେ ଜାଣ ।
ଦଶବିଶ୍ୱା ପୁତ୍ର କ୍ଳାନ୍ତ ଛବିଶ୍ୱା ପୁତ୍ରହୀନ
ସେମାନେ ସମସ୍ତେ କି ଗଲେ ଘୋରବନ ।
କାଳ ଶେଷବେଳରେ ପୋଷିଆ ପୁତ୍ର କରି
ଯେ ଅବା ଏଥିରେ ପୁଣ ଯାଉଛନ୍ତି ମରି ।
ସେ କଥାକୁ ଧାରା ଯେ ପୂର୍ବରୁ ଅଛଇ
ପାତ୍ର ମନ୍ତ୍ରୀ ପରଜା ବିଚାରନ୍ତି ଥାଇ ।
ହସ୍ତୀର ମସ୍ତକରେ ସୁବର୍ଣ୍ଣ କଳସ
ଦେଇଣ ଯେ ରାଜ୍ୟରେ ବୁଲନ୍ତି ହରଷ ।
ସେ କଳସ ହସ୍ତୀ ଢାଳେ ଯାହାର ଉପରେ
ସେ ରାଜ୍ୟରେ ରାଜା ସେ ହୁଅଇ ସେହୁବେଳେ ।
ତୁମ୍ଭେ କିମ୍ପା ମନ ଯେ ନିରସ କରୁଅଛ
ଯାହାର ଲେଖିଥିବ କର୍ମେ ବିଧାତା ପୁରୁଷ ।
ରାଜନ ବୋଇଲେ ହେ ଶୁଣ ମୋର ବାଣୀ
ଶତଷଠି ପୁରୁଷ ହୋଇଲା ମୋର ପୁଣି ।
ତତଧନ ପୁରୁଷେ ଜାତ ଯେ ସଗର
ତାହାର ହୋଇଲେ ଷଠିସହସ୍ର କୁମର ।
କପିଳ ମୁନି ଶାପରେ ଭସ୍ମ ଯେ ହୋଇଲେ
ସେଠାରୁ ଦଇବ ଯେ ବିଚାର ପୁଣ କଲେ ।
ସହସ୍ରପୁତ୍ରଙ୍କର ଶତଷଠି ସହସ୍ରେ ବୋହୁଥିଲେ
ତାଙ୍କରି ରଜରେ ଭଗିରଥି ଜନ୍ମ ହେଲେ ।
ସେ କୁମର କିଛିଦିନ ରାଜ୍ୟ କଲା ପୁଣ
ପିତାଙ୍କର ଦହିର୍ଯ୍ୟ ଶୁଣିଲା କର୍ଣ୍ଣେଣ ।
ତାଙ୍କର ଘରଣୀ ଗର୍ଭେ ଏକମାସ ସ୍ଥିତ
ପିତୃ ଉଦ୍ଧାର ନିମନ୍ତେ ଗଲେ ଭଗିରଥ ।
ତପକରି ଗଙ୍ଗାକୁ ଅଣାଇଲେ ପୁଣ
ପିତାଙ୍କୁ ଉଦ୍ଧାରି ସେହି ଗଲେକ ସ୍ୱର୍ଗସ୍ଥାନ ।
କଉମଦି ରାଜାଙ୍କର ମାନଧାତା ସୁତ
ସ୍ତିରୀଙ୍କର ଗର୍ଭରେ ହୋଇଲେ ସମ୍ଭୁତ ।
ଜଳମନ୍ତ୍ର ପାଣି ଯେ ବୃହସ୍ପତି ଦେଲେ
ପିତାଙ୍କର ଶରୀରୁ ପୁତ୍ର ଜାତ ହେଲେ ।

ମାନଧାତା ନାମ ଯେ ହୋଇଲା ତାହାର
ଷଡ଼ ଚକ୍ରବର୍ତ୍ତୀ ସେଯେ ହୋଇଲେ ସେହୁସାର
ସେମାନେ ଏମନ୍ତେ କୁଳ ଧର୍ମ ରଖି
ଶତଷଠି ପୁରୁଷରେ ହେଲି ମୁଁ ନିର୍ମାଖି ।
ତାହା ଶୁଣି ବୋଇଲେ ସୁମନ୍ତ୍ର ମନ୍ତ୍ରୀବର
ଦେବକୁଟ କରିଛନ୍ତି ଶୁଣ ନୃପବର ।
ଯେଉଁଦିନ ତୁମ୍ଭେ ହେଲ ନୂଆ ରାଜା ପୁଣ
ସେ ବରଷ ଗଙ୍ଗାରେ ବାରେଣୀ ସ୍ନାହାନ ।
ସେ ସ୍ନାହାନ କରିବାକୁ ମୁହିଁ ଯାଇଥିଲି
ସ୍ନାନସାରି ଭରଦ୍ୱାଜ ମଠରେ ମିଳିଲି ।
ଦେଖିଲି ଋଷିଗଣ ସେଠାରେ ମେଳପୁଣ
ଭରଦ୍ୱାଜ ପଚାରିଲେ କୁମରକୁ ଜାଣ ।
ବୋଇଲେ ଜମ୍ବୁଦ୍ୱୀପେ ଇକ୍ଷେକ ରାଜନ
ଦଶରଥ ରାଜାଙ୍କର ନାହିଁ ଯେ ନନ୍ଦନ ।
ଦଶରଥ ଲୋମପାଦର କି କାର୍ଯ୍ୟେପୁତ୍ର ନାହିଁ
ଧର୍ମବନ୍ତ ରାଜା ଯେ ଅଧର୍ମ କରି ନାହିଁ ।
ଶୁଣି ସନାତନ ସନତ କହେ ପୁଣ
ଋଷ୍ୟଶୃଙ୍ଗ ଜାତହେଲେ ଦେବେ ପୁତ୍ର ଦାନ
ଚମ୍ପାବତୀ ରାଜ୍ୟ ଯେ ଅପାଳକ ହେବ
ବ୍ରହ୍ମ ଶାପରେ ବାର ବର୍ଷ ବହିଯିବ ।
ତେବେ ସେ ଋଷ୍ୟଶୃଙ୍ଗ ଯେ ଆସିବ କଟକ
ଜଳବୃଷ୍ଟି କରିବ ଯେ ଆସିଲା ମାତ୍ରକ ।
ପରଜା ସୁଖୀ ହେବେ ଯେ ରାଜ୍ୟେ ହେବଧାନ
ଲୋମପାଦ ରାଜା ଯାଗ ଆରମ୍ଭିବେ ଜାଣ ।
ଋଷ୍ୟଶୃଙ୍ଗ ଚରୁନେଲେ କୁମର ଜାତହେବ
ଏକଥାକୁ ପୂର୍ବରୁ ସଞ୍ଚିଛି ଦଇବ ।
ଦଶରଥ ରାଜାର ଦୋହିତୀ ଅବିବାହି
ସେକନ୍ୟାକୁ ବିଭାଦେବି ଋଷ୍ୟଶୃଙ୍ଗେ କୁହିଁ ।
ଚମ୍ପାବତୀ କଟକରୁ ଋଷ୍ୟଶୃଙ୍ଗ ଯିବ
ଅଯୋଧ୍ୟା କଟକରେ ପ୍ରବେଶ ହୋଇବ ।
ସେ ରାଜ୍ୟରେ ଯାଗ ଯେ କରିବେ ଋଷ୍ୟଶୃଙ୍ଗ
ଚରୁନେଲେ ଚାରିପୁତ୍ର ହୋଇବେ ପୁଣ ଜନ୍ମ
ବାସୁଦେବ ଚତୁର୍ଦ୍ଧା ରୂପରେ ଜାତ ଜାଣ ।
ତିନିରାଣୀ ଗର୍ଭରୁ ଚାରି ପୁତ୍ର ପୁଣ ।
ଭରଦ୍ୱାଜ ପଚାରିଲେ ଆହେ ଋଷି କହ
କିମ୍ପାଇ ବାସୁଦେବ ପାଇବେ ନର ଦେହ ।
ସନତ ବୋଇଲେ ସେ ଯେ ମାରିବ ଅସୁର
ସପ୍ତମ ଅବତାର ହେବେ ଚକ୍ରଧର ।
ଏମନ୍ତ ବିଚାର ଯେ ଅଛଇଁ ସେଥିରେ
ଦେବତାଏ ହରିଙ୍କି ମନାଇ ଭାବରେ ।
ନିର୍ମଳ ଋଷି ବୋଇଲେ ଶୁଣ ହେ ଋଷିପୁଣ
ଦେବଙ୍କୁ କେଉଁ ଅସୁର ଅସାଧ୍ୟା ହେଲେଣ ।
ସନାତନ ବୋଇଲେ ଚାରି ଯେ ରାବଣ
ଧରିଣ ବନ୍ଦିକଲେ ଦେବଗଣ ପୁଣ ।
ଋଷି ବୋଇଲେ ପର୍ଶୁରାମ ଅଛି ଜନ୍ମ ହୋଇ
ସନାତନ ବୋଲେ ତାହସ୍ତରେ ଅସୁରନମରଇ
ବିଧାତା ବରଦେଇ ଲିହିଛି କପାଳ
ବାସୁଦେବଙ୍କ ହସ୍ତରେ ମରିବେ ଅସୁର ।
ଭରଦ୍ୱାଜ ବୋଇଲେ ଶୁଣ ହେ ଚକ୍ରଧର
ଆୟୁଧ ଘେନି ଜନ୍ମ ହେବେ କି ମର୍ତ୍ତ୍ୟପୁର ।
ସନତ ସନାତନ ବୋଇଲେ ଋଷିଙ୍କି
ଧନୁ କମାଣ ଧରି ମାରିବେ ଅସୁରଟି ।
ଶଙ୍ଖଚକ୍ର ଗଦାପଦ୍ମ ନଥିବ ତାଙ୍କ କର
ବେନିକରେ ବହିବେ ଅସୁର ସକଳ ।
ଗରୁଡ଼ ବାହନକୁ ଗଢ଼ିବେ ପୁଣ
ଚାରି ରାବଣକୁ ମାରିବେ ଚଢ଼ିକରି ଯାନ ।
ଭରଦ୍ୱାଜ ଋଷି ବୋଲେ କିମ୍ପା ଆୟୁଧ ତେଜିବ
ସନାତନ ବୋଇଲେ ଦୁଇ ଆୟୁଧ ଜାତ ହେବ ।
ଗଦା ଆୟୁଧକୁ ଆଗେ ପର୍ଶୁରାମ ନେଲା
ଷଷ୍ଠ ଅବତାରେ ପର୍ଶୁରାମ ଜାତ ହେଲା ।
ବୈକୁଣ୍ଠ ଶୂନ୍ୟହେବ ଦଶ ସହସ୍ର ବରଷ
ସାରସ୍ୱତ ପଦ୍ମଦଳ ଥିବେ ଏକମାତ୍ର ।
ତିନିଦ୍ୱାରେ ଦ୍ୱାରପାଳ ଜଗିଥିବେ ରହି
ପଶ୍ଚିମଦ୍ୱାରେ ଦ୍ୱାରୀ ରାବଣକୁମ୍ଭ କର୍ଣ୍ଣ ଦୁଇଭାଇ
ଏତେ କହି ସନତ ଯେ ସନାତନ ଗଲେ
ସ୍ୱର୍ଗକୁ ପୁଣି ଯେ ସପ୍ତଋଷି ଚଳେ ।
ଏ କଥାମାନ ମୁଁ ଯେ ଶୁଣିଲି ତାଙ୍କଠାରୁ
ସେ ଯିବାରୁ ମୁଁ ଅଇଲି ଶୁଣ ହନ୍ତକାରୁ ।
ଶୁଣିଣ ସକଳ ଜନ ସନ୍ତୋଷ ହୋଇଲେ
ବଶିଷ୍ଠ ଦଶରଥ ସାମନ୍ତ ପାତ୍ର ତୁଳେ ।
ବୋଇଲେ ବହୁଦିନ ଗଲାଣିତ ଜାଣ
ବରଷକେ ଜଣାଯିବ ସକଳ ଭିଆଣ ।

ପକ୍ଷକରେ ଜଣାଯିବ ଆସିବେ ଋଷି ପୁଣ
ଜଳ ବରଷିଲେ ଜଣାଯିବ ସତ୍ୟ ଗୁଣ ।
ଏତେକହି ସଭାରୁ ସମସ୍ତେ ଗଲେ ଭଲେ
ପାର୍ବତୀଙ୍କ ଆଗେ ଏହା ଈଶ୍ୱର କହିଲେ ।
ପାର୍ବତୀ ବୋଇଲେ ଶୁଣ ହେ ପଞ୍ଚାନନ
ଜରତା କାମ ମୋହିନୀ ଗଲେକ ନାବେପୁଣ ।
ପ୍ରଥମ ଦିନ ପାଞ୍ଚଯୁଣରେ ଯାଇ ରହି
ଦ୍ୱିତୀୟ ଦିନର କଥା କହ ହେ ଗୋସାଇଁ ।
ଈଶ୍ୱର ବୋଇଲେ ଯେ ଶୁଣ ହେ ଭଗବତୀ
ରଜନୀ ଶେଷରେ ଯେ ନାବଚାଳି ଦ୍ୟନ୍ତି ।
ଦୁଇପାଖେ ଗିରି ଯେ ମଝିରେ ନାବ ପୁଣ
ଚଳଇ ଚାପନାବ ହୋଇଣ ପ୍ରଖର ଗତିଣ ।
ଗିରିପରେ ଡାକ ଯେ ଶୁଭେ ଜୀବଙ୍କର
ଗର୍ଜନ ରଡ଼ି କରନ୍ତି ପର୍ବତ ଉପର ।
ବନ ଗୋରୁମାନେ ଯେ ହେମାରଡ଼ି ଦ୍ୟନ୍ତି
ବଳିଆ କୁକୁର ରାବ କୁହୁ କୁହୁ ଦ୍ୟନ୍ତି ।
ଶାର୍ଦ୍ଦୁଳ କୁହାଟ ମାରେ ସତେ ଗିରି ଝଡ଼ି
ସିଂହଙ୍କର ଶବଦ ଶୁଭଇ ଘଡ଼ଘଡ଼ି ।
ହସ୍ତୀଙ୍କର ଗର୍ଜନ ଅଶ୍ୱଙ୍କର ହେର୍ଷା ରାବ
ମୃଗ ଶମ୍ବରଙ୍କର ଶଙ୍କାରେ ବଡ଼ ଭାବ ।
ବରାହ ଶୁକର ଯେ ଦେଖିଣ ରାବ ଦ୍ୟନ୍ତି
ଚାରିବର୍ଣ୍ଣରେ ବାନରେ ଡାଳରେ ନାଚନ୍ତି ।
ନାବଦେଖି ଭାଲୁମାନେ କରନ୍ତି ରୋଦନ
ପୁତ୍ର ଦୋହିତାଙ୍କୁ ଯେ ସୁମରନ୍ତି ପୁଣ ।
କୃଷ୍ଣବର୍ଣ୍ଣମୃଗ ଯେ କସ୍ତୁରି ଯୁଆଦ
ଖୁରାଣ୍ଟି ଖରୁଙ୍ଗ ଶଶା ମୂଷା ପରମାଦ ।
ହରିଣ ବାହୁଟିଆ ଗଣ୍ଡା ଯେ ଗୟଳ
ବଣ ଗଧ ବଣ ମନୁଷ୍ୟ ପଲ ପଲ ।
ଏମାନେ ହୁଙ୍କାର ଯେ କରନ୍ତି ସ୍ୱଭାବରେ
ବଣର ମଇଁଷମାନେ ଧାଇଁଛନ୍ତି ଖରେ ।
ନଦୀ କୂଳରେ ଆସି ପ୍ରବେଶ ପୁଣି ହୋନ୍ତି
ମର୍ଦ୍ଦଳ ଝଞ୍ଜାଳ ଶୁଣିଲେ ଲେଉଟି ପଳାନ୍ତି ।
ଏମନ୍ତେ ଜୀବଙ୍କ ନାମ ମୁଁ କହିବି କେତେ
ଅନେକ ଜାତିର ଜୀବ ଅଛନ୍ତି ବନସ୍ତେ ।
କେରୁଆଳ ଡାକଦେଲେ ଅପସରୀଏ ଶୁଣ
ବାହାରେ ରହିଣ ଦେଖ ଗୋ ଜୀବ ପୁଣ ।

ଶୁଣିଣ ଅପସରୀଏ ଜଳାକବାଟି ବାଟେ ଚାହିଁ
ଅନେକ ଜନ୍ତୁ ଦେଖିଣ ମନରେ ତୋଷ ହୋଇ ।
ତିନିଦିନେ ଗିରି ଯେ ପର୍ବତ ପଥ ସରି
ପଡ଼ିଲାକ ମେଲା ଯେ ପୁର ପାଟଣା ଫେରି ।
ସେ କଥାମାନ ଦେଖି ହରଷ ମନହେଲେ
କୂଳରେ ରନ୍ଧାକରି ଭୁଞ୍ଜି ସୁସ୍ତେ ଗଲେ ।
ଜଳ ଭିତରେ ପଡ଼ିଲା କଇଁ ବଣ ଜାଣ
ନାବ ଚଳିବାରେ ଡାକଇ ଚଡ଼ ଚଡ଼ ।
ଭ୍ରମର ଲୀଳା କରେ ପୁଷ୍ପଙ୍କ ଉପର

× × × ×

ଦୁଇଦିନ ପରିଯନ୍ତେ ନାବ ଧୀରେ ଚଳି
ଦୁଇଦିନ ଅନ୍ତରେ ନିର୍ମଳ ଜଳେ ମିଳି ।
ନିର୍ମଳ ଜଳରେ ନାବ ଚଳଇ ଖରେ ପୁଣ
ଦୁଇପାଖେ କଳପ ବୃକ୍ଷ ଅପ୍ରମାଣ
ଫଳରେ ବୃକ୍ଷମାନେ ପାଉଛନ୍ତି ଶୋଭା
ମଳୟ ଚନ୍ଦନ ଯେ ବାସନା ଦିଏ ପ୍ରଭା ।
ଶ୍ରୀଫଳ ନାରିକେଳ ତାଳ ଗୁଆ ଗଛ
ଆମ୍ବ ପୋଲାଙ୍ଗ ଯେ ମରିଚ ନିମ୍ବ ବୃକ୍ଷ ।
କଦଳୀ ନଟୀକେଳ ଲେମ୍ବୁ ଯେ ନାରଙ୍ଗ
ପଣସ କମଳା ଟଭା ଯେ ସଉରାଙ୍ଗ ।
ରକ୍ତ ଚନ୍ଦନ ଯେ ଅଗୁରୁ ଚନ୍ଦନ
ଜାଉରଙ୍ଗ ରକତ ପିଡ଼ି କୁମ୍ଭି ଯେ ମଲାଙ୍ଗ ।
କଉରୋଭ ସଉରୋଭ କରଳା ଲେଖନ
ଭଇଞ୍ଚ ଧଳା ଆଙ୍କୁଲ ବରକୋଳି ପୁଣ ।
ଟୁମ୍ବୁର ଝିଙ୍ଗର ଶାଳ ପିଆଶାଳ
ହନ୍ତାଳ କେତାଳ ଲବଙ୍ଗ ଜାଈଫଳ ।
ମେଥି ଯୁଆଣି ଧନିଆ ସତ୍ୟ ଆମ୍ବ
ଶିଶୁ ଚାଉଳି ଯେ ବେଣୁ ବୃକ୍ଷ ଦମ୍ବ ।
ଅନେକ ବୃକ୍ଷମାନେ ଯେ ସେଥିରେ ଅଛନ୍ତି ।
ଜାମ୍ବୁ ଜମ୍ବାଇ ଯେ ବୃକ୍ଷଛନ୍ତି ଅନେକ
ବୃକ୍ଷ ପନ୍ତି ପନ୍ତି ଫଳ ସେଥିରେ ଅନେକ ।
ଚାରିଦିନେ ଯେ ବନ ସରିଲାକ ଯେଣୁ
ପଦ୍ମବନ ପଡ଼ିଲା ନଚଳେ ନାବ ତେଣୁ ।
ତିନି ଚାଷରେ ଚବିଶ କାଦରେ ନେଇ ପେଲି
ଚାରିବର୍ଣ୍ଣରେ ପଦ୍ମଯେ ଫୁଟିଣ ଶତଶୋଭାକରି ।
କଳା ଧଳା ରଙ୍ଗ ଯେ ବସନ୍ତ ବର୍ଣ୍ଣ ଦିଶି
ବାସରେ ଆମୋଦ ଯେ ହୋଇଛି ନଦୀ ଗୋଟି ।

ଭ୍ରମରମାନେ ଇକାର କରୁଛନ୍ତି ପୁଣି
ଏ ପୁଷ୍ପରୁ ସେ ପୁଷ୍ପକୁ ମାରଇ କୁନ୍ତ ଜାଣି ।
ଏମନ୍ତ ବୋଲି ରୋଦନ କରଇ ଭ୍ରମର
ସେ ବାଣୀ ଶୁଣି ତାଟକା ହୋଇଲେ ଘୋର ।
ବିଚାରିଲେ ଏକଥା ଶୁଣା ଯେ ନାହିଁ ପୁଣ
କେଉଁଠାରେ ନାରୀ ପାଞ୍ଚ ପୁରୁଷେମାରେ ବାଣ
ସେ ବନେ ପକ୍ଷୀମାନେ ଅଛନ୍ତି ଯେ ପୁଣି
ସେମାନଙ୍କୁ ଜରତା ପଚାରେ ପୁଣ ବାଣୀ ।
ପୁରୁଷମାନେ ବୋଇଲେ ଶୁଣ ଗୋଚନ୍ଦ୍ରମୁଖୀ
ଏ ବନରେ ଯେତେ ମଦନ ଭ୍ରମର
ଏ ଫୁଲସମାନେ ତାକୁ କରନ୍ତି ହିଂସାବଡ଼ ।
ଶରୀର ସମର୍ପନ୍ତି ଛଳ ପଣକରି ।
ବ୍ୟାଧକୁ ଫାଶ ଯେସନେ ଥାଆନ୍ତି ଆବୋରି
ସେ ପୁରୁଷମାନେ କାମରେ ହୋନ୍ତିଭୋଳା
ମାରନ୍ତି ଦୟାଧର୍ମ ନାହିଁ ସେଥି ପରା ।
ଏ ସ୍ତିରୀ ପୁରୁଷମାନେ ଅଣ ଯେ ବିଶ୍ୱାସୀ
ଏ ନାରୀଙ୍କି ଦଣ୍ଡଇ ମଚନାଗ ଫାସି ।
ଜରତା ବୋଇଲେ ଏ ଅଟଇ ଅସାର
ରାଡେଣି ପିଚାଶୁଣୀ ଏ ଜଣାଗଲା ଏଥର ।
କେଉଁଆଳଙ୍କୁ ଚାହିଁ ଜରତା ବୋଇଲା ।
ଭାଙ୍ଗୟାର ଆଶ୍ରୟ ଏ ଅଟଇ ଦୋଷୀପରା
ଶୁଣିଣ ତ କେଉଁଆଳ ନିରାଟେ କାଦ ପେଲି
ତିନିଦିନେ ଯେ ବନରୁ ନାବଯେ ବାହାରି ।
ନିର୍ମଳ ଜଳରେ ନାବ ପ୍ରବେଶ ହୋଇଲା
ସେଠାରୁ ତିନିଦିନେ ଯେ ନାବ ଚଳିଗଲା ।
ନଦୀ କୂଳର ବନ ଦୁଇପାଖରେ ତୋରା
ଅନେକଲତା ମଧରେ ଅହିମାନେ ଭେଳାଭେଳା
ସତେକି ନାବମାନଙ୍କୁ ଗିଳିଦେବେ ସେହି
ଅନେକ ଅହିମାନେ ଆସନ୍ତି ପାଣି ଖାଇ ।
କାହାର ତିନିଫଣା ପାଞ୍ଚ ଫଣା କାର
କାହାର ମୁଣ୍ଡ ଚୂଳ ଦିଶଇ ସୁନ୍ଦର ।
କେବଣ ଅହିଠାରେ ଶଙ୍ଖ ଚକ୍ର ଚିହ୍ନ ।

× × × ×

କେହୁ ନୀଳ ବର୍ଣ୍ଣ କେହୁ ଦିଶଇ ଧବଳ
କେଉଁ ସର୍ପ ଗୋଟି ଦିଶଇ ଭୟଙ୍କର ।
ଏମନ୍ତେ ଦିନକେ ଯେ ଦେଖିଲେ ସର୍ପବନ
ସେଠାରୁ ଦେଖିଲେ ଯାଇ ପୁଷ୍ପକ ବନ ପୁଣ ।
କାତ ଛାଡ଼ି କେଉଁଆଳ ଆହ୍ଲାରେ ବାହୁ
ମଧୁବନ ପ୍ରାୟେକ ବନେକ ପଡ଼ଇ ।
ସେ ବନରେ ପକ୍ଷୀ ଜନ୍ତୁ ଅଛନ୍ତି ବହୁତ
ଶାରୀଶୁଆ କୋକିଳ ପିକ ଯେ ଡାହୁକ ।
ଡେଣ୍ଟୁଆ ପାଣିକୁଆ ତିତାରି ମାଛରଙ୍କା
ବକ ଶ୍ୟାମଳ ପାରୁଆ ଚକୋଇ କାଟିଟେକା ।
ନୀଳବର୍ଣ୍ଣ ଚଢ଼ାଇ ଚକ୍ରବାକ ପକ୍ଷୀ
ଚାତେକ ଚାହାଣି ବାଇଚଟିଆ ନାମେ ପକ୍ଷୀ ।
ବଡ଼କାଙ୍କ ପାନକାଙ୍କ କାଉ ଯେ ବଇଁଶି
ବାବୁରିଆ ଲୋଧିଆ ହଂସ ଚାରି ଜାତି ।
କାମହଂସ ଚାଳି ପେଚକ ଭଲ୍ଲୁକ
ମନ୍ତରା ସନ୍ତୁରା ଝିଙ୍କ ବଜ୍ର କାଁବତ ।
ବଣି, ରାଜବଣି, କୁମ୍ଭାଟୁଆ ଯେ କାପେତା ।

× × ×

ନାନାବର୍ଣ୍ଣରେ ପକ୍ଷୀ ସେଥିରେ ଛନ୍ତି ପୁଣ
ଶବଦରେ ବନ ଯେ କୁହୁକୁ ଅଛି ଜାଣ ।
ଶୁଣିଣ ଆନନ୍ଦ ଯେ ଅପସରୀଗଣ
ବୋଇଲେ ଏ ବନ ପୂର୍ବେ ବହୁତ ତପିସ୍ଥାନ ।
ସେଠାରୁ ନାବ ଯେ ଚଳିଲା ଧୀରେ ଧୀରେ
ଗ୍ରାମ ପାଟଣା ଅନେକ ଦେଖିଲେ କୂଳରେ ।
ଜଳେଶ୍ୱର ଦେବତା ବୋଲିଣ ଲିଙ୍ଗ ପୁଣ
ସେ ସ୍ଥାନରେ ନାବ ନ ଚଳିଲା ପୁଣ ।
ନାବରୁ ଓହ୍ଲାଇଣ ସର୍ବେ ଗଲେ
ଜଳେଶ୍ୱର ଲିଙ୍ଗକୁ ଦର୍ଶନ ଯାଇ କଲେ ।
ତଣ୍ଡୁଳ ବେଲପତ୍ର ଦେଲେକ ଶିରରେ
ପଇଡ଼ ଜଳ ନେଇ ଶିରରେ ନିଉଡ଼ିଲେ ।
ପ୍ରସନ୍ନ ହୋଇଣ ଜଳେଶ୍ୱର ବରଦେଲେ
ବାସୁଦେବ କାର୍ଯ୍ୟରେ ଯାଉଛ ତୁମ୍ଭେ ଭଲେ ।
ପ୍ରସନ୍ନ ହୋଇଲା ଏବେ ଋଷ୍ୟଶୃଙ୍ଗକୁ ଆଣ
ଶୁଣିଣ ସର୍ବଜନ ନମସ୍କାର ହେଲେ ପୁଣ ।
ବିନତି ହୋଇଣ ଯେ ସେଠାରୁ ଚଳିଗଲେ
ଚାପରେ ବସି ନୃତ୍ୟ ଆରମ୍ଭ ସେହୁ କଲେ ।
କୌଶିକ ବନେ ଯାଇ ହେଲେ ପରବେଶ
କୋଡ଼ିଏ ଦିବସ ତହିଁ ଯେ ହେଲା ଶେଷ ।

ତୁଠ ନିରିମଳ ଯେ ପାଣି ଗଙ୍ଗାଜଳ
ମୁଗୁନି ପଥର ପଡ଼ିଛି ମାଳ ମାଳ ।
ଯିବା ଆସିବାରେ ପହଣ୍ଡ ଅଛି ପଡ଼ି
ଦେଖିଣ ଅପସରୀ ସେ ମନରେ ଭାଳି ।
ବୋଇଲେ ଏଠାରେ ହୋଇଛି ଦାଣ୍ଡଠୋଟି
ଏହିଠାରେ ଛନ୍ତି ବିଭାଣ୍ଡେକ ଋଷି ।
ଏମନ୍ତ ବିଚାର ଯେ ସମସ୍ତେ ବସି କଲେ
ଚାପଡଙ୍ଗା ମାନଙ୍କୁ ତଳକୁ ଖସାଇଲେ ।
ଅଣ ତୁଠରେ ନାବ ରଖିଲେ ନେଇକରି
ଅଦୃଶ୍ୟ କରାଇଲେ ସକଳେ ବିଚାରି ।
ରଜନୀରେ ସେଠାରେ ରହିଲେ ସର୍ବେ ପୁଣ
ରାନ୍ଧଣା କରିଣ ଯେ କଲେକ ଭୋଜନଂ ।
ଦେଖିଲେ ସେ ବନରେ ଭୟ କିଛି ନାହିଁ
ଜୀବକୁ ଜୀବ ହିଂସା ଯେ ସେଥିରେ ନ ବହି ।
ସେଠାରେ ଶୟନ ଯେ ରାତ୍ରେକ କଲେ ପୁଣ
ଶ୍ୱେତହସ୍ତୀ ଉପରେ ଧବଳ ଛତି ପୁଣ ।
ରଜନୀରେ ସ୍ୱପନ ଦେଖିଲେ ଜରତା
ଶ୍ୱେତହସ୍ତୀ ଉପରେ ବସିଅଛି ଏକା ।
ଧବଳ ପୁଷ୍ପ ମାଳା ଗଳାରେ ଲମ୍ବେ ହାରା
ଏମନ୍ତ ସ୍ୱପନ ଯେ ଦେଖିଲେ ଅପସରା ।
ରଜନୀର ଶେଷ ଯେ ହୋଇଛି ତେତେବେଳେ
ନିଦ୍ରାତେଜି ନାରୀମାନେ ଉଠିଲେ ସତ୍ୱରେ ।
ବିଚାରିଲେ ସୁଫଳ ହୋଇବ ମୋର କାର୍ଯ୍ୟ
ସମସ୍ତଙ୍କୁ ନାରୀ ଯେ ଚେତାକଲେ ନିଜ ।
ସମସ୍ତେ ଚେତାପାଇ ଚଞ୍ଚଳ ମନ ହେଲେ
ରଜନୀ ଶେଷ ଦେଖି ସ୍ନାନ ଯାଇ କଲେ ।
ଶଉଚ ନିର୍ମଳ ଯେ ହେଲେ ସର୍ବ ଜନ
ରାନ୍ଧଣା ବିଧିସାରି ଭୁଞ୍ଜିଲେକ ଅନ୍ନ ।
ଆଞ୍ଚୋବନ ସାରିଣ ତାମ୍ବୁଳ ଭୁଞ୍ଜିଲେ
ପଲଙ୍କ ସୁପାତିରେ ଯାଇ ନିଦ୍ରା ଗଲେ ।
ଦଶଘଡ଼ି ସମୟରେ ଉଠିଲେ ସକଳ
ସୁବେଶ ହୋଇଲେ ଯେ ଲଗାଇ ଚିକୁର ।
ନାନା ବର୍ଣ୍ଣରେ ବେଶ ମୋହିନୀ ତ୍ୱରା ହେଲେ
ତିନିପୁର ମୋହିନୀ ସେ ଏମନ୍ତ ଦିଶିଲେ ।
ଜରତା ବୋଇଲେ ଯାଅ କେରୁଆଳ ଭାଇ
କହୁଅଛି ଏ ବନରେ ଦେଖିଆସ ଯାଇ ।

ଶୁଣିଣ କେରୁଆଳ ପନ୍ଦରକୋଶ ଗଲେ
ପାଞ୍ଚ କ୍ରୋଶ ଆକ୍ରାନ୍ତରେ ଯାଇଣ ଘେରିଲେ ।
ଦେଖିଲେକ ମଠ ଗୋଟି ଅଛି ବନସ୍ତରେ
ସୁରଭି ଚରୁଅଛି ସେହି ନିକଟରେ ।
ବେଲଗଛ ମୂଳରେ ବସିଛନ୍ତି ଋଷ୍ୟଶୃଙ୍ଗ
ଦେଖିଣ ବୋଲନ୍ତି ଏହି ଯତି ହେବ ।
ଲତାର ଉହାଡ଼ରେ ବେଗେ ଚଳିଗଲେ
ନାବର ନିକଟରେ ଯାଇଣ ମିଳିଲେ ।
ବୋଇଲେ ଋଷ୍ୟଶୃଙ୍ଗ ଅଛଇ ଏହି ସ୍ଥାନ
କୋଶକ ଅନ୍ତରେ ଋଷି ବସିଛନ୍ତି ଜାଣ ।
ଶୁଣିଣ ସକଳ ନାରୀମାନେ ସଜ ହେଲେ
ଯେ ଯାହାର ଆୟୁଧେ ଯାଇଣ ଧରିଲେ ।
କାମମୋହିନୀକୁ ଡାକି ଜରତା କହଇ
ବାରବନିତା ଘେନିଣ ବେଗେ ଯାଅ ତୁହି ।
ଅନେକ ତିଆରିଣ ପୁଣି ସେ କହିଲା
ପ୍ରେମରସଗତ ତୁହି କରିବୁ ବୋଇଲା ।
ଯାଅରେ ନାଗରୀ ବେଗେ କର ରାଜକାର୍ଯ୍ୟ
ଯେଉଁରୂପେ ଭଣ୍ଡି ଆଣ ଋଷିଙ୍କ ତନୁଜ ।
ଶୁଣି ସୁନ୍ଦରୀ ଦିବ୍ୟ ବେଶ ହେଲା
ଅଲେଖ ତିଳକ ଯେ ସୁଗନ୍ଧ ଲଗାଇଲା ।
କେଶ ସମ୍ଭାଳିଣ ଯେ ଯୁଡ଼ାକୁ ବାନ୍ଧଇ
ଚଉଁରି ଭୁଣ୍ଡି ସଙ୍ଗରେ ଝଲକାଏ ଦେଇ ।
ମୁକୁତାର ମାଳ ସୀମସ୍ଥାନେ ଲଗାଇଲା
ଯାଇ, ଯୁଈ, ସେବତୀ ଯେ ତାପରେ ଖଞ୍ଜିଲା ।
ଶିରପରେ ଅଳକା ମଥାରେ ମଥାମଣି
ନୋଥ ରତ୍ନ ଗୁଣା ମୁଖକୁ ଦିଶେ ଜିଣି ।
ତହିଁପରେ ସୁନ୍ଦର ଟୋପି ନେଇଦେଲା
କଳା ଧଳା ଟୋପି ଯେ ଦେଖ ଦିଶେଚୋରା ।
କର୍ଣ୍ଣରେ କାପ ଅଛି ମୁକୁତାର କମ
ମଝିକର୍ଣ୍ଣେ ଫିରିଫିରା ତେଜେ କି ଉପାମ ।
ଚନ୍ଦ୍ର ଫାସିଆ ଉପରେ ବସିଛି ମୁକୁତା
ମଲ୍ଲିକଢ଼ି ସେଥିପରେ ରତ୍ନରେ ଜଡ଼ିତା ।
କସ୍ତୁରୀ ଚାରୁଚିତା କପାଳେ ଦେଲେ ପୁଣି
ନାସା ପୁଟେ ଶୋଭାପାଏ ମାଣିକ୍ୟ ବସଣି ।
ଗଜମୋତି ପ୍ରାୟ ଦିଶେ କର୍ଣ୍ଣରେ କର୍ଣ୍ଣଫୁଲ
ତାମ୍ବୁଳରେ ରଙ୍ଗ ଯେ ଦିଶଇ ଅଧର ।

ଗଳାରେ ଲମ୍ବାଇଲା ମୁକୁତା ଚାପସରି
ରତ୍ନର କଣ୍ଠିମାଳ ଗଳାରେ ନେଇ ଭରି ।
ତାହାର ତଳରେ ଅଛି ଯାଉଁଳି ସୁନାସୂତା
ବକ୍ଷ ସ୍ଥଳରେ ଶୋହେ ପଦକ ମୁକୁତା ।
ପଞ୍ଚରତ୍ନ ମାଳା ଲମ୍ବେ ଗଳାରୁ ନାଭି ଯାଏ
ରସାଣିଲା ମର୍କତ ଯେସନେ ଜ୍ୟୋତି ଦିଏ ।
ରତ୍ନ କାଞ୍ଚୁଲା ପିନ୍ଧିଣ ହୋଇଣ ଭୂଷଣ
ରଙ୍ଗ ଜରି କାଞ୍ଚୁଲା ଯେ ସୁନ୍ଦର ସୂଚିକାମ ।
ଚନ୍ଦନ ଅଗୁରୁ ସର୍ବାଙ୍ଗେ କୁଙ୍କୁମ ପୁଣି ଘେନି
ଭାସ୍କର ବାସକଲେ ସୌରଭରେ ଗୁଣି ।
କଟୀରେ କଟୀମେଖଳାକାଛେଣି ପ୍ରାୟଶୋହେ
ପାହୁଡ଼ ଯେ ନୂପୁର ଚରଣେ ବଜାଏ ।
ଝୁଣ୍ଟିଆ ବଳାଶୋହେ ଚରଣେ ଅଳତା
ଦେବାଙ୍ଗ ପଟନୀ ଯେ ପିନ୍ଧିଲେ ଜଗଜିତା ।
ଏହିରୂପେ ବେଶହେଲେ ବାର ଯେ ବନିତା
ଜରତାର ବେଶ ଯେ ଏଥକି ଅକଳିତା ।
କେବଣ ତରୁଣୀ ଧରେ ପଞ୍ଚବର୍ଣ୍ଣ ଫୁଲମାଳି
କେଉଁନାରୀ ଘେନିଲା କର୍ପୂର ଗୁଣ୍ଡି ଧୂଳି ।
ସୁବର୍ଣ୍ଣ ପାଦୁକା କେ ତା ସଙ୍ଗେ ମୁଚୁଳା
କେହୁ ଧୂପକାଠି ସଙ୍ଗରେ ପାନ ବିଡ଼ା ।
କେ ନିଏ ରତ୍ନ ଖଟ ହେମର ଖଟୁଲି
କେହୁ ରତ୍ନ ଝରିରେ ବାସପାଣି ଭରି ।
ଖାଟି ପଣା ନବାତ ପଇଡ଼ କଦଳୀ
କେହୁ ନାରୀ ଏହାକୁ ଧରିଣ ରତ୍ନ କରି ।
ଅମୃତ ଦ୍ରବ୍ୟମାନ ସଙ୍ଗରେ ନେଲେ ପୁଣ
ଜରତାର ଆଜ୍ଞାରେ ଚଳିଲେ ନାରୀଗଣ ।
ବେଳତିନି ଘଡ଼ିରୁ ନବରୁ ଚଳିଗଲେ
ଲତା ଉହାଡ଼ରେ ଚଳନ୍ତି ସର୍ବେ ଭଲେ ।
ମଢ଼ିଆର ଦୁଆରେ ଅଛଇ ବେଲଗଛ
ସେ ଗଛତଳେ ବସିଛି ବିଭାଣ୍ଡେକ ବତ୍ସ ।
କୃଷ୍ଣାଜିନ ଛାଲପରେ ବସିଣ ବ୍ରହ୍ମଚାରୀ
ବାମ ପାରୁଶେ କମଣ୍ଡଳରେ ପାଣି ଭରି ।
ଆଗରେ ଥୋଇଛନ୍ତି ଯେ ଶାଳଗ୍ରାମ ଶିଳା
ଲୟକରି ବସିଛନ୍ତି ବିଭାଣ୍ଡକ ବଳା ।
ଶୁଦ୍ଧ ଶୌଚରେ ଯେ ବିଜଏ ଋଷି ଗୋଟି
ଆଜ ଏ ମାଳାଗୋଟି ଘେନିଣ ତପ ନିଷ୍ଠି ।

ଅଜପା ସୁମରଇ ଯମିକା ଯେ ପଢ଼ି
ଛତିଶଥର ଯାଗ କରଇ ଏକ ଘଡ଼ି ।
ସାରସ୍ୱତ ମନ୍ତ୍ର ଯେ ଷହେ ଅଷ୍ଟୋତ୍ତର
ଏକଲୟ କରିଣ ଜପନ୍ତି ମୁନିବର ।
ଶିର ସୁନ୍ଦର ଯେ ଦିଶଇ ଚାରୁଜଟ
ଶୃଙ୍ଗ ଦୁଇ ଦିଶୁଛି ଯେସନେ ମୁକୁଟ ।
ନିର୍ଭୟ ହୋଇଣ ସେ ବସିଛନ୍ତି ମୁନି
ଲତା ଉହାଡ଼ରେ ଦେଖିଲେ ସକଳ କାମିନୀ ।
ସକଳ କାମିନୀ ଯାଇଣ ଓଳଗିଲେ
ଦେଖିଣ ଋଷି ତାକୁ ପ୍ରସନ୍ନ ହୋଇଲେ ।
ଚନ୍ଦ୍ର ଚକୋର ମୁଖ ଯେ ମୁନି ପୁଣ ଦେଖି
ଉଠିଲେ ମୁନି ବେଗେ ଆସନ ଉପେକ୍ଷି ।
କୃତାଞ୍ଜଳି ଘେନିଣ ହୋଇଲେ ବିନଇ
ଜନ୍ମହୁଁ ନାରୀ ଅଙ୍ଗ ଦେଖିଲା ତାର ନାହିଁ ।
ସେମାନଙ୍କୁ ଦେଖିଣ ବିଚାରେ ବ୍ରହ୍ମଚାରୀ
କାହୁଁ ଆସି ମୁନିମାନେ ମୋ ପାଶରେ ମିଳି
ପଚାରେ କେବଣ ଦେଶୁ ଅଇଲେ ମୁନିବର
କେବଣ ବେଦ ବିଦ୍ୟା ଯେ ଅଭ୍ୟାସ ତୁମ୍ଭର
କେବଣ ନଦୀତୀରେ ମଢିଆ ଅଛକରି
କେବଣ ଅର୍ଥେ ମୁନି ଏଥେ ବିଜେକରି ।
କିସ ନାମ ତୁମ୍ଭର କେବଣ କୁଳେ ଜାତ
ଏକା ଆଶ୍ରମରେ ଥାଅ କି ତପୋବନ୍ତ ।
କାମ ମୋହିନୀ ବୋଇଲେ ଋଷି ପୁଣ ଶୁଣ
ଆମ୍ଭର ସ୍ଥାନ ଚମ୍ପାବତୀ ନଗ୍ର ଜାଣ ।
ମଦନ ବିଦ୍ୟା ଆମ୍ଭେ ରତି ଶାସ୍ତ୍ର ଜାଣୁ
ନଖ ଦନ୍ତ ଆହୁତି ଦେଇଣ ସର୍ବ ଭଣୁ ।
ସୃଷ୍ଟିର ତପ ଆମ୍ଭର ଅଟଇ ଅପ୍ରମାଣ
ଚୁମ୍ବକ ଚାହାଁଣି ଆମ୍ଭଠାରେ ଅଛି ଜାଣ ।
ଧନର ଲୋଭେ ଆମ୍ଭେ ପରପୁରୁଷେ ଖଟୁ
ମହାମହା ତପୀଙ୍କର ତପ ଯେ ଭାଙ୍ଗିବଟୁ ।
ଇଚ୍ଛା ହେଲେ ପୁଣି ଯେ ଉତ୍ତମ ପୁରେ ଯାଉ
ରାଜ ଋଷି ଦେବ ଋଷି ଠାବରେ ପୂଜା ପାଉଁ ।
ପ୍ରୟାଗ ଜଳରେ ଆମ୍ଭେ ମକର ସ୍ନାନ କରୁଁ
ଋଷିମାନଙ୍କୁ ଦେଖିଣେ ମନତ ମୋହି ପାରୁ ।
ଚଇତ୍ର ମାସେ ଆମ୍ଭେ ଶୁଦ୍ଧା ପଟ୍ୟ କରୁଁ
ବୈଶାଖରେ ଚନ୍ଦନ କର୍ପୂର ଦେହେବୋଳୁ ।

ଜ୍ୟେଷ୍ଠରେ ସ୍ୱର୍ଗକୁ ଯେ ଯାଉ ଆମ୍ଭେ ଥରେ
ବେଦବର ନାରୀ ଯେ ସାବିତ୍ରୀ ସେବାକରେ ।
ଆଷାଢ଼େ ଘୋଷଯାତ୍ରା ବୈକୁଣ୍ଠରେ ଦେଖୁଁ ।

× × ×

ଶ୍ରାବଣ ମାସେ ମଢ଼ିଆରେ ନିଶ୍ଚିନ୍ତେ ଆମ୍ଭେ ବସୁ
ଧନ୍ ମାସେ କାମଧେନୁ ପାଶରେ ତପଘୋଷୁ ।
ଏରୂପେ ବାରମାସେ ବୁଲିଣ ତପ କରୁଁ
ଏବେ ଦେଖିଲୁ ଯେ ଗ୍ରୀଷ୍ମ ମହାଗରୁ ।
ନଦୀରେ ନାବ ପରେ ବାନ୍ଧିଣ ଚାପ ଭେଳା
ରଜନୀ ଦିବସରେ କରୁ ଯେ ଆମ୍ଭେ ଲୀଳା ।
ବେଶହେଉଁ ଅଲେଖ ତିଳକ ବିଚିତ୍ର ·
ବେଣୁ ଢିଣା ସିତାର ମର୍ଦ୍ଦଳ ଝିଞ୍ଜାଳତ ।
ଆଲଟ ଚାମର ଯେ ବିଞ୍ଚଣା ପଙ୍ଖା ପୁଣି
ଦେହକୁ ଶୀତଳ ବୋଲି ସଙ୍ଗେ ଅଛୁ ଆଣି ।
ଅମୃତ ଶୀତଳ ଦ୍ରବ୍ୟ ଅଛି ଯେ ଆମ୍ଭ ସଙ୍ଗେ
ତୃଷା କଲେ ସେହି ଦ୍ରବ୍ୟ ଭୁଞ୍ଜୁଥାଉ ଆମ୍ଭେ ।
କାମମୋହିନୀ ଯେ ଏମନ୍ତେ ତାଙ୍କୁ କହି
ଭାଷାରେ ଭୁଲାଇ ବିଭାଣ୍ଡକଙ୍କର ତନୟି ।
ଚାପେ ପାରି ହୋଇ ଆମ୍ଭେ ଅଯୋଧ୍ୟାକୁ ଯିବୁ
ବଶିଷ୍ଠ ଋଷିଙ୍କ ସଙ୍ଗେ ଆମ୍ଭେ ଦେଖାଦେବୁ ।
ସେଠାରେ ମେଳହୋଇ ରହିବୁ ଦିନ ଦଶ
ସେହିଠାରୁ ଯିବୁ ଆମ୍ଭେ ଚମ୍ପାବତୀ ଦେଶ ।
ଆମ୍ଭର ତ ପବନ ଯେ ଅଟଇ ସାର
ଅମଳାଣ ପୁଷ୍ପଦେବ ଦ୍ୟନ୍ତି ନିରନ୍ତର
ଶୁଣିକରି ଋଷ୍ୟଶୃଙ୍ଗ ହରଷ ହୋଇଲେ
ପାଦ ପଖାଳିବାକୁ ଯେ କମଣ୍ଡଳୁ ଦେଲେ ।
ଶାର୍ଦ୍ଦୁଳର ଚର୍ମ ଯେ ଦେଲେ ବସିବାକୁ
ଗୋମନ୍ତ ପାଉଁଶ ଦେଲେ ତିଳକ ଶୋଭାକୁ ।
ହରିଡ଼ା ବାହାଡ଼ା ଯେ ଅଁଳା ଫଳ ଦେଲେ
କନ୍ଦମୂଳ ଫଳ ତାଙ୍କ ଆଗରେ ଥୋଇଲେ ।
ହସିଣ ବୋଇଲେ ଋଷିଙ୍କୁ ଚତୁରୀ ଚାତୁରୀ
କି ପଦାର୍ଥ ଆମ୍ଭଙ୍କୁ ଦେଲେ ତପଶାଳୀ ।
ମୁନି ବୋଇଲେ ଏ ଯେ ଚାରିଜାତି ଫଳ
ଚରଣ ଧୋଇବାକୁ ନେଇଅଛୁଁ ଜଳ ।
ତୁମ୍ଭେ ହେ ଅତିଥି ଅଇଲେ ଆମ୍ଭପୁର
ମଠରେ ନାହାଁନ୍ତି ଆଜ ଆମ୍ଭର ପିଅର ।

ମୁହିଁ ବାଳ କ୍ରମର ନ ଜାଣଇ କିଛି
ଭକତି ହେବାକୁ ମୋର କିସ ବୁଦ୍ଧି ଅଛି ।
ସମୟ ଅଳପ ଯେ ତରୁଣ ବୟସ
ଚଉଦ ପନ୍ଦର ଯେ ହେବ ଅମରଶ ।
ଦେଶ ଘୋଷ ନ ଜାଣଇ ମାତାଙ୍କୁ ନାହିଁ ଦେଖା
ପିତା ମୋର ଅରଣ୍ୟରେ ତପରେ ଶକତା ।
ତିନିଦିନ ତପକରି ମଠକୁ ଆସନ୍ତି
ଏହିରୂପେ ଅରଣ୍ୟରେ ପିତା ଦିନ ନ୍ୟନ୍ତି ।
କାମମୋହିନୀ ବୋଲେ ଶୁଣ ହେ ଋଷ୍ୟଶୃଙ୍ଗ
ପିତା ଅରଣ୍ୟରେ ଯାଇ କରନ୍ତି ହୋମଯାଗ
ତିନିଦିନ ପରେ ଦେବ ଆସନ୍ତି ଋଷି ଶୁଣ
ଏକାହୋଇ ଏ ଅରଣ୍ୟେକେମନ୍ତେ ଥାଅ ଜାଣ ।
ଋଷ୍ୟଶୃଙ୍ଗ ବୋଇଲେ ଶୁଣରେ ଋଷି ତୁମ୍ଭେ
ଏ ବନରେ ଭୀତି ନାହିଁ କହୁଅଛୁ ଆମ୍ଭେ ।
ବେଦମନ୍ତ୍ର ମୋତେ ଦେଇଛନ୍ତି ପଢ଼ିବାକୁ
କାମଧେନୁ ଦେଇଛନ୍ତି ମୋତେ ପାଳିବାକୁ ।
କାମଧେନୁ ସୁରଭି ଯେ ଏଥିରେ ଛନ୍ତି ରହି
ସେଦୁହେଁ ଥିଲେ ଏଥିରେ କିଛି ଭୟ ନାହିଁ ।
କାମମୋହିନୀ ବୋଇଲେ ଶୁଣ ମୁନିବର
ସୁରଭି କାମଧେନୁକୁ ପାଇଲ କେଉଁଠାର ।
ଋଷ୍ୟଶୃଙ୍ଗ ବୋଇଲେ ପିତାଙ୍କ ତପସିଦ୍ଧେ
ବ୍ରହ୍ମ ମୁନି ହେବାରୁ ଦେଲେକ ବିବୁଧେ ।
ମୋର ତପ ସିଦ୍ଧକାଳେ କାମଧେନୁକୁ ଦେଲେ
ସୁରଭି କାମଦେବକୁ ମୋତେ ସମର୍ପିଲେ ।
ବଳବନ୍ତ ପଣ ଯେ କରଇ ଆମ୍ଭଠାରେ
ସେ ଦୁହିଁଙ୍କି କହିଦେଲେ ମାରନ୍ତି ତତ୍‌କାଳେ ।
କାମମୋହିନୀ ବୋଇଲେ ପିତାଗଲେ କେଉଁଦିନ
ଋଷ୍ୟଶୃଙ୍ଗ ବୋଇଲେ ଆଜକୁ ଯିବାର ତିନିଦିନ ।
ଆଜ ମୋହର ପିତା ଆସିବେ ମୋର ପାଶ
ଶୁଣିଣ କାମମୋହିନୀ ମନରେ ଥାଏ ପ୍ରାଶ ।
ବିଚାରିଲେ ଋଷି ଯେବେ ଆସିବେ ଆଜଦିନ
ପୁତ୍ର କହିଲେ କାଲି ନଯିବେ ପାଶୁଁ ପୁଣ ।
ଏମନ୍ତ ବିଚାର ଯେ ମନେ ପୁଣ କଲା
ଋଷି ଆସିଗଲେ ଆମ୍ଭଙ୍କୁ ହେବ ଭଲା ।
ଋଷ୍ୟଶୃଙ୍ଗ ବୋଇଲେ ଶୁଣହେ ମହାମୁନି
କିସ ଭକତି ତୁମ୍ଭଙ୍କୁ କରିବୁ ଆମ୍ଭେ ପୁଣି ।

ସୁଦୟା କରିଣ ଯେ ଘେନ ମୋର ସେବା
ପ୍ରସନ୍ନେ ଫଳ ମୂଳ ଭୋଜନ କରିବା ।
କାମ ମୋହିନୀ ବୋଲନ୍ତି ଶୁଣ ଋଷି
ଏ ତୁମ୍ଭର ଫଳମୂଳ ଆମ୍ଭ ମନକୁ ନ ଆସି ।
ହରିଡ଼ା ବାହାଡ଼ା ଖାଇଲେ କିଏ ଭୋଗଯାଇ
ଏକା କନ୍ଦମୂଳରେ କି କ୍ଷୁଧାକୁ ହରଇ ।
ଏହି ପାଣି ପିଇଲେ କି ଦେହରୁ ଯାଏ ତୃଷା
ହରିଡ଼ା ଫଳ ଖାଇଲେ ତୁଣ୍ଡହେବ କଷା ।
ଏ ବନର ମଧରେ ଏହି ଫଳ ଉପୁଜଇ
ଦୁର୍ମୂଲ୍ୟ ହେବାରୁ ଏ ଫଳଭକ୍ଷ ତୁମ୍ଭେ ରହି ।
ଏହି କଷା ଫଳକୁ ଆମ୍ଭେ ନଭୁଞ୍ଜୁ ମହାଯତି
ଦେଖି ଆମ୍ଭର ଦେଶ ଯେ ଅପୂର୍ବ ମୂରତି ।
ଆମ୍ଭ ଦେଶ ବନର ଗଛଇ ବକଳ
ଆମ୍ଭର ଦେଶରେ ଅଟେ ନିର୍ଝର ବାସ ଜଳ ।
ଆମ୍ଭଠାରେ ଅଛି ଯେ ଆମ୍ଭର ଦେଶଫଳ
ଅମୂଲ୍ୟ ମିଠା ଲାଗେ ସ୍ୱାଦ ବଡ଼ ତାର ।
ଏତେ ବୋଲି ସୁବାସ ଜଳ ଆଣି ପୁଣି
ନବରତ୍ନ ଝରିଲେ ଦେଲାକ କାମିନୀ ।
ଉଠିଣ ଋଷିପୁତ୍ର ପଖାଳେ ପାଦ ପୁଣ
ଆଗେ ବନ କରନ୍ତେ ଋଷି ଲାଗିଲା ଜଳସ୍ୱାଦ ।
ମୁଖ ପଖାଳିଣ ଯେ ଚରଣ ପଖାଳି
ସୁବାସିତ ଜଳ ନେଇ ଦେଲେ ଅପସରୀ ।
ଲବଙ୍ଗ ଅଳାଇଚ ମରିଚ ଘଷା ପାଣି
ପିଇଲେ ମୁନି ଯେ ମନରେ ତୋଷ ପୁଣି ।
ଜଳରେ ସନ୍ତୋଷ ଯେ ଋଷ୍ୟଶୃଙ୍ଗ ହେଲା
ବୋଇଲା ତୁମ୍ଭ ରାଜ୍ୟେ କିଏ ଜଳ ଉପୁଜିଲା ।
କାମମୋହିନୀ ବୋଇଲା ଶୁଣ ବ୍ରହ୍ମଚାରୀ
କୂପବାମ୍ପୀ ପୋଖରୀରେ ଜଳ ଅଛି ପୂରି ।
ଋଷ୍ୟଶୃଙ୍ଗ ବୋଇଲେ ଯେ ରାଜ୍ୟ ପୁଣି ଭଲ
ଆମ୍ଭର ଦେହକୁତ ଲାଗିଲା ଶୀତଳ ।
ଅପସରୀ ବୋଇଲେ ଶୁଣ ହେ ଋଷିବଳା
ଆମ୍ଭ ରାଜ୍ୟ ବକଳ ଦେହକୁ ଦିଶେ ତୋରା ।
ଋଷ୍ୟଶୃଙ୍ଗ ବୋଇଲେ ଅଣାଅ ଦେଖିବା
ମନକୁ ରୁଚିଲେ ସେହି ବକଳ ପିନ୍ଧିବା ।
ଶୁଣିଣ କାମମୋହିନୀ ହୋଇଲେ ହରଷ
ଦେବାଙ୍ଗ ପତନୀ ଯେ ଧରିଣ ଝୀନବାସ ।

ଏହି ଆମ୍ଭ ରାଜ୍ୟରେ ତରୁର ବକଳ
ଦେଖି ଋଷି ବସି ହେଲେ ହରଷମନର ।
ମନ ହୃଷ୍ଟ ଦେଖି ଜରତା ଶରୀର ପୋଛିଦେଲା
ପୁଣି ମୃଗ ନୟନୀ ବସ୍ତ୍ରେକ ବାଛିଲା ।
କୁଞ୍ଚ କରିଦେଲା ନେଇ ବୋଇଲା ମୁନି ପିନ୍ଧ
ଋଷ୍ୟଶୃଙ୍ଗ ନେଇଣ ପିନ୍ଧିଲେକ ବେଗ ।
କାମମୋହିନୀ ବୋଇଲେ ଆମ୍ଭର ଭସ୍ମଘେନ
କେମନ୍ତେ ଆମୋଦ ଯେ କରୁଛି ଏହି ପୁଣ ।
ଋଷ୍ୟଶୃଙ୍ଗ ବୋଇଲେ ଅଣାଅ ଦେଖିବା
କେମନ୍ତ ପ୍ରକାର ଭସ୍ମ ତୁମ୍ଭର ଅଟେ ଅବା ।
ଶୁଣିଣ କାମମୋହିନୀ ଗନ୍ଧମାନ ଆଣି
ଚାରୁ ଗନ୍ଧ ଋଷି ଶରୀରେ ଘେନିଲେକ ପୁଣି
ତୁମ୍ଭର ଆସନରେ ବସିବା ଆମ୍ଭେ ପୁଣ
ନ ଦେଖିଲା କଥାମାନ ଦେଖିଲୁ ଆମ୍ଭେ ପୁଣ ।
ଋଷିଠାରୁ ଶୁଣିଲା ଯେ ବଚନ ଯାହା ଝିରୀ
ଯେବେଣ କାରଣ ଏହା ବିସ୍ତାର ନ କରି ।
ନେଳି ବନାଉତ ନେଇଣ ପାଡ଼ିଦେଲା
ଆମ୍ଭରାଜ୍ୟ ବ୍ୟାଘ୍ରଛାଲ ବୋଲିଣ ବୋଇଲା ।
ସେଥିର ଉପରେ ଋଷି ବସିଲେକ ପୁଣ
ଆସନ ବଡ଼ ଶୀତଳ ଲାଗିଲାକ ପୁଣ ।
ଋଷି ବସିବାରୁ ଯେ ମାୟାସ୍ତିରୀ ପୁଣ
ଆସ୍ୱାଦ ଦ୍ରବ୍ୟନେଇ ବସିଲାକ ଜାଣ ।
କର୍ପୂର କସ୍ତୁରୀ ଘଷି ଋଷି ଅଙ୍ଗେ ନେଇ
ବୋଲେ ଏମନ୍ତ ବିଭୂତି ଆମ୍ଭରାଜ୍ୟେ ଥାଇ ।
ଆସିବାରୁ ଋଷି ଅଙ୍ଗ ଶୀତଳ ହୋଇଲା
କାମମୋହିନୀ ବୋଇଲା ଶୁଣି ଋଷିବଳା ।
ଆମ୍ଭର ଦେଶରେ ଏ ଅଟେ ବନହାର
ଲଗାଇଲେ ସୁନ୍ଦର ଦିଶିବ ଶରୀର ।
ଋଷ୍ୟଶୃଙ୍ଗ ବୋଇଲେ ଅଣାଅ ଲଗାଇବା ।
ତୁମ୍ଭର ଆମ୍ଭଠାରେ ସୁଦୟା ଯେବେ ହେଲା ।
ଶୁଣି ବାରବନିତା ଭୂଷଣ ଆଣିଦେଲା
ବସି କାମମୋହିନୀ ଋଷିଙ୍କି ଖଞ୍ଜିଲା ।
କର୍ଣ୍ଣରେ ଖଞ୍ଜିଲେ ମର୍କତ କୁଣ୍ଡଳ
ଗଳାରେ ଲମ୍ୱାଇଲେ ଗଜମୋତିମାଳ ।
ବାହାରେ ବାହୁଟି ଅଙ୍ଗୁଠିରେ ରତ୍ନମୁଦି
କଟୀରେ ସୁନାସୂତା ଚଉସରି ଭେଦି ।

କପାଳେ ଖଞ୍ଜିଲା କସ୍ତୁରୀ ଚାରୁ ଚିତାତୋରା
ବୋଇଲେ ଆମ୍ଭରାଜ୍ୟ ଫଳ ଭୋଜନ କରପରା ।
ବୋଇଲେ ରଷ୍ୟଶୃଙ୍ଗ ଅଣାଅ ବହନ
ଶୁଣିକରି ମାୟାରଷି ତୁରିତେ ଆଣିଣ ।
ଦୁଧ ସର ଲବଣୀ ନବାତ କନ୍ଦଥୋଇ
ଆମ୍ଭ ନାରୀକେଳ ପଣସ ନେଲା ଦେଇ ।
ଲେମ୍ବୁ ନାରଙ୍ଗ ଯେ ଟଭା କରମଙ୍ଗା
କମଳା ଜମ୍ବିଲ ଯେ ଡାଳିମ୍ବ ସତ୍ୟ ଆମ୍ଭ ।
ଜାଈଫଳ ଅଳାଇଚ ଦାରାକ୍ଷ ଲବଙ୍ଗ
ଅନେକ ପ୍ରକାରେ ଦ୍ରବ୍ୟ ଆଗରେ ଠୁଳସର୍ବ ।
ଖଜା ମିଠାଇ ଯେ ଶାଚି କନ୍ଦପଣା
ଏମନ୍ତେ ଅନେକ ଦ୍ରବ୍ୟ ଥୋଇଲେ ନେଇପୁଣା ।
ବୋଇଲେ ଆମ୍ଭଦେଶେ ଏଫଳଫଳେ ବୃକ୍ଷେ
ଭୁଞ୍ଜ ଏବେ ରଷି ଏ କେମନ୍ତେ ଲାଗେ ସୁଖେ ।
ଶୁଣିଣ ରଷ୍ୟଶୃଙ୍ଗ ସେ ଫଳ ଭୁଞ୍ଜିଲେ
ସରରେ ନବାତ ଦେଇ ପାଣି ପିଆଇଲେ ।
ସାକର ବସାଦହି ଊଷମି ଘଷା ଚୁଡ଼ା
ଖଜା, ପିଠା, କାକରା, ଡାଳିମ୍ବ ଯୋଡାଯୋଡା ।
ଆମ୍ଭ, ପଣସ, କଦଳୀ, ଟଭା ଯେ ନାରଙ୍ଗ
କମଳା, ନାରିକେଳ, ଦାରାକ୍ଷ ଫଳ ସଙ୍ଗ ।
ଶାଚିକନ୍ଦପେଡାନେଇ ନାନାବର୍ଣ୍ଣରେଦେଲେ
ବଣ ପଇଡସଂଗରେ ଯାଇ ଫଳାଏ ବୋଇଲେ ।
ହରଷରେ ରଷି ଯେ ଭୋଜନ କଲେ ପୁଣ
ସ୍ୱାଦପାଇ ରଷ୍ୟଶୃଙ୍ଗ ପଚାରେ ତାଙ୍କୁ ପୁଣ ।
ତୁମ୍ଭେ ଏତେଏତେ ଦ୍ରବ୍ୟ ଆଣିଲ କେଉଁବନୁଁ
କାମମୋହିନୀବୋଲେ ଆଣିଛି ଲୋମପାଦ ଭବନୁ ।
ମିଠା ଦ୍ରବ୍ୟ ଖାଇ ରଷି ହୋଇଲେ ସନ୍ତୋଷ
ପ୍ରଶଂସା କଲେ ରଷି ଧନ୍ୟ ତୁମ୍ଭର ଦେଶ ।
ଏତେ ସ୍ୱାଦ ଫଳ ଯେ ତୁମ୍ଭର ବନେ ଥାଇ
ଜାଣିଲୁ ତୁମ୍ଭର ତପ ଅଛଇ ସିଦ୍ଧ ହୋଇ ।
କେବଣ ବନ ତୁମ୍ଭର କେମନ୍ତ ଦେଖିବା
ପିତାତ ନ ଛାଡ଼ିବେ କେମନ୍ତେ ଆମ୍ଭେ ଯିବା ।
ତୁମ୍ଭ ସଙ୍ଗରେ ମୋର ଯିବାର ମନ ହେଲା
ଏ ମିଠା ଫଳେ ଯେ ଆମ୍ଭଙ୍କୁ ସ୍ୱାଦ ହେଲା ।
କାମମୋହିନୀ ଯେ ରଷିର ବାଣୀ ଶୁଣି
ହୃଦକୁ ହୃଦ ଲଗାଇ ଆସିଲା ତରୁଣୀ ।

ସକଳ ଦ୍ରବ୍ୟମାନ ପହଞ୍ଚିଲେ ରଷି ପୁଣି
ହର୍ଷ ହେଲେ ମୁନି ମନେ ମନେ ଗୁଣି ।
ମୁଖଁ ପଖାଳିଣ ସେହୁ ଆଚମନ କଲେ
କାମମୋହିନୀ କୋଳରେ ଯାଇଣ ବସିଲେ ।
ବାରବନିତାମାନେ ପୁଷ୍ପମାଳା ଦେଲେ
ପୁଷ୍ପରେ ରଷିଙ୍କି ଭୂଷଣ ପୁଣ କଲେ ।
ମାଳ ଚୂଳ ଲଗାନ୍ତେ ପ୍ରକଟେ ବାସ ଗୁଣି
ରଷ୍ୟଶୃଙ୍ଗ ମନରେ ଆନନ୍ଦ ହେଲେ ପୁଣି ।
ମୁଖବାସ ନିମନ୍ତେ ତାମ୍ବୁଳ ନେଇ ଦେଲେ
ଲବଙ୍ଗ ଜାଈଫଳ ସଂଗରେ ଚୋବାଇଲେ ।
ଭୁଞ୍ଜିଣ ତପଶୀଳ ହୋଇଲେ ପୁଣି ଭୋଳ
କାମମୋହିନୀ ବୋଲେ ଶୁଣ ହେ ରଷିବାଳ ।
ଭଲ ଯୋଗେ ଆଜ ଯେ ପଡ଼ିଲା ଭେଟ ଆସି
ତୁମ୍ଭଙ୍କୁ ଦେଖି ମୁଁ ଯେ ହୋଇଲି ଆଜତୋଷି ।
ଶରୀର ହୃଦୟ ଯେ ମିଶାଇ ମନୋହାରୀ
କେବଣ ବାମା ବିଞ୍ଚେ ବିଞ୍ଚଣି କରେ ଧରି ।
ଚାମର ଚାଳିଲା ସେ କେବଳ ତରୁଣୀ ।

× × ×

କେହୁ ପାଟଛତ୍ର ଯେ ଉହାଡ଼ିଲେ ଶିରେ
ପଲଙ୍କ ସୁପାତିରେ ବସାଏ ମୁନିବରେ ।
ବେଣୁବୀଣା କଂସାଳ ତାଳ ଯେ ମର୍ଦ୍ଦଳ
ସିତାର ବଜାଇ ଜାତ କଲେକ ସୁସ୍ୱର ।
ମାଳବ ରାଗରେ ଗାଉଣା ରସକରି
ଅତି ଆନନ୍ଦରେ ରାଗ ଗାଇଲେ କେଦାରି ।
ବୀଣା ଡମ୍ବରୁ ଧରିଣ ଗାଉଣା କଲେ ଗୀତ
କେହୁ ନୃତ୍ୟ କରନ୍ତି ଯେ ମୁନିଙ୍କ ସଂଗତ ।
କେ ଧୂପକାଠି ଧରି ଛିଡ଼ା ହୋଇଛନ୍ତି
କେ ନେଇ ପାଦତଳରେ ରତ୍ନ ପାଦୁକାଦ୍ୟନ୍ତି
କେବଣ ସୁନ୍ଦରୀ ନେଇ ଦର୍ପଣ ଦେଖାଇଲେ
ସେମାନଙ୍କ ମୁଖ ଚାହିଁ ରଷି ଯେ ବୋଇଲେ ।
କାମମୋହିନୀ କି ସେ ବୋଲନ୍ତି ବଚନ
ଧନ୍ୟ ତପଶୀଳ ତୁମ୍ଭେ ଅଟ ହେ ସର୍ବଜନ ।
ତୁମେତ ଅପୂର୍ବ ରଷି ଦେଖିଲା ନାହିଁ ମୋର
ସ୍ୱୟଂ ଧବଳରେ ଦିଶେ ଆପଣାର ଶରୀର ।
ତପ ସିଧାରେ ତୁମ୍ଭେ ଧର୍ମବନ୍ତ ପୁଣ
ଯୁବତୀଙ୍କ ମୁଖ ଚାହିଁ ବୋଲନ୍ତି ରଷି ପୁଣ ।

ହସି କାମ ମୋହିନୀ ଋଷିଙ୍କି ବୋଇଲା
ହୃଦେ ସ୍ତନ ଲଗାଇ ମୁଖରେ ଚୁମ୍ବନ ଦେଲା ।
ବୋଇଲା ଏ ଆମର ତପର ଶକତି
ତପରବଳେ ଏବେ ଧରିଛି ନବମୂର୍ତ୍ତି ।
ଜାନୁରେ ହସ୍ତ ଦେଇଣ ଚଳାଏ ବେଗେନଖ
ପୁଣି ପାଲଟିଣ ଚାହିଁଇ ଋଷି ମୁଖ ।
ହିଆ ଆଉଁସିଣ ଯେ କୁଚକୁ ଠାବକଲେ
ହସ ହସ ହୋଇ ମାୟା ମୁନିଙ୍କି ପଚାରିଲେ ।
ଋଷ୍ୟଶୃଙ୍ଗ ବୋଇଲେ ଶୁଣ ଯେ ତପଶୀଳ
କେବଣ ପଦାର୍ଥ ଏ ଦିଶଇ ସମତୁଲ ।
କୋମଳ ଜଣାଇ ଯେ ଥଣ୍ଡା ହେବା ପାଣି
କେମନ୍ତେ ବିନ୍ଧାଣି ଏହା ଗଢ଼ିଲାକ ପୁଣି ।
ଏ ଦ୍ରବ୍ୟ ଅପୂର୍ବ ଆମ୍ଭ ଦେଶରେ ନାହିଁ ଦେଖ
ଏଢ଼େ ବଡ଼ ପଦାର୍ଥ ପାଇଲ କାହୁଁ ଏକ ।
କାମମୋହିନୀ ବୋଇଲେ ଶୁଣହେ ତୁମ୍ଭେ ଋଷି
ଏଥିର ଭିତରେ ଯେ ଅମୃତ ପୂରିଅଛି ।
ଏହୁ ସେ ଦ୍ରବ୍ୟ ଯେ ଆମ୍ଭର ଅଛି ଦେହ
ଯାଗର ଫଳ ଏ ଯେ ଅଟଇ ସର୍ବ ସହ ।
ନାଗରୀବିଷ୍ଣୁ ଭାବରେ ବଶ୍ୟ ହୋଇଦେହ ଦେଲା
ଦାସ ବତ୍ସଳ ବାନା ସେହୁ ଯେ ବୋଲାଇଲା ।
ଅଜୟବ ଋଷି ପୁଣି ପାଦପାଣି ନାହିଁ
ଉଷୁମାନେ ହୁକୁମ ଦେଇଣ ଛନ୍ତି ରହି ।
ଆଶ୍ୱାସନା କରିଣ ପ୍ରସନ୍ନ ମୋତେ ହୁନ୍ତି
ମନେ ଯାହା ବାଞ୍ଛଇ ସେ ଫଳ ଦିଅନ୍ତି ।
ତେଣୁ ବଳରାମ ଦାସ ଯେ ସେପାଦେ ଶରଣ
ଉଦ୍ଧରି ଧର ମୋତେ ହେ ପ୍ରଭୁ ନାରାୟଣ ।
ପାର୍ବତୀ ବୋଇଲେ ଦେବଶୁଣ ହେ ମହେଶ୍ୱର
ସେଠାରୁ କିସ କଲେ ଅପସରା ମେଳ ।
ଈଶ୍ୱର ବୋଇଲେ ଶୁଣ ଗୋ ଶାକମ୍ଭରୀ
ହୃଦୟରେ ଚିନ୍ତା ଯେ କରିଣ ସର୍ବନାରୀ ।
ଶାପ ଦେବାକୁ ଡରିଲେ ତରୁଣୀ ସକଳ
ବାସୁଦେବ ସୁମରଣା କରନ୍ତି ମନର ।
ଋଷ୍ୟଶୃଙ୍ଗ ମନକୁ ଭୋଳ କରାଇଲେ
କୋମଳ ଭାଷା କହିଣ ମୁନିଙ୍କି ମୋହିଲେ ।
ହିଆକୁ ଆଉଜାଣଇ ଆଣିଲେ କୋଳକରି
ହସି କରି ଅଧର ଯେ ଋଷି ଚୁମ୍ବେ ଧରି ।

ଶରୀର ଆଉଁସଣ ଚୁମ୍ବିଲେ ପ୍ରେମରସେ
ମୁନିମନ ସେ ଯେ ହରିଲେ ମାୟାରସେ ।
ବିବିଧ ବିନୋଦ ରତି ଦେଲେ ଯେ ଋଷିଙ୍କି
ସୁବାସିତ ଦ୍ରବ୍ୟମାନ ଅଙ୍ଗେ ନେଇ ଭାଷି ।
କାମମୋହିନୀଙ୍କି ମୁନି କୋମଳ ଭାଷା ଭାଷି
ତୁମ୍ଭ ଭୁବନକୁ ଆମ୍ଭେ ଯିବୁହେ ବ୍ରହ୍ମରାଶି ।
ଚାଲ ବେଗେ ଦେଖିବା ତୁମ୍ଭର ମନ୍ଦିର
ଏମନ୍ତ ବଚନ କହି ଉଠିଲେ ମୁନିବର ।
ନୃତ୍ୟ ରୁହାଇଣ ବୋଇଲେ ଅପ୍ସରୀ
ଆଜକତ ନ ଯିବହେ ଶୁଣ ତପଚାରୀ ।
ବେଳ ଉଛୁରହେଉଛି ଯିବୁ ଦେବତା ପୂଜାକରି
ଅଳ୍ପ ବେଳେ ଅଛଇ ଆଉ ତପଚାରୀ ।
ଦୂରରେ ଆମ୍ଭ ମଠ ଅଟେ ବିଶେଷତ ।

× × ×

ଆଜଯାଏ ବନରେ ରହିବୁ ଆମ୍ଭେ ପୁଣ
କାଲି ସଙ୍ଗରେ ନେବୁ ତୁମ୍ଭଙ୍କୁ ଋଷି ଶୁଣ ।
ଋଷ୍ୟଶୃଙ୍ଗ ବୋଇଲେ ଭଣ୍ଡକି ଅଟ ତୁମ୍ଭେ
ତୁମ୍ଭ ସଙ୍ଗେ ଯିବାକୁ ମନ ମୋ ଅଛି ଭାବେ ।
କାମମୋହିନୀ ବୋଇଲେ କରୁଛୁ ଆମ୍ଭେ ସତ
ତୁମ୍ଭେ ଅଟ ବ୍ରହ୍ମଚାରୀ ଆମ୍ଭେ ତପୋବନ୍ତ ।
ସତ୍ୟ ଆମ୍ଭର ବଚନ କେବେହେଁ ନ ଲଙ୍ଘିବୁ ।
ନିଶ୍ଚୟ ସତ୍ୟ ବାଣୀ ଆମ୍ଭର ଅଟେ ପୁଣି
ମେଳହୋଇ ଯିବା ଆମ୍ଭେ ଆଜକହେ ମୁନି ।
ଶୁଣିଣ ଋଷ୍ୟଶୃଙ୍ଗର ନ ଇଚ୍ଛଇ ମନ
ଗଲେ ନ ଆସିବେ ବିଚାରନ୍ତି ମୁନି ମନ ।
ସତ୍ୟ ବଚନ କେବଳ ମୁନି ଯେ ଶୁଣିଲେ
ମନରେ କଳ୍ପିତ ମୁନି ପୁଣି ଯେ ହୋଇଲେ ।
ଆସିବୁ ଆସିବୁ ବୋଲି ଯୁବତୀ ସତ୍ୟ କଲେ
ପିତା ତୁମ୍ଭର ଦୁଷ୍ଟ ବୋଲିଣ ବୋଇଲେ ।
ଏ ଯେ ଉପହାର ପିନ୍ଧିଛି ଗଛର ବକଳ
ଏହାକୁ ଘେନି ଆମ୍ଭେ ଯାଉଛୁ ସଙ୍ଗତର ।
ଏ ଯେଉଁ ଅଳଙ୍କାର ନେଇଛୁଁ ଆମ୍ଭେ ଜାଣ
କାଲି ଆଣିକରି ଦେବୁ ତୁମ୍ଭଙ୍କୁ ଆମ୍ଭେ ଜାଣ ।
ଏ ଯେଉଁ ବିଭୂତି ଆମ୍ଭର ହେଲ ବୋଲି
ବେଗେ ଲେଛି ପକାଅ ହୃଦରୁ ତୁମ୍ଭରି ।
ଏତେ କହି ବେଶ ଭୂଷଣ କାଢ଼ିଲେ
ଅଳଙ୍କାର ଅଙ୍ଗରୁ କାଢ଼ି ପକାଇଲେ ।

ପିନ୍ଧିଲା ବସନ ଯେ ପାଲଟାଇଲେ ପୁଣ
ନିର୍ମଳ ଜଳରେ ଋଷି କରନ୍ତି ସ୍ନାହାନ ।
ଗୋମୟ ସେ ନେଇଣ ଶିରରେ ଲେପିଲେ
ବୃକ୍ଷର ବକଳ ନେଇଣ ପିନ୍ଧାଇଲେ ।
ମୃଗଛାଲ ଉପରେ ମୁନିଙ୍କି ବସାଇଲେ
କୋମଳ ବନାଉତ ସେଠାରୁଁ କାଢ଼ିନେଲେ ।
ସୁବର୍ଣ୍ଣର କଠାଉ ନେଲେ ପାଦୁଁ କାଢ଼ି
ଭସ୍ମ ଆଭରଣ ଯେ ଯତନକରି ବୋଳି ।
ଶେଯ ମାଣ୍ଡିମୁଚୁଳା ଚଉକି ଘେନିଗଲେ
ସେ ସ୍ଥାନ ନିର୍ମଳ ପରିମଳ କରିନେଲେ ।
ଋଷିଙ୍କି ବୋଇଲେ ସକଳ ଜାଟାଳି
ପିତାଙ୍କ ଆଗରେ ତୁମ୍ଭେ ନ କହିବ ଫେଡ଼ି ।
କହିଲେ ପିତା ତୁମ୍ଭର କରିବେ ଆକଟ
ସଙ୍ଗରେ ଘେନିଯିବେ ନୋହିବ ଆମ୍ଭ ଭେଟ ।
ତେତେବେଳେ ଆମ୍ଭଙ୍କୁ ନିନ୍ଦା ନ କରିବ
ସତ୍ୟ ଲଙ୍ଘନ ପୁଣି ଋଷି ତୁମ୍ଭେ ହେବ ।
ଆମ୍ଭର ଦୋଷ ନାହିଁ ଯେ କହିଲୁ ତୁମ୍ଭଙ୍କୁ
ପିତା ଜାଣିଲେ ଯାଇ ନପାର ଆମ୍ଭ ଭୁବନକୁ ।
ଋଷ୍ୟଶୃଙ୍ଗ ବୋଇଲେ ମୁଁ ନ କହିବି କିଛି
ଶୁଣିକରି ସକଳ ଯୁବତୀ ତୋଷ ମତି ।
ସକଳ ଦ୍ରବ୍ୟ ଘେନି ଯୁବତୀ ସେଠାରୁ
ବାହାର ହୋଇଲେ ଋଷି ଦେଖିବାରୁ ।
ଦେଖୁ ଦେଖୁ ଅପସରୀଏ ଅଇଲେ ପିଠିଦେଇ
ବସିଲା ଠାବରୁ ଉଠିଲେ ଋଷିଙ୍କ ତନୟୀ ।
ମାୟାମୋହିନୀ ଯିବାରୁ ଋଷ୍ୟଶୃଙ୍ଗ ଚାହିଁ
ଲତାର ଉହାଡ଼ରେ ମୋହିନୀ ମିଳେଯାଇ ।
ମୁନି ଅନାଇଁ ଡାକନ୍ତି ବେଗେ ତୁମ୍ଭେ ଆସ
ତୁମ୍ଭ ସଙ୍ଗରେ ନିଅ ମୋଠାରେ ନକର ଅବିଶ୍ୱାସ ।
ସୁନ୍ଦରୀ ଶୁଣିଲେ ଯେ ଲତା ଉହାଡ଼ରେ
ବୋଇଲେ ଋଷିମନ ବଳିଲା ଆମ୍ଭଠାରେ ।
ଆନନ୍ଦରେ ହସିଣ ସେ ମୁନିଙ୍କି ବୋଇଲେ
ଆସିବୁ କାଲି ବୋଲି ଉଚ୍ଚରେ ଡାକଦେଲେ ।
ଅଦୃଶ୍ୟ ହେବାଯାଏ ଅନାଇଲେ ମୁନି
ବେଗେ ବେଗେ ଚଳିଗଲେ ନଦୀତୀରେ ପୁଣ
ବନସ୍ତ ଭିତରେ ଚଳିଗଲେ ସର୍ବେ ପୁଣ
ଜରତା ଆଗରେ ମିଳିଲେ ପୁଣ ଜାଣ ।

ନାବର ଉପରେ ଚଢ଼ିଲେ ବେଗେ ଯାଇ
ଚିତ୍ର ମନ୍ଦିର ପରେ ବସିଲେ ସ୍ଥିର ହୋଇ ।
ସକଳ କଥାମାନ ଯେ କହିଲେ ତାଙ୍କୁ ପୁଣ
ଶୁଣିକରି ଜରତା ପରମତୋଷମନ ।
ଯୁବତୀ ଯିବାରୁ ଯେ ଭାଳନ୍ତି ବ୍ରହ୍ମମୁନି
ମନରେ ନିରସ ଯେ ହେଲେ ମହାମୁନି ।
ଏଥୁ ଅନନ୍ତରେ ଯେ ଋଷ୍ୟଶୃଙ୍ଗ ପୁଣ
ବସିକରି ଭାଳୁଛନ୍ତି ଆପଣା ମନେଣ ।
ନପୁଣ ନ ଆସନ୍ତି ଅପୂର୍ବ ତପଚାରୀ
କହିକରି ଗଲେ କାଲି ଆସିବୁ ସ୍ନାନକରି ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣଗୋ ଶାକମ୍ଭରୀ
ପିତାଙ୍କର ଆସିବା ବେଳ ହେବାରୁ ବିଚାରି ।
ଆସନରୁ ଉଠି କାମଧେନୁକୁ ଆଣିଲେ
ବତ୍ସାକୁ ଲଗାଇ ପୁଣ ଗୋଦୋହନ କଲେ ।
ସେହି କ୍ଷୀର ନେଇଣ ସାଇତିଲେ ଯତି
ଯୁବତୀଙ୍କଠାରେ ତାଙ୍କ ରହିଲା ସନମତି ।
ଏସନକ ସମୟେ ରବି ଅସ୍ତଗଲେ
ତପସ୍ଥାନ ତେଜି ବିଭାଣ୍ଡେକ ଯେ ଅଇଲେ ।
ନିଜ ଆଶ୍ରମରେ ପ୍ରବେଶ ହେଲେ ଆସି
ଆମୋଦ ଗନ୍ଧରେ ସେ ସ୍ଥାନ ବାସୁଅଛି ।
ଋଷ୍ୟଶୃଙ୍ଗ କଥାସବୁ ବିପରୀତ ମଣି
ମାୟା ନରମାନେ ଅଇଲା ପ୍ରାଏ ମଣି ।
ଚରଣ ପଖାଳି ମୁନି ଶୌଚ ଯେ ହୋଇଲେ ।
ପ୍ରାତଃକାଳ ତର୍ପଣ ମୁନି ତହିଁକଲେ ।
ପୁତ୍ରକୁ ପଚାରନ୍ତି କୋଳେ ବସାଇଣ
ଶରୀର ଆଉଁସିଣ ମୁଖରେ ଚୁମ୍ବିଣ ।
କହନ୍ତି କିସ ବାବୁରେ ପ୍ରକଟେ କରେବାସ
ଋଷିଙ୍କି ନ ଯୋଗାଏ ଏମାନ ବିଶେଷ ।
କେବଣ କଥା କେବଣ ଭବିଷ୍ୟ
କହମୋର ଆଶରେ ଏଥିର ସନ୍ଦେଶ ।
ଋଷ୍ୟଶୃଙ୍ଗ ବୋଇଲେ ପିତାମହ ଶୁଣ
ଆଜମୋର ସୁଫଳ ହୋଇଲାକ ପୁଣ ।
ରୂପଗୁଣେ ମୋହିନୀ ଯେ ପାରନ୍ତି ସୁରରାଜ
ଅପୂର୍ବ ତନୁମାନଙ୍କୁ ଦେଖିଲି ମୁହିଁଆଜ ।

ତାହାଙ୍କର ଜଟ ଉଲଟ ରୂପେ ଶୁଣ
ଏକ ଏକ ଜଟ ସମସ୍ତଙ୍କର ଜାଣ ।
ଶାମଳିତ ଜଟାମାନ ଉତ୍ତମ ବିଶେଷ

× × ×

ରୁଦ୍ରାକ୍ଷର ରତ୍ନମାଳା ଗଳାରେ ଛନ୍ତିଲାଇ
ବକ୍ଷସ୍ଥଳେ ମାଳମାଳ ଲମ୍ବିଅଛି ତହିଁ ।
ହରିଡ଼ା ବାହାଡ଼ା ଦେଖିଣ ହସିଲେ
ତାଙ୍କ ରାଜ୍ୟ ସ୍ୱାଦୁଫଳ ମୋତେ ଭୁଞ୍ଜାଇଲେ ।
ତାହାଙ୍କର ଦେଶର ନିର୍ଝର ପାଣି ଦେଲେ
ପିଅନ୍ତେ କୋମଳ ଯେ ଶରୀର ମୋର ଭଲେ ।
ତୁମ୍ଭର ବିକଳରେ ବିଚିତ୍ର କାମ ଅଛି
ଆମ୍ଭ ବିକଳ ତାଙ୍କ ମନକୁ ନ ରୁଚି ।
ତାଙ୍କର ଦେବତାଙ୍କୁ ହୃଦୟରେ ବହିଛନ୍ତି
ଦଣ୍ଡକମଣ୍ଡଳ ଯେ ନାହିଁ ତାଙ୍କର କିଛି ।
ମୁଖମାନ ଜିଣଇ ଯେ ଚନ୍ଦ୍ରର ଆକାର
ନିର୍ମଳ ଦ୍ରବ୍ୟ ଧରିଛନ୍ତି ଯେ ହସ୍ତର ।
ଆପଣା ମୁଖ ଦିଶଇ ସେଥିରେ ଚାହିଁଲେ
ସୂର୍ଯ୍ୟ ଦେବତା ପ୍ରାୟ ଯେ ରୂପକାନ୍ତି ଭଲେ ।
ଭୋ ତାତ ଧନ୍ୟ ତାଙ୍କର ତପ ଯେ ଅଟଇ
ଛଦ୍ରମ ପ୍ରାୟେ ଆମ୍ଭେ ତପକୁ ମଣିଲଇଁ ।
ଅଙ୍ଗନ୍ୟାସ କରନ୍ତି ଯେ ସ୍ଥାନମାନ ଛୁଇଁ
ତୁମ୍ଭରାଣ ତାତମୋତେ ଆଶ୍ୱାସନା ହେଲି ତହିଁ ।
ବିଭାଣ୍ଡେକ ବୋଇଲେ ନୁହଁନ୍ତି ଯେ ଯତି
ଯାହାକୁ କହୁଛ ପୁତ୍ର ରାକ୍ଷସ ସେହିଟି ।
ତପୀଙ୍କି ଦେଖିଲେ ଦେଖା ଦିଅନ୍ତି ରାକ୍ଷାସୁଣୀ ।

× × ×

ତାଡକା ସୁରର ଯେ ଅଟଇ ଗଡ଼ କି
ପଥ ଓଗାଳିଣ ସେହୁ ମନୁଷ୍ୟ ବୋଲାନ୍ତି ।
ଦଶଗ୍ରୀବ ଭଉଣୀ ଅଟଇ ସୂର୍ପଣଖା
ଦିବ୍ୟରୂପଦେଖି ଋଷିର ଭାଙ୍ଗଇ ତପସ୍ରୋତା ।
କାଳେଣ ତାହାକୁ ଗ୍ରାସ କରଇ
ନିଦ୍ରାଗଲା ବେଳେ ତାହାକୁ ଭକ୍ଷଇ ।
ଶତେମୁଖା ରାବଣର ଭଉଣୀ ଭଇରୋବି
ଋଷି ଦେଖି ରଡ଼ିକରେ ଯେସନେ ବୃକ୍ଷଭାଙ୍ଗି ।
ଧରିଣ ଋଷିଙ୍କି ଗିଳଇ ଯେ ପୁଣ
ଖୋଜିଲେ ନମିଳଇ ଜଳରେ ବୁଡ଼େ ଜାଣ ।
ଇନ୍ଦ୍ରଜିତ ସୁତ ମହୀରାବଣ ଭଉଣୀ
ଶୋଭାବୋଲି ନାମ ତାକୁ ଦେଲା ପିତାପୁଣି ।
ଚାଟୁ ବଚନ କହିଣ ଋଷିଙ୍କି ଜଣାଏ
ଋଷି କୋପକଲେ ନାଗପାଶରେ ବାନ୍ଧିନିଏ ।
ଅଗ୍ନିରେ ପୋଡ଼ିଣ ତାର ମାଂସ ଖାଇ
ତେବେ ତୋଷ ତାର ଉଦର ହୁଅଇ ।
ସହସ୍ରାମୁଖ ରାବଣ ଅଛି ବିଲଙ୍କାରେ
ଦୁହିତା ଯେ ଅଛି ତାର କଳା ଯେ ବର୍ଣ୍ଣରେ
କାଳିଜିଭି ବୋଲି ତାର ଅଟଇ ନାମ ଜାଣ
ଋଷିଙ୍କି ଚାହିଁଲେ କାଳି ଲଗାଏ ବହନ ।
କାଳଫାଶ ଧରିଣ ଋଷିର ପ୍ରାଣ ହରେ
ରନ୍ଧନ କରିଣ ଖାନ୍ତି ବନସ୍ତରେ ।
ଶୁଣିଣ ଋଷ୍ୟଶୃଙ୍ଗ ବୋଇଲେ ଶୁଣ ପିତା
ରାକ୍ଷାସୁଣୀ ନୁହଁନ୍ତି ସେ ତପରେ ଜଗଜିତା ।
ବିଭାଣ୍ଡେକ ବୋଇଲେ ଶୁଣରେ ଏବେ ଦୁହିତା
ମାୟାରେ ରୂପମାନ ପ୍ରକାଶ ହୋନ୍ତି ସେହିତ ।
ତୁ ବାବୁ ତାହାକୁ ରେ ବିଶ୍ୱାସ ନଯିବୁ
ମୋହର ବଚନ ତୁହି ପ୍ରତି ପାଳିଥିବୁ ।
ଏତେକହି ବିଭାଣ୍ଡେକ ପୁତ୍ରକୁ ସଙ୍ଗେ ଘେନି
କ୍ଷୀର ଫଳ ମୂଳ ଯେ ଭକ୍ଷିଲେ ଯାଇପୁଣି ।
ମୃଗଛାଲ ଉପରେ ଶୟନ ସେ ଯେ କଲେ
ଶର୍ବରୀ ଶେଷ ହେବାରୁ ନିଦ୍ରାରୁ ଉଠିଲେ ।
ପ୍ରଭାତେ ବିଭାଣ୍ଡେକ ପୁତ୍ରକୁ ଡାକେ ଭଲେ
ମାୟାକଥାମାନଙ୍କରେ ନ ପଡ଼ିବୁ ତୁରେ ।
ସୁରଭି କାମଧେନୁକୁ ଚାହିଁଣ ଛାଡ଼ିଦେବୁ
ସ୍ନାନ ତର୍ପଣ ସାରିଣ ଭୋଜନ କରିବୁ ।
ଏତେକହି ବିଭାଣ୍ଡେକ ତପସ୍ଥାନେ ଗଲେ
ତପସ୍ଥାନେ ମିଳି ସ୍ନାନ ଶୌଚ ପୁଣି ହେଲେ ।
ଆସନ କରିଣ ତପେ ବସିଲେକ ପୁଣ
ଅନାମିକା ଅଜପା ସୁମରେ ଋଷି ପୁଣ ।
ପିତା ଚଳିବାରୁ ଋଷ୍ୟଶୃଙ୍ଗ ବାହାରିଲେ
ସ୍ନାନ ତର୍ପଣ ଋଷ୍ୟଶୃଙ୍ଗ ଯେ ସାରିଲେ ।
ମଢିଆରେ ଯାଇଣ ପ୍ରବେଶ ହୋଇଲେ ।

× × ×

ଶାଳଗ୍ରାମ ଶିଳାଙ୍କୁ ପୂଜିଲେ ବିଶେଷ

× × ×

ପୂଜାସାରି ବିଭୁତି ଅଙ୍ଗରେ ହେଲେ ବୋଳି
ସୁରଭି କାମଧେନୁ ଦୁହିଁଙ୍କି ବେଗକରି ।
କ୍ଷୀର ଭକ୍ଷି କାମଧେନୁକୁ ବନକୁ ଛାଡ଼ିଦେଲେ
ମୃଗଛାଲ ଉପରେ ଋଷି ଯେ ବସିଲେ ।
ବେଲଗଛ ମୂଳରେ ବସିଣ ଋଷ୍ୟଶୃଙ୍ଗ
ଅନାମିକା ଅଜପା ଯେ ସୁମରନ୍ତି ବେଗ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ପଞ୍ଚାନନ
କେଉଁଠାରୁ ଅପସରାମାନେ ହେଲେ ଜନ୍ମ ।
ସେ କଥା ମୋର ଆଗେ କହିଲେ ମହେଶ୍ୱର
ତୁମ୍ଭଠାରୁ ଶୁଣିଲେ ମନ ହେବ ସ୍ଥିର ।
ଈଶ୍ୱର ବୋଇଲେ ସେ କଥା ଏବେ ଶୁଣ
ଯେଉଁଦିନ ତିନିପୁର ସଞ୍ଚିଲେ ନାରାୟଣ ।
ନବଖଣ୍ଡମେଦିନୀ ଯେ ଚଉଦ ବ୍ରହ୍ମାଣ୍ଡ
ଛପନ କୋଟି ଜୀବସର୍ଜିଲେ ବାସୁଦେବ ।
ସ୍ତିରୀ ପୁରୁଷ ଦୁଇ ଅଙ୍ଗରୁ କାଢ଼ିଲେ
ଏକରୁ ଅନେକ ଜୀବ ପ୍ରକାଶ ହୋଇଲେ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଯେତେପୁଣ
ସମସ୍ତେ ସ୍ତିରୀ ପୁରୁଷ ହୋଇଲେ ଘଟଣ ।
ସ୍ୱର୍ଗରେ ଦେବତାଏ ମଞ୍ଚରେ ନର ଜାଣ
ପାତାଳେ ନାଗବଳ ଅସୁରଙ୍କର ସ୍ଥାନ ।
ସପତ ସାଗର ସପତ ଯେ ଦିଗ
ସବୁଠାରେ ବିଚାରି ରଖିଲେ ସମସ୍ତ ।
ବେଦବରଙ୍କୁ ସେଠାରେ ଦେଲେ ଅଧିକାର
ବୋଇଲେ ସବୁ ଜୀବଙ୍କୁ କରିବ ଉଦ୍ଧାର ।
ବୁଝିବା ନିମନ୍ତେ ଦେଲେ ଅଧିକାର ଜାଣ
ପ୍ରଜାପତି ଅଙ୍ଗରୁ ହୋଇଲା ଜାତ ପୁଣ ।
ପ୍ରଜାପତି ଜନ୍ମ ମରଣ କାଳ ଜାଣି
ଏମନ୍ତ ସାତ ମନୁ ବହିଗଲା ପୁଣି ।
ଦିନେକ ବସୁଦେବ ମୋତେ ଆଜ୍ଞାଦେଲେ
ତୁମ୍ଭେ ଅପସରୀ ମେଳେ ନୃତ୍ୟ କର ଭଲେ ।
ସେକଥା ମୋର ଯେ ମନରେ ବାଞ୍ଛାଥିଲା
ଏକଦିନେ ମୋର ବିଜେ ସ୍ୱର୍ଗପୁରକୁ ହେଲା ।
ବୃଷଭ ଉପରେ ବସିତୋତେ ଯେ କୋଳ କରି
ଉତ୍ସବରେ ବିଜେ ଯେ ମୁଁ ଗଲି ଦିଗ ଫେରି ।
କପିଳାସ କନ୍ଦରୁ ଚଳିଗଲି ଖରତର ।

× × ×

ବିରଜା ମଣ୍ଡଳରେ ବୈତରଣୀ କୂଳେ
ସପତ କନ୍ୟା ଯେ ଖେଳନ୍ତି ନଦୀ କୂଳେ ।
ଅଳ୍ପ ବୟସ ଯେ ଜ୍ଞାନ ନାହିଁ ତାରି
ଧୂଳିଘର କରିଣ ଖେଳନ୍ତି କୁମାରୀ ।
ଦେଖିଲେ ତାଙ୍କ ଖେଳ ତୁ ବୋଇଲୁ ବାଳି ।

× × ×

ଏ କନ୍ୟାମାନେ ଯେ କିସ କରନ୍ତି ଏଠାରେ ।
ଧୂଳିଘର ଖେଳ କରନ୍ତି ହରଷ ମନରେ ।
ଧୂଳିର ଭାତ ଯେ ତିଅଣ କଲେ ସବୁ
ଏମାନଙ୍କୁ ଦୟାକରି ବେଗେ ଯାଅ ପ୍ରଭୁ ।
ତୋରଠାରୁ ଶୁଣି ମୁଁ ଯେ ବୃକ୍ଷ ପାଶ୍ୱୁଁ ଗଲି
ବ୍ରହ୍ମଚାରୀ ବେଶଧରି ତାଙ୍କର ପାଶେ ହେଲି ।
ବୋଇଲେ କୁମାରୀଏ ଗୋ ଶୁଣ ମୋ ବଚନ
ଆମ୍ଭେ ଅତିଥି ଯେ ମାଗୁଅଛୁଁ ଭିକ୍ଷା ପୁଣ ।
କୁମାରୀ ବୋଇଲେ ଆମ୍ଭେ ଧୂଳିରେ କରୁଘର
ଅଜ୍ଞାନ କୁମାରୀ ଆମ୍ଭେ ଅଟୁ ଦିଗମ୍ବର ।
ଧୂଳିରେ ତିଅଣ ଯେ ଧୂଳିରେ ଭାତ କରି
ଖେଳ କଉତୁକେ ଦିନ ଯାଉଛି ଆମ୍ଭରି ।
ସେଥିରୁ କିସ ଭିକ୍ଷା ଦେବୁ ଯେ ତୁମ୍ଭଙ୍କୁ ।
କୋପନକର ଋଷି ଆମ୍ଭ ଯେ ମାନଙ୍କୁ ।
ଏତେକହି ଧୂଳିରେ ଭାତ ତିଅଣ ବୋଲି
ସେହି କୁମାରୀମାନେ ଆମ୍ଭଙ୍କୁ ଦେଲେ ପୁଣି ।
ସନ୍ତୋଷରେ ତାଙ୍କ ଭିକ୍ଷାଆମ୍ଭେ ଘେନିଗଲୁ
ଚିରଞ୍ଜିବୀ ନବଯୁବା ହୁଅ ବୋଲିଣ ବୋଇଲୁଁ ।
ସ୍ୱର୍ଗପୁରେ ରହିଣ ଦେବଙ୍କୁ ମୋହକର
ମୋହରେ ପାର୍ବତୀ ରୂପ ଧର ତତ୍‌କାଳ ।
ଯେତେଦିନେ ଦେବତାଏ ସ୍ୱର୍ଗରେ ଥିବେ
ତେତେଦିନ ନବଯୁବା ହୁଅ ଭଲେ ତୁମ୍ଭେ ।
ସ୍ୱର୍ଗର ଅପସରୀ ତୁମ୍ଭର ନାମ ବହ
ସପ୍ତଗୋଟି ସୁନ୍ଦର ରୂପକୁ ମୋହୁଥାଅ ।
ଏତେକ କହିବାରୁ ସେ କନ୍ୟାଯୁବା ହେଲେ
ତୋହର ସଦୃଶ୍ୟରେ ରୂପ ପ୍ରକାଶିଲେ ।
ବୋଇଲେ ଏ ବର ଯେବେଦେଇ କାଶୀନାଥ
ତୁମ୍ଭର ବର ଆମ୍ଭକୁ ହେଉ ଯେ ପ୍ରାପତ ।

ସେପୁରେ ସ୍ଥାନଦେଇ ରଖ ହେ ନେଇପୁଣ
ତେବେସିନା ବରଦେବା ରହିବା ପ୍ରଭୁପଣ ।
ଶୁଣିକରି ମନ ମୋର ସନ୍ତୋଷ ହୋଇଲା
ଯାନ ସୁମରିବାରୁ ଆସିଣ ମିଳିଲା ।
ଯାନ ପରେ ସାତ କନ୍ୟା ବସାଇଣ ପୁଣ
ସଙ୍ଗରେ ଗଲେ ମୋର ସ୍ୱର୍ଗପୁର ଜାଣ ।
ସର୍ବଦେବଙ୍କ ମଧରେ ରଖିଲୁ ନେଇ ତାଙ୍କୁ
ଅମରପୁର ରହିଣ ତେଜିଲୁ ମଞ୍ଚକୁ ।
ଅନେକ ଧନଦ୍ରବ୍ୟ ଅଳଙ୍କାର ତୁଳେ
ଦେଇଣ ତୋଷ କଲୁ ସେ କନ୍ୟାକୁ ଭଲେ ।
ସଙ୍ଗରେ ଘେନିଣ ସଭାରେ ବିଜେକଲୁ
ଦେଖିଣ ବେଦବର ବିଚାରେ ମନରୁ ।
ଆଜାତ ଆଶୁମିତ୍ର କଥାଏ ଦେଖ ମୋର
ସାତଗୋଟି ପାର୍ବତୀ ଅଛନ୍ତି ସଙ୍ଗର ।
ମୋତେ ପଚାରିଲେ କିସ ଆଜ ରୀତି
ଏବାଦଶ ପୁରୁଷର ସାତେକ ଯୁବତୀ ।
ମୁଁ ବୋଇଲି ଅପସରୀ ନାହାଁନ୍ତି ସ୍ୱର୍ଗପୁରେ
ନୃତ୍ୟରଙ୍ଗ ନୋହିଲା ଯେ ଦେବଙ୍କ ସଭାରେ ।
ଏମନ୍ତ ବିଚାରି ମୁଁ ଯେ ନୃତ୍ୟକାରୀ ଆଣି
ସକଳ ଦେବତା ଶୁଣି ତୋଷ ହେଲେ ପୁଣି ।
ସଭାରୁ ସକଳ ଦେବ ଓହ୍ଲାଇ ଆସିଲେ
ମୋହର ଚରଣେ ଆସି ନମସ୍କାର କଲେ ।
ଦେବତାମାନଙ୍କୁ ନାରୀଏ କଲେ ନମସ୍କାର
ତତକ୍ଷଣ ନୃତ୍ୟ କଲେ ସଭାର ତଳର ।
ନୃତ୍ୟ ଦେଖି ସର୍ବଦେବ ହୋଇଲେକମୋହ
ସେ କନ୍ୟାମାନଙ୍କଠାରେ ବଢ଼ାଇଲେ ସ୍ନେହ ।
ସୁରରାଜାଙ୍କ ନ୍ୟାୟରେ କନ୍ୟାମାନେ ରହି
ସଭା ମଉଳିବାରୁ ଯେ ଯାହା ସ୍ଥାନେ ରହି ।
ସେମାନଙ୍କ ସଙ୍ଗରେ ଦେବତା ସଙ୍ଗ ହେଲେ
ସାତଗୋଟି କନ୍ୟା ସେମାନେ ଜାତକଲେ ।
ମଞ୍ଚପୁରକୁ ସେଥିରୁ ଗୋଟିଏ ଅଇଲେ
ସପତ ଦ୍ୱୀପରେ ଯେ ଯାଇଣ ରହିଲେ ।
ପାତାଳ ପୁରକୁ ତହିଁ ଗୋଟିଏ ନାରୀ ଗଲେ
ଚାରି ଦ୍ୱୀପରେ ଘେରିଣ ଯାଇଣ ରହିଲେ ।
ଏମନ୍ତ ପ୍ରକାରେ ଯେ ଅପ୍‌ସରାଙ୍କ ଜନ୍ମ
ଶୁଣିକରି ପାର୍ବତୀ ଯେ ହେଲେ ତୋଷମନ ।

ବୋଇଲେ ତ୍ରିଲୋଚନ ଶୁଣ ମୋର ବାଣୀ
ଋଷ୍ୟଶୃଙ୍ଗ ଆଶ୍ରମରେ ଅଛନ୍ତି ଯେ ପୁଣି ।
ଜରତା କାମମୋହିନୀ କି ବିଚାର କଲେ
କିରୂପେ ଯେ ମୁନିଙ୍କୁ ସେଠାରୁ ଅଣାଇଲେ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ବେଲ ଗଛ ମୂଳେ ଋଷ୍ୟଶୃଙ୍ଗ ବସିଛନ୍ତି ।
କାମମୋହିନୀ ବାରବନିତା ଅଇଲେ ସେଠାରୁ
ସର୍ବ କଥା ଜରତା ଆଗରେ କହିବାରୁ ।
ଶୁଣିଣ ଜରତା ଯେ ମନରେ ତୋଷ ହେଲେ
ସମସ୍ତଙ୍କୁ କହିଣ ରାନ୍ଧଣା ବିଧି କଲେ ।
ଅମଳାଣ ପତନୀକୁ ବାଛିଣ ପିନ୍ଧିଲେ ।

× × ×

ଅଲେଖ ତିଳକ ଯେ ହୋଇଲେ ବେଶ ପୁଣ
ଅଞ୍ଜନ ନୟନରେ ସିନ୍ଦୂର କପାଳେଣ ।
ପାଦରେ ଅଳତା ଯେ ମଥାରେ ମଣି ସାଜେ
କେଶକୁ ସାମଳିଣ ଜୁଡ଼ାକୁ ନେଇ ବାନ୍ଧେ ।
ଯୋଡ଼ାପରେ ଝରାକାଠି ଚଉଁରୀ କୁଣ୍ଡିପୁଣ
ଝାଳର ଲଗା ଝୁମ୍ପିକି କଲେକ ବେଢ଼ଣ ।
ଗଳାକୁ ଚାପସରି ହୃଦକୁ ବନମାଳା
ରତ୍ନ କାଞ୍ଚଲା ହୃଦକୁ ଦିଶେ କେଢ଼େ ତୋରା ।
କାପ ମଲକଡ଼ି ଯେ ଫାସିଆ କର୍ଣ୍ଣର
ଫିରିଫିରା ହୃଦୟର ହୀରା ମୋତି ମାଳ ।
ରତ୍ନବିଦ ମୁଦି ବାହୁକୁ ଶୋଭଇ
କଟୀରେ କଟୀ ମେଖଳା ଅଙ୍ଗୁଷ୍ଠିରେ ମୁଦିଲାଇ ।
ପାହୁଡ଼ି ନୂପୁର ଝୁଣ୍ଟିଆ ଚରଣରେ
ଖଡୁ ଶତେଗୁଣେ ରୂପ ବିରାଜେ ତାହାରେ ।
ବେଶହୋଇ ଅମୃତ ଭୋଜନ ପୁଣ କଲେ
ତାମ୍ବୁଳ ଭୁଞ୍ଜିଣ ଯେ ବାହାର ହୋଇଲେ ।
ନାବରୁ ଉତ୍ତରି ଯେ ସକଳ ମୁନିବର
ପାହୁଡ଼ି ଲଗାଇଲେ ଆପଣା ପୟର ।
ସର୍ବମଙ୍ଗଳ ବାସୁଦେବଙ୍କୁ ସ୍ତୁତି କଲେ
ଜୟ ଜୟ ମଙ୍ଗଳ ତୁଣ୍ଡରେ ଉଚ୍ଚାରିଲେ
ଜୟ ଜୟ ଦୁର୍ଗତି ନିବାରଣ ନାମ
କରୁଣା ସାଗର ତୁଗୋ ହରି ପ୍ରିୟାପ୍ରାଣ ।
ସବୁଠାରେ ତୁହି ଗୋ କରୁ ଯେ ସୁଦୟା
ତୋହର ମହିମାବେଳେ ନୁହଁଇ ନିର୍ଦ୍ଦୟା ।

ଆମ୍ଭେ ଯେ ଆରତରେ କରୁ ସୁମରଣା
ତୋର ନାମ ଧଇଲେ ଆମ୍ଭେ ହେବୁ ଜିଣା ।
ଚାରିଶତ ଯୋଜନ ଚମ୍ପାବତୀ ରାଜ୍ୟ
ଜଳବୃଷ୍ଟି ନୋହିଲା ସପକ୍ଷ ନୋହିଲାଇନ୍ଦ୍ର ।
ଋଷ୍ୟଶୃଙ୍ଗ ଗଲେ ପୁଣି ବରଷିବ ଜଳ
ତେବେ ଯେ ରାଜ୍ୟର ହୋଇବ ମଙ୍ଗଳ ।
ବିପଦ ବିନାଶିନୀ ତୋର ନାମଗୋଟି
ତେଣୁ ସେ ସକଳ ଜୀବରେ ତୋର ସ୍ଥିତି ।
କର ଯୋଡ଼ି ଶତବାର ବିନତି ହୋଇଲେ
ବିପତ୍ତି ଆମ୍ଭର ନାଶ ବୋଲିଣ ବୋଇଲେ ।
ବାସୁଦେବଙ୍କୁ ସୁମରଣା କଲେ ସେ କାମିନୀ
ଜୟ ତୁ ନାରାୟଣ ସକଳ ଅନ୍ତର୍ଯ୍ୟାମୀ ।
ସକଳ ସଂସାର ସିନା ତୋହର ରଚନା
ଏବେ କିମ୍ପା ନାଥ ତୁମ୍ଭେ ହେଉଛ ବିମନା ।
ସନ୍ଥୁକୁ ରଖିଣ ଯେ ଦୁଷ୍ଟକୁ ନିବାରୁ
ତୋହର ମହିମା ଯେ ଅଟଇ ମହାମେରୁ ।
ଗରୁଡ ବାହନ ତୋର ସାରଙ୍ଗ ଧନୁର୍ଦ୍ଧର
ଅସୁର ନିବାରଣ ଅଟଇ ବାନା ତୋର ।
ଦୁଷ୍ଟକୁ ନାଶକରି ସନ୍ଥୁକୁ ଏବେ ରଖ
ତୁହି ନ ରଖିଲେ ନିଶ୍ଚେ ହେଲୁଟି ନିରେଖ ।
ଏତେକହି ଶତେବାର ପ୍ରମାଣ ଯେ କଲେ
ଜଗନ୍ନାଥ ନାମ ଧରି ପାଦ ବଢ଼ାଇଲେ ।
ଲତାର ଉହାଡ଼ରେ ଚାଲନ୍ତି ଧିରେ ଧିରେ
ପ୍ରବେଶ ହେଲେ ବିଭାଣ୍ଡେକମଢିଆ ଦୁଆରେ ।
ଦେଖିଲେ ଋଷ୍ୟଶୃଙ୍ଗ ଅଛନ୍ତି ପୁଣ ବସି
ଅନାମିକା ସୁମରଣ କରନ୍ତି ବ୍ରହ୍ମଋଷି ।
ଜଟାଳି ମୁନିମାନଙ୍କୁ ଦେଖିଲେ ନେତ୍ରରେ
ବିଚାରିଲେ ମୁନିମାନେ ଆସିଲେ ସତ୍ୱରେ ।
ମୁନିଙ୍କର ବଚନ ଯେ ମିଥ୍ୟା କେବେ ନାହିଁ
କାଲି କହିଗଲେ ଆଜ ଆସିଲେ ବେଗହୋଇ ।
ଏତେ ବିଚାରି ଋଷି ଯେ ଉଠିଲେକ ତପସ୍ଥାନ
ବୋଇଲେ ମୁନିମାନେ ଅଇଲେ ପୁଣ ।
ଆଜ ଚାଲ ଯିବା ଯେ ତୁମ୍ଭର ବନେ ପୁଣ
ଦେଖିବା ସେ କେମନ୍ତେ ଶୋଭାବନ ।
ଏତେବୋଲି ଋଷିବସି ବୋଇଲେ ତୁମ୍ଭେ ଶୁଣ
କେତେବାଟ ଆମ୍ଭେ ଯିବା ତୁମ୍ଭର ସଙ୍ଗେଣ ।

ଶୁଣି ଅପସରୀ ହରଷ ମନ ହେଲେ
ଆଗରେ ବାର ବନିତା ବାଟ କଢ଼ାଇଲେ ।
ଜରତା କାମମୋହିନୀ ପଛେ ପୁଣି ରହି
ଶୁଆ ଡାକିଦେଲା ଶୁଣଲୋ ଶାରୀ ତୁହି ।
ବ୍ରହ୍ମମୁନି ଋଷ୍ୟଶୃଙ୍ଗ ଦେଶ ଫେରିଗଲେ
ବିଭାଣ୍ଡେକ ମଢ଼ିଆକୁ ତୁଚ୍ଛା କରିଦେଲେ ।
ଶାରୀ ବୋଇଲେ ତୁମ୍ଭେ ଶୁକରାଜା ଶୁଣ
ଚମ୍ପାବତୀ ରାଜ୍ୟରେ ଅପାଳକ ଜାଣ ।
ସେ ଦେଶରେ ପ୍ରଜାମାନେ ଜଳ ନପାଇଲେ
ପ୍ରଜାମାନେ ରାଜାପାଶେ ପ୍ରାର୍ଥନା ଯାଇ କଲେ ।
ବୋଇଲେ ଏ ଦେଶ ଆମ୍ଭେ ଛାଡ଼ିକରି ଯିବୁ
ବାରରାଜ୍ୟ ଦେଶ ବୁଲି କାଳିକି ଖାଇବୁ ।
ନୃପତି ଶେଖର ଯହୁଁ ଏ ବାଣୀ ଶୁଣିଲେ
ମାୟା ମୋହିନୀ ପେଷି ଋଷୀଙ୍କୁ ଘେନିଗଲେ ।
ଏ ଋଷି ଗଲେ ଯେ ଦେଶରେ ବୃଷ୍ଟିହେବ
ଦଶରଥ ରାଜା ବାସୁଦେବଙ୍କୁ ଦେଖିବ ।
ସାଆନ୍ତା କନ୍ୟାଙ୍କୁ ଋଷ୍ୟଶୃଙ୍ଗ ବିଭାହେବେ
ବିଭାଣ୍ଡେକ ଋଷିଠାକୁ ଚାର ବରଗିବେ ।
ଦେଶଘୋଷ ଦେଖିଣ ଆସିବେ ବେନିମାସେ
ଉଦେହେଲା ସ୍ନାନ ଗୋ ଶୁଣ ଗୋ ହରଷେ
ତାହାଶୁଣି ଶୁକ ରାଜା ବଚନ ଯେ କହି
କିସ ଭାବ ହେଲା ଏବେ ଫେଡ଼ି କହ ତୁହି ।
ଶାରୀ ବୋଇଲା ଋଷପୁତ୍ର ଦେଶକୁ ଯେବେ ଗଲା
ନିଶ୍ଚୟ ବନ ଏବେ ଗହନ ହୋଇଲା ।
ଋଷିକୁମର ଯାଇଣ ବିଭା ଯେବେ ହେଲା
ଦଶରଥ ରାଜା କେତେ ତପ କରିଥିଲା ।
ବିଭାଣ୍ଡେକ ଋଷିଙ୍କି ସେ ସମ୍ବନ୍ଧି ପାଇଲା
ଯାନ ଯଉତୁକ ଥାଏ ଅଳଙ୍କାର ଦେଲା ।
ଅନେକ ଧନ ରତ୍ନ ଅନେକ ଗୋରୁ ଗାଈ
ଅନେକ ମଇଁଷି ଯେ ମନୁଷ୍ୟ ଆସିବଇଁ ।
ଅନେକ ଗ୍ରାମ ଏଥେ ହୋଇବ ବିକା କିଣା ।

× × ×

ଏ ଋଷ୍ୟଶୃଙ୍ଗ ଆମ୍ଭଙ୍କୁ ଧରି ଘେନିଯିବ
ସୁବର୍ଣ୍ଣ ପିଞ୍ଜରାରେ ନେଇଣ ରଖିବ ।
ଶ୍ରୀହରିଙ୍କ ନାମ ସେ ଶୁଣାଇବ ପୁଣ
ପକ୍ଷୀରୁପ ତେଜି ଆମ୍ଭେ ହେବା ଦେବଗଣ ।

ତିନି ବର୍ଷେ ଦୁଇ ପୁତ୍ର ଏହାର ହୋଇବ
ପ୍ରଥମେ ଅପସରୀ ଘରଣୀ ଏ କରିବ ।
ଦ୍ୱିତୀୟେ ରାଜକେମା ହୋଇବ ପୁଣ ବିଭା
ତେବେ ସେ ଏ ବନେ ପାଇବ ବଡ଼ ଶୋଭା ।
ଏହାର ଯୋଗୁଁ ହେବେ ବାସୁଦେବ ଜାତ
ମାରିବେ ଅସୁରଙ୍କୁ ପୃଥିବୀ ହେବ ଶାନ୍ତ ।
ତାହା ଶୁଣି ଶୁଆ ବୋଲେ ଗୁପ୍ତକର ତୁହି
ଏ ଋଷିର ସକାଶରେ ଆମ୍ଭେ ମୋକ୍ଷ ହୋଇ ।
ଦୁଇଜଣ ସେଠାରୁ ହୁଙ୍କାର ଶବ୍ଦ କଲେ
ଋଷ୍ୟଶୃଙ୍ଗ ଚଳିଯାଏ ନାରୀଙ୍କ ସଙ୍ଗରେ ।
କେତେ ଦୂରେ କୋକିଳ ପିକ ପୁଣି ଦେଖି
ପିକ ଡାକ ଦେଲା ଶୁଣ ଗୋ ଶୁଭ୍ରକେଶୀ ।
ନର ନାରୀ ଏଥେ ରହିବେ ଅନେକ ଆସି ।

× × ×

ବାସୁଦେବ ବୈକୁଣ୍ଠ ତେଜିବେ ଅଳ୍ପ ଦିନେ
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ମୋକ୍ଷ ଏଣେ ।
ପିକ ରାଜା ବାଣୀ ଶୁଣି କୋକିଳ କହିଲା
ଭଲ ହେଲା ଏବନ ଗହନ ଯେବେ ହେଲା ।
ପିକ ବୋଇଲା ଏବେ ହୋଇଲା ମଠ ଶୂନ୍ୟ
ସକଳ ଦ୍ରବ୍ୟ ଯେ ଅଛଇ ତହିଁ ପୁଣ ।
ଶୃଗାଳ, ସର୍ପ, ମଣ୍ଡୁକ ସେ ମଠେ ବସିବେ
ଦେଖିଲେ ବିଭାଣ୍ଡେକ କ୍ରୋଧଭର ହେବେ ।
କ୍ରୋଧ ହେଲେ କୌଣସି କାର୍ଯ୍ୟହିଁ ନୋହିବ
ଦେବତାଙ୍କ କୂଟ ଯେ ଏଥିରୁ ସରିବ ।
କୋକିଳ ବୋଇଲା କିସକରିବା ଆମ୍ଭେ ଜାଣ
ଆମ୍ଭେ ତ ପକ୍ଷୀ ଜନ୍ତୁ ନିର୍ବଳ ଅଙ୍ଗ ପୁଣ ।
ଶୃଗାଳ ସର୍ପ ହେ ଆମ୍ଭଙ୍କୁ ଅଟେ ବଳ
ଦେବ ନର ବାନରଙ୍କୁ ଅସୁରେ ମହାବଳ ।
ଦେଖିଲେ ଆମ୍ଭଙ୍କୁ କରିବେ ନାରଖାର

× × ×

ପିକ ବୋଇଲା ଚାଲ କହିବା ସୁରଭୀକି
ସେତେବେଳେ ଦୋଷୀ ହେବା ଋଷିରେ ଆମେ କି ।
କୋକିଳ ବୋଇଲା ଏକଥା ଅଟେ ଭଲ
ସବୁ ଜୀବ ଉପରେ ସେହି ଅଟେ ବଡ଼ ।
ଦେବ ନର ବାନରଙ୍କୁ ଅସୁରେ ମହାବଳ
ବିଚାରିଲେ ଲଙ୍ଘି ଯେ ପାରନ୍ତି ତିନିପୁର ।
ତାକୁ ବଳିଆଇ ଆଉ କେହି ନାହାନ୍ତି ପୁଣ
ସୁରଭୀ ବଳରେଋଷି ଏ ବନରେ ରହେ ପୁଣ ।
ପିକ ଡାକ ଦେଲା କାମଧେନୁ ଶୁଣ ଏବେ
ବିଭାଣ୍ଡେକ ମଠଠାକୁ ଯାଅ ତୁମ୍ଭେ ବେଗେ ।
ସେଠାରେ କେହି ନାହିଁଅଛି ତୃଷବାଣ
ସଂଭାଳ ତୁ ଋଷି ମଠ ସମ୍ଭାଳ ଯାଇଣ ।
ସୁରଭୀ ବୋଇଲେ ତାର ପୁତ୍ର କେଣେ ଗଲା
କୋକିଳ ବୋଇଲା ତାକୁ ମାୟା ଯଦିଘେନିଗଲା ।
କାମଧେନୁ ବୋଲେ କେତେବେଳେ ସେହିଗଲେ
ତାହାକୁମାରି ପୁତ୍ରକୁ ମୁଁ ଆଣିବି ତତ୍‌କାଳେ ।
କୋକିଳ ବୋଇଲେ ତୋରେ ନୁହଇ ଆୟତ
ତାକୁ ସାହା କରନ୍ତି ଅନାଦି ଅଚ୍ୟୁତ ।
କାମଧେନୁ ବୋଲେ ତାକୁ ହରି କିମ୍ପାସାୟ
କୋକିଳ ବୋଇଲା ଦୁଇ ରାଜାର ନାହିଁ ପୁଅ ।
ସେ ରାଜ୍ୟ ଅପାଳକ ପରଜାମାନେ ମରି
ଋଷ୍ୟଶୃଙ୍ଗ ଗଲେଣ ବରଷା ମେଘ କରି ।
କାମଧେନୁ ବୋଲେ ସେ ଅଟଇ କେଉଁଦେଶ
କେତେବେଳେ ଆସିବେ ଯେ ବିଭାଣ୍ଡେକ ଶିଷ୍ୟ ।
କୋକିଳ ବୋଇଲେ ଚମ୍ପାବତୀ ରାଜ୍ୟ ପୁଣ
ଲୋମପାଦ ରାଜା ଅଟେ ସେ ରାଜ୍ୟେ ରାଜା ଜାଣ ।
ଦେବ ଇନ୍ଦ୍ର ବିଚାରିଣ ବୃଷ୍ଟି ଯେ ନକଲେ
ବାରବରଷ ଏଥିରେ କାଳ ବୋହିଗଲେ ।
ଶ୍ରୀହରି ଜନ୍ମ ହେଲେ ମାରିବେ ଅସୁର
ତେବେ ସେ ଦେବତାଏ ରହିବେ ନିଶ୍ଚଳ ।
ଅଯୋଧ୍ୟା ଚମ୍ପାବତୀ ଦୁଇଣ ରାଜାଙ୍କୁ
ପୁତ୍ର ଦାନ ଦେବେ କଥା ରହିବ କାଳକୁ ।
ବରଷା କରାଇ ଫେରି ଏ ବନେ ଆସିବେ ।
ଶୁଣିଣ ସୁରଭୀ ଯେ ବେଗେ ଚଳିଗଲା
ସେ ଋଷି ମଠରେ ଯାଇ ପ୍ରବେଶ ହୋଇଲା ।
ଦେଖିଲା ମଢ଼ିଆ ଦ୍ୱାର ଦିଶେ ଅଲକ୍ଷଣ
ଠାବେ ଠାବେ ସବୁ ଦ୍ରବ୍ୟ ପଡ଼ିଅଛି ପୁଣ ।
ବୋଇଲେ କୋକିଳ କଥା ଅଟଇଟି ସତ୍ୟ
ନ କହି କରି ଗଲେ ମୋତେ ଋଷି ସୁତ ।
ଜାଣିଲି ନିଶ୍ଚୟ ଏଯେ ହେଲା ଦେବକୂଟ
ମୁଁ ଯେବେ କ୍ରୋଧ ହେବି ଦେବେ ହେବ କଷ୍ଟ ।

ଏତେ ବିଚାରି ସୁରଭି ଶାନ୍ତ ମନ ହୋଇ
ଏଥୁ ଅନନ୍ତରେ ଶୁଣଗୋ ଦେବୀ ତୁହି ।
ଋଷ୍ୟଶୃଙ୍ଗଙ୍କୁ ଘେନିଣ ଜରତା ବେଗେ ଗଲା
ନଦୀ କୂଳରେ ଯାଇଣ ପ୍ରବେଶ ନାରୀ ହେଲା ।
ଚରଣ ପଖାଳିଲେ ଋଷିର କୁମର
ସ୍ନାହାନ କଲେ ଋଷି ନଦୀର ଭିତର ।
ଝୀନ ବସନ ଘେନି ଚରଣ ପୋଛିଦେଲେ
ନାବର ଉପରକୁ ଋଷିଙ୍କି ଘେନିଗଲେ ।
ଚିତ୍ର ବିଚିତ୍ର ମନ୍ଦିରେ ନେଇଣ ବିଜେକଲେ
ଅମଳାଣ ପଟନ ନେଇଣ ପିନ୍ଧାଇଲେ ।
ସର୍ବାଙ୍ଗେ ଅଳଙ୍କାର ନେଇଣ ମଣ୍ଡିଲେ
ଚନ୍ଦନ ଅଗୁରୁରେ ଚାରୁ ଗନ୍ଧ ଦେଲେ ।
ଋଷିର ଅଙ୍ଗରେ ବୋଳିଲେ ନେଇ ପୁଣ
ଶୀତଳ କରାଇଲେ ଋଷି ଅଙ୍ଗ ଜାଣ ।
ଅମୀୟ ରସନେଇ ଋଷିଙ୍କି ସମର୍ପିଲେ
ସୁବର୍ଣ୍ଣର ଥାଳିରେ ନେଇଣ ପରଷିଲେ ।
ଆଖୁ, କନ୍ଦମୂଳ, ନଡ଼ିଆ, ଗଜା, ମୁଗ
ପାଚିଲା କଦଳୀ ଖଇ ଦହି ଦୁଧ ।
କନ୍ଦଶାଚି ନବାତ ମିଠାଇ ପେଡ଼ା ଆଣି
ଘୃତ ଲବଣୀ କମଳା ଟଭା ଦେଲେ ପୁଣି ।
ଆମ୍ବ, ପଣସ, ସପୁରୀ ନାନା ଦ୍ରବ୍ୟ ଦେଲେ
ସୁବର୍ଣ୍ଣ ଝରିରେ ସୁବାସ ଜଳ ଭଲେ ।
ସ୍ୱାଦପାଇ ଋଷି ଯେ ଭୁଞ୍ଜିଲେ ସକଳ
ଭୋଜନ ସାରିଣ ଆଚମନ କଲେ ଋଷିବାଳ ।
ମୁଖ ବାସ ଆଣିଣ ତାମ୍ବୁଳ ଭୁଞ୍ଜାଇଲେ
କେଉଁଆଡ଼ କହିଣ ନାବ ଚାଳିଦେଲେ ।
ଧୀରେ ଧୀରେ ନାବଯେ ଚଳାଇ ଦ୍ୟନ୍ତିପୁଣ
ମୁନିଙ୍କି ବସାଇଲେ ପଲଙ୍କେ ନେଇଣ ।
ଜରତା ମୁନିକି କୋଳରେ ଘେନି ବସି
କାମମୋହିନୀ ଋଷି ଆଗେଣ କଥା ଭାଷି ।
ବାର ବନିତାଏ ଯେତେ ଚିତ୍ତ ସେବାକଲେ
ଆଲଟ ଚାମର ଧରି ବିଞ୍ଚଣୀ ବିଞ୍ଚିଲେ ।
ବିଡ଼ିଆ ଧୂପକାଠି ଗଦି ପଙ୍ଖା ଧରି
ନାନା ରସରେ ଲୀଳା ଆରମ୍ଭ ତହିଁ କରି ।
ଝଞ୍ଜାଳ ମର୍ଦ୍ଦଳ ଯେ ଗିନି ତାଳ ଧରି
ବେଣୁ ବୀଣା ସୀତାର ଯେ ବଜାନ୍ତି କାମିନୀ ।
ଦେଖିଣ ଋଷ୍ୟଶୃଙ୍ଗ ଆନନ୍ଦ ମନ ହୋଇ
ମଧୁବନ ପ୍ରାୟେକ ତାହାକୁ ମଣଇ ।
ନେତର ପଟନୀ ଯେ ଉପରେ ଝୀନବାସ
ଶିରପରେ ଛତ୍ର ଯେ ଟେକଇ ହରଷ ।
ବାରଶ ବନିତା ଯେ ତାହାର ସେବାକରି
ନୃତ୍ୟରଙ୍ଗ କରନ୍ତି ବଜାନ୍ତି ବେଣୁଧରି ।
ହରଷରେ ଗୀତ ନୃତ୍ୟ ଯେ ରସ କଲେ
ମୁନିର ମନଗୋଟି ତରଳ କରାଇଲେ ।
ଚିତ୍ର ବିଚିତ୍ରକୁ ଚାହିଁଲେ ମୁନିବର
ବସନ୍ତ ପବନ ଯେ ବହେ ଧୀର ଧୀର ।
ଜରତା କୋଳରେ ଅଛନ୍ତି ମୁନିବସି
ସୁନ୍ଦରୀକି ମୁନି ଯେ କରନ୍ତି କଥା ହସି ।
ଈଶ୍ୱରଙ୍କକୋଳକୁ ଯେ ପାର୍ବତୀପାଏ ଶୋଭା
ବିଷ୍ଣୁଙ୍କ କୋଳରେ ଯେହ୍ନେ କମଳାଙ୍କ ପ୍ରଭା ।
ରୋହିଣୀ କୋଳରେ ଯେହ୍ନେ ଚନ୍ଦମା ଶୋଭାପାଏ
ଜରତା କୋଳରେ ମୁନି ତେମନ୍ତ ପରାଏ ।
ସର୍ବାଙ୍ଗେ ପୁଷ୍ପ ଯେ ବେଶ ହୋଇଛି ସୁନ୍ଦରୀ
ଚାରୁ ଗନ୍ଧ ଅଙ୍ଗରେ ହୋଇଣ ଅଛି ବୋଳି ।
ଅଷ୍ଟରତ୍ନ ଅଳଙ୍କାର ଦେହକୁ ଶୋଭାପାଏ
ଘୃତ ସର ଲବଣୀ ଯେ ଖୁଆଇଲେ ଋଷି ପୋଏ ।
ମଦନେ ଜରଜର ଶରୀର ତାହାର
ପଞ୍ଚଶର କାମ ଯେ ପ୍ରକାଶ ହୃଦୟର ।
ଗତି ଲୀଳା ନ ଜାଣଇ ଋଷିର କୁମର
ବିଚାରଇ ମୋର ଦେହ କିମ୍ପାଇ ବିକଳ ।
କୁଚ କୁମ୍ଭ ଲାଗିଅଛି ପିଠିକି ତାହାର
ପିଠିକି ଶୀତଳ ଯେହ୍ନେ ଲାଗଇ ଭାସ୍କର ।
ମୁଖେ ଚୁମ୍ବ ଦ୍ୟନ୍ତେ ଲାଗେ ଅମୀୟ ରସପ୍ରାଏ
ଋଷିର ହୃଦୟ ଯେ ଆକୁଳିତ ହୁଏ ।
ଚନ୍ଦ୍ରମା ପ୍ରାୟେ ଅଟେ ଜରତା ଅପସରୀ
ବଚନ ତାହାର କୋକିଳ ଭାଷା ପରି ।
ବେଶ ତୋରା ଯେସନେ ମେନକା ଅପସରୀ
ଇନ୍ଦ୍ର ତାକୁ ଧଇଲେ ଶଚୀକି ଦୂର କରି ।
କହିଣ ବଚନରେ ମୋହିଲେ ତପଚାରୀ ।

× × ×

ଚାଟୁଭାଷା କହିଣ ମୁନିର ମନ ତୋଷେ
ମାଣିକ୍ୟ ଦୀପାବଳି ଜଳଇ ଚଉପାଶେ ।

ଦେହ ଆଉଁସିଣ ଯେ ବିଳାପ ଗତିକରି
ପ୍ରେମରସ ଭାବନା ଯେ କରଇ ସୁନ୍ଦରୀ ।
ପିଠିପାଖୁଁ ଚତୁରୀ ଆଗକୁ ଉଠିଗଲା
ସକଳ ଯୁବତୀଙ୍କୁ ନେତ୍ରେ ଠାରିଦେଲା ।
କାମମୋହିନୀ ବାର ବନିତା ଘେନିକରି
ନୃତ୍ୟ ରୁହାଇଣ ଚଳିଲେ ସର୍ବନାରୀ ।
ଆରମ୍ଭପରେ ଯାଇ ସକଳ ନାରୀ ରହି
ଟେରାବାଡ଼ ଦେବାରେ ଅଦୃଶ୍ୟ ହେଲେ ସେହି ।
ଋଷ୍ୟଶୃଙ୍ଗ ବୋଇଲେ ସମସ୍ତେ କେଣେ ଗଲେ
ଜରତା ବୋଇଲେ ସେ ଭୁଞ୍ଜିବାକୁ ଗଲେ ।
ମୁନି ବୋଇଲେ ତୁମ୍ଭର ଦୁଇ ଉଚ୍ଚ କିସ
ଜରତା ବୋଇଲେ ଯେ ଯେ ଅମୃତ ପ୍ରିୟ ରସ ।
ହସ୍ତରେ ଚିପି ମୁଖରେ ଚୁମ୍ବିଲେ ଲାଗଇ ବଡ଼ସୁଖ

× × ×

ଶୁଣିଣ ବ୍ରହ୍ମମୁନି ହରଷ ପୁଣ ହୋଇ
ବେନିହସ୍ତେ ବେନିକୁଚ ଧଇଲେ ମୁଠିଆଇ ।
କୁଚବେଣ୍ଟରେ ମୁଖ ଲଗାଇ ଚୁମ୍ବିଲେ
ମଦନ ଜ୍ୱାଳାରେ ସ୍ୱାଦୁ ଅମୃତ ପ୍ରକାରେ ।
ଦେଖିଣ ଜରତା ଯେ ଅବିଦ୍ୟା ଗତିକରି
ବଳାତ୍କାରେ ରମଣ କରାଏ ଋଷିଧରି ।
ହିଆରେ ଲଗାଇଣ କୋଳକରି ଭିଡି
ହେଦଆଉଁସିଣ ବୋଇଲେ ସଧିରେ ସେହୁ ଭିଡ଼ି ।
ମୁନି ଜାଣନ୍ତି ସୁରତି ରସ ଭାବ ସୁଖ ।
ପୁଣ ପୁଣ ସୁନ୍ଦରୀ ଚୁମ୍ବେ ଋଷି ମୁଖ ।
ମୁଖକୁ ମୁଖ ଲଗାଇ କରେ ପ୍ରେମରସ
ବିଭାଣ୍ଡେକ ମୁନିସୁତ ରତିରେ ହେଲେ ତୋଷ ।
ମୁଖେ ଚୁମ୍ବ ଦେଇଣ ହସିଣ ବୋଇଲା
ସ୍ତନବେଣ୍ଟ ନେଇଣ ଋଷି ମୁଖେ ଲଗାଇଲା ।
ଦଶନଖ ନେଇଣ ଲଗାଏ ଗଣ୍ଡସ୍ଥଳେ
ବ୍ରହ୍ମବୀର୍ଯ୍ୟ ଉଚ୍ଛୁଳିବାରୁ ଋଷି ଦେହ ତରଳେ
ତେତେବେଳେ ଋଷି ଧଇଲେ ଭିଡ଼ି ପୁଣ ।
ବ୍ରହ୍ମ ସ୍ଥଳେ ଉଚ୍ଛୁଳି ଯେ ବିନ୍ଦୁ ଖସେ ଜାଣ ।
ଜରତାର ଗର୍ଭକୁ ନ ଗଲା ସେହି ବୀର୍ଯ୍ୟ
ଋଷି ତେଜ କୋପାନଳ ଜରତାକୁ ତେଜ ।
କାମକଳା ପରସନ୍ନ ଜାଣଇ ସୁନ୍ଦରୀ
ରତି ଶାସ୍ତ୍ର ପଢ଼ିଣ ଅଛଇଁ ଯତ୍ନ କରି ।

ଜରତାର ମନ ଯେ ନୋହିଲା ପୁଣି କ୍ଷୟ
ଯେଣୁ ଯେ ବୀର୍ଯ୍ୟ ଗର୍ଭରେ ନୋହେ ପ୍ରିୟ ।
ଶୃଙ୍ଗାର ରସରେ ଯେ ମୁନି ଭୋଳଗଲେ
ଜରତାକୁ ଚାଟୁ ବଚନ କହିଲେ ।
ଭଲ ରସ ଖୁଆଇଲ ମୋ ମନ ବଡ଼ ସୁଖ
ଜଳ ବୋହିଗଲା ପ୍ରାୟ ଲାଗେ ଦେହରୁ କିସ ।
ଜରତା ବୋଇଲା ଶୁଣ ମୋହର ବଚନ
ତୁମ୍ଭେ କାହୁଁ ପାଇବ ଏମନ୍ତ ରସ ପୁଣ ।
ଋଷ୍ୟଶୃଙ୍ଗ ବୋଇଲେ ଏଥି ସବୁ ମୂଳ
ମିଠା ଲଗୁଅଛି ଏବେ ତୁମ୍ଭର ଉଚ୍ଚ ଫଳ ।
ଜାନୁକୁ ଜାନୁ ଦେଇଣ ଭିଡ଼ିଲେ ଏକଥା
ସେକଥା ମୋତେ ସୁଖ ଲାଗିଲାକ ବ୍ୟଥା ।
ଜରତା ବୋଇଲେ ଋଷି ଯେବେ ସୁଖହୋଇ
ଯେତେ ମନଇଚ୍ଛା ତେତେ ଭୋଗକର ତୁହି ।
ନାନା ରହସ୍ୟେ ଜରତା ରତି ଲଗାଇଲା
ଋଷିଙ୍କି ରତିସାଗର ପାଠ ପଢ଼ାଇଲା ।
ପ୍ରଥମ ବୟସେ ମୁନି ନାଗରୀ ସଙ୍ଗେ ପ୍ରୀତି ।
ପଞ୍ଚମ ଶର ଘାତେ ଋଷି ମୋହ ଯାନ୍ତି ।
ବାରବରଷ ଯେ ଜରତା ନାମେ ନାରୀ
ଜତିଶାସ୍ତ୍ର ପଢ଼ଇ ଋଷି ମୋହ କରି ।
ମନମଥ ବୟସ ଯେ ଦୁହିଁଙ୍କର ପୁଣ
ଶୃଙ୍ଗାର ରସ ଦେଇ ମୋହିଲା ଋଷି ମନ ।
ଦ୍ୱିତୀୟ ଥର ରମଣ କରାଇଲା ନାରୀ
ଋଷିଙ୍କର ବୀର୍ଯ୍ୟକୁ ଗର୍ଭରେ ସଂହାରି ।
ଋଷିର ମନ କ୍ଷିନ୍ନ ହେବାରୁ ଜରତା
ସୁବାସ ଜଳରେ ମୁଖ ଧୋଇଲା ବନିତା ।
ଋଷିରୁ ମୁଖ ପଖାଳି ଅଞ୍ଚଳରେ ପୋଛି
ସର ଲବଣୀ ଘୃତ ଯେ ଭୁଞ୍ଜାଇଲା ଯାଚି ।
ଭୁଞ୍ଜିସାରି ମୁନିବର ଆଚମନ କଲେ
ତାମ୍ବୁଳ ଭୁଞ୍ଜିଣ ମନରେ ତୋଷ ହେଲେ ।
ଜରତା କୋଳରେ ଘେନିଣ ତାଙ୍କୁ ଶୋଇ
କିଛିବେଳ ଉତ୍ତାରୁ ମୁନିର ଶ୍ରଦ୍ଧା ହୋଇ ।
ଦୁଇ ଥର ଜାଣିଲେ ସେ ରତିରସ କଳା
ଜରତାକୁ ଧରିଣ ଯେ କଲେ ରତି ଖେଳା ।
ତୃତୀୟ ଥର ରତି ଲୀଳାରେ ତେଜୋବନ୍ତ
ରମଣ କରନ୍ତେ ମୁନି ବୀର୍ଯ୍ୟ ଖସିଲାତ ।

ସେ ବୀର୍ଯ୍ୟ ଗୋଟି ଜରତା ଗର୍ଭରେ ରହିଲା
ତେଜ ଗର୍ଭ ଧରିଣ ସେ ଥାଇତ ହୋଇଲା ।
ରତିରସେ ଜରତାର ଭାଙ୍ଗିଲେ ମୁହାଁସ
ବିଚାରିଲା ଋଷି ବୀର୍ଯ୍ୟ କରିଲା ଗର୍ଭେ ବାସ ।
ପ୍ରଥମରୁ କଥା ତ ପଡ଼ିଲା ଏବେ ଘାଟ
ଏତେ ବିଚାରି ନାରୀ ଉଠିଲା ତ୍ୱରିତ ।
ସୁବାସ ଜଳ ନେଇଣ ଶିର ଦେହେ ସିଞ୍ଚି
ଅଜ୍ଞାନ ହୁଅନ୍ତେ ଚେତା କରାଇଲା ବିଞ୍ଚି ।
ସଚେତ ହୋଇ ବସିଲେ ଋଷ୍ୟଶୃଙ୍ଗ ମୁନି
ଦେଖିକରି ଜରତା ବିଚାରକରେ ପୁଣି ।
ଯେତେ ମୁହିଁ କହିବି ହୋଇବେ ମୁନିକ୍ରୋପ
ନପୁଣ କ୍ରୋଧରେ ମୋତେ ଦେବେ ଅଭିଶାପ ।
ଏମନ୍ତ ବିଚାରି ମନେ ଉଠିଲା ଜରତା
ଋଷିଙ୍କି ବୋଇଲା ଶୁଣ ହେ ବ୍ରହ୍ମବେତ୍ତା ।
ଶ୍ରୀମୁଖ ପଖାଳି ଚରଣ ହସ୍ତ ଧୁଅ
କ୍ଷୁଧା ଲାଗିବଣି ସର ଲବଣୀ କିଛି ଖାଅ ।
ଏମନ୍ତ ଶୁଣି ଋଷି ଆସନୁଁ ଉଠିଲେ
ସୁନିର୍ମଳ ଜଳ ନେଇ ମୁଖ ପଖାଳିଲେ ।
କରଚରଣ ଧୋଇଣ ଶଉଚ ହେଲେ ମୁନି
ସୁବର୍ଣ୍ଣ ଆସନରେ ବସିଲେ ଯାଇ ପୁଣି ।
ସୁବର୍ଣ୍ଣ ଥାଳିରେ ଘୃତସର ଲବଣୀ ଥୋଇ
ଦିଅନ୍ତେ ଋଷ୍ୟଶୃଙ୍ଗ ଭୋଜନ କଲେ ତହିଁ ।
ଆଚମନ ସାରିଣ ତାମ୍ବୁଳ ଭୁଞ୍ଜିଲେ
ରତ୍ନ ପଲ୍ୟଙ୍କ ଉପରେ ସନ୍ତୋଷେ ବସିଲେ ।
ସୁବର୍ଣ୍ଣ ଥାଳି ଘେନିଣ ଜରତା ଚଳିଗଲା
କାମମୋହିନୀ ଥିବା ପୁରରେ ମିଳିଲା ।
ଶେଷଦ୍ରବ୍ୟମାନ ଯେ ଭୋଜନ କଲାପୁଣି
କାମମୋହିନୀ କହିଲା ଚଳ ଏହିକ୍ଷଣି ।
ଋଷିଙ୍କି ଶୃଙ୍ଗାର କରାଇ ନାନାଭାବେ
ଯେ ମନେ ଋଷ୍ୟଶୃଙ୍ଗ ନୁହଁଇ ବଇରାଗେ ।
ରତି ନୀତି ଲୀଳା ସେ ସକଳ ଶିଖାଇଲି
ମୁନିବର ମନ ପୁଣି ପ୍ରସନ୍ନ କରାଇଲି ।
ଦୁଇଥର ବୀର୍ଯ୍ୟ ଯେ ଗଲା ଅପସରି
ତୃତୀୟ ଥରେ ମୁଁ ଯେ ହେଲି ଗର୍ଭଧାରୀ ।
ଅକ୍ଷୟ ବୀର୍ଯ୍ୟ ସେ ଯେ ନୋହିଲା ପୁଣ କ୍ଷୟେ
ଗର୍ଭ ଏବେ ଭାରିମୋତେ ଲାଗୁଛି ଗୋ ମାୟେ ।

ଜରତାଠାରୁ ଶୁଣି କାମମୋହିନୀ ଗଲା
ଋଷିଙ୍କ ସନ୍ନିଧିରେ ପ୍ରବେଶ ହୋଇଲା ।
ଦେଖିଣ ଋଷ୍ୟଶୃଙ୍ଗ ହରଷ ହୋଇଲେ
କାମମୋହିନୀଙ୍କୁ ଚାହିଁ ସଧୀରେ ଭାଷିଲେ ।
ସରାଗେ କାମମୋହିନୀ କୋଳକରି ବସି
ଦିବସ ଶେଷ ହେଳା ପ୍ରବେଶିଲା ନିଶି ।
ସେ ସ୍ଥାନେ କିଳାପୋତି ନାବ ଖଟାଇଲେ
ସୁମିଷ୍ଟଦ୍ରବ୍ୟମାନ ଋଷିଙ୍କୁ ଭୁଞ୍ଜାଇଲେ ।
କାମମୋହନୀର ସାଇ ଋଷିଙ୍କର ମନ
ନାନା ରଙ୍ଗ ରହସ୍ୟେକଳାକ ରମଣ ।
ଥରେ ରତି ସାରିପୁଣି ଥରେ ରତି କଲେ
ବେନିଘଡ଼ି ପର୍ଯ୍ୟନ୍ତେ ନିର୍ବଳ ହୋଇଲେ ।
ପ୍ରହରକ ଉତ୍ତାରେ ବଢ଼ିଲା ରତିକାର୍ଯ୍ୟ
କାମମୋହିନୀ ଗର୍ଭରେ ରହିଲା ଋଷିବୀର୍ଯ୍ୟ ।
ଗର୍ଭବାସ ହୋଇଣ ଆସନ୍ତେ ଉଠିଲା
ଉତ୍ତମ ଭାବେ ମୁନିଙ୍କି ଶଉଚ କରାଇଲା ।
ସ୍ନାହାନ କରାଇ ଋଷିଙ୍କର ଅଙ୍ଗପୋଛି
ନୂତନ ପଟନିକି ପିନ୍ଧାଇଲା ବାଛି ।
ଅଳଙ୍କାରମାନ ଯତନେ ମଣ୍ଡିଲା
ଚନ୍ଦନ କସ୍ତୁରୀ ଅଙ୍ଗେ ବିଲେପନ କଲା ।
ସର୍ବାଙ୍ଗରେ କର୍ପୂର ଗୁଣ୍ଡିକି ଘଷିଲା
ସୁମିଷ୍ଟ ଦ୍ରବ୍ୟମାନ ସନ୍ତୋଷ ଭୁଞ୍ଜାଇଲା ।
ସର ଲବଣୀ ଭୁଞ୍ଜାଇ କରାଇଲେ ତୋଷ
ଆଚମନ ସାରିଣ ଭୁଞ୍ଜିଲେ ମୁଖବାସ ।
କାମମୋହିନୀ କରଯୋଡ଼ି କହେ ବାଣୀ
ଆମ୍ଭର ଦୋଷକ୍ଷମାକର ହେ ମୁନିମଣି ।
ଋଷ୍ୟଶୃଙ୍ଗ ବୋଇଲେ କି ଦୋଷ ତୁମ୍ଭର
ବହୁତ ସୁଖ ଭୋଗ ହେଉଛି ଆମ୍ଭର ।
ଶୀତଳ ଦ୍ରବ୍ୟମାନ ଆମ୍ଭଙ୍କୁ ଭୁଞ୍ଜାଇଲ
ଅପୂର୍ବ ପଦାର୍ଥମାନ ଦାନ କଲ ।
କାମମୋହିନୀ କହିଲା ଅଛି ଆମ୍ଭଦୋଷ
କ୍ଷମା କରିବ ଯେବେ କହିବୁ ତେବେ ଭାଷ ।
ଏମନ୍ତ ଶୁଣି ଋଷ୍ୟଶୃଙ୍ଗ ଯେ ବୋଇଲେ
ତୁମ୍ଭ ଦୋଷାଦୋଷ ସବୁକ୍ଷମା ଦେଲୁଁ ଭଲେ ।
କାମମୋହିନୀ କହିଲା ଆମ୍ଭେ ଅପସରୀ
ସ୍ତିରୀ ଜାତି ଅଜ୍ଞାନୀ ଅଟୁ ବ୍ରହ୍ମଚାରୀ ।

ଲୋମପାଦ ରାଜାଙ୍କର ଚମ୍ପାବତୀ ଦେଶ
ବ୍ରହ୍ମଶାପେ ସେ ଦେଶଟି ହେଉଅଛି ଧ୍ୱଂସ ।
ବାରବର୍ଷ ହେଲା ତହିଁ ନ ବରଷେ ଘନ
ଦୁର୍ଭିକ୍ଷରେ ମଲେଣି ଅସୁମାର ଜନ ।
ବ୍ରାହ୍ମଣ କହିଲେ ଋଷ୍ୟଶୃଙ୍ଗଙ୍କୁ ଯେ ଆଣ
ସେ ଋଷି ଆସିଲେ ବର୍ଷା ହୋଇବ ତକ୍ଷଣ ।
ପିତା ଜାଣିଲେ ଋଷି ଆସି ନ ପାରିବେ
ଗୁପତେ ଯାଇ ଚାର ଆଣନ୍ତୁ ତାଙ୍କୁ ଭାବେ ।
ସ୍ତିରୀଙ୍କ ଭାବେ ଋଷି ଆସିଲେ ନିକର
ସେ ଆସିଲେ ସୁବୃଷ୍ଟି ଯେ ହୋଇବଦେଶର ।
ବିଚାରି ରାଜା ଆମ୍ଭଙ୍କୁ ପେଷିଲେ ତୁମ୍ଭ ପାଶ
ମାୟାଭାବ ଆମ୍ଭେ ଯେ ତୁମ୍ଭଙ୍କୁ କଲୁଁ ବଶ ।
ମାୟାରେ ଶୃଙ୍ଗାର ଲୀଳା କରାଇଲୁଁ
ମାୟା କଥାରେ ତୁମ୍ଭଙ୍କୁ ଭୁଲାଇ ଆଣିଲୁଁ ।
ଆପଣାଙ୍କ ସଙ୍ଗରେ କଲୁ ରତି ଲୀଳା
ଅକ୍ଷୟ ବୀର୍ଯ୍ୟ ତୁମ୍ଭର କ୍ଷୟ ଯେ ହୋହିଲା ।
ତୁମ୍ଭବୀର୍ଯ୍ୟେ ଦୁଇନାରୀ ହୋଇଲୁ ଗର୍ଭବାସ
ଫେଡ଼ିକରି କହୁଅଛୁଁ ନଘେନ ଆମ୍ଭ ଦୋଷ ।
ଶୁଣି ଋଷ୍ୟଶୃଙ୍ଗ ମୁନି ସ୍ତମ୍ଭୀଭୂତେ ରହି
ବୋଇଲେ ଅବେଭାର କଲ ତୁମ୍ଭେ ଦୁଇ ।
ମାୟାରେ ଯେବେ ମୋତେ ଆଣିଲ ଗୋଭଣ୍ଡି
ରତି ଲୀଳା କି ଲାଗି କରିଲ ଗୋ ଚଣ୍ଡୀ ।
ଆମ୍ଭେ ତ ଦେଖୁ ନାହୁଁ ଛୁଉଁ ନାହୁଁ ନାରୀ
ବିଡ଼ମ୍ବନା କଥା ତୁମ୍ଭେ କଲ ସୁକୁମାରୀ ।
କାମମୋହିନୀ ବୋଇଲା ଶୁଣ ହେ ଗୋସାଇଁ
ସେ ରାଜାର ଅଛି ଝିଅ-ପାର୍ବତୀ-ସମହୋଇ ।
ସେ ଦୁହିତା ବିବାହ ହୋଇବ ତୁମ୍ଭକୁ
ରତି ଲୀଳା କରାଇଲୁଁ ସେ ଗତି ରସକୁ ।
ଜାଣି ଶୁଣିଥିଲେ ସିନା ତାସଙ୍ଗେ ହେବ ମେଳ
ନଜାଣି ଥିଲେ ନିନ୍ଦା ପାଇବ କେବଳ ।
ଋଷ୍ୟଶୃଙ୍ଗ ବୋଇଲେ ତୁମ୍ଭେ କେମନ୍ତେ ଜାଣିଲ
ରାଜକନ୍ୟା ସଙ୍ଗେ ମୁଁ ହୋଇବି ବୋଲିମେଳ ।
କାମମୋହିନୀ ବୋଇଲା ଶୁଣ ହେ ମୁନିମଣି
ଏକଦିନେ ଅଇଲେ ନାରଦ ମହାମୁନି ।
ତୁମ୍ଭର ପିତା ଯେ ହୁଅନ୍ତି ଯେ ଭଲେ
ରାଜାଙ୍କ ନବରେ ଯାଇ କନ୍ୟାକୁ ଦେଖିଲେ ।
ରାଜାଙ୍କୁ କହିଲେ ଏହି ଆମ୍ଭ ବଧୂ ଜାଣ
ରାଜା କହିଲେ ଏହା କହୁଛ କେସନ ।
ନାରଦ ବୋଇଲେ ଆସିବେ ଋଷ୍ୟଶୃଙ୍ଗ
ସେ ପୁତ୍ର ବିଭା ହୋଇବ ନୋହିବ ଯେ ଭଙ୍ଗ
ଋଷ୍ୟଶୃଙ୍ଗ ବୋଇଲେ ଏରୂପେ ଯେବେକଥା
ତାଙ୍କ କଥା ମୁହିଁକି କରିବି ଅନ୍ୟଥା ।
ତୁମ୍ଭେ ବେଶ୍ୟାନାରୀ ଯେ ନିଷ୍ଠିତରେ ଥାଅ
ଅନେକ ଲୋକଙ୍କୁ ଜାଣି ଶୁଣି ଦେହ ଦିଅ ।
କାମମୋହିନୀ କହିଲା ସେ କଥା ଏବେ ଶୁଣ
କୁଳଟା ଆମ୍ଭେମାନେ ନୋହୁ ହେ ଋଷିରଣ ।
ସ୍ୱର୍ଗରେ ଅପସରୀ ରମ୍ଭା ନାରୀ
ତାରକୋଳେ ଜାତ ଆମ୍ଭେ ଦୁଇଟି କୁମାରୀ ।
ଦେବତାଏ ଯାଇଣ ତାହାକୁ କହିଲେ
ଦୁଇ ଦୁହିତା ମଞ୍ଚରେ ଜନ୍ମ ହୁଅ ଭଲେ ।
ନବଯୁବା ରୂପ ଯେ ହୋଇବ ଯେଉଁ ଦିନ
ଜାଣି ଦିନେ ଯିବ ଯେ ବିଭାଣ୍ଡକର ସ୍ଥାନ ।
ବିଭାଣ୍ଡକ ତନୟ ଋଷ୍ୟଶୃଙ୍ଗ ଜାଣ
ଚମ୍ପାବତୀ ଦେଶକୁ ଆଣିବ ଯାଇଣ ।
ଜଳବୃଷ୍ଟି କରାଇବ ରାଜକୁମାରୀ ହେବେ ବିଭା
ଯାଗକରି ଲୋମପାଦକୁ ଶତେ ପୁତ୍ର ଦେବା ।
ସେହିଠାରୁ ଅଯୋଧ୍ୟା କଟକକୁ ଯିବେ
ଦଶରଥ ଯାଗକଲେ ଶ୍ରୀହରି ଜନ୍ମିବେ ।
ବାସୁଦେବ ଜାତହେଲେ ମାରିବେ ଅସୁର
ଋଷିଦେବତା ମାନଙ୍କର ଯିବ ତେବେ ସର ।
ଋଷ୍ୟଶୃଙ୍ଗ କହିଲେ ତୁ ସତ କରି କହ
ଅନ୍ୟଲୋକମାନେ କି ନ ଛୁଅଁନ୍ତି ଦେହ ।
କାମମୋହିନୀ ବୋଇଲା ମିଛ ଯେ ନୁହଁଇ
ତୁମ୍ଭ ବିନା ଆମ୍ଭ ଦେହ ଛୁଇଁନାହିଁ କେହି ।
ଋଷ୍ୟଶୃଙ୍ଗ ବୋଇଲେ ସେ ବାରବନିତାକିସ
କାମମୋହିନୀ ବୋଇଲେ ଶୁଣ ହେ ବିଶେଷ ।
ସେମାନେ ରାଜାଙ୍କୁ ଖଟନ୍ତି ସବୁ ଦିନ
ନରଛୁଆଁ ହୋଇଛନ୍ତି ସେମାନେ ଯେ ପୁଣ ।
ତୁମ୍ଭେ ତାଙ୍କ ଅଙ୍ଗ ଯେ ନ ଛୁଇଁବ ଋଷି
ଜନ୍ମେ ଜନ୍ମେ ତୁମ୍ଭର ହୋଇବୁ ଯେ ଦାସୀ ।
ଋଷ୍ୟଶୃଙ୍ଗ ବୋଇଲେ ଆଜ ରଜନୀରେ
ଦୁଇ ପୁତ୍ର ଜାତ ହେବେ ଦୁହିଁଙ୍କର କୋଳେ ।

ପୁତ୍ର ଘେନି ଏହିଠାରୁ ଲେଉଟି ତୁମ୍ଭେ ଯିବ
ପିତାର ଆଗେ ଦେଇ ଦେହ ଯେ ଛାଡ଼ିବ ।
ନିଜ ମାତାଠାରେ ଯାଇଁ ପ୍ରବେଶ ହୋଇବ
ସ୍ୱର୍ଗପୁରେ ଦେବତାମାନଙ୍କୁ ଖଟିବ ।
ଆମ୍ଭେ ଯିବୁ ଚମ୍ପାବତୀ ଦେଶକୁ ନିଶ୍ଚେ ଜାଣ
ଜଳ ବରଷାଇ ରାଜ୍ୟ କରିବୁ ସୁଖୀ ପୁଣ ।
ରାଜକୁମାରୀକି ବିଭା ହୋଇଣ ଯାଗକରି
ପୁତ୍ରଦାନ କରିବୁ ଲୋମପାଦମନ ସନ୍ତୋଷ କରି ।
ସେଠାରୁ ଅଯୋଧ୍ୟାକୁ ଯିବୁ ନିଶ୍ଚେ ଜାଣ
ଦଶରଥ ରାଜା ଯାଗ କରିବୁ ସଂପୂର୍ଣ୍ଣ ।
କାମମୋହିନୀ ବୋଇଲେ ନିଜ ଆଶ୍ରମକୁ ପୁଣ
କେମନ୍ତେ ଯିବୁଁ ଆମ୍ଭେ ପଥ ଦଶ ଯୁଣ ।
ଋଷ୍ୟଶୃଙ୍ଗ ବୋଇଲେ ଆମ୍ଭେ ରହିବୁ ଦିନେ ଏଥେ
ଏକ ଚାପଧରି ତୁମ୍ଭେ ଚଳ ଗୋ ତୁରିତେ ।
ଯେଉଁଠାରେ ଆମ୍ଭେ ବସିଲୁ ଚାପରେ
ସେଠାରେ ଓହ୍ଲାଇ ଯାଅ ଗୋ ଧାତିକାରେ ।
ଏମନ୍ତ ବଚନ ଶୁଣି ବୋଲେ ଅପସରୀ
କେତେଦିନ ସେଠାରେ ରହିବୁଁ ବ୍ରହ୍ମଚାରୀ ।
ଋଷ୍ୟଶୃଙ୍ଗ ବୋଇଲେ ରହିବ ସାତ ଦିନ
ଉଠିଆରି ଗଲେ ତୁମ୍ଭେ ଚଳିବ ସ୍ୱର୍ଗେ ପୁଣ ।
ଚଉଦଦିନ ପିତା ପାଳିବେ ମୋର ପୁତ୍ରେ
ନାମକରଣ ଦେବେ ଏକୋଇଶ ଦିନ ରାତ୍ରେ ।
ସେ ଦିନ ଦୁଇପୁତ୍ର ହେବେ ନବଯୁବା
ବିଦ୍ୟା ପଢ଼ି ତପ କରିବେ ଯେ ବାଳ ତନୁଜା ।
ଶୁଣିଣ କାମମୋହିନୀର ସେଠାରୁ ଚଳିଗଲା
ଜରତା ପାଖରେ ଯାଇଣ ମିଳିଲା ।
ଜରତାକୁ କହିଲା ଗୋ ଶୁଣ ମୋର ବାଣୀ
ଋଷି ସଙ୍ଗେ ରମଣ ରତି ଯେ କଲି ପୁଣି ।
ଦୁଇଥର ଶୃଙ୍ଗାର କରନ୍ତେ ମୁନିବର
ଏବେ ଗର୍ଭସ୍ଥାୟିତ ହୋଇଲା ମୋହର ।
ଗର୍ଭ ହେବାରୁ ମୁଁ ଯେ ମୁନିଙ୍କି ଜଣାଇଲି
ଆମ୍ଭେ ତ ଅପସରୀ ବୋଲିଣ ବୋଇଲି ।
ଋଷି ବୋଇଲେ ତୁମ୍ଭେ ମନ୍ଦକର୍ମ କଲ
ମାୟାରେ ଆମ୍ଭଙ୍କୁ ତୁମ୍ଭେ ରତି କରାଇଲ ।
ତୁମ୍ଭେ ନଟକାରୀ ଯେ ଅନେକ ସଙ୍ଗେ ରମ
ମହାପାତକ ଅର୍ଜିଲ ଆମ୍ଭଙ୍କୁ କଲ ଭଙ୍ଗ ।

ମୁଁ ବୋଇଲି କାହାରି ସଙ୍ଗରେ ପ୍ରୀତି ନାହିଁ
ପୂର୍ବର ଚେତା ଆମ୍ଭ ଦେହରେ ଅଛି ରହି ।
ମୁନି ବୋଇଲେ ମୋତେ କୁହ ଏହି ଅର୍ଥ
ମୁଁ ବୋଇଲି ଶୁଣ ତୁମ୍ଭେ ଏଥିର ଚରିତ ।
ଦେବତାଏ ପେଷିଲେ ଆମ୍ଭଙ୍କୁ ମର୍ତ୍ତ୍ୟପୁର
ବୋଇଲେ ଅସୁରବଳ ହୋଇଲେ ପ୍ରବଳ ।
ବାସୁଦେବ ଜାତ ହେଲେ ମାରିବେ ଅସୁର
ଦଶରଥ ଘରେ ଜାତ ହେବେ ଆଦିମୂଳ ।
ଋଷ୍ୟଶୃଙ୍ଗଙ୍କୁ ତୁମ୍ଭେ ଆଣିବ ଯାଇ
ସୁରତି ରତିଦେଇ ତୋଷିବ ମୁନି ଦେହୀ ।
ତୁମ୍ଭ ନବଯୁବା ଦେହ କାହାକୁ ନ ଦେବ
ଋଷ୍ୟଶୃଙ୍ଗ ମେଳ ହେଲେ ମୁକତି ପାଇବ ।
ଶୁଣିକରି ଋଷିବୋଇଲେ କିମ୍ପାଇ ରତିଦେଲ
ଭାବ ଯଦି କରିଥିଲ ଅଭାବ କିମ୍ପା ହେଲ ।
ମୁଁ ବୋଇଲି ସେଥିରେ କଥା ଅଛି ପୁଣ
ତୁମ୍ଭେ ବିଭା ହେବ ରାଜକୁମାରୀକୁ ପୁଣ ।
ସେ କନ୍ୟା ନ ଜାଣନ୍ତି ରତିର ପ୍ରସଙ୍ଗ
ତୁମ୍ଭେ ଜାଣିନାହିଁତ ରତି ଅଙ୍ଗସଙ୍ଗ ।
ଏଥି ସକାଶେ ତୁମ୍ଭଙ୍କୁ ରତି ଶିଖାଇଲୁ
ଅନେକ ନିନ୍ଦା ଜାତ ହୋଇବ ଏଥିରୁ ।
ଋଷି ବୋଇଲେ ଯେବେ ଆମ୍ଭଙ୍କୁ ଭଲହେବ
ତୁମ୍ଭଠାରୁ ଆମ୍ଭର ଛାଡ଼ିଲା କ୍ରୋଧଭାବ ।
ବୋଇଲେ ରାଜାମାନଙ୍କର ଆମ୍ଭଙ୍କୁ କିମ୍ପା ଲୋଡ଼ା
ମୁଁ ବୋଇଲି ଅପାଳକ ରାଜ୍ୟ ହେଲା ପରା ।
ତୁମ୍ଭେ କହିଲେ ଜଳ ବରଷିବ ଧାରା
ଦୁଇରାଜାଙ୍କର ନାହିଁ ପୁତ୍ର ତୁମ୍ଭେ ଦେବ ପରା ।
ଶୁଣିଣ ବୋଇଲେ ଆଜ ପ୍ରସବ ତୁମ୍ଭେ ହୁଅ
ଦୋଷ କ୍ଷମା ହେଲା ବେଗେ ତୁମ୍ଭେ ଚଳିଯାଅ ।
ମୁଁ ବୋଇଲି ଯେବେ ପୁତ୍ରଜନ୍ମ ହେବେ ମୁନିବର
କେଉଁଠାରେ ରହିବୁ ଆଜ୍ଞା ଦିଅ ହେ ସତ୍ୱର ।
ଶୁଣିକରି ବୋଇଲେ ମୋର ପିତାର ସ୍ଥାନେ ଯାଅ

× × ×

ଏମନ୍ତ କଥାବେଳେ ବୋଇଲି ମୁଁ ଯେ ପୁଣ
କେମନ୍ତେ ଆମ୍ଭେ ଯିବୁ ତୁମ୍ଭ ପିତାପାଶେପୁଣ ।
ବୋଇଲେ ତୁମେ ଚାପେ ବେଗେ ବସିଯାଅ
ଯେଉଁସ୍ଥାନରୁ ଆସିଛ ଯେ ସ୍ଥାନେ ଓହ୍ଲାଅ ।

ମୁଁ ବୋଇଲ ନାବ ଯେବେ ଆସିବା ଯାଏଥିବ
ସେ ନାବ ଆସିଲେ ସେଠାରୁ ଚଳିଯିବ ।
ହେଉ ବୋଲି ବୋଇଲେ ଭୋ ମୁନିବର ମୋତେ
ଶୁଣିକରି ଜରତା ହରଷ ହେଲା ଚିତେ ।
ବାରକନ୍ୟାକୁ କହିଲେ ଶୁଣ ମୋର ବାଣି
ଋଷିର ଅଙ୍ଗ ତୁମ୍ଭେ ନ ଛୁଇଁବ ପୁଣି ।
ସେବାକରି ଥିବ ଯେ ଋଷିର ମନଜାଣି
ଅମୂଲ୍ୟ ପଦାର୍ଥ ତାଙ୍କୁ ଖୁଆଇବ ପୁଣି ।
ରତି ଗତିରେ ଶ୍ରଦ୍ଧା ନକରିବ ଯେ ଆଉ
ଚମ୍ପାବତୀ ରାଜ୍ୟରେ ପ୍ରବେଶ ହେବ ଯହୁଁ ।
ରାଜାର ନଗର ଛାଡ଼ି ନିଜପୁରେ ଯିବ
ସେ ରାଜ୍ୟରେ ଯଶ ଯେ ତୁମ୍ଭଙ୍କୁ ମିଳିବ ।
ଆମ୍ଭେ ରତି କରାଇବାରୁ ପାଇଲୁଣି ଲାଭ
ଋଷି ମୋତେ ଶାପ ଦେଲେ ଆମ୍ଭନନା ପାଶଯିବ ।
ଯେଉଁବନେ ଆମ୍ଭ ମଠ ସେବନରେ କରବାସ
ଆମ୍ଭର ବଚନ ଲଙ୍ଘିଲେ ତୁମ୍ଭେ ଯିବ ନାଶ ।
ଆଉ ଆମ୍ଭର ଦେଶରେ ନାହିଁ ପ୍ରୟୋଜନ
ଅରଣ୍ୟରେ ବାସ କଲୁଁ ଆଜଠାରୁ ପୁଣ ।
ଶୁଣିକରି ବାରକନ୍ୟା ତରଳ ହୋଇଗଲେ
ଜରତା ଡାକି କେରୁଆଳକୁ କହିଲେ ।
ସକଳ କଥା ଯେ ତାଙ୍କୁ କହିଲେ ବୁଝାଇ
ଯେଉଁଠାରୁ ଋଷ୍ୟଶୃଙ୍ଗ ଆଣିଣ ଅଛଇଁ ।
ସେ ସ୍ଥାନେ ଛାଡ଼ିଦିଅ ଆମ୍ଭଙ୍କୁ ନେଇ ପୁଣ
ଶୁଣିକରି କେରୁଆଳ ମେଲିଲେ ନାବ ପୁଣ ।
ସେ ସ୍ଥାନରେ ଯାଇ ସର୍ବେ ହେଲେକ ପ୍ରବେଶ
ନାବରୁ ଦୁଇକନ୍ୟା ଉତୁରି ତୁରିତ ।
କୂଳରେ ଦୁଇକନ୍ୟା ପ୍ରବେଶ ଯାଇହେଲେ
କେରୁଆଳ ନାବଧରି ବେଗେ ଲେଉଟିଲେ ।
ଋଷ୍ୟଶୃଙ୍ଗ ଥିବାଠାରେ ଯାଇଁ ପ୍ରବେଶ ହୋଇଲେ
ସେଠାବରୁ ନାବ ଚାପମେଲିଣ ବେଗେଦେଲେ ।
ନାବ ଚାଲିଗଲା ଯେ ଅତି ଖରଭାବେ
ଦୁଇ କନ୍ୟା କୂଳରେ ରହିଲେ ଚିନ୍ତାଭାବେ ।
ଚନ୍ଦ୍ରପକ୍ଷ ଯେହ୍ନେ ଦିଶଇ ଉଜ୍ଜ୍ୱଳ
କାମମୋହିନୀ ଜରତା ଚଳିଲେ ସତ୍ୱର ।
ବିଭାଣ୍ଡେକ ମଢ଼ିଆ ଦୁଆରେ ଯାଇହେଲେ
ମଠ ପାଖେ ନିମ୍ବ ବୃକ୍ଷ ଗୋଟିଏ ଦେଖିଲେ ।

ସେହି ବୃକ୍ଷ ମୂଳରେ ଦୁଇ କନ୍ୟା ପୁଣ
ନିର୍ଜ୍ଜନ ଦେଖିବାରୁ ରହିଲେ ସେହିସ୍ଥାନ ।
ଜରତା ଆଗହୋଇ ପ୍ରସବ ହୋଇଲା
ଚନ୍ଦ୍ରକୁ ବିଶେ ତୋରା ପୁତ୍ରେକ ଜାତ ହେଲା ।
ଦୁଇଗୋଟି ଚରଣ ତାହାର ଦୁଇ ଗୋଟି ହସ୍ତ
ଶିରପରେ ସପ୍ତଫେଣି ହୋଇଛି ସନ୍ଧୁତ ।
ତ୍ରୟନେତ୍ର ତାହାର ଅଟଇ ତେଜବନ୍ତ
କାମମୋହିନୀ ଜଳଦେଲା ନେଇ ତୁରିତ ।
ପୁତ୍ରକୁ ସ୍ନାନ କରାଇ ଶଉଚ କରାଇଲା
କ୍ଷୀର ଦ୍ୟନ୍ତେ ପୁତ୍ରଗୋଟି ଶାନ୍ତମୂର୍ତ୍ତି ହେଲା ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଶାକମ୍ଭରୀ
ପୁଣ କାମମୋହିନୀ ପ୍ରସବ ହେଲାପରି ।
ରବିର ତେଜ ପ୍ରାୟେ କୁମର ଜନମି
ତିନିଗୋଟି ଶିର ତାର ଦୁଇ ଯେ ଚରଣ ।
ତିନି ମସ୍ତକରେ ନବ ଆଖି ଅଛି ପୁଣ
ଦୁଇଗୋଟି ହସ୍ତ ତାର ଅଟଇ ପ୍ରମାଣ ।
ଜଗତ ଆଲୋକ ଯେ ଦିଶିଲା ତେଜରେ
ଦେଖିଣ କାମମୋହିନୀ ତୋଷ ଯେ ମନରେ ।
ପୁତ୍ର ସ୍ନାନ କରାଇ ଶଉଚ ପୁଣ ହେଲା
କୋଳେ ଧରି ସେ ପୁତ୍ରକୁ କ୍ଷୀର ପାନ ଦେଲା ।
ଅମଳାଣ ବସ୍ତ୍ରରେ ଦୁଇ ପୁଅକୁ ଶୁଆଇ
ଶର୍ବରୀ ଶେଷ ହୋଇଲେ ଶୁଣ ଗୋଚାନ୍ଦ ମୁହିଁ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ପଞ୍ଚାନନ
ଜରତା କାମମୋହିନୀ ପୁତ୍ର କଲେ ଜନ୍ମ ।
ସେ ଦିନ ବିଭାଣ୍ଡେକ ଅଇଲେଟି ମଠ
ସେ କଥା ମୋର ଆଗେ କହ ହେ ତୁରିତ ।
ଈଶ୍ୱର ବୋଇଲେ ସେ କଥା ଏବେ ଶୁଣ
ବିଭାଣ୍ଡେକ ଗଲେ ଯେ ପ୍ରଭାତୁ ତପସ୍ଥାନ ।
ବେଳ ଅସ୍ତ ହୁଅନ୍ତେ ଉଠିଲେ ତପରୁ
ଦଣ୍ଡ କମଣ୍ଡଳୁ ପୋଥି ଧରିଣ ସେଠାରୁ ।
ଆସନ୍ତେ ଆଗେ ବାଟରେ ଅହିକି ପୁଣ ଦେଖି
ଫଣା ଟେକି ଅନାଏ ଯେ ମୁନିଙ୍କି ନିରେଖି ।
ଖଣ୍ଡେ ଦୂରରେ ଯାଇ ଗୁଧ୍ରପକ୍ଷୀ ଦେଖି
ମାଂସ ଖାଉଅଛି ମଡଭରେ ଖେପି ।
ପେଚା ଉଲ୍ଲୁକ ପୁଣି ଦେଖିଲେ ବାଟରେ
ରୋଦନ କରୁଅଛି ଡାଳର ଉପରେ ।

ନିର୍ଘାତର ଶବଦ ଶୁଭିଲା କର୍ଣ୍ଣକୁ
କେବଣ ବୋଲିଣ ମୁନି ବିଚାରି ମନକୁ ।
ମଢ଼ିଆରେ ପ୍ରବେଶ ହେଲେ ମୁନିବର
ଦେଖିଲେ କାମଧେନୁ ସୁରଭି ଆଗର ।
ଶାଳ ଗ୍ରାମଶିଳ ପୋଥି ଦଣ୍ଡ କମଣ୍ଡଳ
ସକଳ ଦ୍ରବ୍ୟ ଅଛି ପୁତ୍ର ନାହିଁ ମଢ଼ିଆର ।
ବିଚାରିଲେ ମୋର ଋଷ୍ୟଶୃଙ୍ଗ କିଏ ନେଲା
ଆଗକରି କୁମର ମୋ ଆଗେ କହୁଥିଲା ।
ଏତେବୋଲି ଋଷି ଯେ ଆରତେ ଦ୍ୟନ୍ତିଡାକ
କେଣେ ଗଲୁ ବାବୁରେ ଆସ ଋଷ୍ୟଶୃଙ୍ଗ ।
ଲତା ଉହାଡ଼ରେ ଚାହାଁନ୍ତି ତପି ପୁଣ
ପୁତ୍ରକୁ ନଦେଖି ଋଷି କରନ୍ତି ରୋଦନ
ବିଚାରନ୍ତି ଡାହାଣୀ କି ଭୂତ ପିଚାଶୁଣୀ
କେ ମୋହର ନନ୍ଦନକୁ ଭକ୍ଷିଲାକ ପୁଣି ।
ଚାରି ରାବଣ ଭଉଣୀ କି ଅବା ଅଇଲେ
ଗୁଣବନ୍ତ ପୁତ୍ରକୁ ମୋର କି ଖାଇଲେ ।
ଯେଉଁ ପୁତ୍ର ଅଟଇ ମୋ ବେଦବନ୍ତ ସରି
ବାରବର୍ଷରେ ସେ ଯେ ହେଲା ବ୍ରହ୍ମଚାରୀ ।
ସେ ପୁତ୍ର ବିଚାରିଲେ ଜଗତ ପାରେ ଦହି
ସେ କୁମର ଏବେ ମୋର ଘେନିଗଲା କେହି ।
ଯେଉଁ କୁମର ବୋଲରେ ବରଷନ୍ତି ଜଳ
ଯେଉଁ କୁମରକୁ ମୋର ଡରନ୍ତି ଦିଗପାଳ ।
ଯେଉଁ କୁମର ମୁଖକୁ ଦେଖି ହୁଅଇ ମୁଁ ସୁଖୀ
କେଣେ ଛାଡ଼ିଗଲୁ ପୁତ୍ର ମୋତେ ତୁ ଉପେକ୍ଷି ।
ଏମନ୍ତେ ଅନେକ ଯେ ରୋଦନ ଋଷି କଲେ
ସୁରଭି କାମଧେନୁକୁ ନେଇଣ ବାନ୍ଧିଲେ ।
ସ୍ରୁବ କୁଶ ପାତ୍ରୀ ଯେ କଠୋର ଆଦି ପୁଣ
ଏମାନଙ୍କୁ ନେଇଣ ଯେ ରଖିଲେ ମଠେଣ ।
ମୃଗ ଛାଲ ପୋଥି ଯେ ଦଣ୍ଡ କମଣ୍ଡଳ
ସକଳ ସାଇତିଣ ରଖିଲେ ମୁନିବର ।
ପୁତ୍ର ବିହୁନେ ଋଷିଙ୍କୁ ଅନ୍ୟ ନ ଦିଶଇ
ସପ୍ତ ଘଡ଼ି ରଜନୀରେ ବନରେ ବୁଲୁଥାଇଁ ।
ପୁତ୍ରକୁ ନପାଇ ମୁନି ହୋଇଲେ ବିରସ
ତର୍ପଣ ନକଲେ ମୁନି ନକଲେ କିଛି ଗ୍ରାସ ।
ପାଦକୁ ନ ପଖାଳି ମୁଖକୁ ନ ଧୋଇଲେ
ନିରାଶ ହୋଇଣ ଋଷି ମଠରେ ଶୋଇଲେ ।

ରଜନୀରେ ସପନ ଯେ ଦେଖିଲେ ମୁନିବର
ଶ୍ୱେତ ହସ୍ତୀପରେ ବିଜେ ପୁତ୍ର ଯେ ତାଙ୍କର ।
ଆଲଟ ଚାମର ଯେ ପଡ଼ଇ ଛାମୁର
ଧବଳ ଛତି ଟେକାତ ହୋଇଛି ଉପର ।
ମଣିମା ଡାକ ପଡୁଛି ଶବଦ ଗୁରୁଟାଣ
କରପତ୍ର ଯୋଡ଼ି ଆଗେ ଉଭା ନୃପରାଣ ।
କେ ବୋଲଇ ମୋତେ ତୁମ୍ଭେ ରଖ ଋଷ୍ୟଶୃଙ୍ଗ
କେହି ବୋଲୁଛନ୍ତି ତୁମ୍ଭେ ପୁତ୍ର ଦିଅ ବେଗ ।
କେ ବୋଲଇ ମୋର ଯାଗେ ଆଚାର୍ଯ୍ୟ ହୋଇବ
ଏମନ୍ତ ସପନ ଯେ ଦେଖିଲେ ଋଷିଦେବ ।
ନିଦ୍ରା ଭାଜିଗଲା କ୍ଷଣି ବିଚାର କଲେ ମୁନି
ଏ ସ୍ୱପନ ଶୁଭ ଯେ ଅଟଇ ମୋତେ ପୁଣି ।
ଏମନ୍ତ ରଜନୀ ଯେ ହୋଇଲାକ ଶେଷ
ନଦୀ କୂଳରେ ଋଷି ହେଲେକ ପ୍ରବେଶ ।
ସ୍ନାନ ଶଉଚ ଯେ ନଦୀରେ ଋଷି କଲେ
ପିତୃ ଲୋକଙ୍କୁ ଋଷି ଯେ ଜଳ ତିଳକ ଦେଲେ ।
ସନ୍ଧ୍ୟା ସୁମରିଲେ ଯେ ସାରିଲେ ବିଧିମତ
ସେଠାରୁ ଆସି ମୁନି ମଠରେ ଉପଗତ ।
ଶାଳ ଗ୍ରାମ ଶିଳାକୁ ସ୍ନାନ କରାଇଲେ
ଗନ୍ଧ ଚନ୍ଦନ ଦେଇ ପୁଷ୍ପ ଶିରେ ଦେଲେ ।
ଫଳ ମୂଳ ପୂଜା କଲେ ଋଷି ପୁଣି ।
ଶତବାର ପର୍ଯ୍ୟନ୍ତ ଓଳଗି ହେଲେ ପୁଣି ।
କାମଧେନୁ ସୁରଭିକୁ ଗୋ ଦୋହନ କଲେ
ଦୋହନ କରିଣ ବହନ ଛାଡ଼ିଦେଲେ ।
ଦେହରେ ପୁତ୍ର ଚିନ୍ତା ଅଛି ଯେ ଋଷିର
ବିଚାରନ୍ତି ଋଷ୍ୟଶୃଙ୍ଗ କେଣେ ଗଲା ମୋର ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ବେଦବର ଜାଣି ଚିନ୍ତା କଲେକ ବିଚାରି ।
ନାରଦଙ୍କୁ ବୋଇଲେ ତୁମ୍ଭେ ବେଗେ ଚଳ
କଉଶିକ ବନରେ ବିଭାଣ୍ଡକ ଘର ।
ଦେବଙ୍କର ଉପକାରେ ପୁତ୍ର ତାର ଆସି
ସେ ଋଷି ଏବେ ଚିନ୍ତା କରୁଅଛି ବସି ।
ଜରତା କାମମୋହିନୀ ମାୟାରେ ଋଷି ଭଣି
ଦେବତାଙ୍କ ବୋଲରେ ଶୃଙ୍ଗାର ରତି ସନ୍ଧି ।
ତାଙ୍କଠାରୁ ଦୁଇ ପୁତ୍ର ହୋଇଛନ୍ତି ଜାତ
ଯାଇକରି ବେଗେ ତାଙ୍କୁ ସମ୍ଭାଳ ତପୋବନ୍ତ ।

ଶୁଣିକରି ନାରଦ ଯେ ବେଗେ ଚଳିଗଲେ
କଉଶିକ ବନରେ ପ୍ରବେଶ ଯାଇ ହେଲେ ।
ଦେଖିଲେ ବିଭାଣ୍ଡେକ ବସିଣ ଛନ୍ତି ପୁଣ
ଚିନ୍ତାରେ ଋଷି ମନ ନଯାଏ ଧରଣ ।
ନାରଦଙ୍କୁ ଦେଖିଣ ସେ ଉଠିଲେ ବହନ
ନମସ୍କାର କଲେ ନାରଦ ଋଷିଙ୍କ ଚରଣ ।
ରୋଦନ କରିଣ ଯେ, ବୋଲନ୍ତି ଏବେ ଶୁଣ
କେଣେ ଗଲା ପୁତ୍ର ମୋର ପୁତୁରା ତୋର ଜାଣ ।
କେତେ କଷ୍ଟେ ପାଳିଥିଲି ଯେ କୁମର ମୁହିଁ
ସେ କୁମର ମୋର ଯେ ପ୍ରାଣ ହେ ଅଟଇ ।
ନାରଦ ବୋଇଲେ ତୁମ୍ଭେ ହୋ ନକର ରୋଦନ
ସେ କଥା ତୁମ୍ଭଙ୍କୁ ମୁହିଁ କହୁଛି ବୁଝାଇଣ ।
ଚାରି ରାବଣ ସଙ୍ଗରେ ଅନେକ ଅସୁର
ଦେବତାଙ୍କୁ ଧରିଣ ଯେ ସ୍ୱର୍ଗେ କଲେ କ୍ରୁର ।
ବାସୁଦେବଙ୍କୁ ଦେବତା ଯାଇଣ କହିଲେ
ବାସୁଦେବ ମର୍ତ୍ତ୍ୟପୁରେ ଜନ୍ମିବେ ବୋଇଲେ ।
ଦଶରଥ ନୃପତି କୋଳରେ ହେବ ଜାତ
ତେଣୁ ସେ ଦେବତାଏ ନେଲେ ଯେ ତୋସୁତ ।
ଚମ୍ପାବତୀ ରାଜ୍ୟର ରାଜା ଲୋମପାଦ
ସେ ରାଜ୍ୟେ ଅପାଳକ ପଡ଼ିଲା ପ୍ରମାଦ ।
କାମମୋହିନୀ ଜରତା ସ୍ୱର୍ଗର ଅପ୍‌ସରୀ
ସେ ରାଜ୍ୟରେ ଜନ୍ମ ଦେବତା ତାଙ୍କୁ କରି
ଦଶରଥ ଘରେ କନ୍ୟାଏ ଜାତ କଲେ
ବିହି ବିଧାତା ତାର କର୍ମରେ ଲେଖିଦେଲେ ।
ଋଷ୍ୟଶୃଙ୍ଗଙ୍କୁ ସେ କନ୍ୟା ହୋଇବ ପୁଣ ବିଭା
କମଳାଙ୍କ ପରାଏ ତୋର ବଧୂ ଦିଶେ ଶୋଭା ।
ଏଗାର ବର୍ଷ ଛଡ଼ ମାସ କନ୍ୟାକୁ ହୋଇ
ପନ୍ଦର ବରଷର ତୁମ୍ଭ କୁମର ଅଟଇ ।
ସେ ସକାଶେ ଦେବତାଏ ବିଚାର କରି ପୁଣ
ଚମ୍ପାବତୀ ରାଜ୍ୟକୁ କହିଲେ ନେବେ ପୁଣ ।
ଋଷ୍ୟଶୃଙ୍ଗ ଆସିଲେ ବରଷିବ ଜଳ
ଲୋମପାଦର ପୁତ୍ର ହେବ କନ୍ୟାର ମଙ୍ଗଳ ।
ଦଶରଥ ପୁତ୍ର ହେବ କନ୍ୟାର ସକାଶେ
ଏତେବୋଲି ରାଜାକୁ କହିଲେ ସ୍ୱର୍ଗ ଦୂତେ ।
ଶୁଣିଣ ରାଜନ ଯେ ପେଷିଲେ ଅପସରୀ
ନାବ ଚଢ଼ିଆଇଲେ ରାଜାର ବୋଲକରି ।

ତୁମ୍ଭର ପୁତ୍ର ସଙ୍ଗେ ପୀରତି ସେହୁ କରେ
ନାବ ପରେ ବସାଇ ଏଠାରୁ ଘେନିଗଲେ ।।
କାମମୋହିନୀ ଜରତା ଋଷିର ସଙ୍ଗେ
ରମଣ ସୁରତି ତାଙ୍କୁ କରାଇଲେ ରଙ୍ଗେ ।
ତାଙ୍କଠାରୁ ଦୁଇ ପୁତ୍ର ହେଲେ ପୁଣି ଜାତ
ସେ ନାରୀଙ୍କୁ ରଖାଇଣ ଗଲେ ତୋର ପୁତ୍ର ।
ତିନି ମାସପରେ ଫେରିଣ ଆସିଲେ ତୋରପୁର
ତୋ ପୁତ୍ର ଯାଗ କଲେ ଜାତ ହେବେ ବ୍ରହ୍ମାଣ୍ଡଠାକୁର ।
ମାରିବେ ଅସୁର ବଳ ଯିବେ ଦୁଷ୍ଟନାଶ
ସକଳ ଦେବତା ହେବେ ତୋ ଠାରେ ତୋଷ ।
କୁଳ ଉଦ୍ଧାର ବଧୂ ଦେଖିବୁ ନେତ୍ରରେ
ଅନେକ ଧନ ଦ୍ରବ୍ୟ ଆଣିବୁ ସଙ୍ଗତରେ ।
ଏ ଲତା ବନସ୍ତ କଟକ ସବୁ ହେବ
ପର୍ଶୁରାମ ପ୍ରାୟେ ତୋର ନାମ ବିକଶିବ ।
ସକଳ ଚିନ୍ତା ଛାଡ଼ି ନାତିଙ୍କୁ ପ୍ରତିପାଳ
ସେ ନାତି ଦୁହେଁ ଅଟନ୍ତି ଚନ୍ଦ୍ରଠୁ ଉଜ୍ଜ୍ୱଳ ।
ଶୁଣିଣ ବିଭାଣ୍ଡେକ ବୋଇଲେ କହୁ ମିଛ
ପରଦିନ ଥିଲା ଏଠାରେ ମୋର ବତ୍ସ ।
କାଲି ଦିନ ଭିତରେ କି ପୁତ୍ର ଜାତ କରି
ଏହୁ କଥା ମୋତେ ତ ଅସମ୍ଭବ ପରି ।
ନାରଦ ବୋଇଲେ ରଜନୀ ପ୍ରହରକ ଠାରେ
ଦୁଇକନ୍ୟା ଗର୍ଭ ହେଲେ ତୋ -ପୁତ୍ର ବୀର୍ଯ୍ୟରେ ।
ଚୌଦ ଘଡ଼ି ନିଶିଠାରେ ଜନ୍ମ ଦୁଇ ପୁତ୍ର
ବେନି ଘଡ଼ି ରଜନୀ ଯେ ଥିଲାକ ପୁଣ ରାତ୍ର ।
ସ୍ୱାତ ଦିନ ମାତା କୋଳରେ ରହିବେ କୁମର
ଛାଡ଼ିକରି ଅପସରୀ ଯିବେ ସ୍ୱର୍ଗପୁର ।
ରଜନୀ ଦିବସ ଚଉଦ ଦିନ ପୁଣ
ତୁମ୍ଭେ ପାଳିବ ତାଙ୍କୁ ଦେଇଣ କ୍ଷୀର ପାନ ।
ଏକୋଇଶ ଦିନେ ନାମ କରଣ ତାଙ୍କର
ଅନେକ ଋଷି ଆସିବେ ଏଠାବକୁ ତୋର ।
ନାମ ଦେଲେ ସେ କୁମର ଦୁହେଁ ହେବେ ଯୁବା
ସେ ମଠ ଜଗିବେ ତୋର ଯିବୁ ତୁ ଅଲଗା ।
ଋଷ୍ୟଶୃଙ୍ଗଙ୍କୁ ବିଭାକରି ଲେଉଟି ଆସିବୁ
ଦୁଇ ନାତିଙ୍କୁ ବିଦ୍ୟା ଶିଖାଇ ନିର୍ବାଣ କରିବୁ ।
ଶୁଣିଣ ବିଭାଣ୍ଡେକ ବୋଇଲେ ସେ କାହାନ୍ତି
ତାଙ୍କୁ ଦେଖିଲେ ମୋର କଳନା ଯିବ ତୁଟି ।

ନାରଦ ବୋଇଲେ ସେ ନିମ୍ବବୃକ୍ଷ ମୂଳେ
ଦୁଇ ନାତି ଅଛନ୍ତି ଯେ ଯାଇ ଦେଖଡୋଳେ ।
ବିଭାଣ୍ଡେକ ବୋଇଲେ ତୁମ୍ଭର ନୁହଁନ୍ତିକି ନାତି
ତୁମ୍ଭେ ଅଟ ସାରଧାର ମୁଁ ଅଟେ ପଛ କତି ।
ଚାଲ ଆମ୍ଭେ ଦୁଇଭାଇ ସେ ଠାବକୁ ଯିବା
ଦୁଇ ନାତି ଦୁଇ ବଧୂ ମଠକୁ ଆସିବା ।
ବିଭାଣ୍ଡେକ ଡାକିବାରୁ ନାରଦ ସଙ୍ଗେ ଗଲେ
ନିମ୍ବଗଛ ମୂଳେ ଯାଇ ପ୍ରବେଶ ହୋଇଲେ ।
ଜରତା ବୋଇଲା ଶୁଣ ଗୋ କାମମୋହିନୀ
ବେନି ଶ୍ୱଶୁର ଅଇଲେ ନାତିଙ୍କୁ ଦେଖି ପୁଣି ।
ମୁଣ୍ଡରେ ବସନ ଦେଇ ଦୁଇ ନାରୀ ଉଠି
ଦେବାଙ୍ଗ ପଟନିରେ ଦୁଇପୁତ୍ର ଶୋଇଛନ୍ତି ।
ଚନ୍ଦ୍ର ସୂର୍ଯ୍ୟ ପ୍ରାୟେକ ଦିଶଇ ଜ୍ୟୋତିବର୍ଣ୍ଣ
ଏକ ପୁତ୍ର ଶିରପରେ ସପତ ଫେଣି ଯୁଣ ।
ଆର କୁମର ତିନିଶିରେ ପନ୍ଦର ଜଟା ଜାଣ
ମୋହର ସହୃଶ୍ୟ ଯୁବା ଦିଶଇ ନନ୍ଦନ ।
ଦେଖିଣ ବିଭାଣ୍ଡେକ ପରମ ତୋଷ ହେଲେ
ନାରଦଙ୍କ ଚରଣରେ ବିନୟୀ ହୋଇଲେ ।
ବୋଇଲେ ଏ ଚାରି ଜଣ ଆସନ୍ତି ମଢ଼ିଆ
ରହନ୍ତୁ ପୁତ୍ର ବଧୂ ହୁଅନ୍ତୁ ମୋର କ୍ରିୟା ।
ତାଙ୍କୁ ବୋଇଲେ ପୁତ୍ରକୁ ଘେନି ମଠକୁ ବେଗ ଆସ
ମଠ ଭିତରେ ସେ ରହିବ ବିଶେଷ ।
ଏତେ କହି ତାହାଙ୍କୁ ଯେ ଘେନିଣ ଅଇଲେ
ମଠର ଦ୍ୱାରେ ଆସିଣ ପ୍ରବେଶ ହୋଇଲେ ।
ଅଗୁରୁ ଚନ୍ଦନ ଯେ ଲଗାଇଲେ ଧ୍ୱନି
ଅଗ୍ନି ଜାତ ହେବାରୁ ସୁଖ ମିଳିଲାକ ପୁଣି ।
ନାରଦ ବିଭାଣ୍ଡକ ହରଷ ହୋଇଲେ
ସଙ୍ଗ ହୋଇ ସାତଦିନ ସେଠାରେ ରହିଲେ ।
ଉଠିଆରି ସାରିଣ ବେନିଜନ ପୁଣ
ସ୍ନାହାନ ସାରିଣ ଶଉଚ ହେଲେ ଜାଣ ।
ଦୁଇ ମୁନି ଚରଣେ ନମସ୍କାର କଲେ
ନାତିଙ୍କୁ ପାଳ ଆମ୍ଭେ ଯାଉଛୁ ସ୍ୱର୍ଗପୁରେ ।
ବିଭାଣ୍ଡକ ବୋଇଲେ କିମ୍ପାଇ ତୁମ୍ଭେ ଯିବ
ସ୍ୱାମୀ ଆସିବା ଯାଏ ଥାଅ ଏହି ଠାବ ।
ଜରତା ବୋଇଲେ ପ୍ରଭୁ ଅଟନ୍ତି ସେ ଆମ୍ଭ
ବୋଇଲେ ସ୍ୱର୍ଗପୁର ବେଗେ ତୁମ୍ଭେ ଯିବ ।

ମୋର ବୋଲମେଣ୍ଟ ଯେବେ ରହିବ ତୁମ୍ଭେ ଜାଣ
ସୁଗତି ନୋହିବ ଆଉ ତୁମ୍ଭଙ୍କୁ କାଳେଣ ।
ଆମ୍ଭେ ବୋଇଲୁ ଏ ପୁତ୍ର କେହୁ ଯେ ପାଳିବ
ସେ ବୋଇଲେ ମୋହର ପିତାକୁ ନେଇଯିବ ।
ଶୁଣିଣ ବିଭାଣ୍ଡେକ ନାରଦ ତୋଷ ହେଲେ
ଶୂନ୍ୟରୁ ଜାନଏକ ଆସି ସେଠାରେ ମିଳିଲେ ।
ଦୁଇ କନ୍ୟା ଶରୀର ବେଗେ ତେଜ୍ୟାକଲେ
ଅତୁଟ ନାରୀବେଶ ତକ୍ଷଣକେ ଧରିଲେ ।
ଦେବଦୂତ ଅନେକ ଭୂଷଣ ଆଣିଥିଲେ
ଲଗାଇ ସେ ନାରୀ ଯେ ସ୍ୱର୍ଗକୁ ଚଳିଗଲେ ।
ଅପ୍ସରୀ ପାଟଣାରେ ହେଲେକ ପ୍ରବେଶ
ରମ୍ଭା ମେନକା ଦେଖିଣ ହୋଇଲେ ହରଷ ।
ହୁଳହୁଳି ଦେଇଣ ଦୋହିତା ଘେନିଗଲେ
ସନତ ସନାତନକୁ ଡକାଇ ଘେନିଗଲେ ।
ବୋଇଲେ ତୁମ୍ଭନାରୀ ଅଇଲେ ମଞ୍ଚପୁରୁ
ଋଷିର ନାରୀକୁ ଦେବ ଭୋଗ ହେ ନକରୁ ।
ଶୁଣିଣ ସନାତନ ସନତ ଅଇଲେ
ଯେ ଯାହାର ନାରୀକୁ ଆଦରେ ଘେନିଗଲେ
ପାର୍ବତୀ ବୋଇଲେ ଶୁଣ ହେ ମହେଶ୍ୱର
ଜରତା କାମମୋହିନୀର ଗଲେ ସ୍ୱର୍ଗପୁର ।
ପୂର୍ବର ମାତାଠାରେ ପ୍ରବେଶ ହୋଇଲେ
ପୂର୍ବର ସ୍ୱାମୀ ଘେନି ନିଷ୍ଟିନ୍ତେ ଭୋଗକଲେ ।
ଦୁଇ ବାଳକ ଋଷ୍ୟଶୃଙ୍ଗର କୁମର
ବିଭାଣ୍ଡେକ ମଠରେ ରହିଲେ ଦୁଇବାଳ ।
ସେ କଥା ମୋର ଆଗେ କହହେ ତୁମ୍ଭେ ଭଲେ ।

× × ×

ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଦୁଇ ବାଳକଙ୍କୁ ବିଭାଣ୍ଡେକ ଯେ ପାଳନ୍ତି ।
କାମଧେନୁ କ୍ଷୀର ପାନ କରନ୍ତି ଦୁଇ ବାଳ
ତେର ଦିନ ହେଲା ଆଜକୁ ମାତା ଛାଡ଼ିବାର ।
ଅନେକ ଋଷିଙ୍କୁ ସୁମରଣା କଲେ ବିଭାଣ୍ଡକ ଯତି
ସୁରଭୀ ଯୋଗୁଁ ଅନେକ ପଦାର୍ଥ ମିଳନ୍ତି ।
ଦଧି ଲବଣୀ ସର କ୍ଷୀର ଅପ୍ରମାଣ
ନାନା ଜାତିର ଫଳ ରଖିଲେ ଋଷି ଜାଣ ।
ନାମକରଣ ଦିନ ସକଳ ଋଷି ଆସି ।
ଦୁଇ ପୁତ୍ରଙ୍କୁ ଦେଖିଣ ମନରେ ହେଲେ ତୋଷି ।

ନାନା ଦ୍ରବ୍ୟ ଅମୃତ ଭୋଜନ ତହିଁ କଲେ
ଦେବପତି ଋଷିମାନେ ଆନନ୍ଦ ହୋଇଲେ ।
ପୁତ୍ର ଦୁଇଙ୍କ ନାମ ଦେଲେ ଋଷି ପୁଣ
ମାରକଣ୍ଡ, ଦୁର୍ବାସା, ବିଶ୍ୱାମିତ୍ର ନାରଦ ଆଦି ଜାଣ ।
ଅଙ୍ଗିରା କପିଳା ଅଷ୍ଟବକ୍ର ଭରଦ୍ୱାଜ
ସକଳ ମୁନି ବିଚାରି ଦେଲେ ସର୍ବେ ତେଜ ।
ବୋଇଲେ କୁମର ଜାତ ହେଲେ ଏବେ ଜାଣ
ଋଷିଶୃଙ୍ଗ ପିତାମାତ ଜରତା ପୁଣ ।
ସେ କୁମର ଶିରରେ ଅଛଇଁ ସପ୍ତଫେଣି
ସେ କୁମାର ନାମ ହେଉ ଶତେକ ମୁନି ପୁଣି ।
କାମମୋହିନୀଠାରୁ ଯେଉଁ ପୁତ୍ର ଜାତ
ତିନି ମୁଣ୍ଡ ନବ ଆଖି ତାହାର ପ୍ରତ୍ୟକ୍ଷ ।
ତାହାର ନାମ ତ୍ରିଅମ୍ବକ ଦେଲେ ସାରସ୍ୱତ
ଶୁଣିଣ ସକଳ ମୁନି ମନରେ ହରଷ ।
ନାମ ଦେଇ ପୁତ୍ର ପବିତ୍ର କରାଇଲେ
ପଞ୍ଚାମୃତେ ସ୍ନାନ କରାଇମନ୍ତ୍ର କର୍ଣ୍ଣେ ଦେଲେ ।
ତପିଙ୍କର ମନ୍ତ୍ର ଯେ ଶୁଣିଲେ ଯହୁଁ ବାଳ
ଯୁବା ଶରୀର ପୁଣ ଯେ ହୋଇଲେ ତତ୍କାଳ ।
ସକଳ ଋଷିଙ୍କୁ ଉଠି ନମସ୍କାର କଲେ
ଶତବାର ପରିଯନ୍ତେ ବିନୟୀ କହିଲେ ।
ଦେଖିଣ ସକଳ ଋଷି ଆଶ୍ଚର୍ଯ୍ୟିତ ହେଲେ
ଏକୋଇଶ ଦିନେ ପୁତ୍ର ନବଯୁବା ହେଲେ ।
ନାରଦ ବୋଇଲେ ପିତା ଆଗେ ଦେଲେ ବର
ଏକୋଇଶ ଦିନେ ଯୁବା ହୁଅରେ କୁମର ।
ମୁନିମାନେ ବୋଇଲେ ପିତା ତାଙ୍କର କାହିଁ
ନାରଦ ବୋଇଲେ ଚମ୍ପାବତୀ ରାଜ୍ୟେ ଯାଇ ।
ଋଷିମାନେ ବୋଇଲେ କି କାର୍ଯ୍ୟରେ ଗଲେ
ନାରଦ ବୋଇଲେ ସେଦେଶେ ଅପାଳକ ଭଲେ ।
ଋଷ୍ୟଶୃଙ୍ଗ ଗଲେ ଯେ ବରଷିବ ଜଳ
ସେଥି ଯୋଗୁଁ ଗଲେ ବିଭାଣ୍ଡକର ବାଳ ।
ଶୁଣିକରି ଋଷିମାନେ ହରଷ ହୋଇଲେ
ଦୁଇ ପୁତ୍ରଙ୍କୁ ପୁଣି କଲ୍ୟାଣ କରିଲେ ।
ସନ୍ତୋଷ ହୋଇ ମୁନି ଯେ ଯାହା ସ୍ଥାନ ଗଲେ
ନାରଦ ଚଳିଗଲେ ଯଶୋବନ୍ତୀ ପୁରେ ।
ବେଦବର ଆଗରେ କହିଲେ ସକଳ
ଶୁଣିକରି ବେଦବର ହରଷ ମନର ।

ଦୁଇ ଯତି ଅଷ୍ଟବକ୍ର ବିଭାଣ୍ଡକ ପୁଣି
ସେ ଋଷିଙ୍କୁ ରଖାଇଲେ ବିଭାଣ୍ଡକ ଋଷିଜାଣି ।
ବୋଇଲେ ବକ୍ର ଋଷି ମୋର ସେବାଘେନ
ଦୁଇ ଯତିଙ୍କୁ ବିଦ୍ୟା ଶିଖାଅ ତୁମ୍ଭେ ପୁଣ ।
ଶୁଣିଣ ବକ୍ର ଋଷି ହରଷ ମନ ହେଲେ
କଉଶିକ ବନରେ ସେ ଋଷି ରହିଲେ ।
ପାର୍ବତୀ ବୋଇଲେ ଶୁଣ ହେ ତ୍ରିଲୋଚନ
ଋଷ୍ୟଶୃଙ୍ଗ ନାବରେ ଯେ ଗଲେକ ବସିଣ ।
କେତେ ଦିନେ ଚମ୍ପାବତୀ କଟକେ ପ୍ରବେଶ
ସେ କଥା ମୋର ଆଗେ କରିଣ ପ୍ରକାଶ ।
ସଦାଶିବ ବୋଇଲେ ଶୁଣ ଗୋ ଭଗବତୀ
ଗଲାବେଳେ କୋଡ଼ିଏ ଦିନରେ ଗଲେ ଯତି ।
ଦୁଇଦିନ ରହିଣ ସେଠାରୁ ଅଇଲେ
ଚମ୍ପାବତୀ ରାଜ୍ୟରେ ଏକୋଇଶ ଦିନରେ ମିଳିଲେ ।
ଜରତା କାମମୋହିନୀ ଯିବାରୁ ତେଜି ପୁଣ
ବାରକନ୍ୟା ଖଟିଲେ ମୁନିଙ୍କ ଚରଣ ।
ଅପୂର୍ବ ପଦାର୍ଥ ଯେ ଯେତେକ ନେଇଥିଲେ
ରାନ୍ଧିଣ ମୁନିଙ୍କୁ ଭୋଜନ ନେଇ ଦେଲେ ।
ଜାଣିବାରୁ ଋଷି ଯେ କୂଳକୁ ଓହ୍ଲାବନ୍ତି
ସ୍ନାନ ଶୁଚିମନ୍ତ ଶୌଚ କୂଳରେ ହୁଅନ୍ତି ।
ସନ୍ଧ୍ୟା ତର୍ପଣ ଯେ କରନ୍ତି ମୁନି ଜାଣ
ଭୋଜନ କରନ୍ତି ଆସି ନାବ ଭିତରେଣ ।
ବାରବନିତା ଆଗରେ କରନ୍ତି ନୃତ୍ୟ ଗୀତ
ପଶା ଖେଳୁଛନ୍ତି ଯେ ଋଷିଙ୍କୁ ହରଷିତ ।
ଶାପ ଦେବାକୁ ସେ ସମସ୍ତ ଭୟ କଲେ
ଜରତା କାମମୋହିନୀ ଯହୁଁ ଚଳିଗଲେ ।
ରାତ୍ର ଦିବସରେ ନାବ ନେଲେକ ବାହି
ଆମୋଦ ପାଇ ଋଷି ଯେ ପଲଙ୍କରେ ଶୋଇ ।
ଚମ୍ପାବତୀ ରାଜ୍ୟରେ ମିଳିଲେ ଯାଇକରି
ଏକବିଂଶ ଦିନ ଗଲେ ନାବେ ଚଢ଼ିକରି ।
ରଜନୀର ଶେଷରେ ହେଲେକ ପ୍ରବେଶ
ପୂର୍ବଦିଗେ ଉଦେ ଯେ ଦିନକର ନାଥ ।
ଋଷ୍ୟଶୃଙ୍ଗଙ୍କୁ କନ୍ୟାମାନେ ତୋଳିଲେ ଶେଯରୁ
ସୁବାସିତ ଜଳ ଦେଲେ ନାବ ରଖିବାରୁ ।
ଋଷ୍ୟଶୃଙ୍ଗ ଚିତ୍ର ପୁରୁଁ ହୋଇଲେ ବାହାର
ମୁଖ ପଖାଳିଲେ ବସି ନାବର ମଙ୍ଗର ।

ଝିନ ବସନରେ ମୁଖ ପୋଛିଲେ ମହାଋଷି
ଚରଣ ପଖାଳିଲେ ଆସିଣ ଯୁବତୀ ।
କୂଳକୁ ଋଷ୍ୟଶୃଙ୍ଗ ଓହ୍ଲାଇଲେ ପୁଣ
ସ୍ନାନ ଶୌଚ କଲେ ସେ ଠାବରେ ଜାଣ ।
ତର୍ପଣ ସନ୍ଧ୍ୟାସାରି ରାଜ୍ୟକୁ ଚାହିଁଲେ
ମେଲା ରାଜ୍ୟ ଦେଖିଣ କନ୍ୟାକୁ ପଚାରିଲେ ।
ବାରବନିତା ବୋଇଲେ ଶୁଣ ବ୍ରହ୍ମଚାରୀ
ଚମ୍ପାବତୀ ରାଜ୍ୟ ଏହୁ ଲୋମପାଦ ଦଣ୍ଡଧାରୀ ।
ବିପ୍ରଙ୍କ ଶାପରେ ଏ ରାଜ୍ୟ ଅପାଳକ
ବାର ବରଷ ହେଲା ନାହିଁ ଜଳଧାପ ।
ଚାରିଶତ ଯୁଣ ଯେ ଅଟଇ ରାଜ୍ୟ ପୁଣ
ଜଳଅନ୍ନ ନ ମିଳିବାରୁ ଛାଡ଼ିଗଲେ ପ୍ରଜାଗଣ ।
ସେଥିର ସକାଶେ ଆମ୍ଭେ ତୁମ୍ଭଙ୍କୁ ଗୁପ୍ତେ ଆଣି
ସୁଦୟା କର ଏବେ ମେଘ ବରଷୁ ପାଣି ।
ନାରୀଙ୍କର ବଚନ ଶୁଣିଣ ଋଷ୍ୟଶୃଙ୍ଗ
ବିଚାରି ଉପରକୁ ଚାହିଁଲେ ତପଇନ୍ଦ୍ର ।
ବୋଇଲେ ସୁରରାଜା ଏବେ ଦୋଷ ଗଲା
ବ୍ରାହ୍ମଣଙ୍କ ଶାପ ତ ଏବେ ସମ୍ପୂର୍ଣ୍ଣ ହୋଇଲା ।
ତୁମ୍ଭର କ୍ରୋଧ ଯେ, ହୋଇଲା ପରିପୂର୍ଣ୍ଣ
ମୁଁ ଏବେ ପ୍ରବେଶ ହୋଇଲି ଏହି ସ୍ଥାନ ।
ମୁହିଁ ଆସିଲା ବେଳରୁ ରାଜ୍ୟର ସୁଖହେଲା
ବରଷୁ ଏବେ ଜଳ ବଞ୍ଚନ୍ତୁ ଜୀବ ପରା ।
ଯେବେ ମୋହର ବୋଲ ନକରିବ ଦେବ
ତୁମ୍ଭଙ୍କୁ ଦେଲାବର ତୁମ୍ଭଙ୍କୁ ହେଉ ଭୋଗ ।
ରାଜ୍ୟଗୋଟି ସିନା ତୁମ୍ଭେ ଅପାଳକ କଲ
ନର ରାଜାର ନାହିଁ ତୁମ୍ଭପରେ ବଳ ।
ଅସୁର ହେଲେ ତୁମ୍ଭେ ଯେ, ପାଆନ୍ତ ଯାହାପୁଣ
ସେକଥାକୁ ବିଚାର ହେ ସହସ୍ରେ ଯୋନି ପୁଣ ।
ନୋହିଲେ ସ୍ୱର୍ଗପୁର ଆଜଠୁ ଗଲା ନାଶ
ଏହିକ୍ଷଣି ଶାପ ଦେବି ସ୍ୱର୍ଗହେବ ଭସ୍ମ ।
ଏତେ ବୋଲି ନବରେ ଯାଇଣ ବେଗେ ଉଠି
ଚିତ୍ରପୁର ଭିତରେ ମିଳିଲେ ବ୍ରହ୍ମଋଷି ।
ଅମଳାଣ ପିନ୍ଧିଲେ ଦେବଙ୍କୁ ପୂଜା କଲେ
ଅମୃତ ଯୋଗାଡ଼ ଆଣି ନାରୀମାନେ ଦେଲେ ।
ଭୋଜନ ସାରିଣ ଋଷି କଲେକ ଆଚମନ
ତାମ୍ବୁଳ ଭୁଞ୍ଜିଣ ତୋଷ କଲେ ମନ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ନାରୀଗଣେ ବେଶ ଯେ କଲେକ ବ୍ରହ୍ମଚାରୀ ।
ଚନ୍ଦନ ଅଗୁରୁ ନେଇଣ ଅଙ୍ଗେ ବୋଳି
ସର୍ବାଙ୍ଗେ ଅଳଙ୍କାର ଦେଲେ ସର୍ବନାରୀ ।
ନାନାବର୍ଣ୍ଣେ କୁସୁମ ପୁଷ୍ପରେ ବେଶକଲେ
ରତ୍ନ ପଲଙ୍କରେ ନେଇଣ ବସାଇଲେ ।
ଋଷ୍ୟଶୃଙ୍ଗ ବୋଇଲେ ବାରଣ ବେଗେ ଦିଅ
ଆସନ୍ତୁ ରାଜନ ଯେ ଘେନିଣ ସବୁ ପ୍ରିୟ ।
ଶୁଣିଣ ବନିତାମାନେ ବାହାରକୁ ଗଲେ
କୂଳେ ଥିବା ଚାରକୁ ବାରତା କହିଲେ ।
ବୋଇଲେ ଋଷ୍ୟଶୃଙ୍ଗ ହୋଇଲେ ପ୍ରବେଶ
ଦର୍ଶନ କରନ୍ତୁ ରାଜା ହୋଇଣ ହରଷ ।
ଶୁଣିଣ ଦୂତମାନେ ବେଗେ ଚଳିଗଲେ
ରାଜାର ପାଶେ ଯାଇ ପ୍ରବେଶ ହୋଇଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଦୁର୍ବାସା ଋଷି ଯାଇ ଇନ୍ଦ୍ରଙ୍କୁ କହନ୍ତି ।
ଚମ୍ପାବତୀ ରାଜ୍ୟକୁ ଅଇଲେ ଋଷ୍ୟଶୃଙ୍ଗ
ବୋଇଲେ ଏ ରାଜ୍ୟରେ ବରଷାକର ବେଗ ।
ନୋହିଲେ ସ୍ୱର୍ଗ ଆଜ ମୁଁ ଭଗ୍ନ କରିବି
ଏତେ ବୋଲି ଋଷି ଯେ ହୋଇଣ ଅଛିରାଗୀ ।
ଶୁଣିକରି ଇନ୍ଦ୍ର ରାଜାମେଘକୁ ଆଜ୍ଞାଦେଲେ
ଚମ୍ପାବତୀ ରାଜ୍ୟେ ବେଗେ ବରଷ ବୋଇଲେ ।
ଶୁଣିଣ ଚାରମେଘ ଯେ ବେଗେ ଚଳିଗଲେ
ସକଳ ମେଘମାନ ଲୋଡାଇ ଆଣିଲେ ।
ବୋଇଲେ ଚମ୍ପାବତୀ ରାଜ୍ୟକୁ ବେଗେଚାଲ
ଆଜ୍ଞାଦେଲେ ଇନ୍ଦ୍ର ଯେ ବରଷିବା ଜଳ ।
ଶୁଣିଣ ମେଘମାନେ ସମସ୍ତେ ଚଳିଗଲେ
ଚାରିଦିଗରୁ ମେଘ ଯେ ଆଚ୍ଛାଦିତ ପୁଣ କଲେ
ଗର୍ଜନ ନାଦ କରିଣ ଘୋଟିଲେ ରାଜ୍ୟକୁ
ମଧୁ ସମୁଦ୍ର ଜଳ ଆଣିଲେ ବର୍ଷିବାକୁ ।
ସେହି ରାଜ୍ୟ ପ୍ରଜାସବୁ ମନେ ବିଚାରିଲେ
ଆଜ ବଡ଼ ଆଶ୍ଚର୍ଯ୍ୟିତ ଦେଖାଗଲା ଭଲେ ।
ଚୌଦିଗେ ମେଘମାନେ ଘଡ଼ ଘଡ଼ି କରି
ବିଜୁଳି ମାରିଣ ଯେ କଳା ମେଘ ପୂରି ।
ନରନାରୀମାନେ ବସି କରନ୍ତି ବିଚାର
ନିଶ୍ଚୟ ଋଷ୍ୟଶୃଙ୍ଗ କି, ଆସିଲେ ଏପୁର ।

କେ ବୋଇଲା ରାଜା ଯେ, ଅପକ୍ଷରୀ ଭେଦି
ଯାଇଣ କନ୍ୟାମାନେ ଆଣିଲେ କି ବେଗି ।
କେ ବୋଲଇ ରାଜା ଯେ,ଆମ୍ଭର ରଖେ ପ୍ରାଣ
କେ ବୋଲନ୍ତି ଭଣ୍ଡାରୁ ଦେଲେ ଅନେକ ଧନ ।
କେ ବୋଲଇ ଚଣ୍ଡାଳ ଧାନ ସାଇତି ଥିଲା
ରାଜାର ଆଜ୍ଞା ପାଇ ସେହି ସେ ଧନ ଦେଲା ।
ଏମନ୍ତ ବିଚାର ଯେ କରନ୍ତି ନରନାରୀ
ବରଷିଲା ଜଳ ଯେ ଚଉଦିଗ ପୂରି ।
ନରନାରୀ ଆନନ୍ଦ ପ୍ରଜାଏ କୁଶଳ
ହରଷରେ ଉପରକୁ ଚାହାଁନ୍ତି ସକଳ ।
ବୋଲନ୍ତି କେତେ କାଳରେ ବରଷା ଦେଖିଲଇଁ
ଶରୀରକୁ ଶୀତଳ ଲାଗୁଛି ଗୋ ସହୀ ।
ଏମନ୍ତ ବିଚାର ଯେ, ରାଜାର ଲୋକେ କରି ।
ରାଜାର ଆଗେ ଯେ, ଚାର ଯାଇଁ ମିଳି ।
କରଯୋଡ଼ି ନୃପତିର ଆଗରେ ଜଣାଇ
ଶୁଣିମା ରାଜେଶ୍ୱର ସାବଧାନ ହୋଇ ।
ତୋର ରାଜ୍ୟେ ଋଷ୍ୟଶୃଙ୍ଗ ବିଜେ ଆସି କଲା
ନଦୀ କୂଳରେ ଚାପ ଯେ, ଆସିଣ ଲାଗିଲା ।
ବନିତାମାନଙ୍କୁ କହିଲେ ରାଜାଙ୍କୁ ଘେନିଆସ
ଉତ୍ସବ ଆନନ୍ଦରେ ଆସୁ ଯେ, ନରଈଶ ।
ବନିତାଏ ବୋଇଲେ ଆସନ୍ତୁ ମହୀପାଳ
ତାଙ୍କର ଆଜ୍ଞାରେ ମୁଁ ଅଇଲି ରାଜେଶ୍ୱର ।
ଶୁଣିଣ ଲୋମପାଦ ହରଷ ହୋଇଲେ
ମନ୍ତ୍ରୀଙ୍କୁ ଚାହିଁଣ ଯେ, ବେଗେ ଆଜ୍ଞାଦେଲେ ।
ବୋଇଲେ ଚତୁରଙ୍ଗ, ବଳ ବେଗେ ସଜକର
ରଥ, ହସ୍ତୀ, ପଦାତି, ଅଶ୍ୱ ଯେ ଆବର ।
ବାଜନ୍ତରିଆ, ନଟକାରୀ ଡାକୁଆ ଆବର
ଦ୍ୱିଜବର ନୃତ୍ୟକାରୀ ଅଣାଅ ସତ୍ୱର ।
ଖଡ଼ିରତ୍ନ ସାମନ୍ତ ଯେ, ଆବର ସେବକାରୀ
ଛତିଶା ନିଯୋଗ ସହିତେ ଆଣ ବରି ।
ଶୁଣିଣ ପାତ୍ର ମନ୍ତ୍ରୀ ବେଗେ ଚଳିଗଲେ
ଧେଣ୍ଡୁରା ପିଟାଇ ସୈନ୍ୟବଳ ସଜକଲେ ।
ଯେତେ କଥା ରାଜନ ଯେ ଆଜ୍ଞାଦେଲେ ପୁଣ
ସକଳ ସମ୍ପାଦି ଦେଲା ମନ୍ତ୍ରୀ ସେହୁ ପୁଣ ।
ରାଜାର ସିଂହଦ୍ୱାରେ ହେଲେ ସର୍ବେ ଜୁଣ୍ଡ
ଏମନ୍ତ ସମୟରେ ବରଷା କଲେ ମେଘ ।

ଚାରିଦିଗ ଆଚ୍ଛାଦିଣ ବରଷିଲା ପାଣି
ମୁଷଳ ଧାରା ପ୍ରମାଣେ ବରଷେ ନୀରଆଣି ।
ଦେଖିଣ ଜଳବୃଷ୍ଟି ରାଜନ ସୁଖୀ ହେଲେ
ବିପ୍ରଙ୍କ କହିବା କଥା ମନେ ସୁମରିଲେ ।
ଏମନ୍ତ ପାଞ୍ଚ ଘଡ଼ି ଯେ ବର୍ଷାକଲେ ଜଳ
ପୋଖରୀ, କୂପ, ବାମ୍ପୀ ନଦୀ ସରୋବର ।
ଗିରି ଘୋର କନ୍ଦର ପର୍ବତ ଲତା ବନ
ଗ୍ରାମ ଦେଶ ପାଟଣା କଟକ ପୁରମାନ ।
ସର୍ବଠାରେ ଜଳ ଯେ ଦିଶିଲାକ ପୁଣ
କେଉଁଠାରେ ପାହାଡ଼ରେ ଜଳ ଯେ ପଡ଼େ ଜାଣ
ଏମନ୍ତେ ଜଳବୃଷ୍ଟି ହେଲା ଯେ ଅନେକ ।

× × ×

ଏଥୁ ଅନନ୍ତରେ ଗୋ ଶାକମ୍ଭରୀ ଶୁଣ
ଋଷ୍ୟଶୃଙ୍ଗ ଆଗରେ ବାରବନିତା କହେ ପୁଣ ।
ବୋଇଲେ ଅନେକ ବୃଷ୍ଟି କଲେ ମେଘମାଳ
କିରୂପେ ଆସିବେ ଏଠାକୁ ସୈନ୍ୟବଳ ।
ବରଷା ରହିଲେ ସିନା ଆସିବେ ସକଳ
ଶୁଣିଣ ଋଷ୍ୟଶୃଙ୍ଗ ବୋଇଲେ ରହୁ ଜଳ ।
ସୁବର୍ଣ୍ଣ ବୃଷ୍ଟି କର ଘଡ଼ିଏ ପର୍ଯ୍ୟନ୍ତେ
ଦରିଦ୍ର ହୋଇଛନ୍ତି ଏହି ରାଜ୍ୟ ଲୋକେ ।
ଶୁଣିକରି ମେଘମାନେ ସୁବର୍ଣ୍ଣ ବୃଷ୍ଟିକଲେ
ଚମ୍ପାବତୀ ରାଜ୍ୟକୁ କୁଶଳ କରାଇଲେ ।
ଅମୃତ ବୃଷ୍ଟି ହେଲା ପୁଣ ସେ ରାଜ୍ୟର
ବାର ବର୍ଷ ଜଳ ପାଳି ନାହିଁ ସେଥିର ।
ଅମୃତ ପାଇ ଧରଣୀ ଶୀତଳ ହୋଇଲା
ବାର ବରଷର ଦୁଃଖ ଯେ କ୍ଷଣକେ ପାଶୋରିଲା ।
ରହିଲା ବୃଷ୍ଟି ଯେ ଋଷ୍ୟଶୃଙ୍ଗ ବୋଲେ
ସୁବର୍ଣ୍ଣ ସାଉଁଟି ନେଲେ ରାଜା ପରଜା ସକଳେ
ରାଜା ନବରେ ରାଣୀ ହଂସମାନେ ଦେଖି
ଦାସୀଙ୍କୁ ଲଗାଇ ସୁବର୍ଣ୍ଣ ସାଉଁଟି ।
ମେଘ ଭାଙ୍ଗିଗଲା ପୃଥ୍ୱୀ ଆଲୋକ ଦିଶିଲା
ଦେଖିଣ ରାଜନ୍ ଯେ ପ୍ରସନ୍ନ ମନ ହେଲା ।
ଚତୁରଙ୍ଗ ବଳକୁ ଯେ ବେଗେ ସଜକଲା
ସାମନ୍ତ ମନ୍ତ୍ରୀଙ୍କୁ ଚାହିଁଣ ଆଜ୍ଞା ଦେଲା ।
ବୋଇଲେ ସମସ୍ତେ ତୁମ୍ଭେ ଯାନରେ ବିଜେ କର
ଫୁଲ ମାଳମାନ ଋଷିଙ୍କ ପାଇଁ ସଜ କର ।

ବାଣ ଚନ୍ଦନ ଦିଗ ଅଣାଅ ବହନ
ଶୁଣିକରି ପାତ୍ର ମନ୍ତ୍ରୀ ଆସିଲେ ତୁରିତେଣ ।
ଆଗରେ ପଦାତି ଯେ ପଛରେ ରଥୀ ଗଲେ
ବାଜନ୍ତରୀଆମାନେ ମିଶି ବାଜଣା ବଜାଇଲେ ।
ହସ୍ତୀ, ଅଶ୍ୱ, ସାରେଣୀ ବୁଲିଲେ ମାଳ ମାଳ
ପ୍ରଜାମାନେ କୁଶଳେ ଧାମନ୍ତି ଆଗର ।
ହାଟୁଆ ବାଟୁଆ ଯେ ଦେଖିବା ପାଇଁ ଗଲେ
ସମସ୍ତେ ହର୍ଷରେ ନଦୀ କୂଳେ ଚଳେ ।
ପାତ୍ର ମନ୍ତ୍ରୀ ସାମନ୍ତ ଗଲେକ ଚଳି ପୁଣ
ତହିଁ ପଛେ ନଟକାରୀ ନୃତ୍ୟକରି ଜାଣ ।
ତହିଁପରେ ରାଜନ ବିଜୟେ ଯାଇ କଲେ
ନିଶାଣବାଜିବା ସଙ୍ଗେ ତେଲେଙ୍ଗି ବାଜେ ଭଲେ ।
କଳା ଛତି ଧଳା ଛତି ଆଢେଣୀ ପଙ୍ଖାମାନ
ଆଲଟ ଚାମର ପଙ୍ଖା ବିଞ୍ଚଣୀ ଆଗେଣ ।
ଧଳା କଳା ନୀଳ ଯେ ସୁବର୍ଣ୍ଣ ଚାରିବର୍ଣ୍ଣ
ପତନିରେ ରଥକୁ ମଣ୍ଡିଛି ଯତନ ।
ଉପରେ କଳସ ଯେ ସୁବର୍ଣ୍ଣ ଚିରାଳ
ଦର୍ପଣ ଝଲକରେ ଦିଶଇ ଆଲୋକ ।
ବାଖର ରଥରେ ଯେ ଯୋଚିଛି ବତ୍ରିଶ
ସାରଥୀ ହୋଇ ବସିଛି ମନ୍ତ୍ରୀର ଜ୍ୟେଷ୍ଠପୁତ୍ର ।
ଲୋମପାଦ ରାଜନ ଯେ ହୋଇଣ ବେଶ ତୋରା
ସ୍ୱର୍ଗରୁ ଇନ୍ଦ୍ର କିବା ମଞ୍ଚକୁ ଆସେ ପରା ।
ସିଂହାସନ ଉପରେ ବସିଣ ରାଜନ
ସାରଥୀକି ବୋଇଲେ ଚାଳ ହେ ବିମାନ ।
ଶୁଣିଣ ସାରଥୀ ଯେ ରଥ ବେଗେ ବାହି
ଚଳିଲାକ ରଥ ଯେ ଧୀର ଧୀର ହୋଇ ।
ସାତ ଯୂଣ ପରିଯନ୍ତେ ପୂରିଲେ ନଦୀ କୂଳେ ।
ଧେଣ୍ଡୁରା ଶବଦେ ଜାଣିଲେ ସର୍ବଜନ
ଆସୁଛନ୍ତି ଲୋକ ଯେ ହରଷ କରି ମନ ।
ଋଷିଙ୍କି ଦେଖିବାକୁ ସବୁରୀ ମନ ରସି
ଯେମନ୍ତେ କ୍ଷେତ୍ରରେ ନୀଳଗିରି ବାସୀ ।
ଯେ ଯେହ୍ନେ ଆଷାଢ଼େ ଗୁଣ୍ଡିଚା ଯାତ୍ରାକରି
ଚଉଦ ବ୍ରହ୍ମାଣ୍ଡ ଲୋକେ ସେଠାରେ ଥାନ୍ତି ଘେରି ।
କଳା ଧଳା ବେନି ମୁଖ ଚାହିଁ ନିସ୍ତରନ୍ତି
ବଡ଼ ଦାଣ୍ଡ ଗୋଟି ପୂରି ସମସ୍ତେ ଦେଖନ୍ତି ।
ଚମ୍ପାବତୀ ଦେଶ ରାଜ୍ୟ ନରନାରୀଗଣ
ସେହି ପ୍ରାୟେ ଋଷ୍ୟଶୃଙ୍ଗଙ୍କୁ ଘେରିଲେ ଯାଇଣ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଚିତ୍ରପୁର ଭିତରେ ସେ ଋଷି ବସିଛନ୍ତି ।
କରଯୋଡ଼ି ଆଗେ ଉଭା ବାର ଯେ ବନିତା
ପଚାରିଲେ ଋଷି ଯେ ଗହଳି କିସ କଥା ।
ଅପସରୀ ବୋଇଲେ ରାଜନ ବିଜେ କଲେ
ଚତୁରଙ୍ଗ ବଳ ଘେନି ଏଠାକୁ ଅଇଲେ ।
ଋଷ୍ୟଶୃଙ୍ଗ ବୋଇଲେ ଯେ କହ ରାଜନକୁ
ଆମ୍ଭେ ଯିବା କୂଳକୁ କି ସେ ଆସିବେ ନାବକୁ ।
ଶୁଣି ଅପସରୀ ନାବ ମଙ୍ଗରେ ଉଭା ହେଲେ
ବୋଇଲେ ନୃପତି ଆସ ଋଷି ଯେ ଆଜ୍ଞା ଦେଲେ ।
ରଥରୁ ଓହ୍ଲାଇ ନାବକୁ ବେଗେ ଆସ
ଦର୍ଶନ କର ଆସି ଯେ ବ୍ରହ୍ମଚାରୀ ପାଶ ।
ଶୁଣିଣ ରାଜନ ଯେ ରଥରୁ ଓହ୍ଲାଇଲା
ନାବ ଉପରେ ରାଜା ଯାଇଁ ବିଜେକଲା ।
ଦେଖିଲା ଋଷ୍ୟଶୃଙ୍ଗ ଯେ ବସିଛି ପଲଙ୍କରେ
ନମସ୍କାର କଲେ ରାଜା ଋଷିଙ୍କ ପୟରେ ।
ଋଷ୍ୟଶୃଙ୍ଗ ବୋଇଲେ ଶୁଣ ହେ ନୃପବର
କୁଶଳ ହେଲା ଟିକି ରାଜ୍ୟଇଁ ତୋହର ।
ଲୋମପାଦ ବୋଇଲା ତୁମ୍ଭର ପ୍ରସନ୍ନେ
ରାଜ୍ୟ ରକ୍ଷା ହେଲା ତୁମ୍ଭର ଦର୍ଶନେ ।
ଏବେ ଶୁଭକର ହେ ମୋହର ନବର
ତେବେ କୁଶଳ ହୋଇବ ସବୁ ଯେ ମୋହର ।
ଋଷ୍ୟଶୃଙ୍ଗ ବୋଇଲେ ଯେବେ ତୁମ୍ଭର ଭଲ
ଯିବା ତୁମ୍ଭ ପୁରକୁ ନିଶ୍ଚୟେ ନୃପବର ।
ଶୁଣିକରି ରାଜନ ହରଷ ହୋଇଲା
ଶତେବାର ପର୍ଯ୍ୟନ୍ତ ଓଳଗି ହୋଇଲା ।
ରାଜାର ଭକତି ଦେଖିଣ ଋଷ୍ୟଶୃଙ୍ଗ
ପଲଙ୍କ ଉପରୁ ଯେ, ଉଠିଲେକ ବେଗ ।
ନାବେର ମଙ୍ଗରେ ଯେ ଯାଇଣ ଛିଡ଼ାହେଲେ
ସକଳ ଜନେ ଯେ ଋଷ୍ୟଶୃଙ୍ଗଙ୍କୁ ଦେଖିଲେ ।
ସେ ଯେହ୍ନେ ପର୍ଶୁରାମ ରୂପ ବିରାଜଇ
ଧବଳ ରୂପ ତାର ଶରୀରେ ଶୃଙ୍ଗ ଦୁଇ ।

ରକ୍ତବର୍ଣ୍ଣ ନେତ୍ର ଯେ ଦିଶଇ ଶୋଭାବନ
ମୁଖ ବିକାଶଇ ଯେହ୍ନେ ପୂର୍ଣ୍ଣମୀର ଜହ୍ନ ।
ବାହୁଦ୍ୱୟ ତାହାର ବର୍ତ୍ତୁଳ, ବିସ୍ତାର
ସିଂହ କଟୀ ପ୍ରାୟ ଦିଶଇ ତାହାର ।
ଚରଣ ଦୁଇଗୋଟି ଚମ୍ପାକଢ଼ୀ ପ୍ରାୟ ଗୁଣ
ରମ୍ଭାର ବୃକ୍ଷ ପ୍ରାୟେ ଜାନୁ ଯେ, ଅଟେ ଜାଣ ।
ଅଳଙ୍କାର ଶୋଭା ଯେ, ଦିଶଇ ତା ଦେହକୁ
ଫୁଲ ଚନ୍ଦନ ବେଶ ଯେ, ମାନଇ ମୁନିଙ୍କୁ ।
ଦେଖିଣ ନରନାରୀ ହୋଇଲେ ତୋଷମନ
କେ ବୋଲେ ଦେବତା କେ ବୋଲେ ଋଷିପୁଣ ।
କେ ବୋଲେ ଏରୂପେ ପୁରୁଷ ନ ଦେଖି
କେ ବୋଲଇ ଏ ପୁରୁଷ ସବୁଦିନେ ସୁଖୀ ।
ଏମନ୍ତ ବୋଲି ଲୋକେ କରନ୍ତି ବିଚାର
ନାବରୁ ଓହ୍ଲାଇଲେ ବିଭାଣ୍ଡକ ବାଳ ।
ଚଉଦୋଳ ଉପରେ ଯାଇଣ ବିଜେକଲେ
ଦେଖିଣ ନାରୀମାନେ ହୁଳହୁଳି ଦେଲେ ।
ମଙ୍ଗଳ ନୃତ୍ୟକଲେ ନୃତ୍ୟକାରୀମାନେ
ବିଚାରି ବେଦ ଅଧ୍ୟୟନ କଲେକ ବିପ୍ରତେଣେ ।
ରାଜନ ଓହ୍ଲାଇଣ ବସିଲେ ରଥପରେ
ଆଲଟ ଚାମର ଯେ, ପଡ଼ଇ ଆଗରେ ।
ପଙ୍ଖା ଆଲଟ ଯେ ପକାନ୍ତି ସର୍ବଜନ
ଘୋର ଶବଦ ସେଠାରେ ହୋଇଲାକ ଜାଣ ।
ଆଗରେ ବାଜନ୍ତି ଯେ ପଛରେ ଶ୍ୱେତ ଛତ୍ରି ଟେକି
ଚଉଦୋଳ ଉପରେ ଋଷି ଚାଲିଯାନ୍ତି ।
ରଥ ଚଢ଼ି ଉପରେ ବିଜୟେ ନୃପତି
ପାତ୍ର ମନ୍ତ୍ରୀ ସେଥି ପଛେ ବିଜେକରି ଯାନ୍ତି ।
ହାତୀ, ରଥୀ, ପାଦାତି ସକଳେ ଚଳିଯାନ୍ତି ।
ନୃତ୍ୟକାରୀମାନେ ଆଗରେ ନୃତ୍ୟଯେ କରନ୍ତି ।
କଟକ ଭିତରେ ପ୍ରବେଶ ହେଲେ ଯାଇଁ
ଋଷିଙ୍କୁ ଦେଖି ଯୁବତୀଏ ମୋହ ହୋଇ ।
ଧୀରେ ଧୀରେ ଦାଣ୍ଡରେ ଚଳନ୍ତି ଋଷିପୁଣ
ରାଜସିଂହ ଦ୍ୱାରେ ପ୍ରବେଶ ବେଗେଣ ।
ଚଉଦୋଳରୁ ଓହ୍ଲାଇଣ ଭିତରକୁ ଗଲେ
ସାମନ୍ତ ପାତ୍ର ଋଷି ଯେ ସଙ୍ଗରେ ଚଳିଲେ ।
ରଥରୁ ଓହ୍ଲାଇ ରାଜାଚଳିଗଲେ ପୁଣ
ବାହାର ଜଗତିରେ ବିଜୟେ ଋଷି ଜାଣ ।

ପାତ୍ର ମନ୍ତ୍ରୀ ସାମନ୍ତ ରାଜନ ତହିଁ ମିଳି
ନିର୍ମଳ ପାଣିରେ ବାସ ପାଣି ବେଗେଭରି ।
ମୁଖ ପଖାଳିଣ ଋଷି ଚରଣ ଧୋଇଲେ
ଝୀନ ବସନ ନେଇଣ ଚରଣ ପୋଛି ଦେଲେ ।
ସୁବର୍ଣ୍ଣ ସିଂହାସନ ଉପରେ ନେଇଣ ବସାଇଲେ
ଛତ୍ର ଟେକାଇଣ ଆଗରେ ଚାମର ଢାଳିଲେ ।
କରଯୋଡ଼ି ସମସ୍ତେ ଆଗରେ ହେଲେ ଉଭା
ବେଢ଼ିଲେ ଯହୁଁ ଋଷିଙ୍କୁ ଋଷି ପାଇଲେ ଶୋଭା ।
ବାର ବନିତା ଋଷିଙ୍କ ଆଗରେ ଅଛନ୍ତି
ଋଷ୍ୟଶୃଙ୍ଗ ଦେଖିଣ ରାଜାଙ୍କୁ କହନ୍ତି ।
ବୋଇଲେ ରାଜନ ଯେ ବେଗେ ହୋଇ ଚଳ
ପାତ୍ର ମନ୍ତ୍ରୀ ସଙ୍ଗରେ ନିଅ ହେ ମହୀପାଳ ।
ଚତୁରଙ୍ଗ ବଳକୁ ମେଲାଣି ଯାଇଁ ଦିଅ
ଯେ ଯାହାର ସ୍ଥାନକୁ ଯାଆନ୍ତି ତୁମ୍ଭ ପ୍ରିୟ ।
ହଟାରି ବଜାରି, ନାଟକାରୀ ନୃତ୍ୟକାରୀ
ନରନାରୀ ଦେଖନ୍ତି ଲୋକ ଆଦିକରି ।
ସମସ୍ତଙ୍କୁ ମେଲାଣି ଦିଅ ହେ ରାଜନ
ଗହଳ ଭାଙ୍ଗୁ ଏବେ ଯାଆନ୍ତୁ ଯେଝା ସ୍ଥାନ ।
ସାମନ୍ତ ବିପ୍ରକର ମୋହର ପାଶେ ଥାନ୍ତୁ
ବାର ବନିତାଏ ଯେ ପୁରକୁ ଚଳିଯାନ୍ତୁ ।
ଶୁଣିଣ ରାଜନ ଯେ ବେଗେ ଚଳିଗଲେ
ପାତ୍ର ମନ୍ତ୍ରୀ ଦୁଇଜଣ ପଛରେ ଗୋଡ଼ାଇଲେ ।
ବାରବନିତାଏ ରାଜାର ପଛେଗଲେ ପୁଣ
ଯାଇଣ ସିଂହଦ୍ୱାରେ ମିଳିଲେ ରାଜନ ।
ଚତୁରଙ୍ଗ ବଳକୁ ବୋଇଲେ ଯାଅବେଗେ
ଋଷି ଆଜ୍ଞାଦେଲେ ହୋଇଣ ସଦ୍‌ଭାବେ ।
ଶୁଣିଣ ଚତୁରଙ୍ଗ ବଳ ସର୍ବେ ଚଳିଗଲେ
ଯେ ଯାହାର ନବରେ ପ୍ରବେଶ ଯାଇଁହେଲେ ।
ହସ୍ତୀ, ରଥୀ, ସାରେଣି, ବେଗେ ଚଳିଗଲେ
ଯେ ଯାହା ସ୍ଥାନରେ ନେଇ ତାହାଙ୍କୁ ରଖିଲେ ।
ନୃତ୍ୟକାରୀ ନାଟକାରୀ ଗଲେ ଯେଝା ଘର
ଭାଜିଲା ଗହଳ ଯେ, ରାଜାର ନବର ।
ସମସ୍ତେ ଯିବାରୁ ରାଜା ହରଷ ହୋଇଲେ
ବାର ବନିତାଙ୍କୁ ଯେ ଘେନିଣ ପଚାରିଲେ ।
ବୋଇଲେ ଜରତା କାମମୋହିନୀ କାହିଁଗଲେ
ତୁମ୍ଭେ ତ ଅଇଲ ସେ କିମ୍ପାଇ ନଇଲେ ।

ଶୁଣିବା ହେଉ ଦେବ ଯେ ଆମ୍ଭର ବଚନ
ଚାପରେ ଗଲୁ ଆମ୍ଭେ ଅଠତିରିଶ ଯୁଣ ।
ଛତ୍ରିଶ ଯୁଣ ଅଇଲୁ ଖସିଲେ ଦୁଇ ଜଣ
ରାଜନ ବୋଇଲେ ଯେ କେଣିକି ଗଲେ ପୁଣ ।
ନଟକାରୀ ବୋଇଲେ କୋଡ଼ିଏ ଦିନେ ଗଲୁ
ଏକୋଇଶ ଦିନେ ଋଷିଙ୍କୁ ଭେଟିଲୁ ।
ମୋହିନୀ ଲଗାଇ ଋଷିଙ୍କୁ ବସାଇ ନାବେଣ ।
ସୁରତି ଲୀଳା ଋଷିର ସଙ୍ଗତେ କରନ୍ତେ
ଜାଣିଲେ ବ୍ରହ୍ମଋଷି ସେକଥା ତୁରିତେ ।
ପାଞ୍ଚ ସାତ ଯୁଣ ଯେ ଆସିଥିଲୁ ଜାଣ
ସେ ଦୁଇ କନ୍ୟାଙ୍କୁ ଋଷି ଶାପଦେଲେ ଜାଣ ।
ବୋଇଲେଚୋରୀ ରତି ଯେ କରାଇଲେ ମୋତେ
କଉଶିକ ବନରେ ରହଗୋ ତୁରିତେ ।
ବେନିନାରୀବୋଇଲେ ଆମ୍ଭେ ଏଥୁଁ କେମନ୍ତଯିବୁ
ବନସ୍ତ ଭିତରେ କେତେକାଳ ଯେ ରହିବୁ ।
ଋଷି ବୋଇଲେ ତୁମ୍ଭେ ଏକବିଂଶ ଦିନ
ପିତାର ଭୁବନରେ ରହିବ ତୁମ୍ଭେ ପୁଣ ।
ସେଠାରେ ପୁତ୍ରଙ୍କୁ ଛାଡ଼ି ସ୍ୱର୍ଗପୁର ଯିବ
ଅଚିନ୍ତା ପୁରରେ ଯାଇ ନିଶ୍ଚିନ୍ତେ ବସିବ ।
ଜରତା ବୋଇଲା ଯେବେଅଇଲୁ ତୋର କାର୍ଯ୍ୟେ
ସେ କଥା ନିଷ୍ଫଳ ଯେ, ହେଉଣ ଅଛି ଏବେ ।
ବ୍ରହ୍ମଚାରୀ ବୋଇଲେ କିମ୍ପାଇ ଆସିଥିବ
ଦୁଇକନ୍ୟା ବୋଇଲେ ଶୁଣିମା ହେଉ ଦେବ ।
ଚମ୍ପାବତୀ ରାଜ୍ୟ ଯେ ଅପାଳକ ପୁଣ
ତୁମ୍ଭେ କହିଲେ ସେଠାରେ ଜଳବର୍ଷେ ଜାଣ ।
ସେ ରାଜାର ପୁତ୍ର ନାହିଁ ପୁତ୍ର ଦାନ ଦେବ
ତେବେ ସେ ରାଜ୍ୟଗୋଟି ନିଶ୍ଚଳେ ରହିବ ।
ଋଷ୍ୟଶୃଙ୍ଗ ବୋଇଲେ ଆମ୍ଭେ ଯାଉଛୁ ସେ ରାଜ୍ୟକୁ
ଜଳ ବରଷାଇ ପୁତ୍ର ଦେବୁ ସେ ରାଜାଙ୍କୁ ।
ଦୁଇକନ୍ୟା ବୋଇଲେ ଆମ୍ଭେ କେଣେ ଯିବୁ
ସ୍ତିରୀଜନ ଆମ୍ଭେ ସିନା ଭୟ ଯେ ପାଇବୁ ।
ବିଚାରି ଋଷି ବୋଇଲେ ଏହି ନାବପରେ ଯାଅ
ଯେଉଁଠାରେ ଆମ୍ଭେ ନାବ ଚଢ଼ିଲୁ ପ୍ରିୟ ।
ସେଠାରେ ଛାଡ଼ି ନାବ ଆସୁ ମଠ ପାଶ
ଶୁଣିଣ ଦୁଇନାରୀ ହୋଇଲେ ହରଷ ।

ସେଠାରେ କେରୁଆଳ ଛାଡ଼ିଣ ଅଇଲା
ସେହି ରଜନୀରେ ଆମ୍ଭ ପାଶରେ ମିଳିଲା ।
ସେଠାରୁ ଋଷିଙ୍କୁ ଘେନି ଆମ୍ଭେ ଅଇଲୁ ପୁଣ
ବାଇଶି ଦିନରେ ଆସି ମିଳିଲୁ ଏ ସ୍ଥାନ ।
ଶୁଣିଣ ଲୋମପାଦ ହୋଇଲେ ହରଷ
ଚାର ଭେଦିନେଲେ ତାଙ୍କ ମାତା ଘେନି ଆସ ।
ଶୁଣିକରି ଦୂତ ବେଗେ ଚଳିଗଲା ପୁଣ
ଦୁଆରୀଙ୍କ ହସ୍ତରେ ବାର୍ତ୍ତା ଦେଲେ ଜାଣ ।
ଦୁଇଅପସରୀ ଦୁଆରେ ଦୂତେ ହେଲେ ପ୍ରବେଶ
ବୋଇଲେ ରାଜନ ତୁମ୍ଭଙ୍କୁ ଲୋଡ଼ୁଛନ୍ତି ଆସ ।
ବାର୍ତ୍ତା କହି ଦୂତ ବେଗେ ସେ ଅଇଲେ
ରାଜାର ଆଗରେ ଆସି ପ୍ରବେଶ ହୋଇଲେ ।
କରଯୋଡ଼ି ରାଜାଙ୍କୁ କଲେ ଦରଶନ
ବୋଇଲେ ଅପସରୀ ଆସିବେ ଏହିକ୍ଷଣ ।
ତତ୍‌କ୍ଷଣେ ଅପସରୀ ମିଳେ ରାଜାପାଶ
ରାଜାଙ୍କୁ ଦେଖିଣ ସେ ହୋଇଲେ ହରଷ ।
ରାଜନ ବୋଇଲେ ତୁମ୍ଭେ ସାବଧାନେ ଶୁଣ ।

× × ×

ତୁମ୍ଭର ଦୁହିତା ଯେ ଗଲେ ଋଷି ଆଣି
ଋଷିଙ୍କୁ ଶୃଙ୍ଗାର ଦେଲେ ତୁମ୍ଭ ଦୁହିତା ପୁଣି ।
ତାହା ଜାଣି ଋଷି ଯେ ତାହାଙ୍କୁ ଶାପ ଦେଲେ
ମର୍ତ୍ତ୍ୟପୁର ତେଜି ସ୍ୱର୍ଗକୁ ସେହୁ ଗଲେ ।
ଶୁଣି ଦୁଇ ଅପସରୀ ହେଲେ ଶୋକଭର
ଶୁଣିଣ ରାଜା ଧଇର୍ଯ୍ୟ କଲେ ନାରୀବର ।
ବୋଇଲେ କିଛି ଚିନ୍ତା ନକର ମନର
ମୁହିଁ ଥିଲେ ସୁଖ ନାହିଁ କି ତୁମ୍ଭର ।
ଏତେବୋଲି ରାଜନ ଅଣାଇଲେ ଧନ
ଦୁଇ ସହସ୍ର ସୁନିଆଁ ଯେ ଦେଲେ ଦୁଇଜଣ ।
ଧନପାଇ ଦୁଇନାରୀ ନିଜସ୍ଥାନ ଗଲେ
ଆପଣା ମନ୍ଦିରରେ ଅପସରୀଏ ରହିଲେ ।
ଏଥୁ ଅନନ୍ତରେ ରାଜା ଡକାଏ ପୁଣ ଦୁତ
ବୋଇଲେ ଅଯୋଧ୍ୟାକୁ ଯାଅରେ ତୁରିତ ।
ଶତଯୁଣ ବେଗେ ଚଳିଯାଅ
ଦଶରଥ ନୃପତି ଆଗରେ ଯାଇଁ କହ ।
ବୋଲିବ ବିଭାଣ୍ଡକ ଋଷ୍ୟଶୃଙ୍ଗ ସୁତ
ଚମ୍ପାବତୀ ରାଜ୍ୟକୁ ଅଇଲେ ଏବେ ନାଥ ।

ଆସିବାରୁ ମଇତ୍ର ଆମ୍ଭଙ୍କୁ ଭେଦିଦେଲେ
ବୋଇଲେ ମଇତ୍ରଙ୍କୁ ଯାଇ କହ ଭଲେ ।
ପାତ୍ର ମନ୍ତ୍ରୀ ସାମନ୍ତ ବଶିଷ୍ଠ ସଙ୍ଗେ ଘେନି
ଚତୁରଙ୍ଗ ବଳ ରାଣୀହଂସଙ୍କୁ ଘେନି ପୁଣି ।
ଆସନ୍ତୁ ନୃପତି ଯେ ହରଷ ମନରେ
ସାଆନ୍ତାଙ୍କୁ ବିଭାଦେବେ ଏ ଋଷ୍ୟଶୃଙ୍ଗରେ ।
ଶୁଣିଣ ଦୂତମାନେ ବେଗେ ଚଳିଗଲେ
ଦୂତପେଷି ରାଜନ ଯେ ସେଠାରୁ ଚଳିଲେ ।
ଭିତର ପୁରେ ଯାଇଣ ହେଲେ ପ୍ରବେଶତ
ସୁବର୍ଣ୍ଣପୁର ଗୋଟା କଲେ ଉଜ୍ଜ୍ୱଳିତ ।
କନକ ମଣ୍ଡପରେ ରତ୍ନସିଂହାସନରେ ଦେବତା
ବସାଇ ଉଜ୍ଜ୍ୱଳ କଲେ ଲୋମପାଦ ସାମରଥା ।
ଲକ୍ଷ୍ମୀ ନାରାୟଣ ଯେ ଶିବ ଦୁର୍ଗା ପୁଣ
ଶାଳଗ୍ରାମ ଶିଳା ଯେ ରଖିଣ ସଙ୍ଗେ ପୁଣ ।
ବିପ୍ରଗଣ ଡକାଇଣ ତାଙ୍କୁ ସେବାକରି
ସର୍ବାଙ୍ଗ ଅଳଙ୍କାର ତାଙ୍କୁ ସେ ବେଶକରି ।
ଚାରୁ ଗନ୍ଧ ଚନ୍ଦନ ଅଗୁରୁ କସ୍ତୁରୀ ।
ସେ ମନ୍ଦିର ଭିତରେ ଲେପିଲେ ଯତ୍ନକରି
ସେ ଦେବତାଙ୍କ ଅଙ୍ଗରେ ବୋଳିଲେ ଚନ୍ଦନପୁଣ
ଗନ୍ଧ ପ୍ରକଟିଲା ଯେ ଆମୋଦ ବାସ ପୁଣ ।
ଅମଳାଣ ଶାଢୀ ଯେ ଦେବଙ୍କୁ ପିନ୍ଧାଇଲେ
ପଞ୍ଚବର୍ଣ୍ଣ ଫୁଲରେ ତାହାଙ୍କୁ ବେଶ କଲେ ।
ସୁବର୍ଣ୍ଣ ଦୁଇ ଝରିରେ ଗଙ୍ଗା ଜଳ ଭରି
ସିଂହାସନ ଉପରେ ରଖାଏ ଯତ୍ନକରି ।
ଆଳତି ଧୂପ କାଠି ପୂଜାର ସେ ବିଧି
ସକଳ ସମ୍ଭାଦିନେଇ ସେଠାରେ ନୃପନିଧି ।
ଦେବଆଳ ଯତ୍ନକରି ସେଠାରୁ ଚଳିଗଲେ ।
ଋଷ୍ୟଶୃଙ୍ଗଙ୍କ ନିମନ୍ତେ ଯେ ପୁରେକ ରଚିଲେ
ଉପରେ ସୁବର୍ଣ୍ଣ ଚାଳ କାନ୍ଥ ରତ୍ନମୟେ
ଭିତରେ ଚାରୁ ଗନ୍ଧ ଲିପନ୍ତେ ରଜ ହୁଏ ।
ଗଜଦନ୍ତ ପଲଙ୍କ ରତ୍ନରେ ଦୋଳି ପୁଣ
ଅଷ୍ଟରତ୍ନ ସିଂହାସନ କଲେ ତତ୍‌କ୍ଷଣ ।
ଦଣ୍ଡ କମଣ୍ଡଳ ଯେ ଋଷିଙ୍କର ଲୋଡ଼ା ଯେତେ
ସେ ଘରେ ସମସ୍ତେ ଯେ ରଖିଲେ ତ୍ୱରିତେ ।
ବାହାରେ ଜଗତୀକୁ ଆସିଣ ସଜ କଲେ
ରତ୍ନ ସିଂହାସନ ଯେ ସେଥିରେ ରଖି ଭଲେ ।
ଗନ୍ଧ ଚନ୍ଦନରେ ସୁବାସ ସେହି ସ୍ଥାନ
ସେମାନେ ସଜ କରି ଆସିଲେ ରାଜନ ।
ଋଷ୍ୟଶୃଙ୍ଗ ଆଗରେ ଯାଇଣ ମିଳିଲେ
କରଯୋଡ଼ି ରାଜନ ଦର୍ଶନ ଯାଇଁ କଲେ ।
ଋଷ୍ୟଶୃଙ୍ଗ ବୋଇଲେ ଶୁଣ ହେ ମହୀପାଳ
ତୁମ୍ଭର ପୁରୋହିତଙ୍କୁ ଡକାଅ ସତ୍ୱର ।
ଶୁଣିଣ ରାଜନ ଯେ ପାତ୍ର ମନ୍ତ୍ରୀଙ୍କୁ କହି
ଶାଳେକ ଋଷିଙ୍କୁ ମୋର ଘେନି ଆସ ଯାଇଁ ।
ଶୁଣିଣ ପାତ୍ର ମନ୍ତ୍ରୀ ବେଗେ ଚଳିଗଲେ
ରକ୍ତବର୍ଣ୍ଣ ଗିରିର ତଳରେ ମିଳିଲେ ।
ଦେଖିଲେ ଶାଳେକ ମୁନି କରନ୍ତି ତର୍ପଣ
ସନ୍ଧ୍ୟାସାରିଣ ଋଷି ଶୌଚ ହେଲେ ପୁଣ ।
ପୂଜାବିଧି ସାରିଣ ଅର୍ଘ୍ୟ ପୁଣି ଦେଲେ
ସକଳ ଦେବତାଙ୍କୁ ନମସ୍କାର କଲେ ।
କି କାର୍ଯ୍ୟ ମୋ ପୁରେ ଆଜ ତୁମ୍ଭେ ଆସ
ରାଜାଙ୍କୁ ଆମ୍ଭେ ଆଜ ହୋଇବୁ ଲୋଡ଼ାକିସ ।
ଆଜତ ଜଳ ବୃଷ୍ଟି ବହୁତ ଇନ୍ଦ୍ର କଲା
ନିରପେକ୍ଷ ପୁରୁଷ ଏପୁରୁ ଆଜ ଗଲା ।
ସେ ପୁରୁଷ ଆସିକରି ପ୍ରବେଶ ହୋଇଲା

× × ×

ରାଜାର ଦଶା ଏବେ ଲେଉଟିଲା ପୁଣ
ରାଜ୍ୟହିଁ ସୁସ୍ଥ ହେବ ସନ୍ତାନ ହେବ ଜାଣ ।
ଋଷ୍ୟଶୃଙ୍ଗ ଅଇଲେ କି ଏ ରାଜ୍ୟକୁ ପୁଣ
ଜଳବୃଷ୍ଟି ହେବାରୁ ହେଉଛି ପ୍ରତେ ଜାଣ ।
ପାତ୍ର ମନ୍ତ୍ରୀ ବୋଇଲେ ଶୁଣିଣ ବ୍ରହ୍ମଚାରୀ
ଚାର ଭେଦିଦେଲେ ଯେ ରାଜନ ଆମ୍ଭରି ।
ବାର ଅପସରୀ ଯେ ନାବେ ଚଳିଗଲେ
ବିଭାଣ୍ଡକ କୁମରଙ୍କୁ ଯାଇଁଣ ଆଣିଲେ ।
ସେ ଋଷି ଆସିବାରୁ ବରଷିଲା ଜଳ
ତାହାଙ୍କ ସକାଶରୁ ଏ ରାଜ୍ୟ ଉଜ୍ଜ୍ୱଳ ।
ସେ ଋଷିଙ୍କୁ ରାଜା ଯେ ଘେନିଣ ଆସି ପୁଣ
ରାଜାର ନବରେ ଅଛନ୍ତି ଋଷି ଜାଣ ।
ଋଷ୍ୟଶୃଙ୍ଗ ରାଜାଙ୍କୁ ଚାହିଁଣ ବୋଇଲେ ।
ତୁମ୍ଭର କୁଳ ଋଷି ଆଣ ଯା ସତ୍ୱରେ ।
ଶୁଣିଣ ରାଜନ ଯେ ଆମ୍ଭଙ୍କୁ ପେଷିଦେଲେ
ଆମ୍ଭର ମୁନିବରଙ୍କୁ ଆଣ ଯେ ବୋଇଲେ ।

ଏବେ ତୁମ୍ଭେ ବ୍ରହ୍ମଚାରୀ ବିଜୟେ ବେଗ କର
ଶୁଣି ଶାଳେଣ ଋଷି ମନକୁ କଲେ ସ୍ଥିର ।
ବୋଇଲେ ଋଷ୍ୟଶୃଙ୍ଗର ଯଶ ଏବେ ହେଲା
ନିରଞ୍ଜନ ପୁରୁଷ ବିଭାଣ୍ଡକର ବଳା ।
ଋଷିକୁଳେ ଋଷ୍ୟଶୃଙ୍ଗ ରାଜାକୁଳେ ଧ୍ରୁବ
ନରକୁଳେ ଗୋଲଖ ଅସୁରକୁଳେ ବଳିଭାବ ।
ଅଳ୍ପଦିନେ ଏହାଙ୍କୁ ଯେ ସାହା ବାସୁଦେବ
ଆମ୍ଭଠାରୁ ଜାତ ହୋଇ ଆମ୍ଭଙ୍କୁ ଅସମ୍ଭବ ।
ଯାହାର ବଚନରେ ପାଳଇ ଦେବଇନ୍ଦ୍ର
ବ୍ରହ୍ମା ଯାହାର ବଚନେ କରନ୍ତି ଶୁଭାଶୁଭ ।
ବାସୁଦେବ ଯାହାର ବେଦକୁ ମାନେ ପୁଣ
ଧନ୍ୟ ତାଙ୍କୁ ବୋଇଲେ ଦେବତାଗଣେ ଜାଣ ।
ଦେବକାର୍ଯ୍ୟେ ପର୍ଶୁରାମ କଲା ଯେ ସମରେ
ଆପେ ନିରଞ୍ଜନ ଶରୀରେ ବିଜେ କଲେ ।
କ୍ରୋଧରେ ଦେବତାଙ୍କର ରିପୁ ଭାର୍ଗି ପୁଣ
ତିନିପୁର ଦୁଷ୍ଟଙ୍କୁ କଲେ ଯେ ନିବାରଣ ।
ଏବେ ବାସୁଦେବ ଯେ ଋଷ୍ୟଶୃଙ୍ଗରେ ମାୟା
ବାର ବରଷ ତପରେ ହେଲେ ବ୍ରହ୍ମଦେହା ।
କାମଧେନୁ ଜାଣିଣ ଦେଲେକ ବେଦବର
ସେ ଋଷି ଏବେ ଅଇଲେ ଚମ୍ପାବତୀ ପୁର ।
ରାଜାର ମଙ୍ଗଳ ଯେ ରାଜ୍ୟର ଶୁଭ କଥା ।

× × ×

ରାଜାର ସନ୍ତାନ ସେ କରାଇବେ ସେହି
ଦଶରଥ କୁମାରୀକୁ ବିଭା ଯେ ହୋଇବଇଁ ।
ଦଶରଥ କୋଳେ ପୁଣି ଶ୍ରୀହରି ହେଲେ ଜାତ
ତେବେ ଯେ ଅସୁର ଯେ ହୋଇବେ ନିପାତ ।
କୁମର ଦଶରଥକୁ ଦେଲେ ପୁତ୍ର ଦାନ
ପୁରାଣରେ ତାର କଥା ରହିବ ଯେ ଜାଣ ।
ଏତେବୋଲି ମୁନିବର ତପ ସ୍ଥାନରୁ ଉଠି
ଚଉଦୋଳ ଉପରେ ବିଜୟେ କଲେ ଧାଡି ।
ପାତ୍ର ମନ୍ତ୍ରୀ ପଛରେ ଯାନେ ଚଢ଼ିଗଲେ
ଲୋମପାଦ ସିଂହଦ୍ୱାରେ ପ୍ରବେଶ ଯାଇ ହେଲେ ।
ଯାନ ଉପରୁ ଓହ୍ଲାଇଣ ଋଷି ଭିତରକୁ ଗଲେ
ଋଷ୍ୟଶୃଙ୍ଗ ଥିବା ସ୍ଥାନେ ପ୍ରବେଶ ଯାଇଁ ହେଲେ ।
ଦେଖିଣ ବିଭାଣ୍ଡକ କୁମର ବେଗେ ଉଠି
ଶାଳକ ଋଷି ଚରଣେ ବିନତି ଭାବେ ଖଟି ।

ଶାଳଙ୍କେ ବୋଇଲେ ମଙ୍ଗଳ ହୋଇବ ତୋର
ଏ ରାଜ୍ୟ ରକ୍ଷା କଲୁ ଆସିରେ କୁମର ।
ଲୋମପାଦ ରାଜାକୁ ସନ୍ତାନ ଏବେ ଦିଅ
କାଳ ଯୁଗକୁ କଥା ରୁହାଅରେ ପୁଅ ।
ଋଷ୍ୟଶୃଙ୍ଗ ବୋଇଲେ ପିତା ତୁମ୍ଭର ସନ୍ତୋଷରେ
ଶତେକ ପୁତ୍ର ହେବ ଏ ରାଜାର କୋଳରେ ।
ଶୁଣିଣ ସମସ୍ତେ ଯେ ହରଷ ମନ ହେଲେ
ବେନି ଋଷି ଚରଣେ ସମସ୍ତେ ନମିଲେ ।
ଶତେବାର ପର୍ଯ୍ୟନ୍ତେ ଲୋମପାଦ ଯେ ପୁଣ
ବେନି ଋଷି ଚରଣେ କଲେ ମାନ୍ୟଧର୍ମ ।
ଶାଳେକ ଋଷି ବୋଇଲେ ରାଜନ ଏବେ ଶୁଣ
ତୋର ରାଜ୍ୟେ ସଦାବର୍ତ୍ତ ଦିଅ ସର୍ବସ୍ଥାନ ।
ଦୁଃଖୀ ଦରିଦ୍ରଙ୍କୁ ତୁହି ଦିଅ ଅନ୍ନ ବସ୍ତ୍ର
ବ୍ରାହ୍ମଣମାନଙ୍କୁ ଭୋଜନେ କର ତୋଷ ।
ବନ୍ଧୁଗଣ ରାଜାଗଣ ଅଣାଅ ଏହି ସ୍ଥାନ
ଉତ୍ସବ କରାଅ ରାଜ୍ୟରେ ତୋର ପୁଣ ।
ରାଜାମାନଙ୍କ ପାଇଁ ନବର ବେଗେ କର
ପାତ୍ର ମନ୍ତ୍ରୀ ରହିବାକୁ ଉଆସ ଘରତୋଳ ।
ମୁନିମାନେ ରହିବାକୁ କର ଉଚ୍ଚସ୍ଥାନ
ଯାଗର ପଦାର୍ଥ ଏବେ ଭିଆଅ ବହନ ।
ତେବେ ତୋର ପୁତ୍ର ହୋଇବ ପୁଣି ଜାତ
ତୋ ଯାଗେ ଆଚାର୍ଯ୍ୟ ହେବେ ବିଭାଣ୍ଡକ ସୁତ ।
ଶୁଣି ଲୋମପାଦ ରାଜା ସନ୍ତୋଷ ହୋଇଲେ
ପାତ୍ର ମନ୍ତ୍ରୀଙ୍କୁ ଚାହିଁଣ ବେଗେ ଆଜ୍ଞାଦେଲେ ।
ବୋଇଲେ ଯେତେ କଥା ଋଷି ଆଜ୍ଞା କଲେ
ସେ କଥାକୁ ବହନ କର ଯାଇଣ ଭଲେ ।
ଶୁଣିଣ ପାତ୍ର ମନ୍ତ୍ରୀ ବେଗେ ଚଳିଗଲେ
ଚମ୍ପାବତୀ ରାଜ୍ୟରେ ସକଳ ସ୍ଥାନରେ ।
ସଦାବ୍ରତ ଦେଲେ ଯେ ବସାଇ ପରିଜନ
ଦାଣ୍ଡ ହାଟ ଯେ ସକଳ ସ୍ଥାନେ ପୁଣ ।
ଦୁଃଖୀ ଦରିଦ୍ରମାନଙ୍କୁ ଦେଲେ ଅନ୍ନବସ୍ତ୍ର
ଧେଣ୍ଡୁରା ଫେରାଇ ରାଜ୍ୟେ ଉତ୍ସବ ହରଷ ।
ସବୁ ଦ୍ୱାରେ ପୂର୍ଣ୍ଣ କୁମ୍ଭ ରମ୍ଭା ବୃକ୍ଷ ପୁଣ
ନାରିକେଳ ଚୂତପତ୍ର ଲମ୍ବାଇ ମାଳ ମାଳ ।
ଚିତ୍ର ବିଚିତ୍ର ସବୁରି ଦ୍ୱାରେ କରାଇଲେ
ଚିତ୍ରର ପିତୁଳି ସବୁ ଦ୍ୱାରର ଲିହିଲେ ।

ଅଲଗା ସ୍ଥାନରେ ମିଳିଲେ ଯାଇ ପୁଣ
ରଙ୍ଗବର୍ଣ୍ଣ ଗିରିଚଳେ ମିଳିଲେ ବହନ ।
ମଧୁବନ ତୋଟାକୁ ନିର୍ମଳ କରାଇଲେ
ସକଳ ଋଷି ସେଠାରେ ରହିବେ ଯତ୍ନରେ ।
ସେଠାରୁ ବଡ଼ ଦାଣ୍ଡରେ ହେଲେକ ପ୍ରବେଶ
ବିଶ୍ୱକର୍ମାକୁ ଡାକି କହିଲେ ସନ୍ଦେଶ ।
ଉଆସ ନବର ଯେ ଅନେକ ତୋଳାଇଲେ
ଚାରୁ ଗନ୍ଧ ଦେଇ ବିଚିତ୍ର କରାଇଲେ ।
ରାଜାର ଆଗରେ ଯାଇଁ ମିଳିଲେ ବହନ
ଓଳଗି ମେଲାଇଣ କହିଲେ ସବୁ ପୁଣ ।
ଶୁଣିଣ ରାଜନ ଯେ ହରଷ ହୋଇଲେ
ମୁନିଙ୍କର ଛାମୁରେ ଯାଇ ଜଣାଇଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ରାଜାଙ୍କୁ ଚାହିଁଣ ଋଷ୍ୟଶୃଙ୍ଗ ଯେ ବୋଲନ୍ତି ।
ଯେଉଁ ବାରବନିତା ଯେ ଅଣାଇଲେ ମୋତେ
ସେ ବାରବନିତା କେଣେ ଗଲେ ଯେ ବୁଲିତେ ।
ରାଜନ ବୋଇଲେ ତୁମ୍ଭର ପ୍ରସନ୍ନେ ।
ତାଙ୍କର ନବରକୁ ଗଲେ ଯେ ତତ୍‌କ୍ଷଣେ ।
ଋଷ୍ୟଶୃଙ୍ଗ ବୋଇଲେ ଅଣାଅ ତାହାଙ୍କୁ
ସେ ସିନା ଆନନ୍ଦ କଲେ ତୁମ୍ଭର ପୁରକୁ ।
ଉତ୍ସବ ମଙ୍ଗଳ ତାଙ୍କୁ ନଗ୍ର ବୁଲାଇବ
ତୋଷକରି ତାହାଙ୍କୁ ଧନରତ୍ନ ଦେବ ।
ସେମାନେ ତୋଷ ହେଲେ ତୁମ୍ଭର ଅଟେ ଭଲ
ଏକଥାକୁ ବିଚାର କରହେ ମହୀପାଳ ।
ଶୁଣିକରି ରାଜନ ଯେ ବେଗେ ଦୂତ ପେଷି
ବର କନ୍ୟାଙ୍କୁ ଡାକି ଆଣିବ ତଡ଼ତି ।
ଶୁଣିଣ ଚାରମାନେ ବେଗେ ଚଳିଗଲେ
ବରକନ୍ୟାଙ୍କ ନବରେ ପ୍ରବେଶ ହୋଇଲେ ।
ବୋଇଲେ ରାଜନ ତୁମ୍ଭଙ୍କୁ ଲୋଡ଼ିକରି
ବେଗେ ଆସ ସୁନ୍ଦରୀ ହେଳା ଯେ ନକରି ।
ଶୁଣିଣ ବର କନ୍ୟା ବେଶ ବେଗେ ହେଲେ
ଚାରୁ ଗନ୍ଧ ଲଗାଇ କାଞ୍ଚୁଳା ବାନ୍ଧିଲେ ।
ଅଙ୍ଗରେ ଅଳଙ୍କାର ଲଗାଇଲେ ପୁଣ
ନୂପୁର ଝୁଣ୍ଟିଆ ବଳା ପାହୁଡ଼ ପାଦେଣ ।
ଦୁଇ ଗୋଡ଼ରେ ଅଳତା ପୁଣ ଲଗାଇଲେ
କଟିରେ କଟି ମେଖଳା ବାନ୍ଧି ସୁଖୀ ହେଲେ ।
ତାଡ଼ ଚୂଡ଼ି ବାହୁଟି ବିଦ ମୁଦି ପୁଣ
ଚାପ ସରି ପଦକ ଚନ୍ଦ୍ରହାରା ଜାଣ ।
ନାସାରେ ସିନ୍ଧୁଫଳ ସଙ୍ଗରେ ରତ୍ନ ଗୁଣା ।

× × ×

କାପ ମଲକଡ଼ୀ ଚନ୍ଦ୍ରଫାସିଆ କର୍ଣ୍ଣରେ
ଫରି ଫିରା ମୁଣ୍ଡା ଝୁଲାଇ ଦୁଇ କରେ ।
ଅଳକା ମଥାମଣି ଯୋଗରେ ବେଗେ ନେଲା
ଝରା କାଠି ଝୁମ୍ପା ତାର ସଙ୍ଗରେ ଖଞ୍ଜିଲା ।
ପଞ୍ଚବର୍ଣ୍ଣ ପୁଷ୍ପରେ ଭୂଷଣ ନାରୀବର
ନୟନରେ ଅଞ୍ଜନ କପାଳେ ସିନ୍ଦୂର ।
ଏ ନାରୀ ବେଶ ଯେ ହୋଇଲେ ଶୋଭିତା ।
ନିର୍ମଳ ଦର୍ପଣରେ ମୁହଁମାନ ଦେଖି
ଆପଣା ବେଶମାନଙ୍କୁ ଦେଖିହେଲେ ସୁଖୀ ।
ବିଡ଼ିଆ ଭୁଞ୍ଜିବା ସ୍ଥାନ ଧରିଣ ହସ୍ତରେ
ପାଦୁକା ଲଗାଇଲେ ଚରଣମାନଙ୍କରେ ।
ଅମୃତ ଯୋଗରେ ଯେ ହୋଇଲେ ବାହାର
ଧୀରେ ଧୀରେ ଦାଣ୍ଡରେ ଚଳନ୍ତି ସକଳ ।
ରାଜାର ନବରେ ଯାଇ ହେଲେ ପରବେଶ ।

× × ×

ବେନି ମୁନିଙ୍କୁ ଯାଇଣ ଦରଶନ କଲେ
ଓଳଗି ମେଲାଇଣ ଶିରରେ କର ଦେଲେ ।
ମୁନି ବୋଲେ ଆର ଜନ୍ମେ ପରମ ସୁଖୀ ହୁଅ
ସ୍ୱର୍ଗର ଅପସରୀ ସଙ୍ଗରେ ଦିନ ନିଅ ।
ଏ ଜନ୍ମେ ରାଜା ପ୍ରଜା କରାଇଲ ସୁଖୀ
ଶୁଣିଣ ଅପସରୀ ମନରେ ଭାବନ୍ତି ।
ଏଥୁ ଅନନ୍ତରେ ଶୁଣଗୋ ଶାକମ୍ଭରୀ
ଋଷିର ରାଜନ ଅଣାଏ ସେହୁ ନାରୀ ।
ଋଷି ବୋଇଲେ ଶୁଣ ହେ ରାଜନ
ଏମାନଙ୍କୁ ଯାନରେ ବସାଇ ବୁଲାଅ ନଗ୍ର ପୁଣ ।
ଶୁଣିଣ ରାଜନ ଯେ ମନ୍ତ୍ରୀଙ୍କୁ ଆଜ୍ଞାଦେଲେ
ଶ୍ୱେତହସ୍ତୀ ଉପରେ ବସାଇ ବୁଲାଇଲେ ।
ସେଥିପରେ ବିଚିତ୍ର ଅମରି ଟଣାହେବ
ବାର ବନିତାଙ୍କୁ ସେଥିରେ ବସାଇବ ।
ଶୁଣିଣ ପାତ୍ର ମନ୍ତ୍ରୀ ବେଗେ ଚଳିଗଲେ
ଶ୍ୱେତ ହସ୍ତୀ ଉପରେ ଅମରି କରାଇଲେ ।

ସିଂହଦ୍ୱାରେ ହସ୍ତୀକି ରଖାଇଲେ ଆଣି
ରାଜାଙ୍କୁ କହିବାର ବନିତା ନେଲେ ପୁଣି ।
ହସ୍ତୀମାନଙ୍କ ଉପରେ ବସାଇଲେ ନେଇ
ନାରୀମାନେ ବସିଲେ ଅମରିରେ ଯାଇଁ ।
ନଗ୍ର ଭିତରେ ସେ କରନ୍ତି ଗମନ
ଆଗରେ ଦୁନ୍ଦୁଭି ଶବଦ ଗରୁଟାଣ ।
ଦେଶାଉର ଆଗରେ ଡାକ ଦିଏ ପୁଣି
ନାଗରା ଶବ୍ଦେ ଯେ ନର ନାରୀ ଜାଣି ।
ବୋଇଲେ ଅପଛରୀ ଏ ରାଜ୍ୟକୁ ଭଲ
ଏମାନଙ୍କ ସକାଶେ ଯେ ସମସ୍ତେ ଭଲ ।
ଶୁଣି ନଗ୍ରଲୋକ ହରଷ ହୋଇଲେ
ଶୁଭ ନାରୀମାନେ ଯେ ହୁଳହୁଳି ଦେଲେ ।
ଦେଖଣାହାରିମାନେ ଯେ ବୋଲନ୍ତି ଭଲ ଭଲ
ତୁମ୍ଭର ସକାଶେ ଆମ୍ଭେ ହୋଇଲୁ ଶୀତଳ ।
ନରନାରୀମାନେ ଯେ ଏମନ୍ତ ତାଙ୍କୁ କହି
ଦେଖିବାର ନିମନ୍ତେ ସଙ୍ଗରେ ଗୋଡାଇ ।
ବଡ଼ ଦାଣ୍ଡ ବୁଲି କନ୍ଦି ଯେ ବିକନ୍ଦି
ହାଟ ବାଟ ବୁଲିଣ ସର୍ବେ ହେଲେ ଧନ୍ଦି ।
ଆପଣାର ସାହିରେ ଚଳିଲେ ସତ୍ୱରେ
ନଟ ନାରୀମାନେ ଦେଖନ୍ତି ହରଷରେ ।
ହୁଳହୁଳି ଦେଇଣ ବନ୍ଦାପନା କଲେ
ବଡ଼ ଦାଣ୍ଡ ବୁଲି ରାଜା ସିଂହଦ୍ୱାରେ ହେଲେ ।
ନଟ ନାରୀମାନେ ବିଚାରିଲେ ଆମ୍ଭେ ଭଲ ହେଲୁ
ଏ କନ୍ୟାଙ୍କ ଯୋଗୁ ସୁଖ ସମସ୍ତେ ଲଭିଲୁ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ହସ୍ତୀ ଉପରୁ ଓହ୍ଲାଇଲେ ବାର ଯେ ଯୁବତୀ ।
ରାଜାର ନବରକୁ ଚଳିଲେ ଧୀରେ ଧୀରେ
ସମସ୍ତେ ତାହାଙ୍କୁ ଯେ ସାଧୁ ସାଧୁ କଲେ ।
ମୁନିଙ୍କର ଛାମୁରେ ଓଳଗି ମେଲାଇଲେ
ଏଡ଼େ ଯଶ ଆମ୍ଭଙ୍କୁ ଦେଲେ ଯେ ବୋଇଲେ ।
ସେଠାରୁ ରାଜା ଆଗେ ହେଲେ ପରବେଶ
ଓଳଗି ମେଲାଇଣ ମନରେ ହରଷ ।
ରାଜନ ବୋଇଲେ କୁଶଳ କଲ ମୋତେ
ବିଭାଣ୍ଡକ କୁମରଙ୍କୁ ଦେଖାଇଲ ନେତ୍ରେ ।
ଏତେକହି ପାତ୍ର ମନ୍ତ୍ରୀ ଡାକିଲେ ରାଜନ
ବୋଇଲେ ଭଣ୍ଡାରରୁ ଅଣା ମୋର ଧନ ।
ଅମଳାଣ ଅଳଙ୍କାର ବେଶ ସବୁ ଆଣ
ଲଗାନ୍ତୁ ନାରୀମାନେ ସେ ପାଆନ୍ତୁ କାରଣ ।
ଶୁଣିଣ ପାତ୍ର ମନ୍ତ୍ରୀ ବେଗେ ଚଳିଗଲେ
ଭୂଷଣ ଅଳଙ୍କାର ଧନ ଯେ ଆଣିଲେ ।
ଜଣକେ ସହସ୍ର ସୁବର୍ଣ୍ଣ ଦେଲେ ଜାଣ
ବାର ବନିତା ତାଙ୍କୁ ଭୂଷଣ କଲେ ପୁଣ ।
ଯେତେ ତାଙ୍କ ସଙ୍ଗରେ ନଟକାରୀ ଥିଲେ
ଦଶ ସୁନିଆଁ ଲେଖାଏଁ ସମସ୍ତଙ୍କୁ ଦେଲେ ।
ଶାଢ଼ୀ ଅଳଙ୍କାର ଯେ କିଛି କିଛି ଦେଲେ
ସକଳ ନଟକାରୀ ସନ୍ତୋଷ ମନ ହେଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଅପସରୀମାନେ ଯାଇଁ ନିଯୋଗ ସେବାକରି ।
ମୁନିର ପାଶେ ବାର ବନିତା ରହିଲେ
ବୀଣା, ସିତାର ଧରିଣ ନୃତ୍ୟରଙ୍ଗ କଲେ ।
ମୁନିଙ୍କର ପାଶରେ ରହିଲେ ରାଜନ
ଭୋଜନ ସମୟରେ ରାତ୍ର ଦିନ ପୁଣ ।
ଭୋଜନ କରାନ୍ତି ପୁଣ ଅପୂର୍ବ ଦ୍ରବ୍ୟମାନ ।
ଚନ୍ଦନ କର୍ପୂର ଦେହଯାକ ବୋଳି
ମସ୍ତକରେ ଦୁଇ ଶୃଙ୍ଗ ବାର ଯେ ଆଗୁଳି ।
ଜାଇ, ଯୁଇ, ସେବତୀ ନାନା ପୁଷ୍ପ ପୁଣ
ଦୁଇ ଶୃଙ୍ଗେ ଗଭା ବାନ୍ଧି କରନ୍ତି ଭୂଷଣ ।
କଅଁଳା ପୁଅ ଋଷି ପନ୍ଦର ବୟସ
ଶୋଭାପଣେ ମଦନକୁ ନିନ୍ଦେ ତେଜୋବନ୍ତ ।
ସର୍ବାଙ୍ଗରେ ବେଶ ଯେ, ଚନ୍ଦନ ବେଶ ତୋରା
ଅମଳାଣ ବସନ ପରିହରଣ ତୋରା ।
ଏଥିରେ ସାତଦିନ ସେଠାରେ ବହିଗଲା
ଶାଳକ ଋଷି ନିଜ ମଢ଼ିଆକୁ ଗଲା ।
ଯାନପରେ ବସିଣ ଗଲେ ଯେ ମୁନିବର
ରାଜନକୁ ବୋଇଲେ ଶୁଣଗୋ ମହୀପାଳ ।
ଋଷିଙ୍କୁ ଭକତି ହୋଇ ବଚନ କହୁଥିବୁ
କୁଳ ନିର୍ମଳ ହେବ ଯଶକୁ ପାଇବୁ ।
ଯେତେବେଳେ ଇଚ୍ଛା ଯେ ହୋଇବ ତୋହର
ଆମ୍ଭଙ୍କୁ ଡକାଇବୁ କହିବୁ ବେଗର ।
ଏତେ କହି ମୁନି ଯେ ନିଜସ୍ଥାନେ ଗଲେ
ରୁଧିର ଗିରିତଳେ ଯାଇଣ ମିଳିଲେ ।

ନିଜ ଆଶ୍ରମକୁ ନିର୍ମଳ କରି ପୁଣ
ନିଶ୍ଚିନ୍ତରେ ଋଷି ଯେ କଲେ ଯୋଗଧ୍ୟାନ ।
ଋଷି ଯିବାରୁ ରାଜା ଭିତର ପୁର ଯାଇ
ଶତେକ ରାଣୀ ଆସି ଦର୍ଶନ କଲେ ତହିଁ ।
ଚରଣେ ଓଳଗିଲେ ଶତେକ ନାରୀଗଣ
କରଯୋଡ଼ି ଆଗେ ଯାଇ କହନ୍ତି ବଚନ ।
ବୋଇଲେ ଋଷିଙ୍କୁ ଦେଖନ୍ତୁ ଆମ୍ଭେ ପୁଣି
ଦର୍ଶନରେ ପାପ ଯେ, ହରନ୍ତୁ ଆମ୍ଭେ ଜାଣି
ରାଜନ ବୋଇଲେ ମୁଁ ତାଙ୍କୁ ଜଣାଇବି ।
ଆଜ୍ଞାକଲେ ଋଷି ମୁଁ ତୁମ୍ଭଙ୍କୁ ଘେନିଯିବି ।
ଶୁଣିକରି ରାଣୀ ହଂସ ଆନନ୍ଦ ହୋଇଲେ
ମୁକ୍ତି କରାଅ ବୋଲି ଆମ୍ଭଙ୍କୁ କହିଲେ ।
ସେଠାରୁ ରାଜନ ଯେ ଅଇଲେ ବେଗକରି
ମୁନିର ଛାମୁରେ ପ୍ରବେଶ ଦଣ୍ଡଧାରୀ ।
କରଯୋଡ଼ି ଆଗରେ ଯେ କହନ୍ତି ବଚନ
ରାଣୀହଂସ ଦେଖିବାକୁ କରୁଛନ୍ତି ମନ ।
ଋଷ୍ୟଶୃଙ୍ଗ ବୋଇଲେ ଅଣାଅ ତାହାଙ୍କୁ
ଯେବେ ତାଙ୍କ ମନ ହେଲା ଦେଖିବେ ଆମ୍ଭଙ୍କୁ ।
ଶୁଣିଣ ରାଜନ ଯେ ବେଗେ ଚଳିଗଲେ
ସକଳ ରାଣୀଙ୍କି ସେ ଡକାଇ କହିଲେ ।
ବୋଇଲେ ବେଶ ହୁଅ ଦେଖିବ ମୁନିଙ୍କି
ଅର୍ଘ୍ୟସ୍ଥାଳୀମାନେ ସଂଗତେ ନେବଟି ।
ଶତେ ଶତେ ସୁନିଆଁ ଶ୍ରୀ ଫଳ ଧରିଥିବ
ଋଷିର ଆଗେ ଥୋଇ ଦର୍ଶନ କରିବ ।
ଶୁଣିକରି ରାଣୀହଂସ ବେଗେ ସଜହେଲେ
ଦାସୀମାନେ ମିଳିଣ ବେଗେ ସଜ କରାଇଲେ ।
ନୂପୁର ପାହୁଡ଼ ଯେ ବଳା ଯେ ଝୁଣ୍ଟିଆ
ଚରଣରେ ଅଳତା ମୁଦି ଆଙ୍ଗୁଠିଆ ।
ରତ୍ନ ପାଦୁକା ଚରଣେ ଲଗାଇଲେ ପୁଣ
କଟୀରେ ମେଖଳା ସେ ଯେ ଲଗାଏ ବହନ ।
ବକ୍ଷସ୍ଥଳେ ରତ୍ନ କାଞ୍ଚୁଲା ଲଗାଇଲେ
ଚନ୍ଦ୍ରହ୍ୱାରା ପଦକ ମୋତି ମାଣିକ୍ୟ ତୁଳେ ।
ଗଳାରେ ଚାପସରି ହେମମୟ ପୁଣ
ଅନ୍ଧାରେ ଆଲୋକ ଯେ,ଦିଶନ୍ତି ନାରୀଗଣ ।
କାଠ ମଲ୍ଲିକଢ଼ି ଯେ, କର୍ଣ୍ଣରେ ଶୋଭାପାଏ
ଚନ୍ଦ୍ର ପାସିଆ ଫିରିଫିରା କର୍ଣ୍ଣରେ ଶୋଭାପାଏ ।

ନାସାରେ ସିନ୍ଧୁଫଳ କର୍ଣ୍ଣଗୁଣା ପୁଣ
ନୋଥର ଅରବିନ୍ଦ ଯେ, ଝଟକେ ଜ୍ୟୋତିଜାଣ ।
ଶିରପରେ ଅଳକା ମଥାମଣି ପୁଣି
ଯେସନେକ ଉଦୟ ହୁଅନ୍ତି ଦିନମଣି ।
କେଶ ସାମଳିଣ ଯେ, ବାନ୍ଧିଲେ ଜୁଡ଼ା ତହିଁ
ଅଷ୍ଟରତ୍ନେ ଝୁମ୍ପି ଝରାକାଠି ଅଛି ରହି ।
ବେଶକରି ଅମଳାଣ ପତନି ପିନ୍ଧାଇଲେ
ନୟନରେ ଅଞ୍ଜନ ନେଇ ରଞ୍ଜାଇଲେ ।
କପୋଳରେ ସିନ୍ଦୂର ସଙ୍ଗରେ କଳାଧଳା
ଦେଖି ତା ମୁନି ଜନେ ହୋଇବେ ସେ ଭୋଳା ।
ଶତେ ରାଣୀ ଶତେକ ସୁବର୍ଣ୍ଣ ଥାଳିରେ
ଶତେ ଶତେ ସୁବର୍ଣ୍ଣ ଯେ ପୂରାଇ ସେଥିରେ ।
ଶ୍ରୀଫଳଗୁଆ ଯେ ତଣ୍ଡୁଳ ରଖି ପୁଣ
ଧୂପକାଠି ଆରତୀ ରଖିଲେ ନେଇ ପୁଣ ।
ଦାସୀମାନେ ବେଶ ଯେ ହେଲେ ସେହିପରି
ରତ୍ନ ଚାଙ୍ଗୁଡ଼ାମାନ ଧରିଲେ ପରିବାରୀ ।
ବିଞ୍ଚଣୀ ଆଲଟ ପଙ୍ଖା ଖଦି ଯେ, ଦରପଣ
ଆଉ ଦାସୀମାନେ ଧରିଣ ହସ୍ତେ ଜାଣ ।
ଶତେକ ରାଣୀ ଯେ ଶତେକ ଚାମର ଧରି
ଧାଇଁ ପରିବାରି ଯେ ଦେଲେ ହୁଳହୁଳି ।
ଭିତରୁ ରାଣୀହଂସ ବାହାର ହୋଇଲେ
ରାଜନ ଆଗେ ଯାଇ ନବର ଶୋଧ କଲେ ।
ବାରବନିତା ଋଷି ରହିଲେ କେବଳ
ନବରୁ ସମସ୍ତେ ଯେ ହୋଇଲେ ବାହାର ।
ନିଅବକାଶ ବେଳେ ସକଳ ମହାଦେଈ
ମୁନିଙ୍କୁ ଦର୍ଶନ କଲେ ଯେ ଚାନ୍ଦମୁହିଁ ।
ରତ୍ନ ଚାଙ୍ଗୁଡ଼ାମାନ ଆଗରେ ଥୋଇଦେଲେ
ମଙ୍ଗଳ ଆଳତୀ ନେଇ ବନ୍ଦାପନା କଲେ ।
ଋଷି ଛାମୁରେ ନେଇ ଶ୍ରୀଫଳ ଥୋଇଲେ
ତଣ୍ଡୁଳ ଦୂବାକ୍ଷତ ନେଇଣ ଶିରେ ଦେଲେ ।
ବନ୍ଦାପନା ସାରିଣ ସକଳ ରାଣୀ ହଂସ
ଦେଖିଣ ମୁନିଙ୍କୁ ଯେ ମନରେ ହରଷ ।
ବିଚାରିଲେ ମୁନିଙ୍କୁ ମଦନ ସରି ନୁହେଁ
ବାସୁଦେବ କଳାରେ ଏହୁ ଜନ୍ମ ହୁଏ ।
ଏମନ୍ତ ବିଚାରି ଯେ ରାଣୀ ହଂସ ଗଣେ
ଋଷିଙ୍କ ଚରଣରେ ଓଳଗି ହୋଇଗଲେ ।

ଉଠିଣ କରଯୋଡ଼ି ଆଗରେ ହେଲେ ଛିଡ଼ା
ନୃପତି ସେଠାରେ ଯେ ପ୍ରତିହାରି ଘଡ଼ା ।
ସୁନାବେତ ଧରିଣ ଲୋମପାଦ ରାଏ
ରାଣୀହଂସ ମାନଙ୍କୁ ଯେ ଦର୍ଶନ କରାଏ ।
ଋଷ୍ୟଶୃଙ୍ଗ ବୋଇଲେ ଶୁଣ ହେ ମହୀପାଳ
ରାଣୀହଂସ ମଧରେ ବିଚିତ୍ର କଥା ତୋର ।
ସୁନା ଚାଙ୍ଗୁଡ଼ି ଧରି ଉଭା କି କାରଣେ ପୁଣ
ଲୋମପାଦ ବୋଇଲେ ବ୍ରହ୍ମଚାରୀ ଶୁଣ ।
ରାଣୀହଂସ ଯେଉଁଠାରେ କରନ୍ତି ଦର୍ଶନ
ସେହିଠାରେ ରାଜାମାନେ ପ୍ରତିହାରୀ ପୁଣ ।
ରାଣୀହଂସମାନଙ୍କୁ ରାଜା କରାନ୍ତି ଦର୍ଶନ
ଦେବତା ଋଷିଙ୍କୁ ଚିହ୍ନାଇ ଦ୍ୟନ୍ତି ପୁଣ ।
ଅଜାଣ ସୁଖୀ ଅଟନ୍ତି ରାଜା ନାରୀମାନେ
ଜନ୍ମରୁ ଦେଖା ଯହୁଁ ନଥାଏ ତାଙ୍କୁ ତେଣେ ।
ଏଣୁକରି ଥାଳ ଯେ ଧରିବା ପ୍ରମାଣ
ଶୁଣିକରି ସନ୍ତୋଷ ହୋଇଲେ ଋଷିଗଣ ।
ପଚାରିଲେ ଋଷ୍ୟଶୃଙ୍ଗ ଶୁଣ ମହୀପାଳ
ଏତେ ନାରୀରେ ପୁତ୍ର ନାହିଁକି ତୋହର ।
ଲୋମପାଦ ବୋଇଲେ ମୋ ଜୀବ ଅକାରଣ
ସାତ ସହସ୍ର ବର୍ଷ ହୋଇଲା ମୋତେ ପୁଣ ।
କୋଳରେ ନନ୍ଦନ ଯେ ନ ଦେଖିଲି ମୁହିଁ
ମୋର ବୟସ ଏହିଠାରୁ ସରୁଛି ଗୋସାଇଁ ।
ସକଳ ଦ୍ରବ୍ୟ ଅଛି ରାଜ୍ୟ ଯେ ବିସ୍ତାର
କେବଳ ପୁତ୍ର ନାହିଁ ଶୁଣ ମୁନିବର ।
ଋଷି ବୋଇଲେ ତୁମ୍ଭର କେତେ ରାଣୀସାର
କେତେ ରାଣୀ ସ୍ନେହକାରୀ ଅଟନ୍ତି ତୁମ୍ଭର ।
ଲୋମପାଦ ବୋଇଲେ ଦେବ ଶତେ ରାଣୀମୋର
ସମସ୍ତେ ସରଧାର ସ୍ନେହକାରୀ ମୋର ।
ଗଙ୍ଗା ଯମୁନା ଅଟନ୍ତି ଦୁହେଁ ବଡ଼ ରାଣୀ
ତାଙ୍କ ତଳେ କଳାବତୀ ନୀଳାବତୀ ପୁଣି ।
ସେ ରାଣୀଙ୍କ ତଳେ ସକଳ ରାଣୀ ମୋର
କରତୁମ୍ଭେ ବୋଇଲେ ଶତେକ ରାଣୀଙ୍କଠାରେ
ଶତେ ପୁତ୍ର ହେବେ ଯେ କହିଲୁଁ ତୋହରେ ।
ଶତେ ରାଣୀ କୋଳରେ ଧରିବେ ପୁତ୍ର ଜାଣ
ଏତେ ବୋଲି ବିଭୁତି ଦେଲେ ମୁନି ପୁଣ ।

ରାଜନ ବୋଇଲୁ ସକଳ ରାଣୀଙ୍କୁ ବାଣ୍ଟିଦିଅ
ଶୁଣିଣ ନୃପବର ହୋଇଲାକ ପ୍ରିୟ ।
ଶତେକ ରାଣୀଙ୍କୁ ଯେ ବିଭୁତି ବାଣ୍ଟି ଦେଲେ
କରଯୋଡ଼ି ରାଜନ ଆଗରେ ଉଭା ହେଲେ ।
ଶତେ ରାଣୀ ଧରିକରି ଢାଳିଲେ ଚାମର
ଦାସୀମାନେ ପଙ୍ଖା ଯେ, ଆଲଟ ଧରି କର ।
ବିଞ୍ଚଣୀ ଆଲଟ ଯେ, ବିଞ୍ଚନ୍ତି ସର୍ବନାରୀ
ରାଣୀମାନେ ହରଷରେ ବିଞ୍ଚନ୍ତି ଚାମରି ।
ସୁନା ବେତ ଧରି ରାଜା ସନ୍ତୋଷ ମନରେ
ଋଷି ବୋଇଲେ ଯାଆନ୍ତୁ ରାଣୀହଂସ ନିଜପୁରେ ।
ସୁକୁମାର ତନୁ ତାଙ୍କର ପାଉଛନ୍ତି ଦୁଃଖ
ଆଜଦିନଠାରୁ ତାଙ୍କର ଗଲା ଏବେ ଦୁଃଖ ।
ଲେଉଟ ଦଶମାସରେ ପୁତ୍ର କୋଳେ ହୋଇ
ତେବେ ରାଣୀମାନଙ୍କର ହରଷ ଉପୁଜଇ ।
ଶୁଣିକରି ରାଣୀମାନେ ଚରଣ ସେବିଲେ
ମଙ୍ଗଳ ବନ୍ଦାପନା କରିଣ ଲେଉଟିଲେ ।
ଅନ୍ତପୁର ମଧରେ ହେଲେ ପରବେଶ
ସକଳ ରାଣୀହଂସ ଯେ ମନରେ ହରଷ ।
ବିଚାରିଲେ ଋଷି ଏବେ ସୁଦୟାତ କଲେ
ଦାସୀମାନେ ଶୁଣିଣ ହରଷମନ ହେଲେ ।
ନିର୍ଦ୍ଧନୀ ଲୋକରେ ଧନ ଅନ୍ଧକୁ ଚକ୍ଷୁଦାନ
ଅପୁତ୍ରିକକୁ ପୁତ୍ରଦାନ ଦେବାରୁ ଋଷି ପୁଣ ।
ଆନନ୍ଦରେ ଉତ୍ସାହ ସକଳ ରାଣୀହଂସ
ବିଚାରିଲେ ଏତେକାଳ ସରିଲା ଏବେ କଷ୍ଟ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
ଦଶରଥ ନନ୍ଦିନୀ ଯେ ସାଆନ୍ତା ନାରୀପୁଣ ।
ଲୋମପାଦ ତାହାଙ୍କୁ ରଖିଛି ଘରେ ଆଣି
ସେ କିମ୍ପା ମୁନିଙ୍କୁ ନଗଲା ଦେଖି ପୁଣି ।
ଈଶ୍ୱର ବୋଇଲେ ଦେଖ ଗୋ ପ୍ରାଣସହୀ
ସାଆନ୍ତା କନ୍ୟା ଯେ ଅଟଇ ଅବିବାହୀ ।
ଆଗେ ନାରଦ ଯେ କହିଣ ଗଲେ ପୁଣ
ବିଚାର କରି ରାଜା ଯେ, କରଇ କାର୍ଯ୍ୟ ଜାଣ
ଜରତା କାମମୋହିନୀ କହିବାରୁ ମୁନିବର
ଗୁପତେ ଦେଲେ ରାଜା ଡରିଣ ମୁନିବର ।
ପଚାରିଲେ ଆଜ୍ଞାଦେଲେ ନେବ ଜାଣ କନ୍ୟା
ଋଷି ଶାପ ଦେବାକୁ ଡରଇ ନୃପସିନା ।

ପାର୍ବତୀ ବୋଇଲେ ଯେ କେମନ୍ତେ ହେବେଭେଟ
ଦେଖିଲେ ଋଷି ମନ ହୋଇବ ଉଚ୍ଚାଟ ।
ନାରଦ କହିଲା ଦିନରୁ ମନରେ ହରଷ
ତେଣୁ ଯୁବାସ୍ତିରୀ ପରା ଲଜ୍ଜାରେ ପାଏ ତ୍ରାସ ।
ଈଶ୍ୱର ବୋଇଲେ-ଶୁଣ ଗୋ ଶାକମ୍ଭରୀ
ରାଣୀହଂସ ଦେଖିଣ ଅଇଲେ ଯୁହଁ ଫେରି ।
ରାଣୀମାନଙ୍କୁ ଛାଡ଼ିଣ ଲେଉଟି ରାଜା ପରା
× × ×
ଯେତେବେଳେ ସାଆନ୍ତା ଯେ ହୋଇଲା ବାହାର
ପିତାଙ୍କର ଚରଣରେ ନମିଲେ ନାରୀବର ।
ସାଆନ୍ତା ବୋଇଲେ ତୁମ୍ଭେ ପିତାମହ ଶୁଣ
ଦର୍ଶନ କରନ୍ତି ମୁଁ ଯେ ଋଷିଙ୍କୁ ଯାଇଣ ।
ଲୋମପାଦ ବୋଇଲେ ତୁମ୍ଭେ ଶୁଣରେ କୁମାରୀ
ଦର୍ଶନ କରିବାକୁ ତୁ ଯେ ଅଟୁ ଯୋଗ୍ୟକାରୀ ।
ପଚାରିଣ ଦର୍ଶନ ମୁଁ କରାଇବି ନେଇ
ଶୁଣିକରି ସନ୍ତୋଷ ହୋଇଲେ ଚାନ୍ଦମୁହିଁ ।
ଅନ୍ତଃପୁର ରାଜନ ଯେ ବାହାର ହୋଇଗଲେ
ଋଷ୍ୟଶୃଙ୍ଗ ଆଗରେ ପ୍ରବେଶ ଯାଇ ହେଲେ ।
ଏଥୁ ଅନ୍ତରେ ଶୁଣ ଗୋ ଦିବ୍ୟରୀତି
ଲୋମପାଦ ରାଜା ଯେ ଜଣାଏ ଋଷିଙ୍କି ।
ଅଯୋଧ୍ୟା ରାଜନ ଯେ ଅଟନ୍ତି ଦଶରଥ
ସେହି ଅପୁତ୍ରିକ ଶୁଣହେ ବିଭାଣ୍ଡକ ସୁତ ।
ସେ ରାଜା ଯେ ମୈତ୍ର ମୋହର ଅଟେ ଜାଣ
ବନସ୍ତେ ଭେଟ ହୋଇଣ ହେଲୁ ପ୍ରୀତି ପୁଣ ।
ସେ ରାଜାର ସାତଶ ପଚାଶ ରାଣୀ ଅଟେ
କୈକୟା, କୌଶଲ୍ୟା, ସୁମିତ୍ରାଦି ଶ୍ରେଷ୍ଟେ ।
କୌଶଲ୍ୟା ଗର୍ଭରେ ଦୋହିତାଏ ଜାତ
ସେ ଦୋହିତାକୁ ରାଜନ ପାଳନ୍ତି ନିଶ୍ଚିନ୍ତ ।
ଏକଦିନେ ସେ ରାଜା ପୁରକୁ ମୁହିଁ ଗଲି
କୁଶଳ ପଚାରିଣ ସେଠାରେ ରହିଲି ।
ତାଙ୍କର କୁମାରୀ ଯେ ସାଆନ୍ତା ନାମେ ପୁଣ
ମୋତେ ଦେଖିବାକୁ ସେ ଯେ ଅଇଲେ ପୁଣ ।
ମାନ୍ୟ ଧର୍ମ କରିଣ ସେ ଅଇଲେ ଲେଉଟି
ଅଇଲାବେଳେ ମୁଁ ଯେ ରାଜାଙ୍କୁ କହିଲିଟି ।
ବୋଇଲି ମୋର ପୁତ୍ର ଦୋହିତା କେହି ନାହିଁ
ତୁମ୍ଭର ଦୋହିତାକୁ ମୋ ପୁରେ ନ୍ୟନ୍ତି ମୁହିଁ ।
ତୁମ୍ଭେ ଗଲେ ତୁମ୍ଭ ସଙ୍ଗରେ ଫେରି ଆସନ୍ତା
କହିବାରୁ ରାଜନ ମନରେ କଲେ ଚିନ୍ତା ।
ଭିତର ପୁରେ ଯାଇଁ ରାଣୀଙ୍କୁ କହିଲେ
ରାଣୀମାନେ ସନ୍ତୋଷରେ ଯାଉ ବୋଇଲେ ।
ମୋର ସଙ୍ଗେ ଦୋହିତାକୁ ସମର୍ପଣ ଦେଲେ
ସେ ଦୋହିତା ମୋହର ନବରେ ଅଛି ଭଲେ ।
ଆଜ୍ଞାଦେଲେ ଦର୍ଶନ କରିବ ସେ ଆସି
ଶୁଣିଣ ଋଷ୍ୟଶୃଙ୍ଗ ହରଷକଲେ ମତି ।
ବୋଇଲେ ସେ କନ୍ୟାକୁ କରାଅ ଦର୍ଶନ
ରାଣୀହଂସ ସଙ୍ଗରେ ନ ଆସେ କିମ୍ପା ପୁଣ ।
ଲୋମପାଦ ବୋଇଲେ ସେ ଅଟେ ଅବିବାହୀ
ଏଥିର ସକାଶେ ଯେ ନ ଆଣିଲି ମୁହିଁ ।
ଋଷ୍ୟଶୃଙ୍ଗ ବୋଇଲେ ବଡ଼ ଲୋକମାନେ
ପାତ୍ର, ଋଷି, ସାମନ୍ତ ବିଭା ଋଷି ଜନେ ।
ଦେବତା ନରପତି ପିତା ଯେ ଖୁଡୂତା
ଏମାନଙ୍କୁ ଦେଖିବାକୁ ମନରେ ସୋରତା ।
ଦେବତା ମୁନିବର ଦେବ ଯେ ବ୍ରାହ୍ମଣ
ଏମାନଙ୍କୁ ସେ କନ୍ୟା ମେଲାରେ ଦର୍ଶନ ।
ପାତ୍ର ମନ୍ତ୍ରୀ ସାମନ୍ତ ନୃପତି ଭଲଲୋକ
ଆଡ ଉହାଡେ ଏମାନଙ୍କୁ ଦେଖିବା ଉଚିତ ।
ଲୋମପାଦ ବୋଇଲେ ମୋହର ଚିତ୍ତେ ଭୟେ
ନ ପୁଣ ତୁମ୍ଭଠାରୁ କ୍ରୋଧ ଜାତ ହୁଏ ।
ଋଷ୍ୟଶୃଙ୍ଗ ବୋଇଲେ ଶୁଣହେ ରାଜନ
ଦର୍ଶନକଲା ଲୋକଙ୍କୁ କିମ୍ପା ହେବୁ ତାନ ।
ଭକ୍ତି ଭାବରେ ଆସିବେ ଯେଉଁ ଲୋକ
ସେମାନଙ୍କୁ କ୍ରୋଧ ହେଲେ ଦଇବ ବିପକ୍ଷ ।
ସାମନ୍ତ ହୋଇ ଯେବେ ସେବକଙ୍କୁ ଦଣ୍ଡ
ସେ କଥା ଭଲ ନୁହେଁ ଶୁଣହେ ନରେନ୍ଦ୍ର ।
ସେବକ ଦୋଷ କଲେ ସିନା ତାହାକୁ ନପାରି
ଅପ୍ରାଧ ହୋଇଲେ ଦଣ୍ଡ ଦିଅ ତ୍ରିପୁରାରୀ ।
ନମାନିଲେ ରାଜନ ଦଣ୍ଡ ହୁଏ ତାହାଠାରେ
ମାନ୍ୟଧର୍ମ ନ କଲେ ଅଲାଗି ତାକୁ ବୋଲେ ।
ଏବେ ଯାଇଁ ସେ କନ୍ୟାକୁ ଘେନି ଆସ ତୁହି
ଶୁଣିଣ ନୃପବର ଯେ ବେଗେ ଚଳିଯାଇ ।
ଅନ୍ତଃପୁର ଭିତରେ ଯାଇଣ ମିଳିଲା
ସକଳ ରାଣୀହଂସଙ୍କୁ ଡକାଇ ଆଣିଲା ।

ବୋଇଲେ ଦୋହିତା ଯେ କରିବ ଦର୍ଶନ
ଋଷିଙ୍କୁ କହିବାରୁ କହିଲେ ବେଗେ ଆଣ ।
ଶୁଣିକରି ରାଣୀମାନେ ହରଷ ହୋଇଲେ
ଦାସୀଙ୍କୁ ଆଜ୍ଞାଦେଲେ ବେଶକର ଭଲେ ।
ଶୁଣିକରି ଦାସୀମାନେ ଦୋହିତା ବେଶ କଲେ
ଅଳକା ମଥାମଣି ମଥାରେ ଖଞ୍ଜିଲେ ।
ହାର, ପଦକ, ଚାପସରି, ସିନ୍ଧୁଫଳ ପୁଣି
ରତ୍ନ ଗୁଣା ସଙ୍ଗେ ସକଳ ବେଶକୁ ନିର୍ମାଣି ।
ବେଶ ହୁଅନ୍ତେ କନ୍ୟା ଦୁର୍ଗାର ପ୍ରାୟ ଦିଶି
ତେଜରେ ଦିଶିବେ ଯେ ସକଳ ଚାରୁହଂସି ।
ଦେଖିଣ ସକଳ ନାରୀ ବିଚାରିଲେ ମନ
କୁଳ ଉଦ୍ଧରିବେ ଯେ, ଜଣାଗଲା ପୁଣ ।
ଏ ଋଷି ଅଇଲେ ଏହାଙ୍କୁ ଲୋଭ କରି
କଳହ ଋଷିଙ୍କ କଥା ନଯିବ ଯେ ଫେରି ।
ସେ ବରକୁ ଏ କନ୍ୟା ଯେ ହୋଇବ ଘଟଣ
ଭଲଯୋଗେ ଜାତ ହେଲା ସାଆନ୍ତା ଯେ ପୁଣ ।
ତିନି କୁଳକୁ ଉଦ୍ଧରିଲୁ ଧନ୍ୟରେ ସୁନ୍ଦରୀ
ଏମନ୍ତ ବୋଲି ପ୍ରଶଂସା କରନ୍ତି ସର୍ବନାରୀ ।
ଅର୍ଘ୍ୟଥାଳି ଉପରେ ତଣ୍ଡୁଳ ଶ୍ରୀଫଳ
ଦୋହିତାର ସଙ୍ଗେ ଦାସୀ ଘେନିଣ ବାହାର ।
ଆଗରେ ରାଜନ ଯେ ପଛରେ ଦାସୀଗଣ
ପଛରେ ଚନ୍ଦ୍ରବଦନୀ ଚାଲେ ଧୀର ଧୀର ।
ଋଷିଙ୍କର ଆଗରେ ମିଳିଲେ ଯାଇଁ ବେଗ
ଦେଖିକରି ସାଆନ୍ତା ହୋଇଲା ଲାଜଲାଜ ।
ଶ୍ରୀଫଳ ତଣ୍ଡୁଳ ଅର୍ଘ୍ୟସ୍ଥାଳି ଧରିକରି
ଋଷିଙ୍କ ଚରଣତଳେ ଓଳଗିଲା ବାଳି ।
ମୁଖ ଟେକି ସାଆନ୍ତା ଦେଖିଲା ନିରୋଳେ
ମଦନ ଶର ଯେ ଭେଦିଲା ଶରୀରେ ।
ଋଷ୍ୟଶୃଙ୍ଗ ସାଆନ୍ତାର ମୁଖକୁ ଚାହିଁଲେ
ଧନ୍ୟ ଧନ୍ୟ ସୁନ୍ଦରୀ ବୋଲିଣ ବିଚାରିଲେ ।
ଅପସରୀ ମୋତେ ଆଗେ କହୁଥିଲା ଯାହା
ସେହିକଥା ଏବେ ଆସି ଫଳିଲାଟି ତାହା ।
ସତେକ ଯୋଗ ମୋତେ ଅଛଇ ଏ ପୁଣ
ମନରେ ବିଚାର ଏହା କଲେ ଋଷି ଜାଣ ।
ଏମନ୍ତେ ବିଚାରନ୍ତେ ପଞ୍ଚଶର ଜଡ଼ି
ବୋଇଲେ ରାଜନ ନିଅ ଦୋହିତାକୁ ଫେରି ।

ଶୁଣିକରି ନୃପତି କୁମାରୀ ଘେନିଗଲେ
ଅନ୍ତଃପୁରେ ରାଣୀମାନଙ୍କୁ ସମର୍ପିଲେ ।
ସେଠାରୁ ରାଜନ ଯେ ଅଇଲା ଖରେ ଜାଣ
ପ୍ରବେଶ ହେଲା ଆସି ଋଷିର ପାଶେ ପୁଣ ।
କନ୍ୟାଘେନି ରାଜାର ଯିବାର ବେଳେ ପୁଣି
ଋଷ୍ୟଶୃଙ୍ଗ ମୋହ ହେଲେ ଶୁଣ ଗୋ ଭବାନୀ ।
ସିଂହାସନ ଉପରୁ ଋଷି ପଡ଼େ ଟଳି
ଜାଣିଣ ବାର ବନିତା ବେଗେ ଧରି ତୋଳି ।
ଶୀତଳ ଜଳ ନେଇଣ ଚେତା କରାଇଲେ
ଅଳପ ଦିନକୁ କିମ୍ପା ବିହ୍ୱଳ ମନରେ ।
ଋଷ୍ୟଶୃଙ୍ଗ ବୋଇଲେ ତୁମ୍ଭର ସେ ନାରୀ
ଅଳପ ଦିନ ତଳେ ଭୋଗ କରିବ ବ୍ରହ୍ମଚାରୀ
ଆଗେତ ଗତାଗତ କାର୍ଯ୍ୟ ଅଛି ଶିଖି
ଅଳପ ଦିନକୁ କିମ୍ପା ଆରତ ମନେ ଯତି ।
ଶୁଣିକରି ଋଷ୍ୟଶୃଙ୍ଗ ହରଷ ହୋଇଲେ
ସିଂହାସନ ଉପରେ ନିଶ୍ଚଳେ ବସିଲେ ।
ଏମନ୍ତ ସମୟରେ ରାଜନ ପ୍ରବେଶ
ଦେଖିକରି ଋଷ୍ୟଶୃଙ୍ଗ ମନରେ ହରଷ ।
ଋଷ୍ୟଶୃଙ୍ଗ ବୋଇଲେ ଶୁଣହେ ରାଜନ
ଏକନ୍ୟା ଗୋଟିକ ବୟସ କେତେ ଜାଣ ।
ରାଜା ବୋଇଲେ ଏଗାର ବର୍ଷ ଛଡ଼ା ମାସ
ନବ ବର୍ଷରେ କୁମାରୀ ହେଲା ଜ୍ଞାନବନ୍ତ ।
ବିଭା କରିବାକୁ ବୁଝିଲେ ପିତା ବର
ଘଟଣ ନୋହିଲା ବର କନ୍ୟା ସଦୃଶ୍ୟର ।
ଅନେକ ରାଜ୍ୟକୁ ରାଜା ବରଗିଲେ ଦୂତ
କେବେହେଁ ବର ତାଙ୍କୁ ନୋହିଲେ ଘଟଣତ ।
ସ୍ୱୟମ୍ବର କରିବାକୁ ରାଜାର ବଡ଼ ମନ
ଚନ୍ଦନ, ଗୁଆ, ପାନ ନିମିତ୍ତ ଦ୍ରବ୍ୟମାନ ।
ସକଳ ଭିଆଣ ଡକାଇ ଦୂତକୁ
ଯାନ ସଜ କଲେ ପାତ୍ର ମନ୍ତ୍ରୀଏ ଯିବାକୁ ।
ରାଜାମାନଙ୍କୁ ବରିବେ ବୋଲି ଆଜ୍ଞାଦେଲେ
ଏମନ୍ତ ସମୟରେ ନାରଦ ମିଳିଲେ ।
ସକଳ ଚରିତ ରାଜା ତାଙ୍କ ଆଗେ କହି
ଶୁଣିକରି ନାରଦ ରାଜାକୁ ବୋଧ ଦେଇ ।

ବୋଇଲେ ସେ କନ୍ୟା, ଆମ୍ଭବଧୂ ପୁଣ
ଋଷିଙ୍କ ଘରଣୀକୁ ରାଜା କି ନେବେ ପୁଣ ।
ଦଶରଥ ବୋଇଲେ ତୁମ୍ଭର ନାହିଁ ପୁତ୍ର
କିମ୍ପାଇ ବୋଧ ମୋତେ ଦେଉଛ ବ୍ରହ୍ମସୁତ ।
ନାରଦ ବୋଇଲେ ପୁତ୍ର ଋଷ୍ୟଶୃଙ୍ଗ ମୋର
ବିଭାଣ୍ଡକ କୋଳେ ହୋଇଛି ଅବତାର ।
ଚମ୍ପାବତୀ ଦେଶକୁ ଆସିବ ପୁତ୍ରମଣି
ଲୋମପାଦ ରାଜନ ଅଣାଇବ ପୁଣି ।
ତାର ରାଜ୍ୟେ ଜଳବୃଷ୍ଟି କରିବାର ପାଇଁ
ନଟକାରୀମାନେ ଆଣିବେ ପୁଣଯାଇ ।
ସେ ଆସି କହିଲେ ଜଳ ବୃଷ୍ଟି ଯେ କରିବ
ଦଶରଥ ଦୁହିତାକୁ ବିଭା ପୁଣ ହେବ ।
ଲୋମପାଦକୁ ଋଷି ପୁତ୍ର ଦାନ ଦେବେ
ଯାଗ କରାଇ ଚରୁ ଭୁଞ୍ଜାଇ ଏଥୁ ଯିବେ ।
ଅଯୋଧ୍ୟାରେ ପ୍ରବେଶ ଦେବେ ମୁନିମଣି
ଦଶରଥ ଯାଗକଲେ ଜନ୍ମିବେ ପୁତ୍ର ପୁଣି ।
ଏତେ କହି ନାରଦ ଆକଟ କରିଗଲେ
ରାଜସ୍ୱୟମ୍ବର ମୁନି ଭାଙ୍ଗିଲେ ଧ୍ୟାନବେଳେ ।
ଶୁଣି ଋଷ୍ୟଶୃଙ୍ଗ ବୋଇଲେ ଯେବେ ଜଣା
ସେ କନ୍ୟାରେ ପ୍ରସନ୍ନ ଆମ୍ଭର ମନସିନା ।
ଉତ୍ସବ କରାଇଣ ବେଦୀ କର ସଜ
ଆଜର ଦିନକୁ ହୋଇଛି ବିଭା ଯୋଗ ।
ଲୋମପାଦ ବୋଇଲେ ଯେ ନୁହଁଇ ଉଚିତ
ଜନ୍ମ ବୃହସ୍ପତି ବାର ଦିନ ଅଛଇତ ।
ତାହାର ଜଣକୁ ଅଣାଇବ ଏବେ
ପ୍ରଦାନ କରିବେ ସେ ଦୁହିତାକୁ ଭାବେ ।
ତୁମ୍ଭର ପିତା ବିଭାଣ୍ଡକ ଆସିବେ ଯେ ପୁଣ
ତାହାଙ୍କର ସଙ୍ଗରେ ବହୁତ ଋଷିଗଣ ।
ନାରଦ, ସନାତନ ସନକାଦି ଆସିବେ
ଉତ୍ସବରେ ବିଭାଘର ହୋଇବ ଯେ ତେବେ ।
ରାଜାଗଣ ଆସିବେ ଆସିବେ ବନ୍ଧୁଗଣ
ତେବେ ସେ ବିଭା ଘର ହୋଇବ ଯେ ପୁଣ ।
ଆଜିକାଲି ବିଭା ହେଲେ ହୋଇବ ନିନ୍ଦାକଥା
ରାଜାମାନେ ଶୁଣିଲେ ହୋଇବ ଆମ୍ଭକୁ ବ୍ୟଥା ।
ଶାଶୁମାନେ ଶୁଣିଲେ ତୁମ୍ଭଙ୍କୁ ଦେବେ ଗାଳି
ବୋଲିବେ ଋଷ୍ୟଶୃଙ୍ଗ କିମ୍ପା ସମ୍ଭାଳି ନପାରି ।

ରାଜାର ଦୁହିତା ଘେନିଣ ପଳାଇଲା
ଜ୍ଞାନବନ୍ତ ହୋଇଣ ଅଜ୍ଞାନ ପଣ କଲା ।
ଋଷିମାନଙ୍କୁ ଘେନି ତୁମ୍ଭର ପିତା ଆସୁ
ଦଶରଥ ରାଜା ବଳ ଘେନିଣ ଏଥେ ପଶୁ ।
ମୋହର ବନ୍ଧୁ କୁଟୁମ୍ବ ଅଣାଇବି ବେଗେ

× × ×

ଋଷ୍ୟଶୃଙ୍ଗ ବୋଇଲେ ଏ କଥା ବଡ଼ଭଲ
ଦୁଇକୁଳ ଥାଇ ବିଭା ହେବାର ପରିମଳ ।
ଦୁହିତା ଦେବାର ଯେବେ ଅଟଇ ସତ୍ୟ ପୁଣ
ସେ କନ୍ୟା ଆସି ଆମ୍ଭଙ୍କୁ କରୁ ଯେ ବରଣ ।
ଶୁଣିଣ ଲୋମପାଦ ବେଗେ ଚଳିଗଲା
ରାଣୀହଂସ ପୁରେ ଯାଇଁ ପ୍ରବେଶ ହୋଇଲା ।
ବୋଇଲା ଋଷ୍ୟଶୃଙ୍ଗ ଦୁହିତାକୁ ରସି
ବୋଇଲେ ସେ କନ୍ୟାକୁ ଆମ୍ଭଙ୍କୁ ବିଭାଦେସି ।
ଆଜର ଭିତରେ ତୁମ୍ଭେ କରହୋ ବିଭାଘର
ମୁଁ ବୋଇଲି ସେ କଥା ନୁହଁଇ ବେଭାର
କନ୍ୟାଙ୍କର ପିତା ତୁମ୍ଭର ପିତା ଆସି
ରାଜା ବଳ ଋଷି ବଳ ହୁଅନ୍ତୁ ମିଶା ମିଶି ।
ଉତ୍ସବରେ ବିଭାଘର ହେବ ହେ ମୁନିବର
ବାହୁନିବାକୁ କଥା ଯେ, ନଥିବ ଆଉତୋର ।
ଋଷ୍ୟଶୃଙ୍ଗ ବରଣ ମୋତେ କରୁ
ଦୁହିତା ଦେବାର ଅଟଇ ଯେବେ ଗରୁ ।
ଶୁଣିଣ ରାଣୀମାନେ ହରଷ ହୋଇଲେ
ବରଣମାଳା ଗୋଟି ଦୁହିତା ହାତରେ ଦେଲେ ।
ବୋଇଲେ ବେଗେ ଯାଇଁ ଋଷିଙ୍କୁ ତୁ ବର
ମନଇଚ୍ଛା ବର ତୋତେ ମିଳିଲା ଭାଗ୍ୟର ।
ଶୁଣିଣ ସାଆନ୍ତା ହରଷ ମନ ହେଲା
ମୁନିର ଆଗରେ ପ୍ରବେଶ ଯାଇ ହେଲା ।
ବ୍ରହ୍ମଚାରୀ ଗଳାରେ ଦେଲାକ ମାଳା ନେଇ
ବୋଇଲେ ଆଜଠାରୁ ତୁମ୍ଭର ଅଟେ ମୁହିଁ ।
ଏତେବୋଲି କନ୍ୟା ଯେ, ବେଗେ ଚଳିଗଲା
ଅନ୍ତଃପୁରେ ଯାଇଣ ପ୍ରବେଶ ହୋଇଲା ।
ଜନନୀମାନଙ୍କୁ ଓଳଗି ମେଲାଇ
ଗଙ୍ଗା, ଯମୁନା କୋଳରେ ବସିଲାକ ଯାଇଁ ।
ଦୁଇମାତା ବୋଇଲେ ହୋଇଲା କାର୍ଯ୍ୟସିଦ୍ଧ
ଦୁଇକୁଳେ ଚନ୍ଦ୍ରମା ହୋଇଥିଲୁ ଜାତ ।

ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଋଷ୍ୟଶୃଙ୍ଗ ଆଗରେ ମିଳିଲେ ଦଣ୍ଡଧାରୀ ।
ପାତ୍ର, ମନ୍ତ୍ରୀ, ସାମନ୍ତ ଡକାଇ ନେଲେ ପୁଣ
ବୋଇଲେ ରାଜାମାନଙ୍କୁ କର ନିମନ୍ତ୍ରଣ ।
ବନ୍ଧୁମାନଙ୍କୁ ବରଣ କରି ଘେନି ଆସ
ନିକଟରେ ଦୋହିତା ବିଭାଘର ପ୍ରବେଶ ।
ନଗ୍ର ଉତ୍ସବ କରାଅ ମଣ୍ଡଣି ବେଗେ କରି
× × ×
ସକଳ ସାମଗ୍ରୀ ଲୋଡାଇ ବେଗେ ଆଣ
ଅନେକ ଋଷି ଏଥି ହେବେ ଲୋଡ଼ା ପୁଣ ।
ଶୁଣି ପାତ୍ର ମନ୍ତ୍ରୀ ଯେ ଦୂତଙ୍କୁ ଡକାଇଲେ
ବନ୍ଧୁଜନମାନଙ୍କୁ ନିମନ୍ତ୍ରଣ ଦେଲେ ।
ଦୂରଦେଶକୁ ଚିଟାଉ ପଠାଇ ଦେଖିକରି
ଚଳିଲେ ଦୂତମାନେ ଯାନ ବାହନ ଚଢ଼ି ।
ଅନେକ ସାମଗ୍ରୀ ଯେ ଅଣାଇଁ ଠୁଳ କଲେ
ଋଷିମାନଙ୍କ ପାଇଁ ଫଳମୂଳ ଭଲେ ।
ଉତ୍ସବ ଆନନ୍ଦ ଯେ, ନଗ୍ର ପରିମଳ
ଅନ୍ନ ବସ୍ତ୍ର ଯତନେ ସାଇତି ଭଣ୍ଡାର ।
ଚତୁରଙ୍ଗ ବଳକୁ ସାଜିଣ ଆଜ୍ଞାଦେଲେ
ନଗ୍ର ଚଉପାଶେ ଜାଗ୍ରତ ରହିଲେ ।
ସକଳ ସମ୍ପାଦିଣ ରାଜା ପାଶେ ମିଳି
ଦେଖିଣ ହରଷ ଯେ ହେଲେ ଦଣ୍ଡଧାରୀ ।
ପାତ୍ର ମନ୍ତ୍ରୀ ବୋଇଲେ ସକଳ କାର୍ଯ୍ୟ ସିଦ୍ଧି
ଲୋମପାଦ ବୋଇଲେ ଶୁଣ ହେ ଗୁଣନିଧି ।
ମଇତ୍ରଠାକୁ ବେଗେ ପେଷ ମୋର ଦୂତ
ରାଣୀହଂସ ଘେନିଣ ଆସନ୍ତୁ ତୁରିତ ।
ବଶିଷ୍ଠଙ୍କୁ ଆଣିବେ ଆସିବେ ପାତ୍ର ମନ୍ତ୍ରୀ
ଚତୁରଙ୍ଗ ବଳ ଘେନି ଆସନ୍ତୁ ଝଟତି ।
ଶୁଣିଣ ପାତ୍ର ମନ୍ତ୍ରୀ ଯେ ଚିଟାଉ ଲେଖିଲେ
ଚନ୍ଦନ ମୁଦ ନେଇଣ ଚନ୍ଦନୀ ହସ୍ତେ ଦେଲେ ।
ବୋଇଲେ ଦଶରଥ ରାଜାଙ୍କୁ କହ ଯାଇଁ
ଦୁହିତା ବିଭାଘର ଆସନ୍ତୁ ବେଗ ହୋଇ ।
ଶୁଣିଣ ବିପ୍ରବର ବେଗେ ଚଳିଗଲେ
ଦଶଦିନେ ଅଯୋଧ୍ୟା କଟକେ ମିଳିଲେ ।
ଦଶରଥ ନୃପତି ଯେ କରିଛନ୍ତି ବିଜେ
ସଂଗରେ ପାତ୍ର ମନ୍ତ୍ରୀ ବଶିଷ୍ଠ ବାମଦେବେ ।

ଭଲମନ୍ଦ ବୁଝାମଣା କରୁଛନ୍ତି ତହିଁ
ଏହି ସମୟରେ ବିପ୍ରେ ମିଳିଲେକ ଯାଇଁ ।
କରଯୋଡ଼ି ଆଗରେ କହନ୍ତି ବଚନ
ଶୁଣଦେବ ଅଯୋଧ୍ୟା ଦେଶର ରାଜନ ।
ଚମ୍ପାବତୀ କଟକକୁ ଆସି ଅଛନ୍ତି ଋଷ୍ୟଶୃଙ୍ଗ
ଆସିବାର ବାର୍ତ୍ତା ତ ପାଇଛ ଦେବରାଜ ।
ଋଷ୍ୟଶୃଙ୍ଗ ଆସିବାରୁ ବରଷିଲା ଜଳ
ବାରବନିତା ଯାଇ ଆଣିଲେ ଋଷି ବାଳ ।
ଲୋମପାଦ ରାଜା ନଗ୍ରେ ପ୍ରବେଶ ହୋଇଲେ
ରାଣୀହଂସ ଯାଇଁଣ ଦର୍ଶନ ସର୍ବେ କଲେ ।
ଋଷି ପଚାରିଲେ ସକଳ କଥା ମାନ
ଧନ ଦ୍ରବ୍ୟ ପୁତ୍ର ପୌତ୍ରୀ ମାନ ପୁଣ ।
ରାଜନ ବୋଇଲେ ମୋର ପୁତ୍ର ପୌତ୍ରୀ ନାହିଁ
ଶୁଣି ଋଷି ଆଜ୍ଞାଦେଲେ ରାଜନକୁ ଚାହିଁ ।
ବୋଇଲେ ଶତ ପୁତ୍ର ହେଉ ଯେ ତୁମ୍ଭର
ଏତେ ବୋଲି ବିଭୁତି ଦେଲେ ରାଜାକର ।
ଶତେ ରାଣୀଙ୍କୁ ରାଜା ବାଣ୍ଟି କରି ଦେଲେ
ରାଜନ ତୋଷ ହୋଇ ଧନ ବିଳୋହିଲେ ।
ତୁମ୍ଭର ଦୁହିତା ଯେ ସାଆନ୍ତା ନାମେ ବାଳୀ
ଦର୍ଶନ କରିବ ବୋଲି ନୃପତି ଆଗେ ମିଳି ।
ଦୋହିତା ବଚନ ଶୁଣି ରାଜନ ଚଳିଗଲେ
ଋଷ୍ୟଶୃଙ୍ଗ ଆଗରେ ଯାଇଣ ମିଳିଲେ ।
ବୋଇଲେ ବ୍ରହ୍ମଚାରୀ ଶୁଣ ମୋ ବଚନ
ଦଶରଥ ନନ୍ଦିନୀ ଆଣିଅଛି ପୁଣ ।
ଦର୍ଶନ କରିବାକୁ ତାହାର ଯେ ମନ
ଶୁଣିଲେ ବ୍ରହ୍ମଚାରୀ ବୋଇଲେ ତାକୁ ଆଣ ।
ଋଷି କହିବାରୁ ତୁମ୍ଭ ଦୁହିତାକୁ ନେଲେ
ମୁନିଙ୍କ ଆଗରେ ନେଇ ଦର୍ଶନ କରାଇଲେ ।
ଦେଖିଣ ମୁନିବର ହୋଇଲେ ହରଷ
ବୋଇଲେ ଏ କନ୍ୟା ଆମ୍ଭଙ୍କୁ ଦିଅ ନୃପନାଥ
ଶୁଣି ଲୋମପାଦ ହରଷ ହୋଇଲେ ।
ଦୁହିତା ହସ୍ତରେ ବରଣମାଳା ଦେଲେ ।
ଦୁହିତା ନେଇ ଋଷିଙ୍କ ଗଳାରେ ଲମ୍ବାଇଲେ
ସେହି ଦିନ ବିଭାକୁ ଋଷି ମନ କଲେ ।
ଲୋମପାଦ ବୋଇଲେ ଏ ନୁହଁଇ ଉଚିତ
ସମ୍ବର୍ତ୍ତରେ ବିଭା ଆମ୍ଭେ କରିବୁ ଋଷି ସୁତ ।

ରାଜାଗଣ ଅଣାଇବୁ ଆସିବେ ବନ୍ଧୁଜନ
କୁମାରୀଙ୍କ ପିତା ମାତା ଆସିବେ ଯେ ପୁଣ ।
ଦୁଇ କୁଳ ଚତୁରଙ୍ଗ ବଳ ଗୁଣ୍ଡ ହେବେ
ତୁମ୍ଭର ପିତା ପୁଣ ଏଠାକୁ ଆସିବେ ।
ପିତା ସଙ୍ଗେ ଅନେକ ପୁଣ ଋଷି ଆସି
ଉତ୍ସବ ଆନନ୍ଦରେ ସକଳ ମନ ତୋଷି ।
ଶୁଣିଣ ଋଷ୍ୟଶୃଙ୍ଗ ଆନନ୍ଦ ହେଲେ ତୋରା
ଅଣାଅ ରାଜାଗଣ ସମ୍ବର୍ବ ଭିଆଅ ପରା ।
ଶୁଣିଣ ରାଜନ ଯେ ସମ୍ବର୍ବ ଭିଆଇଲେ
ରାଜାଗଣ, ବନ୍ଧୁଗଣ ନିମନ୍ତ୍ରଣ କରାଇଲେ ।
ଋଷିମାନେ ରହିବାକୁ ସ୍ଥାନ ଯେ ନିର୍ମଳ
ଆଗ ତୁମ୍ଭ ପାଖକୁ ପଠାଇଥିଲେ ଚାର ।
ଏବେ ଆମ୍ଭମାନଙ୍କୁ ପଠାଇ ତୁମ୍ଭ ପାଶ
ବେଗ ଯାଇଁ ବିଭାଘର କରହେ ବିଶେଷ ।
ରାଣୀହଂସ ଚତୁରଙ୍ଗ ବନ୍ଧୁ ଜନ ବଳ
ପାତ୍ର ମନ୍ତ୍ରୀ ବଶିଷ୍ଠ କଶ୍ୟପ ମୁନିବର ।
ସମସ୍ତଙ୍କୁ ଘେନି ଏବେ ଚଳ ସେ ରାଜ୍ୟକୁ
ବିଭା କରାଅ ଯାଇ ତୁମ୍ଭେ ଦୋହିତାକୁ ।
ଶୁଣିଣ ଦଶରଥ ହରଷମନ ହେଲା
ଏମନ୍ତ ବଚନ କହି ଚିଟାଉ ସମର୍ପିଲା ।
ଚନ୍ଦନ ମୁଦ ଭାଙ୍ଗିଣ ବଶିଷ୍ଠ ମୁନି ପଢ଼ି
ରାଜା ଜାଣିବାରୁ ଭିତର ପୁର ଚଳି ।
ରାଣୀହଂସ ଡକାଇ କହିଲେ ନୃପବର
ଲୋମପାଦ ରାଜା ଅଟେ ମଇତ୍ର ଆମ୍ଭର ।
ତାର ରାଜ୍ୟେ ଅପାଳକ ହେବାରୁ ଯେ ଜାଣ
ବିଭାଣ୍ଡକ କୁମରକୁ ଅଣାଇଲେ ପୁଣ ।
ବିଭାଣ୍ଡକ କୁମରକୁ ଅଣାଇଲେ ଜଳ
ଋଷିଙ୍କୁ ଦର୍ଶନ କଲେ ଶତରାଣୀ ହୋଇମେଳ ।
ଦେଖିଣ ଋଷ୍ୟଶୃଙ୍ଗ ଯେ ହରଷ ହୋଇଲେ
ପୁତ୍ର ଦାନ ଦିଅ ବୋଲି ରାଣୀ ଜଣାଇଲେ ।
ଶୁଣିଣ ଋଷିପୁତ୍ର ସୁଦୟା ତାଙ୍କୁ କଲେ
ଶତେପୁତ୍ର ହେଉ ବୋଲି ବିଭୂତି ଖୁଆଇଲେ ।
ରାଣୀହଂସ ଯେ ଲେଉଟି ଅଇଲେ ସେଠାରୁ
ସେ ଯିବାରୁ କୁମାରୀ ରାଜାଙ୍କୁ କହେ ଦୂରୁ ।
ସେ ଋଷିଙ୍କୁ ଯେବେ କରିବି ଦର୍ଶନ
ସାଫଲ୍ୟ ହେବ ମୋର ଦୁଇ ଯେ ନୟନ ।

ଶୁଣିଣ ରାଜନ ଯେ ଋଷିଙ୍କୁ କହି ଯାଇଁ
ସେ ଋଷି ବୋଇଲେ ଆଗୁ ସେ ବେଶହୋଇ ।
ରାଜନ ବୋଇଲେ କନ୍ୟା ବିଭା ହୋଇନାହିଁ
ଋଷି ବୋଇଲେ ସେଥିରେ ଦୋଷ କିଛି ନାହିଁ ।
ଦର୍ଶନ କଲେକ ମିଳଇ ପରାମର୍ଶ

× × ×

ଶୁଣିକରି ରାଜନ ଯେ ସାଆନ୍ତାକୁ ନେଲେ
ଦର୍ଶନ କରନ୍ତେ ଋଷି ପ୍ରସନ୍ନ ତାଙ୍କୁ ହେଲେ ।
ବୋଇଲେ ଏ କନ୍ୟାକୁ ଆମ୍ଭକୁ ବିଭାକର
ଶୁଣିକରି ଦୋହିତା ଋଷିଙ୍କୁ ଦେଲେ ମାଳ ।
ସେହିଦିନ ବିଭା ଯେ ଲୋଡ଼ଇ ବ୍ରହ୍ମଚାରୀ
ରାଜନ କହିବାରୁ ରହିଲା ସମ୍ଭାଳି ।
ରାଜାଜନ ବନ୍ଧୁଜନ ଲୋଡ଼ିଲେ ରାଜନ
ବିଭାକର ଆମ୍ଭଙ୍କୁ ପଠାଇଛନ୍ତି ପୁଣ ।
ଚିଟାଉ ଲେଖିଛନ୍ତି ବେଗେ ତୁମ୍ଭେ ଆସ
ନ ଆସିଲେ କୁମାରୀଙ୍କୁ ବିଭା କରିବେ ଅବଶ୍ୟ
ଚତୁରଙ୍ଗ ବଳ ସଙ୍ଗେ ପାତ୍ର ମନ୍ତ୍ରୀ ଘେନି
ରାଣୀହଂସ ଋଷିଗଣ ଆଣିବ ସଙ୍ଗେ ପୁଣି ।
ଯେଉଁରୂପେ ଶୋଭାହେବ ସେ ରୂପେ ବେଗେଆସ
ବନ୍ଧୁଜନମାନଙ୍କୁ ଲୋଡାଇ ଘେନି ଆସ ।
କୈକୟୀ, କୌଶଲ୍ୟା, ସୁମିତ୍ରା ଯେ ଜାଣ
ନୀଳାବତୀ, କଳାବତୀ ଯେତେ ରାଣୀ ପୁଣ ।
ବୋଇଲେ ସକଳ ରାଣୀ ଶୁଣହେ ରାଜନ ।
ହେଳା ନକରି ସମସ୍ତେ ଯିବାହେ ବହନ ।
ଦୁହିତା ବିଭାହୋଇଲେ ଆମ୍ଭର ହୋଇବ ସନ୍ତାନ
ସେ କଥାରୁ ବଡ଼ ଯେ ନାହିଁ ପୁଣ ଆନ ।
ଶୁଣିକରି ରାଜନ ଯେ ବୋଲନ୍ତି ବଚନ
ନିଶ୍ଚୟେ ଯିବାର ହୋଇଲା ପୁଣ ।
କୁଆଇଁକି ଦେବାର ବହାଣ ସର୍ବେ ଘେନ
ସକଳ ରାଣୀ ତୁମେ ବେଶ ହୁଅ ପୁଣ ।
ଯେ ରୂପେ ବେଶ ହୋଇଲେମୋହିବ ସର୍ବଜନ ।

× × ×

ଋଷିମାନେ ଦେଖିଲେ ପ୍ରଶଂସା କରିବେ
ରାଣୀମାନେ ଦେଖିଲେ ମୋହିତ ହୋଇବେ ।
ଦାସୀମାନେ ବେଶ ହେବେ ତୁମ୍ଭର ସଦୃଶ୍ୟ
ଜାଣିଛନ୍ତି ବହୁତ ରାଜା ରାଣୀହଂସ ।

ତୋରବେଶ ନୋହିଲେ କରିବେ ମୋତେନିନ୍ଦା
ବୋଲିବେ ଏତେ ରାଣୀ କିମ୍ପାଇ କଲେ ରାଜା ।
ଶୁଣି ରାଣୀହଂସ ଯେ ସଜହେଲେ ପୁଣ
କାହାର କେଉଁ ବେଶ ନାହିଁ ନୃପରାଣ ।
ସେ କଥାରେ ହୀନ ଆରମ୍ଭ ନୋହୁଁ ନାରୀଗଣ ।

× × ×

କେଉଁଦିନ ଯିବାର ଅଟଇ ପୁଣ ମୂଳ
ରାଜନ ବୋଇଲେ କାଲି କରିବା ଅନୁକୂଳ ।
ରାଣୀମାନେ ବୋଇଲେ ଆସିବେ ବୋଲିବନ୍ଧୁ
ସେମାନେ କେଉଁଠାକୁ ଯିବେ ହେ ପୁଣ୍ୟଇନ୍ଦୁ ।
ରାଜନ ବୋଇଲେ ଯେ ଚିଟାଉ ଲେଖିବି
ଚମ୍ପାବତୀ ଦେଶ ଯିବା ବାରତା କହିବି ।
ଶୁଣିଣ ରାଣୀହଂସ ହରଷ ହୋଇଲେ ।
ଫେରିଣ ରାଜନ ଯେ ବାହାରକୁ ଗଲେ
ବାହାର ଜଗତୀରେ ବସିଲେ ଯାଇ ପୁଣ
ପାତ୍ର ମନ୍ତ୍ରୀ ଆସିଣ କଲେକ ଦର୍ଶନ ।
ରାଜା ବୋଇଲେ ବେଗେ ଲେଖାଦିଅଲେଖି
ବନ୍ଧୁଜନମାନଙ୍କୁ ବରଣ କର ଧାଡି ।
ଶୁଣିକରି ପାତ୍ର ମନ୍ତ୍ରୀ ଚିଟାଉ ଲେଖିଲେ
ଦଶରଥ ରାଜାଙ୍କର ଶୁଭକଥା ଭଲେ ।
ସାଆନ୍ତା କୁମାରୀ ହେଉଛି ଏବେ ବିଭା
ଚମ୍ପାବତୀ ରାଜ୍ୟକୁ ବିଜେକରି ଯିବା ।
ସେଠାରେ ବିଭାଣ୍ଡକ ତନୟ ଋଷ୍ୟଶୃଙ୍ଗ
ସକଳ ନରେନ୍ଦ୍ର ସେଠାକୁ ଯିବେ ବେଗ ।
ତୁମ୍ଭେମାନେ ମୋହର ଅଟ ଯେ ବାନ୍ଧବ
ରାଣୀମାନେଯିବେବିଭାଦେଖି ଆସିବେ ।
ସକଳ ଭରସା ଯେ ମୋହର ଅଟ ତୁମ୍ଭେ
ଉତ୍ସବ ଆନନ୍ଦରେ ଦୁହିତା ବିଭା ହେବେ ।
ନ ଆସିଲେ ଦୁଃଖ ଯେ ଆସିଲେ ବଡ଼ ସୁଖ
ଏକଥାକୁ ବିଚାର କରିବ ସମସ୍ତ ।
ମୋହଠାରେ ଯେବେ ଥିବ ଦୟାଭାବ
ଚମ୍ପାବତୀ କଟକରେ ଯାଇଣ ମିଳିବ ।
ସମ୍ଭର୍ବରେ ଆସିବ ନୋହିବ ଅସମ୍ଭବ
ଅନେକ ନୃପତି ଯେ ମିଳିବ ସେହିଠାବ ।
ନ୍ୟୁନଭାବେ ଥିଲେ ନିନ୍ଦା ହେବ ମୋତେ
ଆମ୍ଭେଆଗେ ଶୁଣିବା ସେ ନଶୁଣିବେ ଯେମନ୍ତେ ।

ଆଉ କେଉଁ କଥା ଲେଖିବି ଅବା ପୁଣ
ଏବାରତା ଶୁଣିଣ ଆସିବ ତତକ୍ଷଣ ।
ଏମନ୍ତ ବୋଲି ଚିଟାଉ ସହସ୍ରେ ଲେଖିଲେ
ସହସ୍ରେ ବିପ୍ରେ ଡାକି ଚାଳିଶ ବେଗେଦେଲେ
ପାତ୍ରମନ୍ତ୍ରୀ କୁମରକୁ ଡକାଇ ଆଣିଲେ ।

× × ×

ବୋଇଲେ ଦୁଇ ପୁତ୍ର ଚଳ ତୁରିତରେ
ସର୍ବ ରାଜାଙ୍କୁ ଆମନ୍ତ୍ରଣ କରିବ ସତ୍ୱରେ ।
ରଥପରେ ଯାଇଣ ଦେଖିବ ସର୍ବସ୍ଥାନ
ଯେଉଁଠାରେ ଦେଖିବ ସ୍ୱୟମ୍ବର ପୁଣ ।
ସେଠାରେ ରାଜାମାନଙ୍କୁ ବରଣ କରିବ
ଯେତେକ ରାଜାଥିବେ ଘେନିଣ ଆସିବ ।
ଚମ୍ପାବତୀ ଦେଶକୁ ଘେନିଣ ଯିବ ତାଙ୍କୁ
ଫୁଲଚନ୍ଦନ ଉପନ ଦେଲେ ସଂଗରେ ଦେବାକୁ ।
ଚଳିଲେକ ବେନି ପୁତ୍ର ବେନିରଥ ଚଢ଼ି
କୁଞ୍ଜଗଳ ଦେଶରେ ମିଳିଲେ ଯାଇକରି ।
ଅନିରୁଦ୍ଧ ରାଜା ତହିଁ କରିଛି ବରଣ
ସାତଗୋଟା ଦୁହିତା ବରିଲେ ରାଜାପୁଣ ।
ବିଭାଘର ସରିଲାଣି ମେଳାଣି ରାଜାଙ୍କର
ଏହିସମୟରେ ଯାଇ ମିଳିଲାକ ଚାର ।
ଚନ୍ଦନ ଗୁଆ ପାନ ରାଜାଙ୍କୁ ନେଇ ଦେଲେ
ଅଯୋଧ୍ୟା ରାଜନ ଦଶରଥକୁ ନିମନ୍ତ୍ରିଲେ ।
ତାଙ୍କର ଦୁହିତା ସାଆନ୍ତା ନାମେ ପୁଣ
ବିଭାଣ୍ଡକ ନନ୍ଦନ ବିଭାହେବେ ପୁଣ ।
ଚମ୍ପାବତୀ ରାଜ୍ୟରେ ସେ ଅଛନ୍ତି ଋଷ୍ୟଶୃଙ୍ଗ
ସେହିଠାରେ ବିଭାଘର ଉତ୍ସବ ଆନନ୍ଦ ।
ଦଶସହସ୍ର ରାଜା ଶୁଣି ଆନନ୍ଦ ମନ ହେଲେ
ଋଷି ବିଭାଘର ଆମ୍ଭେ ଦେଖିବା ବୋଇଲେ ।
ଦଶରଥ ରାଜା ଅଟନ୍ତି ଭାଗ୍ୟବନ୍ତ
ବିଭାଣ୍ଡକ ଋଷି ତାଙ୍କର ହେବେ ସିନ୍ଧୁମତ ।
ଆମ୍ଭମାନଙ୍କର ପୁଣ ହେଲା ପୁରୁଷାର୍ଥ
ଋଷିମାନେ ଆମ୍ଭ ଘରେ ହେଲେ ସମ୍ଭବତ ।
ଏମନ୍ତ ପ୍ରଶଂସା ଯେ କରନ୍ତି ମହୀପାଳ
ତାଙ୍କର ସଙ୍ଗତରେ ରହିଲେ ଦୁଇ ବାଳ ।
ବିପ୍ରମାନେ ଚଳିଯାଇ ବନ୍ଧୁମାନଙ୍କୁ କହି
ଚିଟାଉ ନେଇଣ ସମ୍ପ୍ରତେ କରାଇ ।

ସକଳ ବନ୍ଧୁମାନଙ୍କୁ ନିମନ୍ତ୍ରଣ ଦେଲେ
ତାଙ୍କର ସଙ୍ଗତରେ ବିପ୍ର ଯେ ରହିଲେ ।
ପାର୍ବତୀ ବୋଇଲେ ଶୁଣହେ ବିଶ୍ୱନାଥ
ସେଠାରୁ ଦଶରଥ କଲେ ଯେ କେମନ୍ତ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣଗୋପାର୍ବତୀ
ଏକମନ ହୋଇ ଶୁଣ କହିବି ସେ ରୀତି ।
ଦୂତମାନେ ଯିବାର ରାଜନ କହେ ପୁଣ
ଚତୁରଙ୍ଗ ସାଜ କହିଲେ ବହନ ।
ଶୁଣିଣ ପାତ୍ର ମନ୍ତ୍ରୀ ବେଗେ ଚଳିଗଲେ
ଚତୁରଙ୍ଗ ବଳକୁ ସାଜିଣ ଆଣିଲେ ।
ରାଜାର ଆଗରେ କହିଲେ ଆସିକରି
ସକଳ ସାଜିଲେ ଶୁଣ ହେ ଦଣ୍ଡଧାରୀ ।
ହାତୀ ରଥ ପଦାତି ଅଶ୍ୱ ଯେ ବଳ ପୁଣ
ଶଗଡ ବଳଦ ସାରେଣି ଯୂଥମାନ ।
ହଟାରୀ ବଜାରି ରଥକାରୀ ଲୟହାତା
ବାଜନ୍ତରିଆ ବଳ ଖଟିବା ବ୍ୟବସ୍ଥା ।
ଛତିଶା ନିଯୋଗ ଯେ ସେବାକାରୀ ଜାଣ
ସମସ୍ତେ ଯେ ଆସିଲେ ଶୁଣ ନୃପରାଣ ।
ଶୁଣିକରି ରାଜନ ସନ୍ତୋଷ ମନ ହେଲେ
କାଲି ଅନୁକୂଳ କରିବା ବୋଇଲେ ।
ବଶିଷ୍ଠ ଋଷିଙ୍କୁ ଡକାଇ ଆଣିଲେ
ଚମ୍ପାବତୀ ରାଜ୍ୟକୁ ଯିବା ଯେ ବୋଇଲେ ।
ବେଗକରି ଏବେ ତୁମ୍ଭେ ହୁଅ ସଜ
ବାମଦେବ ରହିବେ ମୋହର ନିଜ ରାଜ୍ୟ
ଅର୍ଦ୍ଧେକ ସୈନ୍ୟବଳ ଆସନ୍ତୁ ଏଥିରେ
କାଲି ଆମ୍ଭେ ଯିବା ଚମ୍ପାବତୀ କଟକରେ ।
ସୁରଭୀକୁ ସଙ୍ଗେ ଘେନି ଚର୍ଚ୍ଚା ସର୍ବେହେବେ
ପର ଅନୁସରଣ ନଥାଉ ଆମ୍ଭ ଭାବେ ।
ଦୁହିତା ବିଭାକରି ଋଷିଙ୍କୁ ଆଣିବା
ଆମ୍ଭର ରାଜ୍ୟରେ ଆସ ଯାଗ କରାଇବା ।
ସେ ଋଷି ପୁତ୍ରଦାନ ହେଉଛନ୍ତି ପୁଣ
ଭକ୍ତି ବୋଇଲେ ଯେ ସାକ୍ଷାତେ ଋଷି ବ୍ରହ୍ମ
ବାର ବର୍ଷରେ ପ୍ରାପତ କାମଧେନୁ ଜାଣ ।
ଦଶମାସେ ଯୁବା ହେଲା ବରଷକେ ତପକଲା
ବାର ବରଷରେ ହରିଙ୍କୁ ସନ୍ତୋଷକରାଇଲା ।

କେଉଁଯୋଗେ ତୋର ଦୁହିତାଠାରେ ମନ
ପଶ୍ଚାତେ ଜାଣିବା ରାଜା ତାର ଯେତେ ଗୁଣ ।
ନାରଦ କହିବାରୁ ସେ ପୁତ୍ର ତୋଷ ହେଲା
ତୋହର କୁମାରୀକୁ ଲଭିବି ବୋଇଲା ।
ଶୁଣିକରି ରାଜନ ସନ୍ତୋଷ ହୋଇଲା
ମୁନି ବୋଲେ ପ୍ରଭାତୁ ଯିବା ସେହି ପୁରେ ।
ଏତେ କହି ଋଷି ସେ ନିଜପୁର ଗଲା
ରାଜନ ଅନ୍ତଶ୍ୱର ପୁରକୁ ଚଳିଲା ।
ପାତ୍ର ମନ୍ତ୍ରୀ ଗଲା ଯେ ଭାଙ୍ଗିଲାକ ସଭା
ଦିବସ ଯାଇ ରଜନୀ ହୋଇଲାକ ପ୍ରଭା ।
ରାଜନ ଯିବାରୁ ଦାସୀଗଣ ଆସି
ପହଣ୍ଡ ମଣାଇ ଭିତରକୁ ନେଲେସି ।
ଅନ୍ତଃପୁରେ ରାଜା ଯେ ହେଲେ ପରବେଶ
ଦେଖିଣ ରାଣୀହଂସ ହୋଇଲେ ହରଷ ।
ସେ ଦିନ କଉଶଲ୍ୟା ପୁରରେ ରାଜା ରହି
ନାନା କଉତୁକରେ ଶର୍ବରୀ ଶେଷ ହୋଇ ।
ବେନିଘଡ଼ି ରଜନୀ ଅଛଇ ପାହିବାକୁ
ପ୍ରଭାତୁଁ ଉଠିଲେ ଅନୁକୂଳ କରିବାକୁ ।
ବାହାରେ ଅବକାଶ ରାଜନ ଯାଇ ହେଲେ
ଦେଖିଣ ରାଣୀମାନେ ଦର୍ଶନେ ଆସିଲେ ।
ରାଜା ଆଜ୍ଞା ଦେଲେ ଯିବା ଏହିକ୍ଷଣି
ତେଣୁ ସିଂହଦ୍ୱାରେ ବାଜିଲା ବାଜା ପୁଣି ।
ଏଥୁ ଅନନ୍ତରେ ଶୁଣ ଗୋ ଗଉରୀ
ବାହାର ଜଗତୀରେ ବିଜୟେ ରାଜା କରି ।
ସେବାକରୀ ଲୋକମାନେ ଅଇଲେ ଯେବେବେଗେ
ମାଜଣା ମର୍ଦ୍ଦନ କଲେ ରାଜାଙ୍କ ସର୍ବ ଅଙ୍ଗେ ।
ସୁବାସିତ ନୀରରେ ସ୍ନାହାନ କରାଇଲେ
ଝୀନ ବସନ ଘେନିଣ ପୋଛି ଦେହ ଦେଲେ ।
ବସନ କୁଞ୍ଚି ଦେଇଣ ପିନ୍ଧାଇଲେ
ଦେବାର୍ଚ୍ଚନ ମନ୍ଦିରରେ ରାଜନ ବିଜେକଲେ ।
ତିଳେକ ଲାଗି ହୋଇଲେକ ରାଜନ
ମଣୋହିରେ ବିଜେ କଲେ ଯାଇ ସେ ବହନ ।
ଭୋଜନ ସାରିଣ ଯେ ଆଚମନ କଲେ
ବିଡ଼ିଆ ଭୁଞ୍ଜିଣ ରାଜା ବେଶ ଶୀଘ୍ର ହେଲେ ।
ନବତନ ପାଗ ଯେ ବାନ୍ଧିଲେ ଶିରରେ
ହୀରା ଲୀଳା ଝଲକ ମଥାର ଉପରେ ।

କର୍ଣ୍ଣକୁ କୁଣ୍ଡଳ ଯେ ମୁକୁତା ବୀରବଲ୍ଲୀ
ଚନ୍ଦ୍ରର ଫାସିଆରେ ଲାଗିଛି ହୀରା ଜାଲି ।
ଫିରିଫିରା ସଙ୍ଗତରେ ଲୀଳା ଝଲମଲ
କର୍ଣ୍ଣକୁ କାପଦିଶେ ରବିର ପ୍ରକାର ।
କର୍ଣ୍ଣରେ ଚାପସରୀ ମାଣିକ୍ୟ ମୋତି ଝରା
ପଦକ ଚନ୍ଦ୍ରପରେ ମୁକୁତା କେରାକେରା ।
ହୀରା, ଲୀଳା ମାଣିକ୍ୟରେ ଚୂଡ଼ ଯେ ହସ୍ତେ ଶୋଭା
ବିଦମୁଦି ବାହୁଟି ତେଜ ନୀଳ ପ୍ରଭା ।
ବାହୁରକୁ ତାଡ଼ ବସନ୍ତ ବର୍ଣ୍ଣ ଦିଶେଟି
କୁଙ୍କୁମକୁ ବଳିଶୋଭା ତାହାର ତେଜଗୋଟି ।
କଟୀରେ ମେଖଳା ଯେ ଦିଶେ ଭିନ୍ନଭିନ୍ନ
ନୂପୁର ପାହୁଡ ବଳା ଚରଣେ ଶୋଭାପୁଣ ।
ଆଙ୍ଗୁଠିମାନଙ୍କର ବାଜେଣୀ ଝୁଣ୍ଟିଆ
ପାଦରେ ଅଳତା ଯେ ରୁଧିରର ପ୍ରିୟା ।
ସୁବର୍ଣ୍ଣର ପାଦୁକା ଲଗାଇଲେ ପୁଣ
ରତ୍ନ କାଞ୍ଚଲାମାନ ଲଗାଇଲେ ଜାଣ ।
ଅମଳାଣ ପତନୀ ରଙ୍ଗ ଯେ ବସନ୍ତ
କଳା, ନୀଳ, ରଙ୍ଗ, ଶ୍ୱେତପିନ୍ଧି ଚାରି ପ୍ରକାରତ ।
ଉପରେ ଚନ୍ଦ୍ରାତପ ଚାରି ପ୍ରକାରେ ସାଜେ
ନବଯୁବା ରୂପ ଧରିଲେ ସର୍ବେବେଗେ ।
ସୁର, ନର ,କିନ୍ନର, ଋଷି ଯେ ଗଣ ପୁଣ
ଏମାନଙ୍କର ମନ ଟଳିବ ଦେଖିଲେଣ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ରାଜନ ବୋଇଲା ମନ୍ତ୍ରୀକୁ ବେଗକରି ।
ପାଞ୍ଚରଥ ସାଜି ଆଣ ଯେ ଯତ୍ନକରି
ପାଞ୍ଚରଥେ ବସି ଯେ ଭିନ୍ନ ଭିନ୍ନ କରି ।
ଶୁଣିଣ ପାତ୍ର ମନ୍ତ୍ରୀ ଅଣାଇଲେ ରଥ
ଧବଳ ମଣ୍ଡପରେ ବସିଲେ ବଶିଷ୍ଠ ।
ତାଙ୍କପାଖେ କାଶ୍ୟପ ସାମନ୍ତମାନେ ବସି
ଯେସନେକ ଶୋଭାପାଏ ଉଦେହେଲେ ଶଶି ।
ଦେଖିଣ ରାଜନ ଯେ ଭିତର ପୁରକୁ ଗଲେ
ରାଣୀମାନଙ୍କୁ ଯାଇ ଡକାଇ ଆଣିଲେ ।
ଆଗରେ କୈକେୟୀ ପଛରେ କୌଶଲ୍ୟା
ସୁମିତ୍ରା ଶଶିମୁଖୀ ଆସନ୍ତି ଯେ ଧୀରା ।
ବାସନ୍ତ ବର୍ଣ୍ଣରଥେ କୈକେୟୀ ବସେ ଯାଇଁ
ତାରସଙ୍ଗେ ଦୁଇଶତ ପଚାଶ ରାଣୀ ଥାଇଁ ।
ନିଶ୍ଚିନ୍ତରେ ବସନ୍ତେ ପଡ଼େ ଟେରା ବାଡ଼
ଅନେକ ଦାସୀ ବସିଲେ ତାଙ୍କର ସଙ୍ଗରେ ।
ରଙ୍ଗବର୍ଣ୍ଣ ରଥରେ କୌଶଲ୍ୟା ମିଳି
ଦୁଇଶତ ପଚାଶ ରାଣୀ ବସିଲେ ତାଙ୍କୁଘେରି ।
ଚଉପାଶେ ଦାସୀଗଣ ଘେରିରହେ ପୁଣ
କଳାବର୍ଣ୍ଣ ରଥରେ ସୌମିତ୍ରୀ ବିଜେ ଜାଣ ।
ଦୁଇଶତ ପଚାଶ ରାଣୀ ତାହାର ସଙ୍ଗରେ
ଘେରିଣ ବସିଲେ ଯାଇ ରଥର ଉପରେ ।
ଦାସୀମାନେ ଘେନିଣ ଆଲଟ ପଙ୍ଖାବିଞ୍ଚି
ଗଦି ଚାମର ନିରନ୍ତରେ ପକାଉଛନ୍ତି ସଖୀ ।
କେ ଧରେ ବୀଣା କେ ଧରେ ସିତାର
ଘଣ୍ଟି ଘଣ୍ଟି ଘାଗୁଡ଼ି ସେ କଂସାଳ ମର୍ଦ୍ଦଳ ।
ଗାନ୍ଧାର ରାଗରେ ସେ କରନ୍ତି ଗାଉଣା
ଅପସରୀ ଗଣ ମିଳିଲେ କି ଯାଇକିନା ।
ତାଙ୍କର ରଥପରେ ଅପସରୀ ଏକରନ୍ତି ନୃତ୍ୟନାଟ
ଖେମଟା ନାଟର ବାଦ୍ୟର ସ୍ୱର ଶ୍ରେଷ୍ଠ ।
ତିନି ରଥେ ତିନି ଛତି ଆଡେଣୀ ତିନିଗୋଟି
ରଥର ଚିରାଳ ଯେ ଉଡ଼ଇ ଲେଉଟି ।
ନୀଳବର୍ଣ୍ଣ ରଥରେ ବିଜେ ଦଶରଥ
କନକ ଧ୍ୱଜ ବୋଲି ବୋଲାଏ ସେହୁ ରଥ ।
ଆଗରେ ବୀର ବାଜା ଘୋଷଣ ଦେଲେ ପୁଣ
ବାହାର ହେଲେ ରାଜା ସୁମରି ହରି ନାମ ।
ଆଗରେ ବଶିଷ୍ଠ ପଛରେ ପାତ୍ର ମନ୍ତ୍ରୀ
ମଧ୍ୟରେ ଚାରିରଥ ଚଳିଲେ ଧୀର ଗତି ।
ସ୍ୱର ଶଙ୍ଖ କାହାଳୀ ବାଜିଲା ନିରନ୍ତରେ
ହୁଳହୁଳି ଶବଦ ଯେ ପଡ଼େ ତାର ପରେ ।
କଟକ ଭିତରୁ ଯେ ବାହାର ହୋଇଲେ
ଦଶଦିନେ ପାର୍ବତୀ ନଗ୍ରରେ ମିଳିଲେ ।
ଲୋମପାଦ ଆଗରେ ଚାର ଯାଇ କହି
ଅଯୋଧ୍ୟା ରାଜନ ଯେ ଅଇଲେ ଗୋସାଇଁ ।
ଚତୁରଙ୍ଗ ବଳ ଘେନି ଋଷି ରାଣୀହଂସ ।
ତୁମ୍ଭର ସୀମାରେ ମିଳିଲେ ଆସି ସେତ ।
ଶୁଣିକରି ରାଜନ ମନ୍ତ୍ରୀଙ୍କୁ ଆଜ୍ଞା ଦେଲେ
ରଥ ମୋର ସାଜିଆଣ ବୋଲିଣ ବୋଇଲେ ।
ଦଶରଥ ନୃପତି ମିଳିଲେ ମୋର ମିତ
ବାଟରୁ ଯାଇଁ ତାଙ୍କୁ ପାଛୋଟି ଆଣିବାତ ।

ଶୁଣିଣ ପାତ୍ର ମନ୍ତ୍ରୀ ରଥ ସଜ କଲେ
ଚତୁରଙ୍ଗ ବଳ ସହିତେ ସାଜିଲେ ।
ବାଦ୍ୟର ନିଶାଣରେ କମ୍ପିଲେ ବସୁନ୍ଧରୀ
ଉତ୍ସବେ ଆନନ୍ଦ ହେଲେ ସକଳ ନରନାରୀ ।
ଗହଳ ଶୁଣି ଋଷି ପଚାରେ ରାଜାରେ
ଆଜ କିମ୍ପା ଗହଳ ଶୁଭୁଛି ଦାଣ୍ଡରେ ।
ଲୋମପାଦ ବୋଇଲେ ଅଇଲେ ଦଶରଥ
ସେହିରାଜା ଅଟନ୍ତି ତୁମ୍ଭର ଶ୍ୱଶୁର ତ ।
ଋଷ୍ୟଶୃଙ୍ଗ ବୋଇଲେ ତାଙ୍କ ସଙ୍ଗେକେ ଆସିଛନ୍ତି
ଲୋମପାଦ ବୋଇଲେ ବଶିଷ୍ଠ ଋଷି ଛନ୍ତି ।
ଋଷ୍ୟଶୃଙ୍ଗ ବୋଇଲେ ଆମ୍ଭର ସେହୁ ପିତା
ପାଛୋଟି ଯିବା ଆମ୍ଭର ଅଟଇ ବ୍ୟବସ୍ଥା ।
ଶୁଣିଣ ଲୋମପାଦ ଅଣାଇଲେ ଶ୍ୱେତହସ୍ତୀ
ଅମରୀ ଚଢ଼ାଇଣ ନେଲେ ସେ ଝଟତି ।
ଶ୍ୱେତ ହସ୍ତୀ ଉପରେ ବିଜୟ ଋଷ୍ୟଶୃଙ୍ଗ
ପାତ୍ରମନ୍ତ୍ରୀ ବସିଲେ ହସ୍ତୀର କନ୍ଧଭାଗ ।
ରାଣୀହଂସ ବସିଲେ ଏକ ରଥପରେ
ରାଜନ ବସିଲେ ଏକୋଇ ରଥପରେ ।
ନାନାରଙ୍ଗେ ନୃତ୍ୟରଙ୍ଗ କଲେ ନଟକାରୀ
କଂସାଳ ମର୍ଦ୍ଦଳ ବୀଣା ସୀତାର ସ୍ୱର କରି ।
କାହାଳୀ ଶଙ୍ଖ ବାଜିଲାକ ଟାଣ
ହୁଳହୁଳି ନାରୀଗଣେ ରହି ଦେଲେ ପୁଣ ।
ବଡ଼ ସମ୍ଭର୍ବରେ ରାଜା ହୋଇଲେ ବାହାର
ଆଗରେ ଋଷ୍ୟଶୃଙ୍ଗ ପଛରେ ମନ୍ତ୍ରୀବର ।
ମଧରେ ରାଣୀହଂସ ଗଲା ସଙ୍ଗେ ଚଳି
ସରଯୂ ନଦୀ କୂଳରେ ଭେଟ ଯାଇ ପଡ଼ି ।
ବଶିଷ୍ଠ ବୋଇଲେ ତ ଅଇଲେ ଋଷ୍ୟଶୃଙ୍ଗ
ଭଲ ଜ୍ଞାନ ତୋର ହେ ବିଭାଣ୍ଡକ ତନୁଜ ।
କେମନ୍ତେ ଜଣାଗଲା ଉପକାର ତୋତେ
ନୋହିଲେ ସାହା ତୋତେକିହେଲେ ଜଗନ୍ନାଥେ ।
ବଶିଷ୍ଠଙ୍କ ପାଶରେ ଯେ ଋଷ୍ୟଶୃଙ୍ଗ ମିଳି
କରଯୋଡ଼ି ନମସ୍କାର ହୋଇଲେ ବ୍ରହ୍ମଚାରୀ ।
ବଶିଷ୍ଠ ବୋଇଲେ ପୁତ୍ର ସୁକଲ୍ୟାଣ ହେଉ
ତୋହର ନାମଗୋଟି ଯୁଗେ ଯୁଗେ ରହୁ ।
ଶୁଣିଣ ଋଷ୍ୟଶୃଙ୍ଗ ହାତୀରୁ ଓହ୍ଲାଇଲେ
ରଥରେ ଚଢ଼ି କଶ୍ୟପ ଋଷିଙ୍କୁ ମାନ୍ୟକଲେ ।

ବଶିଷ୍ଠ କୋଳେ ନେଇ ବସାଇଲେ ପୁଣ
ଏଥୁ ଅନନ୍ତରେ ଗୋ ଭଗବତୀ ଶୁଣ ।
ଲୋମପାଦ ରଥପରୁ ଓହ୍ଲାଇଣବେଗେ ଗଲେ
ଦଶରଥ ରାଜାଙ୍କୁ ଯେ ଓଳଗି ବେଗେ କଲେ ।
ରାଣୀହଂସ ଓହ୍ଲାଇ ଯେ ରଥପରୁ ବେଗେଗଲେ
କୈକେୟୀ ରାଣୀଙ୍କୁ ଯେ ମାନ୍ୟଧର୍ମ କଲେ ।
ସେ ରଥରୁ ଓହ୍ଲାଇ ମିଳିଲେ ଆର ରଥ
କୌଶଲ୍ୟାଙ୍କୁ ଓଳଗି ହେଲେ ଯେ ସମସ୍ତ ।
କୌଶଲ୍ୟା ବୋଇଲେ ସାଏନ୍ତା ମୋରମାତ
ତୁମ ସଂଗେ ଦୁହିତା ନଥାଏ କିମ୍ପାଇ ତ ।
ଗଂଗା ଯମୁନା ବୋଇଲେ ଅଇଲେ ବରତାର
ଲଜ୍ଜାରୁ ଦୁହିତା ଯେ ନୋହିଲେ ବାହାର ।
ଏତେକହି ସେଠାରୁ ଗଲେ ବେଗହୋଇ
ସୁମିତ୍ରାଙ୍କୁ ଯାଇଣ ଓଳଗି ମେଲାଇ ।
ସୁମିତ୍ରା ବୋଇଲେ ତୁମେ ହୋଇଲେ ପୁତ୍ରବତୀ
ଆମ୍ଭେ ଅଭାଗ୍ୟବନ୍ତ ଅଟୁ ବଡ଼ ଦୁଃଖୀ ।
ଗଂଗା ଯମୁନା ବୋଇଲେ ନୁହ ଗୋଆରତ
ତୁମ୍ଭକୁଳେ ଜାତହେବେ ଅନାଦି ଅଚ୍ୟୁତ ।
ଏତେ କହି ରଥରୁ ଓହ୍ଲାଇ ବେଗେ ଗଲେ
ଆପଣାର ରଥରେ ଯାଇଣ ବସିଲେ ।
ଲୋମପାଦ ଓହ୍ଲାଇ ନିଜ ରଥରେ ବସିଲେ ।
ଋଷ୍ୟଶୃଙ୍ଗ ଓହ୍ଲାଇଣ ହସ୍ତୀପରେ ବସି
ପାତ୍ରମନ୍ତ୍ରୀ ଯାଇଣ ସୁମନ୍ତ୍ର ସଂଗେ ଭେଟି ।
ମାନ୍ୟଧର୍ମ କରିଣ ହସ୍ତୀ କନ୍ଧରେ ବସିଲେ
ଦୁଇକୁଳ ମିଶିଣ ସମ୍ଭର୍ବ ଚଳିଗଲେ ।
ଚମ୍ପାବତୀ କଟକରେ ପଡ଼ି ହାଲ ହୋଳି
ହୁଳହୁଳି ହରିବୋଲ ରାମ ଭାଳିପଡ଼ି ।
ଦେଖନ୍ତି ନରନାରୀ ଆନନ୍ଦରେ ମିଳି
ରାଜାର ସିଂହଦ୍ୱାରେ ମିଳିଲେ ସକଳ ।
ରଥରୁ ଓହ୍ଲାଇଲେ ବଶିଷ୍ଠ କଶ୍ୟପମୁନିବର
ଋଷ୍ୟଶୃଙ୍ଗ ହସ୍ତୀଉପରୁ ଓହ୍ଲାଇଲେ
ପାତ୍ରମନ୍ତ୍ରୀମାନେ ରଥରୁ ଓହ୍ଲାଇଲେ ।
ଲୋମପାଦ ଦଶରଥ ଓହ୍ଲାଏ ରଥରୁ
ସିଂହଦ୍ୱାରଠାରେ ବେରୋବାଡ଼ ପଡ଼ିବାରୁ ।
ଦାସୀଗଣମାନେ ସର୍ବେ ଓହ୍ଲାଏ ରଥର
ରାଣୀହଂସ ଓହ୍ଲାଇଲେ ହରଷ ମନର ।

ଧୀରେ ଧୀରେ ହୋଇ ଯେ କରନ୍ତି ଗମନ
ଆଗରେ ଦାସୀଗଣ ମଣାଇ ନିଅନ୍ତି ପୁଣ ।
ଅନ୍ତଃପୁରେ ଯାଇଣ ହୋଇଲେ ପ୍ରବେଶ
ଦେଖିଣ ଭିତର ପୁର ହୋଇଲେ ହରଷ ।
ସାଆନ୍ତା ଦେଖିଣ ଯେ ହରଷ ହୋଇଲେ
ସକଳ ମାତାମାନଙ୍କୁ ଓଳଗି ମେଲାଇଲେ ।
କୈକୟୀର କୋଳରେ ବସିଲେ ଯାଇକରି
ଦେଖିଣ କୈକୟୀ ଯେ ହରଷ ମନେ ଧରି ।
ଶରୀରେ ଆଉଜାଇଣ ମୁଖେ ଚୁମ୍ବଦେଲେ
ତିନିକୁଳ ଉଦ୍ଧରିଲୁ ବୋଲିଣ ବୋଇଲେ ।
ତୁ ଏବେ କୁଳକୁ କୁମାରୀ ଆମ୍ଭେ ଅନ୍ଧ ଜାଣ
ଚନ୍ଦ୍ରମା ବଦନ ଆଉ ଦେଖିବୁ କି ପୁଣ ।
ଏତେକହି କୈକୟୀ ଯେ ହେଲେ ଶୋକଭର
ସକଳ ରାଣୀ ନେତ୍ରରୁ ବହେ ଅଶ୍ରୁଧାର ।
ସାଆନ୍ତା ବୋଇଲେ ମାତାନୁହଁ ଯେ ବିରସ ।
ହର୍ଷବେଳେ କିମ୍ପାଇ ଲଗାଅ ଶୋକରସ ।
ଜନମ ଦେଲେ ସିନା କର୍ମକି ତୁମ୍ଭେ ଦେଲ
ତୁମ୍ଭର ଗର୍ଭରୁ ଜାତ ମୋତେ ତୁମ୍ଭେ କଲ ।
ରାଜାର କୁଳେ ଜନ୍ମ ଋଷିର କୁଳବଧୂ
ଭଲ ଯୋଗ ମୋତେଗୋ ପ୍ରବେଶହେଲା ଇନ୍ଦୁ
ଶୁଣିଣ ସକଳ ମାତା ତୁପତି ହୋଇଲେ
ସମସ୍ତେ ସାଆନ୍ତାକୁ କୋଳ ନେଇ କଲେ ।
ଏଥୁ ଅନନ୍ତରେ ଶୁଣଗୋ ଭଗବତୀ
ସଭାରେ ବିଜେକଲେ ବେନି ଋଷି ଯେ ନୃପତି ।
ଲୋମପାଦ କହିଲେ ମନ୍ତ୍ରୀଙ୍କୁ ଚାହିଁକିର
ଶଳେକ ଋଷିଙ୍କୁ ତୁମ୍ଭେ ଘେନିଆସ ଧରି ।
ଶୁଣିଣ ପାତ୍ରମନ୍ତ୍ରୀ ଶୀଘ୍ରେ ଚଳିଗଲେ
ଯାନ ପରେ ବସାଇଣ ଋଷିଙ୍କୁ ଆଣିଲେ ।
ସିଂହଦ୍ୱାରେ ଋଷି ଯେ ହେଲେକ ପ୍ରବେଶ
ଯାନରୁ ଉତୁରି ଯେ ଗଲେକ ବିଶେଷ ।
ବଶିଷ୍ଠଙ୍କୁ ଦେଖିଣ ମାନ୍ୟଧର୍ମ କଲେ
ବଶିଷ୍ଠଙ୍କ ସଙ୍ଗରେ ଯାଇଣ ବସିଲେ ।
ଏଥୁ ଅନନ୍ତରେ ଶୁଣଗୋ ଶାକମ୍ବରୀ
ଦଶରଥଙ୍କୁ ଚାହିଁଣ ଋଷ୍ୟଶୃଙ୍ଗ ପଚାରି ।
ବିଭାଣ୍ଡକ କୁମର ବୋଲେ ଶୁଣ ନୃପନାଥ
ପ୍ରଜାଙ୍କୁ ପାଳ ଟିକି ପୁତ୍ରର ସଞ୍ଜାତ ।

ପାତ୍ରମନ୍ତ୍ରୀ ଅଗଣନା ଅଛନ୍ତି ତୁମ୍ଭରି
ଅମନାତ୍ୟମାନେ ଟିକି ଅଛନ୍ତି ସେବାକରି ।
ଗଜ ଅଶ୍ୱ ବହୁତ ଅଛନ୍ତି ତୁମ୍ଭରି
ଅମାନତ୍ୟମାନେ ଟିକି ଅଛନ୍ତି ସେବାକରି ।
ଗଜ ଅଶ୍ୱ ବହୁତ ଅଛନ୍ତି ସମ୍ଭାଳି
ସାମନ୍ତ ପାତ୍ରମନ୍ତ୍ରୀମାନଙ୍କର ବିଚାର କିପରି ।
ଘର ଦେଶ ବାର୍ତ୍ତା ମିଳଇଟିକି ପ୍ରତିଦିନ
ତିନି ଶାସ୍ତ୍ର ପଢି ଆଚାର ଟିକି ସର୍ବଦିନ ।
ପାତ୍ର ମନ୍ତ୍ରୀ ତୁମ୍ଭର ଅଛନ୍ତିଟି କି ସୁବୁଧି
ଚୋର ଖଣ୍ଡମାନଙ୍କୁ ଦଣ୍ଡ ଦିଅନ୍ତିଟିକି ନିରୋଧି ।
ବ୍ରାହ୍ମଣେ ପଢନ୍ତିକି ବେଦ ଶାସ୍ତ୍ରମାନ
ସାଧବମାନେ ନିତି ଦିଅନ୍ତିକି ଧନ ।
ପୁତ୍ରେ କରନ୍ତି କି ମାତା ପିତା ସେବା
ସବୁରି ହୃଦରେ ଅଛିଟିକି ଦୟାଭାବ ।
ନଗ୍ର ନରନାରୀ ଅଟନ୍ତି ଶୋଭାବନ
ଯଥାକାଳେ ଜଳବୃଷ୍ଟି କରେକି ଇନ୍ଦ୍ରରାଜପୁଣ ।
ଅନ୍ତଃପୁର କଥା ଗଲେ ବୁଝଟିକି ନୃପତି
ଦେଶ ଶେଷରେ ତୁଣ୍ଡ ନକରଟିକି ମହୀପତି ।
ବର୍ଷାକାଳେ ନଦୀରେ ପକାଅଟିକି ନାବ
ତସ୍କର ସଙ୍ଗେ ସୃଜନ ନୋହେଟିକି ଭାବ ।
ପତି ସଙ୍ଗେ ଭକ୍ତି ଟିକି ହୁଅନ୍ତି ଯୁବତୀ
ବିଶ୍ୱାସ ଲୋକ ସଙ୍ଗରେ ହୁଏନା ପୀରତି ।
ବୈଦ୍ୟମାନେ ଶାସ୍ତ୍ରପଢ଼ି ଜଗନ୍ତିଟିକି ବ୍ୟାଧି
ମଲୁକୁ ଚିହ୍ନିଣଟି ଦିଅନ୍ତି ମୌଷଧି ।
ତପୀଜନ ଦେଖିଲେ ଯେ ଆଦରଭାବ ବିଧି
ବିଚାରି ଭୃତ୍ୟମାନଙ୍କୁ କହିବଟି ବୁଦ୍ଧି ।
ସେବକ ସେବାକଲେ ନୁହଁନା ବିମୁଖ
ସଂଗ୍ରାମେ କ୍ଷେତ୍ରୀ ସଙ୍ଗେ କରଟିକି ଆଣ୍ଠୁ ।
ଦେବତାରେ ପୂଜା ଯେ ବିପ୍ରରେ ଦିଅ ଦାନ
କୁଳରେ ଲୋକମାନେ ରଖନ୍ତିଟିକି ଧର୍ମ ।
ନଗ୍ରର ପରିମଳେ ଫଳନ୍ତିଟିକି ତରୁ
କୃଷିକାରୀମାନେ ଅଛନ୍ତି ନା ହନ୍ତକାରୁ ।
ଅପନ୍ତରାବାଟେ ଦିଅନ୍ତି ଟିକି ପାଣିଦାନ
ପ୍ରସାଦ ଅଙ୍ଗୀକିଅଛନ୍ତି ନା ରାଜ୍ୟେ ତୁମ୍ଭର ଜାଣ ।
ବନ୍ଧୁମାନେ ଆସିଣ ସଙ୍ଗୋଳନ୍ତିଟିକି ପୁଣ
ସାଧୁ ଖଟଇଟିକି ଧନବନ୍ତ ଘର ଜାଣ ।

ସୁସ୍ୱାଦୁ ଜଳ ମିଳଇଟିକି ସେହୁ ଦେଶେ
ଭୃତ୍ୟଜନେ ମାୟା ନକରନ୍ତି ତୁମ୍ଭ ପାଶେ ।
ଦେବଆଳେ ଗ୍ରାମଲୋକେ କରନ୍ତିଟିକି ଗୋଷ୍ଠୀ
ପୁତ୍ର ଥିବାରେ ମାତା ପିତା ନୁହନ୍ତିନା କଷ୍ଟୀ
ଦରିଦ୍ରରେ ଦୟା କରନ୍ତିଟିକି ସାଧୁ
ଲଜ୍ୟାବନ୍ତରେ ଅଛନ୍ତିଟିକି କୁଳବଧୂ ।
ଔଷଧିରେ ରୋଗମାନେ ହୁଅନ୍ତି ଟିକି ରକ୍ଷା
ଶିଷ୍ୟମାନେ କରନ୍ତିଟିକି ଗୁରଙ୍କର ଦୀକ୍ଷା
ନିତ୍ୟୋନି ବ୍ରାହ୍ମଣଙ୍କୁ ଭୋଜନ ଦିଅଇଟିକି
× × ×
ରାଣୀମାନେ ମହାଦେଈ ଯେ ଦାସୀଗଣମାନେ
ଶୁଭେଣ ଅଛନ୍ତିଟିକି ଶୁଣ ହେ ରାଜନେ ।
କଟୁଆଳେ ନଗ୍ରେ ଚୋର କରନ୍ତିଟିକି ରକ୍ଷା
ଶତ୍ରୁଙ୍କଠାରେ ଚୋର ଥାଇଟିକି କକ୍ଷା ।
ଦାସୀଙ୍କ ସଙ୍ଗେରାଣୀମାନେ ନକରନ୍ତିନାକେଳି
ଶୁଭରେ ଅଛନ୍ତିଚୋର ନଗ୍ରରେ ଯେତେନାରୀ ।
ମଢିଆଳି ନିତି ଖଟେଟିକି ରଜକାରୀ
ପରିବାରୀ ସେବା କରନ୍ତିଟିକି ଅବିଳନଧରି ।
ତୁମ୍ଭର ପୁତ୍ର ପୌତ୍ରୀ ଅଛନ୍ତି କେତେ ରାଜନ
ପୁତ୍ରମାନଙ୍କୁ ମାତାମାନେ ପରଷନ୍ତିଟିକି ଅନ୍ନ ।
କରଯୋଡ଼ି ଦଶରଥ କହନ୍ତି ବଚନ
ତୁମ୍ଭ ପ୍ରସାଦରେ ସକଳ ସୁଖ ଜାଣ ।
ବଳରାମ ଦାସ ସେବେ ଶ୍ରୀହରି ଚରଣ
ନୀଳଗିରି ନାଥ ମୋତେ ସୁଦୟା କଲେ ପୁଣ
ସେ ମୋହର ପ୍ରଭୁ ଯେ ମୁଁ ତାଙ୍କର ଭୃତ୍ୟ
ବଳରାମ ଦାସଙ୍କୁ ରଖହେ ଜଗନ୍ନାଥ ।
ପାର୍ବତୀବୋଇଲେ ତୁମ୍ଭେ ଶୁଣହେ ତ୍ରିଲୋଚନ
ସେଠାରୁ କିସ ହେଲା କହ ଦେବ ପୁଣ ।
ଶଙ୍କର ବୋଇଲେ ତୁମ୍ଭେ ଶୁଣଗୋ ମହାଦେଈ
ଋଷ୍ୟଶୃଙ୍ଗ ପଚାରିବାରୁ ଯେ ଦଶରଥ କହି ।
ଭୋଦେବ ମୁନିବର ପଚାରିଲେ ମୋତେ
ତୁମ୍ଭର କଲ୍ୟାଣରୁ ସମସ୍ତେଛନ୍ତି ସୁଖେ ।
ପୁତ୍ରବୋଲି ଯାହା କହିଲ ତପଚାରୀ
ଅପୁତ୍ରିକ ହୋଇ ମୁଁ ଯେ ଅଛି ଦେହଧରି ।
ନବସହସ୍ର ବର୍ଷ ମୁଁ ଯେ ଭୋଗ କଲି
କର୍ମର ଦୁର୍ବଳରେ ପୁତ୍ର ନ ପାଇଲି ।
ନିର୍ଲ୍ଲଜ୍ଜ ଜୀବନ ମୋର ନଯାଏ ଦେହଛାଡ଼ି
ଅଭିମାନ ସମୁଦ୍ରରେ ଅଛଇଁ ମୁହିଁ ବୁଡ଼ି ।
ତୁମ୍ଭଙ୍କୁ ଦେଖିବାରୁ ହେ ବିଭାଣ୍ଡକ ସୁତ
ମୋହଠାକୁ ଦୂତ ଯେ ପଠାଇଲେ ମିତ ।
ଯେତେବେଳେ ଦର୍ଶନ କଲଇଁ ମୁଁ ତୋତେ
ପୁତ୍ର ଲାଭ ମୋତେ ଯେ ହୋଇଲା ପ୍ରାପତେ ।
ମୋହଠାରୁ ପୁଣି ସରଇ ମୋର ବଂଶ
ପୁତ୍ର ନଥିବାରୁ ମୋର ଜୀବନ ଅସ୍ୱାର୍ଥ ।
ଦୁହିତା ଗୋଟି ପାଇଲି ପୁଣ ପୁଣ୍ୟେ
ସେହି ସେ ପ୍ରଦାନ ନୋହିଲା ସେ ଅନ୍ୟେ ।
ଏଗାର ବର୍ଷ ହୋଇଲା ଅଟଇ ନବ ଯୁବା
କେଉଁ ଦୁର୍ଯ୍ୟୋଗରୁ କନ୍ୟା ନୋହିଲାକ ବିଭା ।
ଯୁବା ହେବାରୁ ଖୋଜିଲି ନ ମିଳିଲେ ବର
ମନେ ବିଚାରିଲି ମୁଁ କରିବି ସ୍ୱୟମ୍ବର ।
ଏମନ୍ତ ବିଚାରିବାରୁ ଅଇଲେ ନାରଦ
ତାଙ୍କ ଆଗେ କହିଲି ମୁଁ ସକଳ ସମ୍ବାଦ ।
ସେ ବୋଇଲେ ଏକନ୍ୟାକୁ ମୋପୁତ୍ର ହେବ ବିଭା
ଋଷିର ଭାରିଜାକୁ ରାଜାର କି ପ୍ରଭା ।
ମୁଁ ବୋଇଲି ତୁମ୍ଭର ନାହିଁ ଯେ କୁମର
ସେ ବୋଇଲେ ପୁତୁରା ଋଷ୍ୟଶୃଙ୍ଗ ମୋର ।
କନ୍ୟାକୁ ଅଟକିଣ ସ୍ୱର୍ଗପୁରେ ଗଲେ
ଛଡ଼ମାସ ହେଲା କନ୍ୟା ଅଛି ତା ଆଶାରେ ।
ଋଷ୍ୟଶୃଙ୍ଗ ବୋଇଲେ ସେକନ୍ୟାମୋତେବରି
ସେହିଦିନବିଭା ହୋଇଥାନ୍ତା ବଟେ ଦଣ୍ଡଧାରୀ ।
ବଶିଷ୍ଠ ନାରଦ ଯେତେ ଋଷ୍ୟଶୃଙ୍ଗଗଣ
ସମସ୍ତଙ୍କ ପୁତ୍ର ମୁଁ ପିତା ମୋର ଜାଣ ।
ରାଜନ ବୋଇଲେ ଆକୁଳ ମୋର ମତି
ଯେଣୁ ପୁତ୍ର ସମ୍ପାଦି ନାହିଁ ହେ ମୋର ମତି ।
ଋଷ୍ୟଶୃଙ୍ଗ ବୋଇଲେ ବିସ୍ମୟନୁହଁ ହେନୃପତି
ପୁତ୍ର ଲାଭ କରାଇବା ଥାଏ ଜରମତି ।
ପୁତ୍ରର ନିମିତ୍ତେ ଭୟ ନକର ତୁମ୍ଭେ କିଛି
ପୁତ୍ର ପ୍ରାପତ ଯେ ତୁମ୍ଭର କର୍ମରେ ପୁଣ ଅଛି ।
ଆରତ ନହୁଅ ତୁମ୍ଭେ ଅଳପ ଦିନ ରହ
ବର୍ଷକ ଭିତରେ ପ୍ରାପତ ହେବ ପୁଅ ।
କନ୍ୟାକୁ ବିଭାକର ତୁମ୍ଭେ ହେ ଆମ୍ଭଙ୍କୁ
ଦଶରଥ ବୋଲେ ବରିଅଛି ଯେ ତୁମ୍ଭଙ୍କୁ ।

ନାରଦ ଆକଟ କଲେ ତୁମରି ସକାଶେ
ହରଷେ ବିଭା ଦେବି ଉତ୍ସବ ପ୍ରବେଶେ ।
ସାତଶ ପଚାଶ ମହାଦେଈ ଯେ, ମୋହର
ବୃହସ୍ପତି ପଞ୍ଚମ ଯେ, ଗଲେଣି ସମ୍ବତ୍ସର ।
ଋଷ୍ୟଶୃଙ୍ଗ ବୋଇଲେ ମୋର ଆରଦ୍ରା ମିଥୁନ
ସପ୍ତମ ବୃହସ୍ପତି ହୋଇଛି ମୋତେ ପୁଣ ।
ବଶିଷ୍ଠ ବୋଇଲେ ସେ କଥା ଭଲ ଜାଣ
ଉଭୟ କୁଳେ ପ୍ରୀତି ବଞ୍ଚିବ ଦିନୁଁ ଦିନ ।
ବିଗତର ଦୋଷ ଯେ ଅଭିନ୍ନ କରିବ
ଗୁଡ଼, ଦାନଦେଲେ ଯେ, ସେଥିରୁ ଦୋଷ ଯିବ ।
କନ୍ୟାର ପଞ୍ଚମରେ ଅଛନ୍ତି ଦିନମଣି
ଆମ୍ଭଙ୍କୁ ଦଶମ ଯେ, ଦୋଷ ଗଲା ଜିଣି ।
ସଙ୍କରାନ୍ତି ସତାଇସି ଦିନ ଭୋଗକଲା
ମିଥୁନ ରାଶିକୁ ଗୁରୁ ସପ୍ତମେ ରହିଲା ।
ଆମ୍ଭକୁ ସପ୍ତମ କନ୍ୟାକୁ ପଞ୍ଚମ
ଆମ୍ଭଙ୍କୁ ପ୍ରଶସ୍ତ ହେଲା କନ୍ୟାକୁ ହେଲାକ୍ଷମ ।
ବୁଧ ଚନ୍ଦ୍ର ଏକ ଯେ ଆସନରେଛନ୍ତି
ରାହୁଗ୍ରହ ରହିଛନ୍ତି ଏହାଙ୍କର କତି ।
ଶନିଶ୍ଚର ରହିଛନ୍ତି ବୃଷରେ ବିଜେକରି
ବିଛାରେ ରହିଛନ୍ତି କେତୁ ଦେହଧରି ।
ଯାଙ୍କର ସଙ୍ଗରେ ଅଛଇଁ ଭୂମିବତ୍ସ
ଦୋଷକୁ ଦେଖିଣ ଦୁହିତା ପ୍ରତ୍ୟକ୍ଷ ।
ବିଶେଷେ ଆମ୍ଭେ ପୁଣି ଅଛଇଁ ତପୀଜନ
ଆମ୍ଭଙ୍କୁ କାଳବେଳେ ନାହିଁଟି ରାଜନ ।
ଦେବ, ଅସୁର ବିପ୍ର କ୍ଷତ୍ରୀ ଋଷି ପୁଣ
ଏମାନଙ୍କର ରାଶି ନକ୍ଷତ୍ରଶୋଧି ନପାରନ୍ତିପୁଣ
ବଳେ ଆମ୍ଭଙ୍କୁ ଦଣ୍ଡି ନପାରନ୍ତି ଦଣ୍ଡଧାରୀ
ଏଥିରେ ସଂଶୟ ଯେ ନାହିଁଟି ଆମ୍ଭରି ।
ଦଶରଥ ବୋଇଲେ ଯେ ତୁମ୍ଭର ବିଚାର
ସେ ଆମ୍ଭଙ୍କୁ ଶୁଭଯୋଗ ହୋଏ ଲଗ୍ନସାର ।
ଲୋମପାଦ ରାଜନ ଯେ, ଏହି କଥା କହି
ଶୁଣିଣ ଋଷ୍ୟଶୃଙ୍ଗ ଯେ ହରଷ ମନ ହୋଇ ।
ଦୁଇ ରାଜା କହିଣ ଭିତର ପୁର ଗଲେ
ବାର ବନିତା ଭିତର ପୁରକୁ ଚଳିଗଲେ ।
ଗୌରୀ ଆଗରେ ଶଙ୍କର ଏହା କହିଲେ
ଶୁଣିଲଟିକି ତୁମ୍ଭେ ମନ ନିଶ୍ଚଳରେ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ବିଶ୍ୱନାଥ
ଋଷ୍ୟଶୃଙ୍ଗ ବିଭା ମୋତେ କହିବ ତପୋବନ୍ତ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ସାଏନ୍ତା ଋଷ୍ୟଶୃଙ୍ଗର ବିଭା ଯେଉଁ ରୀତି ।
ଲୋମପାଦ ଦଶରଥ ଉଠିକରି ଗଲେ
ଖଣ୍ଡେଦୂରେ ରହିଣ ବିଚାର ପୁଣି କଲେ ।
ସୁଲଭରେ ବିଭାଘର ଆମ୍ଭେ କରିବା ପୁଣ
ଏମନ୍ତ ବିଚାର ଯେ କଲେ ଦୁଇଜଣ ।
ସେଠାବରେ ଋଷ୍ୟଶୃଙ୍ଗ ମିଳିଲେକ ଯାଇଁ
ଦେଖିଲେ ଦୁଇ ରାଜା ବସିଣ ଅଛଇଁ ।
ମୁନି ପଚାରିଲେ କିସ ତୁମ୍ଭେ ଭାଳ
ଦେଖିଣ ବେଗେ ଉଠିଲେ ଦୁଇ ମହୀପାଳ
ବେନିକର ଯୋଡ଼ିଣ ଯେ, ଲୋମପାଦ କହି
ଆଉ କିସ ବିଚାର କରିବୁ ଗୋସେଇଁ ।
ଯେତେବେଳୁ ଦୁହିତା ବରଣମାଳା ଦେଲା
ସେତେବେଳୁ ଆମ୍ଭର ବୁଦ୍ଧି ଯେ ସରିଲା ।
ପାଞ୍ଚ ସାତ ଦିନ ସମ୍ଭାଳ ଯେ ପୁଣି
ରାଜା ବନ୍ଧୁମାନଙ୍କୁ ନିମନ୍ତ୍ରି ଅଛୁ ପୁଣି ।
ସେମାନେ ଆସିଲେ କରିବା ବିଭାଘର
ନଆସୁ କଲେ ରାଜା କରିବେ ନିନ୍ଦା ବିଚାର ।
ଋଷ୍ୟଶୃଙ୍ଗ ବାଣୀ ଶୁଣି ରାଜନ ବୋଇଲେ
ଯୋଗାଯୋଗନଥିଲେ କି କିସହେବ କଲେ ।
ଆମ୍ଭର ପରମ ଭାଗ୍ୟ ଏବେ ଯେ ହୋଇଲା
ଋଷ୍ୟଶୃଙ୍ଗ ଯେଣୁ ଆମ୍ଭର ଜୁଆଇଁ ହୋଇଲା
ଏଥିଅନନ୍ତରେ ଦିବସ ହେଲା ଶେଷ
ଅସ୍ତ ଗିରିକୁ ଚଳିଲେ କାଶ୍ୟପର ଶିଷ୍ୟ ।
ବିଭାଣ୍ଡକ କୁମର ବଶିଷ୍ଠ ସଙ୍ଗେ ମିଳେ
ଦଶରଥଙ୍କୁ ଧରିଣ ଗମନ ପୁଣ କଲେ ।
ସଂଧ୍ୟା ତର୍ପଣ ଯେ ସୁମରଣା କଲେ
ଅମୃତ ଭୋଜନ କରି ପଲଙ୍କେ ଶୋଇଲେ ।
ପାତ୍ର ମନ୍ତ୍ରୀ, ଋଷିଙ୍କୁ ଭୋଜନ ନେଇଦେଲେ
ମିଠାଇ ଶାଟି, କନ୍ଦ ନେଇ ସମର୍ପିଲେ ।
ଆମ୍ବ ପଣସ ଯେ ନଡ଼ିଆ, ତାଳରସ
ଦଧି ଲବଣୀ ସର ଦୁଧ ଘୃତ ରସ ।
ଲେମ୍ବୁ, କରମଙ୍ଗା ଡାଳିମ୍ବ କମଳା ।
ପାଚିଲା କଦଳୀ ଟଭା ଦେଲେ ନେଇପରା ।

ଚାରି ଋଷି ହୋଇଲେ ପୂଜାରେ ନିଯୁକ୍ତ
ବଶିଷ୍ଠ ବୋଇଲେ ଅଣାଅ ଜଉତିଷ ।
ରାଜାର ଆଜ୍ଞାରେ ଡାକିଲେ ଜ୍ୟୋତିଷ ବୁଝିତେ ।
× × ×
ବର ରାଶି କନ୍ୟା ରାଶି ଦୁହିଁଙ୍କୁ କଲେ ଠୁଳ
ବିଭା ବୁଝିବାରେ ଯେ ହେଲେ ତତପର ।
ବୋଇଲେ ଆଜ ଦିନ ନହେଲେ ଦ୍ୱାଦଶ ଦିନ
ବିଭାଘର ହେବ ଦଧିଚନ୍ଦ୍ର ନେଲେ ଦାନ ।
ଗୁଡ଼ ଦାନ ଦେଲେ ସେହିଦିନ ବିଭାଘର
ଏକଥାକୁ ବିଚାର ଯେ, କଲେ ନୃପବର ।
ଲୋମପାଦ ଦଶରଥ ହାତଯୋଡ଼ି କହି
ବାରଦିନ ରହୁ ଏବେ ବିଭାଣ୍ଡକ ତନୟୀ ।
ବନ୍ଧୁବର୍ଗ ଆସିବେ ଆସିବେ ରାଜାମାନ
ଆଜ ବିଭାଘରେ କଲେ ନିନ୍ଦା ହେବ ପୁଣ ।
ବୋଲିବେ ଆମ୍ଭଙ୍କୁ ଆମନ୍ତ୍ରଣ ରାଜାକଲେ
ଆମ୍ଭେ ନଯାଉ ସେ ବିଭାଘର ବଢ଼ାଇଲେ ।
ଆଜ ଦିନ ନେବ ଦାନ ସେଦିନ ନେବ ଦାନ
ଦୁଇଦିନ ସରି ଏକେ ହୋଇବ ଯେ ପୁଣ ।
ଋଷ୍ୟଶୃଙ୍ଗ ବୋଇଲେ ଯେ ତୁମ୍ଭମନକୁ ଅଇଲା
ବାରଦିନ ଘୁଞ୍ଚିଗଲେ ବିଭାଘର ହେବ ପରା ।
ଶୁଣିଣ ଦଶରଥ ସୁମନ୍ତ୍ର ଡକାଇଲେ ବେଗ
ବୋଇଲେ ବିଭାଘର ରହିଲା ବାରଦିନ ଯୋଗ ।
ଏଥୁଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ରାଣୀହଂସ ସାତ ଦିନ ଏକମେଳ ହେରି ।
ସାତ ଦିନ ଉତାରୁ ଅଯୋଧ୍ୟା ରାଣୀହଂସ
ନୂଆବରରେ ହେଲେକ ପ୍ରବେଶ ।
ଲୋକବାକ ପଏକାର ହାତୀ, ରଥୀ ତୁଳେ
ପାତ୍ର ମନ୍ତ୍ରୀ ସହିତେ ରହିଲେ ଯେଝା ଘରେ ।
ଚମ୍ପାବତୀ ଦେଶରାଜା ଲୋମପାଦ ପୁଣ
ଅଇଲେ ବନ୍ଧୁବର୍ଗ ସକଳ ଏବେ ଜାଣ ।
ଦୁଇ ସହସ୍ର ବନ୍ଧୁଙ୍କୁ ନିମନ୍ତ୍ରଣ ଥିଲା
ସମସ୍ତେ ଚମ୍ପାବତୀ ଦେଶରେ ମିଳିଲେ ପରା
ଦଶରଥ ରାଜାର ଅଇଲେ ବନ୍ଧୁବର୍ଗ
ଚମ୍ପାବତୀ ଦେଶରେ ମିଳିଲେ ଆସିବେଗ ।
ପାତ୍ର ମନ୍ତ୍ରୀ ବେନି ପୁତ୍ର ରାଜା ଯେ, ବରିଲେ
ଦଶ ସହସ୍ର ରାଜା ଘେନି ପ୍ରବେଶ ଆସି ହେଲେ ।

ଲୋମପାଦ ରାଜନ ତାଙ୍କୁ ଠାବ ନେଇଦେଲା
ବନ୍ଧୁବର୍ଗ ସମସ୍ତଙ୍କୁ ନେଇଣ ରଖାଇଲା ।
ଗହ ଗହ ଶବଦ ଯେ ଚମ୍ପାବତୀ ପୁର
ସିନ୍ଧୁ ଉଛୁଳିଲା ପ୍ରାୟେ ଶବଦ ମହାଘୋର ।
ପାତ୍ର ମନ୍ତ୍ରୀପଠାଇ ଯେ ଲୋମପାଦ ରାୟେ
ସକଳ ରାଜାମାନଙ୍କୁ ବିଚାର କରାଏ ।
ଦଶଦିନ ସମସ୍ତେ ରୁଣ୍ଡ ହେଲେ ପୁଣ
ବିଭା ଘର ଦୁଇ ଦିବସ ଅଛି ସେଥି ଜାଣ ।
ଦେଖା ଦେଖି ହୋଇ ଅଭିମାନ ସବୁ ସାରି
ନବର ଉଆସେ ସର୍ବ ରହିଲେ ଯେ ପୂରି ।
ଋଷ୍ୟଶୃଙ୍ଗ ମୁନିଙ୍କି ମାନ୍ୟଧର୍ମ କଲେ
ଧନ ଜନ ଲାଭ ହେଉ କଲ୍ୟାଣ ବାଞ୍ଛିଲେ
ଶୁଣିଲଟିକି ହେ ହେମବନ୍ତର ଦୁହିତା
ଶ୍ରୀରାମ ଜନ୍ମ ହେବାର ଏମନ୍ତ ବ୍ୟବସ୍ଥା ।
ଶଙ୍କର ବଚନ ଶୁଣି ବୋଇଲେ ଗଉରୀ
କେମନ୍ତେ ବିଭାହେଲେ କହ ତ୍ରିପୁରାରୀ ।
ବିଭାଣ୍ଡକ ଅଇଲେକି ନ ଅଇଲେ କହ
ଏହିଠାରେ ରହୁଛି ତ କଥାର ସନ୍ଦେହ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ତୁମ୍ଭେ ଯାହା ପଚାରିଲ ମୁଁ ତାହା କହୁଛି ।
ଏଥୁଅନନ୍ତରେ ତୁମ୍ଭେ କହ ଶାକମ୍ଭରୀ
ଋଷ୍ୟଶୃଙ୍ଗ ମୁନିଙ୍କି ଚରିତ ଯଥା ବରି ।
ବିଭାଣ୍ଡକ ମଢିଆକୁ ଅଇଲେ ସଂଧ୍ୟାସମୟକୁ
ଦେଖିଲେ ସୁରଭି ରକ୍ଷା କରିଛି ମଠକୁ ।
ଦେଖିଲେ ମଢ଼ିଆ ଗୋଟି ଅଛି ଶୂନ୍ୟ ହୋଇ
ପୁତ୍ରକୁ ନ ଦେଖି ମୁନି ଗଲେ ମୋହ ହୋଇ ।
ଅସାଷ୍ଟମେ ମୁନି ସୁମରେ ପୁତ୍ରକୁ
ବୋଇଲେ କିଏ ନେଲା କୁଳ ପ୍ରଦୀପକୁ ।
କେଣେ ଗଲୁ ବାବୁରେ ନ କହି କରି ମୋତେ
ଅନେକ ଦୁଃଖରେ ମୁଁ ପାଇଥିଲି ତୋତେ !
ବ୍ରହ୍ମ ଋଷି ସଙ୍ଗତରେ ହୋଇଲୁ ଗଣିତା
ତୋତେ ପ୍ରଶଂସା କରଇ ବାବୁରେ ବିଧାତା ।
ପ୍ରସନ୍ନ ହୋଇ ତୋତେ ଇନ୍ଦ୍ର ଦେଲେ ବର
ବାଳୁଙ୍କା ପୂଜିଲେ ବିଜେ କରନ୍ତି ଈଶ୍ୱର ।
ତପ ନିର୍ଜିତ ଯେ ସୂର୍ଯ୍ୟମୟେ ତନୁ
ବ୍ରହ୍ମଜ୍ଞାନ ମାତ୍ରକେ ନ ଜାଣୁ ଏଣୁ ତେଣୁ ।

ଚଉକତି ବନସ୍ତ ଯେ ନଦୀ ଦେଶ ଗ୍ରାମ
କେଣେ ଛାଡ଼ିଗଲୁ ପୁତ୍ର ଅଭିନବ କାମ ।
ଶୋଭାମୁନି ଆସିଥିଲେ ବୋଲିଣ କହିଲୁ
ପିଚାଶିନୀ ଦେଖି କି ମାୟାରେ ମୋହଗଲୁ ।
କପଟରେ ରାକ୍ଷାସୁଣୀ ମୁନିଙ୍କୁ ଭକ୍ଷନ୍ତି
କେଣେଗଲୁ ପବିତ୍ର ମାୟାବନ୍ତ ତୁଟି ।
ବାଳୁତ କାଳରୁ ମୁଁ ଯେ ପାଳିଲଇଁ ତୋତେ
ତୋହର ପ୍ରାୟେକ ପୁତ୍ରକେହୁ ଦେବ ମୋତେ ।
କାହାକୁ ପୁଛିବି ମୁଁ ଯେ ପର୍ବତ କନ୍ଦର
ଭୋକକି ଲାଗିଲା ମୁନିଙ୍କୁ ଖୋଜନ୍ତି କୁମର ।
ଆହାର ନ କଲେ ମୁନି ମନେ ସୁଖ ନାହିଁ
ଜପ ମନ୍ତ୍ର ତପ ଯେ ନକଲେ ତପି ହୋଇ ।
ରଜନୀରେ ନିର୍ବିକାର ହୋଇଣ ଶୋଇଲେ
ଆରଦିନ ପ୍ରଭାତରୁ ବାରତା ପାଇଲେ ।
ଶଙ୍କରବୋଇଲେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ
ଜରତା କାମମୋହିନୀ ମାୟାରେ ନେଲେ ହରି ।
ଚମ୍ପାବତୀ ରାଜ୍ୟକୁ ଆଣିବାର ପାଇଁ
ଅନେକ ଛାୟାମାୟା ଯେ ମୁନିଙ୍କୁ ଦେଖାଇ ।
ମାୟାରେ ରତିଲୀଳା ମୁନିଙ୍କ ସଙ୍ଗେ କଲେ
ଅଜୟେ ବୀର୍ଯ୍ୟମୁନି କ୍ଷୟ କରି ନପାରିଲେ ।
ସେ ବେନି କାମିନୀ ଯେ ହେଲେ ଗର୍ଭବାସ
ସେହିଦିନ ଜାତ ହେଲେକ ବେନିଶିଷ୍ୟ ।
ଋଷି ଜାଣିପାରିବାରୁ ମନେ କୋପ ହେଲେ
ପିତାଙ୍କର ଆଶ୍ରମକୁ ଯାଅ ବୋଲି ଆଜ୍ଞାଦେଲେ ।
ନାବ ପରେ ନାରୀ ଗଲେକ ବେଗ ହୋଇ
ବିଭାଣ୍ଡକ ଆଶ୍ରମରେ ମିଳିଲେକ ଯାଇଁ ।
ନିମ୍ବ ଗଛ ମୂଳରେ ରାତ୍ରରେ ରହିଲେ
ପ୍ରଭାତେ ନାରଦଯାଇଁ ପ୍ରବେଶ ହୋଇଲେ ।
ବିଭାଣ୍ଡକ ଦେଖିଣ ରୋଦନ କଲେ ଜାଣ
ନାରଦ ବୋଇଲେ କିମ୍ପା ଶୋକ ଅକାରଣ ।
ବିଭାଣ୍ଡକ ବୋଇଲେମୋର ପୁତ୍ର କେଣେ ଗଲା
ନାରଦ ବୋଇଲେ ଯେଣେଗଲା ସେ ଭଲହେଲା
ବିଭାଣ୍ଡକ ବୋଇଲେ କହ ମୋତେ ଆଗ
ନାରଦ ବୋଇଲେ ଗଲା ଚମ୍ପାବତୀ ରାଜ୍ୟ ।
ସେ ଦେଶ ଅପାଳକ ବାର ଯେ ବରଷ
ଜଳ ନ ବରଷିବ କହିଲେ ତୋର ଶିଷ୍ୟ ।

ସେ ରାଜ୍ୟ ରାଜ୍ୟର ପୁତ୍ର ନାହିଁ ଜାଣ
ଯାଗ କରି ପୁତ୍ର ନେବେ ସେ ରାଜନ ।
ଦଶରଥ ରାଜା ଯେ ଅଯୋଧ୍ୟା ନୃପତି
ତାହାଙ୍କ କୋଳରେ ଦୁହିତା ଉପୁଜି ।
ଏଗାର ବର୍ଷ ନବଯୁବା ଯେ ସୁନ୍ଦରୀ
ତାହାକୁ ବିଭାହେବ କୁମାର ତୋହରି ।
କୁଳକୁ କୁଳବଧୂ ହେବ ସେହି ପୁଣ
ସେ ରାଜାର ପୁଣ ନାହିଁ ଯେ ନନ୍ଦନ ।
ସେ ରାଜ୍ୟେ ଯାଗ କରି ତାହାଙ୍କୁ ପୁତ୍ର ଦେବେ
ନାରାୟଣ ସେ ରାଜାଘରେ ଜନ୍ମହେବେ ।
ଅସୁର ମାରିବାକୁ ହୋଇଛି ଦେବକୁଟ
ବିଭାଣ୍ଡକ ବୋଇଲେ ଏ ସବୁତୋର କୃତ୍ୟ ।
ମୋହର ଭଲ ହେଲା ତୋହର ସର୍ବନାଶ
କୁଳବଧୂ ଦେଖିଲେ ମୁଁ ହୋଇବି ସନ୍ତୋଷ ।
କୁମର ଭଣ୍ଡିନେଣ ରମଣ କରାଇଲେ
ଦୁଇ ଅପସରୀ ଯେ ସେଥିରେ ବଢ଼ିଲେ ।
ଗର୍ଭବାସ ହୋଇଣ ପ୍ରସବ କଲେ ପୁତ୍ର
ସେ ପୁତ୍ର ଦୁହେଁ ହେବେ ଋଷିକୁଳକୁ ଶ୍ରେଷ୍ଠ ।
ବିଭାଣ୍ଡକ ବୋଇଲେ କହିଲୁ ଆଶ୍ଚର୍ଯ୍ୟିତ
ନାରଦ ବୋଇଲେ ତୋରନାତିକୁ ଯାଇ ଦେଖ ।
ନାରଦ ଆଗ ଗଲେ ବିଭାଣ୍ଡକ ପଛେ
ନିମ୍ବଗଛ ମୂଳରେ ଦେଖିଲେ ସେ ପ୍ରତ୍ୟେକ୍ଷେ ।
ମଠରେ ଆଣିଣ ତାଙ୍କୁ ସ୍ଥାନ ଦେଲେ
ସାତଦିନେ ଦୁଇକନ୍ୟା ସ୍ୱର୍ଗପୁରେ ଗଲେ ।
ଏକୋଇଶ ଦିନରେ କୁମର ନବଯୁବା
ଶତେ ମୁନି ତ୍ରିଥ ମୁନି ନାମହେଲା ପ୍ରଭା ।
ଦୁଇ ନାତି ଘେନିଣ ନିଶ୍ଚିନ୍ତରେ ରହି
ବକ୍ରଋଷି କୁମରକୁ ବିଦ୍ୟା ଯେ ପଢ଼ାଇ ।
ଏଥୁ ଅନନ୍ତରେ ଯେ ନାରଦ ମହାଋଷି
ଋଷ୍ୟଶୃଙ୍ଗ ବିଭା ଜାଣି ପରବେଶ ଆସି ।
ବିଭାଣ୍ଡକଙ୍କୁ କହନ୍ତି ସୁମର ଋଷିଗଣ
ଚମ୍ପାବତୀ ରାଜ୍ୟକୁ ଯିବା ତତକ୍ଷଣ ।
ଦଶରଥ ଦୁହିତା ଋଷ୍ୟଶୃଙ୍ଗଙ୍କୁ ବରି
ସକଳ ରାଜା ସେଥିରେ ମିଳିଲେ ଆସିକରି ।
ନାରଦ ବୋଇଲେ ପୁତ୍ର ବିଭାଘର କାଲି
ସେଠାବକୁ ବେଗେ ଚଳ ହେଳା ଯେ ନକରି ।

ନାରଦ ବୋଇଲେ ଋଷି ସୁମରଣା କଲେ
ନବ ସହସ୍ର ଋଷି ଆସି ତୁରିତେ ମିଳିଲେ ।
ଦେବରଷି ବ୍ରହ୍ମଋଷି ନବସହସ୍ର ଜାଣ
ସୁମରିଲା ମାତ୍ରକେ ପ୍ରବେଶ ହେଲେ ପୁଣ ।
ଯୋଗଳୟ ଛାଡ଼ିଣ ଋଷି ବେଗେ ଉଭାହେଲେ
ନମସ୍କାର କରିଣ ଯେ ସକଳ କହିଲେ ।
କାମଧେନୁ ପ୍ରସାଦରେ ସକଳ ଦ୍ରବ୍ୟ ପୁଣ
ଋଷିଗଣ ଭୋଜନ ଯେ କଲେ ତତ୍‌କ୍ଷଣ ।
ଆଚମନ ସାରିଣ କଷାଫଳ ଖାଇ
ବିଭାଣ୍ଡକ ସଙ୍ଗରେ ସମସ୍ତେ ଚଳିଯାଇ ।
ବେନି ନାଚି ବକ୍ର ଋଷି ରହିଲେ ମଠରେ
ମଠେ ରଖି ବିଭାଣ୍ଡକ ଗଲେ ଯେ ସତ୍ୱରେ ।
ପ୍ରହରକେ ଚମ୍ପାବତୀ ଦେଶରେ ପରବେଶ
ବିଭାଣ୍ଡକ ମିଳିବାରୁ ହାଲହୋଳି ହେଲାଦେଶ ।
ରାଜାମାନେ ପାଛୋଟି ଆସି ଘେନିଗଲେ
ରତ୍ନ ମଣ୍ଡପରେ ନେଇଣ ବସାଇଲେ ।
ଲୋମପାଦ ଦଶରଥ ଚରଣେ ଲୋଟିଲେ
ସକଳ ରାଜା ଆସିଣ ଦରଶନ କଲେ ।
ଶ୍ରାଚି କନ୍ଦ ନବ୍ୟାତ ଫଳମୂଳ ଆଣିଦେଲେ
ସମସ୍ତ ଋଷିଙ୍କୁ ଚରଚା ବେଗେ କଲେ ।
ଭୁଞ୍ଜିଣ ସକଳ ଋଷି ଆଚମନ ସାରି
ବସିଣ ତାମ୍ବୁଳ ଯେ ଭୁଞ୍ଜନ୍ତି ତପଚାରୀ ।
ବିଭାଣ୍ଡକ ବୋଇଲେ ଦଶରଥ ଶୁଣ
କୁଶଳ ଅଛଟିକି ଦୁଇ ଯେ ରାଜନ ।
ଲୋମପାଦ ବୋଇଲେ ସବୁ ଯେ କୁଶଳ
ଯେଉଁଦିନ ଅଇଲେଣି ତୁମ୍ଭର କୁମର ।
ବିଭାଣ୍ଡକ ବୋଇଲେ କାହିଁ ତୁମ୍ଭ ଝିଅ
ବିଭାଘର କେତେଦିନ ଅଛି ପୁଣ କହ ।
ଦଶରଥ କହିଲେ କାଲିର ପ୍ରଭାତେ
ଆଜି ମଙ୍ଗଳ କୃତ୍ୟ କହିଲୁ ପୁଣ ତୋତେ ।
ତୁମ୍ଭେ ତ ସର୍ବଜ୍ଞ ଅଟ ହେ ମୁନିଗଣ
କିସ କହିବି ମୁହିଁ ତୁମ୍ଭେ ତ ସର୍ବଜାଣ ।
ଋଷି ବୋଇଲେ ତୁମ୍ଭ ଦୁହିତା ବେଗେଆଣ
ଦେଖନ୍ତୁ ସର୍ବଋଷି କରନ୍ତୁ କଲ୍ୟାଣ ।
ଶୁଣିଲା ଲୋମପାଦ ବେଗେ ଚଳିଗଲେ
ଶ୍ୱଶୁର ଦେଖିବେ ବୋଲି ବେଗେ ସଜକଲେ ।
ସୁବେଶ କରି କନ୍ୟା ଘେନି ଆସ ବେଗେ
ଦେଖିଣ ସର୍ବଋଷିମାନେ ମନେ ହର୍ଷହେବେ ।
ସନ୍ତୋଷ ହୋଇଣ ଯେ ସୁକଲ୍ୟାଣ କଲେ
ସୁଲକ୍ଷଣୀ ପୁତ୍ରବତୀ ହୁଅ ତୁ ବୋଇଲେ ।
ସୁଲକ୍ଷଣୀ ଚିରଜୀବୀ ପୁତ୍ରବନ୍ତ ହୁଅ
ସ୍ୱଦେହ ଘେନିକରି ସ୍ୱାମୀ ସଙ୍ଗେ ଯାଅ ।
ନମସ୍କାର କରି କନ୍ୟା ଭିତରକୁ ଗଲା
ରବି ଅସ୍ତ ଅନ୍ତେ ରଜନୀ ହୋଇଲା ।
ଲୋମପାଦ ଆଜ୍ଞାଦେଲେ ଶୁଣ ମନ୍ତ୍ରୀବର
ରତ୍ନବେଦୀ ଯତନରେ କରହେ ତିଆର ।
ଋଷିମାନେ ରହିବାକୁ ଦିଅ ସ୍ଥାନ ବେଗ
ସମସ୍ତ ଲୋକ ଦେଖିବେ ବିଭାର ସଂଯୋଗ ।
ଶୁଣି ପାତ୍ରମନ୍ତ୍ରୀ ଯେ ବେଗେ ଚଳିଗଲେ
ରୁଧିର ଗିରିତଳରେ ଋଷିଙ୍କୁ ରଖାଇଲେ ।
ବଶିଷ୍ଠ ସନକ ରହିଲେ ତାଙ୍କ ପାଶେ
ସୁମନ୍ତ ରହିଲେ ଚରଚାର ଆଶେ ।
ରାଜାର ବିଚାରରେ ରହିଲେ ସୁମନ୍ତ
ପାତ୍ର ମନ୍ତ୍ରୀ ଚରଚାରେ ରହି ସର୍ବଲୋକ ।
ବିପ୍ରଙ୍କ ଚରଚାରେ ପରିଜନ ରହି
ସନକ ଋଷି ସୁରଭୀ ସକଳ ଦ୍ରବ୍ୟନେଇ ।
ନାନାବର୍ଣ୍ଣେ ରତ୍ନବେଦୀ ତିଆରି କଲେପୁଣ
ଆଗରେ ଛାମୁଣ୍ଡିଆ ନିର୍ବନ୍ଧ କଲେ ଜାଣ ।
ଇନ୍ଦ୍ର ଗୋବିନ୍ଦ ଚାନ୍ଦୁଆ ଟାଣିଲେ ତହିଁରେ
ଚିତ୍ର ବିଚିତ୍ର ପିତୁଳା ରତ୍ନ ବେଦୀରେ କଲେ
ରାଜାର ଆଗରେ ଜଣାଏ ଆସିକରି
ଚରଚି ତିଆରି ସକଳ ନିର୍ଭାକରି ।
ଶୁଣିକରି ରାଜନ ଯେ ହରଷ ହୋଇଲା
ବାସୁଦେବଙ୍କୁ ମନରେ ସୁମରଣା କଲା ।
ଭିତର ପୁରକୁ ଚଳିଲେ ରାଜନ
ମଙ୍ଗଳ କୃତ୍ୟ ବିଧାନ କରାଇଲେ ପୁଣ ।
ରଜନୀରେ ଦାସୀଗଣ ମଙ୍ଗଳ ବିଧି କଲେ
ହାନ୍ଦୋଳାରେ ବସାଇଣ କନ୍ୟାକୁ ଘେନିଗଲେ
ଗ୍ରାମ ଦେବତୀ ମନ୍ଦିରରେ ହେଲେକ ପ୍ରବେଶ
ଦେବୀଙ୍କର ଉତ୍ସବ ଯେ କରାଇ ହରଷ ।
ପ୍ରତିଘରୁ ତୋଳାପାଣି ଘେନି ବେଗେ ଆସି
ପାହାନ୍ତି ନିଶିରେ କନ୍ୟା ସ୍ନାନ କଲେ ବସି ।

ବାତୁଅ ଦୋଷ ତାର ସେହିଠାରୁ ଗଲା
ସାଧବାଣୀ ରୂପ ତାର ପ୍ରକାଶ ହୋଇଲା ।
ଏଥୁ ଅନନ୍ତରେ ପାହିଲା ରଜନୀ
ଦେବଆଳେ ଶଙ୍ଖ ଶବଦ ହୁଏ ପୁଣି
ଉଠିଲେ ସକଳ ଜନ ସୁମରି ହରିନାମ
ପାତ୍ରମନ୍ତ୍ରୀ ରାଜା ଯେ ବିପ୍ର ଋଷିଗଣ ।
ପ୍ରଜା ସୈନ୍ୟ ବଳସର୍ବେ ହୋଇଲେକ ଚେତା
ମର୍ଦ୍ଦନ ମାଜଣା ସେ ଯେମନ୍ତ ବିଧିମତା ।
ନିତ୍ୟ କର୍ମ ସାରିଣ ହୋଇଲେ ନାନାବେଶ
ସମସ୍ତ ହରଷ ଯେ କେହି ନୁହଁନ୍ତି ବିରସ ।
ଏଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ
ବିଭାର ମଙ୍ଗଳ ଯେ ଉତ୍ସବ କରନ୍ତି ।
ଋଷିଗଣମାନେ ଯେ ଅଇଲେ ବେଗହୋଇ
ବିପ୍ର ଜନମାନେ ଯେ ଠୁଳ ହେଲେ ତହିଁ ।
ପାତ୍ରମନ୍ତ୍ରୀ ସେମାନଙ୍କୁ ନେଇ ଆସନ ଦେଲେ
ବ୍ରାହ୍ମଣ ଋଷି ସର୍ବେ ଆସନେ ବସିଲେ ।
ରାଜାଗଣ ଅଇଲେ ଦେଲେ ଯେ ଆସନ
ପାତ୍ର ମନ୍ତ୍ରୀ ସାମନ୍ତଙ୍କୁ ଦେଲେ ନେଇ ସ୍ଥାନ
ବେଦୀ ଚାରିପାଶେ ଘେରିଲେ ନରନାରୀ ।
ହୁଳହୁଳି ଦିଅନ୍ତେ କଟକ ଉଚ୍ଛୁଳି ।
ଦଶ ଘଡ଼ି ଆସିଣ ହୋଇଲା ଏବେ ବେଳ
ପାଟ ଜ୍ୟୋତିଷ କହିଲେ କରଏବେ ଅନୁକୂଳ ।
ଋଷ୍ୟଶୃଙ୍ଗଙ୍କୁ ପୁଣି ଅନ୍ତଃପୁରକୁ ନେଲେ
ଯତନରେ ବରବେଶ କରିଣ ଆଣିଲେ ।
ବେଦୀର ଉପରେ ବସାଇଲେ ନେଇ
ଉପରେ ଚନ୍ଦ୍ରାତପ କନକ ମଣ୍ଡାଇ ।
ଶରଦ ଚନ୍ଦ୍ରମା ଆସି ଲାଗିଲାଣି ତଳ
ବରକୁ ଦେଖିଣ ଯେ ସକଳ ନାରୀବଳ ।
ହରଷରେ ବିଚାର କରନ୍ତି ସର୍ବେ ହେରି
ବାଦ୍ୟର ନିଶାଣରେ ପୂରଇ ମେରୁଗିରି ।
ସାଏନ୍ତା କନ୍ୟାକୁ ଯେ ଘେନିଣ ଆସିଲେ
ଲବଣୀଚମରୀ ବିଧିମତେ କଲେ ଭଲେ ।
ନବରକୁ ନେଇ ବେଶ କରାଇ ସତ୍ୱର

× × ×

ବେଦୀପରେ ନେଇଣ କନ୍ୟାକୁ ବସାଇଲେ
ଦେଖିଣ ନାରୀମାନେ ହୁଳହୁଳି ଦେଲେ ।

ସାଏନ୍ତା ଋଷ୍ୟଶୃଙ୍ଗର ଦେଖନ୍ତି ବିଭାଘର
ଦୁହେଁ ପଟାନ୍ତର କି ମଦନ ରତିସାର ।
ଦେଖିଣ ସକଳ ହେଲେ ଆନନ୍ଦ ମନର

× × ×

ରାଜାଗଣ ସର୍ବେ ଦେଖିଣ ହେଲେ ସୁଖୀ
ଋଷିଗଣ ସର୍ବେ ଚାହାଁନ୍ତି ନିରେଖି ।
ଲୋମପାଦ ରାଜାର ଯେତେକ ପାଟରାଣୀ
ଚୌକୀପରେ ବସି ଯେ ଦେଖନ୍ତି ସର୍ବରାଣୀ ।
ଦଶରଥ ରାଜାର ଯେତେକ ମହାଦେଈ
ନୂଆ ଉଆସରେ ଅଛନ୍ତି ସେହୁ ଚାହିଁ ।
ବସିଛନ୍ତି ରାଜା ଆଗେ ଦୁହିତାକୁ ଘେନି

× × ×

ଏକାଦଶ ଘଡ଼ି ଯେ ସମୟ ହେଲା ବେଳ
ଜ୍ୟୋତିଷ କହିଲା ଯେ ଶୁଭ ଅନୁକୂଳ ।
ବିପ୍ରବର ସୁଜ୍ଞଜନ ଅଛନ୍ତି ବହୁତ
ବରକନ୍ୟାକୁ ସୁକଲ୍ୟାଣ କଲେ ତପୋବନ୍ତ ।
ବରୁଣ ପୂଜାକରି ଶିଳା ବରଣ କଲେ
ଚାରିବେଦ ଓଁକାର କରିଣ ପଢିଲେ ।
କୁଶରେ ବନ୍ଧନକର କଲେ ବର କନ୍ୟା
ଯେଉଁଠାକୁ ଯେଉଁବିଧି କଲେକ ବିଚାର ।
ଲକ୍ଷେକ ରତନ ଯେ ଶଙ୍ଖରେ ପୁରାଇଣ
ଦଶରଥ ଋଷ୍ୟଶୃଙ୍ଗଙ୍କୁ ଦେଲେ ଦାନ ।
ଅଶ୍ୱ ହସ୍ତୀ ରଥ ଧାନ ଯେ ଧେନୁ ପୁର
ବସ୍ତ୍ର ଅଳଙ୍କାର ଯେ ଦୁହିତାର ପୁଣ ।
ନବ ସହସ୍ର ମଉଳା ଶଙ୍ଖରେ ଦେଲେ ପାଣି
ଶତେ ଶତେ ସୁବର୍ଣ୍ଣ ଦେଲେ ପୁଣି ଆଣି ।
ଲୋମପାଦ ଲକ୍ଷେ ଯେ ସୁବର୍ଣ୍ଣ ଦାନ ଦେଲା
ଗାଈ ମଇଁଷି ଅଶ୍ୱ ହସ୍ତୀ ସମର୍ପିଲା ।
ମଉନ ହୋଇ ଲୋମପାଦ ଦଶରଥ
ବୋଇଲେ ଦୁହିତାର ନ ଘେନିବ ଦୋଷ ।
ଗନ୍ଧ ସମ୍ବନ୍ଧ କରିଣ କଲେକ ଗନ୍ଧପୂଜା
ଉଠିଣ ବୋଇଲେ ଦଶରଥ ମହାରାଜା ।
ବିଭାଣ୍ଡକ ତନୟ ଯେ ଋଷ୍ୟଶୃଙ୍ଗ ମୁନି
ଏହାକୁ ଦେଲୁ ପୁଣି ଆମ୍ଭର ନନ୍ଦିନୀ ।
ଯଉତୁକ ଦେବାକୁ ଯେହୁ ଯେ ଭାଜନ
ସମର୍ପି ହୋଇଲେ ଆଜ୍ଞୁଁ ଶୁଣ ସର୍ବଜନ ।

ବିଭାଣ୍ଡକବୋଇଲେ ଆମ୍ଭେ ହୋଇଲୁ ସନ୍ତୋଷ
ଏବେ ରକ୍ଷା ହେଉ ଯେ ତୁମ୍ଭର ବେନି ବଂଶ
ଶୁଣିଣ କହିଲେ ଯେ ଲୋମପାଦ ରାୟେ
ଆମ୍ଭର ଦୋଷ କ୍ଷମାକର ହେ ମୁନିଏ
ଋଷିଗଣ ବୋଇଲେ ଶୁଣ ମହୀପାଳ
ଦୁଇ ରାଜାଙ୍କର କୁଳ ହେଉ ଯେ ଉଜ୍ଜ୍ୱଳ ।
ଶୁଣିଣ ଦଶରଥ ଲୋମପାଦ ଦୁହେଁ ପୁଣି
ବ୍ରାହ୍ମଣ ଆଚାର୍ଯ୍ୟଙ୍କୁ ଦକ୍ଷିଣା ଦେଲେ ଆଣି ।
ସୁଲକ୍ଷଣୀ ନାରୀମାନେ ବନ୍ଦାଇଲେ ଆସି
ହୋମ ବିଧି ସେଠାରେ ସାରିଲେ ବ୍ରହ୍ମଋଷି ।
ବରକନ୍ୟା ଭିତରକୁ ନେଲେ ଦାସୀଗଣ
ଅନ୍ତଃପୁରେ ବରକନ୍ୟା ବସାଇ ଯତନ ।
ଅନ୍ତଃପୁରେ ରାଜାର ଯେ ରାଣୀହଂସମାନେ
ଆନନ୍ଦେ ବନ୍ଦାପନା କଲେ ସର୍ବଜନେ ।
ଶତେ ଶତେ ସୁବର୍ଣ୍ଣ ରାଣୀମାନେ ଦେଲେ
ଗଙ୍ଗାଯମୁନା ଦୁଇରାଣୀ ଲକ୍ଷେ ସୁନିଆଁ ବନ୍ଦାଇଲେ
ସେଠାରୁ ବର କନ୍ୟା ଉଠିଣ ଚଳିଗଲେ
ଦଶରଥ ନବରରେ ପ୍ରବେଶ ହୋଇଲେ ।
କୌଶଲ୍ୟା, କୈକେୟୀ, ସୁମିତ୍ରା ସଙ୍ଗେ ପୁଣି
ଦଶରଥ ରାଜାର ଯେତେକ ପାଟରାଣୀ ।
ତିନିଲକ୍ଷ ସୁନିଆଁ ତିନିରାଣୀ ବନ୍ଦାଇଲେ
ସବୁରାଣୀ ସହସ୍ରେ ଲେଖାଏଁ ବନ୍ଦାଇଲେ ।
କଳାବତୀ,  ନୀଳାବତୀ ଯେ ଦୁଇରାଣୀ
ହୀରା ନୀଳା ଦୁଇ ମୁଦି ବନ୍ଦାଇଲେ ପୁଣି ।
ମୁକ୍ତା କୁଣ୍ଡଳ ଯେ କୈକେୟୀ ରାଣୀ ଦେଲା
ଚାପସରି ପଦକ କୌଶଲ୍ୟା ବନ୍ଦାଇଲା ।
ଅଷ୍ଟରତ୍ନ କଙ୍କଣ ଦେଲେକ ସୁମିତ୍ରା
ଋଷ୍ୟଶୃଙ୍ଗ ବସିଲେ ଯେ ରାଜନ ବେଶତୋରା ।
ଏକ ପତ୍ରେ ଭୋଜନ ଯେ କଲେ କନ୍ୟାବର
ଦୁର୍ବାକ୍ଷତ ଦେଲେ ରାଣୀ ବରକନ୍ୟାଙ୍କ ଉପର ।
ସେଠାରୁ ଉଠିଣ ଯେ ଋଷ୍ୟଶୃଙ୍ଗ ଗଲେ
ଋଷିମାନଙ୍କ ସଙ୍ଗରେ ଯାଇଣ ବସିଲେ ।
ରାତ୍ର ହେବାରୁ ସେ ସଭା ଭାଙ୍ଗିଗଲେ
ଅମୃତ ଭୋଜନ ସମସ୍ତେ ଯାଇ କଲେ ।
ରାତ୍ର ପାହିଣ ହୋଇଲା ଆସି ବେଳ
ସକଳ ରାଜା ମେଲାଣି ହେଲେ ତତକାଳ ।

ପଡ଼ଭୂଷ କରିଣ ରାଜାମାନଙ୍କୁ ଧନ ଦେଲେ
ହରଷରେ ପ୍ରଜାମାନେ ଯେ ଯାହା ପୁରଗଲେ ।
ଋଷିମାନେ ଆନନ୍ଦରେ ଧନରତ୍ନ ଦେଲେ
କଲ୍ୟାଣ ବାଞ୍ଛା କରିଣ ନିଜସ୍ଥାନ ଗଲେ ।
ଦଶରଥର ଯେତେକ ପାଟରାଣୀ ପୁଣ
ହରଷ ହେଲେ ଝିଅ ଜୋଇଁକି ଦେଖିଣ ।
ହାଟୁଆ ବାଟୁଆ ଯେ ଦେଖଣାହାରି ଲୋକ
ସମସ୍ତେ ଗଲାରୁ ଯେ ଭାଙ୍ଗିଲା ଗହଳତ ।
ବିଭାଘର ସରିବାରୁ ଗହଳ ଗଲା ଭାଙ୍ଗି
ସମସ୍ତେ ପ୍ରଶଂସା କରନ୍ତି କେହୁନୁହେଁ ରାଗୀ ।
ପାର୍ବତୀ ପଚାରିବାରୁ ଈଶ୍ୱର ଏହା କହି
ଶୁଣିଣ ପାର୍ବତୀ ଯେ ସନ୍ତୋଷମନ ହୋଇ ।
ବଳରାମ ଦାସ ମୁଁ ଯେ ଭାବେ ଜଗନ୍ନାଥ
ଶଙ୍ଖ ଚକ୍ରଧାରୀ ମୋତେ କହିଲେ ଏ ଚରିତ ।
ତେଣୁକରି ରାମାୟଣ କଲି ମୁଁ ଗ୍ରନ୍ଥ ପୁଣ
ସାତକାଣ୍ଡ ରାମାୟଣ କରିବାକୁ ମନ ।
ପ୍ରଥମରେ ଆଦ୍ୟକାଣ୍ଡରୁ ଉଚ୍ଚାର ମୁଁ କଲି ।
ନାରାୟଣ ପ୍ରସନ୍ନରୁ ଋଷ୍ୟଶୃଙ୍ଗ ବିଭା
ସରିବାରୁ ସମ୍ପୂର୍ଣ୍ଣ ହୋଇଲା ଏ ଅଧ୍ୟା ।
ଆଠସହସ୍ର ପଦ ଯେ ଦୁଇଶ ପଞ୍ଚାଶରେ
ଏଠାରୁ ଆଦ୍ୟକାଣ୍ଡ ହୋଇଲା ଲେଖାରେ
ବନ୍ଦଇ ଜଗନ୍ନାଥ ହେ କମଳା ଦେବୀ ପତି
ନୀଳଗିରିରେ ବିଜୟେ ଚତୁର୍ଦ୍ଧାମୁରତି ।
ସୁନ୍ଦର ଶ୍ରୀମୁଖ ଯେ ନୀଳେନ୍ଦ୍ରୀଜଳ ଶୋଭା
କି ଜାଣି ପଟାନ୍ତର ଡୋଳା ରବିପ୍ରଭା ।
ବେନି ନୟନ ଯେ ଶବଦ କୋଟି ଶଶୀ
ଜଗତ ଜନଙ୍କର ହୃଦୟେ ଦେବ ବସି ।
ସୁରଗଣ ନିସ୍ତାରଣ ଭକ୍ତଜନ ସାହା
ଶୁଦ୍ଧ ସୁର୍ଣ୍ଣ ପରାୟେ ଶଙ୍ଖ ଚକ୍ର ପ୍ରଭା ।
ସର୍ବାଙ୍ଗେ ଚନ୍ଦନ ଯେ ଲେପନ ଜଗନ୍ନାଥେ
ଝୀନ ବାସ ଅମଳାଣ ଅଂଗରେ ଶୋଭିତେ
ସୁନ୍ଦର ଶୌଚ ଯେ ନିର୍ମଳ ନେତ ଗୋଟି
ଶ୍ରୀଅଙ୍ଗକୁ ଶୋଭା ଯେ ପାଉଛି ଜାଛେଟି ।
ଶିରରେ ମୁକୁଟ କର୍ଣ୍ଣେକୁଣ୍ଡଳ ଶୋଭାବନ
ବକ୍ଷସ୍ଥଳେ ମଣିହାର ଯେ ତେଜ ପୁଣ ।

ଲଲାଟରେ ଶୋଭଇ ନବରତ୍ନ ଚିତା
ଗଗନେ ଉଦୟେ କର ବିଚିତ୍ରା ଦେବତା ।
ଅଳକା ପନ୍ତି ପନ୍ତି ମୁକ୍ତା ଝରା
ଚନ୍ଦ୍ରକୁ ବେଢି ଯେସନ ଦିଶୁଥାନ୍ତି ତୋରା ।
ମସ୍ତକରେ ମଣ୍ଡିତ ସିନ୍ଦୂର ଚାରୁଚିତା ।
ଗଳାରେ ଚାପସରି କନ୍ଧରେ ପଇତା ।
ଅଧର ସୁସଞ୍ଚ ଶୋଭାଚାରୁ ରେଖା
ନୀଳ ମେଘ ଯେହ୍ନେ ବିଜୁଳିର ରେଖା ।
ସୁସଞ୍ଚ ନାସିକାକୁ ପଟାନ୍ତର ଅଛି
ଆପେ ନିର୍ମାଣ ଯେ ଘଟଣୀ ଶ୍ରୀବସ୍ତି ।
ତ୍ରୈଲୋକ୍ୟରନାଥ ଯେ ଦେବର ବଶହୋଇ
କରୁଣା ସାଗର ଅଟନ୍ତି ତ୍ରୈଲୋକ୍ୟଗୋସାଇଁ ।
କଟୀରେ କଟୀ ମେଖଳା ଶୋଭା ଦିବ୍ୟକାନ୍ତି
ବାମେ ଯପଦାଢ଼ ସୂର୍ଯ୍ୟର ପ୍ରାୟ ଜ୍ୟୋତି ।
ରତ୍ନ ଚକା ଉରେ ଯେ ହଂସୁଲି ତୁଳିପାରି
ବିଜୟେ ଜଗନ୍ନାଥ ବଡ଼ିମା ପଣ ହରି ।
ବ୍ରହ୍ମା, ଇନ୍ଦ୍ର, ଚନ୍ଦ୍ର ଯେ ଚିନ୍ତନ୍ତି ଅନୁକ୍ଷଣେ
ସେ ପ୍ରଭୁ କଳିଯୁଗେ ଅବତାର ମଣ୍ଡନେ ।
ଯେବଣ ଦୁର୍ଲ୍ଲଭ ମନୁଷ୍ୟ ଅଗୋଚର
ପରମ ବ୍ରହ୍ମରୂପ ଦିଅନ୍ତି ଅଗୋଚର ।
ଅଭୟେ ରୁପଗୁଣ ସ୍ୱରୂପ ଯାର କାୟା
ଅବନୀରେ ଅବତାର ଅଗୋଚର ମାୟା ।
ଅନନ୍ତ କୋଟି ବ୍ରହ୍ମାଣ୍ଡ ଅଟଇ ଆତ୍ମା ତାର
ନୀଳଗିରିରେ ବିଜେ ଦେଖିଣ ସିନ୍ଧୁତୀର ।
ଦଣ୍ଡ ସିଂହାସନ ଯେ ଚାମର ଶ୍ୱେତଛତ୍
ରାଜାଧିରାଜେଶ୍ୱର ନୃପତି ପ୍ରତ୍ୟକ୍ଷ ।
ବେନି ପାଟବଂଶୀ ଯେ ଲକ୍ଷ୍ମୀ, ସରସ୍ୱତୀ
ସଙ୍ଗରେ ବିଜୟେ ଅନନ୍ତଯୋଗ ମୂର୍ତ୍ତି ।
ଅନନ୍ତର ଘରଣୀ ଯେ ମଧରେ ବିଜୟେ
ଆବର ଛାମୁରେ ଯେ ତ୍ରିଦଶ ଦେବତାଏ ।
ବିଜୟେ ଜଗନ୍ନାଥ ଅଷ୍ଟରତ୍ନ ପୁରେ
ଧ୍ୱଜ ମାତଙ୍ଗ ଉଡେ ଦେଉଳ ଉପରେ ।
ଆଗରେ ବିଜୟ ଯେ ବିଧାତାର ବସ୍ତି
ଦକ୍ଷିଣ ପାରୁଷରେ କଳ୍ପବଟ ଅଛି ।
ଲବଣ ସାଗର ଯେ; ନବର ପୁର୍ବେ ପୁଣ
ଲାଉକେଶ୍ୱର ଲିଙ୍ଗ ପଶ୍ଚିମ ଦିଗେ ପୁଣ ।
ଚଉପାଶରେ ଅଛଇ ନଗ୍ର ପୁର
ଛାୟାନେଇ ଯହିଁରେ ଅଷ୍ଟ ପାଟକ ଘର ।
ଆପଣାର ନାମ ନେଲେ ଶ୍ରୀ ପୁରୁଷୋତ୍ତମ
ଜମ୍ବୁଦ୍ୱୀପରେ ଏହା ଅର୍ଜିଲେ ଆପଣ ।
ମାର୍କଣ୍ଡେଶ୍ୱର ଯେ, ଉତ୍ତର ଭାଗରେ
ଚାରିଦ୍ୱାରେ ରତ୍ନପୁରେ ଯେ, ଅଛି ଯତନରେ ।
ସୁବର୍ଣ୍ଣମୟ ପୁର ତେଜରେ ଦିଶେ ଶୋଭା
ଯହିଁରେ ଲଭେ ଗୁଣ କଳିକାଳ ପ୍ରଭା ।
ସେ ପୁରୁଷୋତ୍ତମରେ କେତେକ ଜନେଛନ୍ତି
ସମସ୍ତେ ଚତୁର୍ଭୁଜ ଦେବଙ୍କୁ ଦିଶନ୍ତି ।
ଭାଳିଣ ଦେବତାଏ ପୁଛିଲେ ପିତାମହ
ପୁରୁଷୋତ୍ତମପୁରୁଷମାନଙ୍କସଂଶୟଫେଡ଼ିକହ ।
ବେଦବର ବୋଇଲେ ତ୍ରିଦଶ ଦେବେ ପୁଣ
ପୁରୁଷୋତ୍ତମ ଜନସର୍ବେ ଚତୁର୍ଭୁଜ ଜାଣ ।
ବିଜୟେ ନିରାକାର ପତ୍ୟେକ୍ଷ ଦେବ ହରି
ବେନି ଲୋଚନେ ଦେଖିଲେ ଯିବସେ ନିସ୍ତାରି ।
ସେଥିର ସକାଶେ ପୁରଜନେ ପୁଣ
ଦର୍ଶନ ନିର୍ମାଲ୍ୟରେ ସେବାରେ ଚତୁର୍ଭୁଜ ଜାଣ ।
ଚତୁର୍ଭୁଜ ଯେ, ହୋଇଲେ ଦେବରାଏ
ପୁରୁଷୋତ୍ତମ ଲୋକଙ୍କୁ ଚତୁର୍ଭୁଜ ଦିଏ ।
ପାଦପାଣି ତେଜ୍ୟାକରି ନିଗମ ରୂପଧରି
ନାସା ଶ୍ରବଣ ସହତେ ଗୁପ୍ତକଲେ ହରି ।
ଶୁଣିଣ ଦେବଗଣ ହରଷମନ ହେଲେ
ଆନନ୍ଦରେ ବେଦବର ଚରଣେ ନମିଲେ ।
ବଳରାମ ଦାସ ସେବେ ଶ୍ରୀହରି ଚରଣ
ନାରାୟଣ ପାଦପଦ୍ମେ ମୋହର ଶରଣ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
ଋଷ୍ୟଶୃଙ୍ଗ ଗଲେ ଚମ୍ପାବତୀ ପୁର ପୁଣ ।
ଅନାବୃଷ୍ଟି କରିବାରୁ ବିଜୟେ ଋଷ୍ୟଶୃଙ୍ଗ
ଋଷ୍ୟଶୃଙ୍ଗ ମିଳିବାରୁ ବୃଷ୍ଟିକଲେ ମେଘ ।
ଦେଖିକରି ରାଜା, ପ୍ରଜା ଆନନ୍ଦ ବଡ଼ହେଲେ
ଦଶରଥ ଦୁହିତାକୁ ତାଙ୍କୁ ବିଭାଦେଲେ ।
ଦଶରଥ ବିଭାଣ୍ଡକ ଲୋମପାଦ ମିଳି
ଆନନ୍ଦରେ ରାଜା ଋଷି ଅଣାଇ ବିଭା ସାରି ।
ସେଠାରୁ କିସ କଲେ କହ ତ୍ରିଲୋଚନ
ଈଶ୍ୱର ବୋଇଲେ ତୁମ୍ଭେ ଭଗବତୀ ଶୁଣ ।

ବିଭାର ଉତ୍ସବ ସାତ ମଙ୍ଗଳା ଯେ ସାରି
ଋଷି ବ୍ରାହ୍ମଣ ରାଜା ପ୍ରବୋଧନ କରି ।
ମେଲାଣି ହୋଇଣ ଯେ ସମସ୍ତେ ଚଳିଗଲେ
ଦୁଃଖୀ, ଦରିଦ୍ର, ପଦାତି ସରଦାର ତୁଲେ ।
ସେମାନେ ଯିବାର ଯେ, ବିଭାଣ୍ଡକ ଋଷି
ପୁତ୍ରକୁ କୋଳେଧରି କହନ୍ତି ଆଶ୍ୱାସି ।
ଅଇଲୁ ତୁଯେ ରାଜ୍ୟରୁ ମୋତେ ଯେ ନକହି
ବଡ଼ ବିଡ଼ମ୍ବନା କଥା ଦେଖିଲି ରାଜ୍ୟେ ମୁହିଁ ।
ବେନି କନ୍ୟା ବେନି ପୁତ୍ର ଘେନି ମିଳିଲେ
ସକଳ ଚରିତ ତୋର ବୁଝାଇ କହିଲେ ।
ସାତଦିନ ଉଭାରୁ ସେ କନ୍ୟା ସ୍ୱର୍ଗଗଲେ
ସେ ବେନି କୁମର ତୋ ବୋଲେ ବଢିଲେ ।
ତୋତେ ନ ଦେଖି ଚିନ୍ତା ହେଲା ମୋର ପୁଣି
ମୋରଚିନ୍ତା ଦେଖି ଶୂନ୍ୟରୁ ଶୁଭେ ବାଣୀ ।
ଶୂନ୍ୟରୁ ଶବଦ ଶୁଣି ଯୋଗରେ ବସିଲି
ତଥ୍ୟକରି ସକଳ କଥାହିଁ ଜାଣିଲି ।
ତହୁଁ ମୁଁ ଋଷିଙ୍କି ଯେ ସୁମରଣା କଲି
ନବ ସହସ୍ର ଋଷିଘେନି ଏ ସ୍ଥାନେ ଅଇଲି ।
ଦେଖିଲି ବିଭାଘର ରାତ୍ର ଯେ ପାଇଲେ
ତୁ ରହିଲୁ ବାବୁରେ ଭିତର ପୁରରେ ।
ଦଶରଥ ନନ୍ଦିନୀ ଅଣାଇ ଦେଖିଲି ।
କୁଳବଧୂ ପାଇଣ ମନ ଶାନ୍ତିକଲି ।
ବିଭା ତ ସରିଲା ଏବେ ସର୍ବେ ଯେ, ମେଲାଣି
ତୋତେ ଦେଖିବାକୁ ବାବୁରେ ମୁହିଁ ରହିଅଛିପୁଣି ।
ଋଷ୍ୟଶୃଙ୍ଗ ବୋଇଲେ ତାତ ତୁମ୍ଭର ପ୍ରସନ୍ନେ
ସକଳ କୁଶଳରେ ଅଛଇଁ ମୁଁ ଏଣେ ।
ଏ ରାଜ୍ୟରେ ଇନ୍ଦ୍ର ନପାଳିଲା ଯହିଁ ପୁଣି
ଗୁପ୍ତକରି ରାଜା ଅଣାଇଲାକ ଜାଣି ।
ମୋହର ଆସନ୍ତେ ଏପୁରେ ହେଲାକ ଜଳବୃଷ୍ଟି
ଜଳଜନ୍ତୁ ସମ୍ଭାଳ ହେ ଲୋକ ଏ ସୃଷ୍ଟି ।
ଲୋମପାଦ ରାଜା ଯେ ଏ ରାଜ୍ୟରେ ରାଜା
ନାନାଦ୍ରବ୍ୟ ଧରିଣ ଯେମୋତେ କଲା ପୂଜା ।
ଦଶରଥ ରାଜା ଅଯୋଧ୍ୟା ନୃପତି
ଅବିବାହୀ ହୋଇଥିଲା ତାହାର ଦୋହିତି ।
ମୋତେସେ ବେନିରାଜା ଯେ, ଦୁହିତାବିଭାଦେଲେ
ସେ ହରଷହେଲେ ମୋତେ, ତ୍ରିପୁତିକରାଇଲେ ।

ବିଭାଣ୍ଡକ ବୋଇଲେ ଲୋମପାଦକୁ ଚାହିଁ

× × ×

ଏବେ ସନ୍ତୋଷ ମୁଁ ହୋଇଲି ତୋତେ ଦେଖି
ବନ୍ଧୁହେଲେ ତୁମେ ପୂର୍ବର କର୍ମ ଲେଖି ।
ଏଯେ ଦଶରଥ ମୋର ସମ୍ବୁଧି ଅଟଇ
ଯେଣୁ ମୋର ପୁତ୍ରକୁ ଦେଲାକ ତନୟୀ ।
ନାହିଁ ମୋରକୋପ ତାକୁ ହେଲି ମୁଁ ପ୍ରସନ୍ନ
ବରମାଗ ଏବେ ଦୁଇ ରାଜନ ହେ ପୁଣ ।
ଶୁଣିଣ ଲୋମପାଦ ଦଶରଥ ନୃପମଣି
କରଯୋଡ଼ିଣ ବୋଇଲେ ହେ ମୁନି ।
ଆମ୍ଭେ ଦୁହେଁ ଅପୁତ୍ରିକ ପୁତ୍ର ଦାନ ଦେବା
ଯେବେ ମହାଋଷି ଯେ ଘେନିଲ ଆମ୍ଭ ସେବା ।
ଅସ୍ତୁ ହେଉ ବୋଲିଣ ବୋଇଲେ ବ୍ରହ୍ମମୁନି
ବେନିରାଜା ଯାଗ କର ଋଷ୍ୟଶୃଙ୍ଗକୁ ଘେନି ।
ତୁମ୍ଭକୁ ଋଷ୍ୟଶୃଙ୍ଗ ଯେ ଦେଇଛନ୍ତିବର
ସେହିବର ପ୍ରାପତ ହେଉରେ ତୁମ୍ଭର ।
ଏମନ୍ତ କହିଣ ଯେ ବିଭାଣ୍ଡକ ଋଷି
ପୁତ୍ରକୁ କୋଳେ ଘେନିଣ ସିଂହାସନେ ବସି ।
ଦୁଇରାଜା ଆଗରେ ଅଛନ୍ତି ଉଭା ହୋଇ
ବିଭାଣ୍ଡକ କହିଲେ ଲୋମପାଦକୁ ଚାହିଁ ।
ଚତୁର୍ଥୀ ଦିବସ ଯେ, ଅଟଇ ଆଜ ଦିନ
ଲଜ୍ୟା ହୋମ କରିବା କରହେ ଭିଆଣ ।
ଋଷିଙ୍କ ମୁଖରୁ ଶୁଣି ବେନି ରାଜା ଗଲେ
ଲଜ୍ୟା ହୋମ ବିଧି ଭିଆଇ ଅଣାଇଲେ ।
ବରୁଣ ପୂଜା କରି ବେଦାଧ୍ୟୟନ କଲେ
ପୂର୍ଣ୍ଣ ଆହୁତି କରିଣ ଶ୍ରୀଫଳ ପୋଡ଼ିଦେଲେ ।
ସାରିଲେ ଲଜ୍ୟା ହୋମ ଗଲେକ ଅନ୍ତଃପୁର

× × ×

ମଧୁଶଯ୍ୟା ଘରେ ଯେ କଲେକ ଶୟନ
ନାନାରଙ୍ଗରେ କଲେ ସୁରତି ରତି ପୁଣ ।
ଏଥୁ ଅନନ୍ତରେ ଯେ ରଜନୀ ଶେଷ ହେଲା
ଗଗନବିହାରୀ ପୂର୍ବ ଦିଗେ ଦିଶେ ତୋରା ।
ଦେଖିଣ ବିଭାଣ୍ଡକ ବେନିରାଜାଙ୍କୁ ଡାକି
ଆମ୍ଭେ ଯାଉଅଛୁ ଯେ ନିଜ ଆଶ୍ରମଙ୍କୁ ନିକି ।
ତୁମ୍ଭର ଦୁହିତାକୁ ଅଣାଅ ସତ୍ୱର
ଏତେ କହି ଆଜ୍ଞାଦେଲେ ବିଭାଣ୍ଡକ ମୁନିବର ।

ଦେଖିବି ବ୍ୟାକୁଳ ମନ ବଧୂକୁ ସନ୍ତୋଷେ
ଏକବେଳେ ଦେଖିଲୁ ନୋହିଲା ମନସୁନ୍ତୋଷେ ।
ଶୁଣିଣ ଲୋମପାଦ ଅଣାଏ ଯାଇ ବାଳି
ବଧୂର ରୂପଦେଖି ମୁନି ମନ ଟଳି ।
ଶ୍ୱଶୁରଙ୍କ ପାଦତଳେ ଶ୍ରୀଫଳ ପୁଷ୍ପ ନେଇ
ସମ୍ପୂର୍ଣ୍ଣ ଚନ୍ଦ୍ର ବଦନୀ ଓଳଗି ହୁଅଇ ।
ଦେଖିଣ ମହାମୁନି କଲ୍ୟାଣ ବାଞ୍ଛାକଲେ
ଦଶରଥ ରାଜା ସାଧୁ ବୋଲିଣ ବୋଇଲେ ।
ଏ ତୋହର କୁଳରେ ଯେ କମଳା ସଂଜାତ
ମୋର ଭାଗ୍ୟକୁ କୁମରକୁ ଘରଣି ପ୍ରାପତ ।
ଧନ୍ୟରେ ଋଷ୍ୟଶୃଙ୍ଗ କୁଳରେ ତୁହି ତପ
କୁଳବଧୂ ମିଳେ ମୋତେ ଚଞ୍ଚଳା ସ୍ୱରୂପ ।
ଉଠ ଉଠ ମାଗୋ ଋଷି କୁଳର ମଣ୍ଡନୀ
ଚାରୋଟି ପୁତ୍ରତୋର ହେଉଗୋସୁଲକ୍ଷଣି ।
ସ୍ୱାମୀର ସୌଭାଗୀ ଯେ ହୋଇଣ ଦିନ ନିଅ
ଯୁବା ରୂପ ଧରି ମାଗୋ ଯୁଗେ ଯୁଗେ ରହ ।
ଦଶରଥଙ୍କୁ ଚାହିଁଣ ବୋଲଇ ବ୍ରହ୍ମଋଷି
ସାଧୁରେ ମହାତମା ବୋଇଲେ ବ୍ରହ୍ମଋଷି ।
ଧନ୍ୟ ତୁମ୍ଭର ମହିମା ଧନ୍ୟ ତୁମ୍ଭର ଜୀବନ
ବରମାଗ ସତ୍ୟ ସତ୍ୟ ଦେବି ହେ ରାଜନ ।
ତୁମ୍ଭର ମନବାଞ୍ଛା କରିବୁ ଆମ୍ଭେ ସିଦ୍ଧି
ପୁତ୍ରକୁ ଦେଲେ ମୋର ଯୁବତୀ ରତ୍ନବିଧି ।
ସେ ମୋର କୁଳବଧୂ କରିବ କୁଳରକ୍ଷା
ମୋର ପ୍ରସାଦେ ତୁମ୍ଭର ପୂରୁ ମନୋବାଞ୍ଛା
ଆମ୍ଭଙ୍କୁ ତୁମ୍ଭେ ରାଜନ ଦେଲ ଯେବେ ଯଶ
ତେଣୁକରି ତୋରପରେ ନାହିଁ ଅବିଶ୍ୱାସ ।
ମାଗ ମାଗ ବର ଯେ ସତ୍ୟମନରେ ଦେବି
ଯାବତ ଚନ୍ଦ୍ରାର୍କେ କଥା ରୁହାଇବି ।
ମୁନିଙ୍କର ବଚନରେ ଦଶରଥ ନୃପତି
କରଯୋଡ଼ି ଜଣାଇ ତପନ ଭୂପତି ।
କିସ ବର ମାଗିବି ଯେ ପୁତ୍ର ମୋର ନାହିଁ
ଦିଅ ଏବେ ପୁତ୍ର ଦାନ କୁଳ ରକ୍ଷା ହୋଇ ।
ତୁମ୍ଭର ନନ୍ଦନକୁ ଦେଲି ଯେ ମୁହିଁ ଝିଅ
ତୁମ୍ଭ ପୁତ୍ରକୁ ବଳିଣ ଦେବ ଯେ ମୋତେପୁଅ ।
ତିନି ପୁରରେ ମହିମା ଖ୍ୟାତ ହେବ ଯେମନ୍ତ
ଲୋକ କହିବେ ଝିଅ ଦେଇ ପୁଅ ପାଇଲା ଦଶରଥ ।

ମୋରେ ଯେବେ ପ୍ରସନ୍ନ ହୋଇଲ ମହାଋଷି
ବଂଶ ରକ୍ଷା ହେଉ ମୋର ପୁତ୍ର ଦାନ ଦେସି ।
ଶୁଣିଣ ବିଭାଣ୍ଡକ ହରଷ ମନ ହୋଇ
ବୋଇଲେ ବଂଶ ତୋର ରଖିବି ଯେ ମୁହିଁ ।
ବିଷ୍ଣୁଜାତ ହୋଇବେ ଯେ ତୋହରକୋଳରେ
ତେବେରକ୍ଷା ସୂର୍ଯ୍ୟଗୋତ୍ର ହୋଇବେ ତୋହରେ ।
ଲୋମପାଦକୁ ଚାହିଁଣ ବୋଇଲେ ବ୍ରହ୍ମମୁନି
ତୋର ପ୍ରସନ୍ନରେ ମୋର ପୁତ୍ର ପାଇଲା କାମିନୀ ।
ତୋତେ ବର ଦେବଇଁ ମାଗହୋ ଯାହାପାର
କରଯୋଡ଼ି କହେ ଲୋମପାଦ ନୃପବର ।
ଦିଅ ହେ ପୁତ୍ର ଦାନ ଯେବେ କଲ ଦୟା
ତୁମ୍ଭର ବାଣୀ ପ୍ରାପତ ହେଉ ମୋରକାୟା ।
ଏ ସ୍ଥାନରେ ପ୍ରବେଶ ତୁମ୍ଭର ପୁତ୍ର ଯେ ପୁଣି
ଶତେ ପୁତ୍ର କର ମୋତେ ଦେଇଛନ୍ତି ପୁଣି ।
ସନ୍ତୋଷେ ବିଭୂତି ଦେଲେ ଶତେ ରାଣୀନେଲେ
ସକଳ ରାଣୀ ମୋର ବାଣ୍ଟିଣ ଖାଇଲେ ।
ବ୍ରହ୍ମମୁନି ବୋଇଲେ ଯେ ପୁତ୍ର ମୁଖ ଚାହିଁ
ହୋମ କଲେ ଚମ୍ପାବତୀ ରାଜାର ପୁତ୍ରହୋଇ
ତିନିଦିନେ ଯାଗ ଯେ ସମ୍ପୂର୍ଣ୍ଣ ହୋଇବ
ତେବେ ରାଜା ସେ ପୁତ୍ର ଦାନ ପାଇବ ।
ଶୁଣିଲେ ଲୋମପାଦ ଯେ ଋଷ୍ୟଶୃଙ୍ଗଙ୍କୁ କହି
ବୋଇଲେ ସମ୍ଭର୍ବ ବେଗେ ଅଣାଅ ଭିଆଇ
ଅଯୋଧ୍ୟା ରାଜ୍ୟରେ ପିତା ଏବେ ଯାଗକରୁ
ଏ ସ୍ଥାନରେ ତୁମ୍ଭଙ୍କୁ ଦେବା ଯେ ପୁତ୍ର ଚରୁ ।
ଶୁଣିଣ ଲୋମପାଦ ଯେ ଭିଆଏ ସମ୍ଭର୍ବ
ମନ୍ତ୍ରୀଙ୍କୁ କହିଣ ଯେ ବେଗେ ରୁଣ୍ଡକଲେ ଦ୍ରବ୍ୟ
ଏଥୁଅନନ୍ତରେ ସାଆନ୍ତା ବଧୂଗୋଟି
ଶ୍ୱଶୁରଙ୍କୁ ନମସ୍କାର କରିଣ ଦେବେ ଯାନ୍ତି ।
ଅନ୍ତଃପୁରେ ପ୍ରବେଶ ହୋଇଲେ ରୂପବତୀ
ସକଳ ଜନନୀଙ୍କୁ ଯେ ଓଳଗି ମେଲାନ୍ତି ।
ଜ୍ୟେଷ୍ଠ ମାସ ଶୁକ୍ଳପକ୍ଷ ଗୁରୁବାର ଯେ ଦଶମୀ
ହସ୍ତା ନକ୍ଷତ୍ରରେ ଯାଗ କର ଆରମ୍ଭ ପୁଣି ।
ପିତା ପୁତ୍ର ବେନି ଜନ ଯାଗ ଆରମ୍ଭିଲେ
ଲକ୍ଷେକ ଦ୍ୱିଜବର ବରଣ ଯାଗେ ହେଲେ ।

ଷଉଚ ହୋଇଣ ଲୋମପାଦ ରାଜା ପୁଣ
ନୂତନ ବସ୍ତ୍ର ପିନ୍ଧିଣ ବସିଲେ ଯାଗେଣ ।
ପିତା ପୁତ୍ର ଆଚାର୍ଯ୍ୟ ହୋଇଣ ଯାଗକଲେ
ତିନି ଦିନରେ ପୂର୍ଣ୍ଣ ଆହୁତି ଋଷି ଦେଲେ ।
ଋଷ୍ୟଶୃଙ୍ଗରୁ ଦେଲେ ଯେ ମନ୍ତ୍ରକୁ ସୁମରି
ଆନନ୍ଦ ହେଲେ ନୃପତି ଚରୁ ଅନ୍ନଧରି ।
ଋଷ୍ୟଶୃଙ୍ଗ ବୋଇଲେ ହୋଇଲା ଉତ୍ତମ
ଶତେ ପୁତ୍ରପୁରୁଷାର୍ଥ ହୋଇଲ ତୁମ୍ଭେଜାଣ ।
ରୂପରେ ପଟାନ୍ତର ଯେସନେ କାମଦେବ
ଏମନ୍ତ ବଚନ କହିଲେ ଯେ ଋଷି ଦେବ ।
ଆମ୍ଭର ସନ୍ତୋଷରେ ତୁମ୍ଭକୁ ଦେଲୁବର
କୁଳ ରକ୍ଷା ହୋଇବେ ଉପୁଜିବେ କୁମର ।
ଏମନ୍ତ ବଚନ ଯେ ଲୋମପାଦକୁ ଚାହିଁ
ଦଶରଥଙ୍କୁ ବୋଇଲେ ଯାଅ ଅଯୋଧ୍ୟାପୁର
ସୂର୍ଯ୍ୟ ବଂଶରେ ତୁମ୍ଭେ ପ୍ରାପତ କରାଅ କୁମର ।
ଶୁଣି ବିଭାଣ୍ଡକ ବୋଇଲେ ପୁତ୍ର ଚାହିଁ
ଲୋମପାଦ ରାଜାକୁ ଚରୁ ଦିଅ ତୁହି ।
ଶୁଣିଣ ଆନନ୍ଦ ହେଲେ ପୁତ୍ରମଣି
ହସ୍ତରେ ଚରୁ ଘେନି ଚଳିଲେ ତତ୍କ୍ଷଣି ।
ଶତେକ ମହାଦେଈ ବାଛିକରି ନେଲେ
ଶତେ ପୁତ୍ର ଉପୁଜାଅ ବୋଲିଣ ବୋଇଲେ ।
ଚମ୍ପାବତୀ ରାଜାର ଯେ, ବଡ଼ ପାଟରାଣୀ
ଗଂଗା, ଯମୁନା ଯେ ଅଟନ୍ତି ବଡ଼ ରାଣୀ ।
ଋଷ୍ୟଶୃଙ୍ଗ ବୋଇଲେ ଶୁଣ ହେ ନୃପରାଏ
ଦଶମାସେ ଜାତ ହେବେ ଶତେକ ତନୟେ ।
ଗଂଗାର ତନୟ ଯେ, ନୀଳମୂର୍ତ୍ତି ଧର
ନୀଳ କନ୍ଦର୍ପ ଜିଣିଣ ରୂପ ପଟାନ୍ତର ।
ଯମୁନା ପୁତ୍ରହେବ ଶଶୀଧର ପ୍ରାୟେ
ରୂପରେ ପଟାନ୍ତର ମଦନ ସରି ନୁହେଁ ।
ଶତେକ ପୁତ୍ର ତୋର ନଳିନୀ ଦଳ ଜିଣି
ଶୁଣି ହରଷ ଲୋମପାଦ ନୃପମଣି ।
ଋଷ୍ୟଶୃଙ୍ଗ ପ୍ରସନ୍ନରେ ଯେଉଁ ବର ଦେଲେ
କାଳେ କାଳେ ପ୍ରାପତ ହୋଇବ ତାକୁ ଭଲେ ।
ବିଭାଣ୍ଡକ ଚରଣରେ ଓଳଗି ହୋଇଲେ
ନମସ୍କାର କରିଣ ଅନ୍ତଃପୁରକୁ ଗଲେ ।

ଲୋମପାଦ ଶତେରାଣୀ ହୋଇଲେ ସନ୍ତୋଷ
ଶୁଣିଣ ପାତ୍ରମନ୍ତ୍ରୀ ପ୍ରଜାଏ ହରଷ ।
ଧନ୍ୟ ଧନ୍ୟ ଋଷ୍ୟଶୃଙ୍ଗ ସମସ୍ତେ ବୋଲନ୍ତି
ତୁମ୍ଭ ଯୋଗୁଁ ସୁଖୀ ହେଲା ଚମ୍ପାବତୀ ପୃଥ୍ୱୀ ।
ଏଥୁ ଅନନ୍ତରେ ଶୁଣ ଯେ ଦିବ୍ୟବାଣୀ
ଗଉରୀ ଆଗରେ ଏହା ସଦାଶିବ ଭଣି ।
ବିଭାଣ୍ଡକ ଚରଣେ ଅଯୋଧ୍ୟା ନୃପମଣି
ନମସ୍କାର କରିଣ ଯେ, ମାଗିଲେ ମେଲାଣି ।
ଏ ଗଲେ ସକଳ କାର୍ଯ୍ୟହେଲା ଏବେ ସିଦ୍ଧି
ମୋରଠାରେ ପ୍ରସନ୍ନ ହୁଅ ହେ ତପୋନିଧି ।
ମୋହର ଅଯୋଧ୍ୟା ପୁରକୁ ମୁନି ଯିବା
ପୁତ୍ର ନେଇଣ ଯେ ମୋତେ କାରଣ କରିବା ।
ବିଭାଣ୍ଡକ ବୋଇଲେ ଶୁଣ ହେ ଦଶରଥ
ଅଯୋଧ୍ୟାକୁ ଚଳତୁମ୍ଭେ ଜ୍ୱାଇଁ ସଙ୍ଗତ ।
ଦୁହିତା ଜ୍ୱାଇଁକୁ ଘେନି ଯାଅ ସଙ୍ଗତେ
ଅତିଶୀଘ୍ର ଯାଇ ତୁମ୍ଭେ ଯାଗକର ବେଗେ ।
ନିଶ୍ଚୟ ଜାତହେବ, ବାସୁଦେବ ପୁଣ
ରୂପ ଗୁଣରେ ସୁନ୍ଦର ନୋହିବ ଯେ କାମ ।
ମନର ସନ୍ତୋଷରେ ଆମ୍ଭେ ଦେଲୁ ବର
ତୁମ୍ଭ କୁଳେ ଜାତ ହେବ ଯେ ଚାରି କୁମର ।
ଯାଅ ଯାଅ ଅଯୋଧ୍ୟା ଦେଶ ଯାଗକର ବେଗେ
ପୁତ୍ରକୁ ବିଭାଣ୍ଡକ ବୋଇଲେ ସରାଗେ ।
ଦଶରଥ ନୃପବର ଯେ, ଶ୍ୱଶୁର
ସୂର୍ଯ୍ୟ ବଂଶେ ଜନ୍ମ ପବିତ୍ର ନୃପବର ।
ଏ ରାଜା ଉପର ବଂଶ କଥା ଶୁଣବାବୁ
ସପ୍ତସାଗର ଯାକ ଖୋଳାଇଛି ସବୁ ।
ସଗର ରାଜା ବୋଲିଣ ନାମ ହେଲା ତାର
ଷାଠିଏ ସହସ୍ର ନନ୍ଦନ ଅଟନ୍ତି ତାଙ୍କର ।
କପିଳ ଋଷି ଶାପରେ ସମସ୍ତେ ନାଶ ଗଲେ
ସକଳ ବଧୂ ବିଚାରି ପୁତ୍ରେକ ଜାତ କଲେ ।
ସବୁମାତା ନାମଦେଲେ ଭଗିରଥୀ ତାର
କହିଲେ ପିତାତୁ ସାଗର ଜଳେ ନିରନ୍ତର ।
ଶୁଣି କୁମର ଗଂଗାକୁ ସୁମରଣା କଲେ
ଗଙ୍ଗା ଆଣିଣ ଏ ମର୍ତ୍ତ୍ୟରେ ବୁହାଇଲେ ।
ସପ୍ତସାଗର ଯାକ କଲା ଛଳ ଯେଣୁ
ଲିଭିଲାକ ଅନଳ ସ୍ୱର୍ଗକୁ ଗଲେ ତେଣୁ ।

ଏବେ ଦଶରଥଙ୍କୁ ପୁତ୍ର କରାଅ ପ୍ରାପତ
ମୁହିଁ ଆଶ୍ରମକୁ ଯାଉ ଅଛିରେ ସୁତ ।
ଯଉତୁକ ଆୟମାନ ସବୁ ଚଳାଇନେବୁ
ମୁହିଁ ଗଲେ ସମ୍ଭାଳ କରିବିରେ ବାବୁ ।
ଦଶରଥ ରାଜାଙ୍କୁ ପୁତ୍ର ଦାନ ଦେଇ
କୁଳବଧୂ ଘେନିଣ ଆସିବୁ ବେଶହୋଇ ।
ପର୍ଣ୍ଣକୁଟି ମଢିଆରେ ନାହାନ୍ତି କେହି ପୁଣ
କି କରୁଥିବେ ସେମାନେ ଯିବି ମୁଁ ବହନ ।
ବିଭା ଚତୁର୍ଥୀ ସାତ ମଙ୍ଗଳା ସରିଲା
ଲୋମପାଦ ରାଜାରତ ଯାଗହିଁ ବଢ଼ିଲା ।
ଧନ ଧାନ୍ୟ ଧେନୁ ଯେତେକ ଯଉତୁକ
ହସ୍ତୀ ଅଶ୍ୱ ସମସ୍ତ କରିବୁ କ୍ରୟ ବିକ୍ର ।
ସକଳ ପଦାର୍ଥ ଯେ ବେଗେଣ ଢାଳିଦେବୁ
ଯାଗ ସରିଲେଶ୍ୱଶୁର ଘରୁ ତୁ ବେଗେ ଆସିବୁ ।
ମୁହିଁ ତୋର ସଙ୍ଗରେ ରହି ନପାରେ ବାବୁ
ଅସମ୍ଭାଳ ହୋଇଣ ପଡ଼ିଣ ଥିବ ସବୁ ।
ହସ୍ତୀ ଅଶ୍ୱ ସାରେଣି ନ ନେବୁ କଦାଚିତେ
ଦେଖିଲେ ଦୁଷ୍ଟଲୋକେ ହୋଇବେ ଉପଗତେ ।
ଏତେ ବୋଲି ମୁନି ପୁତ୍ରକୁ ତିଆରି
ପୂଜାସାରି ବେଗେ ଚଳିଲେ ମୁନିଧରି ।
ଲୋମପାଦ ରାଜା ବୋଲେ ବାହାନ ଆରୋହି
ଶୁଣିଣ ବିଭାଣ୍ଡକ ହସିଲେକ ତହିଁ ।
କିସ କରିବୁ ଆମ୍ଭେ ଯାନ ଯେ ଶୁକାଶନ
ମନ ପବନେ ଦଣ୍ଡେ ଯେ କରିବି ଗମନ ।
ଏତେକହି ଚଳିଗଲେ ବିଭାଣ୍ଡକ ଋଷି
ନିଜ ଆଶ୍ରମରେ ପ୍ରବେଶ ଯାଇଁ ଋଷି ।
କୌଶିକ ନଦୀ ତୀରରେ ପ୍ରବେଶ ଦୁଇଘଡ଼ିର
ଦେଖିଲେ କାମଧେନୁ ଚରଇ ବନର ।
ମଢିଆରେ ପ୍ରବେଶ ହେଲେ ମୁନିବରେ
ଦେଖିଲେ ବେନି ଯତି ଖେଳନ୍ତି ଆନନ୍ଦରେ ।
ଅଷ୍ଟବକ୍ର ଋଷି ନମସ୍କାର କଲେ
ଚରଣ ପଖାଳିବାକୁ ଜଳ ନେଇ ଦେଲେ ।
ବସିବାରୁ ଋଷ୍ୟଶୃଙ୍ଗ କୁଶଳ କହିଲେ
ପୁତ୍ରର ବିଭାସାରି ଅଇଲୁଁ ବୋଇଲେ ।
ଦୁଇ ଋଷି କଉଶିକ ନଦୀରେ ସ୍ନାନ କଲେ
କନ୍ଦମୂଳ ଫଳ ସକଳ ଭୁଞ୍ଜାଇଲେ ।

ନିତ୍ୟ କର୍ମ ଦୁଇ ଋଷି ବଢାଇଲେ
ଅଷ୍ଟବକ୍ର ମେଲାଣି ହୋଇଣ ଚଳିଗଲେ ।
ତପସ୍ଥାନେ ଯାଇଣ ପ୍ରବେଶ ବକ୍ର ମୁନି
ଏଥୁ ଅନନ୍ତରେ କଥା ଶୁଣ ଗୋ ଭବାନୀ ।
ଋଷ୍ୟଶୃଙ୍ଗ ବୋଇଲେ ଲୋମପାଦକୁ ଚାହିଁ
ଯେତେ ଯଉତୁକ ଯେ ତୁମ୍ଭେ ଅଛ ଦେଇ ।
ପିତାଙ୍କର ଆଶ୍ରମକୁ ଚଳାଇ ବେଗେ ଦିଅ
ହସ୍ତୀ ଘୋଡ଼ା ସାରେଣୀ ବିକ୍ରୀ କରିଦିଅ ।
ଧେନୁ ଧାନ୍ୟ ଧନ ସମସ୍ତ ଚାଳିଦିଅ
ଏତେ ବୋଲିଋଷ୍ୟଶୃଙ୍ଗ ଯୌତୁକ ଦେଲାଧନ
ଆଲଟ ଚାମର ଯେ ବିବିଧ ବସନ ।
ବାଟି କଂସା ନାଲୁଆ ଗରିଆ ସୁରାଇ
ପାନ ପିକଦାନୀ ଯେ ତମ୍ଭାରେ ଗଢୁଦେଇ ।
ରତ୍ନଝରି ପାଣିଦ୍ରବ୍ୟ ଅନେକ ରଥେ ଭରି
ଗାଈ ମଇଁଷିଙ୍କୁ ଦେଲେ ସଜ କରି ।
ଶଗଡ଼ ବଳଦ ସଜ କରିଣ ବେଗେ
କଉଶିକ ନଦୀକୁ ଚଳିଲେ ସରାଗେ ।
ସଙ୍ଗତରେ ମନ୍ତ୍ରୀ ଘେନି ଚଳାଇଲେ ସବୁ
ନୃପବର ବୋଇଲେ ବିଭାଣ୍ଡକରେ ଦେବସବୁ ।
ତାଙ୍କର ଆଶ୍ରମରେ ସମର୍ପିନେଇ ଦେବ
କୁଶଳ ବାର୍ତ୍ତାମାନ ସମସ୍ତ କହିବ ।
ନଦୀରେ ନାବ ସ୍ଥଳରେ ବଳଦ ଶଗଡ଼
ଚଉଦ ଦିବସରେ ପ୍ରବେଶ ସକଳ ।
ଶତେକ ରଖୁଆଳ ଗାଈ ମଇଁଷି ନେଲେ
କଉଶିକ ନଦୀତୀରେ ପ୍ରବେଶ ଯାଇହେଲେ ।
ବିଭାଣ୍ଡକ ଆଶ୍ରମ ପାଶରେ ଗୋରୁ ଚରି
ଗହ ଗହ ଶବଦରେ ବନସ୍ତ ଉଛୁଳି ।
ଗାଈଙ୍କର ରାବ ଶୁଣି ବିଭାଣ୍ଡକ ମୁନି
ଦେଖିଲେ ଗାଈ ମଇଁଷି କରୁଛନ୍ତି ଧ୍ୱନି ।
କାହାର ଗାଈ ମହିଷି ଧନ ରତ୍ନ ମାନ
କେଉଁଠାରୁ ଅଇଲେ କହ ହେ ରକ୍ଷାଜନ ।
ବେହେରାଏ ବୋଇଲେ ଋଷ୍ୟଶୃଙ୍ଗ ଦେଇଛନ୍ତି
ମୋହର ପିତାଙ୍କ ପାଶେ ଦେବାକୁ କହିଛନ୍ତି ।
ଶୁଣିକରି ଋଷି ବୋଇଲେ ଆମ୍ଭେ ତାଙ୍କ ପିତା
ଯଉତୁକ ଦ୍ରବ୍ୟମାନ ଦେଲେ ମୋର ସୁତା ।

ବୋଇଲେ ଆଜଦିନ ଏ ବନସ୍ତରେ ରହ
ଆଟିକା ତଣ୍ଡୁଳ ନେଇ ଅନ୍ନ ରାନ୍ଧିଖାଅ ।
ସ୍ଥାନ ଦେଖି ଚର୍ଚ୍ଚା ପାଇଣ ରହିଲେ
ରଜନୀରେ ବିଶ୍ୱକର୍ମାଙ୍କୁ ଋଷି ସୁମରିଲେ ।
ବିଶ୍ୱକର୍ମା ଜାଣିଣ ନବର ତୋଳି ଗଲେ
ଧେନୁଙ୍କର ପାଇଁ ଗୁହାଳ ଭିନ୍ନକଲେ ।
ରଖୁଆଳ ରହିବାକୁ ଭଣ୍ଡାର ଘର ଦେଲେ
ଚାରି କୋଣରେ ପାଷାଣ ପାଚେରି କରିଲେ ।
ସକଳ ନବର ମାନ ଭିନ୍ନ ଭିନ୍ନ କରି
ବିଶ୍ୱକର୍ମା ଚଳିଗଲେ ଆପଣା ନିଜପୁରୀ ।
କୌଶିକ ବନରେ ଯେ ରହିଲେ ଧେନୁପେଲି
ବିଭାଣ୍ଡକ ଋଷି ରଖିଲେ ସମ୍ଭାଳି ।
ରଜନୀ ଶେଷ ହେବାରୁ ବିଭାଣ୍ଡକ ଗଲେ
ଧାନ ଧରରତ୍ନ ନେଇ ଭଣ୍ଡାରେ ସାଇତିଲେ ।
ବସନ ବାସନ ଯେ ଆବର ଖଟ ଦୋଳି
ଭଣ୍ଡାରେ ସମ୍ପାଦିଲେ ସକଳ ଗଣିକରି ।
ବେହେରାମାନଙ୍କୁ ସେ ବସ୍ତ୍ର ଧନ ଦେଇ
ସମସ୍ତେ ଲୋକ ରଖାଇ ସନ୍ତୋଷ କରାଇ ।
ମନ୍ତ୍ରୀର ସଙ୍ଗରେ ଯିବା ଲୋକଙ୍କୁ ମେଲାଣି
ଯାଅ ଯାଅ ବାବୁ ଶୁଭ ଅନୁକୂଳ ଘେନି ।
ଗୋପାଳମାନଙ୍କୁ ସେ ବୋଇଲେ ରହଭଲେ
କୁଟୁମ୍ବଙ୍କୁ ସଙ୍ଗେ ଘେନି ରହ ଏହିଠାରେ ।
ଶୁଣିକରି ମନ୍ତ୍ରୀବର ରକ୍ଷକ ଲୋକ ରଖି
ଚମ୍ପାବତୀ ରାଜ୍ୟକୁ ଚଳିଲେ ପାଲଟି ।
ଯେ ଯାହା ଆଶ୍ରମରେ ହେଲେକ ପ୍ରବେଶ
ନୃପତିଙ୍କୁ ମନ୍ତ୍ରୀ କହେ ସକଳ ସନ୍ଦେଶ ।
ସକଳ କଥା ସମ୍ଭାଳି ତପରେ ଗଲେ ମୁନି
ଶଙ୍କର କହନ୍ତି ଶୁଣ ହେମବନ୍ତର ଦୁଲଣୀ ।
ପାର୍ବତୀ ବୋଇଲେ ଯେ ସେଠାରୁ କିସହେଲା
ଋଷ୍ୟଶୃଙ୍ଗ ମୁନି ଯେ କେବଣ କୃତ୍ୟ କଲା ।
ଈଶ୍ୱର ବୋଲନ୍ତେ ତୁମ୍ଭେ ଶୁଣ ଗୋ ଗିରିଜା
ସେ କଥା ତୋର ଆଗେ କହୁଛି ଶୁଣିଯା ।
ଲୋମପାଦ ରାଜା ଋଷ୍ୟଶୃଙ୍ଗଙ୍କୁ ଘେନି
ସଙ୍ଗରେ ଥିଲେ ତାଙ୍କର ବହୁତ ସଇନୀ ।
ରତ୍ନ ହାନ୍ଦୋଳାରେ ସାଆନ୍ତା ବିଜେକଲେ
ଲୋମପାଦ ରାଣୀହଂସ ତା ଆଗେ ମିଳିଲେ ।
ଚିତ୍ର ପଟନି ଭହାଡ଼ ଆଣିଦେଲେ
ଶତେ ପରିବାରୀ ହାନ୍ଦୋଳା ଚଢ଼ିଗଲେ ।
ଋଷ୍ୟଶୃଙ୍ଗ ବିଜେକଲେ ପୁଷ୍ପକ ଚୌଦୋଳେ
ମାତାମାନଙ୍କୁ କହିଣ ସାଆନ୍ତା ବେଗେଚଳେ ।
ଲୋମପାଦ ରାଜା ଯେ ଚଢ଼ିଲେ ପୁଣ ହସ୍ତୀ
ରହୁବରେ ବସେ ଯେ ଦଶରଥ ନୃପତି ।
ସୁମନ୍ତ୍ର ମନ୍ତ୍ରୀ ରଥ ବାହେ ଘନ ଘନ
ଆଲଟ ପାଟଛତ୍ର ଭଦଣ୍ଡ ଧ୍ୱଜିଚିହ୍ନ ।
ନେତ ଚିରାଳ ବିମଳ ରଥ ଗଜ
ସର୍ବରେ ବିଜୟ କଲେକ ବେନିରାଜ ।
ଆଗରେ ଦଶରଥ ପଛରେ ଲୋମପାଦ
ମଧରେ ଯାଉଛନ୍ତି ବିଭାଣ୍ଡକ ସୁତ ।
ବାଜଇ ଟମକ ନିଶାଣ ବୀରତୂର
ଶଙ୍ଖ ମହୁରି ଧ୍ୱନି ଯେ ଶୁଭଇ ଅପାର ।
ବାର, ଯୋଗ, ତିଥି, ସତାଇଶ ନକ୍ଷତ୍ରଟି
ଅଜୟ ମାଳାଗୋଟି ଘେନିଣ ତପନିଷ୍ଠି ।
ଅଜପା ସୁମରିଣ ଅନାମିକା ପଢ଼ି
ଛତିଶ ଥର ଯେ ପଢ଼ନ୍ତି ଏକ ଘଡ଼ି ।
ସାରସ୍ୱତ ଶଏ ଏକଉଇର ବାର
ଏକଲୟ କରିଣ ଜପେ ମୁନିବର ।
ଶିରରେ ଶୋଭା ଦିଶେ ଅପୂର୍ବ ଚାରି ଜଟ
ଶୃଙ୍ଗ ଦୁଇଗୋଟି ଦିଶେ ଯେସନ ମୁକୁଟ ।
ନିର୍ଭୟ ହୋଇର ଋଷି ବସି ଚଉଦୋଳେ
ଏ ସମୟେ ଯାଇ ବାରବନିତା ମିଳେ ।
ମୁନିଙ୍କ ଚରଣେ କଲେ ଦରଶନ
ଦେଖିଣ ମୁଁ ତାଙ୍କୁ କଲେ ସୁକଲ୍ୟାଣ ।
ଚଳିଲେ ଋଷ୍ୟଶୃଙ୍ଗ ଚଳିଲେ ନୃପବର
ହସ୍ତୀ ରଥୀ ପଏକାର ପାହଁନ୍ତି ଅପାର ।
ରାଜାଙ୍କୁ ଲୋକେଦେଖିବାକୁ ଆସନ୍ତିକୌତୁକେ
ଆଗରେ ପାରୁଆ ଯେ ଉଡାଉଛନ୍ତି ସୁଖେ ।
ସଙ୍ଗରେ ଗୋଡାଇଣ ଅଛନ୍ତି ନଟକାରୀ
ପରିମଳ ସ୍ଥାନ ଦେଖି ନୃତ୍ୟଙ୍ଗ କରି ।
ମର୍ଦ୍ଦଳ, କଂସାଳ ଯେ ବେଣୁବୀଣା ବଜାନ୍ତି
ମାଧୁର୍ଯ୍ୟ ଆସ୍ୟରେ ଯେ ଆଳାପ କରନ୍ତି ।
ବାଟରେ ଚାରିରଜନୀ ରହିଗଲେ ପୁଣ
ପାଞ୍ଚଦିନେ ଅଯୋଧାରେ ପ୍ରବେଶ ହୋଇଣ ।

ନବରେ ପ୍ରବେଶ ଯେ ଲୋମପାଦ ଦଶରଥ
ସାଆନ୍ତା ସହିତରେ ଋଷଶୃଙ୍ଗ ତପୋବନ୍ତ ।
ବଶିଷ୍ଠଙ୍କୁ ଦେଖି ଲୋମପାଦ ଯେ ନମିଲେ
ଯେ ବିଧି ବିଧାନେ କଲ୍ୟାଣ ସେହୁକଲେ ।
ସୁମନ୍ତକୁ କହିଲେ ଯେ ଅଯୋଧ୍ୟା ନୃପତି
ଲୋମପାଦଙ୍କୁ ପୁର ଦେଲେ ଯେ ବାରସ୍ଥତି ।
ଋଷ୍ୟଶୃଙ୍ଗଙ୍କୁ ଦିବ୍ୟ ଆସନ ଯେ ଦେଇ
ଦିବ୍ୟ ଭୁବନେ ଯାଇଣ ଋଷି ବିଳସଇ ।
ଜନନୀଙ୍କୁ ଦେଖିବାକୁ ଦୁହିତା ଚଳିଯାଇ
କୈକେୟୀ କୌଶଲ୍ୟା ଚରଣେ ନମଇଁ ।
ହସ ହସ ହୋଇଣ ସାଆନ୍ତା ବେଗେ ଉଠି
ସୁମିତ୍ରାଙ୍କର କୋଳରେ ଯାଇଣ ବେଗେ ବସି ।
ମାତାମାନେ ବୋଇଲେ ହୋଇଲାକାର୍ଯ୍ୟଶୁଭ
ମନୋରଥ ପୂର୍ଣ୍ଣ ହେଲା ପବିତ୍ର କୁଳ ଭଜ ।
ମାତାମାନେ ବୋଇଲେ ମୁନି ହେଲେ ତୋରପତି
କୁଳରକ୍ଷା ଆମ୍ଭର ଗୋ ହେବ ରୂପବନ୍ତୀ ।
ଏମନ୍ତ ବୁଝାଇ ମାଏ ଝିଅକୁ କହେ ବାଣୀ
ମାଉସୀ ଜନନୀମାନେ କିସ ଦେଲେ ପୁଣି ।
ଲାଜ ଲାଜ କରିଣ କହନ୍ତି ସାଆନ୍ତା
ବହୁତ ଯଉତୁକ ମାନ ଦେଲେ ପିତା ।
ଶତେକ ପୋଇଲି ଯେ ପରିବାରୀ ଦେଲେ
ସକଳ ମାଏ ଆସି ପ୍ରବୋଧି କହିଲେ ।
ଧାଈ ମୁଦୁସୁଲି ପୋଇଲି ଯେତେ ଜାଣ
ସାଆନ୍ତାର ପାଶରେ ପ୍ରବେଶ ଯାଇ ପୁଣ ।
ସମସ୍ତେ ପ୍ରବୋଧିବାରୁ କୌଶଲ୍ୟା ଯେନେଲେ
ଦିବ୍ୟ ମନ୍ଦିରେ ନେଇଣ ପ୍ରବେଶ କରାଇଲେ ।
ଏଥୁଅନନ୍ତରେ ଯେ ଦଶରଥ ରାୟେ
ଲୋମପାଦ ଘେନିଣ ସ୍ନାନ ଭୋଜନ କରାଏ ।
ଋଷ୍ୟଶୃଙ୍ଗର ପାଇଁ ମଣୋହି ଯେ ବିଧି ।
ସାଆନ୍ତା କନ୍ୟା ଏଣେ ପାକ କଲେ ସିଦ୍ଧି ।
ସ୍ନାନ ତର୍ପଣ ସନ୍ଧ୍ୟା ପୂଜା ଋଷି ସାରି
ଭୋଜନ କଲେ ଯେ, ଋଷ୍ୟଶୃଙ୍ଗ ତପଚାରି ।
ଆଚମନ ସାରିଣ ତାମ୍ବୁଳ ଭୁଞ୍ଜିବସି
ରତ୍ନ ପଲଙ୍କପରେ ବିଜୟ କଲେ ଆସି ।
ଦିନଶେଷ ଅନ୍ତରେ ସନ୍ଧ୍ୟାବିଧି ସାରି
ପ୍ରିୟା ଘେନି ମୁନି ରଜନୀ ଭୋଗ କରି ।

ଦଶରଥ ଲୋମପାଦ ଯେଯାହା ପୁରେ ଗଲେ
ଶୟନ ନବରେ ଯାଇଣ ବିଜେ କଲେ ।
ରଜନୀ ଶେଷରେ ନିତ୍ୟକର୍ମ ସାରି
ଆସ୍ଥାନେ ବିଜେ ଦଶରଥ ଦଣ୍ଡଧାରୀ ।
ଲୋମପାଦ ରାଜନ ମିଳିଲେ ପୁଣ ଆସି
ଋଷ୍ୟଶୃଙ୍ଗ ବଶିଷ୍ଠ ଅଛନ୍ତି ପୁଣ ବସି ।
ବାମଦେବ କାଶ୍ୟପ ଯାବାଳି ସୁମନ୍ତ
ସଭା ମଣ୍ଡାଇଣ ବସିଲେ ସମସ୍ତ ।
ଋଷ୍ୟଶୃଙ୍ଗ ବୋଇଲେ ବଶିଷ୍ଠ ପିତା ପୁଣ
ଯାଗକଲେ ଦଶରଥଙ୍କର ପୁତ୍ରରେ କାରଣ ।
ଚରୁଦେଲେ ରାଣୀମାନେ ହେବେ ଗର୍ଭବାସ
ପୁତ୍ର ଉପୁଜିବ ଯେ ସମ୍ପୂର୍ଣ୍ଣ ଦଶମାସ ।
ବଶିଷ୍ଠ ବୋଇଲେ ତୁମ୍ଭେ ସୁଦୟା ଯେବେକଲ
ତୁମ୍ଭର ବିଚାରେ ଯାହା ଆମ୍ଭଙ୍କୁ ବୋଇଲ ।
କର ତୁମ୍ଭେ ଯଥାବିଧି ତୁମ୍ଭର ନାମ ରହୁ
ପୁତ୍ରବନ୍ତ ହେଉ ଯେ ଦଶରଥ ରାହୁ ।
ଋଷ୍ୟଶୃଙ୍ଗ ବୋଇଲେ ଅଯୋଧ୍ୟା ଈଶ୍ୱର
ଯାଗ କରିବା ବେଗେ ଅଣାଅଁ ସମ୍ଭାର ।
ରାଜାମାନେ ଆସିବାକୁ ବେଗେ ପେଶ ଚାର
ବନ୍ଧୁ କୁଟୁମ୍ବ ସ୍ୱଜ୍ଞାତି ଅଣାଅ ନୃପବର ।
ଯାଗଶାଳ ଶୋଧିବାକୁ ବେଗେ ଦୂତ ପେଷ
ବେଗେ ଯୋଗବଳେ ବିଚାରି କର ତୋଷ ।
ନଗ୍ର ପୁରକୁ ମଣ୍ଡାଅ ତପୀଜନଙ୍କୁ ବର
ତିଳ ଘୃତ ସାବଧାନ ସମିଧ ଏବେ କର ।
ଦ୍ୱିଜବର ଦେବତାଙ୍କୁ କର ଯେ ବରଣ
ତେବେ ଯେ ଯାଗରେ ପ୍ରାପତ ପୁତ୍ର ଜାଣ ।
ଶୁଣିଣ ନୃପତି ଯେ ବଶିଷ୍ଠଙ୍କୁ ଚାହିଁ
ଦିଗ ନଦିଶଇ ମୋତେ କି କରିବି ମୁହିଁ ।
ବଶିଷ୍ଠ ବୋଇଲେ ବାବୁ କେଉଁକଥାରେ ଚିନ୍ତା
ଦଶରଥ ବୋଇଲେ କେ କରିବ ଦେବତା ।
ନାରଦଙ୍କୁ ସୁମରରେ ଦଶରଥ ନୃପବର ।
ସେତେବେଳେ ନାରଦ ଯେ ବେଦବର ପାଶ
ଜାଣିଲେ ନାରଦ ଯେ, ଯାଗର ଆଦେଶ ।
ବ୍ରହ୍ମାଙ୍କୁ ବୋଇଲେ ଶୁଣିମା ହେଉ ଦେବ
ଦଶରଥ ଯାଗ କରେ ଋଷ୍ୟଶୃଙ୍ଗ ଭାବ ।

ବ୍ରହ୍ମା ବୃହସ୍ପତି ସକଳ ବେଦବର
ସ୍ରୁବ ସ୍ରୁଚି ଘେନି ଦେବ ବିଜୟେ ବେଗକର ।
ଏତେ କହି ନାରଦ ଯେ ସ୍ୱର୍ଗପୁର ଗଲେ
ଇନ୍ଦ୍ର ଦେବତାଙ୍କୁ ଯାଇଣ କହିଲେ ।
ବୋଇଲେ ଦଶରଥ ବରିଲେ ତୁମ୍ଭଙ୍କୁ
ତ୍ରିଦଶ ଦେବତା ଘେନିଯିବ ଯେ ଯାଗକୁ ।
ସୁରଦେବ ବୋଇଲେ ଆମ୍ଭେ ଯିବାର ପୁଣିସତ
ମଞ୍ଚକୁ ନଯାଇ ଆମ୍ଭେ ରହିବା ଶୂନ୍ୟରେତ
ଶୁଣିଣ ନାରଦ ଯେ ସେଠାରୁ ଚଳିଗଲେ
କପିଳାସ କନ୍ଦରେ ପ୍ରବେଶ ଯାଇଁ ହେଲେ ।
ଈଶ୍ୱର ପାର୍ବତୀଙ୍କୁ ହେଲେ ନମସ୍କାର
ବୋଇଲେ ଦଶରଥ ବରିଲେ ଯାଗର ।
ଋଷ୍ୟଶୃଙ୍ଗ ଚରୁଦେଲେ ବାସୁଦେବ ହେବେ ଜାତ
ସେ ଯାଗକୁ ତୁମ୍ଭର ଯିବାର ଉଚିତ ।
ଈଶ୍ୱର ବୋଇଲେ ବେଦବର ସୁରରାଜା ତହିଁ
ସେ ସ୍ଥାନରେ ବିଜୟ କରିବି ମୁହିଁ ଯାଇ ।
ଶୁଣିକରି ନାରଦ ବେଗେ ଚଳିଗଲେ
ଅଯୋଧ୍ୟାରେ ପ୍ରବେଶ ଯାଇଣ ହୋଇଲେ ।
ଦେଖିଲେ ଦଶରଥ ଲୋମପାଦଦୁହିଁକି ଆସ୍ଥାନ
ବିଜୟ ଋଷ୍ୟଶୃଙ୍ଗ ବଶିଷ୍ଠ ସଙ୍ଗରେ ।
କାଶ୍ୟପ ବାମଦେବ ସୁମନ୍ତ ଛନ୍ତି ତହିଁ
ମୁନିଙ୍କି ଦେଖିଣ ସମସ୍ତେ ଉଭା ହୋଇ ।
ନାରଦଙ୍କ ଚରଣେ କଲେ ନମସ୍କାର
କଲ୍ୟାଣ କରି ମୁନି ବସିଲେ ଆସ୍ଥାନର ।
ଦଶରଥ ବୋଇଲେ ଶୁଣିମା ମୁନିବରେ
ପୁତ୍ର ଅର୍ଥେ ଯାଗ ମୁଁ କରିବାକୁ ବିଚାରେ ।
ତୁମ୍ଭେ ଏବେ ସ୍ୱର୍ଗ ଯିବ ଦେବତା ନିମନ୍ତି
ଯେଉଁ ପ୍ରାୟେ ଦେବତା ସ୍ୱର୍ଗରୁ ଆସନ୍ତି ।
ନାରଦ ବୋଇଲେ ତୁମ୍ଭେ ସୁମରିବାରୁ ଜାଣିଲୁ
ତେଣୁକରି ସକଳ ଦେବଙ୍କୁ ବରିଲୁ ।
ଶୁଣିଣ ଦଶରଥ ହେଲେ ତୋଷମତ
ମୁନିଙ୍କି କେ ବରିବ କହହେ ତପୋବନ୍ତ ।
ନାରଦ ବୋଇଲେ ତୁମ୍ଭେ ଦୁର୍ବାସା ସୁମର
ଶୁଣିକରି ଦଶରଥ ସୁମରେ ମୁନିବର ।
ଗୋଦାବରୀ କୂଳରେ ଦୁର୍ବାସା ଋଷିଥିଲେ
ଦଶରଥ ସୁମରନ୍ତେ ସମସ୍ତେ ଜାଣିଲେ ।

ବିଚାରେ ଋଷ୍ୟଶୃଙ୍ଗ ଦଶରଥଙ୍କୁ ଚରୁଦେବେ
ପୁତ୍ର ଅର୍ଥେ ମହାଯାଗ ଯେ ଋଷି କରିବେ ।
ତେବେ ଦଶରଥ କୋଳେ ବାସୁଦେବ ଜାତ
ମାରିବେ ଅସୁର ଦେବେ ହୋଇବ ନିଶ୍ଚିନ୍ତ ।
ମୋତେ ସୁମରିଲେ ବରିବା ଯାଇଁ ଋଷି
ଏମନ୍ତେ ବିଚାରି ଯେ ଉଠିଲେ ବିଶେଷି ।
ମନ ପବନ ଦଣ୍ଡରେ ବେଗେ ଚଳିଗଲେ
ମର୍ତ୍ତ୍ୟପୁର ଋଷିମାନଙ୍କୁ ବରିଲେ ।
ବରିଣ ଋଷିମାନଙ୍କୁ ଗଲେ ମୁନିବର
ପ୍ରବେଶ ହେଲେ ଯାଇଁ ଅଯୋଧ୍ୟା ନଗର ।
ଦେଖିଣ ସମସ୍ତେ ଯେ ନମସ୍କାର କଲେ
ମାନ୍ୟ ଧର୍ମ ଦେଖି ଋଷି ଆନନ୍ଦେ ବସିଲେ ।
ଦଶରଥ ବୋଇଲେ ମୁନି ତୁମ୍ଭରେ କାରଣ
ବୃଦ୍ଧକାଳେ ତୁମ୍ଭେ ମୋତେ ଦିଅ ପୁତ୍ରଦାନ ।
ସକଳ ଋଷିଙ୍କି ବରଣ କରି ଆଣ
ଦୁର୍ବାସା ବୋଇଲେ ସର୍ବେ ହେଲେଣି ବରଣ ।
ଶୁଣିଣ ଦଶରଥ ପରମ ତୋଷ ହେଲେ
ବିପ୍ରଙ୍କ ବରଣେ କେ ଯିବଯେ ବୋଇଲେ ।
ବଶିଷ୍ଠ ବୋଇଲେ ଯେ ବାମଦେବ ଯାନ୍ତୁ
ଲକ୍ଷେ ଦ୍ୱିଜବର ଏହୁ ରାଜ୍ୟରୁ ବରନ୍ତୁ ।
ଶୁଣିଣ ବାମଦେବ ଉଠିଣ ବେଗ ଗଲେ
ଲକ୍ଷେକ ବ୍ରାହ୍ମଣଙ୍କୁ ବରିଣ ଆଣିଲେ ।
ଦେଖିଣ ନୃପତି ଯେ ସୁମନ୍ତ୍ରକୁ ଚାହିଁ
ଯାଗର ବିଧାନ ବେଗେ କର ଆଜ୍ଞାଦେଇ ।
ଶୁଣିକରି ସୁମନ୍ତ୍ର ବେଗେ ପେଷେ ଦୂତ
ନାନା ଦେଶ ରାଜାଙ୍କୁ ସେ ବରିଣ ଆଣିଲେତ ।
ବିଶ୍ୱକର୍ମାଙ୍କୁ ଡକାଇ ସୁମନ୍ତ୍ର ମନ୍ତ୍ରୀ ବୋଲେ
ଯାଗଶାଳ ତୋଳ ବୋଲି ପ୍ରମାଣ ଟାନେଲେ ।
ବନ୍ଧୁଜନମାନଙ୍କ ପାଶକୁ ଭେଦିଲେ ପୁଣିଚାର
ସାତଶ ନଉରାଜା ବନ୍ଧୁ ଦଶରଥଙ୍କର ।
ଲୋମପାଦ ରାଜାଙ୍କର ଏଗାରଶତ ଅସି
ଦୁଇରାଜାଙ୍କର ବନ୍ଧୁ ଆଣିଲେତ ମନ୍ତ୍ରୀ ।
ଲୋମପାଦ ରାଜାଙ୍କର ଶତେ ଯେ କାମିନୀ
ଚାରଭେଦି ଦଶରଥ ଆଣିଲେକ ପୁଣି ।
ରାଜାମାନେ ଆସିବାରୁ ତାଙ୍କୁ ଦେଲେଦାନ
ଅନ୍ତଃପୁରେ ଭେଟ ହେଲେ ସକଳ ରାଣୀପୁଣ ।

ଲୋମପାଦର ଶତେରାଣୀ ପ୍ରବେଶ ଆସିହେଲେ
ଦଶରଥ ନବରରେ ଯାଇଣ ରହିଲେ ।
ସାଆନ୍ତା ଦୁହିତା ଆସି ଶୁଭେ ଓଳଗିଲେ
ସୁକଲ୍ୟାଣ ହେଉବୋଲି ରାଣୀମାନେ ବୋଲେ ।
ଦୁଇକୁଳ ରକ୍ଷାହେଲା ତୁମ୍ଭର ସକାଶୁଁ
ଦୁଇ ରାଜ୍ୟ ପ୍ରଶଂସା ଗୋ ମିଳିଲା ତୁମ୍ଭଙ୍କୁ ।
ଏତେ କହି ସ୍ନାନ ଭୋଜନ ସର୍ବେକଲେ
ନୂତନ ନବରରେ ପ୍ରବେଶ ଯାଇ ହେଲେ ।
ବନ୍ଧୁ ରାଜାମାନେ ଶୁଣି ଅଇଲେକ ବେଗେ
ଯେ ଯାହା ନବରରେ ରହିଲେ ସଦ୍‌ଭାବେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣଗୋ ହେମବନ୍ତୀ
ଅଯୋଧ୍ୟାର ଲୋକ ସର୍ବ ଆନନ୍ଦ ହୁଅନ୍ତି ।
ମଣ୍ଡାଇଲେ କଟକ ଯେ ବିବିଧ ଗତିକରି
ରମ୍ଭାବୃକ୍ଷ ଚୂତ ପତ୍ର ସମସ୍ତେଛନ୍ତି ଧରି ।
ଉପରେ କ୍ରୋଣା ଖମ୍ଭେ ଲଗାନ୍ତି ଝାଲର
ପୂର୍ଣ୍ଣକୁମ୍ଭ ଉପରେ ଥୋଇଲେ ଚୂତ ଡାଳ ।
ପିଢ଼ା ଉପରେ ଥୋଇଲେ ସୁବର୍ଣ୍ଣ କଳସ
ନେତ ଚିରାଳ ଉଡେ ନାନାବର୍ଣ୍ଣେ ବେଶ ।
ଚଉକତି ପାଟ ଯେ ପତନି ଚିରାଳ
ଦର୍ପଣ ପନ୍ତିରେ ଶୋଭା ଦିଶୁଥାଇ ଘର ।
ବିଚିତ୍ର ଲେଖନ ଯେ ଚନ୍ଦନ ଗନ୍ଧବାସ
ନିରନ୍ତରେ ମଣ୍ଡିଲେ ଆଣିଦିବ୍ୟ ପୁଷ୍ପ ।
ଦାଣ୍ଡରେ ପରିମଳ ଚତ୍ରସରି ଛେରା
ସରୁଝୀନ ଶାଢ଼ୀରେ ପଡ଼ିଲେ ପାଏଡ଼ା ।
ସେଥିର ଉପନରେ ପୁଷ୍ପ ବିଞ୍ଚି ପୁଣି
କର୍ପୂରର ଧୂଳିତାର ଉପରେ ବିଞ୍ଚଣି ।
ଠାବେ ଠାବେ ଯନ୍ତ୍ର ବାଜଇ ବେଣୁବୀଣା
ନଗ୍ର ନର ନାରୀମାନେ ଏକୁ ଏକ ଜିଣା ।
ବିବିଧ ବର୍ଣ୍ଣରେ ଯେ ରତ୍ନମାଳ ଲାଇ
ବିଚିତ୍ର ଝିନ ବସନ ପହରଣ ତହିଁ ।
ତୁଣ୍ଡରେ ପାନ ତାଙ୍କର ଦିଶନ୍ତି ଗୀତ ଗାଇ
ସାତ ପାଞ୍ଚ ମେଳ ହୋଇ ନଗ୍ରବୁଲି ଯାଇ ।
ଚତୁରୀ ସୁନ୍ଦରୀ ନାଗରୀ ନାରୀ ଦେଖି
କାମଭରେ ସେହି ଯେ ଠରାଠରି ଆଖି ।

ଲୋକମାନ ଗହଳ ନଗ୍ର ପୁର ପୁଣି
ଚମକ ନିଶାଣ ଯେ ଟାଣରେ ବାଜେ ପୁଣି ।
ନଟ ଗୀତ ନୃତ୍ୟ ଯେ କେବଣଠାରେ ହୁଏ
କେଉଁଠାରେ ମାଲଯୁଦ୍ଧ ବନ୍ଧାଣ ଗତ ହୁଏ
କେଉଁଠାରେ ଅଶ୍ବଆର ଅଶ୍ୱକୁ ପୁଣ ଧାଇଁ
କେଉଁଠାରେ କଉତୁକ ପାରୁଆ ମେଳିହୋଇ
କେହୁ ଉଡ଼ାଉଛନ୍ତି କାଗଜ ପତ୍ର ଚକି
ଉପରେ ଉଡ଼ନ୍ତେ ଭିତର ଲୋକ ଦେଖି ।
ନାନାଦି ରାଜ୍ୟରୁ ଯେ ଅଇଲେ ନୃପବର
ଭଟ ଦେଶ ହଟ ମାଳ ବଙ୍ଗ କଳିଙ୍ଗେଶ୍ୱର ।
ତିହୁଡ଼ି ମରହଟ୍ଟ ମଗଧ ଯେ କର୍ଣ୍ଣାଟ
କଲବର କଇଲ୍ୟାଣ କାଶୀ କରକଟ ।
କେହୁ ମଥୁରାରୁ ଆସେ କେହୁକୋନ୍ତକ ଦେଶର
କଳିଙ୍ଗ କର୍ଣ୍ଣାଟ କାଞ୍ଚି ମିଥିଳା ରାଜ୍ୟର ।
କାଉଁରୀ ନାଭଦେଶ ଘୁଙ୍ଗୁରାଶ୍ୱେତ ରାଷ୍ଟ୍ର
କେହୁ ଗଙ୍ଗ ବଂଶ କେହୁ ହୋୟଂ ବଂଶ ।
ଦେବହରି ବ୍ରହ୍ମଗିରି ପ୍ରବେଶ ହେଲେ ଆସି
କେହୁ ମତ୍ସ୍ୟ ଦେଶରୁ ଆସେ ଆଏମରୁ ଦେଶି
କେହୁ ହର ଦ୍ୱାରକେହୁ ଗୌତମ ଗରୁହଂସୀ

× × ×

ହେମାଳ ଦେଶରୁ ଓଡ଼ରାଷ୍ଟ୍ର ଯାଏ
ଅଯୋଧ୍ୟା ଦେଶରେ ଆସି ସମସ୍ତେ ଠୁଳ ହୁଏ
ବାଜଣାର ଶବଦରେ କୁରୁମ ଉଛୁଳି
ପାଦଘାତେ କମ୍ପିଣ ହଲିଲା ମହୀଆଳି ।
ଅଯୋଧ୍ୟାରେ ପ୍ରବେଶ ଯେ ସକଳ ମହୀପତି
ବିଚିତ୍ର ପରିମଳ ଯେ କଟକ ଦେଖନ୍ତି ।
ନାନା ଲୋକଙ୍କ ଭାଷା ଦେଶର ଭିନ୍ନ ଭିନ୍ନ
ଦେଖିକରି ହରଷ ଅଯୋଧ୍ୟା ରାଜନ ।
ସୁମନ୍ତ ସମ୍ଭାଳିଲେ ଯେ ଯୋଗାଡ଼ମାନ ଦେଇ
ରହିଲେ ରାଜାମାନେ ହରଷ ମନ ହୋଇ ।
ଥାଟକୁ ଅନ୍ନ ବ୍ୟଞ୍ଜନ ଅଶ୍ୱକୁ ଦାନା ପୁର
ରାଜାଙ୍କର ଯୋଗାଣେ ଭିଆଣ ହେଲା ଜାଣ ।
ଅନେକ ତୀର୍ଥର ଯେ ଅଇଲେ ତୀର୍ଥବାସୀ
ଭିକ୍ଷୁକ ଯୋଗୀମାନେ ଯେ ସନ୍ନ୍ୟାସୀ ।
ଅଯୋଧ୍ୟାରେ ଲୋକେ ଦେଖୁଛନ୍ତି ତେଣେ
ଅନ୍ନ ବସ୍ତ୍ର ତଇଳ ଦିଅନ୍ତି ଜଣେ ଜଣେ ।

ତାମ୍ବୁଳ ଚନ୍ଦନ ଗନ୍ଧ ପୁଷ୍ପମାନ ଦ୍ୟନ୍ତି
ପାଣି ପଣା ପଇଡ଼ ଥୋକେ ପରଷନ୍ତି ।
ଯେ ଯାହା ମାଗନ୍ତି ପାଆନ୍ତି ସର୍ବ ସିଦ୍ଧି
ସୁମନ୍ତ ଦେଉଛନ୍ତି ସଞ୍ଚାକୁ ସମ୍ପାଦି ।
ସରଯୁ ନଦୀ ବେଢ଼େ ନଗ୍ରର ଚଉପାଶେ
ଦାରାକ୍ଷ ବିପିନ ଯେ ଅଛଇଁ ବିକାନ୍ଥେ ।
ଚୂତବନ ନିକଟରେ ରଚିଲେ ଯାଗଶାଳ
ଅଗୁରୁ ଚନ୍ଦନରେ ନିର୍ମାକଲେ ଚାଳ ।
ପାଟ ସୁତା ଗଣ୍ଠିକରି ସଜଳସ ବତା ·
ତେଜ ପତ୍ରରେ ଛାଏଣୀ କଲେ ଚାଳ ଗୋଟା ।
ଉପରେ ରତ୍ନ କଳସ ନେଇଣ ବସାଇଲେ
ସେଥିର ଉପରେ ନେତ ପାଟ ଉଡ଼ାଇଲେ ।
ନେତର ପତନୀ ଯେ କ୍ରୋଣାଖମ୍ଭେ ବାନ୍ଧି
ଫୁଲମାଳ ସେଥିର ଉପରେ ଛନ୍ଦି ।
ଦର୍ପଣ ପନ୍ତ ପନ୍ତି ଚାମର ଶ୍ୱେତ କଳା
ଚଉକତିରେ ଲମ୍ବଇ ଗଜମୋତି ଝରା ।
ଚାରିଦ୍ୱାରେ ମଣ୍ଡଣି ଭିନ୍ନ ଭିନ୍ନ କରି
ଶଶୀଧର ଭୁବନକୁ ପଟାନ୍ତର କରି ।
ମର୍କତ ପାଣି ପାଟିଆ ହୋଇଛିକି ନିର୍ବାଣ
କେବଣ ଠାବରେ କାଚ ସୁବର୍ଣ୍ଣ ରସାଣ ।
କାହିଁରେ ପୋଏଳା ଯେ କାହିଁରେ ହୀରାଜଡ଼ି

× × ×

କେବଣ ଠାବରେ ରଙ୍ଗ ବସନ୍ତ ବର୍ଣ୍ଣ ପରି ।
କେବଣ ଠାବରେ କଳା ମେଘ ରତ୍ନ ଘୋଟି
ମଧରେ ବେଦୀ କଲେ ବିଚିତ୍ର ବର୍ଣ୍ଣ ରଚି
ଶତେହାତ ଦୀର୍ଘ ଯେ ଚାରିଦୀର୍ଘ ପ୍ରତି ।
ନିର୍ବାଣ କଲେ ପୁଣ ବିଶ୍ୱକର୍ମାକୁ ଘେନି
ସେ ସଭା ଦିଶୁଅଛି ସୁଧର୍ମା ସଭାକୁ ଜିଣି ।
ତଥି ମଧରେ ପୁଣ ରଚିଲେ ହେମ କୁଣ୍ଡ
ଦୀର୍ଘ ପ୍ରତି ପ୍ରମାଣେ ଦଶ ହାତ ଲମ୍ବ ।
ଗଭୀର ବେନି ହାତ ରଚିଲେ ସୂତ୍ରକରି
ପ୍ରବେଶ ହୋଇଲେ ଆସି ସକଳ ତପଚାରୀ ।
ଅଗସ୍ତି ପାରେଶ୍ୱର କୁଶଧ୍ୱଜ ମୁନି
ଚେତନ ଚୈତନ୍ୟ ଉତ୍ତମ ବିଶ୍ୱାମିତ୍ର ଜ୍ଞାନୀ ।
ପୌଲସ୍ତ୍ୟ ବିଶ୍ରବା ଯେ ଅଇଲେ ପିତା ପୁତ୍ରେ
ମାରକଣ୍ଡ ପାରେଶ୍ୱର ଶରଭଙ୍ଗ ପବିତ୍ରେ ।

ଭରଦ୍ୱାଜ ଋଷି ତାରଣ ମହାମୁନି
ଦେବଉଦ୍ୟାଳକ ଦୁର୍ବାସା ତପୋଧନୀ ।
ଏହାଙ୍କର ମୂଳେ ଯେ ବତିଶ ସହସ୍ର ଋଷି
ଅଯୋଧ୍ୟା କଟକରେ ପ୍ରବେଶ ହେଲେ ଆସି ।
ଦଶରଥ ନମସ୍କାର ହୋଇଣ ବୋଇଲେ
ଆଜ ମୋର ସୂର୍ଯ୍ୟବଂଶ ପବିତ୍ର ହୋଇଲେ ।
ବ୍ରହ୍ମଋଷି ରାଜଋଷି ଦେବଋଷିମାନେ
ପ୍ରବେଶ ହୋଇଲେ ଆସି ଅଯୋଧ୍ୟା ଭୁବନେ ।
ଦଶରଥ ବୋଇଲେ ମୁନି କଲ୍ୟାଣ ମୋତେକର
ତୁମ୍ଭ କଲ୍ୟାଣରେ ମୋର ହେଉ ଯେ କୁମର ।
ତପୀମାନେ ବୋଇଲେ ସାଧୁରେ ମହୀପାଳ
ତୁମ୍ଭେତ ଦେଖିଲ ବିଭାଣ୍ଡକ ମୁନି ବାଳ ।
ଆଉ କି ଚିନ୍ତା ତୁମ୍ଭର ଅଛି ହେ ପୁତ୍ରପାଇଁ
ଆରତ ନୁହଁ ମନେ ନୃପତି କୁଳ ସାଇଁ ।
ଏହି ଯାଗ ଚରୁରେ ତୋର ପୁତ୍ରହେବ ଜାତ
ଆମ୍ଭର କଲ୍ୟାଣ ତୋରେ ହେଉ ଯେ ପ୍ରାପତ
ଏଥୁଅନନ୍ତରେ ଯେ ସୁମନ୍ତ ମନ୍ତ୍ରୀ ମିଳି
ରାଜା ଆଜ୍ଞା ପାଇଣ ତପୀଙ୍କି ଘେନି ଚଳି ।
ଯେ ଯାହା ଅନୁରୂପେ ଠାବ ନେଇ ଦେଲା
କନ୍ଦମୂଳ ପକ୍ୱଫଳ ଆଣି ସମର୍ପିଲା ।
ସୁସ୍ଥହୋଇ ଋଷିମାନେ ନିଶ୍ଚିନ୍ତେ ରହିଲେ
ନିଜ ରାଜ୍ୟ ଲୋକ ସର୍ବ ଦେଖିଣ ଅଇଲେ ।
ଲୋମପାଦକୁ ଚାହିଁଣ ବୋଲେ ଦଶରଥ
ପୂର୍ବଦ୍ୱାର ରକ୍ଷା ତୁମ୍ଭେ କର ଯାଇ ମିତ ।
କୌଶଲ୍ୟାଙ୍କର ଭାଇ ରଖୁ ଉତ୍ତର ଦ୍ୱାର
ଦକ୍ଷିଣ ଦ୍ୱାରେ ଥାନ୍ତୁ କୈକେୟୀ ପିଅର ।
ସୁମିତ୍ରାର ଭାଇ ଯେ ପଶ୍ଚିମଦ୍ୱାର ରଖୁ
ସକଳ ଲୋକମାନଙ୍କୁ ଏକ କରି ଦେଖୁ ।
ସୁମନ୍ତ ସମ୍ଭାଳିବେ ଋଷିଗଣମାନ
ତପୀଙ୍କି ବଶିଷ୍ଠ କରିବେ ସନମାନ ।
ଜାବାଳି ତଣ୍ଡୁଳ ସମିଧ ଆଣି ଦ୍ୟନ୍ତୁ
ବାମଦେବ ଯାଇଣ ଭଣ୍ଡାର ରଖନ୍ତୁ ।
କାଶ୍ୟପ ଚର୍ଚ୍ଚିବେ କୁସୁମ ଗନ୍ଧ ପୁଷ୍ପ
ଚର୍ତୁପାଶ୍ୱେ ଥିବେ ଲକ୍ଷ୍ମୀବନ୍ତ ଯେ ପୁରୁଷ ।
ମତ୍ତ ଗଜ ଅଶ୍ୱ ଦିବ୍ୟ ଯାନ ମାନ
ବେଶ୍ୟା ସ୍ତିରୀ ଆଣି କରନ୍ତୁ ନୃତ୍ୟ ପୁଣ ।

ଯେ ଯାହା ମାଗିବ ଯେ ନିରାଶ ନକରିବ
ଅନ୍ନବସ୍ତ୍ର ତଣ୍ଡୁଳ ତଇଳ ଘୃତ ଦେବ ।
ଆଷାଢ଼ ଶୁକ୍ଳ ଏକାଦଶୀ ଗୁରୁବାର
ଜ୍ୟୋଷ୍ଠ ନକ୍ଷତ୍ର ଯେ ଦଶାକୁ ସାଧ ତାର ।
ସପ୍ତ ଚନ୍ଦ୍ର ଶୁଭଲଗ୍ନ ବେଳ ଜାଣି
ଶୁକ୍ର ଅଧିକାରୀ ଯେ ହୋଇଛନ୍ତି ପୁରି ।
ଏସନକ ଶୁଭଲଗ୍ନ ଯୋଗ ତୀର୍ଥ ବେଳେ
ଦଶରଥଙ୍କୁ ବୋଲେ ବିଭାଣ୍ଡକ ବାଳେ ।
ଯେତେକ ଅଛନ୍ତି ଯେ ତୁମ୍ଭର ମହାଦେଈ
ସେମାନଙ୍କୁ ବୋଲ ବ୍ରତ ପାଳିଥିଲେ ସେହି ।
ପ୍ରଭାତୁ ସ୍ନାହାନ ହବିଷ୍ୟ ଏକାବେଳେ
ମୌନ ବ୍ରତେ ଧର୍ମ ସାଧିବେ ନ୍ୟାୟବଳେ ।
ଅବିଚ୍ଛନ୍ନେ ଅନ୍ନ ବସ୍ତ୍ର ଦେବେ ଦୁଃଖୀଜନେ
କିଞ୍ଚିତ କଥାରେ ଚିନ୍ତା ନକରିବେ ମନେ ।
ମନ୍ତ୍ରଗୋଟି ଜପିବେ ବସିଣ ଯୋଗଧାନେ
ଋଷ୍ୟଶୃଙ୍ଗ କହିଲେ ଦଶରଙ୍କର କର୍ଣ୍ଣେ ।
ଶୁଣିକରି ଦଶରଥ ହରଷ ହେଲେ ମନେ
ଋଷ୍ୟଶୃଙ୍ଗ ବଚନରେ କରି ଅନୁଧାନେ ।
ଦିନକେ ସହସ୍ରେ ବେଳ ମହାମନ୍ତ୍ର ଜପିବ
ଯେବୁ ହେଳା କରିବ ସେ ପୁତ୍ର ନ ପାଇବ ।
ଏକାନ୍ତେ ବସି ଜପିବ କାହାକୁ ନ ଦେଖି
ଋଷିମାନଙ୍କ ବିଧି ଯେଣୁ ଶାସ୍ତ୍ରରେ ଲେଖି ।
ଦିବସର ଶେଷରେ ଭୋଜନ ପୁଣ କରି
ଅରୁଆ ଅନ୍ନ ଭୋଜନ କରିବେ ସର୍ବନାରୀ ।
ନିର୍ଦ୍ଦୋଷୀ କୃଷ୍ଣାଜିନେ ଶୟନେ ହୁଏ ପୁତ୍ର
ବ୍ୟାଘ୍ର ଛାଲ ଯେ ନୁହଁଇ ପରମ ପବିତ୍ର ।
ସେଥିରେ ବସିବ ଯେବେ ପଶ୍ଚିମ ମୁଖ ହୋଇ
ହୋଇଣ ପରନାରୀ ନ ହରିବ କାହିଁ ।
ଶତାଇଶ କୁଶରେ ଶତାଇଶ ଗଣ୍ଠି
ମନ୍ତ୍ର ଜପ କରିବ ସୁମନେ ଦେଇ ମତି ।
ଗଳାରେ ଥିବ ଯେ ତୁଳସୀ ପୁଷ୍ପମାଳି
ଛାମୁରେ ଗୁଆ ଘୃତ ଦୀପ ଥିବ ଜାଳି ।
ତେବେ ସେହିମାନଙ୍କର ଫଳସିଦ୍ଧିହୋଇ
ମୃଗଛାଲ ବିଧାନ ଶୁଣହେ ନୃପସାଇଁ ।
ମୃଗଛାଲ ଉପରେ ନିଷ୍ଠେଳେ ଯେବେ ବସି
ଶତାଇଶ ଗଣ୍ଠିରେ ଯେ ମହାମନ୍ତ୍ର ଜପି ।

ମହାମନ୍ତ୍ର ଜପିବାକୁ ଯେତେବେଳେ ହେବ
ତେତେବେଳେ ଯାଏ ପୁଣ ଆଚାରରେ ଥିବ ।
ପୂର୍ଣ୍ଣକୁମ୍ଭ ବସାଇ କରିବ ବରୁଣ ପୂଜା
ଆମ୍ଭର ବୋଲରେ ତୁମ୍ଭେ ଚଳ ମହାରାଜା ।
ଶୁଣିଣ ନୃପବର ନବରେ ପ୍ରବେଶ
ହକାରି ଅଣାଇଲେ ସକଳ ରାଣୀହଂସ ।
ଋଷ୍ୟଶୃଙ୍ଗ ଯେତେକେ କହିଥିଲେ ପୁଣି
ପାଟ ମହାଦେଈକି ବୁଝାଇ ନୃପମଣି ।
ଶୁଣିକରି ରାଣୀ ସର୍ବେ ଆଚରିଲେ ବ୍ରତ
ଆପଣେ ଦୀକ୍ଷା ଯେଣୁ କହିଲେ ଅଜସୁତ ।
ଶୁଣନ୍ତି ପାର୍ବତୀ ଯେ କହନ୍ତି ଶଙ୍କର
ଆଦ୍ୟକାଣ୍ଡ ରାମାୟଣ ଗ୍ରନ୍ଥମଧ୍ୟେ ସାର ।
ଶ୍ରୀରାମ ଯେ ଜନ୍ମ ହେବେ ପୁଣ ଏହୁ ଯଜ୍ଞେ
ତୁମ୍ଭେ ଏହା ଶୁଣ ଗୋ କରିଛ ଭାଗ୍ୟ ପୂର୍ବେ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ଆହେ ଶୂଳୀ
ମୋହର ପାପଭରା ପକାଅ ଏବେ ଦଳି ।
ତୁମ୍ଭର ପ୍ରସାଦେ ଦେବ ପାଇଚି ବହୁ ଧର୍ମ
କହହେ ପ୍ରାଣନାଥ ଶ୍ରୀରାମ ଆଦ୍ୟ ଜନ୍ମ ।
କେତେ ରାଜା ଠୁଳ ହେଲେ ଅଯୋଧ୍ୟାନବରେ
ଏହି କଥା ବୁଝି କହ ଆହେ ଦିଗମ୍ବରେ ।
ଦେବଋଷି କେତେଥିଲେ ବ୍ରହ୍ମଋଷି କେତେ
ରାଜଋଷି ଶୁଦ୍ରଋଷି ଅଇଲେକ କେତେ ।
ଯୋଗୀ ସନ୍ନ୍ୟାସୀ ଯେ ଆବର ଦୁଃଖୀଜନେ
ଏମାନେ କେତେଅଇଲେ କହହେ ପ୍ରସନ୍ନେ ।
ବନ୍ଧୁ ବାନ୍ଧବ ରାଜା କେତେ ଯେ ଅଇଲେ
ହାଟୁଆବାଟୁଆ ପୁଣକେତେ ରୁଣ୍ଡ ହେଲେ ।
ଏହା ମୋତେ ବୁଝାଇଣ କହ ଶୂଳପାଣି
ତୁମ୍ଭର ଚରଣରେ ବିନତି ମୋର ପୁଣି ।
ଶୁଣିକରି ଈଶ୍ୱର କହନ୍ତି ସେହୁ କଥା
ଶୁଣ ଆଗୋ ହେମବନ୍ତ ଗିରିଶ ଦୁହିତା ।
ଦ୍ୱାଦଶ ସହସ୍ର ଯେ ଅଇଲେ ରାଜାଗଣ
ସହସ୍ରେ ତିନିଶତ ଦଶରଥଙ୍କର ବନ୍ଧୁ ଜାଣ ।
ଲୋମପାଦ ରାଜାଙ୍କର ସହସ୍ରେ ସାତଶ
ଦୁଇ ରାଜା ବନ୍ଧୁ ଯେ ଏମନ୍ତେ ତିନି ସସ୍ର ।
ପନ୍ଦର ସହସ୍ର ରାଜା ତହିଁ ହେଲେ ମେଳ
ଚୂନ ପ୍ରାଂଗଣରେ ପୁଣ ରହିଲେ ସକଳ ।

ଦର୍ପଣର ଝରା ମୁକୁତା ଝଲକନ୍ତି
ଚିତ୍ରପଟ୍ଟ ପିତୁଳା କାନ୍ଥରେ ଲେଖିଛନ୍ତି ।
ଚୂଆ ଚନ୍ଦନ ଯେ ସୁଗନ୍ଧ ଛେରା ପଡ଼ି
କର୍ପୂରର ଧୂଳି ତଳରେ ଅଛନ୍ତି ଯେ ପାଡ଼ି ।
ଏକଏକ ରାଜାଙ୍କୁ ଯେ ଶତେକ ବଖରା
ଖଟ ଦୋଳି ପଲଙ୍କ ବାଙ୍କିଆ ଦିଶେ ତୋରା ।
ପଞ୍ଚବର୍ଣ୍ଣ ପୁଷ୍ପମାଳ ଗୁନ୍ଥିଣ ଯତନେ
ମାଳାକାରମାନେ ନେଇ ଦିଅନ୍ତି ରାଜନେ ।
ରତ୍ନମୟ ସିଂହାସନ ପ୍ରତି ରାଜାଙ୍କର
ଶୀତଳ ମଣୋହି ଯେ ଯୋଗାଡ଼ ପ୍ରକାର ।
ଅମଳିଣ ବସ୍ତ୍ର ପାଟଶାଢୀ ଯେ ପତନୀ
ସରୁ ଝୀନ ବାସ ଖଟଣୀଦିଏ ଆଣି ।
ଯୁଣେକ ଆକ୍ରାନ୍ତରେ ନବର ନିର୍ମାଣ
ସେଥିରେ ବିଜୟ ସକଳ ରାଜାଗଣ ।
ଗହ ଗହ ଶବଦ ଯେ ଶୁଭଇ ବୀରତୂର
ବୀଣା ସିତାର ଯେ ମର୍ଦ୍ଦଳ ବାଜେ ଘୋର ।
ସକଳ ରାଜା ଛାମୁରେ ଯାଇ ନୃତ୍ୟକାରୀ
ମୋହନ୍ତି ରାଜାମାନଙ୍କ ମନ ଯେ ହକାରି ।
କି କହିବି ଶୋଭା ଗୋ ଯେ ପୁର କଥାପୁଣି
ବାର ଯୁଣ ଦୀର୍ଘ ଅଯୋଧା ନଗ୍ର ଜାଣି ।
ଦେବ ଋଷି ମିଳିଲେ ଷୋଳ ସହସ୍ର ପୁଣି
ବ୍ରହ୍ମ ଋଷି ଅଇଲେକ ବାର ସହସ୍ର ଜାଣି ।
ତପୀଜନ ଅଇଲେ ବାର ଯେ ସହସ୍ର
ରାଜା ଋଷି ଅଇଲେ ଯେ ସପତ ସହସ୍ର ।
ଶୁଦ୍ରମୁନିଙ୍କ ସଙ୍ଗେ ତିନି ସହସ୍ର ଶିଷ୍ୟ
ଯୋଗୀ ସନ୍ନ୍ୟାସୀ ପୁଣ ପାଞ୍ଚ ଯେ ସହସ୍ର ।
ସମସ୍ତ ଋଷି ତପୀ ଚଉବନ ଠୁଳ
ଯୁଣକର ନବରରେ ରହିବେ ସକଳ ।
ନନ୍ଦୀଗ୍ରାମରେ ସକଳ ରହିଲେକ ଯାଇଁ
ବିପୁଳରାଜା ସେଥିରେ ଯେ ଅଛି ଭିଆଇ ।
ଘୃତ ଅଗ୍ନି ସକଳ ସେଥିରେ ରଖେ ନେଇ
ଧୂନି କରିଣ ଋଷି ମୁନି ତପୀ ରହି ।
କନ୍ଦମୂଳ ଫଳ ଯେ ପକ୍ୱଦ୍ରବ୍ୟ ଆଣି
ଦଧି ଦୁଧ ସର ଯେ ସମର୍ପନ୍ତି ଆଣି ।
ଅମାଲୁ ମାଣ୍ଡୁଆ ପୋଡ ପୁଣଦେଲେ ନେଇ
ଛେନା ସାକର ଯେ ପୁଣନାନା ଦ୍ରବ୍ୟଦେଇ ।
ସେହିସ୍ଥାନେ ମୁନିମାନେ ରହିଲେ ସୁସ୍ଥରେ
ଏଥିଅନନ୍ତରେ ଶୁଣ ଉମା ଦେବୀ ଭଲେ ।
ମାଗନ୍ତା ଦୁଃଖୀଜନ ଅଇଲେ ଯେତେ ପୁଣ
ସେମାନଙ୍କୁ ଅନ୍ନ ବସ୍ତ୍ର ଦେଲେ ରାଜା ଜାଣ ।
ଲକ୍ଷେକ ବ୍ରାହ୍ମଣ ଯେହେଲେ ଆସି ବୃନ୍ଦ
ଘୋଷ ଯାତ୍ରାରେ ଯେହ୍ନେ ଶୋଭା ବଡ଼ଦାଣ୍ଡ
ନବଯୁଣ ଛାମୁଣ୍ଡିଆ ରାଜା କରେ ଜାଣ
ଅନେକ ଲୋକ ଆସିଲେ ଯାଗକୁ ଦେଖିଣ ।
ଈଶ୍ୱର ବୋଇଲେ ପାର୍ବତୀ ମୁଖ ଚାହିଁ
ଯାହା ପଚାରିଲେ ତୁମ୍ଭେ ଶୁଣିଲଟିକି ସହୀ ।
ଶ୍ରୀରାମ ଜନ୍ମ ଚରିତ କହିବା ମଣାଇଁ
ଯାଗରେ ନାରାୟଣ ଜନ୍ମହେବେ ମହୀ ।
ଦଶରଥ ନୃପତି ଯେ ଆଚରିଲେ ବ୍ରତ
ଦୀକ୍ଷଘେନି ରାଣୀହଂସ ସକଳେ କଲେତତ୍ତ୍ୱ ।
ଋଷ୍ୟଶୃଙ୍ଗ ମୁନି ଯେ ନିଷ୍ଠାବନ୍ତ ହୋଇ
ତପୀ ଯାଗରେ ମିଳିଲେ ଯୁବତୀ ନ ଛୁଇଁ ।
ଯାଗେ ପ୍ରବେଶ ହୋଇଲେ ବ୍ରହ୍ମ ଋଷି ପୁତ୍ର
ଜାଣି ଅଜପା ଗାୟତ୍ରୀ ପଢ଼ନ୍ତି ତୁରିତ ।
ଯଜ୍ଞରେ ବ୍ରାହ୍ମଣ ବରିଲେ ଜଣଚାରି
କୁଣ୍ଡଳ ମୁଦି ବସ୍ତ୍ର ଯେ ଦେଲେ ଦଣ୍ଡଧାରୀ ।
ଋଷ୍ୟଶୃଙ୍ଗ ମୁନି ଯେ ଯୋଗରେ ଆଚାର୍ଯ୍ୟ
ମାର୍କଣ୍ଡ ଋଷି ଦେଖି ଯେ ହେଲେକ ଧଉର୍ଯ୍ୟ ।
ଅଗ୍ନିକି ସ୍ଥାପିଣ ବେଦ ମନ୍ତ୍ର ପଢ଼ି
କୁଶ ସମିଧ ଭଇଁଚ ପଳାଶ ଯେ ପୋଡ଼ି ।
ଯବଧାନ ଦହି ଦୁଧ ଗୁଆଘୃତ ବିଧି
ଥଳ ତଣ୍ଡୁଳ ଯେତେବେଳେ ଯେଉଁ ସିଦ୍ଧି ।
ବିଧିବିଧାନରେ ଯାଗକଲେ ମହାମୁନି
ଗନ୍ଧ ଚନ୍ଦନ କର୍ପୂର ସକଳ ବିଧି ଘେନି ।
ଯେବଣ ଦେବତାଙ୍କୁ ଯେବଣ ମନ୍ତ୍ର ପୂଜା
ହୋମରେ ବାକ୍ୟ କରନ୍ତି ସମିଧକରେ ଦୁଜା ।
ଯାଗ ପାଶେ ବାଜେ ଶଙ୍ଖ ମହୁରୀ ଭେରୀ
ଅତି ଗହଳରେ ଉତ୍ସବ ନଗ୍ରପୁରୀ ।
ସ୍ୱର୍ଗରୁ ସୁରଗଣେ ଆସିଲେ ସତ୍ୱର
ତ୍ରିଦଶ ଦେବତା ଯେ ବ୍ରହ୍ମା ରୁଦ୍ର ମେଳ ।
ସୁର ରାଜା ସଙ୍ଗରେ କିନ୍ନରୀ ଅପସରୀ
ଯକ୍ଷ ଗନ୍ଧର୍ବଯେ ସକଳରେ ଆସିମିଳି ।

ସୁଧର୍ମା ସଭାରେ ଯେ ବିଜୟ ସର୍ବେ କରି ।

× × ×

ଦଶୟଣ ମଞ୍ଚକୁ ଛାଡ଼ିଣ ରତ୍ନେ ଦେବ
ମଞ୍ଚପୁର ଲୋକଙ୍କୁ ମିଳିଲେ କ୍ଷେତ୍ର ଭାବ ।
ମଧରେ ସଦାଶିବ ବାମରେ ସୁରରାଜା
ଡାହାଣରେ ବିଧାତା ବସିଛନ୍ତି ପ୍ରଭା ।
ଏମନ୍ତ ସମୟରେ ଚନ୍ଦ୍ର ଦେବତା ଆସି
ଈଶ୍ୱର ଲଲାଟରେ ବିଜୟେ କଲେ ଶଶୀ ।
ଦିବସରେ ଚନ୍ଦ୍ର ଉଇଁଲେ ଶୀତଳର ବିତେଜ
ତେଣୁ ଚନ୍ଦ୍ରଶେଖର ବୋଲାଏ ଈଶ୍ୱରଦେବ ।
ସକଳ ଦେବେ ସୁଧର୍ମା ସଭାରେ ଯାଇଁ ବସି
ଦେଖି ବେଦବରଙ୍କୁ ସୁରାଜା ପୁଚ୍ଛି ।
ବୋଲନ୍ତି ବେଦବର ଶୁଣ ମୋ ବଚନ
ଚତୁର୍ଦ୍ଧା ମୂର୍ତ୍ତି ଯେ ଜନ୍ମ ନାରାୟଣ ।
କୌଶଲ୍ୟା ଗର୍ଭରେ ବାସୁଦେବ ହେବେଜାତ
କୈକେୟୀଙ୍କ ଗର୍ଭେ ଜାତ ସୁଦର୍ଶନ ଚକ୍ର
ସୁମିତ୍ରାଙ୍କ ଗର୍ଭରେ ଅନନ୍ତ ଶଙ୍ଖ ଦୁଇ
ଏମନ୍ତ ଜନ୍ମ ହେବେ ଚତୁର୍ଦ୍ଧା ରୂପ ହୋଇ ।
ତିନିରାଣୀ ଠାରୁ ଯେ ଚାରିପୁତ୍ର ଜାତ
ସକଳ ରାଣୀଙ୍କ ନିଷ୍ଫା ହୋଇବ ବିଅର୍ଥ ।
ଏତେବୋଲି କ୍ଷୁଧାକୁ ଯେବୋଇଲେ ବିଧାତା
ବୋଇଲେ ଅଯୋଧ୍ୟାକୁ ଚଳ ବଳବନ୍ତା ।
ଦଶରଥଙ୍କର ସାତଶହ ପଚାଶ ଯେ ରାଣୀ
କୌଶଲ୍ୟା କୈକେୟୀ ସୁମିତ୍ରା ଛାଡ଼ି ପୁଣି ।
ଆଉ ସବୁ ରାଣୀଙ୍କ ହୃଦରେ ବସ ଯାଇଁ
କ୍ଷୁଧା ହେବାରୁନିଷ୍ଫା ତେଜ୍ୟା କରିବେ ସେହି ।
ସାତଶ ଶତଚାଲିଶ ରାଣୀ ତେଜିଲେ ନିଷ୍ଫାପଣ
କ୍ଷୁଧାରେ ଆର୍ତ୍ତ ହୋଇ କଲେକ ଭୋଜନ ।
କେବଳ ତିନିରାଣୀ ରହିଲେ ନିଷ୍ଫାବନ୍ତେ
ଶୁଣିଣ ପାର୍ବତୀ ଯେ ପଚାରେ ବିଶ୍ୱନାଥେ ।
ବୋଇଲେ ସେଠାରୁ ଯେ କିସ ହେଲା ପୁଣ
ଈଶ୍ୱର ବୋଇଲେ ତୁମ୍ଭେ ଭଗବତୀ ଶୁଣ ।
ସ୍ୱର୍ଗମର୍ତ୍ତ୍ୟ ପାତାଳ ଯେ ଆନନ୍ଦ ତିନିପୁର
ଦେଖିଣ ପୁରଜନେ ତେଜିଲେ ଶୋକଭର ।
ଯେଉଁ ଦେବତାଙ୍କୁ ମୁନି ମନ୍ତ୍ରରେ ସୁମରି
ସେ ଦେବତାମାନେ ହବି ଭୁଞ୍ଜନ୍ତି ବସିକରି ।

ପାଞ୍ଚ ଦିନରେ ଯାଗ ହୋଇଲା ସମାପତ
ପୂର୍ଣ୍ଣାହୁତି କଲେ ଋଷ୍ୟଶୃଙ୍ଗ ତପୋବନ୍ତ ।
ଯହୁଁ ଋଷ୍ୟଶୃଙ୍ଗ ଦେଲେକ ଆହୁତି
ସକଳ ଦେବତା ଘେନି ବିଜେ ବେଦପତି ।
ଋଷ୍ୟଶୃଙ୍ଗ ଆହୁତି ବେଦମନ୍ତ୍ରେ ଦେଲେ
ତେତିଶକୋଟି ଦେବେ ହରଷେ ଭକ୍ଷିଲେ ।
ଚଉଦକୋଟି ଶିବ ଘେନି ଈଶ୍ୱର ଭୁଞ୍ଜିଲେ
ଅଷ୍ଟବସୁ ଆବର ଦିଗପାଳ ତୋଷ
ଚାରି ଯୁଗ ସଙ୍ଗତରେ ପୃଥ୍ୱୀଦେବୀ ବଶ୍ୟ ।
ଅଣଚାଶ ପବନ ଯେ ଚଉଷଠି ମେଘ
ଗନ୍ଧର୍ବ କିନ୍ନର ଆଦି ନୃତ୍ୟକାରୀ ସର୍ବ ।
ସ୍ୱର୍ଗରେ ଅପସରୀ ପାତାଳେ ନାଗଲୋକେ
ବାସୁକୀ ସହିତେ ପାତାଳ ପୁର ଯେତେ ।
ନବକୋଟି ସହିତେଣ ଦୁର୍ଗା ସଙ୍ଗେ ମିଳେ
ଗାୟତ୍ରୀ ସାବିତ୍ରୀ ସଙ୍ଗେ ଶଚି ବିଜେକଲେ ।
ସକଳ ଦେବାଦେବୀ ମୂର୍ତ୍ତିବନ୍ତ ହୋଇ
ହବି ଭୁଞ୍ଜିଲେ ସୁଖେ ପରମ ସୁଖ ପାଇ ।
ବ୍ରହ୍ମା ରୁଦ୍ର ସକଳ ଦେବତାଙ୍କୁ ଦେଖି
ଉଠିଲେ ସର୍ବଋଷି ଆସନ ଉପେକ୍ଷି ।
ବାକ୍ୟ ପ୍ରତିକ୍ଷଣ ଛାଡ଼ିଣ ସର୍ବ ଯତି
କରଯୋଡ଼ିଣ ଆଗେ କଲେ ବହୁ ସ୍ତୁତି ।
ଧନ୍ୟ ମୋର ପିତା ଧନ୍ୟ ମୋର ତପ
ପ୍ରତ୍ୟକ୍ଷରେ ଦେଖିଲି ମୁଁ ସୁରଗଣଙ୍କ ରୂପ ।
ଋଷି ମୁନି ତପୀ ଯେତେ ସେଥିରେ ଥିଲେ
ସକଳ ଦେବତାଙ୍କୁ ଚକ୍ଷୁରେ ଦେଖିଲେ ।
ରାଜାଗଣ ସହିତେ ପ୍ରଜାଗଣ ଯେତେ
ଈଶ୍ୱର ଇନ୍ଦ୍ରଦେବେ ଦେଖିଲେ ସମସ୍ତେ ।
ରାଣୀହଂସବେଶ୍ୟା ନଟକାରୀ ଯେତେଥିଲେ ତହିଁ
ଅପସରୀମାନଙ୍କୁ ଦେଖି ଉଭା ହୋଇ ।
ଦ୍ୱିଜ ବ୍ରାହ୍ମଣ ସେଥିରେ ବହୁତ ପୁଣ ଥିଲେ
ଈଶ୍ୱର ବ୍ରହ୍ମାଙ୍କୁ ପୁଣ ଦରଶନ କଲେ ।
ଋଷ୍ୟଶୃଙ୍ଗ ବୋଇଲେ ସମସ୍ତ ଦେବେ ଶୁଣ
ଦଶରଥଙ୍କୁ ସର୍ବେ କର ସୁକଲ୍ୟାଣ ।
ପୁତ୍ର ଗତି ପାଆନ୍ତୁ ଅଯୋଧ୍ୟା ନୃପବର
ତୁମ୍ଭେ ଦେବତା ଏବେ ସର୍ବେ ଦିଅ ବର ।

ମୋହର ଯଶ ପୁର ରବିଚନ୍ଦ୍ରେ ରହୁ
ଧର୍ମ ଆଶ୍ରେ କରିଛି ରାଜା ପୁତ୍ର ପାଉ ।
ପୁତ୍ର ବରଦିଅ ସକଳ ଦେବେ ପୁଣି
କଥା ରହିଥାଉ ଏବେ ଯାବତ ମେଦିନୀ ।
ତୁମ୍ଭେ ଦେବତାଏ ସନ୍ତୋଷ ହୋଇ ସର୍ବେ
କର ତୁମ୍ଭେ ଅନୁଗ୍ରହ ସୂର୍ଯ୍ୟ ବଂଶକୁ ଏବେ
ଏତେବୋଲି ମୁନି ଯେ ପ୍ରଳମ୍ବ କରି ଶୋଇ
ଏ ସମୟେ ବାସୁଦେବ ମିଳିଲେକ ଯାଇ ।
ଦେଖିଣ ଦେବତାଏ ବିଷ୍ଣୁଙ୍କୁ ସ୍ତୁତି କଲେ
ଜୟ ଜୟ ପରମେଶ୍ୱର ବୋଲିଣ ବୋଇଲେ ।
ଜୟ ଜୟ ନାରାୟଣ ମଧୁ କୈଟଭ ହାରୀ
ଜଗତ ଜନ ନିସ୍ତାରଣ ପରମ ବ୍ରହ୍ମଚାରୀ ।
ତୁମ୍ଭେ ଦେବ ପରଂବ୍ରହ୍ମ ସ୍ୱୟଂ ଅନ୍ତର୍ଯ୍ୟାମୀ
ନମୋ ଶ୍ରୀପୁରୁଷୋତ୍ତମ ସକଳ ଗୁଣେ ଦାନୀ ।
ସଂସାର ତାରଣ ସୁରଗଣଙ୍କର ନାଥ
ଆପଣାର ମହିମା ତୁମର ଶଙ୍ଖଚକ୍ର ହସ୍ତ ।
ଶ୍ରୀବତ୍ସ ଲକ୍ଷଣ ଯେ ଶ୍ରୀବତ୍ସର ଚିହ୍ନ
କଣ୍ଠରେ କୌସ୍ତୁଭ ଆଦିତ୍ୟ ନିନ୍ଦେ ପୁଣ ।
ହୃଦରେ ପୀତବସ୍ତ୍ର ଅଙ୍ଗୁଷି ଶୋହେ ମୁଦି
ହୃଦରେ ବନମାଳା ବିଜୁଳି ପ୍ରସିଦ୍ଧି ।
ଆରତ ଭଞ୍ଜନ ହେ ଜଗତ ଜନ ମୂଳ
ଶରଣ ରକ୍ଷଣ ପ୍ରଭୁ ଅସୁର କ୍ଷୟ କର ।
ଶ୍ରୀ ପୁରୁଷୋତ୍ତମ ସକଳ ଲୋକ ମନ୍ତ୍ର
ମୁକୁନ୍ଦ ନାରାୟଣ ମାଧବ ଉଚିତ ।
କରଦେବ ଅନୁଗ୍ରହ ଅପାର ମହିମା
ଏସନେକ ବୋଲିଣ ସ୍ତୁତି କଲେ ବ୍ରହ୍ମା ।
ଶ୍ରୀହରି ବୋଇଲେ ଯେ ତୁମ୍ଭର କିସ କାର୍ଯ୍ୟ
କିମ୍ପାଇଁ ସ୍ତୁତି ତୁମ୍ଭେ କରହେ ଦେବରାଜ ।
ବିଧାତା ବୋଇଲେ ତୁମ୍ଭେ ଶୁଣ ଦେବସ୍ୱାମୀ
ସର୍ବ ଦେବ ନିସ୍ତାରଣ କରହେ ଅନ୍ତର୍ଯ୍ୟାମୀ ।
ଉତ୍ପତ୍ତି ସ୍ଥିତି ପ୍ରଳୟ ହୁଅନ୍ତା ବହନ୍ତା
ତୁମ୍ଭର ବିନୁ ଆନ କେ ସୃଷ୍ଟି ଉଦ୍ଧରନ୍ତା ।
ତୁମ୍ଭର ପ୍ରସାଦେ ଆମ୍ଭେ ସ୍ୱର୍ଗେ ସୁସ୍ଥେ ରହୁ
ତୁମ୍ଭର ଅବଜ୍ଞାରେ ସୃଷ୍ଟି ରହିବ କାହୁଁ ।
ତୁମ୍ଭେ ପରା ଠାକୁର ଆମ୍ଭେ ତୁମ୍ଭ ଭୃତ୍ୟ
ଭୃତ୍ୟଜନଙ୍କୁ କାରଣ କର ଜଗନ୍ନାଥ ।

ଶୁଣି ଦେବ ନାରାୟଣ ବ୍ରହ୍ମାଣ୍ଡ ମୁରାରି
ହେତି ପ୍ରହେତି ଦୁଇ ଗର୍ଭରୁ ଅବତରି ।
କେଶା ନାମରେ ତାହାଙ୍କର ପୁତ୍ର
ବଡ଼ାଇ ଧାର୍ମିକ ସେ ଅଟେ ପୁରୁଷାର୍ଥ ।
ସେ ମହାତମା ଯେ ପାପ ପୁଣ୍ୟ ଜ୍ଞାନୀ
ନ୍ୟାୟବନ୍ତ ପୁରୁଷ ସାମାନ୍ୟ ମହାମୁନି ।
ତାହାର ତନୟ ଯେ ବିଦ୍ୟୁ ଜିହ୍ୱା ହୋଇ
ପ୍ରତାପୀ ପଣରେ ଯେ ସମାନ ନୋହେକେହି ।
ଏହିକାଳେ ତିନିପୁତ୍ର ହୋଇଲେକ ଜାତ
ମାଳି ସୁମାଳି ଯେ ଅଟନ୍ତି ମାଲ୍ୟବନ୍ତ ।
ଦୁଷ୍ଟପଣ କରିଣ ଯେ ଧର୍ମ ନାଶ କଲେ
ତପୀ ଜପୀ ଗୋରୁ ବ୍ରାହ୍ମଣ ହତ୍ୟା କଲେ ।
ତେଣୁକରି ବଧ ତାକୁ କଲ ନାରାୟଣ
ପରନାରୀ ହରିଲେ, ହରିଲେ ପରଧନ ।
ମାଳି ସୁମାଳି ମାଲ୍ୟବନ୍ତ ମଲେ ତୁମ୍ଭ ହସ୍ତେ
ଡରେ ପଳାଇଲେ ସୁମାଳି ନାମେ ଦୈତ୍ୟେ ।
ଅସୁର ବଳ ଘେନିଣ ପାତାଳରେ ଲୁଚି
ନୈକେଶା ନାମରେ ତାହାର ଦୋହେତୀ ।
କାଳେଣ ବିଭା ତାହାକୁ ହୋଇଲେ ବିଶ୍ରବା
ମୁନିଙ୍କର ବୀର୍ଯ୍ୟରେ ତିନିପୁତ୍ର ଉଭା ।
ରାବଣ କୁମ୍ଭକର୍ଣ୍ଣ ଅତି ବଳବନ୍ତ
ଦେବ ଅସୁର ମାନବେ ଡରିଲେ ସମସ୍ତ ।
ଯାଗ ଯଜ୍ଞ ଭାଙ୍ଗିଲେ ଦୁଷ୍ଟରେ ବେନି ଭାଇ
ରାବଣ ତନୟ ଯେ ମେଘନାଦ ହୋଇ ।
ଇନ୍ଦ୍ରକୁ ଜିଣିବାରେ ନାମ ଇନ୍ଦ୍ରଜିତ
ଆବର ନରାନ୍ତକ ଦେବାନ୍ତକ ପୁତ୍ର ।
ଅତିକାୟ ଅସମୟେ ସମ ଏ ତ୍ରିଶିରା
ଅଶୋକ ବିଶୋକ ଯେ ଅକ୍ଷୟ ମହାବୀରା ।
ଜମ୍ବୁମାଳି ସଙ୍କ୍ରାଜିତ ନାଦ ଯେ ପ୍ରହେତି
ଏହାଙ୍କର ଚାଲନ୍ତେ କମ୍ପଇ ବସୁମତୀ ।
ଅକ୍ଷୟ ମହାକାୟେ ପୃଥ୍ୱୀ ଦେବୀକି ଭାରା
କୁମ୍ଭେକ ମକରାକ୍ଷସ ବିରୂପାକ୍ଷ ମହୋଦରା ।
ଅଶୋକ ବିଶୋକ ଯେ ବିରାଟ ପ୍ରଶସ୍ତ
ମହାପୁରୁଷ ନିକଟକୁ ଶୁକସାରଣେ ବଳବନ୍ତ ।
ଏମାନଙ୍କୁ ଘେନି ରାବଣେଶ୍ୱର ଦେବ ଦଳି
ପୃଥ୍ୱୀ ରାଜାମାନଙ୍କୁ ହେଲେଣ ନିବାରି ।

କୁବେରକୁ ଜିଣି ନେଲେ ପୁଷ୍ପକ ବିମାନ
ସୁରଗଣଙ୍କୁ ପାଦେ ଖଟାଏ ଦଶାନନ ।
ଦଶଗୋଟି ମୁଣ୍ଡ ତାର କୋଡ଼ି, ନେତ୍ରଜାଣ
କୋଡ଼ିଏ ଭୁଜ ତାର ଅଟଇ ପ୍ରମାଣ ।
ଭାଇ କୁମ୍ଭକର୍ଣ୍ଣର ଅକଳିତ ବଳ ହୁଏ
ମେଘେ ଶିର ଲାଗେ ଯେତେବେଳେ ଉଭା ହୁଏ ।
ଅଳକା ଗଡ଼ ନାମରେ ଏକଇ ଗଡ଼ ପୁଣ
ସେହି ଗଡ଼ ଭିତରେ ଅଟଇ ଦେବ ଜାଣ ।
ନଉକାଳ ଦୈତ୍ୟ ଯେ ସେଥିରେ ରାଜା ହୋଇ
କାଳେଣ ଦୁଷ୍ଟପଣ କଲା ସେଥି ରହି ।
କାଳେ ତାହାକୁ ପୁଣ ଇନ୍ଦ୍ର ନାଶ କଲା
ତେଣୁ ସେ ପୁର ଗୋଟି ବେଛାପୁର ହେଲା ।
ତାହାର ଦୁହିତା ନାମ ସୁଲଭ ଶୁଭ୍ରକେଶୀ
ଜୟନ୍ତୀ ବୋଲି ଋଷିଙ୍କି ବିଭାହେଲା ଆସି ।
ତାହାର କୋଳେଜାତ ଶତମୁଖା ଯେ ରାବଣ
ପବନକୁ ବଳିଷ୍ଠ ସେହୁ ହେଲା ପୁଣ ।
ତିନିପୁର ସାଧିଣ ଦେବଙ୍କୁ ନେଲାଧରି
ସପ୍ତଯୁଗ ପର୍ଯ୍ୟନ୍ତେ ରଖିଲା ବନ୍ଦକରି ।
ମରୁତ ଶରୀର ଗୋଟି ଅଟେ ତାର ପରା ।
ଲକ୍ଷେକ କୁମର ଯେ ନବଲକ୍ଷ ନାତି
ବାରଯୁଣ ଗଡ଼ ତାର ଅକଳିତ ନିତି ।
ଅଲଙ୍କା ବୋଲିଣ ଦେବ ସାହେରରେ ଘର
ମେଘାସୁର କୁମର ସହସ୍ର ମୁଖା ବୀର ।
ଈଶ୍ୱରଙ୍କ ବରରେ ସେ ଅଟଇ ବଳବାନ
ତିନିପୁର ସାଧିଣ କଲାକ ରଣଭଣ ।
ଦେବଙ୍କୁ ଧରିନେଇ ଚଉଦ ଯୁଗ ଯାଏ
ବନ୍ଦିକରି ରଖିଲା ଶୁଣ ଦେବରାୟେ ।
ଈଶ୍ୱର କହିବାରୁ ଦେବଙ୍କୁ ଛାଡ଼ିଦେଲା
ଦେବଙ୍କୁ ଜିଣି ଅସୁର ବଳବାନ ହେଲା ।
ସହସ୍ର ମୁଖ ହେବାରୁ ମଧରେ ବର ତାର
ଚାରିପାଖରେ ପେଟ ମୁଖ ଅଟେ ତାର ।
ବେନିଲକ୍ଷେ କୁମର ଯେ ବାରଲକ୍ଷେ ନାତି
ଅଠର ଲକ୍ଷ ଯୁଆଇଁ ଅଟନ୍ତି ମହାରଥୀ ।
ତାହାଙ୍କ ଭାରାରେ ଧରଣୀ ପ୍ରତିଦିନ କାନ୍ଦି
ବାସୁକୀ ଶିର ଟେକିନପାରେ ନିଉନ ହୋଇବନ୍ଦୀ ।

ତାହାର କୁମର ଯେ ଗୁମାନୀ ସୁରପୁଣ
ଗୁମାନୀସୁର ଜିଣିଲା ତିନିପୁର ଜାଣ ।
ମହୀରାବଣ ନାମେ ନାତି ଦଶମୁଖା ରାବଣର
ଇନ୍ଦ୍ରଜିତ କୁମର ଅଟଇ ମହାବୀର ।
କାଳେ ସେ ତପକରି ଦୁର୍ଗାଙ୍କୁ ମନାଇଲା
ତେଣୁ ଅଭୟବର ଯୋଗ ମାୟା ଦେଲା ।
ତେଣୁକରି ତିନିପୁର ସାଧିଲା ଦଇତ
ଦେବଙ୍କୁ ଧରି ନେଇ ରଖିଲା ବନ୍ଦିରେତ ।
ଆସି ଏ ନନ୍ଦନ ତାର ଏଗାର ସସ୍ର ନାତି
ଶତ ସହସ୍ର ଯୁଆଇଁ ଅଟନ୍ତି ତାର ରଥି ।
ଯୋଗମାୟା କହିବାରୁ ଦେବଙ୍କୁ ଛାଡ଼ିଦେଲା
ବରଦେବା ପ୍ରଭୁଙ୍କର ବୋଲ ମାନିପରା ।
ସୁଲଙ୍କା ଜ୍ୟୋତି ଲଙ୍କାବେନି ଗଡ଼ରେ ରାଜା
ତେଣୁ ମହୀରାବଣକୁ ପ୍ରତାପୀଶ୍ୱର ରାଜା ।
ଦଶମୁଖା ରାବଣକୁ ମୁହିଁ ବର ଦେଲି
ବିଶ୍ରବା ନନ୍ଦନମୋତେ ନ ମାନେ ତୁଚ୍ଛକରି ।
ଦେବଙ୍କୁ ଛାଡ଼ ବୋଲି ମୁହିଁ କହିବାରୁ ପୁଣ
ମୋତେ ବନ୍ଦୀ କଲା ଯେ ଦେବଙ୍କ ସଙ୍ଗେଣ ।
ଭୋଦେବ ନାରାୟଣ ଦଇତ ବେଗେ ମାର
ତୁମ୍ଭର ସେବକ ଆମ୍ଭେ ଆମ୍ଭଙ୍କୁ ରକ୍ଷାକର ।
ଚାରିରାବଣ ମାଇଲେ ପୃଥ୍ୱୀ ହେବସ୍ଥିର
ଯେଉଁ ରୂପେ ଅସୁରଙ୍କୁ ମାରିବେ ବିଚାର ।
ବଳିକି ଚାପିବ ଯେ ବାମନ ରୁପ ଧରି
କାଶ୍ୟପକୁଳେ ଜାତ ହୋଇଲ ବିଚାରି ।
ବେଦ ଚୋରୀ କଲା ଯେ ଶଙ୍ଖା ନାମେ ଦୈତ୍ୟ
ସୁମରିଲା ମାତ୍ରକରେ ତୁମ୍ଭେ କଲ ହତ ।
ବେଦମନ୍ତ୍ର ଦେଇ ମୋତେ ନିଶ୍ଚିନ୍ତ କରାଇଲ
ଜୟ ଜୟ ନାରାୟଣ ଜୟ ଆଦିମୂଳ ।
ପୃଥ୍ୱୀ ଦେବୀର ପୁଣ ଭାରା ନ ସହିଲା
ବାସୁକୀ ଦେବତା ଯେ ମସ୍ତକ ନୂଆଁଇଲା ।
ହିରଣ୍ୟକଶ୍ୟପ ଯେ ବୋଲି ବେନି ଦୈତ୍ୟ
ଜାତ ହୋଇ କଲେ ବହୁତ ଅନର୍ଥ ।
କାଶ୍ୟପର ପାଦଘାତେ ପୃଥ୍ୱୀ ଟଳଟଳ
ମେରୁ ଜଣାଇଲେ ଯାଇଁ ତୁମ୍ଭର ଆଗର ।
ଦୟାକରି ମେରୁରେ ତୁମ୍ଭେ ଜାତ ହେଲ
ବରାହ ରୂପ ଧରି କାଶ୍ୟପୁ ସଂହାରିଲ ।

କାଶ୍ୟପୁ ମରିବାରୁ ହିରଣ୍ୟ ପଳାଇଲା
ପାତାଳ ପୁରେ ଯାଇ ଲୁଚିଣ ରହିଲା ।
ତୁମ୍ଭେ ଅନ୍ତର୍ଦ୍ଧୃତ ହେବାରୁ ନରହରି
ହିରଣ୍ୟ ପାତାଳ ଅଇଲା ଜାଣିକରି ।
ମଧପୁରେ ପ୍ରବେଶ ହେଲା ଦୈତ୍ୟ ଆସି
ଦେବ, ବ୍ରାହ୍ମଣ, ଋଷି ବିନା ଦୋଷେ ନାଶି ।
ପୁତ୍ରେକ ସ୍ଥିତ ହେଲା ତାହାର କୋଳେଣ
ପୁତ୍ର ନାମ ପ୍ରହ୍ଲାଦ ଦେଲା ପୁଣ ଜାଣ ।
କାଳେ ସେ ପୁତ୍ର ହେଲା ତୁମ୍ଭରେ ଭକତି
ତେଣୁ ଯେ ଦୈତ୍ୟ ତାକୁ ପାଞ୍ଚିଲା ବିଘ୍ନନିତି ।
ଉତ୍ପାତ ଦେଖି ସ୍ତମରେ ତୁମ୍ଭରେ ସେହି ପୁତ୍ର
ସ୍ତମ୍ଭରୁ ଜାତ ହୋଇ ମାଇଲ ଦଇତ ।
ସେଠାରୁ ସତର ଯୁଗ ବହିଗଲା
ଅସୁର ପ୍ରବଳ ହେଲେ ସମ୍ଭାଳି ନୋହିଲା ।
ଯମଦଗ୍ନି କୁଳରେ ତୁମ୍ଭର ଅଂଶ ଜାତ
ପର୍ଶୁରାମ ନାମ ଯେ ଜଗତେ ବିଖ୍ୟାତ
ଶତେବାର ସପ୍ତପୁର ଦୁଷ୍ଟଙ୍କୁ ଯେ ମାରି
ସହସ୍ରାର୍ଜ୍ଜୁନ ସଙ୍ଗରେ ଅନେକ ସଂହାରି ।
ଏ ଚାରି ରାବଣ ତାଙ୍କ ହସ୍ତରେ ନହେବେ ମୃତ୍ୟୁ
ଛପନଗଣ୍ଡା ଯୁଗକୁ ପାଇଲେ ଆୟୁଷ ଚତ୍ୟୁ ।
ଅଯୋଧା ଦଶରଥଘରେ ତୁମ୍ଭେଜାତ ହେଲେ
ଚାରି ରାବଣ ମରିବେ ଦଶମୁଖାର ଦୋଷରେ ।
ଚୋରିକରି ସୀତାନେବ ବିଶ୍ରବାର ସୁତ
ତେଣୁ ସେ ଚାରି ରାବଣ ମରିବେ ନିୟତ ।
ଯେହୁ କାଶ୍ୟପ ଋଷି ସେହିଟି ଦଶରଥ
ଅଦିତି କୌଶଲ୍ୟା ତାର ଗର୍ଭେ ହେବ ଜାତ ।
ସୁଦର୍ଶନ ଚକ୍ର ଯେ କୈକେୟୀ ଗର୍ଭେଜାତ
କାଶ୍ୟପଙ୍କର ନାରୀ ଅଟଇ ହେ ତାତ ।
ପ୍ରହେତୀ ଅଂଶରେ ଯେ ଜାତ ସୁମିତ୍ରା
ତାହାର ଗର୍ଭରେ ଅନନ୍ତ ଜାତ ହେବେ ନିଷ୍ଠା ।
ଡାହାଣବର୍ତ୍ତିକ ସଙ୍ଗେ ଅନନ୍ତ ସଙ୍ଗେ ଜାତ
ଶତେମୁଖା ରାବଣକୁ ମାରିବେ ପୁଣ ସେତ ।
ଅନନ୍ତ ମାରିବେ ଇନ୍ଦ୍ରଜିତ, ମହୀରାବଣ
ଦଶମୁଖା, କୁମ୍ଭକର୍ଣ୍ଣ ତୁମ୍ଭ ହସ୍ତେ ଲୀନ ।
ସହସ୍ର ମୁଖା ରାବଣର ଷଢ଼ ପୁତ୍ର ବଢ଼
ସେମାନଙ୍କୁ ଭ୍ରଥ ଯେ ମାରିବେ ନିକର ।

ସହସ୍ରେ ମୁଖାକୁ ଘରଣୀ ଚୋର ମାରି
ତେଣୁ ତାରପିଠି ଅଦୃଶ୍ୟେ ଉହାଡ଼ି ।
ପିଠିପେଟ ଦୃଶ୍ୟଯେହେଲେ ନମରେ ଆନହସ୍ତେ
ଏମନ୍ତେ ଚାରି ରାବଣ ମରିବେ ସଗୋତ୍ରେ ।
ବାଳକାଳେ ବିଶ୍ୱାମିତ୍ର ରଖିବ ତୁମ୍ଭେ ହରି
ଶିବଧନୁ ଭାଙ୍ଗିଣ ଜାନକୀ ବିଭା ସାରି ।
ଯୁବାକାଳେ ବନେ ଯିବ ସତ୍ୟ ରକ୍ଷାକରି
ଭାଇ ଭାରିଯା ସଙ୍ଗତେ ଯିବେ ଯେ ତୁମ୍ଭରି ।
ପଞ୍ଚବଟୀ ବନୁ ସୀତାଙ୍କୁ ରାବଣ ହରିନେବ
ଚଉଦମାସ ଦୁଃଖରେ ତୁମ୍ଭେ ଯେ ବଞ୍ଚିବ ।
ଦେବଙ୍କ ନିମନ୍ତେ ଅସୁରେ ନୁହଁନ୍ତି ପୁଣ ନାଶ ।
ବାନର ଭାଲୁ ସୈନ୍ୟଘେନିଣ ତୁମ୍ଭେ ଯିବ
ତେବେ ଯେ ଚାରି ରାବଣଦୈତ୍ୟଙ୍କୁ ନାଶିବ ।
ମାନବ ରୂପଧରି ଅସୁର ମାରିବ
ଯୁଦ୍ଧରେ ଅସୁର ମାରି ଜାନକୀ ଆଣିବ ।
ଶୁଣିଣ ସନ୍ତୋଷ ଯେ ହେଲେ ଦେବ ହରି
ହୋଇବି ଜାତ ମୁଁ ଯେ ତୁମ୍ଭ ବୋଲ କରି ।
ତୁମ୍ଭର ଦୁଃଖେ ମୁଁ ଯେ ଅସୁର ନିବାରିବି
ଦୈତ୍ୟବଳ ନାଶିଣ ଯେ ଉଦ୍ଧାର କରିବି ।
ଶ୍ରୀହରି ପ୍ରସନ୍ନ ହେବାରୁ ବ୍ରହ୍ମା ତାହା ଜାଣି
ମୁହିଁ ସ୍ତୁତି କଲି ଯେ ହେମବନ୍ତର ଦୁଲଣୀ ।
କହିଲି ନାରାୟଣ ଆଦ୍ୟ ଜନ୍ମର ବାଣୀ
ଅନନ୍ତ ରାଜ୍ୟରେ ଯେ ବିଜୟ ଚକ୍ରପାଣୀ ।
ପାର୍ବତୀ ବୋଇଲେ ଯେ ହରି ଦେବ ପ୍ରିୟ
ଅବତାରନୋହିଲେ ହିଁ ଅସୁରମାରେ କେହ
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ଅବତାର ନୋହିଲେ ଯେହୁ ଅସୁର ମାରନ୍ତି ।
ସେ କଥା ତୁମ୍ଭଆଗରେ କହିବା ଏବେ ଶୁଣ
ଅନନ୍ତ ଶଯ୍ୟାରେ ଯେ ଶୟନ ନାରାୟଣ ।
କର୍ଣ୍ଣରୁ କାନଗୁଆ କାଢିଲେ ଦେବ ମଳି
ସେଥିରୁ ଦୁଇ ପୁରୁଷ ଜନମ ମହାବଳୀ ।
ମଧୁ କୈଟଭ ନାମ ହୋଇଲା ତାଙ୍କର
ଆକାଶରେ ଯାଇଣ ଲାଗିଲା ତାଙ୍କ ଶିର ।
ସମୁଦ୍ର ପାଣି ତାଙ୍କୁ ହୋଇଲା ଆଣ୍ଠୁଆଣି
ଚାଲିକରି ଆସନ୍ତେ ନହେଲା ପୁଣ ପାଣି ।

ମହାଲକ୍ଷ୍ମୀଙ୍କି ଦେଖି ଯେ ବୋଇଲା ମୂଢ଼ମତି
ଅସୁର ଘରଣୀ ହେବୁ ତୁହିରେ ଯୁବତୀ ।
ଏହିଠାରେ ତୁମ୍ଭେ ଗୋ କିସ ପାଅ ସୁଖ
ଆମ୍ଭର ବୋଲେ ତୁମ୍ଭେ ତାହାକୁ ଉପେକ୍ଷ ।
ଆମ୍ଭେ ଏହି ସୃଷ୍ଟିରେ ଅଟୁ ଅଧିପତି
ଭୋଗ କରିବୁ ନା ଅମର ବାରସ୍ୱତୀ ।
ଆମ୍ଭେ ସିନା ସ୍ଥାପିଲୁ ସକଳ ଦିଗପାଳ
ଆମ୍ଭରେ ହୋଇଲା ସ୍ୱର୍ଗ ମଞ୍ଚ ଯେ ପାତାଳ ।
ଆସ ଆସ ସୁନ୍ଦରୀରେ ନ ଧର ବିମନ
ରଖ ପ୍ରାଣ ଆମ୍ଭର ସୁରତି ଦେଇ ଦାନ ।
ଅଧର ଚୁମ୍ବିବଇଁ ଅଧର ପାନ ଜାଣି
ଉଠ ଉଠ ସଖିରେ ତୁହି ଯେ ପଦ୍ମିନୀ ।
ହେବୁ ତୁ ପାଟରାଣୀ ବସିବୁ ଆମ୍ଭକୋଳେ
ତୋର ରୂପ ଦେଖିଣ ବୁଡ଼ିଲୁ କାମଜଳେ ।
ଶୁଣିକରି ଚଞ୍ଚଳା ବୋଇଲେ ଯେ ହସି
ଏ ମୋହର ନାଥଙ୍କର ଅଟଇ ଯେ ଦାସୀ ।
ଏହାଙ୍କୁ ତୁମ୍ଭେ ଯେବେ ପାରିବ ନିଶ୍ଚେ ଜିଣି
ତେବେ ଯାଇ ତୁମ୍ଭର ଯେ ହୋଇବି ଘରଣୀ ।
ଶୁଣିକରି ଦଇତ ଯେ ବୋଇଲେ ବେଗେଚଳ
ନିଶ୍ଚୟ ଏହାର ଆମ୍ଭେ ପୂରାଇବୁ କାଳ ।
କମଳା ବୋଇଲେ କେମନ୍ତ ଭାଙ୍ଗିବା ତାଙ୍କନିଦ
ଏବେ ତୁମ୍ଭେ ତୋଳିଣ କର ପୁଣ ଦ୍ୱନ୍ଦ୍ୱ ।
କମଳାଙ୍କ ସଙ୍ଗେ କଥା ହୁଅନ୍ତେ ଦଇତ
ଚକ୍ଷୁମଳି ନିଦ୍ରାରୁ ଉଠିଲେ ଜଗନ୍ନାଥ ।
କମଳାଙ୍କୁ ଚାହିଁଣ ବୋଇଲେ ଚକ୍ରଧର
ଏ ଦୁଇ ପୁରୁଷ କାହୁଁ ହେଲେ ଅବତାର ।
ମହାଲକ୍ଷ୍ମୀ ବୋଇଲେ ଦେବ ନ ଜାଣଇଁ ମୁହିଁ
ତୁମ୍ଭେ ତାଙ୍କୁ ପଚାର ବୋଇଲେ ଦେବୀ ତହିଁ ।
ଶ୍ରୀହରି ପଚାରିଲେ କିସ କିସ ବୋଲ
ଅସୁରେ ବୋଇଲେ ଆମ୍ଭେ ଜିଣିବୁ ତୁମ୍ଭତୁଲ୍ୟ
ତୋତେ ଜିଣି ତୋର ନେବୁ ଯେ ଘରଣୀ
ତୋହ ଘରଣୀ ସତ୍ୟ କରିଅଛି ପୁଣି ।
ଶୁଣିଣ ବୋଇଲେ ତାଙ୍କୁ ଦେବ ବନମାଳୀ
ଆମ୍ଭେ ଆଗ ତୁମ୍ଭ ସଙ୍ଗେ ନକଲୁଟି କଳି ।
ତୁମ୍ଭର ବଳ ଥିଲେ ସମର ବେଗେ କର
ଭୁଜକୁ ବଢ଼ାଇ ଦେଲେକ ଦାମୋଦର ।

ଦଇତବୋଇଲେ ବେଗେ ଉଠିଣ ଉଭାହୁଅ
ସ୍ୱାମୀ ବୋଇଲେ ହେ ପାରିଲେ ଧରି ନଅ ।
ଶୁଣିକରି ଧରିଲେ କୋପରେ ଭାଇ ବେନି
ଦୁଇ ଭୁଜେ ଦୁହେଁ ବିନ୍ଧାଣ ରତି ପୁଣି ।
ଅନେକ ସମର ଯେ କଲେ ବେନି ବୀର
ଶ୍ରମ ଉପୁଜିଲା ବଡ଼ ଦଇତ ଶରୀର ।
ଦୁହିଁଙ୍କି ଆକର୍ଷିଣ ଆଣିଲେ ପଦ୍ମ ନେତ୍ର
ଦୃଢ଼କରି ଚାପନ୍ତେ ଲୁଚିଲା କରପତ୍ର ।
ଅସୁରଙ୍କୁ ମୃତ୍ୟୁ ଦେଲେ ଦେବ ଯହୁଁ ପୁଣି
ଆକୁଳେ ରୋଦନ ଯେ ଦଇତେ କଲେ ପୁଣି ।
ଭୋଦେବ ନାରାୟଣ ଏକଇ ବର ଦେବା
ଜଳ ନଥିବା ଠାବରେ ଆମ୍ଭଙ୍କୁ ମାରିବା ।
ଶୁଣିଣ ଶ୍ରୀହରି ତାଙ୍କୁ ପଦ୍ମାସନା ଦେଲେ
ଦୁଇ ଦଇତକୁ ମାଇଲେ ଦେବ ଭଲେ ।
ପିଣ୍ଡକୁ ଧରିଣ ବେନି କରେ ମର୍ଦ୍ଦିଦେଲେ
କଞ୍ଚାମାଟିକୁ ଯେସନେ ପିଟଇ କୁରାଳେ ।
ସେହି ପ୍ରକାରେ ପୁଣ ମର୍ଦ୍ଦିଲେ ଅଦିମୂଳ
ଦଳିଣ ସନ୍ତୋଷଯେ ହୋଇଲେ ଦାମୋଦର ।
ନଖ ମୁଖ ହାନି ମାଂସ ରକ୍ତ ଜାଣ
ଯନ୍ତ୍ରିଣ ବେନି ଗୋଟି କଲେ ଦେବ ପୁଣ ।
ତାଙ୍କର ମେଦମାଂସରେ ମେଦିନୀ ସ୍ଥାପିଲେ
ସଂସାର କରିବାକୁ ଯେ ବ୍ରହ୍ମାଣ୍ଡ ରଚିଲେ ।
ତେଣୁକରି ସୃଷ୍ଟି ଯେ ରଚିଲେ ଚକ୍ରଧର
ଅନନ୍ତ କୋଟି ବ୍ରହ୍ମାଣ୍ଡର ଠାକୁର ପୀତାମ୍ବର
ଏବେ ସେ ଅସୁରେ ହେଲେ ମୟେ ମତା
ଦେବ ଋଷି ନରେ ପାଇଲେ ବଡ଼ ଚିନ୍ତା ।
ଦଶଗ୍ରୀବର ଘାତେ ନ ସହେ ଦେବୀ ପୃଥ୍ୱୀ
ଲଜ୍ଜ୍ୟାରେ ବିକଳ ଯେ ଭାଳନ୍ତି ସୁରପତି ।
ଅସୁରେ ଦର୍ପିଷ୍ଟ ପୁଣ ଋଷିଙ୍କୁ ନମାନନ୍ତି
ପାରିଲେ ରକ୍ଷା ଦେବ କରହେ ଏ ଘାନ୍ତି ।
ଅନେକ ଦୁଃଖ ଦେବେ ଦୈତ୍ୟତୁଲେଲୀଳାକଳ
ବ୍ରହ୍ମା କରଯୋଡ଼ି ଯେ ବହୁତ ସ୍ତୁତି କଲେ ।
ଶୁଣିକରି ସନ୍ତୋଷ ହେଲେ ମଧୁହାରୀ
ବୋଇଲେ ଦେବଗଣେ ଶୁଣ ସ୍ଥିତର କରି ।
ତୁମ୍ଭର ଛଳେ ଆମ୍ଭେ ନବ ଋଷି ହେବୁ
ଅସୁରକୁ ମାରି ଆମ୍ଭେ ନିସଂଶୟ କରିବୁ ।

ହୋଇଲା ସନ୍ତୋଷ ଯେ ବେଦବର ଶୁଣ
ଏସନକ ଆଜ୍ଞାଦେଲେ ଦେବଙ୍କୁ ନାରାୟଣ ।
ବିଷ୍ଣୁଙ୍କର ଆଜ୍ଞାରେ ହରଷମନ ହୋଇ
ଦେବତାଏ ସ୍ୱର୍ଗପୁର ସଭାକୁ ଚଳିଯାଇ ।
ସେ କାଳର କଥା କହିଲି ତୋତେ ଗୁଣ
ଜୟ ବିଜୟ ଦ୍ୱାରୀ ରାବଣ କୁମ୍ଭକର୍ଣ୍ଣ ।
ହୋମର ଅଗ୍ନି ମଧ୍ୟରେ ବିଜେ ଚକ୍ରପାଣି
ଋଷ୍ୟଶୃଙ୍ଗ ଦେଖିଣ ନମିଲେ ପୁଣ ପୁଣି ।
ଆନନ୍ଦରେ ମୁନି ଯେ ଆହୁତି ସମର୍ପିଲେ
ପୂର୍ଣ୍ଣ ଆହୁତି ପୁଣ ମାହେନ୍ଦ୍ର ବେଳେଦେଲେ ।
ଦର୍ପଣରେ ଯେସନେ ଦିଶଇ ନିଜ କାୟେ
ମୁନିକି ଦିଶିଲେ ପ୍ରଭୁ ତେସନ ପରାୟେ ।
ଚନ୍ଦ୍ର, ସୂର୍ଯ୍ୟ ଯେସନେକ ଏକ ଦେହ ବହି
ତେସନ ସଞ୍ଜାତ ଦିଶେ ନାରାୟଣ ତହିଁ ।
ଋଷ୍ୟଶୃଙ୍ଗଙ୍କୁ ପ୍ରସନ୍ନ ହେଲେ ପଦ୍ମନେତ୍ର
କରରେ ଘେନିଛନ୍ତି ମୁନି ସୁବର୍ଣ୍ଣର ପାତ୍ର ।
ଚରୁ ଦେବାନିମନ୍ତେ ଅଗ୍ନିରେ ପାତ୍ର ଦେଲେ
ଦେଖିକରି ନାରାୟଣ ପରମ ତୋଷ ହେଲେ ।
ଚରୁପାତ୍ରେ ପୂରାଇ ବୋଇଲେ ମହାବାହୁ
ଘେନ ହେ ଋଷ୍ୟଶୃଙ୍ଗ କାର୍ଯ୍ୟ ସିଦ୍ଧ ହେଉ ।
ଦଶରଥ ରାଜାଙ୍କର ମହାଦେଈମାନ
ବାଣ୍ଟିକରି ଖାଇଲେ ଯେ ଉପୁଜେ ନନ୍ଦନ ।
ଋଷିଙ୍କି ସମର୍ପି ଦେଇଣ ଦେବ ଗଲେ
ଚରୁପାତ୍ର ଘେନିଣ ଋଷ୍ୟଶୃଙ୍ଗ ଉଭାହେଲେ ।
ବାଜଇ ବୀରତୂର ଶଙ୍ଖ ଯେ ମହୁରୀ
ହୁଳହୁଳି ଶବଦରେ ମେଦିନୀ ଉଛୁଳି ।
ହରିବୋଲ ଶବଦ କରନ୍ତି ନଗ୍ରଲୋକେ
ତୁରୁମ ଉଛୁଳେ ଶବଦର ଘାତେ ।
ଆନନ୍ଦ ନରନାରୀ ଅଯୋଧ୍ୟା ନଗ୍ରପୁରେ
ଋଷିମୁନି ତପୀ ଯେ ସୁକଲ୍ୟାଣ କରେ ।
ରାଜା ବନ୍ଧୁଜନ ସେ ସକଳ ସେଥି ପୂରି
ସମସ୍ତଙ୍କର ଆନନ୍ଦ ଚରୁ ଦେଖିକରି ।
ଦେବେ ଜୟ ଜୟ କଲେ ସ୍ୱର୍ଗେ ଥାଇ
ଚରୁ ଦେଇଣ ମୁନି ଦଶରଥଙ୍କୁ କହି ।
ବୋଇଲେ ନୃପତି ତୁମ୍ଭର ବାଞ୍ଛାସିଦ୍ଧ ହେଉ
ଆମ୍ଭର ବଚନ ଗୋଟି ଅନ୍ୟଥା କେବେନୋହୁ ।
ତୁମ୍ଭର କୋଳରେ ବାସୁଦେବ ହେବେ ଜାତ
ସଂସାର ଭାରାଭାର କରିବେ ଉଶ୍ୱାସ ତ ।
ଶୁଣିଣ ଆନନ୍ଦ ମନ ଦଶରଥ ରାୟେ
ଚରୁ ଅନ୍ନଧରିଣ ଅନ୍ତଃପୁରକୁ ଯାଏ ।
ରାଣୀମାନଙ୍କୁ ରାଜଣ ପୁଛି ଦଶରଥ
ତିନି ପାଟରାଣୀ ଯେ ଆଚରିଛନ୍ତି ବ୍ରତ ।
ଅନ୍ୟ ରାଣୀମାନେ ବ୍ରତ ନ ପାରିଲେ କରି
ଦେବକୂଟ ମାୟାରେ ସେ ସମସ୍ତେ ବିହ୍ୱଳି ।
ଦଇବ ଦୁର୍ଯ୍ୟୋଗୁଁ ରାଣୀମାନେ ବ୍ରତ ତେଜି
ସ୍ୱାମୀ ଆଜ୍ଞାରେ ବ୍ରତରେ ନୋହିଲୁ ସଂଯୋଗୀ ।
ରାଜନ ବୋଇଲେ ଯେ ରାଣୀଙ୍କ ମୁଖ ଚାହିଁ
ବ୍ରତ କିମ୍ପା ତେଜିଲେ ଅଜ୍ଞାନ ମୂର୍ଖ ହୋଇ ।
କର୍ମରେ ଅଛଇ ଯେ ତୁମ୍ଭର ପୂର୍ବ ଦୋଷ
ସେ ଫଳ ଭୁଞ୍ଜିବ ଯେ ସକଳ ରାଣୀହଂସ ।
ଲୋମପାଦ ରାଜା ଯେ ଅଟନ୍ତି ମିତ୍ର ମୋର
ଶତେ ରାଣୀ ବ୍ରତକୁ ଆଚରିଲେ ତାର ।
ଶତେ ପୁତ୍ର ହେବ ତାଙ୍କ ଋଷି ଆଜ୍ଞା ଦେଲେ
ଶତେରାଣୀ ଚରୁକୁ ବାଣ୍ଟିଣ ଖାଇଲେ ।
ଶୁଣିକରି ରାଣୀହଂସ ବୋଇଲେ ବଚନ
ଏବେ ଯେଉଁ ପୁତ୍ର ହେବ କରିବ କାରଣ ।
ଶୁଣିଣ ରାଜନ ଯେ ଉଦବେଗ ଚିତ୍ତ
ଦୁଇ ଭାଗକରି ଚରୁ ବାଣ୍ଟିଲେ ଦଶରଥ ।
କୌଶଲ୍ୟା କୈକେୟୀକୁ ସମର୍ପିଲେ ନେଇ
ଘେନିଣ ଦୁଇରାଣୀ ହରଷ ମନ ହୋଇ ।
ସୁମିତ୍ରାଙ୍କୁ ଚାହିଁଣ କହିଲେ କଉଶଲ୍ୟା
ଭୋସ୍ୱାମୀ ଏହାଙ୍କୁ କିମ୍ପା ସୁଦୟା ନୋହିଲା ।
ଆମ୍ଭ ସଙ୍ଗେ ବ୍ରତ ପାଳିଅଛି ଶଶିମୁଖୀ
ତୁମ୍ଭ ହସ୍ତ ଧରିଣ ହୋଇଲା ନିରିମାଖି ।
କର ଅନୁଗ୍ରହ ତାକୁ ସୁଦୟା ଯେ ହେଉ
ଆମ୍ଭ ଦୁଇ ଭାଗରୁ ବାଣ୍ଟିଣ ଚରୁ ପାଉ ।
ନୃପତି ବୋଇଲେ ମୁଁ ଯେ ଜାଣି ନ ପାରିଲି
ସମସ୍ତଙ୍କ ସଙ୍ଗରେ ମୁଁ ତାହାକୁ ଗଣିଲି ।
ଯେବେ ସେହୁ ବ୍ରତ ଗୋଟି ପାଳିଛନ୍ତି ପୁଣି
ଚରୁ ତାଙ୍କୁ ଦେବାର ଉଚିତ ଅଛି ପୁଣି ।
ଶୁଦ୍ଧମନେ ଚରୁ ଦିଅ କଲ୍ୟାଣ ତାକୁ ହେଉ
ଏସନକ ଆଜ୍ଞାଦେଲେ ଅଯୋଧ୍ୟାର ପ୍ରଭୁ ।

ଶୁଣିଣ କୌଶଲ୍ୟା କୈକେୟୀ ବେନି ରାଣୀ
ଆପଣା ଚରୁକୁ ଦୁଇଭାଗ କଲେ ପୁଣି ।
ଅଧେ ରଖି ଅଧେକ ଦୁହେଁ ଦେଲେ ଜାଣ
ସୁମିତ୍ରା କରେ ଚରୁ ଦେଲେକ ନେଇ ପୁଣ ।
ସେ ରାଣୀ କର୍ମରେ ଦୁଇ ଭାଗ ଯେ ଅଛଇ
ବିଷ୍ଣୁଙ୍କୁ ସୁମରିଣ ସମସ୍ତେ ଚରୁ ଖାଇ ।
ଆଷାଢ଼ ଶୁକ୍ଳ ପକ୍ଷ ସପ୍ତମୀର ଦିବସ
ଚରୁ ଖାଇ ତିନି ରାଣୀ ହୋଇଲେ ସନ୍ତୋଷ
ଏଥୁ ଅନନ୍ତରେ ଶୁଣ ଭଗବତୀ
ଲୀଳାବତୀ କାଶିରାଜାଙ୍କର ଯେ ଦୁହିତି ।
ସମସ୍ତଙ୍କ ପଛରେ ଆସିଣ ଭେଟ ହେଲା
କେତେବେଳୁ ଚରୁଅନ୍ନ ସରିଲାଣି ପରା ।
ରାଣୀବୋଲେ ସ୍ୱାମୀ ମୁଁ କରିଅଛି ବ୍ରତ
ଶୁଣିକରି ସମସ୍ତଙ୍କୁ ଲାଗିଲା ଚିନ୍ତା ତ ।
ବୋଇଲେ ଯା କଥାତ ହୋଇଲା ଏବେ ତୁଲ
କେଣେ ଥିଲ ତୁମ୍ଭେତ ନୋହିଲ ସମତୁଲ ।
ଲୀଳାବତୀ ବୋଲେମୋତେ ନକହିଲେ କେହି
ଏକାନ୍ତରେ ବସି ବ୍ରତ ଆଚରିଲି ମୁହିଁ ।
ଶୁଣିଣ ଦଶରଥ ବେଗେ ଚଳିଗଲେ
ଋଷ୍ୟଶୃଙ୍ଗ ମୁନିଙ୍କର ଆଗରେ କହିଲେ ।
ବୋଇଲେ ସକଳ ରାଣୀ ବ୍ରତ କଲେତେଜ୍ୟା
ଚାରି ରାଣୀ ବ୍ରତରେ ଆଚାରେ ପଣେ ହେଜା ।
ସକଳ ରାଣୀ ବ୍ରତନକରି ମନରେ କେବଳ
ବଡ଼ ପାଟରାଣୀଙ୍କି ମୁଁ ଚରୁ ବାଣ୍ଟିବାବେଳ
ସେ ରାଣୀ ଚେତାଇଲେ ସୁମିତ୍ରା ରାଣୀକଥା
ତେଣୁ ମୋତେ ଲାଗିଲା ଅନେକଗରୁ ବ୍ୟଥା ।
ଦୁଇ ରାଣୀଙ୍କ ଠାରୁ ଅଣାଇ ଦୁଇଭାଗ
ଦୁଇଭାଗ ଭୁଞ୍ଜିରାଣୀ ହୋଇଲେ ଆନନ୍ଦ ।
ଚରୁଗ୍ରାସ ସରିବାରୁ ଏକଇ ରାଣୀ ପୁଣ
ଆସିଣ ବୋଲେ ମୁଁ ବ୍ରତ ଆଚରିଛି ଜାଣ ।
ସେକଥା ଶୁଣିମୋର ବଡ଼ ଚିନ୍ତା ହେଲା
ପଚାରୁଛି ମୁନି ହେ ସନ୍ଦେହ ଫିଟୁପରା ।
ଋଷ୍ୟଶୃଙ୍ଗ ବୋଇଲେ ଏ ନାରାୟଣ ମାୟା
ତିନିରାଣୀଙ୍କଠାରେ ଚତୁଧାରୁପ କାୟା ।
ଯେଉଁ ରାଣୀ ଦୁଇଭାଗ କଲେକ ଭୋଜନ
ସେ ରାଣୀ ଦୁଇପୁତ୍ର ଜନ୍ମ କରିବେ ପୁଣ ।

ସେ ଦୁଇ ପୁତ୍ରରୁ ରାଣୀ ଏକଇ ପୁତ୍ରନେବେ
ଯେବେ ସେ ବ୍ରତକୁ ଆଚରି ପୁଣ ଥିବେ ।
ପୁତ୍ର ଜନ୍ମକାଳେ ସେ ଯେବେହେବ ଭେଟ
ତାହାଙ୍କ ସ୍ତନୁକ୍ଷୀର ଯେ ହୋଇବ ସ୍ରବିତ ।
ତେବେ ଜାଣିକରି ତାଙ୍କୁ ଏକଇ ପୁତ୍ରଦେବ
ତାଙ୍କ ସ୍ତନୁଁ କ୍ଷୀର ଖାଇ ବାଳକ ସୁସ୍ଥ ହେବ ।
ଶୁଣିକରି ଦଶରଥ ସନ୍ତୋଷ ହୋଇଲେ
ଅନ୍ତଃପୁର ଭିତରରୁ ବେଗେ ଚଳିଗଲେ ।
ବୋଇଲେ ରାଣୀହଂସ ସକଳ ଏବେଶୁଣ
ଋଷିଙ୍କୁ ପଚାରିବାରୁ ଋଷି କହେ ପୁଣ ।
ବୋଲେ ଦୁଇଭାଗ ଚରୁ ଯେ ଭୁଞ୍ଜିଲେ ପୁଣ
ଦୁଇଗୋଟି ପୁତ୍ର ତା ଗର୍ଭୁ ଜାତ ଜାଣ ।
ଜ୍ୟେଷ୍ଠ ପୁତ୍ର ଗର୍ଭବତୀର ଲୀଳାବତୀର କନିଷ୍ଠ
ଏମନ୍ତ ବଚନ ଯେ କହିଲେ ମୁନି ଶ୍ରେଷ୍ଠ ।
ଶୁଣି ସର୍ବ ରାଣୀହଂସ ଆନନ୍ଦ ହୋଇଲେ
ଲୀଳାବତୀ ମନରେ ଆନନ୍ଦ ପୁଣ ହେଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଚରୁଭୁଞ୍ଜି ସନ୍ତୋଷ ହୋଇଲେ ତିନି ନାରୀ ।
ସେ ନାରୀ ସେହୁ ରାତ୍ରେ ହେଲେ ରଜସ୍ୱଳା
ଅସ୍ୱରଶ ତାଙ୍କର ଦେହ ଯେ ପୁଣ ହେଲା ।
ପ୍ରାତଃକାଳୁ ରଜସ୍ୱଳା ତାଙ୍କର ଚିହ୍ନ ଗଲା
ପାଞ୍ଚଦିନରେ ତାଙ୍କର ଶୁଦ୍ଧ ସ୍ନାନ ହେଲା ।
ରାତ୍ରେ ଦଶରଥ ରାଜା କଲେକ ଗମନ
ପ୍ରଥମେ କୌଶଲ୍ୟା ପୁରେ ବିଜେ କଲେ ପୁଣ ।
ଶୃଙ୍ଗାରେ ରତିକଲେ ନାନା ବିନୋଦରେ
ବଞ୍ଚିଲେ ସେ ରଜନୀ କୌଶଲ୍ୟାଙ୍କ ସଙ୍ଗରେ ।
ଦ୍ୱିତୀୟ ଦିନ ରଜନୀ କୈକୟୀ ପୁରେ ବିଜେ
ଶୃଙ୍ଗାର ରତି ରସେ ରଜନୀ ତହିଁ ହଜେ ।
ତୃତୀୟ ଦିନ ରଜନୀ ସୁମିତ୍ରା ପୁରେ ଗଲେ
ଶୃଙ୍ଗାର ରତିଲୀଳା ସେ ରାଣୀ ସଙ୍ଗେ କଲେ ।
ତିନି ରଜନୀରେ ତିନି ରାଣୀ ଗର୍ଭୁ ଜାତ
ଦଇବ ଯୋଗେ ଚତୁର୍ଦ୍ଧା ରୁପରେ ସମ୍ଭୁତ ।
ସେ ଦିନ ଅନନ୍ତଶଯ୍ୟା ତେଜିଲେ ବନମାଳୀ
କଉଶଲ୍ୟା ଗର୍ଭରେ ବିଜୟ କଲେ ହରି ।
କୌଶଲ୍ୟା ଭାଗୁଁ ଯେ ଚରୁନେଲେକ ସୁମିତ୍ରା
ଅନନ୍ତ ପ୍ରବେଶ ହେବେ ତାଙ୍କ ଗର୍ଭ ଗତା ।

କୈକେୟୀଙ୍କ ଗର୍ଭେ ସୁଦର୍ଶନ ଚକ୍ର ମିଳି
ସୁମିତ୍ରା ଗର୍ଭେ ଶଙ୍ଖ ପ୍ରବେଶ ଯାଇଁକରି ।
ଚତୁର୍ଦ୍ଧା ମୂର୍ତ୍ତିଧରି ଦେବ ନାରାୟଣ
ତିନିରାଣୀରଙ୍କର ଗର୍ଭରେ ମିଳିଲେ ଯାଇଣ ।
ଯେତେବେଳେ ବାସୁଦେବ ଶୟନତେଜିଆସି
ଲକ୍ଷ୍ମୀ ସରସ୍ୱତୀ ଯେ ଚରଣେ ପଡ଼େ ଆସି ।
କରଯୋଡ଼ି ଦେବୀ ଯେ ହରିଙ୍କି କହିଲେ
ମୁହିଁ ରହିବିକି ଯିବ ଆଜ୍ଞାଦିଅ ମୋରେ ।
ଶ୍ରୀହରି ବୋଇଲେ ତୁମ୍ଭେ ବେଗେ ଚଳିଯାଅ
ଜନକ ଯଜ୍ଞଶାଳେ ପ୍ରବେଶ ତୁମ୍ଭେ ହୁଅ ।
ଆଗେ ତୁମ୍ଭ ଅଂଶ ବେନି ସହସ୍ର ବର୍ଷତ
ତୁମ୍ଭ ଅଂଶ ଜାତ ହେଲେ ମେରୁକୋଳେ ରତ
ସେ ଅଙ୍ଗଗୋଟି ତୁମ୍ଭର ବେନି ଭାଗ ପୁଣ
ମେରୁକୋଳେ ଜାତ ହେଲେ ଦୁଇଅଂଶ ଜାଣ
ତେତେବେଳେ ଚେତା ଯେ ତୁମ୍ଭେମାନେ ପୁଣି ।
ବିଚାରିଲେ ଦୁଇ ଅବତାର ଲଭିବୁ ଦୁଇ ଭଗ୍ନୀ ।
ତେଣୁ ଯେ ମେରୁ ରାଜା ତାଙ୍କର ନାମଦେଲା
ଦେବମତି ଝରାମତି ବୋଲିଣ ବୋଇଲା ।
ତେତେ ଦିନ ଉତ୍ତାରୁ ତାହାଙ୍କୁ ପଚାରିଲା
ବିଭାକରି ଦେବି ବର ଖୋଜିକି ବୋଇଲା ।
ସେ ବୋଇଲେ ଆମ୍ଭେ ବାସୁଦେବଙ୍କରନାରୀ
ସ୍ୱାମୀ ଦେଖିଲେବରିବୁ ତୁମ୍ଭେ ନୁହଁ ଦ୍ୱନ୍ଦ୍ୱକାରୀ ।
ନିର୍ମଳ ସ୍ଥାନ ଦେଖି ଆମ୍ଭଙ୍କୁ ତୁମ୍ଭେ ରଖ
ତେବେ ସିନା ବାସୁଦେବ ଭଜନ ବଡ଼ସୁଖ ।
ଶୁଣିକରି ମେରୁ ରାଜା ପରମ ତୋଷ ହେଲା
ଜ୍ୟୋତି ନିର୍ମଳପୁରେ ଦୁଇ ଭଗ୍ନିକି ରଖାଇଲା ।
ସେ ପୁରେ ରହି ସେହୁ ମୋର ନାମ ଜପି
ନବ ସହସ୍ର ବରଷ ବହିଗଲା ସେଥି ।
ଚାରି ରାବଣ ଦୈତ୍ୟବଳ ହେବାରୁ ପ୍ରବଳ
ଦେବେ ବିଚାରିଲେ କିରୂପେମରିବେ ଦୈତବଳ ।
ତେଣୁ ସେ ମୋରପାଦେ ସକଳଦେବେସେବି
ମୋତେବୋଇଲେ ମର୍ତ୍ତ୍ୟପୁରେ ଜନ୍ମ ହୁଅବେଗି ।
ତାହାଙ୍କର ସେବା ଦେଖି ଦୟା ମୋର ହେଲା
ଜନ୍ମହେବି ବୋଲିଣ ବୋଇଲି ତାଙ୍କୁ ଭଲା
ତେଣୁ ଦେବତା ସିନା କୂଟ ଭିଆଇଲେ
ନାରଦ ଋଷି ପୁତ୍ର ଅଙ୍ଗିରାକୁ ଅଣାଇଲେ ।
ଜ୍ୟୋତିନିର୍ମଳ ପୁରରେ ନେଲେବେଗେ ପୁଣ
ଅଙ୍ଗିରା ମହାଋଷିଯେ ମିଳିଲେକ ଜାଣ ।
ତୁମ୍ଭ ଅଂଶ ବେଦମତିକି ଯାଇଣ କହିଲେ
ତୁମ୍ଭେ ମର୍ତ୍ତ୍ୟପୁରେ ଗଲେବିଷ୍ଣୁ ଜନ୍ମିବେ ଭଲେ ।
ଶୁଣିଣ ବେଦମତି ମର୍ତ୍ତ୍ୟପୁରକୁ ଆସି
ଦେଖି ଦଶମୁଖା ରାବଣ ତାଙ୍କୁ ଯାଇ ତ୍ରାସି ।
ତେଣୁ ସେ ତୁମ୍ଭ ଅଂଶ ଅସୁରେ ଶାପ ଦେଲା
ମୋହର ହେତୁରୁ ତୁହି ମରରେ ବୋଇଲା ।
ଅସୁରକୁ ଶାପଦେଇ ସେ ଦେହ ଆସି ତେଜି
ତୁମ୍ଭର ଶରୀରେ ସେ ମିଶିଲା ବେଗେ ଆସି ।
ସେ ଦୈତ୍ୟ ରାବଣ ଯେ ମୃତ୍ୟୁ ଦେଖିପୁଣ
ମେଣ୍ଢନ କରିବାକୁ ନେଲା ସେ ଶବ ଜାଣ ।
ତାହାର ଘରଣୀ ଯେ ମନ୍ଦୋଦରୀ ରାଣୀ
ତାକୁ ଚାହିଁଣ ରାବଣ କହିଲାକ ବାଣୀ ।
ବୋଇଲା ଏ ପଦାର୍ଥ ନିଅ ଗୋ ବହନ
ଏ ମାଂସକୁ ରନ୍ଧନ କର ତୁ ନେଇଣ ।
ଏମନ୍ତ କହି ଅସୁର ସ୍ନାନ କରିଗଲା
ଏହି ସମୟରେ ମୁନି ନାରଦ ମିଳେ ଭଲା ।
ମନ୍ଦୋଦରୀକୁ ବୋଇଲେ ଏ ଶବକୁ ବେଗନିଅ
ସମୁଦ୍ର ଭିତରେ ଯାକୁ ନେଇଣ ପକାଅ ।
ଏ ମାଂସକୁ ଖାଇଲେ ତୁମ୍ଭର ସ୍ୱାମୀ ମରି
ନାରଦ କଥା ସତ ମଣିଲା ମନ୍ଦୋଦରୀ ।
ତେଣୁ ଯେ ଶବକୁ ନେଇ ମଞ୍ଜୁଷରେ ଭରି
ସମୁଦ୍ରରେ ମେଲିଦେଲା ନେଇ ବେଗେକରି ।
ଜାଣିକରି ଦେବତାଏ ଏ ମଞ୍ଜୁଷକୁ ନେଲେ
ଜନକର ଯଜ୍ଞଶାଳେ ନେଇଣ ପୋତିଦେଲେ
ସେଠାରୁ ବିଧାତା ଯେ ଜାଣିକରି ଗଲା
ସେହି ଶବ ଗୋଟିକୁ ମୂଳ ବୀଜ କଲା ।
ଶତେ ବର୍ଷପର୍ଯ୍ୟନ୍ତେ ମଞ୍ଜୁଷରେ ଧାତାରହି
ଅଯୋନି ସମ୍ଭୁତ ରୂପ ଗଢ଼ିଲେକ ତହିଁ ।
ସପ୍ତପୁର ଯାକରେ ନଥିବ ଯେଉଁ ରୂପ
ସେ ପୁରକୁ ବିଧାତା ଗଢ଼ିଲେକ ଆପ ।
ଆଜକୁ ବାରଦିନ ହେଲା ନିର୍ମାଣ କରି ଆସି
ଅଜୀବ ପିତୁଳାକୁ ମଞ୍ଜୁଷରେ ରଖି ।
ଏବେ ତୁମ୍ଭେ ଯାଇ ସେଥିରେ ସମ୍ଭବ
ଏକ ରୂପ ଅଂଶ ଯେ ତିନି ଭାଗ ହେବ ।
ଜନକ ଋଷି ଭାଇ କୁଶଧ୍ୱଜ ଜାଣ
ତୁମ୍ଭେ ଅଯୋନି ସମ୍ଭୁତ ମଞ୍ଜୁଷ ଜାଣ ପୁଣ ।

କମଳା ବୋଇଲେ ଅନ୍ୟ କାର ନାରୀ
ମର୍ତ୍ତ୍ୟପୁରେ ଜାତ ହେବକି ଯାଇକରି ।
ବେଦବର ଜନକ ଘରଣୀର ଗର୍ଭେ
ଜାତ ହେବେ ଯୋଗମାୟା କହିଲୁ ପୁଣ ଏବେ ।
ଏତେ ବୋଲି ନାରାୟଣ ଅନନ୍ତ ସଙ୍ଗେ ଘେନି
ବେନି ଆୟୁଧ ଘେନିଣ ଅଯୋଧା ବିଜେ ପୁଣି ।
ଏମନ୍ତେ ଷଡ଼ମାସ ସେଥିରେ ବହିଗଲା
ଜାଣି କମଳା ମଞ୍ଜୁଷ ଭିତରେ ମିଳିଲା ।
ମଞ୍ଜୁଷରେ ଥିବା ପିତୁଳାରେ ପ୍ରବେଶିଲେ ଯାଇ
ତେଣୁ ସେ ପିତୁଳା ସଜୀବ ରୁପ ହୋଇ ।
କମଳା ଅଂଶରୁ ବେନି କନ୍ୟା ଗଲେ
କୁଶଧ୍ୱଜ ଘରଣୀ ଗର୍ଭରେ ସଞ୍ଚରିଲେ ।
ଯୋଗମାୟା ବିଜେକଲେ ଜନକ ଋଷି ଘରେ
ଜନକ ରାଜା ଘରଣୀ ଗର୍ଭବାସ ହେଲେ ।
ପାର୍ବତୀ ବୋଇଲେ ଶୁଣିଲି ଏବେ ମୁହିଁ
କି କଲେ ବାସୁଦେବ କହହେ ବୁଝାଇ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ଗର୍ଭସ୍ଥିତ ଦଶରଥ ତିନିରାଣୀ ହୋନ୍ତି ।
ପାର୍ବତୀ ବୋଇଲେ ବୈକୁଣ୍ଠପୁରେ କେ ରହିଲା
ଈଶ୍ୱର ବୋଇଲେ ସୁରସ୍ୱତୀକି ଗରୁଡ ଜଗିଲା ।
କ୍ଷେତ୍ରପାଳ ଗଦା ପଦ୍ମ ରହିଲେକ ପୁଣ
ବୈକୁଣ୍ଠ ପୁରକୁ ଭିଡ଼ି ନୋହିଲେ କେବେ ଜାଣ ।
ବୈକୁଣ୍ଠ ପୁରରେ ପୁଣ ସମସ୍ତ ଅଛନ୍ତି
କମଳା ଯୋଗମାୟା ନାରାୟଣ ଅଇଲେଟି ।
ସାଧୁ ସାଧୁ ମହିମା ଯେ କୌଶଲ୍ୟା ରାଣୀ
ଗର୍ଭରେ ଧରିଲା ଯେ ଦେବଙ୍କ ଶିରୋମଣି ।
ଏଥୁ ଅନନ୍ତରେ ଯାଗ ହେଲା ସମାପତ
ମୁନି ଋଷି ତପୀମାନେ ଯିବାକୁ ଚଞ୍ଚଳତ ।
ଧନ ରତ୍ନ ଦେଇ ମୁନିଙ୍କି ଦଶରଥ ତୋଷକଲେ
ଧନପାଇ ତପୀମାନେ ଯେ ଯାହା ସ୍ଥାନ ଗଲେ ।
ରାଜାମାନେ ସର୍ବେ ଚଳିଲେ ସର୍ବ ଦେଶ
ଧନ ରତ୍ନ ରାଜା ଦେଲେକ ବିଶେଷ ।
ମାନ୍ୟ ଧର୍ମ ସମସ୍ତେ ଯେ ରାଜାମାନେ କଲେ
ଯେ ଯାହାର ରାଜ୍ୟକୁ ବେଗେ ଚଳିଗଲେ ।
ଏଥୁ ଅନନ୍ତରେ ସକଳ ବିଧି ସାରି ତପୋବନ୍ତ
ସାଏନ୍ତା ଘେନି ଚଳିଲେ ବିଭାଣ୍ଡକ ସୁତ ।

ସମ୍ବର୍ବରେ ଚଳିଲେ ସେ ବିଭାଣ୍ଡକ ଆଶ୍ରମ
ବାଦ୍ୟବୀର ବାଜା ବାଜେ ଶଙ୍ଖଧ୍ୱନୀ ନାମ ।
ଶଗଡ଼ ବଳଦ ଯେ ନାବ ସଜ କଲେ
ଚାରିଲକ୍ଷ ଶଗଡ଼ରେ ଧାନ ଚାଉଳ ଦେଲେ ।
ଶତେ ରଥ ପାଣିଦ୍ରବ୍ୟ ଶତେ ପରିବାରୀ
ଲୋମପାଦଦଣ୍ଡଧାରୀଦେଇଥିଲେ ଶତେ ପରିବାରୀ ।
ଦୁଇଶତ ହାନ୍ଦୋଳା ଚଳେ ସାଏନ୍ତା ସଙ୍ଗରେ
ସହସ୍ରେ ମହିଷୀ ରଖୁଆଳ ଅଛନ୍ତି ସଙ୍ଗରେ ।
ଶତେକ ରଜକାରୀ ଶତେ ଲମ୍ବ ଦୂତା
ବେନିଶତ ବିଶ୍ୱକର୍ମା ଶତେ ବୋଲକରନ୍ତା ।
ଲୋମପାଦ ଦଶରଥ ସଙ୍ଗତରେ ଗଲେ
କୌଶିକ ନଦୀତୀରେ ପ୍ରବେଶ ହୋଇଲେ ।
ଋଷ୍ୟଶୃଙ୍ଗ ପ୍ରବେଶ ଯେ ପିତାଙ୍କ ଆଶ୍ରମେ
ଦେଖିଲେ ବିପୁଳ ଘର ନଗ୍ର ଆରମ୍ଭେ ।
ବେନିକୋଶ ପର୍ଯ୍ୟନ୍ତେ ନଗ୍ର ଶୋଭା ତୋରା
ଗୋଶାଳା ଘର ସେଥିରୁ କୋଶେକ ଅଟେପରା ।
ଯେତେକ ଲୋକ ସେ ରହିଲେ ନିଶ୍ଚଳେ
ବାର ସହସ୍ର ଘର ବସ୍ତି ସେହୁ ପୁରେ ।
କଉରବ ବୋଲି ନଗ୍ର ଯେ ପୁର ନାମ ହେଲା
ମଧରେ ବିଭାଣ୍ଡକ ମଠ ଦିଶେ ତୋରା ।
ପିତାଙ୍କୁ ଦେଖି ପୁତ୍ର ନମସ୍କାର କଲେ
ବଧୂ ଦାସୀଗଣ ଘେନି ଓଳଗି ହୋଇଲେ ।
ଦୁଇଶତ ପରିବାର ଘେନିଣ ଋଷି ବଧୂ
ମଠର ମଧରେ ରହେ ଆଚରି ସ୍ଥାନ ସାଧୁ ।
ଧାନ ଚାଉଳମାନ ସାଇତିଲେ ପୁଣ
ମଠଗୋଟି ଆୟତନ ବେନିକୋଶ ଜାଣ ।
ଦଶରଥ ଲୋମପାଦ ପ୍ରବେଶ ଯାଇ ହେଲେ
ବିଭାଣ୍ଡକ ଋଷିଙ୍କି ଯେ ନମସ୍କାର କଲେ ।
ଆଦର କଲେ ରୁଷି ରହିଲେ ସେ ଦିନ
ପ୍ରଭାତୁ ଉଠି ବେନି ନୃପତି କଲେ ମାନ୍ୟ ।
ପିତା ପୁତ୍ର ଦୁହିଁଙ୍କି କହିଣ ନୃପବର
ଦୁହିତା ପ୍ରବୋଧିଣ ହୋଇଲେ ବାହାର ।
ପାଦାନ୍ତ ଲୋକ ଘେନିଣ ଅଯୋଧା ପ୍ରବେଶ
ବାଜଇ ବୀର ତୂର ସଞ୍ଚାର ଗଜ ଅଶ୍ୱ ।
ଦଶଦିନ ଲୋମପାଦ ରହିଣ ଚଳିଗଲେ
ସକଳ ରାଣୀହଂସ ସଙ୍ଗତରେ ନେଲେ ।

ଦୁଇକୁଳ ରାଣୀ ଭେଟହେଲେ ଆନନ୍ଦରେ
ପ୍ରବେଶ ହେଲେ ଚମ୍ପାବତୀର ନବରେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଭଗବତୀ
ଅଯୋଧ୍ୟାରେ ଆନନ୍ଦ ନରନାରୀ ହୋନ୍ତି ।
ଦଶରଥ ରାଣୀ ଯେ ହେଲେ ଗର୍ଭବାସ
ରାଜାଙ୍କଠାରୁ ଦିନୁଦିନୁ ଛାଡ଼ିଲେ ମୁହାଁସ ।
ଆହାର ନ ରୁଚେ ପୁଣ ବୁଲଇ ନୟନ
ଦେହରେ ମଣ୍ଡନ ହୋଇ ଗନ୍ଧ ଯେ ଚନ୍ଦନ ।
ଶୁକ୍ଳବର୍ଣ୍ଣ ଭାଜିଣ କଳା ଦିଶେ ସ୍ତନ ।
ମନ ଛନ୍ନ ଛନ୍ନ ହୁଏ ପ୍ରକୃତି ଭିନ୍ନ ଭିନ୍ନ ।
ଶୀତଳ ଲାଗେ ଚନ୍ଦନ କର୍ପୂର ଯେ ପୁଣ
ଦୁଇମାସ ପୂରିବାରୁ ଅଳସ ପୁଣ ଜାଣ ।
ଯେଉଁ ଦ୍ରବ୍ୟ ଭକ୍ଷନ୍ତି ଚଳ୍ହାଲେ ଉଦଗାରି
ଶୟନଠାରୁ ଉଠି ନପାରନ୍ତି ନାରୀ ।
ଶ୍ରଦ୍ଧା କରନ୍ତି ସେହୁ ଅପୂର୍ବ ପଦାର୍ଥ
ନୃପତି ଜାଣିବାରୁ ଦିଅନ୍ତି ତୁରିତ ।
ତିନିମାସ ହୁଅନ୍ତେ ଖସିଲାକ ସ୍ତନ
କୁଚ ଉପରମାନ ପୁଣି ଦିଶିଲା କଳା ବର୍ଣ୍ଣ ।
ହେମ ଶୀତଳ ସେ ଲାଗେ ପିଠିକି ଆଉଜାଇ
ପିନ୍ଧିଲାର ବସନ କଟୀରୁ ଖସଇ ।
ଚାରିମାସ ହୁଆନ୍ତେ ରାଣୀ ଚାଲନ୍ତେ ଆଶନ୍ତେ
ଉଠିଲେ ଝାର୍ମ ଯେ ମାରଇ ତୁରିତେ ।
ଦେଖିଣ ମହାରାଜା ମନରେ ସନ୍ତୋଷ
ପାଞ୍ଚମାସ ବନ୍ଦାପନା କଲେକ ଆଜସୁତ ।
ଛଡ଼ମାସ ହୁଅନ୍ତେ ଉଦର ଗରୁ ହୋଇ
ଜୀବ ଗମନ୍ତେ ଗର୍ଭରେ ପୁତ୍ରମାନେ ବୁଲଇ ।
ଏକକୁ ଆରକରେ ବେଢ଼ିଣ ଅନ୍ୟଜନ
ପେଟେ ହସ୍ତ ଦିଅନ୍ତେ ବୁଲାଇ ନନ୍ଦନ ।
ଦାସୀ ଜନମାନେ ଯାଇ ରାଜାରେ କହନ୍ତି
ରାଣୀମାନଙ୍କ ଗର୍ଭରେ କୁମର ବୁଲୁଛନ୍ତି ।
ଶୁଣି ଆନନ୍ଦେ ବଧାଇ ଦେଲେ ମହୀପାଳ
ଆପେ ଦେଖିଲେ ପେଟେ ବୁଲନ୍ତି ଦୁଲାଳ ।
ସାତ ମାସ ହେବାରୁ ବଡ଼ ବଡ଼ ପେଟ
କରେ ଧରି ପେଟକୁ ମଣନ୍ତି ମହାକଷ୍ଟ ।
ନାଭି ତଳରେ ପୁଣି କଳା ଶିରା ଟାଣି
ଦେଖିକରି ଉଷତ ହୁଅନ୍ତି ଦାସୀ ପୁଣି ।

ସ୍ତନରୁ କ୍ଷୀର ସ୍ରବିବାରୁ ଆନନ୍ଦ ସର୍ବରାଣୀ
ଦେଖିକରି ହରଷ ସକଳ ତରୁଣୀ ।
ଅଷ୍ଟମାସ ହୁଅନ୍ତେ ରାଜା ଦଶରଥ
ପାତ୍ର ମନ୍ତ୍ରୀ ଡକାଇଣ ବିଚାରେ ସେହୁତ ।
ବଶିଷ୍ଟ ବାମଦେବ ଜାବାଳିକି ଚାହିଁ
କାଶ୍ୟପ ସୁମନ୍ତକୁ ଡକାଇ ଅଣାଇଁ ।
ନୃପତି ବୋଇଲେ ବାବୁ ଶୁଣହେ ସୁମନ୍ତ
ତୁମ୍ଭ କଥା ମୋତେ ଯେ ଲାଗଇ ବଡ଼ହିତ ।
ପାଟ ରାଣୀମାନଙ୍କର ଗର୍ଭ ଯେ ଗଣିତା
ଲେଖାରେ ଅଷ୍ଟମାସ ହୋଇଲା ଶୋଭିତା ।
ଗର୍ଭଦାନ କରିବା ଏବେ କରହେ ବିଚାର
ଜ୍ୟୋତିଷକୁ ଡକାଇ କର ହେ ଅନୁକୂଳ ।
ମାଘମାସ ଶୁକ୍ଳପକ୍ଷ ଅଷ୍ଟମୀ ଗୁରୁବାର
ଅଶ୍ୱିନୀ ନକ୍ଷତ୍ର କନ୍ୟା ରାଶିକୁ ସମ ତାର ।
କୌଶଲ୍ୟା ରାଣୀଙ୍କର ରେବତୀ ମୀନରାଶି
ମୂଳା ଧନୁ କୈକୟୀଙ୍କର ରାଜନ ଯେ ଭାଷି ।
ମଘାସିଂହ ଅଟଇ ସୁମିତ୍ରା ରାଣୀରତ
ତିନି ରାଣୀଙ୍କର ଏକ ଶୁଭେ ପରିଣତ ।
ଏକଅଂଶେ ତିନିଜଣ ହୋଇଛନ୍ତି ଜାତ
ସତ୍ୟ ସାତ୍ୱିକ୍ୟ ଦୟା ପଣରେ ଏମନ୍ତ ।
ତିନିଙ୍କ ଗର୍ଭରେ ପ୍ରବେଶ ନରହରି
ଏକ ନାରାୟଣ ଯେ ଚତୁର୍ଦ୍ଧା ରୂପ ଧରି ।
ଅଦିତି ପ୍ରହେତି ଅଂଶେ ଜନ୍ମ ଏହୁ ପୁଣ
କୌଶଲ୍ୟା କୈକେୟୀ ସୁମିତ୍ରା ଲୀଳାଜାଣ ।
ଏଣୁକରି ଚାରି ରାଣୀଙ୍କର ଏକରାଶି
ଯୋଗ ଲଗ୍ନମାନ ଜ୍ୟୋତିଷ କହେ ବସି ।
ବଶିଷ୍ଠ କହୁଛନ୍ତି ଦଶରଥଙ୍କୁ ଚାହିଁ
ଶୁଭଯୋଗ ବେଳା ରାଏ ଅନୁକୂଳ ଏହି ।
ନଗ୍ରପୁର ମଣ୍ଡଣ କରହେ ନୃପମଣି
ଶୁଣିଣ ସନ୍ତୋଷ ହେଲେ ଅଯୋଧ୍ୟା ନୃପମଣି ।
ରାଜାଘରେ ବିଜୟ କଲେକ ଦେବହରି ।
ମନେ ଯାହା ବିଚାରିବ ସୁଲଭ ତାହାରି ।
ଦେଶାଉର ଡକାଇଣ ଅଯୋଧ୍ୟା ମହୀପାଳ
ବୋଇଲେ ବେଗେ ଯାଅ ଚମ୍ପାବତୀ ପୁର ।
ବୋଇଲେ ବେଗେ ଯାଅ ଚମ୍ପାବତୀ ଓଲଗିଲା
ସକଳ ଚରିତ୍ରମାନ ବୁଝାଇ କହିଲା ।

ଶୁଣିକରି ଲୋମପାଦ ହରଷ ହୋଇଲେ
ଆପଣା ଦେଶାଉରକୁ ଡାକିଣ ଆଜ୍ଞାଦେଲେ ।
ରାଜ୍ୟରେ ଘୋଷଣା ଦିଅ ତୁମ୍ଭରେ ବେଗେ
ଅଯୋଧ୍ୟାକୁ ଯିବାକୁ ସଜ ହୁଅନ୍ତୁ ଆଗେ ।
ରଥ ଗଜ ଅଶ୍ୱ ଯେ ପଦାତି ନଟକାରୀ
ବାଦ୍ୟର ନିଶାରେ ନଗ୍ର ତାର ଅଛି ପୂରି ।
ବନ୍ଧୁଜନମାନଙ୍କୁ ବରଣେ ପେଷେ ଲୋକ
ବାରଦିନ ଚମ୍ପାବତୀ ନଗ୍ରେ ଠୁଳ ସେତ ।
ସକଳ ଜନଙ୍କୁ କହି ବେଗେ ଚାଲିଦେଲେ
ରାଣୀହଂସ ପୁରେ ଯାଇ ପ୍ରବେଶ ହୋଇଲେ ।
ରାଣୀମାନେ ବାହାର୍ ହୋଇଣ ବେଗେ ଗଲେ
ଧନରତ୍ନ ବହୁତ ସଙ୍ଗରେ ସେହୁ ନେଲେ ।
ଲୋମପାଦ ରାଜାଚଳେ ରାଣୀଙ୍କ ସଙ୍ଗେ ପୁଣ
ଅଯୋଧ୍ୟା ଦେଶରେ ପ୍ରବେଶ ସର୍ବେ ଜାଣ ।
ଚିତ୍ର ବିଚିତ୍ର ଘର ସେ ନଗ୍ରେ ଦେଖିଲେ ।
ରାଣୀହଂସ ନିଜ ନଗ୍ରେ ପ୍ରବେଶ ହୋଇଲେ ।
ମାନ୍ୟ ଗୌରବ ଯେ ସକଳ ନୃପ କଲେ ।
ବିପ୍ର ଋଷି ଜ୍ୟୋତିଷ ପ୍ରବେଶ ଯାଇଁ ହେଲେ ।
ସମସ୍ତେ ପ୍ରବେଶ ହେଲେ ଆନନ୍ଦରେ ବସି
ବଶିଷ୍ଠଙ୍କ ଆମନ୍ତ୍ରଣେ ଅଇଲେ ସର୍ବଋଷି ।
ତପୀଜନ ଦେଖିଣ ରାଜନ ମନତୋଷି
ସେମାନଙ୍କୁ ସନମାନ ଦେଲେକ ବିଶେଷି ।
ମୁନିମାନେ ଆସିଣ ସକଳ ଠୁଳ ହେଲେ
ଲେଖାରେ ବତିଶ ସହସ୍ର ଠୁଳ ହେଲେ ।
ବ୍ରାହ୍ମଣ ପ୍ରବେଶ ଯେ ଛୟାଣୋଇ ସହସ୍ର
ଦେଖଣାହାରୀ ଲୋକେ ଅଯୋଧ୍ୟା ପ୍ରବେଶ ।
ଘୋଷ ଯାତ୍ରା ପ୍ରାୟେ ଯେ ଲାଗିଲା ଚହଳ
ଉତ୍ସବ ଆନନ୍ଦ ଯେ ଯେସନେ ସ୍ୱର୍ଗପୁର ।
ଋଷି ବିପ୍ର ମୁନିଙ୍କି ଉତ୍ତମ ସ୍ଥାନମାନ
ଉପରେ ଛାମୁଣ୍ଡିଆ ତଳେ କର୍ପୁର ଧୂଳି ଜାଣ ।
ବନ୍ଧୁଜନମାନଙ୍କୁ ବିପୁଳ ଘରେ ରଖି
ସାମନ୍ତ ସେବକ ରାଜାଙ୍କର ଯେତେଲୋକ ଆସି ।
ଲୋକ ଜଗାଇଲେ ଚରଚା କରିବାରେ
ସକଳ ଖଞ୍ଜାଇଲେ ନୃପତି ବିଚାରେ ।
ଖାଇବା ପିଇବା ଶୋଇବା ବସିବା ହସିବା
ସମସ୍ତ ସଂଯୋଗ ଦଶରଥ ଯେ କରିବା ।

ସୁମନ୍ତକୁ ଚାହିଁଣ ବଶିଷ୍ଠ ଆଜ୍ଞାଦେଲେ
ଯେ ବିଧି ବିଧାନ କରାଅ ବୋଇଲେ ।
ଶୁଣିଣ ସୁମନ୍ତ ମଣ୍ଡେ ଦିବ୍ୟ ପୁରମାନ
ଘରେ ଘରେ ପତନି ଦିବ୍ୟାଙ୍ଗ ବସନ ।
ଦ୍ୱାରେ ଚୂତପତ୍ର ଯେ କଦଳୀ ଗଛ ପୋତି
ସୁବର୍ଣ୍ଣର କଳସ ଚିରାଳ ପନ୍ତି ପନ୍ତି ।
ରାଜାମାନଙ୍କୁ କରିଥିଲେ ସେ ବରଣ
ଶୁଣିବାରୁ ଅଇଲେ ସକଳ ରାଜାମାନ ।
ରାଜାଙ୍କୁ ଉଆସ ଯେ ମନ୍ତ୍ରୀମାନଙ୍କୁ ଘର
ଶୋଇବା ବସିବା ଖାଇବା ପିଇବାର ।
ପୁଷ୍ପ ଚନ୍ଦନ ଅନେକ ଆଭରଣ କରି
ଋଷି ବିପ୍ର ଦେଖଣାହାରିଙ୍କି ଚର୍ଚ୍ଚା କରି ।
ଅଯୋଧ୍ୟା ନଗରେ ଯେତେକ ଛନ୍ତି ନାରୀ
ରାଣୀହିଁ ସମସ୍ତେ ଯେତେକ ଦୟାକରି ।
ଅନ୍ନ ବସ୍ତ୍ର ପଣା ପାଣି ଟେକି ସଦାବ୍ରତ
ଘରେ ଘରେ ଆନନ୍ଦ ଉତ୍ସବ ନୃତ୍ୟ ଗୀତ ।
ଅଗୁରୁ ଚନ୍ଦନ ଆଣି କଲେ ଛାମୁଣ୍ଡିଆ
ନେତ ପାଟ ମଣ୍ଡଣି ବିବିଧ ଚାନ୍ଦୁଆ ।
ମଧ୍ୟରେ ରଚିଲେ ନେଇ କନକର ବେଦୀ
ବିଜୁଳି ଆଚ୍ଛନ୍ନ ଯେହ୍ନେ କମଳା ମେଘେ ସାଜି ।
ଇନ୍ଦ୍ର ଗୋବିନ୍ଦ ଚାନ୍ଦୁଆ ଟାଣିଲେ ଉପରେ
ବଇଡୁର୍ଯ୍ୟ ଚିରାଳ ଉଡ଼ଇ ଫରହରେ ।
ଦିନକର ଠାରୁ ରାଜା ମଙ୍ଗଳ ବିଧି କଲେ
ଦେବତା ବ୍ରାହ୍ମଣ ଋଷିମାନଙ୍କୁ ତୋଷିଲେ ।
ଦଶରଥ ସଙ୍ଗରେ ଯେତେକ ମହୀପାଳ
ଦେବ ଋଷି ବିପ୍ର ଘେନି କଲେକ ମଙ୍ଗଳ ।
ରାଣୀ ମହାଦେଈ ସଙ୍ଗେ ମୁଦୁସୁଲୀ ଝଡ଼ା
ହଳଦୀ ଚନ୍ଦନ ଲଗାଇ ହୋଇଲେକ ତୋରା ।
ହାସ ରସ ପ୍ରବନ୍ଧରେ ଖେଳ ସର୍ବ ଘରେ
ଆନନ୍ଦରେ ଆଜ୍ଞାଦେଲେ ଅଯୋଧ୍ୟା ନୃପବରେ ।
ଶୁଣ ତୁମ୍ଭେ ଶାକମ୍ଭରୀ ଦିବ୍ୟରସ ବାଣୀ
ବେଶ ହୋଇଲେକ ଦଶରଥ ନୃପମଣି ।
ଯେବଣ ଦିନ ରାଜନ ଘେନିଲେ ଅନୁକୂଳ
ନଦୀ କୂଳରେ ସ୍ନାନ କଲେକ ମହୀପାଳ ।
ତହୁଁ ଆସି ପ୍ରବେଶ କନକ ମଣ୍ଡପରେ
ସମସ୍ତ ରାଜାଗଣ ଅଛନ୍ତି ସଙ୍ଗତରେ ।

ମୁନି ଋଷି ବିପ୍ର ବ୍ରାହ୍ମଣ ପୁଣି ଦ୍ୱିଜ
ରାଜା ସଙ୍ଗତରେ ସମସ୍ତେ ହେଲେ ସାଜ ।
ରତ୍ନବେଦୀ ଚତୁପାର୍ଶ୍ୱେ ମିଳିଲେ ସକଳ
ବେଦଧ୍ୱନି କଲେ ବସି ସକଳ ଋଷିବର ।
ହରିବୋଲ ଶବଦ ଶୁଭଇ ନିରନ୍ତର
ହୁଳହୁଳି ଦିଅନ୍ତି ସକଳ ନାରୀବର ।
ଜାବାଳି କଶ୍ୟପ ଯେ ସକଳ ମହର୍ଷି
ମାରକଣ୍ଡ ଗୌତମ ବିଶ୍ରବା ଭୃଗୁ ତପୀ
ଆଚାର୍ଯ୍ୟ ବରଣ ଯେ କପିଳ ମୁନି ହେଲେ
ଲୋମପାଦଙ୍କ ଆଚାର୍ଯ୍ୟ ଅଷ୍ଟବକ୍ର ହେଲେ ।
ଦୁଇ ରାଜା ହୋମକଲେ କନକ ବେଦୀ ପରେ
ଗହ ଗହ ଶବଦରେ କୁରୁମ ଉଛୁଳେ ।
ହୋମବିଧି କରାଇ ରାଣୀ ବସିଲେକ ରଥ
ହରଷ ଯେ ଦଶରଥ ଚମ୍ପାବତୀ ନାଥ ।
ସଭାକୁ ବରକନ୍ୟା ବେଶ ହୋଇ ଆସି
ଦଶରଥ ସଙ୍ଗତରେ ତିନି ରାଣୀ ବସି ।
ଲୋମପାଦ ରାଜା ପୁଣ ବରବେଶ ହୋଇ
ଶତେକ ରାଣୀ ଘେନି ସଭାରେ ବସେ ଯାଇ ।
ଅଷ୍ଟବର୍ଷ ଗର୍ଭଦାନ ବେଭାର ସାରିଲେ
ଦୁଇ ରାଜା ରାଣୀଗଣ ଘେନି ଉଭା ହେଲେ ।
ଆଦିତ୍ୟ ଦେବତାଙ୍କୁ ସେ ଅର୍ଘ୍ୟ ଦେଲେ ପୁଣି
ଆଦି ହୋଇଣ ସେ ଦୁଇ ନୃପମଣି ।
ସୁକଲ୍ୟାଣ ପାଇଣ ଭିତରପୁର ଗଲେ
ଇଷ୍ଟଦେବତାଙ୍କୁ ଯାଇ ନମସ୍କାର କଲେ ।
ନବରେ ବନ୍ଦାପନା ଅନେକ ସମ୍ଭାର
ହୋମ ବନ୍ଦାପନା କଲେ ଆଦିତ୍ୟ ଅସ୍ତବେଳ ।
ନାରୀଗଣ ହରିଦ୍ରା ସ୍ନାନ କଲେ ମିଳି
ନୂତନ ଆମଲାଣ ପିନ୍ଧିଲେ ସର୍ବବାଳୀ ।
ବେଶ ଭୂଷଣ ଯେ ହୋଇଲେ ପୁଣ ସର୍ବେ
ମାଳ କୁସୁମ ଯେ ଭୂଷଣ ଗନ୍ଧ ପୁଷ୍ପେ ।
ହୁଳହୁଳି ଧ୍ୱନୀ ପୁଣି ପଡ଼େ ଚଉପାଶ
ହରିବୋଲ ଶବଦରେ ପୁରଇ ଆକାଶ ।
ଶଙ୍ଖ ମହୁରୀ ବାଦ୍ୟ ଯେ ବାଜେ ନିରନ୍ତର
ବାହାର ଭିତରେ ଲୋକ ଅଛନ୍ତି ଅପାର ।
ଅଛନ୍ତି ନାନା ଦେଶର ମହୀପାଳମାନେ
ଋଷି ବ୍ରାହ୍ମଣ ଯେ ନାନା ଜାତିଭିନ୍ନେ ।

ନଗ୍ର ନର ନାରୀ ଯେ ଦେଖନ୍ତି ସର୍ବେ ଆସି
ହଟାଗୀ ବଜାରୀ ଯେ ଦେଖନ୍ତି ସର୍ବେ ମିଶି ।
ଏହିରୂପେ ସଜହେଲେ ଲୋମପାଦ ରାଣୀ
ବେଶ ଭୂଷଣ ସେ ବେଗେ ହେଲେ ପୁଣି ।
ଛାମୁରେ ବ୍ରାହ୍ମଣକଲେ ବେଦ ପୁରାଣ ବାଣୀ
ମଙ୍ଗଳ ଯୋଗରେ ଯେ ଆସନ୍ତି ରାଜା ରାଣୀ ।
ଶ୍ରୀହରି ନାମ ପୁଣି ସ୍ମରେ ନୃପମଣି
କଲ୍ୟାଣ ବାଆଘେନି ଭିତରେ ଗଲେ ପୁଣି ।
ନଗରେ ପ୍ରବେଶ ଯେ ହୋଇଲେ ଦେଇଅର୍ଘ୍ୟ
ଦେବଗଣ ଘେନିଣ ପିତାମହ ସକଳ ।
ଦଶରଥ ରାଜାଙ୍କର ସୁଯୋଗ ଭାଗ୍ୟଫଳ
ଉପୁଜିବେ ନାରାୟଣ କୌଶଲ୍ୟାଙ୍କ କୋଳ ।
ଆମ୍ଭଙ୍କୁ ଯେ ରକ୍ଷା ଯେ କରିବେ ମଧୁହାରି
ତେବେ ନିଶ୍ଚଳେ ଆମ୍ଭେ ରହିବା ସ୍ୱର୍ଗପୁରୀ ।
ଦଶରଥ ରାଜା ଯୋଗୁଁ ଆମ୍ଭେ ହେବା ସୁସ୍ଥ
ଏ ରାଜାଙ୍କୁ ଅକ୍ଷତ ହେବା ଆମ୍ଭର ଉଚିତ ।
ବିଚାର କରିଣ ଦେବେ ପବନ ବେଗେ ରାଇ
ବେଗେଣ ଅକ୍ଷତ ଘେନି ଦେଲେ ପଠିଆଇ ।
ପବନ ଦେବତା ଯେ ମିଳିଲେ ବେଗେ ଯାଇ
ବଶିଷ୍ଠଙ୍କ କର୍ଣ୍ଣରେ କହିଲେ ଶବଦାଇ ।
ସକଳ ଦେବତା ଯେ ହେଲେ ଏକମେଳ
ଇନ୍ଦ୍ର ପିତାମହ ଘେନି ଦଶ ଦିଗପାଳ ।
ମୋର ହସ୍ତେ ଅକ୍ଷତ ଦେଇଣ ଅଛନ୍ତି
ଦଶରଥ ରାଣୀକି ବେଗେ ଦିଅ ଋଷି ।
ତୁମ୍ଭେତ ଯୋଗବଳେ ସକଳ ଅଛ ଜାଣି ।
ଦୁଷ୍ଟ ନାଶ କରିବେ ନାରାୟଣ ଜନ୍ମି ।
ନାରାୟଣ ଆସିଣ କୌଶଲ୍ୟା ରାଣୀ ଗର୍ଭେ
ଚତୁର୍ଦ୍ଧା ମୂରତି ଯେ ଧରିଣ ବାସୁଦେବେ ।
ବେନିମାସ ମଧ୍ୟରେ ପୁଣ ହେବେ ଜନ୍ମ
ଅକ୍ଷତ ଦେଇ ଦେବେ ଗଲେ ନିଜ ସ୍ଥାନ ।
ଶୁଣି ବଶିଷ୍ଠ ଋଷି ବେଗେ ଉଠି ପୁଣ
ରାଜାଙ୍କର ନଗ୍ରରେ ପ୍ରବେଶ ହେଲେ ଜାଣ ।
ଦଶରଥଙ୍କୁ କହିଲେ ଦେବଙ୍କ ବୃତ୍ତାନ୍ତ
ବେଦବର ଦେବତାଏ ଦେଲେକ ଅକ୍ଷତ ।
ଶୁଣିକରି ଦଶରଥ ଆନନ୍ଦ ମନ ହେଲେ
ଋଷିମାନଙ୍କୁ ଘେନିଣ ସଙ୍ଗରେ ବସିଲେ ।

ଅକ୍ଷତ ନେଇଣ ବଶିଷ୍ଠ ଦେଲେ ପୁଣି
ଚାରିଜାତିର ପାରିଜାତକ ପୁଷ୍ପ ଆଣି ।
ତିନିରାଣୀ ସଙ୍ଗେ ରାଜା ପୁଷ୍ପ ନେଲେ ପୁଣ
ଦଶରଥ ବୋଇଲେ ଶୁଣ ମୁନି ବ୍ରହ୍ମ ।
ଲୋମପାଦ ରାଜାଙ୍କୁ ଅକ୍ଷତ ନେଇ ଦିଅ ।
ବଶିଷ୍ଠ ବୋଇଲେ ଯେ କଥା ନୋହେ ପ୍ରିୟ ।
ନାରାୟଣ ଅବତାର ତୁମ୍ଭର ଘରେ ହେବେ
ସେଥିଯୋଗୁଁ ଅକ୍ଷତ ତୋତେ ଦେଲେ ଦେବେ ।
ତୁମ୍ଭେ ଜାଣିଲ ମୁଁ ଜାଣିଲି ନଜାଣିବେ କେହି
ଜାଣିଲେ ଦେବତାମାନେ କୋପ କରିବେ ତହିଁ ।
ଏକଥା ଗୁପତ କରି ପ୍ରକାଶ ନକରି
ଏହି ପୁଷ୍ପ ପ୍ରତିଦିନ ବାଷ୍ପ ଏହିପରି ।
ବରଷକ ତିନିଶ ଷାଠିଏ ଦିନ ଜାଣ
ତେତେଦିନ ଯାଏ ପୁଷ୍ପ ବାସନା କରେ ପୁଣ ।
ବୃକ୍ଷରୁ ତୋଳିଲା ପ୍ରାୟ ଦିଶଇ ପ୍ରତିଦିନ
ତେଣୁ ସେ ଅମଳାଣ ପୁଷ୍ପ ବୋଲି ଜାଣ ।
ନାରାୟଣ ପ୍ରବେଶରେ ଦେବେ ତୋଷ ତୋରେ
ଶୁଣିକରି ଦଶରଥ ଆନନ୍ଦ ମନରେ ।
ବୁଝାଇ ବଶିଷ୍ଠ ଯେ ଆଗେ ଚଳିଗଲେ
ଭିତର ପୁରେ ରାଣୀମାନଙ୍କ ପାଶେ ମିଳିଲେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣଗୋ ଶାକମ୍ଭରୀ
ବଶିଷ୍ଠଙ୍କୁ ଡକାଇ ଦଶରଥ ଦଣ୍ଡଧାରୀ ।
ଲୋମପାଦ ରାଜାଙ୍କୁ ଅକ୍ଷତ ତୁମ୍ଭେ ଦିଅ
ତ୍ରିପୁତ ହେବେ ଚମ୍ପାବତୀ ରାଜା ପ୍ରିୟ ।
ଶୁଣିକରି ବଶିଷ୍ଠ ପରମ ସନ୍ତୋଷ ହେଲେ
ଲୋମପାଦ ରାଜାଙ୍କର ରାଣୀଙ୍କୁ ଡକାଇଲେ ।
ବନ୍ଦାପନା ସାରି ଅକ୍ଷତ ଦେଲେ ଋଷି
ଅକ୍ଷତ ଧରି ତୁଷ୍ଟ ଲୋମପାଦ ରାଜା ସେଟି ।
ଅକ୍ଷତ ନେଇ ବଶିଷ୍ଠ ମେଲାଣି ହୋଇଗଲେ
ଭିତର ପୁରେ ରାଣୀ ନିଶ୍ଚିନ୍ତେ ରହିଲେ ।
ଭୋଜନ ଶୟନ କଲେକ ଯଥାବିଧି
କୁହନ୍ତି ଶୁଳପାଣି ଶୁଣ ଗୋ ପ୍ରାଣନିଧି ।
ଦଶରଥ ଗର୍ଭଦାନ କଲେକ ଯେ ସ୍ନେହେ
ଯେଝାପୁର ଯିବାକୁ ନୃପତିମାନେ ଆଗ ହୋଏ ।
ମାନ୍ୟଧର୍ମ ବିଧି ଦଶରଥ ରାଜା କଲେ
ଧନ ରତ୍ନ ବହୁତ ରାଜାମାନଙ୍କୁ ଦେଲେ ।

ବନ୍ଧୁମାନଙ୍କୁ ମେଲାଣି ବେଗେ କଲେ
ଧନରତ୍ନ ବସନ ବହୁତ ସେହୁ ଦେଲେ ।
ରାଜାମାନଙ୍କ ଚଳିଣ ଗଲେ ଯେଝାପୁର
ବନ୍ଧୁଜନମାନେ ଚଳିଗଲେ ତତପର ।
ଲୋମପାଦ ରାଜା ଦେଇଣ ଗର୍ଭଦାନ
ବନ୍ଦାପନା ହୋଇଣ ଢ଼ୁର କଲେ ଧନ ।
ଦେବ ବ୍ରାହ୍ମଣ ଋଷି ଦୁଃଖୀଜନ ଦେଇ
ରାଜାଗଣମାନଙ୍କୁ ଧନରତ୍ନ ଦେଇ ।
ବନ୍ଧୁଜନମାନଙ୍କୁ ବହୁତ ଧନ ଦେଲେ
ଆନନ୍ଦ ହୋଇଣ ଦଶରଥଙ୍କୁ କହିଲେ ।
ରାଜ୍ୟକୁ ଯାଉଛି ବୋଲି ମେଲାଣି ବେଗେମାଗେ
ରାଣୀହଂସକୁ କହିଣ ଚଳିଗଲେ ଶୀଘ୍ରେ ।
ଚମ୍ପାବତୀ ନଗ୍ରରେ ପ୍ରବେଶ ଯାଇଁ ହେଲେ
ଋଷିମାନେ ଯେ ଯାହା ମଢ଼ିଆରେ ବିଜେକଲେ ।
ଧନରତ୍ନ ଦେଲେ ବେନି ନୃପବର ଜାଣି
ଆନନ୍ଦରେ ବେଦଧ୍ୱନୀ କଲେ ଋଷି ପୁଣି ।
ନିଜ ନବର ଋଷି ଯେ ରାଜା ଯିବାରୁ ପୁଣ
ସନ୍ତୋଷ ଦଶରଥ ମନରେ ହୋଇଣ ।
ଅଯୋଧ୍ୟାପୁର ଗହଳ ଭାଙ୍ଗିଲାକ ଯହୁଁ
ଅନ୍ନ ବସ୍ତ୍ର ପାଇଲେ ଦରିଦ୍ର ଲୋକେ ତହୁଁ ।
ହାଟ ବାଟ ଧୋବା ତୁଠ ଯୁର ହୋଇଗଲା
ଲେଖା ହୋଇ ଧନ ହେ ଭଣ୍ଡାର ଦିଆଗଲା ।
କେକୟା ରାଜନଙ୍କର ବେନିପୁତ୍ର ଚଳେ
କୌଶଲ୍ୟା ସୁମିତ୍ରାଙ୍କ ଭାଇମାନେ ଗଲେ ।
ସମସ୍ତ ମେଲାଣି ଦେଇ ନୃପତି ଆନନ୍ଦ
ମୁଖ ବିକାଶଇ ଯେହ୍ନେ ପୂର୍ଣ୍ଣମୀର ଚାନ୍ଦ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ମୋର ପ୍ରିୟା
ବଶିଷ୍ଠଙ୍କୁ ନମସ୍କାର କଲେ ନରନାହା ।
ସେଥିର ଉତ୍ତାରୁ କଥା ହୋଇଲା ଯେମନ୍ତ
ଶୁଣ ଏକମନେ ତାହା ଗିରିରାଜ ଦୁହିତ ।
ଅଷ୍ଟମାସ ସମ୍ପୂର୍ଣ୍ଣରେ ହେଲା ନବ ମାସ
ଅପସରେ ଆଉଜି ନପାରେ ରାଣୀହଂସ ।
ନବମାସ ଶେଷରେ ଯେ ଦଶମାସ ହେଲା
ଦିନ ବଢ଼ା ଲେଖନ୍ତେ ଦଶମାସ ପୁରା ।
ଦଶମାସ ସମ୍ପୂର୍ଣ୍ଣ ଚୈତ୍ର ଚବିଶଦିନ
ଅଷ୍ଟମୀ ତିଥିରେ ହେଲା ନବମୀ ବର୍ଦ୍ଧମାନ ।

ସେଦିନ ଚଇତ୍ର ଯେ ଗୁଣ୍ଡିଚା ଯାତ ହୋଇ
ଈଶ୍ୱର ଦେବତାଙ୍କର ଉସ୍ଛବ ଯେ ହୋଇ ।
ରାସଉସ୍ଛବ ଗୁଣ୍ଡିଚା ତିନିପୁରେ ସାର
ତାଳଧ୍ୱଜ ବିଜେକଲେ ଗଉରୀ ଶଙ୍କର ।
କପିଳାସ କନ୍ଦରେ ଯେ ଏକାମ୍ରର ବନେ
ଅନେକ ସ୍ଥାନେ ବିଜୟ କଲେ ପଞ୍ଚାନନେ ।
ସେହିଦିନ କୌଶଲ୍ୟା ଦେହ ଯେ ବିକଳ
ଚେତାହେଲା ଅନ୍ତରାଳ ପବନ ବହେଖର ।
ପେଟବଥାଇ ଶୂଳ ଯେ ଆସେ ଘନ ଘନ
ଦେଖିଣ ମୃଦୁସୁଲି ଜଗାଏ ରାଜନ ।
ଭୋ ଦେବ ମହାରାଜା ନୃପତି ଶେଖର
ଶ୍ରୀଅଙ୍ଗ ଆଳସ୍ୟ ହେଲା ମଝିଆ ରାଣୀଙ୍କର ।
ପୁଣ ଦାସୀ ଜଣେ ଆସି ଏସନ ସମୟେ
ଶୁଣ ଦେବ ଅଯୋଧ୍ୟା ନୃପତି କୁଳ ରାୟେ ।
ସାନପାଟରାଣୀ ସୁମିତ୍ରାଙ୍କ ପେଟ ବ୍ୟଥା
ଶୁଣି ଭିତରକୁ ବିଜେକଲେ ମହାରଥା ।
ସକଳ ରାଣୀମାନଙ୍କୁ କହିଲେ ସେ ରାଇ
ତିନି ରାଣୀଙ୍କି ଜଗ ସକଳ ତୁମ୍ଭେ ରହି ।
କହିଣ ଯେ ବାହାରକୁ ଅଇଲେ ନରପତି
ବଶିଷ୍ଠ ସୁମନ୍ତ ଘେନି ବସିଣ ଭାଳନ୍ତି ।
ପାଟରାଣୀମାନଙ୍କର ପେଟବ୍ୟଥା କଥା
ଶୁଣିଣ ବୋଇଲେ ସେ ବଶିଷ୍ଠ ମହାଜ୍ଞାତା ।
ଶୁଣ ହେ ଦଶରଥ ନୃପତି ତିଳକ
ମାସ ସମ୍ପୂର୍ଣ୍ଣ ହେଲାଣି ହରହେ ଏବେ ଲେଖ ।
ଏହା କହି ବଶିଷ୍ଠ ଆଷାଢ଼ ମାସ ଅନ୍ତେ
ପୂର୍ଣ୍ଣମୀ ଦିନ ରଜସ୍ୱଳା ରାଣୀ ଯେ ହୁଅନ୍ତେ ।
ଯେଦିନ ରାଣୀମାନେ ଚରୁ ଯେ କଲେ ଗ୍ରାସ
ଦିନବତାରେ ଲେଖିଲେ ସମ୍ପୂର୍ଣ୍ଣ ଦଶମାସ ।
ଚୈତ୍ର ଶୁକ୍ଳ ଅଷ୍ଟମୀ ଅନ୍ତେ ନବମୀ ଯେ ତିଥି
ଦିନକ୍ଷୟ ଲେଖିଲେ ନବମୀ ସେ ଦିନଟି ।
ପୂର୍ଣ୍ଣମୀ ଲେଖାରେ ଦଶମାସ ଯେ ସମ୍ପୂର୍ଣ୍ଣ
ପ୍ରାପତ ପୁତ୍ର ତୁମ୍ଭଙ୍କୁ ହେବ ହେ ରାଜନ ।
ଦିନ ଗଡ଼ିଗଲେ ପୁଣ ଦୁହିତା ହେବ ଜାତ
ପୂର୍ବର କଥାଏ ଯେ ପୁରାଣେ ବିଖ୍ୟାତ ।
ବିଶେଷ ଆଷାଢ଼ ମାସ ପରିପୁର୍ଣ୍ଣେ ଗଲା
ଶ୍ରାବଣ ମାସରୁ ବଢ଼ି ମାସ ଯେ ହୋଇଲା ।
ମାସ ବଢ଼ା ଲେଖିଲେ ନବମାସ ପଚିଶ ଦିନ
ଦଶମାସ ସମ୍ପୂର୍ଣ୍ଣେ କେଉଁନାରୀ ଯେ ପ୍ରସବିଣ ।
ଊଣା ଅଧିକରେ ପୁଣ ପାଆନ୍ତି ପୁତ୍ର ଲାଭ
ଏହା ଅଟଇ ଯେ ତୁମ୍ଭ ପକ୍ଷରେ ସୁଲଭ ।
ସମ୍ପୂର୍ଣ୍ଣ ଦିନ ପ୍ରସବ ହେଲା କାଳସ୍ଥିତି
ଏଥିକି ଭ୍ରାନ୍ତି ତୁମ୍ଭେ ନକର ନରପତି ।
ଶୁଣିଣ ଦଶରଥ ସୁମନ୍ତକୁ ବୋଲି
ସମସ୍ତ ପୁତ୍ରବନ୍ତି ଅଣାଅଁ ମୃଦୁସୁଲି ।
ଶୁଣିଣ ସୁମନ୍ତ ମନ୍ତ୍ରୀ ବେଗେ ଚଳିଗଲା
ଆଜ୍ଞା ପ୍ରମାଣେ ପୁତ୍ରବନ୍ତିକି ଅଣାଇଲା ।
ପୁତ୍ରବନ୍ତି ଦେଖି ରାଜା ମନେ ହରଷ ହେଲେ
ଭିତରକୁ ଯାଅ ବୋଲି ରାଜା ଆଜ୍ଞା ଦେଲେ ।
ଏସନକ ସମୟେ ଶୁଣ ଗୋ ତୁମ୍ଭେ ପୁଣ
ଲୋମପାଦ ରାଜାଙ୍କର ଶତେ ରାଣୀ ପୁଣ ।
ଚଇତ୍ର ଶୁକ୍ଳ ଯେ ପଞ୍ଚମୀ ଦିନ ପୁଣି
ଶତେ ପୁତ୍ର ଜାତ କଲେକ ଶତେ ରାଣୀ ।
ପୁତ୍ରଙ୍କୁ ଜନ୍ମ ଦେଖି ଲୋମପାଦ ରାୟେ
ମନରେ ହର୍ଷ ହୋଇଣ ଉସ୍ଛବ କରାଏ ।
ପାତ୍ରକୁ ଡକାଇ ଚମ୍ପାବତୀ ଦେଶ ରାୟେ
ବନ୍ଧୁ ଜନମାନଙ୍କୁ ନିମନ୍ତ୍ରଣ କରାଏ ।
ଶତେରାଣୀ ପିତା ଘରକୁ ପେଷିଲେ ଖଡ଼ିରତ୍ନ
ସଙ୍ଗେ ବ୍ରାହ୍ମଣଙ୍କୁ ଘେନି ଚଳିଲେ ତୁରିତ ।
ଅଯୋଧ୍ୟାକୁ ଖଡ଼ିରତ୍ନ ସଙ୍ଗତେ ଭୁବନ ।
ଦଶରଥଙ୍କ ଛାମୁରେ ଜଣାଇଲେ ଯାଇ
ଲୋମପାଦ ରାଜାଙ୍କର ଶତେପୁତ୍ର ହୋଇ ।
ଶୁଣିଣ ଦଶରଥ ରାଜା ହରଷ ହୋଇଲେ
ଧନରତ୍ନ ଆଣି ବଧାଇ ତାଙ୍କୁ ଦେଲେ ।
ଖଡ଼ିରତ୍ନ ବିପ୍ରବର ଚଳିଲେକ ପୁଣ
ଚମ୍ପାବତୀ ଭୁବନରେ ପ୍ରବେଶ ଯାଇଣ ।
ରାଜାଙ୍କର ଆଗରେ ପଉଷରେ କହି
ଅଯୋଧ୍ୟା ନୃପତି ଶୁଣି ହରଷ ମନ ହୋଇ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
ଲୋମପାଦ ରାଜାର ଶୁଣିଲି ପୁତ୍ର ଜନ୍ମ ।
ଦଶରଥ ରାଣୀମାନେ ଦୁଃଖ ପାଏ ଏଣେ
ତାଙ୍କ ପୁତ୍ର ଜନ୍ମ ତୁମ୍ଭେ କହ ପଞ୍ଚାନନେ ।

ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ଦଶରଥ ରାଣୀଙ୍କର ଉଦବେଗ ମତି ।
ଥୋକାଏ ବେଳରେ ଭାଜିଲା ମୁତ୍ରପୁଡ଼ା
ଧାଈଙ୍କ ଉପରେ ରାଣୀ ଦିଅନ୍ତି କରଭଡ଼ା ।
ପୁଣି ଶୁଳ ଆସନ୍ତେ ପ୍ରସବ ନିକଟତ
ବିକଳେ କୌଶଲ୍ୟା ସୁମରେ ଦଇବତ ।
ନାରାୟଣଙ୍କ ସୁଦୟା ଧନ୍ୟ ରାଣୀର ପେଟ
ଗର୍ଭରେ ଧରିଥିଲେ ସେ ବ୍ରହ୍ମାଣ୍ଡର ନାଥ ।
ସାତଦ୍ୱୀପ ସାତସିନ୍ଧୁ ନଦୀ ଘୋରବନ
ଜଳ ସ୍ଥଳ ପର୍ବତ ଯେ ଚଉଦ ଭୁବନ ।
ଦଶଦିଗ ପୁଣ ଯେ ଆବର କପିଳାସ ·
ଚନ୍ଦ୍ର, ସୂର୍ଯ୍ୟ ଯାହାର କରନ୍ତି ଗର୍ଭବାସ ।
ସେ ପ୍ରଭୁ ଅଛନ୍ତି ପୁଣି କୌଶଲ୍ୟା ପେଟରେତ
ଗର୍ଭେ ଧରିଥିଲେ ନାରୀ ଜଗତର ନାଥ ।
କୌଶଲ୍ୟା ଗର୍ଭରେ ଯେ ପ୍ରଭୁହେଲେ ସ୍ଥିତି
ଦେହଧରି ସୁମରେ ରାଣୀ ଜଗତର ପତି ।
ଭକତ ବତ୍ସଳ ଅଟେ ସେହୁ ଯେ ମୁରାରୀ
ଦଶରଥ ରାଣୀ ଗର୍ଭେ ବିଜେ ନରହରି ।
ଯେଣୁ ସେ ବାସୁଦେବ ଗର୍ଭରେ ବିଜେକରି ।
କିସ ପଟାନ୍ତର ମୁଁ ଯେ ଦେବଇଁ ତାଙ୍କୁ ପୁଣ
ଯେଉଁ ଗର୍ଭେ ବିଜୟ ଚଉବାହା ଜାଣ ।
ଅନେକ ପୁଣ୍ୟରେ ପାଇଲେ ସେହୁ ଫଳ
ଦୁଃଖରେ ମନ ତାର କରେ ସେ ବିକଳ ।
ଶ୍ରୀହରି ନାରାୟଣ ସୁମରେ କଉଶଲ୍ୟା
ଧର୍ମବଳରେ ପୁତ୍ର ଜନ୍ମ ହେଲେ ତୋରା ।
ସ୍ୱର୍ଗରେ ଆନନ୍ଦ ହେଲେ ଜାଣି ଦେବଲୋକ
ବିଚାରିଲେ ଆଜହୁଁ ଗଲା ଆମ୍ଭ ଦୁଃଖ ।
ଶୂନ୍ୟରେ ଯାନ ଚଢ଼ି ରହିଲେ ଦିଗପାଳେ
ଐରାବତ ଗଜପରେ ଇନ୍ଦ୍ର ବିଜେକଲେ ।
ବେଦବର ବିଜେ କଲେ ହଂସ ବାହାନରେ ।
ଦେବ ବିଜେ କଲେ ଯେ ଯାହାର ଆୟୁଧରେ
ତେତିଶ କୋଟି ଦେବେ ଯେଝା ଆୟୁଧେ ମିଳି
ଚୌଦକୋଟି ଶିବଗଣ ଘେନି ତ୍ରିପୁରୀ ।
ଅଠରକୋଟି ନାଗବଳ ଘେନି ନାଗ ରାଜା
ଧୀରେ ଧୀରେ ଚଳିଲେ କାଶ୍ୟପ ତନୁଜା ।

ସକଳ ଦେବତାଯେ ଶୂନ୍ୟରେ ବିଜେ ଦେଖି
ବଳରାମ ଦାସ ତାଙ୍କ ଚରଣେ ନମିଲାଟି ।
କରଯୋଡ଼ି ସ୍ତୁତି କରେ ଦେବଙ୍କ ପାଦେପଡ଼ି
ନାରାୟଣ ରଖ ବୋଲି ତୁଣ୍ଡରେ ଉଚ୍ଚାରି ।
ପାର୍ବତୀ ବୋଇଲେ ଦେବ ଶୁଣ ହେ ମହେଶ୍ୱର
ସକଳ ଦେବତା ଠୁଳ ଶୂନ୍ୟ ମଣ୍ଡଳର ।
କିସ ବିଚାର ସେ କରିବେ ଆସିକରି
ସେ କଥା ଫଳରେ ମୋତେ କହ ତ୍ରିପୁରାରୀ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ଦେବଗଣେ ଜାଣିକରି ଆସି ଯେ ଅଛନ୍ତି ।
ଚାରିଯୁଗ ସହିତେ କରପତ୍ର ଯୋଡ଼ି ଉଭା
ନବଗ୍ରହେ ମିଳିବାରୁ ଭିଆଣ କଲେ ସଭା ।
ଦେବଗୁରୁ ବୃହସ୍ପତି ପାଞ୍ଜିଧରି କହି
ବତିଶ ବର୍ଷେ ଚାରି ରାବଣ ମରିବଇଁ ।
ଅହଲ୍ୟା ମୁକତ ହେବେ ବାର ବରଷରେ
ତାଡ଼କାକୁ ମାରିବ ସେ ସେହି ବୟସରେ ।
ବିଶ୍ୱାମିତ୍ର ଯାଗ ଯାଇ ରଖିବେ ଦେବହରି
କଉଶିକ ଋଷି ଆସି ନେବେ ବରଣ କରି ।
ଶିବଧନୁ ଭାଙ୍ଗିଣ ଜାନକୀ ବିଭାହେବେ
ପର୍ଶୁରାମର ବଳ ଭେଟରେ ହରିବେ ।
ଅଯୋଧ୍ୟାରେ ରହିବେ ଷଡ଼ ଯେ ବରଷ
ନାନାବିଦ୍ୟା ପଢ଼ିଣ ହୋଇବେ ହରଷ ।
ଅରଣ୍ୟବାସୀ ହେବେ ଚଉଦ ବରଷ
ଏଥିରେ ରାମ ଘରଣୀ ହରି ଦଶାୟୁଷ ।
ଜାନକୀ ଚୋରାଇ ତେର ମାସ ଯେ ରଖିବ
ଚୌଦମାସ ସାତଦିନେ ତିନିରାବଣ ମରିବ ।
ସସ୍ତ୍ରମୁଖା ରାବଣ ମରିବ ସେଥିରେ ବାର ଦିନେ
ଲଙ୍କାରେ ଭେଟ ହେବେ ଚାରିଭାଇ ସେହିଦିନେ ।
ଜମ୍ବୁଦ୍ୱୀପ ଲକ୍ଷେ ରାଜା ହୋଇବେ ଯାଇ ଠୁଳ
ରାମାୟଣ ଯୁଦ୍ଧ ଶେଷ ଦେଖିବେ ସକଳ ।
ତିନିଭାଇ ଯାକ ତିନିରାବଣ ନାଶିବେ
ଜନକ ଦୁହିତା ସସ୍ତ୍ରମୁଖାକୁ ମାରିବେ ।
ଏତେ କହିଣ ତୁନି ହୋଇଣ ଦେବଗୁରୁ
ଶୁଣିଣ ସକଳ ଦେବେ ହେଲେ କଳ୍ପତରୁ ।
ଦୁନ୍ଦୁଭି ବଜାଇ ଦେବେ ପୁଷ୍ପବୃଷ୍ଟି କଲେ
ଗାଇଲେ କିନ୍ନରୀ ଅପସରୀ ଯେ ନାଚିଲେ ।

ଦେବେ ଆନନ୍ଦଭରେ ହୋଇଲେ ସକଳ
ଅଯୋଧ୍ୟା ଦେଶେ ଆନନ୍ଦ ହେଲେ ନୃପବର ।
ଈଶ୍ୱର ବୋଲେଲେ ତୁମ୍ଭେ ଶୁଣ ଗୋ ଭଗବତୀ
ନରଦେହ ଘେନିଣ ବିଷ୍ଣୁ ଯେ ଉତପତି ।
କଉଶଲ୍ୟାର ପୁତ୍ର ଜନ୍ମ ଦେଖିଣ ମୁଦୁସୁଲି
ରାଜା ଆଗେ ଜଣାଇବି ବୋଲିଣ ବିଚାରିଲି ।
ଧାଇ ମୁଦୁସୁଲି ବେଗେଣ ଚଳିଗଲେ
ରାଜାଙ୍କର ଆଗରେ ପ୍ରବେଶ ଯାଇ ହେଲେ ।
କରଯୋଡ଼ି ବୋଇଲେ ବଧାଇ ରାଜା ଦେବା
କୌଶଲ୍ୟାର ପୁତ୍ର ଜାତ ତେସନେ ସୁରଦେବା ।
ଶୁଣିଣ ନୃପବର ହରଷ ମନ ହେଲା
ଆନନ୍ଦରେ ନୃପବର ସନ୍ତୋଷ ହୋଇଲା ।
ଧାଈକି ବୋଇଲେ ବଧାଇ ନିଅ ଗୋ ହରଷ
କୈକେୟୀ ରାଣୀଙ୍କ ଖବର ଯାଇଣ ନେଇଆସ ।
କଥା ହୁଅନ୍ତେଣ ତେଣେ ଶୁଭଇ ମୁଖଗୋଳ
ଅଇଲେ ମୁଦୁସୁଲି କହିଲେ ଛାମୁର ।
ଭୋ ଦେବ ମହାରାଜା କୈକେୟୀ ପାଟରାଣୀ
ପୁତ୍ରେକ ଜନ୍ମକଲେ ଯେସନେ ଦିନମଣି ।
ପରମ ତୋଷହେଲେ ଅଯୋଧ୍ୟା ପୁର ରାୟେ
ବିଚାରିଲେ ପ୍ରାପତ ମୋତେ ଯେ ତନୟେ ।
ଏ ସମୟେ ଧାଈ ବାର୍ତ୍ତା ଆଣି ଦେଲେ
ସୁମିତ୍ରା ପାଟରାଣୀ ପୁତ୍ରେକ ଜନ୍ମକଲେ ।
ତାରପଛେ ଆଉ ଧାଈ ଆସିଣ କହଇ
ସୁମିତ୍ରାଙ୍କର ଆହୁରି ପୁତ୍ରେକ ଜନ୍ମହୋଇ ।
ଧର୍ମ ବଳରେ ଚାରି ପୁତ୍ର ଜନ୍ମ ହୋଇଲେ
କାମ ଦେବଙ୍କୁ ଜିଣି ସୁନ୍ଦର ଦିଶେ ଭଲେ ।
ଶୁଣିକରି ନୃପମଣି ଆନନ୍ଦ ମନ ପୁର
ଦେଲେକ ବଧାଇ ଯେ ହରଷେ ଧନରତ୍ନ ।
ଯେ ଯାହା ଆନନ୍ଦରେ ଧନନେଲେ ପୁଣ
ଧାଈ ମୁଦୁସୁଲି ଯେ ପରିବାରୀ ଜାଣ ।
କେହୁଘେନି ଚଳିଲେ ବସ୍ତ୍ର ଅଳଙ୍କାର
ଥାଳି ଝରି ଗରିଆ ଢୁବାର ଅପାର ।
ଭଣ୍ଡାର ଘରୁ ସବୁ ନେଉଛନ୍ତି ବହି
ଦେଖିଣ ଆନନ୍ଦ ଯେ ଅଯୋଧ୍ୟାର ସାଇଁ ।
ଚକ୍ରଧର ଦେବ ଯହୁଁ ସେ ଜନ୍ମ ହେଲେ
ଆନନ୍ଦରେ ହରଷ ସମସ୍ତେ ହୋଇଲେ ।
ଗଜ ଅଶ୍ୱ ମୁକୁଳା ହୋଇଣ ପୁଣ ବୁଲେ
ଗଉଡ ଗୋଷ୍ଠରେ ଗାବ ସ୍ଥକିତେ ରହିଲେ ।
ବହିଯିବା ନଦୀ ଯେ ହୋଇଲେକ ସ୍ଥିର
ଗହଳ ହୋଇଲା ଯେ ଅଯୋଧ୍ୟା ନାମେପୁର ।
ଶାରୀ ଶୁକ ପିକ ମଙ୍ଗଳ ଗୀତ ଗାଇଲେ
ନୃତ୍ୟକାରୀ ନଟକାରୀ ଆଗରେ ନୃତ୍ୟକଲେ ।
ଅଠର କୋଟି ରଥୀ ଯେ ବେଶ ହୋଇବସି
ରାଜାଙ୍କର ସିଂହଦ୍ୱାରେ ମିଳିଲେକ ଆସି ।
ବାର ଲକ୍ଷ ହସ୍ତୀ ଘେନି ମାହୁନ୍ତ ପ୍ରବେଶ
ଦେଖିଣ ନୃପତି ଯେ ମନରେ ହରଷ ।
ଏମନ୍ତ ସମୟରେ ବାଇଶି କୋଟି ଅଶ୍ୱ
ସଜକରି ସିପାହୀ ଯେ ମିଳିଲେ ତୁରିତ ।
ସାରିଣ ବେନିଲକ୍ଷେ ଗୋପାଳ ବେନିକୋଟି
ପଦାତି ବତିଶ ଲକ୍ଷ ଠୁଳ ହେଲେ ସେଠି ।
ସାମନ୍ତ ପାତ୍ର ମନ୍ତ୍ରୀ ସଙ୍ଗତେ ସରଦାର
ସବୁଙ୍କୁ ବଧାଇ ଯେ ଦେଲେ ନୃପବର ।
ମେଲାଣି ହୋଇଣ ଯେ ସମସ୍ତ ଚଳିଗଲେ
ମନରେ ଆନନ୍ଦ ଯେ ସମସ୍ତେ ହୋଇଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ରାଜାଙ୍କର ଆନନ୍ଦ ଯେ କେହୁ କହିପାରି ।
ଥେଣ୍ଟୁଆ ଜୁର କଲେ କନ୍ଦିବିକନ୍ଦିରେ
ହାଟ ବାଟ ଜୁରହେଲା ରାଜା ହୁକୁମରେ ।
ସାଧୁତମାନେ ପଶିଲେ କିଳିଣ କବାଟ
ରାଜ୍ୟଯାକ ହାଲହୋଲି ପୁର ହାଟବାଟ ।
ମେଲାରେ ଥିବା ପଦାର୍ଥ ହୁରିଆ ଜୁରକଲେ
କାହାର ଘରୁ ଅନେକ ଧନ ବହିନେଲେ ।
ହଟାରି ବଜାରି ଧୋବା ତୁଠ ଜୁରକରି
ଦୋକାନ ବଜାର ଯାକେ ପଡ଼ିଲା ହାଲହୋଲି ।
ନବଘଡ଼ି ରାତ୍ରଠାରେ ଶ୍ରୀରାମ ଜନ୍ମହେଲେ
ବଶିଷ୍ଠଙ୍କୁ ଦଶରଥ ଡକାଇ କହିଲେ ।
ଦଶଘଡ଼ି ରଜନୀରେ ତିନିପୁତ୍ର ଜାତ
ଚାରି କୁମର ଯୋଗ ଲଗ୍ନ ବୁଝିବା ଉଚିତ ।
ସୁମନ୍ତ ବସିଲେ ବେଗେ ଖଡ଼ିରତ୍ନ ଡାକି
ଜାତକ ପତ୍ର ଯୋଗ ଲଗ୍ନ ବେଗେ ଲେଖି ।
ପଣ୍ଡିତ ଜ୍ୟୋତିଷ ପଢ଼ିଲେ ଗ୍ରହ କୋଠି
ବୋଲେ ବୃହସ୍ପତିଙ୍କର ତିନିପାଦ ଦୃଷ୍ଟି ।

ଧନୁ ଲଗ୍ନରେ ଜାତ ବଡ଼ ଯେ ପୁତ୍ର ପୁଣ
ମକର ଲଗ୍ନରେ ଜାତ ତିନିପୁତ୍ର ଜାଣ ।
ପୁଷ୍ୟା ନକ୍ଷତ୍ର କକଡ଼ା ରାଶି ପୁଣ ହୋଏ
ପ୍ରଥମେ ଜନ୍ମ ହେଲେ ଯେବଣ ତନଯେ ।
ଆର ପୁତ୍ରଙ୍କର ଅଶ୍ଳେଷା ନକ୍ଷତ୍ର
ଆର ଦୁଇ ପୁତ୍ରଙ୍କର ଅଶ୍ୱିନୀ ନକ୍ଷତ୍ର ।
କଙ୍କଡ଼ା ରାଶିରେ ଜନ୍ମ ହେଲେ ଚାରିପୁତ୍ର
କ୍ଷେତ୍ର ଭିନ୍ନ ଭିନ୍ନ ହୋଇଲା ସଂଯୁକ୍ତ ।
ଦୁଇଗୋଟି ଗ୍ରହ ଯେ ଶେଷରେ ଉଚ୍ଚପତି
ଏମନ୍ତେ ଚାରିଗ୍ରହ ଶୁଭଯୋଗେ ଛନ୍ତି ।
ଧନୁ ଲଗ୍ନରେ ଜାତ ନକ୍ଷତ୍ର ଆବର
ଏକା ମାତ୍ର ଦେବଗୁରୁ ହୋଇଣ ବାହାର ।
ଏ ଚାରି ପୁତ୍ରେ ଧାର୍ମିକ ହେବେ ନରସାଇଁ
ତିନିପୁରେ ବଳବନ୍ତ ସରି କେହି ନାହିଁ
ଧାର୍ମିକ ସୁଜନ ଯେ ହେବେ ଶାନ୍ତଶୀଳ
ସାଧୁ ମହିମା ତୁମ୍ଭର ଉଦ୍ଧରିବେ କୁଳ ।
ଭଗୀରଥଙ୍କୁ ବଳିଣ ନାମ ବିକଶିବେ
ତିନିପୁରେ ପ୍ରଂଶସା ବହୁତ ପାଇବେ ।
ମାନଧାତା ଚକ୍ରବର୍ତ୍ତୀ ହରି ଯେ ଚନ୍ଦନ
ଏମାନଙ୍କ ଉପରେ ବଡ଼ ହେବେ ପୁଣ ।
ସଗର ରାଜା ପରା ଉପର ବଂଶେ ଥିଲେ
ସପ୍ତ ସାଗର ଖୋଳାଇ କୀର୍ତ୍ତି ରୁହାଇଲେ ।
ତାଙ୍କଠାରୁ ଅଧିକ ହୋଇବ ପୁଣ ଯଶ
ଦୁଷ୍ଟଜନ ନାଶିଣ ପାଳିବେ ପୁଣ ସନ୍ଥ ।
ଏ ବଚନ ଖଡ଼ିରତ୍ନ ରାଜାରେ କହିଲେ
ଋଷି ବ୍ରାହ୍ମଣ ମନ୍ତ୍ରୀଜନ ତୋଷହେଲେ ।
ରାଶି ନକ୍ଷତ୍ରକୁ ଜାଣିଲେ ସର୍ବେ ପୁଣି
ଲକ୍ଷେ ବ୍ରାହ୍ମଣ ଡକାଇ ଭୋଜନ ଦେଲେ ଜାଣି
ଈଶ୍ୱରଙ୍କର ଶିରରେ ଲକ୍ଷେ ଗୋଦୋହନ
ଚଣ୍ଡୀ ଅପରାଜିତା ଗୁଣିଲେ ଲକ୍ଷେ ବ୍ରାହ୍ମଣ ।
ବିଷ୍ଣୁ ଦେବତାଙ୍କୁ ତୃପ୍ତି ସେହୁ କରି
ନାନାବର୍ଣ୍ଣେ ଭୋଗ ରାଗ କରାଏ ଦଣ୍ଡଧାରୀ ।
ଲକ୍ଷେକ ବ୍ରାହ୍ମଣେ ଯେ ସହସ୍ର ନାମ ଗୁଣି
ଏକୋଇଶ ଦିନ ଯାଏ ବରଣ ହେଲେ ଜାଣି ।
ଦେବୀମାନଙ୍କୁ ପୁଣ ଉତ୍ସବ କରାଇଲେ
ବୋଦା, ପଢ଼ିଆ, ଛାଗଳ ଅନେକ ପୁଣ ଦେଲେ ।

ଆବର ଇଷ୍ଟଦେବତା ବିରଞ୍ଚି ନାରାୟଣ
ଅନେକ ଭୋଗ ରାଗ କଲେକ ରାଜନ ।
ସୁମନ୍ତଙ୍କୁ ଡକାଇଣ ରାଜନ ଆଜ୍ଞାଦେଲେ
ଅଯୋଧ୍ୟାରେ ଉତ୍ସବ ଯେ କରାଅ ବୋଇଲେ ।
ଶୁଣିକରି ମନ୍ତ୍ରୀବର ବେଗେ ଚଳିଗଲା
ଚଉଷଠି ଦାଣ୍ଡରେ ଧେଣ୍ଡୁରା ଫେରାଇଲା ।
ବଡ଼ ଦାଣ୍ଡ କନ୍ଦି ବିକନ୍ଦି ପାତ୍ର ସାମନ୍ତ ଉଆସ
ସକଳ ସ୍ଥାନେ ଉତ୍ସବ କଲାକ ବିଶେଷ ।
କେଉଁଠାରେ ନୃତ୍ୟ ଯେ କେଉଁଠାରେ ଗୀତ
କେଉଁଠାରେ ଛାମୁଣ୍ଡିଆ ଚାନ୍ଦୁଆ ବିହିତ ।
କେଉଁଠାରେ ବାଦ୍ୟ ଯେ ମର୍ଦ୍ଦଳ କଂସାଳ
କେଉଁଠାରେ ଯାତ୍ରା ଯେ କରାଏ ମହୀପାଳ ।
ଏମନ୍ତେ ଅଯୋଧ୍ୟାରେ ନବର ତେର କଲା
ରାଜାର ଆଗରେ ଯାଇ ପ୍ରବେଶ ହୋଇଲା ।
କରଯୋଡ଼ି ଆଗରେ ଯେ କହିଲେ ବୁଝାଇ
ଶୁଣିଣ ରାଜନ ଯେ ପରମ ସନ୍ତୋଷ ହୋଇ ।
ପାତ୍ର ମନ୍ତ୍ରୀ ଡକାଇଣ ଦେଲେ ଧନ ଶାଢ଼ୀ
ଯେ ଯାହା ନବରକୁ ଗଲେ ହାତୀ ଚଢ଼ି ।
ସମସ୍ତଙ୍କୁ ବଧାଇ କରିଣ ଧନ ଦେଲେ
ଅଶ୍ୱ ହସ୍ତୀ ବଧାଇ କରିଣ ସମର୍ପିଲେ ।
ଥେଣ୍ଟ ଦଣ୍ଡିଆମାନେ ଧନ ବୋହିନେଲେ
ହୁରିଆ ଯୁରିଆ ଯେ ସକଳ ଜୁରକଲେ ।
ନଟକାରୀ ନୃତ୍ୟକାରୀଙ୍କି ବୋଧିଲେ ଧନଦେଇ
ଧନ ବସ୍ତ୍ର ପାଇଣ ସମସ୍ତେ ତୋଷ ହୋଇ ।
ଭାଟ କଏବାର କରନ୍ତେ ତାଙ୍କୁ ବୋଧେ ରାଏ
ଦରିଦ୍ର ଲୋକଙ୍କୁ ପୁଣ ଅନ୍ନ ବସ୍ତ୍ର ଦିଏ ।
ସମସ୍ତଙ୍କୁ ପ୍ରବୋଧି ଯେ ଦଶରଥ ପୁଣ
ଗହଳ ଭାଙ୍ଗିଣ ଯେ ଚଳିଲେ ତତ୍‌କ୍ଷଣ ।
ରାଜା ବିଜେକଲେ ଯେ ଭିତର ପୁରେ ଯାଇ
ଦେଖିଲେ ଚାରିପୁତ୍ରଙ୍କର ନାଭି କଟା ହୋଇ ।
ଚନ୍ଦନ କାଠରେ ପୁଣ ଏନ୍ତୁଡ଼ି ଲାଗିଅଛି
ଏନ୍ତୁଡ଼ି ଲଗାଇ ଯେ ପୁତ୍ରମାନଙ୍କୁ ସେକି ।
ବୁଦ୍ଧିବନ୍ତ ନାରୀମାନେ ସଙ୍ଗରେ ବହୁତ
ବିଧି ବିଧାନ ମାନସେ କରନ୍ତି ସମସ୍ତ ।
ନାଭିକଟା ସରିବାରୁ ସ୍ନାନ କରାଇଲେ
ବାସପାଣି ଘେନି ଚାରିପୁତ୍ର ସମାର୍ଜ୍ଜିଲେ ।

ଏନୁଡ଼ି ଶେଜରେ ପାଟ ସୁପାତି ମୁଚୁଳି
ଇନ୍ଦ୍ର ଗୋବିନ୍ଦ ଚାନ୍ଦୁଆ ଉପରେ ଟାଣିକରି ।
ଧାଈଙ୍କର ହସ୍ତରେ ଧରା ଗାଈ ଦୁଧ
ରାଣୀମାନଙ୍କ ପାଖରେ ପ୍ରବେଶ କଲେବେଗ ।
ପ୍ରାଣରୁ ଅଧିକ କରି ପ୍ରତିପାଳି ପୁଣି
ଧାଈମାନେ ରାଣୀଙ୍କି ତାତ୍ପର୍ଯ୍ୟ କଲେ ଜାଣି ।
କଶ୍ୟପ ଆଦିଦି ପୁଣ ବ୍ରହ୍ମାଙ୍କ ଶାପ ପାଇ
ଦଶରଥ କୌଶଲ୍ୟା ରୂପେ ଜାତ ହୋଇ ।
ଏଥୁଅନନ୍ତରେ ତୁମ୍ଭେ ଶୁଣ ହେମବତୀ
ଦଶରଥ ଘରେ ଯେ ଶ୍ରୀହରି ଉତ୍ପତି ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ପଞ୍ଚାନନ
ବୈକୁଣ୍ଠ ପୁରୁକୁ ତେଜି ଜନ୍ମ ନାରାୟଣ ।
ଜନ୍ମ ହୋଇ କିସ କଲେ କହ ପ୍ରାଣନାଥ
ଈଶ୍ୱର ବୋଇଲେ ଯେକଥା ଅଟଇ ପ୍ରତ୍ୟକ୍ଷ ।
ଦାସୀଗଣମାନେ ଯେ ଆନୁଆନ ରୀତି
ନବରୁ ବାହାର ହୋଇ ନଗ୍ରରେ ବୁଲନ୍ତି ।
ଗାଲରେ ହଳଦୀ ଲଗାଇ ନୟନେ କଜ୍ଜ୍ୱଳ
କେଉଁନାରୀ ବୁଲନ୍ତି ମୁକୁଳା କରି ବାଳ ।
ବୁକୁ ପଣତରେ ପୁଣ ମୁଖକୁ ଲୁଚାନ୍ତି
ରସିକ ପୁରୁଷ ଦେଖିଲେ କାଖ ଟେକିଦ୍ୟନ୍ତି ।
ନଗ୍ରରେ ନରନାରୀ ଦେଖନ୍ତି ସମସ୍ତ
ବୋଲନ୍ତି ବୃଦ୍ଧ ରାଜା ପାଇଲେ ଚାରିପୁତ୍ର ।
ଏମନ୍ତ ବିଚାର ଯେ କରନ୍ତି ନରନାରୀ
ସମସ୍ତେ ରାଜାଙ୍କର ମଙ୍ଗଳ ବିଚାରି ।
କେହୁ ନାରୀ ପୁରୁଷ ବୋଲନ୍ତି ଭଲହେଲା
ମହାରାଜାଙ୍କ ସନ୍ତାପ ଆଜହୁଁ ପୁଣ ଗଲା ।
ପାଞ୍ଚସାତ ମେଳ ହୋଇ ବସିଲେ ସେ ପୁଣି
ବିଚାର କରନ୍ତି ଯେ ସକଳ କାମିନୀ ।
କେ ବୋଲନ୍ତି ଭଲ ଯେ ରାଜାଙ୍କୁ ହେଲା ପୁଣ
କେ ବୋଲନ୍ତି ସୁଖରେ ଦିନ ସରିବ ଜାଣ ।
କେ ବୋଲନ୍ତି ବହୁ ସୁଲଭ ଦେଖିବା ପୁଣି
ସୂର୍ଯ୍ୟବଂଶରେ କାରେଣୀ ହୋଇବେ ପୁତ୍ରମଣି ।
କେ ବୋଇଲା ମହାରାଜା ବହୁତ ଦାନଦେଲେ
କେ ବୋଲନ୍ତି ରାଣୀମାନେ ସୁସ୍ଥରେ ରହିଲେ ।
କେବୋଲେ ରାଜାର ଦିନ ସୁସ୍ଥରେ ଯେ ଯିବ
କେବୋଲେ ଏଥି ଥିବ ଯାହାହେବ ସେଦେଖିବ ।

ଏମନ୍ତ ବିଚାର ଯେ କରନ୍ତି ନରନାରୀ
ଆନନ୍ଦ ହୋନ୍ତି ଅଯୋଧ୍ୟା ଦାସୀ ସର୍ବେ ମିଳି ।
ଠାବେ ଠାବେ ଦଶବିଂଶ ହୋଇଣ ମେଳ ରୁଣ୍ଡ
ପଶା ଗଞ୍ଜପା ଶକଟା ଖେଳନ୍ତି ହୋଇ ସଙ୍ଗ ।
କେ ବୋଲନ୍ତି ଏ ରାଜ୍ୟକୁ ଭଲହେଲା ପୁଣ
ଚାଲ ଆମ୍ଭେମାନେ ଯିବା ରାଜାଙ୍କୁ ଦେଖିଣ ।
ପଦାତି ଧରିଛନ୍ତି ଢାଲ କାଣ୍ଡ ଖଣ୍ଡା
କେହୁ ଧରିଛନ୍ତି ବରଛା ଧୂପବାଦା ।
କେହୁ ଚଢ଼େ ଅଶ୍ୱ କେହୁ ଚଢ଼େ ହସ୍ତୀ ତ୍ୱରା
ଦାଣ୍ଡରେ ଯୁଝନ୍ତି ଯେ ଗଉଡ଼ ଯୋଡ଼ା ଯୋଡ଼ା ।
ଚାରି ସହସ୍ର ଅଶିକୋଶ ଅଯୋଧ୍ୟା ସୀମାଜାଣ
ସବୁଠାରୁ ପଏକାର ଅଇଲେ ତତକ୍ଷଣ ।
ବାଜଇ ବାଜତୁରୀ ଶଙ୍ଖ ଯେ ମହୁରି
ରାଜାଙ୍କ ସିଂହଦ୍ୱାରେ ପଡ଼ିଲାକ ହୁରି ।
ନୌକାଟି ପଦାତି ଅଶ୍ୱ ଗଜ ତୁଲେ
ସରଦାର ବିଶୋଇ ନାୟକ ସର୍ବମିଳେ ।
ସମସ୍ତଙ୍କୁ ଶାଢ଼ୀ ରତ୍ନମାନ ଆଣିଦେଲେ ।
ମେଲାଣି ହୋଇଣ ସର୍ବେ ଗଲେ ଯେଝାପୁର
ସେ ଯିବାରୁ ଜ୍ୟୋତିଷ ଡକାଇ ନୃପବର ।
ବନ୍ଧୁଜନମାନଙ୍କୁ ସେ ଯେ ଭେଦିଲେ ଚିଟାଉ
ଦୁଇଜଣ ଚମ୍ପାବତୀ ନଗ୍ରକୁ ଗଲେ ସେହୁ ।
ଚାରିଦିନେ ଚମ୍ପାବତୀ ନଗ୍ରରେ ପ୍ରବେଶ
ଲୋମପାଦ ରାଜାଙ୍କୁ ଜଣାଏ ବିଶେଷ ।
ଶୁଣିଣ ଚମ୍ପାବତୀ ରାଜନ ତୋଷ ହେଲେ
ଅନ୍ତଃପୁରେ ଯାଇଣ ରାଜା ରାଣୀଙ୍କୁ କହିଲେ ।
ଗଙ୍ଗା ଯମୁନା ବୋଇଲେ ଶୁଣ ମହାରାଜା
ଏକୋଇଶା ଦିନ ବିଜେ କରିବାର ଶ୍ରଦ୍ଧା ।
ଆମ୍ଭର ପୁତ୍ର ଜନ୍ମ ଜାଣିଲେ ସେହୁ ପୁଣ
ଏକୋଇଶା ଦିନ ଯେ ନ ଆସିଲେ ଜାଣ ।
ଲୋମପାଦ ବୋଇଲେ ଯେ ଅବଶ୍ୟ ଆସିଥାନ୍ତେ
ଅନ୍ତଃପୁରେ ଉଦ୍‌ଯୋଗ ନହେବାରୁ ନଆସନ୍ତେ ।
ଆମ୍ଭେ ଗଲେ ଆମ୍ଭଙ୍କୁ ପଚାରିବେ ରାୟେ
ଏକୋଇଶାକୁ ଉତ୍ସବ କରାଇବେ ସିଏ ।
ରାଣୀହଂସ ବୋଇଲେ ବହନ ହୋଇ ଯାଅ
ପୁତ୍ରଙ୍କର ଏକୋଇଶାକୁ ଉତ୍ସବ କରାଅ ।

ବେନିରାଜ୍ୟେ ଉତ୍ସବ କରାଅ ପୁତ୍ରଙ୍କର
ଶୁଣିଣ ପରମ ତୋଷ ହେଲେ ନୃପବର ।
ପାତ୍ର ମନ୍ତ୍ରୀ ଡକାଇ ବୁଝାଇ କହିଲେ
ସଜ ହୋଇଣ ରାଜନ ବାହାର ହୋଇଲେ ।
ଅଯୋଧ୍ୟା ଦୂତଙ୍କୁ ଧନରତ୍ନ ଦେଲେ ସେହୁ
ବେନି ଗୋଟି ଅଶ୍ୱ ଯେ ସମର୍ପି ଦେଲେ ତହୁଁ
ବଜାଇ ବୀର ତୂର ଯେ ହୋଇଲେ ବାହାର
ତିନିଦିନେ ପ୍ରବେଶ ଅଯୋଧ୍ୟା ନାମେ ପୁର ।
ଦଶରଥ ରାଜା ଆଗେ ଚମ୍ପାବତୀ ନରସାଇଁ
ଭେଟ ହୋଇଲେ ସେ ଯେ ଆନନ୍ଦ ମନ ହୋଇ ।
ଦୁଃଖ ସୁଖ ସଙ୍କୋଳାରେ ଆନନ୍ଦ ହେଲେ-ପୁଣି
ପୁତ୍ରଙ୍କର କୁଶଳ ଦଶରଥ ପଚାରେ ଜାଣି ।
ସର୍ବ କୁଶଳ ବୋଲି ଲୋମପାଦ ରାଜା ପୁଚ୍ଛେ
ଋଷ୍ୟଶୃଙ୍ଗ ଯୋଗୁଁ ସକଳ ଶୁଭ ଆଛେ ।
କଉଶଲ୍ୟାଙ୍କର ଭାଇ କୈକେୟୀଙ୍କର ପିତା
ଅଯୋଧ୍ୟାରେ ପ୍ରବେଶ ପାଇଣ ବାରତା ।
ସୁମିତ୍ରାଙ୍କର ଭାଇ ଅଇଲେ ଶୁଣିଣ
ପୁତ୍ରଙ୍କର୍ ଜନ୍ମ ଶୁଣିଲେ ସାତଶ ପାଚଶରାଜନ ।
ଆନନ୍ଦ ହୋଇଲେ ରାଜା ଦେଖିଣ ସମସ୍ତ
ସକଳ ରାଜା ଦେଖିଲେ ପୁତ୍ରଙ୍କର ଜାତ ।
ଏଥୁ ଅନନ୍ତରେ ଗଲା ଦିନ ଚାରି
ବନ୍ଧୁଜନେ ସମସ୍ତେ ଅଇଲେ ଶଙ୍କୋଳି ।
ପାଞ୍ଚଦିନେ ମଉଳା ପଞ୍ଚୁଆତି କଲେ
ଯେ ବିଧିବିଧାନ ଯେ ସକଳ ସାରିଲେ ।
ଯୋଗୀଜନ ଯାହାଙ୍କୁ ଯେ ହୃଦରେ ଚିନ୍ତନ୍ତି
ଅନେକ ଯତନେ ତାଙ୍କୁ ଦେବେ ସୁମରନ୍ତି ।
ପୁତ୍ରଙ୍କର ମଉଳାଙ୍କୁ ବଧାଇମାନ ଦେଲେ
ଧନ ରତ୍ନ ଦେଇଣ ପୁରୁଷାର୍ଥ କରାଇଲେ ।
ରଜନୀ ପ୍ରଭାତରେ ହେଲା ଷଠୀଘର
ଷଠୀ ପୂଜା ସାରିଣ ମଣ୍ଡିଲେ ଘରଦ୍ୱାର ।
ପୁଷ୍ପ ମଣ୍ଡିଣ ଜାଲି ଯେ ବେଢ଼ାଇଲେ
ଚନ୍ଦନ ଚତୁଃସମ ମିଶାଇ ଘଷିଲେ ।
ସୁବର୍ଣ୍ଣ କଉଡ଼ିରେ ମଣ୍ଡିଲେ ଷଠୀଘର
ହୁଳହୁଳି ଶବଦରେ କଲେକ ଅପାର ।
ଷଠୀଘରେ ପଶିଣ ଯେ ପୂଜିଲେ ନାରୀ ମିଳି
ଗାୟତ୍ରୀ ସାବିତ୍ରୀ ଯେ ବ୍ରହ୍ମାଙ୍କୁ ଘେନି ମିଳି ।

ସମସ୍ତଙ୍କ ଉପରେ କର୍ତ୍ତା ବାସୁଦେବ
ଆମ୍ଭେ ତାଙ୍କ କପାଳରେ ଲେଖିବା ନୋହିବ ।
ଶୁଣିବେଦବରବୋଲେମୋତେସେ ଆଜ୍ଞାଦେଲେ
ପାପ ପୁଣ୍ୟ କପାଳେ ଆୟୁ ଲେଖିବୁ ବୋଇଲେ ।
ସେହୁ ଜାତ ହୋଇଛନ୍ତି ମାନବ ଶରୀରେ
ଆମ୍ଭର ଲେଖିବାର ଉଚିତ ସେଠାରେ ।
ଏହା ଶୁଣି ବେଦବର ବେଗେ ଚଳିଯାଇ
ଶ୍ରୀରାମଙ୍କ ଷଠୀଘରେ ମିଳିଲେକ ତହିଁ ।
କରଯୋଡ଼ି ଜଣାଏ ବାସୁଦେବ ଛାମୁରେ
ଆଜର ଉତ୍ସବ କଥା ଆପଣ କରିବାରେ ।
ବେଦବର ଭକତିରେ ବାସୁଦେବ କହି
ଦେବଲୋକ ନାଗଲୋକ ତୁମ୍ଭରେ ଯେ ହୋଇ ।
ଯୋଗକୁ ଅନୁସରି କରହେ ଲେଖନ
ଶୁଣିଣ ପରମ ତୋଷ ବେଦବର ମନ ।
ଏମନ୍ତ ସମୟରେ ସିଦ୍ଧାନ୍ତ ନାମେ ଯୋଗ
ବଳବନ୍ତେ ଯୋଗକୁ ଘେନିଣ ସଂଯୋଗ ।
ଅମୃତ ଯୋଗ ସଙ୍ଗରେ ହୋଇ ମେଳ ପୁଣ
ଦେଖିଲେ ବେଦବର ମନରେ ବିଚାରିଣ ।
ଲେଖନ କଲେ ଯେ କଲମ କରେ ଧରି
ପ୍ରଥମୁଁ ଅଠର ବର୍ଷ ଅମୃତ ଯୋଗ ଘେରି ।
ଦ୍ୱିତୀୟେ ଚଉଦ ବର୍ଷ ଉତ୍ପାତ ଯୋଗ ଅଛି
ଅନେକ ଦୁଃଖ ଏଥି ପାଇବେ ଶ୍ରୀବତ୍ସ ।
ତୃତୀୟ ଠାରୁ ଚତୁର୍ଥ ଏଗାର ସହସ୍ର ବର୍ଷ
ଦେବଲୋକ ନାଗଲୋକ ହୋଇବେ ସନ୍ତୋଷ
ଏମନ୍ତ ବୋଲି ବିଧାତା ଅନ୍ତର୍ଦ୍ଧାନେ ଗଲେ
ଆପଣେ ବାସୁଦେବ ଏମାନ ରହିଲେ ।
କପାଳେ ଲେଖା ସରନ୍ତେ ସରିଲା ଷଠୀଘର
ଷଠୀଘରେ ଉଦୟ କି ହେଲେ ନିରାକାର ।
ପାର୍ବତୀ ବୋଇଲେ ଦେବ ସପ୍ତଦିନ ବିଧି
ତାହା ମୋତେ ଫଳାଇ କହିବା ତପୋନିଧି ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ଗିରିଜା
ସପତ ଦିନ ବିଧି ଯାହା କଲେ ରାଜା ।
ସପତ ଦିନେ ସେ ଯେ କଲେକ ଉଠିଆରି
ଏନ୍ଦୁଡ଼ି ଉଠାଇଣ ଦେଲେ ସେ ଯେ ତୋଳି ।
ଅଗ୍ନିଙ୍କୁ ପୂଜିଲେ ସେ ଯେ ଦୁଧ ଗୁଡ଼ ଦେଇ
ନୂତନ ଶେଯରେ ଚାରି ପୁତ୍ରଙ୍କୁ ଶୁଆଇ ।

ପଞ୍ଚ ପତ୍ର ପାଣରେ ତିନିରାଣୀ ସ୍ନାନ କଲେ
କର୍ପୂର ଚନ୍ଦନ ଗନ୍ଧ ଦେହରେ ଲଗାଇଲେ ।
ପୁତ୍ରଙ୍କୁ ଚିରଞ୍ଜିବୀ ମୁକ୍ତିଦିଅ ବୋଲେ ।
ତିନିରାଣୀଙ୍କ ସଙ୍ଗରେ ସକଳ ରାଣୀହଂସ
ବୋଇଲେ କୁମରଙ୍କୁ ସଂସାରେ କର ବାସ ।
ସପ୍ତମ ଦିନ ଅନ୍ତେ ଅଷ୍ଟମ ଦିନ ହେଲା
ଶ୍ୱେତ ଦୁବ ଶଯ୍ୟାରେ ପୁତ୍ର ଶୁଆଇଲେ ଭଲା ।
ନବଦିନେ ତିନିରାଣୀ ହୋଇଲେ ମାର୍ଜନା
ଗଣ୍ଡୁଷ ଭୋଜନ କଲେ ରାଣୀମାନେ ସିନା ।
ରାଣୀମାନଙ୍କ ଦେହରୁ ଶରଦ ତେଜ ପୁଣି
ଉଚ୍ଛୁଳି ପଡ଼ିଲା କିବା ଆସିଣ ଧରଣୀ ।
ଏଗାର ଦିନରେ ପୁଣ ଶଉଚବନ୍ତ ହେଲେ
ନବର ଉଜ କରିଣ ନୂତନ ହାଣ୍ଡି କଲେ ।
ଦେବଆଳେ ପୂଜା କେ କଲେ ଦେବରାଜା
ବିପ୍ରଙ୍କୁ ଡକାଇଣ କଲେ ପାଦ ପୂଜା ।
ଦାନ ଧ୍ୟାନ କଲେ ଦଶରଥ ନୃପବର
ଅମୃତ ଭୋଜନ ଯେ କଲେକ ସକଳ ।
ମେଲାଣି ହୋଇଣ ଯେ ସର୍ବେ ବିପ୍ରେ ଗଲେ
ବାରଦିନରେ ବାର ଯାତ୍ରା ଭିଆଣ ପୁଣ କଲେ
ସ୍ନାହାନ ମାର୍ଜନା ଯେ ହେଲେ ତିନିରାଣୀ
ଚାରି ପୁତ୍ରଙ୍କୁ ସ୍ନାହାନ କରାଇଲେ ପୁଣି ।
ନୂତନ ଶଯ୍ୟାରେ ଯେ ପୁତ୍ରଙ୍କୁ ଶୁଆଇଲେ
ପୁରୁଣା ଶେଜମାନଙ୍କୁ ଧାଈମାନେ ନେଲେ ।
ଦିନକୁ ଦିନେ ପୁତ୍ରେ ଦିଶିଲେ ଆନୁଆନ
ଅଗାଧ ଜଳେ ଯେହ୍ନେ ବଢ଼ଇ ପଦ୍ମବନ ।
ଶୁକଳ ପକ୍ଷରେ ଯେହ୍ନେ ଶଶୀ ବଢେ ଆସି
ତେସନକ ପ୍ରାୟେ ବଢ଼ନ୍ତି ବାଳଶିଷି ।
ଏକୋଇଶ ଦିବସ ହୋଇବାର ଜାଣି
ରାଜାମାନଙ୍କୁ ବରଣ କଲେ ନୃପମଣି ।
ବନ୍ଧୁଜନମାନଙ୍କୁ ଯେ ଡକାଇ ବହନ
ବିପ୍ର ଋଷିମାନଙ୍କୁ କଲେ କି ବରଣ ।
ବୈଶାଖ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ଦିନ
ନଗ୍ରପୁର ମଣ୍ଡିଲେ ଯେ ଅଯୋଧ୍ୟା ରାଜନ ।
କୋଟିଏ ତୀର୍ଥ ସୁଜଳ ଅଣାଇଲେ ଭଲେ
ତୀର୍ଥ ଜଳରେ ପୁତ୍ରଙ୍କୁ ସ୍ନାନ କରାଇଲେ ।
ରତନର ଖଟ ଦୋଳି ଉପରେ ଶୁଆଇ
ନଗ୍ରରେ ନର ନାରୀଏ ଦେଖି ଆନନ୍ଦ ହୋଇ ।
ଗ୍ରହଶାନ୍ତି ହୋମକରି ଦକ୍ଷିଣା ଦାନ ଦେଲେ
ଅନ୍ନ ବସ୍ତ୍ର ତଇଳ ଘୃତ ସମର୍ପିଲେ ।
ସୁଲକ୍ଷଣୀ ନାରୀମାନେ ଅଇଲେ ବନ୍ଦାଇ
ଢୋଲ ଦମା ଟମକ ଯେ ମହୁରୀ ବଜାଇ ।
ଠାବେ ଠାବେ ନୃତ୍ୟ ଯେ କରନ୍ତି ଅପସରୀ
ନଗ୍ର ନର ନାରୀମାନେ ସାଧୁ ସାଧୁ କରି ।
ସମସ୍ତଙ୍କ ଦୁଆରେ ରମ୍ଭା ବୃକ୍ଷ ପୁଣ
ନାରୀକେଳ ଚୂତ ପତ୍ରମାନ ଯେ ଭିଆଣ ।
ଦ୍ୱାର ମାନଙ୍କରେ ବିଚିତ୍ର ଗତି କରି
ରାଜାଙ୍କର ନବର ଯେ ଚିତ୍ରପଟରେ ପୁରି ।
ମନ୍ତ୍ରୀଙ୍କର ଉଆସ ପାତ୍ରଙ୍କର ଘର
ଲୋକ ଲଗାଇଣ ମଣ୍ଡିଲେ ନୃପବର ।
ସମସ୍ତଙ୍କ ପୁର ଯେ ଉଜ୍ଜ୍ୱଳ ଦିଶେ ପୁଣ
ଯେସନେ ଚନ୍ଦ୍ର ଉଦୟେ ରଜନୀରେ ଜାଣ ।
ଋଷିଙ୍କର ଆଶ୍ରମ ବନ୍ଧୁଜନମାନଙ୍କର ନଗ୍ର
ଛାମୁଣ୍ଡିଆ ଭିଆଣ କଲେକ ସଂଯୋଗ ।
ଭିତର ପୁର ରାଜା ପୁଷ୍ପରେ ମଣ୍ଡେ ଜାଣ
ସୁବର୍ଣ୍ଣର ମଣ୍ଡପ ଭିଆଣ କଲେ ପୁଣ ।
ସାତଶ ପଚାଷ ମହାଦେଈ ଯା ରମଣୀ
ଜ୍ୟେଷ୍ଠ କୈକେୟୀ କୌଶଲ୍ୟା ସୁମିତ୍ରା ସଂଲେଣି ।
ସକଳ ରାଣୀହଂସ ହେଲେ ଅନ୍ତଃପୁରେ
ହୀରା ମାଣିକ୍ୟରେ ଚୁଡ଼ି ସମସ୍ତ ହସ୍ତରେ ।
ଦୁଇ କର୍ଣ୍ଣରେ ସୁନ୍ଦର ଚାରିବର୍ଣ୍ଣେ ଦେଶ
ଦୁଇଶତ ରାଣୀ ଯେ ଚନ୍ଦ୍ରର ସଦୃଶ ।
ଆଉରାଣୀମାନେ ଯେ ଗୌରବର୍ଣ୍ଣ ଜାଣ
ସମସ୍ତେ ଶାନ୍ତଶୀଳ ନୁହଁନ୍ତି ଦୁଷ୍ଟପୁଣ ।
ଚାରି ପୁତ୍ରଙ୍କଠାରେ ସ୍ନେହ ସଭିଙ୍କର
ତେଣୁକରି ଦଶରଥ ମନରେ କୁଶଳ ।
ତାଡ଼ ବିଦ ବାହୁଟି ଗଳାରେ ଚାପସରୀ
ପଦକ ଚନ୍ଦ୍ରହାର ବକ୍ଷସ୍ଥଳେ ଲୁଳି ।
ନାସାରେ ସୁନ୍ଦୁସଫଳ ଲୋଥ ରତ୍ନଗୁଣା
କର୍ଣ୍ଣରେ କର୍ଣ୍ଣଫୁଲ ଝଲକି ଦିଶେ ସିନା ।
ଚାପ ମଲ୍ଲୁକଢ଼ି ଚନ୍ଦ୍ର ଫାସିଆ କର୍ଣ୍ଣେ ଶୋହେ
ଝରା ଚଉଁରି ମୁଣ୍ଡି ଝଲକି ତୋରା ହୁଏ ।

ମସ୍ତକରେ ଅଳକା ମଥାରେ ମଥାମଣି
ଗଉରୀ ପରାୟେ ମୁଖ ଦିଶେ ପୁଣି ।
ପାବରେ ବଙ୍କା ପାହୁଡ଼ ନୂପୁର ରୁଣ ଝୁଣ
ଅଙ୍ଗୁଷ୍ଠିକି ଝୁଣ୍ଟିଆ ଦିଶେ ଶୋଭାବନ ।
ହସ୍ତରେ ଅଙ୍ଗୁଷ୍ଠିରେ ରତ୍ନମୁଦି ସାଜେ
ମୁଦି ଉପରେ ହୀରା ମାନ ଯେ ବିରାଜେ ।
କଳାରଙ୍ଗ ବସନ୍ତ ନୀଳ ଅମଳାଣ
ପହିରଣ କଲେ ସମସ୍ତ ରାଣୀ ପୁଣ ।
ଉପରେ ଖଣ୍ଟୁଆ ପହିରଣ କରି ଜାଣ
ମସ୍ତକରେ ପୁଷ୍ପ ବେନି କରନ୍ତି ଶୋଭାବନ ।
ସକଳ ରାଣୀଙ୍କର ଧାଈ ପରୀବାରୀ
ଚନ୍ଦ୍ରଙ୍କର ସଦୃଶ୍ୟ ଯେ ବେଶ ସବୁଙ୍କରି ।
ଚନ୍ଦନ କର୍ପୁର ବାସ ଯେ ଗନ୍ଧ ଘେନି
ବେଶହୋନ୍ତେ ରାଣୀଗଣେ ଶୋଭାଦିଶେ ପୁଣି ।
ଏଥୁଅନନ୍ତରେ ରାଜନ ବେଶ ହେଲେ
ରତ୍ନ ଖଡୁ ବୀରବଲ୍ଲୁ ମୁକୁଟା ଲାଇଲେ ।
ଜରି ପାରା ବଲ୍ଲୁ ଚିତା ଯେ ମସ୍ତକରେ
ପାଞ୍ଚବର୍ଣ୍ଣେ ରତ୍ନମାଳା ଲୁଳଇ ବକ୍ଷସ୍ଥଳେ ।
ନଟ ନୃତ୍ୟକାରୀଙ୍କର ବେଶ ଦିଶେ ତୋରା
ନଗ୍ର ନରନାରୀଏ ସର୍ବେ ଉଜ୍ଜ୍ୱଳ ଦିଶେପରା ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଭଗବତୀ
ମନ ପବନ ଦଣ୍ଡ ଚଢ଼ି ଅଇଲେ ସର୍ବଯତି ।
ମୁନି ମାନେ ସର୍ବେ ପ୍ରବେଶ ହେଲେ ଆସି
ଋଷିଙ୍କି ରଖାଇଲେ ବଶିଷ୍ଠ ତପନିଷ୍ଠି ।
ଗନ୍ଧ ଚନ୍ଦନ ଯେ କର୍ପୁର ପୁଷ୍ପ ଦେଲେ
ଅଗୁରୁ ଚନ୍ଦନ କାଷ୍ଠ ଦେଇଣ ସମର୍ପିଲେ ।
କନ୍ଦମୂଳ ପକ୍ୱଫଳ ନବାତ କନ୍ଦ ଛେନା
ବୃକ୍ଷର ମୂଳେ ନିବାସ କରାଇ ତାକୁ ସିନା ।
ବୃକ୍ଷତଳେ ବାସ କରାଇ ତାକୁ ପୁଣ
ମୁନିମାନେ ସନ୍ତୋଷ ରହିଲେ ଯେଝାସ୍ଥାନ ।
ଋଷି ମୁନି ତପୀ ଛୟାନବେ କୋଟି
ନନ୍ଦିଗ୍ରାମେ ମଢ଼ିଆ କରି ରହିଲେଟି ।
ବିପ୍ର ଦ୍ୱିଜ ବ୍ରାହ୍ମଣ ଲକ୍ଷେକ ଅଇଲେ
ଚିତ୍ରପଟ ଛାମୁଣ୍ଡିଆ ଭିତରେ ରହିଲେ ।
ଗନ୍ଧ ଚନ୍ଦନ ପୁଷ୍ପ ତାଙ୍କୁ ଦେଲେ ମନ୍ତ୍ରୀବର
ବରୁଣ ପୂଜା ପାଇ ରହିଲେ ବିପ୍ରବର ।

ଲୋମପାଦ ରାଜାଙ୍କର ଅଇଲେ ବନ୍ଧୁଜନ
ଏକେ ଏକେ ବେଶ ଯେ ଅଟନ୍ତି ଆନୁଆନ ।
କେହୁ କଳା ବସନ୍ତ ଯେ ରଙ୍ଗ ଅଟେ ନୀଳ
ଏ ରୂପେ ଚାରି ବର୍ଣ୍ଣରେ ବିଜୟେ ମହୀପାଳ ।
କଳାଧଳା ବସନ୍ତ ରଙ୍ଗରେ ଚାରିବର୍ଣ୍ଣ
ଛତ୍ରମାନ ଟେକାଇ ବିଜୟେ ରାଜନ ।
କଳାଧଳା ରଙ୍ଗ ନୀଳ ବର୍ଣ୍ଣରେ ଆଢ଼େଣି
ରାଜନମାନଙ୍କୁ ଶୋଭା ଦିଶେ ସେହୁ ପୁଣି ।
ବନ୍ଧୁ ରାଜାମାନେ ଯେ ଅଯୋଧ୍ୟାପୁରେ ମିଳି
ଯାନରୁ ଉତୁରି ରାଜାମାନେ ଯେ ଗଲେ ଚଳି ।
ଦଶରଥ ଲୋମପାଦ ବେଶେ ହୋଇ ପୁଣ
ଜଗତୀର ଉପରେ ବିଜୟେ କଲେଜାଣ ।
ଚାରି ବର୍ଣ୍ଣରେ ଛତି ଆଢେଣୀ ଟେକାଇ
ସିଂହାସନ ଉପରେ ବିଜୟେ କଲେ ଯାଇ ।
ସ୍ୱର୍ଗର ଇନ୍ଦ୍ର ପ୍ରାୟେ ଦିଶନ୍ତି ସେହୁ ଦ୍ୱରା
ହୀରା, ନୀଳା, ମୋତି ଯେ ଦିଶଇ ବର୍ଣ୍ଣଫେରା ।
ନାରାୟଣ ଦେବତାଙ୍କ ଲାଗିଛି ଯେଣୁ ଲୀଳା
ତେଣୁ ତେଜୋବନ୍ତ ଅଜରାଜାଙ୍କର ବଳା ।
ବାସୁଦେବ ଜାତ ଯେ ହୋଇଲେକ ଯେଣୁ
ରାଜା କୁଳ ଉଜ୍ଜ୍ୱଳ ଦିଶଇ ପୁର ଦେଣୁ ।
ମାନ୍ୟଧର୍ମ କରିଣ ବନ୍ଧୁବର୍ଗ ଗଲେ
ରତ୍ନ ବେଦୀ ଉପରେ ଯାଇଣ ରହିଲେ ।
ଦଶରଥଙ୍କର ବନ୍ଧୁ ଅଇଲେ ଉତ୍ସବରେ
ହସ୍ତୀ ରଖି ଅଛନ୍ତି ତାହାଙ୍କ ସଙ୍ଗତରେ ।
କଳାଧଳା ବସନ୍ତ ରଙ୍ଗରେ ଛତି ଟେକି
ଆଲଟ ଚାମରକୁ ଚାରି ବର୍ଣ୍ଣରେ ଟେକି ।
ଢୋଲ ଦମାଲୁ ଯେ ବାଜଇ ବୀର ବାଜା
ତୁରୀ କାହାଳି ଚାଙ୍ଗୁ ବାଜଇ ନାନା ବାଜା ।
ଆଗରେ ନୃତ୍ୟକରେ ନଟକାରୀ ଫେରି
ଭାଟ କୟେବାର ଆଗରେ ଧ୍ୱନି କରି ।
ଚିତ୍ରପଟ ପୁଷ୍ପ ଆଗରେ ଧାଡ଼ି ଧାଡ଼ି
ହାବେଳି ଚମ୍ପା ଚେଙ୍ଗ ମଧରେ ଗଣମାରି ।
ପାଣି ନଉତିମାନଙ୍କ ଉପରେ ମାଛରଙ୍ଗାବଣ
ପଛରେ ହସ୍ତୀ ଅଶ୍ୱ ଆଗରେ ନିଶାଣ ।
ଗାଡେଡ଼ି ଚମ୍ପା ବାଣ ପଛରେ ବାନ୍ଧି ମାରେ ।
ଚନ୍ଦ୍ରା ଚକୋର ହାବେଳି ମାରନ୍ତି ଆଗରେ ।

ଜୂଇ ଜାଇ ମଲ୍ଲିବାଣ ଫୁଟନ୍ତି ମଧ୍ୟରେ
କେହୁ ଶୂନ୍ୟ ଚକ୍ର ଶୂନ୍ୟରେ ଚମ୍ପା ମାରେ ।
ମଧ୍ୟରେ ରାଜାମାନେ ବିଜୟ କଲେ ପୁଣ
ମଣିମା ଡାକ ପଡ଼ଇ ତାହାଙ୍କ ଆଗେଣ ।
ପାତ୍ର ମନ୍ତ୍ରୀ ସାମନ୍ତ ପଦାତି ବଳମାନ
ଅଯୋଧ୍ୟା ନଗ୍ରେ ପ୍ରବେଶ ହୋଇଲେ ସମ୍ଭର୍ବେଣ ।
ଲାଗିଲା ଚହଳ ଯେ ଅଯୋଧ୍ୟା ନଗ୍ରର
ଆନନ୍ଦ ମନ ହେଲେ ଅଯୋଧ୍ୟା ପୁର ନର ।
ଗହଳରେ ଲୋକେ ଯେ ହୋଇଲେକ ବଣା
ବାଦ୍ୟର ନାଦ ଘୋଷ ଶୁଭଇ ଅକଳଣା ।
ପିଣ୍ଡା ପ୍ରାଙ୍ଗଣରେ ଉଠି କେବଣ ନାରୀମାନେ
କେବଳ ଲୋକେ ଦେଖନ୍ତି ଉଚ୍ଚସ୍ଥାନେ ତେଣେ ।
କେହୁ ବୃକ୍ଷ ଉପରେ ଉଠି ଦେଖନ୍ତି ନିରେଖି
ପାତ୍ର ମନ୍ତ୍ରୀମାନେ ଯେ ଆସନ୍ତି ଯାନ ଚଢ଼ି ।
ବାଟରେ ଭେଟ ହୋଇ ସନମାନ କରି ।
ଦଶରଥ ଲୋମପାଦ ଅମରି ବିଜେ କରି
ଶ୍ୱେତହସ୍ତୀ ଉପରେ କଳା ବର୍ଣ୍ଣର ଅମରୀ ।
ସକଳ ନୃତ୍ୟ ରଙ୍ଗ ସନାତନ ଦେଖି
ଅମରୀ ପରେ ଚାହିଁଣ ରହିଲେ ନିରେଖି ।
ହସ୍ତୀପରୁ ଓହ୍ଲାଇଣ ରାଜନ ବିଜେ କଲେ
ସକଳ ବନ୍ଧୁଙ୍କୁ ରାଜା ସଙ୍ଗରେ ଘେନିଗଲେ ।
ମାନ୍ୟ ଧର୍ମ କରିଣ ବେଗେ ଚଳିଗଲେ
ସୁମନ୍ତ୍ର ସ୍ଥାନ ଦେଲେ ସମସ୍ତେ ରହିଲେ ।
ସମସ୍ତ ରାଜାଙ୍କୁ ମନ୍ତ୍ରୀ ଚରଚା ବିଧି କଲେ
ଭୋଜନ ସାରି ଆସନ ପରେ ବିଜେ ହେଲେ ।
ନାଟ ନୃତ୍ୟ ପୁଣି ହୋଇଲା ସର୍ବ ସ୍ଥିର
ବନ୍ଧୁଜନମାନେ ତିନିଶ ପଞ୍ଚାଅଶି ଠୁଳ ।
ନେପାଳ ଭୋପାଳ ରାଜା ବିଜେ କରି ଆୟେ
କାଶୀ ବାରଣାସୀ ରାଜାମାନେ ପୁଣ ଆୟେ ।
ବଙ୍ଗ କଳିଙ୍ଗ ଯେ ଉତ୍କଳ ଦେଶ ରାଜା
ଉତ୍କଳ ଦେଶୁ ଅଇଲେ ଛଡସହସ୍ର ରାଜା ।
ଉତ୍ତର ଦିଗରୁ ଚାଳିଶ ସହସ୍ର ଜାଣି
ପଶ୍ଚିମ ଦିଗରୁ ଅଇଲେ ବତିଶ ସହସ୍ର ପୁଣି ।
ଦକ୍ଷିଣୁଁ ଶତ ସହସ୍ର ରାଜା ଠୁଳ ହେଲେ
ମାନ୍ୟ ଧର୍ମ କରିଣ ସମସ୍ତେ ରହିଲେ ।

ସମସ୍ତଙ୍କୁ ସୁମନ୍ତ ଚରଚା କଲେ ପୁଣ
ଭୋଜନ ଶୟନ ଆସନ ନୃତ୍ୟ ଜାଣ ।
ପାର୍ବତୀ ବୋଇଲେ ଶୁଣ ଆହେ ପ୍ରାଣନାଥ
ଏତେ ରାଜା କେତେଦିନେ ବରିଲେ ଦଶରଥ ।
ଦଶ ବରଷ ଠୁଳ ନହେବ ଖୋଜିଲେ
ଏକୋଇଶାଦିନ କେମନ୍ତେ ବାରତା ପାଇଲେ ।
ଏହା ମୋତେ ବୁଝାଇ କହନ୍ତେ ଶୂଳପାଣି
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ପୁଣି ।
ଉତ୍କଳ ଦେଶରେ ଶ୍ରୀବନ୍ତ ବାଜପୁରୁ
ସେ ଦେଶର ରାଜା ଯେ ଅଟଇ ହନ୍ତକାରୁ ।
ନିମଦେବ ବୋଲି ସେ ରାଜାର ନାମ
ଦୁହିତା ଗୋଟିଏ ତାର କୋଳରେ ଜନମ ।
ସେ ଜେମାର ନାମ ଯେ ଅଟଇ ନୀଳମଣି
ବିଭା କରିବାକୁ ବିଚାରେ ମଉଡ଼ମଣି ।
ସ୍ୱୟମ୍ବର ଇଚ୍ଛାକରି ଦୂତ ବରଗିଲେ
ବାରବର୍ଷ ରାଜାଙ୍କୁ ନିମନ୍ତ୍ରି ଅଣାଇଲେ ।
ସଭା ମଣ୍ଡାଇ ବସିଲେ ସକଳ ରାଜନ
ଦୁହିତା ଇଚ୍ଛାରେ ବରିଲା ବର ଜାଣ ।
ବିଭାଘର ଦିନ ଅଇଲା ଅଯୋଧ୍ୟା ମନ୍ତ୍ରୀ ପୁଣି
ଆସ୍ଥାନରେ ପ୍ରବେଶ ହୋଇଲେକ ଜାଣି ।
ସକଳ ରାଜାମାନଙ୍କୁ ସେ ନିମନ୍ତ୍ରାଇ
ଚନ୍ଦନ ଗୁଆ ପାନ ମନ୍ତ୍ରୀ ତାଙ୍କୁ ଦେଇ ।
ବୋଇଲେ ମନ୍ତ୍ରୀବର ସକଳ ରାଜା ଶୁଣ
ଦଶରଥ ରାଜାଙ୍କର ଜନ୍ମ ପତ୍ର ଜାଣ ।
ଅଯୋଧ୍ୟା ନବରକୁ ସମସ୍ତେ ବିଜେକର
ପୁତ୍ରଙ୍କର ଉତ୍ସବ ଯେ କରିବେ ନୃପବର ।
ଶୁଣିଣ ସକଳ ରାଜା ସନମତ କଲେ
ଯିବୁ ଅଯୋଧ୍ୟା ପୁରକୁ ବୋଲିଣ ବୋଇଲେ ।
ମନ୍ତ୍ରୀବର ସଙ୍ଗରେ ସକଳ ରାଜା ଆସି
ଅଯୋଧ୍ୟାପୁରେ ପ୍ରବେଶ ହେଲେ ସେହୁ ଆସି ।
ବହୁ ଦିନରୁ ଶୁଣିଥିଲେ କର୍ଣ୍ଣପୁଟେ
ବାସୁଦେବ ଜନ୍ମ ହେବେ ଅଯୋଧ୍ୟାର ରାଷ୍ଟ୍ରେ ।
ସୂର୍ଯ୍ୟ ବଂଶରେ ଜନ୍ମ ହୋଇବେ ଶ୍ରୀହରି
ଅଯୋଧ୍ୟା ନଗ୍ରେ ଦଶରଥ କୋଳରେ ମୁରାରୀ
ପୂର୍ବର ଶବଦରେ ପ୍ରବେଶ ଯାଇ ହେଲେ
ପଞ୍ଚସ୍ତରୀ ସହସ୍ର ରାଜା ଯାଇଣ ଠୁଳ ହେଲେ ।

ସମସ୍ତଙ୍କ ପଛରେ ଅଇଲେ ବିଭାଣ୍ଡକ
ମାନ୍ୟଧର୍ମ କଲେ ତାଙ୍କୁ ସମସ୍ତ ରାଜା ଯାକ ।
ଏଥୁ ଅନନ୍ତରେ ଶୁଣ ଗୋ ହେମବନ୍ତୀ
ସୁଧର୍ମା ସଭାରେ ଯାଇ ବିଜୟ ଦେବ ନିକି ।
ନାରଦ ପ୍ରବେଶ ଯେ ହୋଇଲେ ତତକ୍ଷଣ
ବୋଇଲେ ସର୍ବ ଦେବ କି ବିଚାର ମନ ।
ତୁମ୍ଭମାନଙ୍କ କଷ୍ଟ ଦେଖିଣ ବାସୁଦେବ
ଦଶରଥ ଘରେ ଅଯୋଧାରେ ହେଲେ ଉଭବ ।
ଦେବ ଋଷି ତପୀ ଯେ ବ୍ରହ୍ମ ଋଷି ଗଲେ
ଲକ୍ଷେକ ନୃପତି ଏବେ ଠୁଳ ପୁଣ ଦେଲେ ।
ଆମ୍ଭେ ଅଇଲୁ ତୁମ୍ଭକୁ ଖବର କରିବାକୁ
ବିଜେକର ପ୍ରଭୁ ଅଯୋଧା ପୁରକୁ ।
ଶୁଣିଣ ସୁର ରାଜା ପିତାମହ ବିଜେକଲେ
ଆଜ ଦିନ ନାମ ଦିଆ ହୋଇବ ବୋଇଲେ ।
ଯେ ଯାହା ବାହନରେ ଚଳିଲେ ଦେବେ ପୁଣ
ସୁଧର୍ମା ସଭା ନେଲେ ମଣ୍ଡୁକି ଅହି ଜାଣ ।
ଅଯୋଧାପୁର ସଳଖେ ଅହି ଧରି ଅଛି ପୁଣ
ବିଜେକଲେ ସଭାରେ ସକଳ ଦେବଗଣ ।
ଅଯୋଧାକୁ ଦିଶିଲେ ମେଘ ଖଣ୍ଡ ପ୍ରାୟେ
ସକଳ ରାଜ୍ୟ ନରନାରୀ ଦେଖନ୍ତି ସଭିଏଁ ।
ମୁନି ଋଷି ତପୀ ଦେଖିଲେ ବାହାରେଣ
ଦ୍ୱିଜ ବିପ୍ର ବ୍ରାହ୍ମଣ ଦେଖନ୍ତି ସର୍ବେ ପୁଣ ।
କେ ବୋଲାଇ ମେଘଖଣ୍ଡ ରହିଛି ନିଶ୍ଚଳେଣ
ଋଷିମାନେ ବୋଇଲେ ଦେବତା ପୂଜା ପୁଣ ।
ରାଜାମାନେ ବୋଇଲେ ଶୁଣିଅଛୁ ପୁଣି
ବାସୁଦେବ ଜନମ ହୋଇବେ ଦେହ ଘେନି ।
ଦେଖିବା ନିମନ୍ତେ ଦଶରଥଙ୍କର ସୁତ
ସମସ୍ତଙ୍କ ମନ ହେଉଛି ଉତ୍ସୁକତ ।
ଜାଣିଣ ଆମ୍ଭେ ବିଜେ ଦେବଙ୍କର ମେଳେ
ସବୁଦେବ କହିବାରୁ ପବନ ଦେବ ଗଲେ ।
ସୁଗନ୍ଧ ଘେନିଣ ଯେ ପବନ ବହେ ଧୀରେ
ଜଳ ସ୍ଥଳ ଅନଳ ସକଳ ବାସ କରେ ।
ପିତାମହ ବୋଇଲେ ନାରଦ ତୁମ୍ଭେ ଶୁଣ
ଅଯୋଧା ନଗରକୁ ବେଗେ ଯାଅ ପୁଣ ।
ଆମ୍ଭର ଅକ୍ଷତ ଦେବ ସେ ଚାରି ପୁତ୍ରଙ୍କୁ
ବିଧି ବିଧାନ ସରିଲେ ଆସିବ ଏଠାବକୁ ।

ଶୁଣିଣ ନାରଦ ଯେ ବେଗେ ଚଳିଗଲେ
ଅଯୋଧା ନବରେ ଯାଇ ପ୍ରବେଶ ହୋଇଲେ
ନାରଦ ଆସିବାର ସମସ୍ତେ ଜାଣିଲେ
ମାନ୍ୟଧର୍ମ ଆସିଣ ସମସ୍ତେ ପୁଣ କଲେ ।
ଏଥୁ ଅନନ୍ତରେ ଶୁଣ ଗୋ ହେମବନ୍ତୀ
ଗହଳ ବାଦ୍ୟ ଶବଦେ କମ୍ପଇ ବସୁମତୀ ।
ବଶିଷ୍ଠ ବ୍ରହ୍ମଋଷି ଆଶ୍ଚର୍ଯ୍ୟ ହୋଇଲେ
ନାରଦ ବିଭାଣ୍ଡକ ତାରେଶ୍ୱର ତୁଳେ ।
ଗଉତମ ଦୁର୍ବାସା ଅଷ୍ଟବକ୍ର ସନାତନ
ଏତେ ଋଷି ସେଠାରେ ହେଲେ ବ୍ରହ୍ମା ବରଣ
ଅଗ୍ନିଙ୍କ ମୁଖେ ଆହୁତି ବଶିଷ୍ଠ ନେଇ ଦେଲେ
ସମ୍ପୂର୍ଣ୍ଣ ଆହୁତି ଦିଅନ୍ତି ବେଦ ଅଧାନରେ ।
ସାରିଣ ବେଦବିଧି ଆଶୀର୍ବାଦ କଲେ
ନାରଦ ମହାଋଷି ତତକ୍ଷଣେ ଉଠିଲେ ।
ଦେବଙ୍କ ଅକ୍ଷତ ଦେଲେ ଚାରି ପୁତ୍ରଙ୍କୁ
ସର୍ବ ଋଷି ବ୍ରାହ୍ମଣ ଶିଷ୍ୟ ଦେଲେ ବାଳକଙ୍କୁ ।
ଭୋଜନ ସାରିଣ ଋଷି ମେଲାଣି ହୋଇ ଚଳି
ଧନ ରତ୍ନ ବସନ ଦେଲେ ଦଣ୍ଡଧାରୀ ।
ମନ ପବନ ଦଣ୍ଡରେ ଚଢିଣ ଋଷି ଚଳି
ଯେ ଯାହା ଆଶ୍ରମରେ ମିଳିଲେ ଯାଇକରି ।
ନାରଦ ପ୍ରବେଶ ହେଲେ ସୁଧର୍ମା ସଭାରେ
ସୁଧର୍ମା ସଭା ଘେନିଣ ସଭାରେ ମିଳିଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ରାଜାଗଣେ ବୋଇଲେ ପୁତ୍ରଙ୍କୁ ଦେଖିବା ତୁମ୍ଭରି ।
ଶୁଣିଣ ଦଶରଥ ବୋଇଲେକ ପୁଣି
କଥାଏ କହୁଛି ତୁମ୍ଭେ ଶୁଣ ନୃପମଣି ।
ଏକ ଏକ ରାଜା ଯାଇ ଦେଖ ହେ ତୁମ୍ଭେ ପୁଣ
ରଥୀ ସେନାପତି ମନା ଘେନିଣ ସଙ୍ଗେଣ ।
ଏକୋଇଶ ଦିବସ ଆଜକୁ ପୁତ୍ରଙ୍କର
ଗହଳ ନକର ପାତାଳେ ଦେଖିବ ନୃପବର ।
ଶୁଣିକରି ରାଜାମାନେ ସନମତ କଲେ
ଚାରି ଦ୍ୱାରେ ଚାରି ଚାରି ରଖହେ ବୋଇଲେ ।
ଶୁଣିକରି ଦଶରଥ ପ୍ରହରି ଜଗାଇଣ
ଭିତର ପୁରେ ପ୍ରବେଶ ହୋଇଲେକ ଜାଣ ।
ଧାଈ ମାନଙ୍କୁ ବୋଇଲେ କନକ ମଣ୍ଡପରେ
ଚାରି ପୁତ୍ରଙ୍କୁ ଶୁଆଅ ଦେଖନ୍ତୁ ନୃପବରେ ।

ଶୁଣି ଧାଈମାନେ ଚାରି ପୁତ୍ରଙ୍କୁ ଘେନି ଚଳି
କନକ ମଣ୍ଡପେ ଶୁଆଇଲେ ନେଇକରି ।
ରାଜାମାନେ ଆସିଣ ଦେଖିଲେ ଜଣେ ଜଣ
ଚତୁର୍ଦ୍ଧା ମୂର୍ତ୍ତି ଦେଖି ତୋଷକଲେ ମନ ।
ରାଜାମାନେ ବଧାଇ ଦେଲେକ ଦେଖି ପୁତ୍ର
ରତ୍ନ ଖଡୁ ବୀରବଲ୍ଲୀ ଚନ୍ଦ୍ରହାର ପଦକ ।
ସକଳ ରାଜାମାନେ ଆଶୀଷ ଦେଖି ଗଲେ
ରାଜାକୁଳମାନଙ୍କୁ ଏ କାରେଣୀ ହୋଇଲେ ।
ଏତେକହି ରାଜାମାନେ ହୋଇଲେ ମେଲାଣି
ଦଶରଥ ଲୋମପାଦ ମାନ୍ୟକଲେ ପୁଣି ।
ବୋଇଲେ ମୋଠାରେ ସର୍ବେ ସନ୍ତୁଷ୍ଟ ଯେ ହୁଅ
ସୁକଲ୍ୟାଣ କରିଣ ସମସ୍ତେ ସୁଖେ ଯାଅ ।
ଶୁଣିଣ ରାଜାମାନେ ବୋଇଲେ ବଚନ
ନିଶ୍ଚିନ୍ତ ହେଲୁ ଏବେ ବାସୁଦେବଙ୍କୁ ପାଇଣ ।
ଏତେ କହି ରାଜାମାନେ ବେଗେ ଚଳିଗଲେ
ରାଜାମାନଙ୍କୁ ଅନେକ ଧନ ଦଶରଥ ଦେଲେ ।
ଚଳିଲେ ରାଜାମାନେ ଯେ ଯାହାର ସ୍ଥାନ
ହସ୍ତୀ, ରଥି ପଦାତି ସଙ୍ଗରେ ଘେନିଣ
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ବଶିଷ୍ଠ ମହାଋଷି ରାଜାଙ୍କୁ ବୋଧି ସେଠି ।
ଲକ୍ଷେକ ବାଜଣା ଯେ ଲକ୍ଷେକ ମହୁରୀ
ସମସ୍ତ କାମିନି ହୁଳହୁଳି ଧ୍ୱନି କରି ।
ଦଧି ମାଛ ପୂର୍ଣ୍ଣ କୁମ୍ଭ ଦ୍ୱାରେ ପୁଣ ଅଛି
ମଙ୍ଗଳାଷ୍ଟକ ଯେ କରନ୍ତି ଦେଖିଣ ଚଣ୍ଡବସ୍ତୀ ।
ମନ୍ତ୍ରୀ ଅମନାତ୍ୟଙ୍କୁ ଘେନିଣ ଦଶରଥ
ସଭା କରିଣ ବସିଲେ ଯାଇଣ ତୁରିତ ।
ମନରେ ଆନନ୍ଦ ହୋଇଣ ଦଶରଥ ଲୋମପାଦ
ବ୍ରାହ୍ମଣେ ମେଳହୋଇ ଦେଲେକ ଆଶୀର୍ବାଦ ।
ବଶିଷ୍ଠ ମହାମୁନି ପୁତ୍ରଙ୍କର କର୍ଣ୍ଣେ
ସାରସ୍ୱତ ମନ୍ତ୍ର ଯେ କହିଲେ ତତ୍କ୍ଷଣେ ।
ବଶିଷ୍ଠ ପଚାରିଲେ ରାଜନ ଶୁଣ ଏବେ
କିସ କିସ ନାମ ଦେବା ବିଚାରକର ଏବେ ।
ଦଶରଥ ବୋଇଲେ ଭୂତ ଭବିଷ୍ୟ କଥା
ସକଳ ତୁମ୍ଭେ ଜାଣ ପଣ୍ଡିତ ମହାଜ୍ଞାତା ।
ବ୍ରହ୍ମମୁନି ବୋଇଲେ ତୁମ୍ଭର ଜ୍ୟେଷ୍ଠ ପୁତ୍ର
ଦେଖିଣ ରୋମାବଳୀ ପୁଲକୁଅଛି ଗାତ୍ର ।

ଦେଖ ଆବର ମଧୁର ଶ୍ୟାମଳ ମୂର୍ତ୍ତି
ଏହାର ନାମ ଗୋଟି ଶ୍ରୀରାମ ହୋଇଲାଟି
ଏହାଙ୍କର କନିଷ୍ଠ ଭାଇ ଅଟନ୍ତି ବଳବନ୍ତ
ଏହାଙ୍କର ନାମଗୋଟି ଏବେ ହୋଇଲା ଭ୍ରତ ।
ଏ ବେନି ଭାଇ ଅଟନ୍ତି ଶ୍ୟାମଳ ଶାନ୍ତମୂର୍ତ୍ତି
ବାସୁଦେବଙ୍କର ଅଂଶ ଏହି ଯେ ଅଟନ୍ତି ।
ଏହାଙ୍କର କନିଷ୍ଠ ସୁମିତ୍ରାଙ୍କର ବଳା
ରୂପଗୁଣେ ସୁନ୍ଦର ଅଟନ୍ତି ଶୃଙ୍ଖଳା ।
ସୁନ୍ଦର ପଣେ ଗୋଟିଏ ମଦନ ଦିଶେ ଏହୁ
ଏହାଙ୍କର କନିଷ୍ଠ ଯେବଣ କୁମର
ଅନେକ ଶତ୍ରୁଙ୍କୁ ଦର୍ପ କରିବେ ଏହୁ ଦୂର ।
ଶତ୍ରୁଘନ ନାମ ଏଣୁ ହୋଇଲା ତାଙ୍କର
ଦେବ ନରେ ଅସୁରେ ବାନରେ ପୂଜିବେ ପୟର ।
ଏ ବେନିଭାଇ ଅଟନ୍ତି ଅନନ୍ତ ନାରାୟଣଙ୍କ ଅଂଶ
ଶୁକ୍ଳ ସୁବର୍ଣ୍ଣ ମୂର୍ତ୍ତି ଅଟନ୍ତି ଈଶ୍ୱର ସଦୃଶ ।
ପୁତ୍ରଙ୍କୁ ଏହିନାମ ବଶିଷ୍ଠ ମୁନି ଦେଲେ
ଶୁଣିକରି ସର୍ବଜନେ ହରଷମନ ହେଲେ ।
ହସ୍ତରେ ଚନ୍ଦ୍ର ଖଡୁ ଚନ୍ଦ୍ରହାର କଣ୍ଠେ
ପାଦରେ ପାହୁଡ କଟୀରେ ରତ୍ନ ସୂତା ଯତ୍ନେ ।
ବନ୍ଧୁଜନମାନେ ଯେ ମେଲାଣି ହୋଇଗଲେ
ରତ୍ନ ଅଳଙ୍କାରମାନ ବହୁତ ରାଜା ଦେଲେ ।
ମାନ୍ୟଧର୍ମ ଗଉରବ ସକଳ ସାରି ବେଗେ
କହିକରି ବନ୍ଧୁମାନେ ଚଳିଗଲେ ଯେଝାମାର୍ଗେ ।
ବନ୍ଧୁମାନେ ଯିବାରୁ ବିଚାରେ ଦଶରଥ
ବ୍ରାହ୍ମଣଙ୍କୁ ମେଲାଣି ଯେ କଲେକ ସନ୍ତୋଷ ।
ଧନରତ୍ନ ଦେଇଣ ବିପ୍ରଙ୍କୁ ତୋଷ କଲେ
ହରଷରେ ବ୍ରାହ୍ମଣେ ଚଣ୍ଡି ଯେ ପୂଜିଲେ ।
ସମସ୍ତେ ଯିବାରୁ ଚଳିଲେ ସୁଲକ୍ଷଣୀ ନାରୀ
ଶାଢ୍ୀ ଧନ ଘେନିଣ ଯେ ଯାହାପୁରେ ମିଳି ।
ଦେଖିଣ ଧାଈମାନେ ପୁତ୍ର ଘେନି ଚଳି
ଦୋଳିରେ ଶୁଆଇ ପୁଣ ସକଳ ବିଧିସାରି ।
ଶ୍ରୀରାମ ଲକ୍ଷ୍ମଣ ଯେ ଭରତ ଶତ୍ରୁଘନ
ଦେଖିଣ ଦଶରଥ ନିର୍ମଳ ଆଖିପୁଣ ।
ଦୁଃଖି ଦରିଦ୍ରଙ୍କୁ ଡକାଇ ରାଜା ପୁଣ
ଅମୃତରେ ଭୋଜନ ଦେଲେ ସର୍ବଜନ ।

ଅନ୍ନବସ୍ତ୍ର ଧନ ଯେ ବହୁତ ଆଣିଦେଲେ
ସନ୍ତୋଷେ ଦୁଃଖୀ ଦରିଦ୍ର ହରଷେ ଘରେଗଲେ
ନଟକାରୀ ନୃତ୍ୟକାରୀ ବେଶ୍ୟା ମନୋହାରୀ
ଅମଳାଣ ଶାଢୀ ଦେଲେ ଅଯୋଧ୍ୟା ଦଣ୍ଡଧାରୀ ।
ପଦାତିମାନଙ୍କୁ ଶାଢୀ ସିଳପୁଆ ଦେଲେ
ସେବାକାରୀମାନେ ବହୁତ ତୋଷ ହେଲେ ।
ରଥି ସେନାପତି ଆଦି ଆବର ଯେତେଜନ
ସମସ୍ତଙ୍କୁ ତୋଷ କରି ଦେଲେକ ରାଜନ ।
ହରଷରେ ସର୍ବଜନେ ଯେ ଯାହା ପୁରେ ଗଲେ
ବିଭାଣ୍ଡକ ଋଷି ଯେ ମେଲାଣି ମାଗିଲେ ।
ଦୁହିତାର କୁଶଳ ଦଶରଥ ପୁଛି
ଅନେକ ଧନରତ୍ନ ଋଷିର ସଙ୍ଗେ ଦ୍ୟନ୍ତି ।
ବିଭାଣ୍ଡକ ବୋଇଲେ କୁଶଳ ସର୍ବ ହେଲା
ତୁମ୍ଭର କୁମର ଦେବଙ୍କୁ ଅଟେ ତୋରା ।
ଚମ୍ପାବତୀ ରାଜ୍ୟେ ଲୋମପାଦ ପ୍ରବେଶ
ଅନ୍ତଃପୁରେ ରାଣୀମାନେ ଶୁଣିଣ ହରଷ ।
ଏଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ
କଉଶଲ୍ୟାର ଭାଇ କୈକେୟୀର ପ୍ରିୟାଟି ।
ସୁମିତ୍ରାର ଭାଇ ଚଳିଲେ ସତ୍ୱର
ପ୍ରବେଶ ହେଲେ ଯାଇ ଯେ ଯାହା ନବର ।
ଧନରତ୍ନ ଅଳଙ୍କାର ବହୁତ ନେଇଗଲେ
ଭଣଜାମାନଙ୍କୁ ଦେଖି ମନରେ ତୋଷ ହେଲେ ।
ଭଉଣୀମାନଙ୍କୁ ଦେଖି ବିନତି ହୋଇ ପୁଣ
ଆନନ୍ଦରେ ଚଳିଗଲେ ଶାଳକଗଣ ପୁଣ ।
ନମସ୍କାର କଲେ ଦଶରଥଙ୍କର ପାଦ
ଦେଖିଣ ସାନନ୍ଦ ହେଲେ ଅଯୋଧ୍ୟା ନରେନ୍ଦ୍ର ।
କୈକୟୀ ପିତାଙ୍କୁ ଦଶରଥ ମାନ୍ୟ କଲେ
କୈକୟୀ ସମିତ୍ରାଙ୍କୁ କହିଣ ଭାଇ ଗଲେ ।
ନିଜ ନବରେ ଯାଇ ପ୍ରବେଶ ହୋଇଲେ ।
ସୁମନ୍ତ୍ରଙ୍କୁ ଡକାଇ ରାଜନ ଦେଲେ ଧନ
ଶତେକ ସୁବର୍ଣ୍ଣ ଆଣିଣ ଦେଲେକ ପୁଣ ।
କଶ୍ୟପ ବାମଦେବ ଜାବାଳି ବଶିଷ୍ଠ
ଏମାନଙ୍କୁ ରତ୍ନ ବସ୍ତ୍ର ଦେଲେ ନରନାଥ ।
ଯେ ଯାହା ପୁରେ ଗଲେ ଭାଗିଗଲା ଚହଳ
ଲକ୍ଷେ ଧେନୁ କ୍ଷୀର ଦେଲେ ଈଶ୍ୱରଙ୍କ ଶିର ।

ଦେବୀଙ୍କି ମାଜଣା ସ୍ନାନ କରାଇ ରାଜନ
ମଣୋହି ବିଧି କରି କଲେକ ଶୟନ
ଛାମୁଣ୍ଡିଆ ଭଙ୍ଗାଇ ସୁମନ୍ତ ସମ୍ଭାଳିଲେ
ପତନି ଚାନ୍ଦୁଆ ସର୍ବ ଯତନେ ଥୋଇଲେ ।
ଦିନକୁ ଦିନ ପୁଏ ବଢିଲେ ଶଶି ଜିଣି
ଶୁକ୍ଳପକ୍ଷେ ଯେସନେ ବଢଇ ନିଶାମଣି ।
ଉତ୍‌ଥାନ ହୋଇଣ ଶୋଇଲେକ ପୁଏ
ଚାରିମାସରେ ଉବୁରା ଉବୁରି ଯେ ହୁଏ ।
ପାଞ୍ଚ ମାସରେ ଯେ ଦିଅନ୍ତି ଗୁଳୁଗୁଞ୍ଚା
ହେମା ପାଡ଼ି ଖେଳନ୍ତି ଯାହାର ଯେଉଁ ଇଛା ।
ଷଡ଼ ମାସ ହେବାରୁ ସୁଧୀର ହୋଇ ବସି
କହି ହସାଇଲେ ହସନ୍ତି ଚାରି ବସି ।
ପାର୍ବତୀ ବୋଇଲେ ଦେବ ଶୁଣ ମୋ ବଚନ
ବାସୁଦେବଙ୍କର ଜନ୍ମ ଶୁଣିଲି ମୁଁ କର୍ଣ୍ଣେ ।
କମଳା ଜନମ ଯେ କେଉଁଠାରେ ହେଲେ
କେଉଁରୂପେ ଜାତ କିସ ନାମ ଯେ ବହିଲେ ।
ଈଶ୍ୱର କହନ୍ତି ତୁମ୍ଭେ ଶୁଣ ଭଗବତୀ
ଏବେ ସେ କଥା ତୋତେ କହୁଛି ଯେ ସତୀ ।
ସାତଯୁଗ ଅନ୍ତରେ ଯେ ଦେବତାମାନେ ପୁଣ
ଚାରି ରାବଣ ପ୍ରତାପରେ ଆକୁଳ ହେଲେ ଜାଣ ।
ନାରାୟଣ ଦେବତାଙ୍କୁ କହିଲେକ ଯାଇ
ଅଚିନ୍ତା ବୈକୁଣ୍ଠଦ୍ୱାରେ ସ୍ମରଣ କଲେ ରହି ।
କେବେହେଁ ନାରାୟଣ ନିଦ୍ରା ତ ତେଜିଲେ
ସକଳ ଦେବତା ବିସ୍ମୟ ମନ ହୋଇଲେ ।
ତେଣୁକରି ବେଦବର ନେଲେ ଆସି ମୋତେ
ସୁମରଣା କରିବାରୁ ଗଲୁ ଯେ ତୁରିତେ ।
ଦେବତାଏ ଦେଖିଣ ସକଳ କଥା କହି
ଶୋକଭର ହୋଇଣ ବସି ରହିଲେ ତହିଁ ।
ବୋଇଲେ ନାରାୟଣ ବିପକ୍ଷ ଆମ୍ଭରେ
ଅସୁରଙ୍କର ପ୍ରତାପେ ନରହୁ ସ୍ୱର୍ଗପୁରେ ।
ଶୁଣିଣ ବେଦବର ଆମ୍ଭେ ବିଚାରିଲୁ
ଆମ୍ଭ ସରିକି ଅସୁର ପ୍ରବଳ ବୋଇଲୁ ।
ଦେବତାଙ୍କୁ ଦେଇଣ ଏ ଚାରି ରାବଣ
ନିଯୋଗ କରାଏ ଖଟାଏ ଦୈତ୍ୟରାଣ ।
ଦେବତାଙ୍କୁ ପାଦତଳେ ଖଟାଇବାରୁ ନେଇ
ଆମ୍ଭ ହସ୍ତରେ ନ ମାରିବାରୁ ଆମ୍ଭଙ୍କୁ କଷ୍ଟଦେଇ ।

ଏମନ୍ତ ବିଚାରିଣ ବେନି ଭାଇ ଆମ୍ଭେ
ଅନାମିକା ତପ କଲୁଟି ଆମ୍ଭେ ଏଥେ ।
ଅନାମିକା ସୁମରନ୍ତେ ଉଠିଲେ ନାରାୟଣ
ସରସ୍ୱତୀଙ୍କୁ ବୋଇଲେ ଯାଅ ଗୋ ବହନ ।
ପଶ୍ଚିମ ଦ୍ୱାର ଖୋଲିଣ ଦେବଙ୍କୁ ଘେନିଆସ
ବ୍ରହ୍ମା ଶିବ ବେନି ଜଣ ଆସନ୍ତୁ ମୋର ପାଶ ।
ଶୁଣିଣ ଯୋଗମାୟା ପଶ୍ଚିମ ଦ୍ୱାରେ ମିଳି
ନିର୍ବନ୍ଧ କବାଟ ଯେ ବେଗେ ଦେଲେ ଫେଡ଼ି ।
ବୋଇଲେ ଦେବତାଏ ଆସ ପ୍ରଭୁ ପାଶ
ଆଜ୍ଞାଦେଲେ ନାରାୟଣ ବହନ ହୋଇ ଆସ ।
ଶୁଣିକରି ବେଦ ବ୍ରହ୍ମା ସୁରନାଇ ହରି
ପ୍ରବେଶ ହେଲୁ ଆସି ଛାମୁରେ ଶ୍ରୀହରି ।
ଦେଖିଣ ଶ୍ରୀହରି ରଙ୍ଗା ଅଧରେ କଲେ ହାସ୍ୟ
ବୋଇଲେ କିମର୍ଥେ ଅଇଲେ ସୁରନାଥ ।
ସୁରନାଥ ବୋଇଲେ ଶୁଣ ହେ ଦେବହରି
ତୁମ୍ଭର ସବୁଦିନେ ଆମ୍ଭେ ସେବାକାରୀ ।
ତୁମ୍ଭେ ଥାଉଁ ଥାଉଁ ଅସୁରଙ୍କୁ କରୁ ସେବା
ପ୍ରଳୟ ନ କର କିମ୍ପା ଏ କଷ୍ଟ ସମର୍ପିବା ।
ନାରାୟଣ କହେ ଚାରିରାବଣ କାହା ହସ୍ତରେ ମରି
ବେଦବର ବୋଇଲେ ଶୁଣ ହେ ଦେବହରି ।
ଦଶମୁଖା ରାବଣ ଯେ ମରିବ ତୁମ୍ଭ ହସ୍ତେ
ଏକ ମୁଖାକୁ ମାରିବେ ଅନନ୍ତ ପ୍ରତ୍ୟକ୍ଷେ ।
ଶତେମୁଖାକୁ ଡାହାଣ ବ୍ରତ ଶଙ୍ଖ ମାରି
କମଳାଙ୍କ ହସ୍ତରେ ସହସ୍ର ମୁଖା ମାରି ।
ସୁଦର୍ଶନ ମାରିବେ ବହୁତ ଅସୁର ପୁଣ
ସ୍ୱର୍ଗ ମର୍ତ୍ତ୍ୟ, ପାତାଳ ସପତ ଦ୍ୱୀପ ମହୀ ଜାଣ ।
ସକଳ ଅସୁର ତୁମ୍ଭେ କରିବ ନିଶୋଧନ ।
ତେବେ ଅନନ୍ତ ନାଗ ଯେ ପାଏ କଷଣ ।
ଶଙ୍ଖ ଚକ୍ର ଗଦା ଯେ ହୋଇବେ ବେନିମୂର୍ତ୍ତି
ଅନନ୍ତ ନାରାୟଣ ତୁମ୍ଭର ସଙ୍ଗେ ସାଥି ।
ଦେବତାମାନଙ୍କ ଅଂଶେ ମର୍ତ୍ତ୍ୟରେ ହେବେ ଜାତ
ମର୍କଟ ଭାଲୁ ରୂପରେ ହୋଇବେ ସମ୍ଭୁତ ।
ତୁମ୍ଭର ଚରଣରେ ସମସ୍ତେ ଖଟିବେ
ଯେଣିକି ବୋଲିବ ତୁମ୍ଭେ ତେଣିକି ସେ ଯିବେ ।
ଶୁଣିକରି ଶ୍ରୀହରି ଯେ ପରମ ସାନନ୍ଦ
ହୋଇବି ମର୍ତ୍ତ୍ୟରେ ଜାତ ବୋଇଲେ ଆଦିକନ୍ଦ ।

ସତଯୁଗ ଶେଷରେ ଅଯୋଧ୍ୟା ପୁର ଯାଇ
ସୂର୍ଯ୍ୟ ବଂଶରେ ଜାତ ହେବି ଦେହ ବହି ।
ଶୁଣିକରି ଦେବତାଏ ଚରଣ ତଳେ ପଡ଼ି
ବେଦବର ବୋଇଲେ କହନ୍ତୁ କରଯୋଡ଼ି ।
ସେତେବେଳୁ ଦେବତାଏ ଗୁହାରି କରିଥିଲେ
ତେଣୁକରି ନାରାୟଣ ଅଯୋଧ୍ୟାରେ ଜନ୍ମ ହେଲେ ।
ପାର୍ବତୀ ବୋଇଲେ ଦେବ ସେଠାରୁ କିସ ହେଲା
ନାରାୟଣ ଜନ୍ମ କଥା କହିଲ ମୋତେ ପରା ।
କମଳା ଜନ୍ମକଥା ନ ଶୁଣିଲି କର୍ଣ୍ଣେ
କେଉଁରୂପେ ଶ୍ରୀହରି ଘରଣୀ ହେଲେ ଜନ୍ମ ।
ଈଶ୍ୱରବୋଇଲେ ସେ କଥାତୋତେ ଦେବାକହି
ଏକମନ ହୋଇ ତୁମ୍ଭେ ଶୁଣ ପ୍ରାଣସହୀ ।
ଆମ୍ଭେ ଯାଇ ବୋଇଲୁ ଶ୍ରୀହରି ତୁମ୍ଭେ ଶୁଣ
ତୁମ୍ଭରେ ଦୋଷକାରୀ ଅସୁର ହେବେ ପୁଣ ।
ତେବେ ଯେ କ୍ରୋଧଚିତ୍ତ ତୁମ୍ଭର ଜାତ ହେବ
ତେବେ ସେ ଦୈତ୍ୟ ମରି ନଥିବ ସଦ୍‌ଭାବ
ଶ୍ରୀହରି ବୋଇଲେ କମଳାଙ୍କଠାରୁ ଅଂଶେ ଯାଉ
ଗିରିଜା ଗୃହରେ ଜନ୍ମ ଯାଇ ହେଉ ।
ଦୁଇ କାଳରୁ ଦୁଇ ମୂର୍ତ୍ତି ହୋଇବେ ଜନମ
ବେଦମତି ଝରାମତି ନାମ ହେବ ପୁଣ ।
ଷଡ଼ ଯୁଗ ପର୍ଯ୍ୟନ୍ତ ତପ ଯେ କରିବେ
ସତ୍ୟଯୁଗ ଯାଏ ନାରୀ ତେଜୋବନ୍ତ ହେବେ ।
ଯୁଗର ପ୍ରଥମରେ ଗଲେ ନାରାୟଣ
ନାମଗୋଟି ତାଙ୍କର ହୋଇବ ପର୍ଶୁରାମ ।
ସପ୍ତଦ୍ୱୀପ ପୃଥ୍ୱୀ ସାଧିଣ ଦୁଷ୍ଟ ମାରି
ଗରିଷ୍ଠଙ୍କୁ ନମାରି ରହିବେ ଅପସରି ।
ତ୍ରେତୟା ଯୁଗରେ ଆମ୍ଭେ ହେବୁ ଜାତ
ଚତୁର୍ଦ୍ଧା ମୂରତି ଧରି ହୋଇବୁ ସମ୍ଭୂତ ।
କମଳା ହୋଇବେ ପୁଣ ଚତୁର୍ଦ୍ଧା ମୂରତି
ଗିରିଜା ଦୁହିତା ଯେ ଥିବ ଝରାମତି ।
ପାତାଳ ନୀଳାଚଳ ଶାନ୍ତିରେ ସେହି ରହି
ବେଦମତି ଅସୁରଙ୍କୁ ଦ୍ରେଛନା କରାଇ ।
ଦଶମୁଖା ରାବଣର କଟାଳ ବଳେ ପୁଣ
ସ୍ୱଦେହ ଛାଡ଼ି ଦେବୀ ଆସିବ ମୋ ପାଶେଣ ।
କମଳାଙ୍କର ଦେହରେ ଆସ ସମ୍ଭୂତ ହୋଇବେ
ତେବେ ସେ ମୋର ନିଦ୍ରା ଭାଙ୍ଗିବଟି ତେବେ ।

ଦଶ ସହସ୍ର ବରଷ ଘେନିଣ ଲୀଳା କରେ
ତେବେ ମୁଁ ଜନ୍ମ ଯେହେବି ମଞ୍ଚପୁରେ ।
ମୋର ଜନ୍ମ ହୋଇବାର ଛଡ଼ମାସ ଉତ୍ତାରେ
କମଳା ଜନମିବେ ଜନକ ଋଷି ଘରେ ।
ତିନିଅଂଶ ଧରିଣ କମଳା ଜାତହେବେ ଯେଣୁ
ପ୍ରଥମେ ଝରାମତି ଦ୍ୱିତୀୟେବୈଦେହୀ ନାମଯେଣୁ ।
ତୃତୀୟେ ପାର୍ବତୀ ରୂପେ ହୋଇବେ ସମ୍ଭୁତ
ପାର୍ବତୀ ଅଂଶରେ ଜାତ ଅନାଦି ନାରୀ ସେତ ।
ଚତୁର୍ଥେ ମାଳିନୀ ସୁମାଳିନୀ ଜାତ
ଚାରି ନାରୀଙ୍କର ଗର୍ଭ ହୋଇବେ ଅଷ୍ଟପୁତ୍ର ।
ଦୁଇମାତାଙ୍କର ଯୁଗତେ ସ୍ୱତି ଜାଣ
ପାର୍ବତୀ ଅଂଶେ କମଳା ଅଯୋନି ଜାତପୁଣ ।
ବେନି ମାତାଙ୍କରୁ ତିନି ଯେ ଦୁହିତା
ଗର୍ଭରୁ ଜାତ ହେବେ ଶୁଣ ହେ ବିଧାତା ।
ମୁହିଁ ଆପେ ଜନକ ଦୁହିତା ବିଭାହୋଇ
ଅଯୋନି ସମ୍ଭୂତରେ ଜାତ ଯେ ଥିବେ ହୋଇ
ଜନକ ଭାଇ ଦୁହିତା ଅନନ୍ତ ହେବେ ବିଭା
ଗର୍ଭଧାରୀ ତିନି ରାଣୀ ଶୋଭା ହେବ ପ୍ରଭା ।
ପ୍ରଥମ ନାରୀକି ପର୍ଶୁରାମ ବିଭାହୋଇ
ଚତୁର୍ଥେ ବେନିନାରୀ ସୁଦର୍ଶନଶଙ୍ଖଚକ୍ର ବିଭାହୋଇ ।
ଶୁଣିଣ ଦେବତା ହରଷ ମନ ହେଲେ
ମେଲାଣି ମାଗିଣ ଯେ ଯେଝାପୁର ଗଲେ ।
ସେଠାରୁ ନାରାୟଣ ବିହାର କଲେ ପୁଣ
ଦଶ ସହସ୍ର ବରଷ ସମ୍ପୂର୍ଣ୍ଣ ହେଲା ଜାଣ ।
କମଳାଙ୍କୁ ବୋଇଲେ ଏ ବେନି କଳା ତେଜ
ଗିରିଜା ଘରେ ଜନ୍ମ ହୋଇ ମୋତେ ଭଜ ।
ଶୁଣିଣ କମଳା ଯେ ବେନି ତେଜ ଛାଡ଼ି
ବେନି ତେଜ ଗିରିଜା ଘରଣୀ ଦେହେ ଭରି ।
ତିନି ମାସରେ ବେନି ଦୁହିତା ଜାତ ହେଲେ
ଜାଣିକରି ଶ୍ରୀହରି ଶୟନ ଯାଇ କଲେ ।
ସାତଯୁଗ ଶେଷ ଯେ ହୋଇଲା ପଲଙ୍କରେ
ପର୍ଶୁରାମ ଜାତ ହେଲେ ଯୁଗର ଆଦ୍ୟରେ ।
ସପ୍ତପୁର ସାଧିଣ ଦୁଷ୍ଟ ନିବାରିଲେ
ତପରେ ମନକରି ଶ୍ରୀହରି ସୁମରିଲେ ।
ତେଣୁ ନାରାୟଣ ଦଶରଥ ଘରେ ଜାତ
ଅନନ୍ତ ଆୟୁଧ ଧରି ମୁରତି ସମ୍ଭୁତ ।

ଏବେ ଜନ୍ମ ହେବାର ହେଲା ଛଡ଼ ମାସ
ତେଣୁକରି ଦେବତାଙ୍କର ଚିନ୍ତା ଯେ ଉଶ୍ୱାସ ।
ପାର୍ବତୀ ବୋଇଲେ ଦେବ ଜନମ ହରିହେଲେ
କମଳା ଅଂଶ ଘେନି ଜନ୍ମ ତ ନୋହିଲେ ।
ଅଯୋନି ସମ୍ଭୁତରେ ଜନମ ହେବେ ପୁଣି
ଅଯୋନି ଅନଳେ କେଉଁଠାରେ ପୁଣି ।
ବୈଶାନର ଦେବତା ଅଟନ୍ତି ପୁରୁଷତ
ପୁରୁଷ ଅଙ୍ଗରୁ ସ୍ତିରୀ କେମନ୍ତେ ହେଲା ଜାତ ।
ଈଶ୍ୱର ବୋଇଲେ ଗୋ ସେ କଥା ଏବେ ଶୁଣ
କେଉଁରୂପେ ଜାତ ହେଲେ କମଳାଦେବୀ ପୁଣ ।
ପ୍ରଥମେ ଗିରିଜା ଘରେ କମଳାଏ ଜାତ
ଝରାମତୀ ବେଦମତୀ ନାମରେ ସମ୍ଭୁତ ।
ସପ୍ତଯୁଗ ତପକରି ବେଦମତୀ ଗଲା
ମର୍ତ୍ତ୍ୟପୁରେ ଯାଇ ଦେବୀ ପ୍ରବେଶ ହୋଇଲା ।
ଦଶଗ୍ରୀବ ଜମ୍ବୁଦ୍ୱୀପ ମଣ୍ଡଳରେ ଫେରି
ବେଦମତି କି ଦେଖିଣ ବଳକ୍କାର କରି ।
ବଳବନ୍ତ ପଣ ଦେଖି ଦେବୀ ଶରୀର ଛାଡ଼ିଗଲା
ବୈକୁଣ୍ଠ ଭୁବନେ କମଳା ଅଂଶରେ ସମ୍ଭାଇଲା ।
ଦେଖିଣ ଦଶଗ୍ରୀବ ଶବ ଘେନିଣ ଚଳି
ଯାଇଣ ଲଙ୍କା ନବରେ ନିଜ ମନ୍ଦିରେ ମିଳି ।
ତାହାର ପାଟରାଣୀକି ମନ୍ଦୋଦରିକି କହି
ଏ ମାଂସ ତିଅଣ ମୁଁ ଭୋଜନ କରିବଇଁ ।
ଏହା କହିଣ ରାଜନ ବେଗେ ଚଳିଗଲେ
ଏମନ୍ତ ସମୟରେ ନାରଦ ମିଳିଲେ ।
ମନ୍ଦୋଦରୀକି ବୋଇଲେ ଶୁଣ ଗୋ ସତ୍ୟନାରୀ
ତୋ ସ୍ୱାମୀ ଯେଉଁ ମାଂସକୁ ଦେଲେ ଆଣିକରି ।
ସେହୁ ମାଂସ ଯେ ଦେବଙ୍କ କୁଟ ଜାଣ
ଖାଇଲେ ମରିବ ଯେ ଅବଶ୍ୟ ସ୍ୱାମୀ ପୁଣ ।
ଏବେ ଯେ ଶବକୁ ମଞ୍ଜୁଷରେ ଭରି
ସମୁଦ୍ରରେ ମେଲିଦେଲେ ସରିବ ଚିନ୍ତା ତୋରି ।
ଶୁଣିଣ ମନ୍ଦୋଦରୀ ସୁବର୍ଣ୍ଣ ମଞ୍ଜୁଷରେ
ମେଲିଦେଲା ନେଇକରି ସାଗର ଭିତରେ ।
ଭରା ପାଇଣ ମଞ୍ଜୁଷ ବୁଡ଼ିଲା ସାଗରରେ
ଧରଣୀ ଘେନିଗଲା ମିଥିଳା ନବରରେ ।
ନିର୍ମଳ ସ୍ଥାନରେ ନେଇଣ ଗୁପ୍ତ କଲା
ଦଶ ସହସ୍ର ବରଷ ଏଥିରେ ବହିଗଲା ।

ଦେବତାଙ୍କର ଛଳେ ଯେ ବାସୁଦେବ ଜାତ
ବାସୁଦେବ ଜାତ ଦେଖି ବିଧାତାହେଲେ ଚେତ ।
ମଞ୍ଜୁଷର ଭିତରେ ଯାଇଣ ମିଳିଲେ
ସତୀର ଶବକୁ ସେହି ପିତୁଳା ରଚିଲେ ।
ଦ୍ୱାଦଶ ଆଙ୍ଗୁଳି ନାସା ଶ୍ରବଣ କରି ପୁଣ
ମସ୍ତକ ମୁଖ ଚକ୍ଷୁ ଯେ କଲେକ ଭିଆଣ ।
ହସ୍ତ ପାଦ ଉଦର ଯେ ବକ୍ଷସ୍ଥଳ କଲେ
ମଞ୍ଜୁଷର ଭିତରେ ଶୁଆଇ ଚଳିଗଲେ ।
କୁଶଧ୍ୱଜ ରାଣୀ ଗର୍ଭେ କମଳା ଅଂଶ ନେଇ
ରଜସ୍ୱଳାରେଜ୍ୟୋତି ମିଶାଇଣ ଥୋଇ ।
ଋତୁ ସ୍ନାନ କରନ୍ତେ କୁଶଧ୍ୱଜ ରାଣୀ ପୁଣ
ରାଣୀକି ଘେନି ରାଜନ କଲା ବିହରଣ ।
ଏଥୁ ଅନନ୍ତରେ ଯେ ଈଶ୍ୱର କହିଲେ
ଧନୁ ଯାଗ କରିବା ବୋଲି ଜନକ କହିଲେ ।
ଜନକ ଋଷି ଆଜ୍ଞାରେ ସକଳ ତିଆରିଣ
ଛାମୁଣ୍ଡିଆ ଘର କରନ୍ତେ ଦିନ ଶେଷ ପୁଣ ।
ବରଷା ଋତୁ ଦେଖି ସମସ୍ତେ ମନାକଲେ
ଆଶ୍ୱିନ ଶୁକ୍ଳପକ୍ଷେ ଅନୁକୂଳ କଲେ ।
ସେ ଜନକ ଋଷି ଅଣାଇ ସକଳ ରାଜାପୁଣ
ଲୋଡ଼ିଣ ଚାରିମାସରେ ସମସ୍ତ ସାଇତିଣ ।
ଆଶ୍ୱିନ ପଶିବାରୁ ପାତ୍ର ମନ୍ତ୍ରୀ ରାଇ
ତିନିପୁର ଋଷିଙ୍କି ନିମନ୍ତ୍ରଣ କଲେ ଯାଇ ।
ଅଗସ୍ତି ମାର୍କଣ୍ଡ ଯେ ନାରଦ ଚଳିଗଲେ
ତିନିପୁରେ ଋଷିଙ୍କି ଯାଇଣ ଅଣାଇଲେ ।
ପାତାଳକୁ ନାରଦ ଗଲେକ ଯେ ପୁଣ
ନାଗ ଋଷି ସିଦ୍ଧ ଋଷି ଅଣାଇଲେ ଜାଣ ।
ସ୍ୱର୍ଗକୁ ମାର୍କଣ୍ଡ ଗଲେକ ବରଣ କରି
ଦେବର୍ଷି ବ୍ରହ୍ମର୍ଷି ଘେନିଣ ଯେ ଆସି ମିଳି ।
ମର୍ତ୍ତ୍ୟପୁର ପାରେଶ୍ୱର ଭ୍ରମଣ କରିଗଲେ
ସକଳ ଋଷିଙ୍କି ଯେ ବରଣେ ଅଣାଇଲେ ।
ଲକ୍ଷେକ ଋଷି ଆସିଣ ହେଲେ ପରବେଶ
ଋଷିମାନେ ଆସନ୍ତେ ଆଶ୍ୱିନ ମାସ ଶେଷ ।
ଲକ୍ଷେକ ବ୍ରାହ୍ମଣଙ୍କୁ ଅଣାଇ ଋଷି ରାଏ
ଯାଗଶାଳ ଶୋଧାଇବାକୁ ଅନୁକୂଳ ବୁଝାଏ ।
ଦଶମୀ ରବିବାର ବେଳ ଯେ ଉଦୟକୁ
ଯାଗଶାଳ ଅନୁକୁଳ ମିଳିଲା ତାହାଙ୍କୁ ।

ପ୍ରଭାତୁଁ ସକଳ ଋଷି ସ୍ନାନ ଶୌଚ କରି
ମହା ଲଙ୍ଗଳ ଘେନିଣ ଯାଗଶାଳାରେ ମିଳି ।
ଋଷିମାନେ ବେଦଧ୍ୱନି କଲେ ଯେ ଉଚ୍ଚରେ
ବ୍ରାହ୍ମଣେ ବେଦ ଓଁକାର ବେଦଧ୍ୱନି କଲେ ।
ଚଣ୍ଡପୁତ୍ରମାନ ଯେ ଯୋଗ ଲଗ୍ନ କହି
ମହା ଲଙ୍ଗଳ ସ୍ଥାପିଣ ପୂଜାକଲେ ତହିଁ ।
ପୁଷ୍ପ ଚନ୍ଦନ ଯେ ନାନାବର୍ଣ୍ଣରେ ଗନ୍ଧ
ଦେଇଣ ପୂଜାବିଧି ସାରିଲେକ ବେଗ ।
ଲକ୍ଷେକ ଶଙ୍ଖ ମହୁରୀ ଶବଦ କଲେ ଘେରି
ବୀର ବାଜା ଦୁନ୍ଦୁଭି ବଜାଇ ସ୍ୱର କରି ।
ହରିବୋଲ ରାମତାଳି କରନ୍ତି ସର୍ବେ ମିଳି
ନାରୀମାନେ କୁଳେ ପୁଣ ଦ୍ୟନ୍ତି ହୁଳହୁଳି ।
ଦଶଗୋଟି ଋଷି ଯେ କନ୍ଧେ ଯୁଆଳି ଧରି
ଲଙ୍ଗଳ କଣ୍ଟିର ଉପରେ ଜନକ ହସ୍ତ ଭରି ।
ପାଦ ଦେଇ ଲଙ୍ଗଳରେ ଚାଳିଲେକ ପୁଣ
ସତର ପାଦ ପର୍ଯ୍ୟନ୍ତ ଲଙ୍ଗଳ ଗମନ ।
ସତର ପାଦଠାରେ ଲଙ୍ଗଳ ଫାଳ ମୁନେ
ମଞ୍ଜୁରେ ଲାଗଇ ଯେ ଛନ୍ଦେ ଏଣେତେଣେ ।
ଋଷି ବ୍ରାହ୍ମଣ ସମସ୍ତେ ଶବଦ ଗୋଳକଲେ
କିସ ମୁନରେ ଲାଗିଲା ବୋଲିଣ ଖେଳାଇଲେ ।
ଖୋଳନ୍ତେ ସୁବର୍ଣ୍ଣ ଯେ ମଞ୍ଜୁଷ ଦେଖି ପୁଣ
ଆନନ୍ଦରେ ଋଷିମାନେ ଟୋଳି ବେଗେଜାଣ ।
ଟୋଳିଣ ସମସ୍ଥାନେ ନେଇଣ ତାକୁ ରଖି
ଲଙ୍ଗଳ ତେଜି ଜନକ ମଞ୍ଜୁଷ ଫେଡ଼ି ଦେଖି ।
ମଞ୍ଜୁଷ ଭିତରେ ବିଧାତା ପଶିଣ କରି
ଚେତା ଜୀବ ଦେଇଣ ଗଲେକ ବାହାରି ।
ଜନକ ମଞ୍ଜୁଷ ଫେଡନ୍ତେ ଦୁହିତା ଛାଡେ ରଡି
ଦେଖିଣ ଜନକ ଋଷି ଶ୍ରଦ୍ଧାରେ ଯେ ଧରି ।
କରେ ଧରି ଖେଳନ୍ତେ ଦୁହିତା ଯୁବା ହେଲା ପରା
ଜଗତ ମୋହିନୀ ସିନ୍ଧୁ ଦୁହିତା ଦିଶେ ତୋରା ।
ଦେଖିଣ ଜନକ ଋଷି ଦୁହିତା କଲେ ଅଲଗା
ଋଷି ବ୍ରାହ୍ମଣ ସକଳ ଦେଖିଣ ହେଲେ ତାଟକା ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଦୁର୍ବାଶା ଋଷି ଯାଇ ଦୁହିତା ପାଶେ ମିଳି ।
ବୋଇଲେ ଜନକ ରାଜା ଶୁଣ ମୋ ବଚନ
କହୁଛି କଥାଏ ତୁମ୍ଭେ ପାଳିବ ଯତନ ।

ସେ ବାଳିର ଲମ୍ବହତା ଘରଣୀ ସହିତେ
ଶ୍ରୀ ଅଙ୍ଗ ନ ଛୁଆଁଇବୁ କହିଲି ମୁଁ ତୋତେ ।
ରଜକାରୀ ରଜକ ଏ ଦୁହେଁ ବେନିଜନ
ପୁତ୍ର ଦୁହିତା ସହିତେ ନିଷେଧ କଲ ଜାଣ ।
କମଳା ବୋଇଲେ ପିତା ଏ କି ବିଡମ୍ବଣ
ଯେମନ୍ତେ ବିଭାହେବ ସେ କଥା କହ ପୁଣ ।
କେହୁ ଉଚ୍ଚ କେହୁ ନୀଚ ଅଟନ୍ତି ଜାତି ପୁଣି
ସେକଥା ଫଳାଇ ମୋତେ କହ ମୁନିମଣି ।
ଦୁର୍ବାସା ବୋଇଲେ ଦେବ ବହୁ ସେବା କରି
ଦେବତାଙ୍କୁ ଶୁଦ୍ର ଯେ ଛୁଇଁବା ନ କରି ।
ମନୁଷ୍ୟ ଅଂଶ ଉଚ୍ଚ ଲୋକର ସେବାକାରୀ -
ତୁମ୍ଭର ଅଙ୍ଗ ସେ ଛୁଇଁବେ କିପରି ।
ଜାନକୀ ବୋଇଲେ ପିତା ଏ କେବଣ ପ୍ରକାର
ମୁହିଁ ଚଳିବଇଁ ଏବେ କେମନ୍ତ ପ୍ରକାର ।
ଏ କଥାକୁ ସଞ୍ଚପିଣ କହ ପିତା ତେବେ
ସେ କଥା ଶୁଣି ଦୁର୍ବାସା ବୋଲନ୍ତି ଯେ ଏବେ ।
ଦୁର୍ବାସା ବୋଲେ ପନ୍ଦର ଦିନେ ରଜସ୍ୱଳା
ଶୁଦ୍ଧସ୍ନାନ ଦିନ ତୁ ଯେ ନକରିବୁ ହେଳା ।
ଦାସୀଙ୍କି ଡକାଇଣ ମାଜଣା ବେଗେ ହୋଇ
ଅଗ୍ନିରେ ସ୍ନାନ କରିବୁ ଚାନ୍ଦମୁହିଁ ।
ଦାସୀଙ୍କି ଘେନି କଜ୍ଜ୍ୱଳ ସିନ୍ଦୂର ତୁ ଦେବୁ
ଲମ୍ବହତା ଘରଣୀ ରଜକାରୀକି ତେଜିବୁ ।
ଅଗ୍ନିରେ ସ୍ନାନ କରିଲେ ପକ୍ଷେକ ନିର୍ମଳ
ଅମଳାନ ବସ୍ତ୍ର ଯେ ମଳିନ ନୋହେ ତୋର ।
ଜାନକୀ ବୋଇଲେ ଅନ୍ତସ୍ତରରେ ମୁଁ କିସ
ହୀନ ସେବାକାରୀଙ୍କି ଆକଟ କଲେ କିସ ।
ଦୁର୍ବାସା ବୋଇଲେ ତୁ ଅଟୁ କମଳିନୀ
ତୋର ସ୍ୱାମୀ ଅଟନ୍ତି ଯେ ବାସୁଦେବ ପୁଣି ।
ତ୍ରୈଲୋକ୍ୟର କରତା ଅଟନ୍ତି ନାରାୟଣ
ଋଷି ବ୍ରାହ୍ମଣଦେବତା ତାଙ୍କର ସେବାକାରୀଜାଣ
ଜାନକୀବୋଇଲେ ସେ ଯେବେ ଅଟନ୍ତି ନାରାୟଣ
ମର୍ତ୍ତ୍ୟପୁରେ ଜାତ ହେଲେ କେବଣ କାରଣ ।
ଦୁର୍ବାସା ବୋଇଲେ ଅଷ୍ଟ ଅସୁର ଦଳିବାକୁ
ଅଯୋଧ୍ୟା ଜାତ ହେଲେ ଦେବଙ୍କର ବପୁ ।
ଦଶରଥ ଘରେ ଜନ୍ମ ହେଲେ ନାରାୟଣ
ଚତୁର୍ଦ୍ଧା ରୁପେ ବିଜୟ କଲେ ନାରାୟଣ ।

ଛଡ଼ ମାସ ସମ୍ପୂର୍ଣ୍ଣ ହୋଇଲା ଆଜକୁ
ଦଶରଥ ଘରେ ବିଜେ କଲେ ଅସୁର ଛଳକୁ ।
ଜାନକୀ ବୋଲେ କେତେଦିନେ ଭେଟ ହେବେ
ସେ କଥା ବଡ଼ ଚିନ୍ତା ମନରେ ହେଲା ଏବେ ।
ଦୁର୍ବାସା ବୋଇଲେ ଷଡମାସ ଏଗାରବରଷେ
ବିଶ୍ୱାମିତ୍ର ଯାଗକରିବେ କୌଶିକ ବନଦେଶେ ।
ଯାଗ ରଖିବା ନିମନ୍ତେ ଅଣାଇବେ ପୁଣ
ଯାଗ ରଖି ଦୈତ୍ୟଙ୍କୁ ମାରିବେ ନାରାୟଣ ।
ଯାଗ ସମ୍ପୂର୍ଣ୍ଣରେ ବିଶ୍ୱାମିତ୍ର ମୁନିତୋଷ ହୋଇ
ତୋର ପିତା ପୁରକୁ ଘେନି ଆସିବେ ସେହି ।
ତୋର ପିତା ଶିବଧନୁ ଯାତ୍ରା ସେ ଥିବେ କରି
ରାଜାଗଣ ମୁନିଗଣ ଅଣାଇ ଥିବେ ବରି ।
ଦେବତା ବ୍ରାହ୍ମଣ ଋଷି ସେ ସକଳ
ନର ବାନର ଯେ ଆବର ଦୈତ୍ୟ ମେଳ ।
କେହି ଶିବ ଧନୁକୁ ଆମଞ୍ଚି ନ ପାରିବେ
ତୋର ସ୍ୱାମୀ ନାରାୟଣ ଧନୁ ଆମଞ୍ଚିବେ ।
ସମସ୍ତ ମୁଖରେ ଲଗାଇଲେ କାଳି ପୁଣ
ତୋତେ ବିଭା ହେବେ ଯେ ତହୁଁ ନାରାୟଣ ।
ପାର୍ବତୀ ଅଂଶରେ ଜାତ ତୋହର ଭଗ୍ନୀ ପୁଣ
ଜାତ ହୋଇଥିବେ ତାଙ୍କୁ ଅନନ୍ତ ବିଭା ଜାଣ ।
ବେନି ଦୁହିତା ଜାତ ହେବ କୁଶଧ୍ୱଜର ଜାଣ
ସେ ଦୁଇ ଭାଇଙ୍କି ତେବେ ସେ ଦୁହିତା ବିଭା
ମାଳିନୀ ସୁମାଳୀ ତୋହର ଗୁଣେ ଶୋଭା ।
ସେ ବେନି ଭଗ୍ନୀ ଯେ ଯୋନି ମଧ୍ୟୁ ଜାତ
ତୁମ୍ଭେ ଦୁଇ ଭଉଣୀ ଅଯୋନି ସମ୍ଭୁତ ।
ଆଗତ ନିଗତ ଜଣା ତୋହର ଭଗ୍ନୀକି
ପଚାରିଲେ କହିବ ନ ପଚାରିଲେ ନ କହିବଟି ।
ଏ ଚାରିବର୍ଷ ଛଡ଼ମାସ ଧନୁ ଯାଗ ହେବ
ତୋର ପିତା ନିୟମ କରିଣ କହିବ ।
ଯେ ଧନୁ ଭାଙ୍ଗିବ ଯେ ମୋ ଦୁହିତା ବିଭାହେବ
ଏହା ଶୁଣି ଋଷି ରାଜା ସକଳ ତୋଷ ଭାବ ।
ଶୁଣିଣ ଜାନକୀଯେ ପରମ ତୋଷ ହେଲେ
ସକଳ ଋଷି ବ୍ରାହ୍ମଣଙ୍କୁ ନମସ୍କାର କଲେ ।
ଯାନ ଚଢ଼ିଣ ଦେବୀ ଯେ ଅନ୍ତଃପୁରକୁ ଗଲେ
ହରିବୋଲ ରାମତାଳି ପଡ଼ିଲା ହୁଳହୁଳି
ରାଜ୍ୟର ନରନାରୀ ମନରେ ସର୍ବେ ଭାଳି ।

କେ ବୋଲେ ଅସମ୍ଭବ ଦେଖାଗଲା ଆଜ
କେ ବୋଲେ ଜନମ ହୋଇ ନବଯୁବାର ତେଜ ।
କେ ବୋଲେ ସିନ୍ଧୁ ସୁତା କମଳା ଅଟେ ଏହି
କେ ବୋଲେ ଈଶ୍ୱରଙ୍କର ଘରଣୀ ଅଟଇ ।
କେ ବୋଲେ ବେଦବର ଘରଣୀ ସାବିତ୍ରୀ ।
ଜନ୍ମକାଳୁ ଜନ୍ମ ହୋଇ ମୋହୁଅଛି ପୃଥ୍ୱୀ ।
କେ ବୋଲେ ଶଚୀଦେବୀ ଛାୟା ଯେ ରୋହିଣୀ
କେ ବୋଲେ ଅଇଲା ଅବା ଗୌତମ ନାରୀ ।
ଗୌତମ ଶାପରେ ପାଷାଣ ହୋଇଥିଲା
ଏବେ ବିଧାତା ଆଣି ଏଠାରେ ଜାତ କଲା ।
ଏମନ୍ତ ବିଚାର ଯେ କରନ୍ତି ନରନାରୀ
ସକଳ ଦେବତାଏ ସ୍ୱର୍ଗପୁରେ ଭଳି ।
ବିଚାରନ୍ତି ନାରାୟଣ ଘରଣୀ କମଳା
ଅଯୋନି ସମ୍ଭୂତେ କରିବେ ବୋଲି ଲୀଳା ।
ଏମନ୍ତ ବିଚାରି ଦେବେ ବ୍ରହ୍ମ ଶିବ ଘେନି
ସୁର ରାଜ ସଙ୍ଗେ ଯାନ ଚଢ଼ିଣ ବାହାରନ୍ତି ପୁଣି ।
ମିଥିଳା ନଗର ସଳଖେ ରହିଲେ ଶୂନ୍ୟରେ
ଦେଖୁଛନ୍ତି ରହିକରି ସୁଧର୍ମା ସଭା ପରେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
କମଳା ଚଳିଗଲେ ଜନକ ନବରଟି ।
ଦେଖିଣ ମାତାମାନେ ହରଷ ମନ ହେଲେ
ଜନକ ଋଷି ଘରଣୀ କୋଳରେ ବସାଇଲେ ।
ମୁଖରେ ଚୁମ୍ବନ ଦେଇଣ ଆଉଁସେ ଦେହ ପୁଣ
କୋଳରୁ ଉଠି ଜାନକୀ ମାନ୍ୟ କଲେ ପୁଣ ।
ଏମନ୍ତ ସମୟରେ ଜାନକୀ ଦେବୀ ପୁଣ
ଏଗାର ଘଡ଼ି ସମୟରେ ରଜସ୍ୱଳା ଜାଣ ।
ଜାଣିଲେ ଜନକ କହିଲେ ଋଷି ବ୍ରାହ୍ମଣରେ
ଶୁଣିଣ ସମସ୍ତେ ହରଷ ହେଲେ ମନରେ ।
ଚଣ୍ଡ ପୁତ୍ରଙ୍କୁ ଡାକିଣ ଯୋଗଲଗ୍ନ ଗଣି
ଦୋଷ ଅବିରୋଧ ତାଠାରେ ନାହିଁ କିଛି ପୁଣି ।
ମାହେନ୍ଦ୍ର ସମୟରେ ଯେ ଶୁଭଲଗ୍ନ ଛନ୍ତି
ସେଠାରୁ ପୁଣ ଯେ ପାଞ୍ଚଦିନ ଗଲା ବିତି ।
ପାଞ୍ଚଦିନରେ ମର୍ଦ୍ଦନମ ଜଣାହେଲେ ବଇଦେହୀ

× × ×

ଜନକକୁ ବୋଇଲେ ସ୍ନାନ କରିବେ ଦୁହିତା
ଅଗ୍ନି ସ୍ଥାପନ କର ହୋଇଣ ଯେ ସ୍ୱସ୍ତା ।
ଶୁଷ୍କ କାଷ୍ଠ ଲଗାଇ ଅଗ୍ନି ତେଜ କଲେ
ପ୍ରାଞ୍ଜଳିତ ହୋଇଣ ଅଗ୍ନି ଜଳିଲା ଭଲେ ।
ହରିବୋଲ ରାମ ତାଳି ସେଠାବରେ ପଡ଼ି
ଜଳିଲା ହୁତାଶନରେ ବଇଦେହୀ ମିଳି ।
ଅଗ୍ନିରେ ସ୍ନାନକରି ହୋଇଲେ ତେଜବନ୍ତ
ଅମଳାଣ ଶାଢ଼ୀ ପିନ୍ଧି ବାହାର ତୁରିତ ।
ଦେଖିଣ ଋଷି ବ୍ରାହ୍ମଣ ଦେବତା ତୋଷ ହେଲେ
ଅସମ୍ଭବ କଥା ବୋଲି ନର ନାରୀ ବିଚାରିଲେ ।
ଅଗ୍ନି ସ୍ନାନ ସାରିବାରୁ ଦେବତାଗଣ ପୁଣ
ସନାତନ ଋଷିଙ୍କି କହିଲେ ତୁମ୍ଭେ ଶୁଣ ।
ଆମ୍ଭର ଅକ୍ଷତ ଘେନିଣ ତୁମ୍ଭେ ଯିବ
ଜନକ ଋଷି ନବରେ ପ୍ରବେଶ ହୋଇବ ।
ନାମକରଣ ସରିବାରୁ ଅକ୍ଷତ ଦେବ ପୁଣ
କହିବ ଜନକ ଋଷି ଆମ୍ଭର ବଚନ ।
ବୋଲିବ ଯେ ଏ ଚାରିବରଷ ପର୍ଯ୍ୟନ୍ତେ
ଧନୁଯାଗ କରିବ ଏ ଦୁହିତା ନିମନ୍ତେ ।
ଶିବ ଧନୁରେ ଗୁଣ ଦେଇଣ ଯେ ଆମଞ୍ଚିବ
ତାହାକୁ ବିଭା କରିବୁ ଦୁହିତା ପ୍ରିୟ ଭାବ ।
ଜାଣିବୁ ନାରାୟଣ ଅଟନ୍ତିଟି ସେହି
ଗତି ମୁକତି ଲଭିବୁ ତାଙ୍କ ମୁଖ ଚାହିଁ ।
ଶୁଣି ଦେବଋଷି ବେଗ ଚଳିଗଲେ ।
ମିଥିଳା ଜନକ ନବରେ ଯାଇଣ ମିଳିଲେ ।
ସୁମନ୍ତ ଋଷିଙ୍କି ଯେ ଦେଖି ସକଳ
ମାନ୍ୟ ଧର୍ମ କରିଣ ବସାଏ ସଭାର ।
ବ୍ରହ୍ମଋଷି ଚାହିଁ ବୋଲନ୍ତି ଜନକ
ଦୁହିତା ନାମ ଗୋଟି କିସ ଦେବା ଲେଖ ।
ଅଗସ୍ତି ବୋଇଲେ ଏ ବୈଦେହୀ ମଣ୍ଡଳ
ବଇଦେହୀ ନାମ ହୋଇ ହୋଇବ ଏହାଙ୍କର ।
ମାରକଣ୍ଡ ବୋଇଲେ ଜାନକୀ ନାମ ସାର
ଯାଗଶାଳାରୁ ଯେଣୁ ଉତ୍ପତ୍ତି ତାଙ୍କର ।
ନାରଦ ବୋଇଲେ ସୀତା ନାମ ଏହାର ହେଉ
ସତ୍ୟ ମନେ ଉପୁଜିଲା ନବଯୁବା ଯହୁଁ ।
ଶୁଣି ଜନକ ଋଷି ପରମ ତୋଷ ହେଲେ
ତିନି ନାମ ସାର ବୋଲି ସବୁଙ୍କି କହିଲେ ।
ସନାତନ ଋଷି ବୋଇଲେ ଶୁଣ ଜନକ ଋଷି
ସ୍ୱର୍ଗରୁ ଦେବତା ଏମୋତେ ଅକ୍ଷତ ଦେଇପେଷି ।

ନାରାୟଣ ଘରଣୀ କମଳା ଜାତ ହେଲା
ତେଣୁ ସିନା ଦେବତାଙ୍କ ଅକ୍ଷତ ଅଇଲା ।
ଦେବତାଏ ବୋଇଲେ ଶିବଧନୁ ସେ ଆଞ୍ଚିବ
ସୀତା କମଳିନୀଙ୍କୁ ସେହି ବିଭା ହେବ ।
ଆଜଠାରୁ ଏଗାର ବରଷ ପର୍ଯ୍ୟନ୍ତେ
ଏଗାର ଥର ଧନୁଯାଗ କରିବେ ଜନକେ ।
ଜନକ ବୋଇଲେ ଏ ଅଟଇ ପ୍ରମାଣ
ସୀତାପାଇଁ ଧନୁଯାଗ କରିବି ଭିଆଣ ।
ଏମନ୍ତ କହିବାରୁ ସନାତନ ଗଲେ
ଅକ୍ଷତ ନେଇ ବଇଦେହୀ ଶିରରେ ଦେଲେ ।
ଜାନକୀଙ୍କ ଶିରରେ ଅକ୍ଷତ ରଷିମାନେ ଦେଲେ

× × ×

ରଷି ଅକ୍ଷତ ପାଇ ପରମ ତୋଷ ହେଲେ
ସୀତା ବୁଦ୍ଧିରେ ବଳବନ୍ତ ସୁନ୍ଦରୀ ଜଗଜିତା ।
ଅକ୍ଷତ ଦେଇଣ ସେ ସନାତନ ଗଲେ ।
ଦେବଙ୍କର ଆଗରେ ପ୍ରବେଶ ହୋଇଲେ ।
ସକଳ କୁଶଳ ଦେବତାଙ୍କୁ କହି
ଶୁଣିଣ ଦେବତାଏ ଶୂନ୍ୟରେ ଚଳିଯାଇ ।
ସୁଧର୍ମା ସଭା ଘେନି ସ୍ୱର୍ଗରେ ଯାଇ ମିଳି
ହରଷରେ ଦେବତା ଯେ ଯାହା ପୁଣ ଚଳି ।
ପାର୍ବତୀ ବୋଇଲେ ସେଠାରୁ କିସ ହେଲା
କି ରୂପେ ଜନକ ରଷି ଯାଗରେ ହେଲେ ତୋରା ।
ଈଶ୍ୱର ବୋଇଲେ ଶୁଣ ହେ ଭଗବତୀ
ପାଞ୍ଚମାସ ଯିବାର ଅଶ୍ୱିନମାସ ସମ୍ପୂର୍ଣ୍ଣଟି ।
କାର୍ତ୍ତିକ ମାସ ପ୍ରଥମ ଦିନରୁ ବୃଷ୍ଟି ଛାଡ଼ି
ଯାଗ ଆରମ୍ଭ କଲେ ସକଳ ରଷି ମିଳି ।
ନାରଦ ବୋଇଲେ ଶୁଣ ହେ ଜନକ
ସୁବର୍ଣ୍ଣର ମଞ୍ଜୁଷକୁ ମଧରେ ନେଇ ରଖ ।
ଚନ୍ଦନ ଅଗୁରୁ କାଠ ଚାରିପାଖେ ବେଢ଼ି
ହୋମ କଲେ ମଞ୍ଜୁଷ ହୋଇବ ଭସ୍ମ ପରି ।
ତେଣୁ ଯାଗ ତରୁରେ ହୋଇବେ ସେ ବୀର୍ଯ୍ୟ
ସେ ବୀର୍ଯ୍ୟରୁ ଜାତ ହୋଇବ ମହାତେଜ ।
ସେ ତେଜ ମୂର୍ତ୍ତି ଦୁହିତା ସର୍ବଜ୍ଞ ହେବ
ଅନନ୍ତ ଈଶ୍ୱରଙ୍କୁ ସେ ନାରୀ ଲଭିବ ।
ସୁନ୍ଦର ପଣେ ସେ ଯେ ପାର୍ବତୀଙ୍କି ଜିଣି
ଦେଖିଲେ ମୋହଦେବ ସୁରମୁନି ପୁଣି ।

ଶୁଣିଣ ଜନକ ରଷି ହରଷ ହୋଇଲେ ଏବେ
ଅଯୋନି ବେନି ଦୁହିତା ମୋ କୁଳ ଉଦ୍ଧାରିବେ ।
କେବଳ ଆମ୍ଭ ବେନି ଭାଇଙ୍କର ନାହିଁ ପୁତ୍ର ପୁଣ
ଏ କଥାରେ ଚିନ୍ତାର୍ଥ ଆମ୍ଭେ ରହିଲୁ ଜାଣ ।
ନାରଦ ବୋଇଲେ ତୁମ୍ଭକୁ ତିନି ସହସ୍ର ବର୍ଷ ତ
ନବ ସହସ୍ର ବର୍ଷରେ ହେବେ ତୁମ୍ଭର ପୁତ୍ର ।
ଯେତେବେଳେ ଝିଅ ଜୁଆଇଁ ସୁଦୟା କରିବେ
ସେତେବେଳେ ବେନିଭାଇ ଚାରିପୁତ୍ର ପାଇବେ ।
ଶୁଣିଣ ରଷିଗଣେ ବିପ୍ରଗଣେ ପୁଣି
ଯାଗଶାଳେ ପ୍ରବେଶ ହୋଇଲେକ ଜାଣି ।
ଅଗସ୍ତି ବୋଇଲେ ଆଚାର୍ଯ୍ୟ ବରଣେ ମାର୍କଣ୍ଡ
ନାରଦ ଦୁର୍ବାସା ଯେ ଅଷ୍ଟବକ୍ର ବିଭାଣ୍ଡ ।
ପାରେଶ୍ୱର ଗଉତମ ବିଶ୍ୱାମିତ୍ର ପୁଣ
ଏତେ ରଷିଙ୍କି ଜନକ ବରିଲେକ ପୁଣ ।
ଆଉ ରଷି ସକଳେ ବେଦଧ୍ୱନି କଲେ
ବିପ୍ରମାନେ ମନ୍ତ୍ର ସୁମରି ପଢ଼ିଲେ ।
ଜନକ ରଷି ଆହୁତି ଦେଲେକ ଅଗ୍ନିରେ
ପ୍ରାଞ୍ଜଳିତ ହୋଇଣ ଜଳିଲେ ବୈଶାନରେ ।
କୃଷ୍ଣପକ୍ଷ ଶୁକ୍ଳପକ୍ଷ କାର୍ତ୍ତିକେ ହୋମ ହେଲା
ଦ୍ୱିପକ୍ଷ ହୋମରେ ମଞ୍ଜୁଷା ରୂପ ହେଲା ।
ମାର୍ଗଶିର ବେନିପକ୍ଷ କଲେ ହୋମ ପୁଣ
ନବମୁଖା ନାସିକା ବାହୁ ପାଦ ଜାଣ ।
ସର୍ବାଙ୍ଗେ ରତ୍ନ ଭୂଷଣ ଅଳଙ୍କାର ପିନ୍ଧି
ଜ୍ୟୋତି ତାର ଦିଶିଲା ଅଗ୍ନିର କାନ୍ତି ନିନ୍ଦି ।
ଚାରିପକ୍ଷ ସରନ୍ତେ ବେନିପକ୍ଷ ଗଲା
ପାଞ୍ଚପକ୍ଷରେ ଦେବୀ ଯେ ଜୀବ ପାଇଲା ।
ପାର୍ବତୀର ଷଡ଼କଳା ତୁଟିଣ ଆସି ପୁଣି
ଅଗ୍ନି ବିଦାରଣଠାରେ ପ୍ରବେଶ ହେଲା ଜାଣି ।
ପାଞ୍ଚପକ୍ଷେ ଅତୁଟ ନାରୀ ଅଗ୍ନିରୁ ହେଲେ ଜାତ
ଯେଣୁ ସେ ଅଗ୍ନିକୁ ଜିଣି ଦିଶେ ଦେବୀରୂପ ।
ଅଗ୍ନିରୁ ଦେବୀ ଆସିଣ ଧରଣୀ ପରେ ଉଭା
ଦେଖିଣ ରଷି ବ୍ରାହ୍ମଣ ସକଳ ମନେ ଲୋଭା ।
ପୂର୍ଣ୍ଣ ଆହୁତିରେ ଯାଗ ସମାପତ କଲେ
ଦୁଧସର ଲବଣୀ ଅମୃତ ସଂଯୋଗିଲେ ।
ଶୀତଳ ହୋଇ ଅଗ୍ନି ନିବର୍ତ୍ତି ନିର୍ବିକାର
ପ୍ରଥମ ଯାଗ ସମାପ୍ତ ହେଲା ଜନକର ।

ଶିବ ଧନୁ ପୂଜାକରି ସେ କନ୍ୟା ନାମ ଦେଲେ
ରୂପ ଗୁଣ ସୁନ୍ଦର ଦେଖି ଉର୍ମିଳା ବୋଇଲେ ।
ନାମ ଦେବାରୁ ସେ କନ୍ୟାପରମ ତୋଷ ହେଲା
ନବଯୁବା ସ୍ୱରୂପରେ ତେଜ ପ୍ରକାଶିଲା ।
ଦେବରଷି ବିପ୍ରଙ୍କୁ ଓଳଗେ ଦେବୀ ହୋଇ
ଝଟକ ବିଜୁଳି ପ୍ରାଏ ସେଠାରୁ ଚଳିଯାଇ ।
ଜନକ ଅନ୍ତଃପୁରେ ହେଲେ ପରବେଶ
ଜନକ ରାଣୀହଂସଙ୍କୁ ଓଳଗେ ହରଷ ।
ଜାନକୀର ଚରଣ ନମିଲେ ଶତବାର
ବୋଇଲେ ସ୍ୱାମୀ ଦର୍ଶନ ବାରବର୍ଷ ଅନ୍ତର ।
ପାର୍ବତୀ ବୋଲେ ଜାନକୀ ଉର୍ମିଳା ଜନ୍ମ ମୁଁ ଶୁଣିଥିଲି
ମାଳିନୀ ସୁମାଳିନୀଙ୍କ କଥା ମୁଁ ନ ଜାଣିଲି ।
ଅଯୋନି ସମ୍ଭୂତରେ ଏ ଦୁହେଁ ଜାତ ହେଲେ
ଉର୍ମିଳା ରଜସ୍ୱଳା ନ ଜାଣିଲି ଭଲେ ।
ଈଶ୍ୱର ବୋଇଲେ ସେ କଥା ଏବେ ଶୁଣ
ଷଡ଼ଦିନେ ଉର୍ମିଳା ରଜସ୍ୱଳା ହେଲା ଜାଣ ।
ଏଗାର ଦିନେ ଶୁଦ୍ଧ ସ୍ନାନ କଲେ ଅଦ୍ଭୁତ ନାରୀ
ହୁତାଶନ ଜାଳିଣ ଅଗ୍ନିରେ ସ୍ନାନକରି ।
ଦେଖିଣ ଜନକରାଣୀ ପରମ ତୋଷ ହେଲେ
ନୀଳବର୍ଣ୍ଣ ଅମଳାଣ ପିନ୍ଧିଣ ବାହାରିଲେ ।
ରାଜ୍ୟର ନରନାରୀ ହେଲେ ଚମତ୍କାର
ବେନି ଦୁହିତା ଅଗ୍ନିସ୍ନାନ ଦେଖି ନୟନର ।
ଉର୍ମିଳା ତିନି ମାସରେ ଥରେ ରଜସ୍ୱଳା
ଶୁଦ୍ଧ ସ୍ନାନ ଅଗ୍ନିରେ ସେ କରଇ ଅବଳା ।
ପକ୍ଷକରେ ଜାନକୀ ପାକସ୍ୱରଶ ଧରେ
ଅଗ୍ନିରେ ସ୍ନାନ ସେହୁ କରନ୍ତି ହରଷରେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଶାକମ୍ଭରୀ
କୁଶଧ୍ୱଜ ରାଣୀ ଗର୍ଭ ବାସରେ ଭାରି ।
ତିନିମାସ ଷଡପକ୍ଷ ଗଲାକ ତାର ବହି
ତା' ପକ୍ଷରୁ ବାରଦିନ ଭୋଗକରେ ସେହି ।
ତେର ଦିବସେ ସେହୁ ରାଣୀ ପାଇଲା ପୁଣ ଦୁଃଖ
ଶୂଳ ଆସେ ଘନ ଘନ ପାଇଲା ବିମୁଖ ।
ମାଘ ମାସ କୃଷ୍ଣପକ୍ଷ ତ୍ରୟୋଦଶୀ ଦିନ
ରବିବାରେ ଚୌଦଘଡ଼ି ବେଳ ସମୟେଣ ।
ଦୁହିତାଏ ଜାତ ହୋଇଲାକ ପୁଣ
ପୁଣି ହିଁ ଶୂଳ ଆସେ ଘନ ଘନ ।

ଦେଖିଣ ନାରୀମାନେ ଆଚମ୍ଭିତ ହେଲେ
ଏକି ବିପରୀତ ବୋଲି ପୁଣି ହିଁ ବୋଇଲେ ।
କେହୁ ବୋଲଇ ଆଉ କିସ ହୋଇବକି ଜନ୍ମ
ଏଥିରେ ଜାଉଁଳି ହୋଇ ଜାତ ହୋନ୍ତି ପୁଣ ।
ଏମନ୍ତେ କହୁ କହୁ ଦୁହିତାଏ ଜାତ
ଗାୟତ୍ରୀ ସାବିତ୍ରୀ ପ୍ରାୟ ଦିଶନ୍ତି ସଞ୍ଜାତ ।
ଇନ୍ଦ୍ରଙ୍କର ଶଚୀ ପ୍ରାୟେ ଦିଶନ୍ତି ଶୋଭାବନ
ଚନ୍ଦ୍ର ରାଣୀ ରୋହିଣୀ ପରା ଏକ ଜାଣ ।
ଦେଖିଣ କୁଶଧ୍ୱଜ ରାଣୀ ହଂସ ପୁଣି
ଜାଉଁଳି ଦୁହିତା ରାଜାଙ୍କୁ କହିଲେକ ବାଣୀ ।
ଶୁଣିଏ ଦାସୀଏ ଯାଇ ରାଜାଙ୍କୁ କହିଲେ
ସୁନାମୋହିନୀ ରାଣୀ ଗର୍ଭ ବେନି ଝିଅ ଜାତହେଲେ ।
ଶୁଣିକରି ହରଷ ହୋଇଲେ ରାଜନ
ବଧାଇ କରି ଧନ ବହୁତ ଦାସୀଙ୍କି ଦେଲେ ପୁଣ ।
ଆନନ୍ଦ ହୋଇ ଦାସୀ ଫେରିକରି ଗଲା
ଫୁଲନାଡ଼ ଛେଦିକରି ସ୍ନାନ କରାଇଲା ।
ଇକୁଡ଼ି ଲଗାଇଣ ବେନି ଦୁହିତା ସେକି
ପଞ୍ଚୁଆତି ଷଠୀଘର ସାରିଲେକ ସେଥି ।
ସାତଦିନେ ଏକୁଡ଼ିକି କଲେ ଅନ୍ତର୍ଭୁକ୍ତ
ରାଣୀ ଦୁହିତା ସ୍ନାନ କଲେ ଯେ ତୁରିତ ।
ବାରଦିନେ ବାରଯାତ୍ରା କଲେ ସେ ବିହିତ
ଏକୋଇଶା କରିଣ ହରଷ କଲେ ଚିତ୍ତ ।
ମାସକ ସମ୍ପୂର୍ଣ୍ଣରେ କୁଶଧ୍ୱଜ ଗଲେ ।
ମିଥିଳା କୋଶଳ ଦେଶରୁ ବ୍ରାହ୍ମଣ ବରିଲେ ।
ସେ ବେନି ଦୁହିତାଙ୍କର ନାମକରଣ ପୁଣି
ଦୂର୍ବାଧା ଦୋଇଲେ ଶୁଣ ସକଳ ତୁମ୍ଭେ ମୁନି ।
ଏ ବେନି ଦୁହିତା ଯେ ସୁନ୍ଦର ସୁଲକ୍ଷଣୀ
ଗାୟତ୍ରୀ ସାବିତ୍ରୀ ପ୍ରାୟେ ଦିଶନ୍ତି ଦୁହେଁ ପୁଣି ।
ବଡ଼ ଦୁହିତା ନାମ ମାଳିନୀ ସାନ ସୁମାଳିନୀ
ଏ ବେନି ଦୁହିତା ଯେ କମଳା ଅଂଶେ ଜନ୍ମି ।
ସପ୍ତ ବର୍ଷ ଏ ଯେ ହୋଇବେ ନବଯୁବା
ରଜନୀରେ ପ୍ରବଳ ହୋଇବ ଯାଙ୍କ ପ୍ରଭା ।
ଶଶୀଧର ପ୍ରାୟେ ଯାଙ୍କ ବିକାଶିବ ମୁଖ
ଏଗାର ବର୍ଷ ପାଞ୍ଚମାସେ ପାଇବେ ସ୍ୱାମୀ ସୁଖ ।
ଚାରି ଭଗ୍ନୀଯାକ ଏହୁ ଏକୁ ଏକେ ଜିଣା
ପାଇବେ ଉତ୍ତମ ବର ବିଷ୍ଣୁର ଅଂଶ ସିନା ।

ନାମ ଦେଇଣ ଋଷି ବ୍ରାହ୍ମଣ ଚଳିଗଲେ
ଅନେକ ଧନରତ୍ନ ବେନି ରାଜନ ଦେଲେ ।
ଋଷି ବ୍ରାହ୍ମଣଙ୍କୁ ସେ ଦେଲେ ବେନି ଦୁହିତା
ଦଣ୍ଡ ପ୍ରଣାମ ଛାଡ଼ିଲେ ସବୁ ଚିନ୍ତା ।
ଋଷି ବିପ୍ରେ ଅକ୍ଷତ ଦେଇଣ ଚଳିଗଲେ
ଯେ ଯାହା ଆଶ୍ରମରେ ଯାଇଣ ମିଳିଲେ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିଲୋଚନ
ଅଯୋଧ୍ୟାରେ କି କଲେ ଦଶରଥଙ୍କ ନନ୍ଦନ ।
ସେହିକଥା ଫଳାଇଣ କହିବା ମୋତେ ହେଉ
ତ୍ରିଲୋକ ଠାକୁର ଯେ ଅଟନ୍ତି ରାମ ରାହୁ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ସେ କଥା ଗୋଟି ତୋତେ ଫଳାଇ କହିବାଟି ।
ଦଶମାସ ସମ୍ପୂର୍ଣ୍ଣେ ଧୀର ହୋଇ ବସି
ବରଷକେ କାନ୍ଥ ବାଡ଼ ଧରି ଉଭା ସେଟି ।
ଦିନକୁ ଦିନ ଚାଲନ୍ତି ଧାଈଙ୍କ କର ଧରି
ଆନୁ ଆନରେ ସେହି ଚାଲନ୍ତି ଫେରିକରି ।
ରତ୍ନ ପାହୁଡ଼ ସେ ନୂପୁର ଶୋହେ ଗୋଡ଼େ
ଚାପସରି ହେମକଣ୍ଠି ପଦକ ବକ୍ଷସ୍ଥଳେ ।
ବନମାଳ ଚନ୍ଦ୍ରହାର କର୍ଣ୍ଣରେ ବିରାଜେ
ହସ୍ତରେ ରତ୍ନ ଖଡ଼ୁ ସୂର୍ଯ୍ୟ କିରଣ ନିନ୍ଦେ ।
କଟୀରେ କଟୀ ମେଖଳା ଘାଗୁଡ଼ି ରତ୍ନ ଘୋରି
ଚାଲିବାରେ ଚାରିପୁଏ ଦିଶନ୍ତି ଶୋଭା କରି ।
ବାହୁରେ ବାହୁଟୀ ଯେସନେ ଆଦିତ୍ୟ
ଅଙ୍ଗୁଷ୍ଠିରେ ରତ୍ନ ମୁଦି ନାୟକ ମାଣିକ୍ୟ
ଚାରିପୁତ୍ର ବସନ୍ତ ଅମଳାଣ ପିନ୍ଧି
ଚାରି ପୁତ୍ରଙ୍କ ହସ ଦେଖି ସକଳ ରାଣୀ ବନ୍ଦି ।
ପିତାଙ୍କୁ ଦେଖି ପୁତ୍ରେ ଲାଜ ଲାଜ କରି
ଧାଇଁ କୋଳେ ଯାଇ ବସନ୍ତି ସେହୁ ଫେରି ।
ଦଶରଥ ବୋଲନ୍ତି ଆସ ଆସ ବାବୁ
ଏ ଯେତେ ସମ୍ପତ୍ତିମାନ ତୁମ୍ଭରି ସିନା ସବୁ ।
ନୀଳବଦନ ଗୋଟି ଯେପରି ମୁଣ୍ଡାଯାଇ
ରଘୁବଂଶ କୁଳକୁ ଯେ ତୁମ୍ଭେ ଅଟ ଗ୍ରାହୀ ।
ଶ୍ରୀରାମ ଲକ୍ଷଣ ଯେ ଭରତ ଶତୃଘନ
ଚାରି ପୁତ୍ରକୁ ବେଢ଼ି ଖେଳାନ୍ତି ନାରୀଗଣ ।
ଧାଈମାନଙ୍କ କୋଳେ ବସନ୍ତି ପୋଏ ଯାଇ
ଦଶରଥ ପଚାରନ୍ତି ପୁତ୍ରଙ୍କୁ କେତେ ବର୍ଷ ହୋଇ ।

କୌଶଲ୍ୟା କହନ୍ତି ଆଜକୁ ଦୁଇ ବର୍ଷ ଗଲା
ଅଘର ବରଷ ଆସି ପୁତ୍ରଙ୍କୁ ହୋଇଲା ।
ଜ୍ୟେଷ୍ଠ ମାସ ଦୁଇବର୍ଷ ବେନିମାସ ୭ ଦବସ ହୋଇ
ରାଣୀଙ୍କର କଥା ଶୁଣି ଦଶରଥ କହି ।
ଅଢ଼ାଇ ବରଷ ଯେବେ ହେଲା ପରବେଶ
କର୍ଣ୍ଣ ବିଧ କରିବା ଏହି ଆଷାଢ଼ ମାସ ।
ଚତୁର୍ମାସ୍ୟା ହୋଇଲେ ନୋହିବ କର୍ଣ୍ଣବିଧ
ପୂର୍ବରୁ ଆମ୍ଭବଂଶରେ ଅଛି ଏସନ ବିଧିଯୋଗ ।
ରାଣୀମାନଙ୍କୁ ବୁଝାଇ ଦଶରଥ କହେ
ନି ଅବକାଶ ବିଜେ ବଶିଷ୍ଠ ଋଷି ହୋଏ ।
ପାତ୍ର ମନ୍ତ୍ରୀକି ଡକାଇଣ କରେ ବିଚାରଣ
କର୍ଣ୍ଣବିନ୍ଧ କରିବା ଅନୁକୂଳ ଏବେ ପୁଣ ।
ଏମନ୍ତ ବଚନ ବୋଲେ ଅଯୋଧ୍ୟା ଈଶ୍ୱର
ଶୁଣିଷ ଜ୍ୟୋତିଷ ଡାକିଲେ ମନ୍ତ୍ରୀବର ।
ବୁଝିଲେ ଜଉତିଷ ଖଡ଼ି ବେଗେ ପାଡ଼ି
ଆଷାଢ଼ ଶୁକ୍ଳ ଦଶମୀ ବେଳ ଚାରିଘଡ଼ି ।
ଏଥିରେ ଅନୁକୂଳ କରହେ ବିଚାରି
ଗ୍ରହ ନକ୍ଷତ୍ର ଲଗ୍ନ ସମସ୍ତେ ଶୁଭକାରୀ ।
ଶ୍ରୀରାମଙ୍କ ନକ୍ଷତ୍ରକୁ ଅଟେ ମିତ୍ର ତାର
ଚତୁର୍ଥ ତାର ଯାଇ ପଞ୍ଚମୀ ବଳୀୟାର ।
ଏହି ଦିବସ ଦୁଇଘଡ଼ି ସମୟରେ ବେଳ
ଆବର ତିନି ପୁତ୍ରଙ୍କ ଶୁଣ ଅନୁକୂଳ ।
ଶୁକ୍ରର ବେଳରେ ନକ୍ଷତ୍ର ଅପରାଜିତା
ବେଳେ ପହରକେ ଶ୍ରୀରାମ ଘେନିଲେ ପଇତା ।
ଲକ୍ଷ୍ମଣ ଶତୃଘ୍ନ ଦୁଇ ଭାଇଙ୍କର ପୁଣ
ପାଞ୍ଚଘଡ଼ି ବେଳଠାରେ ଅନୁକୂଳ ଜାଣ ।
ଚତୁର୍ଥ ଯାଇ ପଞ୍ଚମ ସମସ୍ତଙ୍କୁ ହେବ
ମିଥୁନ୍ କକଡ଼ା ଦୁଇ ଲଗ୍ନ ଘଟିଥିବ ।
କର ଶୁଭ କାର୍ଯ୍ୟ ଯେ ମହେନ୍ଦ୍ର ବେଳ ଏହୁ
ଶ୍ରୀରାମଙ୍କୁ ଦଶମରେ ଅଛନ୍ତି ଏକା ରାହୁ ।
ଦେବଗୁରୁ ପଞ୍ଚମେ ଷଷ୍ଠମେ ପବିତ୍ର ।
ରାଜନ ଶୁଣି ଯେ ସୁମନ୍ତ ମୁଖ ଚାହିଁ
କର ସମ୍ଭାର ବେଗେ ଯେ ତୁମ୍ଭେ ଏଥୁଯାଇ ।
ରଜନୀରେ ଯାଇ ଯେ କରିବ ଭିଆଣ
ପ୍ରଭାତରେ ଅନୁକୂଳ କରିବା ଯେ ପୁଣ ।

ଶଙ୍କର କହିଲେ ତୁମ୍ଭେ ଶୁଣ ଭଗବତୀ
ଶୁଣିକରି ସୁମନ୍ତ କେବେ ଚଳି ଯାନ୍ତି ।
ନବର ମଣ୍ଡିଣ କରି ଛାମୁଣ୍ଡିଆ କଲେ
ଲୋକ ଲଗାଇ ମନ୍ତ୍ରୀ ଉଦ୍‌ଯୋଗ ଦେଲେ ।
ଛାମୁଣ୍ଡିଆ ଭିଆଣ କଲେ ତତ୍‌କ୍ଷଣ
ଚିତ୍ର ବିଚିତ୍ର ପୁର କଲେକ ଭିଆଣ ।
ଇନ୍ଦ୍ର ଗୋବିନ୍ଦ ଚାନ୍ଦୁଆ ଉପରେ ଟଣା ହେଲା
ବାଦ୍ୟକାରୀମାନଙ୍କୁ ହରଷେ ଡକାଇଲା ।
ସକଳ ସମ୍ଭର୍ବ ବେଗେ କରି ମନ୍ତ୍ରୀବର
ରଜନୀର ଶେଷରେ ଯେ ସମ୍ପୂର୍ଣ୍ଣ ସକଳ ।
ଅଶ୍ୱିନୀ ନକ୍ଷତ୍ର ଯେ ରଜନୀ ପ୍ରଭାତରେ
ରଜନୀ ପାହିବାରୁ ସେ ଦେଖିଲେ ସକଳେ ।
ଛାୟା ମଣ୍ଡପ ଦେଖିବାକୁ ବିଜୟ ଦଶରଥ
ଦେଖିକରି ଦଶରଥ ସନ୍ତୋଷ ହେଲେ ରଘୁଗୋତ୍ର ।
ଦେଖିଣ ସକଳ ସ୍ନାନ ଫେରିଣ ଅଇଲେ
ମାଜଣା ହୋଇ ସ୍ନାହାନ ବେଗେ ସାରିଲେ ।
ଧାଈ ମୃଦୁସୁଲୀ ରାଣୀମାନେ ପୁଣ
ସ୍ନାନ ଶଉଚ ଯେ ହୋଇ ତତ୍‌କ୍ଷଣ ।
ସାମନ୍ତ ମନ୍ତ୍ରୀମାନେ ସ୍ନାନକରି ଆସେ
ବିପ୍ରେ ଜ୍ୟୋତିଷେ ଜାଣି ହୋଇଲେ ହରଷେ ।
ବଶିଷ୍ଠ ଋଷି ସ୍ନାନ କରିଣ ବିଜେ କଲେ
ବାଦ୍ୟ ଶଙ୍ଖ ମହୁରୀ ବାଜିଲା ସିଂହ ଦ୍ୱାରେ ।
ଚାରିପୁତ୍ର ଘେନି ସଙ୍ଗେ ବିଜେ ଦଶରଥ
କନକ ମଣ୍ଡପରେ ବସିଲେ ଯାଇ ସୁତ ।
କୁଳର ପୁରୋହିତ ବଶିଷ୍ଠ ମହାମୁନି
ଅଗ୍ନିକି ଆରୋହଣ କଲେକ ବ୍ରହ୍ମମୁନି ।
ପୂର୍ଣ୍ଣକୁମ୍ଭ ସ୍ଥାପିଣ ବରୁଣ ପୂଜା କଲେ
ନବଗ୍ରହ ଦଶଦିଗ ପାଳଙ୍କୁ ଆହୁତି ଦେଲେ ।
ଚୂଡ଼ା କର୍ମ ଆରମ୍ଭ କଲେକ ବିପ୍ରଗଣ
ଦଶକର୍ମ ଭିତରୁ କଲେକ ବେନି କର୍ମ ।
ଶୁଭ ଯୋଗ ବେଳରେ କଲେକ ବେଦକର୍ମ
ବାଜେ ବାଜା ଶଙ୍ଖ ମହୁରୀ ବିବିଧ ଛନ୍ଦେଣ ।
ପାଞ୍ଚଘଡ଼ି ସମୟରେ ସାରିଲେ କର୍ଣ୍ଣବିଧ
କର୍ଣ୍ଣବିଧ ସାରି ବେଦ କଲେକ ସମ୍ବାଦ ।
ଶାମ ବେଦରେ ହୋମ କଲେ ବ୍ରହ୍ମ ଋଷି
ଷଡ଼ କର୍ମ ବିଧି ଯେ ସାରିଲେ ସକଳେ ବସି ।
ଷଡ଼କର୍ମ ସରିବାରୁ ନୃପତି ଶାନ୍ତି ମୂର୍ତ୍ତି
ପୂର୍ଣ୍ଣ ଆହୁତି ବିଧି କଲେକ ପୁଣି ସେଥି ।
ଚନ୍ଦନ କର୍ପୂର ଯେ ନଳ ଘୋଷାମଣୀ
ଅଗ୍ନିକି ଦେଇଣ ସେ ଶୀତଳ କଲେ କିନା ।
ହୋମକର୍ମ ସାରିକରି ଦଶରଥ ଗଲେ
ଚାରି ପୁତ୍ରଙ୍କୁ ଅନ୍ତଃପୁରକୁ ଛାଡ଼ିଦେଲେ ।
ପୁତ୍ରମାନଙ୍କୁ ଦେଖିଣ ସକଳ ରାଣୀ ପୁଣ
ଆନନ୍ଦରେ ହୁଳହୁଳି ସର୍ବେ ଦେଲେ ଜାଣ ।
ଏଥି ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଦଶରଥ ପାତ୍ର ମନ୍ତ୍ରୀ ଡକାଏ ବେଗେ କରି ।
ବୋଇଲେ ଋଷି ବିପ୍ରଗଣେ ଭୋଜନ ଏବେ ଦିଅ
ଶୁଣିଣ ପାତ୍ର ମନ୍ତ୍ରୀ ହେଲେ ବଡ଼ ପ୍ରିୟ ।
ବିପ୍ର ଋଷିରେ ଭୋଜନ ଅମୃତ ରସ ଦେଲେ
ବିପ୍ର ମେଲାଣି ହୋଇଣ ଛାମୁକୁ ଅଇଲେ ।
ବଶିଷ୍ଠ ଋଷି ଗଲେ ନିଜ ଯେ ମନ୍ଦିରେ
ସାମନ୍ତ ପାତ୍ର ଚଳିଗଲେ ନିଜ ନିଜ ପୁରେ ।
ଏତେ କହି ସୁମନ୍ତ ନିଜପୁରେ ଗଲା ।
ରାଜନ ପୁରେ ହରଷ ଭାବ ଉପୁଜିଲା ।
ଦିନା କେତେ ଯିବାରୁ କର୍ଣ୍ଣ ଫାସିଆ ତିଆରଇ
ଦଶରଥ ବୀରବଲ୍ଲୀ ମୁକ୍ତା ଦେଲେ ନେଇ ।
ଚାରି ପୁତ୍ରଙ୍କ କର୍ଣ୍ଣରେ ଆଭରଣ କଲେ
ଶୁଣୁଛନ୍ତି ପାର୍ବତୀ ଯେ ଈଶ୍ୱର କହିଲେ ।
ପୁତ୍ରମାନଙ୍କୁ ଦେଖି ରାଣୀମାନେ ବଡ଼ ସୁଖ
ଦିନୁଁ ଦିନ ପୁତ୍ରମାନେ ସେହୁ ଯେ ବଢ଼ିଲେକ ।
ଏଥି ଅନନ୍ତରେ ଆସି ହେଲା ପାଞ୍ଚ ବରଷ
ଅନ୍ନ ଭୋଜନ ନିମନ୍ତେ ଦିନେ ଖୋଜିଲେ ବିଶେଷ ।
ଚଣ୍ଡ ପୁତ୍ର ବିପ୍ର ଋଷି ଡକାଇ ବୁଝିଲେକ
ବଶିଷ୍ଠଙ୍କୁ ପଚାରିଲେ କିସ ତାଙ୍କ ସୁତ ।
ଦଶରଥଙ୍କୁ ବୋଇଲେ ଶୁଣ ଅଯୋଧ୍ୟାର ରାଏ
ଏଚାରି ନନ୍ଦନଙ୍କୁ ଦେନି ଯେ ଯୋଗାଏ ।
ବୈଶାଖ ଶୁକ୍ଳପକ୍ଷ ତୃତୀୟା ବୁଧବାର
ଅମୃତଯୋଗ ସେ ଦିନେ ଅନ୍ନ ଭୁଞ୍ଜିବେ କୁମର
ନୂତନ ଅମଳା ପିନ୍ଧିବେ ଚାପିଭାଇ
ରତ୍ନ ପିଢ଼ା ଉପରେ ବସିଲେ ପୁଣ ଯାଇ ।
ରତ୍ନ ଖଡ଼ୁ ଚାରି ଗୋଟିରେ ଜଳନେଲେ
ଅନେକ ବାଟି ଗିନା ନେଇ ସମର୍ପିଲେ ।

ଅନ୍ନ ସଙ୍ଗରେ ଦୁଧସର ଦେଲାକ ଲବଣୀ
ଷଡ଼ରସେ ବ୍ୟଞ୍ଜନ ପରଶନ୍ତି ଆଣି ।
ସକଳ ରାଣୀ ରାଜା ଦେଖନ୍ତି ପାଶେ ରହି
ଚାରି ପୁତ୍ରେ ଭୋଜନ କରନ୍ତି ବସି ତହିଁ ।
ଆଚମନ କରାଇ ତାମ୍ବୁଳ ଭୁଞ୍ଜାଇଲେ
ରତ୍ନ ପଲଙ୍କ ଉପରେ ନେଇଣ ଶୁଆଇଲେ ।
ଆଲଟ ବିଞ୍ଚଣୀ ସର୍ବେ ଧରିଣ କାମିନୀ
ଚାରି କୁମରଙ୍କୁ ପଲଙ୍କରେ ବସାଇ ପୁଣି ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଭଗବତୀ
ସିଂହଦ୍ୱାରେ ରାଜନ ବିଜେକଲେ ଧାତି ।
ଦାରିଦ୍ର ଭିକ୍ଷୁକ ଜନେ ଅନ୍ନ ବସ୍ତ୍ର ଦେଲେ
ସଦାବର୍ତ୍ତ ଅନ୍ନ ବସ୍ତ୍ର ବାଟରେ ସଞ୍ଚିଲେ ।
ଶିବଲିଙ୍ଗେ ଦେଲେ ନେଇ ବେଲ ପତ୍ରୀ ତଣ୍ଡୁଳ
ଆମ୍ବ, ପଣସ, କଦଳୀ, ଛେନା ଶାକରର ।
ବିଷ୍ଣୁ ପ୍ରତିମାକୁ ଦେଲେ ଅନ୍ନ ଖିରି ପିଠା
ଅମୃତ ସମାନ ଭୋଜନ କରାଇ ମନଇଛା ।
ଇଷ୍ଟ ଦେବତାଙ୍କୁ ନିତି ଧୂପ ପାଞ୍ଚ ଅବକାଶ
ବିରଞ୍ଚି ନାରାୟଣ ହୋଇଲେ ଯେ ତୋଷ ।
ଗ୍ରାମେ ଗ୍ରାମେ ଦେବୀମାନଙ୍କୁ ମାଜଣା କରାଇ
ବୋଦା ଛାଗଳ ପୋଢୁଅ ତାଙ୍କୁ ଦେଇ ।
ଏଥୁ ଅନନ୍ତରେ ଅପୂର୍ବ କଥା ଶୁଣ
ଚନ୍ଦ୍ର ପୁତ୍ର ବିପ୍ର ଋଷି ଡକାଇ ରାଜନ ।
ବଶିଷ୍ଠ ସାମନ୍ତ ପାତ୍ର ଆସି ବେଗେ
ରାଜନର ଛାମୁରେ ମିଳିଲେ ସରାଗେ ।
ବାଦ୍ୟ ଶଙ୍ଖ ମହୁରୀ ଆଣି ବୋଲିକରି
ସୁମନ୍ତକୁ ଆଜ୍ଞା ଦେଲେ ରାଜନ ବିଚାରି ।
ରାଜନଙ୍କୁ ପଚାରିଲେ ବଶିଷ୍ଠ ତପୋଧନୀ
ପୁତ୍ର ବାଦ୍ୟ ବଢ଼ିବେ ଅନୁକୂଳ ଘେନି ।
ମାର୍ଗଶୀର ମାସ ଯେ ପଞ୍ଚମୀ ଗୁରୁବାର
ହସ୍ତା ନକ୍ଷତ୍ରକୁ ଶ୍ରୀରାମର ସାଧକ ତାର ।
ପ୍ରହରକ ଭିତରେ ବସିବେ ବାଦ୍ୟ ପଢ଼ି
ବୃହସ୍ପତି ଉଦୟ ବେନି ପାଞ୍ଚ ଘଡ଼ି ।
କୃଷ୍ଣପକ୍ଷ ଚତୁର୍ଥୀ ଅଟେ ଆଜ ଦିନ
କାଲି ପ୍ରହରକଠାରେ ପୁତ୍ର ଛୁଇଁ ଖଡ଼ିପୁଣ ।
ଶୁଣି କରି ରାଜନ ମନ୍ତ୍ରୀକି ବୋଲେ ବାଣୀ
ମଣ୍ଡଣି କର ନଵର ଉତ୍ସବ କର ପୁଣି ।

ଲକ୍ଷେ ଧେନୁ ଦୋହନ କରାଅ ଶିବଶିରେ
ଅମୃତ ଭୋଜନ କରାଅ ବିଷ୍ଣୁ ପ୍ରତିମାରେ ।
ବିରଞ୍ଚି ନାରାୟଣ ଇଷ୍ଟ ଦେବତା ଆମ୍ଭର
ତିନି ଧୂପ ପାଞ୍ଚ ଅବକାଶ ତାଙ୍କଠାରେ କର ।
ଦଧିଅନ୍ନ, ଖିରିପିଠା, ଅମତ ଯୋଗାଇଣ
ସମ୍ଭର୍ବେ କରାଅ ପ୍ରଶନ୍ନ ହୁଅନ୍ତୁ ଲମ୍ବୋଦର
ଗ୍ରାମଦେବତୀମାନଙ୍କୁ ମାଜଣା କରାଇବ
ବୋଦା ଛାଗଳ ଦେଇଣ ସନ୍ତୋଷ କରାଇବ ।
ଈଶ୍ୱରଙ୍କର ପୁତ୍ର ଯେ ଅଟନ୍ତି ଲମ୍ବୋଦର
ବେଶ କରାଅ ଚୁଆ ଚନ୍ଦନ ଦେଇ ଶିର ।
ଗୟସ ଦୁବୁରା ଯେ ତୁଳସୀ ବେଲପତ୍ରୀ
ଲମ୍ବୋଦରକୁ ଏମାନ ଦେଇକରି ଶାନ୍ତି ।
ତୁଳସୀ ପତ୍ରରେ ବିରଞ୍ଚିକି ତୋଷକର
ଏମନ୍ତ ବଚନ ଯେ କହିଲେ ମହୀଧର ।
ଦରିଦ୍ର ଦୁଃଖ ଜନକୁ ନେଇ ଦେଇ ଅନ୍ନ ବସ୍ତ୍ର
ପ୍ରଭାତୁ ଆହୁତି ଦେଇ ମନରେ ହେବ ତୋଷ ।
ଶୁଣିକରି ମନ୍ତ୍ରୀବର ବେଗେ ଚଳିଗଲେ
ସୁମନ୍ତକୁ ଡକାଇ କୁଶଳେ ଆଜ୍ଞାଦେଲେ ।
ଯେ ରୂପେ ରାଜନ କହିଣ ଥିଲେ ପୁଣ
ସେହିରୂପେ ମନ୍ତ୍ରୀ କଲେ ସକଳ ତିଆଣ ।
ରଜନୀର ଶେଷରେ ପ୍ରବେଶ ହେଲେ ଆସି
ଶଙ୍ଖ ମହୁରୀ ବାଦ୍ୟ ସଙ୍ଗରେ ଘେନାଇଟି ।
ଶିବଲିଙ୍ଗରେ ଦେଲେ ପୁଷ୍ପ ଦୁବୁରା ଗୟସ
ବେଲପତ୍ର ତୁଳସୀ ଭୋଗ ସେ ବିଶେଷ ।
ଲମ୍ବୋଦରକୁ ବେଶ ଯେ କରାଇଲେ ପୁଣ
ଗ୍ରାମଦେବତୀକୁ ମାଜଣା କଲେ ଜାଣ ।
ବିଷ୍ଣୁ ପ୍ରତିମା ବିରଞ୍ଚିକୁ ବେଶ କରାଇଲେ
ଦୁଃଖୀ ଦରିଦ୍ର ଲୋକଙ୍କୁ ଧନରତ୍ନ ଦେଲେ ।
ଦୁଃଖୀ ଲୋକଙ୍କୁ ଅନ୍ନ ବସ୍ତ୍ର ଦେଲେ ପୁଣ
ସକଳ ବିଧିମତେ ସାରିଲେ ମନ୍ତ୍ରୀ ଜାଣ ।
ରାଜନଙ୍କ ପାଶରେ ପ୍ରବେଶଯାଇ ହେଲେ
ବାଦ୍ୟ ଶଙ୍ଖ ମହୁରୀ ବଜାଇ ସିଂହଦ୍ୱାରେ ।
ଅନୁକୂଳ ବେଳରେ ତଣ୍ଡୁଳ ଫଳ ନେଇ
ପୁତ୍ରମାନଙ୍କୁ ଅଣାଇ ଋଷିଙ୍କ ପାଶେ ଦେଇ ।
ବିଘ୍ନରାଜ ସରସ୍ୱତୀ ପୂଜା ଆରାଧନ
ଶ୍ରୀରାମ ଲକ୍ଷ୍ମଣ ଯେ ଭରତ ଶତ୍ରୁଘନ ।

ପଢ଼ିଲେ ଶ୍ଳୋକ ଶାନ୍ତ ଯେ ନାନାବର୍ଣ୍ଣ ପାଠ
ଦିନକୁ ଦିନ ପଢ଼ି ସେ ବାଦ୍ୟରେ ଗରିଷ୍ଠ ।
ଶ୍ରୀରାମ ଦାସୀ ଯେଣୁ ଅଟନ୍ତି ଶାରଦା
ତାହାଙ୍କୁ କି ଅପୂର୍ବ ବାଦ୍ୟ ଅଟେ ଅବା ।
ସଂସାରେ ରଖିବା ନିମନ୍ତେ ମାନବ ରଘୁଧାରୀ
ନାନା ଶାନ୍ତ ବାଦ୍ୟ ଯେ ପଢ଼ିଲେ ମନେକରି
ସପତ ବରଷ ତେଣୁ ହୋଇଲାକ ଆସି
ବଶିଷ୍ଠ ଋଷିଙ୍କି ଘେନି ରାଜନ ଭାଳନ୍ତି ।
ଶ୍ରୀରାମଙ୍କୁ ଦେଖିମୁନି ଆନନ୍ଦସ୍ଵର ଚିତ୍ତ
ଦିଅ ଆଜ୍ଞା ମୁନି ତୁମ୍ଭ କରାଇବ ବ୍ରତ ।
ଚଣ୍ଡ ପୁତ୍ର ଡ଼କାଇ ମୁନି ପୁଣି ଆଗ
ଜନ୍ମ ପତ୍ରିକା ପଢ଼ିଣ ଜଣାଇଲେ ଯୋଗ ।
ପୁଣି ଗ୍ରହ ନକ୍ଷତ୍ରତିଥି ବେଳ ଧରି
ବୁଝିଲେ ଚଣ୍ଡ ପୁତ୍ର କି କରିଲେ ବିଧି କରି ।
ବୃହସ୍ପତି ଶୁଦ୍ଧି ଆଦିୟେ ପ୍ରସିଦ୍ଧି
ବ୍ରତ ଯୋଗାଏ ଶ୍ରୀରାମଙ୍କୁ କୁମ୍ଭ ସାତଦିନ ବିଧି
ଦୁଇମାସ ତେର ଦିନ ରହିଲାକ ଜାଣ
ପାତ୍ର ମନ୍ତ୍ରୀ ଡ଼କାଇ ରାଜନ ବିଚାରିଣ ମନେଣ ।
ଦଶରଥ ବୋଇଲେ ମୋ ବନ୍ଧୁ ଯେ ସହସ୍ରେ
ଲୋମପାଦରାଜା ବନ୍ଧୁ ଏଗାର ଶହ ବାସ୍ତରୀ ଅଟେ ।
ଦୁଇ ସହସ୍ର ଦୁଇଶ କର ହେ ବରଣ
ଏମାନେ ସର୍ବେ ପୁତ୍ରଙ୍କ ମଉଳା ବୋଲି ଜାଣ ।
ବଶିଷ୍ଠଙ୍କୁ କହିଣ ନାରଦ ଅଣାଇଲେ
ନମସ୍କାର କରି ରାଜା ଚରଣେ ଶୁତିଲେ ।
ବୋଇଲେ ବ୍ରହ୍ମମୁନି ବିନତି ମୋର ଘେନ
ଦେବରାଜା ଋଷି ଘେନି ପ୍ରବେଶେ ହେବ ଜାଣ ।
ଦୁଇମାସ ସତର ଦିନ କୁମ୍ଭ ସାତ ଦିନେ
ପୁତ୍ରକୁ ବ୍ରତ କରିବା କହିଲେ ମୁନି ଏଣେ ।
ଋଷିମାନଙ୍କ କଥା ତୁମ୍ଭଙ୍କୁ ହେଲା ଲଗା
ମୋହର ମାଗୁଣି ମୁନି ବାରେକ ଘେନିବା ।
ଶୁଣିଣ ନାରଦ ମୁନି ପରମ ତୋଷ ହେଲେ
ବ୍ରହ୍ମାଙ୍କ ଆଗେ ଯାଇଣ ନାରଦ କହିଲେ ।
ଶୁଣିକରି ପିତାମହ ସ୍ଵର୍ଗକୁ ଚଳିଗଲେ
ସୁଧର୍ମା ସଭାରେ ଦେବରାଜାଙ୍କୁ କହିଲେ ।
ଦଶରଥଙ୍କ ନନ୍ଦନ ଶ୍ରୀରାମ ହେବେ ବଟୁ
କୁମ୍ଭ ସାତଦିନ ଯଜ୍ଞୋପବୀତ ଘେନିବେ ପ୍ରଭୁ ।।

ସକଳ ଦେବତାଏ ଶୁଣିଥାଅ ଏବେ
ନାରାୟଣଙ୍କ ସୁଲଭ ଦେଖିବ ଯାଇ ସର୍ବେ ।
ଶୁଣିଣ ଦେବତାଏ ବୋଇଲେ ବଚନ
ଅତୁଟ ଯଜ୍ଞପବିତ ଦେବ ତୁମ୍ଭେ ପୁଣ ।
ଛାୟାପତି ଦେବେ ଅମଳାଣ ବସ୍ତ୍ର
ସୁରରାଜା ଦେବେ ଅମଳାଣ ପୁଷ୍ପ ।
କୁବେର ଦେବେ ଯେ ରତ୍ନରେ ଚାରି ପିଢ଼ା
କଟକମ୍ପା ଦେବେ ଚନ୍ଦ୍ର ଦେବତା ପରା ।
ସକଳ ଦେବେ ନେଇ ଦେବେ ଅକ୍ଷତ ପୁଣ
ଇନ୍ଦ୍ର ଗୋବିନ୍ଦ ଛାମୁଣ୍ଡିଆଟି ଚାନ୍ଦୁଆଟି ଜାଣ
କହିକରି ଦେବବର ବେଗେ କରି ଗଲେ
ଯଶୋବନ୍ତୀ ପୁରେ ଯାଇ ପ୍ରବେଶ ହୋଇଲେ ।
ଶୁଣିଣ ସକଳ ଦେବେ ଉଠି ଚଳିଗଲେ
ଯେ ଯାହାର ଆଶ୍ରମରେ ଯାଇଣ ମିଳିଲେ ।
ବନ୍ଧୁଙ୍କୁ ନିମନ୍ତ୍ରି ଯେ ଚଳିଗଲେ ଦୂତ
ଦଶରଥ ରାଜାଙ୍କର ହେଲା କୁଶଳତ ।
କୁମ୍ଭ ସାତଦିନ ପୁତ୍ରଙ୍କର ବଢ଼ ଜାଣ
ସକଳ ବନ୍ଧୁମାନଙ୍କୁ କଲେ ଆମନ୍ତ୍ରଣ ।
ବନ୍ଧୁମାନଙ୍କୁ ନିମନ୍ତ୍ରି ଦୂତ ଅଇଲେ ଫେରି
ଅଯୋଧ୍ୟା ନଗରେ ମିଳିଲେ ଆସିକରି ।
ବନ୍ଧୁବର୍ଗ ସକଳ ପାଇଲେ ବାରତା
ଦେବତାଏ ଶୁଣିଲେ ବ୍ରତଘର କଥା ।
ରାଜ୍ୟରେ ଧେଣ୍ଡୁରା ସେ ଫେରାଇଲେ ପୁଣ
ଶ୍ରୀରାମ ଚାରିଭ୍ରାତ ବ୍ରତ ହେବେ ଜାଣ ।
ଗ୍ରାମ ଗ୍ରାମକେ ମଙ୍ଗଳ ଆଚାର କରିବେ
ଦ୍ଵାରେ ରମ୍ଭା ବୃକ୍ଷ ଚୂତ ପତ୍ର ସ୍ଥାପିବେ ।
ବେଭାର ଯୌତୁକ ଘେନିଣ ଯିବେ ଚଳି
ରାଜାଙ୍କ ଛାମୁରେ ଭେଟହେବ ରାଜ୍ୟ ଲୋକ ମିଳି ।
ଧେଣ୍ଡୁରା ଫେରାଇ ଯେ ସୁଆର ଗଲା ଚଳି
ରାଜ୍ୟେ ହାଲହୋଳି ହେଲା ବ୍ରତଘର ବୋଲି ।
ସର୍ବଜନ ଆନନ୍ଦ ଦେଖିବେ ବୋଲି କରି
ସମ୍ଭର୍ବରେ ବାହାରିବା ମନରେ ବିଚାରି ।
ସର୍ବ ତିଆରନ୍ତେ ଯେ ଦିନ ଯେ ବହିଗଲା
ପ୍ରବେଶ ଆସି କୁମ୍ଭ ମାସ ଯେ ହୋଇଲା ।
ନଗ୍ରପୁର ମଣ୍ଡାଇଲେ ମନ୍ତ୍ରୀ ବୀରବର
ରାଜାଙ୍କ ପାଇଁ ନବର ସାମନ୍ତ ପାଇଁକି ଘର ।

ବିପ୍ରଙ୍କ ପାଇଁ ଛାମୁଣ୍ଡିଆ ରଚି ମନ୍ତ୍ରୀବର
ଦେଖଣାହାରୀଙ୍କ ପାଇଁ ମେଲା ପଦା ସାର ।
ଚିତ୍ର ବିଚିତ୍ର ପୁରମାନ ଯେ ଭିଆଇ
ଚୂତ ପତ୍ର ନାରୀକେଳ କଦଳୀ ବୃକ୍ଷ ଥୋଇ ।
ଇନ୍ଦ୍ର ଗୋବିନ୍ଦ ଚାନ୍ଦୁଆ ଛାମୁରେ ହୋଇଛିଠଣା ।
ଯେସନେକ ସ୍ୱର୍ଗପୁର ଦିଶଇ ରଚନା ।
ରତ୍ନରେ ଚାରିବେଦୀ କରିଣ ତିଆରି
ରତ୍ନ ଖମ୍ବ ବେଦୀ ଚାରିପାଶେ ଘେରି ବରି ।
କନକର ମଣ୍ଡପ ବେଦୀପରେ ଶୋହେ
ତେଜପତ୍ର ଛାଏଣୀ ଚନ୍ଦନ ଛେରା ଦିଏ ।
ମାଣିକ୍ୟର ଗୁଅ ଯେ ବୈଦୁର୍ଯ୍ୟର ସେଣି ·
ନୀଳାର ଗୁଞ୍ଜ ସେଥିରେ ଚାରିକୋଣରେ ପୁଣି ।
ବ୍ରହ୍ମ ଜାତି ଯେ ହୀରା ଚଉପାଶରେ ରଖି
ରଜନୀରେ ଆଲୋକ ହୀରାର ତେଜ ଦିଶି ।
ଲୋମପାଦ ରାଜାଠାକୁ ଲୋକ ପେଷି ଆଣି
ଦୁଇରାଜା ବସିକରି ବିଚାର କଲେ ପୁଣି ।
ଝିଅ ଜୁଆଇଁ ଦୁହିଁଙ୍କି ଘେନିଣ ଆସ ତୁମ୍ଭେ
ମୋତେ ସବୁ ଜଞ୍ଜାଳ ଲାଗିଣ ଅଛି ଏବେ ।
ଶୁଣିଣ ଲୋମପାଦ ବେଗେ ଚଳିଗଲେ
କଉଶିକ ନଦୀ ତୀରେ ପ୍ରବେଶ ଆସି ହେଲେ
ବିଭାଣ୍ଡକ ମୁନିଙ୍କୁ ଦେଖି ନମସ୍କାର କରି
କୁଶଳ ବାର୍ତ୍ତା ସବୁ କହିଲେ ଦଣ୍ଡଧାରୀ ।
ପୁତ୍ରବଧୂକୁ ନେବାକୁ ସୁଲଭ ହେଲା ବେଳ
ତୁମ୍ଭ ପାଶକୁ ପେଷିଲେ ଦଶରଥ ମହୀପାଳ ।
ତୁମ୍ଭ ପୁତ୍ରବଧୂ ଯେ ଯିବେ ଆମ୍ଭ ସଙ୍ଗେ
ଶୁଣିଣ ବ୍ରହ୍ମଋଷି ଆସିଲେ ଉଦବେଗେ ।
ଉଠିଣ ପୁତ୍ରବଧୂ ଦୁହିଁ କହେ ଯାଇ
ପୁତ୍ର ବଧୂ ଦୁହିଁଙ୍କ ଯାନରେ ବସାଇ ।
ଲୋମପାଦ ରାଜାସଙ୍ଗେ ଅଯୋଧ୍ୟା ପ୍ରବେଶ
ଏଥୁ ଅନନ୍ତରେ ଗଲା ଷଡ଼ ଯେ ଦିବସ ।
ବରଣ ହେବାରୁ ଅଇଲେ ବନ୍ଧୁଜନ
କୌଶଲ୍ୟା, କୈକୟୀ, ସୁମିତ୍ରାଙ୍କ ଭାଇ ପୁଣ ।
ନବରରେ ରାଣୀମାନେ ହର୍ଷମନ ହେଲେ
ସାମନ୍ତ ପାତ୍ର ସେବକ ରଖାଇ ଚଳିଲେ ।
ବିବିଧ ପଦାର୍ଥ ରଖେ ନବରରେ ନେଇ
ପୁଷ୍ପ ଚନ୍ଦନ ଅଗୁରୁ ସମ୍ଭାଦେ ମନ୍ତ୍ରୀ ନେଇ ।

ବଶିଷ୍ଠ ମହାମୁନି କୁଳରେ ପୁରୋହିତ
ଆବର ଅଇଲେ ଯେ ସକଳ ତପୋବନ୍ତ ।
ବରଣୀ ଆମନ୍ତ୍ରଣ ଅଇଲେ ସମସ୍ତ
ପ୍ରବେଶ ହେଲେ ଯାଇ ଅଯୋଧ୍ୟାର ଦେଶ ।
ସେ ଦିନ ବିଧିମତ ମଙ୍ଗଳ କୃତ୍ୟ କରି
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ ।
ଦଶରଥ ରାଣୀ ତହୁଁ ନୀଳାବତୀ ଜାଣ
ସୁନ୍ଦରୀ ସୁଲକ୍ଷଣୀ ଅଟନ୍ତି ସେହୁ ପୁଣ ।
ସୁମିତ୍ରା ଉତ୍ତାରୁ ତାଙ୍କୁ ବିଭା ଦଶରଥ
ଗଙ୍ଗପୁର ବଂଶ ଯାଜପୁର ରାଜଜେମା ସେତ ।
ସୁମିତ୍ରା ରାଣୀଠାରେ ଅଟେ ତାର ମେଳ
ସୁମିତ୍ରା ରାଣୀଙ୍କି ସେ ଏକଦିନେ କହେ ଭଲ
ବୋଇଲେ ଜ୍ୟେଷ୍ଠ ରାଣୀ ସୁହୃଦୟା ମୋତେକର
ବେନି ପତ୍ରରୁ ଦିଅ ମୋତେ କନିଷ୍ଠ କୁମର ।
ସୁମିତ୍ରା ବୋଇଲେ ସକଳ ରାଣୀଙ୍କର
ଏ ଚାରି କୁମର ସିନା ଅଟନ୍ତି ତୁମ୍ଭର ।
ମନରେ ଆନ କିମ୍ପା ଧର ଗୋ କନ୍ୟା ପୁଣି
ନୀଳାବତୀ ବୋଇଲେ ମୋର ଶ୍ରଦ୍ଧାବଳେ ପୁଣି ।
ସୁମିତ୍ରା ବୋଇଲେ ଯେବେ ଶ୍ରଦ୍ଧା ତୁମ୍ଭର
ବଡୁବେଳେ ଆଞ୍ଜୋଳିଏ ତଣ୍ଡୁଳ ତୁମ୍ଭେ ଧର ।
ଏ ବଚନ ଶୁଣିବାରୁ ନୀଳାବତୀ ତୋଷ
ବେଳୁଁ ବେଳ ପୁତ୍ର ପ୍ରତି ବଳାଇଲେ ଆଶ ।
ସ୍ନେହ ଦେଖି ସୁମିତ୍ରା ଯେ ମନରେ ଆନନ୍ଦ
ନୀଳାବତୀ କନ୍ୟାକୋଳେ ପୁତ୍ରଦେଲେ ବେଗ ।
ସେହିଦିନୁଁ ନୀଳାବତୀ ପୁତ୍ରକୁ ପାଳିବାର
ସମସ୍ତ ଆର୍ଦ୍ଦୋଳି ସେ କରଇ କୁମରର ।
କୁମର ଆର୍ଦ୍ଦୋଳି ବେନି ମାସରେ ପୁଣ
ଦଇଦ ଲେଖନ ଦଥା କେ କରଇ ମେଣ୍ଟନ ।
ନୀଳାବତୀ କନ୍ୟାର ସ୍ତନରୁ କ୍ଷୀର ଝରି
କୁମରକୁ ଆନନ୍ଦରେ କ୍ଷୀର ଦିଏ ସ୍ନେହ କରି ।
ଏ ରୂପ ବରଷକ ଅନ୍ତରେ ରାଜାରାଣୀ
ଧାତ୍ରି ଦାସୀଜଣାଇଲେ ରାଜାଙ୍କ ଆଗେ ପୁଣି ।
ଶୁଣିବା ଅଯୋଧ୍ୟାର ମଉଡମଣି ଏବେ
କଥାଏ ସୁଲଭ ଆମ୍ଭର ଅନ୍ତଃପୁରେ ଏବେ ।
ସୁମିତ୍ରାଙ୍କ ତଳରାଣୀ ଯେ ନୀଳାବତୀ
ଯାଜପୁର ମଉଡମଣିର ଜେମା ସେଟି ।

ଗଙ୍ଗବଂଶ ଜାତିଶ୍ରେଷ୍ଠ ଅଟନ୍ତି ରାଜନ
ତାଙ୍କର ନୀଳାବତୀ ଜେମାଦେଈ ପୁଣ ।
ସୁମିତ୍ରା ରାଣୀଙ୍କି ସେ ଅନେକ ସେବାକଲେ
ପ୍ରସନ୍ନେ ସୁମିତ୍ରା ରାଣୀ ସାନ କୁମରକୁ ଦେଲେ ।
ସାନ କୁମରକୁ ଧରନ୍ତେ ସେ ରାଣୀ ସ୍ତନରୁ
କ୍ଷୀର ସ୍ରବିଲା କୁମର ଖାଇଣ ହନ୍ତକାରୁ ।
ଶୁଣିଣ ରାଜନ ଯେ ପରମ ତୋଷହେଲେ
ହେମନ୍ତୀ ଧାଈକି ବସାଇ ବେଶକଲେ ।
ବୋଇଲେ ବେଶ କରିବୁ ଯେମନ୍ତେ ଗଉରୀ
ଈଶ୍ୱର ଦେଖିଲେ ଯେମନ୍ତେ ଲୋଭକରି ।
ସେହିରୂପେ ବେଶ ଯେ କରିବୁ ଆଜ ମୋତେ
ରାଜନ ଦେଖି ଯେମନ୍ତେ ବିଭୋଳିତ ହେବେ ।
ଏହାଶୁଣି ହେମବନ୍ତୀ ଥାଇ ବେଶ କଲା
ଗଉରୀ ସଦୃଶେ ନୀଳାବତୀ ଯେ ଦିଶିଲା ।
ସେହି ରଜନୀରେ ନୃପତି ବିଜେକଲେ
ନୀଳାବତୀ ଅନ୍ତଃପୁରେ ରାଜନ ଯାଇ ମିଳେ ।
ଦେଖିଲେ ଗଜଦନ୍ତ ପଲଙ୍କ ଉପରେ
ବିଜୟେ ସାନ କୁମର ପହୁଡ଼ି ଯତନରେ ।
ନୀଳାବତୀକି ରାଜନ ଦେଖି ତୋଷ ହେଲେ
ଶିବଙ୍କ ଗଉରୀ କିବା ମୋ ପୁରେ ବିଜେକଲେ ।
ଏସନ ବିଚାରି ରାଜା ରତ୍ନ ପଲଙ୍କରେ
ନୀଳାବତୀକି କୋଳେ ଧରି ବସିଲେ ହର୍ଷରେ ।
ମୁଖେ ଚୁମ୍ବ ଦେଇଣ ଆଶ୍ୱାସନା କରି
ବୋଇଲେ ଆନୁଆନ ବେଶ ଆଜ ଫେରି ।
ଧାଈକି ଦେଖିଣ ବୋଇଲେ ଗଜଦନ୍ତ ପଲଙ୍କରେ
ଶୋଇଛନ୍ତି ଏ କୁମର କେବଣ ପ୍ରକାରେ ।
ଧାଈ ବୋଲେ ରାଣୀ ସ୍ତନରୁ ସ୍ରବିଲାରୁ କ୍ଷୀର
ସୁମିତ୍ରା ଦେଲେ ତାକୁ ସାନ ଯେ କୁମର ।
ରାଜନକୁ ବୋଇଲେ କୁମରକୁ ଘେନି ଆଣ
ରାଣୀଙ୍କଠାରୁ କେମନ୍ତେ ଯାଉଛି କ୍ଷୀର ପୁଣ ।
ଶୁଣି ନୀଳାବତୀ ଧାଈ କୁମରକୁ ଦେଲା
ସ୍ତନ ଧରି କୁମର ଯେ କ୍ଷୀର ପାନ କଲା ।
ଦେଖିକରି ରାଜନ ପରମ ତୋଷ ହେଲେ
ଆଜଠାରୁ ଏ କୁମର ତୁମ୍ଭର ହୋଇଲେ ।
କୁମରକୁ ଧାଈ ନେଇ ପଲଙ୍କେ ଶୁଆଇଲେ
କୁମର ଯିବାରୁ ରାଜା ଦୁଇସ୍ତନ ଧରେ ।
କ୍ଷୀର ସ୍ରବିଲା ସ୍ତନରୁ ରାଜନ ବିଚାରିଲେ

× × ×

ଧରନ୍ତେ କ୍ଷୀର ସେ ସ୍ରବିଲା ସ୍ତନରୁ
ରାଜନ ବିଚାରେ ଏ ଦଇବ କୃତ୍ୟରୁ ।
ପୂର୍ବ ଲିଖିତ କର୍ମରୁ ଏମାନ ହୁଅଇ ଘଟଣ
ନବସହସ୍ରେ ବର୍ଷେ ଏବେ କ୍ଷୀର ସ୍ରବେ ପୁଣ
ଦେବଙ୍କର ବରେ ବାହୁବଳେ ଏହି କର୍ମ
ଦେବଙ୍କର କାର୍ଯ୍ୟ କି ହୋଇବ ହସ୍ତେଣ ।
ଏମନ୍ତ ବିଚାରି ରାଏ ରଜନୀ ସେଥି ସାରି
ପାହାନ୍ତି ଅବକାଶ ହେଲେ ଦଣ୍ଡଧାରୀ ।
ଉଠିଣ ନୀଳାବତୀ ଚରଣେ ଓଳଗିଲା
କରଯୋଡ଼ି ସୁନ୍ଦରୀ ବଚନ ପ୍ରକାଶିଲା ।
ବୋଇଲା ପ୍ରାଣେଶ୍ୱର ଶୁଣ ମୋ ବଚନ
କଥାଏ କହିବି ଦେବେ ହେଲେ ସୁପ୍ରସନ୍ନ ।
ନବ ସହସ୍ର ବର୍ଷ ଯେ ଆସିଣ ଭୋଗ ହେଲା
ଚତୁର୍ଥ ସମୟରେ ଆସି ବିହିପୁତ୍ର ଦେଲା ।
ପ୍ରମାଣ ସହସ୍ର ବର୍ଷ ଆୟୁଷ ଅଟେ ପୁଣ
ପାପକେତେପୁଣ୍ୟ କେତେ ଲେଖିଛି ରବିର ନନ୍ଦନ
ସେଥିର ସକାଶେ କହୁ ଯେ ଅଛି ମୁହିଁ
ସତ ଶାନ୍ତି ସୁଖରେ ପରଜା ପାଳ ତୁହି
ରାଜନରେ ପ୍ରଶଂସା ପରଜାରେ ସୁସ୍ଥ
ମୁନି ବ୍ରାହ୍ମଣଙ୍କୁ ଦାନ ଦେବାରୁ ଉଚିତ ।
ଦୁଃଖୀ ଦରିଦ୍ରରେ ଅନ୍ନ ବସ୍ତ୍ର ଦିଅ
ସକଳ ଲୋକଠାରେ ଶାନ୍ତମୂର୍ତ୍ତି ହୁଅ ।
ଶୁଣିକରି ଦଶରଥ ବୋଲନ୍ତି ବଚନ
ସୁକଳ ରାଣୀହଂସରେ ଅଟହେ ସୁଜ୍ଞାନ ।
ଏହିଜ୍ଞାନପଣରେ ତୁମ୍ଭକୁ ରାଜନ ଭୋଗ ହେଉ
ବହୁବର୍ଷ ରାଜା ଭୋଗରେ ଦିନ ଯାଉ ।
ପ୍ରସନ୍ନରେ ରାଜନ ଏମନ୍ତ ବର ଦେଲେ
ଶୁଣିଣ ନୀଳାବତୀ ଯେ ଚରଣେ ଓଳଗିଲେ ।
ବୋଇଲେ ଏ ବରଗୋଟି ନୁହଁଇ ମଙ୍ଗଳ
ଏ ବର ଦେଲେ ମୋତେ ଅଟେ ଅସାର ।
ସ୍ୱଦେହ ଘେନିଣ ମୁଁ ତୁମ୍ଭର ସଙ୍ଗେ ଯିବି
ଏହି ବର ସୁଦୟା କର ହେ ଦେବସ୍ୱାମୀ ।

ହେଉ ବୋଲି ଦଶରଥ ବୋଇଲେ ଯେ ବାଣୀ
ମୋର ବଳ ସରିଲେ ତୋର ବାଞ୍ଛା ପର୍ଣ୍ଣପୂଣି ।
ନୀଳବତୀ ବୋଲେ ଦେବ ଜାଣିଲି ଏଥର
ଅଳପ ଦିନରେ ସ୍ୱାମୀ ଯିବ ସ୍ୱର୍ଗପୁର ।
ତୁମ୍ଭେ ଯିବା ଉତ୍ତାରୁ ଚଉଦ ବରଷରେ
ମୋତେ ସୁଦୟା ହେବ ବୋଲେ କଙ୍କଣାରେ ।
ଏତେ କଥା ହୋଇଣ ରାଜନ ଚଳିଗଲେ
ବାହାର ଅବକାଶ ଜଗତୀରେ ହେଲେ ।
ପାର୍ବତୀ ବୋଇଲେ ଦେବ ଶୁଣ ତ୍ରିପୁରାରୀ
ମଙ୍ଗଳକୃତ୍ୟ ବିଧି କି ରୂପେ ରାଣୀକରି ।
ସେ କଥା ବୁଝାଇଣ କହିବ ମୋତେ ପୁଣ
ବାସୁଦେବର ବନ୍ଧୁ ଶୁଣି ତୋଷ ହେବଜାଣ ।
ଈଶ୍ୱର ବୋଇଲେ ଗୋ ଶୁଣ ଭଗବତୀ
ସେ କଥା ଗୋଟି ତୋତେ କହିବା ବୁଝାଇଟି ।
କୁମ୍ଭ ମାସ ଛ' ଦିନରେ ମଙ୍ଗଳକୃତ୍ୟ କଲେ
ଯେ ବିଧି ବିଧାନ କରନ୍ତି ସ୍ନେହଭରେ ।
ବେଦୀପରେ ନାରଦ ବଶିଷ୍ଠ ବସେ ଜାଣ
ବରୁଣ ପୂଜା ବିଧି କଲେ ଉଚ୍ଚାରଣ ।
ଋଷ୍ୟଶୃଙ୍ଗ ମାରକଣ୍ଡ ବେନି ବେଦୀରେ ବସି
ଚାରି ବେଦୀପରେ ଋଷି ଦଶରଥ ବସି ।
ପୂର୍ଣ୍ଣକୁମ୍ଭ ସ୍ଥାପିଲେ ଯେ ବେଦୀପରେ ନେଇ
ଦ୍ୱିତୀୟ ବେଦୀରେ ନାରଦ ପୂର୍ଣ୍ଣକୁମ୍ଭ ରଖାଇ ।
ପୂର୍ଣ୍ଣକୁମ୍ଭ ଚୂତ ପତ୍ର ସ୍ଥାପିଲେ ବେଦୀରେଣ
ତୃତୀୟ ବେଦୀରେ ବସିଲେ ଋଷ୍ୟଶୃଙ୍ଗ ପୁଣ ।
ପୂର୍ଣ୍ଣକୁମ୍ଭ ସ୍ଥାପିଣ କର୍ମ ଆଚରିଲେ
ଚତୁର୍ଥ ବେଦୀରେ ମାର୍କଣ୍ଡ କର୍ମକଲେ ।
ବରୁଣ ପୂଜା ସାରିଣ ବେଦ ଉଚ୍ଚାରିଲେ
କନକର ଚାରି ପିଢ଼ା ଆଣିଣ ଥୋଇଲେ ।
ଗୁଆ ଘୃତ ହଳଦୀ ଲଗାଇ ଚାରି ପୋଏ
ଶ୍ରୀରାମଙ୍କୁ ନେଲେ ସେଥିକି ବଡ଼ ସ୍ନେହେ ।
ରଜନୀରେ ତୋଳାପାଣି ଅଣାଇଲେ ପୁଣ
ସେ ପାଣିରେ ଚାରିପୁତ୍ର କରାଇ ସ୍ନାହାନ ।
ନୂତନ ବସ୍ତ୍ରମାନ ପୁତ୍ରଙ୍କୁ ପିନ୍ଧାଇଲେ
ତଣ୍ଡୁଳ ଗୁଆ ନେଇ ପୁତ୍ରଙ୍କ ହସ୍ତେ ଦେଲେ ।
ଚାରି ପୁତ୍ର ତଣ୍ଡୁଳ ଅଞ୍ଜୁଳି କରେ ଧରି
ଚାରି ଜନନୀକି କୁମରେ ଦେଲେ ତୋଳି ।

କୈକେୟୀ, କୌଶଲ୍ୟା, ସୁମିତ୍ରା ନୀଳାବତୀ
ଚାରି ଜନନୀ ପଣତରେ ତଣ୍ଡୁଳ ଘେନିଲେଟି ।
ସେଠାରୁ ଚଳି ଶ୍ରୀରାମ ବେଦୀପରେ ଗଲେ
ଏନ୍ତୁଡ଼ି ବରୁଣ ରାଜା ବେଦୀରେ ସାରିଲେ ।
ବେଦ ଉଚ୍ଚାରଣ ଯେ ବଶିଷ୍ଠ କଲେ ତହିଁ
ଅଗ୍ନି ସ୍ଥାପି ହୋମ ଯେ କଲେ ମୁନି ରହି ।
ସେହିରୂପେ ଦ୍ୱିତୀୟ ବେଦୀରେ ଭ୍ରତବସି
ବେଦ ଉଚ୍ଚାରି ନାରଦ ଅଗ୍ନି ତହିଁ ସ୍ଥାପି ।
ସାମବେଦ ଉଚ୍ଚାରଣ କଲେ ମୁନିବର
ତୃତୀୟ ବେଦୀକୁ ଗଲେ ଲକ୍ଷ୍ମଣ କୁମର ।
ବେଦ ଉଚ୍ଚାରଣ ଯେ ଋଷ୍ୟଶୃଙ୍ଗ କଲେ
ଅଗ୍ନିକୁ ସ୍ଥାପିଣ ହୋମବିଧି ଆରମ୍ଭିଲେ ।
ମାର୍କଣ୍ଡ ବସିଲେ ଯେ ଚତୁର୍ଥ ବେଦୀରେ
ଶତ୍ରୁଘନ ବେଶ ହୋଇ ଅଇଲେ ସହରେ ।
ଶ୍ରୀରାମଙ୍କୁ କୋଳେ ଘେନି ଦଶରଥ ବସି
ଭ୍ରତଙ୍କର ପାଶରେ ମଉଳା ବସେ ଆସି ।
ଲକ୍ଷ୍ମଣଙ୍କୁ କୋଳେ ଘେନି ଲୋମପାଦ ରାଏ
ଶତ୍ରୁଘନ ପାଶରେଣ ମଉଳା ବିଜୟେ ।
ଚାରି ବେଦୀରେ ଚାରି ଯେ ଋଷି ଦୁଇମଉଳା
ଦଶରଥ ଲୋମପାଦ ଦୁଇ ବେଦୀରେ ତୋରା ।
ଚନ୍ଦନକାଷ୍ଠେ ହୋମ କଲେ ଋଷିମାନେ
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ସୁଜ୍ଞଜନେ ।
ସ୍ୱର୍ଗପୁର ଦେବତାମାନେ ଯେ ଅଇଲେ
ସୁଧର୍ମା ସଭାପରେ ଯାଇ ବିଜେକଲେ ।
ମଣ୍ଡୁକ ରାଜା ମୁଣ୍ଡେ ଦେଇଣ ସଭା ପୁଣ
ଅଯୋଧ୍ୟା ସଲଖରେ ରହିଲେ ଦେବଗଣ ।
ସୁଧର୍ମା ସଭା ସେଥିରେ ରୁହାଇ ପିତାମହ
ମର୍ତ୍ତ୍ୟପୁରକୁ ଦଶଯୁଣ ଉପରେ ଦେବପ୍ରିୟ ।
ଦଶରଥ ନୃପତିର ନବର ସଲଖରେ
ଦେବେ ବିଜେକଲେ ଯାଇ ସୁଧର୍ମା ସଭାରେ ।
କଳାମେଘ ପ୍ରାୟେ ଯେ ଦିଶଇ ତଳକୁ
ଲକ୍ଷେ ଛାୟା ମାୟା ଯେ ଚାହିଁଲେ ଉପରକୁ ।
ସକଳ ଋଷି ଜାଣିଲେ ଦେବତା ବିଜେକଲେ
ନନ୍ଦିଗ୍ରାମେ ଥିବା ମୁନି ଅଯୋଧ୍ୟା ମିଳିଲେ ।
ସକଳ ବନ୍ଧୁଜନ ଦେଖନ୍ତି ରହି ପୁଣ
ହାଟୁଆ ବାଟୁଆ ଯେ ରାଜ୍ୟର ଲୋକଗଣ ।

ଲାଗିଲାକ ଗହଳ ଦେଖିଲେ ସର୍ବଜନ
ତ୍ରୈଲୋକ୍ୟର ନାଥ ଜାଣ ବେଦୀ ବିଜେଜାଣ ।
ବେଦ ପଢ଼ି ବସି ନବ କର୍ମେ କରେ ହୋମ
ସୁବର୍ଣ୍ଣର ପଇତା ସେ ପ୍ରଦାନ ଶ୍ରୀରାମ ।
ଚାରିଭାଇ ଏହି ରୂପେ ଯଜ୍ଞ ପବିତ୍ର ଘେନି
ଚାରି ଭାଇଙ୍କର କର୍ମ ସାରିଲେ ଯେ ମୁନି ।
ଭିକ୍ଷା ମାଗିବାକୁ ଯେ ସେ ଉଦ୍ୟମ କଲେ
ଚାରିକୁମରଙ୍କ ମଉଳା ସୁବର୍ଣ୍ଣ ଥାଳି ଯେ ଧଇଲେ ।
ପ୍ରଥମେ ମାତାଗଣ ବଡୁ ଭିକ୍ଷାଦେଲେ
ତହୁଁ ଉତ୍ତାରୁ ଲୋମପାଦ ଦଶରଥ ଭିକ୍ଷାସମର୍ପିଲେ ।
ସାତଶ ପଚାଶ ମଉଳା ନେଇ ଭିକ୍ଷା ଦେଲେ
ବନ୍ଧୁବର୍ଗ ସକଳ ନେଇ ଭିକ୍ଷା ସମର୍ପିଲେ ।
ରତ୍ନ ଖଡୁ ବୀରବଲ୍ଲୀ ଦେଲେ ବହୁତ ଜାଣ
ଦେଖିଣ ରାଜ୍ୟଲୋକେ ଆନନ୍ଦ ହେଲେ ପୁଣ ।
ଋଷିଗଣ ସକଳ ଆଶିଷ ନେଇ ଦେଲେ
ବ୍ରାହ୍ମଣେ ମିଳି ସର୍ବେ ସୁକଲ୍ୟାଣ କଲେ ।
ବେଦବର ଦେବତାଏ କଲେକ ବିଚାର
ବୋଇଲେ ଆମ୍ଭ ଦୁଃଖ ଯିବଟି ଏଥର ।
ଏତେ କହି ଶ୍ୱେତପୁଷ୍ପ ତହିଁ ବୃଷ୍ଟି କଲେ
ସଧବା ସ୍ତିରୀମାନେ ହୁଳହୁଳି ଦେଲେ ।
ରୋଷଣି ଘର ବିଧି କଲେ ତହିଁ ପୁଣ
ପୁତ୍ରଙ୍କ ମଉଳାମାନେ ଯାଉଁଳି ଧରିଣ ।
ବେନିକୋଟି ଶଙ୍ଖ ଯେ ମହୁରୀ ବାଜେ ଭେରି
ବାଦ୍ୟର ଶବଦରେ କମ୍ପେ ମେରୁଗିରି ।
ଦାଣ୍ଡରେ ବିଜେକଲେ ଚାରିପୁତ ପୁଣି
ଯେହ୍ନେ ଗୁଣ୍ଡିଚା ଯାତ୍ରାକୁ ବିଜେ ଚକ୍ରପାଣି ।
ଗ୍ରାମ ମୁଣ୍ଡେ ଯାଇଣ ହୋଇଲେ ପରବେଶ
ରୋଷଣି ବିଧି ସେଠାରେ କଲେକ ବିଶେଷ ।
ଛତା ମଡୁ ଯାଉଁଳି ଯେ କାନ୍ଧରେ ପକାଇ
ରୋଷଣି ବିଧି କଲେ ପୁଣି ଚାରି ଭାଇ ।
ସେହିଠାରୁ ବାହୁଡ଼ିଣ ନବରକୁ ଗଲେ
ରତନ ବେଦୀ ଉପରେ ପ୍ରବେଶ ହୋଇଲେ ।
ସେଠାରେ ପୂର୍ଣ୍ଣ ଆହୁତି ସାରିଲେକ ପୁଣ
ନବରର ଭିତରକୁ ଗଲେ ସେହୁ ଜାଣ ।
ଦେବେ ଥାଇ ଶୂନ୍ୟପୁରେ କରନ୍ତି ଜଣାଣ
ଅସୁର ବେଗେ ମାର ଭୋଦେବ ନାରାୟଣ ।

ଏତେ କହି ଦେବତାଏ ଗଲେ ସ୍ୱର୍ଗପୁର
ସୁଧର୍ମା ସଭାରେ ବସି ଦେବତାଏ ସକଳ ।
ସୁଧର୍ମା ସଭା ନେଇଣ ସ୍ୱର୍ଗରେ ରଖାଇଲେ
ଯେ ଯାହାର ନିଜସ୍ଥାନେ ପ୍ରବେଶ ହୋଇଲେ ।
ଋଷିଗଣମାନେ ଯେ ମେଲାଣି ହୋଇଲେ
ଯେ ଯାହାର ଅନୁରୂପେ ଧନ ବସ୍ତ୍ର ନେଲେ ।
ଭୋଜନ ସାରି ବ୍ରାହ୍ମଣେ ମେଲାଣି ହୋଇଲେ
ଧନ ରତ୍ନ ପାଇବାରୁ ସନ୍ତୋଷ ହୋଇଲେ ।
ଦେଶ ଘୋଷ ପଦାତି ସର୍ଦ୍ଦାର ଯେତେବଳ
ଶାଢ଼ୀ ସୁନା ପାଇ ସର୍ବେ ହର୍ଷେ ଚଳିବାର ।
ମଙ୍ଗଳ ନାରୀମାନେ ନବରୁ ଚଳିଯାଇ
ନଟକାରୀ ବେଶ୍ୟାସ୍ତିରୀ ଗଲେ ବୋଧ ହୋଇ ।
ପଞ୍ଚମ, ସପ୍ତମ, ଦଶ ମଙ୍ଗଳା ଯେ ସାରି
ଶାନ୍ତା ଯେ ଋଷ୍ୟଶୃଙ୍ଗ ଗଲେ ନିଜପୁରୀ ।
ଲକ୍ଷେକ ମୁନିଆଁ ଧନ ରତ୍ନ ଘେନି ଚଳି
ଦଶରଥ ଲୋମପାଦ ଅଇଲେ ତାଙ୍କୁ ଛାଡ଼ି ।
ଲୋମପାଦ ବହିକରି ନିଜ ରାଜ୍ୟେ ଗଲେ
ଚମ୍ପାବତୀ ପୁରରେ ଯାଇ ପ୍ରବେଶ ହୋଇଲେ ।
ସକଳ ରାଣୀହଂସ ଯେ କୁଶଳେ ରହି ପୁଣ
ସକଳ ପୁତ୍ରଙ୍କୁ ଘେନି ରହିଲେ ନିର୍ଶ୍ଚିନ୍ତେଣ ।
ଦଶରଥ କୈକେୟୀ କୌଶଲ୍ୟାଙ୍କର ତୁଲେ
ସୁମିତ୍ରା ନୀଳାବତୀ ରାଣୀହଂସରେ ପ୍ରୀତିକଲେ ।
ଚାରିରାଣୀଙ୍କ ଭାଇ ପିଅର ଚଳିଗଲେ
ନିଜ ନିଜ ରାଜ୍ୟେ ଯାଇ ପ୍ରବେଶ ହୋଇଲେ ।
ଈଶ୍ୱର ବୋଇଲେ ଏବେ ଶୁଣ ଦେବୀ ଉମା
ତ୍ରିଲୋକରେ ବିଖ୍ୟାତ ଯେ ଶ୍ରୀରାମ ମହିମା ।
ପାର୍ବତୀ ବୋଇଲେ ଆହେ ଶୁଣ ଦିଗମ୍ବର
ସାତ ବର୍ଷେ ଶ୍ରୀରାମ କଲେ କେବଣ ସମ୍ଭାର ।
ଈଶ୍ୱର ବୋଇଲେ ଶୁଣ ଆଗୋ ଭଗବତୀ
ବିଷ୍ଣୁ ତେଜ ଦେଖିଲେ ଯେ ଲକ୍ଷେକ ନୃପତି ।
ପୂର୍ବେ ଶୁଣିଥିଲୁ ଆମ୍ଭେ ଋଷିମାନଙ୍କ ଠାରୁ
ବାସୁଦେବ ଜନ୍ମିବେ ଯେ ଧରଣୀ ଗର୍ଭରୁ ।
ଋଷିମାନେ କହିଥିଲେ ସୂର୍ଯ୍ୟବଂଶେ ହରି
ଅଯୋଧ୍ୟା ଦେଶରେ ଯେ ଜନ୍ମିବେ ଦେହ ଧରି
ତେଣୁ ସେ ରାଜାମାନେ ହରଷ ହୋଇଲେ
ଶ୍ୟାମଳ ଚତୁର୍ଦ୍ଧା ମୂର୍ତ୍ତି ସୁନ୍ଦର ତେଜ ଭଲେ ।

ଦେବତାଏ ଜାଣିଣ ଶୂନ୍ୟରେ ରହି ଦେଖି
ବିପ୍ରମାନେ ବେଦ ଶାସ୍ତ୍ର ପଢ଼ି ଜାଣିଲେଟି ।
ତିନିପୁର ଋଷି ଯେ ଜାଣିଲେ ଯୋଗ ବଳେ
ତେଣୁ ଯେ ଶ୍ରୀରାମ ନାମ ବିଖ୍ୟାତ ତିନିପୁରେ ।
ପାର୍ବତୀ ବୋଇଲେଦେବସେଠାରୁ କିସହେଲା
ସପ୍ତ ବରଷ ଅଟେ ଯେ ଦଶରଥ ବଳା ।
ସେଠାରୁ କିସ କଲେ କହ ମୋତେ ପରା
ଜନନୀଙ୍କ କୋଳ ଘେନି ଚାରିଭାଇ ତୋରା ।
ବଢୁବ୍ରତ ସରିବାରୁ ଦଶରଥ ନୃପ
ବଶିଷ୍ଠ ମୁନିଙ୍କି ଘେନି କଲେ ବିଚାରତ ।
ବିଦ୍ୟା ଆରମ୍ଭ କରନ୍ତୁ ଚାରି ଯେ କୁମର
ପୁତ୍ରମାନେ ମୋର ପୃଥ୍ୱୀକି ହେବେ ସାର ।
ଶୁଣିକରି ବଶିଷ୍ଠ ଯେ ଚଣ୍ଡପୁତ୍ର ରାଇ
ଦିନ ବାର ବୁଝିଣ ବିଦ୍ୟା ଆରମ୍ଭଇ ।
ବୈଶାଖ ଶୁକ୍ଳ ତୃତୀୟା ଯେ ବୁଧବାରରେ
ବୃହସ୍ପତି ଅଛନ୍ତି ଯେ ଏକାଦଶୀ ଘରେ ।
ସେ ଦିନ ଗୁରୁ ବଶିଷ୍ଠ ବିଦ୍ୟା ଆରମ୍ଭିଲେ
ପକ୍ଷକେ ପରାକୃତ ବିଦ୍ୟା ଶିଖାଇଲେ ।
ବେନି ପକ୍ଷେ ସଂସ୍କୃତ ବିଦ୍ୟା ଶିଖି ପୁଣି
ତେଲେଙ୍ଗି ନାଗରି ଶିଖିଲେ ବେନିମାସ ଜାଣି
ଆରବୀ ଖୋରଟା ଯେ ଛତିଶ ବର୍ଣ୍ଣେ ଶିଖି
ଦେବ ନାଗରୀ କାକ ନକିତ୍ର ଭାଷ୍ୟାଲେଖି ।
ଦେବାଦେବୀ ମାନଙ୍କର ଏମାନଙ୍କ ଭାର
ଶିଖିଲେ ଚାରିଭାଇ ଲେଖିଣ ସଦଭାବ ।
ତିନିଭୁବନ ବିଦ୍ୟା ଶିଖାଇଲେ ବଶିଷ୍ଠ ନାମେଗୁରୁ
ଛପନ କୋଟି ଜୀବ ଭାଷା ଜାଣିଲେ ହନ୍ତକାରୁ ।
ବଶିଷ୍ଠ ଶ୍ରୀରାମଙ୍କୁ ଧନୁ ବିଦ୍ୟା ଦେଲେ
ମନ୍ତ୍ର ଯନ୍ତ୍ର ବାରଣ ସକଳ ଶିଖାଇଲେ ।
ନାଗାନ୍ତକ ଯୋଗାନ୍ତକ ସାଧନ୍ତି ବିଦ୍ୟମାନ
ବାରଣ କରି ଶିଖାଇଲେ ବଶିଷ୍ଠ ଋଷି ପୁଣ ।
ବଶିଷ୍ଠ ବିଦ୍ୟା ଶିଖାଇ ଅଗସ୍ତି ସୁମରିଲେ
ଚିତ୍ତ ନିଶ୍ଚଳ କରି ମନରେ ଜାଣିଲେ ।
ଯୋଗବଳେ ଅଗସ୍ତି ମିଳିଲେ ଆସି ପୁଣ
ଚତୁର୍ଦ୍ଧା ମୂର୍ତ୍ତି ଦେଖି ହର୍ଷ ମୁନି ମନ ।
ସକଳ ବିଦ୍ୟା ଜାଣିବାକୁ ଯେ ଲୟକଲେ
କି ଅର୍ଥେ ସୁମରିଲ ବୋଲି ପଚାରିଲେ ।

ବଶିଷ୍ଠ ବୋଇଲେ ତୁମ୍ଭେ ଶୁଣ ଆହେ ମୁନି
ଭ୍ରତ ଶତ୍ରୁଘନଙ୍କୁ ଧନୁର୍ବିଦ୍ୟା ଦିଅ ପୁଣି ।
ଶୁଣିକରି ଅଗସ୍ତି ଯେ ବିଦ୍ୟାଗୁରୁ ହୋଇ
ସକଳ ଧନୁର୍ବିଦ୍ୟା ଶିଖାଇଲେ ତହିଁ ।
ବାଜଣୀ ବାରଣାସୀ ଆତ ଯାତ ଲୟ
ସକଳ ବିଦ୍ୟା ଶିଖାଇଲେ ବ୍ରହ୍ମାଙ୍କର ପୁଅ ।
ବ୍ରଜ ଧନୁ ଅଣାଇ ଭ୍ରତର ହସ୍ତେ ଦେଲେ
ବଜ୍ର ବାଟୁଳୀ ବସାଇ ଆଧାନ କରାଇଲେ ।
ବ୍ରହ୍ମ ବାଟୁଳି ଦେବଙ୍କ ସକଳ ବାଟୁଳି
ଶିବଙ୍କ ବାଟୁଳି ନାଗ ଲୋକଙ୍କ ବାଟୁଳି ।
ମନଭେଦୀ ବାଟୁଳି ମୋହ ଯେ ବାଟୁଳି
ଜୀବନ୍ୟାସ ବାଟୁଳି ଯେ ଅଚେତ ବାଟୁଳି ।
ଦେଇଣ ବୋଇଲେ ଯେ ଅଗସ୍ତି ତପଧାରୀ
ପ୍ରବଳ ନିର୍ବଳରେ ମାରିବୁ ହେତୁ କରି ।
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଦଶଦିଗପାଳ
ସକଳ ଦେବତା ଆଦି ତତେ ନାଗ ବଳ ।
ନର ବାନର ଜକ୍ଷ କେହି ନ ରହିବେ
ମାରିଲେ ବଜ୍ର ବାଟୁଳି ସମସ୍ତେ ମୋହଯିବେ ।
ଜିଆଇବାକୁ ଜୀବନ୍ୟାସ ବାଟୁଳି
ଏତେ କହି ବଜ୍ର ଧନୁ ଦେଲେ ଦୈତକର ।
ଚରଣ ଧରି ଭ୍ରଥ ମୁନିଙ୍କ ପାଦେ ନମି
ଅଗସ୍ତି ବୋଇଲେ ସୁଖରେ ରହ ମୁନିମଣି ।
ବୋଇଲେ ମୁଁ ଯେ କରିବି ପରୀକ୍ଷ
ତେବେ ସିନା ଜାଣିବି ତୁମ୍ଭର ସପକ୍ଷ ।
ଅଗସ୍ତି ହୋଇଲେ ଜ୍ୟେଷ୍ଠ ଶ୍ରୀରାମ ତୋରଭାଇ
କନିଷ୍ଠ ଲକ୍ଷ୍ମଣ ଯେ ଅନନ୍ତ ଅଟଇ ।
ଗୁରୁ ଆମ୍ଭେ ଅଟୁ ବେଦବର ସମାନ
ଏ ତିନି ଜଣେ ଜଣେ ପରୀକ୍ଷାକର ପୁଣ ।
ତେବେ ତୁ ଯାଇକରି ସକଳ ଜୀବ ସାର
ଆଉ କାହାକୁ ଭୟ ନ ଥିବ ତୋହର ।
ଶୁଣିକରି ଭ୍ରଥ ବଜ୍ରଧନୁ ବେଗେ ଧରି
ମୋହ ତିନି ବାଟୁଳି ତିନିଜଣଙ୍କୁ ଯେ ମାରି ।
ଶ୍ରୀରାମ ଲକ୍ଷ୍ମଣ ଅଗସ୍ତି ଯେ ହେଲେ ମୋହ
ଦେଖିକରି ତୋଷ ହେଲେ ଦଶରଥ ପୁଅ ।
ଜୀବନ୍ୟାସ ବାଟୁଳି କି ମନ୍ତ୍ରିଣ ସୁମରି
ବାଜନ୍ତେ ତିନିଜଣ ଉଠିଲେ ମୋହ ତେଜ୍ୟାକରି ।

ପାର୍ବତୀ ବୋଇଲେ କହ ଶତୃଘନ କଥା
କି ରୂପେ କ୍ଷତ୍ରୀପଣ ନୀଳାବତୀର ସୁତା ।
ଈଶ୍ୱର ବୋଇଲେ ଯେ ଅଗସ୍ତି ଦୟାକଲେ
ବ୍ରହ୍ମା ଦେଲା ପିନାକୀ ଶତୃଘନରେ ଦେଲେ ।
ବୋଇଲେ ପରୀକ୍ଷା କରରେ କୁମର
ଶରଦର ଅଗ୍ନିକି ତୁ ପର୍ବତ କର ମେଳ ।
ଶୁଣିକରି କୁମର ଯେ ଶୁଷ୍କକାଠ ରଖି
ଜଳକୁଣ୍ଡ ମଧ୍ୟକୁ ତୀରଦେଲା ଯୋଖି ।
ପିନାକୀ ଧନୁରେ ଗୁଣ ଦେଇ ଟଙ୍କାରିଲା
ଶୋଷେକ ଜଳଧାରା ପବନାଶର ବସାଇଲା ।
ଶୁଷ୍କକାଠରେ ଅଗ୍ନି ତକ୍ଷଣେ ଲାଗିଲା
ମାରନ୍ତେ ତିନି ଶର ପ୍ରତାପ ଘୋର କଲା ।
ଜଳ ଶୁଖିବାରୁ ଅନଳ ଲିଭିଗଲା ।

× × ×

ପାଷାଣ ଉଡ଼ିଲା ଯେ ଶୂନ୍ୟ ମଣ୍ଡଳେ ଯାଇ
ଦେଖିଣ ଶତୃଘନ ହରଷ ମନ ହୋଇ ।
ଜୀବନ୍ୟାସ ଶରକୁ ପ୍ରତି ତୁଲ୍ୟ କରି
ଜଳ କୂଳରେ ଧରି ଅଗ୍ନି ଉଠେ ଜଳି ।
ଶୂନ୍ୟେ ଉଠିବା ପାଷାଣ ତଳେ ଆସି ରହି
ଦେଖି ଶତୃଘନ ପରମ ତୋଷ ହୋଇ ।
ଅଗସ୍ତିଙ୍କ ଚରଣେ ନମସ୍କାର କଲେ
ସମ୍ମାନ ଧର୍ମ ଦେଖି ମୁନି ହରଷ ହୋଇଲେ ।
ବୋଇଲେ ତୋତେ ବତିଶ ବରଷ ସମୟରେ
ତେତିଶ ଦେବତା ତେଜଦେବେ ତୋରେ ।
ଦେବଙ୍କ ଉପକାର କରିବୁରେ ବାବୁ
ଦେବ କାର୍ଯ୍ୟ କଲେ ସଫଳ ତୋର ସବୁ ।
ଏତେ କହି ଅଗସ୍ତି ନିଜ ଆଶ୍ରମେ ଗଲେ
ବଳରାମ ଦାସ ସେବେ ଶ୍ରୀରାମ ପୟରେ ।
ବଳରାମ ଦାସ ଯେ ଶ୍ରୀରାମ ଚରଣେ
ଭକ୍ତିଭାବ ହୋଇ ପୁରାଣ ବଖାଣେ ।
ତ୍ରେତୟା ଯୁଗ କଥା ଶ୍ରୀରାମ ଅବତାର
ବର୍ଣ୍ଣିବାକୁ ଶରଧା ଯେ ବଳିଲା ମୋହର ।
କେଉଁକଥା ଈଶ୍ୱର ପାର୍ବତୀ ଆଗେ କହି
ସେ କଥା ଗୋଟି ମୋର କଣ୍ଠରେ ବିକାଶଇ ।
ପାର୍ବତୀ ବୋଇଲେ ଶୁଣ ହେ ତ୍ରିଲୋଚନ
ଶ୍ରୀରାମ ଲକ୍ଷ୍ମଣକୁ ଧନୁ ବଶିଷ୍ଠ ଦେଲେ ପୁଣ ।
ସେ କଥା ମୋର ଆଗେ କହିବା ଈଶାନ

× × ×

ଈଶ୍ୱର ବୋଲେ ଶୁଣ ଗୋ ମହାମାୟୀ
ସାରଙ୍ଗ ଧନୁକୁ କୋଦଣ୍ଡ କହି କହି ।
ସେ ଧନୁ ଶ୍ରୀରାମ ବଶିଷ୍ଠ ସମର୍ପିଲେ
ତେଣୁ କୋଦଣ୍ଡ ଚାପଧାରୀ ଶ୍ରୀରାମ ବୋଇଲେ ।
ବାସୁକୀର କୋଦଣ୍ଡ ଯେ ଲକ୍ଷ୍ମଣକୁ ଦେଲେ
ସେ କୋଦଣ୍ଡ ସଦାଶିବ ହୋନ୍ତି ସବୁକାଳେ ।
ପାର୍ବତୀ ବୋଇଲେ ଯେ ପରୀକ୍ଷା କିସ କଲେ
ସେ କଥା ମୋର ଆଗେ କହିବାକୁ ଭଲେ
ଈଶ୍ୱର ବୋଇଲେ ଶୁଣ ଗୋ ମହାମାୟୀ
ସାରଙ୍ଗ କୋଦଣ୍ଡକୁ ଧରି ରଘୁସାଇଁ ।
ଗୁଣକୁ ଚଢ଼ାଇ ଟଙ୍କାର ନାଦ କଲେ
ତିନିପୁର ପୂରିଲା ଯେ ଟଙ୍କାର ନାଦରେ ।
ସ୍ୱର୍ଗରେ ଦେବତାଏ ହୋଇଲେ ସ୍ତବଦ
ଦଶଦିଗପାଳେ ବିଚାରିଲେ ସରିଲା ସମ୍ପଦ ।
ବେଦବ୍ରହ୍ମା ଯଶୋବନ୍ତୀ ପୁର ଚମକିଲେ
ଗାୟତ୍ରୀ ସାବିତ୍ରୀ ଯାଇ ବ୍ରହ୍ମାଙ୍କୁ କୋଳକଲେ ।
ଈଶ୍ୱର ତାଟକା ହେଲେ କପିଳାସ ପଡେଭାଙ୍ଗି
ତୁ ମୋତେ କଲୁ କୋଳ ସକଳ ବିଧି ଛାଡ଼ି ।
ସପ୍ତପୁର ରାଜାମାନେ ଚମକି ପଡ଼ିଲେ
ସପ୍ତସାଗର ଯେ ଲହରୀ ସ୍ଥିର ହେଲେ ।
ନର ବାନର ଅସୁର ହେଲେ ମୋର ଗତ
ପର୍ଶୁରାମ ଋଷି ଛାଡ଼ିଲେ ସ୍ଥକିତେ ସେ ତପ ।
ବାସୁକୀ ନାଗ ରାଜା ଭୟରେ ଥରହର
ଧରଣୀ ତେଜିବାକୁ ମନ ଯେ ତାହାର ।
ଧରଣୀ ଦେବୀ ମନରେ ଥରହର ହୋଇ
ସୁମରିଲା ବାସୁଦେବ ମୋରେ କର ତ୍ରାହି ।
ସକଳ ଜୀବ ତରସ୍ତ ହେବାରୁ ଜାଣି ଦୁର୍ଗା
ସୁରଭି ଗୋଟି ଯାଇ ଶ୍ରୀରାମ ଅଙ୍ଗେ ଶୋଭା
କରଯୋଡ଼ି ବୋଇଲେ ଶ୍ରୀରାମ ରକ୍ଷାକର
ଗୁଣ ଟଙ୍କାର ଶବ୍ଦେ ସମସ୍ତେ ହେଲେ ଅସ୍ଥିର ।
ଶ୍ରୀରାମ ବୋଇଲେ ତୁ ଯେ କେବଣ ଅଟୁପୁଣ
ସକଳ ହିତେ ଆସି କରୁ ତୁ ଜଣାଣ ।
ଜୟଦୁର୍ଗା ବୋଇଲେ ମୁଁ ଅଟଇ ଯୋଗମାୟା
ତେଣୁକରି ମୋର ଅଙ୍ଗେ ଘୋଟୁଅଛି ମାୟା ।

ଗୁଣଟଙ୍କାର ଶବ୍ଦରେ ହୋଇଲି ଅସ୍ଥିର
ଦେବ ନାଶବଳ୍କ ନର ବାନର ଅସୁର ।
ଉଡ଼ନ୍ତା ବୁଡ଼ନ୍ତା ଯେ ଚଳନ୍ତି ଅଚଳନ୍ତି
ସମସ୍ତେ ନିର୍ବିକାର ଶୁଣ ଦାଶରଥି ।
ସେ ଗୁଣରେ ଶରକୁ ବସାଇଲେ ସହର
ସମସ୍ତେ ମରିବେଟି ଶୁଣ ଯେ ନିକର ।
ଶ୍ରୀରାମ ବୋଇଲେ ମୁଁ ପରୀକ୍ଷା ନକଲେ
କେମନ୍ତେ ଦୁଷ୍ଟଜନଙ୍କୁ ମାରିବି ହସ୍ତରେ ।
ଯୋଗମାୟା ବୋଇଲେ ହେ ବାରେ ଚିହ୍ନଦିଅ
ଶିରେ ସିନ୍ଦୂର ଲଗାଇ ଉଶ୍ୱାସରେ ବିନ୍ଧ ।
ତେବେ ହେ ଦୁଷ୍ଟଜନ ଯିବାର ନାଶ ଜାଣି
ଶୁଣିକରି ହରଷ ହେଲେ ରଘୁମଣି ।
ଶରର ମୁନରେ ସିନ୍ଦୂର ନେଇ ଦେଲେ
ଉଶ୍ୱାସ କରିଣ ଯେ ଶରକୁ ବିନ୍ଧିଲେ ।
ତେଣୁକରି ଶରଗୋଟି ବେଗ ଚଳିଗଲା
ଦେବ ଦାନବ ମାନବ ନାଗବଳ୍କରେ ଚିହ୍ନଦେଲା ।
ଚଳନ୍ତି ଅଚଳନ୍ତି ବୁଡ଼ନ୍ତା ଉଡ଼ନ୍ତା
ସର୍ବଠାରେ ବିହରି ଅଇଲା ଶରଗୋଟା ।
ଶ୍ରୀରାମଙ୍କ ତ୍ରୋଣରେ ଆସିଣ ସମ୍ଭାଇଲା
ଶରକୁସମ୍ଭାଳି ଶ୍ରୀରାମ ଯୋଗମାୟା କହିଲା
ବୋଇଲେ ସଙ୍କେତ ଦେବି ଦେଖାଆଗମୋତେ
ତେବେ ପ୍ରତେ ଯିବି ମୁଁ ତୁମ୍ଭର କଥାହିତେ ।
ଯୋଗମାୟା ବୋଇଲେ ମୋରକପାଳ ଦେଖ
ମୋର କପାଳ ଦେଖିଲେ ସବୁହେବ ଏହିମତ ।
ବଶିଷ୍ଠ କପାଳ ଦେଖି ଚାପଧାରୀ
ତାଙ୍କର ସମାନେ ସବୁ ଋଷି ସେହିପରି ।
ତୁମ୍ଭ ପିତା ଦଶରଥ ମସ୍ତକ ଚାହିଁଣ
ରାଜାଗଣ ସକଳ ସେହିରୂପରେ ଗଣ ।
ମନ୍ତ୍ରୀ ସୁମନ୍ତର କପାଳ ଦେଖ ଏବେ
ନର ବାନର ଅସୁରଙ୍କର ଏହି ଭାବେ ।
ଅଷ୍ଟଦେବତା ବିରଞ୍ଚି ନାରାୟଣଙ୍କୁ ଦେଖ
ଅନ୍ତଃପୁରେ ପୋଷିଲା ଜୀବଙ୍କୁ ନିରେଖ ।
ଶୁଣିକରି ଶ୍ରୀରାମ ଦେବୀ ମସ୍ତକକୁ ଚାହିଁ
ବଶିଷ୍ଠ ସୁମନ୍ତ ଦଶରଥଙ୍କୁ ଅନାଇ ।
ବିଚାରିଲେ କହିଲେ ଦେବୀ କଥା ସତ
ଶାନ୍ତଶୀଳ ସେଠାରୁ ହୋଇଲେ ରଘୁନାଥ ।

ଲକ୍ଷ୍ମଣ ଶିବଧନୁ ଉପରେ ଗୁଣ ଦେଲେ
ଦେବୀଙ୍କି ବୋଇଲେ କି ଦେବା ଚିହ୍ନଭଲେ ।
ଜୟଦୁର୍ଗା ବୋଇଲେ ନିଅହେ ଅଞ୍ଜନ
ଶୁଣି କାଣ୍ଡ ଫଳରେ ଦେଲେ ଚିହ୍ନ ପୁଣ ।
ଆମଞ୍ଚି ନାରାଚକୁ ଉଶ୍ୱାସେ ଦେଲେ ଛାଡ଼ି
ଦେବ ଦାନବ ହେ ମାନବ ଆଦିକରି ।
ଛପନ କୋଟି ଜୀବ ନାଗବଳ ସ୍ଥଳ
ସମସ୍ତଙ୍କ ମସ୍ତକରେ ଅଞ୍ଜନ ଲାଗିବାର ।
ଶ୍ରୀରାମ ଚାରିଭାଇ ବଶିଷ୍ଠ ଦଶରଥ
ସଙ୍କେତ ଦେଖି ସର୍ବେ ହୋଇଲେ ଉସତ ।
ସେଠାରୁ ଯୋଗମାୟା ଅନ୍ତର୍ଦ୍ଧାନ ହେଲେ
ଦଶରଥ ରାଜା ମନରେ ବିଚାରିଲେ ।
ବୋଇଲେ ନାରାୟଣ ଅଂଶରେ ଚାରିପୁତ୍ର
ଜନମ ହୋଇଛନ୍ତି ବଳରେ ବଳବନ୍ତ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ
ଶ୍ରୀରାମ ଚାହିଁ ବଶିଷ୍ଠେ କହିଲେ ଧୀରକରି ।
ବୋଇଲେ ବାରବର୍ଷ ପୂର୍ଣ୍ଣକାଳେ
ଶିବଧନୁକୁ ପ୍ରାପତଯେହେବ ଅବଶ୍ୟ ତୁମ୍ଭରେ ।
ଲକ୍ଷ୍ମଣଙ୍କୁ ବୋଇଲେ ବତିଶ ବରଷରେ
ପିନାକୀ ଅକ୍ଷୟ ତ୍ରୋଣ ପ୍ରାପତ ଯେ ଭଲେ ।
ଦଶରଥଙ୍କୁ ବୋଲେ ଶ୍ରୀରାମଲକ୍ଷ୍ମଣ ଯେ ଶତ୍ରୁଘ୍ନ
ବତିଶ ବର୍ଷ ପରେ ରଥପରେ କରିବେ ଗମନ ।
ଭରତ ବାର ବରଷ ରଥରେ ବିଜେକରି
ସପ୍ତଖଣ୍ଡ ମେଦିନୀର ପ୍ରଶଂସା ପାଇବେ ପତ୍ରତେରି ।
ଏତେକରି ମେଳ ଭାଙ୍ଗି ସେଠାରୁ ଚଳିଗଲେ
ଦଶରଥଙ୍କ ସଙ୍ଗେ ଚାରି ପୁତ୍ର ଚଳିଗଲେ ।
ବଶିଷ୍ଠ ଚଳିଗଲେ ଯେ ନିଜର ଭୁବନ
ନବବର୍ଷ ପୂରିଯାଇ ଦଶବର୍ଷ ପଶେ ପୁଣ ।
ପାର୍ବତୀ ବୋଇଲେ ସେଠାରୁ କିସ ହେଲା
ବିଦ୍ୟା ଶିକ୍ଷା କରିଲାରୁ କିସ କଲେ ଭଲା ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ସେ କଥା ଗୋଟିତୋତେ ବୁଝାଇ କହିବାଟି ।
ସେଠାରୁ ଶ୍ରୀରାମ ପ୍ରତି ଦିନରେ ପୁଣ
କୋଦଣ୍ଡ ଧରିଣ ବିଜୟ କଲେ ଜାଣ ।
ତିନିପଟ ଲେଖାଏଁ ଚାରିଭାଇ କାଣ୍ଡଧରି
ଶ୍ରୀରାମ ଚାରିଭାଇ କୋଦଣ୍ଡେ ଗୁଣ ଭରି ।

ଲାଖ କଲେ ପ୍ରଥମେ କଦଳୀ ଗଛକୁ
ଶବଦ ଭେଦି ଦଶରଥ ଦେଲେ ତାକୁ ।
ମନକୁ ବିନ୍ଧିଲେ ସେ ସୁମରି ମନ୍ତ୍ର ପୁଣ
ଡାକରେ ସହସ୍ରମାନ ଚଳିଲେ ତକ୍ଷଣ ।
ଅଚଳନ୍ତି ଚଳନ୍ତି ନାଶ କରିଣ ଆସିଶର
ତ୍ରୋଣରେ ମିଳିବାର ଦେଖନ୍ତି ସକଳ ।
କୋଦଣ୍ଡକୁ ଯେତେବେଳେ ଚାରିଭାଇ ଆମଞ୍ଚେ
ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନିପୁର କମ୍ପେ ।
ଧନୁବିଦ୍ୟା ଆତଯାତ ଚାରି ଭାଇଙ୍କର
ଦେଖିହେଲେ ଦଶରଥ ଆନନ୍ଦ ମନର ।
ଛେଲା ଚକ୍ର ଗଦା ଯେ ମୁଦ୍‌ଗର ସାଧିଲେ
ମାଲ ବିନ୍ଧାଣ ଯେ କୁସ୍ତିକି ସାଧିଲେ ।
ସକଳ ବିଦ୍ୟାମାନ ବଶିଷ୍ଠ ଶିଖାଇଲେ
ଧନୁର୍ବିଦ୍ୟାରେ ଯେଣୁ ଯେ ପରିପୂର୍ଣ୍ଣ ହେଲେ ।
ବେନି ବରଷ ପୁଣ ଏଥିରେ ବହିଗଲା
ଧନୁଧରି ଚାରିଭାଇ ହୋଇଲେକ ତୋରା ।
ଶରରେ ଭେଦିନାରାଚ ଭେଦନ୍ତି ଯେତେବେଳେ
ଉଡନ୍ତା ଜୀବମାନେ ପଡ଼ନ୍ତି ଆସି ତଳେ ।
ଏଥୁ ଅନନ୍ତରେ ଦଶରଥ ଯେ ବିଚାରି
ଅଶ୍ୱପରେ ବସିବାକୁ ଅନୁକୂଳ ଲୋଡ଼ି ।
ବଶିଷ୍ଠଙ୍କୁ ବିଚାରି ବୁଝିଲେ ଅନୁକୂଳ
ଆଷାଢ ଶୁକ୍ଳ ଯେ ଦ୍ୱିତୀୟା ରବିବାର ।
ସେ ଦିନ ଚାରି ପୁତ୍ରେ ଅଶ୍ୱରେ ବିଜେକଲେ
ରାଉତ ବେଶ ହୋଇଣ ନଗ୍ରରେ ଫେରିଲେ ।
ବୀରବଲ୍ଲୀ ରତ୍ନଖଡୁ ମସ୍ତକେ କରି ପାଗ
ଗଳାରେ ଚାପସରି ଚନ୍ଦ୍ରହାରା ତେଜ ।
ଶ୍ରୀରାମ ଭରଥ ଯେ ଧବଳ ଜାମା ପିନ୍ଧି
ଲକ୍ଷ୍ମଣ ଶତୃଘନ କଳାପତନି ଛନ୍ଦି ।
କଟୀରେ ସୁନା ସୂତା ଅଙ୍ଗୁଷ୍ଠିରେ ମୁଦି
ବେନିକରି ଅଙ୍ଗୁଷ୍ଠିକି ସୁନ୍ଦର ଦିଶେଭେଦି ।
ବେନି ବାହୁଟି ଅଙ୍ଗୁଷ୍ଠିରେ ମୁଦି ଜାଣ
ଧଳାକଳା ଘୋଡ଼ାଚଢ଼ି ଚାରିପୁତ୍ର ଜାଣ ।
ପାଗପରେ ମୁକୁଟ ଝଲମଲ ଶୋହେ
ବାଜିପରେ ଚଢ଼ିଲେ କୋରଡ଼ା ହସ୍ତ ହୁଏ ।
ଆଗରେ ଶ୍ରୀରାମ ଯେ ପଛରେ ଶତୃଘନ
ମଧରେ ଭ୍ରଥ ଲକ୍ଷ୍ମଣ ଚଳନ୍ତି ଧୀରେ ପୁଣ ।

ଚାରି ଭାଇ ଅଶ୍ୱପରେ ରାଜ୍ୟରେ ଫେରି ପୁଣି
ହୁଳହୁଳି ଶବଦ ଯେ କରନ୍ତି ତରୁଣୀ ।
କୋରଡ଼ା ଉଙ୍ଗାଇଫେରାଇଲେ ଘୋଡ଼ାଭଲେ
ଅଯୋଧ୍ୟା ସୀମାରେ ବୁଲିଣ ଲେଉଟିଲେ ।
ମାଜଣା ସ୍ନାନ ଯେ ସାରିଣ ଚାରି ଭାଇ
ଭୋଜନ ସାରି ପଲଙ୍କେ ପହୁଡ଼ିଲେ ଯାଇ ।
ସେଦିନ ଠାରୁ ପ୍ରତିଦିନ ଅଶ୍ୱ ଚଢ଼ି ଫେରି
ପ୍ରହରେ ଭିତରେ ଶତେଯୁଣ ଭ୍ରମଣ କରି ।
ଦଶରଥ ମହୀପାଳ ଦେଖିଲେକ ଜାଣ
ହସ୍ତୀପରେ ଚଢ଼ାଇବା ବିଚାର କଲେ ପୁଣ ।
ବଶିଷ୍ଠଙ୍କୁ ଡକାଇ କରିଲେ ଅନୁକୂଳ
ଦଧି ମାଛ ପୂର୍ଣ୍ଣକୁମ୍ଭ ସକଳ ଦୁଆର ।
ଶ୍ୱେତ ଚାରି ହସ୍ତୀରେ ଅମରି ସଜକଲେ
ଭାଦ୍ରବପୂର୍ଣ୍ଣମୀ ସିଂହ ଲଗ୍ନରେ ବିଜେକଲେ ।
ବାଦ୍ୟ ଶଙ୍ଖ ମହୁରୀ ଆଗରେ ବାଜେ ଫେରି
ହୁଳହୁଳି ଶବଦରେ ଗହଳ ପୁରି ।
ରାଉତ ବେଶରେ ଚାରି ଭାଇ ବିଜେ ପୁଣି
ଶ୍ରୀରାମ ପଛେ ତିନି ଭାଇ ବିଜେ କଲେ ଜାଣି ।
ରାଜ୍ୟରେ ଫେରିଯାନ୍ତେ ଦେଖିଲେ ନରନାରୀ
ଶ୍ରୀରାମ ରାଏ ବିଜୟେ ବୋଇଣ ହାଲହୋଳି ।
ହସ୍ତୀ ଧୂଆଁଇଣ କରନ୍ତି ଗମନ
ସକଳ ରାଜ୍ୟେ ବୁଲିଣ ଲେଉଟି ତତକ୍ଷଣ ।
ହସ୍ତୀପରୁ ଓହ୍ଲାଇ ସେ ଭିତରେ ଚଳିଗଲେ
ମଣିମା ମଣିମା ଡ଼ାକ ଆଗେ ଡାକ ଭଲେ ।
ମାଜଣା ହୋଇଣ ସ୍ନାନ କରିଣ ବେଗେ
ଷଡ ରସେ ଭୋଜନ କଲେକ ପିତା ସଙ୍ଗେ ।
ଆଶ୍ୱିନ ଶୁକ୍ଳପକ୍ଷ ଦଶମୀ ଗୁରୁବାର
ସେ ଦିନ ଯାନ ପରେ ବିଜୟେ କୁମର
ରାଜ୍ୟ ଦେଶ ବୁଲିଣ ନବରେ ପ୍ରବେଶ
ଦଶରଥ ରାଜା ଦେଖି ହୋଇଲେ ହରଷ ।
କୁମାର ପୂର୍ଣ୍ଣମୀ ଦିନ ସଭା ମଣ୍ଡାଇଲେ
ବଶିଷ୍ଠ ପାତ୍ର ମନ୍ତ୍ରୀଙ୍କି ଡକାଇ ଅଣାଇଲେ ।
ଶ୍ରୀରାମ ସଙ୍ଗରେ ଘେନିଣ ତିନି ଭାଇ
ସଭାରେ ବିଜେକଲେ ଆନନ୍ଦ ମନହୋଇ ।
ସଭା ମଉଳିବାରୁ ଗଲେ ଯେଝା ପୁର
ପ୍ରବେଶ ହେଲା ଆସି ଆଦ୍ୟ ମାର୍ଗଶିର ।

ବେଣ୍ଟର ପାରିଧିକ ଖୋଜିଲେ ଅନୁକୂଳ
କୃଷ୍ଣପକ୍ଷ ନବମୀ ଯେ ସେ ଦିନ ମିତ୍ର ତାର ।
ସେ ଦିନ ପାରିଧିକି ଅନୁକୂଳ କଲେ
ପାତ୍ର ମନ୍ତ୍ରୀ ଅମାନତ୍ୟ ସକଳ ସଙ୍ଗେ ନେଲେ ।
ରଥ ଗଜ ଅଶ୍ୱ ସଙ୍ଗରେ ତପ୍ତର
ଶ୍ରୀରାମ ବିଜୟ କଲେ ବାରୁର ଉପର ।
ତିନି ଭାଇ ତାଙ୍କର ସଙ୍ଗରେ ଚଳିଗଲେ ।
ସେମାନେ ବାରୁ ଉପରେ ତକ୍ଷଣ ବିଜେକଲେ ।
ଅରଣ୍ୟ ଭିତରେ ଯେ ପ୍ରବେଶ ହେଲେ ଯାଇ
ଚାରି ଭାଇ ବାଣ୍ଟିଲେ ପାରିଧି କଲେ ତହିଁ ।
ପ୍ରଥମେ ଶ୍ରୀରାମ ଗଣ୍ଡା ଗୋଟିଏ ମାଇଲେ
ତହିଁ ଉତ୍ତାରୁ ଭ୍ରଥସିଂହ ଗୋଟିଏ ନାଶକଲେ ।
ଲକ୍ଷ୍ମଣଙ୍କର ସେ ଦିନ ବରାହ ପାରିଧି
ଶତ୍ରୁଘନ ପାରିଧି ମୃଗ ବେଣ୍ଟ ସାଧି ।
ପାରିଧି ସାରିଣ ଯେ ଲେଉଟିଲେ ପୁଣ
ରାଜ୍ୟରେ ପ୍ରବେଶ ହେଲେ ସେ ଯାଇଣ ।
ଦଶ ବର୍ଷ ଯେ ସମ୍ପୂର୍ଣ୍ଣ ପୁଣ ହେଲା
ସକଳ ବିଦ୍ୟାରେ ଜିତା କୁମର ହେଲେ ପରା ।
ମାଲ ବିନ୍ଧାଣ କୁସ୍ତି ସାଧିଲେ ସେହୁ ପୁଣ
ଗଦା ମୁଦ୍‌ଗର ଯେ ବୁଲାନ୍ତି ଶକ୍ତି ପୁଣ ।
ଅଶ୍ୱ ଉପରେ ଚଢ଼ିଣ ଜାଣିଲେ କ୍ଷତ୍ରୀବିଦ୍ୟା
ହସ୍ତୀପରେ ବସିଣ ହୋଇ ରାଜ୍ୟ ସିଧା ।
ଧନୁ ଧରି ଟିଙ୍କାର କରନ୍ତି ଗୁଣ ଦେଇ
ସକଳ ବିଦ୍ୟାରେ ନିପୁଣ ବଶିଷ୍ଠ କରାଇ ।
ସଙ୍ଗରେ ଶ୍ରୀରାମ ତିନିଭାଇଙ୍କୁ ଯେ ଘେନି
ବେଣ୍ଟ ପାରିଧି କଲେ ଦିନେ ଛଡାରେ ପୁଣି ।
ସିଂହ, ଶାର୍ଦ୍ଦୁଳ, ମୃଗ ମାରନ୍ତି ସୟମ୍ବର
ଗଣ୍ଡା, ମଇଁଷି, ଖୁରୁଙ୍ଗ, ବରେହା, ଗୟଳ ।
କଟକେ ପ୍ରବେଶ ହୋନ୍ତି ଦେଖନ୍ତି ସର୍ବଜନ
ଶୁଣନ୍ତି ପାର୍ବତୀ ଯେ କହନ୍ତି ପଞ୍ଚାନନ ।
ପରମବ୍ରହ୍ମ ଶ୍ରୀରାମ ସ୍ୱୟଂ ଅବତାର
ଦୁଷ୍ଟ ନିବାରି ସନ୍ଥ ଜନଙ୍କୁ ଉଦ୍ଧାର ।
ନର ବାନର ଦେବତା ନାଗବଳ ହିତେ
ବାସୁଦେବ ଅବତାର ହୋଇଲେ ଜଗତେ ।
ଯା' ନାମ ସୁମରିଲେ ସକଳ ପାପଯାଇ
ଯେତେ ପାପ ଥିଲେ ଅଙ୍ଗେ କ୍ଷୟଯାଇ ।

ଏବେ ଆଦ୍ୟ କାଣ୍ଡ ଯେ ଶାମବେଦ ବାଣୀ
ବାଲମୀକ ମୁନି ଦେବ ପୁରାଣେ ବଖାଣି ।
ସଙ୍କଳ୍ପ କରିଣ ଯେ ଶୁଣି ଏହା ନିତ୍ୟେ
ଅପୁତ୍ରିକ ପୁତ୍ର ଯେ ପ୍ରାପତ ହୁଏ ଏଥେ ।
ସୁଜ୍ଞଜନେ ଶୁଣିଲେ ମିଳିବ ସଦଗତି
ସଦାଶିବ ଆଗେ ଏହାକହେ ଭଗବତୀ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିଅମ୍ବକ
କଥାଏ ରହିଲା ଦେବ ନ ଶୁଣିଲି ମୁଁ ତ ।
ବାସୁଦେବ ଚତୁର୍ଦ୍ଧା ମୂର୍ତ୍ତି ରୂପେ ଜାତ
ଆଜ ଦଶବର୍ଷ ଲୀଳା ଶୁଣିଲି ସକଳତ ।
ସାଗର ଦୁଲଣୀ ଯେ ଅଟନ୍ତି କମଳା
ଚାରି ରୂପ ଧରିଣ ସେ ଜନ୍ମ ହେଲେ ପରା ।
ଜନମ ହେବାର ମୁଁ ଶୁଣିଥିଲି କର୍ଣ୍ଣେ
ଜନକ ଋଷି ଘରେ କିସ କଲେ କି ଗୁଣେ ।
ଜନକ ମୁନି ନେତ୍ରେ ଦୁହିତା ଦେଖିବାରୁ
ଧନୁ ସ୍ୱୟମ୍ବରକୁ ସେ ମନରେ କଲେଗରୁ ।
ନିୟମ କଲେ ଋଷି ଶିବଧନୁ ଯେ ଧରିବ
ଅଯୋନି ସମ୍ଭୁତା ଦୁହିତା ସତୀଙ୍କୁ ବିଭାହେବ
ଶୁଣିଣ ଦୁର୍ବାସା ଯେ ଜନକଙ୍କୁ କହି
ଧନୁଯାଗ ଏଗାର ବରଷେ କର ତୁହି ।
ସେ କଥାକୁ ପାଳିଲେ ଜନକ ମୁନିବର
ଚାରି ଦୁହିତା କିସ ଯେ କଲେକ ତାଙ୍କର ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ସେ କଥା ଫଳାଇ ଯେ କହିବା ତୁମ୍ଭକୁଟି ।
ଯାଗରେ ଫାଲମୁନେ ଜାନକୀହେଲେ ଜାତ
ଅଯୋନି ସମ୍ଭୁତା ଏ ସାଗର ଦୁହିତ ।
ସେ ନାରୀକି ଦେଖନ୍ତେ ହୋଇଲେ ନବଯୁବା
ତ୍ରିପୁର ମୋହିନୀ ଯେ ପାର୍ବତୀ ପ୍ରାୟ ଶୋଭା ।
ଦେଖିଣ ଜନକ ଯେ ହରଷମନ ହେଲେ
ଶିବଧନୁ ଯେ ଭାଙ୍ଗି ବତାକୁ ଦେବଇଁ ବୋଇଲେ ।
ଦୁର୍ବାସା ବୋଇଲେ ଏ ଅଦ୍ଭୁଟ ନାରୀ ଜାତି
ପାକ୍ ସ୍ନାନ ଶୁଦ୍ଧ ସ୍ନାନ ଅଗ୍ନିରେ ହୁଅନ୍ତି ।
ଶୁଣିଣ ଋଷିମାନେ ବୋଇଲେ ଜାଣିବା
ଅଗ୍ନିରେ ପରୀକ୍ଷା କଲେତେବେ ସେ ବୁଝିବା ।
ଏମନ୍ତେ ବିଚାରନ୍ତେ ବେନି ଦିବସ ଗଲା
ଜନକର ନନ୍ଦିନୀ ଯେ ପାକସ୍ପରଶ ହେଲା ।

ପାଞ୍ଚଦିନରେ ଅଗ୍ନିରେ କଲେକ ସ୍ନାହାନ
ନିର୍ମଳ ଦିଶେ ସତୀ ଉଜ୍ଜ୍ୱଳ ଦେହ ପୁଣ ।
ଦେଖିଣ ସକଳ ଋଷି ପରମ ତୋଷ ହେଲେ
ଏଗାର ବର୍ଷ ଯାଏ ଧନୁଯାତ୍ରା ସେହୁ କଲେ ।
ଜାନକୀ ଜନ୍ମ ଯେ ପ୍ରଥମ ବର୍ଷରେ
ପ୍ରଥମ ଯାଗ ଜନକ କଲେ ସମ୍ବର୍ତରେ ।
ଯେ ଯାଗ ସମାପତ ପୂର୍ଣ୍ଣ ଆହୁତି ବେଳେ
ଅଯୋନି ସମ୍ଭୂତରେ ଦୁହିତା ଜାତ ହେଲେ ।।
ଯେ ଦୁହିତାର ନାମ ଯେ ହୋଇଲା ଉର୍ମିଳା
ତିନିମାସ ଉତ୍ତାରୁ ହୋଇଲା ରଜସ୍ୱଳା ।
ପାଞ୍ଚଦିନେ ଅଗ୍ନିରେ ସ୍ନାନ ପୁଣି କଲେ
ଅଯୋନି ବେନି ଦୁହିତା ଜନକ ପାଳିଲେ ।
ତୃତୀୟ ସ୍ୱୟମ୍ବର ଯାଗର ସମ୍ଭାର
ସ୍ୱୟମ୍ବର ବରଣ କଲେକ ଋଷି ମେଳ ।
ଦେବଋଷି, ବ୍ରହ୍ମଋଷି, ସିଦ୍ଧଋଷି ଜାଣ
ନାଗ ଋଷି ଶିବଋଷି ରାଜା ଋଷି ପୁଣ ।
ତିନିପୁର ବରିଲେ ଜନକ ଋଷି ଜାଣ
ନିମନ୍ତ୍ରଣ ପାଇ ଋଷିମାନେ ମିଳେ ପୁଣ ।
ଅଗସ୍ତି ମାର୍କଣ୍ଡ ପୁଣ ବିଶ୍ୱାମିତ୍ର ଗଲେ
ତିନିପୁରର ଋଷିମାନେ କରିଣ ଆଣିଲେ ।
ତିନିମାସ ପନ୍ଦର ଦିନ ଯାଗ ସମାପତ
ଜନକ ବୋଇଲେ ଶୁଣ ସକଳ ତପୋବନ୍ତ ।
ଅଯୋନି ସମ୍ଭୂତେମେରୁ ଦୁହିତା ବେନିଜାତ
ଋତୁ ସମାପତରେ ଅଗ୍ନିରେ ସ୍ନାହାନତ ।
ତେଣୁକରି କଥାଏ ନିୟମ ମୁଁ ଯେ କଲି
ଶିବଧନୁ ଯେ ଟେକିବ ଦୁହିତା ତାକୁ ଦେବି ବୋଲି ।
ସେଥିର ସକାଶେ ମୁଁ ଯେ କରୁଛି ଧନୁଯାଗ
ତିନିପୁର ଋଷି ବରି କରୁଛି ସଂଯୋଗ ।
ଧନୁ ଧର ଆମଞ୍ଚିବାକୁ ଯାର ଅଛି ବଳ
ଯେ ଧନୁକୁ ଟେକିବି ଦୁହିତା ଦେବି ମୋର ।
ଶୁଣିକରି ଋଷିମାନେ ଧନୁକୁ ଦେଖି ଗଲେ
ଶିବଧନୁ ଦେଖିବାରୁ ମୋହମାନ ହେଲେ ।
କେହୁ ଅଚେତ ହେଲେକେ ପୁଣଗଲେ ମୋହ
କେହୁ ପଳାଇବାରେ ଅସମ୍ଭାଳ ଦେହ ।
ଦେଖିକରି ଜନକ ଯେ ମନେ ମନେ ଭାଳି
ବୋଇଲେ ଋଷିମାନେ ଭାର୍ଜନ ନୋହେତୋଳି ।

ତେଣୁ ଧନୁଯାତ୍ରାକୁ ନିବର୍ତ୍ତ କରାଇଲେ
ଏହି ସମୟରେ ଭାଇ ଆସି ଯେ ମିଳିଲେ ।
କୁଶଧ୍ୱଜ ବୋଇଲେ ଶୁଣିବ ଜ୍ୟେଷ୍ଠ ନନା
ବେନିଗୋଟି ଦୁହିତା ଜନ୍ମ ହେଲେ ସିନା ।
ଯାଉଁଳି ଜନ୍ମ ଯେ ହୋଇବାରୁ ପୁଣ
ମାଳିନୀ ସୁମାଳିନୀ ତାଙ୍କ ନାମ ଜାଣ ।
ଜନକ ବୋଇଲେ ଶିବ ଧନୁ ଯେ ତୋଳିବ
ଆମଞ୍ଚି ଗୁଣ ଦେଇ ଟଙ୍କାର କରିବ ।
ତାହାକୁ ଚାରି ଦୁହିତା ଦେବାର ମୋର ମୂଳ
ସାକ୍ଷୀ ହୋଇଥାନ୍ତୁ ମୋର ଦଶଦିଗପାଳ ।
ବେନିଭାଇ ଜାଣିଣ ଯେ ପ୍ରମାଣ ଯହୁଁ କଲେ
କୁଶ ଧ୍ୱଜ ମୁନି ଯେ ରାଜ୍ୟକୁ ଚଳିଗଲେ ।
ତିନିପୁର ଋଷିଯାକ ମେଲାଣି ହୋଇଗଲେ
ସନମାନ ଧନରତ୍ନ ପାଇଣ ଚଳିଲେ ।
ଯେ ଯାହାର ଆଶ୍ରମରେ ମିଳିଲେ ଯାଇ ପୁଣ
ଏ କଥାକୁ ଶାକମ୍ଭରୀ ଏଣେ ଶୁଣ ।
ତୃତୀୟ ବରଷରେ ଜନକ ଋଷି ପୁଣି
ଧନୁଯାଗ କରିବାକୁ ଉଦବେଗ ଜାଣି ।
ଗୌତମ ବିଶ୍ୱାମିତ୍ର ମନରେ ସୁମରିଲେ
ଜାଣିକରି ବେନିଋଷି ଆସିଣ ମିଳିଲେ ।
ଦେଖିଣ ଜନକ ଋଷି ମାନ୍ୟଧର୍ମ କଲେ
ପାଦ ପଖାଳିବାକୁ ନେଇ ଗଙ୍ଗାଜଳ ଦେଲେ ।
ଚରଣ ପାଖଳି ମୁନି ଆସନରେ ବସି
ବୋଇଲେ କିମ୍ପା ଜନକ ଚିନ୍ତାକର ବସି ।
ଜନକ ବୋଇଲେ ବେନି ଦୁହିତା ସକାଶରେ
ସତ୍ୟକରି ଯାଗ ମୁଁ କରି ଦୁଇଥରେ ।
ପ୍ରଥମ ଯାଗ କରନ୍ତେ ଦୁହିତା ଜାତ ହେଲେ
ଦ୍ୱିତୀୟ ଯାଗରେ କେହୁ ଧନୁ ନ ଧରିଲେ ।
ତୃତୀୟ ଯାଗକୁ ଏବେ କରଇ ସମ୍ଭାର ।
ତୁମ୍ଭେ ବେନି ମୁନି ଯାଇ ଦେବତାଙ୍କୁ ବର ।
ଏତେ କହି ଯାଗ ଯେ ଆରମ୍ଭ ମୁନି କଲେ
ବିଶ୍ୱାମିତ୍ର ଗୌତମ ସ୍ୱର୍ଗପୁର ଗଲେ ।
ସକଳ ଦେବତାକୁ ବରିଲେ ଯାଇକରି
ଚନ୍ଦନ ଫୁଲମାଳ ଦେଇ ଦେବଙ୍କୁ ଗଲେ ବରି ।
ବରନ୍ତେ ନଉସାଗର ଦେବଙ୍କୁ ବରିଲେ
ସୁରରାଜା ସଙ୍ଗରେ ଦଶଦିଗପାଳେ ।

ବୃହସ୍ପତି ସଙ୍ଗରେ ଅଇଲେ ନବଗ୍ରହ
ଚନ୍ଦ୍ର ସୂର୍ଯ୍ୟ ଅଶ୍ୱିନୀ କୁମାରେ ହେଲେ ପ୍ରିୟ ।
ମିଥିଳାର ସଭାରେ ସକଳ ଦେବେ ମିଳି
ଜାଣିଣ ଜନକ ଋଷି ମାନ୍ୟ ଧର୍ମ କରି ।
କରଯୋଡ଼ି ଜନକ ଦେବତାଙ୍କୁ ଚାହିଁ
ବେନି ଗୋଟି ଦୁହିତା ଅଗ୍ନିରୁ ଜାତ ହୋଇ ।
ଜନମ ହୋଇ ଦୁହିତା ହେଲେ ନବଯୁବା
ତାକୁ ଦେଖି ମୁହିଁ ଯେ ପ୍ରଣାମ କଲି ଅବା ।
ବୋଇଲି ଶିବଧନୁ ଯେ ମୋର ପୁରେ ଅଛି
ଯେ ଧନୁ ଧରିବ ଦୁହିତା ଦେବି ମୁଁ ଟି ।
ପ୍ରଥମେ ଋଷିଙ୍କି ବରଣ ମୁଁ ଯେ କଲି
ତାଙ୍କ ବଳରେ ଧନୁ ନ ଧରେ କେହି ପେଲି ।
ଏବେ ଧନୁ ଯାଗ କରି ବରିଲି ତୁମ୍ଭଙ୍କୁ
ବରଣ କଲି ତୁମ୍ଭଙ୍କୁ ଧନୁ ଧରିବାକୁ ।
ଶୁଣିକରି ସୁରରାଜା ବୋଇଲେ ମୁନି ଶୁଣ
ଧନୁକୁ ଅଣାଅ ଦେଖିବା କେବଣ କାରଣ ।
ଶୁଣିଣ ଜନକ ଋଷି ଧନୁଘର ଫେଡ଼ି
ବୋଇଲେ ସକଳ ଦେବେ ଦେଖ ଯାଇକରି ।
ଦେଖିବାକୁ ସୁରରାଏ ପ୍ରଥମେ ଚଳିଗଲେ
ଧନୁକୁ ସେ ଚାହିଁଣ ଯେ ଅଚେତ ହୋଇଲେ ।
ଦେଖିବାକୁ ଦଶଦିଗପାଳେ ଗଲେ ପୁଣ
ଧରନ୍ତେ ମୋହହେଲେ ସେହୁ ଏବେ ଜାଣ ।
ଦିଗପାଳ ମୋହ ଦେଖିଣ ନବଗ୍ରହେ
ଗୁମାନ କରିଣ ଧନୁର ପାଶେ ଯେ ହୁଏ ।
ଧନୁକୁ ଚାହଁନ୍ତେ ଚକ୍ଷୁକୁ ନ ଦିଶି
ଅନ୍ଧପ୍ରାୟେ ହୋଇଣ ଭାଳିଲେ ସର୍ବେ ବସି ।
ଦେଖିବାକୁ ଆଦିତ୍ୟ ଚନ୍ଦ୍ରମା ଯେ ଗଲେ
ଧନୁକୁ ଚାହିଁଣ ସର୍ବେ ଫେରିଣ ଅଇଲେ ।
ଚନ୍ଦ୍ର ସୂର୍ଯ୍ୟ ଫେରିବାରୁ ଅଇଲେ ଅଷ୍ଟବସୁ
ଧନୁକୁ ଦେଖିବାରୁ ତୁଟିଗଲା ବପୁ ।
କ୍ଷୀଣ ହେବାରୁ ଯେ ଧରଣୀରେ ପଡ଼ି
ଦେଖିବାକୁ ଦେବତାଏ ଗଲେ ପ୍ରତାପ କରି ।
ଧନୁର ଦର୍ଶନରେ ସମସ୍ତେ ମୋହ ଗଲେ
ପ୍ରହରକେ ଚେତା ପାଇଣ ପଳାଇଲେ ।
ସୁର ରାଜା ନବଗ୍ରହ ଦିଗପାଳ ଯେତେ
ଅଷ୍ଟବସୁ ଚନ୍ଦ୍ର ସୂର୍ଯ୍ୟ ଦେବତା ସମସ୍ତେ ।

ନକହି ଦେବଗଣ ସ୍ୱର୍ଗକୁ ଚଳିଗଲେ
ଏହା ଦେଖି ଜନକ ଯାଗ ସମାପତ କଲେ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିଲୋଚନ
ଜନକ ଉର୍ମିଳା କନ୍ୟା କଲେ ବିଚାରଣ ।
ଈଶ୍ୱର ବୋଇଲେ ଧନୁ ଧରିବାର ବେଳେ
ସେ ଦୁଇ କନ୍ୟା ଥାନ୍ତି ଜଗତୀ ଉପରେ ।
ଦାସୀଗଣମାତାଗଣ ସଙ୍ଗରେ ତାଙ୍କର
ବୈଦୂର୍ଯ୍ୟ ମଣ୍ଡପରେ ବିଜୟେ ସହର ।
ମଣ୍ଡପ ଉପରକୁ ଧନୁ ଧରିବାକୁ ସ୍ଥାନ
ଝାଲେରୀ ବାଡ଼ରେ ଚାହାଁନ୍ତି ନାରୀଗଣ ।
ଦେଖିଲେ ଋଷି ଦେବତା ଫେରିକରି ଗଲେ
ଦାସୀମାନେ ତାଳି ମାରି ହାସ୍ୟ ଯେ ପୁଣକଲେ ।
ମାତାମାନେ ମନରେ ଯେ ହୋଇଲେ ବିମୁଖ
ବୋଇଲେ ଜନକ ସିନା ଦେଲେ ଏତେ ଦୁଃଖ ।
ଯୁବା କନ୍ୟା କେତେ ଦିନ ଘରେ ସାଇତିବା
ନିଶ୍ଚୟେ ଉପହାସ ଏ ରାଜ୍ୟେ ପାଇବା ।
ଝିଅ ଘିଅ ସମ୍ଭାଳି ନୋହେ ବିଧାତା କହିଲା
ଅସମ୍ଭାଳ ବୋଲି ବେଦ ପୁରାଣେ ଲେଖିଲା ।
ଯୁବା ଝିଅ ଯେ ରଖଇ ଶୁଣଇ ମନ୍ଦ କଥା
ବହୁତ ଦିନ ରହିଲେ ପିତୃ ଲୋକକୁ ବ୍ୟଥା ।
ବହୁତ ଦିନ ରଖିଲେ ନାଶଯାଏ ଘୃତ
ବହୁତ ଦିନ ଘୃତ ଆମିଷେ ଲେଖିତ ।
ଝିଅ ଯେବେ ଯୁବାହୁଏ କୁଳକୁ ଲଜ୍ୟାକଥା
ତେବେ ପିତା ମାତାଙ୍କୁ ଲାଗଇ ବଡ଼ ବ୍ୟଥା ।
ଦେଖିକରି ଦେବତା ଋଷି ଗଲେ ଘୁଞ୍ଚି
ଏ ଧନୁକୁ ଆମଞ୍ଚିବାକୁ କାହାର ବଳ ଅଛି ।
ଉର୍ମିଳା ବୋଇଲେ ଜନନୀଙ୍କର ମନେ ଚିନ୍ତା
ବଡ଼ ଦୁହିତାଙ୍କର ବର ଅଟନ୍ତି ଜଗଜିତା ।
ନାରାୟଣଙ୍କ ବନିତା ସାଗର ଦୁଲାଳୀ
ପିତାଦୁଃଖ ନାଶଯିବ ବାସୁଦେବଙ୍କୁ ଦେଖିକରି
ଏ ଜନ୍ମ ଗୋଟି ତାର ଐଶ୍ୱର୍ଯ୍ୟରେ ଯିବ
ଅନ୍ତେ ବୈକୁଣ୍ଠପୁରେ ସ୍ଥାନହିଁ ମିଳିବ ।
ଜନକରାଣୀ ବୋଲେ ଶୁଣ ଜେମାଦେଈ
କେତେଦିନେ ହରିଙ୍କି ମୁଁ ନୟନେ ଦେଖିବଇଁ ।
ଉର୍ମିଳାବୋଲେଦେଖିବୁ ଏଗାର ବର୍ଷ ଛଡ଼ମାସ
ଏଗାର ଥର ଯଜ୍ଞର ସମାପତ ଶେଷେ ।

ଜନନୀ ବୋଇଲେ ମାତ ତୋର କଥା କହତ
ଫୁଲାଣିଆ କଥା କହି ତୋଷ ମୋର ଚିତ୍ତ ।
ଉର୍ମିଳା ବୋଇଲେ ଜନନୀ ମୋର କଥାଶୁଣ
ଅସୁର ମାରିବାକୁ ଜାତ ଯେ ନାରାୟଣ ।
ଶୟନ ଶୂନ୍ୟ କରି ଅନନ୍ତକୁ ଘେନି
ମେଦିନୀରେ ନାରାୟଣ ଜାତ ହେଲେ ପୁଣି ।
ଚତୁର୍ଦ୍ଧା ମୁରତିରେ ଜନ୍ମ ନାରାୟଣ
ଆମ୍ଭର ଚାରିଭଉଣୀଙ୍କି ସେ ଚାରିଭାଇ ବିଭାପୁଣ ।
ଶୁଣିଣ ଜନକ ରାଣୀ ହରଷ ହୋଇଲେ
ଜାନକୀ ଉଠିଯାଇ ଭଗ୍ନୀଙ୍କୁ କୋଳକଲେ ।
ହାସ ରସ ଖେଳ କଲେ ସେହିକ୍ଷଣି ପୁଣ
ଜନନୀ ଦୁହିତା ଦାସୀ ହରଷ କଲେ ମନ ।
ପାର୍ବତୀ ବୋଇଲେ ଜନକ ତିନି ଯାଗକଲା
ସେଠାରୁ କିସ କଲେ କହ ମୋତେ ଭଲା ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣରେ ଭଗବତୀ
ତୃତୀୟ ଯଜ୍ଞ ସରନ୍ତେ ଜନକ ବିଚାରନ୍ତି ।
ଚତୁର୍ଥ ଯାଗକୁ ଋଷି ଉତ୍ସବ କରାଇଲେ
ଦୁର୍ବାସା ନାରଦଙ୍କୁ ସୁମରଣା କଲେ ।
ବୋଇଲେ ଶିବଗଣ ନାଗବରଙ୍କୁ ବର
ତୁମ୍ଭେ ଆସିଲେ ଯାଗେ ଆଚାର୍ଯ୍ୟହେବ ମୁନିବର ।
ଶୁଣିକରି ଦାରଦ ଯେ ବେଗେ ଚଳିଗଲେ
କପିଳାସ କନ୍ଦରେ ପ୍ରବେଶ ଯାଇ ହେଲେ ।
ସଦାଶିବ ଚରଣେ କରି ନମସ୍କାର
ବୋଇଲେ ଜନକ ଋଷି ଯଜ୍ଞକୁ ଏବେ ଚଳ ।
ଅଯୋନି ସମ୍ଭୁତ କନ୍ୟା ତାଙ୍କ ଘରେ ଜାତ
ଏ ଧନୁ ଯେ ଟେକିବ ତାକୁ କନ୍ୟା ପରାପତ ।
ଈଶ୍ୱର ବୋଇଲେ ମୁନି ସେ ଧନୁ ମୋହର
ମୁହିଁ ଆମଞ୍ଚିବାର ନୁହଁଇ ବେଭାର ।
ସେ ଜନକ ନନ୍ଦିନୀ କି ଅନନ୍ତ ନାରାୟଣ
ଏହୁ କମଳାଙ୍କୁ ବିଭାହେବେ ପୁଣ ।
ନାରାୟଣ ଶାଖାରେ ବେନିଭାଇ ଜାତ
କୁଶଧ୍ୱଜ ଦୁହିତାକୁ ବିଭାହେବେ ସେତ ।
ଯଜ୍ଞ କରିବାରୁ ଦେବତାଏ ହବିପାଇ
ଏଗାର ଥର ପୂର୍ଣ୍ଣ ଆହୁତି କରିବଇଁ ।
ତେବେ ଋଷି ଦେଖିବେ ଚତୁର୍ଦ୍ଧା ମୁରତି
ଏଗାର ବର୍ଷ ଛଡ଼ମାସେ ଏ କନ୍ୟାଭେଟିବତି ।

ସକଳ ଶିବେ ଯାନ୍ତୁ ନ ଯିବି ମୁହିଁ ପୁଣି
ପୁତ୍ରମାନେ ମୋହର ସଙ୍ଗରେ ଯିବେ ଜାଣି ।
ଦେଖି ସର୍ବେ ଫେରିବେ ସକତା ନୋହିବେ
ଏତେ ବୋଲି ଶିବଗଣ ସୁମରିଲେ ବେଗେ ।
ଜାଣି ଚଉଦ କୋଟି ଶିବ ବୃଷଭ ଚଢ଼ି
ଚଉଦ କୋଟି ଡମ୍ବରୁ ସଙ୍ଗରେ ଯେ ଧରି ।
ମିଥିଳାର ନବରେ ଜନକ ଋଷିପୁଣ
ଧନୁ ଯଜ୍ଞ କରଇ ଦୁହିତା ନିମନ୍ତେଣ ।
ସେ ଧନୁ ଯେ ଧରିବ ଦୁହିତା ତାକୁ ଦେବ
ଚଉଦ ବ୍ରହ୍ମାଣ୍ଡରେ ଈଶ୍ୱର ବୋଲାଇବ ।
ଶୁଣିକରି ଶିବଗଣ ଈଶ୍ୱର ପୁତ୍ର ଘେନି
ମିଥିଳା ନବରରେ ବିଜୟ କଲେ ପୁଣି ।
ଦୁର୍ବାସା ବୋଇଲେ ଜନେକ ଋଷିଙ୍କି
ଧନୁଘର ଫେଡ଼ିଲେ ଶିବଦେଖିବେଧନୁଟିକି ।
ଶୁଣିଣ ଜନକ ପୁଣି ଧନୁଘର ଫେଡ଼ି
ପ୍ରଥମେ କାର୍ତ୍ତିକେଶ୍ୱର ଧନକୁ ଯାଇ ଟୋଳି
ଧନୁ ଟୋଳି ନପାରି ଲାଜରେ ଫେରିଲା
ଡାକ ହାକ କରି ଗଣପତି ଯେ ମିଳିଲା ।
ଥୋରହସ୍ତେ ଦଶଭୁଜେଟୋଳନ୍ତେ ଲମ୍ବୋଦର
ଟୋଳି ନ ପାରିଲେ ଧନୁ ପାର୍ବତୀ କୁମର ।
ନନ୍ଦି ଭୃକୁଟୀ ଯେ ମିଳିଲେ ଧନୁ ପାଶେ
ସଙ୍କେତ ସିଂହରଡ଼ି ଦେଲେକ କ୍ରୋଧଚିତ୍ତେ ।
ଧନୁ ଧରନ୍ତେ ଯାଇ ଅଚେତାସେହୁ ହେଲେ
ସେଠାରୁ ଚଉଦକୋଟି ଶିବଗଣ ଗଲେ ।
ଧନୁକୁ ଦେଖିଣ କେହି ଭରସି ନ ପାରି
ଫେରିଲେ ଶିବଗଣ ମନରେ ଭୟକରି ।
ତେଣୁ ଯେ ଶିବଗଣେ ଆମଞ୍ଚି ନ ପାରିଲେ
ଫେରିଣ ଶିବ ପାଶେ ଆସିଣ ମିଳିଲେ ।
ବୋଇଲେ ଧନୁ ଆମ୍ଭେ ନ ପାରିଲୁ ଟୋଳି
ଏତେକହି ମେଳ ଭାଙ୍ଗିଯେ ଯାହାର ଚଳି ।
ପାର୍ବତୀ ବୋଇଲେ ତୁମ୍ଭର ବପୁ ହୀନ
ବୋଲାଉ ଥାଅ ଯେ ପ୍ରଭୁତୁମ୍ଭେ ବଡ଼ ଜାଣ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ଗଉରୀ
କାହାରୀ ନାରୀକି ସେ କେହୁ ଯେ ନେଇପାରି ।।
ତୁମ୍ଭଙ୍କୁ ଯେତେ ବେଳେ ଆମ୍ଭେ ପରାପତ
ସକଳ ଦେବ ଚାହିଁ ନପାରେ ନେତ୍ରପଥ ।

ପାର୍ବତୀ ବୋଇଲେ ନାରଦ ତଳପୁର ଗଲେ
ନାଗବଳ ଆଣିବାକୁ ଜନକ ପେଷି ଥିଲେ ।
ଆସିଲେଟିକି ନାଗବଳ ଘେନି କରି
ସେ କଥା ମୋର ଆଗରେ କହିବା ଶୂଳଧାରୀ ।
ଈଶ୍ୱର ବୋଇଲେ ଯେ କଥା ଏବେ ଶୁଣ
ନାଗବଳ ଆଣିବାକୁ ନାରଦ ଗଲେ ପୁଣ ।
ବାସୁକୀ ରାଜାକୁ ଯାଇ କଲେକ ନିମନ୍ତ୍ରଣ
ବାସୁକୀ ବୋଇଲା ମୁଁ ଯିବଇଁ କେମନ୍ତେଣ ।
ଧରଣୀ ଧରିଛି ମୁଁ ଦେଖ ହେ ସାକ୍ଷାତେ
ଛାଡ଼ିଣ ଏହାକୁ ମୁଁ ଯିବଇଁ କେମନ୍ତେ ।
ନାରଦ ବୋଇଲେ ଧରଣୀ ଧରିବାକୁ ପୁଣ
ସପ୍ତପୁର ମଧ୍ୟରେ କେହ୍ନୁ ଅଛି ଜାଣ ।
ବାସୁକୀ ବୋଇଲେ ମର୍ତ୍ତ୍ୟପୁରରେ ପର୍ଶୁରାମ
ଈଶ୍ୱରଙ୍କ ନନ୍ଦନ କାର୍ତ୍ତିକେଶ୍ୱର ଜାଣ ।
ଦୈତ୍ୟଗଣ ମଧ୍ୟରେ ଅଟଇ ପ୍ରହ୍ଲାଦ
ବାନରଙ୍କ ମେଳରେ ବାଳୀ ବଳବନ୍ତ ।
ନରଙ୍କ ମଧ୍ୟରେ ନୃପତି ଲଲାଟ କେଶରୀ
ଏ ଚାରିଜଣ ଅଇଲେ ଧରଣୀ ଧରିପାରି ।
ନାରଦ ବୋଇଲେ ଲଲାଟ କେଶରୀ ରାଜନ
କେଉଁଦେଶେ ଘର ତାଙ୍କ କେଉଁକୁଳେ ଜନ୍ମ ।
ବାସୁକୀ ବୋଇଲେ ଜମ୍ବୁଦ୍ୱୀପରେ ତାଙ୍କସ୍ଥାନ
ଗିରିଜା ମଣ୍ଡଳେ ଓଡ଼ରାଷ୍ଟ୍ର ନାମ ପୁଣ ।
ତାହାର ଏକ ପୁତ୍ର ଏକଇ ଦୁହିତା
ଗଙ୍ଗବଂଶ ତିଳକ ସେ ଅଟଇ ଜଗଜିତା ।
ବିଷ୍ଣୁର ଅଂଶରେ ବିଷ୍ଣୁ ଭକ୍ତ ଜାତ
ତେଣୁ ସେ ନାରାୟଣରେ ନିୟତ କରିଚିତ୍ତ ।
ପ୍ରତିଦିନ ବାସୁଦେବ ଅପରାଜିତା ପୁଣି
ଲକ୍ଷେ ପଦ ଭଜରେ ସମ୍ପୂର୍ଣ୍ଣ କରେ ପୁଣି ।
ନାରଦ ବୋଇଲେ ମୁଁ ତାହାଙ୍କୁ ଦେବି କହି
ପର୍ଶୁରାମ ଗୋଲକ ଆସିବା ନୁହଁଇ ।
ବାସୁକୀ ବୋଇଲେ ଯେ ଆସନ୍ତୁ ପର୍ଶୁରାମ
ରାଜା ଆସିଲେ ଗାରିମା ହେବ ବଢ଼ ପୁଣ ।
ଶୁଣିଣ ନାରଦ ଯାଇ ତଳପୁର
କର୍କଟ ଶୀତଳବନ ପ୍ରବେଶ ସତ୍ୱର ।
ଦେଖିଲେ ପଶୁରାମ ବସିଛି ଆସନରେ
ବୈଦୂର୍ଯ୍ୟ ସିଂହାସନ ଉପରେ ମଣ୍ଡନରେ ।

କୋଦଣ୍ଡ କୋଠାରେ ଯେ ପାଶରେ ଗଦାଥୋଇ
ଅନାମିକା ଜପଇ ଯେ ମନ ଚଇତନ ଦେଇ ।
ଉପରେ ଇନ୍ଦ୍ର ଗୋବିନ୍ଦ ଚାନ୍ଦୁଆ ଛାଇପୁଣ
ମଳୟ ବହୁଅଛି ଶୀତଳ ଗନ୍ଧ ଜାଣ ।
ଗଙ୍ଗାଜଳ ଘେନିଣ ମୟଦୈତ୍ୟ ଉଭା
ଶୀତଳ ବନ ଗୋଟି ଦିଶୁଅଛି ଶୋଭା ।
ନାରଦ ମିଳିବାରୁ ନ ଫେଡେନୟନ
ଦେଖିଣ ନାରଦ ବୀଣା ଶବ୍ଦ କଲେ ପୁଣ ।
ଶବ୍ଦଭେଦ ହୁଅନ୍ତେ ଯୋଗ ନିଦ୍ରା ଭାଙ୍ଗି
ନାରଦଙ୍କୁ ଦେଖିଣ ମାନ୍ୟକଲେ ବେଗି ।
ପର୍ଶୁରାମ ବୋଇଲେରେ ମୟଦୈତ୍ୟ ଶୁଣ
ଗଙ୍ଗାଜଳେ ନାରଦଙ୍କ ଚରଣ ଧୁଅପୁଣ ।
ଶୁଣିଣ ମୟଦୈତ୍ୟ ଗଙ୍ଗାଜଳ ଘେନି
ନାରଦଙ୍କ ଚରଣ ପଖାଳି ହେଲା ପୁଣି ।
ବୋଇଲେ ପର୍ଶୁରାମ ଆସ ମୋ ଆସନେ
ନାରଦ ବସିଲେ ପର୍ଶୁରାମଙ୍କ ପାଶେ ତେଣେ ।
ପର୍ଶୁରାମ ପଚାରିଲେ ଅଇଲେ ମୁନି କିମ୍ପା
ଯୋଗ ନିଦ୍ରା ଭାଙ୍ଗିଲେଣି ତୁମ୍ଭର କିସ ସଞ୍ଜା ।
ନାରଦ ବୋଇଲେ ତୁମ୍ଭେ ଗୋଲଖନାଥ ଶୁଣ
ଧନୁଯାଗ ମିଥିଳାରେ ଜନକ କରେ ପୁଣ ।
ବେନିଗୋଟି ଦୁହିତା ତାର ଅଯୋନି ସମ୍ଭୂତରେ
ଜାତ ହେବାରୁ ନିୟମ କଲେ ମୁନିବରେ ।
ଶିବ ଧନୁ ଯେ ଆମଞ୍ଚି ତାହାକୁ କନ୍ୟାଦେବି
ନବଖଣ୍ଡ ମେଦିନୀରେ ବଳବନ୍ତ ଅଛି କେ ଦେଖିବି ।
ସେଥିର ସକାଶରେ ଦେବତା ଋଷିଗଣ
ଈଶ୍ୱର ଦିଗପାଳ ବରଣ କଲେ ଜାଣ ।
ସେ ଧନୁକୁ ତୋଳି ସମସ୍ତେ ଘୁଞ୍ଚିଗଲେ
ନାଗବଳ ବାସୁକୀକୁ ଅଣାଇବାକୁ କହିଲେ ।
ଶୁଣିକରି ଆମ୍ଭେ ପାତାଳ ପୁରକୁ ଚଳିଗଲୁ
ବାସୁକୀ ନାଗରାଜାଙ୍କୁ ନିମନ୍ତ୍ରଣ କଲୁ ।
ବାସୁକୀ ବୋଇଲେ ଯେବେ ଆସିବେ ପର୍ଶୁରାମ
ତେବେ ମର୍ତ୍ତ୍ୟପୁରକୁ ମୁଁ ଯିବାର ପ୍ରମାଣ ।
ପର୍ଶୁରାମ ବୋଇଲେ ମିଥିଳା ଆମ୍ଭେ ଯିବା
ଆମ୍ଭେ ତୋଳି ନପାରିଲେ ପଛେ ଆସୁ ନାଗରାଜା ।
ଏତେ ବୋଲି ପର୍ଶୁରାମ କୋଠାର ଗଦାଧରି
କୋଦଣ୍ଡ କାନ୍ଧେପକାଅ ମୟଦୈତ୍ୟକୁବୋଲି ।

ଘେନ ମୋର ସିଂହାସନ ମିଥିଳା ନବରକୁ
ଦେଖିବା ଧନୁଯାଗ କୋଦଣ୍ଡ ସାୟକକୁ ।
ଘେନିଲା ମୟଦୈତ୍ୟ ମସ୍ତକେ ସିଂହାସନ
ମସ୍ତକେ ବସାଇ ଚଳେ ସିଂହାସନେ ପୁଣ ।
ମିଥିଳାର ନବରରେ ହେଲେକ ପ୍ରବେଶ
ରାମତାଳି ହୁଳହୁଳି ଦେଲେକ ସମସ୍ତ ।
ଜନକ ଋଷିପୁଣି ପାଛୋଟି ଘେନିଗଲେ
ଅଗସ୍ତି ପାରେଶ୍ୱର ସକଳ ଋଷି ମୂଳେ ।
ପର୍ଶୁରାମ ବୋଇଲେ ଶିବର ଶରାସନ
କେଉଁଠାରେ ଅଛି ମୋତେ ଦେଖାଅ ବହନ ।
ଶୁଣିଣ ଜନକ ଋଷି ଧନୁ ଘର ଫେଡ଼ି
ଶିବଧନୁ ପାଶରେ ଯେ ପର୍ଶୁରାମ ମିଳି ।
ବୈଦୂର୍ଯ୍ୟ ସିଂହାସନରୁ ଅଇଲେ ଓହ୍ଲାଇ
ପର୍ଶୁରାମ ଆସେ ବୋଲି ହାଳହୋଳି ପଡ଼ିତହିଁ ।
ଜାନକୀ ପଚାରିଲେ ଏ ଗହନ କିସ ପୁଣି
ଉର୍ମିଳା ବୋଇଲେ ଶୁଣ ଗୋ ଠାକୁରାଣୀ ।
ଯମ ଦଗ୍ନିର ସୁତ ପର୍ଶୁରାମ ବୀର
ଶିବ ଧନୁ ଭାଙ୍ଗିବାକୁ ଆସେ ସହର ।
ଗୋଲକ ନାରାୟଣ ଜନ୍ମ ଏହୁ ହେଲେ
ସପ୍ତପୁର ଦୈତ୍ୟଙ୍କୁ ମାରିଣ ସାଧକଲେ ।
ପୂର୍ବଜନ୍ମରେ ତୁମ୍ଭର ଭଗିନୀ ଧୀରାବତୀ
ସାତ ଯୁଗ ହେଲା ସେ ଯେ ତପସ୍ୟା କରନ୍ତି ।
ସେ ନାରୀଙ୍କର ଏହୁ ହେବେ ପ୍ରାଣନାଥ
ତୁମ୍ଭେ ବିଭା ହେବାର ଯିବ ସତର ବର୍ଷତ ।
ତେବେ ଯେ ତୁମ୍ଭ ସ୍ୱାମୀ ସଙ୍ଗରେ ଘେନିଯିବ
ତଳ ପୁରେ ଏ ମୁନିଙ୍କି ବିବାହ କରାଇବ ।
ଜାନକୀ ବୋଇଲେ ଏକି ପାରିବେ ଧନୁଧରି
ବଳବନ୍ତ ପୁରୁଷ ଏ ନାରାୟଣ ସରି ।
ଉର୍ମିଳା ବୋଇଲା ଏ ଧନୁ ଧରନ୍ତେ ବଳେ
ନାରାୟଣଙ୍କ ବନିତାକୁ ତୁମ୍ଭେ ଆଉ କେଶବ ତାମହୀ
ଦେଖ ତୁମ୍ଭେ ନେତ୍ରେ ଏଧନୁକୁ ତୋଳି ନପାରିବ ।
ଉପହାସ ପାଇକରି ଏଠାରୁ ପୁଣ ଯିବ ।
ଏମନ୍ତ ସମୟରେ ପର୍ଶୁରାମ ଗଲେ
ଶିବ ଧନୁ ତୋଳନ୍ତେ ସେ ଅଚେତା ହୋଇଲେ ।
ଚେତାପାଇ ପର୍ଶୁରାମ ଘୁଞ୍ଚିବାର ପୁଣ
ନର ନାରାୟଣ ଋଷି ପ୍ରବେଶ ହେଲେ ଜାଣ ।

ସେହି ଶରାସନକୁ ତୋଳିବାକୁ ଗଲେ
ତୋଳି ନପାରି ଯେ ଲଜ୍ୟାରେ ଲେଉଟିଲେ ।
ଏହା ଦେଖି ପର୍ଶୁରାମ ତଳପୁର ଗଲେ
ବାସୁକୀ ରାଜାପୁରେ ପ୍ରବେଶ ଯାଇ ହେଲେ ।
ଦେଖିକରି ନାଗରାଜା ନମସ୍କାର କଲା
ପର୍ଶୁରାମକୁ ଦେଖିଣ ଧରଣୀ ଛାଡ଼ିଦେଲା ।
ତକ୍ଷଣେ ନାଗରାଜା ନାଗବଳ ଘେନି
ମର୍ତ୍ତ୍ୟପୁରେ ମିଥିଳାରେ ପ୍ରବେଶ ହେଲେ ପୁଣି ।
ଦେଖିଣ ଜନକ ଋଷି ପାଦପୂଜା କଲେ
ଶିବଧନୁଗୋଟି ନାଗରାଜାଙ୍କୁ ଦେଖାଇଲେ
ଦେଖିଣ ଧରଣୀଧର ଓଳଗି ମେଲାଇଲା
ଏ ଧନୁକୁ ମୋର ବଳ ନୁହଁଇ ବୋଇଲା ।
ଭଲଯୋଗେ ଜନକ ହେ ଋଷିକୁଳେ ଜାତ
ବାସୁଦେବ ହେବେ ତୋ ଦୁହିତା ପ୍ରାଣନାଥ ।
ବରୁଣର ଦୁହିତା ତୋ ଘରେ ଜାତ ପୁଣ
ଦେଖିବ ନୟନରେ ଅନନ୍ତ ନାରାୟଣ ।
ଅଳପ ଦିନେ ତୋତେ ପ୍ରସନ୍ନ ହେବେ ହରି .
ଚତୁର୍ଦ୍ଧା ମୂର୍ତ୍ତି ତୁହି ଦେଖିବୁ ନେତ୍ର ଭରି ।
ଏ ଜନ୍ମ ସରିଲେ ତୁ ବୈକୁଣ୍ଠ ଯିବୁ
ଯୁଗଶେଷ ହେଲା ବୋଲି ସେ କଥା ଶୁଣିବୁ ।
ଭଲଯୋଗେ ସଦାଶିବ ପ୍ରସନ୍ନ ତୋତେ ହେଲ
ଏ ଧନୁକୁ ପୂଜାକରି ସାଇତି ଥୁଅ ଭଲେ ।
ସାତଥର ଧନୁଯାଗ ହୋଇବ ଆହୁରିତ
ତେବେ ନାରାୟଣଙ୍କୁ ତ ଦେଖିବୁ ଋଷିପୁତ୍ର ।
ଏତେକହି ନାଗରାଜା ଧନୁ ପାଶୁ ଫେରି
ଜନକ ଋଷିଙ୍କୁ ବୋଲେ ତୁବିଷ୍ଣୁରେ ଉପକାରୀ ।
ମୋତେ କେବଳ ଅଣାଇଲ ମୁଁ ଦେଖିଲି ଧନୁ ନେତ୍ରେ
ଦେଖିବାର ବଧାଇ ମୁଁ ଦେଇଅଛି ତୋତେ ।
ଏ ଧନୁ ଯେ ଧରିବ ସେହିଟି ନାରାୟଣ
ତାର ଅଂଶେ ଅଇଲେ ଅନନ୍ତ ତିନିଜଣ ।
କନକର ମଣ୍ଡଣି ଯେ ଚାରିଗୋଟି ରଥ
ଚାରିଗୋଟି ସିଂହାସନ କାଞ୍ଚନ ସଞ୍ଜାତ ।
ଚାରିଗୋଟି ରାଜବେଶ ତାଙ୍କୁ କରାଇବ
ଚତୁର୍ଦ୍ଧା ମୂର୍ତ୍ତିକୁ ତୁମ୍ଭେ ଦର୍ଶନ କରିବ ।

ଚାରିଗୋଟି ଧବଳ ଯେ ଅମଳାଣ ଛତି
ନାରାୟଣଙ୍କୁ ଦେଲେ ଶୋଭାସେ ଦିଶିବେଟି ।
କଳାଛତି ତିନିଗୋଟି ଦେଉଅଛି ତୋତେ
ବ୍ରହ୍ମଜାତି ହୀରାରେ ମୁଦି ବାଛିଣ ଯତ୍ନେ ।
ଚାରିଗୋଟି ଆଢେଣି ନୀଳାରେ ଜଡ଼ିତ
ଚାରିଗୋଟି ଆଲଟ ଯେ ମାଣିକ୍ୟ ସମ୍ଭୁତ ।
ଚାରିଗୋଟି ବିଞ୍ଚଣି ଯେ ମୁକୁତା ପ୍ରବାଳ
ଚାରିଗୋଟି ପଙ୍ଖା ଅଟେ ହେମର ନିବାଡ଼ ।
ଏ ଚାରି ଦୁହିତା ପାଇଁ ନିଅ ହେ ଚାରି ସଜ
ମହାଲକ୍ଷ୍ମୀ ଗାୟତ୍ରୀ ସାବିତ୍ରୀ ଚାରିଯୋଗ ।
ଏତେ କହି ବାସୁକୀ ସକଳ ଆଣିଦେଲା ·
ନେଇଣ ଜନକ ଋଷି ଯତନେ ସାଇତିଲା ।
ନାଗରାଜା ବୋଇଲେ ଏହା କାହାକୁ ନଦେବ
ବିଷ୍ଣୁଙ୍କୁ ନେତ୍ରେ ଦେଖିଲେ ଏହା ସମର୍ପିବ ।
ବୈଦୁର୍ଯ୍ୟ ମଣ୍ଡପ ଝାଲେରି ଉପରେ ପୁଣ
ନାଗରାଜାଙ୍କୁ ଜାନକୀ ଦେବୀ ଡକାଇଣ ।
ଦାସୀଙ୍କର ହସ୍ତେ ନାଗରାଜାଙ୍କୁ ଡାକିନେଲେ
ଧରଣୀ କେ ଧଇଲା ନାଗରାଜାଙ୍କୁ ପଚାରିଲେ ।
ବାସୁକୀ ବୋଲେ ଧରଣୀ ଗୋଲଖନାଥ ଧରି
ଏ ଯୁଗରେ ଅନ୍ୟକେ ଧରଣୀ କି ନୁହେ ସରି ।
ଆଉ ତିନିଥର ଉଶ୍ୱାସ ପାଇବ ଧରଣୀ
ତୁମ୍ଭର ତନି ଦିଅର ଧରିବାହେଲେ ପୁଣି ।
ଜାନକୀ ବୋଇଲେ ଆମ୍ଭଙ୍କୁ ସୁଦୟା କରିଥିବ
ଆମ୍ଭଠାରେ ବିବାଦି ଯେ କେବେହେଁ ନୋହିବ ।
ନାଗରାଜା ବୋଲେ ମୁଁ ତୁମ୍ଭର ଅଟେ ଦାସ
ଦାସଠାରେ କରିବ କେବଳ ଆଶିଷ୍ୟ ।
ଜାନକୀ ବୋଇଲେ ପ୍ରଭୁଙ୍କୁ କେତେଦିନରେ ଭେଟି
ବାସୁକୀ ବୋଇଲେ ସାତବର୍ଷ ଷଡ଼ମାସ ଗଲେଟି ।
ବିଶ୍ୱାମିତ୍ର ଯାଗ ଯେ କରିବାକୁ ଆଣି
ଯାଗରଖି ଅସୁରଙ୍କୁ ମାରିବେ କମ୍ବୁପାଣି ।
ବାଟରେ ଗୌତମ ନାରୀଙ୍କି ଉଦ୍ଧରିବେ
ଶିବ ଧନୁ ଭାଙ୍ଗିଣ ତୁମ୍ଭଙ୍କୁ ବିଭା ହେବେ ।
ଦେବତା ଶିବଗଣ ନାଗବଳ ଜାଣ
ନରବାନର ଅସୁର ରାଜାଗଣ ପୁଣ ।
ସମସ୍ତଙ୍କ ମୁଖରେ ଲଗାଇବେ କାଳି
ଯିବାବେଳେ ଯାଉଁଳି ଅବତାର ମନସରି ।

ଏତେବୋଲି ନାଗରାଜା ବେନିଗୋଟି ମଣି
ଦେଲାକ ଜାନକୀ ଉର୍ମିଳାକୁ ନେଇ ପୁଣି ।
ବୋଇଲେ ଏ ମଣିମାଳରେ ସ୍ୱାମୀନାମ ଜପିବ
ଯେଉଁଦିନ ପର୍ଯ୍ୟନ୍ତେ ଏ ମଣି ମଳିନ ନଥିବ ।
ତେଜ ଉଦିତହେଲେ ସ୍ୱାମୀ ଦେବେ ଦରଶନ
ଏତେକହି ନାଗରାଜା ସେଠାରୁ ଗଲେ ପୁଣ ।
ନାଗବଳ ଘେନି ଚଳେ ବାସୁକୀ ରାଜନ
ଜନକ ଋଷିଙ୍କୁ ବୋଲେ କେତେ କଲ ପୁଣ୍ୟ ।
ପାତାଳ ପୁରରେ ଯାଇ ହେଲେ ପରବେଶ
ଧୂପଦୀପ ଦେଇ ପୂଜା କଲେ ପର୍ଶୁରାମଙ୍କୁ ସେତ ।
ବୋଇଲେ ଗୋଲକନାଥ ତୁମ୍ଭ ସକାଶରେ
ଦର୍ଶନ କଲି ହରି ଘରଣୀ ମର୍ତ୍ତ୍ୟପୁରେ ।
ଶିବ ଧନୁପାଦେ ମୁହିଁ ଦର୍ଶନେ ହେଲି ତୋଷ
ପର୍ଶୁରାମ ଚରଣେ ହୋଇଲେ ଅନୁଗତ ।
ସେଠାରୁ ପର୍ଶୁରାମ ଧରଣୀ ତେଜ୍ୟାକଲେ
ବାସୁକୀ ଶିରେ ଦେଇ ମର୍ତ୍ତ୍ୟପୁର ଗଲେ ।
ପାର୍ବତୀ ବୋଇଲେ ସେଠାରୁ କିସ ହେଲା
ଈଶ୍ୱର ବୋଇଲେ ତୁମ୍ଭେ ଶୁଣଗୋ ହିଙ୍ଗୁଳା ।
ନାରଦ ଦୁର୍ବାସା ଯେ ବସିଲେ ଆଚାର୍ଯ୍ୟରେ
ଚତୁର୍ଥ ଯାଗସରେ ବେନି ଯେ ମାସରେ ।
ସଂଯୋଗ ସରିବାରୁ ତ ବରଷେ ବହିଗଲା
ପୁଣି ଧନୁଯାଗ ଉତ୍ସବ ମୁନି କଲା ।
ପାରେଶ୍ୱର ମୁନିଙ୍କୁ ଯେ କହିଲେ ଜନକ
ବାନରେଶ୍ୱର ତୁମ୍ଭେ ନିମନ୍ତ୍ରଣ କରି ଆସ ।
ଶୁଣିକରି ପାରେଶ୍ୱର ମୁନି ଚଳିଗଲେ
କିଷ୍କିନ୍ଧ୍ୟା କଟକରେ ପ୍ରବେଶ ହୋଇଲେ ।
ଦେଖିଣ ବାଳି ନୃପତି ଋଷିରେ ଭଗତି
ଗଙ୍ଗାଜଳରେ ପଖାଳି ଋଷିର ଚରଣଟି ।
ବୋଇଲେ ବ୍ରହ୍ମଋଷି କେଣେ ବିଜେକଲ
ପାରେଶ୍ୱର ମୁନି ବୋଲେ ଶୁଣ କପିବର ।
ମିଥିଳାରେ ଜନକ ଧନୁଯାଗ କଲେ ।
ଅଯୋନି ସମ୍ଭୁତ ଯେ ଦୁହିତା ସକାଶରେ ।
ସେ ଧନୁ ଯେ ଧରିବ ତାକୁ କନ୍ୟାଦେବେ
ତୋତେ ନିମନ୍ତ୍ରଣ କଲା ଜନକ ଋଷି ଭାବେ ।
ଋଷିଙ୍କ ଠାରୁ ଶୁଣି ବାଳି ରାଜା କହି
ଯାଅ ବେନିମାସ ମଧ୍ୟେ ପ୍ରବେଶ ହେବିମୁହିଁ ।

ଲକ୍ଷେକ ରାଜା ଅଟନ୍ତି ମୋହର ଯେ ସାଥି
ସେମାନଙ୍କୁ ଅଣାଇଁ ମୁଁ ଯିବି ମିଥିଳାଟି ।
ଶୁଣିକରି ପାରେଶ୍ୱର ମୁନି ଚଳିଗଲେ
ମିଥିଳା ନବରେ ପ୍ରବେଶ ଯାଇ ହେଲେ ।
ସକଳ ବୃତ୍ତାନ୍ତମାନ ଜନକଙ୍କୁ କହି
ବେନିମାସେ କପିରାଜା ଆସିବ ଏଥେ ତହିଁ ।
ଏ ବାଣୀ ଶୁଣି ଜନକ ଧନୁ ଯାଗକଲେ
ତିନିପକ୍ଷେ ଧନୁ ଯାଗ ଶୁଭରେ ସାରିଲେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଶାକମ୍ବରୀ
ପଞ୍ଚମ ଯାଗ ସାରେ ଜନକ ବିଚାରି ।
ବାରତା ବାଳି ରାଜା ପାଇବାରୁ ଜାଣ
ଲକ୍ଷେକ କପିରାଜାଙ୍କୁ ବରିଲେକ ପୁଣ ।
ବେନିମାସ ଭିତରେ ସକଳ ଅଣାଇଲେ
ଲକ୍ଷେ ବାନର ରାଜା ଘେନିଣ ମିଥିଳା ମିଳିଲେ ।
ଦେଖିଣ ଜନକ ଋଷି ସନମାନ କଲେ
ଧନୁଘର ଫେଡ଼ିଣ ନେଇଣ ଦେଖାଇଲେ ।
ଲକ୍ଷେ କପି ରାଜା ଦେଖିବା ମାତ୍ରକେ ପୁଣ
ଧରଣୀରେ ପଡ଼ିଲେ ଅଚେତା ହୋଇଣ ।
ଦେଖିଣ ବାଳୀରାଜା ଶିବର ଚାପଧରି
ତଳରୁ ଦ୍ୱାଦଶ ଆଙ୍ଗୁଳ ଧରିଣ ତୋଳି ।
ଥର ଥର ହୋଇଣ ଧରଣୀ ପରେପଡ଼ି
ମୁଖରୁ ରୁଧିର ତିନି ଧାରରେ ଗଳି ପଡ଼ି ।
ଲଜ୍ୟା ପାଇ କପି ରାଜା ବେଗେ ଚଳିଗଲା
ଆପଣାର ପୁରରେ ପ୍ରବେଶ ଯାଇ ହେଲା ।
ଲକ୍ଷେ କପିରାଜା ମେଲାଣି ହୋଇଗଲେ
ପାଞ୍ଚ ଥରେ ପାଞ୍ଚ ବରଷ ଧନୁଯାଗ ସରେ ।
ଷଡ଼ ବରଷେ ଧନୁଯାଗ ଜନକ ଭିଆଇଲେ
ନାରଦ କପିଳ ଅଙ୍ଗିରାତିନି ଋଷିଙ୍କି ଅଣାଇଲେ ।
ବୋଇଲେ ସପ୍ତଦ୍ୱୀପରେ ଦୈତ୍ୟବଳ ଯେତେ
ନିମନ୍ତ୍ରଣ କରାଇ ଅଣାଅ ତୁରିତେ ।
ଶୁଣିଣ ତିନି ଋଷି ତିନି ପୁର ଗଲେ
ତିନିପୁର ଅସୁରଙ୍କୁ ନିମନ୍ତ୍ରଣ କଲେ ।
ବୋଇଲେ ମିଥିଳାରେ ଧନୁଯାଗ ହୋଇ
ଅଯୋନିରେ ଜନମ ଯେ ଦୁହିତା ଅଛି ହୋଇ ।
ଯେହୁ ଶିବ ଧନୁ ତୋଳିଣ ଆମଞ୍ଚିବ
ସେ କନ୍ୟା ସେହିକ୍ଷଣି ଘେନିଣ ସେହୁଯିବ ।

ଆମଞ୍ଚି ନପାରି ଯେବେ ମେଳରେଗୋଳକରି
ପର୍ଶୁରାମ ହସ୍ତରେ ମରିବେ ଗୋଳରେ ପଡ଼ିକରି ।
ଏତେ କହି ତିନି ଋଷି ମିଥିଳା ପ୍ରବେଶ
ଷଡ଼ ବର୍ଷ ଧନୁ ଯାଗ ହୋଇଲାକ ଶେଷ ।
ପାତାଳପୁର ଅସୁର ଆସିଣ ମିଳିଲେ
ଧନୁକୁ ଦେଖିଣ ଦୈତ୍ୟ ଘୁଞ୍ଚିଣ ପଳାଇଲେ ।
ଗୋଳକରି କନ୍ୟାକୁ ବଳେନେବେ ବୋଲି କରି
ଦେଖିଣ ସର୍ବଲୋକେ ହାହାକାର କରି ।
ଜନକ ଗୋଳ ଦେଖି ଗୋଲକ ସୁମରି
ଜାଣିଣ ପର୍ଶୁରାମ ମିଥିଳାରେ ମିଳି ।
ଗୋଳ ଦେଖି ଗଦାଧର ପିଟିଲେ ତୁରିତ
ଅନେକ ଅସୁର ଯେ ପଡ଼ିଲେ ଗଦା ଘାତ ।
ଦେଖିଣ ତଳପୁର ଅସୁର ପଳାଇଲେ
ସାତଥର ଯାଗ ଯେ ଜନକ ଋଷି କଲେ ।
ସ୍ୱର୍ଗପୁରେ ଦୈତ୍ୟବଳ ଯେତେ ପୂରିଥିଲେ
ମିଥିଳାରେ ପ୍ରବେଶ ଯାଇଣ ହୋଇଲେ ।
ଧନୁକୁ ଛୁଅନ୍ତେଣ ସକଳେ ଗଲେ ମୋହ
ମୋହ ତେଜି ଉଠିଣ କଳିରେ କଲେ ପ୍ରିୟ ।
ଦେଖିଲେ ପର୍ଶୁରାମ କୋଠାରେ ବେଗେ ଧରି
ସତୁରି କୋଟି ଅସୁର ପକାଇଲେ ମାରି ।
ଛବିଶ କୋଟି ଅସୁର ପଳାଇ ପୁଣ ଗଲେ
ତାହାଙ୍କ ପଛେ ପର୍ଶୁ ଗୋଡ଼ାଇଛନ୍ତି ଭଲେ ।
ଦେଖିଣ ସ୍ୱର୍ଗପୁରେ ଅସୁରେ ପଳାଇଲେ
ମର୍ତ୍ତ୍ୟପୁରରେ ଆସିଣ ସମସ୍ତେ ଲୁଚିଲେ ।
ସପ୍ତ ବରଷ ଯାଗ ସରିଲାକ ଭଲେ
ଅଷ୍ଟ ବରଷ ଯାଗ ଜନକ କଲେ ସୁଲଭରେ ।
ଯାଗ ସମାପତରେ ମର୍ତ୍ତ୍ୟପୁର ଦୈତ୍ୟେ
ମିଥିଳାରେ ମିଳିଲେ ଚାରିରାବଣ ସଙ୍ଗତେ ।
ଡାକ ହାକ କରିଣ ଧନୁର ପାଶେ ଗଲେ
କେ ଛୁଅଁନ୍ତେ କେ ଚାହାଁନ୍ତେ ସକଳ ମୋହଗଲେ
ଦଶମୁଖା ରାବଣ ଧରିଲା ଧନୁ ପୁଣ
ତୋଳନ୍ତେ ଉପରେ ମାଡ଼ି ବସିଲା ଧନୁକାଣ ।
ଅନେକ ଅସୁର ତାକୁ ନେଇଣ ଯେ ଉଛୁଡ଼ି
ଓଳିକି ଉତାରେ ଚେତା ରାବଣ ଦେହେମିଳି
ଦେଖିଣ ସହସ୍ର ମୁଖା ଧନୁ ପାଖେ ମିଳି
ସେ ଧନୁକୁ ଛୁଇଁବାରୁ ଅଜ୍ଞାନହୋଇ ପଡ଼ି ।

ଦେଖିଣ ମହୀରାବଣ ସିଂହ ରଡ଼ି ଦେଲା
ଧନୁକ ଛୁଅନ୍ତେ ତାର ନିର୍ବଳ ତନୁ ହେଲା ।
ଅଚେତା ହୋଇଣ ପଡ଼ିଲା ଭୂମିରେ
ବେନିରାବଣକୁ ତୋଳିଧଇଲେ ଦୈତ୍ୟବୀରେ ।
ଦେଖିଣ ଶତେମୁଖା ଧନୁର ପାଶେ ଯାଇ
ଧନୁକୁ ତୋଳି ନ ପାରି ଲେଉଟି ଆସଇ ।
ଚାରିରାବଣ ଲେଉଟିବାରୁ ଅନେକ ଦୈତ୍ୟଗଲେ
ଧନୁକୁତୋଳି ନପାରିବାରୁ ଲେଉଟି ଅଇଲେ ।
ଏମନ୍ତ ସମୟରେ ପ୍ରବେଶ ପର୍ଶୁରାମ
ପର୍ଶୁରାମକୁ ଦେଖିଣ ଘୁଞ୍ଚିଲେ ଦୈତ୍ୟ ପୁଣ ।
ଯେ ଯାହାର ସ୍ଥାନକୁ ଅସୁରମାନେ ଗଲେ
ଚାରିରାବଣ ଚାରି ଲଙ୍କାରେ ମିଳିଲେ ।
ଅଷ୍ଟମଥର ଧନୁଯାଗ ହେଲା ସମାପତ
ଜନକଙ୍କର ଦୁହିତାକୁ ଅଷ୍ଟମ ବରଷତ ।
ପାର୍ବତୀ ବୋଇଲେ ଦେବ ସେଠାରୁ କିସ ହେଲା
ଈଶ୍ୱର ବୋଇଲେ ଗୋ ଗିରିଜା ଦୁଲଣା ।
ନବବରଷ ଯାଗକୁ ଜନକ ଋଷି ତୋରା
ବିଚାରିଲେ ରାଜାମାନଙ୍କୁ ବରଣ କରିବା ପରା ।
ଏତେବୋଲି ମୟଦୈତ୍ୟକୁ ମନରେ ସୁମରି
ଜାଣିଣ ମୟଦୈତ୍ୟ ମିଳିଲା ଯାଇକରି ।
ଜନକ ଋଷି ଦେଖି ଦୈତ୍ୟକୁ କହେ ବାଣୀ
ଅଯୋନି ସମ୍ଭୂତାରେ ଦୁହିତାମାନେ ଜନ୍ମ ପୁଣି ।
ଧନୁଯାଗ କରିବାକୁ ମୁଁ ସ୍ୱୟମ୍ବର କଲି
ଆଠଥର ଧନୁକୁ କେହି ନ ପାରିଲେ ତୋଳି ।
ଏବେ ରାଜଗଣଙ୍କୁ ଅଣାଇବାକୁ ଇଚ୍ଛା
ଲକ୍ଷେ ନୃପତି ଅଇଲେ ପୂରେ ମନୋବାଞ୍ଛା ।
ବେନିଗୋଟି ସଭା ତିଆରି କରି
ତେବେରାଜାମାନଙ୍କୁ କରିବାକୁ ଶରଧାମୋହରି ।
ଏକଇ ସଭା ଯେ ଧବଳ ଜ୍ୟୋତି ହେବ
ଏକଇ ସଭା ସୁବର୍ଣ୍ଣ ରତ୍ନରେ ନିର୍ମାହେବ ।
ଶୁଣିଣ ମୟଦୈତ୍ୟ ରଜନୀରେ ପୁଣ
ବେନି ସଭା ତିଆରିଲେକ ସୁମରିଣ ।
ଲକ୍ଷେ ଲକ୍ଷେ ଖମ୍ବମାନ ସୁବର୍ଣ୍ଣରେ ପ୍ରଭା
ଆରେକ ସଭା ପୁଣ ବଇଦୁର୍ଯ୍ୟରେ ଶୋଭା ।
ରଜନୀରେ ଚନ୍ଦ୍ରମା ଉଦୟେ ଯେହେତୋର
ଲକ୍ଷେକ ସ୍ତମ୍ଭ ସେଥିରେ ହୋମ ଯେ ପ୍ରବଳ ।
ବେନିଗୋଟି ସଭା ତାର ଦିଶଇ ସୁନ୍ଦର ।
ରଜନୀ ପ୍ରାନ୍ତରେ ଯେ ମୟଦୈତ୍ୟ ଗଲା
ଆପଣାର ନିଜସ୍ଥାନେ ପ୍ରବେଶ ଯାଇହେଲା ।
ରଜନୀ ଶେଷରେ ଯେ ଦେଖିଲେ ସକଳ
ବିଚିତ୍ର ହେଲା ବୋଲି ବିଚାରନ୍ତି ମନର ।
କେ ବୋଲେ ବାସୁଦେବ ଘରଣୀ କମଳା
ସାଏର ଦୁଲଣା ଏଥିରେ ଜନ୍ମ ପରା ।
କେ ବୋଲନ୍ତି ପାର୍ବତୀ ଯେ ଗିରିଜା ନନ୍ଦିନୀ
ଅଯୋନି ସମ୍ଭୂତାରେ ଅଗ୍ନିରୁ ଜାତ ପୁଣି ।
କେ ବୋଲେ ଏମାନେ ଏଥି ହୋଇବେ ଜନ୍ମ
ଦେବ ଶୋଭା ଏପୁରେ କେମନ୍ତେ ଜାତପୁଣ ।
କେ ବୋଲେ ସୁବର୍ଣ୍ଣର ସଭା ଦେଖ ପୁଣ
ଝାଳେରି ଝଲମଲ ବସନ୍ତ ପୁଷ୍ପ ଜାଣ ।
ଏମନ୍ତେ କୁହା କୁହି ଯେ ମିଥିଲା ନରନାରୀ
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଗଉରୀ ।
ଜନକ ଋଷି ପୁଣ ପ୍ରଭାତୁ ଦେଖିଲା
ହର୍ଷମନ ହୋଇ ଋଷିଙ୍କୁ ସୁମରିଲା ।
ତେଣୁ ଯେ ସକଳ ଋଷି ଆସିହେଲେ ଠୁଳ
ବଇଦୁର୍ଯ୍ୟ ସଭାରେ ଆସି ହେଲେ ମେଳ ।
ଜନକ ବୋଇଲେ ତୁମ୍ଭେ ଶୁଣ ଆହେ ଯତି
ଆଉ ତିନିବେଳ ଯାଗ କଲେ ମୁଁ ହେବିଶାନ୍ତି ।
ଲକ୍ଷେ ଋଷି ଯାଇଣ ଲକ୍ଷେ ରାଜା ଆଣ
ଦେଖିବେ ଶିବ ଧନୁକୁ ସମସ୍ତେ ଥାଇଣ ।
ଶୁଣିଣ ଲକ୍ଷେ ଋଷି ଲକ୍ଷେରାଜାଙ୍କୁ ବରିଗଲେ
ଲକ୍ଷେ ନୃପତି ଘେନିଣ ଛଡ଼ମାସରେ ଫେରିଲେ ।
ଦେଖିଣ ଜନକ ଋଷି ହରଷ ମନରେ
ରାଜନକୁ ବସାଇଲେ ସୁବର୍ଣ୍ଣ ସଭାରେ ।
ସେଠାରୁ ଧନୁ ଯାଗ କରିଣ ଆହୁତି ଦେଲେ
ଯୋଗଶେଷ କରିଣ ହରଷ ହୋଇଲେ ।
ରାଜାଗଣଙ୍କୁ ବୋଇଲେ ଶୁଣ ହେ ସକଳେ
ବେନିଗୋଟି ସମ୍ଭୁତରେ ଜନମ ମୋହର ।
ଅଯୋନି ସମ୍ଭୁତରେ ଜାତ ଯେ ବେନିଯୁବା
ସେ କନ୍ୟାକୁ ନେବା ମନରେ ମୋର ଶ୍ରଦ୍ଧା ।
ଶିବ ଚାପ ଗୋଟିଏ ମୋର ପୁତ୍ର ଅଛି
ଶତଷଠି ପୁରୁଷ ହେଲା ଈଶ୍ୱର ଦେଇଛନ୍ତି ।
ସେ ଧନୁକୁ ଯେହୁ ଆମଞ୍ଚିବ ବଳାକାରେ
ମୋହର ଦୁହିତାକୁ ଦେବି ମୁଁ ତାହାରେ ।

ସ୍ୱୟଂମ୍ବର ଅଷ୍ଟବେଳ ଏ ଧନୁ ପାଇଁ କଲି
କେହି ଟେକି ନ ପାରିଲା ନେତ୍ରରେ ଦେଖିଲି ।
ଯେଣୁ ମୁଁ ତୁମ୍ଭ ମାନଙ୍କୁ ଅଣାଇଲି ବରି
ଯେ ଟେକିବ ତାହାକୁ ଦୁହିତା ମୋର କରି ।
ଶୁଣିକରି ରାଜାମାନେ ବୋଇଲେ ଧନୁଦେଖା
ଶିବ ଧନୁ ଗୋଟାର କେତେ ବଳ ଶିଖା ।
ଶୁଣିଣ ଜନକ ଋଷି ଧନୁଘର ଫେଡ଼ି
ଧନୁର ତେଜଦେଖି ଯେ ରାଜାମାନେ ବାହୁଡ଼ି ।
ଏହି ରୂପେ ଶତେ ଦିନ ପରିଯନ୍ତେ ରାଜା
ଧନୁକୁ ଧରି ନ ପାରି ପାଆନ୍ତି ବଡ଼ ଲଜ୍ୟା ।
ଏହା ଦେଖି ଜନକ ତିନିମାସ ଯାଗ କଲେ
ଯାଗ ହେଲା ସମାପତ ରାଜନ ଉଠିଲେ ।
କେ ଧନୁ ଛୁଅନ୍ତେ ମୋହ ଗତରେ ପଡ଼ି
କେହୁ ଧନୁ ଦେଖିକରି ଅଚେତାର ବଳି ।
ଏଥିରେ ବରଷେ ଯେ ସେଠାରେ ରାଜାମେଳ
ଟେକି ନ ପାରିଲେ କେହି ଶାୟକ ଶିବିର ।
ଏଥୁ ଅନନ୍ତରେ ଯେ ନବଥର ଯାଗ କଲା
ଦଶ ବରଷ ଯାଗ ଜନକ ଋଷି କଲା ।
ଯାଗ ସମାପତରେ ଜନକ ଋଷି କହି
ପାତ୍ର ମନ୍ତ୍ରୀ ସାମନ୍ତ ଯେ ଏ ଧନୁ ଟେକିବଇଁ ।
ରଥୀ ସରଦାର ଆଦି ପଦାତି ସହିତେ
ଯେ ଟେକିବ ଦୁହିତା ଦେବି ତାର ହାତେ ।
ଶୁଣିକରି ପାତ୍ରମନ୍ତ୍ରୀ ଦୁହିତା ଉଠିଗଲେ
ଧନୁକୁ ଦେଖିଟେକି ନପାରି ଲେଉଟିଲେ ।
ପାତ୍ରମନ୍ତ୍ରୀ ଲେଉଟିବାରୁ ରଥୀସେନାପତି ଗଲେ
ଶିବ ଧନୁ ଦେଖି ଦୂରୁ ଲେଉଟି ଅଇଲେ ।
ଆଉଥରେ ରାଜାମାନେ ଉଠିଣ ଗଲେ ଜାଣ
ଭରସି ନପାରି ଯେ ଫେରିଲେ ଜଣେ ଜଣ ।
ଲୋଭକରି ପାତ୍ରମନ୍ତ୍ରୀ ରାଜା ଗଣେ ରହି
ଯେ ଧନୁ ଟେକିବ ଯେ ଦେଖିବାର ପାଇଁ ।
ରାଜାମାନଙ୍କ ଆର୍ଦୋଳି ଜନକ ସହିଲେ
ମନେ ହରଷ ହୋଇ ଯୋଗାଡ଼ ମାନଦେଲେ ।
ପାର୍ବତୀ ବୋଇଲେ ଦେବ ଶୁଣ ମୋ ବଚନ
ଦଶରଥ ଚାରିପୁତ୍ର କିସ କଲେ ପୁଣ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ଦଶରଥ କୁମରକୁ ଯେ ଦଶବରଷ ନିକି ।

ହସ୍ତୀ ଅଶ୍ୱ ଚଢ଼ିଣ ଚଳନ୍ତି ପାରିଧିରେ
ଦିନେ ଛଡ଼ା ପାରିଧି କରନ୍ତି ନିରନ୍ତରେ ।
ଏକାଦଶ ବର୍ଷରେ ସାମର୍ଥ ସେ ନନ୍ଦନ
ସକଳ ବିଦ୍ୟା ସାଧିଣ ନିପୁଣ ହେଲେ ପୁଣ ।
ସମସ୍ତେ ପ୍ରଶଂସା ଯେ ଶ୍ରୀରାମଙ୍କୁ କଲେ
ସୂର୍ଯ୍ୟବଂଶ କୁଳ ଯେ ଉଦ୍ଧରିବେ ଭଲେ ।
କୋଶଳ ଦ୍ୱୀପରୁ ସାତ ଅସୁର ଅଇଲେ
ମହୋଦଧିର ପୂର୍ବ କୂଳରେ ମିଳିଲେ ।
ଅନେକ ସୈନ୍ୟ ସମ୍ପଦ ସଙ୍ଗରେ ତାଙ୍କର
ରାଜ ଜେନାମିଣଯେ ମିଳିଲେ ଅଯୋଧ୍ୟାନବର ।
ସୁବଳୟା, କୁବଳୟା, ହବଳ, ଚିତ୍ରମୁଖା
ବୟଣା ଭୂଷର ଯେ ସାତମୁଖା ଲେଖା ।
ପ୍ରବେଶ ହେବାରୁ ଦୈତ୍ୟ ହୁରି ଜୁରିକଲେ
ଘରଦ୍ୱାର ଉଜାଡ଼ି ଯେ ପରଜା ନାଶିଲେ ।
ପଡ଼ିଲାକ ହୁରି ଯେ ଅଯୋଧ୍ୟା ନଗ୍ରଯାକ
ରାଜାଙ୍କର ଛାମୁରେ ଯାଇ ଜଣାଏ ଦୂତ ।
ଶୁଣିକରି ବୀରସେନ ନୃପତି ଦଶରଥ
ପାତ୍ରମନ୍ତ୍ରୀ ବେଶ ହୋଇ ଅଇଲେ ତୁରିତ ।
ବାଜଇ ବୀରବାଜା ବୀରସରଘୋଷ ପୁଣି
ସୈନ୍ୟମାନେ ଚଳିବାରେ କମ୍ପଇ ମେଦିନୀ ।
ଦଶରଥ ରାଜା ବିଜେ କଲେ ରଥରେ ପୁଣ
ଅଯୋଧ୍ୟାକୁ ଅସୁରେ କଲେ ରଣ ଭଣ ।
ଧନୁଧରି ଗୁଣ ଟଙ୍କାର ରାଜା କଲେ
ମାର ୨ ଶବ୍ଦ ଶୁଭେ ଅଯୋଧ୍ୟା ନବରେ ।
ଲେଉଟିଲେ ଅସୁରେ ଯେ ହୋଇଲା ମହାରଣ
ସହସ୍ରେ ନାରାଚ ଯେ ବିନ୍ଧିଲେ ରାଜାଗୁଣ ।
ଟହ ୨ ହୋଇଣ ଯେ ଅସୁରେ ହସିଲେ
ଆଜ ତୋର କାଳରେ ପୂରିଲା ବୋଇଲେ ।
ବୃକ୍ଷ ଉପାଡ଼ିଣ ଦୈତ୍ୟ ପିଟିଲେ ନେଇରାଗେ
ଦେଖିଣ ସୈନ୍ୟ ବଳ ପଳାଇ ଗଲେ ବେଗେ ।
ଅସୁରେ ପିଟିବାରୁ ଭାଙ୍ଗିଣ ଗଲା ରଥ
ବାଜିବାରୁ ଦଶରଥ ଗଲେ ମୋହଗତ ।
ସୁମନ୍ତ୍ର ମନ୍ତ୍ରୀ ସମ୍ଭାଳି ରାଜାଙ୍କୁ ଘେନିଗଲେ
ଅଯୋଧ୍ୟା ନବରେ ଯାଇ ପ୍ରବେଶ ହୋଇଲେ ।
ଚେତନା ପାଇ ଦଶରଥ ରାୟ ପୁଣ
ଆଜ୍ଞାଦେଲେ ମୋର ଚାରିପୁତ୍ରଙ୍କୁ ଅଣାଅବହନ ।

ମନ୍ତ୍ରୀ ବୋଇଲେ ଦେବ ନବରେ କେହି ନାହିଁ
ପାରିଧିକୁ ଚାରିପୁତ୍ର ଅଛନ୍ତି ପୁଣ ଯାଇ ।
ରାଜାବୋଲେପୁତ୍ରଙ୍କୁ ମୋର ଘେନି ଆସବେଗେ
ନପୁଣ ଅସୁର ଯେ ମାରନ୍ତିଟି ରାଗେ ।
ମନ୍ତ୍ରୀ ଚାରମାନଙ୍କୁ ଡକାଇ ବୋଇଲେ
ପାରିଧିକୁ ଚାରିପୁତ୍ରଯାଇଛନ୍ତି ଘେନିଆସ ଭଲେ. ।
ଏଥୁଅନନ୍ତରେ ତୁମ୍ଭେ ଶୁଣ ଶାକମ୍ବରୀ
ପାରିଧିରୁ ଚାରିଭାଇ ବାହୁଡ଼ା ବିଜେ କରି ।
ବାଟରେ ଦେଶା ଉର ଜଣାଇଲା ଯାଇ
ଅସୁର ରାଜ୍ୟ ଉଜାଡୁଣ ଅଛନ୍ତି ରହି ।
ପାତ୍ର ମନ୍ତ୍ରୀ ସୈନ୍ୟ ଘେନି ରାଜନ ଯୁଦ୍ଧ କଲେ
ଅସୁରେ ବଡ଼ ଦର୍ପିଷ୍ଟ ଶରକୁ ନ ମାନିଲେ ।
ଅସୁରେ ମାରନ୍ତେ ଯେ ରାଜନ ମୋହଗଲେ
ତାଙ୍କୁ ଘେନି ସୁମନ୍ତ ନଗରକୁ ଚଳିଗଲେ ।
ରାଜନ ବୋଇଲେ ଅଛନ୍ତି ମୋର କାହିଁ
ପାରିଧିକୁ ଯାଇଛନ୍ତି ସୁମନ୍ତ୍ର ମନ୍ତ୍ରୀ କହି ।
ରାଜନ ବୋଇଲେ ତାଙ୍କୁ ଡକାଇ ଘେନି ଆସ
ଶ୍ରୀରାମ ଲକ୍ଷ୍ମଣ ଶୁଣି ହେଲେ ହସ ହସ ।
ଭରଥ ଶତୃଘନ ବୋଲେ ଚାଲ ବେଗେ ଯିବା
ଅସୁରେ କେବଣ ଶୋଭା ଦିଶନ୍ତି ଦେଖିବା ।
ଶ୍ରୀରାମ ଚନ୍ଦ୍ର ବୋଇଲେ ବେଗେ କଢା ବାଟ
ଦେଖିବା ଅସୁରଙ୍କୁ କେତେ ଯେ ମୁରାଟ ।
ରଥି ସାରଥି ରଥାଇଣ ବୋଇଲେକ ଶୁଣ
ବାଳୁତ କୁମର ତୁମ୍ଭେ ଦେଖିନାହିଁ ରଣ ।
ଶୁଣିଣ ଶ୍ରୀରାମ ଯେ କ୍ରୋଧରେ ଜର୍ଜର
ରାଜପୁତ୍ର ଆମ୍ଭେ ବୋଲି ଜାଣନ୍ତି ସକଳ ।
ଆମ୍ଭେ ଯେବେ ଅସୁରଙ୍କୁ ନ କରିବୁ ନାଶ
ଆଜଠାରୁ ଅଯୋଧା ଆମ୍ଭର ହେବ ଧ୍ୱଂସ ।
ଏତେବୋଲି ଚାରିଭାଇ ଅଶ୍ୱଙ୍କୁ ମେଲିଦେଲେ
ଅସୁରଙ୍କ ଆଗେ ଯାଇ ପ୍ରବେଶ ହୋଇଲେ ।
ଧନୁ ଧରିଣ ଶ୍ରୀରାମ ବିନ୍ଧିଲେ ବେଗେ ବାଣ
ହସିଲେ ଅସୁରେ ଯେ ଦେଖିଣ ତାଙ୍କୁ ପୁଣ ।
ଦୟଣା କରୁଣାବୋଲି ବେନି ଦୈତ୍ୟବେଗେ
ଶ୍ରୀରାମ ଆଗେ ମିଳିଲେ ଧନୁଧରି ରାଗେ ।
ବୋଇଲେ ତୁମ୍ଭେ ବାଳକେ କିସ ଯୁଦ୍ଧ ଜାଣ
ଆମ୍ଭେ ଅସୁର ଅଟୁ ଦେବଙ୍କ ସମାନ ।
ସ୍ୱର୍ଗପୁରେ ଦକ୍ଷିଣ ଦେବଙ୍କୁ ଜିଣିଲୁ
ସକଳ ଦେବତାଙ୍କୁ ଧରିଣ ଆଣିଲୁ ।
ବେଦବର କହନ୍ତେ ଛାଡ଼ିଲୁ ତାଙ୍କୁ ପୁଣ
ବିଧାତା ବରରେ ଆମ୍ଭେ ହେଲଇ ବଡ଼ଜାଣ
ଦଇବର ବରରେ ଅକ୍ରାମ୍ଭର ଆମ୍ଭେ
ତୁମ୍ଭେ ବାଳକେ ନବୁଝି ଯୁଝୁଛ ଆମ୍ଭ ସଙ୍ଗେ ।
ବାପତୋର ଦଶରଥ ପ୍ରଥମେ ଆସିଥିଲା ।
ସମର କରି ନପାରି ଫେରିଣ ପଳାଇଲା ।
ତୁମ୍ଭେ ବାଳକ ନିଶ୍ଚୟ ହାରିବ ଜୀବନ
ଫେରିଯାଅ ବାବୁରେ ତୁମ୍ଭ ନିଜ ସ୍ଥାନ ।
ଦୟଣା କରୁଣା ବେନି ଦୈତ୍ୟମାନଙ୍କଠାରୁ ଶୁଣି
ଶ୍ରୀରାମ ବୋଇଲେ ଶୁଣ ଅସୁର କୁଳମଣି ।
ଧନୁ ଧରି ଶ୍ରୀରାମ ବିନ୍ଧିଲେ ଶରବଳେ
ସେ କାଣ୍ଡ ପଡ଼ିଲା ଯାଇ ଅସୁର ଉପରେ ।
ଦେଖିଣ ଅସୁର ଗଦା ପ୍ରହାରେ ବ୍ୟଗ୍ରରେ
ଆଡ଼ ବାଡ଼ କରିଣ ଶ୍ରୀରାମ ମେଣ୍ଟାଇଲେ ।
ବଶିଷ୍ଟେ ଦେଲା ଶର ଗୁଣେ ବସାଇଲେ
ମନ୍ତ୍ର ଅଧାନ କରି ଶରକୁ ଛାଡ଼ି ଦେଲେ ।।
ପଡ଼ିଲା ଦୈତ୍ୟଙ୍କ କନ୍ଧେ ଛିଡ଼ିଲା କନ୍ଧ ଜାଣ
ଭୂମିରେ ପଡ଼ିଣ ଦୈତ୍ୟ ଛାଡ଼ିଲା ଜୀବନ ।
ଦେଖି ଶିଶୁପାଳ ସଙ୍ଗେ ଅସୁର ଧାଇଁଲେ
ଶ୍ରୀରାମକୁ ଆଗରେ ଓଗାଳ ବୋଇଲେ ।
କିରେ କିରେ ବାଳକ ପ୍ରବଳ ବଳ ତୋର
ନର ବାନରଙ୍କୁ ଆମ୍ଭେ କରିବୁ ଆହାର ।
ଏତେ କହିଣ ବୃକ୍ଷେକ ଉପାଡ଼ିଣ ନେଇ
ଅଶ୍ୱଙ୍କୁ ଘୁଞ୍ଚାଇଲେ ଶ୍ରୀରାମ ଚାହିଁ ତହିଁ ।
ଦେଖିଣ ଶ୍ରୀରାମ ଯେ ଧନୁରେ ଯୋଚେ ଶର
ବିନ୍ଧିଲେ ଅଗ୍ନିଶର ବିଚାରି ରଘୁବୀର ।
କଟୀରେ ପଡ଼ନ୍ତେ ଶର ବେନି ଖଣ୍ଡ ହେଲା
ପ୍ରାଣ ଛାଡ଼ି ଦୈତ୍ୟ ମୂଢ ସ୍ୱର୍ଗକୁ ଚଳିଗଲା ।
ଦୟଣା କରୁଣା ଶିଶୁପାଳ ଦୈତ୍ୟ ତିନି
ଶ୍ରୀରାମଙ୍କ ହସ୍ତରେ ମଲେଟି ଏହି ପୁଣି ।
ଭରତ ଆଗରେ କୁବଳ ଦୈତ୍ୟ ମିଳି
ଡାକହାକ କରିଣ ଯେ ଯୁଝିଲା ଓଗାଳି ।
ବଜ୍ର ବାଟୁଳି ଘେନିଣ ଶ୍ରୀରାମର ଭାଇ
ମାରନ୍ତେ ଅସୁର ଯେ ଧରଣୀରେ ଶୋଇ ।

କପାଳେ ବାଜି ବାଟୁଳି ହାରିଲା ଜୀବନ
ଶରୀର ତେଜକରି ଗଲା ଯେ ତାର ପ୍ରାଣ ।
କୁବଳ ଦୈତ୍ୟ ଯହୁଁ ପଡ଼ିଲାକ ରଣ
ଚାରିଜଣ ମରିବାରୁଁ ରହିଲେ ତିନି ଜଣ ।
ଲକ୍ଷ୍ମଣ ରଥୀ ଅଛି ତାଙ୍କର ସଙ୍ଗଚେତ ।
ବାର ସେନାପତିଏଯେ ପଦାତି ତିର୍ନିକୋଟି
ଲକ୍ଷ୍ମଣର ଚାରିପାଶେ ବେଢ଼ିଲେ ଝଟଟି ।
ତାଙ୍କୁ ଦେଖି ଲକ୍ଷ୍ମଣର ରକ୍ତ ବର୍ଣ୍ଣ ନେତ୍ର
ବିଚାରି ମୋହନାଶର ମାରିଲେ ତୁରିତ ।
ଏକାଥରେ ମୋହନାଶର ମାରିବାରୁ ଜାଣ
ଶୋଇଲେ ଧରଣୀରେ ସକଳ ସୈନ୍ୟପୁଣ ।
ଦେଖିଣ ଲକ୍ଷ୍ମଣ ଯେ କତୁରୀ ଶର କଲେ
ସେନାପତି ଅଶ୍ୱ ହସ୍ତୀ ପଦାତି କାଟିଲେ ।
ବେନି ଦୈତ୍ୟ ଦେଖିଣ କ୍ରୋଧରେ ଜର୍ଜର
ଅଧା ସ୍ୱର୍ଗ ପର୍ଯ୍ୟନ୍ତେ ବଢ଼ାଏ ଶରୀର ।
ଛେଲ ଚକ୍ର ଧରି ଲକ୍ଷ୍ମଣେ ପ୍ରହାରିଲେ
ଚତୁର ପଣେ ଲକ୍ଷ୍ମଣ ଅଶ୍ୱକୁ ଫେରାଇଲେ ।
କ୍ରୋଧ ଭରେ ଲକ୍ଷ୍ମଣ ଯେ ବିନ୍ଧୁଛନ୍ତି ଶର
ପଡ଼ିଲାକ କାଣ୍ଡ ଯାଇ ଅସୁର ଉପର ।
କଟୀ ସଙ୍ଗଖରୁ ଶର କାଟିଲାକ ପୁଣ
ପଡ଼ିଲେ ବେନି ଦୈତ୍ୟ ଛିଡ଼ିଣ ତଳେଣ ।
ତ୍ରିଶିରା ବେନି ମୁଖା ପଡ଼ିଲେ ଯହୁଁ ରଣେ
ଚତୁର୍ମୁଖା ବିଚାରିଲେ ନିର୍ମାଖି ହେଲି ଏଣେ ।
ପାଞ୍ଚକୋଟି ପଦାତି କୋଟିଏ ରଥୀ ଜାଣ

× × ×

ଶତେକ ସେନାପତି ଲକ୍ଷେକ ସର୍ଦ୍ଦାର
ଶତୃଘନ ସଙ୍ଗତରେ କରନ୍ତି ସମର ।
ସକଳ ଶର ଛେଦଇ ଅଜ ରାଜାର ନାତି
ଦେଖି ଚମତ୍କାର ହେଲେ ସକଳ ସେନାପତି ।
ବେଳୁଁ ବେଳ ସମର ହୋଇଲା ଘୋରଟାଣ
ମେଘ ଗର୍ଜନ ପ୍ରାୟେ ଶରଙ୍କ ଶବ୍ଦ ଜାଣ ।
ଦେଖିଣ ଶତୃଘନ ମନଭେଦୀ ଧରି
ସାତକୋଟି ଶର ଯେ ବିନ୍ଧିଲା ବିଚାରି ।
ରଥୀ ପଦାତି ଆଦି ପଏକାର ବଳ
ସମସ୍ତଙ୍କୁ ବେନି କଲା ଯାଇ ଶର ।

ଏହା ଦେଖି ଶତୃଘନ ସଙ୍ଗରେ ଯୁଦ୍ଧକଲା
ଅନେକ ଶର ବର୍ଷା ଜାଣିଣ ତୋରା ।
ଦେଖିଣ ଶତୃଘନ ବ୍ରହ୍ମଶର ମାରି
ଦଇବ ଦୁର୍ବଳରେ ଦୈତ୍ୟ ପ୍ରାଣ ହାରି ।
ସେ ସାତ ଦୈତ୍ୟଙ୍କୁ ମାରି ଶ୍ରୀରାମ ଚାରିଭାଇ
ପଦାତି ତେର କୋଟି ମଲେ ରହି ତହିଁ ।
ବେନିଲକ୍ଷେ ସରଦାର ଲକ୍ଷେକ ସେନାପତି
କୋଟିଏରଥୀ ଯେ ରଣରେ ଗଲେ ଲୋଟି ।
ବହିଲା ରକ୍ତ ନଦୀ ଯେ ନାଚିଲେ କବନ୍ଧ
ମାତିଲେ ଖେଚର ଯେ ହୋଇଣ ଆନନ୍ଦ ।
ଦେଖିଣ ଦେବତାଏ ପରମ ତୋଷ ହେଲେ
ଚାରି ଭାଇଙ୍କ ଉପରେ ପୁଷ୍ପ ବୃଷ୍ଟିକଲେ ।
ସତର କୋଟି ବଳରୁ ଶତେକ ଜଣ ଥିଲେ ।
ପଳାଇଣ ନିଜ ରାଜ୍ୟେ ପ୍ରବେଶଯାଇ ହେଲେ
ନିଜ ରାଜ୍ୟେ କହିଲେ ସକଳେ ଗଲେ ନାଶ
ଅସୁରୁଣୀମାନେ ଶୁଣି ମନରେ ବିରସ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଭଗବତୀ
ଅଯୋଧ୍ୟା ଲୋକେ ଦେଖି ହରିବୋଲ ଦ୍ୟନ୍ତି ।
ଜୟ ଜୟ ଶବଦ ପୁରି ଶୁଭିଲା ଡ଼ାକ
ଦଶରଥଙ୍କ ଆଗକୁ ଧାଇଁଲେ ପୁଣ ଲୋକ ।
ଶୁଣ ଦେବ ଅଯୋଧ୍ୟା ଈଶ୍ୱର ମହୀପତି
ଅସୁରମାନେ ଆସି କଲେ ଯେ ଅନୀତି ।
ଦୁଷ୍ଟପଣ କରିଣ ରାଜ୍ୟକୁ ଉଜାଡ଼ିଲେ
ଦଇବ ବିପକ୍ଷରେ ପ୍ରାଣ ସେ ହରିଲେ ।
ଚାରିପୁତ୍ର ତୁମ୍ଭର ମାଇଲେ ସମସ୍ତଙ୍କୁ
ସାତ ଦୈତ୍ୟ ସେଥିରୁ ଥିଲେ ବଳବାନବପୁ ।
ତିନି ଦୈତ୍ୟ ସେଥିରୁ ମାଇଲେ ଶ୍ରୀରାମ
ବେନିକୋଟି ପଦାତି ପଡ଼ିଲେ ଦୈତ୍ୟଜାଣ ।
ଭରତ ଏକ ଦୈତ୍ୟ ପଦାତି ତିନିକୋଟି
ସରଦାର ସେନାପତି ମାଇଲେ ଲକ୍ଷେସେଟି ।
ଲକ୍ଷ୍ମଣମାଇଲେ ବେନିଦୈତ୍ୟ ପାଞ୍ଚକୋଟିବଳ
ସର୍ଦ୍ଦାର ସେନାପତି ମାଇଲେ ଅପାର ।
ଚତୁର୍ମୁଖା ଅସୁରକୁ ଶତୃଘନ ମାରି
ସାତକୋଟି ପାଦାନ୍ତିସଙ୍ଗରେ ସେନାପତି ମରି ।
ଶତୃଘନ ଶରେ ସମସ୍ତେ ପଡ଼ନ୍ତି
ଅସୁରଙ୍କୁ ମାରି ଚାରି ଭାଇ ଆସୁଛନ୍ତି ।

ତୁମ୍ଭ ଆଗେ କହିବାକୁ ଆସିଛୁ ଆମ୍ଭେଟି
× × ×
ଶୁଣିକରି ଦଶରଥ ପରମ ତୋଷ ହେଲେ
ଏସନେକବେଳେ ଆର ଦୂତଯେ ମିଳିଲେ ।
ବୋଇଲେ ଭୋଦେବସର୍ବ ଅସୁରେ ଗଲେନାଶ
ଶୋଣିତନଦୀ ଗୋଟିଏ ହୋଇଲା ପ୍ରକାଶ ।
ନାଚିଲେ କୋବନ୍ଧ ଯେ ମାତିଲେ ଖେଚରୀ
ଦେବେ ପୁଷ୍ପ ବୃଷ୍ଟି କଲେକ ବେଗ କରି ।
ଶୁଣିଣ ଦଶରଥ ହରଷ ମନରେ
ଦୂତକୁ ବଧାଇ ଦେଲେ ମନ ଆନନ୍ଦରେ ।
ଏଥୁ ଅନନ୍ତରେ ଯେ ଚାରିଭାଇ ଗଲେ
ଅଶ୍ୱମାନ ଚଢ଼ିଣ ରାଜ୍ୟରେ ଫେରାଇଲେ ।
ଶ୍ରୀରାମ ଲକ୍ଷ୍ମଣ ଦୁଇ ଗୋଟି ଭାଇ ଜାଣଣ
ଆଗରେ ଅସୁଆର ହୋଇଛନ୍ତି ପୁଣ ।
ଭ୍ରତ ଶତୃଘନ ପଛରେ ଆସେ ପୁଣି
ଆଗପଛ ଅସୁଆରେ ଦେଖନ୍ତି ସର୍ବେପୁଣି ।
ଅଶ୍ୱଟିପି ଚାରିଭାଇ ହେଲେ ଗୋଟି ଗୋଟି
ଆଗପଛ ହୋଇକରି ନଗ୍ରରେ ପଶନ୍ତି ।
ନରନାରୀ ଦେଖୁଛନ୍ତି ନଗ୍ରେ ରହିପୁଣ
ହୁଳହୁଳି ଶବଦ ଶୁଭଇ ଉଚ୍ଚେ ଜାଣ ।
କେ ବୋଲେ କ୍ଷତ୍ରିୟଅଟନ୍ତି ନୃପତିଙ୍କ ପୋଏ
ମାଇଲେ ଅସୁରଙ୍କୁ କଲେକ ନିର୍ଭୟେ ।
ଦ୍ୱାରେ ୨ ଦେଖନ୍ତି ସ୍ତିରୀ ପୁରୁଷ ରହି
ସାଧୁ ସାଧୁ ଶ୍ରୀରାମବୋଲନ୍ତି ସର୍ବେ ତହିଁ ।
ନଗ୍ରରେ ପ୍ରବେଶ ଯେ ଚାରିଭାଇ ହେଲେ
ଅଶ୍ୱରୁ ଉତୁରିଣ ପିତାଙ୍କୁ ଓଳଗିଲେ ।
ମାଜଣା ହୋଇଣ ଯେ ସ୍ନାନ ବିଧିସାରି
ମାତାମାନଙ୍କୁ ଅନ୍ତଃପୁରକୁ ଗଲେ ଚଳି ।
କୌଶଲ୍ୟା କୈକେୟୀ ସୁମିତ୍ରା ନୀଳାବତୀପୁରେ
ଚାରିପୁତ୍ର ଓଳଗିଲେ ମାତାଙ୍କ ପୟରେ ।
ପୁତ୍ରକୁ ଦେଖି ଆନନ୍ଦ ହେଲେ ମାତାମାନେ
ଆନନ୍ଦେ ଚୁମ୍ବନ ଦ୍ୟନ୍ତି ହରଷ ବଚନେ ।
ଭୋଜନ ଶୟନ ଯେ ଚାରିପୁତ୍ର କଲେ
ପାତ୍ରମନ୍ତ୍ରୀ ସାମନ୍ତ ଘେନି ରାଜନ ସଭାକରେ ।
ଶ୍ରୀରାମଙ୍କୁ ପ୍ରଶଂସା କରନ୍ତି ସର୍ବେ ମିଳି
ଏ ଚାରି ନନ୍ଦନ ସୂର୍ଯ୍ୟ ବଂଶକୁ ଉଦ୍ଧରି ।

ଏଗାର ବର୍ଷେ ଏହୁ ମାଇଲେ ଦୈତ୍ୟବଳ
ନିଶ୍ଚୟ ଶ୍ରୀରାମ ଜାଣ ଭାଗିରଥୀ ତୁଲ୍ୟ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣଗୋ ଭଗବତୀ
ପ୍ରତିଦିନ ପାରିଧିକି ଚାରିଭାଇ ଯାନ୍ତି ।
ସିଂହ ଶାର୍ଦ୍ଦୁଳ ଗଣ୍ଡା ଗୟଳ ଯେ ମାରି
ମୃଗ ସୟମ୍ବର ଯେ ବରିଲା ହସ୍ତୀ ଧରି ।
ଆଠ ଦଶ ପକ୍ଷରେ ମିଳନ୍ତି ଦୁଷ୍ଟ ଯେତେ
ଜାଣି ଶୁଣି ବିଚାରି ମାରନ୍ତି ଚାରିଭ୍ରାତେ ।
ଶ୍ରୀରାମଙ୍କୁ ଏଗାର ବର୍ଷ ସମ୍ପୂର୍ଣ୍ଣ ହୋଇଲା
ଦିନୁଁଦୁନ ଶ୍ରୀରାମ ନାମ ପ୍ରକାଶିଲା ।
ଅନେକ ଦୁଷ୍ଟ ଦୈତ୍ୟ ଯେ ମାରିବାରୁ ପୁଣ
ଡାକିଣ ରାଜାମାନେ ଶଙ୍ଖୋଳେ ଅବିଛନ୍ନ ।
ଦିନେକ ଚମ୍ପାବତୀ ନଗ୍ରକୁ ଚାରିଭାଇ ଗଲେ
ଚାରିଭାଇ ସୈନ୍ୟବଳ ଘେନିଣ ମିଳିଲେ ।
ପାଞ୍ଚଦିନେ ଚମ୍ପାବତୀ ନଗ୍ରରେ ପ୍ରବେଶ
ଦେଖିଣ ଲୋମପାଦ ମନରେ ହେଲେ ତୋଷ
ଲୋମପାଦ ରାଜାର ଶତେ ପୁତ୍ର ଜାଣ ।
ଶ୍ରୀରାମଙ୍କୁ ବଡ଼ ଯେ ସେ ବେନିମାସ ଜାଣ ।
ଶ୍ରୀରାମ ସେମାନଙ୍କୁ ମାନ୍ୟଧର୍ମ କଲେ
ମେଳ ହୋଇ ସାତଦିନ ପାରିଧି କଲେ ଭଲେ
ସୁଖ ପାଇଁ ପକ୍ଷକ ଯେ ରହିଲେ ଚାରିଭାଇ
ଲୋମପାଦ ରାଣୀମାନେ ଦେଖି ତୋଷ ହୋଇ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଭଗବର୍ତୀ
କୋଶଳଦ୍ୱୀପ ବୋଲି ରାଜ୍ୟ ଭଦ୍ରନାମପୃଥ୍ୱୀ ।
ସେ ରାଜ୍ୟରେ ଅସୁର ରାଜନ ନୀଳମଣି
ମୈଷାସୁର ଅଂଶ ଅଟେ ସେହୁ ପୁଣି ।
ଦେବଙ୍କୁ ରିପୁଧରି ସ୍ୱର୍ଗରେ ପଶିଲା
ବାରବର୍ଷ ପର୍ଯ୍ୟନ୍ତେ ଦେବଙ୍କ ସଙ୍ଗେ ରଣକଲା ।
ଜାଣିଣ ସୁରରାଜା ସେ ଦୈତ୍ୟକୁ ମାରି
ତାହାର ଏକପୁତ୍ର କୁମାରେଶ୍ୱର ବୋଲି ।
ରିପୁଧର ଦେବଙ୍କ ସଙ୍ଗେ କଳି କଲା
ରଣକରି ଦେବତାମାନଙ୍କୁ ଜିଣିଲା ।
ଦେବତା ଜିଣିଣ ନିଜପୁରେ ଆସି
କିଛିଦିନ ଉତ୍ତାରୁ ଜମ୍ବୁଦ୍ୱୀପରେ ପଶି ।
ଭୟକରି ରାଜାଗଣେ ତା ସଙ୍ଗେ ପ୍ରୀତିକଲେ
ତେଣୁ ଯେ ରାଜାମାନଙ୍କୁ ନ ଦଣ୍ଡଇ ଭଲେ ।

ଚମ୍ପାବତୀ ରାଜ୍ୟେ ଯାଇ ହୋଇଲେ ପ୍ରବେଶ
ରାଜ୍ୟ ଉଜାଡ଼ିଣ ଭାଙ୍ଗିଲେ ପୁଣ ଦେଶ ।
ଚାର ଯାଇ ଜଣାଇଲେ ଲୋମପାଦ ଆଗେ
ଅସୁର ଆସି ନଗ୍ରେ ହୋଇଲାକ ବେଗେ ।
ଦେଶ ଘୋଷ ଉଜାଡ଼ିଣ କରଇସେହୁ କ୍ରୂର ।
ଶୁଣିକରି ଲୋମପାଦ ବୋଇଲେ ଯିବା ଚାଲ ।
ତାହାର ସଙ୍ଗେ ଧୀରକଥା ଆମ୍ଭେ ହେବାଜାଣି
ତେବେ ଯେ ଅସୁରରାଜା ବୋଧ ହେବ ପୁଣି ।
ଶ୍ରୀରାମ ବୋଇଲେ ପିତା ଦୁଷ୍ଟଙ୍କୁ ଯେବେ ଡରି
କେତେକାଳ ଏ ରାଜ୍ୟରେ ଥିବ ହେ ଦେହଧରି ।
ଯେତେ ଦୁଷ୍ଟ ଅଛନ୍ତି ଏ ସପ୍ତ ଦ୍ୱୀପରେ
ଦରଶନିକୁ ଧନ ଆମ୍ଭର ନାହିଁତ ଭଣ୍ଡାରେ ।
ଲୋମପାଦ ବୋଇଲେ ବାବୁ ଅସମ୍ଭାଳବେଳେ
ଦୁଷ୍ଟଙ୍କୁ ପ୍ରବୋଧିଲେ ସମ୍ଭଳା ହୋନ୍ତି ଭଲେ ।
ଶ୍ରୀରାମ ବୋଇଲେ ତୁମ୍ଭେ ରଣରେ ନ ପାର
ତେଣୁ ମନ ନେବାକୁ ମନ ଯେ ତୁମ୍ଭର ।
ଲୋମପାଦ ବୋଇଲେ ତାଙ୍କୁ ଦେବତା ନୁହେଁ ସରି
ତେଣୁ କରି ମନରେ ଭୟ ଯେ ଆମ୍ଭରି ।
ଶ୍ରୀରାମ ବୋଲେ ସେ ଯେବେ ଦେବତାଙ୍କରସଲ
ଆମ୍ଭେ ମାରିବୁ ତାଙ୍କୁ ତୁମ୍ଭେ ନକର ବିଚାର ।
ଏତେ କହି ଶ୍ରୀରାମ ଯେ ବେନିଭାଇ ଘେନି
ଅଶ୍ୱପରେ ବିଜେ କଲେ କରେ ଧନୁ ପୁଣି ।
ଧନୁରେ ଗୁଣ ଦେଇ ଟଙ୍କାରିଲେ ବସି
ଅସୁରଙ୍କୁ ଓଗାଳିଲେ ଯାଇଣ ରଘୁ ଶିଷି ।
ଦେଖିଣ ଅସୁର କ୍ରୋଧରେ ଜର ଜର
ଶ୍ରୀରାମ ଛାମୁରେ କୁମାରେଶ୍ୱର ବୀର ।
ସୈନ୍ୟକୁ ବୋଇଲା ତୁମ୍ଭେ ଚାରିଭାଗ ହୁଅ
ସରଦାର ଯାକ ତୁମ୍ଭେ ମୋର ସଙ୍ଗେ ଥାଅ ।
ସେନାପତିମାନେ ଯେ ମନ୍ତ୍ରୀର ତୁଲେ ରହି
ରଥୀ ପଦାତି ସଙ୍ଗରେ ରହନ୍ତୁ ବେନିଭାଇ ।
ଏ ଚାରିକୁମରକୁ ଚାରି ଭାଗରେ ରଣ
ମାରିଣ ରାଜ୍ୟ ନେଲେ ଯେ ଆମ୍ଭର କାରଣ ।
ରାଜନର ବାଣୀଶୁଣି ଚାରିଭାଗ ହେଲେ
ଚାରଭାଇଙ୍କ ସଙ୍ଗରେ ରଣ ଆରମ୍ଭିଲେ ।
ଶତୃଘନ ସଙ୍ଗରେ ପଦାତି ପୁତ୍ର ଲାଗି
ଦେଖିଣ ଶତୃଘନ ଯେ ମୋହନା ଶରବିନ୍ଧି ।
ମୋହଶର ପେଷନ୍ତେ ଯେ ଧରଣୀରେ ଶୋଇ
ଦେଖିଣ ଶତୃଘନ କତୁରୀ ଶର ଲିହି ।
ବେନି ବେନି ଖଣ୍ଡ କରି ପକାଏ କତୁରୀ
ସକଳ ପଦାତିବଳ ରାଜାର ଭାଇ ମରି ।
ଦେଖିଣ ସେନାପତିଏ ଚାରିଭାଗ ହୋଇ
ଲକ୍ଷ୍ମଣ ସଙ୍ଗରେ ରଣ କଲେକ ରୁହାଇ ।
ଦେଖିଣ ଲକ୍ଷ୍ମଣ ଯେ ବାବଲ ଶର ମାରି
ରଥୀ ପଦାତି ସହିତେ ସମସ୍ତେ ଗଲେ ମରି ।
ବେନି ଖଣ୍ଡ ହୋଇ ପଡ଼ିଲେ ସକଳ
ଦେଖିଣ ରାଜନ ଭାଇ ନଟନାମେ ବୀର ।
ସେନାପତି ଘେନିଣ ଭ୍ରଥ ସଙ୍ଗରେଁ ଯୁଝି
ଦେଖିଣ ଭ୍ରଥବୀର ମନେ ବଡ଼ ରାଗୀ ।
ବଜ୍ର ବାଟୁଳିଏ ମାଇଲେ ଭ୍ରଥବୀର
ପଡ଼ିଲେ ସେନାପତିଏ ଧରଣୀ ଉପର ।
ଦେଖିଣ ନଟକାର ଅସୁର ରଣକଲା ।
ବଜ୍ର ବାଟୁଳି ବାଜନ୍ତେ ତାର ପ୍ରାଣ ଗଲା ।
ଦେଖିଣ କୁମାର ଯେ ମନରେ ବିଚାରି
ସେ ବାଳକ ହସ୍ତରେମୋ ସକଳସୈନ୍ୟ ମରି ।
ଏମନ୍ତ ବିଚାରି ବିନ୍ଧିଲେ ଶର ଟାଣ ।
ଜଏନ୍ତ ଶରେ ଶକଳ ସରଦାର ମାରି ।
ଦେଖିକରି କୁମର କାୟାକୁ ବିସ୍ତାରି ।
ମାୟା ରୂପ ଦେଖିଣ ଶ୍ରୀରାମ କତୁରି ଶରକରି
ବେନି ଫାଳ କରି ଶ୍ରୀରାମ ପକାଇଲେ ଚିରି ।
ପାଞ୍ଚକୋଟି ବଳରୁ ଯେ ବତିଶ ଜଣ ବଳି
ଶାୟେର କୁଳକୁ ଯେ ପକାନ୍ତି ବେଗକରି ।
ରାଜନର ପୁତ୍ର ଯାଇ ଘରଣୀ ଆଗେ କହି
ରାଜନ ରଣେ ପଡ଼ିଲେ ଜମ୍ବୁଦ୍ୱୀପରେ ଯାଇ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଶ୍ରୋଣିତ ନଦୀ ଗୋଟିଏ ବହିଲା ପୁଣିକରି ।
ନାଚିଲେ କବନ୍ଧ ଯେ ମାତିଲେ ଖେଚରୀ
ଦେଖିଣ ଚମ୍ପାବତୀ ଦେଶର ନରନାରୀ ।
ବିଚାରିଲେ ଅଯୋଧା ନୃପତିଙ୍କ କୁମର
ଅସୁରଙ୍କୁ ମାରି ରକ୍ଷା କଲେ ଏହୁ ପୁର ।
ଏମନ୍ତ ସମୟରେ ସ୍ୱର୍ଗରେ ଦେବେ ମିଳି
ଶ୍ରୀରାମଙ୍କ ଉପରେ ପୁଷ୍ପ ବୃଷ୍ଟି କରି ।

ଚାର ଯାଇ ଜଣାଇଲା ଲୋମପାଦ ଆଗେ
ଦଶରଥ ନନ୍ଦନେ ଅସୁର ମାରି ଏବେ ।
ଚାରିଭାଇ ମାରିଲେ ଯେ ପାଞ୍ଚକୋଟି ବଳ
ଅକ୍ଷୟ ତିନି ଅସୁରଙ୍କୁ ମାଇଲେ କରି ଗୋଳ ।
ତୁମ୍ଭର ପୁତ୍ରମାନେ ରାଜ୍ୟରେ ଯେତେବଳ
ସବୁଙ୍କୁ ମନାକଲେ ଦଶରଥ ବାଳ ।
ଶୁଣିଣ ନୃପତି ଯେ ପାତ୍ର ମନ୍ତ୍ରୀଙ୍କି ଘେନି
ସାମନ୍ତ ସେବକ ପୁତ୍ର ସଙ୍ଗରେ ଘେନି ପୁଣି ।
ସୈନ୍ୟଗଣ ଘେନି ରଣ ସ୍ଥାନରେ ପ୍ରବେଶ
ରାମତାଳି ହରିବୋଲ ପଡ଼ିଲା ଅନେକ ।
ଗୁଣ୍ଡିଚା ବିଜୟେ ପ୍ରାୟେ ଉତ୍ସବ ରାଜ୍ୟେକରି
ବାଦ୍ୟ ନାଟ ନୃତ୍ୟରଙ୍ଗ ନାନା ବର୍ଣ୍ଣେ କରି
ହରଷ ଉତ୍ସବରେ ନବରେ ପ୍ରବେଶ
ହୁଳହୁଳି ଶବଦରେ ପୂରଇ ଆକାଶ ।
ମାଜଣା ସ୍ନାହାନ ଯେ ସାରିଣ ଚାରିଭାଇ
ଷଡ଼ ରସରେ ଭୋଜନ କରିଣ ନିଦ୍ରାଯାଇ ।
ନିଦ୍ରା ଭାଙ୍ଗିବାରୁ ରାଜ୍ୟକୁ ବାହାରିଲେପୁଣ
ଲୋମପାଦ ପୁତ୍ର ତାଙ୍କ ସଙ୍ଗରେ ଗଲେ ଜାଣ ।
ସକଳ ପୁତ୍ରମେଳ ହୋଇଣ ଆସିଲେ
ପାଞ୍ଚଦିନେ ଅଯୋଧ୍ୟାରେ ପ୍ରବେଶ ହୋଇଲେ ।
ଦଶରଥ ରାଜାଙ୍କୁ ଯେ ନମସ୍କାର କଲେ
ଲୋମପାଦ ପୁତ୍ରମାନେ ସକଳ କହିଲେ ।
ସ୍ନାନ ଭୋଜନ ଯେ ସକଳ ପୁତ୍ରେ କଲେ
ରାଜାରାଣୀ ଶୁଣିଣ ଯେ ସନ୍ତୋଷ ହୋଇଲେ ।
ଲୋମପାଦ ରାଜ ଅଯୋଧ୍ୟାରେ ରହି ଦିନାକେତେ
ଆପଣା ରାଜ୍ୟକୁ ଚଳିଗଲେ ଯେ ତୁରିତେ ।
ପାର୍ବତୀ ପଚାରିଲେ ସେଠାରୁ କିସ ହେଲା
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ସେଥିର ଲୀଳା ।
ବେନିମାସ ଅନ୍ତରେ ଶ୍ରୀରାମ ଚାରିଭାଇ
ସାୟାନ୍ତା ଭଉଣୀକି ଦେଖିଯିବା ପାଇଁ ।
ଅନେକ ସମ୍ଭର୍ବରେ ଚଳିଗଲେ ପୁଣ
ଧନ ଧାନ୍ୟ ଆୟେ ଅଳଙ୍କାର ନେଲେ ଜାଣ ।
ଘେନିଣ କୌଶିକ ବନେ ହେଲେ ଯେ ପ୍ରବେଶ
ଦେଖିଲେ ସେ ବନେ ଲାଗିଛି ଉପଦ୍ରବ ବିଶେଷ ।
ପୂର୍ବ ଦିଗରେ ଉଦୟ ଗିରି ଯେ ହିମାଳୟରେ
ବୃନ୍ଦାସୁର ନବର ଅଟେ ସେ ବନରେ ।

ବୃନ୍ଦାସୁରକୁ ମାରିଲେ ଯେହୁ ବଜ୍ରଧର
ତାର ନାତି ଅଟେ ବଇବା ନାମେ ସୁର ।
ସ୍ୱର୍ଗରେ ପଶିଣ ଯେ ଦେବଙ୍କୁ ଜିଣିଲା
ପାତାଳରେ ନାଗବନ ଯାଇଣ ଧରିଲା ।
ମଞ୍ଚରେ ସପ୍ତଦ୍ୱୀପ ଜିଣିଣ ସେହୁ ପୁଣ
ଜମ୍ବୁ ଦ୍ୱୀପରେ ବୁଲେ ରାଜାମାନଙ୍କୁ ସ୍ଥାନ ।
ଦେଖା ଦରଶନ ଯେ ଘେନିଣ ବୀର ଚଳି
କଉଶିକ ବନରେ ମିଳିଲେ ଶତେ ବଳି ।
ବିଭାଣ୍ଡକ ଋଷିଙ୍କୁ ଜଞ୍ଜାଳ ସେ କଲା
ଅସୁରଙ୍କୁ ଦେଖି ମୁନି ତରସ୍ତ ହୋଇଲା ।
ଏମନ୍ତ ସମୟରେ ପ୍ରବେଶ ଶ୍ରୀରାମ ଚାରି ଭାଇ
ସମ୍ଭର୍ବ ଦେଖି ଅସୁର ତାହାଙ୍କୁ ଓଗାଳଇ ।
ତିନିକୋଟି ପଦାତି ଯେ କୋଟିଏକ ରଥୀ
ଲକ୍ଷେ ସେନାପତିପରେ କୋଟିଏ ସୈନ୍ୟଛନ୍ତି ।
ଶ୍ରୀରାମଙ୍କୁ ଓଗାଳିବାରୁ ଚାରିଭାଇ ପୁଣ
ଧନୁଶର ଧରିଣ କଲେକ ସେ ରଣ ।
କାଣ୍ଡ ରଡ଼ି ଶବଦରେ ପୂରିଲା ଆକାଶ
ବିନ୍ଧିବାରୁ ଚାରିଭାଇ ଅସୁରେ କଲେ ତ୍ରାସ ।
ହସ୍ତୀ ରଥୀ ପଦାତି ସରଦାର ପଏକାର
ବେନି ପତି ପାତ୍ର ମନ୍ତ୍ରୀ ଯେତେକ ଥିଲେବଳ ।
ବେନିଘଡ଼ି ମଧ୍ୟେ ଚାରିଭାଇସବୁଙ୍କୁ ନାଶକଲେ
ଦେଖିଣ ବଇବାସୁର ଆଗରେ ମିଳିଗଲେ ।
ଦେଖିଣ ଭ୍ରଥ ବଜ୍ର ମାରିଲେ ବାଟୁଳି
ଲକ୍ଷେକ ବାଟୁଳି ଯେ ଶରୀରେ ଗଲା ଗଳି ।
ଲକ୍ଷେକ ଜଳା ଯେ ଅସୁର ଦେହେ ହୋଇ
ଦେଖିକରି ଅସୁର ଯେ ସିଂହରଡ଼ି ଦେଇ ।
ଦେଖିଣ ଭ୍ରଥବୀର ଅଗ୍ନିଶର କଲା
ଅଗ୍ନିଶରକୁ ଦେଖି ଅସୁର ପାଟି ବିସ୍ତାରିଲା ।
ଅଗ୍ନିଶର ଭକ୍ଷିବାରୁ ପେଟ ଗଲା ଜଳି
ଭସ୍ମହେଲା ଅସୁର ଯେସନେ କୁହୁତା ପରି ।
ଦେଖିଣ ଦେବତାଏ ପୁଷ୍ପ ବୃଷ୍ଟି କଲେ
ନାରାୟଣ ଅବତାର ବୋଲିଣ ଜାଣିଲେ ।
ଅସୁରେ ମାରିବାରୁ ଶ୍ରୋଣିତ ନଦୀ ବହି
ମାତିଲେ ଖେଚରୀ କବନ୍ଧ ନାଚେ ତହିଁ ।
ଦଶ ପାଞ୍ଚ ଅସୁର ପଳାଇଣ ଗଲେ
ଉଦେଗିରି ଦେଶରେ ଯାଇଣ ମିଳିଲେ ।

ତାଙ୍କ ରାଜ ରାଣୀଙ୍କୁ କହିଲେ ଯାଇକରି
ଅଯୋଧ୍ୟା ରାଜନ ସୁତ ଗଲେ ମାରିକରି ।
ଏଥୁଅନନ୍ତରେ ଦେଖିଣ ଗୋପାଳେ
ବିଭାଣ୍ଡକ ଆଗରେ କହିଲେ ହରଷରେ ।
ବୋଇଲେ ଦଶରଥ ନନ୍ଦନ ଚାରି ପୁଏ
ଅସୁର ବଳ ମାରିଣ ତୁମ୍ଭର ପାଶେ ଆଏ ।
ଋଷ୍ୟଶୃଙ୍ଗ ବିଭାଣ୍ଡକ ଯୋଗରେ ଜାଣି ଧ୍ୟାନେ
ଚାରିଭାଇଙ୍କୁ ପାଛୋଟି ନେଲେକ ତୁରିତେ ।
ପାଞ୍ଚ ସାତଦିନ ରହି ପୁଣି ଅଯୋଧ୍ୟା ଅଇଲେ
ଫେରିଣ ଅଜା ମଉଳା ଘର ବୁଲିଗଲେ ।
କେଉଁଠାରେ ଦୁଇଦିନ କେଉଁଠାରେ ଚାରି
ସାତଶ ପଚାଶ ମାତାଙ୍କଘର ଫେରି ।
ସକଳ ମାତାମାନଙ୍କୁ କହିଲେ ବାରତା
ବୁଲିଣ ଶ୍ରୀରାମ ଯେ ହୋଇଲେ ଜଗଜିତା ।
ଦୁଷ୍ଟବଳ ଅସୁର ଦେଖିଲେ ମାରେ ପୁଣ
ଶ୍ରୀରାମ ନାମଗୋଟି ସଂସାରେ ଖ୍ୟାତ ଜାଣ ।
ଈଶ୍ୱର କହିବାରୁ ଜାଣିଲେ ହେମବନ୍ତୀ
ମୁନିମାନେ ଅଯୋଧ୍ୟାକୁ ଦେଖିଣ ଆସନ୍ତି ।
ବାର ବର୍ଷ ଶ୍ରୀରାମଙ୍କୁ ହୋଇଲା ସମ୍ପୂର୍ଣ୍ଣ
ମୁନିମାନେ ଜାଣିଲେ ବାସୁଦେବର ଜନ୍ମ ।
ଶୁଣିକରି ଈଶ୍ୱରଙ୍କୁ ପାର୍ବତୀ ପଚାରି
ପର୍ଶୁରାମ କେତେଦିନ ଥିଲାକ ବିହରି ।
ଈଶ୍ୱର ବୋଇଲେ ଶୁଣଗୋ ମହାମାଈ
ଜନକ ଯାଗ କଲେ ଏଗାର ଥରହିଁ ।
ବରଷକେ ଛଡ଼ମାସ ଜନକ ପୁରେ ରହି
ନର ବାନର ଦୁଷ୍ଟଙ୍କୁ ମାରନ୍ତେ ଯାଗେ ରହି
ଆର ଷଡ଼ ମାସରେ କରନ୍ତି ତପ ଆସି
ପର୍ଶୁରାମ ଭୟରେ ସକଳ ଜନ ତ୍ରାସି ।
ପାର୍ବତୀ ବୋଇଲେ ଯେ ତ୍ରିଲୋଚନ ଶୁଣ
ଜନକ ଋଷି ଯେ କିସ କଲେ ପୁଣ ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ଏକଦିନେ ଅଙ୍ଗିରାଅଇଲେ ବିଶ୍ୱାମିତ୍ରଙ୍କ କତି ।
ବିଜୟେ କଲେ ଯାଇ ଋଷିଙ୍କ ଆଶ୍ରମରେ
ଦେଖିଣ ବିଶ୍ୱାମିତ୍ର ମୁନି ହରଷରେ ।
ପଚାରିଲେ କେଉଁପୁରେ ଥିଲ ଋଷିଶିଷ୍ୟ
ମୋରପୁରେ ବିଜେକଲେ ହୋଇଣ ବଡ଼ ଯଶ ।।
ଅଙ୍ଗିରାବୋଇଲେ ଆମ୍ଭେ ବ୍ରହ୍ମାଙ୍କପୁରେ ଥିଲୁ
ବେଦବରଙ୍କ ବୋଲେ ତୁମ୍ଭ ଆଶ୍ରମେ ଅଇଲୁ ।
ବେଦବରେ ବୋଇଲେ ବିଶ୍ୱାମିତ୍ରରେ କହ
ତପକରି ଯାଗକଲେ ପବିତ୍ର ହେବ ଦେହ ।
ପ୍ରଥମରେ ପାତକ ଯେ ବିଶ୍ୱାମିତ୍ର କଲା
ଗୋ ବ୍ରାହ୍ମଙ୍କୁ ରଣ ଗୋଳରେ ମାଇଲା ।
ତେଣୁକରି ନିର୍ମଳ ଯେ ନୋହିଲା ତାଙ୍କକାୟା
ଏମନ୍ତ କହି ମୋତେ ଭେଦିଦେଲେ ବ୍ରହ୍ମପ୍ରିୟା ।
ଶୁଣିଣ ବିଶ୍ୱାମିତ୍ର ଯେ ସ୍ତମ୍ଭୀଭୂତ ହେଲେ
ଧ୍ୟାନରେ ବସି ଯୋଗବଳରେ ଜାଣିଲେ ।
କପିଳ ଋଷିଙ୍କି ଯେ କଲେ ସୁମରଣ
ତତକ୍ଷଣେ କପିଳ ମିଳିଲେ ଆସି ପୁଣ ।
ବିଶ୍ୱାମିତ୍ର ବୋଇଲେ ମୁଁ କରିବି କେଳି ଯାଗ
ମୋର ଯାଗରେ ତୁମ୍ଭେ ହୋଇବ ଆଚାର୍ଯ୍ୟ ।
ସୁରଭୀକି ଘେନି ତୁମ୍ଭେ ଏଥି ବିଜେକର
ସକଳ ସଂଯୋଗ ଯେମନ୍ତେ ହୁଏ ମୋର ।
ଶୁଣିଣ ବିଶ୍ୱାମିତ୍ର ମୟଦୈତ୍ୟକୁ ସୁମରି
ଜାଣିଣ ମୟଦୈତ୍ୟ ଋଷିପୁରେ ମିଳି ।
ବିଶ୍ୱାମିତ୍ର କହିଲେ କରିବା କେଳିଯାଗ
ବିଧି ବିଧାନେ ଯେ ରୂପେ କରି ସିଦ୍ଧିବେଗ ।
ଶୁଣିଣ ମୟଦୈତ୍ୟ ଯୁଣକ ଓସାରରେ
ବେନି ସଭା ଭିଆଇଲା ସବଳ ପ୍ରକାରେ ।
ମଧ୍ୟରେ ଯାଗଶାଳ ଗୋଟି ନିର୍ମାକଲା
ରଜନୀରେ ରଚିଣ ଯେ ଅନ୍ତର୍ଦ୍ଧାନ ହେଲା ।
ପ୍ରଭାତରୁ ବିଶ୍ୱାମିତ୍ର ମୁନି ଯେ ଦେଖିଲା ।

× × ×

କପିଳ ଋଷିଙ୍କି ଯେ ବୋଇଲେ ବିଶ୍ୱାମିତ୍ର
ସୁରଭୀକି କହିଣ ଅଣାଅଁ ବେଗେ ବିତ୍ତ ।
ଶୁଣିଣ କପିଳଯେ ସୁରଭୀରେ କହି
ଯାଗରେ ସମ୍ଭାର ମାତା ବେଗେ ଦିଅ ତୁହି ।
ଲୁଣ ଆଦି ଘୃତ ମଧୁ ଦହିର ତୁଲେ ଜାଣ
ଅନ୍ନ ବ୍ୟଞ୍ଜନ ଯେ ଫଳମୂଳ ଆଣ ।
କାଠ ହାଣ୍ଡି ସହିତେ ଅଭାତ ଯୋଗାଡ଼
ସକଳ ଘରେ ରଖିବା ଅଟଳ ବେଭାର ।

ଶୁଣି କରି ସୁରଭୀ ସକଳ ସଞ୍ଚି ରଖି
ଦେଖିଣ ବିଶ୍ୱାମିତ୍ର ମନରେ ହେଲେ ସୁଖୀ ।
ବାଉନ କୋଟି ମୁନିଙ୍କୁ ସୁମରିଲେ ପୁଣି
ଜାଣିଣ ସର୍ବମୁନି ମିଳିଲେ ତତ୍‌କ୍ଷଣି ।
ମୁନିଙ୍କି ଘେନିଣ ଯାଗଶାଳା ଶୋଧେ ଯାଇ
ମହା ଲଙ୍ଗଳେ ଚଷି ତିଳ ବୁଣି ଦେଇ ।
ତିନି ଦିନରେ ତିଳ ଉଠିବାର ଦେଖି
ଯାଗର ଆରମ୍ଭ ଯେ କଲେ ତହିଁ ଋଷି ।
ତିନିମାସ ଯାଏ ଯେ ଯାଗ ସେହୁ କଲେ
ଜାଣିକରି ଅସୁରେ ଅଇଲେ ସେ ବନରେ ।
ଯାଗ ସମ୍ଭାର ସବୁ ଉଜାଡ଼ି ସବୁ ଖାଇ
ଦେଖି କରି ଋଷିମାନେ ଗଲେ ଯେ ପଳାଇ ।
ଯାଗ ଭାଙ୍ଗି ଅସୁରେ ଯେ ଯାହାପୁରେ ଗଲେ
ଅସୁର ଯିବାରୁ ଋଷିଏ ଆସିଣ ଦେଖିଲେ ।
ଦେଖିଣ ବିମୁଖ ଯେ ହୋଇଲେ ବିଶ୍ୱାମିତ୍ର
ବୋଇଲେ ପୂର୍ବ ପାପରୁ ନୋହିଲି ମୁକତ ।
ଏମନ୍ତ ସମୟରେ ନାରଦ ଆସି ମିଳି
ଦେଖିଣ ବିଶ୍ୱାମିତ୍ର ନାରଦ ଆଗେ ଭାଳି ।
ବୋଲିଲେ ଯାଗ ଗୋଟି ନିର୍ମୂଳ ମୋର ହେଲା
ଅସୁର ଉଜାଡ଼ିଲେ କେହି ରକ୍ଷକ ନୋହିଲା ।
ନାରଦ ବୋଇଲେ ନ ଅଣାଇଲ ପର୍ଶୁରାମ
ବିଶ୍ୱାମିତ୍ରବୋଲେ ସେ ଅନାମିକା ଜପେପୁଣ ।
ଜନକ ଋଷିର ଯେ ଯାଗ ରଖି ଗଲେ
ଷଡ଼ମାସ ମିଥିଳାରେ ନିଅନ୍ତି ଦିନ ଭଲେ ।
ପୁଣି ଷଡ଼ ମାସ ଅନାମିକା ଜପ ଜପି
ଚାରିବେଦ ଜପଇ କେ ଭାଙ୍ଗିବା ଜପଗୋଟି ।
ନାରଦ ବୋଇଲେ ଯେବେ ନଆସିବେ ସେହି
କଥାଏ କହିବା ଯେବେ କରିପାରୁ ତୁହି ।
ଦେବତାଏ କହିବାରୁ ବାସୁଦେବ ଜାତ
ଅସୁର ମାରିବକୁ ମର୍ତ୍ତେ ଉପଗତ ।
ଅନନ୍ତ ସଙ୍ଗେ ଘେନି ବିଜେ ନାରାୟଣ
ଚତୁର୍ଦ୍ଧାରୂପ ଧରି ଦଶରଥ ଘରେ ଜନ୍ମ ।
ବାରବରଷ ହେଲାଣି ମାରିଲେଣି ଦୈତ୍ୟବଳ
ପୃଥ୍ୱୀରେ ରାମନାମ ହେଲାଣି ଚହଳ ।
ତାହାଙ୍କୁ ଆଣିପାରିଲେ ଯାଗରଖି ବାହୁବଳେ
ଏହି ଯାଗକୁ ତୁମ୍ଭର ରଖିବେ କୁଶଳେ ।

ଶୁଣିଣ ବିଶ୍ୱାମିତ୍ର ବଡ଼ ତୋଷ ହେଲେ
ଏତେକହି ନାରଦ ସ୍ୱର୍ଗପୁରେ ଗଲେ ।
ନାରଦ ଯିବାରୁ ଯେ ବିଶ୍ୱାମିତ୍ର ମୁନି
ଆପଣା ମଢିଆକୁ ଚଳିଲେ ବେଗେ ପୁଣି ।
ମନଦୁଃଖ କରିଣ ବସିଲେ ଯୋଗଧାନେ
ଦନୁଜ ବଳ ହତ ହେବାର ବିଚାରିଣ ମନେ ।
ଯୋଗବଳେ ଜାଣିଲେ ଦଶରଥ ଘରେ ଜାତ
ନାରାୟଣ ଅବତାର ନାରଦ କଥା ସତ ।
ଯୋଗନିଦ୍ରା ଭାଙ୍ଗିଣ ଆନନ୍ଦ ମହାଋଷି
ମନରେ ବିଚାରନ୍ତି ପରମ ବ୍ରହ୍ମସେଟି ।
ଦୁଷ୍ଟଙ୍କୁ ମାରି ସନ୍ଥ ପାଳିବାକୁ ଜନ୍ମ
ନିଶ୍ଚୟ ନିରାକାର ଦେହଧରି ପୁଣ ।
ଦେବଙ୍କର ଛଳରେ ଜନମ ହୋଇଲେ
ଏ କାଳେ ଧରଣୀ ଯହୁଁ ଭରା ସେ ପାଇଲେ ।
ଚାରି ରାବଣ ମାରିଣ ଦେବଙ୍କୁ ଉଦ୍ଧରିବେ
ମୁନିମାନଙ୍କର ସବୁ ଯାଗକୁ ରଖିବେ ।
ଏମନ୍ତ ବିଚାରି ମୁନି ସ୍ୱର୍ଗକୁ ଚଳିଗଲେ
ଦେବ ଋଷିମାନଙ୍କୁ ଯାଇଣ ପଚାରିଲେ ।
ସପ୍ତଋଷି ବୋଇଲେ ଶ୍ରୀରାମ ଆସିଲେ ଯାଗହେବ
ପାତାଳ ପୁର ଋଷି ଆଣି କଲେ ଏକଠାବ ।
ସିଦ୍ଧ ଋଷିମାନଙ୍କୁ କହିଲେ ଗମବାଣୀ
ସମସ୍ତେ ତୋଷ ହେଲେ ଶ୍ରୀରାମ ନାମ ଶୁଣି ।
ଶୁଣିଣ ବିଶ୍ୱାମିତ୍ର ହୋଇଲେ ବାହାର
ଅଯୋଧ୍ୟାରେ ବିଜୟକଲେ ଶୁଭଯେ ବେଳର ।
ବାଟରେ ମୁନିବର ବିଚାର କଲେ ମନେ
ଦନୁଜ ଦହିଜ ହେବେ ଶ୍ରୀରାମର ବାଣେ ।
ଶ୍ରୀରାମ ରୂପ ଚିନ୍ତି ପଥେ ଯାଉଁ ଯାଉଁ
ଶ୍ୟାମଳ ଶାନ୍ତ ମୂର୍ତ୍ତି ଶଙ୍ଖ ଚକ୍ର ବାହୁ ।
ଶ୍ରୀବତ୍ସ ଚିହ୍ନ ଯେ କଉସ୍ତୁଭ ହାର
କିରୀଟ କୁଣ୍ଡଳ ନିନ୍ଦଇ ଦିବାକର ।
ବିଜେକଲେ ଦେବ ନିଜ ରୂପ ତେଜ୍ୟାକରି
ସମସ୍ତଙ୍କୁ ଦିଶନ୍ତି ମାନବ ରୂପ ଧରି ।
ଦଶରଥ ରାଜାଙ୍କର ଅଟେ ଜ୍ୟେଷ୍ଠ ବଳା
ମଝିଆ ରାଣୀ କୌଶଲ୍ୟାଗର୍ଭେ ଜନ୍ମ ପରା ।
ଏଥୁଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ
ବିଶ୍ୱାମିତ୍ର ମୁନି ଯେ ଗଲେ ବେଗ ଚଳି ।

ଅଯୋଧ୍ୟା ନଗ୍ରରେ ଯାଇ ହେଲେ ପରବେଶ
ଚନ୍ଦ୍ରକିରଣ ପ୍ରାୟେ ଦିଶଇ ନଗରତ ।
ଅଷ୍ଟରତ୍ନରେ କଳସ ଦିଶନ୍ତି ପନ୍ତି ପନ୍ତି
ଭିନ୍ନ ଭିନ୍ନ ନେତ ଯେ ଚିରାଳ ଉଡୁଛନ୍ତି ।
ନରନାରୀ ସକଳେ ଦିଶନ୍ତି ସୁନ୍ଦର
ସ୍ୱର୍ଗର ଅପସରା ପରାୟେ ନିର୍ମଳ ।
ଯେବଣ ଦିନୁଁ ବାସୁଦେବ ସେ ପୁରେ ହେଲେ ଜନ୍ମ
ସେ ଦିନୁଁ ସୁନ୍ଦର ଦିଶେ ଅଯୋଧ୍ୟା ସେ ପୁଣ ।
ନିର୍ଦ୍ଧନେ ଧନ ଅପୁତ୍ରିକ ପୁତ୍ର ପାଏ ପୁଣ
ଆରୋଗ୍ୟ ଯେ ସକଳ ନରନାରୀ ଜାଣ ।
ଦୁଃଖ ସୁଖ ଚଣ୍ଡପୁତ୍ର କହନ୍ତି ବେଳଜାଣି
କୃପଣ ଲୋକ ସେଥିରେ ଅଛନ୍ତି ବଡ଼ ଦାନୀ ।
ନାରୀମାନେ ସୌଭାଗିନୀ ପୁରୁଷେ ଗୁନଶୀଳ
ବାର ମାସ ଯାକରେ ବୃକ୍ଷରେ ଫଳେ ଫଳ ।
ମେଘ ବରଷନ୍ତି ନଦୀ ପୋଖରୀ କୂପରେ
ଗାଈ ମହିଁଷି କ୍ଷୀର ସୁବର୍ଣ୍ଣ ସର୍ବକାଳେ ।
ଯେ ଯାହା କାଳରେ ଭୋଗଇ ଷଡରତୁ
ଧନଜନ ପରିପୂର୍ଣ୍ଣ ସକଳ ଜନ ହେତୁ ।
ଦେଖିଣ ପ୍ରଶଂସା କରେ ବିଶ୍ୱାମିତ୍ର ଋଷି
ଶ୍ରୀହରି ଘରଣୀ ମହାଲକ୍ଷ୍ମୀ ବିଜେ ଏଥି ଆସି ।
ବାସୁଦେବ ଯହୁଁ ଯେ ହୋଇଲେ ଏଥି ଜାତ
ତେଣୁ ନଗର ଯେ ସକଳ ଗୁଣେ ଖ୍ୟାତ ।
ରଥ ଗଜ ଅଶ୍ୱମାନ ଦେଖିଣ ମୁନି ପାଆନ୍ତି
ବେନିଯୁଣ ପରିଯନ୍ତେ ଏମାନେ ପୂରିଛନ୍ତି ।
ପାର୍ବତୀ ବୋଇଲେ ଦେବ ଶୁଣ ତ୍ରିଲୋଚନ ।
ବେନିଯୁଣେ ରହିଛନ୍ତି ଗଜ ଅଶ୍ୱ ଜାଣ ।
କେତେ କେତେ ଅଛନ୍ତି ମୋତେ ଭିନ୍ନ କରି କହ
ଏ କଥା ଶୁଣିବାରେ ସ୍ନେହ ମୋର ଦେହ ।
ଈଶ୍ୱର ବୋଇଲେ ନାଟ ଅଛନ୍ତି ତିନି ଲକ୍ଷ
ନବକୋଟି ଅଶ୍ୱ ଯେ ସେଥିରେ ପ୍ରତ୍ୟକ୍ଷ ।
ଅଠର କୋଟି ସର୍ଦ୍ଦାର ସେନାପତି ସେଠି ।
ହାଟୁଆ ବାଟୁଆ ଯେ ଛତିଶ ବର୍ଣ୍ଣ ଜାତି ।
ଦାଣ୍ଡ ଚଉଷଠି ଯେ କନ୍ଦି ବିକନ୍ଦି ବଣା
ବଡ଼ଦାଣ୍ଡ ଗୋଟିଯେ ଯୁଣେକ ଲମ୍ବ ସିନା ।
ଏହି ରୂପେ ଅଯୋଧ୍ୟା ଯେ ଚଉରାଶି ଯୁଣ
ଶୁଣିକରି ପାର୍ବତୀ ହରଷ ହେଲେ ମନ ।

ବୋଇଲେ ବିଶ୍ୱାମିତ୍ର ସକଳ ଦେଖିଲେ
କେଉଁକଥା ବିଚାରି ସେ କେଉଁଆଡ଼େ ଗଲେ
ବିଶ୍ୱାମିତ୍ର ଆସନ୍ତେ ଚାରି ନୃପତି ଆସେ କହି
ଶୁଣଗୋ ହେମବନ୍ତୀ ଋଷିର କଥା ତୁହି ।
ବିଶ୍ୱାମିତ୍ର ମୁନି ଯେ ଅଇଲେ ଦେବ ଏଥ
ଦାଣ୍ଡେ ଦେଖିଲୁ ଦେବ ଚଢ଼ିଛନ୍ତି ଅଶ୍ୱଶ୍ୱେତ ।
ଶୁଣିଣ ଦଶରଥ ଉଦବେଗରେ ଚଳେ
ବାଟକୁ ପାଛୋଟି ଯେ ରାଜନବେଗେ ଗଲେ
ନବରକୁ ଆସିଣ କଲେ ପାଦ ପୂଜା
ଷଡ ଅର୍ଘ୍ୟ ଦେଇଣ ଆରତୀ ଧୂମ ପ୍ରଭା ।
ଦଣ୍ଡ ପ୍ରଣାମ କଲେ ରାଜା ମୁନିଙ୍କ ପୟରେ
ସିଂହାସନରେ ବସାଇ କହିଲେ ନୃପବରେ
ଆଜଦିନ ଧନ୍ୟ ଯେ ସୁଫଳ ମୋର ବେଶ
ଧନ୍ୟ ମୋର ଭାଗ୍ୟ ଯେ ଦେଖିଲି ଗାଧିଶିଷ୍ୟ ।
ତୁମ୍ଭେ ବ୍ରହ୍ମମୁନି ଅଟ ବ୍ରହ୍ମାଙ୍କ ସମାନେ
ମୋହର ମନ୍ଦିରେ ବିଜେ କଲ ଏତେଦିନେ ।
ବିଶ୍ୱାମିତ୍ର ବୋଇଲେ ଶୁଣ ହେ ଦଶରଥ
କୁଶଳ ଅଟେ ଟିକି ତୋହର ସମସ୍ତ ।
ପରଜା ପାଳୁଟିକି ଶୁକ୍ରସମ କରି
ଇନ୍ଦ୍ର ବୃଷ୍ଟି କରେକି ତୋର ଯେତେ ପୁରୀ ।
କାଳର ବେଳକୁ ଯେ ଗୁପତ ଗଡ଼ କରି
ଶତ୍ରୁଙ୍କ ଭୟଟିକି ଥାଏ ଯେ ତୋହରି ।
ଗଡ଼ ଭିତରେ ତୋର ଅଛିଟି କି ଝରପାଣି
ଧନ ସଞ୍ଚୁ ଅଛୁଟିକି ନୃପତି ଶିରୋମଣି ।
କାଣ୍ଡ ଖଣ୍ଡା ବର୍ଚ୍ଛା ଶାବେଳି ଚକ୍ର ସାଧି
ସକଳ ସଂଯୋଗରେ ଅଛନା ନୃପନିଧି ।
ବସି ବୁଝିବାକୁ କରିଛୁଟିକି ଠଣା
ପାତ୍ର ମନ୍ତ୍ରୀ କରନ୍ତିଟିକି ରାଜ୍ୟ ବୁଝାମଣା ।
ରଣଗୋଳା କାଳେ ସୈନ୍ୟଙ୍କୁ ଦେଉଟିକି ଅନ୍ନ
ସମର ଭୂମିରେ ବାଜେଟିକି ବୀର ତୂର ପୁଣ ।
ଭୃତ୍ୟଜନ ଥାନ୍ତିଟିକି ତୁମ୍ଭ ସଙ୍ଗତରେ
କେତେ କେତେ ହୋଇଲେଣି ତୋର ଚାରି କୁମରେ
ଦଶରଥ ରାଜା ବୋଲେ କରପତ୍ର ଯୋଡ଼ି
ତୁମ୍ଭର ପ୍ରସନ୍ନ ମୁନି କୁଶଳ ମୋହରି ।
ପୁତ୍ରମାନେ ସାନ ସାନ ବାର ଯେ ବରଷ
କି କାରଣେ ମୋର ପୁରକୁ ବିଜୟ ଗାଧିଶିଷ୍ୟ ।

ମୁନି ବୋଇଲେ ଆମ୍ଭେ ଯେ ଅଇଲୁ ଯହିଁକି
ତୋର ଆଗେ ସେହିକଥା କହୁଛୁ ଆମ୍ଭେଟି ।
କେଳିଯାଗ ଆରମ୍ଭ ଯେ ବିପିନେ ଆମ୍ଭେ କଲୁ
ଅସୁରଙ୍କ ଭୟରେ ରହି ନ ପାରିଲୁ ।
ତୁହି ଯେ ମହାରାଜ କହିଲୁ ତୋତେ ଆସି
ରାଜାଙ୍କ ବାହୁବଳେ ତପ କରନ୍ତି ଋଷି ।
ପାପ ପୁଣ୍ୟରେ ତୁମ୍ଭେ କାରେଣୀ ସର୍ବରାଜା
ରାଜାଙ୍କର ପ୍ରସାଦରେ ଦେବେ ପାଆନ୍ତି ପୂଜା ।
ମୁହିଁ ସେ ବ୍ରହ୍ମମୁନି କରିବି କେଳି ଯାଗ
ତୁମ୍ଭ ଯୋଗୁଁ ନୃପତି ହୋଇବ ମୋର ଭାଗ୍ୟ ।
ଯେବେ ସନ୍ତୋଷ ହେବି ହବି ଯେ ପାନ କରି
ସୁକଲ୍ୟାଣ ପାଇବୁ କହିଲି ହେତୁକରି ।
ରାମଲକ୍ଷ୍ମଣଙ୍କୁ ଆଣି ଦିଅ ଯେ ବେଗେ ତୁହି
ଅସୁରଙ୍କୁ ମାରି ଯାଗ ରଖ୍ ପାରିବେ ସେହି ।
ଅନ୍ୟରେ ନିବାରଣ ନୁହନ୍ତି ଦନୁଜ
ଶ୍ରୀରାମ ନାଶ କରିବେ ଅସୁର ବଳ ବୀର୍ଯ୍ୟ ।
ତୁହି ଯେ ଦଶରଥ ନ ଧର ମନେ ଆନ
ଶ୍ରୀରାମର ନାମ ଯେ ବିଖ୍ୟାତ ଏବେ ପୁଣ ।
ଏଗାର ଶତରାଜା ପୁରରେ ଆମ୍ଭେ ଗଲୁ
ସବୁଠାରେ ରାମନାମ ପ୍ରକାଶ ଶୁଣିଲୁ ।
ଶ୍ରୀରାମ ବିଷ୍ଣୁ ଅଂଶରେ ଜନମ ବିଖ୍ୟାତ
ସକଳ ରାଜା ଶୁଣି କଲେଣି ନିଅତ ।
ବେଦ ବର ବୋଲେ ଜାତ ହେଲ ତୋର କୋଳେ
ଚାରି ରାବଣ ମାରିବେ ଦେବତାଙ୍କ ଛଳେ ।
ସକଳ ବିଧାନ ଆମ୍ଭେ ଜାଣିଲୁ ଯୋଗ ବଳେ
ନାରାୟଣ ଅବତାର ଶ୍ରୀରାମ ତୁମ୍ଭ ଘରେ ।
ନାରଦ ମାର୍କଣ୍ଡ ଅଗସ୍ତି ସନାତନ
ଅଙ୍ଗିରା ପାରେଶ୍ୱର ଦୁର୍ବାସା ଗଉତମ ।
ଏମାନଙ୍କୁ ପଚାରିଲି କହିଲେ ପ୍ରମାଣ
ତେଣୁକରି ବିଚାରି ଆସିଲୁ ଏହି ସ୍ଥାନ ।
ବଶିଷ୍ଠଙ୍କୁ ପଚାର ଅଟେ ଟିକି ସତ
ଚତୁର୍ଦ୍ଧାମୂର୍ତ୍ତି ରୂପେ ଜନ୍ମ ପଦ୍ମ ନେତ୍ର ।
ଆନବାରେ ଅସୁରେ ଯେ ନୋହିଲେ ନିପାତ
ତେଣୁ କରି ଜନ୍ମ ତୋ ଘରେ ଜଗନ୍ନାଥ ।
ଶୁଣିକରି କରଯୋଡ଼ି ବୋଲେ ଦଶରଥ
ପର୍ଶୁରାମ ଅବତାର ବିଷ୍ଣୁ ଯେ ସାକ୍ଷାତ ।

ବାର ବରଷ ଦିନୁଁ ବାର ସହସ୍ର ବର୍ଷ ହେଲା
ସପ୍ତଦ୍ୱୀପ ନବଖଣ୍ଡ ମେଦିନୀ ସାଧ କଲା ।
ଚଉଦ ଭୁବନରେ ବାନର ଦେବତା
ଅସୁର ଦୁଷ୍ଟଜନ ସାଧଇ ଋଷି ପୁତା ।
ଅଙ୍ଗବଳ ସଙ୍ଗରେ ନାହାନ୍ତି କେହି ପୁଣ
ଏକାକୀ ସାଧ କଲେ ରେଣୁକା ନନ୍ଦନ ।
ସେ ଋଷିଙ୍କି ବିଚାର ସେ ଅଟନ୍ତି ନାରାୟଣ
ତାହାଙ୍କୁ ବରିଲେ ଯାଗ ରଖିଥାଏ ପୁଣ ।
ବିଶ୍ୱାମିତ୍ର ବୋଇଲେ ଶୁଣ ହେ ସୂର୍ଯ୍ୟବଂଶୀ ।
ଜନକ ମିଥିଳାରେ ଧନୁ ଯାଗ କରିଛନ୍ତି ।
ଶିବଙ୍କ ଶରାସନ ସେ ପୁରରେ ପୁଣ
ସଦାଶିବ ସୁଦୟାରେ ଆଗହୁଁ ଦେଲେ ଜାଣ ।
ଶରାସନ ଦେଇ ପୁଣ ଈଶ୍ୱର କହିଲେ
ଏ ଶରାସନରେ ତୋତେ ମୁକ୍ତି ହେବ ଭଲେ ।
ଯେଉଁ କାଳେ ଦୁହିତାଏ ଅଯୋନି ସମ୍ଭୂତ
ଜନ୍ମର କାଳରୁ ସେ ହୋଇବ ଯୁବାତ ।
ଶୁଦ୍ଧ ସ୍ନାନ କାଳେ ସେ ଅଗ୍ନିରେ କରି ସ୍ନାନ
ସେ ଦିନରୁ ଧନୁଯାଗ କରିବି ତୁ ପୁଣ ।
ଏଗାର ବର୍ଷ ଯାଏ କରିବୁ ଯାଗ ଜାଣ
ଯାଗକରି ସ୍ୱୟଂମ୍ବର କରାଇବୁ ପୁଣ ।
ସେହି ଯାଗରୁ ଜାତ ଅଯୋନି ସମ୍ଭୁତ
ଜାଣିବୁ କମଳା ନିଶ୍ଚେ ହୋଇବେ ପ୍ରାପତ ।
ଏ ଧନୁକୁ ତୋଳିବ ଯେ ପୁଣ ଟଙ୍କାର କରି
ଜାଣିବୁ ନାରାୟଣ ସେହୁ ବୋଲି କରି ।
ତାଙ୍କ ସଙ୍ଗେ ଯେହୁ ଥିବ ଅନନ୍ତଟି ସେହି
ସେ ବେନି କନ୍ୟାଙ୍କୁ ତାଙ୍କୁ ବିଭାଦେବୁ ତୁହି ।
ଏତେ କହି ସଦାଶିବ ଧନୁ ଦେଇ ଗଲେ
ଏ ଉତ୍ତାରୁ ସତାଇଶ ପୁରୁଷ ଯେ ଗଲେ ।
ଏତେକାଳେ ଅଯୋନି ସମ୍ଭୂତ କନ୍ୟା ଜାତ
ତେଣୁ ସେ ଜନକ ଧନୁ ଯାଗରେ ଉପଗତ ।
ନର ବାନର ଦେବତା ନାଗବଳ ଦୈତ୍ୟ
ଏମାନଙ୍କୁ ଯାଗରେ ସେ ବରିଲେ ତୁରିତ ।
ଏଗାର ଥର ପର୍ଯ୍ୟନ୍ତ ଏମାନେ ଆସି ଜଳ
ଧନୁତୋଳି ନ ପାରି ସେଥିରେ କଲେ ଗୋଳ ।
ଗୋଳ ଦେଖି ଜନକ ପର୍ଶୁରାମଙ୍କୁ ନେଲେ
ଏଗାର ଥର ଯାଗ ପର୍ଶୁରାମ ରକ୍ଷାକଲେ ।

ପର୍ଶୁରାମର ଭୟେ ସେଥିରେ ନୁହେଁ କଳି
ମିଥିଳାରେ ପର୍ଶୁରାମ ରହିବା ମୁଁ ଯେଭଳି ।
ତେଣୁଟି ତୋର ପୁରେ ଅଇଲି ରାଜନ
ଯୋଗେ ଜଣାଇଲା ଶ୍ରୀରାମ ରଖିବେ ଯାଗପୁଣ ।
ଏହା ଶୁଣି ଦଶରଥ କୋମଳ କହେ ବାଣୀ
ଆଜକୁ ବାରବର୍ଷ ରାମକୁ ମୋର ମୁନି ।
ଧାଈଙ୍କ ସ୍ତନରୁ କ୍ଷୀର ଖାଇ ପୋଷୁଛନ୍ତି ପିଣ୍ଡ
ଅନ୍ତଃପୁର ଭିତରୁ ବାହାର ନୁହଁନ୍ତି ଦାଣ୍ଡ ।
କେବଳ କାକ ପରୀକ ନାହାଲ ବେଲିଶର
ଧନୁଧରି କେବଳ ଯେ ମାରନ୍ତି କୁମର ।
କି ରୂପେ ଜାଣିବା ଯାଗ ଶ୍ରୀରାମ ରକ୍ଷାକରି
ଦୈତ୍ୟଙ୍କୁ ଦେଖି ଶ୍ରୀରାମ ଭୟେ ପ୍ରାଣେହାରି ।
ଦେବଙ୍କର ହସ୍ତରେ ନ ମରେ ଯେହ୍ନୁ ପୁଣ
ଶ୍ରୀରାମର ବାଣେ ଘୁଞ୍ଚିବ କି ଜାଣ ।
ଜୋଡ଼ି ବଳଦ ପୁଣି ଶଗଡ଼ ବହି କାହିଁ
ଶ୍ରୀରାମ ଲକ୍ଷ୍ମଣ ଦୈତ୍ୟ ନ ପାରିବେ ଦହି ।
ବାଳକୁମର ଶ୍ରୀରାମ ନ ଜଣାଇଁ କିଛି
ଖେଳିବା ବୁଲିବାର ତ ସମୟ ହୋଇଛି ।
ଯୁବା ବୟସରେ ଅଟଇ ସିନା ଯୁଦ୍ଧ
ତୁମ୍ଭେ ବ୍ରହ୍ମମୁନି ବିଚାରିଣ ବୁଝ ।
ବୃଦ୍ଧକାଳେ ମୋତେ ଯେ ପ୍ରାପତ ହୁଏ
ନ ଦେଖିଲେ ତାଙ୍କୁ ଯେ ମରିବ ନିଶ୍ଚୟେ ।
ନବ ସହସ୍ର ବର୍ଷ ଆସିଣ ମୋତେ ହେଲା
ଏତେକାଳେ ପ୍ରାପତ ହୋଇଲେ ଚାରିବଳା ।
ଚାରିପୁତ୍ରେ ସୁକଲ୍ୟାଣ କର ହେ ମୁନିବର
ମୋରକର୍ମ ସୁଫଳ ଅଇଲ ମୋର ପୁର ।
ଚନ୍ଦ୍ରେ ଯେହ୍ନେ ସମସ୍ତଙ୍କୁ ଲାଗଇ ଶୀତଳ
ବିରହୀ ଜନମାନଙ୍କୁ କରନ୍ତି ବିକଳ ।
ତୁମ୍ଭେ ମୋତେ ପ୍ରସନ୍ନ ଯେ ହେଲେ ଗାଧିସୁତ
ବାଳୁତ କୁମର ମୋର କି କରି ପାରିତ ।
ତୁମ୍ଭ ଆଜ୍ଞାରେ ମୋର ସୈନ୍ୟବଳ ଯାନ୍ତୁ
ମୁହିଁ ତୁମ୍ଭ ସଙ୍ଗେ ଯିବି କହିଲି ଯେ ତତ୍ତ୍ୱ ।
ବିଶ୍ୱାମିତ୍ର ବୋଇଲେ ତୁମ୍ଭର ନାହିଁ କାର୍ଯ୍ୟ ।
ବାଳକାଳୁଁ ତୋର ଜଣା ଅଛି ବଳବୀର୍ଯ୍ୟ ।
କୁମର ନ ଥିଲେ ରାଏ ସବୁଙ୍କ ବଳ ଥାଇ
କୁମର ଜନ୍ମହେଲେ ଦେହରୁ ବଳ ଯାଇ ।

ତୁମ୍ଭରେ ଅସୁରେ ଦୁଷ୍ଟେ ନୋହିବେ ଯେ ନାଶ
ଦଏଣା କରୁଣା ଯେ ଅଇଲେ ତୋର ଦେଶ ।
ତାଙ୍କ ସଙ୍ଗେ ରାଜନ ନ ପାରିଲୁ ରଣ କରି
ସ୍ତିରୀ ପ୍ରାୟେ ଗୁପତେ ରହିଲୁ ଅନ୍ତଃପୁରୀ ।
ଦୁଷ୍ଟ ଦୈତ୍ୟଗଣ ଯେ ଦେବଙ୍କୁ ନ ଡରନ୍ତି
ତୋରେ କାହିଁ ଅସୁରେ ହୋଇବେ ନିପାତି ।
ଅସୁର ମାରିବାକୁ ଯେବେ ହୁଅନ୍ତୁ ସମର୍ଥ
ବାସୁଦେବ କିମ୍ବା ତୋପୁରେ ହୋନ୍ତେ ଜାତ
ଅସୁର ମାରିବା ପାଇଁ ବୈକୁଣ୍ଠ ତେଜ୍ୟାକଲେ
ମର୍ତ୍ତରେ ଆସି ଜନ୍ମ ତୋ ଘରେ ହୋଇଲେ ।
ରାମ ନାରାୟଣ ନୋହିଲେବି ତେଜିବୁ ତୋତେ
ଜାଣ ନାହିଁକି ରାଜନ ଆମ୍ଭର ଯଶ ଯେତେ ।
ତୁ ବୋଲୁ ବାଳୁତ ସେ ଅଟନ୍ତି ତୋର ପୁଏ
ଦଏଣା କରୁଣା ମାଇଲେ କେହ୍ନେ ସିଏ ।
ଲୋମପାଦ ରାଜାଙ୍କୁ ଯେ କେହ୍ନେ ପୁତ୍ରେ ଗଲେ
ସେ ରାଜ୍ୟେ ଦୈତ୍ୟ ହୁରିଜୁରି କରିବା ଦେଖିଲେ ।
ତେଣୁ ସେ ଦୈତ୍ୟବଳ ମାରିଲେ ବିକୋଟି
ଲୋମପାଦ ରାଜାକୁ ନିଶ୍ଚିନ୍ତ କଲେ ସେଥି ।
ବିଭାଣ୍ଡକ ପୁରଟଲେ ଚାରି ପୁତ୍ର ତୋର
ଦେଖିଲେ ସେ ବନରେ ଅସୁର ହେଲେ ବଳ ।
ଚାରି ପୁତ୍ର ଯୁଦ୍ଧ କରି ଅସୁର ଦଳିଲେ
ଶ୍ରୀରାମ କେମନ୍ତେ ତୋର ବାଳ କୁମର ହେଲେ ।
ତୁମ୍ଭର ସାମର୍ଥ ବେଳୁହୁଁ ଜଣା ଅଛି
ଶନିକୁ ଜିଣି ପିତାଙ୍କୁ ଜିଆଁଇଲ ସେ କାଳେଟି ।
ଏବେ ଜାଣି ଶ୍ରୀରାମ ପରମ ବ୍ରହ୍ମ ପୁଣ
ଲକ୍ଷ୍ମଣ ଅନନ୍ତ ଅଟେ ଅଙ୍ଗ ଶତ୍ରୁଘନ ଜାଣ ।
ସୁଦର୍ଶନ ଚକ୍ର ଯେ ଅଟଇ ଭରତ
ଏ ରୂପେ ଚତୁର୍ଦ୍ଧା ରୂପେ ଜାତ ଜଗନ୍ନାଥ ।
ବିଶ୍ୱାମିତ୍ରଙ୍କ ବଚନ ଶୁଣି ଦଶରଥ ରାଜା
ବିଚାରିଲେ ନିଶ୍ଚେ ନେବେ ମୋହର ତନୁଜା ।
ଦଶରଥ ପଚାରେ ଶୁଣ ହେ ତପୋବନ୍ତ
କାହାର କୋଳେ ସେ ଦୈତ୍ୟ ହୋଇ ଅଛି ଜାତ ।
ଋଷି ବୋଲେ ଶୁଣ ହେ ଅଯୋଧା ଈଶ୍ୱର
ଦଶମୁଖା ରାବଣ ଲଙ୍କାରେ ତାର ଘର ।
କୋଡ଼ିଏ ଭୁଜ ତାର ଅଟେ ଦଶଶିର
ପୁତ୍ରତା ଇନ୍ଦ୍ରଜିତ ବଳେ ବଳୀୟାର ।

ଆହୁରି ରାବଣ ଯେ ଏକମୁଖା ଜାଣ
ସୁଲଙ୍କା ଜ୍ୟୋତି ଲଙ୍କାରେ ସେହୁ ରାଜା ପୁଣ
ଆରେକ ରାବଣ ଯେ ଅଟେ ଶତେ ମୁଖା
ଅଲଙ୍କା ଗଡ଼ରେ ସେ ଅଟଇ ନିଶଙ୍କା ।
ଆରେକ ରାବଣ ଯେ ସହସ୍ରେମୁଖା ଜାଣ
ବିଲଙ୍କା ଗଡ଼ରେ ସେ ଅଟଇ ରାବଣ ।
ଏକୋଇଶ ଯୁଗ ହେଲା ସେ ରାବଣଙ୍କୁ ନେଇ
ଚାରି ରାବଣ ପାଦ ତଳେ ଅଛନ୍ତି ଖଟାଇ ।
ମଧୁପୁରରେ ପୁଣ ଲବଣ ନାମେ ଦୈତ୍ୟ
ଅକଳିତ ବଳ ତାର ବଳରେ ବଳବନ୍ତ ।
ସୁବାହୁ ତାଡ଼କାସୁର ବେନିଦୈତ୍ୟ ବୀର
ନାରାୟଣ ହସ୍ତେ ମଲେ ଯିବେ ସ୍ୱର୍ଗପୁର ।
ତେଣୁ ଶିବ ପୁତ୍ର କାର୍ତ୍ତିକେଶ୍ୱର ମାରି
ତାଡକାସୁର ଭଉଣୀ ତାଡକୀ ବୋଲି କରି ।
ସ୍ୱୟମ୍ବର ନାରକାସୁର ଅନେକ ଅସୁର
ନାମ ଧରିଣ କେତେ କହିବି ତାଙ୍କର ।
ଅଗ୍ନି ଲାଗିଲେ ଯେହ୍ନେ ଶୁଖିଲା କାଷ୍ଠ ଜଳନ୍ତି ।
ପାଣି ପକାଇ ଦେଲେ ସେହି ଲିଭିଯାନ୍ତି ।
ଅଗ୍ନି ଅଟନ୍ତି ଅସୁରେ ଶ୍ରୀରାମ ଅଟନ୍ତି ନୀର
ଆନଲୋକ ହସ୍ତେ ଦୈତ୍ୟ ନୁହଁନ୍ତି ନିବାର ।
ତୁମ୍ଭେ ମହା ରାଜା ଯେ ବ୍ୟାକୁଳ ନୁହଁ ପୁଣି
ଷଡମାସରେ ସକଳ ଜାଣିବୁ ନୃପମଣି ।
ଶ୍ରୀରାମଚନ୍ଦ୍ର ଅଟେ ଅସୁରେ ପର୍ବତ
ଆନକେ ଭାଜନ ଦୈତ୍ୟଙ୍କୁ କରିପାରେ ହତ ।
ଶୁଣିକରି ଦଶରଥ ନ ଦିଏ ଉତ୍ତର
ଶିର ନୁଆଁଇଣ ଯେ ମୁଖ ନ ଟେକେ ଆବର ।
ଦଶରଥ ରାଜା ଯେଣୁ ସମସ୍ୟା ନ ଦେଲା
କୋପାନଳ ସେଠାରୁ ଗାଧିସୁତ ହେଲା ।
ଏହି ତପନ ବଂଶରେ ଅନେକ ରାଜା ଥିଲେ
ଏଡ଼େ ଅଧର୍ମ ରାଜା ଦେଖା ନାହିଁ ନେତ୍ରରେ ।
ରାଜାର ପୁତ୍ର ହୋଇଲେ ରଖନ୍ତି ଋଷି ଯାଗ
ଏ କଥାମାନ ଅଟଇ ରାଜ୍ୟକୁ ସୁଯୋଗ ।
ତପୀଙ୍କର ସୁକଲ୍ୟାଣ ରାଜାଙ୍କୁ ବର୍ଦ୍ଧମାନ
ଏ କଥା ନ ବୁଝନ୍ତି ଅଟେ ଯେ ମୂର୍ଖଜନ ।
ଭସ୍ମ କରି ଦେବି ଆଜ ଅଯୋଧା ନାମେପୁର
ଶୁଣିଣ ବଶିଷ୍ଠ ଋଷି ଦେଲେ ଯେ ଉତ୍ତର ।

ବୋଇଲେ ବ୍ରହ୍ମମୁନି ସମ୍ଭାଳ ତୋର କ୍ରୋଧ
ରାଜାଙ୍କୁ ବୋଧ କରିବା ହୁଅ ତୁମ୍ଭେ ବୋଧ ।
ଏ ରାଜା ବୃଦ୍ଧ ପୁତ୍ରରେ କରେ ଶ୍ରଦ୍ଧା
ଶ୍ରୀରାମଙ୍କୁ ନେବାରେ ଚିନ୍ତାରେ ଅବିରୋଧା
ଦଣ୍ଡେ ନ ଦେଖିଲେ ରାଜା ହୁଅଇ ବ୍ୟାକୁଳ ।
ରାଣୀହଂସ ସମସ୍ତେ ଏସନ ପ୍ରକାର ।
ନ ଜାଣନ୍ତି ଦେବତା ନ ଜାଣେ ବିଷ୍ଣୁ ବୋଲି
ଚାରି ପୁତ୍ରଙ୍କୁ ସମସ୍ତେ ଅଛନ୍ତି ଘରେ ପାଳି ।
ତୁମ୍ଭେ ସୁଜାଣ ଦେବବର ସମ ପୁଣି
ତୁମେ କ୍ରୋଧ ହେଲେକି ସମ୍ଭାଳେ ଧରଣୀ ।
ବଶିଷ୍ଠ କହିବାରୁ ବିଶ୍ୱାମିତ୍ର ଶାନ୍ତି
ଶୁଣନ୍ତି ଗିରିଜା ଯେ ଶଙ୍କର କହନ୍ତି ।
ପାର୍ବତୀ ବୋଇଲେ ଶୁଣ ହେ ତ୍ରିଲୋଚନ
ବୈକୁଣ୍ଠରୁ ବାସୁଦେବ ଆସିହେଲେ ଜନ୍ମ ।
ଅନନ୍ତଙ୍କୁ କେମନ୍ତେ ଆଣିଲେ ଶଙ୍ଖ ଚକ୍ର ।
ଗଦାପଦ୍ମ କିମ୍ପାଇ ରଖି ଆସିଲେ ପଦ୍ମନେତ୍ର ।
ମହାଲକ୍ଷ୍ମୀ ଅଇଲେ ରହିଲେ ସରସ୍ୱତୀ
ଏକଥା ବୁଝାଇ ମୋତେ କୁହ ପଶୁପତି ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣଗୋ ଶାରଳା
ଯେଉଁ କଥା ପଚାରିଲ ଶୁଣ ଗୋ ଅବଳା ।
ଗଦା ପଦ୍ମ ରହିଲେ ନିଜ ଆଶ୍ରମରେ
ସରସ୍ୱତୀ ରହିଲେ ବୈକୁଣ୍ଠ ଜଗିବାରେ ।
ପଦ୍ମ ଜୟଦୁର୍ଗା ବୋଲି ଶୟନ ସ୍ଥାନ ଜଗି
ଆଗେ ଯେ ପର୍ଶୁରାମ ଗଦା ନେଇଅଛି ମାଗି
ତେଣୁ ଗଦା ପଦ୍ମ ନ ନିଏ ଏସନ ଜାଣି ହରି
ଶଙ୍ଖ ଚକ୍ର ସଙ୍ଗେ ଘେନି ଜନମ ହେଲେ ହରି
ପାର୍ବତୀ ବୋଇଲେ ଦେବ ଦଶବର୍ଷ ଯାଗ
ଜନକ ଯାକ କଲେ ଦେବ ପ୍ରୀତି ଭାବ ।
ପୁଣି ସେ ଯାଗ କୋଟି ଜନକ କଲେନିକି
ସେ କଥାଫଳାଇ ମୋତେ କହ ହେ ପିନାକୀ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ଗିରିଜା
ଦଶରଥ ଯାଗକରି ରକ୍ଷିକଲେ ଆଶାତେଜ୍ୟା ।
ନାରଦଙ୍କୁ ବୋଇଲେ ଯାଗରେ କିସ କାର୍ଯ୍ୟ
ଦଶରଥ ଧନୁ ଧରିବାକୁ କେ ନୋହିଲେ ଧୈର୍ଯ୍ୟ ।
ନାରଦ ବୋଇଲେ ନର ବାନର ଦେବତା
ଅସୁର ନାଗବଳ ଅଛନ୍ତି ନ କର କିଛି ଚିନ୍ତା ।

ସମ୍ପୂର୍ଣ୍ଣ ଯାଗରେ ଏବେ ପୂର୍ଣ୍ଣ ଆହୁତି କର
ଅବାରଣ ସ୍ୱୟଂମ୍ବର ହୋଇବ ଏଥର ।
ନାରଦ ବୋଲେ ଜନକ ସମ୍ପୂର୍ଣ୍ଣ ଯାଗକଲେ
ପୂର୍ଣ୍ଣ ଆହୁତି କରି ଯାଗ ସେ ସାରିଲେ ।
ବୋଲେ ନର ବାନର ଆଦି ଛତିଶ ପାଟକ
ଅସୁର ନାଗବଳ ଅଛ ହେ ଯେତେକ ।
ଅଛବ ଚଣ୍ଡାଳ ପରିଯନ୍ତେ ମୋର
ଯେ ଧରିବ ଧନୁ ତାକୁ ଦେବଇ ନିକର ।
ଷଡ଼ ମାସ ପର୍ଯ୍ୟନ୍ତ ଏଥର ଦେଲି କଣ୍ଟ
ଏତେ ବୋଲି ଜନକ କହିଲେ ସଭାରେତ ।
ଜନକଠାରୁ ଶୁଣି ଆନନ୍ଦ ସର୍ବେ ହେଲେ
ପ୍ରତିଦିନ ଧନୁ ଦେଖି ସକଳେ ଫେରିଲେ ।
ବେଳକୁ ବେଳ ତେଜ ଦିଶିଲା ଶିବଧନୁ
ପାଶେ ଗଲେ ଗର୍ଜନ କରଇ ଯେହ୍ନେ ଭାନୁ
ଧନୁର ଗର୍ଜନରେ ଉଲ୍କା ପାତ ମହୀ
ପ୍ରତିଦିନ ଧନୁକୁ ଜନକ ପୂଜା ଯେ କରଇ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିଅମ୍ବକ
ଧନୁ କିମ୍ପା ଗର୍ଜନ କରୁଛି ଦେଖିଲାକୁତ ।
ଈଶ୍ୱର ବୋଇଲେ ଧନୁ ନାଗମୂର୍ତ୍ତି ହେଲା
ତେଣୁ ସେ ନାଗରାଜା ଆହୁତି ଭୋଗ କଲା ।
ତେଣୁ ଜୀବନ୍ୟାସ ହେଲା ଧନୁଗୋଟି ଜାଣ
ତେଣେ ରହି ଜାନକୀ ବିରହେ ମନ ଛନ୍ନ ।
ସ୍ୱାମୀଙ୍କୁ ଦେଖିବା ପାଇଁକି ସାଗର ଦୁଲଣୀ ।
ଚିନ୍ତାଭରେ ଭାଳଇ ନ ଦେଖି ସୁଲକ୍ଷଣୀ ।
ପାର୍ବତୀ ବୋଇଲେ ବିଶ୍ୱାମିତ୍ର କିସ କଲେ
ଏ କଥା ବୁଝାଇ ମୋତେ କହ ଦିଗମ୍ବରେ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ବିଶ୍ୱାମିତ୍ର କ୍ରୋଧକୁ ବଶିଷ୍ଠ କଲେ ଶାନ୍ତି ।
ବଶିଷ୍ଠ ମୁନି ବୁଝାଇ ରାଜନରେ କହି
ଏ ମୁନିର କ୍ରୋଟରେ ନ ପାର ତୁମ୍ଭେ ରହି ।
ଭୋ ରାଜା ବିଶ୍ୱାମିତ୍ର ନିଅନ୍ତୁ ଶ୍ରୀରାମକୁ
ତିନିପୁତ୍ର ଅଛନ୍ତି ଯେ କୁଳ ରଖିବାକୁ ।
ଏ ମୁନିର କୋପକୁ ଡରନ୍ତି ସୁରଗଣ
ବିଶେଷେ ଶ୍ରୀରାମ ତୋର ଅଟନ୍ତି ନାରାୟଣ ।
ଏ ମୁନିଙ୍କ ସଙ୍ଗେ ଗଲେ ହୋଇବେ ଯଶଯୁକ୍ତ
ଗାଧିସୁତ ପଢ଼ାଇବେ ସକଳ ଧନୁ ମନ୍ତ୍ର ।

ସଂଶୟ ନ ବିଚାର ଆମ୍ଭ କଥା ଘେନ
ଶ୍ରୀରାମଙ୍କୁ ମୁନିଙ୍କି ଦିଅ ହେ ରାଜନ ।
ବଶିଷ୍ଠ ବଚନ ଶୁଣି ରାଜା ହେଲା ଦମ୍ଭ
ଶ୍ରୀରାମଙ୍କୁ ଡକାଇଣ ଆଣିଲେ ନରେନ୍ଦ୍ର ।
ଶୁଣ ହେ ଶ୍ରୀରାମ ଏ ମୁନିଙ୍କ କଥା ବିପରୀତ
ତୋତେ ନେବାକୁ ଆସିଅଛନ୍ତି ଗାଧିସୁତ ।
ଯାଗ ରଖିବାକୁ ତୋତେ ମାଗନ୍ତି ମୁନି ପୁଣି
ନାସ୍ତି କଲେ କ୍ରୋଧରେ ସେ ହୁଅନ୍ତି ମୁନିମଣି ।
ପିତାଙ୍କଠାରୁ ଶୁଣି ରାମ ବୋଲନ୍ତି ବଚନ
ଯିବି ଋଷିଙ୍କ ସଙ୍ଗେ ଯାଗ ରଖିବି ପୁଣ ।
କେଉଁ ରୂପେ ଯାଗ କହ ଅଂଶ କେଉଁ ଗତି
ଯାଗ ମୁଁ ଦେଖିଲେ ନେତ୍ରେ ହୋଇବି କୃତାର୍ଥୀ ।
ଭୋ ପିତା କିମ୍ପା ତୁମ୍ଭେ ମୋତେ ନିଷେଧକର
ନିଃସଂଶୟେ କରି ପୁଣ ମାରିବି ଅସୁର ।
ତୁମ୍ଭ କୁଳେ ଜନ୍ମ ହୋଇ କାହାକୁ ମୋର ଭୀତି
ଚନ୍ଦ୍ରସୂର୍ଯ୍ୟ କେବଳ ମୋର ହୁଅନ୍ତି ସାକ୍ଷୀ ।
ଆମ୍ଭେ ଯଦି କ୍ଷତ୍ରୀ ସୁତ ନିସତ କିମ୍ପା ହେବୁ
ତୁମ୍ଭେ ଥିଲେ ପିତା ଆମ୍ଭେ କାହାକୁ ନ ଡରିବୁ ।
ଏ ବଚନ ଶୁଣିଣ ଯେ ଦଶରଥ ବୋଲେ
ତୁମ୍ଭେ ଗଲେ ଏଥୁଁ ଦେହ ଧରିବି କି ଭଲେ ।
ଯେବେ ତୁ ରଘୁନାଥ ମୁନିଙ୍କ ସଙ୍ଗେ ଯିବୁ
ମୁହିଁ ନବର୍ତ୍ତେ ଆଉ ମୋତେ ଛାଡ଼ିଗଲେବାବୁ
ଶୋକେ ଗଦଗଦ ବେନି ନୟନୁଁ ବହେନୀର
ଚନ୍ଦ୍ରସୂର୍ଯ୍ୟ ଦୁହିଁଙ୍କୁ ସାକ୍ଷୀଦେଲେ ନୃପବର
ଭୋ ଧର୍ମ ଦେବତା ଶ୍ରୀରାମଙ୍କୁ ମୋର ରଖ
ଏତେ କହି ରାଜନ ମନରେ କଲେ ଦୁଃଖ ।
ବିଶ୍ୱାମିତ୍ର ମୁନିଙ୍କି ଶ୍ରୀରାମଙ୍କୁ ଦେଲେ ନେଇ
ଅନେକ ପ୍ରକାର ଯେ ବିନୟୀ ହୋଇ କହି ।
ଏ ରାମ ବାଳୁତ ମୋର ନ ଜାଣଇଁ କିଛି
ଖେଳିବା ବୁଲିବାର ତ ବୟସ ହୋଇଛି ।
ଯୁଦ୍ଧର ବ୍ୟବସ୍ଥାମାନ ନ ଜାଣଇଁ ଏତ
ତୁମ୍ଭ କୋପ ଦେଖି ମୁଁ ରାମକୁ ସମର୍ପିତ ।
ମୋର ଯିବାରୁ ଏ ପଛେ ହୋନ୍ତୁ ଯାହା
ରଙ୍କୁଣୀ ଧନ ଶ୍ରୀରାମ ମୋ ପିଣ୍ଡକୁ ସାହା ।
ଏତେକହି ଶୋକ ଗଦେ ଗଦେ ନୃପମଣି
ବହୁ ଶୋକ କରେ ଶ୍ରୀରାମକୁ ଦେଇ ଗୁଣି ।

ଅନ୍ତଃପୁରେ ରାବିଲେ ସକଳ ରାଣୀମାନେ
ସ୍ତମ୍ଭୀଭୂତ ହୋଇଲେ ଶୁଣି ସର୍ବଜନେ ।
ଏମନ୍ତ ଶୁଣି ବଶିଷ୍ଠ ଅନ୍ତଃପୁରକୁ ଗଲେ
ଅନ୍ତଃପୁରେ ରାଣୀମାନଙ୍କୁ ସେ ବୋଧକଲେ ।
ବୋଇଲେ ରୋଦନ ଗୋ ନକର ତୁମ୍ଭେ କେହି
ଏ ଋଷିଙ୍କ ସଙ୍ଗେ ଗଲେ ବହୁତ ଭାଗ୍ୟ ହୋଇ ।
ଅନେକ ଯଶ କରିଣ ଆସିବେ ଏଥକୁ
ଏ ଋଷିଙ୍କ ଯୋଗୁଁ ନିର୍ଭୟ ହୋଇବ ବେଳକୁ ।
ଅନେକ ବିଦ୍ୟା ଦେବ ଏ ବିଶ୍ୱାମିତ୍ର ମୁନି
ପୁତ୍ରଙ୍କୁ ଜିଣିବାକୁ ଡରିବେ ଦେବ ପୁଣି ।
ଶୁଣି ରାଣୀମାନେ ଶୋକ ସମ୍ଭାଳି ହେଲେ ତୁନି
ବୋଇଲେ ମୁନିଙ୍କ କଥା ମୁନି ସିନା ଜାଣି ।
ବଶିଷ୍ଠ ବୋଇଲେ ଆମ୍ଭଙ୍କୁ ଛାଡେ ନଥିଲେ
ପୁତ୍ରଙ୍କୁ ଦିଅ ବୋଲି ମୁଁ କହନ୍ତିକି ଭଲେ ।
ରାଣୀମାନଙ୍କୁ ବଶିଷ୍ଠ ବୋଧ କରି ଆସି
ନୃପତି ଆଗରେ କଥା କହନ୍ତି ବିଶେଷି ।
ଯେଣୁ ନିଃଶବଦ ହେଲେ ଅନ୍ତଃପୁର
ହସିଣ ଧନୁଶର ଧରିଲେ ରଘୁବୀର ।
ଧନୁଶର ଧରିଣ ପିତାଙ୍କ ମୁଖ ଚାହିଁ
ମାରିବି ଦୈତ୍ୟ ନିଶ୍ଚେ କହିଲେ ଶବଦାଇ ।
ଯାଗ ରଖି ନିଶ୍ଚେ ମୁଁ କରିବି ଦେବ କାର୍ଯ୍ୟ
ପିତାଙ୍କର ଚରଣେ ଓଳଗେ ରଘୁରାଜ ।
ଭିତରପୁରେ ମାତାମାନଙ୍କୁ ଓଳଗିଲେ
ସର୍ବ ମାତାଙ୍କ ଚରଣେ ନମସ୍କାର କଲେ ।
ବଶିଷ୍ଠଙ୍କୁ ନମସ୍କାର କରିଣ କଲେ ପୂଜା
ଜାବାଳି କାଶ୍ୟପ ବାମଦେବଙ୍କ ତନୁଜା ।
ମାନ୍ୟ ଧର୍ମ କରିଣ ଶ୍ରୀରାମ ଚଳିଗଲେ
ସୁମିତ୍ରା ମାତାଙ୍କ ପାଶେ ପ୍ରବେଶ ଯାଇଁ ହେଲେ
ଦେଖିଣ ସୁମିତ୍ରା ମାତା ବୋଇଲେ ଶ୍ରୀରାମଙ୍କୁ
ଏକା କିମ୍ପା ଯିବ ସଙ୍ଗରେ ନିଅ ଲକ୍ଷ୍ମଣଙ୍କୁ ।
ସାନ ଜନନୀଙ୍କଠାରୁ ଶୁଣିଲେ ଶ୍ରୀରାମ
ବୋଲେ ସଙ୍ଗେ ଯିବାକୁ ଲକ୍ଷ୍ମଣ କିରେ ମନ ।
ଶୁଣିଣ ଲକ୍ଷ୍ମଣ ଯେ ଚରଣେ ଓଳଗିଲେ
ତୁମ୍ଭ ସଙ୍ଗେ ମୁହିଁ ଯିବି ବୋଲିଣ ବୋଇଲେ ।
ତୁମ୍ଭେ ଗଲେ ମୁହିଁ କିମ୍ପା ରହିବି ବୋଇଲେ
ମାତାଙ୍କୁ ଯେ ନମସ୍କାର କରିଣ ବାହାରିଲେ ।
ଲକ୍ଷ୍ମଣ ସଙ୍ଗରେ ଘେନିଣ ରଘୁନାଥ
ମୋହର ଡାହାଣ ପଖା ହୋଇଛୁରେ ଭ୍ରାତ ।
ଅନ୍ୟ ଅନ୍ୟ ପିଣ୍ଡ ସିନା ନୁହଇଁ ଏକରୁଣ୍ଡ
କଉଶଲ୍ୟାର ଚରୁରୁ ଲକ୍ଷ୍ମଣର ପିଣ୍ଡ ।
ଶ୍ରୀରାମ ଲକ୍ଷ୍ମଣ ବେନି ଏକ ଭିନ୍ନ ନୁହେଁ
ରୂପ ଭିନ୍ନ ଜନନୀ ଦେଗଳ ହେବାରୁ ହେ ।
ଭରତ ଶତୃଘନ ଯେ ଅଟନ୍ତି ଏକ ଚରୁ
ଏକଇ ମୂର୍ତ୍ତି ଆମ୍ଭେ ଚତୁର୍ଦ୍ଧା ମୂରତିରୁ ।
ଯେ ଯାହା ପାଶରେ ରହିଲେ ସୁଖେ ଭଲେ
ଶ୍ରୀରାମଙ୍କ ପାଶରୁ ଲକ୍ଷ୍ମଣ ଚଳିଗଲେ ।
ବିଶ୍ୱାମିତ୍ର ମୁନିଙ୍କି ସେ ନମସ୍କାର କରି
ବୋଲୁଛନ୍ତି ଶ୍ରୀରାମ ଶୁଣ ହେ ତପଚାରୀ ।
ଆଗରେ ବିଜୟ ହେ ମୁନି ତୁମ୍ଭେ କର
କେବଣ ବନରେ କରିଛ ଯାଗଶାଳ ଘର ।
ଶୁଣିଣ ସନ୍ତୋଷ ହେଲେ ଗାଧିର ନନ୍ଦନ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ କଲ୍ୟାଣ କଲେ ପୁଣ ।
ଆଗେ ଚାଲେ ଗାଧିସୁତ ରାମ ଲକ୍ଷ୍ମଣ ପଛେ ।
ମଙ୍ଗଳାଷ୍ଟକ ପଢ଼ନ୍ତୁ ମୁନି ଯାଇଁ ପଛେ ।
ହୁଳହୁଳି ଶବଦ ନାରୀଗଣେ କରି
ଆଗରେ ଶଙ୍ଖ ଚିଲ ଉଡ଼େ ଆହାର ଧରି ।
ସଙ୍ଗରେ ପାତ୍ର ମନ୍ତ୍ରୀ ସାମନ୍ତ ଚଳିଯାନ୍ତି
ଭରଥ ଶତୃଘ୍ନ ପଛରେ ଗୋଡ଼ାଉ ଅଛନ୍ତି ।
ଦେଖିଣ ଶ୍ରୀରାମ ଯେ ନନ୍ଦିଗ୍ରାମରେ ରହି
ସାମନ୍ତ ପାତ୍ର ମନ୍ତ୍ରୀଙ୍କି ବୁଝାଇ କରି କହି ।
ବୋଇଲେ ମୋ ପିତାଙ୍କୁ ଚିନ୍ତା ଯେ ନ ଦେବ
ବିହ୍ବଳିତ ଚିନ୍ତାକଲେ ବୋଧ କରାଇବ ।
ଭ୍ରାଥକୁ ବୋଇଲେ ଶତୃଘନକୁ ନ ଛାଡ଼ିବୁ
ଅସୁର ଦୁଷ୍ଟ ଦେଖିଲେ ଓପ୍ରୋଧ ନ କରିବୁ ।
ଏତେ ବୋଲି ଶ୍ରୀରାମ ସଭିଙ୍କି ବୋଧକରି
ସମସ୍ତେ ନନ୍ଦି ଗ୍ରାମରୁ ଗଲେକ ଯେ ଫେରି ।
ଦଶରଥଙ୍କ ଆଗେ ମିଳିଲେ ଯାଇ କରି
ଶ୍ରୀରାମ ବୋଧ ବାକ୍ୟ ସବୁ ଯେ ପଚାରି ।
ଶ୍ରୀରାମ ଲକ୍ଷ୍ମଣ ବିଶ୍ୱାମିତ୍ର ପଛେ ଯାନ୍ତେ
ଦୁନ୍ଦୁଭି ଶବ୍ଦ କଲେ ଶୂନ୍ୟରେ ଶଚୀନାଥେ ।
ସକଳ ଦେବତାଏ ହୋଇଲେ ରୁଣ୍ଡପୁଣ
ବିଚାରନ୍ତି ଶ୍ରୀରାମ ଆଜ ବାହାରିଲେ ଜାଣ ।

ଏମନ୍ତ ବିଚାରି ଦେବେ କୁସୁମ ବୃଷ୍ଟି କଲେ
ଆମ୍ଭଙ୍କୁ ଚିନ୍ତା ଜଳରୁ ଉଦ୍ଧରିବେ ଭଲେ ।
ବୃହସ୍ପତି ବୋଇଲେ ଧରଣୀ ହୋଇବ ଉଶ୍ବାସ
କୋଡ଼ିଏ ବରଷ ଗଲେ ଅସୁରେ ହେବେ ନାଶ ।
ଏହି ସମୟରେ ଶ୍ୱେତ ପାରୁଆ ଉଡ଼ାଇ
ଆନନ୍ଦ ହୋଇଲେ ଦେବେ ଶ୍ରୀରାମ ମୁଖଚାହିଁ ।
ବିଶ୍ୱାମିତ୍ର ବୋଇଲେ ଶ୍ରୀରାମଚନ୍ଦ୍ର ଶୁଣ
ନିଶ୍ଚୟ ଯାଗ ମୋର ହେବାର କାରଣ ।
ଦେଖିଲି ଦେବତାଏ କୁସୁମ ବୃଷ୍ଟିକଲେ
ତୁମ୍ଭକୁ ଯଶ ଅଛି ଜଣାଗଲା ଭଲେ ।
ଏ ସମୟେ ଗୋପାଳୁଣୀ ଦଧି ଘେନିଗଲେ ।
ବନ୍ଧୁଘରକୁ ବନ୍ଧୁଏ ମାଛଭାର ଘେନିଗଲେ
ବାମ ପାଖୁଁ ଡାହାଣକୁ ଉଦଳିଆ ପକ୍ଷୀ ଉଡ଼ି
ଡାହାଣ ପାଖୁ ଶୃଗାଳ ବାମପାଖକୁ ଚଳି ।
ବେଶ୍ୟା ସ୍ତ୍ରୀମାନେ ବେଶ ହୋଇଛନ୍ତି ପୁଣ
ପଞ୍ଚା ପଞ୍ଚା ହୋଇକରି କରନ୍ତି ଗମନ ।
ଯୁବା ସ୍ତିରୀମାନେ ହେ ହୋଇଣ ଫୁଲଣା
ବିଚାରନ୍ତି ଶ୍ରୀରାମ ଗମନ କେଣେ କିନା ।
ବିଶ୍ୱାମିତ୍ରଙ୍କ ସଙ୍ଗେ ଶ୍ରୀରାମ ଲକ୍ଷ୍ମଣ ଚଳି
ଅଯୋଧ୍ୟା ନଗ୍ରସୀମାରୁ ଗଲେ ସେହି ବଳି ।
ସରଯୁ ନଦୀ କୂଳରେ ଯାଇଣ ପ୍ରବେଶ
ଶ୍ରୀ ଜଗନ୍ନାଥ ଶରଣ ମୁଁ ବଳରାମ ଦାସ ।
ଶୁଣ ଗୋ ହେମବନ୍ତୀ ଶ୍ରୀରାମ କାହାଣୀ
ଜଗମୋହନ ରାମାୟଣ ବିଚିତ୍ର କାହାଣୀ ।
ଈଶ୍ୱର କହିବାରୁ ଯେ ପାର୍ବତୀ ଶୁଣନ୍ତି
ବାଲମିକି ମୁନିଙ୍କି ପ୍ରସନ୍ନ ସରସ୍ୱତୀ ।
ଗତି ମୁକ୍ତି ନିମନ୍ତେ ମୁଁ ତାହା ବଖାଣଇଁ
ତୁଣ୍ଡରେ ରାମନାମ ମୁଁ ନିତ୍ୟ ସୁମରଇ ।
ଶ୍ରୀରାମଙ୍କ ଜନ୍ମ ଯେ ଚତୁର୍ଦ୍ଧା ମୁରତି ।
କମଳାଙ୍କ ଜନମ ଚତୁର୍ଦ୍ଧା ରୂପ ହେତି ।
ଏକକଥା ବର୍ଣ୍ଣିବାକୁ ମନରେ ମୋର ଶ୍ରଦ୍ଧା
ସହସ୍ର ପଦେ ସମ୍ପୂର୍ଣ୍ଣ ହୋଇଲା ଏ ଅଧ୍ୟା ।
ଏଥୁଅନ୍ତେ ଶ୍ରୀରାମଚନ୍ଦ୍ର କଥା ଭାଳି
ଶାରଳା ଭଗବତୀ ଯେ ମନରେ ସୁମରି ।
ଦୀନବନ୍ଧୁ ଚରଣେ ସମର୍ପି ମନ ପୁଣ
ବଳରାମ ଦାସ ଯେ ପଶିଲା ଶରଣ ।

ପାର୍ବତୀଙ୍କ ଆଗରେ ଯେ କହନ୍ତି ଶୂଳପତି
ସମସ୍ତ ଅବତାର ନାରାୟଣ କଥା ଏଥି ।
ବୋଲନ୍ତି ସଦାଶିବ ଶୁଣ ଗୋ ଶାକମ୍ଭରୀ
ବେଦବର ବୋଇଲେ ନାରଦଙ୍କୁ ଡାକିକରି ।
ତୁମ୍ଭେ ଏବେ ଯାଅ ବାବୁ ମଞ୍ଚପୁର ସାଧ
ଦଶରଥ ରାଣୀ ହଁସକୁ କହିକରି ବୋଧ ।
ବିଧାତାର ବଚନେ ନାରଦ ଚଳିଗଲେ
ଅଯୋଧ୍ୟା ନଗ୍ରରେ ଯାଇ ପ୍ରବେଶ ହୋଇଲେ ।
ନାରଦ ମିଳିଲେ ଯେ କୌଶଲ୍ୟା ରାଣୀପୁରେ
ଦେଖିଲେ ରାଣୀହଂସ ସକଳ ଶୋକଭରେ ।
ନାରଦଙ୍କୁ ଦେଖିଣ ସକଳ ରାଣୀହଂସ
ଉଠିଣ ଓଳଗିଲେ ସହଳ ଋଷି ପାଶ ।
ଗଙ୍ଗାଜଳ ଆଣିଣ ଚରଣ ଧୋଇଦେଲେ
ଚରଣ ଉଦକ ନେଇ ସମସ୍ତେ ସେବାକଲେ ।
ବସିବାକୁ ଆସନ ଦେଲେ ସିଂହାସନ
ଆଲଟ ବିଞ୍ଚଣିରେ ବିଞ୍ଚନ୍ତି ନାରୀଗଣ ।
କୌଶଲ୍ୟା ବୋଇଲେ ଅଇଲ ମୁନି କେଣେ
ବିଶ୍ୱାମିତ୍ର ମୁନି ନେଲେ ସଙ୍ଖାଳି ମୋର ଧନେ ।
ଆସ୍ କିସ ଅଛି ଯେ ଆସିଣ ଅଛ ନେବ
ଅନ୍ଧୁଣୀ କରିନେଲେ ଗାଧିସୁତ ଦେବ ।
ସରନ୍ତି ଦିନ ମୋର ବୃଦ୍ଧ କାଳଯାଏ
ଚିନ୍ତାରେ ତନୁ ମୋର ହୋଇଲାକ କ୍ଷୟେ ।
ନାରଦ ବୋଇଲେ ଏବେ ଆରବେନି ପୁତ୍ର
ନେବାପାଇଁ ଆମ୍ଭେ ଯେ ହୋଇଲୁ ଉପଗତ ।
ସ୍ୱର୍ଗରେ ସୁରଦେବ କରିବେ ଯାଗ ପୁଣ
ସେଥିର ସକାଶରେ ଭେଦିଲେ ମୋତେ ଜାଣ ।
କୈକୟୀ ବୋଇଲେ ହେ ଏକଥା ଭଲ ହେଲା
ଶ୍ରୀରାମଙ୍କୁ ମୁନି ନେଲେ ଭ୍ରଥ ସ୍ୱର୍ଗ ଯାଉ ଭଲା ।
ଦଶରଥ ରାଜନ ଯେ ସକଳ ରାଣୀ ଘେନି
ଯମରାଜା ପୁରକୁ ଯେ ବିଜେ କରନ୍ତୁ ପୁଣି
ଶୁଣିକରି ନାରଦ ଯେ ପରମ ତୋଷ ହେଲେ
ନନେବୁଁ ପୁତ୍ର ଆମ୍ଭେ ନଭାଳ ମନେଭଲେ ।
ଦୃଷ୍ଟାନ୍ତର କଥା କହି ନାରଦ ତିଆରନ୍ତି ।
ସକଳ ରାଣୀହଂସକୁ ବୁଝାଇ କହନ୍ତି ।
ତୁମ୍ଭେ ରାଣୀମାନେ ଯେ ରୋଦନ ନ କର
ପୁତ୍ରେ ବଳିଆରେ ତ ଅଟନ୍ତି ତୁମ୍ଭର ।

ସାକ୍ଷାତ ନାରାୟଣ ତ ଅଟନ୍ତି ଶ୍ରୀରାମ
ଅସୁର ମାରିବା ପାଇଁ ହୋଇଛନ୍ତି ଜନ୍ମ ।
ଯେଣେ ଗଲେ ଶ୍ରୀରାମର ଯଶ ବହୁତ ହୁଏ
ବିଧାତା କହିବାରୁ ଆମ୍ଭେ ଏଥି ଆୟେ ।
ବୋଇଲେ ଦଶରଥ ରାଣୀଙ୍କ ଘରେ ଯିବ
ବିଧାତା ଦେବତା ଯେ କହିଲେ ବୋଲିବ ।
ମିଥିଳାରେ ଶିବ ଧନୁ ଭାଙ୍ଗିବେ କୁମର
ଲକ୍ଷେ ରାଜା ମୁଖେକାଳି ଲଗାଇବେ ଚାପଧର ।
ଜନକ ରାଜା ଦୁହିତା ନାମ ସୀତା ଉମା
ବରଣମାଳା ଦେଇ ବରିବେ ବେନିପୁତ୍ର କିନା ।
ଏଥିରେ ବାର୍ତ୍ତା ତୁମ୍ଭେ ପାଇବ ଷଡ଼ମାସେ
ସକଳ ମାତା ଯିବ ଦଶରଥ ସଙ୍ଗେ ।
ତୁମ୍ଭେ ଗଲେ ଶ୍ରୀରାମ ଲକ୍ଷ୍ମଣ ବିଭା ଜାଣ
ଏଥକୁ କିମ୍ପା ମନେ ହେଉଛ ବିମନ ।
ଶ୍ରୀହରିଙ୍କ ଘରଣୀ ଜନ୍ମ କମଳା ସେଥି
ଅଯୋନି ସମ୍ଭୂତେ ଜନ୍ମ ବେନି ସେ ମୃଗାକ୍ଷୀ ।
ଆବର ବେନି ପୁଏ ଯେ ସଙ୍ଗେ ଯିବ ଜାଣ
ସେହି ବିଭା ହୋଇବେ ଯେବେନି କନ୍ୟାଙ୍କୁ ପୁଣ ।
ଫେରି ଆସିବ ଯେ ନିଜ ରାଜ୍ୟେ ଜାଣ
ବିଧିର ବିଧି ବିଧାନ ବଢ଼ାଇଣ ପୁଣ ।
ବାଟେ ପର୍ଶୁରାମ ଭେଟରେ ହେବ କଳି
ତାର ଧନୁ ଭାଙ୍ଗିଣ ତାକୁ ଦେବେ ଦଳି ।
ଏ କଥାମାନ ପୁଣ କେହି ନ ଜାଣନ୍ତି
ଦେବେ ମୋତେ କହିବାରୁ ମୁଁ କହିଲି ଏଥି ।
ଆଗହୁଁ ବିଧାତା ଅଛି ଯେ ଭିଆଇ
ଦୈତ୍ୟଙ୍କୁ ମାରିବା ପାଇଁ ଜନ୍ମ ଚାରିଭାଇ ।
ସକଳ ରାଣୀମାନଙ୍କୁ ନାରଦ ଯାଇ କହି
ଶୁଣିଣ ରାଣୀମାନେ ଆନନ୍ଦ ମନ ହୋଇ ।
ଏତେ କହି ରାଣୀହଂସ ପୁରୁ ଚଳିଗଲେ
ଦଶରଥ ରାଜାଙ୍କର ଆଗରେ ଯାଇ ମିଳେ ।
ନାରଦକୁ ଦେଖିଣ ଅଯୋଧ୍ୟା ରାଜା ଉଠି
ଚରଣ ତଳେ ଓଲଗି ହୋଇଲା ନରେନ୍ଦ୍ରଟି ।
ନାରଦ ପଚାରିଲେ ମନରେ କିମ୍ପା ଖେଦ
ଶୁଣିକରି ଦଶରଥ ଶୋକେ ଗଦ ଗଦ ।
ବୋଇଲେ ବିଶ୍ୱାମିତ୍ର ଯେ ଆସିଥିଲେ ଏଥି
ପିଣ୍ଡ ଥାଇ ପ୍ରାଣ ମୋର ଘେନି ଗଲେ ସେଟି ।

ବୃଦ୍ଧକାଳେ ଚାରିପୁତ୍ର ଯେ ପାଇଥିଲି ମୁହିଁ
ବେନି ପୁତ୍ର ଘେନି ଗଲେ ମୋତେ ଅନ୍ଧକରି ଦେଇ ।
ନାରଦ ବୋଇଲେ ଶ୍ରୀରାମ ଅଟନ୍ତି ନାରାୟଣ
ଲକ୍ଷ୍ମଣ ତୋର ଅନନ୍ତ ହେତୁ କରି ଜାଣ ।
ଅସୁର ମାରିବାକୁ ଜନ୍ମ ହେଲେ ଏଥି
ତୁମ୍ଭେ କିମ୍ପା ମନରେ ହେଉଅଛ ଦୁଃଖୀ ।
ଦେବତା ଦଇବ ଯେ ପେଷିଲେ ତୁମ୍ଭ ପାଶ
ବୋଇଲେ ଦଶରଥ ରାଜାଙ୍କୁ ବୋଧି ଆସ ।
ବୋଲନ୍ତି ଦଶରଥ ନକର ଯେ ଚିନ୍ତା
ଶୋକ ସନ୍ତାପ କଲେ ଦେବେ କରିବେ ଅହନ୍ତା ।
ଷଡ଼ ମାସ ବେନି ଦିନେ ଶୁଣିବୁ ଶ୍ରୀରାମର କଥା
ଭାଗିରଥି ସଙ୍ଗରେ ସେ ହୋଇବେ ଯେ ଲେଖା ।
ଏତେ କହି ନାରଦ ଅନ୍ତର୍ଦ୍ଧାନେ ଗଲେ
ଶୁଣିକରି ଦଶରଥ ସାନନ୍ଦ ମନ କଲେ ।
ଶୁଣିଲଟିକି ପାର୍ବତୀ ଗୁପତମୟ ରସ
ସେ ପାଦକୁ ଭରସା ଯେ ବଳରାମ ଦାସ ।
ଶୁଣ ତୁମ୍ଭେ ଶଶୀମୁଖୀ ଏଥୁ ଅନନ୍ତରେ
ରଘୁନାଥ ରହିଲେ ଯେ ସରଯୁ ନଦୀ ତୀରେ ।
ରଜନୀ ବଞ୍ଚିଲେ ସେଠାରେ ବିବିଧ କଥା କହି
ପ୍ରଭାତରୁ ସ୍ନାନ କଲେ ଋଷି ବେନି ଭାଇ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ସକଳ ବିଦ୍ୟା ଦେଲେ
ସେ ବିଦ୍ୟାମାନ ସବୁ ସେଠାରେ ଶିଖାଇଲେ ।
ସ୍ନାନ ସନ୍ଧ୍ୟା ତର୍ପଣ ସକଳ ବିଧି ଯେତେ
ସାରସ୍ୱତ ମନ୍ତ୍ର ଯେ ଶିଖାଏ ତପୋବନ୍ତେ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ବିଦ୍ୟା କରାଇ ପରାପତ
ସେଠାରୁ ଚଳିଗଲେ ତିନି ଜାଣ ଯେ ତୁରିତ ।
ଗଙ୍ଗାକୂଳେ ପ୍ରବେଶ ହୋଇଲେ ପୁଣ ଯାଇ
ଦେଖିଲେ ଋଷିମାନେ ତପ କରନ୍ତି ତହିଁ ।
ବିବିଧ ବୃକ୍ଷମାନେ ସେଠାରେ ପନ୍ତି ପନ୍ତି
ହରିଡା ବେଲ କଇଁଥ ବଇଜୟନ୍ତି ।
ନାଗେଶ୍ୱର ବରୁଣ ଧଳାଆଙ୍କୁ ଚମ୍ପାବନ
ପଳାଶ, ଅଶୋକ, କଞ୍ଚନ, ଗୁଳୁଚି ବାମ ପୁଣ
ଯେଉଁଠି ଲେମ୍ବୁ କଦଳୀ କମଳା ଟଭା
ବାହାଡ଼ା ଉଆଉ ପୁଣ ସପୁରୀ ବଡ଼ ଶୋଭା ।
ଜମ୍ବିଲ କରମଙ୍ଗା ଲେମ୍ବାଉ ଦାରାକ୍ଷ
ଶାଳ କ୍ଷୀର କୋଚିଲା ଅନେକ ବେଣୁ ବୃକ୍ଷ ।

ଖଜୁରୀ ଷାହାଡ଼ା ସୁନାରୀ ଗମ୍ଭାରିତ
ହେଙ୍ଗୁ ବୃକ୍ଷ କଦମ୍ବ ଅଗବଧୂ ଲୋଟ ଗଛ ।
ଅଁଳା ଗୁଜୁରାତି ତାଳ ଯେ ନଡିକାଳ
ରାଇ ମହୁଲ ଆମ୍ବ ଆଷାଢୁଆ ଫଳ ।
ଚନ୍ଦନ ଲବଙ୍ଗ ପିପ୍ପଳୀ ବଡ଼ ଦାରୁ
ସେ ବନେ ପୁଷ୍ପ ଫଳ ଡାଳମାନେ ଗରୁ ।
ବାଘ ଭାଲୁ ସେଥିରେ ଯେ ମଇଁଷି ଗୟଳ
ଶଶା ମଞ୍ଜାରି ମୂଷା ଚରନ୍ତି ପଲ ପଲ ।
ଗୁରାଣ୍ଡି ସଏନ୍ଦର ବରେହା ଅପାର
ମୃଗ ହରିଣ ସେଥିରେ ଅଛନ୍ତି ପଲ ପଲ ।
କାଠ କଟା ଚଢ଼େଇ କସ୍ତୁରୀ ନାମେ ମୃଗ
ଲତାମାନଙ୍କ ଭିତରେ କୁକ୍‌କୁଟ ପକ୍ଷୀ ରାବ ।
ଗୁଳିଚି ଲତା ତଳେ ମର୍କଟ ଦେଖାଉଛନ୍ତି ମୁଖ
ମରିଚ ଫଳ ଖାଇଣ ମନରେ ବିମୁଖ ।
ଷିଆଳି ଲତା ତଳେ ସେହୁ ଖେଳଖେଳି
ଚାରିବର୍ଣ୍ଣ ମର୍କଟ କେବଣଠାରେ ମିଳି ।
ରାମଙ୍କୁ ଦେଖିଣ କପି ହୁଅନ୍ତି କୁହାକୁହି
ଏହି ଶ୍ରୀରାମ ଆଜ୍ଞାରେ ପର୍ବତ ନେବା ବହି ।
ଭାଲୁ ପଲ ପଲ ବିଚାରି କରନ୍ତି ସେଥି ପୁଣି
ଏହି ଶ୍ରୀରାମ ଚନ୍ଦ୍ର ସମୁଦ୍ରେ ବନ୍ଧ ବାନ୍ଧିବେ ଜାଣି
ଲଙ୍କାର ରାବଣକୁ କରିବା ପାଇଁ ନାଶ
ଆଉ କୋଡ଼ିଏ ବର୍ଷରେ ଦୈତ୍ୟ ହେବ ଶେଷ
ମର୍କଟଙ୍କ କଥା ବେନି ଭାଇ ଋଷି ଶୁଣି
ଦେବ ନାଗରୀ କାକ ଚରିତ ପଢ଼ା ଜାଣି ।
ବିଶ୍ୱାମିତ୍ର ବୋଲେ ଶୁଣ ଏହାଙ୍କର ବାଣୀ
ଆଗତ କଥାମାନ ଜାଣନ୍ତି ଭାଳିଲେ ପୁଣି ।
ଜାଇଫଳ ଗଛରେ ବରେହା ଉଠିଥିଲା
ଶ୍ରୀରାମ ଲକ୍ଷ୍ମଣଙ୍କୁ ଦେଖିଣ ପଳାଇଲେ ।
ମହୁଲ ଗଛତଳେ ଖେଳନ୍ତି ଶ୍ୱେତ ଯେ ନେଉଳ
ବର କୁକୁଡ଼ା ମଥାରେ ଦିଶେ ରଙ୍ଗଫୁଲ ।
ଭାସନ୍ତି ସାରି ଶୁଆ ରାମ ନାମ ବାଣୀ
ଲାଞ୍ଜ ମେଲି ନାଚନ୍ତି ମୟୂର ମାନେ ପୁଣି ।
ଫଳିଣ ତରୁମାନେ ଲୋଟନ୍ତି ତଳେ ପୁଣି
ମୁନିମାନଙ୍କ ମଢ଼ିଆ ପଟାନ୍ତର କି ଜାଣି ।
ଦେଖିଣ ଶ୍ରୀରାମ ଯେ ସନ୍ତୋଷ କଲେ ମନ
ଋଷିଙ୍କୁ ପଚାରିଲେ ଏ ବନର କିସ ନାମ ।

ବୋଲନ୍ତି ବ୍ରହ୍ମମୁନି ଶୁଣ ଦାଶରଥି
କାମଦହନ ବୋଲିଣ ଏହାର ନାମ ଏଥି ।
କାମଦେବର ଆଶ୍ରମ ଏହାକୁ ପୁଣବୋଲି
ସବୁକାଳେ ତରୁମାନେ ଏଥିରେ ଲହୁଲି ।
ଶ୍ରୀରାମ ଲକ୍ଷ୍ମଣ ସେ ବିଶ୍ୱାମିତ୍ର ତିନି
ସେହିଦିନ ସେଠାରେ ବିଶ୍ରାମ କଲେ ପୁଣି ।
ତପିଗଣ ଆସିଣ ମେଳ ସେଥିରେ ହେଲେ
ସେଦିନ ସେଠାରେ ରହି ରଜନୀ ବଞ୍ଚିଲେ ।
ପ୍ରଭାତ ସମୟରେ ମିଳିଲେ ଗଙ୍ଗା କୂଳେ
ନିତ୍ୟକର୍ମ ସାରନ୍ତେ ଆଦିତ୍ୟ ଉଦେ ହେଲେ ।
କୈବର୍ତ୍ତ ନାବ ଯେ ଯୋଗ ବେଳେ ଆଣି
ସେଥିରେ ବସିଲେ ଶ୍ରୀରାମ ଲକ୍ଷ୍ମଣ ଋଷି ତିନି ।
ହରଷେ କୈବର୍ତ୍ତ ନାବ କାଢ଼ିଣ ବାହି
ଉଜାଣିର ସ୍ରୋତରେ ନେଲା ଟେକି ସେହି ।
କାତ ନ ପାଇବାରୁ ଧରିଲେ କେରୁଆଳ
ନାବ ମଙ୍ଗରେ ବସିଣ ସେ ବାହିଲା ସତ୍ୱର ।
ଗଙ୍ଗା ନଦୀ ମଧ୍ୟରେ ନାବ ଯେ ହେଲା ଯାଇ
ଶବଦେକ ଶୁଭିଲା ଗଙ୍ଗାର ମଧ୍ୟେ ତହିଁ ।
ଶ୍ରୀରାମ ପଚାରନ୍ତି ଶୁଣ ମହାମୁନି
ଗଙ୍ଗା ନଦୀ ମଧ୍ୟରେ ଶବଦ ଶୁଭେ ପୁଣି ।
ବିଶ୍ୱାମିତ୍ର ମୁନି କହେ ଶୁଣ ଜଗଜିତା
ପୂର୍ବରେ ବିଧାତା ଯେ ଏଠାରେ ହେଲା ଚେତା
ରତ୍ନଗିରି ପରେ ବିଜେ ଜଗତର ମାତ
ଯୋଗଲୟ କରନ୍ତେ ଭେଦିଲା ଶରଦୈତ୍ୟ ।
ତେଣୁ ସେ ସରୋବର ହୋଇଲା ଉତପତି
ସେ ସରୋବର ଥୋଇଲେ ମେରୁର ପଛକତି ।
ତାରନାମ ଦେଲେ ଧାତା, ମେରୁ ସରୋବର
ସେଥିରୁ ବହିଣ ଯେ ଆସୁଅଛି ଧାର ।
ସରୋବରୁ ଜାତ ହେବାରୁ ସରଯୂତାର ନାମ
ଗଙ୍ଗା ସାଗର ସଙ୍ଗମେ ମିଶି ହେଲା ସମ ।
ଥୋକାଏ ଦୂର ସେହୁ ଏକ ଅଙ୍ଗରେ ଯାଇ
ପୁଣି ବାରଣରେ ଅଲଗା ଯାଏ ବହି ।
ଅଯୋଧ୍ୟା ଚମ୍ପାବତୀ ଦେଶ ଘେରି ଆସି
ଗଙ୍ଗା ସରଯୁ ସାଗର ଏକା ଜାଣ ରଘୁ ଶିଷି ।
ତିନି ପୁରୁଷ ମେଳରେ କଥା ହୁଏ ଜାଣି
ସ୍ୱାମୀର ସଙ୍ଗତେ ସେ ଶବଦ ଶୁଭେ ପୁଣି ।

ଏସନକ ବାଣୀ ମୁନିଙ୍କଠାରୁ ଶୁଣି
ବୋଇଲେ ଏ କୀର୍ତ୍ତି ପୂର୍ବେ କେହୁ କଲା ପୁଣି ।
ମୁନି ବୋଲେ ତୁମ୍ଭ ଉପର ଅଂଶେ ଭଗିରଥି
ବିଷ୍ଣୁ ସେବା କରି ଗଙ୍ଗା ମଥାରେ ବୁହାଇଲେଟି ।
ଶୁଣିଣ ରାମ ଲକ୍ଷ୍ମଣ ମନେ ତୋଷ ହେଲେ
ଗଙ୍ଗା ନଦୀ ଜଳ ଆଣି ମସ୍ତକେ ସିଞ୍ଚିଲେ ।
ଏଥୁ ଅନନ୍ତରେ ନାବ ଚଳିଗଲା ପୁଣି
ଉତ୍ତର କୂଳେ ନାବ ମିଳେ ତତ୍‌କ୍ଷଣି ।
ନାବରୁ ଓହ୍ଲାଇ ଶ୍ରୀରାମ ଲକ୍ଷ୍ମଣ ଋଷି ତିନି
ନାଉରିଆ ଚଳିଗଲା ଆର କୂଳେ ପୁଣି ।
ଦେଖିଲା ଗଙ୍ଗା କୂଳରେ ନିବିଡ଼ ଘୋର ବନି
ଅତି ଭୟଙ୍କର ଯେ ଗହନ କାନନ ।
ଶ୍ରୀରାମ ପଚାରିଲେ ଶୁଣ ହେ ବ୍ରହ୍ମମୁନି
ଏ ବନର ନାମ କିସ କହ ତପୋଧନି ।
ବିଶ୍ୱାମିତ୍ର ବୋଇଲେ ପୂର୍ବେ ରୁଚିକ ନାମେ ଦୈତ୍ୟ
ଏ ବନ ରୂପିତା ଘର କର ଯତନେ ତ ।
ଅସୁର ଏ ସ୍ଥାନରେ ତପକରି ଜାଣ
ହୁତାଶନ ଠାରୁ ଦୈତ୍ୟ ବର ପାଇଲାକ ପୁଣ ।
ବରପାଇ ମନାଇଲା ଅଗ୍ନି ଦେବତାଙ୍କୁ
ତୁମ୍ଭଙ୍କୁ ବଳିତେଜ ଦିଅ ହେ ଆମ୍ଭଙ୍କୁ ।
ଯେ ମୋତେ ବିବାଦୀ ହେବ ତାକୁ ମୁଁ ଭସ୍ମ କରି
ତେବେ ମୋର ନାମ ଯେ ବିଖ୍ୟାତ ତିନିପୁରୀ ।
ବୈଶ୍ୱାନର ବୋଇଲେ ତୁ ସଭିଙ୍କୁ ଜିଣିବୁ
ବରୁଣ ସଙ୍ଗେ କଳି କଲେ ନିଶ୍ଚୟ ମରିବୁ ।
ଏତେ କହି ବୈଶ୍ୱାନର ଅନ୍ତର୍ଦ୍ଧାନ ହେଲେ
ଅସୁର ବରପାଇ ତିନିପୁର ଜିଣିଲେ ।
ତାହାର ପାଦଭରେ କମ୍ପିଲା ତିନିପୁର
ଦେବତାଏ କହିଲେ ଯାଇ ଇନ୍ଦ୍ରର ଛାମୁର ।
ଶୁଣିଣ ସୁର ରାଜା ବୃହସ୍ପତିଙ୍କି ପୁଛି
ଏ ଦୈତ୍ୟ ମୃତ୍ୟୁ ହେବ କାହାର ହସ୍ତରେଟି ।
ବୃହସ୍ପତି ବୋଇଲେ ବରୁଣ ହସ୍ତେ ମରି
ଜଳରେ ବୁଡ଼ିଲେ ଦୈତ୍ୟ ଭସ୍ମ ହୋଇକରି ।
ଶୁଣିଣ ସୁର ରାଜା ବରୁଣଙ୍କୁ ସୁମରି
ବରୁଣ ମିଳନ୍ତେ କହିଲେ ହେତୁ କରି ।
ଜାଣି କରି ବରୁଣ କାଳବେଳ ଜପି
ଗଙ୍ଗା ବାରେଣିକି ସେ ଅସୁର ଗଲା ବେଗି ।

ସରଯୂ ଗଙ୍ଗାରେ ସେହୁ କରନ୍ତି ଯେ ସ୍ନାନ
ଭସ୍ମ ହେଲା ଦୈତ୍ୟ ଜଳ ଲାଗନ୍ତେଣ ପୁଣ ।
ପୃଥିବୀ ସ୍ଥିର ହେଲା ଦୈତ୍ୟ ଯେଣୁ ମରି
ତେଣୁ ବରୁଣଙ୍କୁ ଦେବେ ଅଭିଷେକ କରି ।
ଯେଣୁ ଯେ ଅସୁର ନିର୍ମଳ ଜଳେ ମଲା
ତେଣୁ ଏ ବନ ନାମ ନିର୍ମଳ ହୋଇଲା ।
ଆବର କଥାଏ ତୁମ୍ଭେ ଶୁଣ ହେ ଶ୍ରୀରାମ
କହୁଅଛି ଶ୍ରରାମ ଲକ୍ଷ୍ମଣ ହେ ଶୁଣ ।
କୁମ୍ଭ ଋଷି ତନୁଜ ଅଟନ୍ତି ଅଗସ୍ତି
ସେ ମୁନି ତପ ଯେ କଲେକ ରହି ଏଥି ।
ଊର୍ଦ୍ଧ୍ୱ ମୁଖରେ ସେ ଯେ ବହୁ ବହୁତ ତପ କଲେ
ବ୍ରହ୍ମ ଋଷି ସଙ୍ଗରେ ଗଣିତା ଯେ ହେଲେ ।
ଅନେକ କଷ୍ଟରେ ତପ କଲେ ପୁଣ ଯହୁଁ
ପିତୃଲୋକ ଆସିଣ ପ୍ରବୋଧ ହେଲେ ତହୁଁ
ପୁତ୍ର ନଥିଲେ ପୁଣ ତପରେ କିସ କାର୍ଯ୍ୟ
ସକଳ ଧନର ମୂଳ ଅଟେ ଯେ ତନୁଜ ।
ପୁତ୍ର ନିମନ୍ତେ ଚିନ୍ତା କର ହେ ବ୍ରହ୍ମ ଋଷି ।
ପଶ୍ଚାତେ ଜପତପ କରିବ ତୁମ୍ଭେ ବସି ।
ପିତୃଗଣଙ୍କ ଠାରୁ ସେ ଶୁଣିଲେ ସିଦ୍ଧାନ୍ତ
ମନେ ମନେ ଭାଳିଲେ ଅଗସ୍ତି ତପୋବନ୍ତ ।
ପୁତ୍ର ହେବା କାରଣ ଆନରେ କାର୍ଯ୍ୟ ନାହିଁ
କୁଳ ରକ୍ଷା ନିମନ୍ତେ ପିତୃ ଗଲେ କହି
ପିତୃ ଲୋକଙ୍କର କଥା ପାଳିବା ନିୟତ
ଅବଶ୍ୟ ବାରେ ଜାତ କରିବା ନନ୍ଦନତ ।
ଏତେ ବିଚାରି ମୁନି ଗନ୍ଧ ନଦୀ ତୀରେ
ପ୍ରବେଶ ହୋଇଲେ ଯାଇ ଅଗସ୍ତି ମୁନିବରେ ।
ଦେଖିଣ ଗନ୍ଧର୍ବ ରାଜନ କଲେ ପୂଜା ବିଧି
ବୋଇଲେ ସଫଳ ହେଲା ଦେଖିଲୁ ତପୋନିଧି
ବେଦବର ସମାନେ ମୁନି ଆଜି ମୁଁ ଦେଖିଲି
ଅନେକ ଜନ୍ମର ପାପ ଲେଛି ପକାଇଲି ।
କେବଳ କାରଣରେ ଅଇଲ ମହାଋଷି
ଗନ୍ଧର୍ବ ରାଜନ ବଚନେ ଅଗସ୍ତି ମୁନି ଭାଷି ।
ବୋଇଲେ ତୋର ପୁରେ ଅଛି ଯେ ଦୁହିତା
ନବମୁଦ୍ରା ବୋଲିଣ ଯେବଣ ତୋର ସୁତା ।
ଆମ୍ଭଙ୍କୁ ସେ କନ୍ୟା ବିଭା କରିବ ରୂପବନ୍ତୀ
ଶୁଣିକରି ବୋଇଲେ ଗନ୍ଧର୍ବା ନୃପତି ।

ଏ ତୁମ୍ଭର ଆଜ୍ଞାକୁ ମୁଁ ନ କରଇ ଆନ
ନବମୁଦ୍ରା ଦୁହିତା ମୋର ତୁମ୍ଭରେ ପ୍ରଦାନ ।
ଏହା କହି ରାଜନ ମଣ୍ଡିଲେ ନଗ୍ରପୁର
ସେଦିନ ମଙ୍ଗଳକୃତ୍ୟ କଲେକ ମୁନିବର ।
ଆରଦିନ ବେଦୀର ସମ୍ଭାର ବେଗ କରି
ବେଶକରି ଦୁହିତାକୁ ଆଣିଲେ ଦଣ୍ଡଧାରୀ ।
ସମ୍ଭର୍ବେ ବିଧି ବିଧାନ ବିଭା ଯେ କରାଇଲେ
ଅନେକ ଧନରତ୍ନ ଯଉତୁକ ଦେଲେ ।
ସେ କନ୍ୟାକୁ ଘେନିଣ ଅଇଲେ ଅଗସ୍ତି ।
ନିଜ ଆଶ୍ରମରେ ଯାଇ ପ୍ରବେଶ ହେଲେଟି ।
ଅନେକ ଭୋଗ ତାକୁ ଘେନିଣ ବିଳସିଲେ
କାଳେଣ ପୁତ୍ର ତାରଠାରୁ ଉପୁଜିଲେ ।
ଧନୁ ବାହନ ବୋଲିଣ ନାମ ଦେଲେ ତାର
ସୁନ୍ଦର ସୁକୁମାର ହେଲେ ସେ ଆମ୍ଭର ।
ଏ ରୂପେ ଶ୍ରୀରାମ ହେ ଅଗସ୍ତି ମୁନି କଥା
ଭୋ ମୁନି ଧାର୍ମିକ ଯେ ଅଟଇ ମହାଜ୍ଞାତା ।
ପୂର୍ବେ ଅସୁର ଥିଲେ ଆତାପି ବାତାପି
ସେ ବେନି ଭ୍ରାତ ଯେ ଏ ବନରେ ରହିଥାନ୍ତି ।
ଏ ବନ ଭାବରେ ମାୟା ପୁରେ ସେ ରଚି
ବାଟେ ଗଲା ଲୋକଙ୍କୁ ଯତନେ ଡାକି ରଖି ।
ଆତାପିକି ମେଣ୍ଢା କରିଣ ବାନ୍ଧିଥାଇ ଯେବା ତାପି
ପଥୁକୀ ରଖିକରି ସେ ମେଣ୍ଢା ମାରଇଟି ।
ବ୍ରାହ୍ମଣ ରୂପ ଧରିଣ ପାକ କରେ ରନ୍ଧା
ଯତନେ ରାନ୍ଧିକରି ମନରେ ହୁଏ ଥଣ୍ଡା ।
ଶଉଚ ସ୍ନାନ ସାରି ଆସନ୍ତି ପୃଥିବୀ ଜନ
ବାତାପି ମାୟା ରୂପରେ ପରଶେ ନେଇ ଅନ୍ନ ।
ମେଣ୍ଢା ମାଏଁଷ ତିଅଣ ବେଗେ ସେ ଆଣିଦିଏ
ବିଦେଶୀ ଲୋକମାନେ ଭୁଞ୍ଜିଣ ତୋଷ ହୁଏ ।
ଆଚମନ ସାରି ସେ ଭୁଞ୍ଜନ୍ତି ତାମ୍ବୁଳ
ସେ ମାଉଁସ ଯେହୁ ଖାଏ ପଶେ ତା' ହୃଦୟର ।
ବାତାପି ଡାକ ଦିଏ ଆତାପି ବେଗେ ଆସ
ଭୁଞ୍ଜିବୁଟିକି ବାବୁରେ ସୁପକ୍ୱ ମାଏଁସ ।
ଡାକ ଶୁଣି ଆତାପି ଜୀଅଇଁ ଗର୍ଭେ ଥାଇ
ନିଜ ରୂପକୁ ଧରିଣ ଗର୍ଭୁ ବାହାର ହୋଇ ।
ପେଟ ଫାଟି ଯାଆନ୍ତେ ସେ ପଥୁକୀ ମରନ୍ତି
ହରଷରେ ବେନି ଭାଇ ତାହାକୁ ଖାଆନ୍ତି ।

ଏହି ରୂପେ ନିତ୍ୟେ ଖାଆନ୍ତି ପଥୁକୀ ଜନମାରି
ହରଣରେ ବେନିଭାଇ ଖାଇଣ ଦିନ ସାରି ।
ଜାଣି ଶୁଣି ପଥୁକୀ ଯେ ସେ ପଥେ ନଗଲେ
ନ ଜାଣିବା ଲୋକ ଗଲେ ସେ ବାଟରେ ମଲେ ।
ସେ ପଥ ପଡିଲା ଯେ ନ ଗଲେ ସେଥି କହି
ବେଦବର ଆଗରେ ଯେ ଦେବେ ଯାଇ କହି ।
ଶୁଣିଣ ପିତାମହ ଅଗସ୍ତି ବେଗେ ପେଷି
ଯାଅ ମୁନି ତୁମ୍ଭେ ଦୈତ୍ୟଙ୍କୁ ଆସ ନାଶି ।
ବିଧାତାର ବଚନେ ଚଳିଲେ କୁମ୍ଭସୁତ
କମଣ୍ଡଳ କରେ ଧରି ବିଜୟେ ତପୋବନ୍ତ ।
ସେହି ପଥରେ ଋଷି କଲେ ଯେ ଗମନ
ଆତାପି ବାତାପି ଦୁହେଁ ଦେଖିଲେ ତାଙ୍କୁ ପୁଣ
ଦେଖିଣ ରୁହାଇଲା ବାତାପି ନାମେ ଦୈତ୍ୟ
ବୋଇଲା ମୁନି ମୁଁ ଯେ କରିଣ ଅଛି ସତ୍ୟ ।
ଭୋ ମୁନି ଆଜ ମୋର ପିତୃ ଦିବସ ଶ୍ରାଦ୍ଧ
ତୁମ୍ଭଙ୍କୁ ଦେଖିଲି ମୋର ସୁଫଳ ବଡ଼ କାର୍ଯ୍ୟ
କ୍ଷଣକେ ବିଶ୍ରାମ କରିଣ ଏଥରୁ ଯାଆସି
ଭଲ ମେଣ୍ଢା ଗୋଟିଏ ଯେ ମୁହିଁ ଅଛି ପୋଷି
ସେ ମେଣ୍ଢାକୁ ମାରିବି ମୁଁ ପିତୃକାର୍ଯ୍ୟ ଅର୍ଥେ
ଗୟା ଶ୍ରାଦ୍ଧ ଫଳ ଯେ ପ୍ରାପତ ହେବ ମୋତେ ।
ହସିଣ ମୁନିବର ବୋଇଲେକ ବଚନ
କର ବେଗେ ରନ୍ଧନ ଯେ କରିବା ଭୋଜନ ।
ଶୁଣିଣ ବାତାପି ବେଗେ ମେଣ୍ଢାକୁ ମାରିଲା
ମାଏଁସ କାଟିକରି ଯତନେ ତାକୁ କଲା ।
ଆପଣ ପାକ ସେ ଯେ ସମ୍ପଦେ ଷଡରସ
ଉତ୍ତମ ପ୍ରକାରେ ସେ ଅନ୍ନ ରାନ୍ଧଣା ବିଶେଷ
ଦେଖିଣ ସ୍ନାନକରି ଅଇଲେ ମୁନିବର
ପତ୍ର ପାଣି ଘେନିଣ ବସିଲେ ଭୋଜନର ।
ବାତାପି ବ୍ରାହ୍ମଣ ରୂପେ ପରଷଇ ଅନ୍ନ
ମାଏଁସ ତିଅଣ ମୁନି କରନ୍ତି ଭୋଜନ ।
ମୁନି ପଚାରିଲେ ଅଛଟିକି ହେ ଆଉ
ଆମ୍ଭକୁ ସନ୍ତୋଷ କର ଭାଗ୍ୟ ଯେ ତୋର ହେଉ ।
ହସିଣ ବାତାପି ଯେ ପରଶେ ସବୁ ଆଣି
ଭୁଞ୍ଜିଣ ସନ୍ତୋଷ ଯେ ହୋଇଲେ ତପୋଧନି ।
ଆଚମନ ସାରିଣ ବସିଲେ ମହାଋଷି
କମଣ୍ଡଳରୁ ପାଣି ପିଇଲେ ଜାଣି ସେଟି ।

ଭସ୍ମ ମନ୍ତ୍ର ପଢ଼ି ମୁନି ପେଟ ଆଉଁସିଲେ
ଯେତେକ ଭୁଞ୍ଜିଥିଲେ ସମସ୍ତେ ଭସ୍ମ ହେଲେ ।
ଏଥୁ ଅନନ୍ତରେ ଯେ ବାତାପି ଦୈତ୍ୟ ପୁଣ
ଋଷିଙ୍କ ଆଗରେ ଯାଇ ବସିଲେ ତୁରିତେଣ ।
ଉଚ୍ଚେ ଡାକ ଦେଲା ଯେ ଆତାପି ବେଗେ ଆସ
ଆସ ଭାଇ ଭୋଜନ କରିବା ନ କର ଅଳସ ।
ଅଗସ୍ତି ବୋଇଲେ ଆଉ କାହୁଁ ସେ ଆସିବ
ଗର୍ଭରେ ପଡ଼ିଣ ସେ ଜୀର୍ଣ୍ଣ ମନେ ଭାବ ।
ସେ କାହୁଁ ଆସିବଟି ଜୀର୍ଣ୍ଣ ହୋଇଗଲା
ବିଶ୍ୱାସଘାତକ ହେଲ ଦୈତ୍ୟରେ ତୁମ୍ଭେ ପରା ।
କ୍ରୋଧରେ ଅଗସ୍ତି ଋଷି ସେଠାରୁ ଉଠିଗଲେ
କମଣ୍ଡଳରୁ ଜଳ ସିଞ୍ଚି ଅସୁର ଭସ୍ମ କଲେ ।
ଭସ୍ମ ହୋଇଗଲେ ଯେ ସେ ବେନି ଅସୁର
ଦେଖିଣ ପୁଷ୍ପ ବୃଷ୍ଟି କଲେ ସୁନା ଶିର ।
ଦୈତ୍ୟ ବିନାଶି ଋଷି ଚଳିଗଲେ ରଥ
ଧନ୍ୟ ଅଗସ୍ତି ବୋଲି ବୋଇଲେ ଦଇବତ ।
ଶୁଣ ତୁମ୍ଭେ ଶ୍ରୀରାମ ଅଗସ୍ତିଙ୍କ ମହିମା
ବଡ଼ ପ୍ରତାପୀ ଅଟେ ସେ ଋଷିଙ୍କ ମହିମା ।
ଶ୍ରୀରାମ ପଚାରିଲେ ଶୁଣ ବ୍ରହ୍ମମୁନି
ଆଉ କିସ କଲେ ସେ ଅଗସ୍ତି ମୁନି ପୁଣି ।
ବିଶ୍ୱାମିତ୍ର ବୋଇଲେ ଶୁଣହେ ଶ୍ରୀରାମ
ଅଗସ୍ତି ଋଷି ଅଟନ୍ତି ମୁନିରେ ଉତ୍ତମ ।
ସାତ ସମୁଦ୍ରକୁ ଋଷି ଚଳୁ କରିଦେଇ
ମନ୍ତ୍ରର ବଳରେ ସିନ୍ଧୁ ଗର୍ଭରେ ଜୀର୍ଣ୍ଣ ହୋଇ ।
ଶୁଖିଗଲା ସାତ ସମୁଦ୍ର ପାଣି ପୁଣ
ବରୁଣ ରାଜା ବିକଳ ହୋଇଲା ଦେଖିଣ ।
ବିଧାତାର ଆଗରେ ବରୁଣ କହେ ଯାଇ
ଜଳ ଶୁଖିଲାରୁ ମୀନ ଗଲେ ଲୀନ ହୋଇ ।
କି ରୂପେ ସ୍ଥଳରେ ମୁଁ ହୋଇବି ରାଜନ
ସପତ ଦ୍ୱୀପ ପୃଥ୍ୱୀ ଏକର ହେଲା ଜାଣ ।
ଶୁଣିକରି ବିଧାତା ବରୁଣେ ବୋଧ କଲେ
ତୋର ଦୋଷୁ ସାଗର ଶୁଖିଲା ଏବେ ବଳେ ।
ଅଗସ୍ତିଙ୍କର ପିତା ଅଟନ୍ତି କୁମ୍ଭ ଋଷି
ତୋହର ତରଙ୍ଗ ମନ୍ତ୍ରୀ ତାହାକୁ ବଳେ ନାଶି ।
ସେଥିର ଫଳ ଏବେ ପାଇଲୁନା ରାଏ
ସାତଯୁଗ ପରିଯନ୍ତେ ସାଗର ସ୍ଥିତ ନୁହେଁ ।

ସାତଯୁଗ ଅନ୍ତେ ଶୂନ୍ୟରୁ ଗଙ୍ଗା ଆସି
ତେବେ ସେ ସପତ ସାଗର ହେବ ସ୍ଥିତି ।
ଶୁଣିକରି ବରୁଣ ଚିନ୍ତାକରି ରହି
ଏମନ୍ତେ ସାତଯୁଗ ସେଥିରେ ଗଲା ବହି ।
ସାତଦ୍ୱୀପ ଯାକ ଯହୁଁ ହେଲେ ଏକମେଳ
ଛପନକୋଟି ଜୀବ ହୋଇଲେ ଉତ୍‌କୁଳ ।
ଦେବେ ଅସୁରେ ଯେ ନରେ ବାନରେ ମିଳି
ହିଂସାକରି ସମସ୍ତେ ଲଗାଇବେ କଳି ।
କେହି କାହାକୁ ନ ମାନେ ବଡ଼ ମାନ ପଣ ।
ଦେଖିଣ ବିଧାତା ଯେ ବିଚାର କଲେ ଜାଣ ।
ରବିଙ୍କି ବୋଇଲେ ତୁରେ ପୁତ୍ରେକ ଜାତକର
ତପନ କୁଳରେ ମର୍ତ୍ତ୍ୟପୁରରେ ନୃପବର ।
ତେବେ ସେ ସପ୍ତ ସାଗର ହୋଇବାକୁ ପୁଣି
ନୋହିଲେ ନାଶ ଗଲାଟି ମର୍ତ୍ତ୍ୟପୁର ଧରଣୀ ।
ଶୁଣି ମାୟା ଦେବତା ମାୟା ନାରୀକି ରାଇ
ତାର ସଙ୍ଗେ ରମଣ କଲେ ଛାୟା ସାଇଁ ।
ରବି ବୀର୍ଯ୍ୟ ଉଚ୍ଛୁଳନ୍ତେ ମାୟାନାରୀ ଗର୍ଭେସ୍ଥିତ
ଦଶଦିନେ ସେ ନାରୀ ଗର୍ଭରୁ ପୁତ୍ର ଜାତ ।
ଏକୋଇଶ ଦିନରେ ଦେହ ଶୁଦ୍ଧ କଲେ
ନାମଗୋଟି ତାହାର ସମର ବୋଲିଦେଲେ ।
ଦଶ ମାସେ କୁମର ନବଯୁବା ପୁଣ
ମୀନରୁ ବେଦବର ଜାତକଲେ ପୁଣ ।
ଅଯୋନି ସମ୍ଭୂତ ନାରୀ ଜନ୍ମ ହୋଇଣ ଯୁବା
ସଗର ରାଜାଙ୍କୁ ଦେଇ ତାଙ୍କୁ କଲେ ବିଭା ।
ବେନିଜଣ ଏକମୁଖ ହୋଇବାରୁ ଜାଣ
ରତି ପ୍ରୀତି କରନ୍ତି ବନସ୍ତରେ ପୁଣ ।
ସ୍ଥାନ ନ ପାଇ ସାଗର ଊର୍ଦ୍ଧ୍ୱମୁଖ ସାଧି
କଳିଯୁଗ ଗୋଟି ଯେ ବହିଲା ତପେ ବେଗି ।
ସତ୍ୟଯୁଗ ଅନ୍ତରେ ଦେବବର ଗଲେ
କିମ୍ପାଇଁ ତପକରୁଁ ବୋଲିଣ ପଚାରିଲେ ।
ସଗର ବୋଇଲେ ପିତା ନ ପାଇଲି ସ୍ଥାନ
ତେଣୁ ଯେ ବ୍ୟାକୁଳ ହୋଇଲା ମୋର ମନ ।
ଦଇବ ବୋଲେ ଏବେ ଆମ୍ଭ ବୋଲେ ଆସ
ଅଯୋଧ୍ୟା ଦେଶରେ ତୁ ହୋଇବୁ ନରେଶ
ଏତେକହି ସଙ୍ଗରେ ଘେନିଣ ଚଳିଗଲେ
ଅଯୋଧ୍ୟା ଦେଶରେ ନେଇ ରାଜନ ତାଙ୍କୁ କଲେ ।

ଏମନ୍ତେ ତପନ କୁଳ ସୂର୍ଯ୍ୟ ବଂଶରେ ଜାତ
ଆଦିତ୍ୟର ନନ୍ଦନ ତୁମ୍ଭ ଉପର ବଂଶତ ।
ଶ୍ରୀରାମ ପଚାରିଲେ ଶୁଣିମା ହେଉ ମୁନି
ଆତାପି ବାତାପିକି ଅଗସ୍ତି ମାରେ ପୁଣି ।
ବାପ କୁମ୍ଭ ଋଷି ସାଗରେ ବୁଡ଼ି ମରିବାରୁ
ସପ୍ତ ସାଗର ଶୁଖିଲା ଚଳୁକରି ଭକ୍ଷିବାରୁ ।
ସେଠାରୁ ଆଦିତ୍ୟ ଦେବେ ସେଠାରୁ ଜାତ କଲେ
ପୁଣ କିସ ଯଶ ଯେ ଅଗସ୍ତି ଅରଜିଲେ ।
ଶ୍ରୀରାମଠାରୁ ଶୁଣି ବୋଲନ୍ତି ଗାଧିସୁତ
ସେ ମୁନିଙ୍କ ଚରିତ ଶୁଣ ହେ ରଘୁନାଥ ।
ଯେବଣ ଦିନେ ଆଦିତ୍ୟ ମେରୁବାଦ କଲେ
ଦେବେ ତାଙ୍କୁ କହିବାରେ ନିବର୍ତ୍ତ ନୋହିଲେ ।
ଯୁଦ୍ଧରେ ସମାନ ଯେ ନୋହିଲେ ତାଙ୍କୁ ଜଣେ
ସ୍ୱର୍ଗରେ ବିଜୟ ହୋଇଲେ ଦେବଗଣେ
ସକଳ ଦେବ ଯାଇ ବ୍ରହ୍ମାଙ୍କୁ ଜଣାଇଲେ
ଛାୟାପତି ଏବେ ପୁଣି ଆକଟ ହୋଇଲେ ।
ବେନିଯୁଗ ହେଲା ମନ୍ଦର ସଙ୍ଗେ କଳି
କ୍ରୋଧରେ ଦାବାନଳ ହୋଇଲେ ଅସମ୍ଭାଳି ।
ରଜନୀ ପ୍ରକଟ ନୋହିଲା ବେନି ଯୁଗ
ରବିର ତେଜରେ ଭଗ୍ନ ଯେ ସଭିଙ୍କର ଗର୍ବ ।
ଶୁଣି ବେଦବର ନିଜ ସ୍ଥାନରୁ ଆସି
ଅଗସ୍ତିଙ୍କ ଆଶ୍ରମରେ ମିଳିଲେ ବିଧାତାଟି ।
ବୋଇଲେ ମହାଋଷି ବେଗେ ତୁମ୍ଭେ ଚଳ
ବେନିଯୁଗେ ହେଲା ଆଦିତ୍ୟ ସମର କରିଛି ମନ୍ଦିର ।
ତୁମ୍ଭେ ଯାଇ ତାହାଙ୍କୁ ପ୍ରବୋଧ ବେଗକର ।
ନୋହିଲେ ରାଜ୍ୟ ନିଶ୍ଚେ ହୋଇଲା ନାରଖାର ।
ଶୁଣିକରି ଅଗସ୍ତି ଯେ ବ୍ରହ୍ମା ବୋଲେ ଯାଇ
ମନ୍ଦର ଗିରି ନିକଟେ ମିଳିଲେକ ତହିଁ ।
ଦେଖିଲେ ଚଳି ନ ପାରେ ଆଦିତ୍ୟ ଦେବତା
ସ୍ୱର୍ଗ ମର୍ତ୍ତ୍ୟ ଘୋଟିଛି ମନ୍ଦର ବଳବନ୍ତା ।
ଯୁଦ୍ଧରେ ଜିଣିଣ ସେ କ୍ରୋଧରେ ଗୁରୁତର
ଛାୟା ବଲ୍ଲଭ ଭାଗି ରହିବ ମନ୍ଦର ପ୍ରକାର ।
ଅଗସ୍ତି ମୁନି ବୋଲନ୍ତି ଶୁଣ ହେ ମନ୍ଦର
ଆମ୍ଭେ କଥାଏ ମାଗିବୁ ଦେବୁକି ସତ୍ୟ ତୋର ।
ମନ୍ଦର ବୋଇଲେ ମୁନି ଯେ ତୋହର ଇଚ୍ଛା
ମାଗ ମାଗ ଦେବି ମୁନି ପୂରୁତୋ ମନୋବାଞ୍ଛା ।

ଏତେ ବୋଲି ମନ୍ଦର ଚରଣେ ଲୋଟଗାଳି
କରଯୋଡ଼ି ଶୋଇଲେ କରିଣ ପାଏ ପଡ଼ି ।
ଅଗସ୍ତି ବୋଇଲେ ମୁଁ ଯିବି ଦକ୍ଷିଣ ଦିଗେ ଚଳି
କେତେ ଦିନରେ ପୁଣ ବାହୁଡ଼ା ବିଜେ କରି ।
ସେତେଦିନ ପର୍ଯ୍ୟନ୍ତ ନୋହିବୁ କୋପମନ
ବଢ଼ିବା ଇଚ୍ଛାରେ ଦୂରେ ହୋଇବୁ ସାମାନ୍ୟ ।
ଶୁଣିକରି ମନ୍ଦିର ଯେ ସୀଉକାର କଲା
ସାମାନ୍ୟ ରୂପ ଧରି ନିଜ ସ୍ଥାନରେ ରହିଲା ।
ଦେଖିଣ ଆଦିତ୍ୟ ଯେ ମେରୁ ପ୍ରଦକ୍ଷିଣ କରି
ସତ୍ୟ ପାଳି ମନ୍ଦର ସମାନ୍ୟ ରୂପ ଧରି ।
ଯେବେ ଅଗସ୍ତି ସେ ସ୍ଥାନେ ହେବେ ପ୍ରବେଶତ
ବେନିଜନ ବିବାଦେ ନାଶ ଯାଆନ୍ତା ଜଗତ ।
ତେଣୁକରି ଋଷି ଯେ ଦକ୍ଷିଣ ଦିଗେ ଗଲେ
ପୁନର୍ବାର ମହାମୁନି ଫେରିଣ ନଇଲେ ।
ଏସନକ କଥା ଯେ ଶୁଣିଲେ ଦାଶରଥି
ଅଗସ୍ତି ମୁନିଙ୍କର ଏମନ୍ତ ପ୍ରତିଜ୍ଞାଟି ।
ଆହୁରି କଥାଏ ଶ୍ରୀରାମ କହିବା ତୁମ୍ଭଙ୍କୁ
ପାର୍ବତୀ ନନ୍ଦନ ଯେ ମାଇଲେ ତାଡ଼କାକୁ ।
ସେ ତାଡକା ଅଟେ ବଳୀ ଦୈତ୍ୟର ନନ୍ଦନ
ତାଡକୀ ଭୟଣୀ ଯେ ତାଡକାଠାରୁ ଜନ୍ମ ।
ତାଡକା ତାଡକୀଙ୍କି ଦୈତ୍ୟ ଜନ୍ମ କରି
ଇନ୍ଦ୍ରଙ୍କର ବିବାଦରେ ସେହୁ ଗଲା ମରି ।
ତାଡକୀ ଘେନିଣ ତାଡକାସୁର ରହି
ଭୟେଣୀ କି ବିଭା ହୋଇ ରତି ପ୍ରୀତି ହୋଇ ।
ପୁତ୍ରର ଦଶ ଦିନରେ ତାଡକା ଗଲା ନାଶ ।
ତାଡକୀ ପୁତ୍ର ନାମ ଦେଲା ମାରିଚ ବିଶେଷ ।
କାଳେଣ ସେ କୁମାର ନବଯୁବା ହେଲା
ମଧୁଦୈତ୍ୟ ଦୁହିତାକୁ ତାଡକୀ ବିଭାକଲା ।
ପୁତ୍ର ବଧୂ ରଖାଇଣ ତାଡକୀ ଅସୁରୁଣୀ
ଯମ ଦେବତାର ନାମ ଜପିଲା ବସି ପୁଣି ।
କେତେଦିନ ଉତ୍ତାରୁ ପ୍ରସନ୍ନ ରବିସୁତ
ବୋଇଲେ ବଳବନ୍ତ ହୁଅରେ ନାରୀ ଡୁତ ।
ଦେବେ ଅସୁର ବଳ ବାନର ନାଗବଳ
ଏହାଙ୍କର ହସ୍ତରେ ନପୂରେ ତୋର କାଳ ।

ଖଣ୍ଡ ତପ ବହିଣ ତୁ କାଳେ କାଳେ ଥାଅ
ଏତେ ବୋଲି ବର ଦେଲେ ରବିଙ୍କର ପୁଅ ।
ଶୁଣିକରି ତାଡକୀ ବୋଇଲା ଯମକୁ
କି ରୂପେ ମୁକତି ହେବ କହିଦେ ଆମ୍ଭଙ୍କୁ ।
ରବିସୁତ ବୋଇଲେ ଅଠର ଯୁଗ ଗଲେ
ଶ୍ରୀହରି ମାରିବେ ତୋତେ ଗତିଲଭିବୁ ସେ କାଳେ ।
ସେହିଦିନୁ ତାଡକୀ ଯେ ଉପଦ୍ରବ କରେ
ଏ ବନରେ ଅଗସ୍ତି ମହାଋଷି ଥିଲେ ।
ନିଶିରେ ତାଙ୍କର ଆଶ୍ରମ ତାଡକୀ ଭାଙ୍ଗି ଦେଲେ
କୋପେଣ ଶାପ ତାକୁ ବ୍ରହ୍ମଚାରୀ ଦେଲେ ।
ରାକ୍ଷସ ପ୍ରକୃତି ତୋର ନୁହେଁ ଯେ ଭିନ୍ନ ପୁଣି
ଏହି ବନରେ ଥାଆଲୋ ଦୁଷ୍ଟ ରାକ୍ଷାସୁଣୀ ।
ଏତେକହି ଅଗସ୍ତି ସେଠାରୁ ଚଳିଗଲେ
ଦକ୍ଷିଣ ଗୋଦାବରୀ କୂଳରେ ରହିଲେ ।
ମୁନିଙ୍କ ଶାପରେ ରାକ୍ଷାସୁଣୀ ଏ ବନରେ ରହି
ପଥୁକୀ ଦେଖିଲେ ବାଟ ପଡ଼ିଣ ତାକୁ ଖାଇ ।
ଏଣୁ କରି ଏ ପଥରେ ନ ଆସନ୍ତି ଜନ
ଉପଦ୍ରବ ହେବାରୁ ଭାଙ୍ଗିଲେ ଏଥୁ ଜନ ପୁଣ ।
ଏଥିରୁ ଅଗସ୍ତି ମୁନି ଆଶ୍ରମ ତେଜିଗଲେ
ଯେଣୁ ରାକ୍ଷାସୁଣୀର ଦୁଷ୍ଟପଣ ସେ ଦେଖିଲେ ।
ସୁର ନର କିନ୍ନର ନ ପଶନ୍ତି ଯେ ଭୟେ
ଅନେକ ଅସୁର ବଳ ସଙ୍ଗରେ ଘେନି ରହେ ।
ଏହିକ୍ଷଣି ଭେଟିବାକୁ ପାଇବା ଆମ୍ଭେ ବନେ

× × ×

ମୁନି ବୋଲନ୍ତି ଶୁଣ ହେ ରାମ ଲକ୍ଷ୍ମଣ
ଅଗମ୍ୟ ବନଭୂମି ଅଟେ ଏହାର ନାମ ।
ତେଣୁ ଏ ବନରେ ନ ପଶେ ପୁଣି ଯମ ।

× × ×

ନ ଜାଣିବା ପଣେ ଯେ ଅଇଲୁ ଏହି ବାଟେ
ଆଜ ଅକାରଣେ ଯେ ପଡ଼ିବ ସଙ୍କଟେ ।
ଦୁଷ୍ଟ ରାକ୍ଷାସୁଣୀ ସେ ଓପ୍ରୋଧ ନ କରଇ
ଏ ପଥେ ଗଲା ଲୋକର ଜୀବନ ହରଇ ।
ଏବେ ଚାଲ ଶ୍ରୀରାମ ହେ ବାଟ ଭାଙ୍ଗିଯିବା
ଅନ୍ୟବାଟେ ଗଲେ ଆମ୍ଭେ କଷ୍ଟ ନ ପାଇବା
ଏହା ଶୁଣି ଶ୍ରୀରାମ ଯେ ଧରିଲେ କରେ ଧନୁ
ଋଷିଙ୍କର ମୁଖ ଚାହିଁ ବୋଲେ ଦଶରଥ ତନୁ ।

ପ୍ରଥମେ ପରୀକ୍ଷା କରିବା ବୋଲି ମୁନି
ଏ ବନରେ ଆମ୍ଭଙ୍କୁ ଅଇଲ ପୁଣି ଘେନି ।
ତୁମ୍ଭେ ତ ମହାମୁନି କିସ ବିଚାର ମନର
ଅସୁରୁଣୀକୁ ଡରିବେକି ଦଶରଥ କୁମାର ।
ଯଦ୍ୟପି ଭେଟ ସେ ପଡ଼ିବ ପୁଣି ଆସି
ପ୍ରାଣ ଘେନି ଆଗରୁ ଯିବକି ସେ ରାକ୍ଷସୀ ।
ତୁମ୍ଭର ଚରଣ ରେଣୁରେ ଆମ୍ଭେ ଗାଧି ସୁତ
ଅସୁର ବଳ ଆମ୍ଭେ କରିବୁ ନିଶ୍ଚେ ହତ ।
ଏତେ ବୋଲି ଶ୍ରୀରାମ ଯେ କୋଦଣ୍ଡ ସଜକଲେ
ଲକ୍ଷ୍ମଣ ଧନୁ ଧରି ଗୁଣ ଚଢ଼ଇମାଇଲେ ।
ରକ୍ତ ବର୍ଣ୍ଣ ନେତ୍ର ଯେ ଦିଶଇ ଶ୍ରୀରାମର
ଲକ୍ଷ୍ମଣ କ୍ରୋଧ ହେଲେ ଯେ ଦୈତ୍ୟଙ୍କର ଉପର ।
ଭଗବତୀ ଶୁଣନ୍ତି ଯେ ଶଙ୍କର କହିବାରୁ
ପାର୍ବତୀ ପଚାରିଲେ କିସ ଏଥି ଉତ୍ତାରୁ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣଗୋସଙ୍ଗାତୁଣି
ତାଡକୀର ଚାର ଯେ ବୁଲଇ ବନେ ପୁଣି ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ଦେଖି ଫେରିଗଲେ ଦୈତ୍ୟ
ତାଡକୀ ଆଗରେ ଯାଇ କହିଲେ ବାରତା ।
ଶୁଣଗୋ ଦୈତ୍ୟମାଏ ବନର ଠାକୁରାଣୀ
ବିଶ୍ୱାମିତ୍ର ସଙ୍ଗେ ବେନି ବାଳକକୁ ଘେନି ।
ଏ ବନେ ଗମନ ଯେ କରନ୍ତି ଆସୁ ମୁନି ।
ଯେ ବେନିବାଳ କୁମରେ କରିଛନ୍ତି ଧନୁ ଘେନି
ଶୁଣିକରି ତାଡକୀ ଯେ ବିକରାଳ ପୁଣି
ଆହାର ପ୍ରାୟ ମଣି ଯେ ଧାଇଁଲା ରାକ୍ଷାସୁଣୀ
ତାର ପଛେ ବାର ଲକ୍ଷ ଅସୁର ସୈନ୍ୟଆସି ।

× × ×

ତାଡକୀର ରୂପ ଯେ ଦିଶଇ ଭୟଙ୍କର
ଜିହ୍ୱାକୁ ଲହ ଲହ ବୁଲାଏ ଅନ୍ତରାଳ ।
ଆକାଶରେ ଅସୁରୁଣୀ ଲଗାଇ ଅଛି ଶିର
ଅସୁରୀ ଆସିବାରେ ବନ କନ୍ଦର ହୁଏ ଚୂର ।
ବିକରାଳ ବଦନ ଯେ ବିରୂପ ମତି ହୋଇ
ପେଟକୁ ଖଙ୍ଖାଳିଣ ବେଗେ ଆସେ ଧାଇଁ ।
ଦୂରରୁ ଦେଖିଣ ସେ ଡରିଲେ ଗାଧିସୁତ
ବିଶ୍ୱାମିତ୍ର ବୋଇଲେ ଶୁଣ ହେ ରଘୁନାଥ ।
ଏ ପଥ ଛାଡ଼ିଣ ଯେ ଯିବା ଅନ୍ୟପଥେ ।
ଏ ରାକ୍ଷସୀ ଦୁଷ୍ଟପଣ କରିବ ଏହୁ ପଥେ ।

ହସି ଶ୍ରୀରାମ ବୋଇଲେ ମୁନି ହେଲେ ବାଇ
ନିଶାଚର ଡରରେ କି ବାଟ ଭାଙ୍ଗି ଯାଇ ।
ଆଜ ଯେବେ ଅସୁରୁଣିକି ମୁଁ ନ କରିବି ନାଶ
ଯାଗ କେସନେକ ରକ୍ଷାକରିବି ତପୋବନ୍ତ ।
ଏତେ କହି ରାଘବ ଯେ କମ୍ପନ୍ତି ଥରହର
କୋଦଣ୍ଡ ଧରି ଆଗଯେ ହୋଇଲେ ରଘୁବୀର ।
ଲକ୍ଷ୍ମଣକୁ ବୋଇଲେ ତୁ ମୋ ପଛରେ ଆସ
ମୁଁ ଯାହାକୁ ମାରିବି ତୁ ନ ଯିବୁ ତାର ପାଶ ।
ମୁଁ ହେବି ସରଦାର ତୁ ହେବୁ ପଦାତି
ମୁଁ ଯେତେବେଳେ ଯୁଝିବି ତୁ ହେବୁ ସେନାପତି ।
ଏତେ କହି ଥୋକାଏ ଯେ ଦୂର ଗଲେ ବହି
ଦେଖିଲେ ଯେ ତାଡକୀ ଆସୁଅଛି ଧାଇଁ ।
ମୁନି ବୋଇଲେ ଶ୍ରୀରାମ ଅସୁରୁଣୀ କି ଚାହାଁ ।
ଆସୁଅଛି ତାନମାନେ ତାଡକାର ପ୍ରିୟା ।
ମତ ହୋଇ ଅସୁରୀ ନର ବାନର ଖାଇ
ଏ ବଚନ ଶୁଣିଣ ବୋଇଲେ ରଘୁସାଇଁ ।
ସ୍ତିରୀବଧ ଦୋଷକୁ ଅଛଇଁ ଭୟ କରି
ନୋହିଲେ କି ଅସୁରୀ ଆସନ୍ତା ପ୍ରାଣ ଧରି ।
ବିଶ୍ୱାମିତ୍ର ବୋଇଲେ ଶୁଣିମା ରାମଚନ୍ଦ୍ର
ପୂର୍ବରୁ ସ୍ତିରୀ ଗୋଟିଏ ବଧ କଲେ ଇନ୍ଦ୍ର ।
ଦୁଷ୍ଟ ନାରୀଙ୍କି ମାଇଲେ ଧର୍ମ ଏଥିରେ ଅଛି
ବ୍ରାହ୍ମଣ ଘରଣୀ କିବା ବିଧବା ଯୁବତୀ ।
ଏ ଦଇତୁଣୀ ପୁରୁଷ ହତ୍ୟାର କାରଣ
ଯାଗ କଲା ଋଷିଙ୍କି ଖାଇଲା ଯାଇ ପୁଣ ।
ଲକ୍ଷ୍ମଣ ବୋଇଲେ ତୁମ୍ଭେ କି ଋଷିଙ୍କି ପଚାର
ମାର ରାକ୍ଷସୁଣୀକି କିଛି ନ ବିଚାର ।
ଆପଣା ବଡ଼ ପଣ ନ ରଖିବ ଯେବେ
ଏ କଥା ହେତୁକରି ମାର ରାକ୍ଷସୁଣୀ ଏବେ ।
ଲକ୍ଷ୍ମଣ କହିବାରୁ ଶ୍ରୀରାମ ତାହା ଜାଣି
ଆମ୍ଭେ ନ ମାଇଲେ ବଡ଼ପଣ ଯିବ ପୁଣି ।
କଥା ହୁଅନ୍ତେ ଅସୁରୁଣୀ ଧାଇଁ ପଡ଼ି
ବୋଇଲା ଆଜ ସୁଖ ଦିନ ଯିବ ସରି ।
ଆଜକି ଜିଇଯିବ ମୋର ମୁଖରେ ପଡ଼ି
ତୋଟିକଣା କରି ରକ୍ତ ଖାଇବି ବସିକରି ।
ଏତେ ବୋଲି ଦଇତୁଣୀ ବିଧାଏ ମାଇଲା
ଶ୍ରୀରାମ ଘୁଞ୍ଚି ଯାଇ ତାହା ବଞ୍ଚାଇଲା ।

ଯେଣୁ ବିଧା ଶ୍ରୀରାମ ହୃଦୟରେ ନ ବାଜେଟି
ଅଧର କାମୁଡ଼ିଣ ଦଇତୁଣୀ ଉଠି ।
ବୃକ୍ଷେକ ଉପାଡ଼ିଣ ଧଇଲା ବେଗ କରେ ।
ଆର ଭୁଜେ ଧଇଲା ଯେ ମହତ ପଥରେ ।
ଅନ୍ତରୀକ୍ଷ ବୁଲାଇ ଶ୍ରୀରାମକୁ ମାରେ
ବିଚିତ୍ର ଗତିକରି ଶ୍ରୀରାମ ତାହା ଫେରେ ।
କୋପରେ ରାକ୍ଷସୁଣୀ ବେଗେ ଧନୁ ଧରି
ଶରରେ ଅଦୃଶ୍ୟ ଯେ କଲା ରୋମାବଳୀ ।
ଶ୍ରୀରାମ ପଚାରିଲେ ଶୁଣ ହେ ମହାମୁନି
ସ୍ତ୍ରୀ ହୋଇଣ ଏହୁ ଧରଇ ଧନୁ ପୁଣି ।
ଗୁଣ ଟଙ୍କାର କରିଣ ଶରବୃଷ୍ଟି କରେ
ଦିବସରେ ଯାମିନୀ ଘୋଟେ ଅନ୍ଧକାରେ ।
ବିଶ୍ୱାମିତ୍ର ବୋଇଲେ ଶୁଣ ହେ ଦାଶରଥି
ବୈଶ୍ୱାନର ଦେବତା ଯେଉଁ ଧନୁଶର ଦେଇଛନ୍ତି ।
ଜୟନ୍ତି ଶର ବେଗେ ମାର ହେ ରଘୁବଂଶି
ଯାମିନୀ ତୁଟିଯାଉ ପ୍ରସାର ହେଉ ରାତି ।
ଫିଟାଅ ଅନ୍ଧକାର ମୋର ବୋଲକର
ଶୁଣିଣ ଶ୍ରୀରାମ ଯେ ପେଷିଲା ସୂର୍ଯ୍ୟଶର ।
ତକ୍ଷଣେ ତିମିରି ଯେ ଗଲାକ ପଳାଇ
ଦିଶିଲେ ଦଶଦିଶ ଚାହିଁଲେ ରଘୁସାଇଁ ।
ଅଧାଚନ୍ଦ୍ର ଗୁଣ ଶ୍ରୀରାମ ବସାଇ
ପେଷିଲେ ଶ୍ରୀରାମ କୋପଭର ହୋଇ ।
ପବନରୁ ବେଗେ ଯେ ଚଳିଣ ଗଲା ଶର
ଅସୁରୀର କଣ୍ଠରେ ଯାଇ ପଡ଼ିଲା ପ୍ରଖର ।
ଛିଡ଼ିଲାକ ବେକ ଯେ ହୋଇଲା ବେନିଖଣ୍ଡ
ଦେଖିଣ ସୈନ୍ୟବଳ ଓଗାଳନ୍ତେ ପ୍ରଚଣ୍ଡ ।
ଦେଖିଣ ଲକ୍ଷ୍ମଣ ଯେ ମୋହନା ଶର ମାରି
ବାରଲକ୍ଷ ଦୈତ୍ୟଙ୍କୁ ଖଣ୍ଡ ଖଣ୍ଡ କରି ।
ଦେଖିଣ ଆଉ ଯେତେକ ଦୈତ୍ୟବଳ ଥିଲେ
ନ ରହି ପଳାଇଲେ ପ୍ରାଣର ବିକଳେ ।
ବାର ଲକ୍ଷ ସୈନ୍ୟବଳ ଘେନିଣ ତାଡକୀ
ପୁଷ୍ପକ ବିମାନ ବସି ସ୍ୱର୍ଗକୁ ଗଲେ ସେଟି ।
ଦେବତାଏ ଶୂନ୍ୟରେ ଯେ ଯୁଦ୍ଧ ଦେଖିଥିଲେ
ରାକ୍ଷସୀ ମରିବା ଦେଖି ହରଷ ହୋଇଲେ ।
କୁସୁମ ବୃଷ୍ଟି କଲେ ଶ୍ରୀରାମ ଶିରେ
ସାଧୁ ସାଧୁ ଶ୍ରୀରାମ ବୋଇଲେ ସ୍ୱର୍ଗପୁରେ ।

ବିଶ୍ୱାମିତ୍ରଙ୍କୁ ବୋଇଲେ ବେଦବର ପୁଣ
ଭୋମୁନି ବିଶ୍ୱାମିତ୍ର ଆମ୍ଭର ବୋଲ ଘେନ ।
ବେଦବର ବୋଇଲେ ଧନୁବିଦ୍ୟା ଯେତେ
ସମସ୍ତ ଶିଖାଅ ରାମଚନ୍ଦ୍ରଙ୍କୁ ତୁରିତେ ।
ସକଳ ବିଦ୍ୟା ଏବେ ଶ୍ରୀରାମରେ ଦେସି
ଏସନକ ବୋଲି କହି ଗଲେକ ସ୍ୱର୍ଗବାସୀ ।
ସେ ଦିନ ଲକ୍ଷ୍ମଣ ଶ୍ରୀରାମ ବିଶ୍ୱାମିତ୍ର
ସେ ବନରେ ରହି ବଞ୍ଚିଲେ ରଜନୀତ ।
ରଜନୀ ପ୍ରଭାତେ ତିନିଜଣ ସ୍ନାନ ସାରି
ଶ୍ରୀରାମ ଲକ୍ଷ୍ମଣ ମୁନି ସକଳ ବିଦ୍ୟା ଦେବେ ବୋଲି ।
ଜୟା ବିଜୟା ପୁଣି ବେନି ମନ୍ତ୍ର କହି
ବୋଲନ୍ତି ମହାମୁନି ଶୁଣ ହେ ରଘୁସାଇଁ ।
ଏ ଯେ ଆଦିତ୍ୟ ମନ୍ତ୍ର ଚଳନ୍ତି ସର୍ବ ଗୁଣ
ବିଷ୍ଣୁ ତେଜରେ ଜାତ ହୋଇଲେ ଶସ୍ତ୍ରପୁଣ ।
ଏମନ୍ତେ ଯେ ସକଳ କାର୍ଯ୍ୟ କରିସାରି
ପଦ ପଦକେ ସାୟ ହୁଅନ୍ତି ମୁରାରି ।
ଏତେ କହିଣ ମୁନି ସକଳ ଶାସ୍ତ୍ରଦେଲେ
ବହୁ ଶାସ୍ତ୍ର ବିଦ୍ୟା ମୁନି ପଥ ଯେ କହିଦେଲେ ।
ପାଶୁପତ ଶିବ ଶାସ୍ତ୍ର ନାରାୟଣ ଶର ପୁଣି
ଯକ୍ଷ ଶସ୍ତ୍ର କାଳ ଶସ୍ତ୍ର ଦେଲେ ମହାମୁନି ।
ବରୁଣାସ୍ତ୍ର ଇନ୍ଦ୍ରାଅସ୍ତ୍ର ଅଗ୍ନି ଶର ଦେଲେ
ଶିଶୁମୁନା ଅକ୍ଷୟତ୍ରୋଣ ଦ୍ରୋହନା ସମର୍ପିଲେ ।
କପାଳ ବିମୋଚନ; ଗର୍ଜନା ଅସ୍ତ୍ରଦେଲେ
ମୋହନା ଅସ୍ତ୍ର ସୁର୍ଯ୍ୟୋଅସ୍ତ୍ର ସକଳ ସମର୍ପିଲେ ।
ବ୍ରହ୍ମ ଶସ୍ତ୍ର ବଜ୍ରଶସ୍ତ୍ର କାଳଶସ୍ତ୍ର ତିନି
କୁବେରା ଅସ୍ତ୍ର ପନଙ୍ଗା ଅସ୍ତ୍ରଦେଲେ ମହାମୁନି ।
ଗରୁଡାସ୍ତ୍ର ଗନ୍ଧର୍ବାସ୍ତ୍ର ସହିତେ ଦାନବା
ଗର୍ଜନାସ୍ତ୍ର ତର୍ଜନାସ୍ତ୍ର ବଜ୍ରସୂଚୀ ଆଭା ।
ଚନ୍ଦ୍ରାର ଶକତି ଯେ କୁମାର ଶକତି ।
ଏ ଶକ୍ତିମାତାଙ୍କୁ ସରି ନୁହଁନ୍ତି ଦେବତାଟି ।
କୌଶିକ କୋଦଣ୍ଡ ଗଦା ମୋହ ଫେରି
କାଳ ଗଦା ମୋହଗଦା ସକଳ ଆଦିକରି ।
ଇନ୍ଦ୍ର ଚନ୍ଦ୍ର ମୁଦୁଗର ସକଳ ଦେବଙ୍କର
ବୈଷ୍ଣବା ଅସ୍ତ୍ରକୁ କି ଦେବା ପଟାନ୍ତର ।
ଜୟା ବିଜୟାକୁ ଦେଲେ ଶ୍ରୀରାମଙ୍କୁ ତହିଁ
ବାଛିଣ ଅସ୍ତ୍ରମାନ ଶ୍ରୀରାମଙ୍କୁ ଦେଇ ।

ପଢ଼ିଣ ମନ୍ତ୍ର ଶ୍ରୀରାମ ଘେନିଲେ ସର୍ବବାଣ
ଶୂଳ ଶକତି ବ୍ରହ୍ମ ଶକତି ଦେଲେ ମୁନି ପୁଣ ।
ସକଳ ଶସ୍ତ୍ରମାନ ନେଲେ ଦଶରଥ ସୁତ
ଆବର ଘେନିଲେ ସେ ସଶସ୍ତ୍ର ସମସ୍ତ ।
ଶସ୍ତ୍ର ନିମନ୍ତେ ମନ୍ତ୍ର ପଢ଼ିଲେ ତକ୍ଷଣ
ଆସିଣ ଶସ୍ତ୍ରମାନ ପଶିଲେ ତ୍ରୋଣେ ଜାଣ ।
ଗଗନ ଆଚ୍ଛାଦିଲା ନ ଦିଶିଲେ କିଛି
ଆଦିତ୍ୟ ଉଇଁଣ ତେଜ ଶୂନ୍ୟ ହୋଇଲେଟି ।
ଶସ୍ତ୍ରଙ୍କ ତେଜରେ କମ୍ପିଲା ମେଦିନୀ
ଅରଷ୍ଟି ଦିଶିଲା ସର୍ବ ଉଲ୍‌କପାତ ଜାଣି ।
ସିନ୍ଧୁ ଉଛୁଳିଣ ଏବେ ଲଙ୍ଘିବକି କୂଳ
ସୂର୍ଯ୍ୟର ପରାଣ ସିନା ଅମାସ୍ୟା କାଳବେଳ ।
ଉପରେ ଥାଇ ତାହା ଦେଖିଲେ ଦେବଗଣ
ଭୟ କରି ସକଳେ ସୁମରେ ନାରାୟଣ ।
ବିଧାତା ବିଜେକଲେ ଅନ୍ତରୀକ୍ଷ ଆସି
ଏକାବେଳେ ଅସ୍ତ୍ର କିମ୍ପା ସୁମର ରଘୁବଂଶି ।
ରଷିଦେଲା ଅସ୍ତ୍ର ତେଜକେହି ସହି ନପାରିଲେ
ସଂସାର ହତସିନା କରିବ ଏକାବେଳେ ।
କାର୍ଯ୍ୟ ପଡ଼ିବା ବେଳେ ଏ ଶର ସୁମରିବ
ସବୁ ଶର ଏକାବେଳେ ମନେ ନ ସୁମରିବ ।
ସକଳ ଦେବତାଙ୍କର ତେଜ ଅସ୍ତ୍ରମାନ
ଏକାବେଳେ ସୁମରିଲେ ନ ରହେ ଭୁବନ ।
ଆମ୍ଭର ବୋଲ ଏବେ କର ହେ ରଘୁନାଥ
ଏ ଶସ୍ତ୍ର ସଂହାର ବେଗେ ତୋର ତୁଣୀରେତ ।
ଶ୍ରୀରାମ ପଚାରିଲେ ବେଦବର ବାଣୀ ଶୁଣି
କଥାଏ ପଚାରିବି କହ ହେ ବ୍ରହ୍ମମୁନି ।
ବିଶ୍ୱାମିତ୍ର କହିଲେ ଶ୍ରୀରାମଙ୍କୁ ଚାହିଁ
ଏ ଶରମାନ ଯେ ସଂହାର ବେଗେ ତୁହି ।
ଊର୍ଦ୍ଧ୍ୱରେ ଥାଇ ବୋଇଲେ ଶସ୍ତ୍ରମାନ ପୁଣ
ତୁମ୍ଭେ ଯାହା କହିବ କରିବୁ ଆମ୍ଭେ ପୁଣ ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ହେ ସର୍ବଶସ୍ତ୍ର
ପରୀକ୍ଷା ନିମନ୍ତେ ସିନା ସୁମରିଲ ମୁଁ ତ ।
ଯେ ଯାହା ତୁମ୍ଭ ସ୍ଥାନରେ ଯାଇଣ ତୁମ୍ଭେ ଥିବ
ମୋହର ସୁମରିଲେ ଆସିଣ ମିଳିବ ।
ଶୁଣିକରି ଶସ୍ତ୍ରମାନେ ଯେ ଯାହା ସ୍ଥାନ ଗଲେ
ଘଡ଼ି ଘଡ଼ି ପ୍ରାୟେକ ଶବଦମାନ କଲେ ।

ଏଥୁ ଅନନ୍ତରେ ଯେ ଶୁଣ ଦିବ୍ୟ ରସ
ଈଶ୍ୱରଙ୍କୁ ଗଉରୀ ଯେ ପଚାରେ ସନ୍ଦେଶ ।
ଶ୍ରୀରାମଙ୍କୁ ଶସ୍ତ୍ର ସର୍ବ ବିଶ୍ୱାମିତ୍ର ଦେଲେ
ଲକ୍ଷ୍ମଣ ସଙ୍ଗେ ଥିଲେ ତାଙ୍କୁ କିମ୍ପା ନ ଦେଲେ ।
ଶଙ୍କର ବୋଇଲେ ତୁମ୍ଭେ ଶୁଣ ଗୋ ଭଗବତୀ
ଶ୍ରୀରାମଙ୍କୁ ଦେଲେ ମୁନି ଲକ୍ଷ୍ମଣଙ୍କୁ ନଦେଲେ କି ।
ବୋଲନ୍ତି ଗଉରୀ ଯେ ଏଥୁ ଅନନ୍ତରେ
କିସ କଲେ ଦଶରଥ ରାଜାଙ୍କ କୁମରେ ।
ଶସ୍ତ୍ରକୁ ପରୀକ୍ଷା ଶ୍ରୀରାମ କରନ୍ତେଣ
ଦଶଦିଗ ପୂରିଣ ଘୋଟିଲେ ଶରମାନ ।
ଦେବତାଏ କହନ୍ତେ ଶ୍ରୀରାମ ଆଜ୍ଞା ଦେଲେ
ଶୁଣି ଶସ୍ତ୍ରମାନ ହରଣ ହୋଇଲେ ।
ଶସ୍ତ୍ର ଯେ ଶାନ୍ତି ହେବାରୁ ଅରିଷ୍ଟ ତୁଟିଯାଇ
ଆଦିତ୍ୟ ଦେବତାର ତେଜ ବିକାଶଇ ।
ଏଥୁ ଅନନ୍ତରେ ଯେ ବିଶ୍ୱାମିତ୍ର ମୁନି
ହରଷରେ ଲକ୍ଷ୍ମଣଙ୍କୁ ବିଦ୍ୟା କହେ ପୁଣି ।
ଶ୍ରୀରାମଙ୍କୁ ଯେତେ ମନ୍ତ୍ର ଋଷି ଦେଇଥିଲେ
ତହୁଁ ବେନି ଗୁଣରେ ଲକ୍ଷ୍ମଣଙ୍କୁ ଦେଲେ ।
ଅକ୍ଷୟ ତ୍ରୋଣ ଯେ ପାଶୁପତ ପିନାକୀ ଧନୁପୁଣ
ଶିବ ଶକ୍ତି ଶିବମୂଳ ଦେଲେ ମୁନି ପୁଣ ।
ଦଶଦିଗପାଳଙ୍କ ଶସ୍ତ୍ରମାନ ଦେଲେ
ନବକୋଟି ଦେବଙ୍କ ଶସ୍ତ୍ର ସମର୍ପିଲେ ।
ଜୟ ବିଜୟ ରଥ ତାଳଧ୍ୱଜ ଦୁଇ
ବୋଇଲେ ବିଚାରିଲେ ଯେ ଏମାନ ମିଳଇ ।
ତେତିଶ କୋଟି ଦେବତାଙ୍କର ଯେତେ ଶର ଜାଣ
ଲକ୍ଷ୍ମଣରେ ସକଳ ସମର୍ପେ ମୁନି ପୁଣ ।
ଶିବ ଶକ୍ତି ବ୍ରହ୍ମ ଶକ୍ତି ବିଷ୍ଣୁ ଇନ୍ଦ୍ର ଶକ୍ତି
ଅନନ୍ତ ଶକ୍ତି ଯୋଗମାୟା ଶକ୍ତି ନେଇ ସମର୍ପନ୍ତି ।
ଶୂଳ ଚକ୍ର ମୁଦ୍ଗର ମୋହନା ଅଗ୍ନିଶର
ଲକ୍ଷ୍ମଣଙ୍କୁ ମନ୍ତ୍ର ଯେ ଶିଖାଏ ମୁନିବର ।
ସକଳ ମନ୍ତ୍ର ଶିଖାଇ ଶସ୍ତ୍ର ସମର୍ପିଲେ
ଲକ୍ଷ୍ମଣ ପରୀକ୍ଷା ଯେ ନିମନ୍ତେ ସୁମରିଲେ ।
ଅଇଲେ ଶସ୍ତ୍ରମାନ ତେଜ ବିକାଶିଣ
ଦିବସ ଅନ୍ଧାର ଯେ ହୋଇଲାକ ପୁଣ ।
ଇନ୍ଦ୍ର ଦିଗପାଳ ଆସି ଶୂନ୍ୟରେ ବିଜେକଲେ
ଅନନ୍ତକୁ ସ୍ତୁତି ଯେ କରନ୍ତି ଶୂନ୍ୟରେ ।
ଦେବତାମାନେ ପୁଣି ସ୍ତୁତି କରିଣ କହି
ଶ୍ରୀରାମ ବୋଇଲେ ଶୁଣ ସୁମିତ୍ରା ତନୟୀ ।
ଦେବେ ସ୍ତୁତି କଲେ ଯେ ଇନ୍ଦ୍ରଙ୍କୁ ସଙ୍ଗେ ଘେନି
ଶସ୍ତ୍ରମାନେ ଯେମନ୍ତେ ଯିବେ ବୋଧ ହୋଇ ପୁଣି ।
ଶୁଣିକରି ସଉମିତ୍ରୀ ଶରକୁ କହିଲେ
ଯେ ଯାହାର ନିଜ ସ୍ଥାନେ ଯାଆରେ ବୋଇଲେ ।
ଆଜ୍ଞାମାନି ଶସ୍ତ୍ରମାନେ ବେଗେ ଚଳିଗଲେ
ଯେ ଯାହାର ନିଜ ସ୍ଥାନେ ଯାଇ ପ୍ରବେଶିଲେ ।
ଦେବତାଏ ଚଳିଗଲେ ସ୍ୱର୍ଗ ଯେ ଭୁବନ
ଶ୍ରୀରାମ ଲକ୍ଷ୍ମଣଙ୍କ ହରଷ ହେଲା ମନ ।
ବିଶ୍ୱାମିତ୍ର ମୁନି ଦେଖି ହୋଇଲେ ଆନନ୍ଦ
ମୁଖ ବିକାଶଇ କି ପୂର୍ଣ୍ଣମୀର ଚାନ୍ଦ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ମୁନି ବହୁତ ପ୍ରଶଂସିଲେ
ପ୍ରସନ୍ନରେ ସକଳ ବିଦ୍ୟାର ମନ୍ତ୍ର ଦେଲେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ପାର୍ବତୀ ।
ଶ୍ରୀରାମଙ୍କୁ ଦେଖିଣ ସନ୍ତୋଷ ବ୍ରହ୍ମଯତି ।
ହରଷରେ ତିନିଜଣ ସେଠାରୁ ଚଳିଗଲେ
ଯାନ୍ତେଣ ବାଟେ ଦିବ୍ୟ ବିପିନ ଦେଖିଲେ ।
ନାନା ତରୁ ସେ ବନରେ ପଲ୍ଲବ ଅଛନ୍ତି
ଫଳନ୍ତି ପାଚନ୍ତି ଯେ ଫୁଟିଣ ଝଡନ୍ତି ।
ସେ ବନରେ ପଶିଣ ହରଷେ ଚଳିଗଲେ
ଧନ୍ୟ ଧନ୍ୟ ଏହୁ ବନ ବୋଲି ପ୍ରଶଂସିଲେ ।
ବିଶ୍ୱାମିତ୍ର ମୁନିଙ୍କି ପଚାରିଲେ ଶ୍ରୀରାମ
କହ ତୁମ୍ଭେ ମହାମୁନି ଏ ବନର ନାମ ।
ରଘୁନାଥଙ୍କ ବଚନେ ବୋଲନ୍ତି ବିଶ୍ୱାମିତ୍ର
ଯାହା ପଚାରିଲ ତୁମ୍ଭେ ଦଶରଥ ସୁତ ।
ସତ୍ୟ ଯୁଗରେ ବଳି ବୋଲିଣ ନୃପତି ।
ତିନିପୁର ଜିଣିଣ ହୋଇଲା ଚକ୍ରବର୍ତ୍ତୀ ।
ଦାନ ଦେବାରେ ଯେ ତାର ହୋଇଲା ବିଶ୍ୱାସ
ଇନ୍ଦ୍ରପଦ ଘେନିଲା ସେବଇ ଲୋଚନ ସୁତ ।
ଦେବତାଏ ପଳାଇଣ ହୋଇଲେ ଏକଗୋଷ୍ଠି
ନାରାୟଣଙ୍କୁ ସୁମରଣା କଲେ ପରମେଷ୍ଠି ।
ବେଦବର ସ୍ତୁତି ଜାଣିଲେ ପଦ୍ମନାଭ
ଅନନ୍ତ ଶଯ୍ୟାତେଜି ମିଳିଲେ ଦେବତାଙ୍କ ଆଗ ।
ଦେଖିଣ ନମସ୍କାର କଲେ ଦେବଗଣ
ହରଷ ମନରେ ଯେ ବୋଇଲେ ନାରାୟଣ ।

କେବଣ କାର୍ଯ୍ୟ ତୁମ୍ଭ ଅଛି ହେ ଦେବ କହ
ତୁମ୍ଭେ ତ ଦେବତାଏ ଅଟ ମୋର ପ୍ରିୟ ।
କରଯୋଡ଼ି କରିଣ ବୋଇଲେ ବେଦପତି
ବଳି ନୃପତି ତିନିପୁରେ କଲାକ ଅନୀତି ।
ଦାନ ଦିଅନ୍ତେ ସେ ଯେ ଧର୍ମରେ ବଳିଆର
ତିନିପୁରେ ବିଖ୍ୟାତ ହୋଇଲା ଧର୍ମ ତାର ।
ଦେବଲୋକରେ ବସିଣ ଯାଇଣ ସତ୍ୱର ।
ପ୍ରତିଦିନ ଦାନ ସେ ଯେ ଦିଅଇ ନିରନ୍ତର ।
ପ୍ରଥମେ ମଞ୍ଚପୁରେ ନରେନ୍ଦ୍ର ହୋଇଲା
ସପତ ଦ୍ୱୀପ ରାଜାଙ୍କୁ ଚରଣେ ଖଟାଇଲା ।
ଦ୍ୱିତୀୟେ ପାତାଳକୁ ଗଲା ଯେ ବୀରମଣି
ନାଗରାଜା ସଙ୍ଗରେ କଲା ସେ ଦ୍ୱନ୍ଦ୍ୱ ପୁଣି ।
ଜିଣନ୍ତେ ନାଗରାଜା ଧରଣୀ ତେଜ୍ୟା କଲା
ଦେଖିଣ ବଳିରାଜା ଧରଣୀ ଧଇଲା ।
ବେନି ଲକ୍ଷ ବରଷ ଏଥିରେ ଗଲା ବହି
ଲୁଚିଲେ ନାଗବଳ ବଳିର ଭୟ ପାଇ ।
ଈଶ୍ୱର ଦେବତାଙ୍କୁ ଯାଇଣ ସେବା କଲେ
ଜାଣିକରି ଈଶ୍ୱର ବୃଷଭ ଚଢ଼ିଗଲେ ।
ବଳିରାଜା ଆଗରେ ହୋଇଲେ ପରବେଶ
ଈଶ୍ୱରଙ୍କୁ ବଳି ଦେଖି ହୋଇଲା ସନ୍ତୋଷ ।
ଦେଖିଣ ବଳିରାଜା ଶିବଙ୍କୁ ମାନ୍ୟ କଲା
କେଣେ ଅଇଲ ବୋଲି ତ୍ରିଲୋଚନେ ପୁଚ୍ଛିଲା ।
ଈଶ୍ୱର ବୋଇଲେ ଆମ୍ଭେ ଅଇଲୁଁ ଯହିଁକି
ସତ୍ୟ କଲେ କହିବା ନୋହିଲେ ଫେରିବାଟି ।
ବଳି ବୋଲେ ଗୁରୁ ଶିଷ୍ୟରେ କାହିଁ ସତ୍ୟ
ବାପ ପୁଅରେ ସତ୍ୟ କରିବା ଆଶ୍ଚର୍ଯ୍ୟିତ ।
ତୁମେ ଯାହା ମାଗିବ ନିଶ୍ଚୟ ଦେବି ମୁହିଁ
ତୁମ୍ଭେ ମୋର ପିତା ଯେ ବର ଦେବାର ସାଇଁ ।
ତୁମ୍ଭର ପ୍ରସନ୍ନେ ସିନା ଜିଣିଲି ତିନିପୁର
ମୋହର ଶରୀର ଗୋଟି ଅଟଇ ତୁମ୍ଭର ।
ଈଶ୍ୱର ବୋଇଲେ ତୁରେ ତଳପୁର ତେଜ
ଆମ୍ଭର ଆଶ୍ରିତ ସିନା ଅଟଇ ନାଗରାଜ ।
ଶୁଣିଣ ବଳିରାଜା ବୋଇଲାକ ପୁଣି
ତୁମ୍ଭର ବୋଲେ ଧରଣୀ ଛାଡ଼ିଲି ଏବେ ଜାଣି ।
ଶୁଣିଣ ସଦାଶିବ ବାସୁକୀ ରାଇ ବେଗେ
ବଳିରାଜା ତେଜିବାରୁ ଧରିଲେ ନାଗରାଜେ ।

ନାଗବଳ ଘେନି ବାସୁକି ପାତାଳେ ରହିଲେ
ଦୈତ୍ୟବଳ ଘେନି ବଳି ମଞ୍ଚକୁ ଅଇଲେ ।
ମଞ୍ଚରେ ସପତ ଦ୍ୱୀପ ସାଧିଲେକ ଯେଣୁ
ବତିଶ ଲକ୍ଷ ରାଜନ ବନ୍ଧନ କୋଡେ ତେଣୁ ।
ଦଶ ସହସ୍ର ବରଷ ପରିଯନ୍ତେ ବନ୍ଦୀ ।
କରିଣ ବଳିରାଜା ବିଚାରେ ମନ୍ଦ ବୁଦ୍ଧି ।
ବିଚାରିଲା ରାଜମେଧ ଯାଗ ମୁଁ କରିବି
ସକଳ ରାଜାମାନଙ୍କୁ ଅଗ୍ନିରେ ନିବେଶିବି ।
ଏମନ୍ତ ବିଚାରନ୍ତେ ଜାଣିଲେ ଦେବଗଣ
ମୋତେ ଯେ ସୁମରଣା କଲେକ ସର୍ବେପୁଣ ।
ଜାଣିଣ ମର୍ତ୍ତ୍ୟପୁରେ ଆମ୍ଭେ ଯେବେ ଗଲୁ
ବଳିରାଜା ଆଗରେ ଯାଇଣ ବିଜେକଲୁ ।
ଦେଖିଣ ବଳିରାଜା ଯେ ନମସ୍କାର କଲା
ଅଇଲ ମୁନିବର ଆମ୍ଭର ଭଲ ହେଲା ।
ରାଜମେଧ ଯଜ୍ଞ ମୁଁ କରିବି ଏବେ ପୁଣ
ସେଥିରେ ନ୍ୟାୟ ସିନା ତୁମ୍ଭେ ପରିମଣ ।
ଆମ୍ଭେ ବୋଇଲୁ ଦୈତ୍ୟରାୟ ନୁହଁଇ ଉଚିତ
ବଳବନ୍ତ ହେଲେ ରାଜା ହୁଅଇ ସେ ହିତ ।
ରାଜାପଦ ବଳବନ୍ତ ଲୋକର ଅଟେ ଶିରୀ
ରାଜାଙ୍କୁ ମାରିଲେ ହିଁ କେବଣ ଯଶ କରି ।
କେବେ ହେଁ ସ୍ୱର୍ଗବାସ ନୋହିବଟି ତୋତେ
ଆପଣା ପଣ ବିନାଶ ନ କର କଦାଚିତେ ।
ଶୁଣି ବଳିରାଜା ବୋଲଇ ବଚନ
ତୁମ୍ଭେ ଯେବେ ମନା କଲ ନାହିଁ କି ପ୍ରଯୋଜନ ।
ସକଳ ରାଜାମାନଙ୍କୁ ଛାଡ଼ିଣ ମୁହିଁ ଦେବି
ତୁମ୍ଭର କହିବା ବଚନ ମୁଁ ପ୍ରତିପାଳିବି ।
ଯେତେକ ରାଜା ମୁଁ ଯେ ରଖିଛି ବନ୍ଦିକରି
ଯେ ଯାହାର ରାଜ୍ୟକୁ ନିଅନ୍ତୁ ଦାନ କରି ।
ରାଜଦତ୍ତ ପୃଥିବୀ ଯେ ଆଜଠାରୁ ହେଉ
ପିତା ଦତ୍ତକନ୍ୟା ଯେ ଯୁଗେ ଯୁଗେ ଥାଉ ।
ଏତେ ବୋଲି ସକଳ ରାଜାଙ୍କୁ ଛାଡ଼ିଦେଲା
ଦତ୍ତ କରି ରାଜ୍ୟଦେଲି ଯାଅରେ ବୋଇଲା ।
ଶୁଣିଣ ସକଳ ରାଜା ହରଷରେ ଗଲେ
ଯେ ଯାହା ରାଜ୍ୟରେ ଯାଇ ନିଶ୍ଚିନ୍ତେ ରହିଲେ ।
ମର୍ତ୍ତ୍ୟପୁର ତେଜି ବଳି ସ୍ୱର୍ଗପୁର ଗଲା
ଦେବଙ୍କୁ ଘଉଡ଼ିଦେଇ ସ୍ୱର୍ଗରେ ଇନ୍ଦ୍ର ହେଲା ।

ନାରାୟଣ ବୋଇଲେ ସେ ଅନ୍ୟାୟ କିସ କଲା
ତଳପୁରେ ରହିବାରୁ ନ ରଖି ଦେଲ ପରା ।
ମଞ୍ଚରେ ରହିବାରୁ ତାପରେ ହେଲ ତ୍ୱରା
ସ୍ୱର୍ଗପୁରକୁ ପୁଣି ସେ ମନ କଲା ପରା ।
ଦୟାକୁ ଦୈତ୍ୟବୀର ତୁମ୍ଭର ବୋଲ କରି
ଧର୍ମ କଲା ଲୋକକୁ ବିଚାରୁଚୁ ମାରି ।
ଇନ୍ଦ୍ରପଦ ଘେନିଣ ଯେ ସ୍ୱର୍ଗରେ ହେଲା ଇନ୍ଦ୍ର
ତାହାଙ୍କୁ ବ୍ରହ୍ମା କିମ୍ପା କରୁଅଛି ରାଗ ।
ଶୁଣିଣ ଦେବବର ଦେବତାଏ କହି
ସ୍ୱର୍ଗରେ ଇନ୍ଦ୍ର କେଉଁ ଅସୁର ହୋଇନାହିଁ ।
କରହେ ପ୍ରତିକାର ରହେ ତାର ଦର୍ପ
ଦେବେ ମଣ୍ଡନି ଦେଲେ ଯେ ସେ ହୋଇଲା ସର୍ପ ।
ଅତି ଗର୍ବ ବହିଲା ଯେ ବୈରୋଚନ ସୁତ
ଦୈତ୍ୟଗଣ ସାଧିଣ ଯେ ସାଧିଲା ଜଗତ ।
ଆମ୍ଭମାନଙ୍କୁ ସେ ବହୁତ ଦୁଃଖ ଦେଲା
ତେଣୁକରି ତୁମ୍ଭଠାରେ ଗୁହାରି କଲୁ ପରା ।
ଦେବେ କହିବାରୁ ଯେ ଶୁଣିଲେ ନାରାୟଣ
ବୋଇଲେ ନିଶ୍ଚେ ଆମ୍ଭେ ହୋଇବୁ ଜନମ ।
କାଶ୍ୟପ କୁଳରେ ଆମ୍ଭେ ନିଶ୍ଚେ ହେବୁ ଜାତ
ସ୍ୱର୍ଗରୁ ବଳିରାଜା ଯିବ ଯେ ତ୍ୱରିତ ।
ଅଦିତିର ଗର୍ଭରେ ଯେ ହେବି ଅବତାର
କରିବ ଅନୁଗ୍ରହ ଦେବେ ରହିବେ ନିରନ୍ତର ।
ଏତେ କହି ବାସୁଦେବ ଅନ୍ତର୍ଦ୍ଧାନ ହେଲେ
ଅନନ୍ତ ଶଯ୍ୟାରେ ପ୍ରବେଶ ଯାଇ କଲେ ।
ଏଥୁ ଅନନ୍ତରେ ଦେବେ ଲୁଚିଲା ସ୍ଥାନେ ଗଲେ
କିଛିଦିନ ଅନ୍ତରେ ନାରାୟଣ ବିଜେକଲେ ।
ଅଦିତିର ଗର୍ଭରେ ଜାତ ହୋଇଲେକ ପୁଣ
କାଶ୍ୟପ ଋଷି ଦେଖି ହରଷ ହେଲେ ଜାଣ ।
ଯେଉଁ କାଳେ ବାସୁଦେବ ହୋଇଲେ ପୁଣ ଜାତ
ବାଉନ ଆଙ୍ଗୁଳ ମାଂସ ଶରୀର ସମ୍ଭୂତ ।
କଜ୍ଜ୍ୱଳ କଳା ଜିଣି ଅଟଇ ଶରୀର
ନୀଳେନ୍ଦ୍ରି ଜଳରେ ଯେହ୍ନେ ଭ୍ରମଇ ଭ୍ରମର
ଏଥୁ ଅନନ୍ତରେ ତୁମ୍ଭେ ଶ୍ରୀରାମ ଚନ୍ଦ୍ର ଶୁଣ
ଦିନକୁ ଦିନ ତେଜ ବିକାଶ ନାରାୟଣ ।
ପାଞ୍ଚ ବରଷେକ କର୍ଣ୍ଣବିନ୍ଧ ସପ୍ତବରଷେ ବିଦ୍ୟାପଢ଼ି
ନବମ ବର୍ଷେ ବଟୁ ହୋଇଲେ ଶ୍ରୀହରି ।

ବ୍ରହ୍ମଚାରୀ ବେଶ ହୋଇ ସେହୁ ପୁଣ
ଚାରି ବେଦ ଅଧ୍ୟାନ ମନ୍ତ୍ର ପଢ଼ି ଜାଣ ।
ବେଦବର ବୋଇଲେ ଜନ୍ମ ଚକ୍ରପାଣି
ବଳିରାଜା ନୃପତିର ଯାଗବଳେ ଜାଣି ।
ତିନିପୁର ରାଜା ଯେ ଅଟନ୍ତି ତହିଁ ମିଳି
ଋଷି ବ୍ରାହ୍ମଣ ଯେ ଅନେକ ତପଶାଳି ।
ବୃହସ୍ପତିଙ୍କ ସଙ୍ଗରେ ଦେବତାଗଣ ଆସି
ଦେଖିଣ ପଚାରନ୍ତି ବଳି ଯେ ନୃପତି ।
ଏହି ଦ୍ୱିଜବର ଅଟନ୍ତି ତୁମ୍ଭର ଯେ କିସ
ବାମନ ବୋଇଲେ ଆମ୍ଭେ କାଶ୍ୟପରସୁତ ।
ତୁ ଏବେ ସ୍ୱର୍ଗରେ ଇନ୍ଦ୍ର କରିଣ ଅଛୁ ଯାଗ
ମାଗନ୍ତା ଲୋକଙ୍କର ଅଟେ ପରମ ଭାଗ୍ୟ ।
ଶୁଣିକରି ବୋଇଲେ ବଳି ନୃପମଣି
ତୁମ୍ଭେ କିସ ମାଗିବ ମୋତେ ମାଗପୁଣି ।
ଦାନ ଦେଲେ ତୁମ୍ଭେ କରିବଟି ପାରକରି
ବିଶେଷ ସାନ ତୁମ୍ଭେ ନୁହଁ ହେ ମନ୍ତ୍ରଚାରି ।
ବାମନ ବୋଇଲେ ତୁମ୍ଭେ ଜାଣିଲ କେମନ୍ତେ
ଦେବ ମନ୍ତ୍ର ପଢ଼ିଲେ କି ଜୀବଙ୍କ ପରତେ ।
ଯାହା ପଚାରିବୁ ରାଜା ସେ କଥା ଦେବି କହି
ସତ୍ୟକରି ଦେବୁ ତୁ ତିନିପାଦ ମହୀ ।
ମୋର ଚରଣରେ ଗଣି ତିନିପାଦ ଦେବୁ
ଯେବେ ତୁ ନ ଦେବୁ ରାଜା ସତ୍ୟକୁ ଲଙ୍ଘିବୁ ।
ତୋତେ ଏକ ରାଜଭୋଗ ଅଭୋଗ ହେବ ପୁଣ
ସତ୍ୟ ଥିଲେ କାଳେ ବଞ୍ଚିବ ରାଜନ ।
ପାରୁଯେବେ ତୁ ବ୍ରାହ୍ମଣ ଶାମବେଦ ବୋଲି
ତେବେ ଯେ ଦେବି ମୁଁ ଯେ ମେଦିନୀ ତିନିପାଦ
ଶୁଣିକରି ଶ୍ରୀହରି ମନୁ ଛାଡ଼ିଲେ ବିଷାଦ ।
ବୋଇଲେ ରାଜନ ହେ ଆସନ ବେଗେ ଦିଅ
ଯେବେ ଶାମବେଦ ଶୁଣିବାର ତୋର ସ୍ନେହ ।
ଶୁଣି ବଳି ନୃପତି ରତ୍ନ ପିଢ଼ା ଦେଲା
ଆସନ କରି ଏଥିରେ ବସହେ ବୋଇଲା ।
ବାମନ ବୋଇଲେ ଏବେ କଥାଏ ତୁମ୍ଭେ ଶୁଣ
ଆସନ କରି ଏବେ ବସ ମୋ ପାଶେଣ ।
ଶୁଣିଣ ବଳିରାଜା ପରମ ତୋଷ ହେଲେ
ବ୍ରାହ୍ମଣ ପାଶେ କନକ ଆସନେ ବସିଲେ ।

ରାଜା ବସିବାର ଦେଖିଣ ବାମନ
କୁଶ ବିଡ଼ା ଛତା ପୋତି ମନ୍ତ୍ର ପୋଥି ପୁଣ ।
ଥୋଇ କରି ବସିଲେ ଆସନ ଶୋଧି କରି
ଛୟାନବେ କୋଟି ରାଜା ବସିଛନ୍ତି ତହିଁପୁରୀ ।
ବାସ୍ତରୀ ଲକ୍ଷ ଯେ ବ୍ରାହ୍ମଣ ପୋଥି ପୁଣ
ତିନିପୁର ସାରସ୍ୱତ ବିଜେ ରାଜାଗଣ ।
ବେଦଶୁଣି ସମସ୍ତେ ଆଶ୍ଚର୍ଯ୍ୟ ମଣନ୍ତି
ରାଜା ଦେବତା ଋଷି ପରଜା ଅଛନ୍ତି ।
ଦଶଦିଗ ପାଳ ନବଗ୍ରହ ଦ୍ୱିଜବର ପୁଣ
ସମସ୍ତେ ବେଢ଼ିଛନ୍ତି ବାମନ ମୂର୍ତ୍ତି କି ଜାଣ ।
ଅସୁରଗଣ ପୂରି ଅଛନ୍ତି ସର୍ବେପୁଣି
କୋଳାହଳ ଶବଦରେ ଚମକେ ମେଦିନୀ ।
ଶୁଣନ୍ତି ସର୍ବଜନେ ନିଶବଦ ହୋଇ
ସମସ୍ତେ ବିଚାରନ୍ତି ଅଳ୍ପ ବୟସ ଏହି ।
ସୁନ୍ଦର ଦିଶୁଅଛି ଅପୂର୍ବ ବାଳ ପୋଇ
କୋକିଳର ବାଣୀ ପ୍ରାୟେ ବଚନ କହଇ ।
ବାମନ ମୂରତି ଏବେ ଉତରୀ ପଇତା
କରରେ କୁଶ ବଟୁ ଚାରିବର୍ଣ୍ଣେ ଚିତା ।
ଲୋଟଣି ଛନ୍ଦେ ବାଳ ବାନ୍ଧିଛନ୍ତି ଏହୁ
ରୂପରେ ସୁନ୍ଦର ଦିଶେ ଚନ୍ଦ୍ରକୁ ଜିଣି ରାହୁ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଦେବତା ଅସୁର ରାଜା ସମସ୍ତେ ବିଚାରି ।
ଯେଣୁ ସେ ବିଷ୍ଣୁ ମାୟା ସକଳଠାରେ ଘୋଟି
ବଳିରାଜା ସହିତେ ସମସ୍ତେ ମୋହ ସେଠି ।
ବଳି ରାଜାକୁ ଚାହିଁ ବାମନ କହେ ପୁଣ
ଧୀର କରି ମନରେ ବେଦ ଏବେ ଶୁଣ ।
ବଳିରାଜା ବୋଇଲେ ବାମନ ଦେବ ଶୁଣ
ଏକଦିନେ କେତେ ବେଦ କରିବ ସନ୍ଧାନ ।
ବାମନ ବୋଇଲେ ଯେବେ ଶୁଣିପାରୁ ରାଏ
ଏକଦିନେ ଚାରିବେଦ ମୁଁ ପଢ଼ି ପାରଏ ।
ବୟାଳିଶି କାଣ୍ଡି ଯେ ମନ୍ତ୍ର ଦେବି ପଢ଼ି
ବସିକରି ଶୁଣ ରାଜା ନିଶ୍ଚୟ ମନ କରି ।
ଶୁଣିଣ ବଳିରାଜା ପଚାରେ ବାମନରେ
ଚାରିବେଦ ନିର୍ଣ୍ଣୟ ଯେ କେବଣ ପ୍ରକାରେ ।
ବୟାଳିଶ କାଣ୍ଡି ଯେ ଅଟଇ ମନ୍ତ୍ର ସାର
କେଉଁ ବେଦ କେତେକାଣ୍ଡ ଅଟେ କି ପ୍ରକାର ।

ବାମନ ବୋଇଲେ ଶୁଣ ହେ ମହୀଧର
ଶ୍ୟାମଦେବ ଗୋଟି ଅଟେ ଶକଳ ପ୍ରକାର ।
ଏଗାର କାଣ୍ଡି ମନ୍ତ୍ର ଏ ବେଦ ଅଙ୍ଗ ଦେହ
ପ୍ରଥମ ବିଧାତା ଶିଖିଲା କରି ସ୍ନେହ ।
ଦ୍ୱିତୀୟ ବେଦନାମ ଋକ୍‌ବେଦ କହି
ଦଶ କାଣ୍ଡି ମନ୍ତ୍ର ଯେ ତାହାର ଅଟେ ଦେହୀ ।
ବାରଣ ବେଦ ଗୋଟି ନୁହଇଁ ମିଶା ଜାଣ
ମୂଷଳ ଅଂଶ ବେଦଏ ଅଟଇ ପ୍ରମାଣ ।
ତୃତୀୟ ବେଦ ଗୋଟି ଯଦୁର୍ବେଦ କହି
ବସନ୍ତ ବର୍ଣ୍ଣ ବେଦ ସବୁ ସ୍ଥାନରେ ବିହରଇ ।
ଏଗାର କାଣ୍ଡି ମନ୍ତ୍ର ଏ ବେଦ ଯେ ହୋଇ
ଏହି ବେଦ ଗୋଟିରେ ବେଦବର ସ୍ନେହୀ ।
ଚତୁର୍ଥ ବେଦ ଗୋଟି ଅଟଇ ଯେ ନୀଳ
ଅଥର୍ବ ବେଦ ସେ ଯେ ସେ' ବେଦ ନିର୍ଗଳ ।
ଅର୍ଥବ ବେଦ ଗୋଟି ଅଟଇ କଳାବର୍ଣ୍ଣ
ସ୍ତ୍ରୀ ବେଦ ଗୋଟି ସାବିତ୍ରୀ ନ୍ୟାୟ ଜାଣ ।
ଦଶକାଣ୍ଡି ମନ୍ତ୍ର ଯେ ସେ ମନ୍ତ୍ରର ସର୍ବ
ସେହି ମନ୍ତ୍ର ପଢ଼ିଲେ ନୃପତି ବେଦ ସର୍ବ ।
ଶୀତଳାଷ୍ଟକ ଉପରେ ଯେତେକ ଜନମ
ଅଧ୍ୟୟନ କଲେ ଦେବୀ ଶୁକଳ ହୁଏ ପୁଣ ।
ଶୁଣିକରି ବଳିରାଜା ପରମ ତୋଷ ହେଲା
ପଢ଼ ପ୍ରଥମ ବେଦ ହେ ବୋଲିଣ ବୋଇଲା ।
ବଳିର ପାଶେ ବାମନ କଲେକ ବେଦ ଧ୍ୱନି
ସ୍ୱର୍ଗରେ ପ୍ରଶଂସା ଯେ କଲେ ସୁର ମୁନି ।
ଶାମବେଦ ପଢ଼ିଲେ ଗାନ୍ଧାର ରାଗକରି
ଦକ୍ଷିଣ କରେ ଜବରେ ଆଳାପ ବେଗକରି
ଶାମବେଦ ପଢ଼ନ୍ତେ କମ୍ପିଲା ବସୁମତୀ
ନିଶବଦ ହୋଇଣ ସଭାରେ ସର୍ବେଛନ୍ତି ।
ବେଦ ଶୁଣି ଅତି ସୁଖ ପାଇଲେ ନୃପତି
ବେନି ଘଡ଼ିରେ ଶାମବେଦ ବାମନ ପଢ଼ି ଲେଟି ।
ଏଗାର କାଣ୍ଡି ବେଦଘଡ଼ିକେ ଦେଲେ ପଢ଼ି
ଶୁଣିଣ ପରମ ତୋଷ ବଳି ଯେ ନୃପତି ।
ଦ୍ୱିତୀୟେ ଋକ୍ ବେଦ ବାମନ କଲେ ଧ୍ୱନି
ଦଶ କାଣ୍ଡି ମନ୍ତ୍ର ଯେ ପଢ଼ିଲେ ବେଗେ ପୁଣି ।
ଛ' ଘଡ଼ି ସମୟ ସେ ସେଥିରେ ବହିଗଲା
ଯଦୁର୍ବେଦ ଓଁକାର ଯେ ବାମନ ପୁଣ କଲା ।

ସେ ବେଦ ପଢ଼ନ୍ତେ ଏଗାର କାଣ୍ଡି ମନ୍ତ୍ର
ଦଣ୍ଡକରେ ଯେ ବେଦ ପଢ଼ିଲେ ପଦ୍ମନେତ୍ର ।
ଚତୁର୍ଥେ ସରନ୍ତି ବେଦ ପଢ଼ିଲେ ବେଗକରି
ଦଶ କାଣ୍ଡ ମନ୍ତ୍ର ତୁରିତେ ଦେଲେ ପଢ଼ି ।
ଶୁଣିକରି ସମସ୍ତେ ମୋହମାନ ଗଲେ
ଅସୁର ମନ ବାମନ ଶୀତଳ କରାଇଲେ ।
ବୈଶାଖ ଶୁକ୍ଳ ଯେ ତ୍ରୟୋଦଶୀ ଦିନ
ବଧୂଙ୍କ ନାମେ ବାରେ ଅଟଇ ପ୍ରମାଣ ।
ଏଗାର ଘଡ଼ି ସମୟରେ ବେଦମନ୍ତ୍ର ପଢ଼ି
ଶୁଣିଣ ବଳିରାଜା ମନରେ ଶ୍ରଦ୍ଧାକରି ।
ମାଗ ମାଗ ଦାନ ତୁମ୍ଭେ ବୋଇଲେ ଚକ୍ରବର୍ତ୍ତୀ
ଶୁଣିକରି ହରଷ ଯେ କମଳାର ପତି ।
ବଳି ବୋଇଲେ ବାମନ ମାଗୁ କିନା ଦାନ
ବାମନ ବୋଲେ ମାଗିଛି ତିନିପାଦ ଭୂମି ପୁଣ ।
ବଳି ବୋଇଲେ ବାମନ ଆଉତ ଲୋଭନାହିଁ
ବାମନ ବୋଇଲେ ସେହି ସତ୍ୟରେ ମୋର ସ୍ନେହୀ ।
ବଳି ବୋଇଲେ ମୋର ସେ ବଚନ ସତ୍ୟ
ପ୍ରହଲ୍ଲାଦ ପିତା ମୋର କଲେ ଏକବ୍ରତ ।
ତେଣୁ ସେ ଶ୍ରୀହରିଙ୍କି ଲଭିଲେ କାଳେ କାଳେ
ତୁମ୍ଭେ ଯାହା ମାଗିଲ ମୁଁ ନ ଦେବିଟି ତିଳେ ।
ବାମନ ବୋଇଲେ ପ୍ରହଲ୍ଲାଦଙ୍କୁ ଯିବୁ ବଳି
ଦାନ ଦେଲେ ପ୍ରତିଦିନ ଦେଖିବୁ ନରହରି ।
ଶୁଣିଣ ମନ୍ତ୍ରୀ ବୋଲେ ଶୁଣହେ ବାଳୀବର
ଏ ବାମନ ଗୋଟି ଯେ ଅଟନ୍ତି ଚକ୍ରଧର ।
ଦେବତାଏ କହିବାରୁ ତୁମ୍ଭର ଦୁଷ୍ଟପଣ
ତେଣୁ ଦାନ ମାଗିବାକୁ ଅଇଲେ ନାରାୟଣ ।
ମାୟା ବଳେ ହରି ଯେ ଘେନିବେ ତୋର ଶିରୀ
ଅମର ଗଣଙ୍କର ଛଳରେ ମୁରାରୀ ।
ତୁମ୍ଭେ କିନା ଏ କଥା ନ ଜାଣି ଦାନ ଯାଚ
ଆପଣାର ପଦାର୍ଥ ପରରେ ନେଇ ସଞ୍ଚ ।
ରାଜା ବୋଇଲେ ସେ ଯେବେ ଅଟନ୍ତି ଦାମୋଦର
ଯାଗ ସୁଫଳ ନିଶ୍ଚେ ହୋଇଲା ମୋହର ।
ଦେବଇଁ ଦାନ ନିଶ୍ଚେ ଘେନଇଁ ବନମାଳୀ
ପୂର୍ବରୁ ପାପ ମୋର ଯାଉ ଯେ ନିକିଳି ।
ମନ୍ତ୍ରୀ ତାକୁ ଡିଆରନ୍ତେ ଜାଣିଲେ ଜଗନ୍ନାଥ
ଆପଣେ ତାହାକୁ ଠାରିଦେଲେ ବାମହସ୍ତ ।

ଜାଣିଣ ତୁନି ହୋଇ ରହିଲେ ଶୁକ୍ର ମନ୍ତ୍ରୀ
ବାମନ ବୋଇଲେ ରାଜା ଅଟୁ ପୁଣ୍ୟବନ୍ତୀ ।
ସତ୍ୟ କରିଣ କିମ୍ପା ହୋଇଲ ଏବେ ତୁନି
ମୋହର ବେଦମନ୍ତ୍ର ଶୁଣିଣ ସର୍ବେ ପୁଣି ।
ତୁମ୍ଭର ସତ୍ୟବାକ୍ୟ ସମସ୍ତେ ଛନ୍ତି ଜାଣି
ଦେବୁକି ନ ଦେବୁ କହହେ ନୃପମଣି ।
ହସିଣ ବୋଇଲେ ସେ ଯେ ବଳି ନୃପରାଏ
ଯାହା ମୁଁ ସତ୍ୟ କରିଛି ସେକଥା ଆନ ନୁହେଁ ।
ନିଅ ହେ ଧନ ରତ୍ନ ଯାନ ସୁଖାସନ
ଆନନ୍ଦ ମନରେ ଦେଲି ନିଅ ହେ ବହନ ।
ବାମନ ବୋଇଲେ ମୋର ସେଥିରେ କାର୍ଯ୍ୟ ନାହିଁ ।
ପାଶୋରିଲୁ ରାଜା ମୁଁ ଯାହା ମାଗିଥିଲଇଁ ।
ରାଜନ ବୋଇଲେ ତୋତେ କରିଦେବା ବିଭା
ବାଡ଼ି ବୃତ୍ତି ଶାସନ ଯେ ମଠ ତୋଳିଦେବା ।
ବାମନ ବୋଇଲେ ତୋର ନଷ୍ଟ ଯେ ପ୍ରକୃତି
ଅଜ୍ଞାନୀଙ୍କ ପରାୟେ ତୁ କହୁଛୁ ନୃପତି ।
ଯାହା ମାଗିଲି ମୁଁ ଯେ ତାହାକୁ ନ ଦେଉ
କେସନେକ ଦୈତ୍ୟ ସ୍ୱର୍ଗେ ଇନ୍ଦ୍ର ତୁ ବୋଲାଉ ।
ଭଲ ଆଶ୍ରାକରି ଆମ୍ଭେ ଅଇଲୁ ଯେ ତୋତେ
ଅସୁର ଜାତି ସିନା ତୋଠାରୁ ନାହିଁ ସତ୍ୟେ ।
ମତ୍ତଗଜ ଯେସନେକ ବେଣ୍ଟକୁ ଦେଖି କମ୍ପି
ବାମନ ବଚନେ ବଳି ରାଜା ଯେ ଚମକି ।
ଆସ ଆସ ବାମନ ତୁ ଧରି କୁଶପାଣି
ପ୍ରସନ୍ନ ହୋଇଣ ସେ ଯେ ବୋଇଲା ନୃପମଣି ।
କେବଳ ବାମନ ଯେ କହିଣ ଅଛୁ ଯାହା
ଶ୍ରୀହରିରେ ଦରଶନ ନିତ୍ୟେ ମୋର ପ୍ରିୟା ।
ତୁମ୍ଭେ ତ ବାମନ ସାନ ନ ଜାଣ ହୋ କିଛି
କେଉଁ ଦାନ ନେବାକୁ ହେ ତୁମ୍ଭ ମନଇଛି ।
ବାମନର ବଚନେ ବଳିରାଜା କହେଟି
ଅଳପ ଦାନ ଦେବାକୁ ମୋର ମନ ନ ବଳେଟି ।
ତେଣୁକରି ମନରେ ଏବେ ମୁଁ ଭାଳଇ
ବିମୁଖ ହେଉଛି ତୁମ୍ଭେ ନ ଦେଲାବୋଲି କହି ।
ବାମନ ବୋଇଲେ ମୁଁ ଯେ ଯେତେକ ଭାଜନ
ସକ୍ଷମ ଅନୁକ୍ରମରେ ଘେନିବି ସିନା ଦାନ ।
ତିନି ଅଗ୍ନି ପୂଜିବୁ ଆମ୍ଭେ ଭୂମି ତିନି ପାଦେ
ଯଜ୍ଞ ହୋମ କରିବୁ ରାୟେ ତୋହର ପ୍ରସାଦେ ।

ଶୁଣିଣ ବଳିରାଜା ଘେନିଲା କୁଶପାଣି
ବାମନର କରେ ନେଇ ସମର୍ପିଲେ ପୁଣି ।
ରତ୍ନ ଝରି ଘେନି ଧୂଅନ୍ତେ ବାମନର ପାଦ
ଶୁକ୍ର ମନ୍ତ୍ରୀ ତେଣେ ପାଇଲେ ମନେ ଖେଦ ।
ରାଜାର ସକଳ ସମ୍ପଦ ଏହିକ୍ଷଣି ଯିବ
ମାୟା ରୂପୀ ବାମନ ଅଟନ୍ତି ବାସୁଦେବ ।
କହିଲାର ବୋଲ ମୋର ରାଜା ନ କଲା
ଅତି ଦାନ ପଣରେ ରାଜନ ନାଶ ଗଲା ।
ଏତେ ବୋଲି ଶୁକ୍ରମନ୍ତ୍ରୀ ରତ୍ନ ଝରିରେ ପଶି
ଜଳତୋଳି ଦେଲାବେଳେ ନୀର ଯେ ନ ଖସି ।
ତେଣୁ ବାମନ ହସ୍ତରେ ଜଳ ନ ପଡିଲା
ପାଣି ନ ପଡିବାରୁ ଯେ ବାମନ ଜାଣିଲା ।
ଜାଣିବାରୁ କୋପ ଯେ ସେ କଲେକ ମୁରାରୀ
ବିଚାରିଲେ ଦେବ କାର୍ଯ୍ୟ ଶୁକ୍ର ନାଶକରି ।
କୁଶକୁ ମନ୍ତ୍ରି ନାଳରେ ମାରିଲେ ଦଇତାରୀ
ସେ କୁଶ ଗୋଟି ହୋଇଲା ବଜ୍ର ସଙ୍ଗେ ସରି ।
ଶୁକ୍ରଙ୍କର ନୟନେ ବାଜିଲା କୁଶ ଯାଇ
ଚକ୍ଷୁ କଣା ହେବାରୁ ଶୁକ୍ର ଯେ ପଳାଇ ।
ଯେଣୁ ଶୁକ୍ର ନାଳୁଆରୁ ବାହାର ହୋଇଗଲେ
ବାମନର ହସ୍ତରେ ପଡ଼ିଲା ନୀର ଭଲେ ।
ବଳି ବୋଇଲେ ମୁଁ ଯେ ସତ୍ୟରେ ଦେଲି ଦାନ
ତିନିପାଦ ଭୂମି ଦାନ ଘେନ ହେ ବାମନ ।
ଶୁଣି କରିଣ ଶ୍ରୀହରି ଚରଣ ବଢ଼ାଇଲେ
ଏକପାଦେ ସ୍ୱର୍ଗପୁର ଗୋଟି ଘୋଡ଼ାଇଲେ ।
ଦେଖିକରି ନୃପତି ଯେ ହୋଇଲା ଚକିତ
ମନେ ବିଚାରିଲା ଏ ହୋଇଲା ବିପରୀତ ।
ହସିଣ ବୋଇଲେ ଶ୍ରୀହରି ଶୁଣ ନୃପବର
କାହିଁରେ ବିଶ୍ରାମିବ ମୋର ଆରେକ ପୟର
ବଳି ବୋଇଲେ ମୁଁ ଯେ ଦେଲି ମର୍ତ୍ତ୍ୟପୁର ।
ତେବେ ଆମ୍ଭ ପାଦକୁ ବଢ଼ାଇ ସେଥିର ।
ଶୁଣିଣ ବଳିରାୟ ମର୍ତ୍ତ୍ୟପୁରକୁ ଆସି
ପୂର୍ବରୁ ଏ ବନରେ ତାହାର ନିବାସଟି ।
ଏ ବନେ ବିଜେ କଲା ବଇଲୋଚନ ବଳା
ଦେଖିକରି ଶ୍ରୀହରି ପାଦ ବଢ଼ାଇଲା ।
ବ୍ରହ୍ମଲୋକ ସହିତେ ଘୋଟିଲା ମର୍ତ୍ତ୍ୟପୁର
ଦେଖିଣ ଚକିତ ଯେ ହୋଇଲା ଅସୁର ।

ଶ୍ରୀହରିଙ୍କ ପାଦପଦ୍ମ ଦେଖିଣ ବିଧାତା
ଚରଣେ ଗଙ୍ଗାକୁ ଢାଳେ ଜଗତର ପିତା ।
ଚଉରାଶି କାଠି ଗଙ୍ଗା ଚରଣେ ଗଲା ଲୁଚି ।
ବାମ ଗୋଡ଼ ବୁଢ଼ା ଆଙ୍ଗୁଠି କଣରେଟି ।
ଦେଖିଣ ବଳିରାଜା ଜାଣିଲା ଏହି ସେ ଦଇତାରୀ ।
ସତ୍ୟ ବିଡ଼ିବା ନିମନ୍ତେ ମାୟା ରୂପ ଧରି ।
ରାଜାଙ୍କୁ ଚାହିଁଣ ବାମନ କହେ ପୁଣି
କିମ୍ପାଇଁ ମନେ ବିସ୍ମୟ ହେଉ ନୃପମଣି ।
ଆରେକ ପାଦ ଯେ ମୋତେ ଦିଅ ଦାନ
କେଉଁଠାରେ ସ୍ଥାନ ଦେବୁ ଦିଅ ହେ ରାଜନ ।
ବଳି ରାଜା ବୋଇଲେ ତୁମ୍ଭେ ଶୁଣ ନାରାୟଣ
ତୁମ୍ଭର କଥା ମୋତେ ଅଗୋଚର ପୁଣ ।
ଆରେକ ପାଦ ତୋର ଅଛି ପୁଣ କାହିଁ
ଶୁଣି ନାଭିରୁ ପାଦେକ କାଢ଼ିଲେ ଭାବଗ୍ରାହୀ
ଦେଖିଣ ଆଶ୍ଚର୍ଯ୍ୟ ହେଲେ ବଳି ଯେ ନୃପତି
ବିଚାରିଲା ହରି ମୋର ହରିଲା ବିଭୂତି ।
ଏମନ୍ତ ବିଚାରି ବଳି ପାତାଳ ପୁର ଯାଇ
ସେଥିରେ ବିଷ୍ଣୁପାଦ ସ୍ଥାପିଲେକ ନେଇ ।
ପାତାଳପୁର ଘୋଟିବାରୁ ବଳି ଯେ ବିଚାରି
ମୋର ସତ୍ୟ ପୂରିଲା ହରି ସତ୍ୟ ଅପସରି ।
ଜାଣିକରି ଶ୍ରୀହରି ତିନିପୁରୁ କାଢ଼ିଲେ ପାଦ
କାଢ଼ି ନିଅନ୍ତେ ତିନିପୁର ହୋଇଲା ଆନନ୍ଦ ।
ଦେଖିଣ ବଳିରାୟେ ପାତିଲେକ ଶିର
ବୋଇଲେ ତୁମ୍ଭ ସତ୍ୟ ତୁମ୍ଭେ ପ୍ରତିପାଳ ।
ଶୁଣିକରି ଶ୍ରୀହରି ବଳିକି ଚାପିଦେଲେ ।
ସୁତାଳ ପୁରେ ନେଇଣ ତାହାକୁ ଥୋଇଲେ ।
ସତ୍ୟ ଛଳରେ ଦିବ୍ୟ ଭୁବନ ତାକୁ ଦେଇ
ସୁତାଳପୁରେ ଯତନେ ନେଇଣ ତାକୁ ଥୋଇ ।
ଯେଣୁ ଯେ ବଳିରାଜା ସୁତାଳ ପୁରେ ରହି
ବଳିଦ୍ୱାରେ ବାମନ ବିଜୟ କଲେ ଯାଇ ।
ଦେଖିଣ ବଳିରାଜା ମନ ଆନନ୍ଦ ହୋଇଲା
ବାମନ ଚରଣେ ନମି ପାଇଲି ବୋଇଲା ।
ପ୍ରଭାତରୁ ସନ୍ଧ୍ୟାବେଳେ ଦ୍ୱାରେଣେ ଦରଶନ
ଲୟ ଲଗାଇଲା ଯେ ଶ୍ରୀହରି ଚରଣ ।
ତହୁଁ ସେ ବଳିଦ୍ୱାରେ ରହିଲେ ନାରାୟଣ
ସୁରଗଣ ଘେନି ବ୍ରହ୍ମା ସ୍ତୁତିକଲେ ପୁଣ ।

ବିକ୍ରମ ରୂପଗୋଟି ଧରିଣ ଜଗନ୍ନାଥ
ଦୈତ୍ୟ ରୂପ ତିନିପୁରେ ଧ୍ୱଂସିଲେ ପଦ୍ମନେତ୍ର ।
ବେଦବର ବଚନବାଞ୍ଛା ହୋଇଲା ଯେଣୁ ସିଦ୍ଧି
ସିଦ୍ଧି ବୋଲି ନାମ ଦେଲେ କୃଷ୍ଣନିଧି ।
ବନେ ସକଳ କାର୍ଯ୍ୟ ସିଦ୍ଧ ହୁଏ ଜାଣ
ତେଣୁଟି ଏ ବନଗୋଟି ସିଦ୍ଧାନ୍ତ ପ୍ରମାଣ ।
ଏ ବଚନର ସଂକଳ୍ପ ଜାଣି ମୁଁ ଯେ ପୁଣି
ଏ ବନରେ ଆଶ୍ରମ ମୁଁ କରିଛି ରଘୁମଣି ।
ତାଇ ଏବେ ଶ୍ରୀରାମ ଏ ବନ ଦେଖିବା
ଯାବତ କାଳର ଆମ୍ଭେ ପାପ ଉପେକ୍ଷିବା ।
ପ୍ରତିମା ଚିତ୍ରପଟ୍ଟ ରୂପେ ବିଜେ ବ୍ରହ୍ମ ରାଶି
ଦେଖିବା ନାରାୟଣ ପାଷାଣ ରୂପେ ବସି ।
ସେଠାରୁ ଋଷି ଶ୍ରୀରାମ ଲକ୍ଷ୍ମଣ ତିନିଜଣ
ଦେଖିଲେ ବାମନ ରୂପେ ପ୍ରତ୍ୟକ୍ଷ ନାରାୟଣ ।
ପାଷାଣ ପ୍ରତିମା ଯେ ବାମନ ମୂରତି
ଉଚରି ପଇତା ସେ କନ୍ଧରେ ବହିଛନ୍ତି ।
କଟୀରେ ଶୁକ୍ଳ ବସନ ଶ୍ରୀଅଙ୍ଗେ ଆଭରଣ
ମସ୍ତକରେ ଯୁଡ଼ା ଗୋଟି ବିଶେ ଶୋଭାବନ ।
ଦେଖିଣ ନମସ୍କାର ଯେ କଲେ ତିନିଜଣ
ଶ୍ରୀରାମ ବୋଇଲେ ତୁମ୍ଭ ପ୍ରସାଦେ ମୁନି ପୁଣ ।
ବିଷ୍ଣୁ ଦର୍ଶନେ ଆମ୍ଭର ପାପ କ୍ଷୟ ଗଲା
ଏ ଜନ୍ମ ଆମ୍ଭର ଏବେ ସୁଫଳ ହୋଇଲା ।
ହସିଣ ବିଶ୍ୱାମିତ୍ର ଯେ କହିଲଇଁ ତହିଁ
ଆଜଠାରୁ ପାପ ତୁମ୍ଭର ଗଲା ହେ ରଘୁସାଇଁ ।
ସୁଖୀବନ୍ତ ହୁଅ ବୋଲେ ଗାଧି ରାଜା ସୁତ
ବାମନ ପ୍ରସାଦ ଦେଲେ ଶ୍ରୀରାମର ହସ୍ତ ।
ଲକ୍ଷ୍ମଣ କରେ ନେଇ ଦେଲେ ବ୍ରହ୍ମ ଋଷି
ପ୍ରଣାମ କରି ଚରଣେ ପୂଜିଲେ ଦାଶରଥି ।
ମୁନି ବୋଇଲେ ଶ୍ରୀରାମ ସିଦ୍ଧି ହେଉ ବାଞ୍ଛା
ସୁକଲ୍ୟାଣ ପାଅ ଦଶରଥଙ୍କ ବତ୍ସା ।
ଉଠିଣ ଶ୍ରୀରାମ ପୁଣି କଲେ ନମସ୍କାର
ସେଠାରୁ ଚଳିଯାଇ ପଶିଲେ ବନଘୋର ।
ବନବାସୀମାନେ ପୂଜା କଲେକ ତହୁଁ ଆସି
ଶ୍ରୀରାମ ଏହୁ ବୋଲିଣ ବୋଇଲେ ବ୍ରହ୍ମଋଷି ।
କୃତ କୃତ ହୋଇ ତପୀ ଆଣି ଅର୍ଘ୍ୟ ଦେଲେ
କନ୍ଦମୂଳ ଫଳ ଆଣି ଋଷି ସମର୍ପିଲେ ।
ବିଶ୍ୱାମିତ୍ର ଶ୍ରୀରାମ ଲକ୍ଷ୍ମଣ ତିନିଜଣ
ଭୁଞ୍ଜିଣ ସନ୍ତୋଷ ଯେ ହୋଇଲେକ ପୁଣ ।
ସେ ଦିନ ରଜନୀ ଯେ ବଞ୍ଚିଲେ ସେ ସ୍ଥାନ
ବଳରାମ ଦାସ ସେବେ ଶ୍ରୀହରି ଚରଣ ।

**ଆଦ୍ୟକାଣ୍ଡର ଦ୍ୱିତୀୟ ଖଣ୍ଡ ସଦାଜୟେ ସମ୍ପୂର୍ଣ୍ଣ**



# ଆଦ୍ୟକାଣ୍ଡ ୩ୟ

ଈଶ୍ୱର କହନ୍ତି ଯେ ପାର୍ବତୀ ଆଗରେ
ସେଦିନ ତିନିଜଣ ରହିଲେ ସେଠାରେ ।
ପ୍ରଭାତୁ ଉଠିଣ ଯେ ନିତ୍ୟକର୍ମ ସାରି
ସନ୍ଧ୍ୟା ସୁମିରଣ ପିତୃଲୋକ ଦେଲେ ବାରି ।
ଏଥୁ ଅନନ୍ତରେ ଯେ ବିଶ୍ୱାମିତ୍ର ମୁନି
ସେଠାରୁ ଚଳିଗଲେ ଶ୍ରୀରାମ ଲକ୍ଷ୍ମଣଙ୍କୁ ଘେନି ।
ପ୍ରବେଶ ହେଲେ ଯାଇ ଆପଣା ଆଶ୍ରମ
ବିଶ୍ୱାମିତ୍ର ବୋଇଲେ ତୁମ୍ଭେ ଶୁଣ ହେ ଶ୍ରୀରାମ ।
ଏହିଠାରେ ଯାଗ ମୁନି ଦେଖହେ ତୁମ୍ଭେ ପୁଣ
ଯାଗ କରୁ କରୁ ଅସୁର ଧାପ ଦେଲେ ପୁଣ ।
ଦେଖିଲେ ଶ୍ରୀରାମ ଲକ୍ଷ୍ମଣ ବିସ୍ତାର ସ୍ଥାନ ତହିଁ
ବେନିଯୁଣ ଆୟତନ ନିର୍ମଳ ଅଟେ ଭୂଇଁ ।
ପ୍ରବାଳ ମଢ଼ିଆ ଯେ ଭାଙ୍ଗିଣ ପଡ଼ିଅଛି
ଏହି ଯାଗଶାଳ ଗୋଟି ଅଗ୍ନିରେ ଭସ୍ମଟି ।
ଦେଖିଣ ଶ୍ରୀରାମ ଚନ୍ଦ୍ର ମୁନିଙ୍କୁ ପଚାରି
ବିସ୍ତାର ସ୍ଥାନରେ ଯାଗ ଆରମ୍ଭ ତୁମ୍ଭରି ।
ବିପ୍ର ଋଷି ରାଜା ପରଜା ବରିଲକି
କେଉଁ ରୂପେ ଯାଗ ଏଥିରେ କରୁଥିଲ ହେ ଋଷି ।
ବିଶ୍ୱାମିତ୍ର ବୋଇଲେ ଶୁଣ ହେ ରାମଚନ୍ଦ୍ର
ସ୍ୱୟଂମ୍ଭର ଆମ୍ଭେ ନୁହଇ ଉଦଯୋଗ ।
ଯାଗ ସିନା କରିବାକୁ ଋଷି ବ୍ରାହ୍ମଣ ବରିବା
ଫଳମୂଳ ଦେଇଣ ତାହାଙ୍କୁ ବୋଧିବା ।

ଶ୍ରୀରାମ ବୋଇଲେ ଋଷି ନୁହଇଁ ଏଭାର
ତୁମ୍ଭେ ଦେବତା ଋଷି ଯେ ଆଗ ବର ।
ମଞ୍ଚରୁ ଋଷି ପରଜା ବ୍ରାହ୍ମଣ ରାଜା ବର ପୁଣି
ଭଲ ରାଜା ଚାରି ସହସ୍ର ଅଣାଅ ଜାଣି ଶୁଣି ।
ଚାରି ଦିଗରୁ ରାଜା ଆସିବେ ଚାରି ସହସ୍ର
ରାଜାଙ୍କ ସଙ୍ଗରେ ବିପ୍ର ପରଜା ବିଶେଷ ।
ପାତାଳ ନାଗ ରାଜା ଋଷି ଯେ ପୁଣି
ସିଦ୍ଧ ଋଷି ଅଇଲେ ଯାଗ ସୁଫଳ ବୋଲି ଜାଣି ।
ଶୁଣିଣ ବିଶ୍ୱାମିତ୍ର ପରମ ତୋଷ ହେଲେ
ନାରଦ ଦୁର୍ବାସା ଯେ ଅଗସ୍ତି ସୁମରିଲେ ।
ଶୁଣିଣ ତିନି ମୁନି ପ୍ରବେଶ ହେଲେ ଆସି
ଶ୍ରୀରାମଙ୍କୁ ଦେଖିଣ ମନରେ ହେଲେ ତୋଷି ।
ବିଶ୍ୱାମିତ୍ର ବୋଇଲେ ନାରଦ ତଳପୁର ଯିବ
ନାଗ ଋଷି ସିଦ୍ଧ ଋଷି ବରିଣ ଆଣିବ ।
ବେନିଦିନେ ଏହିଠାରେ ହେବେ ପରବେଶ
ତେବେ ଯାଗ କରିବାର ହୋଇବ ବିଶେଷ ।
ଶୁଣିଣ ନାରଦ ପାତାଳ ପୁରକୁ ଗଲେ
ନାରଦ ଯିବାରୁ ଅଗସ୍ତି ମୁନିଙ୍କୁ କହିଲେ ।
ବୋଇଲେ ସ୍ୱର୍ଗପୁର ଯାଅ ହେ ବେଗ ପୁଣ
ସକଳ ଦେବତାଙ୍କୁ କର ହେ ବରଣ ।
ସୁର ରାଜା ଚାରି ମେଘ ଦଶଦିଗ ପାଳ
ନବଗ୍ରହ ବ୍ରହ୍ମା ଶିବ ବରି ଆଣିବ ସତ୍ୱର ।
ଶୁଣିଣ ଅଗସ୍ତି ମୁନି ସ୍ୱର୍ଗପୁର ଗଲେ
ସକଳ ଦେବତା ସୁର ରାଜା ବରିଲେ ।
ବ୍ରହ୍ମାଶିବ ନବଗ୍ରହ ଦିଗପାଳ ବରି
ଚାରି ମେଘ ବରିଣ ଅଗସ୍ତି ବିହରି ।
ଦୁର୍ବାସାଙ୍କୁ ବୋଇଲେ ବିଶ୍ୱାମିତ୍ର ଋଷି
ମଞ୍ଚପୁର ବିପ୍ର ରାଜା ଋଷିଙ୍କି ବରିବଟି ।
ଶୁଣିଣ ଦୁର୍ବାସା ଯେ ବେଗେ ଚଳିଗଲେ
ବାରକୋଟି ଋଷି ସଙ୍ଗେ ରାଜାଙ୍କୁ ବରିଲେ ।
ବେନି ଲକ୍ଷ ବ୍ରାହ୍ମଣଙ୍କୁ ବରିଣ ଋଷି ପୁଣ
ଏଥୁ ଅନନ୍ତରେ ଦେବୀ ପାର୍ବତୀ ଯେ ଶୁଣ ।
ତିନି ପୁରକୁ ତିନି ଋଷି ଯିବାରୁ ବିଶ୍ୱାମିତ୍ର
ମୟ ଦୈତ୍ୟକୁ ସୁମରଣା କଲେକ ତ୍ୱରିତ ।
ଜାଣିଣ ମୟଦୈତ୍ୟ ପ୍ରବେଶ ରଜନୀରେ
ବେନି ଯାଗ ଶାଳା କଲେ ରଜନୀ ଭିତରେ ।

ହୋମ କୁଣ୍ଡ ମେଘନାଦ ପାଚେରି ବୁଲାଇଣ
ପୂର୍ବ ପଶ୍ଚିମ ଦ୍ୱାର ନିର୍ମା କଲେ ପୁଣ ।
ସେହି ରଜନୀରେ ସେ ନିଜପୁର ଗଲା
ମୟଦଇତ ଯିବାରୁ ରଜନୀ ଶେଷ ହେଲା ।
ଶ୍ରୀରାମ୍ ଲକ୍ଷ୍ମଣ ମୁନି ଦେଖିଲେ ଯେ ପୁଣ
ଶ୍ରୀରାମ ପଚାରିଲେ ଏ ଦେବଙ୍କ ଭିଆଣ ।
ସେ ଦିନ ଦିବସ ଶେଷ ରଜନୀ ହୋଇଲା
ବିଶ୍ୱାମିତ୍ର ବିଶ୍ୱକର୍ମା ମନରେ ସୁମରିଲା ।
ଜାଣିଣ ବିଶ୍ୱକର୍ମା ରଜନୀରେ ଆସି
ବତିଶ କୋଟି ଘର ତିଆରି ପ୍ରବାଳଶି ।
ବତିଶ କୋଟି ବୃକ୍ଷମୂଳ ଛାମୁଣ୍ଡିଆ
ଅଗୁରୁ ଚନ୍ଦନ ରଖିବାରେ ଋଷିଙ୍କର ପ୍ରିୟା ।
ବିଶ୍ୱକର୍ମା ଯିବାରେ ରଜନୀ ଶେଷ ହେଲା
ଶ୍ରୀରାମ ଲକ୍ଷ୍ମଣ ଦେଖିଲେ ଋଷିଙ୍କ ପ୍ରତିଜ୍ଞା ପରା ।
ବିଚାରିଲେ ଶ୍ରୀରାମ ଏ ଋଷିମାନଙ୍କୁ ବରି
ଏଡ଼େକୃତ୍ୟ ହେଲା ସିନା ଦେବତାଙ୍କର ମେଳି ।
ଶ୍ରୀରାମ ଲକ୍ଷ୍ମଣ ମୁନି ସ୍ନାନ ଯାଇକଲେ
ସନ୍ଧ୍ୟା ତର୍ପଣ ସାରି ପିତୃଙ୍କୁ ବାରି ଦେଲେ ।
ଫଳ ମୂଳ ଭୋଜନ କଲେକ ତିନିଜଣ
ଏହି ସମୟରେ ରଜନୀ ହେଲା ପୁଣ ।
ସୁରଭି ବିଶ୍ୱାମିତ୍ର କଲେ ସୁମରଣ
ଜାଣିକରି କାମଧେନୁ ଉପଗତ ପୁଣ ।
ଫଳମୂଳ ଘୃତସର ଛାମୁଣ୍ଡିଆରେ ଥୋଇ
ତଣ୍ଡୁଳ ହାଣ୍ଡି କାଠ ସେ ଘରେ ରଖାଇ ।
ଯାଗଶାଳା ପାଶରେ ସୁରଭି ରହି ପୁଣ
ରଜନୀ ପାହିବାରୁ ଦିନ ହେଲା ଜାଣ ।
ଉଠିଣ ବିଶ୍ୱାମିତ୍ର ଶ୍ରୀରାମଙ୍କୁ ଦେଖାଇଲେ
ଯାଗର ବିଧି ମୋତେ ମିଳିଲା ଏବେ ଭଲେ ।
ଏତେ କହିଣ ସ୍ନାହାନ ଶଉଚ କରିଗଲେ
କଉଶିକ ନଦୀରେ ସ୍ନାନ ତର୍ପଣ ଯେ କଲେ ।
ଏହି ସମୟରେ ନାରଦ ଋଷି ମିଳି
ନାଗ ଋଷି ସିଦ୍ଧି ଋଷି ନାଗବଳ ସଙ୍ଗକରି ।
ବେନି କୋଟି ଋଷି କୋଟିଏ ନାଗପୁଣ
ଆବର ଯେତେ ନାଗ ବିପ୍ର ଥିଲେ ଜାଣ ।
ଦେଖି ତାଙ୍କୁ ବିଶ୍ୱାମିତ୍ର ଆନନ୍ଦ ପୁଣ ହେଲେ
ଧନ୍ୟରେ କଳହ ଋଷି ବୋଲି ପ୍ରଶଂସିଲେ ।

ଏଥୁ ଅନନ୍ତରେ ଶୁଣଗୋ ଶାକମ୍ଭରୀ
ମଧ୍ୟପୁର ଯାଏ ଦୁର୍ବାସା ଗଲେ ଚଳି ।
ନବକୋଟି ଋଷି ଯେ ଲକ୍ଷେକ ବ୍ରାହ୍ମଣ
ଚାରି ସହସ୍ର ରାଜା ଘେନି ଅଇଲେ ଋଷି ପୁଣ ।
ଲୋମପାଦ ଅଇଲେ ନ ଅଇଲେ ଦଶରଥ
ଦଶରଥ ବୋଇଲେ ମୋର ଯାଉଛନ୍ତି ପୁତ୍ର ।
ପ୍ରବେଶ ଦୁର୍ବାସା ଯେ ସିଦ୍ଧବନେ ଯାଇ
ଦେଖିଲେ ବିଶ୍ୱାମିତ୍ର ହରଷ ମନ ହୋଇ ।
ବୋଇଲେ ଧନ୍ୟ ତୁମ୍ଭେ ଦୁର୍ବାସା ମୁନିବର
ତିନିଦିନେ ସବୁଙ୍କୁ ଯେ ବରିଲ ସତ୍ୱର ।
ରାଜାମାନଙ୍କୁ ଘର ଋଷିମାନଙ୍କୁ ବୃକ୍ଷ ମୂଳ
ବିପ୍ରଙ୍କୁ ସ୍ଥାନଦେଲେ ଛାମୁଣ୍ଡିଆ ତଳ ।
ଶ୍ରୀରାମଙ୍କୁ ବୋଇଲେ ଯେ ଜଗ ବେନିଦ୍ୱାର
ବେନିଭାଇ ଧନୁଶର ଘେନିଣ ବେଗେ ଚଳ ।
ହୋଇଲା ଗହଳ ଯେ ଆସିବେ ଦୈତ୍ୟବଳ
ଯେ ରୂପେ ଯାଗ ମୋର ହୁଅଇ ସଫଳ ।
ଶୁଣିଣ ଶ୍ରୀରାମ ଯେ ବୋଇଲେ ଲକ୍ଷ୍ମଣକୁ
ତୁହି ଏବେ ଚଳରେ ପଶ୍ଚିମ ଦ୍ୱାରକୁ ।
ଶ୍ରୀରାମଙ୍କ ବଚନରେ ଲକ୍ଷ୍ମଣ ଚଳିଗଲେ
ପଶ୍ଚିମ ଦ୍ୱାରେ ଯାଇ ପ୍ରବେଶ ହୋଇଲେ ।
ଦେଖିଲେ ଲକ୍ଷ୍ମଣ ଯେ ପଶ୍ଚିମ ଦ୍ୱାରେ ଯାଇ
ଦେଖିଲେ ଅପୂର୍ବ ବନ ଶୋଭା ସେ ଦିଶଇ ।
କଉଶିକ ନଦୀ ଯେ ପଶ୍ଚିମ ଦ୍ୱାରେ ଘେରି
ବହୁଅଛି ନଦୀ ଯେ ନିର୍ମଳ ଦିଶେ ବାରି ।
ଦେଖିଣ ସଉମିତ୍ରି ମନରେ ତୋଷ ହେଲେ
ପିନାକୀ ଧନୁରେ ଗୁଣ ଚଢ଼ାଇଲେ ।
ଅକ୍ଷୟ ତୂଣୀରେ ଯେ ବିଚାରି ରଖେ ଶର
ପଶ୍ଚିମ ଦ୍ୱାରରେ ବସି ହୋଇଲେ ନିଶ୍ଚଳ ।
ଏଥୁ ଅନନ୍ତରେ ଯେ ଶ୍ରୀରାମଚନ୍ଦ୍ର ରାୟେ
ପୂର୍ବ ସିଂହଦ୍ୱାରେ ଯେ ବିଜେ କରି ରହେ ।
ଶାରଙ୍ଗ ଧନୁରେ ଯେ ଚଢ଼ାଇ ଗୁଣ ପୁଣ
ଅକ୍ଷୟ ତୂଣୀରେ ରଖିଲେ ନାନାଶସ୍ତ୍ର ପୁଣ ।
ଅଗସ୍ତି ସକଳ ଯେ ଦେବତା ବରି ପୁଣ
ଦଶ ଦିଗପାଳ ନବଗ୍ରହଙ୍କୁ ଯେ ଜାଣ ।
ବେଦବର ସୁରରାଜା ସଦାଶିବ ବରି
ଜାଣିଣ ଦେବତା ଯେ ସଭାକୁ ବେଗେ ଚଳି ।

ସିଦ୍ଧବନ ଉପରେ ଶୂନ୍ୟରେ ଯାଇ ରହି
ଦୁନ୍ଦୁଭି ଶବଦରେ ତିନିପୁର କମ୍ପଇ ।
ଗାନ୍ଧାର ରାଗେ ନୃତ୍ୟ ସୁଧର୍ମା ସଭା ଆଗେ
ଅପସରିମାନେ ନାଚୁଛନ୍ତି ନାନାରଙ୍ଗେ ।
ଦେବେ ଆସିବାରୁ ଅଗସ୍ତି ମୁନି ପୁଣି
ତିନିଗୋଟି ଦେବଋଷି ଘେନିଣ ବେଗେ ଜାଣି ।
ସିଦ୍ଧବନେ ଯାଗସ୍ଥାନେ ହେଲେ ପରବେଶ
ଦେଖିକରି ବିଶ୍ୱାମିତ୍ର ହୋଇଲେ ହରଷ ।
ବୋଇଲେ ଦେବତାଏ ଅଇଲେଟିକି ଏବେ
ଅଗସ୍ତି ବୋଇଲେ ସର୍ବେ ରହିଲେ ଶୂନ୍ୟ ଭାଗେ ।
ଶୁଣିଣ ବିଶ୍ୱାମିତ୍ର ଉପରକୁ ଚାହିଁ
ଦେଖିଲେ ସର୍ବଦେବେ ସଭାରେ ଛନ୍ତି ରହି ।
ବିଶ୍ୱାମିତ୍ର ହରଷରେ ବୋଲେ ମୁନି ଶୁଣ
ଶୀତଳ ସଭାରେ ସର୍ବେ ବିଜେ କର ପୁଣ ।
ଶୁଣି ତିନିପୁର ଋଷି ସଭାରେ ବିଜେ କରି
ରାଜା ବିପ୍ର ସଭାରେ ବିଜୟ ବେଗକରି ।
ଦେଖି ବିଶ୍ୱାମିତ୍ର ଚାରି ମେଘକୁ ସୁମରି
ଜାଣି ଚାରି ମେଘ ଘୃତ ଢାଳିଲେ ବେଗକରି ।
ଅଗସ୍ତି ଦୁର୍ବାସା ଯେ ନାରଦ ମାରକଣ୍ଡ
ଚାରି ଋଷିଙ୍କି ଆଚାର୍ଯ୍ୟ କଲେ ମୁନି ବେଗ ।
ପ୍ରଥମରେ ଶାମବେଦ ପଢ଼ିଣ ହୋମ କଲେ
ବ୍ରହ୍ମା ବିଷ୍ଣୁ ସଦାଶିବରେ ଆହୁରି ସମର୍ପିଲେ ।
ଅଗସ୍ତି ହେଲେ ଆଚାର୍ଯ୍ୟ ତିନିଦେବ ତୃପତି
ତିନିଦିନ ଉଭାରେ ଦେବେ ପାଇଲେ ଆହୁତି ।
ମାସେ ବେନିଦିନ ଆହୁତି ଦେଲେ ପୁଣ
ସକଳ ଦେବେ ଯାଇ ହରଣ ହେଲେ ଜାଣ ।
ସୁଧର୍ମା ସଭା ଘେନି ସ୍ୱର୍ଗରେ ବିଜେ ପୁଣ
ଦେବେ ଯିବାରୁ ନାରଦ ଆଚାର୍ଯ୍ୟ ହେଲେ ଜାଣ ।
ହୋମକୁଣ୍ଡ ନିକଟରେ ବସିଲେକ ବେଗ
ନାଗ ଦେବ ସିଦ୍ଧ ଋଷିଙ୍କି ହେଲେ ହବିର୍ଭାଗ ।
ଅଥର୍ବ ବେଦକୁ ଗାୟନ ଋଷି କଲେ
ଅଠର କୋଟି ନାଗଙ୍କୁ ଆହୁତି ସମର୍ପିଲେ ।
ସିଦ୍ଧଋଷି ନାଗଋଷି ବେନିକୋଟି ଜାଣ
ସମସ୍ତେ ହବି ଭୁଞ୍ଜି ହରଷ ହେଲେ ପୁଣ ।
ମାସେ ଦୁଇ ଦିନରେ ପୂର୍ଣ୍ଣ ଆହୁତି କଲେ
ସମ୍ପୂର୍ଣ୍ଣ ବେଦମନ୍ତ୍ର ହେବାରୁ ଚଳିଗଲେ ।

ପାତାଳପୁରେ ଯାଇ ନାଗବଳ ପରବେଶ
ବାସୁକୀ ଆଗେ କହି ସମସ୍ତେ ହରଷ ।
ଏଥୁ ଅନନ୍ତରେ ଦୁର୍ବାସା ଋଷି ପୁଣ
ତହୁଁ ସେ ଆଚାର୍ଯ୍ୟ ଯେ ହୋଇଲେ ଆପଣ ।
ଯଜୁର୍ବେଦ ଗୋଟିକୁ ଯେ କଲେକ ପ୍ରକାଶ
ସକଳ ଋଷି ଆହୁତି ସମର୍ପିବେ ଶେଷ ।
ଏକୋଇଶ ଦିନ ଯେ ଏଥିରେ ବହିଗଲା
ଋଷିମାନଙ୍କୁ ଆହୁତି ସମ୍ପୂର୍ଣ୍ଣ ହୋଇଲା ।
ରାଜୁସି ଯାଗ ଯେ ତହୁଁ ଅନୁକୂଳ କରି
ଏମନ୍ତ ସମୟେ ଅସୁରେ ଯାଇ ମିଳି ।
ଦେଖିଣ ଶ୍ରୀରାମ ଯେ ମନଭେଦୀ ଶର କରି
ପାଚେରୀ ବାଡ଼ିଧରି ଅସୁରଙ୍କୁ ଦେଲେ ଧାଡ଼ି ।
ଯାଗଶାଳେ ଋଷି ବିପ୍ର ପରଜାଗଣେ ରାଜା
ବୃକ୍ଷତଳେ ଋଷିମାନେ ଥୋଇଣ କଲେ ପୂଜା ।
ବିପ୍ରଗଣମାନେ ଯେ ଛାମୁଣ୍ଡିଆ ତଳେ ରହି
ପରଜାଗଣମାନେ ସଭାରେ ଅଛନ୍ତି ରହି ।
ସୁରଭି ଋଷିମାନଙ୍କୁ ଫଳମୂଳ ଦେଲେ
କାମଧେନୁ ବିପ୍ରଙ୍କୁ ଅମୃତପାନ କରାଇଲେ ।
କମ୍ପଇ ମେଦିନୀ ଯେ ମଧପୁର ଜିଣି
ଗହ ଗହ ଶବଦ ଯେ ଶୁଭଇ ଗୋଳ ପୁଣି ।
ଭିତର କୂପ ବାମ୍ପୀ ଅଟାଳୀ ପୋଖରୀ
ସ୍ନାନ ଶଉଚ ଯେ ସେଥିରେ ସର୍ବେ କରି ।
ଏଥୁ ଅନନ୍ତରେ ଯେ ଶ୍ରୀରାମ ଦେଲେ ଡାକ
ବେନି ଦ୍ୱାର ପାଶରେ ଆସି ମିଳିଲେ ଦୈତ୍ୟ ।
ଶୁଣି ବେନି କବାଟ ପକାଇଲେ ନିର୍ବନ୍ଧରେ
ପୂର୍ବଦ୍ୱାରେ ଶ୍ରୀରାମ କୋଦଣ୍ଡ ଧରିକରେ ।
ପଶ୍ଚିମ ଦ୍ୱାରେ ଲକ୍ଷ୍ମଣ ଧନୁଶର ଧରି
କୋଦଣ୍ଡରେ ଗୁଣ ବେଗେ ଦେଲେ ଚାପଧାରୀ ।
ଏଥୁ ଅନନ୍ତରେ ଯେ ଅସୁର ମିଳି ପୁଣ
ନଉ ସହସ୍ର ଅସୁର ବଳ ମାରିଚ ଘେନିଣ ।
ପାଚେରୀ ଚାରିପାଶେ ବେଢ଼ିଲେ ଯାଇ ବେଗେ ।
ଡାକଦେଲେ ଋଷି ବିପ୍ର ପଡିଅଛ ଯୋଗେ ।
ଦେଖିଣ ଶ୍ରୀରାମ ଯେ ମନରେ ବିଚାରିଲେ
କୋଦଣ୍ଡ ଧରିଣ ତୀକ୍ଷ୍ଣ ନାରାଚ ପିନ୍ଧିଲେ ।
ବେକ ଛିଡ଼ି ଅସୁରେ ପଡିଲେ ତଳେ ବେଗେ
ଦେଖି ଯୁଦ୍ଧ କଲେ ଦଇତେ ଯେ ରାଗେ ।

ବୃକ୍ଷମାନେ ଧରି ପିଟନ୍ତି ଶ୍ରୀରାମ ଉପରେ
ବାବଲଶରେ ଶ୍ରୀରାମ ନିବାରଣ କରେ ।
କାଣ୍ଡ ରଡି ରଣ ଗୋଳ ଶୁଭିଲା ଯହୁଁ ଟାଣ
ସ୍ୱର୍ଗରୁ ଦେବତାଏ ଅଇଲେ ଶୂନ୍ୟ ପୁଣ ।
ତଳକୁ ଚାହିଁଲେ ଯେ ଶ୍ରୀରାମ ଦୈତ୍ୟ ରଣ
ଅଗ୍ନିଶର ବସାଇଣ ପେଷିଲେ ଶ୍ରୀରାମ ।
ଭସ୍ମ ହୋଇଗଲେ ଯେ ଦୈତ୍ୟବଳ ପୁଣ
କେତେ ଦୈତ୍ୟଖଣ୍ଡ ବିଖଣ୍ଡ ହୋଇଲେକ ପୁଣ ।
ପୁଣି ବ୍ରହ୍ମଶର ଶ୍ରୀରାମ ବିନ୍ଧିଲେ ଯେ ତହିଁ
ବହୁତ ଅସୁର ଯେ ମରିଣ ଲୋଟେ ଭୂଇଁ ।
ଚାଳିଶ ସହସ୍ର ଦୈତ୍ୟଙ୍କର ଗଳା ବେକ ଛିଡ଼ି
ହୁଁକାର ଶବଦରେ ଶ୍ରୀରାମ ବାଣ ମାରି ।
ଦଶ ସହସ୍ର ବଳଧରି ମାରିଚ ଆଗୁଁସାର
ଶ୍ରୀରାମଙ୍କୁ ସତେ ପୁର କରି ବେଢ଼ିଲେ ଅନର୍ଗଳ ।
ଦୈତ୍ୟ ଡାକ ଦେଲେ ଆଜ ମାନବ ମଲୁ ତୁହି ।
ମୋର ଜନନୀକି ମାରିବାରେ ତୋର ମନେ ନାହିଁ ।
ଆଜ ତୋତେ ମୁଁ ପେଷିବି ଯମ ରାଜା ପୁର
ଭଲ ଯୋଗେ ମୋର ଆଗେ ପଡିଲୁ ଆଜିର ।
ଶୁଣିଣ ବାବଲଶର ଶ୍ରୀରାମ ଯୋଚି ବେଗେ
ମନ୍ତ୍ର ସୁମରିଣ ଯେ ବିନ୍ଧିଲେକ ବେଗେ ।
ହୁଁକାର ଧ୍ୱନି କରିଣ ଶର ପେଷି ଦେଲେ
ଉଡ଼ିଣ ଦୈତ୍ୟମାନେ ଗଗନ ମାର୍ଗେ ଗଲେ ।
ଥୋକେ ଦୈତ୍ୟ ପଡିଲେ ସିନ୍ଧୁ ଗର୍ଭରେ ଯାଇ
କେହୁ ଗିରିରେ ପଡିଣ ଧୂଳି ପାଉଁଶ ହୋଇ ।
ବଡ଼ବା ନଳେ ପଡ଼ି ମିଳାଇ ଥୋକେ ଗଲେ
ମାରିଚ ନିଜ ଆଶ୍ରମେ ଯାଇ ପଡ଼ିଲେ ।
ଶ୍ରୀରାମଙ୍କୁ ଚିତ୍ତରେ ମହାଭୟ କରି
ନିଜ ଆଶ୍ରମେ ରହିଲା ଦଇବ ସୁମରି ।
ମାରିଚ ଅସୁର ତହୁଁ ଉଡ଼ିଣ ପୁଣ ଗଲା ।
ସୁବାହୁ ଆସିଣ ଯେ ହୁଁକାର ନାଦ କଲା ।
ଶ୍ରୀରାମ ଉପରକୁ ପଡ଼ିଲା ପୁଣ ଧାଇଁ
ଅଗ୍ନିଶର ପେଷି ଶ୍ରୀରାମ ଭସ୍ମ କରିଦେଇ ।
ଜଳିଣ ଗଲା ଯହୁଁ ସୁବାହୁ ଅସୁର
ମାଳବଶର ପୁଣି ଧଇଲେ ଶ୍ରୀରାମ ଯେ କର ।
ମନ୍ତ୍ର ସୁମରି ବିନ୍ଧିଲେ ଶ୍ରୀରାମ ଗୁଣ ଟାଣି
ଦଶ ସହସ୍ର ବଳ ପକାଇଲେ ହାଣି ।

ଚାଳିଶ ସହସ୍ର ଦୈତ୍ୟ ଏ ରୂପେ ଶ୍ରୀରାମ ମାରି
ବେଳ ଛାଡ଼ିଲା କାହାର କେହୁ ଭସ୍ମେ ଉଡ଼ି ।
ମାରିଚ ସୁବାହୁ ଦୁହିଁଙ୍କ ସଙ୍ଗେ ଦୈତ୍ୟ ମଲେ
ତିନି ତାଳ ଉଚ୍ଚେ ରକ୍ତ ନଦୀ ବହେ ଭଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ପଶ୍ଚିମ ଦ୍ୱାରେ କଲେ ଲକ୍ଷ୍ମଣ ଯେଉଁ ରୀତି ।
ବିରହ ଦୈତ୍ୟ ମିଳେ ପଶ୍ଚିମର ଦ୍ୱାରେ
ଚାଳିଶ ସହସ୍ର ଦୈତ୍ୟ ଅଛନ୍ତି ସଙ୍ଗତରେ ।
ଲକ୍ଷ୍ମଣ ଦେଖିଣ ଯେ କ୍ରୋଧ ହେଲେ ପୁଣ
ମୋହ ଶର ଯୋଚିଣ ବିନ୍ଧିଲେ ତୀକ୍ଷଣ ବାଣ ।
ଅମୋହ ଶର ପୁଣି ବିରହ ଦୈତ୍ୟ କଲା
ତା ଦେଖି ଲକ୍ଷଣ କୁବେରା ଶରକୁ ମାଇଲା ।
କୋଡ଼ିଏ ସହସ୍ର ଦୈତ୍ୟଙ୍କର କାଟି ଦେଲେ ମୁଣ୍ଡ
ବିରହ ସୁର ଦୈତ୍ୟ କ୍ରୋଧରେ ପ୍ରଚଣ୍ଡ ।
ଅସୁରାଶର ପୁଣି ପ୍ରହାର କଲା ଦୈତ୍ୟ
ଘୋଟିଲା କୁହୁକ ଯେ ନ ଦିଶିଲା ପଥ ।
ଦେଖିକରି ଲକ୍ଷ୍ମଣ ଆଦିତ୍ୟ ଶର କରି
ପଳାଇଲା କୁହୁକ ଯେ ଦିଶେ ଦିଗ ଫେରି ।
ବ୍ରହ୍ମଶର ବସାଇ ଯେ ଲକ୍ଷ୍ମଣ ବିନ୍ଧିଲେ
ପନ୍ଦର ସହସ୍ର ବଳ କାଟି ପକାଇଲେ ।
କଟାଠାରୁ ସର୍ବେ ଯେ ବେନି ଖଣ୍ଡ ହୋଇ
ପଡ଼ିଲେ ଦୈତ୍ୟମାନେ ନିଘଞ୍ଚନ ହୋଇ ।
ବିରହ ଦୈତ୍ୟ ଦେଖି ମାୟା ଯେ ରଚିଲା
ଦେବ ରୂପ ଧରିଣ ବିମାନେ ବସିଲା ।
ପର୍ବତ ଶର ଯେ ଯୋଚିଲା ଗୁଣେ ପୁଣ
ମାରନ୍ତେ ଲକ୍ଷ୍ମଣ ଯେ ବିନ୍ଧିଲେ ବଜ୍ରବାଣ ।
ଦୁଇ ଫାଳ ହୋଇଣ ପର୍ବତ ଫାଟିଗଲା
ବିରହାସୁରକୁ ବଜ୍ର ଶରରେ ସଂହାରିଲା ।
ବୁକୁ ସଳଖେ ଶର ଚଳିଗଲା ପୁଣ
ଆର ପାଖେ ବାହାର ହୋଇଲା ଯାଇଁ ପୁଣ ।
ବିରହାସୁର ଦୈତ୍ୟ ପଡ଼ିଲାକ ତଳେ
କଦମ୍ବାସୁର ମିଳିଲା ଲକ୍ଷ୍ମଣ ଆଗରେ ।
ବିଚିତ୍ର ଗତିକରି ପଥର ପ୍ରହାରିଲା
ଅଙ୍ଗ ତାଳ ଦେଇଣ ଲକ୍ଷ୍ମଣ ବଞ୍ଚାଇଲା ।
ପୁଣ ସେ ତରୁ ଏକ ଉପାଡ଼ିଣ ପୁଣ
ପ୍ରହାର କଲା ନେଇଣ ଲକ୍ଷ୍ମଣ ଅଙ୍ଗେଣ ।

ବାମ ଭାଗରେ ଲକ୍ଷ୍ମଣ ଆଉଜି ଘୁଞ୍ଚିଗଲା
ଦେଖିଣ ଅସୁର ପୁଣ ତାଟକା ହୋଇଲା ।
ନାରାୟଣ ଶସ୍ତ୍ରକୁ ଲକ୍ଷଣ କାଢ଼ି ବେଗେ
ଯୋଚିଣ ଲକ୍ଷ୍ମଣ ବିନ୍ଧିଲେ ଅତି ରାଗେ ।
ଗର୍ଜନ ନାଦକରି ଶର ଚଳିଗଲା
କଦମ୍ବାସୁର ନାଭି ସଳଖେ ପଡ଼ିଲା ।
ପେଟରେ ପଶିଣ ଅନ୍ତ ବିଦାରିଲା ପୁଣ
ପଡ଼ିଲା ଦୈତ୍ୟ ତଳେ ଗଲାକ ଜୀବନ ।
କଦମ୍ବାସୁର ଯେଣୁ ତଳେ ପଡି ମଲା
ବାବଲ ଶର ଲକ୍ଷ୍ମଣ ଧନୁରେ ବସାଇଲା ।
ବିନ୍ଧନ୍ତେ ପାଞ୍ଚ ସହସ୍ର ପଦାତି ବେଳ ଛିଡ଼ି
ଆଉ ଦୈତ୍ୟ ପଳାଇଲେ ଘୋର ରଡ଼ି କରି ।
ବେନି ତାଳ ଉସର୍ଗରେ ରକ୍ତନଦୀ ବହେ
ଦେଖିଣ ଲକ୍ଷ୍ମଣର ସନ୍ତୋଷ ମନ ହୁଏ ।
ଶୂନ୍ୟରେ ଦେବତାଏ ରହି ଦେଖୁଥିଲେ
ରାମ ଯୋଦ୍ଧାପଣ ଦେଖି ପରମ ତୋଷ ହେଲେ ।
ଯୁଦ୍ଧ କରନ୍ତେ ଦଶଦିନ ବହିଗଲା ପୁଣି
ରାତ୍ର ଦିବସେ ଯୁଦ୍ଧ କରନ୍ତି ରାମ ଲକ୍ଷ୍ମଣ ବେନି ।
ଏମନ୍ତ ସମୟରେ ବିଶ୍ୱାମିତ୍ର ଯାଗ ପୁଣ
ଶେଷ ହୋଇ ପୂର୍ଣ୍ଣ ଯେ ଆହୁତି ଦେଲେ ପୁଣି ।
ରାଜସୂ ଯାଗ ସରିବାରୁ ରାଜାମାନେ ପୁଣ
ମେଲାଣି ହୋଇଗଲେ ବେଳକାଳ ଜାଣି ।
ଫିଟିଲା ବେନିଦ୍ୱାର ବଜ୍ର ଯେ କିଳିଣି
ମଡା ରକ୍ତ ଦେଖିଣ ଭାଳନ୍ତି ରାଜା ପୁଣି ।
ସ୍ୱର୍ଗରେ ଦେବତାଏ ଦେଖିଣ ତୋଷ ହେଲେ
ଶ୍ରୀରାମ ଲକ୍ଷ୍ମଣ ଶିରେ ପୁଷ୍ପ ବୃଷ୍ଟି କଲେ ।
ଦୈତ୍ୟକୁ ନାଶିଣ ସୁମିତ୍ରା ସୁତ ପୁଣ
ପୂର୍ବଦ୍ୱାରେ ପ୍ରବେଶ ହେଲେ ବେଗେ ଜାଣ ।
ଶ୍ରୀରାମ ଚରଣରେ ଯାଇଣ ଓଳଗିଲେ
ହସ ହସ ହୋଇ ବଚନ ପ୍ରକାଶିଲେ ।
ରକ୍ତରେ ଜର ଜର ମନ୍ଦାର ପୁଷ୍ପ ପ୍ରାୟେ
ଦେଖିକରି ଶ୍ରୀରାମର ଆନନ୍ଦ ମନ ହୁଏ ।
ବୋଇଲେ ଅସୁରତ ପ୍ରବଳ ଏଥି ବଡ଼
ଆମ୍ଭରେ ବହୁତ ଯେ ଘୋଟିଲେ ନିଶାଚର ।
ଦ୍ୱାର ଫିଟନ୍ତେ ଋଷି ବିପ୍ର ଯେ ଅଇଲେ
ବାହାରେ ସମସ୍ତେ ଆସିଣ ଦେଖିଲେ ।

ଗଡୁଅଛି ମୁଣ୍ଡ ଯେ ମୁର୍ଦ୍ଧନିମାନ ପୁଣ
ରକ୍ତ ନଦୀରେ ଯେ ଭାସି ଯାଉଛନ୍ତି ପୁଣ ।
ଦେଖିଣ ସମସ୍ତେ ତାଟକା ପୁଣ ହେଲେ
ଧନ୍ୟ ଧନ୍ୟ ଶ୍ରୀରାମ ଲକ୍ଷ୍ମଣ ବୋଇଲେ ।
ଧନ୍ୟ ଧନ୍ୟ ପିତା ମାତା ଧନ୍ୟ ତୁମ୍ଭ କୁଳ
ଧନ୍ୟ ବିଶ୍ୱାମିତ୍ର ତୁମ୍ଭେ ତପୀକୁଳଶୀଳ ।
ଚମ୍ପାବତୀ ରାଜ୍ୟର ଯେ ଲୋମପାଦ ରାଏ
କୌଶଲ୍ୟାଙ୍କର ଭ୍ରାତ କୈକୟୀ ପିତାକହେ ।
ଆଜ ଯୁଦ୍ଧେ ପାରିବାର ପଣ ଜଣାଗଲା
ଆଜଠାରୁ ଆମ୍ଭମାନଙ୍କ ଚିନ୍ତା ଯେ ସରିଲା ।
ଦେଖି ଶ୍ରୀରାମ ଲକ୍ଷ୍ମଣ ଓଳଗି ତାଙ୍କୁ ହେଲେ
ସ୍ନାନ ଶଉଚ କର୍ମ ବେଗେ ସେ ସାରିଲେ ।
ଭୋଜନ ଆସି କଲେ ଶୀତଳ ମଣୋହି
ରାଜୁସି ଯାଗ ସମ୍ପୂର୍ଣ୍ଣ ଦେଖିଲେ ଶ୍ରୀରାମ ତହିଁ ।
ରାଜାମାନେ ମେଲାଣି ହୋଇଣ ଚଳିଗଲେ
ଯେ ଯାହାର ନବରେ ଯାଇଣ ମିଳିଲେ ।
କୌଶଲ୍ୟାଙ୍କର ଭ୍ରାତ କୈକେୟୀର ପିତା
ସୁମିତ୍ରାର ପିତା ଲୀଳାବତୀ ଭ୍ରାତ ସ୍ରୋତା ।
ଲୋମପାଦ ରାଜନ ସଙ୍ଗରେ ଚାରିଜଣ
ପ୍ରବେଶ ହୋଇଲେ ଯାଇ ଅଯୋଧ୍ୟା ଭୁବନ ।
ଚାର ଜଣାଇଲା ଯାଇ ଦଶରଥ ଆଗେ
ଚାରି ବାନ୍ଧବ ଲୋମପାଦ ବିଜେ କଲେ ଏବେ ।
ଶୁଣିଣ ଦଶରଥ ପାଛୋଟି ବେଗେ ଆସି
ସିଂହଦ୍ୱାରଠାରେ ମେଳ ହୋଇ ହେଲେ ହସାହସି ।
ଚରଣମାନ ପଖାଳି ବସିଲେ ଜଗତୀରେ
ଦଶରଥ ପୁଚ୍ଛାକଲେ କି କାର୍ଯ୍ୟ ମୋର ପୁରେ ।
ଲୋମପାଦ ବୋଲେ ବିଶ୍ୱାମିତ୍ରଙ୍କ ଯାଗେଗଲୁ
ତିନି ଯାଗ ସରିବାରୁ ମେଲାଣି ହୋଇଲୁ ।
ତୁମ୍ଭର ଦର୍ଶନରେ ଅଇଲୁ ତୁମ୍ଭ ପୁର
ସକଳ କୁଶଳଟି ଅଟଇ ତୁମ୍ଭର ।
ଦଶରଥ ବୋଇଲେ ମୁଁ ସର୍ବଶୁଭେ ଥିଲି
ଶ୍ରୀରାମ ଲକ୍ଷ୍ମଣ ବିନୁ ମୁଁ ଚିନ୍ତାର୍ଥ ହୋଇଲି ।
ଲୋମପାଦ ବୋଇଲେ ତିନିପୁର ଲୋକସୁଖି
ଶ୍ରୀରାମ ଲକ୍ଷ୍ମଣଙ୍କର କ୍ଷତ୍ରୀପଣ ଦେଖି ।
ବାଟରେ ଯାଉ ଯାଉ ତାଡକା ବଧ କଲେ
ବିଶ୍ୱାମିତ୍ର ମୁନି ଯାଗ ହେଲେଣ ରଖିଲେ ।

ଅଶୀସହସ୍ର ଦୈତ୍ୟବଳ ସହସ୍ରେ ସେନାପତି
ମାରିଚ ସୁବାହୁ ଘେନିଣ ପ୍ରବେଶ ଝଟତି ।
ଯାଗର ପୂର୍ବଦ୍ୱାରେ ଶ୍ରୀରାମ ଜଗି ପୁଣ
ପଶ୍ଚିମ ଦ୍ୱାରେ ଲକ୍ଷ୍ମଣ ଶୁଣହେ ରାଜନ ।
ଦଶଦିନ ଯୁଦ୍ଧ ହେଲା ସମସ୍ତଙ୍କୁ ମାରି
ମାରିଚ ବୋଲି ଅସୁର ପଳାଏ ସେହୁ ଫେରି ।
ଦେଖିଣ ଦେବଗଣ ନାଗବଳ ପୁଣ
ହରଷ ହୋଇଲେ ସର୍ବେ ଦେଖିଣ ବୀରପଣ ।
ଦେବେ ପୁଷ୍ପ ବୃଷ୍ଟି କଲେ ଶ୍ରୀରାମର ଶିରେ
ନାଗ ଲୋକ ଅଟୁଟ ମଣି ଦେଲେ ଶ୍ରୀରାମରେ
ତିନିପୁର ଋଷି ଯେ ପାଦ ଅର୍ଘ୍ୟ ଦେଲେ
ସକଳ ରାଜାଗଣ ସୁବର୍ଣ୍ଣ ବୃଷ୍ଟି କଲେ ।
ଦେବ ଯାଗ ନାଗ ଯାଗ ରାଜୁସି ଯାଗ ସାରି
ଦେବତା ନାଗରାଜାମାନେ ଅଇଲୁ ମେଲାଣି କରି ।
ତିନିପୁରେ ଧ୍ୱନି ଶୁଭେ ଶ୍ରୀରାମ ମାନଧାତା
ଦେବ ନାଗ ଋଷିଙ୍କର ସରିଲା ଏବେ ଚିନ୍ତା ।
ଋଷି ବିପ୍ର ଯାଗ ଯେ କରିବେ ବିଶ୍ୱାମିତ୍ର
ତେବେ ସେ କେଳି ଯାଗ ତାଙ୍କର ସମାପତ ।
ଶୁଣିଣ ଦଶରଥ ନୟନୁ ଅଶ୍ରୁ ଗଳି
ବୋଇଲେ ବୃଦ୍ଧକାଳରେ ସେ ମୋର ସଙ୍ଖାଳି ।
ଏମନ୍ତ ବୋଲି ରାୟେ ରୋଦନ ଶାନ୍ତ କଲେ
ରାଣୀମାନଙ୍କ ଆଗରେ ଦାସୀ ଯେ କହିଲେ ।
ବୋଇଲେ ଶ୍ରୀରାମ ଲକ୍ଷ୍ମଣ ଯାଗରେ ନେଲେ ଯଶ
ଅନେକ ଅସୁର ବଳ ମାରିଲେ ବିଶେଷ ।
ଲୋମପାଦ କହିଲେ କହିଲେ ଅଜା ମାମୁଁ
ଶୁଣିକରି ହରଷ ସକଳ ରାଣୀ ତେଣୁ ।
ରାଜାମାନେ ମାଜଣା ହୋଇଣ ସ୍ନାନ କଲେ
ଅମୃତ ଭୋଜନ କରି ସେଦିନ ରହିଲେ ।
ପ୍ରଭାତୁ ଯେ ଯାହା ପୁରେ ଚଳିଗଲେ ପୁଣ
ଏଥୁ ଅନନ୍ତରେ ଯେ ପାର୍ବତୀ ଦେବୀ ଶୁଣ ।
ରାଜାମାନେ ଯିବା ପରେ ବିଶ୍ୱାମିତ୍ର ଋଷି ।
ମାରକଣ୍ଡ ଋଷିଙ୍କୁ ବସାଏ ଆଚାର୍ଯ୍ୟଟି ।
କେଳି ଯାଗରେ ଆହୁରି ଋଷି ସର୍ବେ ଦେଲେ
ଋକ୍‌ବେଦ ପଢ଼ି ବେଦ ଅଧାନ ସେହୁ କଲେ ।
ଋଷି ଆହୁତି ସରିବାର ବିପ୍ରମାନେ ମିଳି
ସକଳ ବିପ୍ରେ ସେଥିରେ ଆହୁତି ଦେଲେ ତୋଳି ।

ଚଉଦ ଦିବସରେ ଯାଗ ସମାପତ
ପୂର୍ଣ୍ଣ ଆହୁତି କରିଣ ବସିଲେ ବିଶ୍ୱାମିତ୍ର ।
ଅଗ୍ନିକି ଶୀତଳ କରି ଯାଗରୁ ଉଠିଲେ
ଋଷି ବିପ୍ରଗଣଙ୍କୁ ମେଲାଣି ବେଗେ ଦେଲେ ।
ଚଳିଲେ ଋଷି ବିପ୍ର ଯେ ଯାହା ଆଶ୍ରମକୁ
ଦେଖଣାହାରୀ ପଥୁକରୀ ଗଲେ ଯେ ଦେଶକୁ ।
ସୁରଭୀ ଚଳିଲା ଯେ ଆପଣା ନିଜ ସ୍ଥାନେ
ବେନି ସଭା ମୟଦୈତ୍ୟ ହରିଲା ତତ୍‌କ୍ଷଣେ ।
ବିଶ୍ୱକର୍ମା ସୁମରନ୍ତେ ଚିତ୍ର ବିଚିତ୍ର ପୁର ଗଲା
ଶ୍ରୀରାମ ସୁମରନ୍ତେ ଶର ବାଡ଼ ଯେ ତୁଟିଲା ।
ଚାରି ମେଘ ଗଲେ ଯେ ଯାହାର ଆଳ
ଯାଗର ସ୍ଥାନେ ସବୁ ଦିଶିଲା ନିର୍ମଳ ।
କେବଳ ଯାଗ ସ୍ଥାନରେ ଋଷି ମଢ଼ିଆ ରହି
ବୈଦୁର୍ଯ୍ୟ ମଢ଼ିଆ ଯେ ତେଜରେ ବିରାଜଇ ।
ଦେଖିଣ ବିଶ୍ୱାମିତ୍ର ଯେ ପରମ ତୋଷ ହେଲେ
ଶ୍ରୀରାମ ଲକ୍ଷ୍ମଣଙ୍କୁ ମୁନି ଚାହିଁଣ ବୋଇଲେ ।
ତୁମ୍ଭର ସକାଶେ ମୋର ଯାଗ ସମାପତ
ବଡ଼ ଦୁଃଖ ପାଇଲେ ଯେ ବେନିଭାଇ ଏଥ ।
ଏଥୁ ଅନନ୍ତରେ ଶୁଣ ଗୋ ହେମବନ୍ତୀ
ଶ୍ରୀରାମ ଲକ୍ଷ୍ମଣ ପୁଣ କଲେ କିସ ରୀତି ।
ମନ୍ତ୍ର ପଢ଼ି ବିଶ୍ୱାମିତ୍ର ଆଶୀର୍ବାଦ କଲେ
ବୋଇଲେ ଭୟ ତୁମ୍ଭର ନ ଥାଉ ସଂଗ୍ରାମରେ ।
ବିଶ୍ୱାମିତ୍ର ହରଷରେ ବିଚାର କଲେ ପୁଣ
ଦଶରଥ ପୁତ୍ରଙ୍କୁ ମୁଁ ଅଛି ଯେ ଆଣିଣ ।
ଅସୁରଙ୍କୁ ମାରିଣ ରଖିବେ ଯାଗ ମୋର
କେମନ୍ତେ ଶୁଝିବି ମୁଁ ଶ୍ରୀରାମ ଉପକାର ।
ଶ୍ରୀରାମଙ୍କୁ ଯେବେ ବିଭା ମୁଁ କରିପାରେ ସୀତା
ତେବେ ମହୀରେ ରହିବ ମୋହର ଯେ କଥା ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ପଚାରନ୍ତି ଋଷି
ମିଥିଲା କଟକ ବାଟେ ଯିବାକି ଆମ୍ଭେ ପଶି
ଜନକ ଋଷି ଯେ କରିଛି ଧନୁ ଯାଗ
ସେ ଯାଗ ଦେଖିଲେ ଶ୍ରୀରାମ ବହୁତ ହେବ ଭାଗ୍ୟ ।
ଶ୍ରୀରାମ ବୋଇଲେ ମୁନିହେ ଯେ ତୋର ଇଚ୍ଛା
ଆମ୍ଭର ମନକୁ ସେ ଯୋଗାଏ ମନବାଞ୍ଛା ।
ଶ୍ରୀରାମଙ୍କ ଠାରୁ ଶୁଣି ଏମନ୍ତ ବଚନ
ଶ୍ରୀରାମଙ୍କୁ ସଙ୍ଗେ ଘେନି ଚଳିଲେ ଋଷି ପୁଣ ।
ବୋଇଲେ ଆସ ବାବୁ ମୋର ସଙ୍ଗେ ଚଳି
ବାଟରେ ଅସୁର ବଳ ବେଢ଼ିଲେ ଆସି କରି ।
ଶ୍ରୀରାମ ଲକ୍ଷ୍ମଣ ସେ ଦେଖିଣ ଯୁଦ୍ଧ କଲେ
ଅନେକ ଅସୁର ମାରି ସେ ସ୍ଥାନୁ ଚଳିଗଲେ ।
ଶ୍ରୋଣିତ ନଦୀ ତୀରେ ଯେ ରହିଲେ ସେଦିନ
କନ୍ଦମୂଳ ଫଳ ସେ ଯେ କଲେକ ଭୋଜନ ।
ଶ୍ରୀରାମ ପଚାରିଲେ ବିଶ୍ୱାମିତ୍ରଙ୍କୁ ତହିଁ
ଏ କାହାର ଦେଶ ଅଟେ କହହେ ତପିସାଇଁ ।
ବିଶ୍ୱାମିତ୍ର ବୋଇଲେ ଶୁଣ ଦଶରଥ କୁମର
ବ୍ରହ୍ମାଙ୍କ କୁମର ଅଟେ କୁଶନାମେ ମୁନିବର ।
ତାଙ୍କଠାରୁ ଚାରି ପୁତ୍ର ହେଲେ ଉତପତ୍ତି
କୁଶସେନ ନାମ ବୋଲିତା ଜ୍ୟେଷ୍ଠ ପୁତ୍ର ଗୋଟି ।
ଦ୍ୱିତୀୟ ପୁତ୍ର ତାର କୁଶ ଯେ ନାଭ ନାମ
ତୃତୀୟ ପୁତ୍ର ଜୟ କ୍ଷତ୍ରୀୟ ବିଦ୍ୟମାନ ।
ବସୁ ବୋଲିକରି ସବୁହୁଁ ସାନ ପୁତ୍ର
ଚାରିହିଁ ବଳବନ୍ତେ ଅଟନ୍ତି ପବିତ୍ର ।
କ୍ଷତ୍ରୀ ସରିସମ ଯେ ନାହାନ୍ତି ତ୍ରିଭୁବନେ
ଚାରିହେଁ ରାଜା ପୁଣ ହୋଇଲେ ଜଗତେଣେ
ଶଶୀ ନାମ ଦେଶର ସାରସା ନୃପତି
ହୁମାବର ନାଭ ନଗ୍ରେ କୁଶନାମେ ନୃପତି ।
କାଉଁରୀ ଦେଶରେ ସାରାବତୀ ପୁରେ
ଅମୃତାନ୍ଧ ସେଥିରେ ହୋଇଲା ନୃପବର ।
ଦେବ ଦେଶରେ ଯେ ବିରଜା ନାମେ ପୁରୀ
ବସୁ ନାମରେ ନୃପତି ସେଥିରେ ବିଜେ କରି ।
ପ୍ରତିଜ୍ଞାବନ୍ତ ସେ ଯେ ଅଟଇ ବସୁରାଜା
ଡରେ ଐରାବତ ତାକୁ କରନ୍ତି ପାଦ ପୂଜା ।
ବସୁ କଟକ ପରିରେ ଆରେକ ପୁର ଥିଲା
ଧର୍ମଦେଶ ପାଟନା ନାମ ଯେ ତାର ଥିଲା ।
ଏବେ ଦିଶୁଅଛି ପଥୁ ଅଲଗା ପର୍ବତ
ମଗଧ ଦେଶ ଏହି ନିକଟେ ରଘୁନାଥ ।
ପଞ୍ଚୁବର୍ଣ୍ଣ ବୋଲିଣ ସେ ସେଥିରେ ନଦୀ ବହି ।
ସଦାଶିବ ଶିରରୁ ଆସୁଅଛି ଧାଇଁ ।
ମଗଧ ଭୁବନେ ଯେ କୁଶନାଭ ରାୟେ
ଦେବକନ୍ୟା ଆଣିଣ ସୁଖରେ ଭୋଗ କରେ ।
ଘୃତ ଯାହ୍ନବୀ ନାମେଣ ଯେ ତାହାର ଯୁବତୀ
ଶତେକ ଦୁହିତା ଯେ ତାହାର ଉତ୍‌ପତ୍ତି ।

ରୂପେ ପଟାନ୍ତର ଯେ ନାହିଁ ତିନିପୁରେ
ମନରେ ବିଚାରେ କୁଶନାଭ ନୃପବରେ ।
ଦୁହିତା ସୁନ୍ଦର ଯୁବା ହେବାରୁ ତାର ପୁଣି
କନ୍ୟା ଅନୁରୂପେ ବର ନ ମିଳିଲେ ଜାଣି ।
ଖୋଜି ବର ନ ମିଳିବାରୁ ନଗ୍ରର ଅନ୍ତରେ
ବିଚିତ୍ର ପୁରେକ ସେଥି କଲା ନୃପବରେ ।
ନାନା ତରୁଲତା ରୋପିଲା ଲୟ ନେଇ
କନ୍ୟାମାନେ କ୍ରୀଡ଼ା ଯେ କଲେ ସେଥିରେ ଥାଇ ।
ଦିନକେ ଜଗତ ପ୍ରାଣ ଦୁହିତାଙ୍କୁ ଦେଖି
କାମଭରେ ମନ ତାର ନୋହିଲା ଉପେକ୍ଷି ।
କନ୍ୟାଙ୍କୁ ଚାହିଁଣ ସେ ଯେ ବୋଲଇ ମରୁତ
ସ୍ୱର୍ଗର ଦେବତା ମୁଁ ଯେ ରୂପରେ ଶୋଭାବନ୍ତ ।
ସମସ୍ତଙ୍କ ହୃଦରେ ମୁଁ ଅଛି ବିଜେ କରି
ମୋହର ପ୍ରାସାଦ ଯେ ସର୍ବ ଜୀବେ ଚଳି ।
ମୁହିଁ ପବନ ଦେବତା ଦେଖ ମୋର ଦୁଃଖ
ମୋତେ ବିଭା ହୋଇଲେ ଭୁଞ୍ଜିବ ତୁମ୍ଭେ ସୁଖ ।
ମୁହିଁ ତୁମ୍ଭଙ୍କୁ ବଶ ଗୋ ହୋଇଲି ସୁନ୍ଦରୀ
ମଦନ ବିହ୍ୱଳିତେ ଅଙ୍ଗ ମୋର ଘାରୀ ।
ଶୁଣିଣ ସୁନ୍ଦରୀ ସର୍ବେ ଲଜ୍ୟାଭର ହୋଇ
ଶତେକ ସୁନ୍ଦରୀ ଯାଇ ଓଳଗି ତାଙ୍କୁ ହୋଇ ।
ବୋଇଲେ ସୁନ୍ଦରୀ ସର୍ବେ ମରୁତ ଦେବ ତୁମ୍ଭେ
କୁଶଧ୍ୱଜ ରାଜାର ଶତେକ ଦୁହିତା ଆମ୍ଭେ ।
ସମସ୍ତେ ଅବିବାହୀ ଭ୍ରତା କାହାର ନାହିଁ ।
ପିତା ନ ଜାଣିଲେ ତୁମ୍ଭଙ୍କୁ ବରିବୁ ଆମ୍ଭେ କାହିଁ ।
ପିତାଙ୍କର ଆଜ୍ଞା ଯେ କେମନ୍ତେ ଭାଙ୍ଗିବଇଁ
ପିତା ସିନା ଆମ୍ଭଙ୍କୁ ଅର୍ଜିଛି ଜନ୍ମ ଦେଇ ।
ପିତା ନ ଜାଣିଲେ ଯେ ନବରୁଁ ଆମ୍ଭେ କେଭେ
ବିଅର୍ଥ ହୋଇଲାଣି ତୁମ୍ଭର ମନ ଏବେ ।
ଶୁଣିଣ ସଙ୍କୋଚ ପୁଣି ପାଇଲେ ପବନ
ଶାପ ଦେଲେ ତାଙ୍କୁ ହୋଇଣ କୋପମନ ।
ଆମ୍ଭର କହିଲା ବୋଲ ନକଲ ସୁନ୍ଦରୀ
କୁବୁଜୀ ହୋଇଥାଅ ତୁମ୍ଭେ ସକଳ ନାରୀ ।
ଏତେ କହି ଅନ୍ତରୀକ୍ଷେ ଗଲେ ଯେ ମରୁତ
କୁବୁଜୀ ହେଲେ ରାଜାର ଶତେକ ଦୁହିତ ।
ଲଜ୍ୟାରେ ନିଜପୁରେ ନଇଲେ ସୁନ୍ଦରୀ
ବାରତା ପାଇଲା ପିତା କୁଶ ଦଣ୍ଡଧାରୀ ।

ଦୁହିତାମାନଙ୍କୁ ଦେଖି ବିକଳିତ ମନ
ବିଚାରେ ଦୁହିତାମାନେ କିମ୍ପାଇ ଏସନ ।
ଜେମାଏ ବୋଇଲେ ପିତା ଶୁଣ ହେ ଉତ୍ତର
ପବନ ଦେବତା ଆସି ମିଳିଲେ ଆମ୍ଭଠାର ।
ବୋଇଲେ ମୋତେ ବର ବେଗେଗୋ ସୁନ୍ଦରୀ
ସମସ୍ତଙ୍କ ଭ୍ରତା ଆମ୍ଭେ ହୋଇବୁ ତୁମ୍ଭରି ।
ଆମ୍ଭେ ନାସ୍ତିକଲୁଁ ଯେ ତାଙ୍କରି କଥା ଶୁଣି
ପିତା ଅଟେ ଆମ୍ଭରଟି ଜୀବର କାରେଣି ।
ଯାହାକୁ ପିତା ଆମ୍ଭର ସମର୍ପିବେ ନେଇ
ସେହି ଆମ୍ଭର ଭର୍ତ୍ତା ମରୁତ ଗୋସାଇଁ ।
ଏ ବଚନ ଶୁଣି ସେ ଆମ୍ଭଙ୍କୁ କୋପ କଲେ
କୁବୁଜୀ ହୁଅ ବୋଲି ସେହୁ ଶାପ ଦେଲେ ।
ଏତେ କହି ପବନ ଯେ ଅନ୍ତରୀକ୍ଷେ ଗଲା
ଶୁଣିଣ କୁଶନାଭ ଯେ ଆନନ୍ଦ ମନ ହେଲା ।
ବୋଇଲେ ଧନ୍ୟ ମୋର କୁଳର ନନ୍ଦନା
ତୁମ୍ଭର ପ୍ରସାଦେ ମୋର କୁଳ ନିର୍ମଳ ସିନା ।
ଅନେକ ପ୍ରଶଂସା କଲେ ନୃପମଣି
ସାଧୁ ସାଧୁ ବୋଇଲେ ଯେ ନଗ୍ରଲୋକ ଶୁଣି ।
ଦୁହିତାମାନଙ୍କୁ ପୁଣି ଘେନି ଯାଏ ରାଯେ
ନିଜ ମନ୍ଦିରରେ ଯେ ପ୍ରବେଶ ଯାଇ ହୁଏ ।
ଶ୍ରୀରାମ ପଚାରିଲେ ଶୁଣ ହେ ବ୍ରହ୍ମମୁନି
ବିଭା ହୋଇଲେଟିକି କୁଶନାଭର ନନ୍ଦିନୀ ।
କଉଶିକ ବୋଇଲେ ଶୁଣହେ ରଘୁନାଥ
ମରୁଚି ନାମରେ ଏକଇ ତପୋବନ୍ତ ।
ସେ ମୁନିଙ୍କ ଊର୍ଦ୍ଧ୍ୱରେତା ଜପ ମନ୍ତ୍ର ଅଟେ ।
ସେ ମୁନିର ତପକୁ ଡରନ୍ତି ସୁରନାଥେ ।
ମନେ ମନେ ଇନ୍ଦ୍ର ବିଚାର କରେ ନିତି
ସ୍ୱର୍ଗର ସମ୍ପଦ ମୋର ହରିବ ନିଶ୍ଚେ ଯତି ।
ଏମନ୍ତ ବିଚାରି ଯେ ଶଚିଦେବୀର ସାଇଁ
ଉଦ୍ୟାନ ଗନ୍ଧର୍ବଙ୍କୁ ଯେ କହିଲା ବେଗେ ଭାଇ ।
ତୋହର ଦୁହିତା ଯେ ସୁନ୍ଦର ସୁକୁମାରୀ
ଅବିବାହୀ ହୋଇଣ ଅଛଇ ସେହୁ ନାରୀ ।
ମରୁଚି ମୁନିର ତପ ବେଗେ କର ନାଶ
ତୁ ଯେ ମୋର ପୁଣ ଅଟୁରେ ନିଜ ଦାସ ।
ଶୁଣିଣ ଗନ୍ଧର୍ବ ଯେ ନଗରେ ବେଗେ ଆସି
ଡକାଇ ଦୁହିତା ଯେ ସୁନ୍ଦର ସୁକେଶୀ ।

ତୁ ମୋର ନନ୍ଦିନୀ ଗୋ କୁଳର ଅଟୁ ସାର
ମୋତେ ଗାଇଣ ଆଜ୍ଞାଦେଲେ ବଜ୍ରଧର ।
ବୋଇଲେ ମରୁଚି ମୁନିର ଯାଇ ଯୋଗଭାଗିଁ
ତୋହର ଦୁହିତା ଯାଇ ହେଉ ତାଙ୍କ ଅର୍ଦ୍ଧିଁ ।
ଶୁଣି ଗନ୍ଧର୍ବ ଦୁହିତା ବେଗେ ଚଳିଗଲା
ମରୁଚି ମୁନି ଚରଣେ ଯାଇ ସେବା କଲା ।
ଶତେଥର ପ୍ରଣାମ କରଇ ପ୍ରତିଦିନ
ନିର୍ମଳ ଶଉଚ ହୋଇ ଜପଇ ଋଷି ନାମ ।
ଷଡ଼ମାସ ଯିବାରୁ ସେ ଋଷି ନୟନ ଯେଫେଡ଼ି
ଗନ୍ଧର୍ବ ଦେବତୀଠାରେ ନେତ୍ର ଗଲା ପଡ଼ି ।
ବୋଇଲେ ସୁନ୍ଦରୀ ଗୋ କେଉଁଠାରେ ଘର
କାହାକୁ ଭଜୁ ତୁ ଯେ ଆସିଣ ଏହିଠାର ।
ଗନ୍ଧର୍ବର ଦୁହିତା ବୋଲଇ କରଯୋଡ଼ି
ଦଇବ ବିଧାତା ଯେ ମୋତେ ଜନ୍ମ କରି ।
ଯୁବାକାଳେ ମୋତେ ନ ଦେଲେକ ବର
କା ଆଗେ କହିବି ମୁଁ ହେଉଛି ନାରଖାର ।
ତେଣୁ ବିଧାତାକୁ ମୁଁ ସୁମରଣା କଲି
କେଉଁଠାରେ ଭର୍ତ୍ତା ମୋର କାହିଁ ନ ପାଇଲି ।
ବିଧାତା ବୋଇଲେ ତୋର ମରୁଚି ମୁନିବର
ଏହା ଶୁଣି ମୁଁ ଆସିଛି ତୁମ୍ଭଙ୍କୁ ମନ ମୋର ।
ଶୁଣି ମରୁଚି ମୁନି ହରଷ ହୋଇଲେ
ବେଦବରକୁ ବେଗେ ସୁମରଣା କଲେ ।
ଜାଣିଣ ବେଦବର ମିଳିଲେ ଆସି ପୁଣ
ସକଳ ବୃତ୍ତାନ୍ତ ତାଙ୍କୁ କହିଲେ ମୁନି ଜାଣ ।
ବେଦବର ବୋଇଲେ ଉଚିତ୍ କଥା ସେହି
ପୁତ୍ର ହୋଇଲେ ସିନା କୁଳଧର୍ମ ରହି ।
ଶୁଣିଣ ମରୁଚି ଋଷି ସେ କନ୍ୟା ବିଭାହେଲେ
ପାଶେ ଥାଇ ବେଦବର ବିଭା କରିଦେଲେ ।
ତେଣୁ ସେ ମରୁଚି ମୁନି ମଢ଼ିଆ କରି ରହି
ଏମନ୍ତେ କେତେ ଦିନ ସେଥିରେ ଗଲା ବହି ।
ସେ ଋଷିର ଚାରିପୁତ୍ର ହୋଇଲେକ ଜାତ
ଚାରିଦିଗରେ ରାଜା ହୋଇଲେ ଚାରିପୁତ୍ର ।
ଚାରିପୁତ୍ର କୁଶନାଭର ଶତେ ଯେ ଦୁହିତା ।
ପବନ ବହିବାରେ ନୋହିଲେ ସେ ଯେ ସ୍ରୋତା ।
ତେଣୁ ପବନ ଦେବତା କୁବୁଜୀ କରିଗଲା
ବ୍ରହ୍ମମୁନି ବିଭାହେଲେ ସୁନ୍ଦର ହେବ ପରା ।

ଅକମଳ ଋଷି ଯେ ପ୍ରତାପି କାଳୀ ଜାଣ
ସେହି ଋଷିଙ୍କି କୁଶନାଭ କଲାକ ବରଣ ।
ଶତେକ ଦୁହିତାଙ୍କୁ ସେ ମୁନିଙ୍କୁ ଦେଲା
ବ୍ରହ୍ମତେଜ ଲାଗନ୍ତେ କୁବୁଜି ରୂପ ଗଲା ।
ଦେଖିଣ କୁଶନାଭ ଯେ ହୋଇଲା ସନ୍ତୋଷ
ନିଜ ପୁରେ ପ୍ରବେଶ ମରୁଚିର ସୁତ ।
ବିଶ୍ୱାମିତ୍ର ବୋଇଲେ ଶୁଣ ହେ ରଘୁନାଥ ।
କନ୍ୟାମାନେ କୁବୁଜୀ ହୋଇଣ ଥିଲେ ଏଥ ।
ତେଣୁ ସେ କୁବୁଜୀ ବନ ସେ ବନକୁ କହି
ଶ୍ରୀରାମଙ୍କ ଆଗେ ବିଶ୍ୱାମିତ୍ର ଯେ ବୁଝାଇ ।
ଅନେକ ଦିନ ଏଥେ କୁଶନାଭ ରାଜା ହେଲା
କର୍ମ ହୀନରେ ତାର ତନୟ ନ ହୋଇଲା ।
ଶତେକ ଦୁହିତା ଯେ ବ୍ରହ୍ମତେଜକୁ ଦେଇ
ଯାଗ ଆରମ୍ଭ କରିଲେ ତହୁଁ ନରସାଇଁ ।
ହୋମ କରନ୍ତେ ସେ ଯେ ଆକାଶୁଁବାଣୀ ଶୁଣି
ନକର ଯାଗ ବୋଲି ବୋଇଲେ ଦେବେ ପୁଣି ।
ଅଳପ ଦିନରେ ହୋଇବ ତୋର ପୁତ୍ର
ସେ ପୁତ୍ରରେ ନିର୍ମଳ ହୋଇ କୁଳ ଗୋତ୍ର ।
ଆକାଶରୁ ବାଣୀ ଯେ ଶୁଣି ରାଜା ପୁଣ
ଯାଗ ନ କଲା ତେଣୁ ବିଚାରି ରାଜନ ।
କାଳେଣ ପୁତ୍ର ତାର ହୋଇଲେକ ଜାତ
କଉସ୍ତୁଭ ନାମ ତାକୁ ଦେଲେକ ତାର ତାତ ।
ରୂପରେ ସୁନ୍ଦର ଯେ ବଳରେ ମହାବଳୀ
ନାହିଁ ତାକୁ ପଟାନ୍ତର ସପତ ଦ୍ୱୀପାବଳି ।
ତାହାର ନନ୍ଦନ ପୁଣ କଉଶିକ ରାୟେ
କଉଶିକ ନନ୍ଦନ ଗାଧି ଯେ ରାଜା ହୁଏ ।
ସେହି ଗାଧିରାଜାର ଅଟେ ମୁଁ ତୁମର
ତେଣୁ ମୁଁ ଗାଧିସୁତ ବୋଲାଏ ଚାପଧର ।
ପିତୃଙ୍କ ଛଳରେ ମୁଁ ଯେ ଯାଗରେ ପ୍ରବେଶ
ମୋର ଯାଗ ରଖିଲ ହେ ଆସିଣ ବେନିଭ୍ରାତ ।
ମୋହର ସାନ ଭଗ୍ନୀ ଯେ ଅଟଇ ସତ୍ୟବ୍ରତୀ
ଅଗସ୍ତିଙ୍କି ପ୍ରଦାନ କଲି ହେ ଦାଶରଥି ।
ସେ ଭଗ୍ନୀ ଅନେକ କାଳ ମୁନି ସଙ୍ଗେ ରହି
କାଳେଣ ନଦୀକି ଯେ ସ୍ନାନ କରି ଯାଇ ।
ଶୁର ବାହିନୀ ନଦୀରେ ମିଶିଣ ବହିଗଲା
ବନ ଗିରି ଜିଣିଣ ସେ ସାଗରେ ପଶିଲା ।

ନଦୀର ସଙ୍ଗେ ମିଶି ପବିତ୍ର ସେ ଯେ ହେଲା
ଅଜାର ନାମ ଗୋଟି ତାଠାରେ ସମ୍ଭବିଲା ।
କଉଶିକ ନଦୀର ପୁଣି ଜଗତେ ପ୍ରସିଦ୍ଧି ।
ପବିତ୍ର ଜଳ ବୁହାଇ ଗିରି ମଧ ଭେଦି ।
ଭଉଣୀର ସଙ୍ଗ ମୁଁ ଯେ ତେଜିଣ ନ ପାରି
ସେହି ନଦୀ କୂଳରେ ଆଶ୍ରମ ମୁଁ ଯେ କଲି ।
ଅନେକ କାଳ ମୁଁ ଯେ ତପରେ ବସିଲି
ଭଗ୍ନୀର ସନ୍ନିଧେ ରହି ଅନେକ ଦିନ ନେଲି ।
ସେ ବନରେ ସିଂହ ଶାର୍ଦ୍ଦୁଳ ମତ୍ତ ଯେଣୁ
ସିଦ୍ଧ ବନେ ରହିଲି ଭୟ କରି ତେଣୁ ।
ଏବେ ଯେ ମୋର କାର୍ଯ୍ୟ ସିଦ୍ଧ ହେଲା
ଯାଗ କରନ୍ତେ ମୋର ଅଙ୍ଗୁପାତକ ଗଲା ।
କଥା ହୁଅନ୍ତେଣ ଯେ ହୋଇଲା ଅର୍ଦ୍ଧ ରାତ୍ରୀ
ଅଷ୍ଟମୀ ତିଥିରେ ଜାଣ ପ୍ରକାଶ ଚନ୍ଦ୍ରଜ୍ୟୋତି ।
ସଗର ମୁନିମାନେ ବୋଇଲେ ଗାଧିସୁତ
ଶ୍ରୀରାମଙ୍କୁ ଅଟଇ ଯେ ଅଳପ ବୟସତ ।
ଅପାର ବେଳ ନିଶି ଯେ ହୋଇଲାଣି ଆସି
କେତେ ଉଜାଗର ହୋଇଣ ଥିବ ବସି ।
କଥା ରୁହାଅ ଶ୍ରୀରାମ ଲକ୍ଷ୍ମଣ ନିଦ୍ରା ଯାନ୍ତୁ
କୋମଳ ଦେହଗୋଟି ଉଶ୍ୱାସ ଏବେ ପାନ୍ତୁ ।
କଉଶିକ ଋଷି ବୋଲେ କଥା ତ ସରିଲା
ରଜନୀ ଆସିଣ ଏବେ ଅର୍ଦ୍ଧରୁ ଗଡ଼ିଲା ।
ଉଠନ୍ତୁ ଶ୍ରୀରାମଚନ୍ଦ୍ର ନିଦ୍ରା ଏବେ ଯାନ୍ତୁ
ବାଟଚଲା ଅଳସ ଯେ ଦେହରୁ ଛଡ଼ାନ୍ତୁ ।
ଏଥୁଅନ୍ତେ ଶୋଇଲେ ସକଳେ ସେଠାର
ରଜନୀ ଶେଷ ହୁଅନ୍ତେ ଉଦୟ ଦିନକର ।
ଶଯ୍ୟା ଛାଡ଼ି ଶ୍ରୀରାମ ଯେ ଶୁଚିବନ୍ତ ହୋଇ
ଶ୍ରୋଣିତ ନଦୀତୀରେ ମିଳିଲେ ବେଗେ ଯାଇ ।
ନାବରେ ବସିପୁଣ ହୋଇଲେ ନଦୀ ପାରି
ସକଳ ମୁନି ରାମ ଲକ୍ଷ୍ମଣ ଆଦି କରି ।
କେତେହେଁକ ବେଳେ ମିଳିଲେ ତେଣେ କୂଳେ
ବିଶ୍ୱାମିତ୍ର ବୋଲେ ଶ୍ରୀରାମଙ୍କୁ ଚାହିଁ ଧୀରେ ।
ଏହିଟି ପୁଣ୍ୟ ନଦୀ ଏଥିରେ ସ୍ନାନକର
ପାପ ନାଶିନୀ ଗଙ୍ଗା ଏହିଟି ରଘୁବୀର ।
ଏ ନଦୀରେ ଅପାର ଯେ ଅଟଇ ମହିମା
ଚତୁର୍ମୁଖେ ଯାହା କହି ନ ପାରେ ବେଦବ୍ରହ୍ମା ।

ଶ୍ରୀରାମ ବୋଇଲେ ଏ ନଦୀ କାହାର ଅଂଶେ ଜାତ
ସଂଶୟ ଫେଡ଼ିଣ ମୋତେ କହ ହେ ତପୋବନ୍ତ ।
ମୁନି କହିଲେ ତୁମ୍ଭେ ଶୁଣ ହେ ରାମଚନ୍ଦ୍ର
ପୂର୍ବରୁ କଥା ଏ ଯେ ଅଟଇ ପ୍ରସିଦ୍ଧ ।
ମେରୁର ଦୁହିତା ଯେ ମେନକା ନାମେ ବାଳୀ
ହେମବନ୍ତକୁ ସେ ଯେ ଦେଲାକ ବିଭାକରି ।
ତାହାଙ୍କଠାରୁ ସମ୍ଭୁତ ହୋଇଲେ ଝିଅ ଦୁଇ
ଗଙ୍ଗା ଜ୍ୟେଷ୍ଠ ଭଉଣୀ ସାମା ଯେ ସାନ ହୋଇ ।
ଶ୍ରୀରାମ ବୋଇଲେ ଏ ଯେ ଗଙ୍ଗା ସ୍ୱର୍ଗବାସି
ମର୍ତ୍ତରେ କିମ୍ପାଇ ବହିଲେକ ପୁଣି ଆସି ।
ବିଶ୍ୱାମିତ୍ର ବୋଲେ ଶୁଣ ହେ ଶ୍ରୀରାମଚନ୍ଦ୍ର
ଗଙ୍ଗା ପୁରାଣ କଥା ଶୁଣ ହେ ନରେନ୍ଦ୍ର ।
ହେମବନ୍ତ ଘରେ ଯେ ପାର୍ବତୀ ଗଙ୍ଗା ଜାତ
ପାର୍ବତୀଙ୍କି ବିଭାହେଲେ ତ୍ରିଲୋଚନ ନାଥ ।
ଗଙ୍ଗାକୁ ବିଭାହେଲେ ବରୁଣ ଦେବତା
ତେଣୁ ସେ ସପ୍ତ ସାଗର ଅଟଇ ଜୀଅନ୍ତା ।
ସେ ବରୁଣ ରାଜା ପୁଣି ଲୀଳାବତୀକି ବିଭା
ତେଣୁ ସେ ଗଙ୍ଗାକୁ ନ କଲେ ଆଉ ଶ୍ରଦ୍ଧା ।
ତେଣୁ ସେ ଗଙ୍ଗା ଦେବୀ ରୁଷିଣ ସ୍ୱର୍ଗ କଲେ
ବେଦବର କମଣ୍ଡଳରେ ଯାଇଣ ରହିଲେ ।
ଅଠର ମନୁ ଉତ୍ତାରୁ ବଳୀ ଜାତ ହେଲା
ବଳୀର ପ୍ରତାପରେ ଦେବତା ଦୁଃଖୀ ପରା ।
ବସୁଦେବଙ୍କୁ କହନ୍ତେ ହୋଇଲେ ମର୍ତ୍ତେ ଜାତ
ବାମନ ରୂପେ ତୁମ୍ଭେ ବଧିଲ ପଦ୍ମନେତ୍ର ।
ଦାନ ଦେଇ ବଳୀ ପାତାଳକୁ ଯାଇ
ଦେଖି ବେଦବର ବାସୁଦେବ ଚରଣ ଧୋଇ ।
ତେତେବେଳେ କମଣ୍ଡଳୁ ଗଙ୍ଗା ବାହାରିଲେ
ବିଷ୍ଣୁର କନିଷ୍ଠ ଆଙ୍ଗୁଳି କଣରେ ଲୁଚିଲେ ।
ଏଥୁ ଅନନ୍ତରେ ଶୁଣ ହେ ରଘୁନାଥ
କୁମ୍ଭ ଋଷି ସାଗରକୁ ଗଲେ ସ୍ନାନର ନିମିତ୍ତ ।
ଗୋବିନ୍ଦ ଦ୍ୱାଦଶୀ ବୁଡ଼ କରନ୍ତେ ଋଷି ଯାଇ
ତରଙ୍ଗ ଲହରୀ ମାରିଲା ତାଙ୍କୁ ନେଇ ।
ଜାଣିଣ ଅଗସ୍ତି ଋଷି ବେଗେ ଚଳିଗଲେ
ସପ୍ତ ସାଗରକୁ ଚଳୁ କରିଣ ପିଇଲେ ।
ତେଣୁ ସାଗର ଶୁଖିଗଲା ପୁଣ
ମନୁଏ ପର୍ଯ୍ୟନ୍ତ ବିଦା ଭୂମି ହେଲା ଜାଣ ।

ଦେଖିଣ ଦେବତାଏ ରବିଙ୍କି କହିଲେ
ଆଦିତ୍ୟ ଦେବତା ସଗର ରାଜାଙ୍କୁ ଜାତ କଲେ ।
ବିଶ୍ୱାମିତ୍ର ବୋଇଲେ ଶୁଣ ହେ ରଘୁସାଇଁ
ତୁମ୍ଭର ଉପର ବଂଶେ ସଗର ରାଜା ହୋଇ ।
ବିଧବା ବିସର୍ବା ଯେ ଅଟନ୍ତି ଦୁଇ ଜେମା
ରବି ତଳେ ନୃପତି ପଣରେ ଗାରିମା ।
ସେ ରାଜା ଦୁହିତା ଚନ୍ଦ୍ର ଦ୍ୱାରା ଯେ ମୁକୁତା
ସଗର ରାଜାଙ୍କୁ ବିଭା କଲେକ ବଳବନ୍ତା ।
ବେନି ରାଣୀଙ୍କି ଘେନିଣ ସଗର କଲେ ଭୋଗ ।
ବେନି ଲକ୍ଷ ବର୍ଷରେ ନୋହିଲା ପୁତ୍ର ଯୋଗ ।
ପୁତ୍ର ନୋହିଲା ଯେଣୁ ସେହି ବେନି ନାରୀ
କଶ୍ୟପ ଋଷିଙ୍କି ସେ ପାଇଣ ସେବା କରି
କାଳେଣ ପ୍ରସନ୍ନ ତାଙ୍କୁ ହୋଇଲେ ଦେବମୁନି
ଅନେକ ପୁତ୍ର ତୁମ୍ଭର ହେଉ ଯେ କାମିନୀ ।
ବହୁ ସେବା ଆମ୍ଭଙ୍କୁ କଲ ଯେ ତୁମ୍ଭେ ଯହୁଁ
ଆମ୍ଭର ବଚନ ଯେ ନିଷ୍ଫଳ କେବେ ନୋହୁ ।
ଏହି ବର ଦେଇ ଯେ ଗଲେ ତପଶାଳୀ
ନିଜ ପୁରେ ପ୍ରବେଶ ସଗର ରାଜା ନାରୀ ।
ପାକ ସ୍ପରଶ ସେ ଯେ ଏକାବେଳକେ ହେଲେ
ସଗର ରାଜା ବୀର୍ଯ୍ୟରେ ଗର୍ଭବାସ ଭଲେ ।
ଗର୍ଭରେ ରହନ୍ତେ ବୀର୍ଯ୍ୟ ବଢ଼ିଲେ ସେଥି ଶିଷ୍ୟ
ଦିନକୁ ଦିନ ରାଣୀ ଛାଡ଼ିଲେ ମୁହାଁସ ।
ଦଶମାସ ସମ୍ପୂର୍ଣ୍ଣେ ଯେ ଚନ୍ଦ୍ରହାର ପ୍ରବସଇ
ପୁତ୍ରେକ ଜାତ ସେ ଯେ କଲେକ ମହାଦେଈ ।
ସେ ପୁତ୍ରର ନାମ ଅସୁଜା ଦେଲେ ଜାଣ
ରୂପ ଗୁଣେ ସୁନ୍ଦର କାମଦେବ ପୁଣ ।
ଏଥୁ ଅନନ୍ତରେ ଶୁଣ ହେ ଦାଶରଥି ।
ମୁକ୍ତା ମହାଦେଈଙ୍କଠାରୁ ତ୍ରିଅମ୍ବିକ ଉପୁଜନ୍ତି ।
ସେ ତ୍ରିଅମ୍ବିକ ବୋଲିଣ ଯାହାକୁ ଜାତ କଲେ
ଷାଠିଏ ସହସ୍ର ଡିମ୍ବ ସେଥିରେ ଭିତର ପୁରେ ।
ଦେଖିବ ବୋଲି ସଗର ରାଜା ଭାଙ୍ଗି ମନକଲା
ଏହି ସମୟେ ସ୍ୱର୍ଗରୁ ଶବଦ ଶୁଭିଲା ।
ଏ ଡିମ୍ବକୁ ବିନାଶ ନ କର ନୃପତି
ତହିଁ ଭିତରେ ପୁତ୍ରମାନେ ଯେ ଅଛନ୍ତି ।
ଲାଉ ମଞ୍ଜି ପ୍ରମାଣେ ଅନେକ ଛନ୍ତି ସୁତ
ଘୃତ କୁମ୍ଭେ ଏହାଙ୍କୁ ନେଇ କର ତୁ ମିଶ୍ରିତ ।
ଯେତେଗୋଟି ଡିମ୍ବ ପୁଣ ତେତେ ଭାଣ୍ଡ ଘେନ
ଯତ୍ନ କଲେ ଘୃତରେ ଉପୁଜେ ନନ୍ଦନ ।
ଶୁଣିଲେ ରାଜା ରାଣୀ ସ୍ୱର୍ଗର ବାଣୀ ପୁଣି
ଅନେକ ଘୃତ କୁଣ୍ଡେ ସମ୍ପାଦିଲେ ଆଣି ।
ଘୃତରେ ଡିମ୍ବ ଭରନ୍ତେ ଡିମ୍ବ ଫାଟିଗଲେ
ସେଥିର ଭିତରୁ ଅନେକ ପୁତ୍ର ଜାତ ହେଲେ ।
ଷାଠିଏ ସହସ୍ର ସେଥିରୁ ଉପୁଜେ କୁମର
ଘୃତ ଲାଗନ୍ତେ ତେଜ ଅତି ଯେ ନିର୍ମଳ ।
ଦଶଦିନରେ କୁମରେ ସମସ୍ତେ ଯୁବା ରୂପ
ସୁନ୍ଦର ପଣେ ସେ ଯେ ଜିଣନ୍ତି କନ୍ଦର୍ପ ।
ଷାଠିଏ ସହସ୍ର ଯେ କୁମର ଉପୁଜିଲେ
ଅଗ୍ନି ଦେବତା ପ୍ରାୟ ସେ ତେଜ ବିକାଶିଲେ ।
ଦିନକୁ ଦିନ କୁମର ହେଲେ ବଳବାନ
ଦେଖିଣ ଆନନ୍ଦ ଯେ ସଗର ରାଜନ ।
ନୃପତି ବିଚାରିଲେ ଯେ କରିବି ମୁହିଁ ଯାଗ
ଏହି ମହୀମଣ୍ଡଳେ ହୋଇବ ମୋର ଭାଗ ।
ଏମନ୍ତ ବିଚାରି ଯାଗ ଆରମ୍ଭିଲେ ସକଳ
ଯବ ଘୃତ ସମିଧ ସଞ୍ଚିଲା ମହୀପାଳ ।
ଇଷ୍ଟ ବନ୍ଧୁ ବରଣ କଲେକ ନୃପତି
ଯତି ଋଷି ବ୍ରାହ୍ମଣ ବରଣ କଲେ ସେହିଟି ।
ଆସିଣ ସମସ୍ତେ ଯେ ହୋଇଲେକ ରୁଣ୍ଡ
ଗହଳରେ ଶବଦ ଯେ ପୂରିଲା ବ୍ରହ୍ମାଣ୍ଡ ।
ଅଶ୍ୱମେଧ ଯାଗକୁ ରାଜା କଲେକ ବରଣ
ନାନା ଦ୍ରବ୍ୟ ସମ୍ପାଦନ କଲାକ ରାଜନ ।
ଲକ୍ଷଣ ବନ୍ତ ଅଶ୍ୱ ବାନ୍ଧିଣ ପୂଜା କରି
ନଗ୍ର ପୁର ମଣ୍ଡାଇଲା ବିଚିତ୍ର ଗତି କରି ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ହେ ରଘୁନାଥ
ଚୋର ରୂପ ଧରିଣ ଅଇଲେ ପୁରୁହୁତ ।
ଯାଗଶାଳାରୁ ଘୋଡ଼ାକୁ ନେଲେ ଫେଡ଼ି
କପିଳ ମୁନିଙ୍କୁ ପଛେ ବାନ୍ଧିଲେ ଯତ୍ନ କରି ।
ରାତ୍ର ପାହିଲା ନୃପତି ଦେଖିଲେ ନାହିଁ ଅଶ୍ୱ
ସଗର ବିଚାରିଲେ ଏ ଯାଗେ ଉତ୍ପାତ ।
ପୁତ୍ରଙ୍କୁ ଡାକିଣ ସେ ଯେ ବୋଇଲେ ନୃପତି ।
ଏଡ଼େକ ଧର୍ମ ମୋର ବିଫଳ ହେଉଅଛି ।
ତୁମ୍ଭେ ପୁତ୍ରେ ଥାଇ ମୋର ଅଶ୍ୱକୁ କେହୁ ନେଲା
ପୁତ୍ରଙ୍କ ମୁଖ ଚାହିଁଣ ନୃପତି ବୋଇଲା ।

ଶୁଣିଣ କୁମରମାନେ କହିଲେ କରଯୋଡ଼ି
ନୁହଁ ରାଜା ବିସ୍ମୟ ଆଣିବୁ ଅଶ୍ୱଲୋଡ଼ି ।
ପିତାଙ୍କୁ ବୋଧ କରି ଲୋଡିଣ ଗଲେ ପୁତ୍ରେ
ଲୋଡ଼ିଲେ ବନକନ୍ଦର ପର୍ବତ ନଦୀ ଯେତେ
ଲୋଡିଣ ନ ପାଇଲେ ଖୋଳିଲେ ବିମ୍ବରି
ପାତାଳେ ଥୋଇଥିବ କେହୁ ଗୋପ୍ୟ କରି ।
ଶସ୍ତ୍ରରେ ବିଦାରିଲେ ମେଦିନୀ ହୃଦେ ନେଇ
ଅଶ୍ୱ ନ ପାଇଣ ସେ ଖୋଳିଲେ କ୍ରୋଧ ବହି ।
ଭୟରେ ଥରହର କମ୍ପିଲା ଧରଣୀ
ଜୀବମାନେ ବହୁତ ବିକଳ ହେଲେ ପୁଣି ।
ବ୍ରହ୍ମାଙ୍କର ଆଗରେ କହିଲେ ପୃଥ୍ୱୀଦେବୀ
ସଗର ପୁଅ ମୋତେ ଧ୍ୱଂସିଲେ ହେ ବିଧି ।
ଦେହ ଖଣ୍ଡ ଖଣ୍ଡ କରି ବିଦାରୁଛନ୍ତି ଦେଖ ।
ଶୁଣିଣ ମେଦିନୀକି ବୋଇଲେ ଚତୁର୍ମୁଖ ।
ନୁହସି ବିକଳ ତୁ ଅଳପ ଦିନ ରହ
ସେ ଦୁଷ୍ଟମାନଙ୍କର ଦହନ ଦିନ ରହ ।
ବିଧାତାର ବଚନରେ ବସୁମତୀ ଯାଇ
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ହେ ରଘୁସାଇଁ ।
ବନଗିରି ବୁଲି ସେହି ମେଦିନୀ ଖୋଜିଲେ
ଲକ୍ଷଣବନ୍ତ ଅଶ୍ୱ ସେ କାହିଁ ନ ପାଇଲେ ।
ବାହୁଡ଼ି କହିଲେ ସେହି ପିତା ଆଗେ ଯାଇ
ଅନେକ ଲୋଡ଼ିଲୁଁ ଦେବ କାହିଁ ଯେ ନ ପାଇ ।
ପିତା ବୋଲେ ସର୍ବେ ତୁମ୍ଭେ ଅଟରେ ଅଧମ
ଜୀଇଁ କିସ କରିବ ତୁମ୍ଭେ ହୁଅରେ ଦହନ ।
ଷାଠିଏ ସହସ୍ର ତୁମ୍ଭେ ମୋହର ନନ୍ଦନ
ତୁମ୍ଭେ ଥାନ୍ତେ ମୋର ଯାଗ ନୋହିଲାକ ପୁଣ ।
ବଳରାମ ଦାସ ଚିନ୍ତେ ଶ୍ରୀହରି ଚରଣ
ଶରଣ ରଖ ମୋତେ ଦଶରଥ ନନ୍ଦନ ।
ଏଥୁ ଅନନ୍ତରେ ଯେ ଶ୍ରୀରାମଚନ୍ଦ୍ର ପୁଣ
ବିଶ୍ୱାମିତ୍ରଙ୍କୁ ଚାହିଁଣ ବୋଲନ୍ତି ବଚନ ।
ସଗର ରାଜାର ଯେ ଅନେକ ପୁତ୍ର ପୁଣି
ବେନିପୁର ଖୋଜିଣ ଅଶ୍ୱ ନ ପାଇଲେ ଆଣି ।
ପିତାର ଆଗେ କହନ୍ତେ ପିତା କ୍ରୋଧ କଲେ
ପିତାଙ୍କ କ୍ରୋଧ ଦେଖି ପୁତ୍ରେ ଖୋଜିଗଲେ ।
କିସ କଲେ କୁମର ସେ କଥା ମୋତେ କହ
ଶୁଣିଣ ବିଶ୍ୱାମିତ୍ର ବୋଲନ୍ତି କରି ସ୍ନେହ ।

ବୋଲନ୍ତି ଦାଶରଥି ଶୁଣ ଏହି ବାଣୀ
ସଗର ନୃପତି ପୁତ୍ରେ ଗଲେ ଛଳ ଘେନି ।
ନଦୀ ନଗ୍ର ବନ ଯେ ବହୁତ ଜିଣି ଗଲେ
ପାତାଳ ବିମ୍ବରେ ଯାଇ ପ୍ରବେଶ ହୋଇଲେ ।
ଦେଖିଲେ ହସ୍ତୀ ଏକ ରହିଛି ପୃଥ୍ୱୀ ଧରି
ବିରୂପାକ୍ଷ ନାମ ବୋଲି ଅଟଇ ତାହାରି ।
ଯେ ଯେବେ ଚଳଇ ଯେ ଚଳଇ ବସୁମତୀ
ଦେଖିକରି କୁମରେ କଲେକ ଭକତି ।
ସେଠାରୁ ଚଳିଗଲେ ସଗର ରାଜା ପୁତ୍ରେ
ଦକ୍ଷିଣ ଦିଗକୁ ପୁଣ ଚଳିଲେ ତୁରିତେ ।
ସେ ଦିଗରେ ଦେଖିଲେ ଯେ ପଦ୍ମଗଜ ହସ୍ତୀ
ମନ୍ଦରଗିରି ସମାନ ଦିଶେ ଦନ୍ତପନ୍ତି ।
ସେ ହସ୍ତିକୀ ନମସ୍କାର କରି ଚଳିଗଲେ
ପଶ୍ଚିମେ ମଣି ହସ୍ତୀ ଯାଇଣ ଦେଖିଲେ ।
କପିଳାସ ପର୍ବତ ସମାନ ଦେହ ଦିଶି
ତାଙ୍କୁ ଓଳଗି ଗଲେ ସକଳ ବାଳଶିଷି ।
ଉତ୍ତର ଦିଗରେ ଦେଖିଲେ ଇନ୍ଦ୍ରଗଜ
ଶୁକଳ ଅମ୍ବର ଗିରି ପରାଏ ଦିଶେ ତେଜ ।
ତସ୍କର କରିଣ ପୁଚ୍ଛା କଲେ ତାଙ୍କୁ
ଶେଷେ ମଘା ଗଜ କହିଲେ ତାହାଙ୍କୁ ।
ଏହିକ୍ଷଣି ପାଇବ ସାଗର ଦ୍ୱୟ ପୁଣ
ଶୁଣିଣ ସନ୍ତୋଷ ହେଲେ ସାଗର ନନ୍ଦନ ।
ଲୋଡ଼ନ୍ତେ ବିମ୍ବରେକ ଦେଖିଲେ ମହାଘୋର
ଖୋଜିବା ପାଇଁ ପଶିଲେ ବିମ୍ବର ଭିତର ।
ଅନେକ ଦୂର ବିମ୍ବରରେ ଗଲେ ଚଳି
ଭେଟିଲେକ ଯାଇଣ କପିଳ ତପଶାଳୀ
ଲକ୍ଷଣବନ୍ତ ଘୋଡ଼ା ବନ୍ଧା ହୋଇଛି ପଛକତି
ଧ୍ୟାୟେ ଧାରଣା ଜପି ବସିଣ ମହାଯତି ।
ଦେଖିଣ କୁମାର ଯେ କୋପମୁଖ ହୋଇ
ବୋଇଲେ ଏହି ତପୀ ଆଣିଲା ଚୋରାଇ ।
ଏତେ ଧର୍ମ ଗୋଟି ଯେ ତପୀର ହେଲା ନାଶ
ଭଣ୍ଡ ତପସ୍ୱୀଏ ଯେ ନ ଯାଇ ବିଶ୍ୱାସ ।
ଏମନ୍ତ ବିଚାରି କୋପକଲେ ରାଜ ପୁତ୍ରେ ।
ଋଷିକି ଭର୍ତ୍ସନାମାନ କଲେ ଯେ ବହୁତେ ।
ବେଢ଼ିଣ ସମସ୍ତେ ଯେ ଧଇଲେ ରୋଷ ଭରେ
ଅଶ୍ୱ ଚୋରାଇ ଆଣିଲ ମାୟା ମୁନିବରେ ।

କେହୁ ମୃଗଛାଲ ଯେ ଉଛୁଡ଼ି ଘେନିଯାନ୍ତି
ଚାଳିଲା କରି କେହୁ କର୍ଣ୍ଣରେ ରଡ଼ି ଦ୍ୟନ୍ତି ।
ଧ୍ୟାନ ଭାଙ୍ଗିଣ ସେ ଯେ କପିଳ ମୁନି ଚାହିଁ
ସଗର ପୁତ୍ରମାନେ ଗଲେ ଦହିଯ୍ୟ ହୋଇ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ହେ ରଘୁପତି
ପୁତ୍ର ନ ଆସିବାରୁ ସଗର ରାଜା ତହୁଁଟି ।
ବିଚାରିଲା ପ୍ରାଣେ ନାହାନ୍ତି ପୁତ୍ରମାନେ
ଜୀବନେ ଥିଲେ ପୁତ୍ର ଆସନ୍ତେଣି ଏଣେ ।
ଏବେ ଅଶ୍ୱକୁ ଲୋଡ଼ି ଆଣିବଇଁ ମୁହିଁ
କର ବେଗେ ଯାଗ ଯେ ହରଷ ମନ ହୋଇ ।
ଏତେ କହି ଅଶ୍ୱ ଚଢ଼ି ଗମନ କରିଗଲେ
ପଶ୍ଚିମ ଦିଗ ଭାଗରେ ପ୍ରବେଶ ଯାଇ ହେଲେ ।
ପଦ୍ମନାଭ ହସ୍ତିକୀ ଦେଖିଣ ପୁଚ୍ଛାକଲା
ସେହି ସେ ମହାତମା ସମସ୍ତ କହିଲା ।
ବୋଇଲା ଏଠାରୁ ସେ କିଛି ଦୂର ଯାଅ
ସକଳ ପୁତ୍ରଙ୍କୁ ଯାଇଣ ଭେଟ ପାଅ ।
ସେ ସ୍ଥାନରେ ତୋର ଅଶ୍ୱ ଦେଖିବୁ ରାଜନ
ଶୁଣିଣ ସଗର ରାଜା ଚଳିଲେ ବହନ ।
କେତେଦୂର ଦେଖିଲେ ପାତାଳକୁ ପଥ
ସେଥିରେ ପଶିଗଲା ସଗର ରାଜନତ ।
ସେଥିରେ ପଶିଲା ପୁଣି ଭୟ ଭ୍ରାନ୍ତି ଛାଡ଼ି
ଦେଖିଲା ସେଠାରେ ପୁତ୍ରମାନେ ଛନ୍ତି ଜଳି ।
ସଗର ପଚାରିଲେ ତବଦ ମନ ହୋଇ
କାହାର ଶାପେ ତୁମ୍ଭେ ହେଉଅଛ ଦହି
ଜଳିବା ପୁତ୍ରେ ବୋଲନ୍ତି ପିତା ବାକ୍ୟ ଶୁଣି ।
ଇକ୍ଷ୍ୱାକୁ ବଂଶରେ ସଗର ନୃପମଣି ।
ତାଙ୍କର ଆମ୍ଭେ ଅଟୁ ଷାଠିଏ ସହସ୍ର ପୁତ୍ର
କର୍ମର ବିପାକେ ପୁଣି ହୋଇଲୁ ଏମନ୍ତ ।
ପିତା ଆମ୍ଭର ଅଶ୍ୱମେଧ ଯଜ୍ଞ ଇଚ୍ଛା କଲେ ।
ଲକ୍ଷଣବନ୍ତ ଅଶ୍ୱ ବାଛି ସେ ବାନ୍ଧିଲେ ।
ରାତ୍ରିରେ ପୁରୁହୁତ ତାଙ୍କୁ ଘେନିଗଲେ
କପିଳ ଋଷି ପଛରେ ତାଙ୍କୁ ବାନ୍ଧିଗଲେ ।
ମୁନିଙ୍କି ଦେଖି ଆମ୍ଭେ ଏଠାରେ ପାଇଲୁ
ଖୋଜିଣ ଭେଟ ଆମ୍ଭେ ବହୁତ ଭର୍ତ୍ସନା କଲୁ ।
ଶୁଣିଣ ମନ୍ଦବାଣୀ ଯେ ମୁନି କୋପ କଲେ
କୋପଭର ହୋଇଣ ଆମ୍ଭଙ୍କୁ ଶାପଦେଲେ ।
ଆବର କଥାଏକ ବୋଇଲେ ବିଚାରି
ତୁମ୍ଭେମାନେ ଦହନ ହୋଇବ ଦିନ ସରି ।
ନିଶାରେ ତୁମ୍ଭ ଅଙ୍ଗ ପୁଣ କଅଁଳିବ
ଆର ଦିନରେ ପୁଣି ଦହିଯ ହୋଇବ ।
ଏମନ୍ତ ବୋଲିଣ ମୁନି ଆମ୍ଭରେ ଶାପ ଦେଲେ ।
ଶୁଣିଣ ସଗର ରାୟେ ମନରେ କୋପ କଲେ ।
କପିଳ ମୁନିଙ୍କି ଯେ ପଚାରେ ରାଜା ଯାଇ
ଏମାନଙ୍କୁ ଦହିଯ କିମ୍ପା କଲହେ ଗୋସାଇଁ ।
କେମନ୍ତ ପ୍ରକାରେ ଏହୁ ହୋଇବେ ମୁକତି
ପ୍ରତିକାର ବଚନ କହ ହେ ବେଗେ ଯତି ।
ମୁନି ବୋଇଲେ ରାୟେ ଅପୂର୍ବ ଭବିଷ୍ୟ
ଯେସନେ କର୍ମରେ ତାଙ୍କର ଅଛଇ ଭବିଷ୍ୟ ।
ସେ ଫଳ ଭୁଞ୍ଜିଣ ଯେ ଅଛନ୍ତି ସକଳ
ଆକାଶର ଗଙ୍ଗା ଯେବେ ମର୍ତ୍ତ୍ୟକୁ ଆଣିପାର ।
ତେବେ ସେ ଶୀତଳ ଯେ ହେବ ତାଙ୍କ ଦେହି ।
ଆନରେ ଶୀତଳ ଯେ ନୁହଇ ମୁନି କହି ।
ତୁମ୍ଭର କୁଳରେ ଜାତହେବେ ଭଗୀରଥି
ମର୍ତ୍ତ୍ୟ ମଣ୍ଡଳରେ ତାଙ୍କର ରହିବ କୀରତି ।
ସେହି ସେ ଆକାଶରୁ ପାରିବେ ଗଙ୍ଗା ଆଣି
ସପତ ସାଗର ଯାକ ପୂରିବ ପୁଣ ପାଣି ।
ତେବେ ସେ ଶୀତଳ ଯେ ହେବ ତାଙ୍କ ଦେହୀ
ଭାଗୀରଥି ଜନମ ହୋଇବେ ଯେ ମହୀ ।
ପିତୃଲୋକ ଶୀତଳ ହୋଇବେ ତାଙ୍କ କୃତେ
ଆନ କେହି ଭାଜନ ନାହିଁ ରଖିବାକୁ ଗୋତ୍ରେ ।
ଶୁଣିଣ ସଗର ରାଜା ଅଇଲେ ଅଶ୍ୱ ଘେନି
ପ୍ରବେଶ ହୋଇଲା ଆଣି ଅଯୋଧାରେ ପୁଣି ।
ଋଷି ବିପ୍ରଙ୍କ ପାଶରେ ତୁରଙ୍ଗ ଆଣି ଦେଲେ
ସେ ବିଧି ବିଧାନ ଯେ ସମସ୍ତ କହିଲେ ।
ଏତେ କହିଣ ରାଜା ଯେ ଯାଗ ଆରମ୍ଭିଲା
ଅଶ୍ୱମେଧ ଯାଗ ତାକୁ ପ୍ରାପତ ହୋଇଲା ।
ଯେଣୁ ସେ ଯାଗ ପୁଣି ହୋଇଲା ସମାପତ
କନକ ସ୍ନାନ ଯେ କଲାକ ନରନାଥ ।
ପୁତ୍ରମାନଙ୍କୁ ପାଇ ଯେ ଅନେକ ଦାନ ଦେଲା
ଅଶ୍ୱବନ୍ତ ପୁତ୍ରକୁ ଅଯୋଧାରେ ରାଜା କଲା
ଯେଣୁ ସେ ଯାଗ ପୁଣି ହୋଇଲା ସମାପତ
ଦେବଲୋକଙ୍କୁ ସ୍ତୁତି ଯେ କଲେକ ବହୁତ ।

କାଳେଣ ସଗର ରାଜା ସ୍ୱର୍ଗପ୍ରାପ୍ତ ହେଲା
ଏଥୁ ଅନନ୍ତରେ ଶୁଣ ହେ ଦଶରଥ ବଳା ।
ଅଶ୍ୱବନ୍ତ ରାଜା ସେ ରାଜ୍ୟରେ ରାଜା ହେଲା ।
ସମୟକା ଯେ ରାଜ୍ୟରେ ପରଜା ପାଳିଲା ।
ଶତେକ ଯାଗ ଧର୍ମ କଲାକ ସେହୁ ପୁଣ
ଦିଲିପ ନାମେ ପୁତ୍ର ହୋଇଲା ତାର ଜାଣ ।
ଦିଲିପକୁ ଅଯୋଧ୍ୟାରେ ସେହୁ ରାଜା କରି
ସେହି ରାଜା ସ୍ୱର୍ଗକୁ ଗଲେ ସ୍ୱଦେହ ଧରି ।
ଦିଲିପ ରାଜା ବଡ଼ ପ୍ରତିଜ୍ଞା ନୃପତି
ଚାରିଦିଗେ ସେ ଯେ ହୋଇଲେ ଚକ୍ରବର୍ତ୍ତୀ ।
ଲକ୍ଷେ ରାଜା ଜିଣି ମଉଡ଼ମଣି ସେତ
ସୂର୍ଯ୍ୟେବଂଶରେ ସେହି ହେଲେ ବି ବିଖ୍ୟାତ ।
ଏକଦିନେ ରାଜନ ଯେ ସ୍ୱର୍ଗ ସାଧିଗଲା
ଦେଖିଣ ସୁରରାଜା ସନମାନ କଲା ।
ସେ ରାଜାଙ୍କୁ ସ୍ୱର୍ଗରେ କଲେକ ଦିଗପାଳ
ପଦ୍ମନିଧି ଶଙ୍ଖନିଧି ଦିଲିପ ନାମେ ବୀର ।
ମର୍ତ୍ତ୍ୟପୁର ଆସିବାକୁ ନୋହିଲା ତାର ଶକ୍ତି
ତେଣୁ ଦେବଅଙ୍ଗ ଧରିଲା ନରପତି ।
ଦିଲିପ ନ ଆସିବାରୁ ଅଯୋଧ୍ୟା ଅଣରାଜ
ଦିଲିପ ରାଣୀମାନେ ଶୋକରେ ନିର୍ବେଦ ।
ଜାଣିଣ ବଶିଷ୍ଠ ସେ ରାଣୀକି ବୁଝାଇଲେ
ତୁମ୍ଭ କୋଳେ ମାଇକା ପୁତ୍ର ହେବ ଯେ ବୋଇଲେ ।
ଯୋଡ଼ି ଯୋଡ଼ି ହୋଇ ତୁମ୍ଭେ ସ୍ତ୍ରୀ ପୁରୁଷ ହୁଅ
ତୁମ୍ଭ ରଜ ସ୍ଖଳିତରୁ ସେଥିରୁ ହେବ ପୁଅ ।
ଶୁଣି ଲକ୍ଷେ ସ୍ତ୍ରୀ ଯେ ସତରେ ଯୋଡ଼ି ଯୋଡ଼ି
ଦଇବର ଯୋଗରେ ରଜ ମତ ଗଳି ।
ବଶିଷ୍ଠ ବୋଇଲେ ଦିଲିପ ପାଟ ତୋର ଜ୍ୟେଷ୍ଠ
ଦିଲିପ ରାଜାର ପାଟ ମାଳତୀ ଅଟେ ଶ୍ରେଷ୍ଠ ।
ଗିଳିଲା ସକଳ ରଜ ଶୁଦ୍ଧ ସ୍ନାନେ ସେତ
ସେ ରଜରୁ କୁମର ହୋଇଲା ସମ୍ଭୂତ ।
ସତ୍ୱର ବରଷରେ ଗର୍ଭରୁ ସୁତ ଜାତ
ସେ କୁମର ରଜରୁ ହେବାରୁ ପୁଣ ଜାତ ।
ଅସ୍ଥି ନଥିବାରୁ ଚାଲିଣ ନ ପାରଇ
ଭୂମିରେ ଗଡ଼ି ଗଡ଼ି ଏତେ ତେଣେ ଯାଇ ।
ସଙ୍କେତ ନ ଦେଖି ଯେ ସକଳ ରାଣୀ ପୁଣି
ବୋଇଲେ ଭାଗୀରଥି ଏ ପୁତ୍ର ନାମ ଜାଣି ।

ଭାଗୀରଥି ବୋଲି ତେଣୁ ଡାକିଲେ ତାହାକୁ
ଏକଦିନେ ଅଷ୍ଟବକ୍ର ଅଇଲେ ଅଯୋଧ୍ୟାକୁ ।
ବାଟରେ ଭାଗୀରଥି ଚାଲିବାର ଦେଖିଲେ
କେତେବେଳେ ପଡ଼େ ଉଠେ କେତେବେଳେ ।
ଦେଖି ଅଷ୍ଟବକ୍ର ତାକୁ ମନରେ କ୍ରୋଧକଲେ
ମୋତେ ବାଉନ୍ସୁ ମନେ ବିଚାରି ଶାପ ଦେଲେ ।
ବୋଇଲେ ସ୍ୱଭାବ ଯେବେ ହୁଅ ନବଯୁବା
ଲକ୍ଷେ ଗୁଣ ପ୍ରକାଶ ହେଉ ତୋର ପ୍ରଭା ।
ଯାହାତୁ ବିଚାରିବୁ ସେକଥା ସିଦ୍ଧହେଉ
ଆମ୍ଭର ବରଯେତେ ପ୍ରାପତ ବାବୁ ହେଉ ।
ଅଳପ ଦିନରେ ତୁ କରିବୁ ପିତୃକାର୍ଯ୍ୟ
ଦେବ କାର୍ଯ୍ୟ ପିତୃକାର୍ଯ୍ୟ ତୋ ହସ୍ତେ ହେଉ ସର୍ବ ।
ଏ ବଚନ ପୁଣି ହେଲେ ଭାଗୀରଥି ଛିଡ଼ା
ନୀଳମଣି ପ୍ରାୟେ ସେ ବିରାଜେ ତେଜ ତୋରା ।
କୁମର ଜ୍ଞାନ ପାଇ ଋଷିଙ୍କି କଲେ ମାନ୍ୟ
ଭାଗୀରଥି ସଙ୍ଗତେ ବକ୍ର ଋଷି ଯେ ଗମନ ।
ବଶିଷ୍ଠ ଡକାଇ ରାଣୀହଂସକୁ କହିଲେ
ଏ କୁମର ଆଜ ରାଜା ହୋଇବ ବୋଇଲେ ।
କୀରତି ସ୍ୱର ମନ୍ତ୍ରୀକି ଅଣାଇ ବେଗେ ପୁଣ
କନକ ସ୍ନାନ ଯେ କରାଇଲେ ବହନ ।
ତୀର୍ଥ ଜଳ ଅଣାଇ ଅଭିଷେକ କଲେ
ଅଯୋଧ୍ୟା ଦେଶରେ ରାଜନ ସେ ହୋଇଲେ ।
ମାଣକେ ପଦିକାଏ ଘରଚଣ୍ଡ ନାହିଁ ଜାଣ
ଏହି ରୂପେ ପରଜାଙ୍କୁ ସୁଖରେ ପାଳେ ପୁଣ ।
ବେନି ବରଷ ଯିବାରୁ ପ୍ରକାଶ ତାର ଗୁଣ
ବିଦ୍ୟା ଶାସ୍ତ୍ର ସିଦ୍ଧାନ୍ତ ଶିଖାଏ ଋଷି ପୁଣ ।
ଦେବ ଅସୁରେ ଯେ ନର ହିଁ ବାନର
ସକଳ ଜୀବ କଥା ଭାଗୀରଥିଙ୍କି ଗୋଚର ।
ବେଦବର ଆସିଣ ଅନେକ ଶାସ୍ତ୍ର ଦେଲେ
ପ୍ରଥମରେ ବେଦବର ସୁମରଣା କଲେ ।
ରଣ କଲା ବେଳରେ ଧନୁର ପ୍ରାୟ ମତ
ସେ ଧନୁର ଗୁଣ ତୁମ୍ଭେ ଶୁଣ ରଘୁନାଥ ।
ଧରିଥିଲେ ଅଭିପ୍ରାୟ ଦିଶଇ ସବୁଙ୍କି
ସୁମରି ବିନ୍ଧିଲେ ଶର ଚିହ୍ନ ନ ରହେ ନିକି ।
ସେ ଶରକୁ ଦେଖିଣ ସମସ୍ତେ ଭୟ କଲେ
ଇନ୍ଦ୍ର ଦେବତା ଆଣି ଦୁହିତା ସମର୍ପିଲେ

ଦେବ ଋଷି ସନାତନ ଦେଲେ ଝିଅ ପୁଣ ।
ତାଙ୍କୁ ବିଭା ହୋଇଲେ ଯେ ଭଗୀରଥି ଜାଣ ।
ରାଜାମାନେ ଭେଟି ମଉଡମଣିକି କନ୍ୟା ଦେଲେ
ଚାରିଦିଗେ ମଉଡ଼ମଣି ଭାଗୀରଥି ହେଲେ ।
ଦେବ ଅସୁର ଯେ ନର ବାନର ରାଜା
ସମସ୍ତେ ଭାଗୀରଥିଙ୍କି କଲେ ପାଦ ପୂଜା ।
ସହସ୍ରେ କନ୍ୟା ଭାଗୀରଥି ହୋଇଲେକ ବିଭା
ଇନ୍ଦ୍ରଙ୍କର ଦୁହିତା ବଡ଼ ପାଟରେ ଯେ ଶୋଭା ।
ବଧୂମାନେ ଆସିବାରୁ ମାତାମାନେ କହି
କେଉଁଠାରେ ଆମ୍ଭ ସ୍ୱାମୀ ଅଛନ୍ତି ଦେଖାନେଇ ।
ଶୁଣିଣ ଭାଗୀରଥି ସକଳ ମାତା ଘେନି
ରଥର ପରେ ବସି ସ୍ୱର୍ଗକୁ ଗଲେ ପୁଣି ।
ଶଙ୍ଖନିଧି ପାଶରେ ହେଲେ ପରବେଶ
ପିତାଙ୍କ ଚରଣରେ ଓଳଗେ ଯାଇ ଶିଷ୍ୟ ।
ଜନନୀ ବୋଲନ୍ତି ଭାଗୀରଥି ସମ୍ଭାଳେ
ତୁମ୍ଭେ ଥାଉ ଆମ୍ଭଙ୍କୁ ଏଦଶା ହେଲା କାଳେ ।
ଶୁଣିକରି ଶଙ୍ଖ ନିଧି ହରଷ ହୋଇଲେ
ଅମୃତ ଲୋଚନେ ମହାଦେଈଙ୍କି ଚାହିଁଲେ ।
ତେଣୁ ଯେ ଲକ୍ଷେକ ମହାଦେଈ ପୁଣ
ଦେବତନୁ ଘେନିଣ ବିଜୟ ସଙ୍ଗେ ପୁଣ ।
ସେଠାରୁ ଭଗୀରଥି ମଞ୍ଚ ପୁରକୁ ଆସି
ନିଜ ରାଜ୍ୟ ଅଯୋଧ୍ୟାରେ ମିଳିଲେକ ଆସି ।
ଭାଗୀରଥି ରାଜା ହୋଇଲେ ସତ୍ୟବାଦୀ
ପୁତ୍ରରୁ ଅଧିକ କରି ପରଜା ଆଛାଦି ।
ଦାନେ ଖାଣ୍ଡେ ସାଚା ଯେ ହେଲେ ମହାରାୟେ
ଦେବ ଦାନବ ସକଳେ କମ୍ପିଲେ ତାର ଭୟେ ।
ଏମନ୍ତେ ସହସ୍ରେ ବରଷ ଯେ ବହିଗଲା
ତିନିପୁରେ ଭାଗୀରଥିର ଚମକ ପଡ଼ିଲା ।
ଦିନେକ ଗଲେ ନୃପତି ମୃଗୟାରେ ଫେରି
ଅଶ୍ୱେକ ଚଢ଼ିଣ ସେ ବନସ୍ତରେ ବୁଲି ।
କୃଷ୍ଣାର୍ଜିନ ମୃଗେକ ସେ ଆଗରେ ଦେଖିଲେ
ତାର ଉପରେ ନୃପତି ଶରଯେ ବିନ୍ଧିଲେ ।
ବାଣ ଦେଖିଣ ମୃଗ ଯେ ଗଲାକ ପଳାଇ
ମୃଗ ପଳାନ୍ତେ ରାଜା ପଛରେ ଗୋଡ଼ାଇ ।
ଅତି ଆରତରେ ଯେ ପଳାଏ ମୃଗ ଗୋଟି
ପାତାଳ ବିମ୍ବରେ ଯାଇ ପଶିଲାକ ଫୁଟି ।

ରାଜା ଗୋଡ଼ାଇଣ ତାର ପଛରେ ଯେ ପଶି
ପାତାଳେ ପ୍ରବେଶ ହେଲେ ତାର ସଙ୍ଗେ ସେଟି ।
ଦେଖିଲା ପିତୃଗଣେ ହେଉଛନ୍ତି ଦହି
ତରସ୍ତ ହୋଇଣ ଯେ ନୃପତି ବାହୁଡାଇ ।
ନିଜପୁରେ ପ୍ରବେଶ ହୋଇଲା ନୃପତି
ସ୍ନାନ ମଣୋହି ଯେ ସାରିଲା ତଡତି ।
ଆସ୍ଥାନେ ବିଜୟକରି ପାତ୍ରମନ୍ତ୍ରୀ ରାଇ
କହଇ ରାଜନ ଯେ ଭ୍ରାନ୍ତି ମନ ହୋଇ ।
ଅପୂର୍ବ କଥାଏ ଯେ ଦେଖିଲି ମୁଁ ଆଜ
ମୃଗ ପଳାଇଲା ଯେ ପାତାଳର ମାର୍ଗ ।
ସେ ବନରେ ପଶନ୍ତେ ମୁଁ ଦେଖିଲି ଆଚମ୍ବିତ
ଅନେକ ଲୋକ ସେଥିରେ ହେଉଛନ୍ତି ଦହିତ ।
କେହୁ ସେ କଥା ଜାଣ ମୋର ଆଗ କହ
ବିକୃତ ମଣିଲି ମୁଁ ଯେ ନ ପାଇ ସନ୍ଦେହ ।
ରାଜାର ବଚନ ଶୁଣିଣ ମନ୍ତ୍ରୀଗଣ
ବୋଇଲେ ମଉଡମଣି ସାବଧାନେ ଶୁଣ ।
ତୁମ୍ଭର ଉପର ବଂଶେ ସଗର ନୃପତି ।
ଚତୁର୍ଦ୍ଦିଗେ ସେ ହୋଇଲେ ଚକ୍ରବର୍ତ୍ତୀ ।
ଷାଠିଏ ସହସ୍ର ସୁତ ହେଲେ ଯେ ତାଙ୍କର
ଏକେ ଏକେ ଜିଣି ପାରନ୍ତି ସପତ ସାଗର ।
ଅଶ୍ୱମେଧ ଯାଗ ପୁଣି ସଗର ରାଜା କଲା ।
ଲକ୍ଷଣବନ୍ତ ଅଶ୍ୱକୁ ଇନ୍ଦ୍ର ହରିନେଲା ।
ସେ ଅଶ୍ୱ ଲୋଡ଼ିବାକୁ ଯେ ଗଲେ ପୁତ୍ରମାନେ
କପିଳ ମୁନି ପଛରେ ଅଶ୍ୱକୁ ଦେଖି ତେଣେ ।
କପିଳ ଋଷିଙ୍କୁ ଚୋର ବୋଲି ଦଣ୍ଡିଲେ ।
ସେହି ଋଷିର ଶାପରେ ଦହନ ହୋଇଲେ ।
ଶ୍ରୀରାମ ପଚାରିଲେ ଶୁଣ ହେ ଗାଧିସୁତ ।
କିମ୍ପା ଅଶ୍ୱ ତାଙ୍କରି ହରିଲେ ପୁରୁହୁତ ।
ପୁତ୍ରେ ଯେ ଜଳୁଛନ୍ତି ଋଷିର ଶାପେ ତହିଁ
ସେ ଋଷି ଅଜ୍ଞାନକି ଜ୍ଞାନ ତାଙ୍କର ନାହିଁ ।
ଯେବେ ପୁରୁହୂତ ତାଙ୍କ ପଛରେ ବାନ୍ଧିଲଇଁ
ଋଷି କିମ୍ପାଇଁ ଜାଣି ନ ପାରିଲେ ତହିଁ ।
ସର୍ବଜ୍ଞ ଋଷିମାନେ ଜାଣନ୍ତି ଯୋଗବଳେ
ଇନ୍ଦ୍ରରେ ବିବାଦୀ କିମ୍ପା ନ ହେଲେ ତପଶାଳେ ।
ରାଜ ପୁତ୍ର ହୋଇକରି ଅଟନ୍ତି ଅଜ୍ଞାନ
ଚୋରକୁ ଦେଖିଲେ ଦଣ୍ଡିବାରେ ଯେ କାରଣ ।

ମୁନି ବୋଇଲେ ଶ୍ରୀରାମଚନ୍ଦ୍ର ଶୁଣ
ପୂର୍ବର କଥା ଏବେ ପୁରାଣେ ବଖାଣ ।
କାଳକେତୁ ଆପଣା ଦୁଷ୍ଟବୁଦ୍ଧି ଧରି
ଅନ୍ୟାୟ ଉପଦ୍ରବ କଲେକ ବସୁନ୍ଧରୀ ।
ସବଂଶେ ଦୁଇଭାଇ ସମୁଦ୍ର ମଧ୍ୟେ ଥାନ୍ତି
ନିଶାରେ ବାହାର ହୋଇ ପରଜା ଖାଆନ୍ତି ।
ଋଷି ବିପ୍ର ଯେ ସେ ନଗର ପରିଜନ
ରଜନୀରେ ଏମାନଙ୍କୁ କରନ୍ତି ଭୋଜନ ।
ଜାଣିପାରି ପଳାଇଲେ ଜନ୍ତୁ ଏଣେତେଣେ
ଖୋଜିଣ କାଳକେତୁ ଭକ୍ଷନ୍ତି ଯେ ପୁଣେ ।
ସତ୍ୟ ଯୁଗରେ ତୁଚ୍ଛା ହୋଇଲେ ଯେ ମହିଆଳି
ଅସ୍ଥିମୟ ପୃଥ୍ୱୀ ଯେ ଦେଖିଣ ପିତା ଭାଳି ।
ଦେବଗଣ ଘେନି ସେ ଯେ କଲେକ ବିଚାର
ସୃଷ୍ଟି ନାଶଗଲା ଯେ ବୋଇଲେ ବେଦବର ।
ଏତେ ବୋଲିଣ ଗଲେ ଯେ କପିଳାସ ପୁରୀ
ବୋଇଲେ କର ରକ୍ଷା ବାରେ ତ୍ରିପୁରାରୀ ।
କାଳକେତୁ ବେନିଭାଇ ସମୁଦ୍ରେ ଲୁଚିଥାନ୍ତି
ରଜନୀରେ ବାହାର ଜନ ପରଜା ଖାଆନ୍ତି ।
ଅସ୍ଥିମୟ ପୃଥ୍ୱୀ ଯେ ହୋଇଲା ଗୋସାଇଁ
ରାଜା ପରଜାମାନେ ଯେ ଦେଖିବାକୁ ନାହିଁ ।
ତୁମ୍ଭେ ସେ ଜଗତର ଅଟ ଅଧିପତି
କର ଅନୁଗ୍ରହ ପଦର ନେତ୍ର ମୂର୍ତ୍ତି ।
ବେଦବର ବଚନ ଯେ ଶୁଣି ତ୍ରିଲୋଚନ
ହୃଦ ପଦ୍ମ ମଧରେ କଥା ବିଚାରଣ ।
ପିତାମହଙ୍କୁ ବୋଇଲେ କହ ଯାଇକରି
ସେହି ସେ ଅସୁରବଳ ପାରନ୍ତି ସଂହାରି ।
ଆନରେ ସଂସାର ଯେ ନୁହଇ ପୁଣ ସ୍ଥିର
ଶ୍ରୀହରି ଅଟନ୍ତି ଯେ ସବୁରି ଠାକୁର ।
ଏହା ଶୁଣି ହରଷ ହେଲେ ଦେବଗଣ
ବିଷ୍ଣୁର ଚରଣେ ଶରଣ ପଶିଲେ ଯେ ପୁଣ ।
କହିଲେ ସଂସାରର ସବୁ ଯେ ଦୁଃଖ ଭାର
ହେ ଦେବ ନାରାୟଣ ପ୍ରତିକାର କର ।
ଅସୁର ପ୍ରବଳ ହୋଇ ପରଜା ଜନ ଖାନ୍ତି
ଦିବସରେ ସମୁଦ୍ରର ଭିତରେ ଲୁଚନ୍ତି ।
ତୁମ୍ଭେ ସେ ଜଗତ ଈଶ୍ୱର ବ୍ରହ୍ମରାଶି
ସୃଷ୍ଟି ଯାକର ସବୁ ଅସୁର ବିନାଶି ।

ଶୁଣିକରି ଶ୍ରୀହରି କହିଲେ ପିତାମହ
ମୋହର ବୋଇଲା ବୋଲି ଅଗସ୍ତିଙ୍କୁ କହ ।
ସେ ତାଙ୍କୁ ନିବାରଣ କରିବେ ଅବଶ୍ୟ
ଶୁଣିଣ ଦେବତାଏ ଗଲେ ମୁନି ପାଶ ।
ବେଦବର ବୋଇଲେ ଯେ ଅଗସ୍ତିଙ୍କୁ ଚାହିଁ
ବାସୁଦେବଙ୍କ ଆଗରେ ଗଲୁଁ ଆମ୍ଭେ କହି ।
କାଳକେତୁ ବେନିଭାଇ ସମୁଦ୍ରେ ଲୁଚିଥାନ୍ତି
ରଜନୀ ହୋଇଲେ ସେ ଯେ ପରଜା ଜନ ଖାନ୍ତି
ଏଥିରେ କାରଣ ତୁମ୍ଭେ କର ତପଚାରୀ
ଶୁଣିଣ ମହାମୁନୀ ମନରେ ବିଚାରି ।
ଦେବତାଙ୍କୁ ବୁଝାଇ ଯେ ବ୍ରହ୍ମାଙ୍କୁ କହିଲେ
ଅଳ୍ପଦିନେ ନାଶ ତାଙ୍କୁ କରିବା ବୋଇଲେ ।
ଶୁଣିଣ ଦେବତାଏ ସ୍ୱର୍ଗପୁରେ ଗଲେ ।
କୁମ୍ଭମାସେ ଗୋବିନ୍ଦ ଦ୍ୱାଦଶୀ ବୁଡ଼ ହେଲେ ।
ଯେ ଦିନ କୁମ୍ଭ ଋଷି ସିନ୍ଧୁରେ ସ୍ନାନ କରି
ଦେବକୂଟେ ତରଙ୍ଗ ମନ୍ତ୍ରୀ ଯେ ଋଷିଙ୍କି ମାରି ।
ଜାଣିଣ ଅଗସ୍ତି ଯେ କ୍ରୋଧରେ ଚଳିଗଲେ
ସପ୍ତସାଗର ମନ୍ତ୍ରବଳେ ଚଳୁକରି ଶୁଖାଇଲେ ।
ସପତ ସିନ୍ଧୁ ମୁନି ପିଇଲେକ ହେଳେ
ଅଗୋଚର କର୍ମ ସେ କଲେ ମହୀତଳେ ।
ପାଣି ଶୁଖିଯିବାରୁ ଦେଖିଲେ ଅସୁର
ଦେବଙ୍କ ସଙ୍ଗେ ଅସୁରେ ଯୁଦ୍ଧ କଲେ ଘୋର ।
ଧର୍ମବଳ ଘେନିଣ ସେ ଅସୁର ମହାବଳୀ
କୂଟ କରି ଦେବତାଏ ଅସୁରଙ୍କୁ ଦଳି ।
ଦାନବ କୁଳ ଯହୁଁ ହୋଇଲେ ନିପାତ
ତେଣୁ ସ୍ଥିର ହୋଇଲା ସଂସାର ଜଗତତ ।
ବେଦବର କହିଲେ ଅଗସ୍ତିଙ୍କ ଆଗେ
ଏବେ ସାଗର ନୋହିଲେ ନାଶ ଯିବେ ସର୍ବେ ।
ସିନ୍ଧୁକୁ ଶୋଷିଲ ମୁନି ଦେବତାଙ୍କ ହିତେ
ଏବେ ସାଗର ସ୍ଥିତି କରହେ ତପୋବନ୍ତେ ।
ଅଗସ୍ତି ବୋଇଲେ କାହୁଁ ଜଳ ଦେବି ଆଣି
ଗର୍ଭେ ଜୀର୍ଣ୍ଣ ହୋଇଲା ସପତ ସାଗର ପାଣି ।
ଶୁଣିଣ ଦେବତାଏ କହିଲେ ଶ୍ରୀହରିରେ
ଅଗସ୍ତି ନାଶିଲେ ଯେଣୁ ସପତ ସାଗରେ ।
ମାଗିଲେ ନ ଦେଲେ ଯେ ଜୀର୍ଣ୍ଣ କଲେ ସେହୁ
ତାହା ଶୁଣି ବୋଇଲେ ଯେ ଜଗତର ପ୍ରଭୁ ।

ତୁମ୍ଭେ ଦେବତାଏ ନିଜପୁରେ ଯାଅ ଏବେ
ଥୋକାଏ କାଳ ଏଠାରୁ ତୁମ୍ଭେ ଥାଅ ଭାବେ ।
ସାଗର ପୂରେଇବାକୁ ମୁହିଁ କରଇସିନା ବୁଦ୍ଧି
ଯେବେ ଉଦୟ ହୋଇବ ସପତ ବାରିଧି ।
ଶ୍ରୀହରିଠାରୁ ବେଦବର ଏସନ ବୋଧ ପାଇ
ଦେବତାଙ୍କୁ ଘେନିଣ ସେ ନିଜ ପୁରେ ଯାଇ ।
ତେଣୁ ସେ ଶ୍ରୀହରି ଯେ ମନରେ ବିଚାରଇ
ଅଂଶେକ ଜାତ କଲେ କପିଳ ଋଷିଙ୍କି ହିଁ ।
ସେ ମୁନି ମାସକରେ ସକଳ ବିଦ୍ୟା ସାଧି
ପାତାଳ ବିମ୍ୱରେ ଯାଇ ଯୋଗଲୟେ ବିଧି ।
ସେ ଋଷିଙ୍କି ଦେଖିଣ ଦଇବ କୂଟ କଲା
ସଗର ରାଜା ହୃଦେ ପଶି ଯାଗ ମନାଇଲା ।
ଦେବ କାର୍ଯ୍ୟ ନିମନ୍ତେ ଲକ୍ଷଣବନ୍ତ ହୟ
ପୁରୁହୂତ ଚୋରି କରି ନେବାରେ କଲେ ସ୍ନେହ ।
କପିଳ ଋଷିଙ୍କ ପଛରେ ରଖିଣ ଚଳିଗଲେ
ସଗର ରାଜା ପୁତ୍ରେ ଖୋଜି ଖୋଜିଣ ଦେଖିଲେ ।
ଋଷିଙ୍କି ଦଣ୍ଡ ଦେବାରୁ ଶାପ ପରାପତ
ପୂର୍ବରୁ କର୍ମ ଦୋଷେ ହୋଇଲେ ଦହନତ ।
ଯୋଗବଳେ କପିଳ ଜାଣିଲେକ ପୁଣ
ସ୍ୱର୍ଗର ଇନ୍ଦ୍ର ମୋତେ ଦେଲେକ କଷଣ ।
ମନରେ ଦେବତାଙ୍କୁ କ୍ରୋଧଭର ହେଲେ
ଭସ୍ମ କରି ଦେବି ସେ ମନରେ ବିଚାରିଲେ ।
ଜାଣିଣ ଦେବତାଏ ବିଧାତାଙ୍କୁ ଘେନି
ଋଷିଙ୍କି ପ୍ରବୋଧ ଯେ କରାଇଲେ ପୁଣି ।
ପ୍ରତିବୋଧ ଋଷି ସଗର ପୁତ୍ରଙ୍କୁ କହିଲେ
ବେନି ଲକ୍ଷ ବରଷେ ମୁକତ ହୁଅ ବୋଲେ ।
ତେଣୁ ବେନି ଲକ୍ଷ ବରଷ ବେନି ରାଜାରେ ଗଲେ
ସେହି କୁଳେ ଭାଗୀରଥି ଜନମ ହୋଇଲା ।
ପାତ୍ରମନ୍ତ୍ରୀ କହିଲେ ପୂର୍ବର ଜନ୍ମ କଥା
ଶୁଣି ବିସ୍ମୟ ଯେ ହୋଇଲେ ସାମରଥା ।
ବୋଇଲେ କେମନ୍ତେ ଶୀତଳ ହୋଇବ ମୋର ବଂଶ
ପିତୃକାର୍ଯ୍ୟ ନ କଲେ ଜୀବନେ କି ଆଶ ।
ମନ୍ତ୍ରୀ ବୋଇଲେ ଶୁଣ ହେ ନୃପମଣି
ସ୍ୱର୍ଗରୁ ଗଙ୍ଗା ଯେବେ ପାରିବ ତୁମ୍ଭେ ଆଣି ।
ତେବେ ସିନା ରକ୍ଷା ହୋଇବ ତୁମ୍ଭ କୁଳ
ଶୁଣିଣ ସନ୍ତୋଷ ଯେ ହୋଇଲେ ମହୀପାଳ ।
ବଶିଷ୍ଠ ମନ୍ତ୍ରୀ ଗୋଚର ରାଜ୍ୟ ସମର୍ପିଲେ
ଗୋମତୀ ତୀର୍ଥକୁ ଯେ ବେଗେ ଚଳିଗଲେ ।
ତେଣୁ ସେ ଶୂନ୍ୟବାଣୀ ଶୁଭିଲା ଉପରେ
ଏ ସ୍ଥାନ ସିଦ୍ଧ ନୁହେ ଚଳ ହେ ରାଜା ଖରେ ।
ବିରଜା ମଣ୍ଡଳରେ ଦଶ ସହସ୍ର ଘର
ବରାହ ମୂରତି ଯେ ସେଥିରେ ଅଟେ ସାର ।
ଆଖଣ୍ଡଳ ତ୍ରିଲୋଚନ ନାମ ଯେ ପଞ୍ଚାନନ
ବିରଜା ମଣ୍ଡଳ ପାପ କରନ୍ତି ବିମୋଚନ ।
ବଇତରଣୀ ନଦୀ ସେଠି ସ୍ୱାଧୀନାମେ ଘାଟ
ଗଙ୍ଗାର ନାଭିରେ ଅଛି ପାତାଳକୁ ବାଟ ।
ବ୍ରହ୍ମ ନାଭି ସ୍ଥାନରେ ଦୁଇ ବାଣ ଛନ୍ତି
ଭାଗୀରଥି ସେଥିରେ ପ୍ରବେଶ ଯାଇ ହୋନ୍ତି ।
ଊର୍ଦ୍ଧ୍ୱବାହୁ ହୋଇଣ ତପ କରନ୍ତି ରାୟେ
ଶୀତ, ଖରା, ବରଷା ଷଡ଼ଋତୁ ସହେ ।
ଯୋଗେଣ ବେଦବର ସେ ପୁର ଆସିଥିଲେ
ବୈତରଣୀ ନଦୀକୂଳେ ଭାଗୀରଥିଙ୍କି ଭେଟିଲେ
ବୋଇଲେ ଏ ତୀର୍ଥରେ କିମ୍ପାଇ କର ତପ
ମୁହିଁ ବିଧାତା ଅଟଇରେ ଜଗତର ବାପ ।
ଶୁଣିକରି ନମସ୍କାର କଲେ ସେ ନୃପତି
କର ଦୁଇ ଯୋଡ଼ିଣ କହନ୍ତି ଭାଗୀରଥି ।
ଭୋ ପିତାମହ ମୋତେ କର ହେ ସୁଦୟା
ଦହନ ହୁଏ ମୋର ପିତୃ ଲୋକ କାୟା ।
କପିଳ ମୁନିଙ୍କ ଶାପେ ହୋଇଲେ ସେ ହତ
ବଂଶରକ୍ଷା କର ମୋର ଜଗତର ତାତ ।
ଆକାଶରୁ ଗଙ୍ଗା ମୋତେ ଆଣିବା ବୁଦ୍ଧିକହ
ରାଜାର ବଚନେ ଯେ ବୋଲନ୍ତି ପିତାମହ ।
ବିଷ୍ଣୁର ଚରଣରେ ଅଛଇ ସୁରାସୁରି
ଯେତେବେଳେ ବାମନ ମୂରତି ଶ୍ରୀହରି ।
ବଳିରାଜାଠାରୁ ଯେ ଘେନିଲେ ଭୂମିଦାନ
ତ୍ରିବିକ୍ରମ ରୂପ ଯେ ହୋଇଲେ ନାରାୟଣ ।
ଆକାଶରୁ ପାଦ ଯେ ବଢ଼ାଇ ଦେବହରି
ତାଙ୍କ ଚରଣେ ଅଭିଷେକ କଲି ମୁଁ ସୁରାସୁରି ।
ବାସୁଦେବ ବିଶ୍ୱରୂପ ପାଦ ନଖ କୋଣେ
ରହିଲେକ ଗଙ୍ଗା ଯେ ଦେଖିଲେ ଦେବଗଣେ ।
ଏବେ ତୁ ନୃପତି ଯେ ବିଷ୍ଣୁଙ୍କୁ ସେବାକରି
ତାଙ୍କଠାରେ ମନ ଚଇତନ ଦେଇଣ ଲୟକରି

ଅବଶ୍ୟ ପ୍ରାପତ ହୋଇବେ ଗଙ୍ଗା ତୋତେ
ଯୋଗବଳେ ଦୃଶ୍ୟ ଯେ ହୋଇଲାକ ମୋତେ ।
ଏମନ୍ତ ବୋଲି ବିଧାତା ନିଜ ପୁରେ ଯାଇ
ଭାଗୀରଥି ଭଗବାନ ଚରଣେ ଚିନ୍ତଇ ।
ମହାକଷ୍ଟେ ତପ ଆରମ୍ଭ କଲା ରାୟେ
ବୃଦ୍ଧ ଅଙ୍ଗୁଳିରେ ବରଷେକ ଉଭା ହୁଏ ।
ନାରାୟଣ ନାମ ସୁମରଇ ଅବିରତ
ହୋଇଲେକ ପ୍ରସନ୍ନ କମଳା ଦେବୀ କାନ୍ତ ।
ନବଘନ ଚନ୍ଦ୍ର ନୀଳମଣି ଜିଣି ବର୍ଣ୍ଣ
ପୀତବସ୍ତ୍ର ବିଦ୍ୟୁରେଖା ଦିଶଇ ଶୋଭନ ।
ସପ୍ତଶାଖା ମୁକୁଟ କୀରଟୀ ଶୋଭା ପାନ୍ତି
କଟୀ ମେଖଳାରେ ନାନା ରତ୍ନ ଝଟକନ୍ତି ।
ନାନାରତ୍ନ ହାରରେ ବକ୍ଷସ୍ଥଳ ବିଶେ ଶୋଭା
କଣ୍ଠେ ବିରାଜଇ କଉସ୍ତୁଭମଣି ପ୍ରଭା ।
ମକରାକୃତି କୁଣ୍ଡଳ ଶ୍ରବଣେ ବିରାଜେ
ଶୁକ୍ର କବି ଘେନିକି ନିଶାନାଥ ବିଜେ ।
ବକ୍ଷସ୍ଥଳେ ବିରାଜଇ ଶ୍ରୀବତ୍ସର ଚିହ୍ନ
ଆଜାନୁଲମ୍ବିତ ବୈଜୟିନ୍ତୀ ଶୋଭାବନ ।
ସର୍ବାଙ୍ଗରେ ଘନସାର ମଳୟ ରାଜସି
କସ୍ତୁରୀରେଖ ପରାୟେ ଦାଢ଼ି ନିଶ ଦିଶି ।
ଚତୁର୍ଭୁଜ ଶୋଭାବନ ଶଙ୍ଖଚକ୍ର ଗଦାଧନୁ
ଶ୍ରୀଅଙ୍ଗ ଗୋଟି ବିରାଜେ ଦ୍ୱିତୀୟ ଯେ ଭାନୁ ।
ଗରୁଡ଼ ପୃଷ୍ଠପରେ ବିଜୟେ ରମାପତି
ପାରିଷଦ ଗଣମାନେ ପାରୁଶେ ବେଢ଼ିଛନ୍ତି ।
ଭଗୀରଥି ଛାମୁରେ ପ୍ରବେଶ ହେଲେ ଯାଇ
ହସି ହସି ଆଜ୍ଞା ଦିଅନ୍ତି କମଳା ଦେବୀ ସାଇଁ ।
କହ କହ ମହାରାଜା କହ ତୋର ଇଚ୍ଛା
ଆମ୍ଭେ ପୂର୍ଣ୍ଣ କରିବା ଯେ ଥିବ ମନବାଞ୍ଛା ।
ଦେଖିଣ ନୃପବର ହରି ପାଦତଳେ ପଡ଼ି
ବିନୟରେ କହଇ ଯେ ବେନି କରଯୋଡ଼ି ।
ଭୋଦେବ ହେ ନାରାୟଣ ପ୍ରତିକାର କର
ଦୁଃସହ କଷଣୁ ମୋତେ ଉଦ୍ଧରିଣ ଧର ।
କପିଳ ମୁନି କୋପରେ ବଂଶ ମୋର ଦହି
ଇହପର ବେନିଲୋକ ସୁଖ ଯେ ନୁହଇ ।
ତୁମ୍ଭ ଶ୍ରୀ ଚରଣେ ଦେବ ଅଛି ସୁରନଦୀ
ଦିଅମୋତେ ଗଙ୍ଗା ସ୍ୱାମୀ କୃପା ଜଳନିଧି ।

ଭଗବାନ କହନ୍ତି ମୁଁ ଦେବୀ ସୁରାସୁରି
ତାହାର ପଡ଼ନ୍ତେ ପୃଥ୍ୱୀ ନପାରିବ ଧରି ।
ରୁଦ୍ର ମାତ୍ର ତାହା ଧରିବାକୁ ସାମରଥ
ତାହାଙ୍କୁ ଏବେ ମନାଇ ଆଣ ନରନାଥ ।
ସେ ଯେବେ ଧରିବେ ଗଙ୍ଗା ନିଶ୍ଚେ ଦେବିମୁହିଁ
ଏତେବୋଲି ଅନ୍ତର୍ଦ୍ଧାନ କମଳାର ସାଇଁ ।
ଶ୍ରୀହରି ଶ୍ରୀମୁଖରୁ ଏମନ୍ତ ଶୁଣି ରାୟେ
ମହାଦେବ ସ୍ମରଣରେ ତପସ୍ୟାର ଧାୟେ ।
ନିରାହାର ହୋଇଣ ବାଲୁଙ୍କା ଲିଙ୍ଗ ସ୍ଥାପି
ହରଠାରେ ମନ ନେତ୍ର ସମସ୍ତ ନିରୋପି ।
ରୋମ ମୂଳରେ ତମ୍ବାର ଛୁଞ୍ଚିମୂନ ଫୋଡ଼ି
ବଜ୍ର ଘୃତ ଦେଇ ତହିଁ ଜାଳଇ ବିହୁଡ଼ି ।
ତହୁଁ କଠୋର ତପ ନୃପତି ଯହୁଁ କଲେ
ସଦାଶିବ ସ୍ୱାମୀ ଆସି ପ୍ରବେଶ ହୋଇଲେ ।
ବୃଷଭ ପୃଷ୍ଠପରେ ବିଜୟ ଦିଗବାସ
ତ୍ରିଶୂଳ ଡମ୍ବରୁ ଯେ ଧରିଣ ବ୍ୟୋମକେଶ ।
ନାଗରାଜା ବାସୁକି ହୋଇଣ କଣ୍ଠଦ୍ୱାର
ଜଟା ଜୂଟ ମୁକୁଟ ସନ୍ନ୍ୟାସୀ ଅଳଙ୍କାର ।
ଶୁଦ୍ଧ ସ୍ଫଟିକ ଜିଣି ସୁନ୍ଦର ତନୁବର୍ଣ୍ଣ
ମସ୍ତକ ଉପରେ ଅର୍ଦ୍ଧଚନ୍ଦ୍ର ଶୋଭାବନ ।
କୋଳରେ ଗିରିରାଜ ନନ୍ଦିନୀ ଛନ୍ତି ବସି
ରଜତ ନଗରେ ସ୍ୱର୍ଣ୍ଣ ଶୃଙ୍ଗ ଶୋଭାଦିଶି ।
ଚନ୍ଦ୍ର ସୂର୍ଯ୍ୟ ଅନଳ ଯେ ତୃତୀୟ ନୟନ
ନୃପତି ଆଗେ ବିଜୟ କଲେକ ଈଶାନ ।
ପଚାରନ୍ତି ରାଜା ହେ କିମ୍ପାଇ କର ସେବା
ଯେଉଁବର ଇଚ୍ଛା ହେବ ମାଗ ହେ ତାହାଦେବା ।
ଏହା ଶୁଣି ନୃପତି ପ୍ରଣାମ କରି ଶୋଇ
ବେନିକର ଯୋଡ଼ିଣ କହଇ ନରସାଇଁ ।
ଭୋଦେବ ହେ ତ୍ରିପୁର ଈଶ୍ୱର ଦେବଶୂଳୀ
କପିଳ ମୁନି କୋପରେ ବଂଶ ମୋର ଜଳି ।
ସଗର ନୃପତିର ଷାଠିଏ ସହସ୍ର ସୁତ
ନୟନ ଅନଳରେ ଦହିଲେ ତପୋବନ୍ତ ।
ତେଣୁ ମୁହିଁ ମହାଦୁଃଖୀ ହୋଇଲି ଗୋସାଇଁ
ରାଜ୍ୟସୁଖ ଭୋଗରେ ମୋର କାର୍ଯ୍ୟ ନାହିଁ ।
ଗଙ୍ଗାନଦୀ ଅଇଲେ ହୋଇବେ ସେହୁ ସୁସ୍ଥ
ତେଣୁ ମୁଁ ତୋତେ ଆଶ୍ରୟ କଲି ଉମାକାନ୍ତ ।

ଭଗବାନ ପ୍ରସନ୍ନ ହୋଇଲେ ମୋତେ ଆସି
ଗଙ୍ଗାକୁ ମାଗିଲି ମୁଁ ବଂଶ ରକ୍ଷା କରସି ।
ସେହି ଆଜ୍ଞାଦେଲେ ମୁଁ ଦେବି ସୁରାସୁରି
ଶଙ୍କର ପାରିବେ ତାହା ମସ୍ତକରେ ଧରି ।
କର ଅନୁଗ୍ରହ ସ୍ୱାମୀ ଘେନ ମମ ସେବା
ମୋ ବଂଶ ନିମନ୍ତେ ଗଙ୍ଗା ଭାରକୁ ବହିବା ।
ତୁମ୍ଭେ ନ ରଖିଲେ କେ ଭରସା ମୋର ନାହିଁ
ଏଥକୁ କାରଣ ମୋତେ କର ଉମା ସାଇଁ ।
ଅନେକ ମତେ ମହାରାଜା କରଇ ଯେ ସ୍ତୁତି
ଶୁଣିକରି ପରମ ତୋଷ ହେଲା ରମା ପତି ।
ଶଙ୍କର କହନ୍ତି ଗଙ୍ଗା ଯେବେ ଦେବ ହରି
ସତ୍ୟ ଆମ୍ଭେ ମସ୍ତକେ ଧରିବୁଁ ସୁରାସୁରି ।
ସ୍ମରଣ କଲେ ଆସିବୁ ବୋଲେ ଶୂଳପାଣି
ଅନ୍ତର୍ଦ୍ଧାନ ହୋଇଲେ ବିଜୁଳି ଜ୍ୟୋତିଜିଣି ।
ରାଜନ ତ୍ରୟଦେବ ମନାଇ ନିଜ ରାଜ୍ୟେ ଗଲା
ରାଜ୍ୟର ଭଲ ମନ୍ଦ ଯାଇଣ ବୁଝିଲା ।
ଏଥୁ ଅନନ୍ତରେ ଶୁଣ ହେ ଶ୍ରୀରାମ ଚନ୍ଦ୍ର
ଇନ୍ଦ୍ରଙ୍କର ଦୁହିତା ଯେ ମାଳତୀ ନାମ ସେତ ।
ଭାଗୀରଥୀ ରାଜାଙ୍କର ବଡ଼ ସେ ପାଟରାଣୀ
ଭାଗୀରଥୀ ଯିବାରେ ଯେ ପୁଷ୍ପବତୀ ପୁଣି ।
ଶୁଦ୍ଧ ସ୍ନାନ କରନ୍ତେ ଯେ ରାଜାର ଅଙ୍ଗସଙ୍ଗ
ସେ ରାଣୀର ଗର୍ଭରେ ରହିଲା ରାଜା ବୀର୍ଯ୍ୟ
ତେଣୁ ଯେ ରାଣୀ ଗୋଟି ଗର୍ଭବାସ ହେଲା
ଷଷ୍ଠମାସେ ଗର୍ଭଦାନ ଦେଇଣ ରାଜା ଗଲା ।
ବୈତରଣୀ ନଦୀତଟେ ହେଲେ ପରବେଶ
ବାସୁଦେବ ସୁମରଣା କଲେକ ବିଶେଷ ।
ପ୍ରସନ୍ନ ହୋଇଲେ ଆସି ଦେବ ଚକ୍ରଧାରୀ
ଭାଗୀରଥି ସୁମରନ୍ତେ ଅଇଲେ ଶୂଳଧାରୀ ।
ସଦାଶିବଙ୍କୁ ଦେଖି ଶ୍ରୀହରି ମନେ ତୋଷି
ଗଙ୍ଗାଙ୍କୁ ବୋଇଲେ ତୁ ମଧପୁର ଯାଅସି ।
ଗଙ୍ଗା ବୋଇଲେ ମୁଁ ଯେବେ ମଧପୁର ଯିବି
ନିଷ୍ଚୟ ନିଷ୍କଳ ଯେ ସେ ପୁରେ ହୋଇବି ।
କାହାର ଦଣ୍ଡ ମୋତେ ନୋହିବ ବିପ୍ରବଳ
ନରବାନର ଯେ ଅସୁର ନାଗବଳ ।
ଏମାନେ ମୋତେ ଛୁଇଁଣ ମୁକତ ହୋଇଯିବେ
ସ୍ନାନ କଲେ ତ୍ରିକୁଳ ପିତୃକୁ ଉଦ୍ଧରିବେ ।

ସ୍ୱାମୀ ମୋର କରୁଣ ଗଉରବ କରି
ଶରଧା ମୋତେ ବଡ଼ କରିବେ ଜଳଧାରୀ ।
ଶ୍ରୀହରି ବୋଇଲେ ଯେତେ କହିଲ ଅବଳା
ସେ କଥା ପ୍ରାପତ ଯେ ତୋତେ ହେଉ ପରା ।
ଶୁଣିଣ ଗଙ୍ଗା ଦେବୀ ଯେ ହରଷ ହୋଇଲେ
ବିଷ୍ଣୁର ଅଙ୍ଗୁଷ୍ଠି କୋଣରୁ ବାହାରିଲେ ।
ତାହା ଶୁଣି ସଦାଶିବ ଧଇଲେ ତା ଶିରେ
ରହିଲେକ ଗଙ୍ଗା ହର ଜଟାର ଭିତରେ ।
ବିଷ୍ଣୁ ପାଦୋଦକ ପାଇ ମହାଦେବ ତୋଷ
ପୂର୍ବକାଳରୁ ଯହିଁକି କରିଥିଲେ ଆଶ ।
ସଦାଶିବ ସ୍ୱାମୀ ତାଙ୍କୁ ଶିରରେ ଧଇଲେ ।
ତେଣୁ ସେ ସଦାଶିବ ଆନନ୍ଦ ହୋଇଲେ ।
ମେରୁ ଗିରି ଉପରେ ଯାଇଁ ମିଳିଲେ ଈଶ୍ୱର
ପଞ୍ଚଶିରେ ରହିଲା ତ୍ରିଲୋଚନଙ୍କ ଆନନ୍ଦର ।
ଈଶ୍ୱର ମସ୍ତକରୁ ଗଙ୍ଗା ଖସିଣ ପଡ଼ିଲେ
ତେଣୁ ଯେ ମେରୁଗିରି ଉପରେ ଯାଇମିଳେ ।
ଦେଖିଣ ପିତା ମାତା ଗଉରବ କରି
ଈଶ୍ୱର ମସ୍ତକରୁ ଗଙ୍ଗା ଯାଆନ୍ତେ ଚଳି ।
ତ୍ରିଲୋଚନ ବୋଇଲେ ପିତା ଘରେ ଗଙ୍ଗାମିଳି
ସେଠାରୁ ପୁଣ ଯେ ନଇଲେ ବାହାରି ।
ମେରୁକୁ ସୁମରଣା କରହେ ରାଜନ
ତେବେ ସେ ଗଙ୍ଗା ଦେବୀ ହୋଇବେ ପ୍ରସନ୍ନ ।
ଏତେ କହି ଈଶ୍ୱର କପିଳାସ ଗଲେ
ସେଠାରୁ ଭାଗୀରଥ ମେରୁକୁ ସୁମରିଲେ ।
ତୁମ୍ଭେ ମେରୁ ଗିରି ହେ ନକର ଗୁପତ
ଦିଅସି ଗଙ୍ଗା ଦେବୀଙ୍କି ସେ ଯେ ହୋନ୍ତୁ ସୁସ୍ଥ ।
ମେରୁ ବୋଇଲେ ରାଜନ ଜାଇତ ବାଟ ନାହିଁ
ତୁହୋ ନୃପତି ପ୍ରବୋଧ କର ଗଙ୍ଗାଙ୍କୁ ଯାଇ ।
ମେରୁର ନନ୍ଦିନୀକି ବହୁତ ସ୍ତୁତିକଲେ
କାର୍ପୁଣ୍ୟ ହୋଇଣ ଯେ ଭଗୀରଥ ବୋଲେ ।
ଅନେକ ଦୁଃଖରେ ଯେ ଆଣିଲି ତୋତେ ମାଗି
ତୁ କିମ୍ପା ପିତା ଘରେ ନିଶ୍ଚିନ୍ତେ ରହୁ ଲାଗି ।
ମୋହର ବିକଳ ଯେ ଦେଖ ଏବେ ମାଏ
କର ଅନୁଗ୍ରହ ଏବେ ଯିବା ପିତୃଙ୍କ ଯାଏ ।

ପ୍ରସନ୍ନେ ଗଙ୍ଗା ବୋଇଲେ ମୁଁ ଅଟଇ ଯୁବତୀ
ବାଟ ନ ପାଇଲେ ମୁଁ ଯିବି କେଉଁ କତି ।
ତୁ ଯେବେ ପାରୁ ବାବୁ ଐରାବତ ଆଣି
ସେ ଯେବେ ମେରୁକୁ ଦନ୍ତେ ପାରିବ ଯେ ହାଣି ।
ତେବେ ସେ ବାହାର ହୋଇଣ ମୁଁ ଯିବି
ତୋହର ବଚନ ମୁଁ ନିଶ୍ଚୟ ପାଳିବି ।
ଶୁଣିଣ ଭଗୀରଥ ବିସ୍ମୟ ମନ ହୋଇ
ଐରାବତ ଗଜକୁ ସୁମରେ ମନେ ସେହି ।
ବୋଇଲା ମାତଙ୍ଗ ଦୟା ମୋତେ କର
ଗଙ୍ଗା ପଶିଣ ଅଛି ମେରୁର ଭିତର ।
ବାଟ ନ ପାଇଣ ଦେବୀ ନ ପାରେ ପୁଣ ଆସି
ଅନୁଗ୍ରହ ନକଲେ ଗଲିଟି ନିଷ୍ଟେ ଭାସି ।
ଗଙ୍ଗାଗଲେ ମୋର ବଂଶରକ୍ଷା ହୋଇ
କରଯୋଡ଼ି ନୃପତି ଗଜରାଜକୁ କହି ।
ଶୁଣିଣ ଐରାବତ ସନମତ କଲେ
ନୃପତିଙ୍କି ରାଇଣ ଏମନ୍ତ କହିଲେ ।
ଇନ୍ଦ୍ର ଦେବତା ଯେ ଅଟଇ ସ୍ୱାମୀ ମୋର
ତାହାଙ୍କୁ କଥାଏ ତୁମ୍ଭେ କହ ହେ ନୃପବର ।
ନ କହିଣ ଗଲେ ଯେ ବୋଲିବେ ମୋତେ ମନ୍ଦ
ଯାଇଣ ନୃପତି ହେ କହ ସୁରାଭଦ୍ର ।
ଶୁଣିଣ ଭାଗୀରଥି ଯେ ଗଲେ ଖରକରି
ସ୍ୱର୍ଗପୁରେ ବାସବ ଆଗରେ ଯେ ମିଳି ।
ଦେଖିଣ ମଘବା ଯେ ହରଷ ହୋଇଲେ
କେଣେ ଅଇଲ ବୋଲି ନରେନ୍ଦ୍ର ପଚାରିଲେ ।
ଭଗୀରଥ ବୋଇଲେ କଥାଏ ମୋତେ ଦେବା
ତିନିପୁରେ ସ୍ୱାମୀ ତୁ ଅଟୁ ହେ ମଘବା ।
ପିତୃଲୋକେ ମୋର ଯେ ଦହିଯ ହେଉଛନ୍ତି
ଆଗେତ ସେ କଥାକୁ କହିଛି ଶଚୀପତି ।
ଗଙ୍ଗାଗଲେ ସେମାନେ ମୁକତି ଲଭିବେ
ଅଗ୍ନି ଜ୍ୱାଳାରୁ ସେମାନେ ଶୀତଳ ହୋଇବେ ।
ବାସୁଦେବ ପ୍ରସନ୍ନରେ ଦେଲେ ସୁରାସୁରି
ମହେଶ୍ୱର ମସ୍ତକରେ ବହିଲେ ଦିବ୍ୟବାରି ।
ମୋହର ହିତରେ ଦେବ ରୁଦ୍ର ଛାଡ଼ିଦେଲେ
ଧରଣୀ ନ ଆସି ଗଙ୍ଗା ପିତା ଘରକୁ ଗଲେ ।
ମୁହିଁ ସୁମରନ୍ତେ ଗଙ୍ଗା ମୋତେ ଆଜ୍ଞା ଦେଲେ
ଐରାବତମେରୁ ହାଣିଲେ ମୁଁ ଯିବଇଁ ବୋଇଲେ ।
ତେଣୁକରି ମାଗୁଛି ଐରାବତ ଦିଅ ମୋତେ
ତେବେ ପିତୃ ମୋର ଲଭିବେ ସ୍ୱର୍ଗ ପଥେ ।
ଶୁଣିଣ ହରଷ ଯେ ହୋଇଲେ ସୁରପତି
ଐରାବତକୁ ବୋଇଲେ ଯାଅରେ ତଡ଼ତି ।
ଯାଅ ତୁ ମହାଗଜ ଭଗୀରଥ ସଙ୍ଗେ
ମେରୁକୁ ଫୋଡ଼ିଣରେ ବାହାର କର ଗଙ୍ଗେ ।
ସୁରରାଜ ଆଜ୍ଞା ପାଇଣ ମତ୍ତଗଜ
ଗର୍ଜନ କରିଣ ସେ ଧାଇଁଲା ହୋଇ ଓଜ ।
ମେରୁ ନିକଟରେ ଗଜରାଜ ସେ କହଇ
ଏମନ୍ତ କରିଣ ସେ ଯେ ଗୁପତେ ବୋଲଇ ।
ତୁହେ। ମଞ୍ଚର ନରେନ୍ଦ୍ର ଶୁଣ ମୋର ବାଣୀ
ଯେବେ ସେ ମେରୁକୁ ପକାଇବି ହାଣି ।
ସେ ଗଙ୍ଗାଦେବୀ ଯେ ଘରଣୀ ହେବ ମୋରେ
ନୋହିଲେ ଏତେ କର୍ମ କରିବି କିମ୍ପା ଭଲେ ।
ସେହି ସେ ମେରୁ ଅଟେ ପୃଥ୍ୱୀକି ଧାରଣା
ଅଦୋଷେ କିମ୍ପା ତାକୁ ମୁଁ କରିବି ଖୁଣିକିନା ।
ରାଜା ବୋଇଲେ ସେ ଯେ ଗଉରବ ସ୍ତିରୀ
ବରୁଣର ଘରଣୀ ଯେ ଅଟେ ନିର୍ମଳ ବାରୀ ।
ଈଶ୍ୱର ଦେବତା ଯାକୁ ମସ୍ତକରେ ବହି
ମୋର କର୍ତ୍ତବ୍ୟରେ କି ତାହାକୁ ହୁଏ କହି ।
ଭୋ ମହାରାଜା ତୁମ୍ଭେ ମନେ ନ ଧର ଆନ
ମୁହିଁ ସେ ନିରେଖ ଅଟଇ ମଞ୍ଚେ ହୀନ ।
ଚାଲ ଏବେ ବେଗେ ଯିବା ଦୁଷ୍ଟପଣ ଛାଡ଼
ତୈଲୋକ୍ୟରେ ତୋତେ ଯେ ବୋଲନ୍ତି ମହାମଲ୍ଲ ।
ଯୋଗ୍ୟ ଜୀବ ହୋଇ ତୁ ଅଯୋଗ୍ୟ କଥା କହୁ
ଜୟ ଜୟ ମାତଙ୍ଗ ତୁହେ ଜନଙ୍କର ରାହୁ ।
ହସ୍ତୀ ବୋଇଲା ଯାଇ ତୁ ପଚାର ଗଙ୍ଗାଙ୍କୁ
ସେ ମୋର ଘରଣୀ ହେବ କହି ଆସ ତାକୁ ।
ଶୁଣିଣ ଭଗୀରଥ ଭାଳିଲେ ପଞ୍ଚଭୂତେ
କେମନ୍ତେ କହିବି ମୁଁ ମାତା ଯେ ପ୍ରତ୍ୟକ୍ଷେ ।
ପୋଡୁ ମୋ କରମ ଜୀଇଁବା ନୁହେଁ ଛିଟି
ଏ କଥା କେମନ୍ତେ ଗଙ୍ଗାଙ୍କୁ କହିବିଟି ।
ବିସ୍ମୟ ମନରେ ନୃପତି ଯାଏ ଚଳି
କର ଦୁଇ ଯୋଡ଼ିଣ ଗଙ୍ଗାଙ୍କୁ ସ୍ତୁତିକରି ।
ଭଗବତୀ ପୁଛିଲେ ଯେ ହସ୍ତୀକି ଅଇଲେ
ଲାଜରେ ଶିର ପୋତି ନୃପତି ରହିଲେ ।

ନୃପତି ଭାଳିବାର ଜାଣିଲେ ଗଙ୍ଗାଦେବୀ
ଭଗୀରଥକୁ ବୋଇଲେ ଯାଅରେ ପୁତ୍ର ବେଗି
କ୍ରୋଧରେ ସୁରାସୁର କମ୍ପଇ ଥରହର
ନେତ୍ର ଶ୍ରୋଣିତ କାନ୍ତି ଦିଶଇ ପରଖର ।
ଦେବୀ ବୋଇଲେ ଗଜ ଆସୁ ବେଗ ହୋଇ
ଧରି ଯେବେ ପାରିବ ହେଉ ମୋର ସାଇଁ ।
ଆମ୍ଭେ ଯେ ସ୍ତିରୀମାନେ ଅବଳା ନାମ ବହୁ
ଆମ୍ଭ ଆର୍ଦ୍ଧୋଳି ଯେ ସମ୍ଭାଳେ ତାର ପାଶେରହୁ ।
ନିର୍ବଳ ଲୋକରେ ଆମ୍ଭେ ନ ଯାଉ ବିଶ୍ୱାସ
ଏକଥା କହିଣ ଯେ ହସ୍ତୀକି ଘେନି ଆସ ।
ଭାଗୀରଥି ବୋଇଲେ ଶୁଣିବା ହେଉ ମାଏ
ମୁହିଁ ତାହା କହିବାକୁ କରଇ ମହାଭୟେ ।
ସେହି ଗଜ ଇନ୍ଦ୍ର ଯେ ତୁମ୍ଭେତ ସୁରାସୁରି
ମୁହିଁ ପାମର ଏହା ମଧରେ ଦ୍ୱନ୍ଦ୍ୱକାରୀ ।
କେମନ୍ତେ କହିବି ମୁଁ ଯେ ବୋଲି ତ ନପାରଇ
ଏ କଥାରେ ସଂକୋଚ ବହୁତ ମଣଇ ।
ତୈଲୋକ୍ୟ ତାରିଣୀ ଗଙ୍ଗାବୋଇଲେ ରାୟେଶୁଣ
ଗଜ ମୁର୍ଖ ବୋଲିଟି ପୁରାଣେ ବଖାଣ ।
ତୋହର ହିତରେ ତାର ବଚନ ପାଳିବା
କେତେକେତେ ବହେ ଗଜ ତାହା ନ ବୁଝିବା ।
ଯାଅ ବିଳମ୍ବ ଏବେ ନକର ନୃପତି
ଏକଥା କହିଣ ଯେ ଘେନିଣ ଆସ ନିକି ।
ଗଙ୍ଗାର ଚରଣେ ରାଜା ନମସ୍କାର କରି
ଐରାବତ ନିକଟରେ ମିଳିଲେ ଦଣ୍ଡଧାରୀ ।
ଦେଖିଣ ଇନ୍ଦ୍ର ଗଜ ବୋଇଲାକ ହସି
କିସ ବୋଇଲା ତୋତେ ଚାରୁ ଶୁଭ୍ରକେଶୀ ।
କଲା କି ସନମତ ତୋହର ଭକ୍ତି ଘେନି
କି ଅବା କଲା ନାସ୍ତି ଚତୁର କାମିନୀ ।
ଶୁଣିଣ ନୃପତି ଯେ କହିଲେ ତାର କଥା
କର ଦୁଇ ଯୋଡ଼ିଣ ବୋଇଲେ ମହାରଥା ।
ଯାହା ତୁ ପ୍ରକାଶ କଲୁ କହିଲି ମୁହିଁ ଯାଇ
ଶୁଣିକରି ହରଷରେ ବୋଇଲେ ଚାନ୍ଦମୁହାଁ ।
ବରୁଣ ରାଜନ ଯେ ଅଛନ୍ତି ମୋର ନାହା
ତାଙ୍କୁ ଛାଡ଼ି କେମନ୍ତ ମୁଁ କରିବି ପୁଣ ଏହା ।
ବସ ବୋଲିଣ ମୋତେ ଯେ ବୋଲିବେ ଜଗତେ
ମୋହର ଇଚ୍ଛାରେ ତ ନଯାଇ ତା ସଙ୍ଗତେ ।
ତାର ବଳ ଥିଲେ ବଳକ୍ରାରେ ମୋତେ ନେଉ
ଏକ ଅପବାଦ ଦୋଷ ମୋହଠାରୁ ଯାଉ ।
ଶୁଣିକରି ସନ୍ତୋଷ ଗଜରାଜ ହୋଇ
ଚାଲ ମୋତେ ଦେଖାଅ ଗଙ୍ଗା ଅଛି କାହିଁ ।
ମେରୁ ଫୋଡ଼ି ତାକୁ ଆଣିବି ବୁହାଇ
କଥାଏ କହିବି ଯେ ଗଙ୍ଗାର ମୁଖ ଚାହିଁ ।
ବଳେ ଧରି ତାକୁ ମୁଁ ଯେ କରିବି ସୁରତି
ଆଗେ ବାଟ କଢ଼ାଅ ମୋତେ ହେ ନୃପତି ।
ଶୁଣିଣ ସନ୍ତୋଷ ଯେ ହେଲେ ନରସାଇଁ
ଗଜ ରାଜକୁ ଘେନି ନୃପତି ଚଳିଯାଇ ।
ଯାନ୍ତେଣ ମାତଙ୍ଗର ଫୁତ୍କାର ରାବ
ଥୋର ହସ୍ତ ଟେକିଣ ଯେ ଧାମଇ ବେଗ ବେଗ
ଗଜ ବିଚ୍ଛେଦ ହୋଇଣ ବଡ଼ ରୋଷକରି
ଯାନ୍ତେଣ ବୀର ଘଣ୍ଟ ଶବଦ ପ୍ରସରି ।
ଚଉଦନ୍ତ କ୍ରୋଧ ହୋଇ ମେରୁରେ ମାରଇ
ମେରୁ ଫୁଟିଲାର ବେଳେ କମ୍ପିଲାକ ମହୀ ।
ଲବଣ ପର୍ବତେ ଯେହ୍ନେ ତୀକ୍ଷ୍ଣ ଭାଲି ବସେ
ତେସନ ପଟାନ୍ତର ଚଉଦନ୍ତ ଦିଶେ ।
ଯହୁଁ ମେରୁର ଅଙ୍ଗ ଫୁଟିଲାକ ପୁଣି
ଚଉଦନ୍ତ ମୁନ ଯେ ଭିତରେ କମ୍ପେ ପାଣି ।
ବାଟ ପାଇବାରୁ ଗଙ୍ଗା ହୋଇଲେ ବାହାର
ଦନ୍ତ କାଢ଼ି ନ ପାରେ ସେଥିରୁ କରୀବର ।
ଗର୍ଜନ କରି ଗଙ୍ଗା ବେଗେ ଯେ ବାହାରିଲା
ଗଜ ଇନ୍ଦ୍ରକୁ ସେ ବଳେଣ ପେଲିଦେଲା ।
ଆରମ୍ଭେ ଐରାବତ ନପାରେ ସମ୍ଭାଳି
ତିନିଦନ୍ତ ବେଗେ ଯେ ଉପୁଡ଼ିଲା ତାରି ।
ଗଙ୍ଗାର ତେଜ ଗଜ ଯେ ନ ପାରଇ ସହି
ଦନ୍ତେକ ଭାଜିଣ ସେ ମେରୁରେ ଯେ ରହି ।
ହେଠ ମାଥ ହୋଇଣ ପଡ଼ିଲା ସେହୁ ପୁଣି
ସ୍ରୋତର ଘାତେ ଭାସିଗଲା ଯେ ଗଜମଣି ।
ଅସମ୍ଭାଳ ହୋଇ ଯେ ପଡ଼ିଲା ମାତଙ୍ଗ
ପ୍ରଳୟ ପ୍ରାୟ ହୋଇଣ ବହିଲାକ ଗାଙ୍ଗ ।
କ୍ଷଣେ ବୁଡ଼େ କ୍ଷଣେ ତାନ ଦିଶଇ ଶରୀର
ମନ୍ଦର ପର୍ବତ କି ସେ ସମୁଦ୍ର ଭିତର ।
ତେତେ ମହାରାଜା ଯେ ହୋଇଲା ନିସତ
ଗୌରବ ସ୍ତିରୀଙ୍କି ଯେହୁ ଲୋଡ଼ିବାର ମିତ ।

ତେଣୁ ସେ ମତ୍ତଗଜର ତେଜ ଗଲା ଛାଡ଼ି
ଗଙ୍ଗା ବିଶ୍ୱରୂପରେ ଗର୍ଜ୍ଜଇ କରି ରଡ଼ି ।
ଚଉରାଶି କାଠି ଗଭୀର ଅଟଇ ସୁରାସୁରି
ସ୍ଥଳ ନ ପାଇଲା ଗଜ ସ୍ରୋତରେ ଯେ ପଡ଼ି ।
ଦନ୍ତେକ ଭାଜିବାରୁ ତେଜ ଯେ ଦର୍ପ ହତ
ଗଙ୍ଗାଙ୍କୁ ହରିବାକୁ ଶ୍ରଦ୍ଧା ତାର ଚିତ୍ତ ।
ମେରୁ ଯେ ଗଜର ଅଟଇ ନିବାସୀ
ପରର ବୋଲେ ପଡ଼ି ମେରୁକୁ ସେ ଧ୍ୱଂସି ।
ଗୌରବ ସ୍ତ୍ରୀଙ୍କୁ ଯହୁଁ କହିଲା ଅବଧି
ତେଣୁ ଲଜ୍ଜା ପାଇଲା ଗଜେନ୍ଦ୍ରର ନିଧି ।
କେତେହେଁ ଦୂର ପୁଣି ସେ କେତେଦୂରରେ
ଯାଇଣ ଲାଗିଲା ଯେ ହସ୍ତିନା ନଗରେ ।
ଶୁଣି ଶ୍ରୀରାମ ଲକ୍ଷ୍ମଣ କହନ୍ତି ଗାଧିସୁତେ ।
ଐରାବତ ମେରୁରେ ପାଇଲା ଚାରିଦାନ୍ତେ ।
ଦନ୍ତେକ ଭାଜିଣ ଯେ ରହିଲା ଗିରିବରେ
ତିନିଥର ହୋଇଗଙ୍ଗା ହୋଇଲେ ବାହାରେ ।
ଆବର ତିନି ଦନ୍ତରୁ ତିନିଧାର ଫୁଟି
ତିନି ବର୍ଣ୍ଣରେ ଗଙ୍ଗା ହେଲେ ଉତପତ୍ତି ।
କଳା, ନୀଳ, ଧବଳ ହୋଇଣ ତିନି ବର୍ଣ୍ଣ
ପ୍ରୟାଗରେ ତିନିଧର ସଙ୍ଗ ହେଲେ ପୁଣ ।
ସ୍ୱର୍ଗରେ ସାଧୁ ସାଧୁ କରନ୍ତି ସୁରମୁନି
ଚତୁର୍ବେଦ ଓଁ କାର କରନ୍ତି ବ୍ରହ୍ମାପୁଣି ।
ସ୍ୱର୍ଗରେ ଅପସରୀଏ ହୁଳହୁଳି ଦ୍ୟନ୍ତି
ଗନ୍ଧର୍ବ କିନ୍ନର ସେ ଯେ ନୃତ୍ୟ କରୁଛନ୍ତି ।
ଦୁନ୍ଦୁଭି ବଜାଇଣ ଇନ୍ଦ୍ର ତୋଷଚିତ୍ତ
ଏବେ ସେ ଗଙ୍ଗା ଯେ ପୁରିବେ ସିନ୍ଧୁ ସାତ ।
ଏଥୁ ଅନନ୍ତରେ ସୁରାସୁରି ପୁଣି
ତିନି ବର୍ଣ୍ଣରେ ସେ ଯେଥାଆନ୍ତେ ବୋହିପାଣି ।
ଗଙ୍ଗା ଯେ ଯମୁନା ସରସ୍ୱତୀ ନାମ ଜାଣ
ତିନିପୁର ବିଖ୍ୟାତ ହୋଇଲା ଜଗତେ ଜାଣ ।
ଏକଧାର ଅନ୍ତର ହୋଇଣ ସ୍ୱର୍ଗେ ଗଲା
ଧବଳାଙ୍ଗୀପୁର ଗୋଟି ଯେ ପୁରେ ବୋଲାଇଲା ।
ନୀଳରୂପ ଯମୁନା ପ୍ରୟାଗ ତୀର୍ଥ ପୁଣ
ପାତାଳକୁ ଗମନ କଲେକ ଯେ ଜାଣ ।

ଭଗବତୀ ସୁରାସୁରି ପାତାଳେ ବୋଇଲା
ପୁଣି ସେ ବେନି ଧାର ଗୁପତ ହୋଇଗଲା ।
ଧବଳାଙ୍ଗୀ ଗଙ୍ଗା ଯେ ମଞ୍ଚରେ ବିହରିଲା
ସେହି ସେ ତିନି ଧାର ତିନିପୁର ହେଲା ।
ଗଙ୍ଗା, ଯମୁନା, ସରସ୍ୱତୀ ବୋଲି ତିନି ନାମ
କଳା ଧଳା ନୀଳ ଯେ ବାରଣ ତିନିବର୍ଣ୍ଣ ।
ପଶ୍ଚିମରେ ସରସ୍ୱତୀ ଦକ୍ଷିଣେ ଯମୁନା
ଧବଳାଙ୍ଗୀ ରହିଲା ଉତ୍ତର ମୁଖେ କିନା ।
ଧବଳାଙ୍ଗୀ ସଂଗରେ ଭଗୀରଥ ରହି
ଭଗୀରଥ ଗଙ୍ଗା ନାମ ହୋଇଲା ତାର ତହିଁ ।
ମୃତ୍ୟୁ ଲୋକରେ ଯେଣୁ ହୋଇଲା ପୁଣ ଜାତ
ସକଳ ଜୀବଙ୍କୁ ସେ କରଇ ମୁକତ ।
ଭଗୀରଥ ରାଜନ ପିତୃଙ୍କ ତୁଳେ ନେଇ
ଆଗେ ଆଗେ ଭଗୀରଥ ପଛରେ ଗଙ୍ଗାଯାଇ ।
ହେମଗିରି ରାଜନ ପିତୃଙ୍କ ତୁଳେ ନେଇ
ହୁଁକାର ଶବଦ ଯେ କରିଣ ଶୁଭ୍ରକେଶୀ ।
ମଞ୍ଚରେ ବିକ୍ରମି ସେଯେ ଆସେ ସୁରାସୁରି
ଚର୍ଜ୍ଜନର ଘାତେ ପୁଣି କମ୍ପାଇ ବସୁନ୍ଧରୀ ।
ଅଶ୍ୱେକ ଚଢ଼ିଣ ନୃପତି ଚଳେ ଆଗ
ପ୍ରବେଶ ହେଲେ ଯାଇ ପବିତ୍ର ସ୍ଥାନ ମାର୍ଗ ।
କେଉଁଠାରେ ତିନିରୂପ ହୁଅନ୍ତି ମେଳଣ
ପୁଣ ସେ ଛଡ଼ାଛଡ଼ି ହୁଅନ୍ତି କେଉଁସ୍ଥାନ ।
ମିଳିଣ ଏକାସ୍ଥାନରେ ସେ ଭଉଣୀ ବୋଲାଇ
ଛଡ଼ାଛଡ଼ି ବେଳେ ଯେ ଯାହାନାମ ପ୍ରକାଶଇ
ପ୍ରୟାଗ ତୀର୍ଥରେ ଗଙ୍ଗା ରହିଲେ ମକରମାସେ
ଭଗୀରଥ ରହିଲେ ଯେ ତାହାଙ୍କର ପାଶେ ।
ସେ ତୀର୍ଥେ ମକର ମାସ ଯହୁଁ ଶେଷ ହେଲା
କରଯୋଡ଼ି ଭଗୀରଥ ଚରଣେ ନମିଲା ।
ଭୋ ମାତ ତ୍ରୈଲୋକ୍ୟ ତାରିଣୀ ସୁରାସୁରି
ମୋଠାରେ ନିର୍ଦ୍ଦୟ କିମ୍ପା ହେଉଛ ପୂର୍ଣ୍ଣକାରୀ
କେତେ କଷ୍ଟରେ ମୁଁ ଯେ ଆଣିଅଛି ତୋତେ
ଏତେ ବୋଲି ରାୟେ ଗଙ୍ଗାଙ୍କୁ ଭାବେ ଚିତ୍ତେ ।
ଭଗୀରଥ ଭକ୍ତିଦେଖି ପୂର୍ବମୁଖରେ ଗଙ୍ଗାବହି
ଯମୁନା ସରସ୍ୱତୀ ସଙ୍ଗରେ ଆସେ ତହିଁ ।
ଶତେଧେନୁ ପରିଯନ୍ତେ ଅଇଲେ ସଙ୍ଗହୋଇ
ସେଠାରେ କୋଳକଲା ବରୁଣ ରାଜା ତହିଁ ।

ସେଠାରେ ମେଲାଣି ଦେଲେ ଧବଳାଙ୍ଗୀତାଙ୍କୁ
ବରଷେ ପ୍ରୟାଗତୀର୍ଥେ ଭେଟ ଯେ ଆମ୍ଭଙ୍କୁ ।
ମକରେ ପ୍ରୟାଗତୀର୍ଥରେ ଯେହୁ ସ୍ନାନ କରେ
ଅମୃତ ଭୋଜନ ସେ କରିବେ ସ୍ୱର୍ଗପୁରେ ।
ଅଗ୍ନିରେ ପଖାଳିଣ ପିନ୍ଧିବେ ବସନ
ଶ୍ରୀଖଣ୍ଡ ଚନ୍ଦନ ପାରିଜାତକ ପୁଷ୍ପ ପୁଣ ।
ସ୍ୱର୍ଗପୁରେ ଅଷ୍ଟରତ୍ନ ଅଳଙ୍କାର ଲାଇ ।
ପ୍ରୟାଗେ ମକର ସ୍ନାନ କଲେ ଏମନ୍ତ ପୁଣ୍ୟହୋଇ
ପିତୃଲୋକେ ଚାହିଁଥାନ୍ତି ସ୍ୱର୍ଗକୁ ଯିବାପାଇଁ
ଦେବ ବ୍ରାହ୍ମଣ ଜାଣନ୍ତି ମହିମା ତାର କିସ
ପ୍ରଜାପତି ବୋଇଲେ ଅମର ସଙ୍ଗେ ବସ ।
ଏତେ ବୋଲି ଗଙ୍ଗା ଯମୁନାରେ କହି
ସେଠାରୁ ପୁଣ ଦୁହେଁ ଛଡ଼ାଛଡ଼ି ହୋଇ ।
ମିଳନ ସ୍ଥାନ ବୋଲିଣ ତାର ନାମ ଦେଇ
ସେଠାରୁ ସୁରାସୁରି ଅଇଲେକ ବହି ।
ଆଗରେ ଅଶ୍ୱଚଢ଼ି ଭଗୀରଥ ଦଣ୍ଡଧାରୀ
ପଛରେ ଧବଳାଙ୍ଗୀ ଗର୍ଜନ କରେ ଚଳି ।
କେତେଦିନ ଆସନ୍ତେ ଗଙ୍ଗା ଯେ ପୁଚ୍ଛନ୍ତି
ବାମଭାଗରେ ରାଜା କେବଣ ପୁର ଦିଶି ।
ନୃପତି ବୋଇଲେ ଏ ଯେ ବାରାଣସୀ ପୁର
ସେଥିରେ ବିଜୟ ଯେ କରିଛନ୍ତି ହର ।
ସୁବର୍ଣ୍ଣର କଳସ ଧବଳ ଘରମାନ
ବିଚିତ୍ର ଚିରାଳଯେ ଉଡ଼ଇ ବିଉପନ ।
ବାରାଣସୀପୁର ବୋଲି ସେ ପୁରର ନାମ
ଏଥିରେ ସେହୁ ମରନ୍ତି ଲିଙ୍ଗହୋନ୍ତି ପୁଣ ।
ପାଞ୍ଚଯୁଣ ନଗ୍ର ଗୋଟି ଧନୁର ଆକାର
ଈଶ୍ୱର ବିଜୟ କରିଛନ୍ତି ପାର୍ବତୀ ଧରିକୋଳ
ବିଶ୍ୱନାଥ କ୍ଷେତ୍ରେ ଖଟି ଯୋଗି ଜନଥାନ୍ତି
ଏଥିରେ ମଲେ ଜୀବ କୃମି ଯେ ନୁହନ୍ତି ।
ପ୍ରାଣ ଯିବା ବେଳେ ଶବଦ ରାମତାରକ ବାଣୀ
ଜୀବମାନଙ୍କ କର୍ଣ୍ଣରେ କହେ ଶୂଳପାଣି ।
ଏଣୁ ସେ ପ୍ରାଣୀମାନେ ମୁକତ ଗତି ପାଇ
ଲିଙ୍ଗହୋଇ ରହିବାରୁ କାଳେ ସେ କ୍ଷୟନୋହି ।
ନବଦ୍ୱୀପ ମଧ୍ୟରେ ଅଟଇ ସାର ଭୂଇଁ
ଏ ଭୂଇଁ ପାଞ୍ଚ ଯୁଣରୁ ସ୍ୱର୍ଣ୍ଣ ଜାତ ହୋଇ ।

ଚକ୍ରଘେନି ଶ୍ରୀହରି ଖୋଳିଲେ ସରୋବର
ଚକ୍ର ପୁଷ୍କରିଣୀ ନାମ ଯେ ତାହାର ।
କାଳେ ସଦାଶିବ ଦେଖିଲେ ପୁଣ ଯାଇ
ଚକ୍ରଆକାରେ ପୁଷ୍କରିଣୀ ଦେଖି ତୋଷହୋଇ ।
ତୁମ୍ଭେତ ପୁଷ୍କରିଣୀ ଶ୍ରୀହରିଙ୍କ ଠାରୁ ଜାତ
ଏସନକ ବୋଲିଣ ଶଙ୍କର ଉଷତ ।
ମସ୍ତକ ହଲାନ୍ତେ ହର ହଲଇ କୁଣ୍ଡଳ
ଖଞ୍ଜାଫିଟି କୁଣ୍ଡଳ ପଡ଼ିଲା ସେହୁ ଜଳ ।
ତେଣୁ ପୁଷ୍କରିଣୀର ମଣିକର୍ଣ୍ଣିକା ନାମ ହୋଇ
ଧବଳାଙ୍ଗୀ ଆଗରେ ଭଗୀରଥ କହି ।
ଶୁଣୁଛନ୍ତି ଶ୍ରୀରାମ କହୁଛନ୍ତି ବିଶ୍ୱାମିତ୍ର
ସେଠାରୁ କିସ ହେଲା ପଚାରନ୍ତି ରଘୁନାଥ ।
କୌଶିକ କହନ୍ତି ଶ୍ରୀରାମ ଲକ୍ଷ୍ମଣ ଶୁଣ
ସେ କଥା ତୁମ୍ଭ ଆଗରେ କହିବା ଏବେପୁଣ
ଭଗୀରଥଙ୍କଠାରୁ ସୁରାସୁରୀ ଶୁଣି
ଆନନ୍ଦ ଧବଳାଂଗୀ ମନରେ ହେଲେ ପୁଣି ।
ଧବଳାଙ୍ଗୀ କହୁଛନ୍ତି ଭଗୀରଥ ଶୁଣ
କେଉଁ ଗୁଣେ ଏ ପୁର ସାରସ୍ୱତ ପୁଣ ।
ଭଗୀରଥ ବୋଇଲେ ମାତ ଶୁଣ ମୋର ବାଣୀ
ପ୍ରଳୟକାଳେ ଶୂଳ ଧରିଲେ ହର ପୁଣି ।
ଶୂଳମାରନ୍ତେ କାପାଳୀ ବିମୋଚନ ଅର୍ଥେ
ସଦାଶିବ ଶୂଳକୁ ହୋଇଲା ସମ୍ମୁତେ ।
ସେଥିରେ ତପକଲେ ଅନେକ ପାପଯାଇ
ବ୍ରହ୍ମହତ୍ୟା ଗୋହତ୍ୟା ହେଲେ ପାର ହୋଇ ।
ଶୁଣ ଗୋ ଧବଳାଂଗୀ ଅଜ୍ଞାନ ଦୋଷ ଯାଇ
ଏଥୁ ଉତ୍ତାରୁ କଥା ଶୁଣ ଗୋ ମାତ ତୁହି ।
ସୂର୍ଯ୍ୟକୁଣ୍ଡଳ ନାମେ ତୀର୍ଥ ଯେ ଅଛଇ
ରବିଙ୍କଠାରୁ ଜାତ ସେ ତୀର୍ଥ ଯେ ହୋଇ ।
ବିରଞ୍ଚି ନାରାୟଣ ବୋଲାନ୍ତି ଆଦିତ୍ୟ
ଏକଦିନେ ବାରାଣସୀ ତୀର୍ଥରେ ଆଗତ ।
ବୁଲିବୁଲି ଦେଖିଣ ହରଷ ମନ ହେଲେ
ବିଶ୍ୱନାଥ ଦେବତାଙ୍କୁ ଦର୍ଶନ ଯାଇ କଲେ ।
ନିଜପୁର ଗଲାବେଳେ ବିରଞ୍ଚି ବିଚାରିଣ
ଆପଣା ନାମରେ ତୀର୍ଥ କଲେକ ଭିଆଣ ।
ରବିବାର ଦିନ ଯେବେ ଯେ ତୀର୍ଥେସ୍ନାନ କରି
ରବିଙ୍କୁ ଅର୍ଘ୍ୟଦେଲେ ମନକାମନା ପୂରି ।

ହବିଷ୍ୟ ଭୋଜନ ଯେହୁ ରାତ୍ରିରେ କରେ
ଅନେକ ଧନ ପ୍ରାପ୍ତ ହୁଅଇ ତାହାରେ ।
ସ୍ୱର୍ଗରେ ବସନ୍ତି ଯେ ଅମୃତ ପାନକରି
ସହସ୍ର ଯୁଗରେ ଯେ ଦେବ ତନୁ ଧରି ।
ତହୁଁ ପୁଣ ଉତ୍ତମ କୁଳରେ ଜାତ ହୋଇ
ରାଜା ହୋଇଣ ଯେ ସେ ପରଜା ପାଳଇ ।
ମହାଲକ୍ଷ୍ମୀ କୁଣ୍ଡ ବୋଲି ଏକଇ ତୀର୍ଥ ଅଛି
ସେ ତୀର୍ଥ ସ୍ନାନକଲେ କମଳା ହୋନ୍ତି ଶାନ୍ତି ।
ଗୁରୁବାରେ ସେ କୁଣ୍ଡରେ ସ୍ନାନ ଯାଇ କରି
ଦଧି, ଗୁଡ଼, ସର, ଘୃତ ସେ ତୀର୍ଥେ ଦାନକରି ।
ବୃହସ୍ପତି ସୁମରି ବିପ୍ରରେ ଦେଲେ ଦାନ
ଯେବେ ସେ ସମ୍ପଦ ଲଭଇ ସେହୁ ଜାଣ ।
ମହାଲକ୍ଷ୍ମୀ ନ ଛାଡ଼ନ୍ତି କନ୍ଧରୁ ତାହାର
ଅନ୍ନ ବସ୍ତ୍ର ନ ଛାଡ଼ଇ ଥାଇ ଯେତେକାଳ ।
ମଣି କୁଣ୍ଡଳ ବୋଲିଣ ଯେବଣ ତୀର୍ଥ ନାମ
ଦୁଇଦଣ୍ଡ ସେ ତୀର୍ଥରେ କଲେ ଯେ ବିଶ୍ରାମ ।
ସ୍ୱର୍ଗ ଦୁନ୍ଦୁଭି ଶବଦ ସେ ସ୍ଥାନରେ ଶୁଣି
ଏମନ୍ତେ ଅନେକ ତୀର୍ଥ ଏ ପୁରରେ ପୁଣି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଯେତେ ମିଳେ ଫଳ
କୋଟି କୋଟି ତୀର୍ଥ ଯେ ତିନିପୁର ଠୁଳ ।
ତୀର୍ଥଙ୍କର ଉପରେ ଏ ତୀର୍ଥ ପ୍ରାଣ ପତି
ମଧ୍ୟାହ୍ନ କାଳରେ ଯେହୁ ଏ ତୀର୍ଥ ରହନ୍ତି ।
ମଣି କର୍ଣ୍ଣିକାରେ ଯେହୁ କରଇ ସ୍ନାହାନ
ବିଶ୍ୱନାଥ ଦରଶନେ ଖଣ୍ଡଇ ପାପମାନ ।
ସେ ପୁର ବଢ଼ିଣ ଯେ ତୀର୍ଥମାନ ରହି
ତେଣୁ ବାରାଣସୀ ଜୀବନ୍ତା ତୀର୍ଥ ହୋଇ ।
ସବୁକାଳେ ଈଶ୍ୱରଛନ୍ତି ରହିଣ ଏଥି
ତେଣୁ ସେ ଏ ପୁରନାମବୋଲାଏଯେ କାଶୀ ।
ପୂର୍ବେ ଦେଇଥିଲେ ଭୋଗ ଏ ଜନ୍ମେ ସେପାଇ
ନ ଦେଇଥିଲେ ଲିଙ୍ଗ ପୂଜା ଯେ ନ ପାଇ ।
ବ୍ରହ୍ମଲିଙ୍ଗ ହୋଇଣ ଯେ କଳ୍ପେକ ଯାଏଥାଇ
ତେତେ ସମୟ ଗଲେ ପୂଜା ବିଧି ପାଇ ।
ମୃତ୍ୟୁହେଲାବେଳେ ଯେବେ ଈଶ୍ୱର ନକହେ ଜ୍ଞାନ
ସେ ପାପର କାରେଣି ବିଶ୍ୱନାଥ ଜାଣ ।
ବିଷ୍ଣୁର ଆଗେ ଈଶ୍ୱର ଅଛନ୍ତି ସତ୍ୟକରି
ସେ କଥାକୁ ନିଶ୍ଚୟ କରନ୍ତି ଶୂଳଧାରୀ ।

ଏକବ୍ରତ ଏକଦ୍ୱିଜ ବ୍ରହ୍ମଚାରୀ ଜାତ
କାୟା ଧାରଣା ସେ ଯେ ଫଳଇ ଯତ ସତ ।
ପୟ ପାନରେ ସନ୍ତୋଷ ତାଙ୍କର ନିଜକାୟେ
ବ୍ରହ୍ମକୁଳେ ଥାଇଣଦେବତା ପୂଜେ ଅସ୍ତ ଯାଏ ।
ଦିନ ଶେଷ ହୁଅନ୍ତେଣ ଆସଇ ନିଜ ବାସ
ନିଶାରେ ଉଜାଗର କନ୍ଦମୂଳ ଗ୍ରାସ ।
ଦିନେକ ନଦୀକୂଳରେ ଯତିଏ ପୁଣ ଆସି
ଏକାନ୍ତ ହୋଇଣ ସେ ସ୍ନାନ କରେ ବସି ।
ସ୍ନାନ ବିଧି ସାରିଣ ରୁଦ୍ର ପୂଜା କରି
କ୍ଷଣେ ଚକ୍ଷୁ ବୁଜିଣ କ୍ଷଣେ ଚାହେଁ ଫେରି ।
ଶୁଣ୍ଢିଆଣୀ ବୋହୁ ଯେ ଗଲା ପାଣି ଆଣି
ରୂପ ଗୁଣେ ସୁନ୍ଦର ଜଗତ ପାରେ ଜିଣି ।
ନିତି ସୁନ୍ଦରୀ ସ୍ନାନ କରଇ ନଦୀଜଳେ
ତେଣୁ ତାର ତନୁ ଯେ ଅଟଇ ନିରିମଳେ ।
ବିଶେଷ ବେପାରୀ ଜନ ସେହୁ ଅଟେ ପୁଣି
ପିନ୍ଧିଥାଇ ସୁନ୍ଦରୀ ଯେ ଦେବାଙ୍ଗ ପତନି ।
ଅଳଙ୍କାର ଭୂଷଣ କାଖରେ କୁମ୍ଭଘେନି
ପାଣି ଆଣିଲାବେଳେ ଦେଖିଲେ ତାଙ୍କୁ ମୁନି ।
ତାକୁ ଦେଖି ଯତି ଯେ ଅଳପ ଦେଇ ହସି
ପାପଗ୍ରହ ପ୍ରକାଶିଲା ଯତିର ଦେହେଁ ଆସି ।
ମଦନ ବିହ୍ୱଳ ଚିତ୍ତ ଧାରଣ ନ ଯାଇ
କାମଜ୍ୱାଳାରେ ଯତି ହୋଇଲେ ପୁଣ ବାଇ ।
ଧଇର୍ଯ୍ୟପଣ ଛାଡ଼ି ଯତି ଆସ୍ଥାନୁ ଉଠିଲା
ଶୁଣ୍ଢିଆଣୀ ଆସନ୍ତେଣ ଯାଇଣ ଓଳଗିଲା ।
ତୁ ଯେ କୁଳ ଭୁଆସୁଣୀ ଜୀବନ ମୋର ରଖ
ମଦନଜ୍ୱାଳାରେ ମୁଁ ଯେ ହୋଇଲି ନିରେଖ ।
ତୋତେ ଦେଖିଣ ମୁଁ ଯେ ମନରେ ସ୍ଥିର ନୋହି
ପଞ୍ଚଭୂତ ଆତ୍ମା ମୋର ତୋର ଠହିଁ ରହି ।
ଶୁଣିଣ ଶୁଣ୍ଢିଆଣୀ ଯେ ହୋଇଲା ଆଶ୍ଚର୍ଯ୍ୟ
ବୋଇଲା ତପୀ ତୁମ୍ଭେ ନ ହୁଅ ଅଧଇର୍ଯ୍ୟ ।
ତୁମ୍ଭେତ ବ୍ରହ୍ମମୁନି ମୁହିଁ ଜାତିରେ ହୀନ
ଏ ଛାର କଥାକୁତ ବଳେ ତୁମ୍ଭର ମନ ।
ଋଷି ବୋଇଲେ ମୁଁ ଯେ ହୋଇଲିକାମେବାଇ
ତୋର ରୂପ ଦେଖି ଚିତ୍ତ ଧରିଣ ନ ଯାଇ ।
କର ମୋତେ ଅନୁଗ୍ରହ ନକର ନିରାଶ
ମୋହର ମୁଖରେ ତୁ ଚୁମ୍ବନ ଦେଇ ତୋଷ ।

ହସିଣ ପୁଣି ଆସି ବୋଇଲା ଯତି ଶୁଣ
ଦିବସରେ କେମନ୍ତେ କରିବ ବିଡ଼ମ୍ବଣ ।
ଏ ତୁମ୍ଭ ବୋଲ ଯେ ଭାଙ୍ଗିବାକୁ ନାହିଁ ।
ସୁରତିଦେବି ବେଳ କାଳଯେ ଜାଣି ମୁହିଁ ।
ଏକେତ ଦିବସ ସେ ପୁଣି ନଦୀ କୂଳ
ଅନେକ ଲୋକ ଏଥିରେ ହୋଇଛନ୍ତି ମେଳ ।
ଘରେ ମୋର ଶାଶୁ ଯେ ନଣନ୍ଦଛନ୍ତି ଏବେ
ମୁହିଁ ଯେ ସୁନ୍ଦରୀ ଅଟଇ ଯେଣୁ ଭାବେ ।
ତେଣୁକରି ମୋତେ ଯେ ସମସ୍ତେଜଗେଫେରି
ସ୍ୱଭାବେ ମୁହିଁ ଆସି ନପାରେ ନିଶିଘେରି ।
କାଲି ଆସନ୍ତା ହେବ ପୂର୍ଣ୍ଣିମା ଯେ ତିଥି
ଚନ୍ଦ୍ରଗ୍ରହଣ ହେବ କାଲି ପୂର୍ଣ୍ଣିମା ରାତି ।
ସେ ଦିନ ନିଶିରେ ନଦୀକି ଲୋକ ଯିବେ
ସ୍ନାନ ଶଉଚ ସାରିଣ ବ୍ରାହ୍ମଣେ ଦାନଦେବେ ।
ମୁହିଁ ଏକାହୋଇ ଘରେ ଥିବି ହୋ ତପଚାରୀ
ସମୟ ଜାଣି ବେଗେ ଯିବ ହୋ ଅନୁସରି ।
ଏ ବଚନ ଋଷିଙ୍କି କହିଲା ଶୁଣ୍ଡୀଆଣୀ
ଆରଦିନ ପୂର୍ଣ୍ଣିମୀ ହୋଇଲା ବେଳ ଜାଣି ।
ଦିନ ସରି ବେଳ ବୁଡ଼ିଣ ହେଲା ରତନିଶି
ପାଞ୍ଚଘଡ଼ି ରଜନୀରେ ଚନ୍ଦ୍ରକୁ ରାହୁ ଗ୍ରାସି ।
ଯତି ଯେ ସୁରତି ରସରେ ଅଶକତ
ଏହି ସମୟରେ ଗ୍ରହଣ ଛାଡ଼ିଲେ ଚନ୍ଦ୍ରକୁତ ।
ନଦୀକି ସ୍ନାନ କରିଣ ଯହୁଁ ସର୍ବେ ଗଲେ
ଘରକେ ଜଣେ ଜଣେ ମାତ୍ରକ ରହିଲେ ।
ଏସନ ସମୟରେ ବିଚାରେ ତପଚାରୀ
ପ୍ରବେଶ ହେଲେ ପୁଣି ଦ୍ୱାରେ ଯାଇଁକରି ।
ନାନା କଉତୁକ ହସ ରସ ଭାବରେ
ଶୁଣ୍ଡିଆଣୀ ମନ ଯେ ମୋହିଲେ ମୁନିବରେ ।
ଏହି ସମୟରେ ଆସେ ତାହାର ପୁରୁଷ
ଶତେଭାର ସୁରା ଯେ ଘେନିଣ ପରବେଶ ।
ନିଜପୁର ମିଳନ୍ତେ ଜାଣିଲା ତାରନାରୀ
ବୋଇଲେ ସୁରା ହାଣ୍ଡିରେ ଲୁଚହୋ ତପଚାରୀ ।
ଏତେ କହି ଯତିଙ୍କି ସୁରା ଭାଣ୍ଡେ ସେ ଲୁଚାଇ
ତୁଚ୍ଛା ସୁରା ଭାଣ୍ଡ ଯେ ଭିତରେଣ ଥୋଇ ।
ସ୍ନାନ କରିଣ ମାତା ଭଉଣୀ ଯାଇଥିଲେ
ମାତା ଝିଅ ଆସି ଯେ ପ୍ରବେଶ ହୋଇଲେ ।

ଗହଳରେ ଘର ପୂରିଲେ ସର୍ବଜନ
ସେ ବେନି ଜନଙ୍କର ବିଚଳିତ ମନ ।
ଏଥୁ ଅନନ୍ତରେ ସେ ନାରୀ ନାୟକ
ସୁରାଯାକ ନେଇଣ ସମ୍ପାଦେ ଭାଣ୍ଡେକ ।
ଯେବଣ ଭାଣ୍ଡରେ ଯେ ଯତି ପଶିଥିଲା
ତୁଚ୍ଛା ଭାଣ୍ଡ ବୋଲିଣ ମଦିରା ପୁରାଇଲା ।
ଯେ ଯତି ଭୟରେ ଯେ କହିଲେ କଥା
ସୁରା ପୁରାନ୍ତେ ମୁନି ମନରେ ପାଏ ବ୍ୟଥା ।
ଦଶଦ୍ୱାର ସହିତେ ଯତିର ବୁଡ଼ିଗଲା
ତେଣୁ ବ୍ରହ୍ମଚାରୀ କି ଷୋଳ ବିଶ୍ୱା ହେଲା ।
ନିଶ୍ୱାସ ବନ୍ଦୀ ହେବାରୁ ଗଲା ତାର ପ୍ରାଣ
ଜାଣିଣ ଶୂଳପାଣି ବିଜୟ ତତ୍କ୍ଷଣ ।
ତ୍ରିଲୋଚନ ଚାହଁନ୍ତେ ସୁରାଭାଣ୍ଡ ଜଳିଗଲା
ତେଣୁ ଯତି କର୍ଣ୍ଣେ ରାମତାରକ ମନ୍ତ୍ର ଦେଲା ।
ପାର୍ବତୀ ଶୟନ ଯେ କରିଥିଲେ ପୁଣ
ଚେତା ପାଇଣ ନ ଦେଖିଣ ତ୍ରିଲୋଚନ ।
ସ୍ୱାମୀଙ୍କି ନ ଦେଖି ଦେବୀ ବିକଳ ମନ ହେଲେ
ଏହିକ୍ଷଣି ଥିଲେ ସେ ଯେ ପ୍ରଭୁ କାହିଁ ଗଲେ ।
ଯୋଗେଣ ଜାଣିଣ ସେ ସ୍ଥାନେ ମିଳିଲେ ଯାଇ
ପଞ୍ଚାନନ ଆସନ୍ତେ ଦେଖିଲେ ଦେବୀ ତହିଁ ।
ପାର୍ବତୀ କରଧରି ବାହୁଡ଼ିଲେ ଶୂଳପାଣି
ତୁମ୍ଭେ କିମ୍ପା ଅଇଲ ହେମବନ୍ତର ଦୁଲଣୀ ।
ପାର୍ବତୀ ବୋଇଲେ ଦେବ ତୁମ୍ଭଙ୍କୁ ନ ଦେଖି ମୁହିଁ
ଯୋଗବେଳେ ଜାଣିଣ ଅଇଲି ଦେବ ତହିଁ ।
ବାଟେ ଯାନ୍ତେ ହରବୋଲେ ଶୁଣଗୋ ଗଉରୀ
ତପୀଜାଣେ ଜାଇଥିଲା ପରଦାରା କରି ।
ଶୁଣ୍ଢିକି ଦେଖି ଲୁଚିଲା ସୁରାଭାଣ୍ଡେ ଯାଇ
ନ ଜାଣିସୁରା ଭାଣ୍ଡରେ ପୂରାଇଲେ ସେହି ।
ଲୟରେ ମହା ଯତି ଛାଡ଼ିଲା ସେଠି ପ୍ରାଣ
ଆମ୍ଭେ ରାମତାରକ ମନ୍ତ୍ର ଶୁଣାଇଲୁଁ ତା କର୍ଣ୍ଣ ।
ତେଣୁ ତାହାର ମାନବ ଶରୀର ଯେ ଗଲା
ଲିଙ୍ଗ ଗୋଟିଏ ହୋଇ ସୁରାଭାଣ୍ଡରେ ରହିଲା ।
ଶୁଣିଣ ସନ୍ତୋଷ ଯେ ହୋଇଲେ ପାର୍ବତୀ
କରତାଳି ମାରିଣ ହସିଲେ ପଶୁପତି ।
ଯେଣୁ ସେ ଶଙ୍କର ଗଲେକ ମନ୍ତ୍ର ଦେଇ
ତେଣୁ ସୁରାଲିଙ୍ଗ ଯତି ସେ ବୋଲାଇ ।

ଏହି କାଶୀପୁରେ ମଲେ ଅବଶ୍ୟ ଲିଙ୍ଗ ହୁଏ
ପୂର୍ବେ ହୋଇଥିବା ଲୋକ ସେଥିରେ ପୂଜା ପାଏ ।
ଯମଦେବତା ଯମେଶ୍ୱର ଲିଙ୍ଗ ପୂଜା କରି
ସେ ଲିଙ୍ଗ ଦର୍ଶନ କଲେ ନ ଯାଏ ଯମପୁରୀ ।
କୁବେର ଆସି ପୂଜେ କେଦାରେଶ୍ୱର ଜାଣ
ସୁରରାଜା ପୂରିଲେ ସୁରସେନ ଲିଙ୍ଗ ପୁଣ
କାର୍ତ୍ତିକେଶ୍ୱର ଯେ ଆବର ଗଣପତି
କାଶୀନଗ୍ର ପୁଅଙ୍କ ସଙ୍ଗେ ଖେଳେ ନିତି ।
ଏସନ ପ୍ରକାରେ ଏଥିରେ ହେବ ହର
ମହାଭଇରବୀ ଯେ ରଖନ୍ତି ସିଂହଦ୍ୱାର ।
ଦଣ୍ଡ ହସ୍ତେ ଘେନିଣ ବୁଲନ୍ତି ନଗ୍ର ପୁର
ପାପକଲେ ସ୍ୱର୍ଗରୁ ଆସି ନେବେ ସୁର ।
ବିଷ୍ଣୁଦେବ ଏ ପୁର ଯତନେ ନିର୍ମା କଲା ।
ଅତି ହରଷରେ ସେ ଶିବଙ୍କୁ ନେଇ ଦେଲା ।
ଏହି ଯେ ଧର୍ମକ୍ଷେତ୍ର ଯେ ଅଟଇ ପବିତ୍ର ।
ଏଥିରେ ଥିଲା ଲୋକ ସମସ୍ତେ ହୋନ୍ତି ମୁକ୍ତ ।
ଭଗୀରଥଙ୍କ ମୁଖରୁ ଗଙ୍ଗାଦେବୀ ଏହା ଶୁଣି
ହରଷ ହୋଇଲେ ଯେ ବରୁଣ ପାଟରାଣୀ ।
ଗଙ୍ଗା ବୋଇଲେ ରାଜନକ ଥାଏ ମୋତେ କର
ମଣି କର୍ଣ୍ଣିକା ଦେଖିବାକୁ ଶରଧା ଅଛି ମୋର ।
ବାଟ ବତାଅ ରାଜନ ତେଣେ ଯିବି ପୁଣ
ଦେଖିବାକୁ ଇଚ୍ଛା ମୋର ପାର୍ବତୀ ଈଶାନ ।
ଶୁଣିଣ ଅଶ୍ୱ ପିଠିରେ ରାଜନ ବିଜେ କଲା
ଆଗରେ ଭଗୀରଥ ପଛରେ ଗଙ୍ଗା ତୋରା ।
ଯହିଁରେ ବିଶ୍ରାମେ ଗଙ୍ଗା ତହିଁହେ ତୀର୍ଥ ହୋଇ
କେଉଁଠାରେ ଦେବୀ ଯେ ହରଷେ ଚଳିଯାଇ ।
ଆନନ୍ଦେ ଗଙ୍ଗା ଭଗୀରଥ ପଛରେ ବହିଯାଇ
କାଳଦୂତମାନେ ସର୍ବେ ଓଗାଳିଲେ ତହିଁ ।
ଗଙ୍ଗା ବୋଇଲେ ତୁମ୍ଭେମାନେ କିମ୍ପାଇ ନିରୋଧ
ମଣିକର୍ଣ୍ଣିକା ଯେ ଅଟଇ ତୀର୍ଥରାଜ ।
ତାଙ୍କୁ ଦେଖି ଆମ୍ଭେ ଯିବୁ ପୁଣି ଥରେ
ଶୁଣିଣ ବୋଇଲେ କାଳ ଯେ ମହାକାଳେ ।
ପୁଣ୍ୟ ତୀର୍ଥ ଯେ ଅଟଇ ପାଞ୍ଚଯୁଣ
ତୁମ୍ଭେ ଏଥିରେ ଗଲେ ପାଇବ ଦୋଷ ପୁଣ ।
ଗଙ୍ଗା ବୋଇଲେ ଆମ୍ଭେ ଯେ ଧୀର ହୋଇଯିବୁ
ଯେତେଦିନ ବହିବୁଁ ଅମୋକ୍ଷ ନ କରିବୁଁ ।

ତ୍ରିବାର ସତ୍ୟ କରି କହିଲେ ଗଙ୍ଗା ପୁଣ
ଛାଡ଼ିଦେଲେ ବାଟ ସେ ଗଙ୍ଗା ଗଲେ ପୁଣ ।
ଯହିଁ ଗଙ୍ଗା ବହେ ଅଶ୍ୱମେଧ ଯାଗଫଳ ପୁଣ
କେଉଁଠାରେ ତାଙ୍କର ମହିମା ଅଟେ ଧନ୍ୟ ।
ଧରେ ଧବଳାଙ୍ଗୀ କରନ୍ତି ଯେ ଗମନ
ମଣିକର୍ଣ୍ଣିକା ସଙ୍ଗରେ ମିଳିଲେ ଯାଇ ପୁଣ ।
ମଣିକର୍ଣ୍ଣିକା ଦେଖିଣ ବେଗେ କଲେ କୋଳ
ମେଳ ହେବାରୁ ପୁଛିଲେ କୁଶଳ ସକଳ ।
ଗଙ୍ଗା ବୋଇଲେ ମଣିକର୍ଣ୍ଣିକାକୁ ଚାହିଁ ।
ମହାସୁଖରେ ଥାଅ ଗୋ ସୁଲକ୍ଷଣୀ ହୋଇ ।
ବାର ବରଷରେ ଥରେ ଆସିବ ଦେଖି ତୋତେ
ମହେଶ୍ୱରୀ ବୋଲିଣ ହୋଇଲା ତୋର ତୀର୍ଥେ ।
ଯେ ଅବା ଝାସଦେବ ଏଠାରେ ଦାନ ଦେଇ
ସ୍ୱର୍ଗରେ ବସିବ ସେ ଜନ୍ମ ତାର ନାହିଁ ।
ରହିଣ ତିନିଦିନ ପୁଣ ଗଲେ ଚଳି
ଚନ୍ଦ୍ରାବତୀ କଟକ ନଗ୍ରରେ ଯାଇଁ ମିଳି ।
ଉତ୍ତରକୁ ମୁଖ କରି ଦେବୀ ଚଳିଗଲେ
ଉତ୍ତରାଙ୍ଗୀ ଧବଳାଙ୍ଗୀ ବୋଲିଣ ବୋଲାଇଲେ
ସେଠାରୁ ପୂର୍ବମୁଖ ହୋଇଣ ଚଳିଯାଇ
ବାରାଣସୀ ଚାରି ପାଖ ଦେଖିଲେକ ତହିଁ ।
କାଶୀକ୍ଷେତ୍ରକୁ ପୁଣି ତେଜିଲେ ସୁରାସୁରି
ଧନୁର ଆକାର ସେ ଦିଶିଲା ତିନିପୁରୀ ।
ଗଙ୍ଗାଦେବୀ ସେ ତୀର୍ଥରେ ଦିଶେ ଧନୁକର୍ଣ୍ଣ ।
ମଣିକର୍ଣ୍ଣିକା ଯେ ବୋଲାଏ କାଣ୍ଡ ପୁଣ ।
ଗଙ୍ଗା ଧନୁ ଈଶ୍ୱର ଧଇଲେ ହସ୍ତେ ପୁଣ
ମଣିକର୍ଣ୍ଣିକା ଶର ସେଥିରେ ବସାଇଣ ।
ପାପମାନ ଧ୍ୱଂସନ କରନ୍ତି ତ୍ରିପୁରାରି
ସୁରାସୁରି ଧନୁ କରି ପିନାକୀ ଦେଲେ ତାରି ।
ଏଥୁ ଅନନ୍ତରେ ଶୁଣ ହେ ରଘୁନାଥ
ଗଉଡ ଦେଶେ ପ୍ରବେଶ ହୋଇଲେ ଗଙ୍ଗାଶ୍ୱେତ ।
ସିନ୍ଧୁଘୋଷ ଦେବୀ କର୍ଣ୍ଣରେ ଶୁଣିଲା
ରାଜା ଅଦୃଶ୍ୟ ହୋନ୍ତେ ଦେବୀ ଏଣେ ତେଣେ ଗଲା ।
କାଉଁରୀ ଦେଶରେ ଦେବୀ ହେଲେ ପରବେଶ
ଉତ୍ତର ବାହିନୀ ହୋଇ ଚଳିଲେ ହରଷ ।
ଥୋକାଏ ଦୂରେ ରାଜା ଲେଉଟିଣ ଚାହିଁ
ଗଙ୍ଗା ନ ଦେଖି ଭଗୀରଥ ଗଲେ ଧାଇଁ ।

ଦେବୀଙ୍କୁ ନ ଦେଖିଣ ବାହୁଡ଼ି ଧାଡିକାରେ
ଦେଖିଲେ ଉତ୍ତର ଦିଗେ ଯାଉଛି ଗଙ୍ଗାଖରେ ।
ଅଶ୍ୱ ଧୂଆଁଇଣ ଯେ ନୃପତି ବେଗେ ଗଲା
ଆଗରେ ଓଗାଳିଣ ଅନେକ ସ୍ତୁତି କଲା ।
ଭୋ ମାତା ସୁରାସୁରୀ ଏଣେ ନୁହେ ବାଟ
କିମ୍ପାଇ ମାତ ମୋରେ ଦେଉଛ ଏତେକଷ୍ଟ ।
ଯେତେକଷ୍ଟ ଆଣିଲି ତୁହିତ ପୁଣ ଜାଣୁ ।
ବାଳୁତଙ୍କ ପ୍ରାୟେ ହୋଇ ଏଣେ ତେଣେ ଗମୁଁ ।
ଏଣେ ମୋର କାର୍ଯ୍ୟ ନାହିଁ ଶୁଣ ଗୋ ଧବଳାଙ୍ଗୀ
ଏବେ ବାହୁଡ଼ି ଜନନୀ ମୋତେ ନ କରି ଧନ୍ଦି ।
ଦେବୀ ବୋଇଲେକ ଜାଣୁଇ କେଣେ ଯାଇ
ତୁ ରାଜା ଯାଉଛୁକି କାହାଳି ବଜାଇ ।
ତେବେ ସେ ଯିବି ମୁଁରେ ତୋହରି ସଙ୍ଗେ ସଙ୍ଗେ
ଏସନକ ବଚନ କହିଲେ ଦେବୀ ଗଙ୍ଗେ ।
ଶୁଣିଣ ଭଗୀରଥ ଯୋଡ଼ିଲେ ବେନିକର
ତୁମ୍ଭର ଆଜ୍ଞା ମୁଁ ଯେ ପାଳିବି ନିକର ।
ଏତେ ବୋଲିଣ ରାଜା କାହାଳି ଅଣାଇଲା
ଆଗରେ ରାଜନ ସେ ବଜାଇ ଚଳେ ଧୀରା ।
କାହାଳୀ ଶବଦରେ ଚଳେ ସୁରାସୁରୀ
ଆଗରେ ଭଗୀରଥ ପଛରେ ଦେବୀ ଚଳି ।
କାହାଳୀ ବଜାଇଣ ଆଣିଲେ ଯେଉଁଠାରୁ
କାହାଳିଆ ଗଙ୍ଗା ନାମ ବୋଲାଇ ସେହିଠାରୁ ।
ସାନ ଧାର ହୋଇ ଯେଉଁ ଗୋଟିକ ରହିଲା
ତାର ନାମ ଗୋଟି ଭଇରବୀ ବୋଲାଇଲା ।
ଭଗୀରଥ ବୋଇଲେ ଶୁଣିବା ମହାମାୟୀ
ଆଗେ ଯାଇ ସେ ସ୍ଥାନ ମୁଁ ଦେଖିଣ ଆସଇ ।
ଏହିଠାରେ ମାଗୋ କ୍ଷଣେକ ତୁମେ ଥାଅସି
ମୋହର ରାଣ ତୋତେ କେଣେ ନ ଯିବୁଟି ।
ସତ୍ୟ କରାଇଣ ନୃପତି ଛାଡ଼ିଗଲେ
ଠାବ କରିବା ସ୍ଥାନରେ ଯାଇଣ ମିଳିଲେ ।
ଆଗେ ଲୋକ ଜଗାଇଥିଲେ ଯେ ବିବର
ସନ୍ତକ ପାଇଣ ସେ ବାହୁଡ଼ି ବ୍ୟଗ୍ରର ।
ଦେଖିଲେ ଧବଳାଙ୍ଗୀ ବିସ୍ମୟ ମୁଖ ହୋଇ
ସେଠାରୁ ସପତ ଧାରା ହୋଇଣ ବୋହି ଯାଇ ।
ସପତ ଭଇରବୀ ତେଣୁ ସେ ବୋଲାଇଲା
ସୁର ନର ମୁନି ତାଙ୍କୁ ସେବିବାକୁ ତ୍ୱରା ।

ଦେଖିଣ ନୃପତି ଯେ ହୋଇଲା ଚକିତ
କେବଳ କାରଣ ମାତ କଲୁ ଅନିୟମତ ।
ଗଙ୍ଗା ବୋଇଲେ ମୁଁ ଯେ ଅଟଇ ଯୁବତୀ
ସ୍ୱଭାବେ ସ୍ତିରୀଙ୍କର ଚଞ୍ଚଳ ପ୍ରକୃତି ।
ଏକଠାବ ହୋଇ ସ୍ତିରୀ ନ ପାରଇ ରହି
ତେଣୁ ସପତାଙ୍ଗରେ ମୋ ମନ ବଳାଇ ।
ଆଗ କଥା ନ ବିଚାର ପଛକଥା ଭାଳୁ
ଆପଣା ବଂଶ କୀର୍ତ୍ତି ଯେ କିମ୍ପାଇ ପାଶୋରୁ ।
ଭଗୀରଥ ବୋଇଲେ କିସ ମୁହିଁ ଛାଡ଼ି
ଆଗ କଥା ନ ବିଚାରି ପଛ କଥା ଭାଳି ।
ଧବଳାଙ୍ଗୀ ବୋଇଲେ ଶୁଣହେ ରାଜନ
ଯେତେବେଳେ ବିହି ତାଙ୍କୁ କଲାକ ରଚନ ।
ସାତପୁର କରିଣ ପୃଥ୍ୱୀକି ଭିଆଇଲା
ଏକପୁର ଗୋଟିକରେ ସାତ ଦ୍ୱୀପ କଲା ।
ନବଖଣ୍ଡ ମେଦିନୀ ଯେ ଚଉଦ ଭୁବନ
ସାତଗୋଟି ସାଗର ଯେ କଲାକ ଭିଆଣ ।
ସାଗର ସାତ ହୁଡ଼ାରେ ସାତ ପୁର କରି
ସପତ ସାଗର ବରୁଣ ଦଣ୍ଡଧାରୀ ।
ମର୍ତ୍ତ୍ୟପୁର ସପତ ସାଗରକୁ ପୁଣ
ଅଗସ୍ତି ପିଇଦେଲେ ମନ୍ତ୍ରବଳରେ ଜାଣ ।
ତେଣୁ ସେ ସପତ ସାଗର ଶୁଖି ପଦା
ବାସ୍ତରୀ ଯୁଗ ଯେ ହୋଇଲା ଉଦୁବୁଦା ।
ତେଣୁ ତୁମ୍ଭ ବଂଶରେ ସଗର ନୃପତି
ଅନେକ ପୁତ୍ର ଥିବାରୁ ସାଗର ଖୋଳାଏଟି ।
ସତ୍ୟ ଯୁଗେ ସାତ ଯେ ସାଗର ଖୋଳାଇଲା
ପୁତ୍ର ନୋହିବାରୁ ଯାଗ ସେହୁ କଲା ।
ଯାଗ ଲକ୍ଷଣବନ୍ତ ଅଶ୍ୱକୁ ଇନ୍ଦ୍ର ହରି
କପିଳ ମୁନି ପଛରେ ନେଇ ବାନ୍ଧିକରି ।
ଖୋଜି ଆସନ୍ତେ ପୁତ୍ରମାନେ ସେ ଅଶ୍ୱ ଦେଖିଲେ
ଚୋର ବୋଲି ମୁନିଙ୍କି ଅନେକ ଦଣ୍ଡ ଦେଲେ ।
କପିଳ ମୁନିଙ୍କ ଶାପେ ହୋଇଲେ ଦହନ
କେଉଁ କଥା ଆଗେ ତୋର କରିବାକୁ ମନ ।
ସବୁଦିନେ ପରମାଣ ଆଗକଥା ଆଗେ
ପଛର କଥା ନୃପତି ପଛେ କର ଏବେ ।
ଭଗୀରଥ ବୋଲେ ଯେବେ ହୋଇଲୁ ପରସନ୍ନ
ସତ୍ୟ କରି ଚଳ ମାତ ନକର ଦ୍ୱନ୍ଦ ପୁଣ ।

ଧବଳାଙ୍ଗୀ ବୋଇଲେ ବାବୁ ସତ୍ୟ ପରିମାଣ
ସାତ ଦିନେ ସାତ ଯେ ସାଗର ପୁରାଇଣ ।
ଆଠଦିନେ ତୋର ପାଶେ ହୋଇବି ପରବେଶ
ପିତା ଚରଣେ ହାରଇ ନମିଳିଲେ ତୋର ପାଶ ।
ଏତେ କହି ଧବଳାଙ୍ଗୀ ସାତଧାରେ ଗଲା
ସପତ ଦିନେ ସପତ ସାଗର ପୁରେଇଲା ।
ଆଠଦିନେ ଭଗୀରଥ ନିକଟେ ଆସି ମିଳି
ଦେଖିଣ ଭଗୀରଥ ଆନନ୍ଦ ମନେ ଭାଳି ।
ଧବଳାଙ୍ଗୀ ବୋଲେ ତୋ ପିତୃ କେଉଁଠାରେ ଠୁଳ
ଯେ ସ୍ଥାନକୁ ଆଗେ ବାଟ କଢ଼ାଅ ନୃପବର ।
ଶୁଣିଣ ନୃପବର ଆଗରେ ବେଗେ ଚଳି
ରାଜାଙ୍କର ପଛରେ ଚଳିଲେ ସୁରାସୁରୀ ।
ଯେବଣଠାରେ ଗଙ୍ଗା ରାଜାଙ୍କୁ ରଖିଗଲା
କେଣିକି ନ ଯିବୁ ବୋଲି ନିୟମ କରାଇଲା ।
ତାର ନାମ ଗୋଟି ହେଲା ଅଟୁଟ ଯେ ଘାତ
ସେ ସ୍ଥାନେ ସ୍ନାନ କଲେ ଦିଶଇ ସ୍ୱର୍ଗବାଟ ।
ଭଗୀରଥ ନଥିବା ବେଳେ ଅଇଲେ ସୁରଦେବ
ଶଚୀଙ୍କି ଘେନିଣ ଯେ ସ୍ନାନ କଲେ ବେଗ ।
ଦେଖିଣ ସୁରାସୁରୀ ଶଚୀଙ୍କି କୋଳକଲେ
ତେଣୁ ଇନ୍ଦ୍ରାୟଣି ଗଙ୍ଗାରେ ଭକ୍ତ ହେଲେ ।
ଶଚିଦେବୀ ବୋଇଲେ ଗଙ୍ଗା ଘେନ ମୋର ସେବ
ପ୍ରସନ୍ନ ହୋଇଣ ମୋତେ କଥାଏ ବରଦେବ ।
ଏ ସ୍ଥାନରେ ତୁମ୍ଭର ମୋହର ହେଲା ଭେଟ
ଏ ସ୍ଥାନର ନାମ ହେଉ ଗଙ୍ଗା ଇନ୍ଦ୍ରାୟଣି ଘାଟ ।
ସନ୍ତୋଷରେ ଧବଳାଙ୍ଗୀ ସନମତ କଲେ
ସେ ତୀର୍ଥରୁ ସୁରରାଜା ଶଚୀଙ୍କୁ ଘେନି ଚଳେ ।
ଭଗିରଥ ମିଳିବାରୁ ଗଙ୍ଗାଙ୍କୁ ନେଲେ ବରି
ପିତୃଙ୍କର ପାଶରେ ମିଳିଲେ ଯାଇକରି ।
ଭଗିରଥ ବୋଇଲେ ଶୁଣ ଗୋ ଜନନୀ
ଏହି ମୋର ପିତୃ ଦହନ ହୁନ୍ତି ପୁଣି ।
କର ତୁ ଶୀତଳ ପିତୃ ଯାଆନ୍ତୁ ସ୍ୱର୍ଗପୁରୀ
ଶୁଣି ସୁରାସୁରୀ ବୋଲେ ଶୁଣ ଦଣ୍ଡଧାରୀ ।
କଲା ସତ୍ୟ କଲେ ସିନା ପିତୃ ହୋଇବେ ମୁକତ
ତୁ ଆଗରେ ଗଲେ ପଛେ ଯିବାର ନିଅତ ।
ତୁ ଯେବେ ଅନଳରେ ପଶିବୁ ରାଜା ଆଗ
ତେବେ ସିନା ନିଶ୍ଚେ ମୁଁ ପଶିବ ତୋର ସଙ୍ଗ ।

ଆକାଶରେ ଦେବତାଏ କରନ୍ତି ବିଚାର
ଅଶ୍ୱକୁ ଧୁଆଁଇ ଏବେ କେବଣ ଅସୁଆର ।
ପିତାମହ କହେ ଯାର ପୋଡ଼ଇ ମଣ୍ଡଳ
ସେହି ରଘୁବଂଶେ ଭଗିରଥ ମହୀପାଳ ।
ଏହା ଶୁଣି ଦେବତାଏ ଧନ୍ୟ ଧନ୍ୟ କଲେ
ଏ ବଂଶର ଶିରୋମଣି ବୋଲିଣ ପ୍ରଶଂସିଲେ
ଏଥୁ ଅନନ୍ତରେ ପୁଣ ଦିଲିପର ସୁତ
ଅନଳରେ ଝାସ ଦେଲା କରିଣ ଶୁଦ୍ଧଚିତ୍ତ ।
ଯହୁଁ ଯେ ନୃପବର ଅନଳେ ପଡେ ଡେଇଁ
ପଛେ ପଛେ ଲାଗି ତାରେ ପଶିଲେ ମହାମାୟୀ
ହୋଇଲେକ ଶୀତଳ ସଗର ରାଜା ପୋଏ ।
ଆବର ଦେବତାମାନେ ଧନ୍ୟ ଧନ୍ୟ କହେ ।
ସ୍ୱଦେହେ ଘେନିଣ ସମସ୍ତଙ୍କୁ ଘେନି ଚଳିଗଲେ
ଅଚିନ୍ତା ବଇକୁଣ୍ଠରେ ଯାଇଣ ରହିଲେ ।
ସେ ସ୍ଥାନେ ଭଗିରଥ ଧବଳାଙ୍ଗୀ ଖୋଜିବାରୁ ପୁଣ
ଚକ୍ର ଗଙ୍ଗା ନାମରେ ବୋଲାଇଲେ ଜାଣ ।
ଦେଖିଣ ଦେବତାଏ ସନ୍ତୋଷ ମନ ହେଲେ
ଗଙ୍ଗା ସାଗରେ ଯାଇ ସ୍ନାନଦାନ ଦେଲେ ।
ସ୍ନାନ କରି ଦାନ ଦେଇ ଗଲେ ଦେବଗଣ
ଯେ ଯାହା ଆସ୍ଥାନଯେ ମିଳିଲେ ଯାଇପୁଣ ।
ଏଥୁ ଅନନ୍ତରେ ଶୁଣ ହେ ରଘୁରାଣ
ଜାଣିଣ ମିଳିଲେ ବରୁଣ ଆସି ପୁଣ ।
ଧବଳାଙ୍ଗୀ ଗଙ୍ଗାଙ୍କୁ ଗଉରବ କରି
ସଙ୍ଗରେ ଘେନି ବରୁଣ ନିଜପୁରେ ମିଳି ।
ଏଥୁ ଅନନ୍ତରେ ଶୁଣ ହେ ଦାଶରଥି
ସଗର ରାଜା ପୁତ୍ରେ ସେ ସ୍ଥାନେ ଥିଲେଟି ।
ଗଙ୍ଗା ସେଠାରେ ମିଳି ଶୀତଳ ତାଙ୍କୁ କଲା
ଭଗିରଥ ଖୋଜିବାରୁ ଗଙ୍ଗା ସାଗର ବୋଲାଇଲା ।
ସେ ସ୍ଥାନରେ ହରିହର ସଙ୍କେତ ରୂପ ହୋଇ
ଉତ୍ତର ଅଭିମୁଖେ ବିଜୟ କରି ତହିଁ ।
ଚକ୍ରଘାଟକୁ ହେ ଏତେକ ଧନୁ ଅନ୍ତେ
ଶ୍ରୀୟାଙ୍କୁ ଘେନିଣ ସେଥି ବିଜୟେ ଅନନ୍ତେ ।
ଏ ଗଙ୍ଗା ତୀର୍ଥ ଯେ ପୁରାଣେ ବଖାଣ
ଏ ତୀର୍ଥେ ସ୍ନାନ କଲେ ସ୍ୱର୍ଗକୁ ଯାନ୍ତି ପୁଣ ।
ଗଙ୍ଗାଙ୍କୁ ଯେ ଜନେକ ଛଡ଼ା ଯେ ସ୍ୱର୍ଗ ପୁଣ
ପ୍ରୟାଗ ଯେ ଦୁଇଯୁଣ ଅଟଇ ପ୍ରମାଣ ।

ପୁରୁଷୋତ୍ତମକୁ ଯୁଣେକ ଛଡ଼ା ସ୍ୱର୍ଗ
ସାଗରକୁ ଲାଗିଛି ପୁରୁଷୋତ୍ତମ ଭାଗ ।
ଗଙ୍ଗା କୂଳରେ ମଲେ ମୁକତି ହୋନ୍ତିପ୍ରାଣୀ ।
ନିଶ୍ଚୟ ମୃତ୍ୟୁ ଅଟେ ପୁରାଣେ ବଖାଣି ।
ବାରାଣସୀ ପୁରେ ଜଳ ମୂଳରେ ମୋକ୍ଷ
ଯହିଁ ବିଜୟ କରିଣ ଅଛନ୍ତି ବିଶ୍ୱନାଥ ।
ସାଗର କୂଳରେ ଯେହୁ ପ୍ରାଣହାରି
ପ୍ରତ୍ୟକ୍ଷେ ମୁକତି ଗତି ପାଆନ୍ତି ନରନାରୀ ।
ଚନ୍ଦ୍ରଘାଟେ ଯେ ପ୍ରାଣୀ ଝାସ ଦେଇପୁଣ
ଅଚିନ୍ତା ବଇକୁଣ୍ଠରେ ବସଇ ଯେହୁ ଜାଣ ।
ସକଳ ଦେବଙ୍କର ସେ ସ୍ଥାନ ଅଟେ ଗୋଷ୍ଠି
ତେଣୁ ସେ ଧବଳାଙ୍ଗୀ ତ୍ରିକୁଳେ ଉଦ୍ଧରେଟି ।
କପିଳ ମହାମୁନି ଯେ ଗଙ୍ଗାର କୁଳରେ
ନିରନ୍ତରେ ବ୍ରହ୍ମଜ୍ଞାନ ଜପନ୍ତି ମୁନିବରେ ।
ସାଗର କାରଣୀ ଯେ ତାରିଣି ବୋଲାଇ
ଏ ଗଙ୍ଗା ଶିରରେ ଧରି ଅଛନ୍ତି ତ୍ରିପୁରାରି ।
ଗଙ୍ଗାଧର ନାମ ଯେ ଜପନ୍ତି ତେଣୁକରି
ଏଠାକୁ ଆନଯେ ପଟାନ୍ତର ନୁହେ ସରି ।
ଏଥିରେ ସ୍ନାନ ତୁମ୍ଭେ କରହେ ବେନିଭାଇ
ମୋକ୍ଷ ପବିତ୍ର ଜଳ ଏହି ଯେ ଅଟଇ ।
ବିଶ୍ୱାମିତ୍ର ମୁନିଙ୍କର ଏସନ ବାଣୀ ଶୁଣି
କରଯୋଡ଼ି ଶ୍ରୀରାମ ଯେ ପଚାରନ୍ତି ପୁଣି ।
ପିତୃଲୋକ ସଙ୍ଗେ ଭଗୀରଥ ସ୍ୱର୍ଗଗଲେ
ଅଯୋଧାରେ ରାଜାସେହୁ ହୋଇଲା ସେ ଭଲେ ।
ବୋଲନ୍ତି ଗାଧିସୁତ ଶୁଣ ହେ ଦାଶରଥି
ଯେତେବେଳେ ଗଙ୍ଗା ପାଦତଳେ ଥିଲେ ପଶି ।
ଆଗରେ ଭଗୀରଥ ପଛରେ ସୁରାସୁରି
ସନ୍ଧ୍ୟା ସମୟରେ ପିତୃଙ୍କ ସଙ୍ଗେ ମିଳି ।
ତେତେବେଳେ ସେ ସ୍ଥାନ କପିଳ ମୁନି ତେଜିଲେ
ମଧ୍ୟପୁରେ କାର୍ତ୍ତିକେଶ୍ୱର ସଙ୍ଗରେ ରହିଲେ ।
କପିଳ ମୁନି ଆସନ ତେଜିବାରୁ ପୁଣି
ପିତୃ ସଙ୍ଗେ ଭଗୀରଥ ସ୍ୱର୍ଗଗଲେ ପୁଣି ।
ଗଙ୍ଗା ସୁଦୟାରେ ମୁକତି ହୋଇଗଲେ
ଦେଖିଣ ଦେବତାଏ ହରଷ ହୋଇଲେ ।
କଉଶିକ ବୋଇଲେ ଶୁଣ ହେ ରାଘବ
ଭଗୀରଥ ସ୍ୱର୍ଗ ଯିବାର ଦେଖିଣ ଦୂତବର୍ଗ ।
ସଙ୍ଗରେ ଥିବାଲୋକ ଅଯୋଧା ପରବେଶ
ରାଜା ସ୍ୱର୍ଗ ଯିବାର କହିଲେ ସମସ୍ତ ।
ଭଗୀରଥଙ୍କର ଯେ ଲକ୍ଷେ ମହାଦେଈ
ବଡ଼ପାଟ ଇନ୍ଦ୍ରଙ୍କର ଦୁହିତା ଅଟଇ ।
ଯେଉଁଦିନ ଭଗୀରଥ ଗଙ୍ଗା ଆଣି ଗଲେ
ବାପ ଯିବା ବେନି ମାସେ ପୁତ୍ର ଜନ୍ମ ହେଲେ ।
ବାର ବରଷ ସେଥିରେ ବହିଗଲା ପୁଣ
ଭଗୀରଥ ନ ଫେରିଲେ ନିଜ ରାଜ୍ୟ ସ୍ଥାନ ।
ରାଜାର ଯିବାର ପରଜା ମନ୍ତ୍ରୀ ଭାବି
ସେ ପୁତ୍ରକୁ ଯୁବରାଜ କଲେ ସେବି ।
ସୁଦର୍ଶନ ଚକ୍ରବର୍ତ୍ତୀ ଯେ ପୁତ୍ରର ନାମ
ଏଥିରେ କେତେ ବରଷ ବହିଗଲା ପୁଣ ।
ପିତା ସ୍ୱର୍ଗ ଯିବାରୁ ଶୁଣିଣ ରାଜା ହେଲା
ଦେଖିଣ ସନ୍ତୋଷ ସମସ୍ତ ହେଲା ଧରା ।
ଦେବଙ୍କର ଦୁହିତା ଯେ ଋଷିଙ୍କ କୁମାରୀ
ରାଜାଙ୍କର ଜେମା ଯେ ବ୍ରହ୍ମାଙ୍କର ନାରୀ ।
ଏମାନେ ବେଶ ହୋଇ ବୃଦ୍ଧପରଜା ନାରୀ ଘେନି
ଗଙ୍ଗା ସାଗରେ ଝାସ ଦେଲେକ ଯାଇ ପୁଣି ।
ଭଗୀରଥ ସଙ୍ଗରେ ପ୍ରବେଶ ଯାଇ ହେଲେ
ଅଚିନ୍ତା ବୈକୁଣ୍ଠରେ ନିଶ୍ଚିନ୍ତେ ରହିଲେ ।
ଶ୍ରୀରାମ ଶୁଣି ସେ ସନ୍ତୋଷ ମନ ହେଲେ
ଗଙ୍ଗାରେ ସ୍ନାନ ଯେ ବେନିଭାଇ କଲେ
ଧନ୍ୟ ଧନ୍ୟ ଧବଳାଙ୍ଗୀ ନଦୀ ସ୍ୱରୂପ
ଯେଉଁଠାରେ ଦେଖିବ ବ୍ୟାପିଛି ତୋର ରୂପ ।
ମଧ୍ୟରେ ଶୁକ୍ଳବର୍ଣ୍ଣ ବେନିପାଶେ ନୀଳ
ଏ ରୂପେ ତିନିରୂପ ବହିଣ ସଧିର ।
ଲହରୀ ରତ୍ନଜାଳ ପରାୟେ ଦିଶୁଛି ।
ଯେସନେ ରତ୍ନମେଘି ଅମଳାଣ ପିନ୍ଧେକାଛି ।
ଧବଳାଙ୍ଗୀ ବେନିତଟେ ବାଲି ସୁବର୍ଣ୍ଣ ପ୍ରଭା
ପୁଚ୍ଛ ବୁଣିଲା ପ୍ରାୟ ଜଳ ଦିଶେ ଶୋଭା ।
ପବନକୁ ସେ ଯେ ଶୋଭିତ ଟ୍ରୁଟ୍ଟତର
ନେତର ପରାୟେ ପଣେନ୍ତ ରହେ ଫରହର ।
ସାଧୁ ସେ ଧବଳାଙ୍ଗୀ ଧବଳ ଲକ୍ଷେ ନେତ୍ର
ସେଥିରେ ସ୍ନାନ ଯାଇ କଲେକ ରଘୁନାଥ ।
ବିଶ୍ୱାମିତ୍ର ସହିତେ ଯେତେକ ଋଷିଗଣ
ଧବଳାଙ୍ଗୀ ନଦୀ ମଧ୍ୟେ କଲେକ ସ୍ନାହାନ ।

ନିତ୍ୟ କର୍ମ ସାରି ସର୍ବେ ନାବରେ ବସନ୍ତି
ଦେଖୁଣ ତଟରୁ ପାରି ହୋଇଣ ଯାଆନ୍ତି ।
ନାବରୁ ଓହ୍ଲାଇ ଯେ ନବରେ ପରବେଶ ।
ଶ୍ରୀରାମରେ ଶରଣ ମୁଁ ବଳରାମ ଦାସ ।
ବିଶ୍ୱାମିତ୍ର ମୁନି ଯେ କହିବାରୁ ପୁଣି
ଶ୍ରୀରାମ ପଚାରନ୍ତି ଶୁଣ ହେ ଏବେ ମୁନି
ଗଙ୍ଗାର ସାନ ଭଗ୍ନି ଅଟନ୍ତି ଦେବୀ ରମା
ହେମବନ୍ତର ଦୁଲଣା ସର୍ବେଗୁଣେ ଶୋଭା ।
କାର୍ତ୍ତିକେଶ୍ୱର ଅଟେ ଶିବର ନନ୍ଦନ ।
କେମନ୍ତେ ଉମାଦେବୀ କଲେକ ଜନମ ।
ସେ କଥା ମୋ ଆଗରେ କହି ଋଷି ପୁଣି ।
ବୋଲନ୍ତି ବିଶ୍ୱାମିତ୍ର ଶ୍ରୀରାମଚନ୍ଦ୍ର ଶୁଣି ।
ସାବିତ୍ରୀ ପାର୍ବତୀ ଦୁହେଁ ପ୍ରଜାପତି ଦୁହିତା ଜାଣ
ପାର୍ବତୀଙ୍କି ବରିଥିଲେ ଈଶ୍ୱର ଦେବ ପୁଣ ।
ସଦାଶିବ ଦେବଙ୍କୁ ପାର୍ବତୀଙ୍କି ଦେଲେ
ସାବିତ୍ରୀଙ୍କି ଦେବବର ସେଠାରେ ବିଭା ଦେଲେ ।
କେତେ ଯୁଗ ଉତ୍ତାରୁ ପ୍ରଜାପତି ଯାଗ କରି
ସକଳ ଦେବତା ଋଷି ଆଣିଲେ ବରି କରି ।
ସଦାଶିବ ଯୋଗୀ ବୋଲି ନବରେ ପ୍ରଜାପତି
ଅଭିମାନେ ପାର୍ବତୀ ମିଳିଲେ ସେଥି ଆସି ।
ପିତାଙ୍କୁ କହି ଯାଗକୁଣ୍ଡେ ଝାସ ଦେଲେ
ଜାଣିକରି ସଦାଶିବ କପିଳାସୁ ଗଲେ ।
ପ୍ରଜାପତି ମାରିଣ ଯାଗକଲେ ନାଶ
ଡରିଣ ଦେବତାଏ ପଳାଇଲେ ସମସ୍ତ ।
ସେଠାରୁ ଆସିଣ ସଦାଶିବ ତପ କଲେ
ଶତେକ ବର୍ଷରେ ଗଉରୀ ଜନ୍ମ ହେଲେ ।
ହେମରୁ ଜାତ ହେଲେ ଅଯୋନି ସମ୍ଭୂତରେ
ବେନି ପକ୍ଷରେ ଯୁବା ଓ ହୋଇଲେ ଚଞ୍ଚଳରେ ।
ହେମବନ୍ତ ପଚାରିଲେ ଦୁହିତା ଗଉରୀଙ୍କୁ
ତୁମର ନିମନ୍ତେ ଗୋ ବରିବା କାହାକୁ ।
ଗଉରୀ ବୋଲେ ଈଶ୍ୱର ଅଟେ ମୋର ପ୍ରଭୁ
ଈଶ୍ୱର ଦେଖି ପିତା ବରି ମୋତେ ଦେବୁ ।
ଏମନ୍ତ ବଚନ ଯେ ଦୁହିତାଠାରୁ ଶୁଣି
ଈଶ୍ୱରଙ୍କୁ ବରିଲେ ହେମବନ୍ତ ଯେ ପୁଣି ।
ଈଶ୍ୱର ବରିଣ ଗଉରୀ ବିଭାହେଲେ
ଗୌରୀଙ୍କୁ ଘେନିଣ ଈଶ୍ୱର କପିଳାସ ଗଲେ ।
ଅନେକ ସୁଖ ଲୀଳା ସେଥିରେ ଭୋଗକଲେ
ମହା ଆନନ୍ଦରେ କପିଳାସରେ ରହିଲେ ।
ଏମନ୍ତ ଶତେ ବରଷ ସୁଖ ଭୋଗ କରି
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ହେ ଚାପଧାରୀ ।
ତାଡକାସୁର ବୋଲିଣ ଅସୁର ଉତପତି
ବଳରେ ବଳବନ୍ତ ଜନ୍ମରୁ ଦୁଷ୍ଟମତି ।
କର୍ମରେ ପୁଣି ଲେଖା କଲେକ ବେଦରେ
କାର୍ତ୍ତିକେଶ୍ୱର ହାତେ ମରଣ ତାହର ।
ଯୋଗେ ଜାଣିଲେ ସୁତି କାର୍ତ୍ତିକ ହସ୍ତେ ମରି
ଲେଖୁଣ ବିଧାତା କର୍ମେ ଗଲେକ ତାହାରି ।
ତେଣୁ ସେ ପ୍ରବଳ ଯେ ତାଡକାସୁର ହେଲା
ଦେବ ଦାନବ ନାଗବଳ ସବୁଙ୍କି ଜିଣିଲା ।
ସମସ୍ତେ ଡରିଣ ଯେ ଖଟିବେ ପାଦତଳେ
ଶତେକ ଯୁଗ ଧ୍ୱଂସିଲା ଯୋଗ ବଳେ ।
ରାଜା ପରଜା ଦେବତା ନର ଯେ ବାନର
ସମସ୍ତଙ୍କର ଭୟ ହୋଇଲା ହୃଦୟର ।
ବେଦବର ଆଗରେ କହିଲେ ଲୋକ ଯାଇଁ
ଜଗତ ସଂସାରକୁ ରଖହେ ଗୋସାଇଁ ।
ଶାତ୍ରୁକାର ଉପଦ୍ରବ ସହିଣ ନୋହିଲା
ଖୋଜିକରି ମୁନିମାନଙ୍କୁ ବନରୁ ଖାଇଲା ।
ବିଧାତା ବୋଇଲେ ସମ୍ଭାଳ କିଛିକାଳ
ସଦାଶିବଙ୍କର ତ ଜନ୍ମିବ ଦୁଲାଳ ।
ସେହି ସେ ଦୈତ୍ୟକୁତ କରିବେ ବିନାଶ
ଶୁଣିଣ ଅମରଗଣ ହୋଇଲେ ହରଷ ।
ଏଥୁ ଅନନ୍ତରେ ହେ ଶୁଣ ରଘୁନାଥ
ପାର୍ବତୀ ପାକ ସ୍ୱର୍ଶ ହୋଇଲେ ସେ ବନେତ ।।
ଶୁଦ୍ଧ ସ୍ନାନ କରନ୍ତେ ଈଶ୍ୱର ତାଙ୍କୁ କହି
ଭୋ ସଖୀ ସୁରତି ମୋତେ ଦେବା ବେଗହୋଇ ।
ପାର୍ବତୀ ବୋଇଲେ ତୁମ୍ଭର ଦେହ କ୍ଷୀଣ
ଏ ସମୟେ ଶୃଙ୍ଗାର ନକର ଈଶାନ ।
ଏ ବଚନ ଶୁଣି ବୋଇଲେ ତ୍ରିପୁରାରୀ
ଅମଳିନ ଶରୀର ଗୋ ହେଉଛି ମୋର ଭାରୀ ।
ତୁ ମୋତେ ସଖୀ ପୁର ବୁଝିଲୁ କି ସାନ
ମୁହିଁତ ଅଟଇ ଯେ ଜଗତ କାରଣ ।
ତାହାର ବିହୁନେ କି ବଳ ମୋର ତୁଟି
ଏଥିକି ସଖୀରେ ମନରେ ତୋର ଦୁଃଖୀ ।

ଯେତେବେଳେ ବ୍ରହ୍ମ ଯେ ପ୍ରଳୟ ହୋଇଲା
ଅଠର ମନୁ ପର୍ଯ୍ୟନ୍ତ ଜଳେ ତପ ହେଲା ।
ତେତେବେଳେ ସଖୀରେ ନଟୁଟେ ବଳମୋର
ପାଶୋରିଲୁ ସେକଥା ଜନ୍ମ ଦୋଷ ରହେବାର ।
ଆସ ଆସ ସୁରତି ଦିଅ ଗୋ ପ୍ରାଣସହୀ
ଜିଣିବା ହାରିବାର ଜାଣିବା ଏହିଠାଇ ।
ହସିକରି ଶୁଭ୍ରକେଶା ସନମତ କଲେ
ହସ୍ତ ଧରି ଉମାକୁ ଯେ କୋଳରେ ବସାଇଲେ ।
ନଦୀର ତଟ ଅଟେ ଗହନ ସେ ବନ
ଦର୍ପଣ ଶିଳାରେ ବିଜେ କଲେକ ବେନିଜନ ।
ଶୃଙ୍ଗାର ଭାବ କଲେ ଲଜ୍ଜା ଭାବ ଛାଡ଼ି
ନାନା ବିନୋଦରେ ଯେ ନ ଟଳିଲା ଯେ ଯଡ଼ି ।
ଶୃଙ୍ଗାର ରତି ରମଣେ ଯେ ଘୁଞ୍ଚିବାକୁ ନାହିଁ
ଏମନ୍ତ ଶତେ ବରଷ ସେଥିରେ ଗଲା ବହି ।
ଦେବ ହରଣ ଭୋଳରେ କେତେକାଳ ଗଲା
ଶଙ୍କର ଗଉରୀଙ୍କର ଶୃଙ୍ଗାର ନ ସରିଲା ।
ପୃଥିବୀ କମ୍ପିଲା ଯେ କମ୍ପିଲେ ଦିଗପାଳେ
ଭାଳିଣ ଦେବତାମାନେ ଯେ ମିଳିଲେ ଏକମେଳେ ।
ବ୍ରହ୍ମାକୁ ସଙ୍ଗେ ଘେନି ଅଇଲେ ଦେବଗଣ
ସ୍ତୁତି କଲେ କାର୍ପୁଣ୍ୟ ହୋଇଣ ଆଗେଣ ।
ଶୁଣିଲେ ସଦାଶିବ ଦେବତାଙ୍କର ବାଣୀ
ରତିଭାବ ତେଜିଲେ ଜାଣିଣ ଶୂଳପାଣି ।
ଯେତେବେଳେ ଶୃଙ୍ଗାର ତେଜିଲେ ତ୍ରିଲୋଚନ
ବିନ୍ଦୁ ଉଛୁଳି ପଡ଼େ ଧରଣୀ ପରେ ଜାଣ ।।
ଦେଖିଣ ଧରଣୀ ଯେ ଆକୁଳ ମତି ହେଲା
ଦେବତାଯେ ଅନ୍ୟାୟ ହେ କଲ ଯେ ବୋଇଲା ।
ହର ବୀର୍ଯ୍ୟ ବହିବାକୁ ନୁହଁଇ ସାମର୍ଥ
ରସାତଳେ ପଡ଼ି ବିଜେ ନୁହଁଇ ଧରିତ ।
ଧରଣୀର ଆକୁଳ ଯେ ଜାଣିଣ ପିତାମହ
ଅଗ୍ନିକି ବୋଇଲେ ଶିବ କାର୍ଯ୍ୟ କର ପରିଗ୍ରହ
ପୃଥିବୀ ସେହି ଯେ ବୀର୍ଯ୍ୟ ବେଦନାରେ
ତୁମ୍ଭେ ଏବେ ବହ ହେବ ସକଳ ହିତରେ ।
ଅଗ୍ନି ବୋଇଲେ ବହି ନ ପାରିବ ଜାଣ
ତୁମ୍ଭର ଆଜ୍ଞାକୁ ମୁଁ ନ କରିପାରେ ଆନ ।
ଏତେ ବୋଲି ଶିବବୀର୍ଯ୍ୟ ବହିଲେ ହୁତାଶନ
ତେଣୁ ଅଗ୍ନି ଶରୀର ହୋଇଲା ଦହନ ।

ଅଗ୍ନି ସୁମରଇ କରିବି ମୁହିଁ କିସ
ରଖମୋତେ ପିତାମହ ବୋଲିଣ ଦେଲା ଡାକ ।
ବେଦବର ବୋଇଲେ ଶୁଣରେ ଅଗ୍ନି ତୁହି
ଗଙ୍ଗାଙ୍କର ଗୋଚରେ ଦିଅ ବୀର୍ଯ୍ୟ ନେଇ ।
ଶୁଣିଣ ସୁରାସୁରି ଛାମୁରେ ଅଗ୍ନି ଦେଲା
ବେଦବର ବୋଇଲେ ବୋଲିଣ ସେ ବୋଇଲା
ଗଙ୍ଗା ବୋଇଲେ ମୁହିଁକି ପାରେ ଧରି
ଏତେ ବଳବୀର୍ଯ୍ୟ ଯେ ତ୍ରିପୁରାରୀ ପରି ।
ବିଧାତାର ଆଜ୍ଞା ଯେ ପାଳିବି ଅବଶ୍ୟ
ନ ରଖିଲେ ଈଶ୍ୱର ପଛରେ ଦେବେ ଦୋଷ ।
ଏବେ ବୋଲି ଧବଳାଙ୍ଗୀ କର ଯେ ପ୍ରସାରିଲା
ହର ବୀର୍ଯ୍ୟ ଘେନିଣ ସଙ୍ଗେ ଛପାଇଲା ।
ମୁଖବାଟେ ସେ ଯେ ଗର୍ଭକୁ ଦେଲା ଗିରି
ପେଟରେ ପଡନ୍ତେ ବୀର୍ଯ୍ୟ ହୋଇଲା ଅନ୍ତରାଳି
ଦେହ ସ୍ଥିର ନୋହିବାରୁ ଉଦ୍‌ଗାରି ପକାଇଲା
କଣ୍ଠତଟରୁ ବୀର୍ଯ୍ୟ ଲେଉଟି ଅଇଲା ।
ମୁଖବାଟରେ ବାହାର ହେଲା ଆସି ବୀର୍ଯ୍ୟ
ଉଦ୍‌ଗାରି ପକାନ୍ତେ ଯେ ନୋହିଲା ଗର୍ଭସଜ ।
ବିକଳରେ ଗଙ୍ଗାଦେବୀ ଅଯୋନି ରୂପ ଧରି
ତେବେ ସେ ହର ବୀର୍ଯ୍ୟ ନୋହିଲା ସମ୍ଭାଳି ।
ସମ୍ଭାଳି ନ ପାରିବାରୁ ଧବଳାଙ୍ଗୀ ପୁଣ
କପିଳାସ କନ୍ଦରେ ପକାଏ ନେଇ ଜାଣ ।
ପକାନ୍ତେ ହର ବୀର୍ଯ୍ୟ ବିଞ୍ଛହୋଇ ପଡି
ପାଷାଣେ ପଡିବାରୁ ଭିନ୍ନ ଭିନ୍ନ ତେଜ ବଢ଼ି ।
ସେଥିରୁ ଅଷ୍ଟଧାତୁ ଯେ ହୋଇଲା ଉତପତି
କାଚ ହିଙ୍ଗୁଳ ସେ ଯେ ହରିତାଳ ମୋତି ।
ମଣି ଶିଳା ଧବଳ ପାରା ଜାଣ ରସ
ସ୍ଫଟିତ ବୈଦୁର୍ଯ୍ୟ ମୁକୁତା ମଣି ଶେଷ ।
ପାରା ରସ ହିଙ୍ଗୁଳ ଉପୁଜେ ନାନା ସେଟି
ସଂସାର ମୋହରେ ଜଡ଼ ବାନ୍ଧେ ଲୋଟି ।
ତେଣୁ ସେ ହର ବିନ୍ଦୁ ଜଗିର ପରେ ପଡ଼ି
ଠାବେ ଠାବେ ହୋଇଣ ଅଷ୍ଟ ଧାତୁ ପଡି ।
ଦେଖି ଦେବତାଏ ବିଚାରିଲେ କରିବା କିସ
ଅକ୍ଷୟ ବୀର୍ଯ୍ୟଗୋଟି ହେଉଣ ଅଛି ଧ୍ୱଂସ ।
ବେଦବର ଭାଳିଣ କୁଳ ଦେବତା ରାଇ
ବୋଇଲେ ଜଗତ ରକ୍ଷାକର କିନା ତୁହି ।

ଯୋଗ ମାୟାକୁ ଘେନିଣ ବେଗେ ତୁହି ଚଳ
ହରଙ୍କର ବୀର୍ଯ୍ୟଗୋଟି ତାଙ୍କର ଗରଭର ।
ଏ ବୀର୍ଯ୍ୟ ଜାତ ହେଲେ ମରନ୍ତେ ଅସୁର
ତେବେ ସେ ପୃଥିବୀ ଭାର ହୋଇବକ ସ୍ଥିର ।
ଶୁଣିଣ ଜନ୍ତୁପତି ଯୋଗମାୟାରେ କହି
ଜାଣିକରି ଯୋଗମାୟା ସେ ଗିରିକି ଯାଇ ।
ସଙ୍ଗରେ ଷଡ଼କାରୀ ଘେନିଣ କରି ପୁଣ
ବିଚାର କରନ୍ତି ପୁଣ ଦେବୀଙ୍କି ଘେନିଣ ।
ବୋଇଲେ ପୂର୍ବେ ଶାପ ଆମ୍ଭକୁ ଅଛଇଟି
ସପତ ଋଷିଙ୍କର ଘରଣୀ ଆମ୍ଭେଟି ।
ଅଗ୍ନିଦେବତା ଆମ୍ଭଙ୍କୁ କପଟେ ଭୋଗକଲ
ତେଣୁ ଆମ୍ଭର ବୁଦ୍ଧି ଜଣାରେ ହୀନ ହେଲ ।
ଶାପଦେଇ ସ୍ୱାମୀ ସେ କହିଲ ପୁଣ ଯାଇ
ମୁକ୍ତ ହେବ ସଦାଶିବରେ ଉପକାରୀ ହୋଇ ।
ବୋଇଲେ ହର ବୀର୍ଯ୍ୟ କରିବ ସମ୍ଭାଳିଣ
ତେବେ ଶାପରୁ ତୁମ୍ଭେ ପାଇବ କାରଣ ।
ଏ ଅଗ୍ନି ଦେବତା ତୁମ୍ଭକୁ ବିଡ଼ମ୍ବଣ କରି
ଏ ପୁଣି ତୁମ୍ଭର ପୁତ୍ର ହେବେ ଗୋ ସୁନ୍ଦରୀ ।
ଏମନ୍ତ ବିଚାର କରି ଷଡ଼ନାରୀ ସେଥି
ସେ ବୀର୍ଯ୍ୟ ସବୁ ଯେ ଗର୍ଭକୁ ଦେଲେ କ୍ଷେପି ।
ଗର୍ଭରେ ଧରନ୍ତେ ପ୍ରସବ ପୁତ୍ରକରି
ଆଦିତ୍ୟ ଉଇଁଲାକତିମିରବଦାରି ।
ଷଡ଼ମୁଖ ସୁନ୍ଦର ଅଠର ଚକ୍ଷୁ ତେଣେ
ଦେଖିଣ ଷଡ଼ନାରୀ ତେଜି ନ ପାର କ୍ଷଣେ ।
କୋଳେ ଧରି ପୁତ୍ରର ମୁଖେ କ୍ଷୀରଦେଲେ
ଏ ବଚନ ଶୁଣିକରି ଶ୍ରୀରାମ ପଚାରିଲେ ।
ଷଡ଼ଗୋଟି ନାରୀ ଯେ ଶିବ ବୀର୍ଯ୍ୟ ଭକ୍ଷ
ଭିନ୍ନ ଭିନ୍ନ ମୁର୍ତ୍ତି ନୋହି ହୋଇଲେ ଏକମୂର୍ତ୍ତି ।
ଏଥିରେ କଥା ମୁନି ସଂକ୍ଷେପି ମୋତେ କହ
ଷଡ଼ଗୋଟି ମୁଖ ପୁଣ କେମନ୍ତେ ଏକ ଦେହ ।
ବିଶ୍ୱାମିତ୍ର ବୋଇଲେ ତୁମ୍ଭେ ଦାଶରଥି ଶୁଣ
ସେଥିରେ କଥା ଆମ୍ଭେ କହିବା ପ୍ରମାଣ ।
ତ୍ରିହସ୍ତ ଅଧେ ଉଚ୍ଚ ତିନିହାତ ଅଧେ ମୋଟ
ଏ ରୂପେ ଷଡ଼ରୂପ ଷଡ଼ନାରୀଙ୍କ ଠାରୁ ଜାତ ।
ଆନରେ ଷଡ଼ନାରୀ କ୍ଷୀରପାନ ଦେଇ
ଏକ ଆସନରେ ପୁଣି ଶୁଆଇଲେ ନେଇ ।

ଯେଣୁ ଶିବ ବୀର୍ଯ୍ୟ ଷଡ଼ଭାଗ କଲେ
ଜନମ ବେଳରେ ଷଡ଼ରୂପ ହୋଇଥିଲେ ।
ଏକସ୍ଥାନେ ଶୁଆନ୍ତେ ସମସ୍ତେ ମିଶିଗଲେ
ଏକ ମୂର୍ତ୍ତି ହୋଇଣ ବାରଣ ନୋହିଲେ ।
ବାରପାଦ ମିଶିଣ ହୋଇଲେ ବେନିପାଦ
ଷଡ଼ଦେହ ମିଶିଣ ହୋଇଲା ଏକ ହୃଦ ।
କେବଳ ବାର ହସ୍ତ ବେଳେଣ ରହିଲ
ଷଡ଼ ଗୋଟି ମୁଣ୍ଡ ଯେ ଅଠର ଆଖି ତୋର ।
ଷଡ଼ ନାରୀଙ୍କର ସଙ୍କେତ ଏ ଯେ ରହି
ତେଣୁଟି ଷଡ଼ାନନ ବୋଲାଇଲେ ସେହି ।
ଏରୂପେ କାର୍ତ୍ତିକେଶ୍ୱର ଷଡ଼ ମାତାରୁ ଜାତ
ଷଡ଼ଗୋଟି ସିଂହବକ୍ର ବହେ ଶିବସୁତ ।
ଏକୋଇଶ ହାତ ଉଚ୍ଚ ମୋଟ ଏକୋଇଶି
ଏଡ଼େକ ତନୁ ବହି କୁମର ବେଗେ ଉଠି ।
ଜାଣିଣ ବିଧାତା ଯେ ସକଳ ଦେବ ଘେନି
ଶିବ ପୁତ୍ର ନିକଟେ ମିଳିଲା ଯାଇ ପୁଣି ।
ସଦାଶିବ ବୀର୍ଯ୍ୟ ଯେ ତେଜରେ ଅନର୍ଗଳ
କି ଜାଣି ତେଜହେଲେ ଯେସନେ ଶଶଧର ।
ପାଶେ ଯାଇ ଦେବତାଏ ଅଭିଷେକ କଲେ
ଅପସରୀଏ ଯାଇଣ ନୃତ୍ୟ ଆରମ୍ଭିଲେ ।
ତେଣୁ ସେ ନାମ ତାଙ୍କର ହେଲା ସଙ୍କର୍ଷଣ
ଦେବଙ୍କ ଉପରେ ସେନାପତିକଲେ ବ୍ରହ୍ମାଜାଣ
ଅନେକ ସ୍ତୁତି ବିଧାତା ବେଦବର କଲେ
କୁମାର ବୋଇଲା କିମ୍ପା ବିକଳ ମନରେ ।
କେବଣ କାର୍ଯ୍ୟ ତୁମ୍ଭର କରିବଇଁ କହ
ଶୁଣିଣ ବଚନ ଯେ କହନ୍ତି ପିତାମହ ।
ତାଡ଼କାସୂର ନାମରେ ଅସୁର ବଳବନ୍ତ
ତାହାର ଭୟରେ ଯେ ଭାଙ୍ଗିଲା ଜଗତ ।
ସ୍ୱର୍ଗରେ ସୁରଦେବ ନ ପାରନ୍ତି ରହି
ତାଡ଼କସୁର ଭୋଗ ଯେ କଲା ତିନିମହୀ ।
ଦେବଙ୍କଠାରୁ ପୁଣି କୁମାର କଲା ସନମତ
ଦୈତ୍ୟକୁ ମାରିବାକୁ ହୋଇଲା ସମର୍ଥ ।
ବ୍ରହ୍ମାଙ୍କୁ ବୋଇଲେ ମୋତେ ଦିଅ ଅସ୍ତ୍ର ପୁଣି
ହରଷରେ ବେଦବର ଦେଲେକ ଧନୁ ଆଣି ।
ଶସ୍ତ୍ର ଧାରଣା ଧନୁ ଦେଲେକ ହରଷରେ
ଏଯତ୍ନ ପବିତ୍ର ଧନୁ ବୋଇଲେ ବେଦବରେ ।

ଶାମ ବେଦରୁ ଏ ଯେ ହୋଇଲା ଜାତ
ପବିତ୍ର ଧନୁ ଶୋଭେ ଦ୍ୱିଜବରଙ୍କ ହୃଦରେତ
ଏହାକୁ ବୋଲି ବ୍ରହ୍ମଶର ଶକତି ମୁଦ୍‌ଗର
ଛେଲ ଚକ୍ର ଶାବେଳି ଆୟୁଧ ନାନା ଶର ।
ଇନ୍ଦ୍ର ଯେ ଆଣିଦେଲେ ବଜ୍ର ଧନୁ ଗୋଟି
ବଜ୍ର ବାଟୁଳି କୁହୁକ ଯେ ବଜ୍ର ସୁଚି ।
ଘଡ଼ଘଡ଼ି ଚଡ଼କ ଯେ ଆବର ବଜ୍ର ଶକ୍ତି
ଏମନ୍ତେ ଅନେକ ଶର ସୁରରାଜା ସମର୍ପନ୍ତି ।
ଅମରଗଣ ଯେ ଯାହା ତେଜ ଶର ଦେଲେ
ବୃହସ୍ପତି ମନ୍ତ୍ର ଯନ୍ତ୍ର ସକଳ କହିଲେ ।
ଦଶ ଦିଗପାଳ ଯେ ଆୟୁଧମାନ ଦେଇ
ସଦାଶିବ ନନ୍ଦନଙ୍କୁ ଦେଲେ ତୋଷ ହୋଇ ।
କନକର ଦଣ୍ଡକୁ ବରୁଣ ଆଣି ଦେଲେ
ମୋହନା ଶରକୁ କୁବେର ସମର୍ପିଲେ ।
ନାଗପାଶ ଶର ଯେ ଦେଲେକ ବାସୁକୀ
ମୁନିମାନେ ବହୁତ ବଳଦେଲେ ନିକି ।
ଦେଖିଣ ହରଷ ଚିତ୍ତ ଶିବସୁତ ହେଲେ
ଇନ୍ଦ୍ର ବେଦବରଙ୍କୁ ବଚନ ପ୍ରକାଶିଲେ ।
ତୁମ୍ଭେ ଦେବତାଏ ଏବେ ମୋ ବଚନ ଶୁଣ
ପିତା ମାତା ମୋର କେହୁ ଅଟଇ ଯେ ପୁଣ ।
ବେଦବର ବୋଇଲେ ପିତା ତୋ ଈଶ୍ୱର
ମାତା ଯେ ତୋହର ଶୁଣ ଆରେ କୁମର ।
କୁମର ବୋଇଲେ ଏ ଯେ ଷଡ଼ ନାରୀ କିଏ
ବେଦବର ବୋଇଲେ ପାଳିବା ଧାଈମାଏ ।
ସଙ୍କର୍ଷଣ ବୋଇଲେ କିମ୍ପାଇ ପାଳିଲେ ମୋତେ
ବିଧାତା ବୋଇଲେ ଏ ପୂର୍ବର ଶାପମୁକ୍ତେ ।
କୁମାର ବୋଇଲା ଏହାଙ୍କ ଶାପ ପାରିକରି
ବିଧାତା ବୋଇଲେ ମୁକ୍ତି ଦେଇଯାଆନ୍ତୁ ସ୍ୱର୍ଗପୁର ।
ଶୁଣିଣ ଷଡ଼ନାରୀ ସ୍ୱଦେହ ଧରି ଚଳି
ଅମର ଭୁବନ ମିଳିଲେ ଯତ୍ନେ ନାରୀ ।
ସେଠାରୁ ବେଦବର ସକଳ ଦେବ ଘେନି
ଅମର ଭୁବନରେ ମିଳିଲେ ଯାଇ ପୁଣି ।
ମାତା ଦେବତା ଋଷି ଯେ ଯିବାକୁ କୁମାର
ଈଶ୍ୱର ଦେବତାଙ୍କୁ ସୁମରେ ମନର ।
ପାର୍ବତୀ ଘେନିଣ ଯେ ଈଶ୍ୱର ବିଜେ କଲେ
କାର୍ତ୍ତିକ ପଦାରେ ଯାଇ ପୁତ୍ରକୁ ଭେଟିଲେ ।
ଦେଖିଣ ପିତା ମାତାଙ୍କୁ କୁମର ତରଳିଲା
କରଯୋଡ଼ି କୁମାର ଆଗରେ ଛିଡ଼ା ହେଲା ।
ପାର୍ବତୀ ବୋଇଲେ କେବଣ କୃତ୍ୟ ଏହୁ
ଷଡ଼ଗୋଟି ମୁଖ ଏକ ଶରୀର ହେଲା କାହୁଁ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋବନିତା
ତୁମ୍ଭର କୁମର ଏଟି କେ କରେ ଧରମାତା ।
ପାର୍ବତୀ ବୋଇଲେ ଏ କେମନ୍ତେ ଜାତ ହେଲା
ମୋର ଗର୍ଭ ହୋଇଲା ଜଣା ତ ନ ଗଲା ।
ଈଶ୍ୱର ବୋଇଲେ ଆମ୍ଭର ଶୃଙ୍ଗାର ରତି କାଳେ
ବହୁଦିନ ହେବାରୁ ଦେବତାଏ ଯେ ଭାଳେ ।
ତୋର ମୋର ଶୃଙ୍ଗାର ଭାବ ରତି ରସ
ସେହିକାଳେ ଯେବେ ଯାଇଁ ହେଲେ ପରବେଶ ।
ଦେବଙ୍କୁ ଦେଖି ତୁମ୍ଭେ ଭୟରେ ଉଡ଼ିଗଲ
ତେତେବେଳେ ବିନ୍ଦୁ ଯେ ଉଛୁଳିଲା ମୋର ।
ସେ ବିନ୍ଦୁ ଉଛୁଳିଣ ଯେ ଷଡ଼ଭାଗେ ପଡ଼ି
ଧରଣୀ ଆକୁଳ ଦେଖି ଯୋଗ ମାୟାଧରି ।
ଗର୍ଭକୁ କ୍ଷେପନ୍ତେ ବିରୁପେ ସୂତ ଜାତ
ତେଣୁ ଷଡ଼ଭାଗ ଷଡ଼ ରୂପେ ସମ୍ଭୂତ ।
ପାର୍ବତୀ ବୋଇଲେ ଯେ ଅଟୁଟ ଧାଈ କାହିଁ
ଈଶ୍ୱର ବୋଇଲେ ବିଧାତା ମୁକ୍ତି ଦେଇ ।
ଆଗ ଶାପ ଥିବାର ପାର ହୋଇଗଲା
ଜନ୍ମେ ଜନ୍ମେ ସେ ତୁମ୍ଭର ଅଟନ୍ତି ଧାଇ ପରା ।
ପାର୍ବତୀ ବୋଇଲେ ବିଧାତା ପରା ଆସି
ଈଶ୍ୱର ବୋଲନ୍ତି ପୁତ୍ରଜନ୍ମ ଦେଖି ହୋଇ ତୋଷି ।
ଦେବଙ୍କୁ ସଙ୍ଗେ ଘେନି କୁମର ପାଶେ ମିଳି
ଅନେକ ଶସ୍ତ୍ର ବଳ ଧନୁମନ୍ତ ଦେଇକରି ।
ଅମର ପୁରକୁ ଯେ ସମସ୍ତେ ଚଳିଗଲେ
ବଳବନ୍ତ ହେବାରୁ କୁମର ଆମ୍ଭଙ୍କୁ ସୁମରିଲେ ।
ଗଉରି ବୋଇଲେ ଦେବଙ୍କ କିସ ହିତ
କିସ ଅର୍ଥେ ଆମ୍ଭ ପୁତ୍ରକୁ କଲେକ ସମର୍ଥ ।
ତ୍ରିଲୋଚନ ବୋଇଲେ ଯେ କଥାଏବେ ଶୁଣ
ତାଡ଼କା ଦୈତ୍ୟ ତିନିପୁରକୁ ଧୋକା ଦେଲା ପୁଣ ।
ଦେବତା ସୁର ନର ବାନର ନାଗବଳ
ସମସ୍ତଙ୍କୁ ପରଜା କରି ଖଟାଏ ପାଦତଳ ।
ଯୁଦ୍ଧ ରଣ କରିଣ ହାରିଲେ ସକଳ
ତେଣୁ ସେ ଅସୁର ହେ ଜାଳିଲା ତିନିପୁର ।

ପାର୍ବତୀ ବୋଇଲେ ଯେ ନ ଥିଲେ କି ହରି
ଅସୁର କିମ୍ପାଇ ଯେ ନ ପାରିଲେ ମାରି ।
ଈଶ୍ୱର ବୋଇଲେ ଦୈତ୍ୟ ତାଙ୍କ ଅସ୍ତ୍ରେ ନମରଇ
ଚନ୍ଦ୍ର ଦେବତାଙ୍କ ବରେ ଅଜରଅମର ସେହି ।
ଯେତେବେଳେ ବରଦେଲ ତେତେବେଳେ କହି
ଈଶ୍ୱର ପୁତ୍ର ହସ୍ତରେ ନିଷ୍ଟେ ମରିବୁ ତୁହି ।
ସେ କଥା ମିଳିଣ ଦେବେ ଜାଣିଲେ ସକଳ
ପୁତ୍ରକୁ କହିଣ ଯେ ଚଳିଲେ ନିଜପୁର ।
ଶୁଣିଣ ପରମ ତୋଷ ଯେ ଦେବୀ ହେଲେ
ଜାଣିଲି ଏଥର ବୋଲି ସ୍ୱାମୀଙ୍କୁ କହିଲେ ।
ଶ୍ରୀରାମ ବୋଇଲେ ସେଠାରୁ କିସ ହେଲା
ପୁତ୍ରକୁ ପିତା ମାତା ଆଦର କଲେ ପରା ।
ବିଶ୍ୱାମିତ୍ର ବୋଇଲେ ତୁମ୍ଭେ ଶୁଣ ରଘୁନାଥ
ଈଶ୍ୱର ପୁତ୍ରକୁ ନେଇବସାଇ କୋଳରେତ ।
ବୋଇଲେ କୁମରେ କି ବରେ ତୋର ଇଚ୍ଛା
ମନ ଇଚ୍ଛା ବର ମାଗ ପୁରୁ ମନୋବାଞ୍ଛା ।
କୁମାର ବୋଇଲା ତୁମ୍ଭେ ପିତା ଅଟ ମୋର
ପ୍ରଳୟେ ନ ତୁଟିବି ବରଦେବୁ ଯେ ଚଞ୍ଚଳ ।
ପାଶୁପତ୍ର ତ୍ରିଶୂଳ ଶକତି ମୋରେ ଦେବୁ
ଯେଉଁଠାରେ ରହିବୁ ପଛ କତିରେ ରଖିବୁ ।
ସକଳ ଦେବଙ୍କର ଦେହରେ ଯେତେ ବଳ
ମୋହର ଦେହରେ ଦେବ ଆଣି କରି ଠୁଳ ।
ଈଶ୍ୱର ବୋଇଲେ ଏକଥା ଅସ୍ତୁ ତୋତେ ହେଉ
ଦେବଙ୍କର କାର୍ଯ୍ୟ ତୋ ହସ୍ତରେ ନିର୍ବାପାଉ ।
ମାର ଅସୁରଙ୍କୁ ଦେବତାଙ୍କୁ ଭଲ କର
ତିନିପୁର କଷ୍ଟ ଯାଉ ମାରରେ କୁମାର ।
ମାତା ବୋଇଲେ ତୋତେ ଦେଲି ଅଭୟବର
ତିନିପୁରରେ ଜୟୀ ହୁଅରେ କୁମର ।
ଶୁଣିଣ କୁମାର ଯେ ବାହାର ହୋଇଲା
ବେଦବର ଦେବତାଙ୍କୁ ଘେନିଣ ମିଳିଲା ।
ଈଶ୍ୱର ପାର୍ବତୀଙ୍କି କଲେ ଦରଶନ
ଅନେକ ସ୍ତୁତି କରି ତ୍ରିପୁତି କଲେ ମନ ।
ଶ୍ରୀରାମ ପଚାରନ୍ତି ସେଠାରୁ କିସ ହେଲା
ଗାଧି ସୁତ ବୋଇଲେ ଶୁଣ ଦଶରଥ ବଳା ।
ସକଳ ଦେବତା ଈଶ୍ୱର ବେଦବର
ଠୁଳ ହେବାର ଦେଖି ରତି ମିଳେ ସେଠାର ।

ବୋଇଲା କାମଦେବ ଦହନ ହେଲା ଯେବେ
ମୁଁ କିସ କରିବି ରହିଣ ଲଜ୍ଜାଭାବେ ।
ମୁହିଁ ପ୍ରାଣ ହାରିବି ସମସ୍ତେ ତୁମ୍ଭେ ଦେଖ
ବେଦବର ବୋଇଲେ ଦେବୀ ନୁହ ଗୋବିମୁଖ ।
ଈଶ୍ୱର ଦେବ ତାଙ୍କୁ କହ ଯା ଦେବୀ ଯାଇ
ସେଇ ସେ ଜିଆଁଇ ଦେବେ ତୋହର ନିଜ ସ୍ୱାମୀ ।
ଶୁଣିଣ ରତିଦେବୀ ଯେ ବେଗେ ଚଳିଗଲା
ଈଶ୍ୱର ପାର୍ବତୀଙ୍କ ଚରଣେ ଓଳଗିଲା ।
ପାର୍ବତୀ ବୋଇଲେ ଏ କଥା କିସ ପୁଣ
କିମ୍ପାଇ ଏହି ସ୍ତ୍ରୀ ଯେ କରଇ ରୋଦନ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ଭଗବତୀ
ତୋତେ ନ ଦେଖି ଯୋଗ ସାଧିଲି ମୁହିଁଟି ।
ଏହି ସମୟରେ ଅସର ହୋଇଲେ ପ୍ରବଳ
ଦେବତାଏ ବିଚାରି ଭିଆଇଲେ କାମେଶ୍ୱର ।
ଯୋଗ ନିଦ୍ରା ଭାଙ୍ଗନ୍ତେ ଦେଖିଲି କାମଦେବ
ଚାହାଁନ୍ତେ ଭସ୍ମ ହେଲା ରତି ପତି ଦେବ ।
କିଛିଦିନେ ତୁମ୍ଭଙ୍କୁ ପାଇଣ ତୋଷ ହେଲି
ରତି ଶୃଙ୍ଗାର ପ୍ରୀତିହରଷ ହୋଇଲି ।
ଦେବ ବରଷେ ଶତେ ବରଷ ଗଲା ପୁଣ
କାମଦେବ ଭସ୍ମ ଯେ ହୋଇଲେ ଏତେ ଦିନ ।
ହେମବନ୍ତୀ ବୋଇଲେ ବହନ ଜୀଆଅ ହେବ
ଭସ୍ମସ୍ଥାନକୁ ଈଶ୍ୱର ଚଳିଗଲେ ବେଗ ।
ପାଉଁଶ ଗୋଟାଇଲେ ପଢ଼ିଲେ ସଂଜୀବନୀ
ଜୀବପାଇ କାମଦେବ ଉଠେ ତତ୍‌କ୍ଷଣି ।
ଈଶ୍ୱର ଗଉରୀଙ୍କୁ ନମସ୍କାର କଲା
ପିତାମହ ନମସ୍କାର କଲେକ ବେଗେ ପୁଣ
ସୁରରାଜା ଚରଣେ ଓଳଗେ ତତ୍‌କ୍ଷଣ ।
ପତିକି ଘେନିଣ ଯେ ନିଜ ସ୍ଥାନଗଲେ
ଈଶ୍ୱର ଗଉରୀ ସେ ସ୍ଥାନରୁ ଚଳିଗଲେ ।
ବ୍ରହ୍ମା ଇନ୍ଦ୍ର ଚଳିଲେ ଆପଣା ନିଜସ୍ଥାନ
ଈଶ୍ୱରଙ୍କ କୁମର ଯୁଦ୍ଧକୁ ଗଲେ ପୁଣ ।
ଦେବଙ୍କୁ ଘେନିଣ ଯେ ଅନେକ ଯୁଦ୍ଧ କଲେ
ଯେ ଯାହାର ଅସ୍ତ୍ରମାନ ଘେନିଣ ଅଇଲେ ।
ଅନେକ ସମର ଯେ କାର୍ତ୍ତିକେଶ୍ୱର କଲେ
ବେଦବର ଶରେ ବରଷେ ଯୁଦ୍ଧ କଲେ ।

କେବେହେଁ ତାଡ଼କାସୁରର ସୈନ୍ୟନସରିଲେ
ଦେଖିକରି ଶିବସୁତ ମନେ ବିଚାରିଲେ ।
ଶକ୍ତି ଘେନି ଶିବସୁତ ମାଇଲେ କୋପଭରେ
ପଡ଼ିଲାକ ଶକ୍ତି ଯାଇ ହୃଦୟ ଉପର ।
ବୁକୁ ଫୁଟି ପ୍ରାଣ ସେ ହୋଇଲା ବାହାର
ଜ୍ଞାନ ହାରିଣ ଯେ ଯେ ପଡ଼ିଲା ନିଶାଚର ।
ପ୍ରାଣ ଗଲା ତାର ଯେ ପାର୍ଥିବ ଦେହ ଛାଡ଼ି
ଦେଖିଣ ଦେବତାଏ ଜୟ ଜୟ କରି ।
ଜୟ ଶଙ୍ଖ ବଜାଇ କାର୍ତ୍ତିକେଶ୍ୱର ଗଲେ
କପିଳାସ କନ୍ଦରେ ସେ ପିତାଙ୍କୁ ଭେଟିଲେ ।
ନମସ୍କାର କରିଣ ପିତାର ପାଶେ ବସି
ଜନନୀଙ୍କୁ ଦେଖିଣ ଓଳଗି କଲେ ଆସି ।
ହର ଗଉରୀ ପୁତ୍ରକୁ ଦେଖି ତୋଷ ହେଲେ
ପଶ୍ଚିମ ଭାଗେ ନେଇ ତାହାଙ୍କୁ ରଖାଇଲେ ।
ଶୁଣୁଛନ୍ତି ଦାଶରଥି କହନ୍ତି ବିଶ୍ୱାମିତ୍ର
ଶୁଣିଣ ସନ୍ତୋଷ ହେଲେ ଯେ ଦଶରଥ ସୁତ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣହେ ତ୍ରିଲୋଚନ
ସେଠାରୁ କିସ ହେଲା କହିବା ମୋତେ ପୁଣ ।
ସେଠାରୁ ଶ୍ରୀରାମ ଯେ ବିଶ୍ୱାମିତ୍ର ଯାଇ
ହେମାଳ ନଗ୍ରେ ହେଲେ ପରବେଶ ଯାଇ ।
ଶ୍ରୀରାମ ଲକ୍ଷ୍ମଣ ମୁନି ଯେ ସଙ୍ଗରେ ଅନେକ
ଧିର ଧିର ହୋଇଣ ଗମନ କରନ୍ତି ତ ।
ଦେଖିଲେ ସେ ନଗ୍ରଗୋଟା ବିଶେଶୋଭାବନ
ନେତର ଚିରାଳ ଯେ ଉଡ଼ଇ ଅବିଚ୍ଛିନ୍ନ ।
କାହିଁରେ ସୁବର୍ଣ୍ଣ ଯେ କାହିଁରେ ହେମ କାଚ ।
ଚିତ୍ର ଲେଖନ ପ୍ରତିମା ଦିଶନ୍ତି ସୁସଞ୍ଚ ।
ବନମାନେ ଦିଶନ୍ତି ମଣ୍ଡଳି ଗଜପ୍ରାୟେ
କୂପ ବାମ୍ପୀ ପୋଖରୀ ତଡ଼ାଗ ଶୋଭା ପାଏ
ଦେଉଳ ଅଟାଳି ଯେ ପାଚେରୀ ମେଘନାଦ
ସୁସ୍ୱରେ ଗାୟନ କରେ ଦୁନ୍ଦୁଭି ଶବଦ ।
ପୁରଇ ଶୋଭାବନ ଗହଳ ଘାଟବାଟ
ଅଶ୍ୱ ଗଜ ପଦାତି ଚତୁରଙ୍ଗ ଥାଟ ।
ଶୋଭାକର ଦେଖିଣ ଯେ ପୁଚ୍ଛନ୍ତି ଶ୍ରୀରାମ
କହିବା ହେଉ ମୁନି ଏ ନଗର କିସ ନାମ ।
ରଘୁନାଥଙ୍କଠାରୁ ଏସନ ବାଣୀ ଶୁଣି
କହନ୍ତି ଗାଧି ସୁତ ଅମୃତମୟ ବାଣୀ ।

ଶୁଣ ତୁମ୍ଭେ ଶ୍ରୀରାମ ହେ ରଘୁବଂଶ ନାହା
ମୋହର ଆଗରେ ବ୍ରହ୍ମା କହିଗଲେ ଯାହା ।
ସେ କଥା ତୁମ୍ଭ ଆଗେ କହଇ ରଘୁସାଇଁ
ଦକ୍ଷ ପ୍ରଜାପତିଙ୍କର ଷାଠିଏ ଝିଅ ହୋଇ ।
କଶ୍ୟପ ଋଷିଙ୍କି ଯେ ତେର କନ୍ୟାଦେଲେ
ଧାର୍ମିକ ଋଷି ବୋଲିଣ ତାଙ୍କୁ ବିଭାହେଲେ
ଦିତି ଅଦିତିର ଯେ ଉତ୍ତମ ବେନି ନାରୀ
ଦେବେ ଅସୁରେ ତାଙ୍କ ଗର୍ଭରେ ଅବତରି ।
ଅଦିତିର ଗର୍ଭରେ ଦେବତା ହୋନ୍ତି ଜାତ
ଦିତିର ଗର୍ଭରୁ ପୁଣ ଅସୁର ସମ୍ଭୂତ ।
ବଇମାତୃ ଦୋଷରୁ ଯେ କରନ୍ତି ପୁଣ କଳି
ପୁଣ ବିଚାର କଲେ ହୋଇଣ ଏକ ମେଳି ।
କ୍ଷୀର ସାଗରକୁ ଯେ ମନ୍ଥିବାର ପାଇଁ
ମନ୍ଦର ଗିରି ନିକଟେ ମିଳିଲେ ବେଗେଯାଇ ।
ଏ ଗିରି ଘେନି ଚାଲ ଯେ ମନ୍ଥିବା ସାଗର
ସମସ୍ତେ ମେଳ ହୋଇ ଉପାଡ଼ିବା ଗିରିବର ।
ଏମନ୍ତ ବିଚାରି ଯେ ଗିରିକି ଧଇଲେ ଯାଇ
ସମସ୍ତେ ଧରିଲେ ନିବିଡ଼ କରି ତହିଁ ।
ହକି ହକି ହୋଇଣ ଗିରିକି ଟାଣନ୍ତି
ଭୂମିରେ ଭରା ଦେଇଣ ତୋଳି ଯେ ବସନ୍ତି ।
ସମସ୍ତଙ୍କର ଚକ୍ଷୁରୁ ଯେ ଅଶ୍ରୁଜଳ ଗଡ଼ି
ସମସ୍ତେ ବିଚାରିଲେ ପାରିବା ନାହିଁ ତୋଳି ।
ବେଦବର ବୋଇଲେ ବାସୁଦେବଙ୍କୁ ଚାହିଁ
ତୁ କିମ୍ପା ତୁନି ହୋଇ ବସିଲୁ ପ୍ରଭୁ ହୋଇ ।
ବହୁତ ଲୋକରେ କି ପର୍ବତ ହୁଏ ତୋଳି
ତୁମ୍ଭେ ନ ତୋଳିଲେ କି ଉପୁଡେ ମହାଗିରି ।
ଈଶ୍ୱର ନିଉନେ ଯେ ବୋଇଲେ ହରିଙ୍କି
କେତେ ଉପ୍ରୋଧ ତୁମ୍ଭେ କରିଛ ଗିରିକି ।
ନକର ହେଳା ଏବେ ନକର ଉପ୍ରୋଧ
ଈଶ୍ୱର ବାଣୀ ଶୁଣି ହସିଲେ ପଦ୍ମନାଭ ।
ହରି ବୋଇଲେ ଯେ ଦେବ ଅସୁର ପୁଣି
କାହାର କେତେ ବଳ ଅଛିକି ନଜାଣି ।
ଏକେ ଏକେ ସେ ଯେ ଅଟନ୍ତି ମହାବଳୀ
ମିଶାମିଶି ହୋଇଛି ଦୈତ ଯେ ସୁର ମିଳି ।
ଏମାନେ ଏକ ଏକ ପାରନ୍ତି ପୃଥ୍ୱୀ ଦଳି
ଆଜ ସେ ପ୍ରାକର୍ମ ଯେ ଜାଣିବା ଏହାଙ୍କରି ।

ଶୁଣିଣ ସମସ୍ତ ଯେ ଶିରେ କର ଦେଲେ
ତୁମ୍ଭେତ ଠାକୁର ବୋଲି ସମସ୍ତେ ବୋଇଲେ ।
ଦେବ ଅସୁରଙ୍କର ଆକୁଳ ଭାବ ଦେଖି
ବାମକରେ ମନ୍ଦର ଧଇଲେ ଦେବଟେକି ।
କିଆ କନ୍ଦା ଯେସନେକି ଉପାଡେ ମତ୍ତହସ୍ତୀ
ତେସନ ପରାଏ ମନ୍ଦର ଉପାଡ଼େ ଶ୍ରୀପତି ।
ଦେଖିଣ ଉସତ ଯେ ଦେବ ଅସୁରଗଣ
ଶଙ୍କିଲେ ସମସ୍ତେ ଯେ ନାରାୟଣଙ୍କୁ ଜାଣ ।
ଯେଣୁ ମନ୍ଦର ଗିରି ଉପାଡ଼ିଲେ ହରି ।
ସମସ୍ତେ ମିଳି ତାଙ୍କୁ ନେଲେ କନ୍ଧ କରି ।
କ୍ଷୀର ସମୁଦ୍ରର କୂଳରେ ନେଇ ଥୋଇଲେ
ବାସୁକି ନାଗକୁ ଆଣିବା ପାଇଁ ଗଲେ ।
ସମସ୍ତେ ଅନନ୍ତ ନାଗକୁ କହିଲେ ଯାଇ ପୁଣ
ଦେବ ଦାନବଙ୍କର ଶୁଣିଣ ବଚନ ।
ବାସୁକି ବୋଇଲେ ଏବେ ସକଳେ ତୁମ୍ଭେ ଶୁଣ
ମୁଁ ଗଲେ ରସାତଳେ ପଡ଼ିବ ପୃଥ୍ୱୀ ପୁଣ ।
ଶୁଣିଣ ବେଦବର ଦେବଙ୍କୁ ପଚାରି
ମେଦିନୀ ଧର ତୁମ୍ଭେ ଦେବତା ଯାଇକରି ।
ଶୁଣିକରି ଦେବତାଏ ବୋଇଲେ ନୁହେଁ ଧରି
ଅସୁରଙ୍କୁ ଈଶ୍ୱର ପଚାରେ ବିଚାରି ।
ଅସୁରେ ବୋଇଲେ ଆମ୍ଭେ କେଭେ ଧରି ନାହୁଁ
ଏତେବଳ ଆମ୍ଭ ଦେହେ ହେବ ଅବା କାହୁଁ ।
ସମସ୍ତଙ୍କ ନାସ୍ତି ଶୁଣି ବିଚାରେ ବସୁଦେବ
ଆଜ ସେ ଯୋଗମାୟା ସମ୍ପାଦେ ହେଉକାର୍ଯ୍ୟ ।
ଏମନ୍ତ ବିଚାର ଯେ ସୁମରେ ଯୋଗମାୟା
ଜାଣିଣ ଯୋଗମାୟା ଆଗରେ ହେଲେ ଠିଆ ।
ବାସୁଦେବ ବୋଇଲେ ଧରିଣ ଏବେ ଧର
ଶୁଣିକରି ଯୋଗମାୟା ପୃଥ୍ୱୀକି ଧରେ ଧୀର ।
ସେଠାରୁ ବାସୁକି ଘେନି ମିଳିଲେ ସିନ୍ଧୁକୂଳ
ବାସୁକି କି ବୋଇଲେ ସେ ଧର ତୁ ଗିରିବର ।
ବେଦବର ବୋଇଲେ ରାଜିହେବା ପରକାର
ଆସ ଆସ ଅହି ଆହେ ଦେବକାର୍ଯ୍ୟ କର ।
ଶୁଣିକରି ସନ୍ତୋଷ ହୋଇଲେ ମହୀଧର
ଦେବ ଦାନବ ଯେ ତୋଳିଲେ ଗିରିବର ।
ରାଜି ହୋଇ ନାଗରାଜା ବେଢ଼ିଲେ ମନ୍ଦର
ଦୁଇପାଖେ ରହିଲେ ଯେ ଦେବତା ଅସୁର ।

ସମକଚ୍ଛ କରିଣ ଧରିଲେ ବାସୁକିକି
ଦେବେ ଅସୁରେ ଧରିଣ ଆଣିଲେ ତାକୁ ଟେକି ।
ଖୁଆ ପ୍ରାୟେ କରିଣ ଧରିଲେ ସକଳ
ଲାଞ୍ଜରେ ଦେବତାଏ ମୁଣ୍ଡରେ ଅସୁର ।
ହୁଙ୍କାର ଶବଦ କରି ଧରିଲେ ସର୍ବେ ସେଥି
ଗିରିକି ତୋଳନ୍ତେ ଅଚେଷ୍ଟା ସର୍ବେ ହୁନ୍ତି ।
ମନ୍ଦର ତୋଳନ୍ତେ ଯେ ସାଗରେ ବୁଡ଼ିଗଲା
ଦେଖିକରି ବାସୁଦେବ କର୍ମଠ ରୂପ ହେଲା ।
କ୍ଷୀର ସାହି ଦଧିଭାଣ୍ଡ ମନ୍ଦର ହେଲେ ଖୁଆ
ଶ୍ରୀହରି ଧରଣୀ ହେଲେ ବାସୁକିର ପ୍ରିୟା ।
ସାଗର ମନ୍ଥନେ ଯେ ଉପୁଚାଏ ଗିରି
ଦେଖିଣ ଦେବତାଏ ନିଜ ରୂପ ଧରି ।
ମନ୍ଦର ଗିରି ଉପରେ ବସିଲେକ ଯାଇ
ତେବେ ସେ ଗିରିବର ସ୍ଥିର ହୋଇ ରହି ।
ଉପରେ ଶ୍ରୀହରି ତଳରେ ସେ ପୁଣ
ମଧ୍ୟରେ ମନ୍ଦରଗିରି କରନ୍ତି ମନ୍ଥନ ।
ଋଷିଙ୍କ ନୃପତି ଯେ ଦଧି ଖୋଜିଣ ଆଣିଲା
ଧବଳ ସାଗରେ ନେଇ ପକାଇଲା ।
ଦେଖିଣ ବେଦବର ଦେବେ ତୋଷ ହୋଇ
ଦେବେ ଅସୁରେ ମିଳି ସମୁଦ୍ର ମନ୍ଥଇ ।
ଏସନକ ସମୟରେ ବରୁଣ ଦୁହିତା
ପୁଷ୍ପ ଭୂଷଣ ହୋଇ ବାହାରେ ଜଗଜିତା ।
ତ୍ରିପୁର ମୋହିନୀ ସେ ମୋହିଲେ ସଭିଙ୍କି
ଦେଖିବାକୁ ଅନୁମାନେ ନାହାନ୍ତି ଧରିତ୍ରୀ ।
ଦେବତା ବୋଇଲେ ଆମ୍ଭରେ ଏହା ଦିଅ
ପୁଣି ଯାହା ଉପୁଜିବ ତୁମ୍ଭେ ତାହା ନିଅ ।
ଦେବତାଙ୍କ ବଚନେ ବୋଇଲେ ବେଦବର
ଏ କନ୍ୟା ଗୋଟି ଅଟେ ନାରାୟଣଙ୍କର ।
ବିଧାତା କହିବାରୁ ସମସ୍ତେ ତୋଷ ହେଲେ
ନିଅନ୍ତୁ ବୋଲିଣ ଯେ ଅସୁର ବୋଇଲେ ।
ଆରବେଳେ ମନ୍ଥିଲେ କ୍ଷୀର ଯେ ସାଗର
ପରମହଂସ ଜାତ ହୋଇଲେ ସେଥିର ।
ଦେବତାଏ ବୋଇଲେ ଆମ୍ଭଙ୍କୁ ଏହା ଦିଅ
ଈଶ୍ୱର ବୋଇଲେ ଏ ବେଦବର ପ୍ରିୟ ।
ଆରବେଳେ ସାଗର ମନ୍ଥିଲେକ ପୁଣ
ବିଷ ଜାତ ହେଲା ଯେ କାଳାନଳ ଜାଣ ।

ବାସୁଦେବ ବୋଇଲେ ଦେବତାଏ ନିଅ
ଦେବତାଏ ବୋଇଲେ ଏଥିରେ ନାହିଁ ପ୍ରିୟ ।
ଦେବଙ୍କ ଠାରୁ ଶୁଣି ଶ୍ରୀହରି ବୋଇଲେ
ଅସୁର ନିଅନ୍ତୁ ବୋଲି ଶ୍ରୀହରି କହିଲେ ।
ଅସୁରେ ବୋଇଲେ ଏହା ଆମ୍ଭର ନୁହେଁ ଭୋଗ
ତୁମ୍ଭେତ ବଡ଼ ଅଦୁଆ କରିଅଛି ଯୋଗ ।
ବେଦବରେ ବୋଇଲେ ଈଶ୍ୱର ଭାଗେ ପଡ଼ି
ଶୁଣିକରି ଈଶ୍ୱର ଗରଳ ଗର୍ଭେ ଭରି ।
ଗରଳ ଭକ୍ଷନ୍ତେ ହର ହୋଇଲେ ବିକଳ
ଶ୍ରୀହରି ବୋଲେଗାରେଡ଼ି ପଢ଼ିଲେ ହେବପାର ।
ଶୁଣିକରି ଈଶ୍ୱର ଗାରେଡ଼ି ସୁମରିଲେ
ତେଣୁ ଯେ ଗରଳ ହରଣ ହୋଇଗଲେ ।
ଆରବେଳ ସାଗର ମନ୍ଥିଲେ ପୁଣିଧରି
ସୁରା ଉପୁଜିବାର ଅସୁରେ ଲୋଭକରି ।
ଜାଣିଣ ଶ୍ରୀହରି ଅସୁରେ ସୁରାଦେଲେ
ସୁରାଭକ୍ଷି ଅସୁରେ ପରମ ତୋଷ ହେଲେ ।
ଆରବେଳେ ସାଗର ମନ୍ଥିଲେ ଯେ ପୁଣ
ଅମୃତ ଜାତହେଲା ଦେଖିଲେ ଦେବଗଣ ।
ବେଦବର ବୋଇଲେ ଦେବଙ୍କର ଏହୁ
ଶୁଣିଣ ଦେବତାଏ ହରଷ ହେଲେ ତହୁଁ ।
ଆରବେଳେ ସାଗର ମନ୍ଥନ୍ତେ ଔଷଧି
ଜାତ ଯାହା ହେଲା ରଖିଲେ ସମ୍ପାଦି ।
ଆରବେଳେ ସାଗର ମନ୍ଥିବାରୁ ପୁଣ
ଖଣ୍ଡା ଖପର ଯେ ଅନେକ ଜାତ ଜାଣ ।
ଦେଖିଣ ଗୋବିନ୍ଦ ଯେ ସୁମରି ଦେବୀଙ୍କି
ଆସୁଣ ଯେ ଜୟଦୁର୍ଗା ମିଳିଲେ ସେଥିକି ।
ଶ୍ରୀହରି ବୋଇଲେ ତୁମ୍ଭେ ଖଣ୍ଡା ଖପର ନିଅ
ଶୁଣିଣ ଜୟଦୁର୍ଗା ଧରିଣ କରି ସ୍ନେହ ।
ଅସୁରେ ବୋଇଲେ ଦେବୀ ଆମ୍ଭଙ୍କୁ ଏହା ଦିଅ
ତୁମ୍ଭେ ଦେଲେ ଅସ୍ତ୍ର ଆମ୍ଭର ଏହୁ ପ୍ରିୟ ।
ଶୁଣିକରି ଜୟଦୁର୍ଗା ଖଣ୍ଡା ତାଙ୍କୁ ଦେଲେ
ଢେଲ ଚକ୍ର କାତି ନେଇ ଦେବଙ୍କୁ ସମର୍ପିଲେ ।
ଏଥୁ ଅନ୍ତେ ସମସ୍ତେ ହୋଇଲେ ତୋଷଚିତ୍ତ
ମନ୍ଦରକୁ ଥୋଇଲେ ନିଜସ୍ଥାନରେ ତୁରିତ ।
ସେଠାରୁ ବାସୁକି ନାଗ ବେଗେ ଚଳିଗଲା
ତଳପୁରେ ନିଜସ୍ଥାନେ ଧରଣୀ ଧଇଲା ।

ସେଠାରେ ଜୟଦୁର୍ଗା ଯୋଗମାୟା ମିଳି
ଜମ୍ଭେବ ବୃହସ୍ପତି ସେଠାରୁ ଗଲେ ଚଳି ।
ଈଶ୍ୱର କପିଳାସରେ ମିଳିଲେ ଯାଇବେଗ
ଏଥୁ ଅନ୍ତେ ଶ୍ରୀରାମ ଶୁଣ ହେ ସମ୍ବାଦ ।
ସୁର ବାଣ୍ଟି ଯେ ଅସୁର ଯାକ ଖାଇ
ପରମ ତୋଷ ହୋଇ ବିଚାର କଲେ ତହିଁ ।
ବୋଇଲେ ଦେବତାଏ ଖାଇଲେକି ପୁଣ
ରାହୁ ଯାଇ ବୁଝିଣ ଆସୁତତକ୍ଷଣ ।
ଏପରି କଥା ହେଲା ଶ୍ରୀରାମ ତୁମ୍ଭେ ଶୁଣ
ଦେବତାଏ ଅମୃତ ଭକ୍ଷିଲେ ବସିଣ ।
ଯାଇକରି ରାହୁ ଗୁପତେ ଅମୃତ ଭୁଞ୍ଜିଲା
ଦେଖିଣ ବାସୁଦେବ ରାହୁକୁ ମାଇଲା ।
ଜାଣିଣ ଅସୁର ଦେବଙ୍କ ସଙ୍ଗେ କଳି
ଦେଖିଣ ବାସୁଦେବ ଅସୁରଙ୍କୁ ଯେ ମାରି ।
ତେଣୁ ଯେ ଅସୁରେ ଭାଙ୍ଗିଣ ପକାଇଲେ
ସମସ୍ତେ ମେଳହୋଇ ସଦାଶିବଙ୍କୁ କହିଲେ ।
ତେଣୁ ସେ ଦେବତା ଅମୃତ ଘେନି ଚଳି
ବେଦବର ବିଜେକଲେ ବେନି ହଂସ ଚଳି ।
ବାସୁଦେବ କମଳାଙ୍କୁ ଘେନିଣ ଚଳିଲେ
ଦେବତା ଅସୁରେ ସେ ଦିନୁ କଳହ ରହିଲେ ।
ବାସୁଦେବ ଗଲାବେଳେ ଅସୁରଙ୍କୁ କହି
ଆଜଠାରୁ ସଦାଶିବ ତୁମ୍ଭର ହିତେ ରହି ।
ଆମ୍ଭେ ଦେବତାଙ୍କ ହିତେ ରହିଲୁ ପୁଣ
ବେଦବର ବେନିକୂଳ ମଧ୍ୟସ୍ଥ ହେଲେ ଜାଣ ।
ଶୁଣିଣ ଦେବତାଏ ହରଷ ମନହେଲେ
ତ୍ରିଲୋଚନ ଦେବତାଙ୍କୁ ଅସୁରେ ସେବାକଲେ ।
ଦେବତା ସେବାକଲେ ଶ୍ରୀହରି ଚରଣ
ଶୁଣିଣ ଶ୍ରୀରାମ ଯେ ହରଷ କଲେ ମନ ।
କେତେକ ଧନରତ୍ନ ସିନ୍ଧୁରୁ ଜାତ ହେଲା
ଇନ୍ଦ୍ର ଦେବତା ନେଇ ଭଣ୍ଡାରେ ରଖିଲା ।
ଅମୃତ ଖାଇ ଦେବତାଏ ହେଲେ ବଳବାନ
ଇନ୍ଦ୍ରଙ୍କ ସଙ୍ଗତେ କଲେକ ଗୋଳ ପୁଣ ।
ବାରବର୍ଷ ପର୍ଯ୍ୟନ୍ତେ ସ୍ୱର୍ଗରେ ଯୁଦ୍ଧ କଲେ
ଅସୁରଙ୍କୁ ନମାରି ଇନ୍ଦ୍ର ହରିଙ୍କି ସୁମରିଲେ ।
ଜାଣିଣ ବାସୁଦେବ ଈଶ୍ୱର ବ୍ରହ୍ମ ଘେନି
ଯୁଦ୍ଧ ଗୁହାଇଣ ଯେ ପଚାରିଲେ ପୁଣି ।

ଦେବତାଏ ବୋଇଲେ ଶୁଣିବା ନାରାୟଣ
ସକଳ ଧନ ରାଜା ବାଣ୍ଟି ନଦେଲେକ ପୁଣ ।
ବାସୁଦେବ ବୋଇଲେ ଆମ୍ଭେ ବଣ୍ଟରା କରି ଦେବା
ଯୁଦ୍ଧ ନକରି ତୁମ୍ଭେ ସ୍ଥିରରେ ରହିବା ।
ଶୁଣିଣ ଦେବତାଏ ଶାନ୍ତମୂର୍ତ୍ତି ହେଲେ
ସକଳ ଧନ ନାରାୟଣ ଭଣ୍ଡାରୁ ଅଣାଇଲେ ।
ପ୍ରଥମେ ଆଦିତ୍ୟଙ୍କୁ ସ୍ୟମନ୍ତକ ମଣିଦେଲେ
ଉଚ୍ଚୈଶ୍ରବା ଅମୋହମଣି ସମର୍ପିଲେ ।
ଚନ୍ଦ୍ରଦେବତାଙ୍କୁ ଦେଲେ ଅଷ୍ଟ ଅପସରୀ
କଳ୍ପତରୁ ଆସିଣ ନେଲେକ ଶାକମ୍ଭରୀ ।
ଇନ୍ଦ୍ରଦେବତାଙ୍କୁ ଦେଲେ ଯେ ଐରାବତଗଜ
ଅଷ୍ଟରତ୍ନ ସହିତେ ଯେତେ ଧନ ଲାଭ ।
ଧନରତ୍ନ କୁବେର ଯେ ଭଣ୍ଡାରେ ଥୋଇଲେ
ଜୟଦୁର୍ଗା ଯୋଗମାୟା ସଦାଶିବ ନେଲେ ।
ଆଉଯେତେ ଦ୍ରବ୍ୟ ଯେଦେବତା ସର୍ବେ ନେଲେ
କନକ ଦଣ୍ଡଛତ୍ର ବରଗୁ ଘେନିଗଲେ ।
ବେଦମନ୍ତ୍ର ଯେତେକ ଯେ ଉପୁଜିଣ ଥିଲା
ବିଧାତା ପୁରୁଷ ଯେ ସେମାନେ ଘେନିଗଲା ।
ଅମୃତ କୁଣ୍ଡଳ ଯେ ନେଲେକ ଆଦିତ୍ୟ
ପାଣି ଦ୍ରବ୍ୟମାନ ସବୁ ବରୁଣ ରଖିଲେତ ।
ଦେବତା ଇନ୍ଦ୍ରଙ୍କର ଯେ କଳହ ଭାଙ୍ଗିଲା
ଅସୁରଙ୍କ ଉପଦ୍ରବ ଆଗହୁଁ ଯାଇଥିଲା ।
ଏଥୁଅନନ୍ତରେ ଶୁଣ ଆହେ ଦାଶରଥି
ଚନ୍ଦ୍ରଦେବ ଜଣାଇଲେ ନାରାୟଣ କତି ।
ବୋଇଲେ ଅସୁରଙ୍କ ଜନନୀ ଶୋକ କଲେ
ଶୁଣିଣ ନାରାୟଣ ଯେ ସେଠାରେ ମିଳିଲେ ।
ଅଦିତୀଙ୍କି ବୋଇଲେ ଶୁଣ ଆଗେ ଜନନୀ
ପୁତ୍ର ମଲାରୁ କିମ୍ପା ଶୋକକରୁ ପୁଣି ।
ତୋ ପୁତ୍ରେ ହୋଇବେ ପୁଣ ଅତି ବଳବାନ
ଦେବତାଏ ଏହାଙ୍କୁ ଯେ ନୋହିବେ ଭାଜନ ।
କାଳ ପରିଯନ୍ତେ ଯେ ନପାଇବେ ମୃତ୍ୟୁ
ପୁତ୍ରବନ୍ତୀ ଲେଖାରେ ଗଣିତା ହୋଇବୁ ତୁ ।
ଏ ମୋହର ବଚନ ଯେ ଲୟ କରିଥିବୁ
ଅବେଭାର କଥାକୁ ଯେ କେବେହେଁ ନଯିବୁ ।
ଅମାର୍ଗରେ ଗଲେ ତୁ ଯେ ପଡ଼ିବ ବିପତ୍ତି
ଧର୍ମ ବଳ ଥିଲେ ପୁତ୍ରେ ହେବେ ଉତପତି ।

ଶୁଣିକରି ଆଦିତ୍ୟ ପରମ ତୋଷ ହେଲେ
କେଉଁ କେଉଁ ପୁତ୍ରମୋର ଅତୁଟ ହେବେ ବୋଲେ ।
ନାରାୟଣ ବୋଇଲେ ରାହୁ ଯେ ପବନ
ମୟଦୈତ୍ୟ ଶୁକ୍ର ଯେ ଆବର ବଳି ପୁଣ ।
ଏକ ପାଞ୍ଚ ପୁତ୍ରେ ତୋର କାଳଯୁଗେ ଥିବେ
ଅସାଧ ଦୈତ୍ୟମାନେ ନିଶ୍ଚୟ ନାଶ ଯିବେ ।
ଅଦିତି ନାରାୟଣ ବଚନ ଶିରେ ଧରି
ତୁମ୍ଭ ବଚନ ପାଳିବି ବୋଲି ସତ୍ୟକରି ।
ନାରାୟଣ ଯାଆନ୍ତେ କଶ୍ୟପ ଋଷି ମିଳି
ବୋଇଲେ କୁମାରୀ ଗୋ କିମ୍ପାଇ ମନେ ଭାଳି ।
ପୁତ୍ରମାନେ ତୋହର ଜୀଇଁଲେ ଯେ ପୁଣ
ଆମ୍ଭେ ଥିଲେ ତୋର କି ପୁତ୍ର ଚିନ୍ତା ଜାଣ ।
ଉତ୍ତମ କୁମର ଯେ ହୋଇବ ଜାତ ପୁଣ
ଏବେ ସଙ୍ଗାତୁଣୀ ମନ ନକର ମଳିନ ।
ଶୁଣିକରି ଅଦିତି ମନରେ ତୋଷ ହେଲା
କଶ୍ୟପ ଋଷି ସଙ୍ଗରେ ଅଙ୍ଗ ସଙ୍ଗ କଲା ।
କାଳେ ସେ ନାରୀ ସେ ହୋଇଲା ଗର୍ଭବାସ
ଧର୍ମବଳେ କଶ୍ୟପ ଦେଲେ ବିନ୍ଦୁରସ ।
ଗର୍ଭ ହେବାରୁ ଶରୀର ଦିନୁଦିନ ଭାରୀ
ବେଦବରଙ୍କୁ କହି ସକଳ ମୁନି ମିଳି ।
ବେଦବର ବୋଇଲେ ଇନ୍ଦ୍ରଙ୍କୁ ଶୁଣା ଭାଇ
ଅଦିତିର ପାଶେ ଗୁପତରେ ଥାଅ ରହି ।
ଯେମନ୍ତେ ପୁତ୍ର ତାର କରିପାରୁ ହତ
ନାରାୟଣ ଆଜ୍ଞାରେ କୁମର ହୋଇବ ବଳବନ୍ତ ।
ଶୁଣିଣ ଅଦିତିର ସନ୍ନିଧେ ଇନ୍ଦ୍ରଗଲା
ଗୁପତରେ ରହିଣ ଯେ ସବୁ ଠାବକଲା ।
ଅନୁସରି ରହିଲେ ଯେ ଶତେକ ବରଷ
ପ୍ରସବ ନିକଟେ ନାରୀ ପାଇଲା ଅଳସ ।
ଦିନେ ଦିନେ ନାରୀ ପୁଣ ସୁମରେ ଆଣ୍ଟ ଅଣ୍ଟ
ପେଟ ଚଢ଼ ବଢ଼ ମୁଖରେ ଆସେ ହାଇ ।
ସୀମସ୍ଥାନ କତିକି ଚରଣ କରି ଶୋଇ
ଅବେଭାର କଥା ଇନ୍ଦ୍ର ଦେଖିଲା ଯେ ତହିଁ ।
ଛିଦ୍ର ପାଇ ସୁରରାଣ ଗର୍ଭରେ ପରବେଶ
ପେଟର ପୁତ୍ରକୁ ସେ ବଜ୍ରରେ କଲା ନାଶ ।
ସାତ ଖଣ୍ଡ କରିଣ ସେ କାଟି ପକାଇଲା
ପୁଣି ଖଣ୍ଡକ ଯେ ସାତ ସାତ ଖଣ୍ଡ କଲା ।

ଏକ ଗୋଟି ପୁତ୍ରକୁ ଅଣଚାଷ ଖଣ୍ଡ କଲା
ପୂର୍ବର କାହାଣୀମାନ ଆନ ସେ ନୋହିଲା ।
ନାରାୟଣ ଆଜ୍ଞାରେ ଯେ ନମିଲା କୁମର
ଗର୍ଭେ ଥାଇ ରୋଦନ କଲେକ ଅପାର ।
ଅଣଚାଷ ମୂର୍ତ୍ତି ଧରି ପାଇଲେ ଶରୀର
ତପ ବଳରେ ତାହା ଜାଣିଲେ ମୁନିବର ।
ଜାଣିଣ କଶ୍ୟପ ଋଷି ଇନ୍ଦ୍ରରେ ଶାପ ଦେଲେ
ସହସ୍ରେ ଯୋନି ବହ ବୋଲିଣ ବୋଇଲେ ।
ଯାଇ ଇନ୍ଦ୍ରଦେବ ପିତାର ପାଶେ ମିଳି
ଦେଖିଣ କଶ୍ୟପ ନ ଚାହେଁ ମୁଖ ତୋଳି ।
ଜନନୀ ବୋଇଲେ ତୁରେ ଏଡ଼େକର୍ମ କଲୁ
ଗର୍ଭରେ ପଶିଣ ମୋର ପୁତ୍ରକୁ ମାରିଲୁ ।
ଡରରେ ସୁର ଇନ୍ଦ୍ର କମ୍ପଇ ଥର ହର
ଭୋ ମାତା ଦୋଷ ଗୋ ହୋଇଲା ମୋହର ।
ପିତା ମୋର ଶାପ ଦେଲେ ତୁ ନ ଦିଅ ଶାପ
ଶୁଣି ଅସୁର ମାତା ଛାଡ଼ିଲେ ବେଗେ କୋପ ।
ବୋଇଲେ ତୋର ଭାଇକି ଏବେ ତୁ ଜୀଆଁଅ
ଅମୃତ ଆଣିଣ ଏହାକୁ ବେଗେ ଦିଅ ।
ଶୁଣିଲେ ଚକ୍ରଧର ଯେ ଆଣିଲା ଅମୃତ
ଭୁଞ୍ଜନ୍ତେ ପୁତ୍ରମାନେ ହୋଇଲେ ବଳବନ୍ତ ।
ଅଣଚାଷ ପବନ ଯେ ଭିନ୍ନ ଭିନ୍ନ ମୂର୍ତ୍ତି
ତେଣୁ ସେ ପବନ ଦେବତା ଜାତ ଗୋଟି ।
ପୁତ୍ର ଜାତ ହେବାରୁ ଜନନୀ ତୋଷ ହେଲେ
ଅଣଚାଷ ମୂର୍ତ୍ତି ଯେ ସ୍ୱରୂପ ଦେଖିଲେ ।
ସକଳ ଦେବତାରୁ ବଳବନ୍ତ ପୁଣ
ଦେବତା ଅସୁର କେ କରିପାରେ ଭିନ୍ନ ।
ପବନ ଜାତ ହେବାରୁ ସକଳ ଦେବେ ତୋଷ
ତେଣୁ ଦେବତାଏ ଗଲେ ଯେ ଯାହାର ବାସ ।
ଶ୍ରୀରାମ ଆଗେ ମୁନି କହିଲେକ ଏହା
ଯାହା କହିଲ ମୁନି ସଙ୍କେତ ଏବେ ଏହା ।
ଏ ବୈଶାଳୀ କଟକର ଏମନ୍ତ ପ୍ରତାପ
ଆନ ସ୍ଥାନ ଏହାକୁ ନୁହଇ ସ୍ୱରୂପ ।
ଏଠାରେ ଅଦିତୀ ସେ ଗର୍ଭବାସ ହେଲା
ଏ ସ୍ଥାନରେ ଅବତାର ପବନ ହୋଇଲା ।
ଇନ୍ଦ୍ର କାଟନ୍ତେ ଅଣଚାଷ ମୂର୍ତ୍ତି ଯେ ପବନ
ତେଣୁ ବୈଶାଳୀ ବୋଲି ବୋଲାଏ ଏହୁ ସ୍ଥାନ ।।

ପବନ ଜନ୍ମ ହେବାରୁ ଏ ସ୍ଥାନ ଶୀତଳ
ତେଣୁ କ୍ଷୟ ନୋହିଲା ଯେ ଅଦିତି କୁମର ।
ଯେତେ ଖଣ୍ଡ ହୋଇଥିଲା ତେତେ ହେଲା ମୂର୍ତ୍ତି
ତେଣୁ ସେ ଆନନ୍ଦ ଯେ କାଶ୍ୟପ ଅଦିତୀ ।
କଉଶିକ କହିବାରୁ ଶୁଣିଲେ ରଘୁନାଥ ।
ତୁମ୍ଭର ବଂଶ ଏଥିରେ ହୋଇଣ ରାଜାସେତ ।
ଶ୍ରୀରାମ ବୋଇଲେ ଯେବେ ମୋର ବଂଶ ରାଜା
ଏଥିରେ କେତେ ପାଟ ପାଇଲେ ପାଦ ପୂଜା ।
କହ ହେ ବ୍ରହ୍ମମୁନି ଶୁଣିବା ଏହୁ କଥା
ଏ ଭୂମିରେ ଗୋତ୍ର ମୋର ଯେବେ ସେ ସାମରଥା ।
ତପନ କୁଳର ତ ଅଯୋଧ୍ୟା ଅଟେ ମହୀ
ଏ ରାଜ୍ୟରେ ରାଜା ଯେ କେମନ୍ତେ ହେଲେ ସେହି ।
ବିଶ୍ୱାମିତ୍ର ବୋଇଲେ ଯେ ଇକ୍ଷ୍ୱାକୁ ନୃପତି
ଅଳମ୍ବୁଷ ନାମରେ ଯେ ତାଙ୍କର ସନ୍ତତି ।
ଅଳମ୍ବୁଷର ଯେ ବେନି ପୁତ୍ର ଜାଣ
ବୈଶାଳ ପୁତ୍ର ବୋଲି ତାର ବଳବାନ ।
ଅଳମ୍ବୁଷ ରାଜନ ଯେ ମନରେ ବିଚାରିଲା ।
ବଡ଼ ନନ୍ଦନକୁ ଅଯୋଧ୍ୟାରେ ରାଜା କଲା ।
ଏମନ୍ତେ କେତେଦିନ ଉତ୍ତାରୁ ଯେ ପୁଣ
ମୃଗୟାର୍ଥେ ଅଇଲା ଯେ ଏ ସ୍ଥାନକୁ ଜାଣ ।
ନିର୍ମଳ ସ୍ଥାନ ଦେଖି ପରଜାଙ୍କୁ ପୁଚ୍ଛି
ଏ ରାଜ୍ୟ କେଉଁ ରାଜା ପାଳଇ ଯେ ସୃଷ୍ଟି ।
ପରଜା ବୋଲେ ମଳୟ ବଂଶରେ ରାଜା ଥିଲା
ତାଡକା ଅସୁର ତାର ବଂଶକୁ ନିଶେଧିଲା ।
ଆଜକୁ ଶତେ ବରଷ ଅଣରାଜା ହୋଇ
ଅସୁର ଭୟରେ ଆମ୍ଭେ ନ ପାରୁଁ ଯେ ରହି ।
ଅଳମ୍ବୁଷ ରାଜା ବୋଲେ ଆମ୍ଭର କୁମର
ଯେ ରାଜ୍ୟେ ରାଜା ହେଲେ ହେବକି ଶୀତଳ ।
ଶୁଣିଣ ପରଜାଏ ହରଷ ହୋଇ କହି
ହୁଅ ତୁମ୍ଭେ ରାଜା ବୋଲି ବୋଇଲେ ସେହି ।
ଶୁଣିଣ ଅଳମ୍ବୁଷ ବୈଶାଳ ଅଣାଇଲା
ସେ ଦେଶେ ରାଜା କରି ଦେଶ ନାମ ଦେଲା ।
ତେଣୁ ବୈଶାଳୀ ନଗ୍ର ଏହାକୁ ସେ କହି
ତେଣୁ ଇକ୍ଷ୍ୱାକୁ ବଂଶ ଏଥିରେ ରାଜା ହୋଇ ।
ବୈଶାଳର ପୁତ୍ର ଯେ ହେମବନ୍ତ ରାୟେ
ସୁର ଇନ୍ଦ୍ର ନୃପତି ଯେ ତାହାର ତନୟେ ।

ଏ ରୂପେ ତିନି ପାଟ ଏଥିରେ ବସେ ପୁଣ
ବଳରାମ ଦାସ ସେ ଯେ ଶ୍ରୀହରି ଚରଣ ।
ଜୟ ତୁ ଜଗନ୍ନାଥ ହେ ଜଗତ କରତା
ଦୁଃଖୀ ଜନର ବାନ୍ଧବ ଜଗତର ପିତା ।
ଦେବତାଙ୍କ ଛଳେ ଯେ ସପ୍ତମ ଅବତାର
ଅସୁର ଦଳନ ନାମ ଅଟଇ ତୁମ୍ଭର ।
ବିଶ୍ୱାମିତ୍ର ସଙ୍ଗରେ ଯାଗ ରଖିଲ ଯାଇ
ତେଣୁ ଗାଧିସୁତ ଅନେକ ସ୍ଥାନେ ଯେ ଦେଖାଇ ।
ବୈଶାଳୀ ନଗ୍ରେ ହେ ହୋଇଲେ ପରବେଶ
କୁରୁବଂଶର ଉଦୟ କହିଲେ ଋଷି ସେତ ।
ପାର୍ବତୀ ପଚାରିଲେ ସଦାଶିବଙ୍କୁ ପୁଣ
ସେଠାରୁ କିସକଲେ ଶ୍ରୀରାମ ଋଷି ଜାଣ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣଗୋ ଭଗବତୀ
ଶ୍ରୀରାମ ଆଗେ ଯାହା ବିଶ୍ୱାମିତ୍ର କହନ୍ତି ।
ବୈଶାଳି ରାଜନର ତିନି ପୁରୁଷ କହି
ମନେ ହେବାରୁ ପୁଣ ଶ୍ରୀରାମ ପଚାରଇ ।
ଶ୍ରୀରାମ ପୁଛିବାରୁ ମୁନି କହନ୍ତି ପୁଣ
ଶୁଣ ତୁମ୍ଭେ ଶ୍ରୀରାମ ଲକ୍ଷ୍ମଣ ବେନିଜନ ।
ସୁରଚନ୍ଦ୍ର ନୃପତି ଯେ ବଳବନ୍ତ ହୁଏ
ମର୍ତ୍ତ୍ୟପୁର ଜିଣିଣ ସେ କଲାକ ନିର୍ଭୟେ ।
ବଢ଼ାଇ ପ୍ରତାପି ସେ ଗମିଲା ତିନିପୁର
ସକଳ ପ୍ରଶଂସା ଯେ କଲେକ ସୁର ନର ।
ଧର୍ମ ଚନ୍ଦ୍ର ବୋଲିକରି ତାହାର ତନୟେ
ପିତାର ଅନ୍ତରେ ସେ ଯେ ମହିପାଳ ହୁଏ ।
ଅଶ୍ୱମେଧ ଯାଗକରି ହୋଇଲା ଚକ୍ରବର୍ତ୍ତୀ ।
ତାହାର ତନୟ ଯେ ହୁଏ ନରବଇ
ଦେହବନ୍ତ ବୋଲିଣ ତାହାର ତନୟୀ ।
ସୃଜନା ନାମେ କୁମର ଅଟେ ତାର ପୁଣ
ଶ୍ୟାମଦୂତ ବୋଲିଣ ଯେ ତାହାର ନନ୍ଦନ ।
ଶ୍ୟାମ ଦୂତର ନନ୍ଦନ ଜମ୍ବୁଦୂତ ହୋଇ
ଲୁହଦତ ନନ୍ଦନ ତାର ସାଧିଲାକ ମହି ।
ମୁନି ବୋଇଲେ ତୁମ୍ଭେ ଶୁଣ ହେ ରଘୁନାଥ
ଏତେ ପାଟ ତୋର ବଂଶେ ରାଜ୍ୟ କଲେ ଏଥ ।
ଶୁଣିଣ ସାନନ୍ଦ ଯେ ହୋଇଲେ ରାଜିବ
ବୈଶାଳୀ ନଗ୍ରରେ ପ୍ରବେଶ ହେଲେ ବେଗ ।

ଆପଣା ବଂଶ ରାଜା ଶୁଣି ସେ ଅଇଲେ
ବିଶ୍ୱାମିତ୍ରଙ୍କ ଚରଣେ ଓଳଗି ମେଲାଇଲେ ।
ଲୁହଦତ୍ତ ରାଜନ ସେ ମୁନିଙ୍କି ପୁଚ୍ଛାକଲେ
ଏ ବେନି ବାଳକ ତୁମ୍ଭ ସଙ୍ଗତରେ ବୁଲେ ।
ବିଶ୍ୱାମିତ୍ର ବୋଇଲେ ଯେ ଅଯୋଧ୍ୟା ରାଜସୁତ
ଯାଗ ରଖିବାକୁ ଯାଇ ଆଣିଲୁ ଆମ୍ଭେତ ।
ଯାଗରଖି ଆମ୍ଭର ମିଥିଲା ପୁର ଯାଇ
ଜନକ ଯାଗ ଦେଖି ରାଜ୍ୟକୁ ଯିବେ ସେହି ।
ଶୁଣିଣ ରାଜନ୍ ଯେ ହରଷ ମନ ହେଲା
ମୋର ବଂଢ଼ ଅଂଶ ବୋଲି ସଙ୍ଗେ ଘେନିଗଲା
ଅନ୍ତଃପୁର ନାରୀମାନେ ଦେଖିଲେ ତାଙ୍କୁ ପୁଣ
ହରଷରେ ସେ ଦିନ ରହିଲେ ତିନି ଜଣ ।
ଜାଣିଣ ରଜନୀରେ ଗଉତମ ଗଲେ
ଦେଖିଣ ବିଶ୍ୱାମତ୍ର ଶ୍ରୀରାମେ ମାନ୍ୟ କଲେ ।
ରଜନୀ ଶେଷେ ଗୌତମ ପାଛୋଟି ଘେନିଗଲେ
ଗୌରବ କରିଣ ଆଶ୍ରମେ ମିଳିଲେ ।
ଗୌତମ ପଚାରିଲେ କାହାର ପୁତ୍ର ବେନି
କାହାର ପୁତ୍ର ଏ ଯେ କାହାର ବଂଶେ ଜାତ ।
କାର ବନିତା ଅଟନ୍ତି ଏହାଙ୍କର ମାତ ।
ଶୁଣିଣ ବିଶ୍ୱାମିତ୍ର ଯେ କହିଲେ ସକଳ
ଦଶରଥ ନୃପତି ଅଯୋଧ୍ୟା ମହିପାଳ ।
ସେ ରାଜାର କୋଳେ ଜାତ ଚାରିପୁତ୍ର ପୁଣି
ତିନିମାତା ଗର୍ଭରୁ ଜନମ ବେଳ ଜାଣି ।
ଶ୍ରୀରାମ ଲକ୍ଷ୍ମଣ ଯେ ଏହାଙ୍କ ନାମ ଶୁଣି
ଯାଗ ରଖିବା ନିମନ୍ତେ ଅଇଲୁ ତାଙ୍କୁ ଘେନି ।
ଧନୁ ଉତ୍ସବ ଯାଗ ଯେ ଜନକ ଋଷି ଘରେ
ଦେଖିବ ବୋଲି ପୁଏ ଅଇଲେ ଶ୍ରଦ୍ଧାରେ ।
ଶୁଣିଣ ଗୌତମ ଯେ ଗଉରବ କଲେ
ମୋହ ଶୁଭକାର୍ଯ୍ୟ ଏହାଙ୍କର ହେବ ବୋଲେ ।
ଆଦର ଭାବ କରିଣ ସେ ଦିନ ରଖିଲେ
ଯୋଗବଳେ ଗୌତମ ନାରାୟଣ ଜାଣିଲେ ।
ରଜନୀ ଶେଷରେ ସେ ସେଠାରୁ ଚଳିଗଲେ
ବିପୁଳ ବନରେ ଯାଇ ପ୍ରବେଶ ହୋଇଲେ ।
ବନ ନିଶବଦ ଦେଖି ପଚାରନ୍ତି ଶ୍ରୀରାମ
କହ ମହାମୁନି ଏ ବନର କିସନାମ ।

ରାଘବ ପଚାରନ୍ତେ କହନ୍ତି ବିଶ୍ୱାମିତ୍ର
ବିପୁଳ ବନ ଏ ଚଉପାଶରେ ପବିତ୍ର ।
ଗୌତମ ଋଷି ଏଥି ତପ କରୁଥିଲେ
ତାଙ୍କର ଘରଣୀ ସଙ୍ଗତରେ ବେନି ଭଲେ ।
ତୁଚ୍ଛା ପର୍ଣ୍ଣକୁଟୀର ଯେ ଅଛି ଏଠି ଦେଖ
ଯାଗ କରିଅଛନ୍ତି ଯାଗ କୁଣ୍ଡ ଦେଖ ।
ଶ୍ରୀରାମଙ୍କୁ ଦେଖାଇଲେ ଗାଧିର ନନ୍ଦନ
କହନ୍ତି ବିଶ୍ୱାମିତ୍ରକୁ ଶୁଣହେ ଶ୍ରୀରାମ ।
ଏହିସ୍ଥାନେ ଷଡଋତୁ ବୋଧଇ ପୁଣ
ଏ ଯେ ଶୀତଳ ବନ ଏହାର ଗୁଣ ଶୁଣ ।
ହେ ରାମ ଆଗରେ ଯେ ପଥରେକ ଦିଶି
ଏହି ସେ ଅହଲ୍ୟା ବୋଲି ଗାଧିସୁତ ଭାଷି ।
ଅହଲ୍ୟାର ବନ ଯେ ଅହଲ୍ୟାର ନାମ
ପୁରାଣର କଥା ଏ ଯେ ଶୁଣ ହେ ଶ୍ରୀରାମ ।
ପୂର୍ବରେ ଦଇବ ଯେ ମନରେ ବିଚାରି
ସକଳ ରୂପ ଗୁଣ ଯେ ଏକଇ ଠାବ କରି ।
ଲାବଣ୍ୟ ମୂରତି କରି କିମ୍ପାଏ ଗଢିଲା
ଅହଲ୍ୟା ବନରେ ରଖି ଅହଲ୍ୟା ନାମ ଦେଲା ।
ଦେଖିଣ ମୋହଗଲେ ସକଳ ଯେ ମୁନି
ଦେବତାଙ୍କୁ ଚାହିଁଣ ବୋଇଲେ ପଦ୍ମ ଯୋନି ।
ଯେ ଆଗ ପୃଥ୍ୱୀ ଯେ ବେଗରେ ବୁଲି ଆସି
ତାହାର ଘରଣୀ ବୋଲି ପିତାମହ ଭାଷି ।
ଶୁଣିଲେ ସୁର ଯେ ଋଷି ଅସୁରଗଣ
ବ୍ରହ୍ମାଣ୍ଡ ବୁଲିବାକୁ ଗଲେ ସେ ବେଗେଣ ।
ବେଦବର ବୋଇଲେ ଗଉତମକୁ ଚାହିଁ
ତୁମ୍ଭେ କିମ୍ପା ଏ ବନରେ ଅଛ ଥୟ ହୋଇ ।
ତୁମ୍ଭେ ଯାଇ ପୃଥିବୀ ପ୍ରଦକ୍ଷିଣ କର
ଆଗ ହୋଇ ଆସି କନ୍ୟାକୁ ତୁମ୍ଭେ ବର ।
ଶୁଣିଣ ଗଉତମ ହରଷ ମନ ହୋଇ
ସୁରଭୀକି ପ୍ରଦକ୍ଷିଣ କଲେକ ସେ ଯାଇ ।
ବେଦବର ଆଗରେ କହିଲେ ମହାଋଷି
ଦେଖିଣ ପିତାମହ ମନେ ମନେ ହସି ।
ହେଲା ପ୍ରାପତ ତୁମ୍ଭକୁ ଅହଲ୍ୟା ଯୁବତୀ
ଏତେ ବୋଲି କନ୍ୟାକୁ ସମର୍ପି ବେଦପତି ।
ବିଭା କରାଇଲେ ତାଙ୍କୁ ଗୋତ୍ର ଯେ ସୁମରି
ଦେବ ଅସୁରେ ଋଷି ଆସନ୍ତି ପୃଥ୍ୱୀ ବୁଲିକରି ।

ଦେଖିଲେ ଗଉତମ ହୋଇଲେଣି ବିଭା
ମନେ ମନେ କୋପକଲେ ଅସୁର ସୁରଦେବା ।
ଏଥୁ ଅନନ୍ତରେ ଯେ ବିଧାତା ଆଜ୍ଞା ଦେଇ
ଅହଲ୍ୟାକୁ ଘେନି ତହୁଁ ଗଲେ ତପିସାଇଁ ।
ଏ ବନରେ ମଠକରି ବହୁତ ଦିନ ଥିଲେ
ଅହଲ୍ୟାକୁ ଘେନିକରି ସୁଖରେ ଭୋଗ କଲେ ।
ସତ୍ୟାନନ୍ଦ ବୋଲିଣ ହୋଇଲା ଏକ ପୁତ୍ର
ସମର୍ଥ ଧାର୍ମିକ ଯେ ଅଟଇ ନିବର୍ତ୍ତ ।
ଏଥୁ ଅନନ୍ତରେ ଶୁଣ ହେ ଶ୍ରୀରାମ
ଅହଲ୍ୟାକୁ ଇନ୍ଦ୍ର ଭାଳଇ ପ୍ରତିଦିନ ।
ଅହଲ୍ୟାକୁ ହରିଲେ ମୋର ଜୀବନ ସଫଳ
ପିତାର ଶାପରୁ ଯେ ତା ମନ ଚଞ୍ଚଳ ।
ଏମନ୍ତ ବିଚାରି ମୁନି ଆଶ୍ରମକୁ ଗଲା ।
ଏହି ସମୟରେ ଋଷି ତପକୁ ଯାଇଥିଲା ।
ନିର୍ଜନ ବନ ଜାଣି ପଶିଲା ବଜ୍ରଧର ।
ପ୍ରବେଶ ହୋଇଲା ଯାଇ ଗୌତମ ମଠର ।
ଅହଲ୍ୟାକୁ ଚାହିଁଣ ବୋଇଲା ଶୁଣ ସଖୀ
କାମ ଶରେ ତୋତେ ଦେଖି ହୋଇଲି ମୁଁ ଦୁଃଖୀ ।
ଏ ତୋହର ଅଧର ଚୁମ୍ବିତ ମୋର ମନ
କର ରଜ୍ଜୁରେ ମୋତେ କର ଗୋ ବନ୍ଧନ ।
ମୋହର ହୃଦୟରେ ତୋହର ହସ୍ତ ଲାଗୁ
ପ୍ରସନ୍ନ ହୁଅ ସଖୀରେ ବିରହ ଜ୍ୱର ଭାଗୁ ।
ଅହଲ୍ୟା ବୋଇଲେ ତୁମ୍ଭେ ଶୁଣ ହେ ସୁରପତି
ଏତେ ଅବିଚାର କିମ୍ପା କହ ଏଥି ଆସି ।
ମୁହିଁ ଋଷିଆଣୀ ଯେ ତୁମ୍ଭେ ତ ଦେବରାୟ
କି ରୂପେ ବାସବ ତୁ ଏକଥା ଆସି କହ ।
ଯତିର ଭାରିଯା ମୁଁ ଯେ ପତିବ୍ରତା ନାରୀ
ମୋତେ ତୁ ହରିବାକୁ କି ରୂପେ ମନ କରି ।
ଯାଅ ତୁ ସ୍ୱର୍ଗପୁର ନ ରହ କ୍ଷଣେ ଏଥ
ଏହିକ୍ଷଣି ଆସିବେ ମୋହର ପ୍ରାଣନାଥ ।
ଈଶ୍ୱର କହିବାରୁ କାମଦେବ ଭସ୍ମ ପୁଣ
ତୁହି ଭସ୍ମ ହେବୁ ନରହ ଏଥି କ୍ଷଣ ।
ଅହଲ୍ୟା ନିରାଶରେ ପଳାଏ ସୁରପତି
ଅହଲ୍ୟା ରୂପ ଗୁଣ ବିଚାରୁଥାଏ ନିତି ।
ଚାରି ଦିନ ଛ ଦିନରେ ଇନ୍ଦ୍ର ସେ ଆସଇ
ଗଉତମ ବନରେ ସେ ଯାଇଣ ପଶଇ ।

ବାଟ ଚାହୁଁଥାଏ ଯେ ଋଷି ଯିବାର ବେଳେ
ଏ ରୂପେ ରାଜା ଯେ ମନର ବିକଳେ ।
ଏକଦିନେ ସ୍ନାହାନ ସମୟ କାଳ ହୋଇ
ଗଉତମ ସ୍ନାହାନ କରିଣ ଗଲେ ନଈ ।
ତେତେବେଳେ ବାସବ ଯେ ମାୟାରୂପ ଧରି
ଅହଲ୍ୟା ଛାମୁରେ ଇନ୍ଦ୍ର ଋଷି ରୂପ ଧରି ।
କନ୍ୟା ବୋଇଲେ ମୁନି ସ୍ନାନକରି ଗଲ
ନିତ୍ୟକର୍ମ ନସାରି ଯେ ବାହୁଡ଼ି ଅଇଲ ।
ମାୟାରୂପ ଧରିଣ ଯେ ବୋଲେ ବଜ୍ରପାଣି
ଶୁଣ ତୁ ଶଶିମୁଖ ଆମ୍ଭର ଯେ ବାଣୀ ।
ଜଳଘାଟେ ଦେଖିଲୁ ସ୍ନାନ କରଇ ଉର୍ବଶୀ
ସୁନ୍ଦର ରୂପ ଗୋଟି ନବଯୌବନ କାନ୍ତି ।
ଜାନୁ ଯଉବନ ରୂପକାନ୍ତି ଦେଖି ତାର
ବାହୁଡ଼ି ଅଇଲୁ ଆମ୍ଭେ କାମପୀଡ଼ା ଘୋର ।
କରିଥାଅ ଆଲିଙ୍ଗନ ଦିଅ ଗୋ ସୁରତି
ଏ ମୋର ପ୍ରାଣ ରଖ ଗୋ ବାରେ ସତୀ ।
ଏତେ ବୋଲି କରି ଯେ ଅହଲ୍ୟାକୁ ଧରି
ବିବିଧ ଛନ୍ଦେଣ ଶୃଙ୍ଗାର ରତିକରି ।
ଏସନକ ସମୟରେ ଗଉତମ ଋଷି
ସ୍ନାନ ସାରିଣ ସେ ଯେ ମିଳିଲେ ପୁଣ ଆସି ।
ଦେଖିଣ ବେନି ଜନ ହୋଇଲେ ତରସ୍ତ
ମଞ୍ଜାରି ସ୍ୱରୂପ ସେ ଧଇଲେ ସୁରନାଥ
ଜଳାକବାଟି ବାଟେ ଗଳିଣ ପଳାଇଲା
ମାୟା ପୁରୁଷ ବୋଲିଣ ଅହଲ୍ୟା ଜାଣିଲା ।
କେଶବାସ ତତକ୍ଷଣେ ସମ୍ଭାଳିକରି ବାମା
ଲଜ୍ଜାଭାବ ଘେନି ଉଭା ହୋଇଲେ ଉତ୍ତମା ।
ମୁନି ଯାଇ ଭିତର ପୁରରେ ବେଗେ ମିଳି
ଦେଖିଲେ ମନଭଗ୍ନ ହୋଇଣ ଅଛି ନାରୀ ।
ଇନ୍ଦ୍ର ଯେ ମଞ୍ଜାରି ରୂପ ହୋଇଣ ପଳାଇଲା
ଅହଲ୍ୟାକୁ ଗଉତମ ତମରେ ପଚାରିଲା ।
ଜଳାକବାଟି ବାଟେ କେ ହୋଇଲା ବାହାର
ଅହଲ୍ୟା ବୋଇଲେ ସେ ଯେ ମଞ୍ଜାରି ଯିବାର ।
ଶୁଣିଣ ଗଉତମ ତପସ୍ଥାନକୁ ଗଲେ
ଯୋଗବଳରେ ଋଷି ସେ କଥା ଜାଣିଲେ ।
ବୋଇଲେ ଇନ୍ଦ୍ର ମାୟାରେ ହରିଲୁ ମୋର ନାରୀ
କେତେ ପାପ କଲୁରେ ମାୟା ରୂପ ଧରି ।
ଯତିର ଭାରିଜା ପୁଣ ସତୀକି ଦ୍ରୋହକଲୁ
ଦେବରାଜ ହୋଇଣ ଯେ ଅନୀତି ଆଚରିଲୁ ।
କପଟ କରିଣ ଯେ ସତୀକି ହରିଲୁ ।
ଏବେ ତୁ ବଜ୍ରଧର ନିଶ୍ଚୟ ନାଶଗଲୁ ।
ଅନେକ ଯେ ବିଦ୍ୟାଧରୀ ଅପସରୀ ତୋର
କିନ୍ନରୀମାନେ ଯେ ନୃତ୍ୟ କରନ୍ତି ଅପାର ।
ସ୍ୱର୍ଗର ସୁନ୍ଦରୀ ପୁଣ ତ୍ରିଭୁବନେ ନାହିଁ
ଏମାନେ ଭୋଗ କିମ୍ପା ନକଲୁ ନରସାଇଁ ।
ସ୍ୱର୍ଗର ସମ୍ପଦ ଏବେ ଇଚ୍ଛାରେ ନାଶକଲୁ
ଏକା ଏକ ଘରଣୀ ମୋର ମାୟାରେ ହରିଲୁ ।
ଯେଣୁ ଯେ ନିକିରେ ରସିଲୁ ଶ୍ରଦ୍ଧା ପାଇ
ଯେତେକାଳ ତୋର ଶରୀରେ ପ୍ରାଣ ଥାଇ ।
ତେତେକାଳ ଯାଏ ତୁ ସହସ୍ର ଯୋନି ବହ
ଯୋନିମୟ ହେଉ ଯେ ଏ ତୋହର ଦେହ ।
ଯେବଣ ଅଣ୍ଡରେ ତୁ ହରିଲୁ ମୋର ନାରୀ
ସେହି ଅଣ୍ଡ ତୋର ଛିଡ଼ି ପଡୁ ବଜ୍ରଧାରୀ ।
କୋପରେ ବ୍ରହ୍ମ ଋଷି ଯହୁଁ ଶାପ ଦେଲେ
ସୁରପତିର ଅଣ୍ଡ ଛିଡ଼ିଣ ପଡ଼ିଲେ ।
ସହସ୍ରେକ ଯୋନି ଯେ ହୋଇଲା ତାର କାୟେ
ଦେଖିଣ ଦେବରାଜ ବହୁତ ଲଜ୍ଜାପାଏ ।
ପଳାଇ ଯାଇ ମାନ ସରୋବରରେ ପଶି
ସଙ୍କୋଚ ପାଇଣ ରହିଲା ସେଥି ଲୁଚି ।
ସ୍ୱର୍ଗ ଯେ ଅଣ ରାଜା ଗୋଳହେଲା ତହୁଁ
ଦୁର୍ବଳ ଲୋକକୁ ସିନା ଦୁଷ୍ଟଲୋକ ରହୁ ।
ବଣିଜାରର ଧନ ଚୋର ଘେନିଗଲେ
ପରଜାଏ ରାଜାକୁ ମାୟା ଧନ ଦେଲେ ।
ଯାନ ଆରୋହିଲେ ନିର୍ଦ୍ଧନ ଜନମାନେ
ଡରିଣ ରହିଲେ ଯେ ସାଧୁତ ଜନମାନେ ।
ଦିଗପାଳମାନେ ଯାଇ ବ୍ରହ୍ମାରେ କହିଲେ
ଭୋଦେବ ଦୁର୍ବଳ ଜନେ ପ୍ରବଳ ହୋଇଲେ ।
ଇନ୍ଦ୍ର ନଥିବାରୁ ହଟ ପାଟ ରାଜ୍ୟ ହେଲା
ବଡକୁ ସାନମାନେ ନ ମାନିଲେ ପରା ।
ଧାତା ବୋଇଲେ ସେକଥା ମୋତେ ଅଛି ଜଣା
ଗୌତମ ଘରଣୀ ହରିଲେ ଇନ୍ଦ୍ରପରା ।
ତାହା ଜାଣି ମୁନିବର ଶାପ ତାକୁ ଦେଲେ
ସହସ୍ରେ ଯୋନି ବହ ବୋଲିଣ ବୋଇଲେ ।

ପୁଣି ଶାପ ଦେଲେ ତାକୁ ଛିଡୁ ତୋର ଅଣ୍ଡ
ଶାପ ପାଇ ଇନ୍ଦ୍ର ଲଜ୍ଜାରେ ଗଲା ହୋଇ ଭଣ୍ଡ ।
ମାନ ସରୋବରରେ ଲୁଚିଅଛି ଯାଇ
ଚାଲ ଆମ୍ଭେ ଯିବା ଗଉତମ ଋଷି ତହିଁ ।
ଅନେକ ପ୍ରକାରେ ଆମ୍ଭେ ପ୍ରବୋଧିବା ଯତି
ତେବେ ସେହି ଇନ୍ଦ୍ର ଯେ ପାଇବ ସଦଗତି ।
ଏତେ ବୋଲି ବ୍ରହ୍ମା ଯେ ସୁରଗଣ ଘେନି
ଗୌତମ ଆଶ୍ରମରେ ପ୍ରବେଶ ପଦ୍ମ ଯୋନି ।
ଇନ୍ଦ୍ରଦେବଙ୍କ ପାଇଁ କହିଲେ ବହୁ ମତେ
ଶୁଣିଣ ବୋଧ ହେଲେ ତପୋବନ୍ତ ଚିତ୍ତେ ।
ମୁନି ବୋଇଲେ ମୋର ବଚନ ନୁହେଁ ଆନ
ସହ୍ରେ ଯୋନି ଯାଇଣ ସହସ୍ରେ ଥାଉ ପୁଣ ।
ଛିଣ୍ଡିବାର ଅଣ୍ଡ ତ ଲାଗିବ ଆଉ କାହିଁ
ମେଷର ଅଣ୍ଡ ଯେ ଲଗାଅ ଏବେ ନେଇ ।
ନିଜ ଅଣ୍ଡ ଆଉ ଯେ କଅଁଳିବ ନାହିଁ ।
ଶୁଣିଣ ସୁର ବ୍ରହ୍ମ ବେଗେ ଚଳିଗଲେ
ମାନ ସରୋବରରେ ଯାଇ ଇନ୍ଦ୍ରଙ୍କୁ ଦେଖିଲେ ।
ଗଉତମ ଆଜ୍ଞା ସେ ଦେଇଥିଲେ ଯହୁଁ
ସହସ୍ର ଲୋଚନ ଯେ ହୋଇଲେକ ତହୁଁ ।
ତେଣୁ ବାହାର ଯେ ହୋଇଲେ ସୁରପତି
ମେଷର ଅଣ୍ଡ ଆଣି ବିଧାତା ଲଗାଏଟି ।
ସେଠାରୁ ଇନ୍ଦ୍ରଙ୍କୁ ନେଇଣ କଲେ ଅଭିଷେକ
ତେଣୁ ସେ ପାଳିଲା ସଂସାର ତ୍ରିଲୋକ ।
ସେଠାରୁ ଦେବତା ଗଲେ ଗଲେକ ଦେବବର
ଯେ ଯାହା ଆଶ୍ରମରେ ପ୍ରବେଶ ଧାତିକାର ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଦାଶରଥି
ଅହଲ୍ୟାକୁ ଶାପ ଯେ ବିହିଲେକ ଯତି ।
ତୁ ଗୋ ଦୋଚାରୁଣୀ ନ ଛୁଉଁ ତୋର ଦେହ
ପାଷାଣ ହୋଇଣ ଗୋ ଏ ବନରେ ଥାଅ ।
ଶୁଣିଣ ସୁନ୍ଦରୀ ଯେ ବୋଲଇ ବଚନ
ମୋହର ଦୋଷ ନାହିଁ ଶୁଣ ହେ ମୁନି ପୁଣ ।
ମାୟାରେ ତୁମ୍ଭ ରୂପ ଧରିଣ ସୁରପତି
ମୁହିଁ ସ୍ତ୍ରୀ ଜନମାୟା ଯେ ଜାଣିବି କେମିତି ।
ତୁମ୍ଭେ ସିନା ବ୍ରହ୍ମ ବେତ୍ତା ଜାଣ ସର୍ବ କଥା
ଏ କଥାରେ ଦୋଷ ମୋର ନାହିଁ ଯେସର୍ବଥା ।
ଗଉତମ ବୋଇଲେ ଶୁଣରେ ସୁନ୍ଦରୀ
ମୋତେ କେମନ୍ତେ ବୋଇଲୁ ଗଲା ତ ମଞ୍ଜରୀ ।
ତେଣୁ ଯେ ଦୋଷୀ ଗୋ ହୋଇଲୁ ତୁହି କିନା
ଆମ୍ଭ ଶାପ ମେଣ୍ଟି ନ ଯାଇ ଗୋ ବାମା ।
ଶୁଣିଣ ସୁନ୍ଦରୀ ଯେ ଯୋଡ଼ିଣ ବେନି କର
ପୂର୍ବେ ଆସିଥିଲା ହେ ସ୍ୱର୍ଗର ବଜ୍ରଧର ।
ନାସ୍ତିକରି ତାଙ୍କୁ ମୁଁ ଯେ ବୋଲିଥିଲି ଯେଣୁ
ମାୟା ରୂପେ ଧରିଣ ଅଇଲା ଏବେ ତେଣୁ ।
ତୁମ୍ଭ ରୂପ ବର୍ଣ୍ଣ ଚିହ୍ନ ଦେଖି ମୁଁ ଦେହଦେଲି
ସେ କଥାକୁ ବିଚାର ନ କଲ ତପଚାରୀ ।
ନ ଜାଣିଣ ଦୋଷକୁ ଶାପ ଦେଲ ପୁଣ
ସୁଦୟାରେ ମୋତେ କର ହେ ପରିତ୍ରାଣ ।
ଅହଲ୍ୟା ବିକଳ ଦେଖି ବୋଲନ୍ତି ତପୋଧନି
ଅଳପ ଦିନ ତନୁ ଗୋ ପାଷାଣ ହୁଅ ପୁଣି ।
ମୁନି ବୋଇଲେ ଶତେ ବରଷ ପାଷାଣ ରୂପେ ଥିବୁ
ଶ୍ରୀରାମଙ୍କ ପାଦ ଲାଗି ମୁକତି ଲଭିବୁ ।
ଦଶରଥ ରାଜା ଘରେ ଜନମ ବ୍ରହ୍ମରାଶି
ଅସୁର ନାଶିବାକୁ ଜନମ ହେବେ ଆସି ।
ଯାଗ ରଖିବାକୁ ମାଗି ଆଣିବେ ବିଶ୍ୱାମିତ୍ର
ମିଥିଳା ଗଲାବେଳେ ଭେଟିବେ ତୋତେ ସେଥ ।
ଚରଣ ଲଗାଇବେ ତୋପରେ ମନୁଠାରୁ ଶୁଣି
ପାଇବୁ ନିଜ ତନୁ ତୁ ଯୁବତୀ ଶିରୋମଣି ।
ଶ୍ରୀରାମ ଚରଣ ଲାଗି ଦୋଷ ତୋ ପାରଯିବ
ତେବେ ତୋହର ସଙ୍ଗେ ମୋହର ହେବ ଭାବ ।
ଶୁଣିଣ ଅହଲ୍ୟା ଚରଣେ ପଡ଼ିଣ ବୋଲେ
ପୁତ୍ର ଦୁହିତା ମୋର ତୁମ୍ଭଙ୍କୁ ଲାଗିଲେ ।
ନିରାଶ କରିଣ ନ ବୋଲିବ ଯେ କିଛି
ମୋରଠାରେ ସପକ୍ଷ ହୋଇଣ ଥିବ ଋଷି ।
ମୁହିଁ ତୁମ୍ଭଙ୍କୁ ଯେ କହିଗଲି ଜାଣ
ଶ୍ରୀରାମ ଆସିବା ଯାଏ ନ ପୁଣକେ ନିଅ ଦିନ ।
କେତେ ଦିନରେ ଶ୍ରୀରାମ ହୋଇବେ ପୁଣ ଜାତ
ଏହି କଥା ମୋତେ ମୁନି କହିବ ସଙ୍କେତ ।
ଗଉତମ ବୋଇଲେ ଶୁଣରେ ପ୍ରିୟବତୀ
ଶତେକ ବରଷରେ ହୋଇବୁ ମୁକତି ।
ଆଜକୁ ଅଠାଶି ବର୍ଷେ ଶ୍ରୀରାମ ହେବେ ଜାତ
ବାର ବରଷ ହେଲେ ଆସିବେ ଏହୁ ପଥ ।

ଶତେ ବରଷ ଏକଦିନେ ତୋ ପାଶେ ମିଳିବେ
ସେ ଦିନ ମୁକତି ଯେ ଗତି ତୋତେ ଦେବେ ।
ଏତେ ବୋଲି ମୁନି ଯେ ପୁତ୍ର ଦୁହିତା ଘେନି
ନାନାତୀର୍ଥ ବୁଲିଣ ସେ ତପକଲେ ପୁଣି ।
ପୁତ୍ର ଦୁହିତାଙ୍କୁ ପଢ଼ାଇ ନାନା ଶାସ୍ତ୍ର
ବିଦ୍ୟାରେ ନିର୍ଜିତା ମୁନି କରାଇଲେ ସେତ ।
ଗଉତମ ଯାନ୍ତେ ପୁଣ ଅହଲ୍ୟା ବିକଳ
ପାଷାଣ ରୂପ ଗୋଟି ହେଲେ ତତକାଳ ।
ଶତେ ବରଷ ଏକଦିନ ସମ୍ପୂର୍ଣ୍ଣ ହୋଇଲା
ଅହଲ୍ୟାର ଋଷି ଶାପ ମେଣ୍ଟିଣ ଯେ ଗଲା ।
ଶ୍ରୀରାମ ତୋର ଚରଣ ଏହା ଉପରେ ଲଦ
ଆଗହୁଁ ଗଉତମ କୁମନ୍ତ କୋପ ପଦ ।
ଏହି କନ୍ୟା ମୁକତ ଏବେ ହେଉ ତୁମ୍ଭ ଲାଗି
କଥା ରହିଥିବ ଯୁଗ ଯୁଗାନ୍ତକୁ ଭାବି ।
ଶ୍ରୀରାମଚନ୍ଦ୍ର ବୋଇଲେ ତୁମ୍ଭେ ଶୁଣ ହେ ମହାମୁନି
କଥା ବିଢ଼ିବାରେ ଉପାୟ ତୁମ୍ଭର ଅଟେ ପୁଣି ।
ଯୋଗବଳେ ଜାଣି କଥା ଯେବେ ମୁନି ସତ
ତେବେ ଏହୁ କନ୍ୟା ହେବ ଯେ ମୁକତ ।
ଶ୍ରୀରାମ କହିଲେ ଯେ ବିଶ୍ୱାମିତ୍ରରେ ବାଣି
ପାଷାଣ ଉପରେ ପାଦ ଲଦିଲେ ରଘୁମଣି ।
ଯେଣୁ ଶ୍ରୀରାମ ଚରଣ ଲାଗିଲା ପାଷାଣେ
ଦିବ୍ୟ ଶରୀର ଜାତ ହୋଇଲା ତତକ୍ଷଣେ ।
ପୂର୍ବରୂପରୁ ସହସ୍ରେ ଗୁଣରେ ସୁନ୍ଦର
ଦେଖିକରି ଧରଣୀ ଯେ ହୋଇଲା ଉଜ୍ଜ୍ୱଳ ।
ଦେଖିଲେ ଅହଲ୍ୟାକୁ ଶ୍ରୀରାମ ଲକ୍ଷ୍ମଣ ବିଶ୍ୱାମିତ୍ର
ହୃଦୟରୁ ଛାଡ଼ି ପାପ ପଳାଇଗଲା ତାପ ।
ଅହଲ୍ୟା ସୁମରଣା ସେ ଧରଣୀ କି କଲା ।
ଅନନ୍ତ ବାସୁଦେବ ମୁନିଙ୍କି ଅର୍ଘ୍ୟ ଦେଲା ।
ଶ୍ରୀରାମ ଲକ୍ଷ୍ମଣଙ୍କ ଶିରେ ଦୁର୍ବା ଅକ୍ଷତ ଦେଇ
ଶତେ ବରଷ ପାପରୁ ମୁକତି ହେଲି ମୁହିଁ ।
ନିଜ ତନୁ ପାଇଲା ସେ ଗଉତମ ନାରୀ
ବୋଇଲା ଶ୍ରୀରାମ ଚନ୍ଦ୍ର ଶୁଣମୋ ଗୁହାରି ।
ପାଷାଣ ରୂପରୁ ମୋତେ ମୁକତି ଗତି ଦେଲ
ଧ୍ରୁବ ମଣ୍ଡଳରେ ଏବେ କଥା ରୁହାଇଲ ।
ଏବେ ଗୌତମ ଋଷିଙ୍କି ସୁମର ଯେ ତୁମ୍ଭେ
ସେ ଋଷି ଆସିଲେ ମୁହିଁ ଯିବି ତାଙ୍କ ସଙ୍ଗେ ।

ବନଗିରି ଲତା ଏ ଯେ ନଜାଣଇ ବାଟ
କେଉଁଠାରେ ଋଷି ଥିବେ ଲାଗୁଛି ସଙ୍କଟ ।
ଶୁଣିବାରୁ ଗାଧିସୁତ ସୁମରଣା କଲେ
ଗଉତମ ଆଶ୍ରମରେ ଥାଇଣ ଜାଣିଲେ ।
ବିଚାରିଲେ ଅହଲ୍ୟା ଯେ ହୋଇଲେ ନିସ୍ତାର
ଶ୍ରୀରାମର ପୟରତ ଲାଗିଲା ତାର ଶିର ।
ନିଶ୍ଚୟ ଶ୍ରୀରାମଚନ୍ଦ୍ର ଅଟନ୍ତି ପରଂବ୍ରହ୍ମ
ଅସୁରଙ୍କୁ ନାଶିବାକୁ ହୋଇଲେ ଆସି ଜନ୍ମ ।
ଏମନ୍ତ ବିଚାରି ଋଷି ବହନ ଚଳିଗଲେ
ଅହଲ୍ୟା ନିସ୍ତାରଣ ସ୍ଥାନରେ ମିଳିଲେ ।
ଦେଖିଣ ଅହଲ୍ୟା ଚରଣରେ ଓଳଗିଲା
ଗୌତମ ଶ୍ରୀରାମ ବିଶ୍ୱାମିତ୍ରରେ ଦେଖାହେଲା ।
ବିଶ୍ୱାମିତ୍ର ବହୁତ ଯେ ତିଆରି କହିଲେ
ଶୁଣିଣ ଗଉତମ ଯେ ସନ୍ତୋଷ ମନ ହେଲେ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ଆଶିଷ ଋଷି ଦେଲେ ।
ପ୍ରିୟାକୁ ଘେନିଣ ହରଷ ମନେ ଗଲେ
ଗଉତମ ହରଷରେ କହିଲେ ଯେ ପୁଣ
ବୋଇଲେ ସଖି ତୁ ଗୋ ଭେଟିଲୁ ଶ୍ରୀରାମ ।
ଏତେ କହି ପ୍ରିୟାକୁ ଘେନିଣ ଚଳିଗଲେ
ନିଜ ଆଶ୍ରମରେ ଯାଇ ପ୍ରବେଶ ହୋଇଲେ ।
ପାର୍ବତୀ ପଚାରିଲେ ସେଠାରୁ କିସ ହେଲା
ସେଠାରୁ ଶ୍ରୀରାମ ଯେ କେଣିକି ପୁଣ ଗଲା ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଅହଲ୍ୟା ନିସ୍ତାରଣ କରିଣ ଦାଶରଥି ।
ବିଶ୍ୱାମିତ୍ରଙ୍କ ସଙ୍ଗରେ ବେନିଭାଇ ଚଳି
ଆବର ଅନେକ ତପି ସଙ୍ଗତରେ ମିଳି ।
ଧବଳାଙ୍ଗୀ ଗଙ୍ଗାକୂଳେ ହେଲେ ପରବେଶ
ଗଙ୍ଗାରେ ସ୍ନାନ କରି ସମସ୍ତେ ହରଷ ।
ନିତ୍ୟକର୍ମ ସାରିଣ ଫଳ ମୂଳ ଭୁଞ୍ଜି
ଏହି ସମୟରେ ନାଉରି ମିଳେ ଆସି ।
ସକଳ ମୁନିବର ନାବରେ ବସେ ଯାଇ
ଶ୍ରୀରାମଙ୍କୁ ଚାହିଁଣ ଯେ କେଉଟ ଆଳ କହି ।
ତୁମ୍ଭେ ବେନି ଭାଇ ଯେ ଚରଣ ଧୋଇ ବସ
ମୁହିଁ ଅଟେ ଦୁଃଖିଜନ ନକର ମୋତେ ନାଶ ।
ଗଉତମ ନାରୀ ଯେ ଅହଲ୍ୟା ପାଷାଣ
ତୁମ୍ଭର ପାଦ ଲାଗନ୍ତେ ହୋଇଲା ସ୍ତିରୀ ପୁଣ ।

ନାବରେ ବସିଲେ ମୋର ସଙ୍ଗାଳି ବୁଡ଼ିବ
ନାବଗୋଟି ମୋର ଯେବେ ସ୍ତିରୀ ରୂପ ହେବ ।
ଶୁଣିକରି ଶ୍ରୀରାମ ଲକ୍ଷ୍ମଣ ହସିଲେ
ଚରଣ ଧୋଇ ଯାଇ ନାବରେ ବସିଲେ ।
ଗଙ୍ଗାକୁ ପାରି କରି ନେଲା କେଉଟଆଳ
ନାବରେ ବସାଇଣ ଜଗତ ଠାକୁର ।
ନାବରୁ ଓହ୍ଲାଇଲେ ଯେ ଶ୍ରୀରାମ ଲକ୍ଷ୍ମଣ
ବିଜୟ କଲେ କଲେ ହରଷ ହୋଇ ମନ ।
ଦେଖିଣ ନାଉରିଆ ନାବରୁ ଓହ୍ଲାଇଲା
ରାମ ଲକ୍ଷ୍ମଣ ମୁନିଙ୍କ ଚରଣ ଓଳଗିଲା ।
ଏମନ୍ତ ସମୟରେ ବିଚାରୀ ଗଙ୍ଗା ଦେବୀ
ନାବ ଭିତରେ ରତ୍ନ ଗରିଆ ଥୋଇ ଭାବି ।
ଏଥୁ ଅନନ୍ତରେ ଯେ ବିଶ୍ୱାମିତ୍ର ମୁନି
ଶ୍ରୀରାମ ଲକ୍ଷ୍ମଣ ଘେନି କୁମାର ବନେ ମିଳି ।
ରଜନୀରେ ସେ ବନରେ ରହିଲେ ସମସ୍ତେ
ଅଶ୍ୱିନୀ କୁମାର ଯେ ଜାଣିଲେ ଯୋଗ ପଥେ ।
କୁମାର ବନରେ ସେ ତପ କରୁଥିଲେ
ଆସନ ତେଜିଣ ସେ ବେଗେଣ ଉଠିଲେ ।
ଅମୃତ ସମାନ ସେ ଫଳମୂଳ ଦେଲେ ଆଣି
ତପ ସିଦ୍ଧ ହେଲା ବୋଲି କୁମାର ଦେବ ଭଣି ।
ରଜନୀରେ ତାଙ୍କ ସଙ୍ଗେ ବସିଲେ ଯେ ବନେ
ରଜନୀ ଶେଷ ହେବାରୁ ଉଠିଲେ ତକ୍ଷଣେ ।
ବିଶ୍ୱାମିତ୍ର ସଙ୍ଗରେ ଶ୍ରୀରାମ ଗଲେ ଚଳି
ଅଶ୍ୱିନୀ କୁମାର ଯେ ସ୍ୱର୍ଗପୁରେ ମିଳି ।
ସହସ୍ରେ ମୁନିଛନ୍ତି ଶ୍ରୀରାମର ସଙ୍ଗେ
ବିଶ୍ୱାମିତ୍ର ମୁନି ଯେ ଅଛନ୍ତି ପୁଣ ଆଗେ ।
ମିଥିଳା ନଗରେ ଶ୍ରୀରାମ ହୋଇଲେ ପ୍ରବେଶ
ଦେଖିଲେ ଯେ ରାମଚନ୍ଦ୍ର ହିରଣ୍ୟମୟ ଦେଶ ।
ମେଢ଼ ମଣ୍ଡପ ଯେ ପ୍ରାସାଦ ଜଗତୀ
ସୁବର୍ଣ୍ଣର କଳସ ଦିଶନ୍ତି ପନ୍ତି ପନ୍ତି ।
ବିଚିତ୍ର ଚିରାଳ ଯେ ଉଡଇ ଫରହର
ସ୍ଫଟିକ ପାବଚ୍ଛ ଯେ ବସିଲା ଅଛି ଘର ।
ସାଧୁତ ଜନମାନେ ବାର ବଣିଜାର ।
ବିଚିତ୍ର କରିଣ ମଣ୍ଡିଣଛନ୍ତି ପୁର ।
ଦାଣ୍ଡ ପଥଁରି ଯେ କର୍ପୂର ଧୂଳି ସିଞ୍ଚୁ ।
ଚନ୍ଦନ ଛେରା ଦେଇଣ ବିପୁଳ ଘର ରଚି ।

ନଗ୍ର ପରିମଳ ଯେ ରାଜା ଦାଣ୍ଡ ବାଟେ ହାଟ
ରଥ ଗଜ ଅଶ୍ୱ ଯେ ଚତୁରଙ୍ଗ ଥାଟ ।
ନଦୀ ପୁଷ୍କରିଣୀ କୂପ ବାମ୍ପୀ ଦିଶେ ତୋରା
ପୁଷ୍ପଫଳ ତୋଟା ଯେତେକେ କରୁ ସଙ୍କୋଳା ।
ଗହ ଗହ ଶବଦ ଶୁଭଇ ମୁଖ ବାଣୀ
ମିଥିଳା କଟକରେ ପ୍ରବେଶ ରଘୁମଣି ।
ପଥ ମାର୍ଗରେ ଯାଆନ୍ତେ ଦେଖନ୍ତି ସର୍ବଜନ
ଧନ୍ୟ ଏହୁ ଦେଶ ବୋଲି ବୋଲନ୍ତି ବଚନ ।
ଏକର କହତେ ତହୁଁ ଆରେକ ପଚାରି
ଶ୍ରୀରାମ ଦେଖି ଆସନ୍ତି ମିଥିଳା ନର ନାରୀ ।
ନଗ୍ର ନର ନାରୀଏ ଯେ ଧୂଆଁ ଧୁଇଁ ହୋଇ
ଏକଇ କହଇ ଆରେକ ଆସେ ଧାଇଁ ।
ନବ ଯୁବା ସୁନ୍ଦରୀ ଅଇଲେ ଶ୍ରୀରାମଙ୍କୁ ଦେଖି
ପଞ୍ଚମ ଶର ଘାତେ ଲଜ୍ଜା ଯେ ଉପେକ୍ଷି ।
କେବଳ ଯୁବତୀ ଯେ ଦେଖାନ୍ତି ଜାନୁ ଜଙ୍ଘ
ବସ୍ତ୍ର ଖସାଇ ଦେଖାନ୍ତି ଯଉବନ ଭାଗ ।
ଅଳପ ହସି କେହୁ ଆଖି ଛଟା ମାରି
କେହୁଁ କାଖ ଦେଖାଇଣ ଦେଖାନ୍ତି ହିୟା ଫେଡି ।
କେଉଁ ନାରୀ କେଶ ଯେ ବାନ୍ଧି ନ ପାରିଲେ
ଆସିବାର ବେଳେ ସେ ଯେ ହସ୍ତରେ ଧଇଲେ ।
କାହାର ଜୁଡ଼ା ଗୋ ଧାଉଁ ଧାଉଁ ଫିଟି
ଜୁଡାର ବଉଳ ମାଳ୍ଭୂମିରେ ପଡ଼େ ଲୁଟି ।
ଶ୍ରୀରାମଙ୍କୁ ଦେଖୁ ଦେଖୁ ଖଞ୍ଜା ଯେ ଫିଟିଗଲା
କାହାର ମୁକ୍ତାର ମାଳ ଭୂମିରେ ଲୋଟିଲା ।
କାହାର ନାକ ଚଣା ନାଶାରୁ ଗଲା ଛୋଟି
କାହା ଗଳାରୁ ଖସେ ଚାପ ସରିମାଳ ଗୋଟି ।
କେବଣ ନାରୀ ବେଶ ସୁନ୍ଦରୀ ହୋଇଥିଲା
ଶ୍ରୀରାମଙ୍କୁ ଦେଖିବାକୁ ଧାଇଁଣ ଅଇଲା ।
ନୟନେ କଜ୍ଜଳ କେହୁ ନ ପାରେ ଘେନି ବେଗି
ଅଙ୍ଗୁଳିର ଅଗ୍ରରେ କଳା ଅଛି ଲାଗି ।
କାହାର ହସ୍ତରେ ଯେ ଧରିଅଛି ପେଡ଼ି
ତରବରେ ଆସନ୍ତେ ନ ପାରଇ ଫେଡି ।
କେ ପାନ ପିକ ନେଇ ଚରଣେ ଲଗାଇଲେ
ଅଳତା ନୋହେ ବୋଲି ସଙ୍ଗର ଲୋକ ଦେଲେ ।
ସିନ୍ଦୂର ଚିତାମାନେ ଘେନୁଣ ଥିଲେ ନାରୀ
ଗନ୍ଧ ଚନ୍ଦନ ବୋଲି ଯେ ବୋଳିଲେ ପାଶୋରି ।

କେବଣ ସୁନ୍ଦରୀ ଯେ ହସି ହସି ଧାଇଁ
ମୁଖରେ ଖାଇଲା ପାନ ଓଷ୍ଠରେ ପଡ଼ଇ ।
କେବଣ ସ୍ତିରୀ ପିନ୍ଧନ୍ତେ ଖର କରି
ଅର୍ଦ୍ଧେକ ପିନ୍ଧିଅଛି ଅର୍ଦ୍ଧେକ କରେ ଧରି ।
ଆଡ ପଣତ ଉଡ଼େ କାହାର ବାଟ ପାଏ
ନୂପୁର ଗୋଡୁ ପଡିଲା ଧାଇଁଲା ସମୟେ ।
କେବଣ ନାଗରୀ ଯେ ବୋଲଇ ଘରେ ଥାଇ
ଆଗ ହୋଇଣ କେତେ ଗୋ ଯାଉଛ ପଳାଇ ।
କ୍ଷଣକେ ଫିଠାଇଲେ ସମସ୍ତେ ଦେଖିଯିବା
ହସ୍ତ ଧରା ଧରି ହୋଇଣ ଯେ ଆସିବା ।
ସଙ୍ଗ ମେଳ ହୋଇଣ ଗଲେ ଯେ ସର୍ବ ନାରୀ
ଲୋଟିଣ ଛନ୍ଦରେ ଯେ ପିନ୍ଧିଛନ୍ତ ଶାଢ଼ୀ ।
କେବଣ ନାରୀଙ୍କର ବସଣୀ ଗଲା ଖସି
କେବଣ ସୁନ୍ଦରୀ ଯେ ମୁରୁକି ହସା ହସି ।
କେବଣ ଯୁବତୀ ଯେ ନମାନେ ପୁରୁଷକୁ ।
କେବଣ ବଧୂମାନେ ନମାନେ ଶ୍ୱଶୁରକୁ ।
କେହୁ ନ ମାନିଲେ ଗୁରୁ ଗଉରବ ।
ମାନିତ ଜନ ସଙ୍ଗେ ହୋଇଲେ ସଦଭାବ ।
କେବଣ ନାରୀ ମଳା ଶୁରକୁ ପଚାରନ୍ତି
ନିକଟରେ ଦେଖିଲେ ଯେ ଜିହ୍ୱା କାମୁଡ଼ନ୍ତି ।
ଦେଢ଼ଶ୍ୱଶୁରକୁ ଦେଖି ପଚାରେ ଶ୍ରୀରାମଛନ୍ତି କାହିଁ
ରାମ ଲକ୍ଷ୍ମଣ ତୁମ୍ଭେ ଦେଖିଲ କେଉଁଠାଇଁ ।
ଶ୍ୱଶୁରକୁ ବୋହୂମାନେ ନମାନିଣ ଗଲେ
ଲୋକେ କହି ଦେବାରୁ ଲେଉଟି ଅନାଇଲେ ।
କେହୁ ହସ୍ତେ ଧରି ଗୋଡର ଯେ ବଳା
କଣ୍ଠରେ ପଡିଅଛି ଚଉସରି ମାଳା ।
କେହୁ ପାଟ ବରତ ବାହାରେ ବାନ୍ଧୁଥିଲା
ଶ୍ରୀରାମକୁ ଦେଖିବାକୁ ଧାଇଁଣ ଅଇଲା ।
କେବଣ ଯୁବତୀର ଯଉବନ ଭରୀ
ଧାଇଁ ଯାଉଅଛି ସ୍ତନ ଦୁହିଁଙ୍କି ହସ୍ତେ ଧରି
ଖୁଆ ଚଳନ୍ତେଣ ଚାପଇ ପୁଣ ପୁଣି ।
ଏକକୁ ଆରେକ ଯେ ଧାଏଁ ଜିଣା ଜିଣି ।
କେଉଁ ସ୍ତିରୀ ଆନନ୍ଦରେ ନୟନୁ ବହେ ବାରି
ଶରୀର ଜଡ଼ି ତାରେ ଦୁଇ କୁଚରେ ପଡି ।
କାହାର କଙ୍କଣ ଯେ ବାଜଇ ରୁଣ ଝୁଣ
କେବଳ ନାରୀଗୋଟି କୁଙ୍କୁମେ ବିଲେପନ ।

କେଉଁ ନାରୀ ଗୋଟିଏ ଭୃକୁଟି ନାହିଁ ଫୁଟି
ବସ୍ତ୍ର ଉଡିଯିବାରୁ ଦିଶୁଅଛି ଫୁଟି ।
ଦାଣ୍ଡରେ ଗହଳ ଯେ ଯିବାର ବାଟ ନାହିଁ
କେ ବୋଲେ ଶ୍ରୀରାମ ଲକ୍ଷ୍ମଣ ଅଛନ୍ତି କେଉଁଠାଇଁ ।
କେ ବୋଲେ ଦେଖୁଛନ୍ତି ବିଶ୍ୱାମିତ୍ରଙ୍କର ପାଶେ
ନବ ଦୁର୍ବାଦଳ ପ୍ରାୟେକ ତନୁ ଦିଶେ ।
ଶରଦ ଚନ୍ଦ୍ରମା ପ୍ରାୟେକ ଦିଶି ମୁଖ
ରାଜୀବ ଲୋଚନ ଯେ ବେନି ନେତ୍ର ଦେଖ ।
ଆଜାନୁଲମ୍ବିତ ବାହୁ ଦିଶଇ କର ସ୍ଥଳ
ଫର ଫର ଉଡଇ ଯେ ନେତ ପଣନ୍ତର ।
ଉପରେ ନେଇ ରଙ୍ଗ ବସ୍ତ୍ରେକ ବେଢ଼ାଇଲା
କରେ ଧରିବା ଧନୁ ଏହାକୁ ଶୋଭେ ପରା ।
ଜାଇଫୁଲ ଗଭା ଗୋ ଶିରରେ ବେଢ଼ିଅଛି
ହେଲେଣ ମୋହୁଅଛି ସଂସାର ନବ ସୃଷ୍ଟି ।
କର୍ଣ୍ଣରେ କୁଣ୍ଡଳ ଶୋଭେ ଗଳାରେ ମୋତିମାଳା
ନିର୍ମଳ ମେଘରେ କି ଉଦୟ ହେଲେ ତରା ।
ଚମ୍ପା ପୁଷ୍ପ ପ୍ରିୟ ଶରୀର ଦିଶଇ ସାନ ଭାଇ
ଧନ୍ୟ ଏହାଙ୍କର ଗୋ ଗର୍ଭଧାରୀ ଆଈ ।
ଆମ୍ଭର ମିଥିଲା ନଗ୍ର ବଡ଼ ଯେ ପୁଣ୍ୟ ଆଜ
କାହୁଁ ଆସି ପ୍ରବେଶ ହୋଇଲେ ରୂପରାଜ ।
ଆମ୍ଭ ଦେହଯାକ କିମ୍ପା ନୋହିଲା ନୟନ ।
ଏହାକୁ ଦେଖିବାରେ ଶାନ୍ତି ଯେ ନୁହେଁ ମନ ।
କେମନ୍ତେ ଏହାଙ୍କର ଛୁଇଁବା ଆମ୍ଭେ ଦେହ
ଏଥକୁ କେଉଁ ଉପାୟ ଅଛି ଗୋ ସଖି କହ ।
କେ ବୋଲେ ଏହାଙ୍କୁ ଗୋ ଚୁମ୍ବନ ଆମ୍ଭେ ଦେବା ।
ଏହାଙ୍କର ସଙ୍ଗରେ ଗୋଡ଼ାଇଣ ଥିବା ।
କେ ବୋଲେ ଆମ୍ଭର ଜୀବନ ଧିକ ହେଉ
ଯେବେ ଆମ୍ଭର ନୋହିବ କାନ୍ତ ପ୍ରଭୁ ।
ଆମ୍ଭର କୁଚମାନ ମର୍ଦ୍ଦନ୍ତେ କରେ ଧରି
ତେବେ ସେ ଜୀବନ ଗୋ ସଫଳ ଆମ୍ଭରି ।
ଏହାଙ୍କ ସଙ୍ଗେ ଯେବେ ସୁରତି ଆମ୍ଭେ ପୁଣି
ଯେବେ ଆମ୍ଭର ଜୀବନ ସାର୍ଥକ ସଙ୍ଗାତୁଣୀ ।
ଏହାକୁ ଘେନି ଯେବେ ପଲଙ୍କେ ଶୋଇଥିବ
ସ୍ୱର୍ଗକୁ ଯାଇ ଆମ୍ଭେ କିସ ଯେ କରିବ ।
ଚାହାନ୍ତେ ଶ୍ରୀରାମର ଦିଶୁଛି ବଦନ
ଯୁବା ସ୍ତିରୀମାନଙ୍କୁ ଯେ ପୀଡୁଛି ମଦନ ।

କେ ବୋଲେ ଘର ଦ୍ୱାରେ ଆମ୍ଭର କାର୍ଯ୍ୟ ନାହିଁ
କେ ବୋଲେ ଆଣଗୋ ଯିବୁ ଆମ୍ଭେ କାହିଁ ।
କାହୁଁ ଏ କାମ ଧ୍ୱଂସନେ ଅଇଲେ ଏହୁପୁରୀ
ଯୁବା ଯୁବତୀ ମାନଙ୍କରେ ପ୍ରାଣ ନେଲେ ହରି ।
ନିଶ୍ଚୟ ଏହୁ ଆଜ ଗୋ କରିବ ସ୍ତିରୀବଧ
ଚାହିଁବାର ଚାତୁରୀରେ ପ୍ରାଣ ଯେ ଦଗଧ ।
ହସି କଥାଏ କହିଲେ ମରିବେ ନିଶ୍ଚେ ନାରୀ
ଅବଶ୍ୟ ପ୍ରାଣୀ ଏ ଗୋ ନେବ ସବୁଙ୍କରି ।
ଯେବଣ ସ୍ତିରୀମାନେ ହୋଇଣଛନ୍ତି ଯୁବା
ବିଚାରନ୍ତି ମନେ ଆମ୍ଭେ ନୋହିଥିଲେ ବିଭା ।
ଆଗହୁଁ ଆସିଥିଲେ ହୁଅନ୍ତୁ ଏହାଙ୍କରି
ପିତାମାତା ନ ଜାଣନ୍ତେ ଆମ୍ଭେ ଯାନ୍ତୁବରି ।
ବୃଦ୍ଧା ସ୍ତିରୀମାନେ ଯେ ସନ୍ତାପି ହୁଅନ୍ତି
ବୟସ ଥିଲେ ଆମ୍ଭର ହୁଅନ୍ତେ ଏହୁ ପତି ।
ଏ ପୁରୁଷ ସଙ୍ଗେ ଯେବେ ହୁଅନ୍ତା ଅଙ୍ଗସଙ୍ଗ
ଆମ୍ଭ ଦେହ ଥିବାଯାଏ ମନରେ ଥାନ୍ତାଭାବ ।
ମଧ ପୁରୁଷେ ବୋଲନ୍ତି ସାଧୁଏ ସତୁମୂର୍ତ୍ତି
ଦେଖିଲା ନଥିଲା ଯେ ଶୁଣିଲା ନାହିଁ ସ୍ମୃତି ।
ଅପୂର୍ବ ସୁନ୍ଦର ଯେ ଅଳପ ବୟସ
ଏ ରୂପେ ବିଜେକଲେ ଧନ୍ୟ ଏହୁ ଦେଶ ।
ବାଳପୁଏ ବିଚାରନ୍ତି ଯେବେ ଏହାଙ୍କ ସଙ୍ଗେ ଖେଳି
ତେବେ ସୁନ୍ଦର ଯେ ଦିଶନ୍ତା ବାଳକେଳି ।
ଯୁବା ପୁରୁଷ ବୋଲନ୍ତି ଏ ଦେବତା ସ୍ୱରୂପ
ମନୁଷ୍ୟ ଯାକରେ କେ ହୋଇବ ଏଡ଼େ ରୂପ ।
ନାରୀଗଣମାନେ ଯେ ମୁର୍ଛି ନ ପାରନ୍ତି
ଶ୍ରୀରାମ ପଛରେ ଗୋଡ଼ାଇ ଯାଉଛନ୍ତି ।
ସାମନ୍ତ ପାତ୍ରମାନଙ୍କରେ ନାରୀମାନେ ଦେଖି
ଜଗତିରେ ଉଠିଣ ଚାହାଁନ୍ତି ନିରେକ୍ଷି ।
ଅଙ୍ଗୁଳି ଦେଖାଇ କେ କହନ୍ତି ତାଙ୍କ ପାଶ
କଳା ଶ୍ୟାମଳ ବର୍ଣ୍ଣ ଗୋ ଧନୁ ଧରି ହସ ।
ସିଂହ ଛୁଆ ପ୍ରାୟ ଗୋ ଚାହିଁବାର ଠାଣି
ପାଷାଣ ତରଳେ ଗୋ ଚାହିଁଲେ ଏହୁ ପୁଣି ।
ଏହା ଶୁଣି ପାର୍ବତୀ ପଚାରେ ତ୍ରିଲୋଚନେ
ଶ୍ରୀରାମ ରୂପ ଦେଖି ବିରହି ହେଲେ ଜନେ ।
ବିରହ କିମ୍ପା ଶୁଣ ଗୋ ଶଷୀ ମୁଖି
ନିର୍ଗୁଣ ପୁରୁଷ ଏ ଅବିଗୁଣ ନାହିଁ କିଛି ।

ଜଗତ ଜାକର ଲୋକେ ଯା ନାମ ସୁମରନ୍ତି
ମୁନିମାନେ ଜପି ଅରଣ୍ୟରେ ବସିଥାନ୍ତି ।
ରାମନାମ ଜପିବାରୁ ଦୁର୍ଗରେ ଯାଇ ବସି ।
ସ୍ୱର୍ଗପୁର ବାସିମାନେ ରାମନାମ ଘୋଷି ।
ଦେବତାଏ ଚିନ୍ତିଣ ଯେ ସୁନ୍ଦର ରୂପ ହେଲେ
ନାଗବଳ ଚିନ୍ତିଣ ସେ ସୁମରନ୍ତି ଭଲେ ।
ରାଜା ଗଣ ଚିନ୍ତିଣ ଯେ ସୁନ୍ଦର ଶୋଭା ରଘୁ
ପାତ୍ର ମନ୍ତ୍ରୀ ଚିନ୍ତିବାରୁ ଶୋଭା ସୁନ୍ଦର ବୁଲନ୍ତୁ ।
ସାଧବେ ଚିନ୍ତିବାରୁ ବହୁଧନ ପାଇ
ସ୍ତୀରିମାନେ ଚିନ୍ତିବାରୁ ଶୋଭା ସୁନ୍ଦର ହୋଇ ।
ନାମର ସୁନ୍ଦର ତାର ରୂପର ସୁନ୍ଦର
ଚାଲିବାର ସୁନ୍ଦର କହିବାର ସୁନ୍ଦର ।
ଯେଣୁ ପ୍ରଭୁପଣ ଘେନିଣ ଶରୀର
ସମସ୍ତ ଲୋକମାନଙ୍କୁ ଦିଶଇ ସୁନ୍ଦର ।
ଏଠାରେ ଶ୍ରୀରାମ ଯେ କେଣିକି ଗଲେ ପୁଣ
ସେ କଥା ମୋହ ଆଗେ କହିବ ସ୍ୱାମୀ ଜାଣ ।
ଈଶ୍ୱର ବୋଇଲେ ଶୁଣରେ ସଙ୍ଗାତୁଣୀ
ଏଥୁ ଅନନ୍ତରେ ଯେ ବିଶ୍ୱାମିତ୍ର ମୁନି ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ସଙ୍ଗରେ ଘେନି ଚଳି
ଅନେକ ଋଷିମାନେ ସଙ୍ଗରେ ଛନ୍ତି ଘେରି ।
ଅନେକ ନରନାରୀ ପଛରେ ଗୋଡ଼ାଇ
ଋଷିଙ୍କର ନବରେ ପ୍ରବେଶ ହେଲେ ଯାଇ ।
ଜାଗରେ ବସିଛନ୍ତି ଜନମ ମହାଋଷି ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ଦେଖିଲେ ମୁନି ଆସି ।
ବିଶ୍ୱାମିତ୍ର ସହିତେ ଅନେକ ତପିଗଣ
ଦେଖିଲେ ପ୍ରଳୟ ଯେ ଜଳୁଛି ହୁତାଶନ ।
ମୂଷଳ ପ୍ରମାଣରେ ପଡଇ ଘୃତଧାର
ସଞ୍ଚପି କହିବା କେତେ ଯାଗର ସମ୍ଭାର ।
ଅନ୍ନ ବସ୍ତ୍ର ପାଣି ପଣା ସଦାବର୍ତ୍ତ ଜାଣ
ଅନେକ ଦେଶର ରାଜା ସେଥିରେ ଛନ୍ତି ପୁଣ ।
ବ୍ରାହ୍ମଣ ଦ୍ୱିଜ ଋଷି ବିପ୍ର ଯେ ସନ୍ନ୍ୟାସୀ
ନାନାଦି ଦେଶରୁ ପଥିକି ଛନ୍ତି ଆସି ।
ଜାଗଶାଳେ ଅନେକ ଅଛନ୍ତି ତପଶାଳୀ
ନାନା ଆଭରଣ ଅଳଙ୍କାର ହୋଇକରି ।
ବିଶ୍ୱାମିତ୍ରଙ୍କୁ ଦେଖିଣ ମୁନି ଯେ ପୂଜା କଲେ
ଆସନରେ ବସାଇଣ କୁଶଳ ପୁଚ୍ଛିଲେ ।

ଶ୍ରୀରାମ ଲକ୍ଷ୍ମଣଙ୍କୁ ଦେଖିଲେ ପୁଣ ଯହୁଁ
ତାହାଙ୍କୁ ଅନାଇଣ ଋଷିଙ୍କି ପୁଛେ ତହୁଁ ।
ମୁରୁଛି ନପାରି ଯେ ରୂପ ଗୁଣ ନାହିଁ
ଜନକ ପଚାରିଲେ ବିନୟ ଭାବ ହୋଇ ।
ଭୋ ମହାମୁନି ତୁମ୍ଭେ ଶୁଣ ମୋ ବଚନ
ମୋର ପୁରେ ଅଇଲ କି ବିଚାରି ଉତ୍ତମ ।
ଜନକ ବୋଇଲେ ମୁନି ଏକଥା ମୋତେ କହ
ଏଇ ଦୁଇ ବାଳ ପୋଇ ଅଟନ୍ତି କାହା ପୁଅ ।
କୌଶିକ କହିଲେ ଜନକଠାରୁ ଶୁଣି
ଦଶରଥ ରାଜା ଯେ ଅଯୋଧ୍ୟା ନୃପମଣି ।
ଶ୍ରୀରାମ ଲକ୍ଷ୍ମଣ ଯେ ଭରତ ଶତ୍ରୁଘନ
ଚାରି ଗୋଟି ପୁତ୍ର ଯେ ଅଟଇ ତାର ପୁଣ ।
ବୃଦ୍ଧକାଳେ ଦଶରଥ ଯାଗ କରି ପାଇ
ନବ ବରଷ ଦିନେ ପୁତ୍ରେ ଯାତ୍ରୀପଣ ହୋଇ ।
ମୁହିଁ ଯାଗ ଆରମ୍ଭି ସିଦ୍ଧ ବନରେ କଲି
ତିନିଥର ଉଜାଡ଼ି ଅସୁରେ ଆସି କରି ।
ଅସୁରଙ୍କର ଭୟେ ମୁଁ ଚିନ୍ତା କରିବାରେ
ନାରଦ ମୁନି ସ୍ୱର୍ଗରେ ଆସିଲେ ତତ୍‌କାଳେ ।
ବୋଇଲେ ଅଯୋଧ୍ୟା ପୁରକୁ ତୁମ୍ଭେ ଯିବ
ଦଶରଥ ରାଜା ବେନି ପୁତ୍ରକୁ ଆଣିବ ।
ତୁମ୍ଭ ଯାଗ ଦେଖିବାକୁ ସେହି ଯେ ସାମରଥ
ତାହା ଶୁଣି ଅଯୋଧ୍ୟାରେ ହେଲୁ ଉପଗତ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ସଙ୍ଗରେ ଆମ୍ଭେ ଘେନି
ଆସନ୍ତେ ତାଡକି ଓଗାଳେ ବାଟ ପୁଣି ।
ତାଡକିକୁ ଶ୍ରୀରାମ ବେନିଖଣ୍ଡ କରି
ତାହାର ସୈନ୍ୟବଳ ଲକ୍ଷ୍ମଣ ନିବାରି ।
ସେଠାରୁ ଆସି ଆମ୍ଭର ଯାଗ ରକ୍ଷା କଲେ ।
ଅନେକ ଅସୁର ଯେ ବେନିଭାଇ ମାଇଲେ ।
ତିନି ମାସ ପନ୍ଦର ଦିନ ଯାଗ ମୋ ସମ୍ପୂର୍ଣ୍ଣ
କଲି ଯାଗର ପୂର୍ଣ୍ଣ ଆହୁତି କଲେ ପୁଣ ।
ବୁଲିଯିବା ପାଇଁ ଶ୍ରଦ୍ଧା ପୁଏ ଯେ ମନକଲେ
ତେଣୁ ମୁଁ ତାଙ୍କୁ ଘେନି ଅଇଲି ସଙ୍ଗତରେ ।
ବାଟରେ ଅହଲ୍ୟା ନାରୀ ନିସ୍ତାରିଲେ
ଆପଣା ରାଜ୍ୟକୁ ଯିବା ବୋଲିଣ କହିଲେ ।
ଆମ୍ଭେ ବୋଇଲୁ ମିଥିଳା ଦାଣ୍ଡେ ଯିବା ପଶି
ଧନୁ ଯାଗ କରନ୍ତି ଜନକ ମହାଋଷି ।

ଧନୁଯାଗ ଦେଖିବାକୁ ଆସିଲେ ପୁଣ ତହୁଁ
ତାଙ୍କ ମନରେ ଶରଧା ହୋଇଲାକ ଯହୁଁ ।
ଜନକ ବୋଇଲେ ତୁମ୍ଭେ ଶୁଣ ହେ ଗାଧିସୁତ
ଅହଲ୍ୟାକୁ କେମନ୍ତେ କଲେ ଏ ମୁକତ ।
ବିପୁଳ ବନରେ ଥିଲେ ଗଉତମ ନାରୀ
ଗଉତମ ଶାପରେ ପାଷାଣ ରୂପ ଧରି ।
ବିଶ୍ୱାମିତ୍ର କହିଲେ ଶୁଣ ହେ ଜନକ
ଶ୍ରୀରାମ ଚରଣ ଲାଗି ହେଲା ଦିବ୍ୟ ରୂପ ।
ପୂର୍ବରୁ ଶତେଗୁଣ ସୁନ୍ଦର ଦିଶିଲା
ଜାଣିକରି ଗଉତମ ଅହଲ୍ୟା ଘେନି ଗଲା ।
ବିଶ୍ୱାମିତ୍ର କହନ୍ତେ ଆନନ୍ଦ ଜନକ
କଉଶିକଙ୍କ ଆଗେ କହନ୍ତି କରି ଶୋକ ।
ବୋଇଲେ ଏଗାର ଥର ମୁଁ ଧନୁଯାଗ କଲି
ଦୁହିତାର ପାଇଁ ମୁଁ ନିୟମ କରିଥିଲି ।
ତିନିପୁର ମଧ୍ୟେ କେହୁ ନ ଧଇଲେ ଧନୁ
ଯାଗ ସମ୍ପୂର୍ଣ୍ଣରେ ବିକୃତ ମୋର ତନୁ ।
ତେଣୁ ମୁଁ କହିଲି ସକଳ ଜାତି ଅଜାତି ହେଉ
ଏ ଧନୁ ଯେ ଧରିବ ମୋ ଦୁହିତା ନେବ ସେହୁ ।
କଉଶିକ ବୋଇଲେ ଶୁଣ ହେ ଜନକ
ଧନୁଯାଗ ସରିଲା ଏ କେଉଁ ଯାଗକୃତ୍ୟ ।
ଜନକ ବୋଇଲେ ମୋ ନ ପୁରେ ମନବାଞ୍ଛା
ତେଣୁ ଅଗ୍ନିରେ ଆହୁତି ଦେଉଛି ମନଇଚ୍ଛା ।
ଶୁଣିଣ କଉଶି ଯେ ହରଷ ହୋଇଲେକ
ଗୌତମଙ୍କ ପୁତ୍ର ସତ୍ୟାନନ୍ଦ ପଚାରିଲେ ।
କେମନ୍ତେ ଜନନୀ ମୋର ପାଇଲା ଶରୀର
କେଉଁ ଦେବତାରେ ସେ ପାଇଲେକ ବର ।
କେମନ୍ତେ ପିତା ମୋର ମାତାଙ୍କୁ ଘେନିଗଲେ
ସେକଥା ମୁନି ଏବେ କହମୋତେ ଭଲେ ।
ବିଶ୍ୱାମିତ୍ର ବୋଇଲେ ଶ୍ରୀରାମ ବାଟରେ ଯେ ଦେଖି
ପଚାରନ୍ତେ ବଳାଇ କହିଲି ମୁହିଁଟି ।
ତେଣୁ ଏହି ଶ୍ରୀରାମ ଚରଣ ଲଗାଇଲେ
ଚରଣ ଲଗାନ୍ତେ ଜନନୀ ନିଜ ରୂପ ହେଲେ ।
ତୋର ଜନନୀ ଦେଖି ତୋ ପିତାଙ୍କୁ ସୁମରୁ ।
ଜାଣିଣ ପିତାତୋର ଆସିଲେ ହନ୍ତକାରୁ ।
ସକଳ କଥା ଶୁଣି ହରଷ ହୋଇଲେ
ତୋହର ଜନନୀ ଘେନି ନିଜ ସ୍ଥାନେ ଗଲେ ।

ଶୁଣିଣ ସତ୍ୟାନନ୍ଦ ଆନନ୍ଦିତ ଚିତ୍ତ
ଶ୍ରୀରାମରେ ପ୍ରଶଂସା କଲେକ ବହୁତ ।
ତୁମ୍ଭେ ଶ୍ରୀରାମ ମୋତେ ହେ ଜନନୀ ଦାନ କଲ
ବହୁ ଲୋକ ଲଜ୍ଜାରୁ ମୁକତ କରାଇଲ ।
ତୁମ୍ଭର ମହିମା ଏବେ ପୂରିଲା ଜଗତ ।
ଅଗୋଚର କଥାମାନ କଲ ହେ ତୁମ୍ଭେ ତ ।
କଉଶିକ ମୁନି ଯେ ଅଟନ୍ତି ବ୍ରହ୍ମଜ୍ଞାନୀ
ଏ ଋଷିଙ୍କ ପ୍ରଶଂସା କରନ୍ତି ପଦ୍ମଯୋନି ।
ଏହାଙ୍କର କଥା ଯେ ଅଶ୍ରୁତ ଅଗୋଚର
ଏକ ମନ ହୋଇଣ ଶୁଣ ଯେ ରଘୁବୀର ।
ଏହି ମୁନି ସାଧ କଲେ ମର୍ତ୍ତ ଅହି ସ୍ୱର୍ଗ
ଏ ମୁନିଙ୍କ କଥା ନ ସରେ କହିଲେ ରାଘବ ।
କୁଶହସ୍ତ ହୋଇଣ ଧ୍ୟାନ କଲେକ ବେଦପତୀ
ଧ୍ୟାନ କରିବାରେ ପୁତ୍ର ଉତପତ୍ତି ।
ସେ କୁମର ନାମ ଯେ ବିଧାତା ଦେଲେ କିସ
ବେଦରୁ ଜାତ କରନ୍ତେ ହୋଇଲେ ବେଦବ୍ୟାସ ।
କୁଶବେଦର ଯେ ଚାରିପୁତ୍ର ହୋଇ
କୁଶ ବିଷ୍ଣୁ ନେତ୍ରସେନ ହୃଦସେନ ହୋଇ ।
କୁଶସେନ ବୋଲିଣ ଯେବଣ ବଡ଼ଭାଇ
ସେହି ପୁଣି ସାଧକଲା ତିନିପୁର ମହୀ ।
ତାଙ୍କର କୁମର ଯେ ଗାଧିଋଷି ହୋଇ
ଗାଧିଙ୍କର ନନ୍ଦନ ବିଶ୍ୱାମିତ୍ର ହୋଇ
ଅଇରି ବଳପୂଜା କରନ୍ତି ପାଦତଳେ
ନୃପତି ପଣ କଲେ ନବଖଣ୍ଡ ମେଦିନୀରେ ।
ଅତି ପ୍ରତାପରେ ହୋଇଲେ ନୃପମଣି
ଯେ ନଗ୍ରରେ ପଶେ ପାପ ପୁଣ୍ୟକୁ ନ ଜାଣି ।
ଦିନେକ ବଳ ଘେନିଣ ନୃପତି ଶେଖର
ମୃଗୟା ବିନୋଦରେ ପଶିଲେ ବନ ଘୋର ।
ଅନେକ ବରେହା ଯେ ହରିଣ ମାରିଲେ
ମୟମତ ଗଜ ଯେ ଅନେକ ବନ୍ଦିକଲେ
କ୍ଷୁଧାର ବେଳ ଯହୁଁ ହୋଇଲା ପୁଣ ଆସି ।
ଅଯୋଧ୍ୟାରେ ଭେଟିଲେ ଯେ ବଶିଷ୍ଠ ମହାଋଷି
ଦେଖିଣ ବ୍ରହ୍ମମୁନି ଗଉରବ କଲେ
ଯାହା ମିଳିଲା ଋଷି ଆଣିଣ ସମର୍ପିଲେ ।
ବୋଲେ କ୍ଷଣେକ ବିଶ୍ରାମରାଜା ତୁମ୍ଭେ କଲେ
ଏ ତୋର ସୈନ୍ୟକୁ ଆହାର ଦେବି ମୁହିଁ ଭଲେ ।

ତୁମ୍ଭେ ମଣୋହି କର ହେଁ ଆମ୍ଭପୁରେ ଆସି
ଶୁଣିଣ ନୃପତି ଯେ ହୋଇଲେ ଗାଧି ଋଷି ।
ରାଜା ପୁରେ ଯାଇଣ ଯେ ବଶିଷ୍ଠ ମହାମୁନି
ଆପଣା ମନ୍ଦିରେ ପାକ ଯାଇ କଲେ ପୁଣି ।
ସୁରଭିକି ଡକାଇ ବୋଇଲେ ବଶିଷ୍ଠ
ତୁମ୍ଭେ ଏବେ ମାତ ଗୋ ସମ୍ଭାଳ ବିଶ୍ୱାମିତ୍ର ।
ଶୁଣିଣ ସୁରଭି ଯେ ଭିଆଏ ସର୍ବ ବିଧି
ଯେଣୁ ସେ କହିଲେ ବଶିଷ୍ଠ ତପୋନିଧି ।
ରାଜାଙ୍କର ନବର ଯେ ପାତ୍ରଙ୍କ ଉଆସ
ପରଜାମାନଙ୍କୁ ଯେ ଅନୁରୂପେ ବାସ ।
ଅନ୍ନ ବ୍ୟଞ୍ଜନ ସଙ୍ଗତେ ବିବିଧ ଉପହାର
ରାଜାର ସୈନ୍ୟକୁ ପୁଣି ଦେଲେକ ସମ୍ଭାର ।
ଗନ୍ଧ ଚନ୍ଦନ ଯେ କୁଙ୍କୁମ ବସ୍ତ୍ରମାନ
ଯେ ଯାହାର ଅନୁରୂପେ ଦେଲେକ ଭୋଜନ ।
ମଣୋହି କରିଣ ରାଜା ହୋଇଲେ ତୃପତ
ବଶିଷ୍ଠକୁ ପୁଚ୍ଛା ସେ ଯେ କଲେ ରାଜନ ତ ।
ବୋଇଲେ ମହାମୁନି ଯୋଗଧ୍ୟାନେ ଥାଅ
ମୋର ସୈନ୍ୟ ପାଇଁ ସର୍ବ ଯୋଗାଡ଼ି ଭିଆଅ ।
ମୁନି ବୋଇଲେ ମୋର ସୁରଭି ଭିଆଇଲା
ଏବେ ତୁମ୍ଭମାନଙ୍କୁ ଯୋଗଡ଼ ଅଣ୍ଟିଲା ।
ଶୁଣିଣ ଆଶ୍ଚର୍ଯ୍ୟ ଯେ ହୋଇଲେ ଗାଧିସୁତ
ମନରେ ସେକଥା ବିଚାରେ ରାଜନ ତ ।
ବୋଇଲା ଏଥର ମୁଁ ଯେ କରିବି କଟକାଇ
ଏକଥାକୁ ମୋତେ ଯେ ଯୋଗାଇବ ସେହି ।
ଏମନ୍ତ ବିଚାରି ରାଜା ବଶିଷ୍ଠଙ୍କୁ କହି
ସୁରଭିଙ୍କି ଆଣ ଦେଖିବି ଯେ ମୁହିଁ ।
ଶୁଣିକରି ବଶିଷ୍ଠ ସୁରଭି ଅଣାଇଲେ
ଦେଖିଣ ବିଶ୍ୱାମିତ୍ର ପରମ ତୋଷ ହେଲେ ।
ସୁରଭି ଗୋଟିକି ଯେ ମୁନି ମୋତେ ଦିଅ
ଯଦି ନ ହେବ ହେତୁଷି ମୋର ସ୍ନେହ ।
ମୁନି ବୋଇଲେ ଏ ଯେ ତୁମ୍ଭଙ୍କୁ ନ ଯୋଗାଇ
ଅନେକ ଯାଗ କଲେ ଗୋ ସୁରଭି ମିଳଇ ।
ମୁନିଙ୍କଠାରୁ ଏମନ୍ତ ଶୁଣଇ ନୃପମଣି
କୋପରେ ବୋଲଇ ମୁହିଁ ନେବି ଏହିକ୍ଷଣି ।
ଏଡ଼େ ବୋଲି ସୁରଭିଙ୍କି ଘେନିଲେ ଅଡ଼ାଇ
ଦେଖିଣ ଗୋମାତା ଯେ ମୁନିଙ୍କି କହଇ ।

ବୋଇଲେ ମୁନି କିମ୍ପା ନିର୍ଦ୍ଦୟା କଲା ମୋତେ
ମୋର ତ ଦୋଷ ଯେ କଲା ନାହିଁ ତୋତେ ।
ବଶିଷ୍ଠ ବୋଇଲେ ବଳେ ରାଜା ଘେନିଏ ତୋତେ
କିମ୍ପାଇ ସୁରଭି ଗୋ ମନ୍ଦ ବୋଲୁ ମୋତେ ।
ଖାଇବାରୁ ଦେଲାରୁ ଉପକାର କରେ
ରାଜା ହୋଇ ଧର୍ମ ଗୋ ନ ବିଚାରେ ବେଳେ
ଏ ରାଜାମାନଙ୍କୁ ଗୋ ଆମ୍ଭର ଆସତ
ଏ ରାଜାଙ୍କ ବଳରେ ଯାଗ ଯେ ଆମ୍ଭରତ ।
ରାଜାଙ୍କୁ ସୁକଲ୍ୟାଣ କରୁ ଗୋ ଆମ୍ଭେ ନିତି
ଅଗ୍ନିର ମୁଖେ ଆମ୍ଭେ ହେଉ ଗୋ ଆହୁତି ।
ଦେବତାମାନେ ଆମ୍ଭରେ ହୁଅନ୍ତି ପରସନ୍ନ
ଦିଗପାଳମାନେ ଉପୁଜାନ୍ତି ଶସ୍ୟମାନ ।
ଶସ୍ୟ ଉପୁଜିଲେ ପ୍ରଜାଯେ ହୁଅନ୍ତି ସୁଖୀ
ପ୍ରଜାର ସୁଖେ ପ୍ରଜାଏ ପରଶଂସା ପାଆନ୍ତି ।
ତେଣୁ ଏହି ନୃପତି ବଳବାନ କାଏ
ପ୍ରଜା ବଳବନ୍ତ ହେଲେ ଶତ୍ରୁ ଯେ ପଳାଏ ।
ଅଇରି ପଳାବନ୍ତେ କଟକ ହୁଏ ରକ୍ଷା
ଯହିଁ ତହିଁ ରହିଲେ ନିର୍ଭର ମୁନି ଏକା ।
ତପିଗଣମାନଙ୍କର ରାଜାମାନେ ବଳ
ରାଜାମାନଙ୍କର ପ୍ରଭୁତ ତପି କାଳ ।
ପ୍ରଭୁ ଧନରେ ଆଶା କରେ ଯେବଣ ପ୍ରାଣୀ
ନିଶ୍ଚୟ ନାଶ ଯାଏ ଶୁଣ ଗୋ ମାତା ପୁଣି ।
ନୃପତିର ବଳେ ଯେ ନେଉଣ ଅଛି ଶୁଣି
ସୁରଭି ଶୁଣିଲା ଯେ ବଶିଷ୍ଠଙ୍କ ବାଣୀ ।
ଖରତର ନିଶ୍ୱାସ ପ୍ରଜ୍ୱଳିତ ଜାଣି
ପ୍ରଚଣ୍ଡ ମେଘ ଜାଣି ରଡି ଦିଏ ପୁଣି ।
ହମ୍ବା ରବ ଦେଇଣ ଡାକେ ମାତା ବୋଲେ
ତବ ସୈନ୍ୟ ଆସିଣ ମିଳିଲେ ତହିଁରେ ।
ଶୃଙ୍ଗରୁ ଗନ୍ଧର୍ବ ହୋଇଲେ ପୁଣ ଜାତ
ଚାରି ଖୁରୁରା ବାହାର ହୋଇଲେ ଦଇତ ।
ହାଣ ହାଣ ମାର ମାର ଶୁଭିଲା ଶବଦ
ଶୁଣିଣ ବିଶ୍ୱାମିତ୍ର ହୋଇଲେ ତବଦ ।
ବାଜିଲା ରଣ ଗୋଳ ଦୁଇବଳ ଥାଟ
ରାଜାର ସୈନ୍ୟ ତେଣେ ମଲେ ଯେ ବହୁତ ।
ବିଶ୍ୱାମିତ୍ରଙ୍କର ଶତେ ପୁତ୍ର ଥିଲେ
ଅନେଶ୍ୱତ ପୁତ୍ର ଯେ ଯୁଦ୍ଧରେ ନାଶଗଲେ ।

ପଞ୍ଚଶତ ସଇନି ଯେ ଏକଇ ପୁତ୍ର ଘେନି
ପଳାଇଲେ ବିଶ୍ୱାମିତ୍ର ସଙ୍କୁଚିତ ଭାବେ ପୁଣି ।
ସଙ୍ଗରେ ଶାତ ଯେ ଜଗଇଁ ଗଲେ ପୁଣ
ନିଜ ପୁରରେ ରାଜା ପ୍ରବେଶ ହେଲେ ଜାଣ ।
ଅପମାନ ପାଇଣ ରାଜା ପୁତ୍ରକୁ ରାଜା କଲା
ଘରଣୀକି ଘେନିଣ ସଙ୍ଗରେ ଚଳିଗଲା ।
ହିମାଞ୍ଚଳରେ ବସିଣ ବହୁତ ତପ କଲା
ସେ ସ୍ଥାନରେ ଚାରିପୁତ୍ର ଯେ ଉପୁଜିଲା ।
ହରି ଚନ୍ଦନ ମଧୁ ଚନ୍ଦନ ବରଧୁ ଚନ୍ଦନ
ବଜ୍ର ଚନ୍ଦନ ଚାରି ତପ ସ୍ଥାନରେ ଜନ୍ମ ।
ପୁଣି ରାଜାର ଯେ ଆବର ଚାରିପୁତ୍ର
ଅଷ୍ଟପୁତ୍ର ସେଠାରେ ହୋଇଲେ ସମ୍ଭୂତ ।
ଅଷ୍ଟବସୁ ସେମାନେ ଯେ ଅଷ୍ଟପୁତ୍ର ଜାଣ ।
ଅନେକ ବଳମାନ କ୍ରମରେ ଅଟେ ପୁଣ ।
ଅନେକ ତପ ସେଠାରେ ଗାଧିସୁତ କଲା ।
ପ୍ରସନ୍ନ ହୋଇଲେ ତାକୁ ଈଶ୍ୱର ବର ଦେଲା ।
ଈଶ୍ୱର ପ୍ରସନ୍ନରେ ନାନାଶସ୍ତ୍ର ମିଳି
ବର ପାଇ କୋପେଣ ବିଶ୍ୱାମିତ୍ର ବଳି ।
ବଶିଷ୍ଠଙ୍କ ଆଶ୍ରମରେ ଅଗ୍ନି ଲାଗିବା ପୁଣ
ତ୍ରିଦଣ୍ଡି ଘେନି ବଶିଷ୍ଠ ମୁନି ଗଲେ ଜାଣ ।
ଦେଖିଣ କଉଶିକ ଶସ୍ତ୍ର ଯେ ବେଗେ ପେଷି ।
ବ୍ରହ୍ମଦଳ ବୁଲାଇ ନିବାର କଲେ ଋଷି ।
ଦେବ ଶସ୍ତ୍ରମାନ ଯେ ବିଅର୍ଥକୁ ଗଲା
ମୁନିର ଲୋମ ମୂଳରୁ ଅଗ୍ନିଜାତ ହେଲା ।
ସ୍ୱର୍ଗରେ ଥାଇଣ ଯେ ଡାକିଲେ ଦେବଗଣ
ତୋର ଭଲକଥା ନୁହଇ ବିଶ୍ୱାମିତ୍ର ଜାଣ ।
ରାଜନ ଏହୁକଥା ଯେ ହୁଅ ଅବିଚାର
ବଶିଷ୍ଠଙ୍କ କୋପରେ ନାଶ ଯିବ ଯେ ଆଜଶିର ।
ତୁମ୍ଭେ ନୃପବର ହୋ ନକର ସମର ।
ଆମ୍ଭର ବୋଲେ ତୁଯେ ବେଳେକ ଅପସର ।
ଶୁଣିକରି ଗାଧିସୁତ ହୋଇଲେ ମଉନ
ତପିଙ୍କି ପ୍ରଶଂସା ଯେ କରନ୍ତି ମନେ ମନ ।
ବଶିଷ୍ଠ ଶାନ୍ତି ହେଲେ ଯେ ସ୍ୱର୍ଗର ବାଣୀପୁଣି
ତପ ଆରମ୍ଭିଲେ ବିଶ୍ୱାମିତ୍ର ଯାଇ ପୁଣି ।
ପୁତ୍ର ଭାରିଯାକୁ ଅଣାଇ ଗାଧିସୁତ
ଅଯୋଧ୍ୟା ରାଜ୍ୟରେ ଯେ ରଖାଇ ତୁରିତ ।

ଅଯୋଧ୍ୟା ରାଜନକୁ ସମର୍ପି ଦେଇ ପୁଣ
ତପ ସ୍ଥାନେ ମିଳି ତପ କଲେକ ଯାଇଣ ।
ଶ୍ରୀରାମ ପଚାରନ୍ତି ଶୁଣ ହେ ସତ୍ୟାନନ୍ଦ
ସେ ଦିନେ ଅଯୋଧ୍ୟାର ଅଟକେ ନରେନ୍ଦ୍ର ।
ସତ୍ୟାନନ୍ଦ ବୋଇଲେ ସେ କାଳେ ଯେଉଁ ରାଜା
ତାର ନାମ ବାସୁଚି ଦେବ ପାଇଲେ ଜନପ୍ରଜା ।
ସେକାଳେ ବିଶ୍ୱାମିତ୍ରର ଧଇର୍ଯ୍ୟ ପୁଣି ଦେଖି
ଅଯୋଧ୍ୟା ରାଜନ ଯେ ତାଠାରେ ହେଲେ ଖୁସି ।
ଯେଣୁ ସେ ବାସୁଚି ରାଜା ତା କୁଟୁମ୍ବ ସମ୍ଭାଳି
ତେଣୁଟି ବିଶ୍ୱାମିତ୍ର ନିଷ୍ଠେତେ ତପକରି
ବାସୁଚି ରାଜାକାଳେ ସ୍ୱର୍ଗପୁରେ ଗଲେ ।
କେଶରି ପାଳ ନନ୍ଦନ ସେଠାରୁ ରାଜା ହେଲେ
କାଳେ ସେ ରାଜାଙ୍କୁ ସ୍ୱର୍ଗ ଯେ ପରାପତ
ତାଙ୍କ ନନ୍ଦନ ସତ୍ୟବ୍ରତ ରାଜନ ସେତ ।
ଦିନେକ ସେ ସତ୍ୟବ୍ରତ ନଗ୍ର ଯେ ବୁଲିଯାଇ
ଦେଖିଲେ ବ୍ରାହ୍ମଣର ଝିଅ ଅବିବାହି ।
ରୂପ ଗୁଣେ ସୁନ୍ଦର ଅଟଇ ନବଯୁବା
କନ୍ୟା ସଦୃଶେ ବର ନମିଳିବାର ନୋହିଲା ବିଭା ।
ସେ ଦ୍ୱାରେଣ ଉଭା ହୋଇଣ ଥିଲା ସୁନ୍ଦରୀ
ସତ୍ୟବ୍ରତ ରାଜା ଦେଖି ମଦନରେ ଘାରି ।
ତେଣେ ବ୍ରାହ୍ମଣ ଦୁହିତା ରାଜାଙ୍କୁ ଦେଖିଣ
ପଞ୍ଚଶର ବାଣରେ ହୋଇଲା ହତଜ୍ଞାନ ।
ତେଣୁ ସେ ବେନିଜନ ମଦନେ ଉନ୍ମତ୍ତ
ସେ କନ୍ୟାକୁ ଘେନିଣ ଚଳିଲେ ରାଜନତ ।
ନିଜପୁରେ ନେଇରତି ଶୃଙ୍ଗରେ ଭୋଳ ହେଲା
ବ୍ରାହ୍ମଣ ଯାଇ ରାଜ ଦ୍ୱାରେ ଡାକ ଦେଲା ।
ଗୁହାରି କରନ୍ତେ ତାହା ଜାଣିଲେ ସକଳ
ସାମନ୍ତ ପାତ୍ର ମନ୍ତ୍ରୀ ଆବର ଯେତେ ନର ।
ଅଧର୍ମୀ ରାଜା ବୋଲି ବାହାର କରିଦେଲେ
ସମସ୍ତେ ମେଳ ହୋଇ ତା ପୁତ୍ରକୁ ରାଜା କଲେ ।
ସତ୍ୟବ୍ରତ ରାଜନ ଘରୁ ବାହାର ହୋଇଗଲା
ବ୍ରାହ୍ମଣ ଦୁହିତା ଘେନି ବନସ୍ତେ ରହିଲା ।
ମୃଗମାରି ମାଂସ ଯେ କରଇ ଆହାର ।
ବିଶ୍ୱାମିତ୍ର କୁଟୁମ୍ବ ଯେ ରାଜ୍ୟରେ ଥିଲେ ପୁଣ
ସତ୍ୟବ୍ରତ ଯିବାରୁ ନ ପଚାରେ ରାଜନ ।

ବଶିଷ୍ଠ ସଙ୍ଗେ ବିଶ୍ୱାମିତ୍ର ହେବାରୁ ବିମନ
ବଶିଷ୍ଠ ନ କହିଲେ ରାଜାକୁ ଯେ ପୁଣ ।
ତେଣୁ ସେ ବିଶ୍ୱାମିତ୍ରଙ୍କ କୁଟୁମ୍ବ ଅରକ୍ଷ
ଖାଇବାକୁ ନ ପାଇ ସେ ହୋଇଲେ ବିମୁଖ ।
ଏଥୁ ଅନନ୍ତରେ ତୁମ୍ଭେ ଶ୍ରୀରାମଚନ୍ଦ୍ର ଶୁଣ
କାନ୍ତାର କାଳ ସେ ଯେ ପଡ଼ିଲା ଆସିଣ ।
ବିଶ୍ୱାମିତ୍ର କୁଟୁମ୍ବ ମାଗି ଖାଉଥିଲେ
ଭିକ ମାଗିବାରୁ ତାଟକା ପୁଣ ହେଲେ ।
ତେଣୁ ସେ ଅଷ୍ଟ ପୁତ୍ର ଘେନିଣ ନାରୀ ଭାଳି
କି ବୁଦ୍ଧି କରିବି ବୋଲି ମନରେ ବିଚାରି ।
କେ ମୋତେ ପୋଷିବ ଦୁର୍ଭିକ୍ଷ କାଳରେ
ବଶିଷ୍ଠ ନ କହିଲେ ପାର୍ଶ୍ୱରେ ରାଜା ମୋରେ ।
ବାବୁ ବିଧାତାରେ ରାଜାର ମୃତ ରାଣୀ
ଏହି କଷ୍ଟ ବିଧାତା ଦେଲୁରେ ମୋତେ ଆଣି ।
ଅନ୍ନ ବସ୍ତ୍ର ନ ମିଳିଲା ବଞ୍ଚିବୁ କେମନ୍ତେ
ଭୋ ଧର୍ମ ପ୍ରତିକାର କର ଏବେ ମୋତେ ।
ଏମନ୍ତ ବିଚାର ଯେ କରଇ ପୁଣ ସତୀ
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ହେ ରଘୁପତି ।
ଋଷିର ନାରୀର ବସିଣ ମନରେ ବିଚାରଇ
ଏକଇ ପୁତ୍ର ହାଟରେ ବିକିବଇଁ ମୁହିଁ ।
ଏମନ୍ତ ବିଚାର ଯେ ଦୃଢ଼ କଲା ମନ
ଆଠ ପୁତ୍ରକୁ ବସାଇ ପଚାରେ ମାତା ପୁଣ ।
କେମନ୍ତ ପ୍ରକାରେ ବାବୁରେ ପୋଷିବି ତୁମ୍ଭତ
ଅହନ୍ତା କଲା ତୁମ୍ଭ ବଶିଷ୍ଠ ତପୋବନ୍ତ ।
ରାଜାକୁ ପିତା ତୁମ୍ଭର ସମର୍ପିଦେଇ ଗଲା
ସେ ରାଜାକାଳେ ପୁଣି ପରଦାରା କଲା ।
ତେଣୁ ସେ ରାଜନ ଯେତେ ଢିଲା ନିଜ ରାଜ୍ୟ
ପୁତ୍ର ତା ରାଜା ହେବାରୁ ନକଲା ଆମ୍ଭକାର୍ଯ୍ୟ ।
ଏତେ ବୋଲି ମାତା ପୁତ୍ରେ କରନ୍ତି ରୋଦନ
ଗାଲଭା ବୋଲେ ମୋତେ ବିକ୍ରିରି କର ପୁଣ ।
ଏମନ୍ତ କହି କୁମର ହୋଇଲା ଆଗୁସାର
ପୁରରେ ଜନନୀ ଯେ ଗେପାଏ ତାହାର ।
ନୟନୁ ଅଶ୍ରୁଜଳ ମାତାର ଯାଏ ବହି
ଆଉ ସାତ ପୁଏ ଯେ ପଛରେ ଗୋଡ଼ାଇ ।
ଗାଲଭକୁ ଆଗ କରି ସମସ୍ତ ପଛେ ଗଲେ
ଅଯୋଧ୍ୟା ନଗ୍ର ହାଟରେ ପ୍ରବେଶ ଯାଇ ହେଲେ ।

ହାଟରେ ବୁଲି ଡାକିଲେ ବିଶ୍ୱାମିତ୍ର ରାଣୀ
ପୁତ୍ରକୁ ବିକିବ କେ ନେବ ବୋଲି ଭଣି ।
ରାଣୀର ଡାକରେ ଯେ ନ ଲୋଡିଲେ କେହି
ହାଟ ବେଳ ଯିବାରୁ ହାଟ ଭାଙ୍ଗି ଯାଇ ।
ହାଟ ବେଳ ଯିବାର ଦେଖିଉଠିଲେ ସେଠାରୁ
ନଗ୍ର କନ୍ଦି ବିକନ୍ଦି ବଜାଇ ଫେରିବାରୁ ।
କେହି ନ ବୋଇଲେ ନେବାର ବଚନ
ନିରାଶ ହୋଇଣ ଫେରିଲେ ନବଜଣ ।
ଆପଣା ନବର ମନ୍ଦିର ଦାଣ୍ଡ ଦ୍ୱାରେ ବସି
ନବଜଣ ଯାକ ବିକଳେ କାନ୍ଦିଲେ ଆସି
ସତ୍ୟବ୍ରତ ରାଜା ଯେ ସେ ପଥେ ଯାଉଥିଲା
ପଚାରିଲେ ତୁମ୍ଭେ କିଏ ପଥରେ ବସି କାନ୍ଦ
କେଉଁ କଥାରେ ତୁମ୍ଭେ ଶୋକକୁ ଆରମ୍ଭ ।
ବିଶ୍ୱାମିତ୍ର ରାଣୀ କହେ ଶୁଣ ହେ ପଥୁକୀ
ବିଶ୍ୱାମିତ୍ରଙ୍କ ଘରଣୀ ପୁତ୍ର ଆମ୍ଭେ ନିକି ।
ତପକରି ଗଲେ ରାଜା ଆମ୍ଭଙ୍କୁ ଏଥେ ଛାଡ଼ି
ସତ୍ୟବ୍ରତ ରାଜା ଯେ ଆମ୍ଭଙ୍କୁ ଥିଲେ ପାଳି ।
କାଳେ ସେ ରାଜନ ଯେ ଅନ୍ତର ଏଥୁ ହେଲା
ତା କୁମର ରାଜା ହୋଇ ଆମ୍ଭଙ୍କୁ ପାଶୋରିଲା ।
ବିଶ୍ୱାମିତ୍ର ରାଜା ସଙ୍ଗେ ବଶିଷ୍ଟ ବିମନା
ତେଣୁ ସେ ବଶିଷ୍ଟ ଋଷି କହିଲେ କିନା ।
ପାଞ୍ଚ ସାତ ଦିନ ବୃଥାରେ ପାଇ କଷ୍ଟ
ପୁତ୍ରଙ୍କ ନିମନ୍ତେ ମୁଁ ବୁଲିଲି ହାଟ ବାଟ ।
କେହି ସମର୍ଥ ନ ହୋଇଲେ ମୋ ପୁତ୍ର ନେଇ
ନିରାଶ ହୋଇ ଏ ପଥେ କାନ୍ଦେ ସର୍ବ; ରହି ।
ଶୁଣିଣ ସତ୍ୟବ୍ରତ ବୋଇଲେ ଯେ ବାଣି
ବଶିଷ୍ଟ ରାଜନ ମୋର ବିଶ୍ୱାସ ପୁଣି ।
ନିଜ ଘରୁ ତୁମ୍ଭକୁ ଆଣିଦେବି ଧନ
ଏତେ ବୋଲି ସତ୍ୟବ୍ରତ ଗଲାଗଜ ବହନ ।
ବେନି ସହସ୍ର ସୁନିଆଁ ସେ ଆଣି କରିଦେଲା
ଏଗାରବର୍ଷ ସାତମାସେ ସେ ଧନ ସରିଲା ।
ଧନ ସରିବାରୁ ଯେ ବିଶ୍ୱାମିତ୍ର ରାଣୀ
ସତ୍ୟବ୍ରତକୁ ପ୍ରାର୍ଥନା ଯେ କଲେ ଯାଇ ପୁଣି
ସେ ରାଜନ ବୋଇଲେ ମୋ ଘରେ ନାହିଁ ଧନ
ମୁହିଁତ ତୁମ୍ଭରି ପ୍ରାୟ ବନସ୍ତେ ନିଏ ଦିନ ।

ଦୁର୍ଭିକ୍ଷ କାଳ ଆସି ବାର ବରଷ ହେଲା
ଏଡ଼େ କାନ୍ତର କାଳେ ତୁମ୍ଭ ସ୍ୱାମୀ ପାଶକୁ ନୋହିଲା ।
ମୁହିଁ ମୃଗ ମାଂସ ଯେ କରଇ ଆହାର
ମାଂସ ରଖି ପେଷି ହେଲି ଆସି ବନସ୍ତର ।
ଶୁଣି ମାତା ପୁତ୍ରମାନେ ତାଙ୍କ ସଙ୍ଗେ କଲେ
ଅରଣ୍ୟ ଭିତରେ ପତ୍ର କୁଟୀର କରିଲେ ।
ନିର୍ଝର ପାଣି ଫଳ ଭୁଞ୍ଜିଲେ ସେଥିରେ
ମୃଗ ମାଂସ ପ୍ରତିଦିନ ଦିଏ ସତ୍ୟବ୍ରତ ବୀରେ ।
ଏଥୁ ଅନନ୍ତରେ ତୁମ୍ଭେ ଶ୍ରୀରାମ ଚନ୍ଦ୍ର ଶୁଣ
ବାରବର୍ଷ ପୁରିବାକୁ ଅଛି ତିନି ଦିନ ।
ସତ୍ୟବ୍ରତକୁ ଏକଦିନେ ନ ମିଳିଲା ମୃଗ
ସନ୍ଧ୍ୟାବେଳେ ପର୍ଯ୍ୟନ୍ତ ବିଳିବିଳି ଶୀଘ୍ର ।
ମୃଗ ନପାଇଁ ମନରେ ବିରସ ସେ ହେଲା
ବଶିଷ୍ଠଙ୍କ ସୁରଭିଙ୍କି କି ଯାଇଣ ନାଶ କଲା ।
ଯୋଗବଳରେ ତାହା ଜାଣିଲେ ମହାଋଷି
ସତ୍ୟବ୍ରତ କତିରେ ମିଳିଲେ ଯାଇ ସେଠି ।
ବୋଇଲେ ଚଣ୍ଡାଳକେ ହିନ ବୁଧି କଲୁ
ମୋହର ସୁରଭିକି ମାରିଣ ଖାଇଲୁ ।
ଲଭିଲୁ ଗୋହତ୍ୟା ଯେ ପାର ତୋତେ ନାହିଁ
ଆବର ସଦ୍‌ଗତି ପାରିବୁ ତୁରେ କାହିଁ ।
ତ୍ରିଶୂଦ୍ର ଚଣ୍ଡାଳରେ ନାମ ତୋର ହେଲା
ଯାବତ କାଳକୁ ତୋର କଥା ଯେ ରହିଲା ।
ଏମନ୍ତ ବୋଲିଣ ଗଲେକ ବ୍ରହ୍ମଋଷି
ସତ୍ୟବ୍ରତ ରାଜା ଯେ ମନରେ ଭାଳେ ବସି ।
ମନରେ ବିଚାରଇ ହୋଇଲି ଚଣ୍ଡାଳ
ଏ ଦେହ ମୋହର ଯେ ରହିବ କେତେ କାଳ ।
ଏମନ୍ତ ବିଚାରନ୍ତେ ଦୁର୍ଭିକ୍ଷ ସରିଲା
ଇନ୍ଦ୍ର ପାଳିବାରୁ ଶୀତଳ ରାଜ୍ୟ ହେଲା
ମାଗିଲା ଲୋକଙ୍କୁ ଭିକ୍ଷା ମିଳିଲା ବହୁତ ପୁଣ ।
ଦେଖିଣ ବିଶ୍ୱାମିତ୍ର ଘରଣୀ ପୁତ୍ରେ ଜାଣ ।
ନଗ୍ରରୁ ଭିକ୍ଷାକରି ପ୍ରତି ପୋଷଣ ହେଲେ
ପୁଣ ଆନନ୍ଦରେ ବନସ୍ତେ କାଟିଲେ ।
ଦେଖିଣ ସତ୍ୟବ୍ରତ ଘରଣୀ ସଙ୍ଗେ ଘେନି
ସିନ୍ଧୁର କୁଳେ ବିଶ୍ୱାମିତ୍ରଙ୍କ ଭେଟକୁ ପୁଣି ।
ତପରେ କୌଶିକ ହୋଇଲେ ପୁଣ ତପି
ସତ୍ୟବ୍ରତକୁ ଦେଖିଣ ପଚାରେ ମହା ଋଷି ।

କିରାତ ସ୍ୱରୂପ ତ ଦିଶୁଛ ନୃପବର
ତୋତେ ଦେଖି ଆତ୍ମା ହେଉଛି ବିକଳ ।
ସତ୍ୟବ୍ରତ ବୋଇଲେ ମୁଁ ହୋଇଲି ବଡଦୁଃଖୀ
ତୁମ୍ଭର ସକାଶେ ମୁଁ ହୋଇଲି ନିରିମାଖୀ ।
ତୁମ୍ଭେ ଯେ କୁଟୁମ୍ବ ଶୋଇଲ ଅଯୋଧ୍ୟାରେ
ଦୁର୍ଭିକ୍ଷ କାଳରେ ଅନେକ ଦୁଃଖ ମିଳେ ।
ମୋହର ରାଜ୍ୟ ପଣ ମୋହର ଦୋଷରୁ ଗଲା
ଯେଣୁକରି ପରଦାରା ପ୍ରବେଶ ମୋତେ ହେଲା ।
ମୋ ପୁତ୍ର ରାଜା ହେବାରୁ ତୋ କୁଟୁମ୍ବ ପାଳି
ବଶିଷ୍ଠ ଋଷି ସଙ୍ଗରେ ଆଗରେ କଲୁ କଳି ।
ସେ ଅବିଗୁଣେ ବଶିଷ୍ଠ ରାଜନେ ନ କହିଲେ
ତେଣୁ ତୋ ପୁତ୍ର ଘରଣୀ କଷ୍ଟରେ ଦିନ ଦେଲେ ।
ତାଙ୍କର କଷ୍ଟ ଦେଖି ମୁହିଁ ଯେ ଧନ ଦେଲି
ଧନ ସରିବାରୁ ମୃଗ ମାଂସ ସମର୍ପିଲି ।
ଏକଦିନେ ମୃଗ ନ ମିଳିଲା ମୋତେ
ବଶିଷ୍ଠ ସୁରଭି ମାରି ଦେଲି ତା କୁଟୁମ୍ବତେ ।
ଶୁଣିକରି ବଶିଷ୍ଠ ଯେ ମୋତେ ଶାପ ଦେଲେ
ତ୍ରିଶୂଦ୍ର ଚଣ୍ଡାଳ ହୋଇ ଯାଆନ୍ତୁ ବୋଇଲେ ।
ତେଣୁ ସେ ରାଜ୍ୟ ତେଜି ହେଲି ବ୍ରହ୍ମଚାରୀ
ତୁମ୍ଭଠାରେ ବଳ ଥିଲେ ଏ ଦୋଷରୁ କରପାରି ।
ଶୁଣିଣ ବୋଇଲେ ବିଶ୍ୱାମିତ୍ର ମହାଋଷି
ମୋହର ମହିମାତୁରେ ଦେଖିବୁ ସୂର୍ଯ୍ୟବଂଶୀ
ଯାଗ କରିଣ ତୋତେ ମୁଁ ସ୍ୱର୍ଗରେ ବସାଇବି
ଯାବତ କାଳକୁ ମୁଁ କଥା ରୁହାଇବି ।
ଏତେ ବୋଲି ମୁନି ଯେ ବେଗେ ଚଳିଗଲେ
ଯାଗର ବିଧି ବିଧାନ ବେଗେ ଆରମ୍ଭିଲେ ।
ସକଳ ତପଚାରିଙ୍କି ମୁନି ଯେ ସୁମରିଲେ ।
ପୁତ୍ର ଘରଣୀକି ଘେନିଣ ଚଳିଗଲେ ।
ବିଶ୍ୱାମିତ୍ର ସୁମରନ୍ତେ ଅଇଲେ ସର୍ବଋଷି
ସେ ଋଷିଙ୍କି ପାଛୋଟି ବଶିଷ୍ଠ ନେଲେ ଆସି ।
କେମନ୍ତେ ଚଣ୍ଡାଳର କରାଇବ ଯାଗ
ତୁମ୍ଭେମାନେ କେମନ୍ତେ ହେବ ହବିର୍ଭାଗ ।
ଏ କଥା ଶୁଣିଣ ବାହୁଡ଼େ ସର୍ବ ଋଷି
ଶିଷ୍ୟଗଣ ଆସି ବିଶ୍ୱାମିତ୍ରଙ୍କୁ କହିଲେଟି ।
ଶୁଣିକରି କ୍ରୋଧକଲେ ଗାଧିର ତନୟେ
ସତ୍ୟବ୍ରତ ଚଣ୍ଡାଳକୁ ବ୍ରହ୍ମ ଦୀକ୍ଷା ଦିଏ ।
ଆପଣେ ବସିଣ ଯେ ଶିଖିଲେ ଚାରିବେଦ
କଲେକ ଅଗ୍ନିନ୍ୟାସ ମୁଦ୍ରା ପୂଜା ଭେଦ ।
ତ୍ରିଶୂଦ୍ର ଚଣ୍ଡାଳକୁ ହୋମ କରିଣ ସୂତ୍ର ଦେଲେ
ଯାଗ ଶାଳାରେ ନେଇ ତାହାଙ୍କୁ ବସାଇଲେ ।
ବିଶ୍ୱାମିତ୍ର ମୁନି ସେଥି ହୋଇଲେ ଆଚାର୍ଯ୍ୟ
ବେଦଧ୍ୱନି କରି ଯାଗ କଲେକ ସମ୍ପାଦ ।
ଯବ ତିଳ ଘୃତ ଯେ ସମିଧ ଅଣାଇ
ଯାଗ ଆରମ୍ଭିଲେ ସିନ୍ଧୁ ତୀରେ ଯାଇ ।
ସତ୍ୟବ୍ରତ ଯେଉଁ ବ୍ରାହ୍ମଣୀ ନେଇ ଥିଲା
ଯାଗ ହେବା ନିମନ୍ତେ ମୁନି ବିଭା ହେଲା ।
ତେଣୁ ଅଗ୍ନିରେ ଆହୁତି ତ୍ରିମୁଦ୍ର ହେ ଦେଲା
ଦେବତାଗଣମାନେ ମିଳିଲେ ସ୍ୱର୍ଗେ ପରା ।
ସତ୍ୟାନନ୍ଦ କହିଲେ ଶ୍ରୀରାମଚନ୍ଦ୍ର ଶୁଣ
ଚଣ୍ଡାଳ ଯେ ଯାଗକୁ ନୁହଇ ଭାଜନ ।
ଏମନ୍ତ ବିଚାରି ସେ ଯେ ନଇଲେ ସୁରଦେବ
ବିଶ୍ୱାମିତ୍ର ମୁନି ଯେ କୋପେ ଗରୁଭାବ ।
ବୋଇଲେ ମୁଁ ଆଜ ଆନ ଦେବତା ଭିଆଇବି
ଏତେ କହି ଅଗ୍ନିରେ ସମର୍ପିଲେ ହବି ।
ସ୍ୱର୍ଗରେ ଦେବତାଏ ହୋଇଲେ ବିକଳ
ନିଶ୍ଚୟ ବିଶ୍ୱାମିତ୍ର କରିବେ ଦିଗପାଳ ।
ଏମନ୍ତ ବିଚାରି ଯେ ବ୍ରହ୍ମାଦି ଦେବଗଣ
ଅନ୍ତରୀକ୍ଷେ ଆସି ବିଜୟ ତତ୍କ୍ଷଣ ।
ଶୂନ୍ୟେ ଥାଇ ଡାକ ଯେ ଦେଲେ ସ୍ୱର୍ଗପୁର
ନ ଶୁଣଇ ମୁନି ଯେ କୋପେ ଗୁରୁତର ।
ବୋଇଲେ ତ୍ରିଶୂଦ୍ରରେ ଯାଅ ତୁ ସ୍ୱର୍ଗପୁର
ଯେହୁ ତୋତେ ଅଟକିବେ ହେବ ଭସ୍ମକାର ।
ମୁନିଙ୍କର ଆଜ୍ଞାରେ ଗମଇ ନୃପବର
ଦେବେ ଅନ୍ତରୀକ୍ଷେ ଥାଇ ଦେଖିଲେ ଅନ୍ୟାଚାର ।
ତ୍ରିଶୂଦ୍ରକୁ ଦେବତା ବାହୁଡ଼ ବୋଲି ବୋଲେ
ଭସ୍ମ ହୋଇଯିବୁ ତୁ ରେ ସ୍ୱର୍ଗକୁ ଅଇଲେ ।
ଦେବଙ୍କ ବୋଲେ ବାହୁଡ଼ି ଅଇଲା ନୃପତି ।
ରକ୍ଷାକର ବିଶ୍ୱାମିତ୍ର ପଡିଲା ଦୁର୍ଗତି ।
ଏମନ୍ତ ବୋଲି ପୁଣି ଡାକିଲା ସତ୍ୟବ୍ରତ
କ୍ରୋଧରେ ପ୍ରଜ୍ୱଳିତ ସେ ଗାଧିରାଜା ସୁତ ।
ଇନ୍ଦ୍ରାଦି ଦେବତାଙ୍କୁ କରିବି ଆଜ ଆନ
ଏତେ ବୋଲି ହୋମ ଯେ କଲା ଘନ ଘନ ।

ବ୍ରହ୍ମା ବୋଇଲେ ତୁରେ ଶୁଣ ବିଶ୍ୱାମିତ୍ର
କିମ୍ପାଇ ଅବିଚାର କରରେ ରାଜପୁତ୍ର ।
ଚଣ୍ଡାଳ ଆସି ସ୍ୱର୍ଗରେ ବସିବ କେମନ୍ତେ
ଏକଥା ସିଦ୍ଧକର ହୋଇବ କଦାଚିତେ ।
ଦେବରଷି ବ୍ରହ୍ମରଷି ନୋହୁରେ ଯୁକତେ
ରାଜରଷି ହୋଇକରି ଗୁମାନ କରୁକେତେ ।
ଦେବଙ୍କ ସଙ୍ଗେ ଆସି ବସିବ କେମନ୍ତେ ସେହୁ
ଏକଥା ନବିଚାରି ମନରେ କ୍ରୋଧ ହେଉ ।
ନୁହତୁ କ୍ରୋଧମନ ଶାନ୍ତଭାବ ଧର
ରାଜରଷି ହୋଇ ତୋର ଏଡେ ଅବେଭାର ।
ତୋହର ଯେତେକ ପିତୃ ଅଛନ୍ତି ସ୍ୱର୍ଗରେ
ସମସ୍ତେ ବସିବେ ଆସି ଚଣ୍ଡାଳ ସଙ୍ଗରେ ।
ଏହା ଶୁଣି ବିଶ୍ୱାମିତ୍ର ବୋଇଲେ ହେ ବସ
ନିଷ୍ଟେ ସତ୍ୟକୁ ତାଙ୍କୁ ଦେବି ସ୍ୱର୍ଗବାସ ।
ବିଧାତା ବୋଇଲେ ଏ ଯେ ନୁହଇ ଉଚିତ
ବଶିଷ୍ଠ ବୋଇଲେ ଚଣ୍ଡାଳ ହୁଅ ସତ୍ୟବ୍ରତ ।
ସେ କେହ୍ନେ ଦେବଙ୍କ ସଙ୍ଗରେ ବସିବ
ଏ କଥାକି ମୁନି ଯେ ବିଚାରେ ଯୋଗାଇବ ।
ବିଶ୍ୱାମିତ୍ର ବୋଇଲେ ଶୁଣ ହେ ଶୂଳଧାରୀ
ତ୍ରିଶୂଦ୍ର ମୋହର ବହୁତ ହିତକାରୀ ।
ତାହାକୁ ଅବଶ୍ୟ ମୁଁ ସ୍ୱର୍ଗରେ ବସାଇବି
ଯାବତ କାଳକୁ ଯେ କଥା ରୁହାଇବି ।
ଶୁଣିଣ ବିଧାତାର ନସ୍ଟୁରେ ବୁଦ୍ଧି କିଛି
ବିଶ୍ୱାମିତ୍ର ଯେଣୁ କଟାଳ କରୁଅଛି ।
ତ୍ରିଶୂଦ୍ର ଚଣ୍ଡାଳ ଯେ ଅଧା ସ୍ୱର୍ଗରେ ଯାଇ
ବେଦବର ବୋଲେ ବିଶ୍ୱାମିତ୍ର ମୁନିଙ୍କି ଚାହିଁ ।
ଅନୁରୁପରେ ସ୍ଥାନ ଏହାକୁ ଆମ୍ଭେ ଦେବା
ଆମ୍ଭେ କହିବାରୁ ଶାନ୍ତ ହୋଇଣ ରହିବା ।
ଅନ୍ୟ ସ୍ଥାନରେ ନେଇ ଏହାକୁ ବସାଇବା
ଦେବତା ଋଷିଙ୍କର ବଚନ ପାଳିବା ।
ଶୁଣିଣ ବିଶ୍ୱାମିତ୍ର ସନ୍ତୋଷ ମନ ହୋଇ
ଅଧା ସ୍ୱର୍ଗରେ ତାହାକୁ ବସାଇଲେ ନେଇ ।
ସ୍ୱର୍ଗରେ ସାଧୁ ସାଧୁ ଶୁଭିଲା ପୁଣ ଧ୍ୱନି
ଧନ୍ୟରେ ବିଶ୍ୱାମିତ୍ର ଧନ୍ୟରେ ତପ ପୁଣି ।
ଗୋହତ୍ୟା କରିଣ ଯେ ବ୍ରହ୍ମସ୍ତିରୀ ହରି
ଆବର ବଚନ ଯେ ରାଜ୍ୟଇଁ ନପାଳି ।

ଏଇ ଯେ ତିନି କଥାକୁ ଯେବଣ ଲୋକକଲା
ବଶିଷ୍ଠ ଋଷି ଯାହାକୁ ଚଣ୍ଡାଳ ବୋଇଲା ।
ଦେବତାଏ ବାଛିଲେ ଯେ ମହାପାପୀ ବୋଲି
ତାହାକୁ ବଳେ ନେଇ ବସାଏ ସ୍ୱର୍ଗପୁରୀ ।
ବାବୁରେ ଗାଧିସୁତ ଧନ୍ୟରେ ତୋର ପୁଣ୍ୟ
ତୋହରେ କରିପୁଣ ହେଲା ଏଡ଼େ କର୍ମ ।
ବ୍ରାହ୍ମଣ ଦୁହିତା ସତ୍ୟବ୍ରତ ସଙ୍ଗେ ରହିଲା ।
ଏମନ୍ତ ସମୟରେ ଯେ ବିଶ୍ୱାମିତ୍ର ମୁନି
ଦେବେ ସ୍ୱର୍ଗେ ଯିବାରୁ ଆନନ୍ଦ ହେଲେ ପୁଣି ।
ଶୁଣହେ ଶ୍ରୀରାମ ତୁମ୍ଭେ ଏ ମୁନି ମହିମା
ଯାହାକୁ ପ୍ରଶଂସା ଯେ କରନ୍ତି ସୁରବ୍ରହ୍ମା ।
ବ୍ରହ୍ମାସ୍ତ୍ରି ହରିବା ଦୋଷରୁ ସେହୁ ତରି
ଅଜ୍ଞାନରେ ଭ୍ରମିଲେ ଏକଥା ଶୁଣିକରି ।
ଶ୍ରୀରାମ ବୋଇଲେ ସତ୍ୟାନନ୍ଦ ଶୁଣ ଏବେ
ବିଶ୍ୱାମିତ୍ରଙ୍କ ଭାରିଜା ରହିଲେ କେଉଁଠାବେ ।
ସତ୍ୟାନନ୍ଦ ବୋଇଲେ ଶୁଣ ହେ ରଘୁନାଥ
ପୁତ୍ର ଭାରିଯା ଘେନି ଋଷି ସେଠାରୁ ଚଳିଲେତ ।
ସିଦ୍ଧବନେ ମଢ଼ିଆ କରି ଯେ ରହିଲେ
ସେଠାରେ ଅଶ୍ୱମେଧ ଯାଗ ସେ ତହୁଁ କଲେ ।
ଶ୍ରୀରାମ ପଚାରନ୍ତି ଶୁଣ ହେ ସତ୍ୟାନନ୍ଦ
ସେଠାରୁ ବିଶ୍ୱାମିତ୍ର କଲେ କେଉଁ କାର୍ଯ୍ୟ ।
ସତ୍ୟାନନ୍ଦ ବୋଇଲେ ଶୁଣ ହେ ଦାଶରଥି
ଯହୁଁ ତ୍ରିଶୁଦ୍ର ଚଣ୍ଡାଳ ସ୍ୱର୍ଗକୁ ଗଲାଟି ।
ତେଣୁ ବିଶ୍ୱାମିତ୍ରକୁ ବଶିଷ୍ଠ କୋପହେଲା
ବୋଲେ ମୋର ଶାପକୁ ବାହୁଡ଼ାଇ ନେଲା ।
ଅଧର୍ମ କଲା ସେହୁ ଧର୍ମବନ୍ତ ହୋଇ
ଏପରି ପ୍ରାଣୀକି ଯେ କେମନ୍ତେ ଧର୍ମ ସହି ।
ଶତେ ପୁତ୍ର ମରାଏ ମାର ସୁରଭୀର ହସ୍ତେ
ତାର ଯୋଗୁଁ ସିନା ଯେ ମଲେଟି ସମସ୍ତେ ।
ସେହୁ ସେ ମୋର ରୂପେ ପୁତ୍ର ହତ୍ୟାପାଉ
ମୋହର ବଚନ ଗୋଟି କେବେଆନ ନୋହୁ ।
ଏତେବୋଲି ଋଷିଗଣଙ୍କୁ ଯେ ସଙ୍ଗେ ଘେନି
ଅଯୋଧାରେ ପ୍ରବେଶ ହୋଇଲେ ପୁଣି ।
ଦେଖିଣ ବଶିଷ୍ଠ ଯେ ବୋଲଇ ତାହାଙ୍କୁ
ରାଜରଷି ଅଇଲେ କିମ୍ପାଇ ଏ ସ୍ଥାନକୁ ।

ଆଦର ନକଲେ ତାଙ୍କୁ ନଦେଲେ ଆସନ
କ୍ରୋଧଭରେ ବିଶ୍ୱାମିତ୍ର ଫେରିଲେ ଯେପୁଣ ।
ସିଦ୍ଧବନରେ ଯାଇ ପୁଣି ଯେ ଯାଗ କଲେ
ଅନେକ ଋଷିଙ୍କି ଯେ ଘେନିଣ ସଙ୍ଗରେ ।
ଏଥୁ ଅନ୍ତେ ଶୁଣ ତୁମ୍ଭେ ଦଶରଥ ବଳା
ସତ୍ୟବ୍ରତ କୁମର ଯେ ସ୍ୱର୍ଗକୁ ପୁଣ ଗଲା ।
ତାଙ୍କର କୁମର ଯେ ହରିଚନ୍ଦନ ଜାଣ
ଅଯୋଧାରେ ରାଜନ ହୋଇଲେ ଯେ ପୁଣ ।
ଦାନେ ଖାଣ୍ଡେ ସାଚା ଯେ ହୋଇଲେ ସେହୁରାଜ
ରାଜୁସି ଯାଗ କରିବାକୁ ମନରେ ହେଲାହେଜ
ସକଳ ପଦାର୍ଥ ଯେ ଲୋଡ଼ିଣ ଥୋଇଲା
ଯବ, ତିଳ, ଘୃତ ସମ୍ପାଦନ ପୁଣ କଲା ।
ବିଚାରେ କାହାକୁ ଯେ ଆଚାର୍ଯ୍ୟ ମୁଁ କରିବି
ବିଶ୍ୱାମିତ୍ର ମୁନିଙ୍କି ମୁଁ ଯାଗରେ ବରିବି ।
ସେ ମୋର ପିତାକୁ ଯେ ସ୍ୱର୍ଗ ଗଢ଼ିଦେଲା ।
ତାହାକୁ ବରିବି ବୋଲି ନୃପତି ବିଚାରିଲା ।
ଦକ୍ଷିଣ ସିନ୍ଧୁ ତୀରକୁ ଗଲା ଖର କରି
ବିଶ୍ୱାମିତ୍ର ସନ୍ନିଧେ ମିଳିଲା ଦଣ୍ଡଧାରୀ ।
ପ୍ରଣାମ କରିଣ ବୋଲଇ ବ୍ରହ୍ମଋଷି
ମୁହିଁ ତୁମ୍ଭର ତହିଁକି ଯତନେ ଆସିଅଛି ।
ରାଜୁସି ଯାଗ ମୁନି କରିବଇଁ ମୁହିଁ
ତୁମ୍ଭେ ସେ ଯାଗରେ ଆଚାର୍ଯ୍ୟ ହୋଇବଇଁ ।
ଶୁଣିଣ ସନ୍ତୋଷ ଯେହୋଇଲେ ମହାଋଷି
ଅଯୋଧାକୁ ଗଲେ ହରି ଚନ୍ଦନ ସଙ୍ଗେ ଶିଷି ।
ହରିଚନ୍ଦନ ବରିଥିଲେ ସକଳ ନୃପବର
ପ୍ରବେଶ ହୋଇଲେ ଆସି ଅଯୋଧାର ପୁର ।
ନାନା ତୀର୍ଥରୁ ଯେ ଅଇଲେ ତୀର୍ଥବାସୀ
ଅଯୋଧା ସରଜୁ ତୀରେମିଳିଲେ ସର୍ବେଆସି ।
ମୁନିମାନେ ସର୍ବେ ଯେ ପ୍ରବେଶ ଆସି ହେଲେ
ଲକ୍ଷକେ ବ୍ରାହ୍ମଣ ଯେ ଆସିଣ ରୁଣ୍ଡ ହେଲେ ।
ହାଟୁଆ ବାଟୁଆ ଯେ ପଥୁକୀ ଜନେ ପୁଣ
ପାତ୍ର ମନ୍ତ୍ରୀର ସହିତେ ରାଜାର ଲୋକଗଣ ।
ସକଳ ଲୋକ ପୁରିଣ ପୁର ଯେ ମଣ୍ଡିଲେ
ଅନ୍ନ ବସ୍ତ୍ର ପାଣି ପଣା ସମାବର୍ଣ୍ଣା ଦେଲେ ।
ଯାଗ ଆରୋପଣ କରିଣ ବସିଲେ ସେହିତ
ମୁଷଳ ଧାରା ପ୍ରମାଣେ ଅଗ୍ନିରେ ଦେଲେ ଘୃତ ।
ଦେବତାଏ ଅଇଲେ ସେ ମୂର୍ତ୍ତିବନ୍ତ ହୋଇ
ଘୃତ ପାନ କଲେ ଯେ ପରମ ସୁଖ ପାଇ ।
ଦେବତାମାନେ ହବିଭୁଞ୍ଜି ସନ୍ତୋଷ ହୋଇଲେ
କଲ୍ୟାଣ କରିଣ ଯେ ସ୍ୱର୍ଗପୁର ଗଲେ ।
ପୂର୍ଣ୍ଣ ଆହୁତି ଯେ କରିଲେ ଯାଗସାରି
ଯେ ଯାହାର ଦେଶକୁ ଯେ ଗଲେ ଦଣ୍ଡାଧାରୀ ।
ମୁନିମାନେ ଯେ ଯାହା ଆଶ୍ରମେ ପ୍ରବେଶ
ହାଟୁଆ ବାଟୁଆ ବିପ୍ର ପଥୁକୀଗଲେ ଯାହାର ଦେଶ ।
ବ୍ରହ୍ମଣମାନେ ଧନ ଘେନିଗଲେ ଯେ ଯାହାର ପୁର
ହରିଚନ୍ଦନକୁ ବୋଇଲେ ଗାଧିରାଜାକୁମର ।
ଦେଲେ ଦକ୍ଷିଣା ମୋତେ ଯିବଇଁ ତପ କରି
ଶୁଣି କରି ସନ୍ତୋଷ ହେଲେ ଦଣ୍ଡାଧାରୀ ।
ଲକ୍ଷକେ ସୁନିଆଁ ଯେ ଆଣିଣ ବେଗେ ଦେଲା
କାର୍ପୁଣ୍ୟ ହୋଇଣ ସେ ବଚନ କହିଲା ।
ତେବେ ମୁନିର ମନ ନୋହିଲା ତୃପତି
ପୁଣି ରାଜା ଆଣି ଦେଲାକ ଶତେହସ୍ତୀ ।
ସୁବର୍ଣ୍ଣ ଶିଙ୍କୁଳି ଆବର ପାଟ ଡୋର
ନେତ ପାଟ ଚାମର ମଣ୍ଡିଣ ଅଳଙ୍କାର ।
ମୁନିଙ୍କ ମନ ତୃପତି ନୋହିଲା ସେଥିରେ
ସହସ୍ରେ ଅଶ୍ୱ ପୁଣି ଦେଲାକ ମୁନିବରେ ।
ରତ୍ନମୟ ବାଖର ସୁବର୍ଣ୍ଣ କଳିଆର
କଳା ଶ୍ୱେତ ଚାମର ମଣ୍ଡିତ ନିଶ୍ଚଳ ।
ଦେଖି କରି ବିଶ୍ୱାମିତ୍ର ଉପହାସ କଲେ
ଏହା ଦେଲେ ଦକ୍ଷିଣାକି ସୁଝିବୁ ବୋଇଲେ ।
ପୁଣି ନରସାଇଁ ଦେଲେ ଶତେକ ଯୁବତୀ
ଅଳଙ୍କାର ଭୁଷଣ କରି ଭଣିଲେ ତଡ଼ତି ।
ମୁନି ବୋଇଲେ ମୋର ଏଥିରେ ନାହିଁକିଛି
ତୁ ରାଜା କୃପଣ ଯେ ନ ପାରୁ ଧନ ମୁର୍ଚ୍ଛି ।
ରାଜ୍ୟ ଦେଲେ ତୋର ସୁଝି ନ ପାରିବୁ
ଏମାନ ଦେଇଣ ମୋତେ କି ଭଣ୍ଡିବୁ ।
ରାଜା ବୋଇଲେ ମୁନି ମାଗୁଅଛି ଯାହା
ଘେନ ମୁନିବର ଦେବଇଁ ମୁଁ ତାହା ।
ଏତେବୋଲି ମହାରାଜା ସମର୍ପିଣ ଦେଲେ
ତୁମ୍ଭର ରାଜ୍ୟଗୋଟି ବୋଲିଣ ବୋଇଲେ ।
ବିଶ୍ୱାମିତ୍ର ବୋଇଲେ ଏହା ନ ନେବି କିଛି
ମୋତେ ସନ୍ତୋଷ କଲେ ତୋରସ୍ୱର୍ଗ ଭୋଗଲେ ଛି।

ରାଜସୂୟ ଯାଗ କଲୁ ଅତି ଧର୍ମକରି
ଶତେ ଅଶ୍ୱମେଧ ଯଜ୍ଞ ତହିଁକି ନୁହେ ସରି ।
ସଂସାର ଯଶ ପାଇଲୁ ନୃପତି ହାଦେ ଏଣେ
ଯାଗରେ ଆଚାର୍ଯ୍ୟ ନୋହିଲେ କେହି ଜଣେ ।
ତୁହି ଯେ ମୋତେ ଭଣ୍ଡି ଆଣିଲୁ ମହୀପତି
ତ୍ରିଶୁନ୍ଦ୍ର ହେତୁରୁ ହୋଇଲି ତୋରେ ପ୍ରୀତି ।
କେତେ ପାପଭରା ବହିଲି ଏ ଶିରେ
ଦକ୍ଷିଣା ଦେବାକୁ ନୋହିଲୁ ନୃପବରେ ।
ନୃପତି ବୋଇଲେ ମୋର ଧନ ଆଉ ନାହିଁ
ସେଥି ସକାଶେ ରାଜ୍ୟ ସମର୍ପିଲି ମୁହିଁ ।
ଋଷି ବୋଇଲେ ତୋର ପୁଅ ମାଇପ ବିକ
ଆପଣେ ବିକ୍ରୟ ହୁଅ ନୃପତି ତିଳକ ।
ଶୁଣି ହରିଚନ୍ଦନ ହୋଇଲେ ମନେ ତୋଷ
ପୁତ୍ର ଭାରିଯା ବିକିଲେ ତୁମ୍ଭର ମନ ତୋଷ
ବଶିଷ୍ଠଙ୍କୁ ବୋଇଲେ ଏ ରାଜ୍ୟ ଧନରଥ ।
ଅଶ୍ୱ ହସ୍ତୀ ଯୁବତୀ ସକଳ ସାଇତ ।
ଏ ପୁଣି ମାଗିଲେ ନ ଦେବଟି କିଛି
ଅଧର୍ମ ଋଷି ଏ ଯେ କପଟ କରିଅଛି ।
ଏତେ ବୋଲି ରାଜନ ପୁତ୍ର ଭାରିଯା ଘେନି
ବିଶ୍ୱାମିତ୍ରଙ୍କୁ ଘେନିଣ ଚଳିଲେ ବେଗେ ପୁଣି
କାଶି କ୍ଷେତ୍ରରେ ଯାଇ ହୋଇଲେ ପ୍ରବେଶ
ସଙ୍ଗରେ ପାଟରାଣୀ କୁମର ବିଶେଷ ।
ମଣିକର୍ଣ୍ଣିକାରେ ସ୍ନାହାନ ସେ କଲେ
ବିଶ୍ୱନାଥଙ୍କୁ ଦର୍ଶନ କରିଣ କହିଲେ ।
ବୋଇଲେ ସଦାଶିବ ସକଳ କଥା ଜାଣ
ଏ ମୁନିଙ୍କି ଆଣି ମୁଁ ଦେଲି ବହୁତ ଧନ ।
ରାଜ୍ୟଭାର ସମର୍ପିଲି ବୋଧ ନୋହିଲେ ମୁନି
ଏଡ଼େ ଦୁଷ୍ଟ ତପି ଜଣେ ଦେଖିନାହିଁ ପୁଣି ।
ପୁତ୍ର ଭାରିଯା ମୋହର ବିକ୍ରୟ କରି ନେବ
ଏ କଷ୍ଟରୁ ପାରିକଲେ ତୁମ୍ଭର ଧର୍ମ ହେବ ।
ଏତେ କହି ରାଜନ ଶରଣାଗତ ପୁଣ
ନଗ୍ରରେ ବୁଲିଲେ ଯାଇଣ ତିନି ଜଣ ।
ଆମ୍ଭେ ବିକ୍ରିହେବୁ ବୋଲି ଆପଣେ ଡାକନ୍ତି
କିଣିବାର ଲୋକେଯାଇ ଦାଣ୍ଡରେ ଉଭାହୋନ୍ତି ।
ସତ୍ୟ ବିଡ଼ିବା ପାଇଁ କି ସ୍ୱର୍ଗରେ ଦେବତା
ନଗ୍ରର ଲୋକେ କେହି ନ ହେଲେ ଘେନନ୍ତା ।
ଜନ୍ତୁପତି ଚାଣ୍ଡାଳ ରୂପେ ରାଜାକୁ କିଣିନେଲା
ଇନ୍ଦ୍ର ଦ୍ୱିଜବାର ହୋଇ ରାଣୀକି କିଣିଲା ।
ପୁତ୍ର ସହିତେ କିଣି ନେଇ ଇନ୍ଦ୍ର ଦ୍ୱିଜବର
ତାଙ୍କ ସଙ୍ଗେ ବିଶ୍ୱାମିତ୍ର ଗମନ କରିବାର ।
ବିଶ୍ୱାମିତ୍ର ବୋଇଲେ ଶୁଣ ହେ ରାଜନ
ଏବେ ତ ବିକ୍ରି ତୁମ୍ଭେ ହେଲ ତିନିଜଣ ।
ଧନ ଘେନିଲେ ଆମ୍ଭେ ଯିବୁ ତତକ୍ଷଣ ।
ଏହା ଶୁଣି ଦ୍ୱିଜବର ଲକ୍ଷେକ ଧନ ଦେଲେ
ଚଣ୍ଡାଳ ଆଣିଣ ଲକ୍ଷେ ଧନ ସମର୍ପିଲେ ।
ବେନିଲକ୍ଷ ପୁନିଆଁ ବିଶ୍ୱାମିତ୍ର ନେଲେ
କ୍ଷତ୍ରୀକୁଳକୁ ହରିଚନ୍ଦନ କଥା ରୁହାଇଲେ ।
ହରିଚନ୍ଦନଙ୍କୁ ନେଇ ଯମ ଉତ୍ତମ ସ୍ଥାନେ ରଖି
ଜଗତୀ ଅଟାଳୀ ସିଂହାସନ ନବର ଦେଖି ।
ପୁତ୍ର ଭାରିଯାଙ୍କୁ ତାଙ୍କର ଇନ୍ଦ୍ର ଘେନିଗଲା
ଶୁକ୍ଳେଇ ଘରେ ନେଇ ତାହାଙ୍କୁ ରଖାଇଲା ।
ଏଥୁ ଅନନ୍ତରେ ଶୁଣ ରଘୁନାଥ
ହରିଚନ୍ଦନ ଆସିବାରୁ ବଶିଷ୍ଠ ଉଷତ ।
ହସ୍ତୀ ଘୋଡ଼ା ଯୁବତୀ ରଖିଲେ ନଗ୍ରେ ସେତ
ସମସ୍ତ ଧନ ସାଇତି ରଖିଲେ ତପୋବନ୍ତ ।
ଧନ ରତ୍ନ ଚାମର ଯେତେକ ଥିଲେ ଦେଇ
ରାଜାର ନବରେ ସମ୍ଭାଳି ମୁନି ଥୋଇ ।
ଏଥୁ ଅନନ୍ତରେ ବିଶ୍ୱାମିତ୍ର ମୁନି
ବେନିଲକ୍ଷ ସୁବର୍ଣ୍ଣ ଘେନି ଯେ ଗଲେ ପୁଣି ।
ଅଯୋଧ୍ୟା ନବରେ ହେଲେ ପରବେଶ
ବଶିଷ୍ଠଙ୍କୁ ଦେଖିଲେ ପୁରେ ଯାଇଣ ତ ।
ବୋଇଲେ କିମ୍ପାଇଁ ମୋହର ରାଜ୍ୟେ ଅଛୁ
ଏଥିରେ ରହିବାକୁ କି ଉପାୟ ପାଞ୍ଚୁଛୁ ।
ବଶିଷ୍ଠ ବୋଇଲେ କିଏ ଅଟୁ ତୁହି
ରାଜାରାଣୀ ପୁତ୍ରକୁ ବିଦାୟ କଲୁ ନେଇ ।
ସେତେବେଳେ ରାଜା ତୋତେ କହିଲାକ ପୁଣ
ମୋର ରାଜ୍ୟ ଧନ ଦ୍ରବ୍ୟ ନିଅ ତୁ ଭଲେଣ ।
ତୁ ଯେ ମୋର ଜୀବନ ବିକ୍ରୟ କରିନେଲୁ
ରାଜ୍ୟ ଧନ ଦେଲି ବୋଧ ନ ଘେନିଲୁ
ତେଣୁ ମୋତେ ବୋଇଲା ସକଳ ଧନ ନିଅ ।
ମୋର ରାଜ୍ୟ ସମ୍ଭାଳିଣ ତୁମ୍ଭେ ଭଲେ ରହ ।

ମୁହିଁ ନ ଆସିଲେ ମୋହର ଅଂଶରୁ ଜଣେ
ରାଜନ କରିବ ଯେ କହିଣ ଗଲେ ଏଣେ ।
ଯେଣୁ ରାଜ୍ୟଗୋଟା ସମର୍ପଣ ମୋତେ କରି
ତୋର କିସ ଅଛିରେ ନିର୍ଲଜ ତପଚାରୀ ।
ଶୁଣି ବିଶ୍ୱାମିତ୍ର ହେଲେ କ୍ରୋଧରେ ଜର୍ଜର
ବୋଇଲେ ରାଜା ରାଣୀକି ବିକିଲି ଅନ୍ୟଘର ।
ତାର ରାଜ୍ୟ ତାର ଘର ମୁହିଁ ସିନା ନେବି
ରାଜାକୁ ନେଲି ମୁଁ ଯେ, ରାଜ୍ୟକୁ ତୋତେ ଦେବି ।
କେମନ୍ତେ ରାଜ୍ୟ ରଖିବୁ ନିଶ୍ଚୟ ରାଜ୍ୟ ନେବି
ଏ ରାଜ୍ୟରୁ ତୋତେ ମୁହିଁ ବାହାର କରିଦେବି ।
ଏ ରାଜ୍ୟେ ପୁତ୍ର ଭାରିଜାମୋର ମାଗୁଥିଲେ ଭିକ
ସ୍ୱର୍ଗରେ ବସିଣ ଯେ, ଲଭିଲେ ଦିବ୍ୟସୁଖ ।
ଏହିକ୍ଷଣି ତୁରେ ଏ ରାଜ୍ୟରୁ ଯାଅ ଯା
ଦଣ୍ଡେ ଏଥି ରହିଲେ କରିବି ମୁହିଁ କଜ୍ୟା ।
ଏତେ ବୋଲି ବିଶ୍ୱାମିତ୍ରଡେଣା ମେଲାଇ ଧାଇଁଲା
ତୋର ମୋର ଆଜ ଯୁଦ୍ଧ କରିବା ବୋଇଲା ।
ଏତେ କହି ବିଶ୍ୱାମିତ୍ର ହୋଇଲେକ ବକ
ଶତେଯୁଣ ମୋଟ ହେଲେ ଶତେଯୁଣ ଉଚ୍ଚ ।
ଦେଖିଣ ବଶିଷ୍ଠ ତାଙ୍କୁ ହୋଇଲେକ ବକ
ବେନି ବକ ଦିଶିଲେ ଯେ ପର୍ବତ ସାଦୃଶ୍ୟ ।
ଓପ୍ରଧ ତେଜିଣ ଯେ କଲେକ ସମର
ଯେସନେକ ବେନିଗିରି ହୁଅନ୍ତି ଏକଠାର ।
ବେନିବେନି ଡେଣାରେ ସେ ହେଲେ ପିଟାପିଟି
କେ କାହାର ଥଣ୍ଟରେ ତୋଟି ରକଟନ୍ତି ।
ନଖମାନ ଘେନିଣ ବିଦାରିଲେ ଅଙ୍ଗ
ରୁଧିରେ ସ୍ନାନ କଲେ ଦିଶିଲା ବିରଙ୍ଗ ।
ବନଗିରି ପର୍ବତ ଯେ କମ୍ପିଲା ମହିଆଳି
ଦେଖିକରି ବନଜୀବେସର୍ବେ କଲେ ହାଲହୋଲି ।
ଅଷ୍ଟ ଦିଗ ଲୋକେ ଦେଖି ଆଶ୍ଚର୍ଯ୍ୟ ହୋଇଲେ
ବର୍ଷକ ପର୍ଯ୍ୟନ୍ତ ସେଥିରେ ଯୁଦ୍ଧ କଲେ ।
ଈଶ୍ୱର ବେଦବର ଦେବତାଙ୍କୁ ଘେନି
ବିଜୟ କଲେ ଆସି ଅଯୋଧ୍ୟାରେ ପୁଣି ।
ଦୁହେଁ ନ ଘୁଞ୍ଚନ୍ତି ସରିସମରେ ରହି
ନାରଦ ନୃତ୍ୟକଲେ ବୀଣାତୁରୀ ବାଇ ।
ବିଧାତା ବୋଇଲେ ତୁମ୍ଭେ ବେନିଜଣ ଶୁଣ
ତୁମ୍ଭେ ଯୁଦ୍ଧ ରୁହାଅ କହୁ ଆମ୍ଭେ ପୁଣ ।
ବ୍ରହ୍ମାଙ୍କର ବଚନେ ଦୁଇଜଣ ଛିଡ଼ା
ବେଦବର ବୋଲେ ବିଶ୍ୱାମିତ୍ର ମାହୁ ଛଅକାମଡ ।
ରାଜାତୋତେ ଦେଲାବେଳେ ନନେଲୁ ଏ ରାଜ୍ୟ
ରାଜାରେ ମାୟାକରି କହିଲୁ କଥା ଦ୍ୱନ୍ଦ୍ୱ ।
ବୋଇଲୁ ତୋର ପୁତ୍ର ଭାରିଯା ବିକ୍ରି କରିନେବି
କାଳ ଯୁଗକୁ ମୁଁ ଚ କଥା ରୁହାଇବି ।
ଏମନ୍ତ କହିଣ ରାଜାଙ୍କୁ ଧନ ଛାଡ଼ିଗଲୁ
ରାଜା ବଂଶ ବିକ୍ରୟ କରିଣ ଧନ ନେଲୁ ।
ଏବେ ଯେ ଅଧର୍ମ କରି କଥା କହୁ ପୁଣ
ଏତେ ଅଧର୍ମ କଲେରେ କାହୁଁ ହେବ ପୁଣ୍ୟ ।
ଯେତେ ପୁଣ୍ୟ କରିଥିଲୁ ନାଶ ଗଲା ସର୍ବ
ଏତେ ଅଧର୍ମୀ ହୋଇଲୁ ନଜାଣୁ ଧର୍ମୀ ଧର୍ମ ।
ଏବେ ଯେବେ ଦଣ୍ଡେରେ ରହିବୁ ଏଥିରେ
ଭସ୍ମ ହୋଇଣ ଯିବୁରେ କହିଲୁ ତୋହରେ ।
ଶୁଣିକରି ବିଶ୍ୱାମିତ୍ର ଥରହର ହୋଇ
ନିଜରୂପ ଧରିଣ ଅଯୋଧ୍ୟାରୁ ପଳାଇ ।
ସିଦ୍ଧବନେ ପୁତ୍ର ଘରଣୀ ତୁଲେ ମିଳି
ତପ ଆରମ୍ଭିଲେ ସେଥିରେ ବସିକରି ।
ବିଚାରିଲେ ମୋର ମୁଖେ ମୋର ପୁଣ୍ୟଗଲା
ତପିରେ ଯୋଗନୋହିଲି ରାଜ୍ୟରୁ ତେଜ୍ୟାହେଲା
ଏମନ୍ତ ବିଚାରି ମଉନେ କରି ତପ
ଦେବତାଏ ସ୍ୱର୍ଗଗଲେ ରହିଲେ ବଶିଷ୍ଠ ।
ଶ୍ରୀରାମ ପଚାରିଲେ ସେଠାରୁ କିସ ହେଲା
ସତ୍ୟାନନ୍ଦ କହି ତୁମେ ଦଶରଥ ବଳା ।
ତପ କରନ୍ତେ ସେ ଯେ କିଛିଦିନ ଯାଇ
ତପରେ ତେଜବନ୍ତ ବିଶ୍ୱାମିତ୍ର ହୋଇ ।
ଆଗରେ ହିଂସା କଥା ମନରେ ତାର ରଖି
ଦେବତାଙ୍କ ଉପରେ କ୍ରୋଧ ପ୍ରଜ୍ୱଳିତି ।
କୋପେ ଥରହର ହୋଇଣ ଶାପଦେଲା
ମନୁଷ୍ୟ ଶରୀର ତୁମ୍ଭେ ପାଅରେ ବୋଇଲା ।
ଚଉରାଶି ଯୋନି ଭ୍ରମି ଦେବେ ହୋନ୍ତୁ ଜାତ
ଅଦୋଷେ ଶାପ ମୋତେ ଦେଲେ ଦଇବତ ।
ଦେବତା ପଣ ଛାଡ଼ି ମଞ୍ଚରେ ଅବତାର
ଶୁଣିଣ ଦେବତାଏ କ୍ରୋଧରେ ଗୁରୁତର ।
ବୋଇଲେ ବିଶ୍ୱାମିତ୍ର ଏଡ଼େ ଗର୍ବ ତୋର
ରାଜଋଷି ହୋଇଣରେ ଦେବଙ୍କ ସଙ୍ଗେଗାଢ଼ ।

ପୁତ୍ର ଭାରିଯା ଚଣ୍ଡାଳ ଗୋମାଂସ ଖାଇ
ତ୍ରିଶୁଦ୍ର ଚଣ୍ଡାଳକୁ ସ୍ୱର୍ଗକୁ ଦେଲୁ ତୁହି ।
ଭଲ କହିଲାରୁ ତୁ ମନ୍ଦ ବିଚାରିଲୁ
ଦେବତାଙ୍କ ସଙ୍ଗେ ବିବାଦି ଆଜଠାରୁ ହେଲୁ
ଏକେ ପିତୃଙ୍କୁ ତୁ ନକରୁ ତର୍ପଣ
ତର୍ପଣ କାଳେ ଜଳଦେଲେ ଚଣ୍ଡାଳ ହେବେ ପୁଣ ।
ଯେତେବେଳେ ବ୍ରହ୍ମମୁନି ବଶିଷ୍ଠ ତୋରେ ବୋଲି
ତେତେବେଳେ ଚଣ୍ଡାଳର ପାତକଯିବ ତୋରି ।
ଶୁଣିଣ ବିଶ୍ୱାମିତ୍ର ବୋଇଲେ ବଚନ
ମୋହର ବଚନ ଯେ, ତୋହର ହେଉ ଆନ
ଅନେକ ଦିନ ଅନ୍ତରେ ଦ୍ୱାପର ଯୁଗଶେଷ
କୃଷ୍ଣ ଅବତାର ହୋଇବେ ପୀତବାସ ।
କାଳ ନଉମି ଦୈତ୍ୟଙ୍କର ସ୍ୱରୂପରେ ଜାତ
ମଥୁରା ରାଜା ଉଗ୍ରସେନର ହେବ ପୁତ୍ର ।
ତିନିପୁର ଜିଣି ତୁମ୍ଭଙ୍କୁ ଦଣ୍ଡ ଦେବ
ଦେବେ ତୁମ୍ଭେ ବାସୁଦେବ ଜନମ କରାଇବ ।
ପୃଥ୍ୱୀ ନସହିବି ଯେ, ତାହାର ପାଦଘାତ
ତେଣୁଟି ନାରାୟଣ ରାମ କୃଷ୍ଣ ରୂପ ।
କଂସଙ୍କୁ ମାରିଣ ସେ ଯେ ଉଦ୍ଧରିବେ ମହୀ
କୁରୁ ବଂଶରେ ଜାତ ଦୁର୍ଯ୍ୟୋଧନ ହୋଇ ।
ତାର ସଙ୍ଗେ ଜନ୍ମିବେ ଶତେକ ଭାଇ ପୁଣ
ଅଷ୍ଟବସୁ ନବଗ୍ରହ ଦଶଦିଗପାଳେ ଜାଣ ।
ଦେବ କିନ୍ନରୀ ଆବର ଦେବତାଏ
ପନ୍ନଙ୍ଗାନାରାୟଣ ସଙ୍ଗରେ ଜନ୍ମ ହୁଏ ।
ତୁମ୍ଭେ ଦେବତାଏ ଅଧର୍ମ କୁଳେ ଜାତ
କଳି ଦ୍ୱନ୍ଦ୍ୱ ତୁମ୍ଭର ହୃଦରେ ପୁରା ଜାତ ।
ଧର୍ମ ସେ ଜନ୍ମିବେ ଯୁଧିଷ୍ଠି ମହୀପାଳ
ଅଶ୍ୱିନୀ କୁମାର ଯେ ହୋଇବେ ନକୁଳ ।
ଇନ୍ଦ୍ରରୁ ଅର୍ଜ୍ଜୁନ ଯେ, ପବନରୁ ଭୀମ
ବରୁଣରୁ ଅବତାର ହୋଇବେ ସାୟତନ ।
ସହଦେବ ମନ୍ତ୍ରୀ ପଣ୍ଡୁ ରାଜା ସୁତଦେବ
ସୁରେଙ୍କୁ ଅନାଇଲେ ସକଳ ଜାଣିବ ।
ଆଗତ ନିଗତ କଥାସବୁ କରିବ ବଖାଣ
ଭୀଷ୍ମଦେବ ବସୁ ଯେ, ଅଭିମନ୍ୟୁ ଇନ୍ଦ୍ରଜାଣ ।
କର୍ଣ୍ଣ ଜାତ ହେବେ ରବି ଅଂଶରୁ ଜାଣ
ଶାଲୁ ଶିଶୁପାଳ ଜରାସନ୍ଧ ଏ ଜାଣ ।
ଏମାନେ ଦୈତ୍ୟ ହୋଇଣ ଜନ୍ମହେବେ ଜାଣ

× × ×

ମାୟାରେ ଶ୍ରୀହରି ଯେ ସଭିଙ୍କୁ ମାରିବେ
ପାଣ୍ଡବ ଦୁର୍ଯ୍ୟୋଧନ ଯୁଦ୍ଧ ଆରମ୍ଭିବେ ।
ସମର ଭୂଇଁରେ ଦୁଇପକ୍ଷ ଯେ ହୋଇବେ

× × ×

ଆପଣା ଆପଣାରେ ହୋଇବେ ମରାମରି
ଯୋଗମାୟା ହେବେ ଯେ ପାଣ୍ଡବଙ୍କ ନାରୀ ।
ତାଙ୍କ ଗର୍ଭେ ଅଷ୍ଟବସୁ ହୋଇବେ ଯେ ଜାତ
ଜନ୍ମକାଳେ ସାତଦିନେ ଶୋଇବାସ୍ଥାନେହତ ।
ଅଳପ ଦିନ ରହିଣ ଆସିବେ ସ୍ୱର୍ଗପୁରୀ
ଏସନ ବୋଲି କହିଲେ ବିଶ୍ୱାମିତ୍ର ତପଚାରୀ ।
ବେଦବର ବୋଇଲେ ତୁ ବିଶ୍ୱାମିତ୍ର ଶୁଣ
ରାଜପଣ ଛାଡ଼ି ତୁତ ତପିହେଲୁ ପୁଣ ।
ତପିମାନେ ତପକଲେ ନ କରନ୍ତି ରାଗହିଂସା
ତପିମାନଙ୍କର ସୁଖ ଭୋଗରେ ନାହିଁଇଛା ।
ଦୁଷ୍ଟପଣ ଛାଡ଼ି ସତ୍ପପଣ ଧର ଏବେ
ସତ୍ପପଣ ନ ଧରିଲେ ନାଶ ଯିବୁଟି ବେଗେ ।
ଅନେକ ଥର ତୁ ଯେ କଲୁଟି ଦୁଷ୍ଟପଣ
ଆଜଠାରୁ ଦୁଷ୍ଟହେଲେ ଭସ୍ମହେବୁ ଜାଣ ।
ଏତେ କହି ବେଦବର ଦେବଙ୍କୁ ସଙ୍ଗେଘେନି
ସ୍ୱର୍ଗପୁରେ ମିଳିଲେ ଯାଇ ପଦ୍ମଯୋନି ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ରାମଚନ୍ଦ୍ର
ବିଶ୍ୱାମିତ୍ର ମୁନିଙ୍କର କଥାବଡ଼ ମନ୍ଦ ।
ପୁଷ୍କର ତୀର୍ଥେ ପ୍ରବେଶ ଗାଧିସୁତ ଜାଣ
ସିଦ୍ଧ ବନରେ ପୁତ୍ର ଘରଣୀ ରଖିଣ ।
ତପ ଆରମ୍ଭିଲା ଯେ ଯାଇ ରାଜନ
ନିଷ୍ଠାରେ ତପକରି ବସିଲାକ ଜାଣ ।
ଏଥୁ ଅନନ୍ତରେ ଶୁଣ ହେ ଦାଶରଥି
ଗାଲଭ ନାମରେ ଯେ, ଏକଇ ନୃପତି ।
ଅଶ୍ୱମେଧ ଯାଗ କରିବାକୁ ତାର ବୁଦ୍ଧି
ଭିଆଣ କଲେ ସେ ଯେ ସକଳ ସମ୍ପାଦି ।
ନୃପତି ମାନଙ୍କୁ ଯେ କଲେ ନିମନ୍ତ୍ରଣ
ନାନା ତୀର୍ଥରୁ ଅଣାଇ ତପିଗଣ ।
ଘୃତ ତିଳ ଜଳ ଯେ ସମିଧ ଠୁଳକରି
ବିଶ୍ୱାମିତ୍ର ପାଶକୁ ଗଲେକ ଦଣ୍ଡଧାରୀ ।

କରଯୋଡ଼ି ନୃପତି କହିଲେ ମୁନିବର
ଭୋ ମୁନି ମୁଁ କରୁଛି ଅଶ୍ୱମେଧ ଯଜ୍ଞ ।
ମୋର ଯାଗେ ଆଚାର୍ଯ୍ୟ ହୋଇବ ଗାଧିସୁତ
ଶୁଣିକରି ବିଶ୍ୱାମିତ୍ର କଲେ ସନମତ ।
ଗାଲବର ସଙ୍ଗରେ ଅଇଲେ ମହାମୁନି
କଟକରେ ପ୍ରବେଶ ହୋଇଲେ ଆସି ପୁଣି ।
ତେଣୁ ସେ ରାଜନ ନଗ୍ର କରଇ ମଣ୍ଡନ
ଲକ୍ଷଣବନ୍ତ ଅଶ୍ୱ ବୁଲାଇ ପୃଥ୍ୱୀ ପୁଣ ।
ଯାଗ ଆରମ୍ଭ ବେଣୁନଦୀ କୂଳେ କଲା
ଆପଣେ ବିଶ୍ୱାମିତ୍ର ଆଚାର୍ଯ୍ୟ ହୋଇଲା ।
ଅଗ୍ନିର ମୁଖରେ ନେଇ ସମର୍ପିଲେ ଘୃତ
ହବି ଭକ୍ଷିବାକୁ ଯେ ଅଇଲେ ଦେବ ଶତ ।
ଯାଗ ସାରିଣ ପୂର୍ଣ୍ଣ ଆହୁତି ସମର୍ପିଲେ
ତିନି ପକ୍ଷରେ ଯାଗ ସମ୍ପୂର୍ଣ୍ଣ ସେହୁ କଲେ ।
ଦେବେ ତୋଷ ହୋଇଣ ଗଲେ ସ୍ୱର୍ଗପୁର
ଯେ ଯାହାର ରାଜ୍ୟକୁ ଯେ ଗଲେ ନିଜପୁର ।
ତପି କପିମାନେ ଯେ ଯାହାର ପୁରେ ଗଲେ
ବିଶ୍ୱାମିତ୍ର ମୁନି ଯେ ଗାଲବକୁ ବୋଲେ ।
ତୁ ହେ ନୃପତି ମୋତେ ଦକ୍ଷିଣା ଦିଅସି
ଏ ତୋହର ଧର୍ମ ଯେ ସୁଫଳ କର ଆସି ।
ଶୁଣିକରି ନୃପତି ନେଲେକ ବହୁଧନ
ପରମ ତୋଷ ହେଲେ ଯେ କଉଶିକ ପୁଣ ।
ରାଜାର ତୃପତ ଯେ ନୋହିଲା ପୁଣ ଚିତ୍ତ
ମନରେ ବିଚାରିଲା ଦେବଇଁ ଆଉ ବିତ୍ତ ।
ଋଷିଙ୍କି କହିଲା ଯେ ପ୍ରସନ୍ନ ବଦନରେ
ଆବର ମାଗିଲେ ଯେ ଦକ୍ଷିଣା ନେବିତୋରେ
ମୁନି ବୋଇଲେ ମୁଁ ଯେ ହେଲିଣି ତୃପତି
ସୁଖରେ ରାଜ୍ୟଭୋଗ କର ହେ ନୃପତି ।
ବିଶ୍ୱାମିତ୍ରଙ୍କର ଏସନ ବାଣି ଶୁଣି
ଗାଲବ ବୋଲଇ ଯେ ମନେ ମନେ ଗୁଣି ।
ତୁମ୍ଭେ ମୋତେ ଋଷିମାଗ ଦେବଇଁ ଆଉଧନ
ନୋହିଲେ ତୁମ୍ଭର ଇଚ୍ଛା ଯେଉଁଥିରେ ପୁଣ ।
ଶୁଣିଣ କଉଶିକ କୋପମନ ହେଲେ
ଅଧର କମ୍ପାଇ ଯେ ରାଜ୍ୟକୁ ଅଇଲେ ।
ଦିଅ ମୋତେ ଆଣି ସହସ୍ରେ ଅଶ୍ୱ ବେଗ
ସର୍ବାଙ୍ଗ ଶ୍ୱେତ ବର୍ଣ୍ଣ କଦମ୍ବ ଚାଳି ଭାବ ।

ମସ୍ତକ ଉପରେ ଖୁଣ ନଥିବ ଭୂମିର
କଟି ମୋଟ ଅତି ନୋହିବ ଆଗଭର ।
ଶ୍ୱେତ ଚାମର ଜିଣିଣ ଦିଶୁଥିବ ଲାଞ୍ଜ
ଏହା ଦେଇଣ ବେଗେ ମନ ମୋର ରଞ୍ଜ ।
ଅତିହିଁ ଚଞ୍ଚଳ ଯେ ଅତି ବଳବାନ
ଏକକୁ ଆରେକ ଯେ ନଥିଲେ ବଡ଼ ସାନ ।
ସମସ୍ତ ଅଣ୍ଡିର ଥିବେ ନଥିବେ କେହି ମାଈ
ସମସ୍ତ ବ୍ୟଗ୍ର ବୋଲି କହିଲେ ପୁଣ ରହି ।
ଯହିଁକି ମନ କଲେ ଯାନ ତହିଁ ଯିବେ
ଏକ ଦିନକେ ମେଦିନୀ ବୁଲିଣ ଆସିବେ ।
ଏହିରୂପେ ସହସ୍ର ଅଶ୍ୱ ଦିଅ ଆଣି
ଶୁଣିକରି ରାଜନର ସାହସ ଉଡ଼େ ପୁଣି ।
ମନରେ ବିଚାରିଲା ମନରେ କୋପହେଲା
ମୋହର ଯୋଗୁଁ ସିନା ଏକଥା ଉପୁଜିଲା ।
ଯାହା ସେ ମୁନିବର ମାଗିଲେ ଏବେମୋତେ
ବେନିଲକ୍ଷ ଅଶ୍ୱ ଖୋଜିଲେ ନ ମିଳିବେ ପ୍ରତେ ।
ଏମନ୍ତେ ବିଚାରି ରାଜା ମୁନିର ପାଦେ ପଡ଼ି
କାର୍ପଣ୍ୟ ହୋଇଣ ଯେ କହଇ କରଯୋଡ଼ି ।
ତୁ ମହାମୁନି ମୋତେ ପ୍ରତିକାର କର ।
ଏ ମହାସଙ୍କଟରୁ ବାରେକ ଉଦ୍ଧର ।
ମୁହିଁ ଯେ ଅଜ୍ଞାନ ନ ଜାଣଇ କିଛି
ତହିଁର ଫଳ ଏବେ ମୁହିଁ ତ ପାଇଲିଟି ।
ଶୁଣିଣ କଉଶିକ ମନରେ ହେଲେ ତୋଷ
ପ୍ରସନ୍ନ ହୋଇଣ ମୁନି ବୋଇଲେ ସର୍ବେବସ ।
ଆଜ୍ଞା ଦେଇ ବିଶ୍ୱାମିତ୍ର ନିଜ ଆଶ୍ରମରେ ମିଳି
ତତକ୍ଷଣେ ରାଜନ ଚଳିଲା ସ୍ୱର୍ଗପୁରୀ ।
ଶୁଣିକରି ଶ୍ରୀରାମ ଯେ ମୁନିଙ୍କ ଚରିତ
ଏ ମୁନି ଅଟନ୍ତି ଯେ ଧାର୍ମିକ ତପୋବନ୍ତ ।
ଶୁଣ ରାମଚନ୍ଦ୍ର ତୁମ୍ଭ ଉପର ବଂଶକଥା
ଅମ୍ବରୀଷ ବୋଲିଣ ଅଯୋଧ୍ୟା ସାମରଥା ।
ନରମେଧ ଯଜ୍ଞ ଯେ କରିତ ଇଚ୍ଛା କଲା
ଲକ୍ଷଣବନ୍ତ ପୁରୁଷ ଭିଆଇ ଆଣିଲା ।
ଘୃତ, ତିଳ, ଯବ, ସମିଧ ସଜ କରି
ଭୂଷଣ୍ଡି ଧେଣ୍ଡୁରା ଯେ ଫେରାଏ ବେଗକରି ।
ଲକ୍ଷେକ ନୃପତି ଯେ ମିଳିଲେ ତହିଁ ଆସି
ଆବର ଅଇଲେ ଯେ ଅନେକ ମହାଋଷି ।

ଯାଗର ସମ୍ଭର୍ବ ତାର ବାସବ ଜାଣିଲା
ଲକ୍ଷଣବନ୍ତ ପୁରୁଷକୁ ହରି ଘେନିଗଲା ।
ବିଚାର କଲା ମନରେ ସ୍ୱର୍ଗର ନୃପତି
ଏ ଯାଗ କଲେ ରାଜା ହୋଇବ ସୁରପତି ।
ଅନେକ ଅଶ୍ୱମେଧ ପୂର୍ବରୁ ଅଛି କରି
ଏମନ୍ତ ବିଚାରି ଇନ୍ଦ୍ର ତହୁଁ ନେଲେ ହରି ।
ରଜନୀ ପାହିବାରୁ ଦେଖିଲେ ନରନାଥ
ଲକ୍ଷଣବନ୍ତ ପୁରୁଷ ଯହିଁ ଅଛନ୍ତି ସମସ୍ତ ।
ବୋଇଲେ ରାଜନ ପୁଣ ହେଲା ବିପରୀତ
ଏବେ ପୁଣ ମୁହିଁ ଯେ କରିବି କେମନ୍ତ ।
ଋଷିମାନଙ୍କୁ ରାଜା ପଚାରେ ବସାଇ
ମୁନିମାନେ କହିଲେ ଯେ, ଶାସ୍ତ୍ରକୁ ଦେଖାଇ ।
ଗଲା କଥାକୁ ରାୟେ ନକର ପୁଣ ଚିନ୍ତା
ଖୋଜିଣ ଆଣଯା ଲକ୍ଷଣ ପୁରୁଷ ସାମରଥା ।
ଯାଗ ସମାପନ ବେଳେ ପୂର୍ଣ୍ଣ ଆହୁତି କାର୍ଯ୍ୟ
ଯହିଁରେ ଥିବ ରାଜା ତୁମ୍ଭେ ଆଣ ବେଗ ।
ଆମ୍ଭେ ଅଗ୍ନିରେ ଘୃତଦେଇ ଦେବଙ୍କୁ ତୋଷିବୁ
କ୍ଷଣେ ଆମ୍ଭେ ଯାଗ ହୋମ ବିଳମ୍ବ କରିବୁ ।
ଶୁଣି ରାଜନ ବିମାନ ଆରୋହଣ କଲା
ଦେଶେଦେଶେ ରାଜ୍ୟେରାଜ୍ୟେ ଯାଇଣ ଖୋଜିଲା ।
ଅନେକ ଦୂର ରାଜା ଭ୍ରମଣ କରିଗଲା
ଋଚିକ ମୁନିଙ୍କର ଆଶ୍ରମ ଦେଖିଲା ।
ଲକ୍ଷଣବନ୍ତ ତାଙ୍କର ତିନି ପୁତ୍ର ଛନ୍ତି
ଅମରିଶ ରାଜା ଯେ, ତାହାଙ୍କୁ ଯାଇ ପୁଛି ।
ଚରଣେ ନମିଣ ଯେ ପୁଛଇ ନୃପତି
କଥାଏ କହିବି ଏବେ ଶୁଣ ହେ ମହାଯତି ।
ନରମେଧ ଯଜ୍ଞ ଯେ, ଆରମ୍ଭ ମୁହିଁକଲି
ସକଳ ପଦାର୍ଥ ଯେ ଆଣିଣ ଠୁଳକଲି ।
ଲକ୍ଷଣବନ୍ତ ପୁରୁଷ ମୋ କେହୁନେଲା ହରି
ଏ ମହୀମଣ୍ଡଳେ ମୁଁ ନପାଏ ଖୋଜିକରି ।
ତୁମ୍ଭର ତିନି ପୁତ୍ର ଅଛନ୍ତି ସୁନ୍ଦର
ଧନ ନେଇ ଏକ ପୁତ୍ର ଦିଅ ମୁନିବର ।
ତୁମ୍ଭ ଦ୍ୱାରା ପ୍ରାପତ ହେଉ ଯେ ମୋତେ ଧର୍ମ
ନୋହିଲେ ପ୍ରାପତ ମୋତେ ନୁହେ ଯାଗଧର୍ମ ।
ଶୁଣିକରି ଋଚିକ ଭାଳିଲେ ମନେ ମନ
ଏହିକ୍ଷଣି ଦେବ ଏଯେ ଲକ୍ଷେକ ସୁବର୍ଣ୍ଣ ।

ଦରିଦ୍ର ଅବସ୍ଥା ମୋର ଯିବ ଅପସରି
ଏମନ୍ତ ବିଚାରି ଯେ ମନରେ ଋଷି କରି ।
ବୋଇଲେ ନରନାଥ ପୁତ୍ର ନେବାର ଶୁଣ
ଧନ ଦେଇ ପାରିଲେ ନେବୁ ନୃପରାଣ ।
ଧନରେ ପୁତ୍ରମୋର ଯିବ ଯେବେ ବୁଡ଼ି
ତେବେ ମୁଁ ପୁତ୍ର ନିଶ୍ଚେ ଦେବି ଦଣ୍ଡଧାରୀ ।
ଶୁଣିକରି ରାଜନ ଯେ ସିଦ୍ଧକାର କଲା
ଆପଣା ନିଜ ରାଜ୍ୟେ ବେଗେ ଚଳିଗଲା ।
ଲକ୍ଷେରଥ ପାଣିଦ୍ରବ୍ୟ ଘେନାଇ ଅଇଲା
ଋଚିକ ମହାମୁନିର ଆଶ୍ରମେ ମିଳିଲା ।
ଅମ୍ବରୀଶ ରାଜାକୁ ଋଷି ରାଇ କହି
ଜ୍ୟେଷ୍ଠ ପୁତ୍ରକୁ ମୁହିଁ ଦେଇ ନ ପାରଇ ।
ଏ କୁମର ମୋହର ଯେ, ବହୁତ କାର୍ଯ୍ୟଅଛି
କ୍ଷଣେ ତାକୁ ନ ଦେଖିଲେ ନପାରଇ ମୁର୍ଛି ।
ଏମନ୍ତ ଶୁଣିଣ ଯେ, ବୋଇଲେ ଋଷି ଆଣି
କନିଷ୍ଠ ପୁତ୍ର ମୋର ଜୀବକୁ କାରେଣି ।
ଏହି କୁମର ମୁଁ ଯେ ନ ପାରେ କେବେ ମୁର୍ଛି
କୋଳରେ ପୁତ୍ରକୁ କେମନ୍ତେ ଦେବି ନିକି ।
ପିତା ମାତାଙ୍କର ଏମନ୍ତ ବାଣୀ ଶୁଣି
ମଝିଆ କୁମର ଯେ କହୁଅଛି ବାଣୀ ।
ଜ୍ୟେଷ୍ଠ ପୁତ୍ର ଗୋଟିକୁ ସମ୍ଭାଳି ନେଲେ ପିତା
କନିଷ୍ଠ ପୁତ୍ରକୁ ଯେ ସମ୍ଭାଳିଲେ ମାତା ।
ମୋତେ ଏବେ ଆଉ ରକ୍ଷକ କେହି ନାହିଁ
ମୁହିଁ ଏଥିରେ କିସ କରିବି ଜୀଇଁ ଥାଇ ।
ଭୋ ରାଜା ଧନ ଦେଇ ମୋତେ ତୁମ୍ଭେ କିଣ
ନିରକ୍ଷ ହୋଇଥିବାର କେବଣ କାରଣ ।
ଶୁଣିକରି ସନ୍ତୋଷ ହୋଇଲେ ନୃପତି
ଲକ୍ଷେକ ପାଣି ଦ୍ରବ୍ୟ ରଥ ଦେଲେ ସେଥି ।
କୁମରକୁ ଘେନିଣ ବେଗେ ଚଳିଗଲା
ପୁଷ୍କର ତୀର୍ଥରେ ସେ ଯାଇଣ ରହିଲା ।
ସ୍ନାନ ସାରି ରାଜା ଯେ ଋଷିପୁତ୍ର ସହିତେ
ଯାଇଣ ମିଳିଲେ ବିଶ୍ୱାମିତ୍ର ତପୋବନ୍ତେ ।
ନମସ୍କାର କରି ରାଜା ବିନୟୀ ଭାବ ହୋଇ
ଶୂନ୍ୟେ ଶଙ୍ଖ ଋଷି ଯେ ଶରଣ ପଶେ ଯାଇ ।
ହେ ଭୃଗୁ ନନ୍ଦନ ହେ ବାରେ ରକ୍ଷାକର
ମୋର ନରମେଧ ଯାଗ କରିବ ନୃପବର ।

ପିତାମାତା ମୋତେ ବିକିଲେ ଧନ ଘେନି
ପ୍ରାଣ ଦାନ ମୋତେ ଦିଅ ହେ ମହାମୁନି ।
ଶୁଣିଣ ବିଶ୍ୱାମିତ୍ର ରଖିବୁ ବୋଇଲେ
ଅମ୍ବରୀଶ ରାଜା ଶୁଣି ବିସ୍ମୟ ହୋଇଲେ ।
ଶୂନ୍ୟ ଶଙ୍ଖ ବୋଲେ ଆକୁଳ ନୁହହେ ନୃପତି
ମୋତେ ଏବେ ପ୍ରାଣଦାନ ଦେଲେ ମହାଯତି ।
ତୁମ୍ଭଙ୍କୁ ଯେ ପ୍ରତିକାର କରିବେ ମହାମୁନି
ପିତାମାତା ମୋତେ ଯେ ବିକିଲେ ଧନଘେନି ।
ତିନିକୁଳ ରଖି ଯେବେ ମରଇ ଏବେ ମୁହିଁ
ନୋହିଲେ ମୋ ପ୍ରାଣ ରଖିବି କାହିଁ ପାଇଁ ।
ବିଶ୍ୱାମିତ୍ର ମୁନି ଚାହିଁ ବୋଇଲେ କୁମର
ମୋତେ ଯେବେ ପ୍ରାଣଦାନ ଦେଲେ ମୁନିବର ।
ଲକ୍ଷେରଥ ପାଣିଦ୍ରବ୍ୟ ଦେଲେ ଅମ୍ବରୀଶରାୟେ
ରଣିଆ ହୋଇବେ ସିନା ମୋର ବାପା ମାଏ
ପିଅର ଜନନୀଠାରେ ମୁହିଁ ଲଦି ଦ୍ରୋହି
ଏଥିର କାରଣ ଯେ ତୁମ୍ଭଙ୍କୁ ଲାଗଇ ।
ମୁନି ବୋଇଲେ ତୁରେ ଶୁଣ ଶୂନ୍ୟ ସିଂହ
ଯାହାକୁ ବୋଇଲୁ ଆମ୍ଭେ ନୋହିବୁଟି ଭଙ୍ଗ ।
ତୋହର ନିମନ୍ତେ ଆମ୍ଭେ ଦେବ ନିଜ ସୁତ
ଅମ୍ବରୀଶ ରାଜାକୁ ସ୍ୱର୍ଗ ପରାପତ ।
ଏତେବୋଲି କଉଶିକ ନିଜ ପୁତ୍ର ରାଇ
ପାଶରେ ବସାଇ ତାକୁ ବୁଝାଇଣ କହି ।
ଶୁଣ ବାବୁ ନନ୍ଦନରେ ମୋର ଏବେ କଥା
ଅମ୍ବରୀଶ ରାଜନ ଅଯୋଧ୍ୟା ମହାରଥା ।
ଋଷିଙ୍କର ପୁତ୍ରକୁ ଯେ ଆଣିଲା ପୁଣି କିଣି
ନରମେଧ ଯାଗ ସେ ଯେ, କରିବ ନୃପମଣି
ଶୂନ୍ୟ ସିଂହ ଋଷି ପୁତ୍ର ଜୀବନ ଅଛି ମୁର୍ଚ୍ଛି
ମୋରେ ଶରଣ ପଶିଲା ଋଚିକମୁନି ବଚ୍ଛି ।
ସତ୍ୟକରି ଅଛି ମୁଁ ଯେ ରଖିବି ତାହାଙ୍କୁ
କେମନ୍ତେ ଯାଗ କରାଇବା ଯେ, ନରନାହାକୁ ।
ମୋହର ସତ୍ୟକୁ ରଖରେ ବାବୁ ତୁହି
ଏ ଦେହ ଗୋଟି ତୋର ଯାଗରେ ହେବ ଦହି ।
ଯଦି ତୁମ୍ଭର ମୋହର ହିତେ ବ୍ରତ
ଦେହ ଦେଇ ରଖରେ ଏ ମୋହର ସତ୍ୟ ।
ଶୁଣିଣ କୁମର ଯେ, ବୋଇଲେ ପୁଣି ହସି
ପରପାଇଁ ଆପଣା ପୁତ୍ରକୁ ଏବେ ନାଶି ।
ବାଇଙ୍କର କଥା ଯେ ଏସନେକ ମତ
ଏମନ୍ତ ବଚନ ଯେ ବୋଇଲେ କିମ୍ପା ତାତ ।
ଆମ୍ଭେ କିମ୍ପା ପରପାଇଁ ଦେବୁ ଏବେ ଦେହ
ଶୁଣିକରି ବିଶ୍ୱାମିତ୍ର ହୋଇଲେ ବିସ୍ମୟ ।
ଶୂନ୍ୟ ଶଙ୍ଖକୁ ଯେ ରାଇଣ କହିଲେ
ତୁହି ଯିବୁ ବାବୁରେ ରାଜା ସଙ୍ଗତରେ ।
ଯାଅ ରାଜା ସଙ୍ଗରେ କିଛି ଯେ ଭୟ ନାହିଁ
ଆମ୍ଭେତ ରଖିଲୁ ତୋତେ ଉପଦେଶ ଦେଇ ।
ଏତେ ବୋଲି ମନ୍ତ୍ର ଯେ ଶିଖାଇ ଋଷି ଦେଲା
ଏମନ୍ତ ଧ୍ୟାନ କରିବୁ ବୋଲିଣ ବୋଇଲା ।
ଗୁରୁ ଉପଚାରଣ କରିଣ ପୁଣ ଥିବୁ
ପଶୁ ପ୍ରତିକ୍ଷଣ ବେଳେ ଇନ୍ଦ୍ରକୁ ସୁମରିବୁ ।
ବାସବ ରାଜା ଯେ ଜାଣିବାକୁ ପୁଣ
ସୁରପତିର ପ୍ରାଣ କେବେହେଁ ନ ରହିଣ ।
ଏତେବୋଲି ମୁନି ଅମ୍ବରୀଶକୁ ଚାହିଁ
ଲକ୍ଷଣବନ୍ତ ପୁରୁଷ ନିଅ ହେ ରାଜା ତୁହି ।
କର ତୋର ଯାଗ ପ୍ରାପତ ତୋତେ ହେଉ
ଏ ମୋହର କିର୍ତ୍ତି ଯୁଗେ ଯୁଗେ ଥାଉ ।
ଶୂନ୍ୟ ସିଂହ ପୁଣ ଯେ ଅଟଇ ମୁନି ପୁତ୍ର
ଲକ୍ଷଣବନ୍ତ ପୁରୁଷ କରାଇବ ପରାପତ ।
ତୋ ଲକ୍ଷଣବନ୍ତ ପୁରୁଷକୁ ଇନ୍ଦ୍ର ହରିନେଲା
ଋଷି ପୁତ୍ର ମରାଇ ସୁଖୀ ହେବ ବିଚାରିଲା ।
ଏବେ ଯେବେ ନଦେବ ଆଗଯିବ ନାଶ
ତାହାର ଇନ୍ଦ୍ରପଣ ଯେ ତୋତେ ପରାପତ ।
ବିଶ୍ୱାମିତ୍ରଙ୍କର ଏମନ୍ତ ବାଣୀ ଶୁଣି
ଶୂନ୍ୟସିଂହଙ୍କୁ ଘେନିଣ ଚଳିଲେ ନୃପମଣି ।
ଅଯୋଧ୍ୟା ନଗ୍ରରେ ଯାଇ ହୋଇଲେ ପ୍ରବେଶ
ଦେଖିଲେକ ମଣ୍ଡଣି ଯେ ନଗ୍ର ଚଉପାଶ ।
ଋଷି ବିପ୍ରେ ଯାଗଶାଳେ ଅଗ୍ନିରେ ଘୃତଦ୍ୟନ୍ତି ।
ଅମ୍ବରୀଶ ରାଜା ଯାଗେ ପ୍ରବେଶ ଯାଇହୋନ୍ତି
ନୃପତି ଦେଖି ସର୍ବେ ପରମ ସାନନ୍ଦ
ଲକ୍ଷଣବନ୍ତ ପୁରୁଷ ଆଣିଲେ ନରେନ୍ଦ୍ର ।
ମନ୍ତ୍ରୀ ଅମାନତ୍ୟ ଯେ ମିଳିଲେ ସକଳ
ବିଚାର କରେ ମନରେ ଅଯୋଧ୍ୟା ମହିପାଳ ।
ଉତପାତ ପୁଣି ଯେ ଉପୁଜିବ ଏଥ
ତେବେ ଏ ଯାଗ ଯତ୍ନ କରିବା ଉଚିତ ।

ଶୁଣିଣ ମନ୍ତ୍ରୀଗଣ ଉପାୟ ବୁଦ୍ଧି କଲେ
ପୁଷ୍କରିଣୀ ଦୀପ ଦଣ୍ଡିରେ କୁମର ବାନ୍ଧିଲେ ।
କୂଳରେ ଲୋକ ଜଗଇ ଅଛନ୍ତି ଚଉକତି
ଯାଗରେ ବିଜୟ କଲେ ଯେ ନୃପତି ।
ଯବ, ତିଳ, ଘୃତ, ସମିଧ ଆଣି ପୁଣ
ସାଧୁ ସାଧୁ ଧ୍ୱନି ଯେ କଲେ ସର୍ବଜନ ।
ନରମେଧ ଯାଗ ଯେ ସମାପତ ବେଳେ
ମାଜଣା କରାଇଲେ ଋଷିସୁତ ତତକାଳେ ।
ପଶୁ ପ୍ରୋକ୍ଷଣୀ ଯେ ପୂର୍ଣ୍ଣ ଆହୁତି ବେଳେ
କୌଶିକ ମନ୍ତ୍ର ଯେ ଶୂନ୍ୟସିଂହ ଭାଳେ ।
ଇନ୍ଦ୍ରଙ୍କୁ ସୁମରନ୍ତେ ଋଚିକ ସୁତ ସେଥି
ଦେବଗଣ ଘେନିଣ ମିଳିଲେ ସୁରପତି ।
ରାଜାଙ୍କୁ ପ୍ରଶଂସା ଯେ କରଇ ବଜ୍ରଧର
ପ୍ରସନ୍ନ କରାଇଣ ଯେ ମାଗିଲା କୁମର ।
ବୋଇଲା ମୁନି ପୁତ୍ର ନକର ପ୍ରାଣେ ନାଶ
ସକଳ ଦେବତା ଆମ୍ଭେ ହୋଇଲୁ ଯେତୋଷ ।
ଏ ଋଷିର ପ୍ରାଣ ଯେ ଦିଅ ଯେ ମୋତେଦାନ
ଯାଗର ଫଳ ତୁ ଯେ ପାଇଲୁ ରାଜନ ।
ଶୁଣିଣ ନୃପତି ଯେ ସନ୍ତୋଷ ମନ ହୋଇ
ବୋଇଲେ ସୁରରାଜା ମାୟାବୀ ଅଟୁ ତୁହି ।
ଲକ୍ଷଣବନ୍ତ ପୁରୁଷ ମୋହର ହରିନେଲୁ
ଋଷିପୁତ୍ର ଆଣିବାରୁ ଦାନ ଯେ ମାଗିଲୁ ।
ଯାଗର ବିଧି ତୁ ଯେ କରୁଛୁ ନିଷେଧ
ଏକଥା ମାନ ତୁମ୍ଭର ଅଟଇ ଅପରାଧ ।
ଯେମନ୍ତେ ଯାଗ ଶୁଦ୍ଧି ହୁଅଇ ଯେ ପୁଣ
ଇହ ପର ଦୁଇ ଯେମନ୍ତେ ନିର୍ଭାଜାଣ ।
ଶୁଣିଣ ଇନ୍ଦ୍ରଦେବ ପରମ ତୋଷ ହେଲେ
ଲକ୍ଷଣବନ୍ତ ପିତୁଳା ସଜୀବେ ସମର୍ପିଲେ ।
ଦେଖିଣ ଅମ୍ବରୀଷ ହରଷ ମନ ହେଲା
ଋଚିକ ମୁନି ପୁତ୍ରକୁ ଇନ୍ଦ୍ରକୁ ଦାନ ଦେଲା ।
ପିତୁଳା ଅଗ୍ନିରେ ସେ ସମର୍ପିଲା ନେଇ
ତେଣୁ ଯେ ଯାଗରେ ସୁଫଳ ହୋଇଲଇଁ ।
ଯାଗ ସରନ୍ତେ ଶୂନ୍ୟ ସିଂହମେଲାଣି ହୋଇଲା
ପିତା ମାତାଙ୍କର ସନ୍ନିଧେ ମିଳିଲା ।
ଦେଖିଣ ପଚାରିଲେ ପିଅର ଜନନୀ
ପୁତ୍ର ବୋଲେ ପ୍ରାଣ ଦେଲେ ବିଶ୍ୱାମିତ୍ର ମୁନି ।
ତେଣୁ ସେ ଇନ୍ଦ୍ରଦେବ ପିତୁଳା ଆଣିଦେଲା
ତିନିକୁଳ ଜିଣି ମୁଁ ଯେ ବାହୁଡ଼ିଲେ ପରା ।
ଶୁଣିକରି ସନ୍ତୋଷ ଯେହେଲେ ପିତା ମାତା
ଏଥୁ ଅନନ୍ତରେ ଶୁଣ ଦଶରଥ ସୁତା ।
ଅମ୍ବରୀଷ ରାଜା ଯେଣୁ ଇନ୍ଦ୍ର ବୋଲ କଲା
ଧରମ ଆସିଣ ତାକୁ ପ୍ରାପତ ହୋଇଲା ।
ତୋଷ ହୋଇ ସୁରପତି ଦେବଙ୍କୁ ଘେନି ସ୍ୱର୍ଗ
ପୂର୍ବରୁ ବିଧାତା ଯେ ଭିଆଇଲେ ଯାଗ ।
ବ୍ରାହ୍ମଣ ଋଷିରେ ରାଜା ଦକ୍ଷିଣା ବହୁଦେଲେ
ଏଥୁ ଅନ୍ତେ ରାମଚନ୍ଦ୍ର ଶୁଣିବା ହେଉ ଭଲେ ।
ଯାଗ ସରନ୍ତେ ଯେ ଗଲେକ ସର୍ବରାୟେ
ତପି ପରଜା ପଥୁକରୀ ଯେ ଯାହା ପୁରେଯାଏ ।
ସତ୍ୟାନନ୍ଦ କହିବାରୁ ଶୁଣିଲେ ରଘୁବଂଶୀ
ପୁଷ୍କର ତୀର୍ଥେ କଉଶିକ ତପ କରୁଅଛି ।
ସହସ୍ରେ ବରଷ ଯେ ସେଥିରେ ତପ କଲେ
ଦେବତାଙ୍କୁ ଘେନିଣ ବିଧାତା ବିଜେକଲେ ।
ବରମାଗ ବୋଲିଣ ବୋଇଲେ ପିତାମହ
କିମ୍ପାଇ ତପ କରୁ ସେ କଥା ଏବେ କହ ।
ବିଶ୍ୱାମିତ୍ର ବୋଇଲେ ମୁଁ ହେବି ବ୍ରହ୍ମଋଷି
ପ୍ରସନ୍ନ ହୋଇଲେ ଯେବେ ବର ମୋତେ ଦେସି ।
ନୁହଇ କରି ବୋଲି ଯେ ଫେରିଲେ ବିଧାତା
ଯେ ଯାହା ପୁରେ ବିଜୟ ଦେବତା ।
ଏଥୁ ଅନନ୍ତରେ କଉଶିକ ଋଷି ପୁଣ
ଅହନ୍ତା ମନ କରି ତପ କଲେ ଜାଣ ।
ଷଡ଼ ଋତୁ ସହିଣ ବଞ୍ଚିଲେ କ୍ଷୁଧା ତୃଷା
ଦେବତାଏ ଦେଖିଣ ମନରେ କଲେ ଶଙ୍କା ।
ସକଳ ଦେବତାଏ ବିଧାତାରେ କହି
କଉଶିକ ଋଷି ତପ କରୁଛି କଷ୍ଟ ସହି ।
ଅନ୍ନ ପାଣି ଆହାର କିଛି ଯେ ତାର ନାହିଁ
କର ତାକୁ କାରଣ ଦେବତା ପୁଣ ରୁହାଇ ।
ନୋହିଲେ ସେ ଯେ ହୋଇବ ସୁରପତି
ଆମ୍ଭେ ସୁରଗଣ ନାଶ ଯିବୁଟି ଏ ଘାନ୍ତି ।
ଇନ୍ଦ୍ର ଦେବତାର ଯେ ଆକୁଳ ବାଣୀ ଶୁଣି
ମେନକାକୁ ବୋଇଲେ ରାଇଣ କୁଶପାଣି ।
ତୁହି ଗୋ ସୁନ୍ଦରୀ ଏହିକ୍ଷଣି ଯିବୁ
ବିଶ୍ୱାମିତ୍ର ମୁନିଙ୍କର ତପ ବିନାଶିବୁ ।

ତେବେ ଯେସୁସେ ସେ ରହିବେ ଦେବେସୁର
ତୁହି ଯାଇ ସୁନ୍ଦରୀ ଏ କାର୍ଯ୍ୟ ବେଗେ କର ।
କର ଦୁଇ ଯୋଡ଼ି ଯେ ବୋଲଇ ମେନକା
ଅଗୋଚର ତପ କରେ ଗାଧି ରାଜା ସୁତା ।
ମୁହିଁକି ଭାଜନ ହେବି ହେ କୁଶଧର
ସର୍ବଦା କୋପିତ ଯେ ଅଟଇ ମୁନିବର ।
କାମଦେବ ଭସ୍ମ ଯିବ ଯାହାର କୋପରେ
ମୁହିଁ କିସ କରିବି ଯେ ତାହାର ଆଗରେ ।
କୋପରେ ଚାହିଁଲେ ସେ ଯେ ଦେବତା ଆଡ଼ ହୋଇ
ରାଜା ହୋଇଣ ଯେ ସେ ବ୍ରହ୍ମଜ୍ଞାନ ଜପଇ ।
ବଶିଷ୍ଠଙ୍କ ଆଗରେ ଯାହାର ଅଟେ ବାଦ
ହେଲେ ଘେନିଲା ଯେ ହରିଚନ୍ଦନ ସମ୍ପଦ ।
ତ୍ରିଶୂଦ୍ର ଚଣ୍ଡାଳକୁ ସ୍ୱର୍ଗରେ ବସାଇଲା
ପ୍ରତିଜ୍ଞା କରିଣ ନବ ସୃଷ୍ଟି ଭିଆଇଲା ।
ମୋତେ ଯେ ଆଜ୍ଞା ଦିଅ ସାବିତ୍ରୀର ସାଇଁ
ଆଉ କି ଆସିବି ସେଠାରୁ ଦେହବହି ।
କାମ ଯେହ୍ନେ ହର ଯେ ଚାହାନ୍ତେ ହତ ହେଲା
ସେ ଦୋଷ ଆସି ମୋତେ ପ୍ରାପତ ହୋଇଲା ।
ନ ଗଲେ କୋପ ମୋତେ କରିବେ ସୁର ରାଣ
ମୁହିଁ ଗଲେ ନିଶ୍ଚେ ଯେ ହରାଇବି ପ୍ରାଣ ।
ଏକା ଯିବି ମୁହିଁକି ସଙ୍ଗରେ ଲୋକ ଯିବ
ମେନକା ବଚନ ଶୁଣି ବୋଇଲେ ଦଇବ ।
ବସନ୍ତ ମଳୟ ଯେ ତୁମ୍ଭର ସଙ୍ଗେ ଯାନ୍ତୁ
କାମଦେବଙ୍କୁ ଯାଇ ଉଚ୍ଚାଟ କରାନ୍ତୁ ।
ଯେମନ୍ତେ ପାର ତୁମ୍ଭେ କରହେ ଦେବକାର୍ଯ୍ୟ
ପ୍ରବୋଧ କରାଇଣ ବୋଇଲେ ଦେବରାଜ ।
ବିଧାତା ସୁରରାଜା ଘେନି ଚଳିଲା କନ୍ୟା ପୁଣି
ପୁଷ୍କର ତୀର୍ଥରେ ପ୍ରବେଶ ହେଲା ଯାଇ
ବସନ୍ତ ପବନ କାମ ମିଳନ୍ତେ ବନସ୍ତ ପଲ୍ଲବଇ ।
ମଳୟ ପବନ ଯେ ବହିଲା ଧିର ଧିର
କାମଦେବ ବିଜେକଲେ ମୁନିର ଶରୀର ।
ବସନ୍ତ ଋତୁ ପ୍ରକାଶ ବସନ୍ତ କଲେ ଜାଣ
ପୁଷ୍କର ତୀର୍ଥଯାକ ଶୀତଳ ହେଲା ପୁଣ ।
ଗାଧି ରାଜାର ସୁତ ଅଛି ଯେ ତପେ ବସି
ମେନକା ସେହିଠାରେ ପ୍ରବେଶ ଯାଇ ହୋନ୍ତି ।।

ପୁଷ୍କର ତୀର୍ଥରେ ମେନକା କରନ୍ତେ ଯାଇ ସ୍ନାନ
ଏହି ସମୟରେ ଭାଙ୍ଗେ ମୁନିଙ୍କର ଧ୍ୟାନ ।
ଦେଖିଲେ ସୁନ୍ଦରୀ ନାରୀ ଜଳ ତୁଠରେ ଅଛି
ଶରୀରେ କୁଙ୍କୁମ ଯେ ଲେପଇ ମୃଗାକ୍ଷୀ ।
ଝୀନ ବସ୍ତ୍ର ପିନ୍ଧନ୍ତେ ଦିଶଇ ଜାନୁ ଜଙ୍ଘ
ମେନକାକୁ ଦେଖି ମୁନିର ଘାରିଲା ଅନଙ୍ଗ ।
ତ୍ରିଭୁବନ ସୁନ୍ଦରୀ ଯେ ସ୍ୱର୍ଗର ଅପସରୀ
ଯତନରେ ଆସିଅଛି ମୁନିର ମନୋହାରୀ ।
ଚାହିଁବାର ଚକୋର ଚାହାଁଣୀ ଏଙ୍କ ଦୃଷ୍ଟି
ଋଷିଙ୍କର ମନ ଯେ ତାଠାରେ ରହେ ଲାଖି ।
ସ୍ତନ ଯଉବନରେ ଘସଇ ହଳଦୀ
ବିଶ୍ୱାମିତ୍ରଙ୍କର ମନ ମଦନେ ଦଗଧି ।
ବିଶ୍ୱାମିତ୍ର ଦେଖିଣ ବିଚାର କଲେ ମନ
ତ୍ରିଭୁବନେ କେହି ତୋତେ ସରି ନୋହେ ଜାଣ ।
କେବଳ କାରଣେ ତୁ ପ୍ରବେଶ ଆସି ଏଥ
ଦେଖି ପଚାରିବା ବୋଲି ଉଠେ ତପୋବନ୍ତ ।
ସ୍ନାନ ସାରିଣ ଯେ କୂଳରେ ଉଭା ନାରୀ
କୁଞ୍ଚିଲା ପିନ୍ଧିଲା ଯେ ଅମଳାଣ ଶାଢ଼ୀ ।
କେଶ ଶାମଳୀ ସୁନ୍ଦରୀ ଅଳଙ୍କାର ଖଞ୍ଜେନେଇ
ଚରଣ ଅଙ୍ଗୁଠିରେ ଅଳତା ଲଗାଇ ।
ମସ୍ତକରେ ଅଳକା ସିନ୍ଦୂରରେ ଚିତା
କଉଶିକ ପଚାରିଲେ ଶୁଣରେ ବନିତା ।
କେବଳ ଦେଶରୁ ଆସିଛୁ କାହାର ତୁ ପୁତ୍ରୀ
କେବଳ ଦେଶ ଘର କେହୁ ଯେ ତୋର ପତି ।
କିସ ନାମ ତୋହର କେବଳ କୁଳେ ଜାତ
ସ୍ୱରୂପ କରି ମୋତେ କହ କଥା ସତ ।
ଶୁଣିଣ କନ୍ୟା ବୋଲେ ମୁହିଁ ସ୍ୱର୍ଗ ଅପସରୀ
ମେନକା ନାମ ପୁଣି ଅଟଇ ମୋହରି ।
ପବିତ୍ର ତୀର୍ଥ ବୋଲି ସ୍ନାନ ଏଥି କଲି
ଏ ତୀର୍ଥ ସ୍ନାନ କରି ତୁମ୍ଭଙ୍କୁ ଦେଖିଲି ।
ମୁନି ବୋଇଲେ ତୋତେ ମୁଁ ଦେଖିଣ ହେଲି ବାଇ
ତୋହର ରୂପ ଦେଖିଣ ତପ ଯେ ଭାଙ୍ଗଇ ।
ସୁରଙ୍ଗ ହୃଦୟରେ ତୋର ଚୁମ୍ବନ ଦିଅସଖି
ହୃଦୟରେ ଦୁଇ କୁଚ ଲଗାଇ ଭିଡନିକି
ବାହାରେ ବାହା ଲଗାଇ ମୋତେ କୋଳ କର
ମଦନେ ବିହ୍ୱଳ ହେଲି ବାରେକ ଉଦ୍ଧର ।

ଏତେ ବୋଲି ମୁନି ଯେ ମଦନରେ ବାଇ
ମେନକା ସୁନ୍ଦରୀକୁ କୋଳେ କଲେ ଯାଇ ।
ଦେଖିଣ ସୁରଗଣ ହୋଇଲେ ଆନନ୍ଦ
ବିଧାତା ଆନନ୍ଦ ଯେ ଆନନ୍ଦ ସୁରବୃନ୍ଦ ।
ଏଥୁ ଅନନ୍ତରେ ଯେ ବିଶ୍ୱାମିତ୍ର ଋଷି
ମେନକାକୁ ଧରିଣ ମଢ଼ିଆରେ ପଶି ।
କଲେକ ରମଣ ଯେ ବିବିଧ ରତି କରି
ତପକୁ ଛାଡ଼ିଲେ ଯେ ସୁରତି ରତି କରି ।
ନିମଗ୍ନ ମଢ଼ିଆରେ ପଶିଣ ରତି ପ୍ରୀତି
ଏମନ୍ତେ ମାସେ ପକ୍ଷେ ରହିଣ ଗଲା ସେଥି ।
ବାର ବରଷ ଯାଏ ଶୃଙ୍ଗାର ରତି କଲେ
କାଳେ ମୁନି ଯାଏ ଶୃଙ୍ଗାର ଉପେକ୍ଷିଲେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ହେ ଦାଶରଥି
ସୁରତି ଭାବ ଛାଡ଼ି ବିଶ୍ୱାମିତ୍ର ଯତି ।
ହେମବନ୍ତ ସନ୍ନିଧେ କୌଶିକ ନଦୀତୀରେ
ଏମନ୍ତେଣ ତପ ଯେ କରନ୍ତି ମୁନିବରେ ।
ଏମନ୍ତେ ସହସ୍ରେକ ବରଷ ତପ କଲେ
ସ୍ୱର୍ଗର ଇନ୍ଦ୍ର ଦେଖି ଭୟରେ ପଳାଇଲେ ।
ଦେବତାଏ ଡରିରେ ଅମର ସ୍ୱର୍ଗେ ଥାଇ
ଦେବବର ଆଗରେ କହିଲେ ସର୍ବେ ଯାଇ ।
ଭୋ ଦେବ ତପ ଯେ କରନ୍ତି ଗାଧିସୁତ
ନିଶ୍ଚୟ ସଂସାର କରିବେ ଏବେ ହତ ।
ଚାଲ ଆମ୍ଭେ ପ୍ରବୋଧ କରିବା ତାଙ୍କୁ ଯାଇ
ବେଦବର ବୋଇଲେ ଦେବତାଗଣ ଚାହିଁ ।
ବ୍ରହ୍ମଋଷି ହୋଇବାକୁ କରିଅଛି ଇଚ୍ଛା
ଚାଲ ଏବେ ସମସ୍ତେ କରିବା ତାଙ୍କୁ ପୃଚ୍ଛା ।
ଏତେ ବୋଲି ବିଧାତା ଦେବଙ୍କୁ ଘେନି ସଙ୍ଗେ
ବିଶ୍ୱାମିତ୍ରଙ୍କ ପାଶେ ମିଳିଲେ ଯାଇ ବେଗେ ।
ବେଦବର ବୋଇଲେ ମାଗ ଋଷି ବର
ଯେଉଁ କଥା ମନରେ ବାଞ୍ଛା ଯେ ତୁମ୍ଭର ।
ଦେବତାଙ୍କଠାରୁ ଏସନକ ବାକ୍ୟ ଶୁଣି
ବିଶ୍ୱାମିତ୍ର କହିଲେ ବେଦବରଙ୍କୁ ପୁଣି ।
ବ୍ରହ୍ମଋଷି ନୋହିଲେ ମୁଁ ନ ଛାଡଇ ତପ
ପାରିଲେ କାରଣ କର ଜଗତର ବାପ ।
ଧାତା ବୋଇଲେ ଯେବେ ଛାଡ଼ିବୁ ହିଂସାରାଗ
କାମ କ୍ରୋଧରୁ ତେଜିଲେ ବ୍ରହ୍ମଋଷି ପଦ ।

ଏତେ କହି ଦେବେ ଯେ ଗଲେ ସ୍ୱର୍ଗପୁର
ଗାଧିସୁତ ମନରେ ଯେ କରଇ ବିଚାର ।
ତପ ମୋର କେବେ ଯେ ନୋହିଲାକ ସିଦ୍ଧି
ନିଶ୍ଚୟ ଅହନ୍ତା ମୋତେ କଲେ ବିବୁଧାଦି ।
ଏତେ ବିଚାରିଣ ମୁନି ଉପରକୁ ଚାହିଁ
ପୁଣି ତପ କଲେ ଯେ ବିସ୍ମୟ ମନ ହୋଇ ।
ବୋଇଲେ ଇନ୍ଦ୍ର ବେଦବର ମୁଖ ଚାହିଁ
ବିଶ୍ୱାମିତ୍ର ତପ ଭଗ୍ନ କରିବାକୁ ଯାଇଁ ।
ଏତେ ବୋଲି ଇନ୍ଦ୍ର ଯେ ରମ୍ଭାକୁ ଚାହିଁ କହି
ବିଶ୍ୱାମିତ୍ର ଋଷି ତପ ଭଗ୍ନକର ଯାଇ ।
ବୋଇଲେ ରମ୍ଭା ତୁମ୍ଭେ ଶୁଣ ଶଚିପତି
ଦେଖିଲେ ହେ ମୋର ହୋଇବବିକୋତି ।
ଯେତେବେଳେ ମୋତେ ରକ୍ଷା ନକରିବ କେହି
ମୋହର ଉପାୟ ଯେ ମୁଁ କରିବଇଁ ।
ଇନ୍ଦ୍ର ବୋଲେ ମୁଁ ଯେ କୋକିଳ ହୋଇବି
କାମ ମଦନ ଘେନି ତୋର ସଙ୍ଗେ ଥିବି ।
ଯନ୍ତ୍ର ବୀଣା ବଜାଇଣ ଗାଇବୁ ତୁ ଗୀତ
କ୍ଷଣକରେ ମୋହିତ ହୋଇବ ଋଷି ଚିତ୍ତ ।
ମଦନର ସଙ୍ଗତରେ କାମ ବାଣ ଘେନି
କୋକିଳ ରୂପ ଧରି କରିବି ମୁଁ ଧ୍ୱନି ।
ଏମନ୍ତ ବୋଲି ଯେ ସ୍ୱର୍ଗର ସୁରପତି
ମଦନକୁ ଘେନିଣ ସଙ୍ଗରେ ଚଳି ଯାନ୍ତି ।
ରମ୍ଭା ସୁନ୍ଦରୀର ଯାଇତେ ମନ ନାହିଁ
ଦେବତାଏ ଗଲେ ଯେ ବୀଣା ଯନ୍ତ୍ର ବାଇ ।
ଋଷି ତପ ସ୍ଥାନରେ ହେଲେ ପରବେଶ
ବନସ୍ତ ପଲ୍ଲବିଲା ଯେସନେ ମଧୁମାସ ।
କାମଦେବ ଆଚ୍ଛାଦିଲା ସମସ୍ତଙ୍କ କାୟେ
ଏସନ ସମୟରେ ରମ୍ଭା ଯାଇ ହୁଏ ।
କୋକିଳ ରୂପରେ ହୋଇଥିଲେ ବଜ୍ରପାଣି
ଗଳା ରତ୍ନେ ରାବ କଲେ ସୁସ୍ୱରରେ ବାଣୀ ।
ବିଶ୍ୱାମିତ୍ର ମୁନିଙ୍କର ଯୋଗଲୟ ଚିତ୍ତ
ଊର୍ଦ୍ଧ୍ୱ ବାହୁ ହୋଇଣ ଉଭା ଗାଧିସୁତ ।
ରମ୍ଭା ଗାୟନ ଯେ କରଇ ଯନ୍ତ୍ର ବାଇ
ବିଶ୍ୱାମିତ୍ର ଶ୍ରବଣରେ ଶବଦ ଶୁଭଇ ।
ନିର୍ମଳ ନୟନରେ ଋଷି ଦେଲେ ଦୃଷ୍ଟି
ଦେଖିଲେ ଆଗରେ ଉଭା ହୋଇଛି ବିମ୍ବୋଷ୍ଠୀ ।

ମେନକାର ପ୍ରାୟ ବିଚାରି ଋଷି ମନେ
ତୁ ମୋହର ଅସହଣୀ ଅଟୁରେ ନାରୀ ଏଣେ ।
ତ୍ରିପୁର ମୋହିନୀ ରମ୍ଭା ବୀଣା ଯନ୍ତ୍ର ବାଇ
ଅଳପ ଅଳପ କରି ମୁନି ପଚାରଇ ।
ରମ୍ଭା ସୁନ୍ଦରୀ କହେ ମୁଁ ନୁହଇ ମେନକା
ମୋହ ନାମ ରମ୍ଭା ମୁଁ ସ୍ୱର୍ଗର ନାୟିକା ।
ଅପସରୀରେ ମୋତେ ଶ୍ରେଷ୍ଠ ବୋଲି ଲେଖି
ସ୍ୱର୍ଗରୁ ଅଇଲି ମୁଁ ତୁମ୍ଭର ତପ ଦେଖି ।
ସେବା କରିବାକୁ ଆସିଛି ତୁମ୍ଭ ପାଶ
ଶୁଣିକରି କୋପକଲେ ତାକୁ ଗାଧିସୁତ ।
କିମ୍ପାଇ ଅଇଲୁ ତୁ କେବଣ ଗୁଣ ବହି
ଜାଣିଲି ଦେବ ତୋତେତଛନ୍ତି ପଠିଆଇ ।
ମୋହର ତପକୁ ତୁମ୍ଭେ ଭାଙ୍ଗିବାକୁ ଆସ
ଅନଳ ନୟନରେ କରନ୍ତି ଧୂଳି ପାଉଁଶ ।
ସ୍ତ୍ରୀ ଅଙ୍ଗ ବୋଲିକରି ଆଜ କଲି ଦୟା
ଯାଆରେ ସୁନ୍ଦରୀ ହୁଅ ପାଷାଣରେ ହିଆ ।
ଶୁଣି ରମ୍ଭା ରମ୍ଭାପତ୍ର ପ୍ରାୟ ଥରହର
ବୋଲଇ ଭୋ ମୁନିମୋତେ କର ପ୍ରତିକାର ।
ବିଶ୍ୱାମିତ୍ର ବୋଲେ ଅପସରୀ ମୁଖ ଚାହିଁ
ଏହିକ୍ଷଣି ମୁକତ ପାଇବୁ ଆରେ କାହିଁ ।
ଯେଉଁକାଳେ ମୁହିଁ ଯେ ହୋଇବ ବ୍ରହ୍ମମୁନି
ସେ ବେଳେ କାରଣ ତୁରେ ପାଇବୁ କାମିନୀ ।
ଯହୁଁ କଉଶିକ ତାକୁ ବୋଇଲେ ଏ ବାଣୀ
ତତ୍‌କ୍ଷଣେ ପାଷାଣ ଯେ ହୋଇଲା ତରୁଣୀ ।
ଦେଖିଣ ପଳାଇଲେ ଇନ୍ଦ୍ର କାମଦେବ
ଜାଣିଲେ ମହାମୁନି ଆମ୍ଭଙ୍କୁ ଶାପଦେବ ।
ଏତେ ବିଚାରଣ ତହୁଁ ଗଲେ ବେନି ଜନ
ବ୍ରହ୍ମାଙ୍କୁ କହିଲେ ଯାଇ ସହସ୍ରଲୋଚନ ।
ଧର୍ମରେ ଆଜ ଆମ୍ଭେ ଅଇଲୁ ପ୍ରାଣ ପାଇ
ରମ୍ଭା ପାଷାଣ ହୋଇଲା ଏବେ ହେ ଗୋସାଇଁ ।
କି ବୁଦ୍ଧି କରିବା ଏବେ ତୁମ୍ଭେ ତାହା କହ
ଶୁଣିକରି ଆପଣେ ହସନ୍ତି ପିତାମହ
ହେମଗିରି ବନେ କଉଶିକ ନଦୀତୀରେ
ଦେବଗଣ ଘେନି ପ୍ରବେଶ କୁଶଧରେ ।
ଋଷିଙ୍କି ବୋଇଲେ ତୁ କିମ୍ପାଇ ତପ କରୁ
ଦୁଃଖେ ଦେହ କଦର୍ଥନା କିମ୍ପାଇ ତୁ ମରୁ ।

କହ କିସ ଇଚ୍ଛା ଦେବା ତୋତେ ଆମ୍ଭ ବର
ମୁହିଁ ସେ ବ୍ରହ୍ମା ଜାଣ ଜଗତ ଈଶ୍ୱର ।
ବିଧାତାର ବଚନେ ବୋଲନ୍ତି କଉଶିକ
ଭୋ ପିତାମହ ହେ ମୋତେ ଦେବାକ ବାରେକ ।
ବ୍ରହ୍ମ ଋଷି ହେବାକୁ ମୋହର ବଡ଼ ମନ
ଦିଅହେ ଆଜ୍ଞା ମୋତେ ଚତୁର ବଦନ ।
ବ୍ରହ୍ମା ବୋଇଲେ ତୁ ଏବେ ହୁଅ ବ୍ରହ୍ମଋଷି
ଶୁଣିଣ ଅତି ସନ୍ତୋଷ ଗାଧିରାଜା ଶିଷି ।
ଏଥୁ ଅନନ୍ତରେ ତୁମ୍ଭେ ନୃପବର
ବିଶ୍ୱାମିତ୍ର ଯତି ଅତି ଆନନ୍ଦ ଶରୀର ।
ବଶିଷ୍ଠଙ୍କ ସନ୍ନିଧିକୁ ଗଲାକ ହରଷେ
ଦେଖିଣ ପଚାରିଲେ ପିତାମହ ଋଷି ସେ ।
କ୍ଷେମେଣ ବ୍ରତିତୁ ଅଛୁନା ଅପଚାରି
ଜଳ, ସ୍ଥଳ ତପସ୍ଥାନେ ମିଳିଲେ ତୋହରି ।
ବିଶ୍ୱାମିତ୍ର ବୋଇଲେ ଯେ ତୁମ୍ଭ ପ୍ରାସାଦେ
ବିପିନେ ତପ ମୁଁ ଯେ କରି ଅପ୍ରମାଦେ ।
ତୁମ୍ଭର କୁଶଳ ନା ଆହେ ଅଟଇ ସମସ୍ତ
ବଶିଷ୍ଠ ବୋଇଲେ ତୁମ୍ଭେ ଶୁଣ ତପୋବନ୍ତ ।
ଆଜ ମୋର ସୁଫଳ ସକଳ ହୋଇଲା
ରାଜଋଷି କଉଶିକ ମୋ ପୁରେ ଅଇଲା ।
ବିଶ୍ୱାମିତ୍ର ଶୁଣି କୋପେ ହେଲେ ଥରହର
ବାହୁଡ଼ି ଆସିଣ ଯେ ପ୍ରବେଶ ବନରେ ଘୋର ।
କଠୋର ତପ ପୁଣି କଲେ ସେ ବହୁତ
ପୁଣି ପ୍ରସନ୍ନ ଆସି ହୋଇଲେ ବିଧାତ ।
ବ୍ରହ୍ମା ବୋଇଲେ ତୋର କେବଣ କଥା
ଏଡ଼େ ବଡ଼ ତପ କରୁ କାହିଁକି ମହାଜ୍ଞାତା
ବିଧାତା ବୋଲେ ମୁଁ ବ୍ରହ୍ମ ଋଷି କଲି
ଶୁଣ ତୁହି ମାୟାରେ ମରୁଅଛୁ ଭୁଲି ।
କଉଶିକ ବୋଇଲେ ଯେବେ ବଶିଷ୍ଠ ଆସଇ
ମୋତେ ରାଜଋଷି ସର୍ବଦା ବୋଲଇ ।
ଶୁଣିଣ ଟହଟହ ଯେ ହସନ୍ତି ବେଦପତି
ତୁ ଏବେ ଛାଡ଼ିଣ ତପ ଯାଅ ମହାଯତି ।
ବିଶ୍ୱାମିତ୍ର ତହିଁ ଯେ ବୋଲନ୍ତି କୁଶଧାରୀ
ବଶିଷ୍ଠ ତହିଁ କୁ ତୁ ଯାଅ ତପଚାରୀ ।
ସେ ଯେବେ ତୋତେ ଏଥର ନକରେ ଆଦର
ରାଜ ଋଷି ବୋଇଲେ ତୁ ଆସିବୁ ମୁନିବର ।

ଯେବେ ତୁ ବଶିଷ୍ଠଙ୍କଠାରୁ ପିଠିଆଇ ଆସୁ
ସେ ମହାତ୍ମା ତୋର ଯୋଗୁଁ ହେବ ଧୂଳିପାଂଶୁ ।
ଏକଥା ସତ ମଣିଣ ଯାଅ କଉଶିକ
ଏତେ ବୋଲି ବ୍ରହ୍ମା ବିଜେକଲେ ବ୍ରହ୍ମଲୋକ ।
ଶୁଣିଣ ବିଶ୍ୱାମିତ୍ର ଯେ ପରମ ତୋଷ ହୋଇ
ବଶିଷ୍ଠଙ୍କ ଆଶ୍ରମରେ ମିଳିଲେକ ଯାଇ ।
ଦେଖିକରି ପଚାରଇ ବ୍ରହ୍ମାଙ୍କ ତନୟେ
କି କାରଣେ ରାଜରଷି ଗମନ କରିଥାଏ ।
ଗାଧି ରାଜାର ନନ୍ଦନ ଏବଚନ ଶୁଣି
ବିଚାର କରନ୍ତି ଯେ ମନେ ମନେ ପୁଣି ।
ପିଠି ଦେଇଣ ଗଲେ ମରିବ ମହାରଷି
ନୋହିଲେ ଧାତା ବଚନ ହୋଇବ ଯେ ଦୂଷି ।
ଏ ଦୁଇ କଥା ଆସି ସଙ୍କଟ ହୋଇଲା
ଏତେ ବୋଲି ମୁନି ପୁଣି ପଛଘୁଞ୍ଚା ଦେଲା ।
ବଶିଷ୍ଠ ବିଚାରିଲେ କ୍ରୋଧ ଏହାର ଗଲା
ଏବେ ସେ ମହାମୁନିରେ ଗଣିତା ହୋଇଲା ।
ଏତେ ବୋଲି ବଶିଷ୍ଠ ବିଶ୍ୱାମିତ୍ରଙ୍କୁ ରାଇ
ଆସ ଆସ ବ୍ରହ୍ମରଷିରେ ଗଣିତା ଯେ ହୋଇ ।
ଗଉରବ କରିଣ ସେ କତିରେ ବସାଇଲା
ଯେ ବିଧି ବିଧାନ କରି ଶିରେ ଅର୍ଘ୍ୟଦେଲା ।
ଯେଣୁ କଉଶିକ ହୋଇଲେକ ବ୍ରହ୍ମରଷି
ନିଜ ତନୁ ପାଇଲା ଯେ ରମ୍ଭା ଶୁଭ୍ର କେଶୀ ।
ଶାପ ମୁକ୍ତ ହୋଇଣ ଯେ ସ୍ୱର୍ଗକୁ ହିଁ ଗଲା
ସତ୍ୟାନନ୍ଦ ଏହା ଯେ ଶ୍ରୀରାମଙ୍କୁ କହିଲା ।
ସପ୍ତ ରଷିଙ୍କର ଏସନକ ରୂପ ଏକ
ବ୍ରହ୍ମରଷି ହୋଇଣ ବସିଲା କଉଶିକ ।
ସତ୍ୟାନନ୍ଦ ମୁଖରୁ ଏସନକ ଶୁଣି
ମୁନିମାନେ ସନ୍ତୋଷ ହୋଇଲେ ତାହା ଜାଣି ।
କଉଶିକ ପାଦରେ ସେ କଲେ ନମସ୍କାର
ସାଧୁ ସାଧୁ ମହିମା ଯେ ତୁମ୍ଭର ମୁନିବର ।
ଏଥୁ ଅନନ୍ତରେ ଜନକ ତପଚାରୀ
କିସ କାର୍ଯ୍ୟେ ଅଇଲ ସେ ବୋଲିଣ ପଚାରି ।
ବିଶ୍ୱାମିତ୍ର ବୋଇଲେ ହେ ଦଶରଥ ନାନ
ଈଶ୍ୱର ଧନୁ ଦେଖିବାକୁ ତାଙ୍କର ଯେ ମନ ।
ତେଣୁ ଆମ୍ଭେ ଆସିଅଛୁ ତାହାଙ୍କୁ ଯେ ଘେନି
ହୁଅ ତୁମ୍ଭେ ପ୍ରସନ୍ନ ହେ ଜନକ ମହାମୁନି ।

ପୁରାତନ ଧନୁକୁ ପୂର୍ବ ପୁଣ୍ୟ ଥିଲେ ଦେଖି
ଶ୍ରୀରାମର ନିର୍ମଳ ହୋଇବ ବେନି ଆଖି ।
ବିଶ୍ୱାମିତ୍ରର ବଚନେ ବୋଲଇ ଜନକ
କି କରିବେ ଏହୁ ବାଳୁତ ଦେଖିଲେ କାର୍ମୁକ ।
ବିଷ୍ଣୁଙ୍କର ତେଜରୁ ଯେବଣ ଧନୁ ଜାତ
ହର ସେ ବହିବାକୁ ଅଟନ୍ତି ସାମରଥ ।
ଦକ୍ଷ ନାଥ ଭାଙ୍ଗିଲେ ଯେ ଏ ଧନୁକୁ ଧରି
ଦେବତାଙ୍କୁ କାଟିଲେ ସେ ଖଣ୍ଡ ଖଣ୍ଡ କରି ।
ଯହୁଁ ସେ ବହୁତ ସ୍ତୁତି କଲେ ପିତାମହ
ତେଣୁକରି ସେ ଯେ ଲଗାଇଲେ ଦେବ ।
ସୁରଗଣ ନିବାରଣ ଅଟନ୍ତି ଶଙ୍କର
ପ୍ରବେଶ ହେଲେ ଯାଇ କପିଳାସ କନ୍ଦର ।
ମୋହର ଉପର ବଂଶେ ନିମି ନାମେ ନୃପତି
ତହୁଁ ଅଷ୍ଟମ ପୁରୁଷ ଯେବଣ ଆଦିପତି ।
ତାହାର ଆଗରେ ଯେ ଥୋଇଲେ ଶରାସନ
ରୁଦ୍ରକୁ ଭକତି ଯେ ହୋଇଲା ରାଜନ ।
ପ୍ରସନ୍ନ ହୋଇଣ ଯେ ବୋଇଲେ ତ୍ରିପୁରାରୀ
ଏ କୋଦଣ୍ଡ ଥୋଇଣ ଥାଅଁ ହେ ଦଣ୍ଡଧାରୀ ।
ଏହାକୁ ପୂଜିଲେ ଯେ ଆୟୁଷ ବୃଦ୍ଧିହୋଇ
ଧନ ଜନ ସମ୍ପଦ ବହୁତ ଶିରୀ ପାଇ ।
ଶତ୍ରୁଙ୍କର ଦର୍ପ ଏ ହରଇ ଅନିମିତ୍ତେ
ଅକଳ ବଳ ଧନୁ ଏହାର ବଳ ଅପ୍ରମିତେ ।
ଦଶ ଦିଗପାଳ ଏହା ନପାରନ୍ତି ତୋଳି
ସ୍ୱୟଂ ଶିବଧନୁ ଏ ଅଟନ୍ତି ମହାବଳୀ ।
ମୁହିଁତ ଏହି ଧନୁ ଧରିତ ସାମରଥ
ଠାବରୁ ଚାଳିତ ନ ପାରଇ ଶଚିନାଥ ।
ଏ ଧନୁ ଥୋଇଣ ତୁ ଥିବୁ ଯତ୍ନ କରି
ରବି ତଳେ ଜାତ ଯେ ହୋଇବେ ଚକ୍ରଧାରୀ ।
ବାମକରେ କୋଦଣ୍ଡ ଧରିବେ କଥାଛଳେ
ତୋହର ବଂଶ ଯାକ ଦେଖିବ ବେନି ଡୋଳେ ।
ଏତେ ବୋଲି ଧନୁ ଯେ ଧଇଲେ ଦେବହର
ବୋଇଲେ ଜନକ ମୁନି ଶୁଣମୋ ଉତ୍ତର ।
ମୋର ପିତୃଲୋକ ଯେ ପୂଜିଲେ ଶରାସନ
ଇନ୍ଦ୍ର ଦେବତା ମାନି କଲେକ ସନମାନ ।
ପୂର୍ବର କଥା ଘେନିଣ ମୁହିଁ ପୂଜା କଲି
ମନ ବଚନ କର୍ତ୍ତବ୍ୟ ଆନ ନ ଧରିଲି ।

ବସୁ ଦେବତା ଜାଣି ମୁଁ ଅରାଧୁ ଯେ ଅଛି
ଆବର କଥା ଏକ ଶୁଣ ଗାଧି ବସି ।
ଅଯୋନି ସମ୍ଭୂତ ଯେ ଜାତ ମୋହର ଦୁହିତା
ସର୍ବଗୁଣେ ସୁଲକ୍ଷଣୀ ନାମ ଅଟେ ସୀତା ।
ରୂପ ଗୁଣେ ସୁନ୍ଦର ତାକୁ ପଟାନ୍ତର ନାହିଁ ।
ବିଚାରୁଛି ତାହାକୁ ବିଭା କରିବାର ପାଇଁ ।
ଯହୁଁ ତାର ଅନୁରୂପେ ବର ନ ପାଇଲି
ଧନୁ ଆଗରେ ଯେ ମୁହିଁ ସତ୍ୟ କଲି ।
ଭୋ ଶରାସନ ଈଶ୍ୱର ମୋତେ ତୋତେ ଦେଲେ ।
ପ୍ରତ୍ୟକ୍ଷ ନାରାୟଣ ବୋଲିଣ ବୋଇଲେ ।
ତୁ ଯେବେ ପ୍ରତ୍ୟକ୍ଷ ଅଟୁ ତେବେ ଚକ୍ରପାଣି
ସୀତୟା ନାମରେ ଯେ ମୋହର ଦୁଲଣୀ ।
ତାହା ପାଇଁ ବର ମୁଁ ଖୋଜିତ ନ ପାଇଲି
ତେଣୁ ତୋର ଆଗରେ ମୁଁ ଆସିଣ କହିଲି ।
ନିଶ୍ଚୟେ ଯେ ପରାକ୍ରମ ପାରେ ତୋତେ ତୋଳି
ତାକୁ ବିଭା କରିବି ଯେ ମୋହର ଦୁଲାଳୀ ।
ଏ ମୋହର ସତ୍ୟ ସତ୍ୟ ନୁହେଁ ପୁଣ ଆନ
ପ୍ରସନ୍ନ ହୁଅ ମୋତେ ହର ଶରାସନ ।
ଏମନ୍ତ ବୋଲିଣ ମୁହିଁ ଯେ ସତ୍ୟ କଲି
ଏ ପୃଥ୍ୱୀ ରାଜାମାନଙ୍କୁ ନିମନ୍ତ୍ରଣ କଲି ।
ନଗ୍ରପୁରେ ମଣ୍ଡିଣ ମୁଁ କରାଇଲି ତୋଷ
ଧନୁ ଦେଇ ସମର୍ପିଲି ରାଜାଙ୍କର ପାଶ ।
ବୋଇଲି ଶୁଣ ତୁମ୍ଭେ ସକଳ ଦେଶ ରାୟେ
ଅଯୋନି ସମ୍ଭୂତେ ମୋର ଅଛି ଦୁହିତାଏ ।
ରୂପ ଗୁଣେ ସୁନ୍ଦର ନାହିଁ ପଟାନ୍ତରୀ
ଯୁବା ବୟସ ଆସିଣ ହେଲାଣି କୁମାରୀ ।
ଧନୁ ଧରିଣ ଯେବେ ଗୁଣ ଦେଇ ପାର
ଯୁବତୀ ଗୁଣନିଧି ଯେ ହୋଇବ ତାହାର ।
ଏ ମୋହର ସତ୍ୟ ଯେ ନୁହଇ ପୁଣ ଆନ
ଶୁଣିଣ ସନ୍ତୋଷ ହେଲେ ସକଳ ରାଜନ ।
ବଳେଣ ଧନୁ କେହି ନ ପାରିଲେ ତୋଳି
ଅଜ୍ଞାନ ହୋଇ ମୁଖରୁ ରୁଧିର ନିର୍ଗଳି ।
ଧନୁ ଯେ ଛୁଇଁଲେ ଯେ ହେଲେ ହତ ବୀର୍ଯ୍ୟ
ମୂର୍ଚ୍ଛା ହୋଇଣ ସେ ଛାଡ଼ିଲେ ନିଜ ତେଜ ।
କେହି ସେ ଶରାସନକୁ ନ ପାରିଲେ ତୋଳି
କନ୍ୟା ନେବାକୁ ମନ ଅଛି ଯେ ସବୁଙ୍କରି ।

ବେନି ବରଷ ଯାକରେ ନ ପାରିଲେ ଧନୁ ତୋଳି
ଲଜ୍ଜା ଭରେ ରାଜାମାନେ ସଭାରେ ଆସି ମିଳି ।
ଏମନ୍ତେ ଏଗାରବରଷ ଏଗାର ଥର ଯାଗ କଲା
ତେଣୁ ସେ ଜନକ ଋଷି ସ୍ୱୟଂମ୍ୱର କଲା ।
ବୋଇଲି ହାଟୁଆ ବାଟୁଆ ଯେତେ ପ୍ରଜାଜନ
ଅଛବ ଚଣ୍ଡାଳ ଜାତି ଯେତେ ଯେ ଅଛପୁଣ ।
ଯେହୁ ଧରିବ ଧନୁ ତାହାକୁ ଦେବି କନ୍ୟା
ଏ ମୋହର ପ୍ରମାଣ କଥା ନୁହଇ ଆନ କିନା ।
ଶୁଣିକରି ସମସ୍ତେ ଧନୁ ଘରକୁ ଚାହିଁ
ଶିବଧନୁ ଦେଖିଣ ହତ ଯେ ଜ୍ଞାନ ହୋଇ ।
ରାଜରଷି ବିପ୍ର ଯେ ପ୍ରଜାଜନ ପୁଣ
ହାଟୁଆ ବାଟୁଆ ଯେ ପ୍ରଜା ଭିନ୍ନ ଭିନ୍ନ ।
କେ ତୋଳିବ ଧନୁ ବୋଲି ଅଛନ୍ତି ଏଥି ରହି
ଏଥିରେ ଏଗାରଥର ରାଜା ଗୋଳ ହୋଇ ।
ଋଷିମାନେ ରାଜାଙ୍କୁ କହିଲେ ପୁଣ ଟାଣ
ବଳବନ୍ତ ପଣ କଲେ କରିବୁ ଭସ୍ମ ଜାଣ ।
ରାଜାଙ୍କ କଳହ ଦେଖି ପର୍ଶୁରାମଙ୍କୁ ଆଣି
ଏଗାର ବରଷ ହେଲା ଥିଲେ ସେ ଏଥି ପୁଣି
ଏବେ ବେନିମାସ ହେଲା ତପକୁ ଅଛି ଯାଇ
ରାଜାମାନଙ୍କୁ ଚଦିଣ ଗଲା ସେ ପୁଣ ସେହି ।
ବୋଇଲା ଗୋଳକଲେ ମୁଁ ଗଦାରେ ନିବାରିବି
ଶମନ ରାଜା ପୁରକୁ ତୁମ୍ଭଙ୍କୁ ଚାଳି ଦେବି ।
ଶୁଣ ହେ ଶ୍ରୀରାମ ଯେ ଧନୁ ଯାଗର କଥା
ଦୁହିତା ନିମନ୍ତେ ଯାଗକଲେ ଜନକ ଋଷି ଚେତା ।
ବଳରାମ ଦାସ ଯେ ଶ୍ରୀହରି ଚରଣ
ଶରଣ ପଶିଲି ଏବେ ରଖ ହେ ରଘୁରାଣ ।
ଏଥୁ ଅନନ୍ତରେ ଯେ ସତ୍ୟାନନ୍ଦ କହି
ତୁହି ଯେ ନାରାୟଣ ଜନ୍ମ ନର ଦେହି ।
ଯେତେବେଳେ ଶୁଣିଲିଣି ଜନନୀ ମୁକତ
ଜାଣିଲି ନାରାୟଣ ଜନ୍ମ ଯେ ସାକ୍ଷାତ ।
ବୋଇଲେ ଜନକ ତାରେ ଉତ୍ସବ ଆନନ୍ଦ
ହୁଳହୁଳି ଶବଦରେ ଗହଳି ପ୍ରମୋଦ ।
ଆଜତ ଅଗ୍ନି ସ୍ନାନ ଯେ ଦୁଇ ଅଗ୍ନିଙ୍କର
ସେଥିରେ ସକାଶେ ଆଜି ଉତ୍ସବ ବେଭାର ।
ଅଗ୍ନିରେ ସ୍ନାନ କରିବାରୁ କଲେ ବନ୍ଦାପନା
ତେଣୁ ହୁଳହୁଳି ଶବଦ ଗୋଳକିନା ।

ଶ୍ରୀରାମ ପଚାରିଲେ ଶୁଣ ହେ ସତ୍ୟାନନ୍ଦ
ଏଗାର ବର୍ଷ ଷଡ଼ମାସ ଯାଗରେ ଆନନ୍ଦ ।
ରାଜା, ପ୍ରଜା ଋଷି, ବ୍ରାହ୍ମଣେ ଏଥି ମେଳ
ହାଟୁଆ ବାଟୁଆ ଯେ ଅଛଇ ଚଣ୍ଡାଳ ।
ଏମାନଙ୍କୁ ଚରଚା ଜନକ ଋଷି କରି
କେତେ ଦ୍ରବ୍ୟ ଧନ ଘରେ ଅଛଇଁ ସମ୍ଭାଳି ।
ଶ୍ରୀରାମଠାରୁ ପୁଣି ବୋଇଲେ ସତ୍ୟାନନ୍ଦ
ଆଗେ ଜନକ ଋଷି ତପରେ ପ୍ରମୋଦ ।
ତପ ଦେଖି ବେଦବର ଆସିଣ ବର ହେଲେ
ବ୍ରହ୍ମମୁନି ହୁଅ ବୋଲି କୁଶପାଣି କହିଲେ ।
ଶୁଣିଣ ଜନକ ଯେ ବେଦବରେ କହି
କାମଧେନୁ ସିନା ଥିଲେ ବ୍ରହ୍ମମୁନି ହୋଇ ।
ଶୁଣିଣ ବିଧାତା ଯେ ସୁରଭି ଆଣି ଦେଲେ
ସୁରଭି ପାଇ ଜନକ ନିଶ୍ଚିନ୍ତ ହୋଇଲେ ।
ସେ କାମଧେନୁର ଯେ ପ୍ରସାଦେ ଜନକ
ନିଶ୍ଚିନ୍ତ ହୋଇଲେ ଯେ କରଇ ଯାଗ କୃତ୍ୟ ।
ସମସ୍ତଙ୍କ ଅର୍ଦ୍ଦୋଳି ସହଇ କାମଧେନୁ
ଯେ ଯାହା ଲୋଡଇ ତାକୁ ମିଳଇ ପୁଣି କାହୁଁ ।
ଶ୍ରୀରାମ ପଚାରିବାରୁ ସତ୍ୟାନନ୍ଦ କହି
ବହୁତ ପ୍ରଶଂସା ଯେ ସମସ୍ତେ କଲେ ତହିଁ ।
ଏଥୁ ଅନନ୍ତରେ ଯେ ଜନକ ତପଚାରୀ
କିମର୍ଥେ କୌଶିକ ଅଇଲ ମୋର ପୁରୀ ।
ବିଶ୍ୱାମିତ୍ର ବୋଲେ ଏ ଦଶରଥଙ୍କ ନନ୍ଦନ
ଈଶ୍ୱର ଧନୁ ଯେ ଦେଖିବେ ତାର ମନ ।
ତେଣୁ ସେ ତାକୁ ଆମ୍ଭେ ଅଇଲୁ ଏଥେଘନି
ହୁଅ ତୁମ୍ଭେ ପ୍ରସନ୍ନ ଜନକ ମହାମୁନି ।
ପୁରାତନ ଧନୁ ଏ ଯେ ପୁଣ୍ୟ ଥିଲେ ଦେଖି
ରାମ ଲକ୍ଷ୍ମଣ ଦେଖନ୍ତୁ ନିର୍ମଳ ହେଉ ଆଖି ।
ବିଶ୍ୱାମିତ୍ର ବଚନରେ ବୋଇଲେ ଜନକ
ଏ କିସ କରିବେ ଯେ ଦେଖିଲେ କାର୍ମୁକ ।
ଦେଖିଣ ନୃପତିଗଣେ କଳି ଭାଙ୍ଗିଣ ସ୍ଥିର
ମୁର୍ଚ୍ଛି ନ ପାରିଣ ରହିଅଛନ୍ତି ଏଠାର ।
ଏଥୁ ଅନନ୍ତରେ ଏଗାର ବରଷ ବହିଗଲା ।
ହର ଆଗେ ବାଣାସୁର ଯାଇଣ କହିଲା
ଭୋଦେବ ଶୂଳପାଣି ପାର୍ବତୀ ଦେବୀ ସାଇଁ
ମୋତେ ସରିସମ ଯେ ପୃଥିବୀରେ ନାହିଁ ।
ମୋହର ବଳ ଅଟେ ମୋତେ ଅଗୋଚର
ଆବର ଅଟଇ ମୋର ସହସ୍ରେକ କର ।
ମୋଠାରୁ ବଳବନ୍ତ ଅଛଇଁ କେ ଆନ
ଏକଥା ବୁଝି ମୋତେ କହ ତ୍ରିଲୋଚନ ।
ହସିଲେ ଈଶ୍ୱର ବାଣାସୁର ବାଣୀ ଶୁଣି
ଗର୍ବ ହୋଇଲା ବୋଲି ବୋଇଲେ ଶୂଳପାଣି ।
ଅସୁରକୁ ଚାହିଁଣ ବୋଇଲେ ତ୍ରିଲୋଚନ
କେତେକ ବଳ ତୋର ଜାଣି ନୁହେ ପୁଣ ।
ଜନକର ଘରେ ଯେ ଅଛଇ ଶରାସନ
ଯେ ତାହା ଟେକିପାରେ ହୋଇବ ରାଜନ ।
ଭୂମିରୁ ଉଠାଇଲେ ହୋଇବୁ ବଳିୟାର
ତାହାକୁ ସମ ନାହିଁ ଏହି ତିନିପୁର ।
ଯାଅ ତୁ ମିଥିଳାକୁ ଚଳିଣ ବହନ
ଧନୁ ଧରି ପାରିଲେ ବୋଲିବେ ତୋତେ ଧନ୍ୟ ।
ସଦାଶିବ କହନ୍ତେ ଅଇଲା ବାଣାସୁର
ବିଦେହ ମଣ୍ଡଳରେ ମିଳିଲା ଆସିକର ।
ମୋତେ ବୋଇଲା ଅସୁର ଧନୁ ମୋତେ ଦେଖା
ବଳ ପରୀକ୍ଷା କରିଣ ଆସିଛି ମୁଁ ଏକା ।
ଈଶ୍ୱରଙ୍କର ଆଜ୍ଞାରେ ଟେକିବି ଶରାସନ
ଏତେ ବୋଲି ମୋତେ ସେ କହିଲା ବଚନ ।
କେବଳ ନିମନ୍ତେ ତୁ ରଖିଛୁ ଶରାସନ
ଏହା ମୋତେ ଫେଡ଼ିଣ କହ ହେ ରାଜନ ।
ମୁଁ ବୋଇଲି ମୋହର ଦୁହିତା ବେନିଛନ୍ତି
ଶରାସନ ଯେ ଧରିବ ତାହାକୁ ଦେବିଟି ।
ଶୁଣିଣ ବାଣାସୁର ଧନୁକୁ ଯାଇ ଟେକି
ଟେକି ନ ପାରି ଅସୁର ଅଚେତା ହୋଇପଡ଼ି ।
କେତେବେଳ ଉତ୍ତାରୁ ଚେତା ପାଇ ପୁଣ
ଲଜ୍ଜାରେ ନରହିଲା ପଳାଇଲା କ୍ଷଣ ।
ଏହି ସମୟରେ ସେ, ରାବଣ ଦଶାନନ
ବେଦବରଙ୍କୁ ଦିନେ ଯେ, କହିଲା ବଚନ ।
ଦେବତା ଅସୁର ଯେ, ନ ରହି ବାନର
ନାଗବଳ ନୃପତି ଯେତେକ ମହୀର ।
ସମସ୍ତଙ୍କୁ ଜାଣିଲି କେ, ବଳବନ୍ତ ଅଛି
ସେହି କଥା ଗୋଟି ମତେ କହ ଧାତା ବାଛି ।
ବିଧାତା ବୋଇଲେ ରାଯେ ମିଥିଳାକୁ ଚଳ
ଶିବ ଧନୁ ଅଛି ଯେ ଜନକର ଘର ।

ସେ ଧନୁ ଯେବେ ତୁହି ତୋଳି ଧରିପାରୁ
ତେବେ ପର୍ଶୁରାମଙ୍କୁ ବଳରେ ତୁ ପାରୁ ।
ଶୁଣିଣ ରାବଣ ଏଠାକୁ ବେଗେ ଆସି
ଦଶଶିର ହଲାଇଣ କହିଲା ମୋତେ ହସି ।
ବୋଇଲା ଏ ଧନୁକୁ ତୋଳିଲେ ଦେବୁ କିସ
ମୁଁ ବୋଇଲି ଦୁହିତା ଦେବଇଁ ଅବଶ୍ୟ ।
ଶୁଣିକରି ଦଶାନନ ଧନୁକୁ ଯାଇ ତୋଳି
ତୋଳି ନ ପାରିଣ ଧରଣୀ ପରେ ଢଳି ।
ଦେଖିଣ ପର୍ଶୁରାମ ବେଗେ ତାକୁ ଧରି
ବୁଲାଇ ଫିଙ୍ଗି ଦିଅନ୍ତେ କିଷ୍କିନ୍ଧ୍ୟାରେ ପଡି
ତିନିଦିନ ଉତ୍ତାରୁ ପାଇଲା ଚେତା ପୁଣ
ବାଳିବୀର ପଚାରିଲା କିସ ଏ ରାବଣ ।
ଦଶାନନ ବୋଇଲା ମୁଁ ମିଥିଳା ଯାଇଥିଲି
ଶିବ ଧନୁ ତୋଳନ୍ତେ ମୁଁ ଅଚେତା ହୋଇଲି ।
ତେତେବେଳେ ପର୍ଶୁରାମ ଫୋପାଡ଼ି ଦେଲା
ତେଣୁଟି ଏତେ ଦଶା ମୋତେ ଭୋଗ ହେଲା ।
ଏତେ କହି ରାବଣ ସୁବର୍ଣ୍ଣପୁର ଗଲା
ସେଠାରୁ ବାଳି ବୀର ପ୍ରବେଶ ଆସି ହେଲା ।
ଶିବ ଧନୁ ତୋଳନ୍ତେ ମୁଖ ମାଡ଼ି ପଡ଼ି
ଦେଖିଣ ପର୍ଶୁରାମ ଦେଲେକ ଫୋପାଡ଼ି ।
ଦଧି ସମୁଦ୍ର ମଧ୍ୟରେ ଯାଇଁଣ ପଡ଼ିଲା
ତାହାର ଶରୀରରୁ ଜୀବନ ଛାଡ଼ିଗଲା ।
ବିଧାତା ଆସିଣ ଯେ ଜୀବ ତାକୁ ଦେଇ
ଚେତା ପାଇ କପିବୀର ନିଜ ରାଜ୍ୟେ ଯାଇ ।
ଏଥୁ ଅନନ୍ତରେ ଯେ ତୁମ୍ଭେ ଶୁଣ ଗାଧିସୁତ
ଏକଦିନେ ଅଗ୍ନି ପୂଜେ ଇନ୍ଦ୍ରଜିତର ସୁତ
ଏକମୁଖା ମହୀରାବଣ ଯେ ତାର ନାମ ।
ହୁତାଶନ ପ୍ରସନ୍ନରେ କହିଲା ଯେ ପୁଣ ।
ବୋଇଲା ଅସୁର ଦେବତା ନାଗ ବଳ
ବାହୁବଳେ ଜିଣିଣ ମୁଁ ଅଛଇ ସକଳ ।
ଏମାନଙ୍କୁ ଜିଣିବାକୁ କେ ଅଛି ବଳବନ୍ତ
ବୈଶ୍ୟାନର ବୋଇଲେ ତୁ ଚଳରେ ତୁରିତ ।
ମିଥିଳାର ନବରେ ଶିବଧନୁ ଅଛି
ତାହାକୁ ତୋଳିଲେ ତୁଯେ ଜିଣିବୁ ନବସୃଷ୍ଟି ।
ଶୁଣିଣ ମହିରାବଣ ଏଠାକୁ ଅଇଲା
କାର୍ମୁକ ତୋଳନ୍ତେ ସେ ଅଚେତ ହୋଇଲା ।
ତାହାର ଅଚେତା ଦେଖି ଯମଦଗ୍ନି ସୁତ
ଫୋପାଡ଼ି ଦେବାରୁ ସେତ ପଡ଼ିଲା ଲଙ୍କାରେତ ।
ସୁଲଙ୍କା ଗଡରେ ଶତେ ମୁଖା ରାବଣ ରାଜା
ଦେଖି ଚେତା କରାଏ ଯେ ରକ୍ଷିର ତନୁଜା ।
ପଚାରିଲା କିମ୍ପାଇରେ ଏ ସ୍ଥାନେ ପଡ଼ି ମୋହ
ସେ ବୋଇଲା ଶିବଧନୁ ତୋଳିବାରେ ସ୍ନେହ ।
ତୋଳି ନ ପାରିବାରୁ ମୁଁ ଯେ ଅଚେଷ୍ଟାରେ ପଡି
ରେଣୁକା ନନ୍ଦନ ମୋତେ ଫୋପାଡ଼ି ଦେଲା ଧରି ।
ତେଣୁ ଏ ତୋହର ପୁରେ ପଡିଲି ଆସି କରି
ରେଣୁକା ନନ୍ଦନକୁ କେହି ନୁହେ ସରି ।
ବାବୁ ସେ ଧନୁଗୋଟି ଅଟଇ ତେଜବନ୍ତ
ମହିରାବଣ ଗଲା ସୁଲଙ୍କା ତୁରିତ ।
ଶୁଣିଣ ଶତେମୁଖା ରାବଣ ଆସି ମିଳି
ଧନୁକୁ ତୋଳନ୍ତେ ସେ ଯେ ରୁଧିର ଉଦ୍‌ଗାରି ।
ଦେଖିଣ ପର୍ଶୁରାମ ଫୋପାଡ଼ି ତାକୁ ଦେଲା
ପଡିଲା ଶତେମୁଖା ବିଲଙ୍କା ଗଡ଼େ ପରା ।
ପାଞ୍ଚଦିନେ ଶୁଣି ସହସ୍ରମୁଖା ଯେ ଧଇଲା
ଜୀବନ ନାଇଁ ବୋଲି ଶରୀରେ ଦେଖିଲା ।
ତେତେବେଳେ ମରୁତ ଦେବତା ଯାଇ ମିଳି
ଶୀତଳ ଲାଗନ୍ତେ ଶତେମୁଖା ଉଠିଲା ବୋବାଳି ।
ସକଳ ବୁଝାଇ କଥା ସହସ୍ର ମୁଖରେ କହି
ରଥ ଚଢ଼ି ଅଲଙ୍କାରେ ପ୍ରବେଶ ହେଲା ଯାଇଁ ।
ଏଥୁ ଅନନ୍ତରେ ସହସ୍ରମୁଖା ଯେ ରାବଣ
ରଥ ଚଢ଼ି ଏ ସ୍ଥାନରେ ପ୍ରବେଶ ହେଲା ପୁଣ ।
ଦେଖିଣ ସକଳ ତାକୁ ଆଚମ୍ଭିତ ହେଲେ
ଚାରିଆଡ଼ୁ ମୁଖ ପିଠି ପେଟ ନ ଦେଖିଲେ ।
ସହସ୍ର ମୁଖା ରାବଣ ରଥରୁ ଓହ୍ଲାଇଲା
ଶରାସନ ଛୁଅନ୍ତେ ପଡିଣ ମୋହ ଗଲା ।
ଦେଖିଣ ତାର ମନ୍ତ୍ରୀ ଗୁଣ ଯେ ସାଗର
ଅନେକ ଲୋକ ଲଗାଇ ସହସ୍ରମୁଖା ବୀର ।
ରଥରେ ନେଇ ସହସ୍ର ମୁଖାକୁ ଥୋଇଲା
ବିଲଙ୍କା ଗଡକୁ ବୋଲି ରଥ ବାହିନେଲା ।
ଚାରିରାବଣ ବାଳୀ ଯେ ହାରିବାରୁ ପୁଣ
ଲବଣାସୁର ସ୍ୱୟମ୍ବରରେ ମିଳିଲା ତକ୍ଷଣ ।
କାର୍ମୁକକୁ ଚାହିଁଣ ସମସ୍ତେ ଫେରିଗଲେ
କଉଳା ସଙ୍ଗେ ପାତାଳ ଅସୁର ମିଳିଲେ ।

ପାତାଳ ଅସୁରଙ୍କୁ ଦେଖିଣ ଶିବଧନୁ
ସହସ୍ର ସିଂହରଡି କରିଲାକ ତେଣୁ ।
ଭୟକରି ଅସୁରେ ସମସ୍ତେ ପଳାଇଲେ
ଅଷ୍ଟକୁଳା ନାଗେ ଆସିଣ ମିଳିଲେ ।
ଦେଖିଣ ନମସ୍କାର କରିଣ ଚଳିଗଲେ
ପାତାଳ ପୁରେ ଯାଇ ତୁରିତେ ମିଳିଲେ ।
ନର ନାରାୟଣ ଋଷି ହେଲେ ପ୍ରବେଶ
ଶରାସନ ଟୋଳି ନ ପାରିଲେ ଯେ ବିଶେଷ ।
ସେଠାରେ ଶରାସନ ଶୂନ୍ୟରେ ଡାକ ଦେଲା
ଦ୍ୱାପର ଯୁଗେ ହରି ଅର୍ଜୁନ ହୁଅରେ ବୋଇଲା ।
ମୋତେ ଛୁଇଁବାର ଦୋଷ ଯେ ପ୍ରାପତ
ତୋତେ ତୋର ପୁତ୍ର ଯେ କରିବାରେ ହତ ।
ନାରାୟଣ ଋଷିଙ୍କି ପୁତ୍ର ଯେ ପିଣ୍ଡ ଦେବ
ତେବେ ମୋତେ ଛୁଇଁବାରେ ଦୋଷ ତେଣେ ଯିବ ।
ଏଗାର ବର୍ଷ ପର୍ଯ୍ୟନ୍ତ ଯାଗ ମୁଁ କରିବାର
ଟୋଳି ନ ପାରି ସମସ୍ତେ ହୋଇଲେ ହନ୍ତକାର ।
ସମସ୍ତେ ଯିବାରୁ ବିଧାତା ଆସି ମିଳି
ବୋଇଲେ ବିଶ୍ୱନାଥ ଧନୁ ଦେଖିବୁ ବୋଲି ।
ବିଧାତାଙ୍କ ସଙ୍ଗେ ସମସ୍ତେ ଆମ୍ଭେ ଗଲୁ
ମହାଗିରି ସମାନରେ ସାୟକ ଦେଖିଲୁ ।
ଦେଖିଣ ବିଧାତା ବେଗେ ଧରିଲେ ଶରାସନ
ମୂର୍ଚ୍ଛି ନ ପାରି ସେ ଯେ ଟୋଳିଲେକ ପୁଣ ।
ଅଷ୍ଟଭୁଜେ ସେ ଯେ ନପାରିଲେ ଟୋଳି
ଅଥୟ ହୋଇଣ ଧାତା ପଡ଼ିଲେ ଏଥେ ଢଳି ।
ଚେତା ହୋଇ ପଚାରିଲେ ଆମ୍ଭଙ୍କୁ ବିଧାତା
ଶିବଧନୁ ଟୋଳିବାକୁ ବିଷ୍ଣୁ ଯେ ଶକତା ।
ବିଶ୍ୱନାଥଙ୍କର ଧନୁ ଟୋଳି ନପାରୁ ଆମ୍ଭେ
ଚକ୍ରଧର ଟୋଳି ଯେ ପାରନ୍ତି ଆରମ୍ଭେ ।
ଶୁଣିଣ ବୃହସ୍ପତି କହିଲେ ଦଇବକୁ
ଶରାସନ ଛୁଇଁଲ ଯେ ଲାଗିଲା ତୁମ୍ଭଙ୍କୁ ।
ତେଣୁ ସେ ହତଲକ୍ଷ୍ମୀ ଦିଶିଲା ତୁମ୍ଭ ମୁଖ
ନ ଜାଣିବାପଣ ତୁମ୍ଭେ ଯେ କଲ ଚତୁର୍ମୁଖ ।
ଏ ଧନୁ ପ୍ରତ୍ୟକ୍ଷରେ ଯେ ସଦାଶିବର ତେଜ
ଦେବନାଶନ ଧନୁ ଏ କ୍ରୋଧରୁ ଜାତ ଉଜ ।
ଏବେ ବିଧାତା ହେ ଯାଗ ଧର୍ମ କର
ନୋହିଲେ ଏ ଦୋଷରୁ କେବେ ହେଁ ନୁହେ ପାର ।

ଶୁଣିଣ ବିଧାତା ଯେ ଏଥିରେ ଯାଗକଲା
ତେତିଶ କୋଟି ଦେବତା ଘେନିଣ ରହିଲା ।
ସାତଦିନ ଯାଗ ଯେ କଲେକ ବିଧାତା
ପବିତ୍ର ହୋଇଲା ବିଦେହ ସ୍ଥାନ ଗୋଟା ।
ବିଧାତା ଗଲାବେଳେ କହିଣ ଗଲା ମୋତେ
ଏ ଶରାସନକୁ ତୁ ଥୋଇଣ ଥିବୁ ସୁଖେ ।
ବାସୁଦେବଙ୍କୁ ତୁ ଯେ ଦେଖିବୁ ନୟନରେ
ସୀତା ପରମ ଲକ୍ଷ୍ମୀ ଜନମ ତୋର ଘରେ ।
ଅସୁର ମାରିବାକୁ ହୋଇବେ ହରି ଜାତ
ଏ ଧନୁକୁ ଧରି ତୋର ନନ୍ଦିନୀ ନେବେ ସତ ।
ଶୁଣ ହେ ବିଶ୍ୱାମିତ୍ର ଏ ଧନୁର ମହିମା
ପ୍ରତ୍ୟକ୍ଷ ଶୁଣିଲି ଯାହା କହିଣ ଗଲେ ବ୍ରହ୍ମା ।
ଏ ଧନୁ ଥୋଇଣ ଅଛି ଅତି ଯତ୍ନ ମତେ
ଈଶ୍ୱର ପରମେଶ୍ୱର ଧରି ପାରନ୍ତି ହସ୍ତେ ।
ବିଶ୍ୱାମିତ୍ର ବୋଇଲେ ଅଟଇ ତେଜ ଚାପ
କେ ତାହା ଆମଞ୍ଚିବ କାହାର ଏଡ଼େ ଦର୍ପ ।
ମୁହିଁ ବୋଲିବି ଅବା ଶ୍ରୀରାମ ଆମଞ୍ଚିବ
କେବଳ ଶ୍ରଦ୍ଧା ଯେ କରିଛି ଦେଖିବ ।
ଅପ୍ରମାଦେ ସେ ଅବା ଆମଞ୍ଚି ପାରେ ଧରି
ତୋତେ ଶୁଭକାର୍ଯ୍ୟ ଯେ ଅଟଇ ତପଚାରି ।
ଦୋହିତାକୁ ଏଗାର ବର୍ଷ ଷଡ଼ ମାସ
ଶ୍ରୀରାମ ଲକ୍ଷ୍ମଣକୁ ବାର ଯେ ବରଷ ।
ଦୁହେଁ ସରିସମ ହୋଇଣଛନ୍ତି ପୁଣ
ଦଇବ ଅବା କାଳେ କରିଥିବଟି ଘଟଣ ।
ଏ କ୍ଷିତି ମଣ୍ଡଳରେ ଶୁଭିବ ଅବା ଭଲ
ଏକଥା ବିଚାର ଯେବେ କରିବେ ଈଶ୍ୱର ।
ତାଡକି ମାରିଣ ଅହଲ୍ୟା ନିସ୍ତାରିଲେ
ମାଲ୍ୟବନ୍ତ ସୁବାହୁ ଦୁହିଁକି ନାଶ କଲେ ।
ମୋର ଯାଗ ପୁଣି ରଖିଲେ ଦୁଇଭାଇ
ନବକୋଟି ପ୍ରଣ ଅସୁର ବଳ ଦହି ।
ସେହିଦିନୁ ମୁହିଁ ଜାଣଇ ବିଷ୍ଣୁଜାତ
ଦେଖିଲି ଶ୍ରୀରାମ ବଳ ଅପ୍ରମିତ ।
ସୀତା ସୁଲକ୍ଷଣୀ ଜନ୍ମ ଶୁଭବେଳେ
ଶ୍ରୀରାମ ପରା ବର ମିଳିବେ ପୁଣ୍ୟବଳେ ।
ଦିଅ ଋଷି ଆଜ୍ଞା ଯେ ଆଣନ୍ତୁ ଶ୍ରୀରାମ
ଶୁଣିଣ ଜନକ ଯେ ପରମ ତୋଷ ମନ ।

ସେଦିନ ରୁହାଇଲେ ଗଉରବ କରି
ସଦାଶିବ କହନ୍ତି ଶୁଣଗୋ ଶାକମ୍ଭରୀ ।
ଏଥୁ ଅନନ୍ତରେ ଯେ ଜନକ ମହାରଷି
ନଗ୍ରପୁର ମଣ୍ଡଣି କଲେକ ଲୋକପେଷି ।
ସକଳ ଦେଶପ୍ରଜା ଯାଗରେ ଅଛନ୍ତି
ନାନା ତୀର୍ଥରୁ ସେ ଅନେକ ତପିଛନ୍ତି ।
ଦେଖଣାହାରୀ ଲୋକ ପଥୁକି ଜନମାନେ
ଅନେକ ଦେଶର ଯେ ଅଛନ୍ତି ବିପ୍ରଜନେ ।
ଗହଳରେ ଗହ ଗହ ମିଥିଳା ନଗ୍ରପୁର
ଦାଣ୍ଡ ବାଟ, ହାଟ ଯେ କନ୍ଦି ବିକନ୍ଦିର ।
ଯାଆନ୍ତା ଯାଉଅଛି ଆସନ୍ତା ମାସେ ପୁଣ
ବାଦ୍ୟ ଘୋଷ ତୁରୀ ଯେ ମର୍ଦ୍ଦଳ ବାଜେପୁଣ ।
ନଗ୍ରରେ ଘୋଷଣ ଯେ ଦେଲେକ ନୃପବର
ରାମ ଲକ୍ଷ୍ମଣ ଦେଖିବେ ଶିବ ଶାୟକ ମୋର ।
ନଗ୍ର ନର ନାରୀଏ ଶୁଣିଣ ହରଷ
ଆନନ୍ଦରେ ବେଶ ହୋଇ ଅଇଲେ ତୁରିତ
ସଭା ମଣ୍ଡିଲେ ରାଯେ ଅତି ଶୋଭାବନ
ନେତର ଚିରାଳ ଯେ ଉଡଇ ଭିନ୍ନ ଭିନ୍ନ ।
ମର୍କତର କଳଶ ବୈଦୁର୍ଯ୍ୟର ପୀଢୁ
ଚଉକତି ଲମ୍ବଇ ଯେ ମର୍କତର ହାର ।
ସ୍ଫଟିକର ଖମ୍ବ ଯେ ନୀଳାରେ ପୁଣଦମ୍ଭ
ଉଦମ୍ଭ ପାଟଛତ୍ର ଚିରାଳ ଆଲମ୍ବ ।
ଢୋଲ ଦମାଟମକ ଯେ ମହୁରୀ ଶଙ୍ଖ ବାଜେ
ଚାନ୍ଦୁଆର ଛାଇରେ ରବିଙ୍କ ତେଜ ଗଞ୍ଜେ ।
ସକଳ ରାଜା ମାନେ ସଭାରେ ବିଜେ ଯାଇଁ
ସୁବର୍ଣ୍ଣ ସଭାଗୋଟି ପ୍ରତି ଦଶଯୁଣ ହୋଇ ।
ତିନି ଯୁଣ ଦୀର୍ଘ ଯେ ଉଚ୍ଚ ଉପରକୁ
ଛୟାଣୋଇ ଖମ୍ବଯେ ଭିଆଇଛି ବସିବାକୁ ।
ଖମ୍ବଗୋଟିକରେ ଗୋଟିଏ ସିଂହାସନ
ଚାରିଅଂଶରେ ଖମ୍ବ ବସିଛି ସୁବର୍ଣ୍ଣ ।
ରାଜା ପାତ୍ର ମନ୍ତ୍ରୀ ସାମନ୍ତ ସଙ୍ଗେ ଘେନି
ଏ ରୂପେ ବସନ୍ତି ଯେ ରାଜାମାନେ ପୁଣି ।
ସଭା ତଳରେ ଉଭା ସେବାକାରୀ ଜନ
ସଭାରେ ଗହଳ ଯେ ଗହ ଗହ ପୁଣ ।
ନୀଳ ସଭା ଉପରେ ବିଜୟ ରଷି ବିପ୍ର
ଦେବ ପ୍ରଭା ପ୍ରାୟେକ ଦିଶଇ ସାକ୍ଷାତ ।

ନୀଳ ସଭା ଉପରେ ବିଶ୍ୱାମିତ୍ର ବସିଛନ୍ତି
ଶ୍ରୀରାମ ଲକ୍ଷ୍ମଣ ଯେ ତାଙ୍କ ପାଶେ ଛନ୍ତି ।
ସତ୍ୟାନନ୍ଦ ରଷି ବାମ ପାଶେ ବସି ପୁଣ
ବେନି ସଭାଦିଶେ ଯେହ୍ନେ ସ୍ୱର୍ଗ ସ୍ଥାନ ।
ବେଢିଣ ଦେଖିଲେ ଯାଇଁ ପୁର ନର ନାରୀ
ସ୍ୱର୍ଗରୁ ଓହ୍ଲାଇ ଦେଖି ଅଇଲେ ଅପସରି ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣଗୋ ଶାକମ୍ଭରି
ନାରଦ ବିଜେକଲେ ସ୍ୱର୍ଗ ନାମେ ପୁରୀ ।
ବାରସ୍ୱତୀ ଭୁବନରେ ହେଲେ ପରବେଶ
ସୁଧର୍ମା ସଭାରେ ଦେଖିଲେ ସକଳ ଦେବାନ୍ତ ।
ବ୍ରହ୍ମା ଶିବ ଦିଗପାଳ ସୁରରାଜା ସେଥି
ଗହ ଗହ ସଭା ଯେ ସକଳ ଦେବ ସେଠି ।
ନାରଦ ବୋଇଲେ ତୁମ୍ଭେ ଶୁଣ ହେ ଦେବ ଗଣ
କଉଶିକ ପାଶେ ଛନ୍ତି ଶ୍ରୀରାମ ଲକ୍ଷ୍ମଣ ।
ମିଥିଳା ନଗ୍ରରେ ଯାଇଁ ହେଲେ ପରବେଶ
ଧନୁ ଭାଙ୍ଗିବାକୁ ହେଲେଣି ସଜ ସେତ ।
ଶୁଣିଣ ସୁରରାଜା ସୁଧର୍ମା ସଭା ଘେନି
ଅଧା ସ୍ୱର୍ଗରେ ଯେ ମିଳିଲେ ଦେବପୁଣି ।
ଅନ୍ତରୀକ୍ଷେ ରହିଣ ଦେଖନ୍ତି ଦେବଗଣ
କଉଶିକ ଜନକ ସିଦ୍ଧ ରଷି ପୁଣ ।
ଶୂନ୍ୟତଳକୁ ଚାହାନ୍ତି ଯେ ଦେବଗଣ
ଏକ କହନ୍ତେ ଯେ ଆରେକ ଚାହେଁ ପୁଣ ।
ଗନ୍ଧର୍ବ କିନ୍ନର ଯେ ଯକ୍ଷ ବିଦ୍ୟାଧର
ଏକକୁ ଆରେକ ଯେ ମିଳିଲେ ଆଗୁସାର ।
କେ ବୋଲେ ଦେଖି ବିଜେ ଶ୍ରୀରାମ ଲକ୍ଷ୍ମଣ
ଏମନ୍ତେ କୁହା କୁହି ହେଲେ ଦେବଗଣ ।
ମିଥିଳା ନଗ୍ରରେ ଯେ ବସିତ ଠାବ ନାହିଁ
ପଚିଶ ଯୁଣ ସ୍ଥଳୀ ଯେ ଗହଳ ଅଛି ହୋଇ ।
କନକ ମଣ୍ଡପରେ ରତ୍ନମୟଚୂଳ
ମୁକ୍ତାର ଝୋଣା ଯେ ଲମ୍ବଇ ମାଳ ମାଳ ।
ଗଜ ମୋତି ହୀରା ଯେ ଲମ୍ବଇ ପନ୍ତି ପନ୍ତି
ବିବିଧ ବର୍ଣ୍ଣେ କୁସୁମ ମଣ୍ଡିଣ ଅଛନ୍ତି ।
ସେଥିର ଉପରେ ଦେହାଙ୍ଗ ପାଟ ତୁଳି
ନାଗେଶ୍ୱର ଗୁଣ୍ଡିରେ କେଶର ମୁଚୁଳି ।
ଶେଯ ସଜାଇ ଅଛନ୍ତି ପତନୀ ଯତ୍ନକରି
କର୍ପୂରର ଧୂଳିନେଇ ଶେଯ ପରେ ପାରି ।

ସେଥିପରେ ବିଜୟ କରିଛନ୍ତି ସୀତା
କପୋଳ ସିନ୍ଦୂର ଯେ ସର୍ବାଙ୍ଗେ ଗନ୍ଧଚିତା ।
ନାନାଦି ଯତନରେ ବାନ୍ଧିଛନ୍ତି ଯୁଡ଼ା
ପଞ୍ଚବର୍ଣ୍ଣ କୁସୁମମାନ ସେଥିପରେ ବେଢ଼ା ।
ରତ୍ନ ଝୁମିମାନଯୁଡ଼ାରେ ବେଢି ଲମ୍ବି
ଶିରରେ ଅଳକା ଯେ ଚନ୍ଦ୍ର ସୂର୍ଯ୍ୟ ନିନ୍ଦି ।
ନୟନରେ କଜ୍ଜ୍ୱଳ ଯେ କର୍ଣ୍ଣରେ ରତ୍ନକାପ
ଗଳାରେ ବେଢ଼ିଅଛି ଚଉସାରି ଖାପ ।
ନାଶାରେ ଶୋଭଇ ହେ ରତ୍ନ ସିନ୍ଧୁ ଫଳ
ଦେହ ଦିଶଇ ଯେହ୍ନେ ସୁବର୍ଣ୍ଣ ଆକାର ।
ନିଷ୍କଳଙ୍କ ଚନ୍ଦ୍ରମା ପ୍ରାୟକ ବଦନ
ସିନ୍ଧୁଫଳ ସଭାରେ ରତ୍ନଗୁଣା ପୁଣ ।
ହୃଦ ପଦ୍ମ ମଧ୍ୟରେ ସପତ ପଦ୍ମମାଳା
ଶ୍ରୀମୁଖେ ଶ୍ୱେତପଦ୍ମପ୍ରାୟେକ ବେନି ଡୋଳା ।
ବେନିକର ସ୍ଥଳରେ ପଦ୍ମ ଯେହ୍ନେ ଫୁଟି
ଚାଲନ୍ତେ ଅବେଣ୍ଟ ପଦ୍ମ ପାଦରେଟି ଫୁଟି ।
ନିଳୋତ୍ପଳ ପରାୟେ ନୟନ ଯୁଗଳ
ଏ ରୂପେ ଅଙ୍ଗେ ଶୋଭା ସପ୍ତ ଯେ କମଳ ।
ସାମ ବେଦରୁ ସେ ଯେ ହୋଇଲେକ ଜାତ
ଧରଣୀ ଦେବୀ ଯାର ଅଟଇ ଶୁଣ ମାତ ।
ସାମବେଦ ଅଂଶରେ କମଳା ଅବତରି
ତୈଲୋକ୍ୟରେ ପଟାନ୍ତର ନାହିଁ ସମସରି ।
ଶୋଭା ଦିଶଇ ଦେହ ସୁବର୍ଣ୍ଣ ପୁଷ୍ପ ପ୍ରାୟେ
ଅଧର ଡାଳିମ୍ବ କୁସୁମ ଯେହ୍ନେ ଶୋହେ ।
ବାଉନ କୋଟି ଅପସରୀ ରୁପ ତେଜ ପୁଣ
ନୟନ ଦୁଇ ତାଙ୍କର ପଞ୍ଚମଶର ବାଣ ।
ଚାହାଁଣି ଛଟକରେ ଦଶଦିଗ ଭୋଳ
ନାଗେଶ୍ୱର ପୁଷ୍ପମାଳା ଧରିଣ ଛନ୍ତି କର ।
ସଙ୍ଗରେ ଯେତେକ ଯେ ଅଛନ୍ତି ପରିବାର
ସମସ୍ତେ ନବଯୁବା ଏକ ବୟସ ସବୁରି ।
ଚାମର ପଙ୍ଖା ଆଲଟ ବିଞ୍ଚଣୀ କରେ ଧରି
ଜାନକୀର ଛାମୁରେ ଢାଳନ୍ତି ଧୀର କରି ।
କେହୁ କରଯୋଡ଼ିଣ ବୁଝାଉଛନ୍ତି କଥା
ଏଥୁ ଅନନ୍ତରେ ଶୁଣ ଜଗତର ମାତା ।
ଜନକ ସାନ ଝିଅ ଉର୍ମିଳା ନାମେ ବାଳୀ
ତନୁ ପୁଲକିତ ଯେ ହୋଇଲା ତାହାଙ୍କରି ।

ମୁଖ ପଖାଳି କରକୁ ଚାହିଁଲେ ଦୁଲାଳି
ଜାଣିଲେ ନାରାୟଣ ଅନନ୍ତ ବିଜେକରି ।
ସ୍ୱାମୀ ଅଇଲେ ବୋଲିଣ ମନେ ବିଚାରିଲେ
ଦାସୀମାନଙ୍କୁ ଡାକି ବେଗେ ମାଜଣା ହୋଇଲେ ।
କେଶ ସଜାଇଣ ଯୁଡ଼ା ଯେ ବାନ୍ଧିଲେ
ଯୁଡ଼ା ଉପରେ ଝୁମ୍ପା ବୃଭରି ମଣ୍ଡିଲେ ।
ଝରା କାଠି ଉପରେ କୁସୁମ ଗଭା ରଞ୍ଜି
ନୟନେ କଜ୍ଜ୍ୱଳ ମସ୍ତକରେ ଅଳକା ପନ୍ତି ।
ମଥାମଣି ସଳଖେ ଚନ୍ଦନ ଟୋପି ଚିତା
ସୁନ୍ଦର ପଣେ ଅଟଇ କିବା ଜଗଜ୍ଜିତା ।
ମଧ୍ୟରେ ଚନ୍ଦନ ବିନ୍ଦୂର ବିକି ଜିଣି ଶୋଭା
ନାସାରେ ସିନ୍ଧୂଫଳ ରତ୍ନକୁ ଜିଣି ପ୍ରଭା ।
ନାସାରେ ରତ୍ନଦଣ୍ଡି ରତ୍ନଗୁଣା ଶୋହେ ।
କର୍ଣ୍ଣେ କାପ ମଲ୍ଲିବଢ଼ି ଫିରିଫିରା ଶୋହେ ।
ଚନ୍ଦ୍ର ଆକାଶରେ ଫାସିଆ ରତ୍ନରେ ନିବାଡ଼
ଗଳାରେ ଚାପସରି ବସନ୍ତ ବର୍ଣ୍ଣକାର ।
ପଦକ ଚନ୍ଦ୍ରହାର ମୁକୁତା ଗୁଞ୍ଜମାଳ
ବକ୍ଷସ୍ଥଳେ ଲୁଳଇ ଯେ କାଞ୍ଚୁଲା ଉପର ।
ହୀରା ମାଣିକ୍ୟ ଚୂଡ଼ୀ ବେନିକରେ ଶୋଭେ
ଆଗ ଖଡ଼ କତୁରୀ ପଛକୁ ଶୋଭାପାଏ ।
ବେନି ବାହୁରେ ନାଡ଼ ବାହୁଟୀ ବିଦମାଳି
କରରେ ସୁବର୍ଣ୍ଣ ସୁତା ସପ୍ତସରି ଘେରି ।
ଚରଣେ ପାହୁଡ଼ି ବଳା ନୂପୁର ଶୋଭାପାଇ
ଅଙ୍ଗୁଷ୍ଠି ମାନଙ୍କରେ ଝୁଣ୍ଟିଆ ବିରାଜଇ ।
ହସ୍ତର ଆଙ୍ଗୁଳିରେ ଅନେକ ରତ୍ନ ମୁଦି
ଅଷ୍ଟରତ୍ନ ସେଥିରେ ମିଶ୍ରିତ ହୋଇଲାଣି ।
ନୀଳ ଅମଳାଣ କାଛି ପିନ୍ଧିଲେ କ ଦେବୀ
ନୀଳ ବର୍ଣ୍ଣ ଖଣ୍ଡୁଆ ହେ ଉପରାଣ ଲାଗି ।
ବେଶ ହୋଇ ଦେବୀ ଯେ ମନରେ ଚଞ୍ଚଳ
ନବକୋଟି ଦେବୀଙ୍କ ପରେ ଅଟନ୍ତି ସାର ।
ପାର୍ବତୀ ଦେବୀଙ୍କ ପ୍ରାୟ ଦିଶିଲେକ ପୁଣ
ସ୍ୱର୍ଗର ଦେବତା ଦେଖି ବୁଜିଲେ ନୟନ ।
ଆଲଟଚାମର ପଙ୍ଖା ବିଞ୍ଚଣୀ ଦାସୀ ଘେନି
ଶତେକ ପରିବାରୀ ଆଗରେ ଢାଳେ ପୁଣି ।
ଧୀରେ ଧୀରେ ଦେବୀ ସେ ବିଜେକରି ଗଲେ
ଜାନକୀଙ୍କ ଛାମୁରେ ଯାଇଁଣ ମିଳିଲେ ।

ପାହାଡ଼ା ପକାଇଣ ଓଳଗେ ପାଦତଳେ
କରଯୋଡ଼ି କରି ଉଭା ହୋଇଲେ ଆଗରେ ।
ଜାନକୀ ବୋଇଲେ ତୋର ବେଶତଆଜ ତୋରା
ସ୍ୱପ୍ନ ଦେଖିଲାକି ସ୍ୱାମୀ ପ୍ରାପ୍ତ ହେଲ ପରା ।
ଉର୍ମିଳାବୋଲେ ଠାକୁରାଣୀ ଶୁଣମୋ ବଚନ
ଅନନ୍ତ ବାସୁଦେବ ଗୋ ବିଜୟ କଲେ ପୁଣ
ବିଶ୍ୱାମିତ୍ର ମୁନି ସଙ୍ଗେ ଅଇଲେଣି ସେହୁ
ଆଜ ଧନୁ ଧରିବେ ଜଣା ଗୋ ଗଲା ତହୁଁ ।
ଏଗାର ବର୍ଷ ଯାଏ ଗୋ ଯେତେକ ଆସୁଥିଲେ
ସମସ୍ତେ ବରଯାତ୍ରୀ ଗୋ ଶୁଣ ଦେବୀ ଭଲେ ।
ଏବେ ଆମ୍ଭର ପ୍ରଭୁ ହେଲେଣି ପରବେଶ
ଦେଖ ବିଦେହ ମଙ୍ଗଳ ଗହଳ ନାଦ ଘୋଷ ।
ଶୁଣିଣ ଜାନକୀ ଦେବୀ ବେଗ ହୋଇ ଉଠି
ଧନୁଘର ଦିଶିବା ସ୍ଥାନେ ଜଗତୀ ପରେ ବସି ।
ବେନି ଶତ ଦାସୀ ଯେ ସଙ୍ଗରେ ସାନ ଭଗ୍ନି
ହରଷରେ ବିଜୟ ଜଗତି ପରେ ପୁଣି ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ରାମ ଲକ୍ଷ୍ମଣ ଘେନିଣ ଗାଧିସୁତ ସେଥି ।
ଦଶରଥଙ୍କର ବେନି ବାଳକ ଆଗ କରି
ଦୁହିଁଙ୍କର କରକୁ ସେ ବେନି ହସ୍ତେ ଧରି ।
ପ୍ରବେଶ ହେଲେ ଯାଇଁ ରାଜ ସଭାରେ ପୁଣ
ଦେଖିକରି ଆଶ୍ଚର୍ଯ୍ୟ ହେଲେ ସର୍ବଜନ ।
କେହୁ ବୋଲୁଅଛନ୍ତି ଏ କାହାର ପୁତ୍ର ବେନି
ହରିହର ଅଇଲେକି ମନୁଷ୍ୟ ଦେହ ଘେନି ।
ନୃପତି ସକଳ ଯେ ଦେଖିଣି ଅଚାବୁଆ
ମତ୍ତଗଜ ମେଳେ କି ପ୍ରବେଶ ସିଂହଛୁଆ ।
କୌଶିକ ଋଷିଙ୍କ ପାଶେ ଅଛନ୍ତି ବେନିଭାଇ
ଦେବ ସଭା ମଧ୍ୟେ କି ଚନ୍ଦ୍ର ସୂର୍ଯ୍ୟ ଉଇଁ ।
କୁଶଧର ଈଶ୍ୱରକି ବାସବ ଆଦିତ୍ୟ
ରାମ ଲକ୍ଷ୍ମଣ ଦିଶୁଅଛନ୍ତି ସେହିମତ ।
ଗୌରବ ପାଇଣ ବସିଲେ ସଭାମଧ୍ୟେ
ଯେସନେକ ହରି ବିଜୟ ସ୍ୱର୍ଗ ମଧ୍ୟେ ।
ଦେବଙ୍କର ସଙ୍ଗରେ କି ଶଚୀ ଦେବୀ ପତି
ବିଶ୍ୱାମିତ୍ରଙ୍କ ସଙ୍ଗେ ତେସନ ରଘୁପତି ।
ଏସନକ ସମୟରେ ଜନକ ମହାଋଷି
ଆସ୍ଥାନର ତଳରେ ପ୍ରବେଶ ହେଲେ ଆସି ।
ବେନ ସଭାକୁ ଚାହିଁଣ ବୋଲନ୍ତି ଜନକ
ଋଷି, ବିପ୍ର, ନୃପତି ଅଛ ହେ ଯେତେକ ।
କହୁଅଛି କଥାଏ ମୁଁ ଶୁଣ ଏକମନ
ହାଟୁଆ, ବାଟୁଆ ଯେ ଯେତେକ ପ୍ରଜାନନ ।
ଏ ମୋହର ସତ୍ୟଯେ ଅଛଇଁ ପୂର୍ବେ କଳା
ତୁମ୍ଭେମାନେ ଏଗାର ଥର ଶୁଣିଅଛ ପରା ।
ଆଜକୁ ହେଲା ପନ୍ଦର ବରଷର ତଳେ
ପୁତ୍ର ନାହିଁ ବୋଲି ଭାଳୁଥିଲେ ମୁଁ ବିକଳେ ।
ଯାଗ କରିବାକୁ ମୁହିଁ କରୁଥିଲି ବିଧି
ଏଥି ଉତ୍ତାରୁ ଗଲା ତିନି ବରଷ ଅବଧି ।
ଏସନକ ସମୟରେ ମେନକା ଅପସରି
ବିମାନ ଆରୋହିଣ ଅନ୍ତରୀକ୍ଷେ ଚଳି ।
ସୁଖରେ ଦେଖି ମୁଁ ଯେ ମନରେ ମନାସିଲି ।
ସେ କନ୍ୟା ଜାଣିଲା ଯେ ମୋହର ମନକଥା
ମୋତେ ସେ ବୋଇଲା ଶୁଣ ହେ ମହାଖ୍ୟାତା ।
ବେଦବର ଶାପେ ମୁଁ ମଞ୍ଚେ ଅବତରି
ସ୍ୱର୍ଗକୁ ଯାଉଛି ମୁହିଁ ଶାପ ଯେ ପାରକରି ।
ନୋହିଲେ ମୁହିଁ ଜାତ ହୁଅନ୍ତି ତୋର କୋଳେ
ମନରେ ଚିନ୍ତା ତୁମ୍ଭେ ନକର ମୁନିବରେ ।
ମୋହର ରୂପକୁ ଯେ କୋଟିଏ ଗୁଣେ ଗଣ
ଅଳ୍ପଦିନେ ପ୍ରାପ୍ତ ହେବ ବେନି ଦୋହିତା ଜାଣ ।
ଏମନ୍ତେ କେତେ ଦିନ ଉତ୍ତାରୁ ମୋର ମନ
ଯାଗ ମୁଁ କରିବାକୁ ଅନୁକୂଳ ପୁଣ ।
ଫାଳ ଘେନି ଭୂମି ଚିରିଲି ଶବଦାଇ
ତଳମାଟି ଉପରକୁ ଆଣିଲି ଉଠାଇ ।
ଫାଳ ମୂନରେ ପୁଣି ମଞ୍ଜୁଷ ଉକୁଟି
ମଞ୍ଜୁଷର ଭିତରେ ଦେଖିଲି ବାଳୀଗୋଟି ।
ଶୁକ୍ଳପକ୍ଷ ପୂର୍ଣ୍ଣମୀର ଶଶଧର ପ୍ରାୟେ
ତେସନେକ ସଞ୍ଜାତ ଦୁହିତା ରୂପହୁଏ ।
ସ୍ୱର୍ଗର ଅପସରି କହିଲେ ଶବଦାଇ
ସମ୍ଭାଳ ଋଷି ଏବେ ଦୁହିତା ଗୋଟି ନେଇ
ଏ ଦୁହିତା ଉଦ୍ଧରିବ ତୁମ୍ଭର କୁଳଗୋତ୍ର
ଏଣେ ବଂଶ ତୋର ହୋଇବ ପବିତ୍ର ।
ଏତେ କହି ଶୂନ୍ୟରେ ଗଲେ ଯେ ଅପସରି
ତାହର ବଚନ ଯେ ମନରେ ପ୍ରତି ପାଳି ।

ସେ କନ୍ୟାକୁ ଛୁଅନ୍ତେ ସେ ହେଲେ ନବଯୁବା
ରୁତୁ ଶୁଦ୍ଧରେ ଅଗ୍ନିରେ ସ୍ନାନ କଲେ ବାମା ।
ସେହିଠାରୁ ମୁଁ ଯେ ଧନୁଯାଗ କଲି
ପ୍ରଥମ ଯଜ୍ଞରେ କନ୍ୟା ଏ ଜାତ ହେବାର ଦେଖିଲି ।
ଦୁଇ କନ୍ୟା ଅଯୋନି ସମ୍ଭୁତ ଜାଣି ମୁହିଁ
ବେନି କଥା ନିୟମ କଲି ବିଚାରିଣ ତହିଁ ।
ଏ ଶିବ ଧନୁ ଯେ ଧରିବ ଦେବ ବଡ଼ ଝିଅ
ଲକ୍ଷେ ରାଜା ଯେ ଜିଣିବ ଦେବି ମୁଁ ସାନଝିଅ ।
ଏଗାର ବର୍ଷରେ ନଧରେ ଧନୁ କେହି
ଲକ୍ଷେ ରାଜାଜିଣି କେହି ନଦେଲେ ଘଉଡାଇ ।
ବେନି କଥା ନପାରିସେ ଅନେକ ଗୋଳକଲେ
ପର୍ଶୁରାମ ଆସିବାରୁ ସେ ନିବର୍ତ୍ତ ହୋଇଲେ ।
ଏବେଦେଖି ବିଶ୍ୱାମିତ୍ର ଅଇଲେ ମୋ ପୁର
ସଙ୍ଗେଛନ୍ତି ଦଶରଥ ବେନି ଯେ କୁମାର ।
କୋଦଣ୍ଡ ଦେଖିବାକୁ ଶ୍ରଦ୍ଧା ଯେ ପୁଏ କଲେ
କୌଶିକ ମୁନି ଆସି ମୋତେ ଯେ କହିଲେ ।
ଈଶ୍ୱରଙ୍କ ଧନୁ ଏ ଯେ ବିଷ୍ଣୁ ରୂପରେ ଜାତ
ଦର୍ଶନ କଲେ ଲୋକ ହୁଅନ୍ତି ମୁକତ ।
ଯେଣେ ମୋତେ କହିଲେ ଗାଧିରାଜାସୁତ
ତେଣୁ ମୋର ସାୟକକୁ କାଢ଼ିବାର ସତ୍ୟ ।
ସମସ୍ତେ ଏକମନ ହୋଇ ତୁମ୍ଭେ ଶୁଣ
ଯେ ଧନୁକୁ ଧରିବ ସେ କନ୍ୟା ନେବ ପୁଣ ।
ଏ ମୋର ସତ୍ୟକୁ ଯେ ବିଅର୍ଥ ନକରିବ
ଶୁଣିକରି ବୋଇଲେ ଯେ ରାଜାଗଣ ସର୍ବ ।
ଅଣାଅ ଧନୁ ତୁମ୍ଭେ ଦେଖନ୍ତୁ ସର୍ବଲୋକ
ଯେ ଅବା ପାରିବ ଯେ ଉଛୁଡ଼ କାର୍ମୁକ ।
ଯେ ଧରିବ ଧନୁକୁ କନ୍ୟାକୁ ସେ ନେବ
କନ୍ୟା ଲୋଭକରି କେହୁ କଳି ନକରିବ ।
ଏତେ କହି ନୃପତିମାନେ କଲେ ସିଉକାର
ସତ୍ୟସତ୍ୟ ବୋଲିଣ ଯେ ବୋଲନ୍ତି ତିନିବାର ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ହେ କୌଶିକ
ରାଜା ଗୋଳରେ ମୁନି କରାଉଛନ୍ତି ସତ୍ୟ ।
ଜନକ ଋଷିଙ୍କି ଚାହିଁ ବିନୋୟୀ କହିଲେ
ଯେ ଧନୁକୁ ଧରିବ ନଥିବ କି ବଳତାର ଭଲେ ।
ଜଣେ ସିନା କୋଦଣ୍ଡକୁ ତୋଳିଣ ଧରିବ
ତାହାର କନ୍ୟାକୁ ପୁଣି ଆନ କି ଘେନିଯିବ ।

ଧନୁଟେକି ନପାରିବା ଲୋକକି ନେବକନ୍ୟା
ଧନୁ ନ ତୋଳିଲାଲୋକ ବଳହୀନସିନା ।
ତେତେବେଳେ ଯେବେ ଆମେ ନପାରିବୁଁ ତାକୁ
କନ୍ୟାଘେନି ଗଲାବେଳେ ଯେ ଜାଣିବଆମ୍ଭକୁ ।
କଉଶିକ ବୋଇଲେ ବଳରେ ଗୋଳକଲେ
ଡରିଣ ଜନକ ତାଙ୍କୁ ଦିଅନ୍ତୁ ବୋଇଲେ ।
ଜନକ ବୋଇଲେ ତୁମ୍ଭେ ଶୁଣ ରଘୁନାଥ
ବହୁମେଳ ମୋର ସଙ୍ଗେ ଗୋଳକଲେ ରାଜା ଏତ ।
ଈଶ୍ୱରଙ୍କ ମାୟାରେ ମୁଁ ତ୍ରିବାର ଉତୁରି
କାମଧେନୁ ବଳରେ ତିନିବେଳ ସୁସ୍ଥହେଲି ।
ପର୍ଶୁରାମ ବଳରେ ମୁଁ ପାଞ୍ଚବେଳ ସୁଖୀ
ଏମନ୍ତେ ଏଗାର ବରଷ ଯେ ଗଲା ଘୁଞ୍ଚି ।
ଏବେ ମୁଁ ଶାୟକକୁ କରିବି ବାହାର
ଗୋଳକରିବେ ରାଜା ବୋଲି ମୋର ଅଟେ ଡର ।
ଶ୍ରୀରାମ ବୋଇଲେ ଶୁଣ ହେ ମହାଋଷି
ପର୍ଶୁରାମ ଏକାତ ସପତ ପୁର ଧ୍ୱଂସ ।
ଏ ରାଜା ମାନଙ୍କର ପିତା ମାନଙ୍କୁ ମାରି
ତାଙ୍କର ରୁଧିରରେ ତର୍ପଣ ସେହୁ କରି ।
ଏକାରେ ନାରାୟଣ ଅସୁର ବଳ ଦଳି
ଏକାରେ ସଦାଶିବ ସକଳେ ଦ୍ୟନ୍ତି ପଢ଼ି ।
ଏକାରେ ବେଦବର ସବୁଙ୍କୁ ଜାତ କଲା
ଏକାରେ ଇନ୍ଦ୍ରଦେବତା ପୃଥିବୀ ପାଳିଲା ।
ଏକାରେ ଚନ୍ଦ୍ର ଯେ ସବୁଙ୍କୁ ଦିଏ ଫଳ
ଏକା ମଦନ ସବୁଙ୍କରି ଦେହରେ ଜର୍ଜର ।
ଏକାକି ରବି ଦେବତା ସପ୍ତପୁର ରିଣି
ଏକାକି ଜନ୍ତୁପତି ସବୁଙ୍କୁ ବିନାଶି ।
ଏକାକି ଗଙ୍ଗାଦେବୀ ସକଳ ପୁରେ ଘୋଟି
ଏକାକି କୁବେର ସବୁଙ୍କ ଧନ ବାଣ୍ଟି ।
ଏକ ଏକ ଜଣକୁ ଯେ ସରି ନୁହେ କେହି
ବଳ ନଥିଲେ କି କଳରେ ଜିଣିହୋଇ ।
ଜନକ ବୋଇଲେ ଶୁଣ ହେ ଦାଶରଥି
ଗୋଳରଣ ବରିବାକୁ ଡରଇ ମୁଁ ଯେ ଏଥି ।
ଧନୁ ନଧରି କନ୍ୟା ନେବାରେ ସବୁଙ୍କରିମନ
ମୁହିଁତ ପଚାରୁଅଛି କେ ଏଥେ ଭାଜନ ।
ଶ୍ରୀରାମ ବୋଇଲେ ଶୁଣ ହେ ଋଷି ତୁମ୍ଭେ
କଉଶିକ ଋଷିଥିଲେ ଭୟସେ ନାହିଁ ଏବେ ।

ରାଜାମାନେ କିସ ଯେ କରିବେ ରଣପୁଣ
ଯାହାର କୋପକଲେ ଡରନ୍ତି ଦେବଗଣ ।
ସୁରବ୍ରହ୍ମା ହର ଯେ ଯାହାରବୋଲେଛନ୍ତି
ବିଚାରିଲେ ବସୁଦେବଙ୍କୁ ଆଣି ସେ ପାରନ୍ତି ।
ପ୍ରଥମେ ରାଜାପାଶରେ ପୃଥିବୀ ସାଧକଲେ
ଦ୍ୱିତୀୟ ତପକରି ନବସୃଷ୍ଟି ଭିଆଇଲେ ।
ତପବଳେ ଚାଣ୍ଡାଳଙ୍କୁ ଦେଲେ ସ୍ୱର୍ଗପୁର
ନରମେଧା ଯାଗରେ ରଖିଲେ ଋଷିରକୁମର ।
ମେନକା ନଗରେ ପୁଣି ଶୃଙ୍ଗାର ଭାବକଲେ
ଦୁହିତା ଜାତହେବାରୁ ଦେବତାଏବିଭାଦେଲେ ।
ବ୍ରହ୍ମଜ୍ଞାନ ସାଧିଣ ହୋଇଲେ ବ୍ରହ୍ମମୁନି
ସପ୍ତ ଋଷିରେ ଗଣିତା ହୋଇଲେକ ପୁଣି ।
ରାଜାମାନେ ତାକୁ କି କରିବେ କହି
ସ୍ୱର୍ଗ ମଞ୍ଚ ପାତାଳ କ୍ଷଣକେ ପାର ଦହି ।
ଶୁଣିଣ ଜନକ ଋଷି ତୃପତି ହୋଇଲେ
ନାରାୟଣ ଏ ଶ୍ରୀରାମ ମନେ ବିଚାରିଲେ ।
ରାଜାମାନେ ବିଚାରନ୍ତି ଆମ୍ଭେ କରିବା ଗୋଳ
କେ ଧନୁ ଧରୁଛି ଧରୁ ଆମ୍ଭର ଆଗର ।
ଏହା ଭାବି ରାଜାମାନେ ମଉନ ହୋଇ ରହି
ପୁଣି ବିଚାରନ୍ତି ଏବାଳକ କେତେବଳ ବହି ।
ପୁଞ୍ଜା ପୁଞ୍ଜା ହୋଇକରି କରନ୍ତି ବିଚାର
ବାର ବର୍ଷର ଅଟେ ଯେ ଦଶରଥ ବାଳ ।
ଋଷିଙ୍କି ଟେକିଣ ସେ ଆମ୍ଭଙ୍କୁ ନିନ୍ଦାକଲା
କେମନ୍ତେ ତୋଳିବ ଧନୁ ଦେଖିବା ଥରେ ଭଲା ।
ଏମନ୍ତ ବିଚାର ଯେ କରନ୍ତି ରାଜାଗଣ
ବିଶ୍ୱାମିତ୍ର ବୋଇଲେ ଜନକ ତୁମ୍ଭେ ଶୁଣ ।
ଦଶରଥ କୁମର ଶ୍ରୀରାମ ଲକ୍ଷ୍ମଣ
ଦେଖିବେ ଧନୁକୁ ସେ ବେଗକରି ଆଣ ।
ଜନକ ବୋଇଲେ ମୋ ମନକୁ ନ ଆସଇ
କେମନ୍ତେ ବିଶ୍ୱାମିତ୍ର କହୁଛ ବଳିଆଇ ।
ତୁମ୍ଭର ବୋଲ ମୁଁ ଯେ କରିବଇଁ ପୁଣ
ଦେଖନ୍ତୁ ଶରାସନ ଶ୍ରୀରାମ ଲକ୍ଷ୍ମଣ ।
ଶୁଣିଣ ଜନକ ଯେ ସତ୍ୟାନନ୍ଦକୁ ରାଇ
ଅଣାଅ ଧନୁ ବୋଲି ଜନକ ଆଜ୍ଞାଦେଇ ।
ଯହିଁ ସେ କୋଦଣ୍ଡ ଅଛଇଁ ପୂଜାକଲା
ସେଠାବରେ ଜନକ ଯେ ଯାଇଣ ମିଳିଲା ।

ନଗ୍ରରେ ଅନେକ ଜନ ରୁଣ୍ଡ ହୋଇପୁଣ
ଲକ୍ଷଣବନ୍ତ ପୁରୁଷେ ଆଣନ୍ତି ଧନୁ ଜାଣ ।
ଦଶ ସହସ୍ର ବଳବନ୍ତ ଓଟାରି ଆଣେ ପୁଣ
ଚଉଦ ଚକ ଉପରେ ଧନୁର ଶୟନ ।
ବାଜେ ଟମକ ନିଶାଣ ମର୍ଦ୍ଦଳ ମହୁରୀ
ଗହ ଗହ ଶବଦ ଶୁଭଇ ଗୋଳ ପୂରି ।
ହାଟୁଆ ବାଟୁଆ ଯେ ଭାଟ କଏବାର
ଆଲମ୍ୱ ପନ୍ତି ପନ୍ତି ଗହଳ ଚିରାଳ ।
ଧରି କରିଣ ସେ ଯେ କାର୍ମୁକ ଆଣନ୍ତି
ଦେବେ ପୁଷ୍ପ ବୃଷ୍ଟିକଲେ ନାରୀହୁଳହୁଳି ଦ୍ୟନ୍ତି ।
ଦେଖିଣ ଆସିଲେ ଯେ ସକଳ ନରନାରୀ
ବିଞ୍ଚୁଣି ଚାମର ଯେ ଆଲଟ କରେଧରି
ହସ୍ତୀ, ଅଶ୍ୱ, ପଦାତି ଯେ ବଳ ପଟୁଆର ।
ପ୍ରତିହାରୀ ସୁନାବେତ ଧରିଣ ହସ୍ତର ।
ସୁବର୍ଣ୍ଣ ମଞ୍ଜୁଷରେ ଖଞ୍ଜିଲେ ଅଛି ଶଙ୍ଖ
ଶ୍ୱେତ ଚାମର ଯେ ମଣ୍ଡିଛି ଚଉପାଶ ।
ରୁଣ ଝୁଣ ରଡ଼ି ପୁଣ ଘୁଘୁରର ଦୋଷ
ଶବଦ କରୁଅଛି ଯେସନେ ଯାତ ଘୋଷ ।
ଦର୍ପଣ ଝଲକଇ ଇନ୍ଦ୍ର ଚନ୍ଦ୍ର କାନ୍ତି ଜିଣି
ଚଉପାଶରେ ଯେ ଲମ୍ୱନ୍ତି ନାନା ମଣି ।
ବଜ୍ର କିଳଣିରେ ତ୍ରିଶୂଳ ଖଞ୍ଜା ମୁଦି
ପାଟ ଦଉଡ଼ିରେ ଯେ ଯତ୍ନ କରିଛନ୍ତି ।
ଜମ୍ବୁନଦ ସୁବର୍ଣ୍ଣର ଘଣ୍ଟିମାନ ଲୁଳି ।
ଚାଳନ୍ତେ ତେଜତାର ମର୍କତ ମଣିପରି ।
ଚାଲନ୍ତେ କାର୍ମୁକ ଯେ ଶବଦ ବିଜିଘୋଷ
ଥର ଥର ଶବଦରେ ପୁରଇ ଆକାଶ ।
ଆଗରେ ପଡୁଅଛି ଚତୁଃସମ ଛେରା
ଦେବାଙ୍ଗ ପତନି ମାନ ପଡ଼ିଣ ପାଏଡ଼ା ।
ଗୋଳ ଶୁଭନ୍ତେ ବିଚାର କରନ୍ତେ ନୃପତି
କି କାରଣେ ଲୋକମାନେ ଧୂଆ ଧୋଇଁ ହୋନ୍ତି ।
ଜନକ ଋଷି ବୋଲେ ଆସୁଛି କୋଦଣ୍ଡ
ଭୂମି ଚମକାଇ ଯେ କମ୍ପଇ ବ୍ରହ୍ମାଣ୍ଡ ।
ନଦେଖିଲା ରାଜା ଏ ଯେ ହୋଇଲେ ନିର୍ବେଦ
ମୁହଁ ଚୁହାଁ ଚୁହିଁ ଯେ ହୋଇଲେ ସମସ୍ତ ।
କେ ବୋଲେ ଯେଉଁ ଧନୁ ଯେ ଈଶ୍ୱର ବହଇ
ଆନ କେ କ୍ଷମ ହେବ କରେ ଧରିବଇଁ ।

ଏହି ମହୀମଣ୍ଡଳେ ପର୍ଶୁରାମ ବଳି
ସେହିତ ଶରାସନ ନପାରିଲେ ତୋଳି ।
ଇନ୍ଦ୍ର ଦେବତା ଯେ ନୋହିଲେ ସାମରଥ
ଅଗ୍ନି, ବରୁଣ ଯେ ପବନ ନଇରୁତ ।
ଦଶଦିଗପାଳ ଯେ ନୋହିଲେ ସମାନ
ଏକମାତ୍ର ଏକା ଯେ ବହନ୍ତି ତ୍ରିଲୋଚନ ।
ଅକଳ ବଳ ଧନୁ ନାମଟି ଯାହାର
ବଳବନ୍ତେ ଧରିବାକୁ କ୍ଷମ ଯେ କାହାର ।
ଏସନେକ ସମୟେ ମିଳିଲା ଧନୁ ଆସି
ବଳବନ୍ତ ଲୋକମାନେ ଭୟକଲେ ଦେଖି ।
ସଭାର ତଳେ ମଞ୍ଜୁଷ ଆଣିଣ ଉଭାକଲେ
ନଜାଣିବା ଲୋକେ କହନ୍ତି ଏହୁ କିସ ଭଲେ ।
କେ ବୋଲେ ଏ ମଞ୍ଜୁଷ ଭିତରେ ଧନୁ ଅଛି
ଏକୁ ଆରକରେ ପୁଣି ହୋନ୍ତି ପୁଛାପୁଛି ।
ସ୍ୱର୍ଗପୁରେ ଥାଇଣ ବୋଲନ୍ତି ଦେବଗଣ
ଦେଖିବା ଶ୍ରୀରାମର ବୀର ସୁର ପଣ ।
ଆଜଠାରୁ ଆମ୍ଭର ମନରୁ ଧୋକା ଯିବ
ଆଜହୁଁ ଚୌଦ ବର୍ଷେ ଚାରି ରାବଣ ମରିବ ।
ତେର ବରଷରେ ବାଳୀ ବୀର ଯିବ ଦୂତ
ବାଇଶି ଦିନେ ପର୍ଶୁରାମ ତେଜିବେକୋଦଣ୍ଡ ତ
ଏମନ୍ତେ ଦେବଗଣ କୁହାକୁହି ହେଲେ
ଜାଣିଲେ ବାସୁଦେବ ମହୀରେ ଜନ୍ମ ହେଲେ ।
ସଭାଜନେ ନିର୍ବେଦ ହୋଇଣ ଦେଖୁଛନ୍ତି
ଏକ ଆରେକ ଯେ କଥାବାର୍ତ୍ତା ନ ହୁଅନ୍ତି ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଜଗତୀ ଉପରେ ସୀତା ଉର୍ମିଳା ବିଜେକରି ।
ଦାସୀଙ୍କି ଚାହିଁଣ ଯେ ବୋଲନ୍ତି ଜାନକୀ
ଏ ଧନୁକୁ ଦେଖି ଗୋ ଆତ୍ମା ମୋର ଶଙ୍କି ।
ଏଗାର ଥର ନୃପତି ଦେଖିଣ ଭାଜିଗଲେ
ଏବେ କିମ୍ପା ଏ ଧନୁକୁ ସଭାକୁ ଆଣିଲେ ।
ମେରୁ ସମାନ ଧନୁକୁ କେ ପାରିବ ତୋଳି
ପର୍ଶୁରାମ ଯେଉଁ ଧନ ନ ପାରିଲେ ଟାଳି ।
ସୁରରାଜା ଭୂମିରୁ ନପାରିଲେ ଧରି
ବିଧାତା ଶାସ୍ତି ପାଇଗଲା ବାରେ ଫେରି ।
ଦଶଦିଗପାଳ ଦେଖିଣ ମୋହଗଲେ
ବିଂଶ ଭୁଜେ ରାବଣ ଯେ ତୋଳି ନପାରିଲେ ।
ତୋଳି ନପାରିଣ ରାଜା ପ୍ରଜା ଘୁଞ୍ଚିଗଲେ
ଲବଣ ସ୍ୱୟମ୍ଭରେ ଏମାନେ ଆସିଥିଲେ ।
ଦେଖିକରି ଅସୁରେ ନରହି ପଳାଇଲେ
ନାରକାସୁର ଯେ ବାଣାସୁର ଛଳେ ।
ତୋଳି ନପାରିଣ ଯେ ବାହୁଡ଼ିଣ ଗଲେ
ସମସ୍ତେ ଲଜ୍ଜା ପାଇ ପଳାଇଣ ଗଲେ ।
ବାର ବରଷ ମୋତେ ଷଡମାସ ଊଣା
ଏଗାର ବରଷ ହେଲା ଧନୁ ଯାଗ କିନା ।
ପିତା ମୋର ସତ୍ୟ ଯେ କଲେକ ନଜାଣି
ତେଣୁ ମୋର ଦୁଃଖ ସିନା ହେଲା ସଙ୍ଗାତୁଣୀ ।
କେତେବେଳେ ମୋହର ଯେ କଷ୍ଟ ଯିବପାର
ଭୋ ଧର୍ମଦେବତା ମୋତେ ପ୍ରତିକାର କର ।
ଦାସୀଗଣ ଜାନକୀଙ୍କି ତିଆରି କହନ୍ତି
କିହେତୁ ଆକୁଳ ଗୋ ଜନକ ଦୋହିତି ।
ସର୍ବଦା କାଳେ ପୁଣି କାର୍ଯ୍ୟ ନୁହେ ହାନି
ଶୁଭକାଳର କାର୍ଯ୍ୟ ଉର୍ମିଳା ସିନା ଜାଣି ।
ଯେହୁ ପଦ୍ମଯୋନି ସେହି ସେ ପିତାମହ
ସେହି ପିତାମହ ଗଢି ନାଶିଲା ସିନା ଦେହ ।
ଯେସନ ଯଶମାନ ଅର୍ଜିଲାର ବିଧାତା
ସେହି ପିତାମହ ଅଟେ ପରମ ଦେବତା ।
ସେ ଯାହା କଳ୍ପିଅଛି ମନରେ ଯେ ଧରି
ଯେ ଧନୁ ତୋଳିବ ତାକୁ ଦେବଇ କୁମାରୀ ।
ସେ ଧର୍ମ ଅଟଇ ଯେ ପୁଣ ମହାଜ୍ଞାତା
ତାହାର ବୋଲନିକି ହୋଇବ ଅନ୍ୟଥା ।
ନଜାଣିଣ ସତ୍ୟ କି କରିଛନ୍ତି ଋଷି
ମହା ସଂଶୟରେ ପଡ଼ି ହେଉଛନ୍ତି ଧ୍ୱଂସି ।
ତୁମ୍ଭେ ଯେ ବୋଇଲ ଅନେକ କାଳଗଲା
କେହି ଏ ଧନୁକୁ ତୋଳିଣ ନପାରିଲା ।
ତୁମ୍ଭ ସଙ୍ଗେ ଜନମ ବାଳୁତ ଭାବେଛନ୍ତି
ବିଭା ନୋହି ଦାଣ୍ଡରେ ହାଟରେ ବୁଲନ୍ତି ।
ତୁମ୍ଭେ ମୈଥିଳୀ ଗୋ ଜନ୍ମରୁ ନବଯୁବା
ନବଯୁବା ପୁରୁଷ ତୁମ୍ଭକୁ ସିନା ଶୋଭା
ଯେତେବେଳେ ଯାହାକୁ ଥାଇ ଯେଉଁ ଯୋଗ
କାଳ ବେଳ ଜାଣିଣ କରନ୍ତି ସେହି ଭୋଗ ।
ଗଉରୀ ହେମବନ୍ତୀ ଘରେ ଜନମିଲେ
ଦେହ ପିଞ୍ଜାରଣ ଅନେକ ତପ କଲେ ।

ଶତେ ବରଷରେ ପାଇଲେ ଯେ ବର
ସଦାଶିବଙ୍କୁ ବିଭା ହୋଇଲେ ଶୁଭବେଳ ।
ବିଭା ହୋଇଣ ଗଉରୀ ଅନେକ ଭୋଗକଲେ
ଆରତରେ କାର୍ଯ୍ୟ ଯେ ନୁହଇ ପୁଣ ଭଲେ ।
ଦେବେ ଯେ ଦାନବେ ମନ୍ଥିଲେ ସିନ୍ଧୁଜଳ
ସେଥିରୁ ଜାତ ହେଲା ପଦାର୍ଥ ସକଳ ।
ବିଷ୍ଣୁଙ୍କର ଭାଗରେ ମିଳିଲା କମଳିଣୀ ।
କାଳକୁଟ ବିଷ ଯେ ଖାଇଲେ ଶୂଳପାଣି ।
ଦେବତାଏ ନେଇଣ ଅମୃତ ଭୋଗ କଲେ
ସୁରା ମଦିରା ଯେ ଅସୁର ପୁଣ ନେଲେ ।
ଦୈତ୍ୟ ହୋଇ ରାହୁ ଯେ ଖାଇଲା ଅମୃତ
ଯାହାକୁ ଯେଉଁ ଯୋଗ ହୁଅଇ ପରାପତ ।
ଶଚୀପତି ପବନକୁ କାଟିଲେ ବିକୋଟି
ଏକଇ ଶରୀର କଲେ ଅଣଚାଶ ମୂର୍ତ୍ତି ।
ବେନି ଖଣ୍ଡ ହେଲେ ପ୍ରାଣୀ ନପାନ୍ତି ଜୀବନ
ଯୋଗେ ଅଣଚାଶ ରୂପ ଧରିଲେ ପବନ ।
ସବୁ ଦେବତାରୁ ସେ ହୋଇଲେ ମହାବଳୀ
ଜନ୍ତୁଙ୍କର ଠାକୁର ଯେ ପ୍ରାଣରୁ ଉଗୁଳି ।
ଦକ୍ଷ ପ୍ରଜାପତିଙ୍କ ସତାଇଶ ଦୋହିତା
ରୋହିଣୀ ଚନ୍ଦ୍ରକୁ ବିଭା କରିଦେଲେ ପିତା ।
ଦୁଷ୍ଟି ଯେ ବିଭା ହେଲେ ଛବିଶ ନନ୍ଦିନୀ
ସତାଇଶ କନ୍ୟାଙ୍କର ଚନ୍ଦ୍ରକାନ୍ତ ପୁଣି ।
ଏକ ମାତାଠାରୁ ଜାତ ସତାଇଶ ଦୋହିତା
ଏଥିରେ ବଡ଼ ସାନ ଅଛନ୍ତି ଗୋ ସୀତା ।
ସୁଭାଗ୍ୟବତୀ ସେଥିରେ ଅଟଇ ରୋହିଣୀ
ଦୁର୍ଭାଗ୍ୟବନ୍ତ ହେଲେ ଛବିଶ ଭଉଣୀ ।
ଆଜ ସଭା ଶୋଭାବନ ସୁନ୍ଦର ଦିଶୁଅଛି
ଋଷିଙ୍କି ମୁଖ ଯେହ୍ନେ କମଳ ବିକାଶୁଛି ।
ବଦନ ଲମ୍ବାଇ ବସିଛନ୍ତି ରାଜାମାନେ
ଅବଶ୍ୟ ସ୍ୱାମୀକି ତୁ ଲଭିବୁ ଅଳ୍ପଦିନେ ।
ଯେ ତୋହର ବର ଗୋ ଦେଖ ଚନ୍ଦ୍ରମୁଖି
ବିଶ୍ୱାମିତ୍ରଙ୍କ ପାଖରେ ଅଛନ୍ତି ସେ ବସି ।
ଦିଅର ତୁମ୍ଭର ଗୋ ତାର ପାଶରେ ଅଛଇ
ତୁମ୍ଭ ସାନ ଭଗ୍ନୀ ଉର୍ମିଳା ବର ସେହି ।
ଗୁରସ୍ତ ଶ୍ୟାମଳବର୍ଣ୍ଣ ଦେଖଗୋ ମୃଗାକ୍ଷୀ
ଅଳ୍ପ ବୟସ ତାଙ୍କୁ ଅଟନ୍ତି ଯୁବା ସେହିଟି ।

ତୁମ୍ଭ ଦୁଇ ଭଗ୍ନୀଙ୍କି ସେ ଦୁଇ ଭାଇ ବର
ତୁମ୍ଭେ ଶ୍ୱେତ ଶାମଳ ସେ ଶାମଳ ଗୋରାସାର ।
ଏହି ବର ତୁମ୍ଭଙ୍କୁ ଗୋ ପ୍ରାପତ ହୋଇବ
ମୋ କଥା ମିଛ ହେଲେ ପଚାର ଭଗ୍ନୀ କି ସଦଭାବ ।
ଏକଥା ଶୁଣି ହସି ଯେ ବୋଲନ୍ତି ମଇଥିଳି
କିମ୍ପାଇ ସଖୀ ମୋତେ ଗୋ କରୁଛ ଢମାଳି ।
ଯେ ଅବା ଧନୁ ଗୋ ଆମଣ୍ଡି ପାରିବେ
ତାହାଙ୍କୁ ପିଅର ମୋର ମୋ ପାଇଁ ବରିବେ ।
କେମନ୍ତେ ଆଗରୁ ଗୋ ଜାଣିଲା ପ୍ରାୟ କହୁ
ନିକଟେ ସ୍ୱାମୀ ମୋତେ ଦେଲା ପ୍ରାୟ କହୁ ।
ଏ କଥା ଶୁଣିଣ ବୋଇଲେ ମନମାୟା
ତୁମ୍ଭର ଭଗ୍ନୀଠାରୁ ଶୁଣିଲି ଗୋ ସୀତୟା ।
ଯେତେକ ନୃପତି ଗୋ ଅଛନ୍ତି ସଭାରେ
ଧନୁ ଧରିବାକୁ ଶକତା ନାହାନ୍ତି ଏଠାରେ ।
ତପିଗଣମାନେ ଯେ ଅଟନ୍ତି ପିତାମହ
ପବିତ୍ର ଅଙ୍ଗ ତୋର କେମନ୍ତେ ଛୁଇଁବେ କହ ।
ତୁମ୍ଭେ କମଳାଅଟ ତୁମ୍ଭ ପାଇଁ ନାରାୟଣ ଜାତ
ରାଜକୁଳେ ଜାତ ଯେ ହେଲେଣି ଅଚ୍ୟୁତ ।
ଅଯୋନି ସମ୍ଭୁତ ତୁମ୍ଭେ ଦୁଇ ଗୋ ଭଉଣୀ
ସର୍ବଜ୍ଞ ଅଟନ୍ତି ତୁମ୍ଭ କନିଷ୍ଠ ଭଗିନୀ ।
ଭାରକୁ ଚାହିଁଣ ଯେବଣ କଥା କଷି
ଆଗତ କଥା ତୁମ୍ଭ ଆଗରେ ପ୍ରକାଶି ।
ଯେହୁଟି ଚକ୍ରପାଣି ସେହୁଟି ଦେବହରି
ଯେ ଅଟେ ନାରାୟଣ ସେ ଜଗତ ଅଧିକାରୀ ।
ଯହୁଁ ଜଗତ ଯେ ଅଧିକାର କରନ୍ତି
ଜଗତର ସ୍ୱାମୀ ବୋଲି ତାହାଙ୍କୁ କହନ୍ତି ।
ଜଗତର ସ୍ୱାମୀଙ୍କି ଦେଖିଲେ ମୋହ ହୋଇ
ସେ ପୁରୁଷ ସବୁଠାରେ ପୂଜାବିଧି ପାଇ ।
ସେ ପୁରୁଷମାନଙ୍କୁ ଗୋ ବୋଲନ୍ତି କରତା
ସେ ପୁରୁଷ ତୋର କାନ୍ତ ମନରେ ହୁଅ ଚେତା ।
କମଳା ବୋଲେ ଯେତେଲକ୍ଷଣ କହି ମୋହରେ
ସେତେ ଲକ୍ଷଣେ ପୁରୁଷ କାହାନ୍ତି ଏଠାରେ ।
ମନମାୟାବୋଲେ ସ୍ୱାମୀ କୌଶିକ ପାଶେ ବସି
ଚାହିଁ ତୁମ୍ଭେ ଠାକୁରାଣୀ ଶରଦର ଶଶୀ ।
ତୁମ୍ଭ ଦୁଇ ଭଉଣୀଙ୍କି ସେ ଦୁଇ ଭାଇ ବରଅଟନ୍ତି
ସଭାର ଲୋକେ ନିରେଖି ଚାହୁଁଣ ଅଛନ୍ତି ।

ଅପୂର୍ବ ପଦାର୍ଥରେ ସବୁଙ୍କରି ଶ୍ରଦ୍ଧା ହୋଇ
ତେଣୁଟି ଏକଦୃଷ୍ଟି କରିଣ ସର୍ବେ ଚାହିଁ ।
ଏକାନ୍ତେ ଦେଖି ସଖିରେ ପ୍ରସନ୍ନ ମୋରମନ
ତେଣୁ ଜଣାଗଲା ତୁମ୍ଭ ସ୍ୱାମୀ ବୋଲି ପୁଣ ।
ତୁମ୍ଭେ ମାତ ଠାକୁରାଣୀ ନୁହସି ଆରତ
ନିଶ୍ଚୟ ତୁମ୍ଭଙ୍କୁ ବର ଗୋ ହେଲା ପରାପତ ।
ମନମାୟାଠାରୁ ଏସନକ ବାଣୀ ଶୁଣି
ହସ ହସ ହୋଇଣ ଯୁବତୀ ଶିରୋମଣି ।
ମୃଦୁ ମୃଦୁ ହସିଣ ବଚନ ପ୍ରକାଶନ୍ତି
ଅଳ୍ପ ବୟସ ଦୁଇ ଭାଇ ଯେ ଦିଶନ୍ତି ।
ଉର୍ମିଳାକୁ ପଚାରିଲେ ଶୁଣଗୋ କନିଷ୍ଠ
ମନମାୟୀ କହିବା କଥା ଅଟେ ଟିକି ସତ ।
ଉର୍ମିଳା ବୋଲେ ଠାକୁରାଣୀ ଏକଥା ନୁହେଁ ଆନ
ତିନିଦିନଠାରୁ ସଖି ଜଣାଗଲା ପୁଣ ।
ଯାହାର ଚରଣ ଲାଗି ପାଷାଣ ହେଲା ସ୍ତିରୀ
ବାରବରଷ କାଳୁ ସେହୁ ଯାଗରକ୍ଷା କରି ।
ଜାନକୀ ବୋଇଲେ ମହାବଳୀରାଜା ଏଭାଗିଲେ
ବୟସେ ସାନ ଏ ଧନୁ ତୋଳିବେ କି ଭଲେ ।
ଯେଉଁ ଧନୁ ଅଟଇ ପର୍ବତ ପ୍ରାୟେ ପୁଣ
ସେ ଧନୁ ତୋଳିବେ ଏହାଙ୍କର କାହିଁ ଜ୍ଞାନ ।
ମୋ ମନକୁ ସଖିରେ ଏମନ୍ତ ନ ଯୋଗାଇ
ଶୁଣିକରି ମନମାୟା ବଚନ ପ୍ରକାଶଇ ।
ମୀନରୂପ ଯେତେବେଳେ ଧଇଲେ ଦେବହରି
କ୍ଷୁଦ୍ର ରୂପ ଧରିଣ ଶଙ୍ଖାସୁରକୁ ମାରି ।
ବେଦ ମନ୍ତ୍ର ଆଣିଣ ବ୍ରହ୍ମାର ହସ୍ତେ ଦେଲେ
ସାନ ହୋଇଣ ଯେ ପୁଣ ଏମନ୍ତ କର୍ମ କଲେ ।
ସାଗର ମନ୍ଥିଲେ ସୁର ଅସୁର ସର୍ବଜନ
ତେତେବେଳେ ବାସୁଦେବ ହୋଇଥିଲେ ସାନ ।
କମଠ ରୂପଧରି ଗିରିତଳରେ ରହି
ତେଣୁ ମନ୍ଦର ଧରିଣ ସାଗର ମନ୍ଥିଲଇଁ ।
ସାନ ରୂପ ହୋଇ ଯେ ଗିରିକି ସମ୍ଭାଳିଲେ
ସେ କାଳରେ ସମସ୍ତ ପଦାର୍ଥ ଉପୁଜିଲେ ।
ବାସୁକୀ ଭରା ପାଇଣ ତେଜିଲେ ପୁର ସହି
ବରାହ ମୂର୍ତ୍ତି ହେଲେ ଧରଣୀକି ଧରିବା ପାଇଁ ।
ସାନ ରୂପରେ ସେହି ଗୋ ଧରଣୀ ଧରିଲେ
କାଶ୍ୟପ ରୂପ ଧରିଣ ବାସୁକୀ ଶିରେ ଦେଲେ ।
ପ୍ରହଲ୍ଲାଦ ଛଳରେ ନୃସିଂହ ଅବତାର
ଜନ୍ମ ହୋଇ ମାରିଲେ ହିରଣ୍ୟ ଅସୁର ।
ଜନ୍ମ ହେଲା ପିଲାକି ନୁହଇ ପୁଣ ସାନ
ସାନ ହୋଇ ବାମନ ଯେ ମାଗିଲେ ଭୂମିଦାନ
ବଳିକି ଦାନ ମାଗିଣ ତିନିପୁର ନେଲେ
ବଳି ଦୈତ୍ୟକୁ ନେଇଣ ପାତାଳେ ରଖିଲେ ।
ସାନ ବୋଲିକରି ଯେ କହିଲ ତୁମ୍ଭେତ
ସାନ ବେଳେ ହୁଅ ଗୋ ଏମନ୍ତ କୃତ୍ୟ ।
ଜନକର ଦୁହିତା ଯେ ଶୁଣିଣ ତୋଷ ହେଲେ
ଗୌରୀଙ୍କ ଆଗରେ ଯେ ଈଶାନ କହିଲେ ।
ଏଥୁ ଅନନ୍ତରେ ଯେ ଜନକ ମହାରଷି
ଧନୁ ଯାତ୍ରା ସଭାତଳେ ପ୍ରବେଶ ହେଲେ ଆସି ।
ରାଜାମାନଙ୍କୁ କହିଲେ ତୁମ୍ଭେ ଏବେ ଶୁଣ
ଆଜ ବୁଝିବା ଯେ ତୁମ୍ଭର ଏଗାର ବରଷ ।
ବରଷକେ ଥରେ ଧନୁ ଯାତ୍ରା ଦେଖୁଅଛ
କୌଣସି ବେଳେ ତୁମ୍ଭେ ଯେ କଳହକର ଜାତ ।
କେ ଅଛ ସମର୍ଥ ତୁମ୍ଭେ ବହନ ହୋଇ ଆସ
ଧନୁ ତୋଳିଲେ ପ୍ରାକର୍ମ ଜାଣିବି ବିଶେଷ
ଏତେବୋଲି ଡାକ ଦେଲେ ଜନକରଷିରାଏ
ସମ କେଶରୀ ବୋଲିଣ ମଳୟ ଦେଶ ରାଏ ।
ବୋଇଲେ ଶିବ ଧନୁରେ ବଳ ଅଛି କେତେ
ଦେଖିଲେ ଜାଣିବା ନା ଶୁଣିଲେ ନାହିଁ ପ୍ରତେ ।
ଜନକ ବୋଇଲେ ସବୁ କରିଲେକ ଜାଣି
ଧନୁର ପାଶେ ଯାଇ ବସ ହେ ସର୍ବ ପୁଣି ।
କେତେ ବଳ ହେବ କେତେ ଭାରୀ ପୁଣ
ତୋଳିଲେ ତୁମ୍ଭେ ସିନା ଜାଣିବ ରାଜାଗଣ ।
ଜମ୍ବୁନଦ ସୁନାରେ ଗଢନ୍ତି ଅଳଙ୍କାର
ବ୍ରହ୍ମ ଜାତି ହୀରା ସଙ୍ଗେ କରନ୍ତି ତାକୁ ମେଳ ।
ତେବେ ସିନା ରତ୍ନ ତୁମ୍ଭେ ହେବ ଆଭରଣ
ଜନକର କଥା ଯେ ଶୁଣିଲେ ରାଜାଗଣ ।
ଲୋକନାଥ ନୃପତିଙ୍କର ଅଟନ୍ତି ତନୟେ
ଗୋବିନ୍ଦ କେଶରୀ ବୋଲି ତାଙ୍କ ନାମ ହୋଏ ।
ସେ ରାଜା ବୋଇଲେ ଯେ କନକ ମୁଖ ଚାହିଁ
ମଞ୍ଜୁଷର କବାଟ ଫେଡ଼ ଏବେ ତୁହିଁ ।

ଦେଖିବାକୁ ଧନୁ ଯେ ଜାଣିବା କେତେ ବଳ
ଏମନ୍ତ ବୋଇଲେ ଯେ ନୃପତି ସକଳ ।
ଶୁଣିଣ ଜନକ ଋଷି ଫେଢ଼ିଲେ କବାଟ
ଦେଖନ୍ତି ଲୋକମାନେ ହୋଇଣ ଉଚ୍ଛାଟ ।
ବାଘ ଯେସନେ ଯନ୍ତା ଭିତରେ ଗର୍ଜଇ
ଛେଳିକି ଦେଖିଲେ ଯେହ୍ନେ ପଲାଣି ଆସଇ ।
ଶରାସନକୁ ଦେଖି ତେସନେ ରାଜାମାନେ ତ୍ରାସି
ଆବର ରାଜାମାନଙ୍କୁ ଚାହିଁଣ ମହାଋଷି ।
ବୋଇଲେ ତୁମ୍ଭେ ଯେ ନୃପତିଗଣ ପାର
ବଳବନ୍ତ ହୋଇଲେ ଆଗକୁ ବାହାର ।
ଧନୁକୁ ଦେଖିଣ କି ହେଉଛ ହତବୀର୍ଯ୍ୟ
ଶୁଣିଣ ନୃପତିଗଣ ହୋଇଲେକ ସଜ ।
ସଭାରୁ ଉଠି ନୃପତି ପ୍ରବେଶ ଯାଇଁ ହେଲେ
ଦେଖିକରି ରାଜାମାନେ ଫେରିଣ ଅଇଲେ ।
ଶ୍ୱେତନାଗ ଯେସନେ ପେଢ଼ିରେ ଶୋଇଥାଇ
ଲାଞ୍ଜର କତିରେ ପାଇ ମୂଷା ଯେହ୍ନେ ଚାହିଁ ।
ସେହିରୂପେ ଭୟ ପାନ୍ତି ନୃପତି ସକଳ
ପଛଘୁଞ୍ଚା ଦେଇଣ ଗଲେ ଯେ ମହୀପାଳ ।
ସଭାରେ ବସିଣ ଯେ ବୋଲନ୍ତି ନୃପରାଶି
ଏ ଧନୁକୁ ଆମ୍ଭେ ନ ପାରିବୁ ଯେ ଆକର୍ଷି ।
ଯେ ପାରିବ ତୋଳି ଯେ କନ୍ୟାକୁ ବିଭା ହେଉ
ଏତେ ବୋଲି ସଭାରେ ବସିଲେ ନୃପରାହୁ ।
ଜନକ ବୋଇଲେ ଯେ ଋଷିଗଣେ ଶୁଣ
ଯେହୁ ଧନୁ ଧରିବ ଉଠ ହେ ବହନ ।
ଶୁଣିଣ ଋଷିଗଣ ପ୍ରବେଶ ହୋଇଲେ
ମଞ୍ଜୁଷ ଭିତରକୁ ଯାଇଣ ଦେଖିଲେ ।
ବିଚାରିଲେ ଈଶ୍ୱର ବିଜୟ କରିଛନ୍ତି
ଫେରିଣ ଆସିଲେ ଯେ ସକଳ ମହାଋଷି ।
ଋଷିଗଣ ଯେଣୁ ଯେ ଫେରିଣ ଆସିଲେ
ଜନକ ଋଷି ପୁର ଉଚ୍ଚରେ ଡାକ ଦେଲେ ।
ଦ୍ୱିଜବର ଚଣ୍ଡାଳ ପଥୁକୀ ଜନେ ଶୁଣ
ଯେ ତୋଳିବ ଧନୁ ସେ କନ୍ୟାକୁ ନେବ ଜାଣ ।
ହାଟୁଆ ବାଟୁଆ ପ୍ରଜାଜନମାନେ
ରଥି ପଦାତି ଯେ ସରଦାର ଗଣେ ।

ଧନୁ ଯେ ତୋଳିବ ମିଳ ଏଥି ଆସି
ପଛନ୍ତେ ମୋହର ଯେ ଦୋଷ ନାହିଁ କିଛି ।
ଶୁଣିଣ କେହି ନଗଲେ ନକହିଲେ କିଛି କେହି
ଧନୁକୁ ଭୟ କଲେ ସର୍ବଜନେ ଚାହିଁ ।
ଜନକ ବୋଇଲେ ତୁମ୍ଭେ ସକଳ ଲୋକ ଶୁଣ
ଧନୁ ଧରି ଯେ ପାରିବ ସେମାନେ ଆସ ପୁଣ ।
ଧନୁ ଧରିଲେ ଦୁହିତା ନିଶ୍ଚୟ ବିଭା ଦେବି
ରାଜା ପ୍ରଜା ଯେ ଧରିବ ମୋହର ଚିତ୍ତେଭାବି ।
ସତ୍ୟସତ୍ୟସତ୍ୟ ତ୍ରିବାର ମୁଁ ନକରଇ ଆନ
ଶୁଣିଣ ସ୍ତମ୍ଭୀଭୂତ ହେଲେ ସକଳ ଜନ ।
ଏହା ଶୁଣି ସମସ୍ୟା ନଦେଲେ ପୁଣ ସେହି
ନିଶବଦ ହୋଇଣ ଅଛନ୍ତି ସର୍ବେ ରହି ।
କ୍ଷଣେ ନିବର୍ତ୍ତି ହୋଇଣ ରହିଲେ ଋଷିଗଣ
ଧନୁ ଧରିବାକୁ କେହି ନୋହିଲେ ଭାଜନ ।
ବାହୁଡାଇ ନେଲି ଧନୁ ସମସ୍ତେ ତୁମ୍ଭେ ଶୁଣ
ବିଶ୍ୱାମିତ୍ର ମୁନି ବୋଇଲେ ଧନୁ ତୁମ୍ଭେ ଆଣ ।
ଶ୍ରୀରାମ ଲକ୍ଷ୍ମଣ ଦେଖିବାକୁ କଢ଼ାଇ ଆଣିଲୁ
ଏବେ ସବୁଙ୍କରି ବଳ ପ୍ରାକର୍ମ ଦେଖିଲୁ ।
ଜନକ ବଚନେ ବିଶ୍ୱାମିତ୍ର କହିଲେଣ
କିମ୍ପାଇ ବିମୁଖ ଯେ ଜନକ ହେଲ ପୁଣ ।
ଯାହା ସେ ସତ୍ୟ କରି ଅଛନ୍ତି ପୂର୍ବରୁ ପୁଣି
କାଲ ଆଗ ପଛକୁ ଆମ୍ଭେ ଥିବୁ ଜାଣି ।
ଯେବଣ କାଳେ ପ୍ରାପତ ହେବ ଯେଉଁ ଯୋଗ
କର୍ମର ଅନୁସାରେ ବିଧାତା ଦିଏ ଭୋଗ ।
ନୁହ ତୁ ଆକୁଳ ଯେ ବୁଝିଣ କାର୍ଯ୍ୟକର
ବଡ଼ ବଡ଼ ପ୍ରତାପୀ ଯେ ଅଛନ୍ତି ନୃପବର ।
ଏହି ରାଜାମାନେ ଯେ ସ୍ୱୟମ୍ବରେ ଯାଇଥିଲେ
ମଞ୍ଜାରୀ ଲାଖ ବିନ୍ଧିବାକୁ କ୍ଷମ ଯେ ନୋହିଲେ ।
କାଳେ ସେ ଲାଜକୁ ବିନ୍ଧିଲେ ଦଶରଥ
ଦେଖିକରି ରାଜାଗଣ କଲେକ ଅନର୍ଥ ।
ଅନର୍ଥ ଦେଖିଣ ଯେ ତପନ କୁଳ ରାଏ
ଧନୁ ଧରି ସମର କଲେକ ସେଠାରେ ।
ଚାଳିଶ ସହସ୍ର ରାଜାଙ୍କୁ ପକାଇଲେ ହାଣି
ଆଉ ରାଜାମାନେ ଯେ ପଳାଇଲେ ପୁଣି ।
ପର୍ଶୁରାମ ଶତ୍ରୁ ସହସ୍ରାର୍ଜୁନ ଆସିଲା
ମୃଗମାରି ଆସି ଯମଦଗ୍ନି ମଠରେ ମିଳିଲା ।

ଚରଚା ପାଇ ରାଜା ପାଇଲା ମୁଖ ଯେଣୁ
ସୁରଭିଙ୍କି ମାଗିଲା ନଦେଲା ଋଷି ତେଣୁ ।
ଅଧର୍ମରେ ଋଷିଙ୍କି ମାରିଣ ରାଜା ନେଲା
ତେଣୁଟି ପର୍ଶୁରାମ ତା ସଙ୍ଗେ କଳି କଲା ।
ଜାଣିଣ ସହସ୍ରାର୍ଜ୍ଜୁନ ମନରେ ବିଚାରି
ଚାରିଶ ସହସ୍ର ରାଜା ଆଣିଲାକ ବରି ।
ନବଦିନ ପର୍ଯ୍ୟନ୍ତେ ସେଠାରେ ଯୁଦ୍ଧ ହେଲା
ସକଳ ରାଜା ସଙ୍ଗେ ସହସ୍ରାର୍ଜ୍ଜୁନ ମଲା ।
ତେଣୁଟି ପର୍ଶୁରାମ ଚଳିଣ ମନରେ
ରାଜାମାନଙ୍କୁ ମାରିଲା ଏକୋଇଶ ଥରେ ।
ରାଜାମାନଙ୍କ ରୁଧିରେ ତର୍ପଣ ସେହୁ କଲା
ତେଣୁ ସେ ପର୍ଶୁରାମ ସପ୍ତପୁର ଗଲା ।
ଦୁଷ୍ଟଙ୍କୁ ମାରି ସନ୍ଥ ରଖିଣ ସାଧ କରି
ବ୍ରହ୍ମାହର ବାସବ ଦେବତା ଆଦିକରି ।
ରଣରେ ଜିଣିଲା ହାରିଲେ ସର୍ବେ ପୁଣ ।
ସେ କଥାକୁ ବିଚାର କର ହେ ତପୋଧନ ।
ଶ୍ରୀରାମ ଲକ୍ଷ୍ମଣ ଯେବେ ନିଶ୍ଚୟ ଧନୁ ଧରି
ଗୋଳ କଲେ ସମସ୍ତଙ୍କୁ ପକାଇବେ ମାରି ।
ଜନକ ଋଷି ବୋଇଲେ ଯେ ଗୋଳ କରିବ
ତାହାର ଦୋଷରୁ ସେହୁ ସିନା ନାଶଯିବ ।
ଏଥିରେ ମୋହର ଦୋଷ ନାହିଁ ବିଶ୍ୱାମିତ୍ର
ଏଗାର ଥର ଗୋଳ କଲେଣି ରାଜା ଯୁଥ ।
ଏ ଈଶ୍ୱରଙ୍କର ଧନୁ ପର୍ଶୁରାମ ବଳେ
ବାର ବରଷ ମୁଁ ଯେ ବର୍ତ୍ତିଲି କୁଶଳେ ।
ଏବେ ତୁମ୍ଭେ ଗୋଳକଲେ ମୋର ଦୋଷ ନାହିଁ
ନିର୍ବଳ ଲୋକ କିମ୍ପା ଗୋଳରେ ହେବେ ଗ୍ରାହି ।
ଶୁଣିଣ ବିଶ୍ୱାମିତ୍ର ବୋଇଲେ ତୁମ୍ଭେ ଶୁଣ
ଦେଖନ୍ତୁ ଧନୁ ତୁମ୍ଭର ଶ୍ରୀରାମ ଲକ୍ଷ୍ମଣ ।
ଏ ଯେବେ ନପାରିବେ କରିବା ଆମ୍ଭେ କିସ
ଭୁଞ୍ଜିବା ନା ସୀତୟା କର୍ମର ଭବିଷ୍ୟ ।
ଶରାସନ ଫେରାଇଣ ନେବାକୁ ତୁମ୍ଭ ମନ
ଶ୍ରୀରାମ ଲକ୍ଷ୍ମଣ ଧନୁ ଦେଖନ୍ତୁ ଥରେ ପୁଣ ।
ଏ ଦୁହେଁ ଦେଖିବାରୁ ଫେରାଇ ତୁମ୍ଭେ ନିଅ
ଶ୍ରଦ୍ଧା କରିଅଛନ୍ତି ଯେ ଦଶରଥ ପୁଅ ।
ବିଶ୍ୱାମିତ୍ରଙ୍କଠାରୁ ଏସନ ବାଣୀ ଶୁଣି
ଜନକ ବୋଇଲେ ଯେ ଦେଖନ୍ତୁ ଆସି ପୁଣି ।

ବିଶ୍ୱାମିତ୍ର ବୋଇଲେ ତ୍ରିବାର ସତ୍ୟ କର
ଯେ ତୋଳିବ ଏ ଧନୁକୁ ଏ କନ୍ୟାହେବ ତାର ।
ଜନକ ବୋଇଲେ ମୁଁ ତ୍ରିବାର ସତ୍ୟ କଲି
ଯେ ଧନୁ ତୋଳିବତାକୁ ଦୋହିତା ଦେବି ବୋଲି ।
ଆହୁରି କଥାଏ ତୁମ୍ଭେ ଶୁଣ ତପୋଧନ
ଲକ୍ଷେରାଜା ଯେ ଜିଣିବସାନ ଦୁହିତା ନେବପୁଣ
ଚାହିଁଲେ ବିଶ୍ୱାମିତ୍ର ଶ୍ରୀରାମ ଲକ୍ଷ୍ମଣ ବେନି
ଲାଜ ଲାଜ ହୋଇଣ ଉଠିଲେ ରଘୁମଣି ।
କଉଶିକଙ୍କ ପୟରେ କଲେକ ନମସ୍କାର
ଲକ୍ଷ୍ମଣଙ୍କୁ ସଙ୍ଗେ ଘେନି ଶ୍ରୀରାମ ଆଗୁଁସାର ।
ଦେଖିଣ ପଚାରନ୍ତି ସକଳ ସଭାଜନ
ଏ ଦୁଇଗୋଟି ଅଟନ୍ତି କାହାର ନନ୍ଦନ ।
କେ ବୋଲେ ବିଶ୍ୱାମିତ୍ର ଆଣିଣ ଅଛନ୍ତି
କେ ବୋଲେ ରାଜା କୁମର ପ୍ରାୟେକ ଦିଶନ୍ତି ।
କେ ବୋଲେ କିମ୍ପାଇଁ ଏ ଉଠିଲେ ଆସ୍ଥାନୁ
କେ ବୋଲଇ ଅବା ଏ ଦେଖିବେ କି ଧନୁ ।
କେ ବୋଲଇ ପିଲାଏ ଯେ କରିବେଟି କିସ
କେ ବୋଲେ ଲେଉଟିଲେ ପାଇବେ ଉପହାସ ।
କେ ବୋଲେ ଧାତା ଧନୁ ଏହାଙ୍କ ପାଇଁସଞ୍ଚି
ଏହୁ ଅବା ସେ କୋଦଣ୍ଡ ପାରିବେ ଆମଞ୍ଚି
କେ ବୋଲଇ ତୁମ୍ଭେମାନେ ହୋଇଲ କି ବାଇ
ପର୍ବତକୁ ମୁଖରେ ପେଲିଲେକି ଘୁଞ୍ଚିଯାଇ ।
ଟେଳା ମାରିଲେ କି ଯେ ଭାଙ୍ଗଇ ପର୍ବତ
କେ ବୋଲଇ କିମ୍ପା ଯେ କହୁଛ ଏମନ୍ତ ।
ସାନ ଦେଖି ଏହାଙ୍କୁ ଭରସା ନପାଏ ତୁମ୍ଭରି
ଏହାଙ୍କ କର୍ମେ ସିନା ଲେଖିଛି କୁଶଧାରୀ ।
ଅଗସ୍ତି ଯେ ସାନହୋଇଶୋଷିଲେ ସିନ୍ଧୁସାତ
ପ୍ରହଲାଦ ସାନ ଯେ ତୋଷିଲେ ପଦ୍ମନେତ୍ର ।
ଧ୍ରୁବ ସପ୍ତବରଷେ ବିଷ୍ଣୁଙ୍କୁ ତୋଷ କଲା
ଭଗିରଥ ସାନ ଯେ କାଳେ ଗଙ୍ଗାକୁ ଆଣିଲା ।
କେମନ୍ତେ ଏହାଙ୍କୁ ତୁମ୍ଭେ ବୋଇଲ ଯେ ସାନ
ଧାତା ସିନା ଜାଣଇଁ ଯେ ଯହିଁକି ଭାର୍ଜନ ।
ନିର୍ଭା କରିଣ ଯେ ସେ ଅଛଇଁ ଅବା ଜାଣି
ପୁରୁଷଙ୍କ ଭାଗ୍ୟ ହୁଏ କ୍ଷଣ କ୍ଷଣକେ ପୁଣି ।
ଭରସା ନ ପାଇଲେ କି ଉଠିଣ ଆସନ୍ତେ
ଚାଲିବାର ଛଟକ ଭୂମିକି ଆକର୍ଷନ୍ତେ ।

କେ ବୋଲଇ ଏହି ଯେ ଅଟନ୍ତି ବେନିଭାଇ
କେ ବୋଲଇ ସାନ ବଡ଼ ବାରଣ ନ ଯାଇ ।
କେ ବୋଲଇ କିଛି ଯେ ନ ଜାଣ ତୁମ୍ଭେ ପୁଣ
ବଡ଼ ସାନ ପ୍ରକୃତି ଅଲଗା ଅଟେ ଜାଣ ।
ଦୃଷ୍ଟାନ୍ତରେ ପଢିଥିଲେ ଏମାନ ସିନା ଜାଣି ।
ଯାହାର ଶରୀର ଦିଶେ ଶ୍ୟାମଳ ବର୍ଣ୍ଣ ପୁଣି
ନୀଳମଣି ସଦୃଶ ରାଜିବ ଲୋଚନ
ପଦ୍ମରାଗ ମାଣିକ୍ୟ ପ୍ରାୟେ ଅଧର ଶୋଭାବର୍ଣ୍ଣ ।
ସୁଦୀର୍ଘ ନାସିକା ମୁଖ ପଦ୍ମ ପ୍ରାୟ ଜାଣ
ଯାହାର ଶରୀର ଦିଶେ ଭ୍ରମର ଜ୍ୟୋତି ପୁଣ ।
ଶିର ଯାର ଶୋଭାଦିଶେ ଯାଇଫୁଲେ ଗଭା
କପୋଳରେ କସ୍ତୁରୀ ଚିତା ଅଟେ ଶୋଭା ।
କଣ୍ଠରେ ରତ୍ନମାଳା ସର୍ବାଙ୍ଗେ ଚନ୍ଦନ
ବକ୍ଷସ୍ଥଳେ ଲୁଚଇ ପଦକ ନବରତ୍ନ ।
ବାହାରେ ବାହୁଟି ଶୋଭେ ହସ୍ତରେ କଙ୍କଣ
କିଜାଣି ପଟାନ୍ତର ସୂର୍ଯ୍ୟର କିରଣ ।
ଅଙ୍ଗୁଷ୍ଠି ମାନଙ୍କରେ ନବରତ୍ନ ମୁଦି
ବିଜୁଳିର ତେଜ ଯେହ୍ନେ କଳାମେଘ ଭେଦି ।
କଟିରେ କଟିମେଖଳା ଶିରେ ପାଗ ବାନ୍ଧି
ଉପରେ ଦୋଷଡ଼ା ଯେହ୍ନେ କଳାମେଘ ସାଜି ।
ପୟରେ ନୂପୁର ତାର ରୁଣ ଝୁଣ ବାଜେ
ସୁନ୍ଦର ସୁକୁମାର ଶ୍ୟାମଳ ରୂପ ସାଜେ ।
ଏତେ ଲକ୍ଷଣେ ଜ୍ୟେଷ୍ଠଭାଇ ପୁଣ ଦିଶି
ସଙ୍ଗରେ ସାନୁଜ ଭାଇ ଅଛନ୍ତି ଯେ ଆସି ।
ଶୁକ୍ଳାମ୍ବର ମୂର୍ତ୍ତି ଯେ ସରି ସମ ନାହିଁ
ଏ ଧନୁକୁ ଧରିବେ ବିଳମ୍ବ କିଛି ନାହିଁ ।
ବିଧାତା ନିର୍ମାକରିଣ ସେ ଥୋଇଥିଲା କାହିଁ
ଏ ରୂପରେ ରୂପଗୋଟି ଦେଖିଲାତ ନାହିଁ ।
କେ ବୋଲଇ ଦେଖ ତୁମ୍ଭେ ଆସିବାର ଗତି
ତୃଷା କଲା ବେଳେ ଯେହ୍ନେ ଆସେ ମତ୍ତହସ୍ତୀ ।
ଏମନ୍ତ ସୁନ୍ଦର ରୂପ ତ୍ରିଭୁବନେ ନାହିଁ
ପୟରକୁ ପଟାନ୍ତର ନୋହିବେ ଆନ କେହି ।
କେ ବୋଲଇଆଜାନୁଲମ୍ବିତ ବେନିବାହା
କେ ବୋଲଇ କପୋଳ ସୁନ୍ଦର ଶୋଭାଦେହା ।
କେ ବୋଲଇ ନିବିଡ଼ ଅଟଇ ବକ୍ଷସ୍ଥଳ
କେ ବୋଲଇ ତାରେଉ ଅଟେ ଏହାଙ୍କର ବାଳ ।
କେ ବୋଲଇ କଟୀ ଯେ ଅଟଇ ସିଂହଠାଣି
କେ ବୋଲଇ ଦାନ୍ତ ଦେଖ ଡାଳିମ୍ବ ବୀଜଜିଣି ।
କେ ବୋଲଇ ଏହାଙ୍କର ଧନ୍ୟ ଗର୍ଭଧାରୀ
କେ ବୋଲେ ଏହାଙ୍କ ପିତା କେତେ ତପକରି ।
କେ ବୋଲେ ଧନ୍ୟ ଅଟେ ବିଶ୍ୱାମିତ୍ର ମୁନି
କେବଣ ଦେଶରୁ ଅଇଲେ ଏହାଙ୍କୁ ଘେନି ।
କେ ବୋଲଇ ଆମ୍ଭର ଯେ ଜୀବନ ସୁଫଳ
ଏହାଙ୍କୁ ଦେଖିବାରୁ ପାତକ ହେଲା ଦୂର ।
କେ ବୋଲଇ ଜାନକୀ ଅନେକ ତପକଲେ
କେ ବୋଲଇ ଜାନକୀ ଉର୍ମିଳା କଷ୍ଟଗଲେ
ବିଭା ଯାତ୍ରା ବେନି ଭଗ୍ନିଙ୍କର ଆଜହୁଁ ଫିଟିଲା ।
ବାଡ଼ୋଇ ହୋଇଥିଲେ ସାଧ୍ୱୀ ଏବେ ଭଲା ।
ନିଶ୍ଚୟ ଏ ରାଜପୁତ୍ର ଧନୁ ଆମଞ୍ଚିବ
ଆଜିର ଭିତରେ ଶୁଭ କାର୍ଯ୍ୟ ଯେ ହୋଇବ ।
କେ ବୋଲଇ ବାଳୁତ ଯେ ବୟସରେ ସାନ
ଏ ଧନୁର ମହିମା ସେ ନ ଜାଣନ୍ତି ପୁଣ ।
କେ ବୋଲଇ ଧନୁ ଏ ଯେ ନପାରିବେ ତୋଳି
କେ ବୋଲେ ପ୍ରସନ୍ନ ଏହାଙ୍କୁ ହେବେ ଦେବହରି ।
କେବୋଲେ ସୁଦୟା ଏହାଙ୍କୁ କରିବେ ସଦାଶିବ
ତାହାଙ୍କର ପ୍ରସନ୍ନରେ ଏ ଧନୁ ଧରିବ ।
ଏସନ କୁହା କୁହି ହୁଅନ୍ତି ସର୍ବଜନ
ମଞ୍ଜୁଷଠାରେ ବେଗେ ମିଳିଲେ ଶ୍ରୀରାମ ।
ଦେଖିଣ ସଙ୍ଗ ସଖିମାନେ ସୀତାରେ କହିଲେ
ନୀଳମଣି ଚାପପାଶେ ବିଜୟ ଆସି କଲେ ।
ଧନୁ ଧରିବାକୁ ସେହୁ ହୋଇଲେଣି ଉଭା
ତାରାଗଣ ମଧ୍ୟରେ କି ପୂର୍ଣ୍ଣମୀଚନ୍ଦ୍ର ଶୋଭା ।
ଦେବ ସଭା ମଧ୍ୟରେ ଶ୍ରୀହରି ଯେହ୍ନେ ଦିଶି
ବନ ଜୀବ ମଧ୍ୟରେ କି ବିକ୍ରମ ସିଂହ ମିଶି ।
ମନମାୟା ବୋଲେ ସୀତା ଅନୁରୂପେ ବର
ଭାଗ୍ୟବତୀ କେଡ଼େ ତୁମ୍ଭେ ଧରିବ ଏହାଙ୍କର ।
ଦାସୀଜନଙ୍କ ମୁଖରୁ ଏସନ ଶୁଣି ସୀତା
ଶ୍ରୀରାମଙ୍କୁ ଚାହିଁଲେ ଯେ ଜନକ ଦୁହିତା ।
କୁମୁଦ ଚନ୍ଦ୍ର କି ଅବା ରଜନୀରେ ଭେଟ
ରବିଙ୍କି ଦେଖି ଯେହ୍ନେ ପଦ୍ମ ପୁଲକିତ ।
ଚୁମ୍ବକ ଲୁହା ଯେହ୍ନେ ମାଟିରେ ଝଲଇ
ପର୍ବତ ପରେ ଯେହ୍ନେ ଗଗନ ମେଘ ଚରଇ ।

ପାରା ରସ ଯେହ୍ନେ ବିଞ୍ଛି ହୋଇ ଥାଇ
ମିଶାଇଲେ ଏକଠାରେ ବାରଣ ନଯାଇ ।
ତେସନ ସଞ୍ଜାତ ଶ୍ରୀରାମଙ୍କୁ ଦେଖି ସୀତା
ଚାହିଁବାରେ ବିହ୍ବଳିତ ଜନକ ଦୁହିତା ।
କରଯୋଡ଼ି ଜାନକୀ ଯେ ସୁମରେ ବିଧାତା
ସମକକ୍ଷ ବୟସ ତ ଦଶରଥ ବତ୍ସା ।
ଭୋ ଦଇବ ବିଧାତା ବିନତି ମୋର ଘେନ
ଆଜ ବିଧାତା ନିରାଶ ନକର ମୋତେ ପୁଣ ।
ଏଗାର ବର୍ଷ ହେଲା ଦୁଃଖରେ ଅଛି ରହି
ମଦନରେ ଉନ୍ନତ ତନୁ ମୋର ହୋଇ ।
ତୁମ୍ଭେ ମୋତେ ଅନୁଗ୍ରହ କରି ଉମାବର
କରୁଛି ଦଇନି ମୁଁ ଛାଡ଼ିଲି ଲଜ୍ଜାଭାର ।
ଏ ବର ଆଜ ଯେବେ ହୋଇବ ପ୍ରାପତ
ତେବେ ମୋର ମନୋରଥ ସମ୍ପୂର୍ଣ୍ଣ ହେବାରତ ।
ନୋହିଲେ ନିଶ୍ଚେ ମୁଁ ଯେ ହେବି ତ୍ରିରୀ ହତ୍ୟା
କିମ୍ବା ତୋତେ ବୋଲିବ ଯେ ଜଗତର ପିତା ।
ଏସନ ସମୟରେ ଉର୍ମିଳା ଦେବୀ ଉଠି
ପାଏଡା ପଡିଣ ସେହୁ ବିନତି କଲାଟି ।
ବୋଇଲା ଠାକୁରାଣୀ ଗୋ ନୀଳମଣିଙ୍କି ଦେଖ
କ୍ଷୀର ସାଗର ଉପେକ୍ଷି ବିଜେ ପଦ୍ମମୁଖ ।
ଅନନ୍ତ ବାସୁଦେବ ଏ ଦୁହେଁ ବୋଲି ଜାଣ
ନେତ୍ରରେ ଦେଖି ଏବେ ଲଭନ୍ତି ମୁକ୍ତି ପୁଣ ।
ଅର୍ଘ୍ୟ ତାଙ୍କୁ ବନ୍ଦାପନା କରଗୋ ଠାକୁରାଣୀ ।
ସୀତୟା ବୋଇଲେ ସମ୍ଭାଳ ତୁ ଗୋ ପୁଣି ।
ଲୋକେ ଉପହାସ କରିବେ ଏହା ଦେଖି
ବୋଲିବେ କେଡ଼େ ନିର୍ଲ୍ଲଜୀ ଅଟଇ ଜାନକୀ ।
ଧନୁକୁ ନଧରୁଁ ବନ୍ଦାପନା କରୁଛନ୍ତି
ନିର୍ଲ୍ଲଜ ପଣରେ ସ୍ୱାମିଙ୍କୀ ବରୁଛନ୍ତି ।
କେବଳ ହୁଳହୁଳି ଦିଅନ୍ତୁ ଦାସୀଗଣ
ଧନୁ ଧଇଲେ ଆଳତି କରିବା ସନମାନ ।
ଏମନ୍ତ ସମୟରେ ଶୁଭିଲା ହୁଳହୁଳି
ବାମ ଚକ୍ଷୁ ସ୍ଫୁରାଇଲ ଜାନକୀ ମୈଥିଳି ।
ମନମାୟାକୁ ଚାହିଁ ଜାନକୀ ବୋଇଲେ
ଚାହୁଁ କିନା ବାମ ଚକ୍ଷୁ ମୋର ଡିଅଇଁ ।
ଶୁଣିଣ ମନମାୟା ବୋଇଲା ସୁଲଭଟି
ମୋର କଥାକୁ ପ୍ରତେ ନକର ଶୁଭ୍ରକେଶୀ ।

ଏହି ବର ତୋତେ ଗୋ ହୋଇବ ପ୍ରାପତ
ମୋତେ ଜଣାଗଲାଣି ତୁମ୍ଭର ହରିବ୍ରତ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରି
ଶ୍ରୀରାମ ଉଭାହେଲେ ଲକ୍ଷ୍ମଣ କର ଧରି ।
ମସ୍ତକ ନୁଆଁଇଣ ମଞ୍ଜୁଷକୁ ଚାହିଁ
ସିଂହ ବନସ୍ତରେ ଯେହ୍ନେ ହସ୍ତୀରେ ଦୃଷ୍ଟି ଦେଇ ।
ଧନୁ ଦେଖି ଶ୍ରୀରାମ ମନରେ ହେଲେ ତୋଷ
ଜନକଙ୍କୁ ଚାହିଁଣ ବୋଇଲେ ରଘୁନାଥ ।
ବାହାରକୁ କାଢ଼ି ମୁଁ କି ଦେନି ଶରାସନ
ତୁମ୍ଭେ ଯେବେ ମହାଋଷି ହୋଇବ ପ୍ରସନ୍ନ ।
ହରଷରେ ମହାମୁନି ମୋତେ ଆଜ୍ଞା ହେଉ
ସଦାଶିବ ଧନୁ ଏ ତ ଛୁଇଁଲେ ପାପ ଯାଉ ।
ଶ୍ରୀରାମ ବଚନରେ ବୋଲନ୍ତି ଜନକ
ତୁ ଧନୁ ଦେଖି କେମନ୍ତେ ମଣିଲୁ ରଘୁନାଥ ।
ଅକଳ୍ପ ବଳଧନୁ ଏହାକୁ ବାହାରେ ଲୋଡୁ ଆଣି
ଏଥିରେ ଚରିତ ବାବୁ ଅଛୁଟିକି ଜାଣି ।
ବିଶ୍ୱାମିତ୍ର ବୋଇଲେ କଲ ଯେବେ ଶ୍ରଦ୍ଧା
ପାରିଲେ ଧନୁ ଆଣନ୍ତୁ ତୁମ୍ଭଙ୍କୁ କିମ୍ବା ବାଧା ।
ଅସଂଖ୍ୟ କଥା ଏହାର ବୁଝିବେ ସର୍ବ ଆସି
ଧନୁକୁ ତୋଳି ଧଇଲେ ବଳିଷ୍ଠରେ ଲେଖି ।
ଜନକ ବୋଇଲେ ଯେ ବିଶ୍ୱାମିତ୍ରଙ୍କୁ ଚାହିଁ
ମହାଦେବ ବିଷ୍ଣୁ ଗୀତିରେ ଛୁଅନ୍ତା କେହି ନାହିଁ ।
ଅନେକ ଦେଶର ଯେ ରାଜାମାନେ ଛନ୍ତି
ଏ ଧନୁକୁ ତୋଳି ଲଜ୍ଜାରେ ଘୁଞ୍ଚିଛନ୍ତି ।
ଏ ବାଳକ ପୁଅ ଧନୁ କେମନ୍ତେ ଆଣିବ
ମାୟାକଲେ ନିକି ପରଲୋକକୁ ଜିଣିବ ।
ଜନକ ଋଷିଠାରୁ ଏସନ ବାଣୀ ଶୁଣି
ପ୍ରଜାଗଣେ ସମସ୍ତେ ବୋଇଲେ ଯେ ବାଣୀ ।
ଭୋ ମୁନି କିମ୍ପାଇଁ ଯେ ନ ବୋଲ ଧନୁ ଆଣ
ବୁଝିବାନା ଏହା ଅଟଇ କେତେ ପ୍ରାଣ ।
ଜ୍ୱଳନ୍ତା ଯୁଇରେ ପଶି ମନ ଯେ କରଇ
ସାମାନ୍ୟ ଭରସାକି ସମୁଦ୍ର ପହଁରଇଁ ।
ଆମ୍ଭେମାନେ ଭାସି ଆସିବାର ସେ ଦେଖିଲା
କେଡ଼େ ଭରସା ତାହାକୁ ଧନୁ ପାଶେ ଗଲା ।
ବିଶ୍ୱାମିତ୍ର ବୋଲେ ତୁମ୍ଭ ମନକୁ ନ ପାଇ
ବୃଶାଳ ଯୁବା ହେଲେ ବୋଲନ୍ତି ଆଣଯାଇ ।

ଦେଖିବା ପାଇଁ ଧନୁ ଥୋଇ ଅଛୁ ପୁଣ
ଡରାଉଛୁ ଧନୁର ଅକଳ ବଳ ପ୍ରାଣ ।
ବାରବର୍ଷ ନବଯୁବା ଦୁହିତା ଘରେ ରଖି
ପିଲା ବୋଲି ଶ୍ରୀରାମଙ୍କୁ ବୋଲୁଛ କାହିଁକି ।
ଆଣ ହେ ଶ୍ରୀରାମ ମଞ୍ଜୁଷରୁ ଧନୁ କାଢ଼ି
ଜନକକୁ ତୁମ୍ଭେ କି ଡରୁଛ ଚାପଧାରୀ ।
ଆଗେ ସତ୍ୟ କରିଅଛି ପଛକୁ ନିଶତ
ଏକେ କହି ବିଶ୍ୱାମିତ୍ର ହେଲେ କ୍ରୋଧ ଚିତ୍ତ ।
କ୍ରୋଧ ଦେଖି ଜନକ ବୋଇଲେ ରାମ ଆଣ
ବାହାରକୁ ଆଣିଣ ଧନୁର ଗୁଣ ଟାଣ ।
ସମସ୍ତଙ୍କର ଯେଣୁ ହୋଇଲା ସନମତ
ଶୁଣିଣ ବୋଇଲେ ପୁଣ ଜନକ ତପୋବନ୍ତ ।
ଶ୍ରୀରାମ ବାଳୁତ ଅଟେ ଅଳପ ବୟସ
ଏ ଧନୁକୁ ଧରିବାକୁ କରିଅଛି ସାହସ ।
ବଡ଼ ବଡ଼ ଲୋକେ ଯେ ଗଲେଣି ଏଥି ଫୁଟି
ଏ କିସ କରିବ ଏ କଅଁଳା ପୁଅ ଗୋଟି ।
ଏ ଧନୁର ଗୁଣ ଯେ ଅଛଇଁ ମୁହିଁ ଜାଣି
ଛୁଇଁଲା ମାତ୍ରକେ ଅଜ୍ଞାନ ହୋନ୍ତି ପୁଣି ।
କାଲେ ତୁମ୍ଭେ କହିବ ନ କହିଲା ବୋଲି କରି
ମୋହର ଦୋଷ ନାହିଁ ତୋତେ ଯେ କହିଲି ।
ଶୁଣିକରି ବିଶ୍ୱାମିତ୍ର କହିଲେ ଜନକଙ୍କୁ
ବଡ଼ ବଡ଼ କେଉଁଲୋକ ଆସିଲେ ଏ ସ୍ଥାନକୁ ।
କେହୁ ବଡ଼ଲୋକ ହୋଇ କେଉଁଠାରେ ନାଶ କଲା
କେହୁ ଜଣେ ସାନହୋଇ କାହାକୁ ନ ଜିଣିଲା ।
ତୋହର କିଏ ବଡ଼ କହ ଯେ ଆମ୍ଭଙ୍କୁ
ବଡ଼କରି ଡରାଉଛି କି ଈଶ୍ୱର ଦେବତାଙ୍କୁ ।
ଶୁଣିଣ ଶ୍ରୀରାମ ଯେ କହିଲେ କରଯୋଡ଼ି
ସଞ୍ଚାଣ ପିଲା ପାରୁଆ ଖେଦି ପାରି ।
ତୋଳି ମୁଁ ନ ପାରିଲେ ନେବ ବାହୁଡାଇ
ମଞ୍ଜୁଷର ଦ୍ୱାରେ ରାମ ବହନ ଉଭା ହୋଇ ।
ସ୍ୱର୍ଗରେ ନିର୍ବେଦ ହୋଇଲେ ଦେବ ନାହିଁ
ମିଥିଳାର ନରନାରୀ ଆନନ୍ଦ ମନ ହୋଇ ।
ସମସ୍ତ ରାଜାଙ୍କର ଶୁଖିଲା ବଦନ
ଋଷିମାନେ ସର୍ବେ ଚାହିଁ କଲେ ସୁକଲ୍ୟାଣ ।
ଦେଖଣା ହାରୀମାନେ ମନରେ ତୋଷ ହୋଇ
ବ୍ରାହ୍ମଣମାନେ ବେଦ ପଢ଼ନ୍ତି ସେଥି ରହି ।

ଖଡୀରତ୍ନମାନେ ସର୍ବେ ମଙ୍ଗଳ ଧ୍ୱନି କରି
ମିଥିଳାର ନାରୀମାନେ ଦେଲେ ହୁଳହୁଳି ।
ସମସ୍ତେ ବୋଲନ୍ତି ଧନୁ ବେଗେଣ ଆମଞ୍ଚ
ମିଥିଳା ଭାଗ୍ୟ ଆଜ ଦେଖନ୍ତୁ ସର୍ବଲୋକ ।
ଜନକ ସିଦ୍ଧ ବଚନ ଏବେ ସିଦ୍ଧ ହେଉ
ସୀତା ସୁଲକ୍ଷଣୀ ଆଜ ବର ତୁମ୍ଭଙ୍କୁ ପାଉ ।
ଏକକୁ ଆରେକ ଯେ ଚହଳ କରନ୍ତି
ଅଙ୍ଗୁଳି ଦେଖାଇ ଦାସୀ ସୀତାଙ୍କୁ କହନ୍ତି ।
ମଞ୍ଜୁଷ ଭିତରେ ଯେ ଶ୍ରୀରାମ ଚନ୍ଦ୍ର ପଶି
ବାମ ଭୁଜରେ ଧନୁ ଯେ ଆଣିଲେ ଆକର୍ଷି ।
ବାହାରକୁ ଘେନି ଯେ ଆଣିଲେ ରଘୁନାଥ
ଦେଖିଲେ ସର୍ବଜନ କୋଦଣ୍ଡ ଅଛି ହସ୍ତ ।
ଆନନ୍ଦରେ ହରଷ ହେଲେ ସର୍ବନାରୀ
ଶ୍ରୀରାମ ଧନୁ ଧରିଲେ ବୋଲିଣ ଗୋଳକରି ।
ସାଧୁ ସାଧୁ ଶବଦ ଶୁଭିଲା ତିନିପୁରୀ
ବାମ ହସ୍ତରେ ଧନୁ ଧଇଲେ ଚାପଧାରୀ ।
ଶ୍ରୀରାମ କର୍ଣ୍ଣରେ ଯେ ଲକ୍ଷ୍ମଣ କହଇ
ଶିର ନୁଆଁଇ ଧନୁ ନଧର ବୋଲଇ ।
ଚଉଦିଗେ ନୃପତି ଅଛନ୍ତି ସମସ୍ତେ
ନମସ୍କାର କଲା ବୋଲିବେ ରଘୁନାଥେ ।
ଲକ୍ଷ୍ମଣ କଥାକୁ ରାମ ଦୃଢ଼ବ୍ରତ କଲେ
ସତ କହିଲୁ ଭାଇରେ ବୋଲିଣ ବୋଇଲେ
ଧନୁ ଧରି ଶ୍ରୀରାମ ଅଛନ୍ତି ଉଭାହୋଇ
ଲକ୍ଷ୍ମଣ ବୀର ବୋଇଲେ ଦଶଦିଗକୁ ଚାହିଁ ।
ଭୋ ପୃଥ୍ୱୀ ଦେବୀ ତୁହି ସ୍ଥିର ହୋଇଥାଅ
ଅସମ୍ଭାଳ ହୋଇଲେ ତୋ ଧ୍ୱଂସି ହେବ ଦେହ ।
ବାସୁକୀ ନାଗ ରହ କ୍ଷଣେ ସମ୍ଭାଳ ହୋଇ
କୂର୍ମମାନେ ତୁମ୍ଭେ ପୃଥ୍ୱୀ ଧରିଥାଅ ରହି ।
ଦଶଦିଗପାଳମାନେ ଶୁଣ ସାବଧାନେ
ଅଳସ ନ କରି ତୁମ୍ଭେ ରହ ସାବଧାନେ ।
ମନ୍ଦପଣ କଲେ ତୁମ୍ଭର ଧଇର୍ଯ୍ୟ ପଣ ଯିବ
ଈଶ୍ୱର ଧନୁ ଆଜ ଶ୍ରୀରାମ ଆମଞ୍ଚିବ ।
ସପ୍ତପୁର ଲୋକଙ୍କୁ ଲକ୍ଷ୍ମଣ କହିଲେ
ଯେ ଯାହା ସଜରେ ସର୍ବେ ରହ ଯେ ବୋଇଲେ ।
ମେଢ଼ ଜଗତୀରେ ସୀତା ଉର୍ମିଳା ଯେ ଚାହିଁ
ଲକ୍ଷ୍ମଣ କହିବାର ଯେ କର୍ଣ୍ଣରେ ସମ୍ଭାଇ ।

ମନମାୟାକୁ ଜାନକୀ ଦେବୀ ବୋଲେ ଶୁଣ
କେହୁ ଡାକୁଅଛି ଉଚ୍ଚରେ ବାଣୀ ପୁଣ ।
ମନମାୟା ସଖୀ ବୋଲେ ଦିଅର ତୋର ଜାଣ ।
ଧନୁ ଧରିବାରୁ ଡାକନ୍ତି ଉଚ୍ଚେ ପୁଣ ।
ଏଥୁ ଅନନ୍ତରେ ଶୁଣ ହେ ରସ ବାଣୀ
ନିଶବଦ ହୋଇଣ ଅଛନ୍ତି ସର୍ବେ ପୁଣି ।
କୋଦଣ୍ଡ ଧରିଣ ଯେ ଉଭା ଦାଶରଥି
ଗୁଣ ଟଙ୍କାର କଲେକ ଶ୍ରୀରାମ ଝଟତି ।
ପୃଥ୍ୱୀର ଭିତରୁ ଶୁଭିଲାକ ଯେ ଶବଦ
ମୋତେ ବାରେ ରକ୍ଷା କରହେ ରଘୁରାଜ ।
ଧନୁର ହୁଳ ଯେବେ ଲଦିବ ମୋରେ ତହିଁ
ନିଶ୍ଚୟ ପ୍ରାଣ ମୋର ତେଜିବି ରଘୁସାଇଁ ।
ମେରୁର ଶତେ ଗୁଣ ଅଟଇ ଧନୁ ଗରୁ
ମୋଁ ପରେ ଧନୁ ଥୋଇଲେ ପ୍ରାଣ ମୋର ହରୁ ।
ଶୁଣିକରି ଶ୍ରୀରାମ ପୃଥ୍ୱୀକି ଦୟା କଲେ
ନିଜ ବାମ ପାଦ ଆଗକୁ ବଢ଼ାଇଲେ ।
ବୁଢ଼ା ଆଙ୍ଗୁଠି ନଖ ଉପରେ ରଖିଲେ
ଧନୁର ହୁଳ ନେଇ ନଖରେ ଲଦିଲେ ।
କଉଶିକ ବୋଇଲେ ଶୁଣ ହେ ଜନକ
ଦେଖ ଶ୍ରୀରାମର ବଳ ଯେ ଅନେକ ।
ବସୁଧା କାନ୍ଦିବାରୁ ଉପାୟ ଗୁଣ କଲେ
ନିଜ ବାମ ପାଦ ଯେ ଆଗକୁ ବଢ଼ାଇଲେ ।
ବିଶ୍ୱାମିତ୍ର ବୋଇଲେ ରାଜା ଗଣେ ଶୁଣ
ଶ୍ରୀରାମ ବାମ ପାଦେ ରଖିଲେ ଧନୁ ଗୁଣ ।
ଋଷିମାନେ ଦେଖ ହେ ସକଳେ ଯେତେ ଅଛ
କଅଁଳା ପୁଅ ରାମ ବଳ ବପୁ ଦେଖ ।
ହାଟୁଆ ବାଟୁଆ ଯେ ପଥୁକୀ ଜନମାନେ
ସମସ୍ତେ ପ୍ରଶଂସା କରୁଅଛନ୍ତି ରଘୁନାନେ ।
ସତ୍ୟାନନ୍ଦ ବୋଇଲେ ଶୁଣ ହେ କଉଶିକ
ମୋ ଜନନୀ ଅହଲ୍ୟାକୁ ମୁକତ କଲେ ଏତ ।
ଦିନକର ମାନ ଯେ ଉଦ୍ଧରିଲ ତୁମ୍ଭେ
ଯାଗ ରଖିବାକୁ ତୁମ୍ଭେ ଆଣିଲ କେଉଁ ଶୁଭେ ।
ନୋହିଲେ କି ଦେବତାଏ ତୁମ୍ଭଙ୍କୁ ପ୍ରଶଂସି
ବିଧାତା ଯେ ବର ଦେଲେ ହୋଇଲେ ବ୍ରହ୍ମଋଷି ।
ଚଣ୍ଡାଳକୁ ନେଇଣ ସ୍ୱର୍ଗରେ ବସାଇଲ
ଋଷିର କୁମରକୁ ଜୀବ ଦାନ ଦେଲ ।

ଏଗାର ବର୍ଷ ଷଡ଼ ମାସ ସୀତୟାକୁ ଜାଣ
ଜନ୍ମ କାଳରୁ ଅଯୋନି ଯୁବା ହେଲା ପୁଣ ।
ତାର ତଳେ ଅଯୋନି ଉର୍ମିଳା ନାମେବାଳୀ
ଜାନକୀ କି ଷଡ଼ମାସେ ଜଣା ସେହୁ ନାରୀ ।
ବେନି କନ୍ୟାକୁ ବେନି ସତ୍ୟକଲେ ଯେ ଜନକ
ଧନୁ ଯେ ଭାଙ୍ଗିବ ମୋର ଦେବାର ସତ୍ୟ ସତ୍ୟ ।
ଶୁଣିକରି ବିଶ୍ୱାମିତ୍ର ଆନନ୍ଦ ହୋଇଲେ
ଶୁଣରେ ସତ୍ୟାନନ୍ଦ ବୋଲିଣ ବୋଇଲେ ।
ବେନି କନ୍ୟାକୁ ନିଶ୍ଚେ ନେବେ ସେ ବେନିଭାଇ
ରାଜାମାନଙ୍କ ଗର୍ବ ଭାଙ୍ଗିବ ଆଜ ବିହି ।
ଏଥୁ ଅନନ୍ତରେ ଶୁଣ ତୁମ୍ଭେ ଗୋ ଶାକମ୍ଭରୀ
ମନମାୟା ସୀତା ଆଗେ କହିଲା ବିସ୍ତାରି ।
ଦେଖ ଗୋ ଠାକୁରାଣୀ ଶ୍ରୀରାମଙ୍କ ବଳ ।
ବାମ ପାଦରେ ସେ ଥୋଇଲେ ଧନୁ ହୁଳ ।
ଦିଅର ଲକ୍ଷ୍ମଣ ଯାଇ ଶ୍ରୀରାମ କହିଲେ
ଶିର ତୁମ୍ଭେ ନ ନୁଆଁଣ ବୋଲିଣ ବୋଇଲେ ।
ଜଣାଗଲା ବିଷ୍ଣୁ ଏ ଈଶ୍ୱର ଦୁଇ ଜଣ
ଭୋଗ ଏବେ କର ଗୋ ଘେନିଣ ନାରାୟଣ ।
ତୁମ୍ଭେ ଯେ କମଳୀନୀ ବେଳହୁଁ ମୋତେ ଜଣା
ନାରାୟଣ ଅବତାର ତୋର ପାଇଁ କିନା ।
ଆଜହୁଁ ସତର ଦିନେ ହୋଇବ ଏକସଙ୍ଗ
ପ୍ରୀତି ଉପୁଜିବ ଯେ ହୋଇବ ନାନା ଭାବ ।
ସମପରି ଏସନ ଯେ ଘଟାଇଲେ ବିହି
ତୁହି ଋଷି ଜେମା ଗୋ ରାଜପୁତ୍ର ସେହି ।
ଦୁହିଙ୍କି ମେଳ ଦଇବ କଲେ ଏକ ଯୋଗ
ଆମ୍ଭମାନଙ୍କୁ ତୁମ୍ଭେ ମନରୁ ଛାଡ଼ିବ ।
ମନମାୟା ବଚନରେ ସୀତୟା କହେ ବାଣୀ
କେତେ କେତେ ଢ଼ମାଳି ଗୋ କରୁ ତୁହି ପୁଣି ।
ସମସ୍ତେ ମିଳି ମୋହର ସଙ୍ଗତରେ ଯିବ
ହାସ୍ୟ ରସ କଉତୁକ ତୁମ୍ଭେ କରାଇବ ।
ଜାନକୀର ବଚନେ ସମସ୍ତେ ହେଲେ ତୋଷ
ଉର୍ମିଳାକୁ ବୋଇଲେ ଉପାୟ କର କିସ ।
ଉର୍ମିଳା ବୋଇଲେ ତୁମ୍ଭେ ବେଗେ ଅର୍ଘ୍ୟ ଦିଅ
ତୁମ୍ଭେତ ସୌଭାଗ୍ୟ ହେଲେ ନୁହଁ କିମ୍ପା ପ୍ରିୟ ।
ଶୁଣିକରି ଜାନକୀ ଧଇଲେ ଅର୍ଘ୍ୟଥାଳି
ପଞ୍ଚବର୍ଣ୍ଣ କୁସୁମ ଦୁର୍ବାକ୍ଷତ ତୋଳି ।

ଦାସୀଗଣ ମିଳିଲେ ଯେ ଦେଲେ ହୁଳହୁଳି
ଆନନ୍ଦ ମନରେ ସୀତୟା ଅର୍ଘ୍ୟ ଧରି ।
ପ୍ରଥମେ ପଞ୍ଚବର୍ଣ୍ଣ ପୁଷ୍ପ ବନ୍ଦାଇଲେ
ଦ୍ୱିତୀୟେ ଦୁର୍ବାକ୍ଷତ ଅର୍ଘ୍ୟନେଇ ଦେଲେ ।
ମଙ୍ଗଳ ଆଳତୀ ବନ୍ଦାପନା କଲେ ପୁଣ
କରଯୋଡ଼ି ଓଳଗି ମେଲାଇଲେ ଜାଣ ।
ବନ୍ଦାପନା ସାରିଣ ଯେ ବୋଇଲେ ଜାନକୀ
ତୁ ବନ୍ଦାପନା କରିବୁ କନିଷ୍ଠଙ୍କୁ କି ।
ଉର୍ମିଳା ବୋଲେ ମୋର ସୁଫଳ ନୋହେ କାର୍ଯ୍ୟ
ଶୁଣିକରି ଜାନକୀ ମନ କଲେ ବୋଧ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଭଗବତୀ
କୌଶିକ ଋଷି ବୋଲେ ଶୁଣ ଦାଶରଥି ।
ଜନକ ଦୁହିତାର ସରିଲା ବନ୍ଦାପନା
ଧନୁରେ ଗୁଣ ଦେଇ ଟଙ୍କାର କର କିନା ।
ଶୁଣିଣ ଶ୍ରୀରାମ ଯେ ହରଷ ମନ ହେଲେ
ଆନନ୍ଦ ହୋଇଣ ସେ ମନରେ ଭାଳିଲେ ।
ଶିବ ଧନୁ ଶ୍ରୀରାମ ଯେ ବାମ କରେ ଧରି
ଗୁଣ ଦେବେ ବୋଲିଣ ସେ ଆଣି ଉଜୁଡ଼ି ।
ମଡ଼ ମଡ଼ ଶବଦ ଯେ ଶୁଭଇ କୋଦଣ୍ଡ
ଥର ହର ହୋଇ ମେଦିନୀ କମ୍ପେ ନବଖଣ୍ଡ ।
ଗୁଣର ଫାସ ଶ୍ରୀରାମ ଦକ୍ଷିଣ କରେ ନେଇ
ମଞ୍ଜୁଷରେ ପେଟ ପାଶେ ଗୁଣ ଦେଲେ ନେଇ ।
ଯହୁଁ ସାୟକରେ ରାମ ନେଇ ଦେଲେ ଗୁଣ
ଶିର ନୁଆଁଇଲେ ଦେଖି ସକଳ ରାଜନ ।
ବିଚାରିଲେ ବାରବର୍ଷ ତନୟ ଏହା କଲା
ରାଜାଙ୍କ ମୁଖରେ ସେ କାଳୀ ଲଗାଇଲା ।
ଗୁଣ ଦେଇ ଧନୁରେ ରାମ ଧରିଲେ ସଜ କରି
ଋଷି ବିପ୍ର ପଥୁକୀ ଆନନ୍ଦ ସବୁଙ୍କରି ।
ରାଜାଗଣ ମନରେ ସମସ୍ତେ ହେଲେ ଦୁଃଖୀ ।
କିଛି ହିଁ ନ କହନ୍ତି ତଳକୁ ମୁଖ ପୋତି ।
ଧନୁକୁ ଧରି ଶ୍ରୀରାମ ଟଙ୍କାର କରନ୍ତି
ଦେଖି ଜନକ ରାଜାର ଫିଟିଗଲା ଭ୍ରାନ୍ତି ।
ମନେ ମନେ ବିଚାରିଲା ଏହିଟି ବାସୁଦେବ
ନୋହିଲେ କି ଆନଲୋକ ଧନୁ ଆମଣ୍ଟିବ ।
ଈଶ୍ୱର ଏ ଧନୁକୁ ଅଟନ୍ତି ସାମରଥ
ନାରାୟଣ ଜାତ ହେଲେ ଶ୍ରୀରାମ ରୂପରେ ତ ।

ଶିବଧନୁ ଶ୍ରୀରାମଙ୍କୁ କଲେ ଯେ ଆୟତ
ନିଶ୍ଚୟ ସୀତୟା ମୋର ଏହାଙ୍କୁ ପ୍ରାପତ ।
ଏଥୁ ଅନନ୍ତରେ ସାୟକ କରେ ଧରି
ଦକ୍ଷିଣ ଭୁଜରେ ତହୁଁ ଆଣିଲେ ଉଜୁଡ଼ି ।
ଶିବଧନୁ ବୋଇଲେ ଶୁଣ ତୁ ରଘୁନାଥ
ହେଲେ ନାଶ ନକର ମୋହର ପୁରୁଷାର୍ଥ ।
ଅକଳିତ ବଳ ମୋର ଶୁଣ ରଘୁସାଇଁ
କ୍ଷତ୍ରୀମାନେ ମୋତେ କେହି ଆଲୋଡ଼ି ନ ପାରଇ
ପରମ ଲକ୍ଷ୍ମୀ କମଳା ଯେ ଅଟନ୍ତି ସୀତୟା ।
ତୁମ୍ଭର ଯୁଗେ ଯୁଗେ ଅଟନ୍ତି ସେ ପ୍ରିୟା ।
ମୁହିଁ ପ୍ରସନ୍ନ ଯେ ହେଲି ତୁମ୍ଭଙ୍କୁ ଜାଣ
ତେଣୁକରି ଶ୍ରୀରାମ ଧରିଲ ମୋତେ ପୁଣ ।
ଏବେ ଥିରି କରି ହେ ଉଠାଅ ରଘୁବୀର
କରୁଣା ସାଗର ବାନା ଅଟଇ ତୁମ୍ଭର ।
ଧନୁର କାକୁତି ବଚନ ଶ୍ରୀରାମ ଯେ ଶୁଣି
ହୃଦ ପଦ୍ମ ମଧରେ ବିଚାରିଲେ ଶୁଣି ।
ବୋଇଲେ କିମ୍ପାଇ ହେ ତରସ୍ତ ହେଉ ଚାପ
କଥାକୁ ନ ବୁଝି ପୁଣ ହେଉଛ କେତେ ତାପ ।
ତୋତେ ଆକର୍ଷଣ ଯେବେ ନ କରିବି ମୁହିଁ
ଲଜ୍ଜା ଯେ ପାଇବଇଁ ରାଜାଙ୍କଠାରେ ମୁହିଁ ।
ତୁହି ତ ଧାର୍ମିକ ଧନୁ ଅଟୁରେ ଜ୍ଞାନବନ୍ତ
କାର୍ଯ୍ୟକଲା ବେଳେ କିମ୍ପା ନ ଜାଣୁ କଥାତ ।
ତୋତେ ଘେନି ଈଶ୍ୱର ଦକ୍ଷଙ୍କ ଯାଗ ନାଶି
ଦେବଙ୍କ କୋପ କଲେ କପିଳାସବାସୀ ।
ସେ କାଳରେ ଧନୁ ପ୍ରାୟ ମଣିଲୁକି ଆଜ
ଯେ ଦେହ ଛାଡ଼ିକରି ଶିବ ପୁରକୁ ଭଜ ।
ସଦାଶିବ ତୋତେ ଦେଖନ୍ତେ ବର ଦେବେ
ବଜ୍ର ଅଙ୍ଗ ଆୟୁଧ ଯେ କରିଣ ରଖିବେ ।
ଏସନେକ ଯୋଗ ତୋର ଅଛି ଜନ୍ମବେଳେ
କର୍ମେ ଏହା ବିହି ଲେଖିଲା ତେତେବେଳେ
ଯେତେକ ସମୟ ମୋର ତେତେକ ଭୋଗ ହେଲା
କାହାର ବେଳେ ସେକଥା ଆନନ୍ଦେ ନୋହିଲା ।
ଏସନକ କଥା ଯେ କର୍ମରେ ନିର୍ବାଣ
ସୀତା ବିଭା ହେଲା କାଳେ ତେଜିବୁ ପରାଣ ।
ସେହି କଥା ନିକଟ ହୋଇଲା ଏବେ ଆସି
ମୂର୍ଖପଣେ ସାୟକ ତୁ ବିମୁଖ ହେଉ ଏଥି ।

ଆଗତ କଥା ଶୁଣି ସ୍ତବ୍ଧ ଶରାସନ
ଗୁଣ ଧରି ଶ୍ରୀରାମ ଯେ ଉଚ୍ଛୁଡ଼ିଲେ ପୁଣ ।
ଦକ୍ଷିଣ କର୍ଣ୍ଣଯାଏ ଓଟାରି ଆଣୁ ଧନୁ
ଲୋଟି ହୋଇଣ ଯେ ଆସିଲାକ ତେଣୁ ।
ଶ୍ରୀରାମ ଧନୁ ଆମଞ୍ଚନ ଦେଖି ସୀତା
ମନ ପ୍ରକୃତିଏ କଲେ ଜନକ ଦୁହିତା ।
ବେନି ନେତ୍ର ସ୍ଥିର କରି ଦେଖିଲେ ଏମନ୍ତ
ବିଚାରନ୍ତି ଏହି ସେ ଅଟନ୍ତି ମୋର ନାଥ ।
ଧନୁର ଗୁଣ ଧରି ଶ୍ରୀରାମ ଆମଞ୍ଚିଲେ
ସୀତାଙ୍କୁ ଦୃଷ୍ଟି ଦେଲେ ସେହି ସମୟରେ ।
ସ୍ୱର୍ଗରେ ଦେବତାଏ ସାଧୁ ସାଧୁ କଲେ
ଧନ୍ୟ ଧନ୍ୟ ଶ୍ରୀରାମ ହେ ବୋଲିଣ ବୋଇଲେ ।
ଆସ୍ଥାନର ଲୋକ ଆଶ୍ଚର୍ଯ୍ୟ ହେଲେ ଚାହିଁ
କେ ବୋଲେ ପୁଣ୍ୟବନ୍ତ ଅଟନ୍ତି ଏହା ଆଇ ।
ଏମନ୍ତ ଅସମ୍ଭବ କଥା ଯେ ଦେଖା ନଥିଲା
ନୟନରେ ଦେଖିଲଇଁ କେହୁ ସେ ବୋଇଲା ।
ମନମାୟା ବୋଇଲେ ଶୁଣ ଗୋଦେବୀ ସୀତା
ଧନୁ ଯାଗକଲେ ଯେ ଯୋଗରେ ତୋର ପିତା
ଲକ୍ଷେ ରାଜା ଦେଖିଲେ ଯେ ଋଷି ଆକଳିତ
ବିପ୍ର ରାଜା ଦେଖିଲେ ଯେ ହାଟୁଆ ପଥୁକୀତ ।
ଏତେ ଲୋକ ଉପରେ ଶ୍ରୀରାମ ଶିରୋମଣି
ଦେଖିଲେ ଶିବଧନୁ ଧରିଲେ ହସ୍ତେ ପୁଣି ।
ପିତାଙ୍କୁ ଗାଳି ଦେଇ ବିମୁଖ ହେଉଥିଲ
ଏତେକାଳେ ଶ୍ରୀରାମଙ୍କୁ ପତି ଗୋ ପାଇଲ ।
ଦଶରଥ ରାଜା ବଧୂ ହୋଇଲେ ଏବେ ପୁଣ
ଅଯୋଧ୍ୟାରେ ପାଟରାଣୀ ହୋଇବ ଯାଇଣ ।
ଶୁଣିଣ ସୀତା ତାଙ୍କୁ ବଚନ ପୁଣି କହି
କେତେ ଗୋ ସଙ୍ଗାତୁଣୀ ଇଙ୍ଗିତ କରୁ ତୁହି ।
ତୁମ୍ଭ ମାନଙ୍କ ପ୍ରସନ୍ନରେ ହେଲି ମୁଁ ମୁକତ
ବର୍ତ୍ତିଥାନ୍ତୁ ମୋର ଜନକ ନାମେ ତାତ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ
ଶ୍ରୀରାମ ଯେ ଗୁଣ ଟଙ୍କାରେ କଲେ ଧରି ।
ଆତଯାତ କରିଣ ଉଚ୍ଛୁଡ଼େ ଧନୁ ଯହୁଁ
କୋଦଣ୍ଡର ଦର୍ପ ଯେ କଳିଲେ ରାମ ତହୁଁ ।
ଅତିହିଁ ଆମଞ୍ଚନ୍ତେ କୋଦଣ୍ଡ ଶରାସନ
ମଡ଼ ମଡ଼ ଶବଦ ଶୁଭଇ ଘନ ଘନ ।

ମଧରୁ ଭାଙ୍ଗିଗଲା ବେନି ଖଣ୍ଡ ହୋଇ
ଆଦିତ୍ୟ ଦେବତା ଯେ ସ୍ଥକିତ ହୋଇ ରହି ।
ସପ୍ତ ସମୁଦ୍ର ଯେ ଲହରୀ ହେଲା ସ୍ଥିର
ଡରେ ସ୍ତମ୍ଭୀଭୂତ ଯେ ହେଲେ ଶଶୀଧର ।
ପର୍ଶୁରାମ ତପେ ଥିଲେ ଭାଙ୍ଗିଗଲା ଯୋଗ
ବିଚାରିଲେ ମନେ ତ ଏକଥା ଅସମ୍ଭବ ।
ଯୋଗରେ ଜାଣିଲେ ଯେ ଧନୁ ଭଗ୍ନ ହେଲା
ଜାଣିଣ ପର୍ଶୁରାମ ମନରେ ଶଙ୍କା କଲା ।
କପିଳାସ କନ୍ଦରେ ଯେ ଶଙ୍କର ଗଉରୀ
କଳିକରି ଦୁଇଜଣ ମନେ ବିମନ ଧରି ।
ସଦାଶିବ ଉମାଙ୍କୁ ସମ୍ଭାଦି ନ ନେବାରୁ
ତେଣୁକରି ଉମାଦେବୀ କ୍ରୋଧେ ବସେ ଦୂରୁ ।
ପାର୍ବତୀ ଈଶ୍ୱରଙ୍କୁ ଅଛନ୍ତି ପଛକରି
କଥାରେ ବଇରାଗ ମରେ ଦୁଃଖ ଧରି ।
ହସ ହସ ହୋଇଣ ଭାଳେ ତ୍ରିପୁରାରି
କେମନ୍ତେ କଥା କହିବେ ହେମବନ୍ତର ଦୁଲାଳି ।
ଏସନକ ସମୟରେ ଭାଜିଲା କୋଦଣ୍ଡ
ଥରହର ହୋଇ କମ୍ପେ ମେଦିନୀ ନବଖଣ୍ଡ ।
କପିଳାସ ପୁରକୁ ଯେ ଶୁଭିଲା ଶବଦ
ଶୁଣିକରି ବନଜନ୍ତୁ ହୋଇଲେ ତବଦ ।
ଲକ୍ଷେକ ବଜ୍ର କି ପଡ଼ିଲା ଏକଠାଇ
ଭୟରେ ଦେବୀ ଉମା ଅଇଲେ ପଳାଇ ।
ତରତ୍ତରେ ଯାଇଣ ରୁଦ୍ରଙ୍କୁ କୋଳ କଲେ
କୁଚ କୁମ୍ଭେ ଲଗାଇ ତରସ୍ତେ ଭିଡ଼ିଲେ ।
ଡରେ ଥରହର ହୋଇଣ କମ୍ପେ ସତୀ
ଅତିହିଁ ଆନନ୍ଦ ହୋଇଲେ ପଶୁପତି ।
ମନରେ ବିଚାରିଲେ ଭଲ ହେ ରଘୁନାଥ
ତୋହର ଯୋଗୁଁ ମୋତେ ପାର୍ବତୀ ପ୍ରାପତ ।
ପାର୍ବତୀ ହେଲା ମୋହର ଜାନକୀ ହେଲା ତୋର
ଦୁହିଁଙ୍କ କଥା ସଫଳ ହେଲା ରଘୁବୀର ।
ଅନେକ ଦ୍ରବ୍ୟ ମୋହର ହୋଇଲାଣି କ୍ଷୟେ
ଏହି କଥା ଯେ ଅନେକ ଲାଭ ହୁଏ ।
ପ୍ରସନ୍ନ ହୋଇ ଶଙ୍କର ଶ୍ରୀରାମେ ବରଦେଲେ
ସୀତାଙ୍କୁ ଭୋଗ କରି ଅସୁର ମାର ହେଲେ ।
ଏଥୁ ଅନନ୍ତରେ ଶୁଣ ହେ ରସବାଣୀ
ଅକଳ୍ପ ବଳଧନୁ ଭାଙ୍ଗିଲେ ରଘୁମଣି ।

ଆସ୍ଥାନର ତଳେ ଯେ ବିଜୟ ରାମ ମଣି
ମନରେ ବିଚାରିଲେ ଜନକ ଋଷି ପୁଣି ।
ଇନ୍ଦ୍ର ଗୋବିନ୍ଦ ପରାୟ ଦିଶନ୍ତି ବେନି ଭାଇ
ନୋହିଲେ ଆନକି ଏ ଧନୁକୁ ଭାଙ୍ଗଇ ।
ତୋଳିତ ଭାଜନ ଯେ ନୋହିଲେ ଆନଲୋକ
ଈଶ୍ୱର ସେ ଧନୁ ଯେ ପାରନ୍ତି ଧରି ଏକ ।
ଏସନକ ସମୟରେ ବିଶ୍ୱାମିତ୍ର ଋଷି
ଜନକ ସଙ୍ଗରେ ହୋଇଲେ ଏକଗୋଷ୍ଠୀ ।
ସକଳ ମୁନି ମେଳି ହୋଇଲେ ବିଚାରି
ଶ୍ରୀରାମର ବେଳେ ଯେ ପଡ଼େ କର୍ମ କରି ।
ବାର ବରଷ ହେଲା ଆର୍ଦ୍ଧୋଳି ସହିଲି
ଧନୁର ସ୍ୱୟମ୍ବର ଆଜ ମୁଁ ସାରିଲି ।
ଦଶରଥ ରାଜାଙ୍କର କି ସାମାନ୍ୟ ପୁଣ୍ୟ କହି
ଏମନ୍ତପରା ପୁତ୍ର ସେ ଭାଗ୍ୟବଳେ ପାଇ ।
ଦେଖଣାହାରୀ ଲୋକ ବେଢ଼ିଣ ଦେଖୁଛନ୍ତି
ଧନ୍ୟ ଧନ୍ୟ ଶ୍ରୀରାମଚନ୍ଦ୍ର ବୋଲିଣ ବୋଲନ୍ତି ।
ବାଳକ ତନୟ ତୋର ଆଜାନୁ ବେନିବାହୁ
ବଜ୍ର ସମାନ ଧନୁ ଭାଙ୍ଗି ଯଶ ତୁ ରୁହାଉ ।
ସୁନ୍ଦର ରୂପଗୋଟି ରାଜାଙ୍କ ଦର୍ପଜିଣେ
ତୁହି ସେ ରାମଚନ୍ଦ୍ର କୁଳରେ ମଣ୍ଡନେ ।
ଶ୍ୟାମଳ ଦେହଗୋଟି ପବିତ୍ର ତୋର ଅଙ୍ଗ
ପାଦ ପଦ୍ମକୁ ସରି ନୁହଇ ଅନଙ୍ଗ ।
କେଉଁଠାରେ ବିଧାତା ଥିଲା ତୁମ୍ଭଙ୍କୁ ଥୋଇ
ସୀତା ପରା ଦୁହିତା ଥିଲା ଅବିବାହି ।
ଦିକଥା ଏକ କରି ବିଧାତା ଭିଆଏ ପୁଣ
ଏତେକାଳେ ଆଣି ବିଧାତା ସଙ୍ଗକଲା ଜାଣ ।
କୌଶିକ ବୋଇଲେ ଜନକ ମୁଖ ଚାହିଁ
ଯେବଣ ସତ୍ୟ ତୁମ୍ଭେ କରିଛ ତପସାଇଁ ।
ସେ ବାଞ୍ଛା ସିଦ୍ଧହେଲା ଜାନକୀ ବିଭାକର
ଦୁହିତାର ସଦୃଶେ ମିଳିଲା ଆସି ବର ।
ଶୁଣିଣ ଜନକ ଋଷି ହରଷ ମନ ହୋଇ
ସତ୍ୟାନନ୍ଦକୁ ଯେ ରାଣ ଆଜ୍ଞା ଦେଇ ।
ନଗ୍ରରେ ଉତ୍ସବ ଯେ କରାଅ ବୋଇଲେ
ସୀତାର ସାନ୍ନିଧକୁ ଜନକ ବେଗେ ଗଲେ ।
ପିତାକୁ ଦେଖି ଜାନକୀ ଲାଜ ଲାଜ ହୋଇ
ଜନକର ଚରଣେ ଓଳଗିଲେ ଯାଇ ।

ଦେଖିଣ ମୁନି ବୋଲନ୍ତି ଶୁଣ ଗୋ ଦୁଲାଳୀ
ତୋ ଲାଗି ବାରବରଷ ସହିଲି ଆର୍ଦ୍ଧୋଳି ।
ଏବେ ତୁମ୍ଭ କର୍ମରେ ଉତ୍ତମ ବର ମିଳି
ସରିସମ ତୋତେ ଗୋ ଅଟଇ ମହାଆଳି ।
ଦଶରଥ ରାଜା ଯେ ସୂର୍ଯ୍ୟ ବଂଶରେ ଜାତ
ଶ୍ରୀରାମ ଲକ୍ଷ୍ମଣ ଦୁହେଁ ଅଟନ୍ତି ତାଙ୍କ ସୁତ ।
ଜଣାଗଲା ତାହାଙ୍କୁ କ୍ଷତ୍ରୀ ସମ ନାହିଁ
ଅଗମ୍ୟ ବନରେ ତାଡ଼କୀ ମାରେ ସେହି ।
ବିଶ୍ୱାମିତ୍ର ଯାଗ ଯେ ରଖିଲେ ଭୁଜବଳେ
ଶାପରେ ଅହଲ୍ୟା ଯେ ପାଷାଣ ହୋଇଥିଲେ ।
ଶ୍ରୀରାମ ପାଦଲାଗି ହୋଇଲା ପୂର୍ବଦେହ
ପ୍ରଶଂସା କରନ୍ତିଯାରେ ସ୍ୱର୍ଗ ପିତାମହ ।
ବିଶ୍ୱାମିତ୍ର ସଙ୍ଗତେ ରଥକୁ ଅଇଲେ
ମୋର ବାଞ୍ଛା ଏହି ବର କରିବି ବୋଇଲେ ।
ଈଶ୍ୱରଙ୍କ ଧନୁ ଯେ ଅକଳିତ ବଳ
ଭୂମିରୁ ଛଡ଼ାଇ ନପାରନ୍ତି ସୁରପାଳ
ପର୍ଶୁରାମ ଯେଉଁ ଧନୁ ଦେଖି ପ୍ରଶଂସଇ
କ୍ଷତ୍ରୀ ହୋଇ କେହି ଧନୁ ତୋଳି ନପାରଇ ।
ରାବଣ କୁମ୍ଭକର୍ଣ୍ଣ ଶତେମୁଖା ରାବଣ
ତିନିଲକ୍ଷ ଅସୁର ଘୂଞ୍ଚିଲେ ଆସି ପୁଣ ।
ଲକ୍ଷେକ ରାଜା ମୁଁ ଯେ ବରଣ କରି ଆଣି
ଏଗାର ବେଳ ପର୍ଯ୍ୟନ୍ତ ଫେରିଲେ ଦେଖିପୁଣି
ବତିଶକୋଟି ବ୍ରାହ୍ମଣ ଷାଠିଏ କୋଟି ଋଷି
ହାଟୁଆ ବାଟୁଆ ଯେ ପଥୁକୀ ଜନ ଆସି ।
ଏଗାର ଥର ଏଥିରେ ଧନୁ ଯଞ୍ଚ କଲି
ଗୋଟିଏ ସାମର୍ଥ ମୁଁ କାହାକୁ ନ ଦେଖିଲି ।
ବେଦବର ଇନ୍ଦ୍ର ଯେ ଦଶଦିଗପାଳେ
ସେହି ଘୁଞ୍ଚିଗଲେ ଯେ ନଧରି ଧନୁ ବଳେ ।
ଈଶ୍ୱର ବହିବାରୁ ମୋତେ ଜଣାଗଲା
ଅସୁର ମାରିବାରୁ ବିଷ୍ଣୁ ଜାତ ହେଲା ।
ସେ ଧନୁକୁ ଶ୍ରୀରାମ ଧଇଲେ ଭୁଜବଳେ
ତୁମ୍ଭେ ମାତ ଦେଖିଲ ତ ନୟନ ଯୁଗଳେ ।
ଏବେ ଯିବା ଚାଲ ଗୋ ଶାରଦ ଚାନ୍ଦମୁହିଁ
ଶ୍ରୀରାମଙ୍କୁ ବର ତୁହି ରତ୍ନମାଳ ଦେଇ ।
ଏବେ ମୋର ସତ୍ୟ ଯେ ବ୍ରତହିଁ ପୂରିଲା
ଶ୍ରୀରାମ ଶିବଧନୁକୁ ଯେଣୁ ଆମଞ୍ଚିଲା ।

ଆସ ଆସ ସୀତୟା ଗୋ ବିଳମ୍ବ ନ କର
ମହେନ୍ଦ୍ର ସମୟରେ ଶ୍ରୀରାମଙ୍କୁ ବର ।
ପିତାଙ୍କର ମୁଖରୁ ଏସନକ ଶୁଣି
ଜାନକୀ ବୋଇଲେ ପିତାକହୁଛ କେଉଁ ବାଣୀ ।
ବୋଇଲେ କନିଷ୍ଠ ଦୁହିତାଙ୍କୁ ଯେ ପୁଛ
ସକଳ କଥା ଜାଣଇଁ ଜନ୍ମରୁ ଉର୍ମିଳା ତ ।
ଶୁଣିଣ ଜନକ ଉର୍ମିଳାକୁ ଅନାଇଲେ
କିସ କହେ ଜାନକୀ ଜାଣୁ କି କଥା ଭଲେ ।
ଉର୍ମିଳା ବୋଇଲେ ପିତା ଠାକୁରାଣି ଯାଆନ୍ତୁ
ତୈଲୋକ୍ୟ ନାଥ ଠାକୁରଙ୍କୁ ବରଣ କରନ୍ତୁ ।
ଠାକୁରାଣୀ ଫେରିଲେ ମୁଁ ଯିବି ତୁମ୍ଭେ ଶୁଣ
ଆମ୍ଭେ ବେନି ଦୁହିତାରୁ ପାଇବ କାରଣ ।
ଜନକ ବୋଇଲେ ତୋର ସତ୍ୟସିଦ୍ଧ ନୋହି
ଉର୍ମିଳା ବୋଇଲେ ଅନ୍ତସିଦ୍ଧ କରିବ ରହି ।
ଦେଖି ଏହିକ୍ଷଣି ଯେ କାର୍ଯ୍ୟ ହେବ ସିଦ୍ଧି ।
ସତ୍ୟବ୍ରତ ପୁରିବ ତୁମ୍ଭର ଏବେ ଆଜ ।
ଶୁଣିକରି ଜନକ ଜାନକୀ ତୋଷ ହେଲେ
ଉଠିକରି ଜାନକୀ ପିତାର ସଙ୍ଗେ ଚଳେ ।
ସଙ୍କୋଚ ଚିତ୍ତରେ ସେ ଚାଲନ୍ତି ଧିର ଧିର
ସଙ୍ଗରେ ପରିବାରି ଶତେ ଯେ ତାଙ୍କର ।
ନବରତ୍ନ ମାଳାକୁ କରରେ ଦେବି ଘେନି
ଧିର ଧିର ହୋଇଣ ହୋ ଚାଲଇ ପଦ୍ମିନୀ ।
ଶ୍ରୀରାମ ପାଶରେ ପ୍ରବେଶ ହେଲେ ଯାଇଁ ।
ଅତିହିଁ ଆନନ୍ଦରେ ହରଷ ମନ ହୋଇ ।
ରାଜାଗଣମାନେ ଯେ ସଭାରେ ବସିଥିଲେ
ଜାନକୀ ଆସିବାର ନୟନେ ଦେଖିଲେ ।
ନେପାଳ ଭୂପାଳ କର୍ଣ୍ଣାଟ କାଞ୍ଚି ସେ ବିରାଟ
କାଶୀ ଯାଜପୁର ଆବର ଓଡରାଷ୍ଟ୍ର ।
ଅଙ୍ଗ ବଙ୍ଗ କଳିଙ୍ଗ ଘୋଡା ଘାଟି ରଣପୁର
କାଉଁରି ଦେଶ ସଉରି ସମ୍ବଲ ଜୟପୁର ।
ସକଳ ରାଜାଗଣ ହୋଇଣ ଏକମେଳ
କନ୍ୟାକୁ ନେବେ ବୋଲି କଲେକ ଆସିଗୋଳ ।
ଯେ ଯାହାର ଆୟୁଧ ଘେନିଣ ବାହାରିଲେ
ମାର ମାର ଧର ଧରବୋଲିଣ ଡାକ ଦେଲେ ।
ଗୋଳ ଶୁଣି କରିଣ ରାମଙ୍କୁ କହିଲେ
ରାଜାଗଣ କଳି ଭିଆଣ ଏଥିକଲେ ।

ଶୁଣିକରି ଶ୍ରୀରାମ ନିଶରେ ହସ୍ତ ଦେଲେ
ଲକ୍ଷ୍ମଣ ବୀର ଧନୁ ଧରରେ ବୋଇଲେ ।
ମୋତେ ବରିବାରୁ କନ୍ୟା ବିଭା ହେଲେ ଜାଣ
ଧନୁଧରି ରାଜାଙ୍କ କର ମୋହମାନ ।
ପ୍ରାଣରେ ନ ମାରିବୁ ମୋହରେ ରଖିଥିବୁ ।
କନ୍ୟା ଏଥୁଗଲେ ଦେଖିବା ବଳ ସବୁ ।
ବହୁତ ରାଜାଗଣ ଅଛନ୍ତି ଏଥି ରହି
ଆଜ ଜାଣିବା ନ କାଠାରେ କେତେ ବଳ ଥାଇ ।
ଜନକଙ୍କୁ ଚାହିଁଣ ଯେ ରାମଚନ୍ଦ୍ର କହି
ମନରେ ଭୟ ନ କର ପିତାମହ ରହି ।
କୌଶିକ ଋଷି ଯଦି ମୋଠାରେ ସନ୍ତୋଷ
ଲକ୍ଷେ ରାଜା ହୋଇଲେ କରିବେକ କିସ ।
ତୁମ୍ଭେ ଯେବେ ସତ୍ୟ ମନେ ଦୁହିତା ମୋତେ ଦେବ
ବ୍ରହ୍ମା ଶିବ ହେଲେ ମୋତେ କି କରିପାରିବ ।
ଜନକ ବୋଇଲେ ବାବୁ ଶ୍ରୀରାମ ତୁମ୍ଭେ ଶୁଣ
ଏହି ରୂପେ ବହୁଥର ଗୋଳ କଲେ ପୁଣ ।
ଧନୁ ତୋଳି ନ ପାରି ଗୋଳ ଏ କରନ୍ତି
ନିର୍ଲ୍ଲଜ ପଣ କରି ଏଠାରେ ରହିଛନ୍ତି ।
ସଦାଶିବ କାମଧେନୁ ପର୍ଶୁରାମ ବଳେ
ଦଶବେଳ ମୁହିଁ ଯେ ବଞ୍ଚିଲି ଅବହେଳେ ।
ଏତେ ତୁମ୍ଭ ସଙ୍ଗରେ କରିବେ ବୋଲି ରଣ
ଧନୁଶର ଧରିଣ ବାହାର ହେଲେ ପୁଣ ।
ଶ୍ରୀରାମ ବୋଇଲେ କିସ କରିବେ ସତ
ସାନୁଜ ଲକ୍ଷ୍ମଣ ବୀର ରଖିଛି ତାହାନ୍ତ ।
ଏମନ୍ତ କଥା କହନ୍ତେ ରାଜାଶୁଣ ପୁଣ
ସଭାରୁ ଉଠି ସକଳେ ଅଇଲେ ତତ୍କ୍ଷଣ ।
ଦେଖନ୍ତା ଜାନମାନେ ବୋଇଲେ ହେଲା ଗୋଳ
ଜନକ ପ୍ରଜାମାନେ ମନରେ ବିକଳ ।
ଋଷିଗଣ ସର୍ବେ ଦେଖିଣ ହେଲେ ଉଭା
ତାଟକା ହୋଇଲେ ଦେଖି ସର୍ବଜନ ପ୍ରଜା ।
ଧନୁର ଟଙ୍କାର ଶବଦ କଲେ ରାୟେ
ଧନୁ ରଡ଼ିରେ ବ୍ରହ୍ମାଣ୍ଡ କମ୍ପିଲା ସ୍ୱର୍ଗଯାଏ ।
ସ୍ୱର୍ଗରେ ଦେବେ ଥାଇ ମନରେ ବିଚାରନ୍ତି
ଶ୍ରୀରାମ ଲକ୍ଷ୍ମଣଙ୍କୁ ଲକ୍ଷେ ରାଜା ବେଢ଼ିଛନ୍ତି ।
ଏ ଦୁହେଁ ଅଟନ୍ତି ବାଳୁତ ଦଶରଥ ପୁଏ
ତାଙ୍କ ସଙ୍ଗେ ଯୁଦ୍ଧ ଆଜି ବରିବେ ରାଜାଏ ।

ବୃହସ୍ପତି ବୋଇଲେ ସକଳ ସୁରେ ଶୁଣ
ବିଶ୍ୱାମିତ୍ର ଯାଗରେ ଅସୁରଙ୍କ ରଣ ।
ନଉ ସହସ୍ର ଅସୁର ପରିବାର ମିଳି
ରଣ କରନ୍ତେ ଯେ ସେଥିରେ ସମସ୍ତେ ମରି ।
ଏ ଛାର ରାଜାଗଣେ କି ସମର ହୋନ୍ତି ସରି
ଏକାଳେ ଲକ୍ଷ୍ମଣ ଯେ ମାରିବ ଧରି କରି ।
ଏମନ୍ତ ସମୟରେ ଯେ ବୀର ଲଇକ୍ଷଣ
କୌଶିକ ଜନକଙ୍କୁ କଲେ ମାନ୍ୟ ଧର୍ମ ।
ଶ୍ରୀରାମଙ୍କୁ ଓଳଗି ହୋଇଲେ ବେଗେ ପୁଣ
ବୋଇଲେ ନନା ତୁମ୍ଭେ ନଧର ଧନୁ ତ୍ରୋଣ ।
କୁସୁମ ମାଳ ଧରି ଠାକୁରାଣୀ ଉଭା ଆଗେ
ବରଣ କରିଣ ସେହୁ ଯାଆନ୍ତୁ ସରାଗେ ।
ଏ ରାଜାଗଣମାନେ ମୋତେ ନ ଅଣ୍ଟନ୍ତି
ଏକା ଥରକରେ ମାରିବି ସବୁକୁନ୍ତି ।
ଶୁଣିନାହଁ କି ତୁମ୍ଭେ ଜନକ ରାଜା କହି
ଲକ୍ଷେ ରାଜା ଜିଣିଲେ ଯେ ଦୁହିତା ଦେବଇଁ ।
କୌଶିକେ ତୋଷ ହେବେ ଜନକ ଦେଖିକରି
ଦଶରଥ ହରଷ ହେବେ ବଧୂ ଦେଖିକରି ।
ଶୁଣିକରି ବିଶ୍ୱାମିତ୍ର ଜନକ ସନ୍ତୋଷ
ଜାନକୀ ବିଚାରିଲେ ଉର୍ମିଳା କଥା ସତ ।
ଏମନ୍ତ ସମୟରେ ଲକ୍ଷ୍ମଣ କ୍ରୋଧ ହେଲେ
ଅଜୟ ମୋହଶର ଧନୁରେ ଯୋଚିଲେ ।
ମନ୍ତ୍ର ସୁମରିଣ ଶରକୁ ଡିଆରିଲେ
ସକଳ ରାଜାଙ୍କୁ ଯାଇ ମୋହକର ବଳେ ।
ପରମ ଆନନ୍ଦ ହେଲେ ଶର ଶୁଣିକରି
ବୋଇଲା ସମସ୍ତଙ୍କୁ ଶୁଆଇ ବିମୋହ କରି ।
ଏତେ କରି ତୂଣିରୁ ଶର ଚଳିଗଲା
ସକଳ ନୃପତି ଅଙ୍ଗେ ଯାଇଣ ଭେଦିଲା ।
ଧନୁଶର ଛାଡ଼ିଣ ସକଳ ରାଜା ପଡ଼ି
ଦେଖିଣ ଦେବତାଏ ସାଧୁ ସାଧୁ କରି ।
ବିଚାରିଲେ ଚାରି ରାବଣ ଏବେ ମଲେ
ପୃଥ୍ୱୀର ଭାରା ଏବେ ଉଶ୍ୱାସ ହେବ ଭଲେ ।
ସକଳ ଋଷି ତୋଷ ପ୍ରଜାଗଣ ସର୍ବେ
ହୁଳହୁଳି ଦେଇ ନାରୀମାନେ ତୋଷ ଭାବେ ।
ଜନକ କୌଶିକ ସତ୍ୟାନନ୍ଦ ପୁଣ
ହସିଲେ ମୁଖରେ ସେ ଦେଇଣ ବସନ ।
ଦାସୀଗଣ ହରଷ ଯେ ସୀତାର ନ ତୋଷ
ଶ୍ରୀରାମ ବୋଇଲେ ଭାଇ ଶୁଣରେ କନିଷ୍ଠ ।
ଏକଗୋଟି ବାଣରେ ସକଳ ରାଜା ମୋହ
ରାଜାଗଣେ ସର୍ବେ ଯେ ନିରକ୍ତ ହେଲେ ଦେହ ।
ପିତା ଶୁଣିକରି ଆମ୍ଭର ନିନ୍ଦା ଯେ କରିବେ
ସ୍ୱୟଂମ୍ବର ନିମନ୍ତେ ରାଜା ହିଁ ନ ଆସିବେ ।
ଜୀବଦାନ ଦିଅ ତୁମ୍ଭେ ଉଠନ୍ତୁ ସର୍ବେ ପୁଣ
ଜୀବନ୍ୟାସ ଶର ତୂ ବିନ୍ଧି ତତ୍କ୍ଷଣ ।
ଶୁଣିଣ ଲକ୍ଷ୍ମଣ ଯେ ଜୀବନ୍ୟାସ ଶର ମାରି
ଚେତା ପାଇ ରାଜାମାନେ ଉଠିଲେ ବେଗ କରି ।
ବୋଇଲେ ରାଜାମାନେ ସଭାରେ ହେଲେ ରୁଣ୍ଡ
ବୋଇଲେ ଧନ୍ୟ ଶ୍ରୀରାମ ଲକ୍ଷ୍ମଣ କ୍ଷତ୍ରୀଷଣ୍ଢ ।
ମାରିଣ ଜୀବଦାନ ଦେଲ ହେ ଏବେ ପୁଣ
ଏହିପରି କଥା ଆମ୍ଭେ ନ ଦେଖୁ ନୟନ ।
ରାଜକୁଳେ ବାବୁ ହେ କୀର୍ତ୍ତି ରୁହାଇଲ
ଉପର ବଂଶ ସଙ୍ଗରେ ତୁମ୍ଭେ ଯେ ସରି ହେଲ ।
ସଗର ରାଜା ବଳେ ସାଗର ଖୋଳାଇଲା
ଭଗିରଥ ଗଙ୍ଗା ଆଣି ମଞ୍ଚରେ ରୁହାଇଲା ।
ହରିଚନ୍ଦନ ରାଜା ସତ୍ୟରେ ସ୍ୱର୍ଗ ଗଲେ
ଶିବିରାଜା ଧର୍ମବଳେ ବୈକୁଣ୍ଠ ଲଭିଲେ ।
ଦଶରଥ ରାଜା ଯେ ଶନିଙ୍କି ଜିଣିଲେ
ତୁମ୍ଭେ ଲକ୍ଷେ ରାଜା ଯେ ଜିଣିଣ ଏହିଠାରେ ।
ଜୀବଦାନ ଦେବାରୁ ଦିଶିଲା ବଡ଼ ପଣ
ଭଲ ଯୋଗେ ଜନ୍ମ ହେଲେ ଭଲ ଭାଇ ପୁଣ
ଆମ୍ଭମାନଙ୍କର ସବୁ ଯେତେ ହିଂସ ଥିଲା
ଜୀବଦାନ ଦେବାରୁ ସନ୍ତୋଷ ମନ ହେଲା ।
ନୋହିଲେ କି ଶିବଧନୁ ଧରନ୍ତେ ଏହୁ ପୁଣ
ଜଣାଗଲା ସବୁ ଏଥର ସାମର୍ଥ ପଣ ।
ଜନକ ଋଷିଙ୍କି ଯାଇ ରାଜାଗଣେ କହି
ବରଣ କରୁ ଶ୍ରୀରାମଙ୍କୁ ଦୁହିତା ଦିଅ କହି ।
ଏଥୁ ଅନ୍ତରେ ଗୋ ଶୁଣ ଶାକମ୍ଭରୀ
ଲକ୍ଷେ ରାଜା ଜିଣିଲେ ଲକ୍ଷ୍ମଣ ଧନୁ ଧରି ।
ତେଣୁ ସେ ମନମାୟା ଉର୍ମିଳାରେ କହି
କର ବନ୍ଦାପନା ତୁମ୍ଭ କାର୍ଯ୍ୟ ଗୋସିଦ୍ଧ ହୋଇ
ଶୁଣିକରି ଉର୍ମିଳା ଯେ ହରଷ ହୋଇଲେ
କୁସୁମ ଦୁର୍ବାକ୍ଷତ ପ୍ରଥମେ ବନ୍ଦାଇଲେ ।

ମଙ୍ଗଳ ଆଳତୀ ଯେ ଦୀପାବଳୀ ପୁଣ
ହୁଳହୁଳି ଦେଇଣ ବନ୍ଦାନ୍ତି ନାରୀଗଣ ।
ବନ୍ଦାପନା କରନ୍ତି ମଙ୍ଗଳ ଧ୍ୱନି କରି
ହୁଳହୁଳି ଶବଦରେ ଗଗନ ମାର୍ଗ ପୂରି ।
ଏଥୁ ଅନନ୍ତରେ ଯେ ଜନକ ଋଷି ପୁଣ
ଦାସିକୀ କହିଲେ ତୁ କହ ଜେମାରେଣ ।
ଶୁଣିକରି ଦାସୀଗଣ ଜାନକୀରେ କହି
ପିତା ଆଜ୍ଞା ଦେଲେ ଯେ ବରଣ କର ତୁହି ।
ଶୁଣିଣ ଜାନକୀ ଯେ ମନରେ ହେତୁ କରି
ପୁଷ୍ପ ରତ୍ନମାଳା ସେ ଯେ ବେନିକରେ ଧରି ।
ଶ୍ରୀରାମ କଣ୍ଠରେ ସେ ଲମ୍ବାଇଲେ ନେଇ
ଚାରି ଚକ୍ଷୁ ଭେଟ ଯେ ପଡିଲା ଏକଠାଇଁ ।
ମୁଖକୁ ମୁଖ ଯହୁଁ ନିକଟ ହୋଇଲା
ଭ୍ରମର କି ସତେ ପଦ୍ମକୁ ଚୁମ୍ବିଲା ।
ଭେଟ ହୁଅନ୍ତେଣ ହସିଲେ ବେନି ଜନ
ଆନନ୍ଦରେ ହରଷ କଲେକ ସେହୁ ମନ ।
ସ୍ୱର୍ଗରେ ସାଧୁ ସାଧୁ ଶୁଭିଲା ଜୟ ଡାକ
ଚାରିବେଦ ଗାୟନ କଲେକ ଚତୁର୍ମୁଖ ।
ଯୁବତୀଗଣ ରହି ଯେ ଦେଲେ ହୁଳହୁଳି
କି ଜାଣି ମୁଖ ରାବରେ ସାଗର ଉଚ୍ଛୁଳି ।
ଦେଖଣାହାରୀ ଲୋକେ ଜୟ ଜୟ କରି
ଏକ ଆରେକ ଦେଖେ ଉବୁରା ଉବୁରି ।
କେ ବୋଲନ୍ତି ସୀତା ଗୋ କାହିଁରେ ତପ କଲା
ରୂପ ଅନୁ ରୂପେ ଗୋ ବର ସେ ପାଇଲା ।
ଦେଖିଲେ ଶ୍ରୀରାମ ଯେ ବିଜେ କରିଛନ୍ତି
ଦକ୍ଷିଣ ପାଶରେ ଜନକ ଆତ୍ମଜ ଅଛନ୍ତି ।
ବାମପାଶେ ଲକ୍ଷ୍ମଣ ଅଛଇଁ ବୀରମଣି
ଗହ ଗହ ଶବଦ ଶୁଭଇ ଗୋଳବାଣୀ ।
ଟମକ ନିଶାଣ ଯେ ମହୁରୀ ଶଙ୍ଖ ଧ୍ୱନି ।
ହୁଳହୁଳି ଶବଦରେ ଧ୍ୱନି ଶୁଭେ ପୁଣି ।
ଅନ୍ତରୀକ୍ଷେ ଥାଇଣ ଯେ ଦେଖନ୍ତି ସୁରଗଣ
ପୁଷ୍ପକ ଯାନ ଚଢ଼ିଣ ମିଳିଲା ରାବଣ ।
ଦିଗ ଭ୍ରମଣ ରଥରେ ଶୂନ୍ୟରେ ଯାଏ ଚଳି
ଦେଖିଲେ ଦେବତାଏ ଶୂନ୍ୟରେ ବିଜେକରି ।
ବ୍ରହ୍ମାଙ୍କର ଆଗରେ ଯେ ମିଳିଲା ଦଶଶିରୀ
ଦେଖିଲା ଦେବତାଏ ସର୍ବେଛନ୍ତି ପୁରି ।

ଦେଖିଣ ସୁରଗଣ କଲେ ଭୟ ମନ
ଏକକୁ ଆରେକ ଯେ ପୁଛନ୍ତି ବଚନ ।
ଦେବେ ବୋଇଲେ କିମ୍ପା ଅଇଲ ରଙ୍କପତି ।
କେ ବୋଲେ ଦେଖିଲେ ଏ ସରିବ ବିଭୂତି ।
ଏକଥା ଦେଖି ଏବେ ଅଇଲା ଲଙ୍କାପାଳ
ତୁମ୍ଭେ ତୁନି ହୋଇଥାଅ ସକଳ ଦିଗପାଳ ।
ଦଶ ଶିର ବୋଇଲା ଯେ ବିଧାତାଙ୍କୁ ଚାହିଁ
କର ଯୋଡ଼ିଣ ଯେ କହଇ ଲଙ୍କସାଇଁ ।
ଭୋ ପିତାମହ ତୁମ୍ଭେ କେବଣ କାରଣେ
ସ୍ୱର୍ଗ ତେଜି ଗଗନେ ବିଜୟେ ଦେବଗଣେ ।
ବିଧାତା ବୋଇଲେ ଏବେ ମଞ୍ଚକୁ ତୁହି ଚାହଁ
ମିଥିଳା ନଗରେ ଆଜି ହେଉଛି ଉତ୍ସାହ ।
ମିଥିଳାର ନୃପତି ଜନକ ମହାମୁନି
ଜାନକୀ ନାମରେ ଯେ ତାହାର ଦୁଲଣୀ ।
ତାହାର ଉତ୍ସବ ଯେ ସ୍ୱୟଂମ୍ବର ଆଜ
ଶିବଧନୁ ତୋଳିଲେ ଦଶରଥଙ୍କ ତନୁଜ
ଦକ୍ଷ ପ୍ରଜାପତି ପୂର୍ବରେ ଯାଗ କଲେ
ଦେବଙ୍କର ବୋଲରେ ଈଶ୍ୱର ନ ବରିଲେ ।
ଆମେ କହିବାରୁ ମନରେ କଲେ ଖଙ୍ଗ
ଅନେକ ବୁଝାଇ ଯେ କହିଲେ ଶ୍ରୀରଙ୍ଗ ।
କାହାର ବୋଲ ପୁଣି ନ କଲା ଯେ ଦକ୍ଷ
କର୍ମ ତାର ଯେଣୁ ହୋଇଲା ବିପକ୍ଷ ।
ଏଡ଼େ ଅପମାନ ଶିବେ ଦକ୍ଷ ଦେଲା ଯହୁଁ
ଶୁଣି କ୍ରୋଧରେ ଈଶ୍ୱର ଅଇଲେ ଯେ ତହୁଁ ।
କ୍ରୋଧରେ ପଞ୍ଚାନନ ଧନୁଏ ଜାତ କଲେ
ବିଷ୍ଣୁର ତେଜ ଘେନିଣ କୋଦଣ୍ଡ ସର୍ଜିଲେ ।
ଅକଳ ବଳ ଧନୁ ନାମ ଯେ ତାର ଦେଲେ
ଚଉଦ କୋଟି ବଳ ଈଶ୍ୱର ରଚିଲେ ।
ଏକାଦଶ ରୁଦ୍ରଙ୍କର ଏଗାର କୋଟି ବଳ
ହସ୍ତରେ ଧରି ତାଙ୍କୁ ନ ପାରନ୍ତି ହର ।
ନାରାୟଣଙ୍କୁ ଚିନ୍ତିଲେ ସେଠାରେ ସଦାଶିବ
ଜାଣିକରି ସାହାତାଙ୍କୁ ହୋଇଲେ ବାସୁଦେବ ।
ବାସୁଦେବ ସୁମରନ୍ତେ ବଳ ଅକଳିତ
ତେଣୁ ସେ ସଦାଶିବ ନାରାଚ ବିନ୍ଧିଲେତ ।
ଦକ୍ଷ ପ୍ରଜାପତିଙ୍କର ଯାଗ ଯେ ନାଶ କଲେ
ସୁରଗଣଙ୍କୁ କ୍ରୋଧେ ବାଣ ଯେ ପ୍ରହାରିଲେ ।

ପ୍ରଜାପତି ନାଶକରି ଗଲେ ଶୂଳଧାରୀ
ଦେବତାଏ ପଳାଇଲେ ଈଶ୍ୱରଙ୍କୁ ଭୟକରି ।
ମିଥିଳାରେ ସଦାଶିବ ଯେ ଧନୁ ଥୋଇଗଲେ
ପିତା ମରିବା ଦେଖିଉମା କୁଣ୍ଡରେ ପଡିଲେ ।
କ୍ରୋଧ ମନରେ ତହୁଁ ମହାଦେବ ପଳାଇଲେ
ହେମବନ୍ତ ପର୍ବତରେ ପ୍ରବେଶ ହୋଇଲେ ।
ପାର୍ବତୀ ବିହୁନେ ତପ କଲେ ଯେ ଈଶ୍ୱର
ଏମନ୍ତେ ବହିଗଲା ପୁଣ କେତେକାଳ
ସେ ରାଜା କାଳେଣ ଧନୁକୁ ପୂଜା କଲା
ତେଣୁ ପ୍ରସନ୍ନ ହୋଇଲେ ଯହୁଁ ଭୋଳା ।
ତାର ବଂଶେ ଜନମ ହୋଇଲେ କମଳିନୀ
ତାହାକୁ ବିଭା ତୁହି କରିବୁ ଚକ୍ରପାଣି ।
ଯେତେବେଳେ ଶ୍ରୀରାମ ଆମଞ୍ଚିବେ ଧନୁ ଧରି
ତୋର ବଂଶର ଦୋଷକୁ ହାରିବେ ମଧୁହାରି ।
ଏତେ କହି ଈଶ୍ୱର ହେମଗିରିକି ଗଲେ
କାଳେଣ ଗଉରୀ ପ୍ରାପତ ତାଙ୍କୁ ହେଲେ ।
ସତାଇଶ ପୁରୁଷ ପୂଜା କଲେ ଶରାସନ
ସେ ଧନକୁ ଜନକ ପୂଜିଲେ କରି ଜ୍ଞାନ ।
ଯାଗ କରିବାକୁ ସେ ସକଳ ଭିଆଇଲେ
ଲଙ୍ଗଳ ନେଇ ଯାଗ ଭୂମିକୁ ଶୋଧିଲେ ।
ମେନକା ଅପସରି ଶାପ ଯେ ପାଇଥିଲା
ମୋକ୍ଷ ହେବାରୁ ଆସନ୍ତେ ଜନକ ଦେଖିଲା ।
ମନରେ ସେ ବିଚାରଇ ଈଶ୍ୱରଙ୍କ କଥା
ବହୁତ କାଳେ ପୂରିଲା ମୋର ମନବାଞ୍ଛା ।
ଏସନକ ସମୟରେ ବସୁନ୍ଧରା ଫାଟି
କନ୍ୟାଏ ଉପୁଜିଲା ସେ ଲଙ୍ଗଳ ଉକୁଟି ।
ସେହି କନ୍ୟାନାମ ଯେ ଜନକ ଦେଲେ ସୀତା
ଦେଖି ପରମ ତୋଷ ଜନକ ବ୍ରହ୍ମବେତ୍ତା ।
ଜନ୍ମରୁ ଯେ ଯୁବା ହେଲେ ଦୋହିତାଏ ପୁଣ
ସେହି ଦିନରୁ ଯାଗ କଲେ ଯେ ମୁନି ପୁଣ ।
ପୁଣି ସେ ଯାଗ କୁଣ୍ଡରୁ କନ୍ୟାଏ ଜାତ ହେଲା
ଅଯୋନି ସମ୍ଭୂତ ଯେ ଜନ୍ମିଣ ଯୁବା ପରା ।
ତାହାର ନାମ ଗୋଟି ଉର୍ମିଳା ଦେଲେ ପୁଣ
ବେନି କନ୍ୟାଙ୍କ ନିମନ୍ତେ ସତ୍ୟକଲେ ଋଷି ଜାଣ ।
ସୀତାଙ୍କ ପାଇଁ ଶିବଧନୁକୁ ମନାସିଲା
ସେ ଧନୁକୁ ଧରିବ ଯେ ଦେବଇଁ ବୋଇଲା ।

ଆର ଦୋହିତା ନାମରେ ପ୍ରଣାମ କଲା ପୁଣ
ଲକ୍ଷେ ରାଜା ଯେ ଜିଣିବତାକୁ ଦେବି ଜାଣ ।
ଏ ବଚନ ପାଳି ଏଗାର ବରଷ ଯାଗ କଲା
ଋଷି ବ୍ରାହ୍ମଣ ରାଜା ସବୁଙ୍କି ବରିଲା ।
ଧନୁ ଧରିବାକୁ କେହି ନୋହିଲା ଭାଜନ
ଅନେକ ଅର୍ଦ୍ଧୋଳି ସେ ସହିଲେ ଋଷି ପୁଣ ।
ବାର ବରଷରେ ଯେ ହେଲା ବିପରୀତ
ଦଶରଥ ନନ୍ଦନ ଶ୍ରୀରାମ ଲକ୍ଷ୍ମଣ ସେତ ।
ବାର ବରଷ ବୟସେ ଧନୁ ଆମଞ୍ଚିଲା
ପୁଟ ଟଙ୍କାର କରନ୍ତେ ଧନୁ ଭାଜିଗଲା ।
ଜନକ ଋଷି ସତ୍ୟ ଫଳିଲାକ ତହୁଁ
ରତ୍ନମାଳା ଦେଇ ବରିଲେ ସୀତା ଯହୁଁ ।
ଏମନ୍ତ ସମୟରେ ରାଜାଏ ଗୋଳକଲେ
କନ୍ୟା ନେବା ବୋଲିଣ ମନରେ ବିଚାରିଲେ ।
ଶ୍ରୀରାମ ସାନୁଜ ଯେ ଅଟନ୍ତି ଲକ୍ଷ୍ମଣ
ଏକା କାଣ୍ଡେ ମୋହ କଲେ ଲକ୍ଷେ ରାଜ ପଣ ।
ଶ୍ରୀରାମ କହନ୍ତେ ପୁଣ ଜିଆଇ ତାକୁ ଦେଲେ
ରାଜାଗଣେ ସର୍ବେ ସନ୍ତୋଷ ତହୁଁ ହେଲେ ।
ତାହାଙ୍କୁ ଦେଖିବାକୁ ଯେ ଅଇଲେ ସୁରଗଣ
ଶୁଣିଣ ସଙ୍କୋଚ ପାଏ ବିଶ୍ରବା ନନ୍ଦନ ।
ବ୍ରହ୍ମ କହିବାରୁ ତଳକୁ ଦେଲା ଦୃଷ୍ଟି
ଦେଖିଲା ଶୋଭାବଂନ ଦିଶୁଅଛି ସୃଷ୍ଟି ।
ଦେଖିଣ ନୃପତିମାନେ ଖସିଣ ପଳାଇଲେ
ପର୍ବତରୁ ଯେସନେ ନଦୀ ଖସି ପଡ଼େ ।
ଏଥୁ ଅନନ୍ତରେ ଗୋ ଶୁଣ ଶାକମ୍ଭରି
ରାଜାମାନେ ବିଚାରିଲେ ଏଠାକୁ ଯିବା ଫେରି ।
ବାର ବରଷ ପୁଅ ଏତ ଧନୁ ଭଗ୍ନ କଲା
ଆମ୍ଭମାନଙ୍କ ମୁଖରେ କାଳି ଲଗାଇଲା ।
ଆମ୍ଭମାନଙ୍କୁ ଜିଣିଲା ଏକାକାଣ୍ଡେ ମାରି
କେଉଁ ଧର୍ମ ବଳରେ ଜିଆଏ ଦୟା କରି ।
ଚୂନ କଳା ନ ଲଗାଏ ଗାଲେ ଆଣିକରି
ଯେ ଯାହା ସଜରେ ରାଜାମାନେ ଗଲେ ଚଳି ।
ମୁନିମାନେ ସମସ୍ତେ ଶ୍ରୀରାମଙ୍କୁ ଛନ୍ତି ବେଢ଼ି
କେ ଯାଇ କହିଲା ବୃକ୍ଷର ତଳେ ମିଳି ।
ନଗ୍ର ନରନାରୀ ଯେ ସମସ୍ତେ ଦେଖି ଚାହିଁ
ଗହନ ବନରେ ଯେହ୍ନେ ଜୀବଜନ୍ତୁ ରହି ।

ଶ୍ରୀରାମଙ୍କୁ ବେଢ଼ିଣ ଯେ ଅଛନ୍ତି ସର୍ବନାରୀ
ନାରୀ ମଧ୍ୟେ ସିଂହ ଅଟେ ଜନକ କୁମାରୀ ।
ଲକ୍ଷ୍ମଣ ଶାର୍ଦ୍ଦୋଳ ଯେ ଶ୍ରୀରାମ ବନପତି
ସେତେବେଳେ କଉଶିକ ଅଟନ୍ତି ମତ୍ତହସ୍ତୀ ।
ଦୁଇଖଣ୍ଡ ହୋଇଣ ଯେ ପଡ଼ିଛି ଧନୁଗୋଟି
କି ଅବା ପର୍ବତ ଯେ ଗଗନ ମାର୍ଗେ ଘୋଟି ।
ବାସୁକୀ ସଦୃଶରେ ଦିଶେ ତାର ଗୁଣ
ଦେଖିଣ ଭୟ ମନରେ ପାଇଲା ରାବଣ ।
ଦଶଗ୍ରୀବକୁ ଚାହିଁଣ ବିଧାତା ବୋଇଲେ
ସୀତାଙ୍କୁ ଲୋଭ କଲେ ମରିବୁ ତୁହି ଭଲେ
ନେତ୍ରରେ ତୁହି ଦେଖି ଯାଉଛୁ ଏକଥା
ହେତୁ କରିଥିବୁଟି ମନରେ ଦଶମଥା ।
ରାବଣ ବୋଇଲା ମୁଁ ମିଥିଳା ପୁର ଯିବି
ସୀତା କେଡ଼େ ସୁନ୍ଦରୀ ମୁଁ ଦେଖିଣ ଆସିବି ।
ବିଧାତା ବୋଇଲେ ହୋଇଲୁ କିରେ ବାଇ
ମିଥିଳାକୁ ଗଲେ ନିଶ୍ଚେ ଜୀବନ ପାଇଁ ନାହିଁ ।
ଦେବତାଏ ଡରିଲେ ରାଜାଏ ପଳାଇଲେ
ବିଶ୍ୱାମିତ୍ର ଯାଗରେ ଯେ ଅସୁର ବଧିଲେ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ କାଣ୍ଡିକେ ସାଧିବ
ଏତେବେଳେ ଗଲେ ତୋତେ କେହି ନରଖିବ ।
ଏ ପୃଥ୍ୱୀରେ ତୁମ୍ଭେ ଯେତେ ଅଛ ଦୈତ୍ୟବଳ
ସମସ୍ତେ ମିଳିଲେ ଶ୍ରୀରାମ ମାରିବେ ସକଳ ।
ଶ୍ରୀରାମଟି ବାସୁଦେବ ଲକ୍ଷ୍ମଣ ଅନନ୍ତ
ଜଣାଗଲା ଶିବଧନୁ ଭାଙ୍ଗିଲା ବେଳୁତ ।
ଏଥୁ ଅନନ୍ତରେ ଯେ ରାବଣ ଦୈତ୍ୟରାୟେ
ବିଧାତା ବଚନ ମାନି ଫେରେ ଲଙ୍କରାୟେ ।
ବସିଣ ଜଗତିପରେ ସଭାକରେ ପୁଣ
ବିଭୀଷଣର ଆଗରେ କହଇ ଦଶାନନ ।
ମୁହିଁ ଆଜ ଅପୂର୍ବ ଯେ ଦେଖିଣ ଅଇଲି
ଅନ୍ତରୀକ୍ଷେ ବିମାନ ଯେ ମୁଁ ଚଢ଼ି ଯାଉଥିଲି ।
ବିଧାତା ଦେବଗଣ ସୂର୍ଯ୍ୟରେ ଦେଖି ପୁଣ
ସମସ୍ତେ ରହିଅଛନ୍ତି ଗଗନ ମାର୍ଗେଣ ।
ମିଥିଳା କଟକରେ ଜନକ ମହାମୁନି
ସୀତା ଉର୍ମିଳା ଦୁଇ ଦୁହିତା ତାର ଜାଣି ।
ଧନୁ ସ୍ୱୟମ୍ବର ଏଗାର ବର୍ଷ ଯାଏ କଲା
ଏତେକାଳେ ମନବାଞ୍ଛା ସମ୍ପୂର୍ଣ୍ଣ ତାର ହେଲା ।

ଅଯୋଧ୍ୟା ଦେଶର ରାଜା ଅଟେ ଦଶରଥ
ତାର କୋଳେ ଜନ୍ମହେଲେ ଚାରି ପୁତ୍ରସେତ ।
ତାହାଙ୍କର ଜ୍ୟେଷ୍ଠ ଶ୍ରୀରାମ ନାମ ପୁଣ
ସେହି ଏବେ ଆମଞ୍ଚିଲା ଈଶ୍ୱର ଶରାସନ ।
ସେ ଧନୁକୁ ଭାଙ୍ଗିଦେଲା ଦୁଇଖଣ୍ଡ କରି
ରତ୍ନମାଳା ଦେଇ ସୀତା ବରଣ ତାଙ୍କୁ କରି ।
ବାର ବରଷର ପୁଅ ଏଡ଼େ କୃତ୍ୟ କଲା
ତାହାର ଦେହରେ ଯେ ଏତେକ ବଳ ଥିଲା ।
ସେ ଧନୁକୁ ଦେଖିଣ ଥରେ ମୁହିଁ ମୋହଗଲି
ଲାଜରେ ବାହୁଡ଼ି ଆସି ଲଙ୍କାରେ ମିଳିଲି ।
ଯେବଣ ଧନୁକୁ ଇନ୍ଦ୍ର ତୋଳି ଯେ ନପାରି
ସାମାନ୍ୟ କରି ଶ୍ରୀରାମ ବାମ ଭୁଜେ ଧରି ।
ସାନ ଭାଇ ନାମଗୋଟି ଅଟେ ଯେ ଲକ୍ଷ୍ମଣ
ବୀର ଶୂରେ ପଣରେ ଅଟଇ ନିର୍ବାଣ ।
ଲକ୍ଷେ ରାଜାସେ କଥାକୁ ଦେଖିଣ ମେଳିକଲେ
ଏକା କାଣ୍ଡକରେ ସେ ଧ୍ୱଂସିଲା ବାହୁବଳେ ।
ବିଭୀଷଣ ବୋଲେ ଏସନକ ବାଣୀ ଶୁଣି
ଆଜ ନେତ୍ରରେ ଦେଖିଲ ଯାହା ନୃପମଣି ।
ସେ ଶ୍ରୀରାମ ଅବତାର ସ୍ୱୟଂ ଯେ ନରହରି
ମହାଲକ୍ଷ୍ମୀ ଅଟନ୍ତି ଯେ ଜନକ କୁମାରୀ ।
ଏ ତୋହର କୁମାର୍ଗ ଦେଖିଣ ଦେବଗଣ
ଗୁହାରି କଲେ ଯାଇ ବୈକୁଣ୍ଠପୁରେ ଜାଣ ।
ଦେବଙ୍କର ବିକଳ ଦେଖିଣ ନରହରି
ରବିତଳେ ଜାତ ହେଲେ ମାନବ ଦେହଧରି ।
ଧର୍ମବଳେ ତୋ ସଙ୍ଗେ ଯୁଝିବେ ନାରାୟଣ
ଏ ବାଦ ଅର୍ଜିଅଛ ତୁମ୍ଭେ ଦେବଙ୍କ ସଙ୍ଗେ ପୁଣ ।
ଶୁଣିଣ ରାବଣ ଯେ ହସିଲା ଟହ ଟହ
ତୁମ୍ଭେ କିମ୍ପା ମୋତେ ଯେ ଏସନ ବାଣୀ କହ ।
ଦେବେମେଳିହେଲେ ସର୍ବେ କିସମୋରଯାଇଁ
ସମୁଦ୍ରେ ମୋହର ଠଣା ପାଇବେ ଯେ କାହିଁ ।
ଯେହୁ ପର୍ବତ ଆଣିଣ ପୋତିବ ମହାଜଳ
ସେହୁ ଯେ ମନୁଷ୍ୟ ମୁଁ ଅସୁର ଅଚାର୍ଗଳ ।
ମନୁଷ୍ୟ ହୋଇଯେବେ ପାରିବ ମୋତେମାରି
ଏକଇ ଶିରେକ ଯେ ନୁହଇ ମୋହରି ।
ଦଶଶିର ଛେଦିଲେ କନ୍ଧେ ମୋ ଲାଗଇ
କ୍ଷତ୍ରୀରେ ସମ ମୋତେ ନାହାନ୍ତି ଏ ମହୀ ।

ଏ ବଚନ ଶୁଣିକରି ବିଭୀଷଣ ବୋଲେ
ସାକ୍ଷାତେ ବାସୁଦେବ ଜନମ ପୁଣ ହେଲେ ।
ତୁମ୍ଭର ଛଳରେ ସେ ଯେ ମାନବ ଦେହଧରି
ଦେବଙ୍କର କଷ୍ଟରେ ମଞ୍ଚରେ ଅବତରି ।
ଏ କଥା ଯେବେ ମୋତେ କହିଲୁ ଆରେ ଭ୍ରାତ
ବାସୁଦେବ ହାତେ ମଲେ ମୁଁ ହୋଇବି ମୁକତ ।
ଯେବେ ସମ ମୋତେ ହୋଇବେ ରଘୁନାଥ
ତାହାଙ୍କର ବାଣେ ଯେବେ ଛିଡ଼ିବ ମୋର ମାଥ ।
ବିଷ୍ଣୁର ହସ୍ତେ ମଲେ ଯିବି ସ୍ୱର୍ଗପୁର
ତେବେ ଯେ ପୁଣି ମୋର ପ୍ରାପତ ହେବାର ।
ଏକାଜଣକୁ ଯେବେ ସମସ୍ତେ ନସହିବେ
ତାହାକୁ କେମନ୍ତେ ରଖି ପାରିବ ଦଇବେ ।
ଛପନ ଗଣ୍ଡା ଯୁଗ ପାଇଛି ଆୟୁଷ
ଦଶଦିଗପାଳ ଆଦି ଦେବଙ୍କୁ କଲି ବଶ ।
ସୁବର୍ଣ୍ଣମୟ ପୁରେ ଭୁଞ୍ଜିଲି ବିଭୂତି
ଅଠରଗଣ୍ଡା କୁମର ମୋର ତେରଶତ ନାତି ।
ଭାଇ ମୋର ତୁହିରେ ଦେବଙ୍କ ସଙ୍ଗେ ଗଣା
କନିଷ୍ଠ କୁମ୍ଭକର୍ଣ୍ଣ କ୍ଷତ୍ରୀରେ ଜଗତଜିଣା ।
ପୁତ୍ର ମେଘନାଦ ଯେ ଜିଣିଲା ଇନ୍ଦ୍ରଙ୍କୁ
ସ୍ୱର୍ଗପୁରେ ପଶିଣ ଆଣିଲା ଦେବତାଙ୍କୁ ।
ବେଦବର ନାତି ମୁଁ ଯେ ବିଶେଷ ଦଶଶିର
ଆବର ଅଟଇ ମୋର ଦେଖ ବିଂଶକର ।
ପୁଷ୍ପକ ବିମାନ ମୋର ଦେବରେ ଅଜୟେ
ସେଥିରେ ବସିଣ ମୁଁ ଦିଗ୍‌ବିଜେକରିଯାଏ ।
ଅଯୁତ କୋଟି ମୋର ଯେ ଅଟନ୍ତି ପାଟରାଣୀ
ଭଣ୍ଡାରେ ସାଇତି ଅଛି ବିବିଧ ରତ୍ନମଣି ।
ସୁବର୍ଣ୍ଣରେ ନିର୍ମାଣ ଅଟଇ ଗଡ଼ ଲଙ୍କା
ସୁର ନର ଦେବତାଙ୍କୁ ମୋର ନାହିଁ ଶଙ୍କା ।
ଏତେ ସମ୍ପଦଯେବେ ମୋର ଶ୍ରୀରାମ ବିଧ୍ୱଂସିବ
କାହାର ବୋଲେ ଭାଇରେ ଏକଥା ଆନ ହେବ ।
ନକର ଶୋଚନା ମୋହର ହାଦେନାହିଁ ବ୍ୟଥା
ଏହିକ୍ଷଣି ନାହିଁ ମୋତେ ପଚ୍ଛର ସେ କଥା ।
ଏତେ କହିଣ ରାବଣ ଗଲା ଅନ୍ତଃପୁରେ
ଶୁଣ ଦେବୀ ଗଉରୀ ଗୋ ଏଥୁଅନନ୍ତରେ ।
ଆକାଶେଥାଇ ବେଦବର କହନ୍ତି ଦେବତାରେ
ରାବଣକୁ ଭୁଲାଇଣ ଛାଡ଼ିଲୁଁ ତା ରାଜ୍ୟରେ ।

ମିଥିଳା ଯାଇଥିଲେ ରାମସୀତାଙ୍କୁ ଚିହ୍ନି ଥାନ୍ତାସେହୁ
ସେତେବେଳେ ଚିହ୍ନିଣ ନଭରନ୍ତା ସେହୁ ।
ତେଣୁକରି ମାୟା ତାଙ୍କୁ କଲୁ ଆମ୍ଭେ ଜାଣ
ସୀତାଙ୍କୁ ନ ନେଲେ ନମରନ୍ତି ଚାରି ରାବଣ ।
ପାର୍ବତୀ ବୋଇଲେ ଦେବ ସେଠାରୁ କିସହେଲା
ସୀତୟା ଯାଇଁଣ ଶ୍ରୀରାମଙ୍କୁ ବରିଲା ।
ମିଥିଳା କଟକରେ ଶ୍ରୀରାମଚନ୍ଦ୍ର ଛନ୍ତି
ଦକ୍ଷିଣ ପାଖେ ଉଭା ଯେ ସୀତା କମଳାକ୍ଷୀ ।
ବାମପାଶେ ଲକ୍ଷ୍ମଣ ବୀର ଅଛି ଉଭା ହୋଇ
କୋଦଣ୍ଡକୁ ହସ୍ତେ ଧରି ସୁମିତ୍ରା ନେଇ ।
ଜାନକୀ ରତ୍ନମାଳା ଦେଇଣ ଉଭା ପୁଣ
ମନରେ ବଇଦେହୀ ବିଚାର କଲେ ଜାଣ ।
ଏହି ମୋର ପ୍ରାଣନାଥ ବୋଲିଣ ଦୃଷ୍ଟି ଦେଇ
ମଦନଶରେ ତନୁ ବିହ୍ୱଳିତ ହୋଇ ।
କଉଶିକ ବୋଇଲେ ଜନକ ଋଷି ଶୁଣ
ଯାଆନ୍ତୁ ଅନ୍ତଃପୁରକୁ ଜେମା ତୋର ଜାଣ ।
ଶୁଣିକରି ଜନକ ହରଷ ମନହେଲେ
ମୋରଠାରୁ କଥା ଏକ ଶୁଣ ହେ ବୋଇଲେ ।
ଜ୍ୟେଷ୍ଠ କୁମାରୀ ମୋର ଏହାର ନାମ ସୀତା
ରାମଙ୍କୁ ବରିଲା ବେଳୁଁ ମନରୁ ଗଲା ଚନ୍ତା ।
ଆବର କଥାଏକ ମୋର ସିଦ୍ଧ ହୋଇ
ରାମ କନିଷ୍ଠ ଲକ୍ଷ୍ମଣ ଲକ୍ଷେ ରାଜାଙ୍କୁ ଜିଣଇ ।
ଏହାଙ୍କୁ କନିଷ୍ଠ ଦୁହିତା ମୋର ବରିବେ ଏବେ
ଏକଥାକୁ ବିଚାର କରହେ ପ୍ରଭୁ ତୁମ୍ଭେ ।
କଉଶିକ ବୋଇଲେ ମନକାମନା ତୋରସିଦ୍ଧ
କନିଷ୍ଠ ଦୁହିତାକୁ ଘେନିଆସ ବେଗ ।
ଶୁଣିକରି ଉର୍ମିଳା ଯେ ହରଷେ ଉଠେବେଗ
ସଖୀମାନଙ୍କୁ ସଙ୍ଗରେ ଧରିଣ ଚାଲି ଶୀଘ୍ର ।
ଦାସୀଗଣ ସଙ୍ଗରେ ଘେନିଣ ଚଳିଗଲେ
ଦେଖିକରି ନାରୀଗଣ ହୁଳହୁଳି ଦେଲେ ।
ଦାସୀଗଣମାନେ ମିଳି ମଙ୍ଗଳ ବିଧି କଲେ
ବିପ୍ର ନାରୀ ମିଳିଣ ହୁଳହୁଳି ଦେଲେ ।
ବିପ୍ର ଋଷି ମିଳିଣ ପଢ଼ିଲେ ଚାରିବେଦ
ଚଣ୍ଡପୁତ୍ରମାନେ ବାକ୍ୟ କଲେକ ଶବଦ ।
ଲକ୍ଷ୍ମଣଙ୍କ ପାଶରେ ଉର୍ମିଳା ଯାଇଁ ମିଳି
ଦେଖି ଶ୍ରୀରାମ ପଛେ ଘୁଞ୍ଚିଲେ ମନେ ଭାଳି ।

ବୋଇଲେ ସିଉମିତ୍ରୀ କୋଦଣ୍ଡ ଏଥେ ଥୁଅ
ବରଣମାଳା ଘେନ ରହୁ ଜନକର ସ୍ନେହ ।
ଶୁଣିଣ ଲକ୍ଷ୍ମଣ ଯେ କୋଦଣ୍ଡ ତଳେ ଥୋଇ
ଆନନ୍ଦରେ ଉଭା ହେଲେ ସୁମିତ୍ରା ତନୟୀ ।
ମୁଖ ଦେଖି ଉର୍ମିଳା ହରଷ ମନ ହେଲା
ପଞ୍ଚରତ୍ନ ମାଳା ନେଇ ଲକ୍ଷ୍ମଣ କଣ୍ଠେ ଦେଲା ।
ଚାରି ଚକ୍ଷୁ ଏକାନ୍ତ ହେଲେ ତେତେବେଳେ
ବେନିଜନ ହରଷ ହେଲେ ଯେଯାହା ମନରେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
କଉଶିକ ଜନକଙ୍କୁ କହେ ଧୀର କରି ।
ବେନି ଦୁହିତାଙ୍କୁ ଯେ ଅନ୍ତଃପୁରକୁ ନିଅ
କାମନା ସିଦ୍ଧ ହେଲା ଆଉକି ଅଛି କହ ।
ଜନକ ବୋଇଲେ ଶୁଣ ହେ ବିଶ୍ୱାମିତ୍ର
କାମନା ସମ୍ପୂର୍ଣ୍ଣ ହୋଇଲା ମୋହରତ ।
ଶିବଧନୁ ଏ ଯେ ଭାଙ୍ଗିଲେ ଶ୍ରୀରାମ
ଜ୍ୟେଷ୍ଠ ନନ୍ଦିନୀ ବିଭା ହେବେ ତାଙ୍କୁ ପୁଣ ।
ଲକ୍ଷେ ରାଜାଙ୍କୁ ଯେ ଜିଣିଲା ଲକ୍ଷ୍ମଣ
କନିଷ୍ଠ ଦୁହିତା ଯେ ତାଙ୍କର ହେଲା ପୁଣ ।
ଏବେ ବିଭା ହୁଅନ୍ତୁ ଦଶରଥ ସୁତ
ଆଜ ଦିନ ଅଟଇ ଶୁଭ ପରାପତ ।
ଜନକର ମୁଖରୁ ଏସନ ବାଣୀ ଶୁଣି ।
ଶ୍ରୀରାମ କହୁଅଛନ୍ତି ହୃଦପଦ୍ମରେ ଗୁଣି ।
ତୁମ୍ଭେ ଯାହା ବୋଇଲେ ଅଟଇ ଏହୁ ସତ୍ୟ
ମୋହଠାରେ ଅନୁଗ୍ରହ କଲ ତପୋବନ୍ତ ।
ସନ୍ତୋଷ ମନରେ ଦୁହିତା ଦେବ ମୋତେ
ମୁହିଁତ ମନେ ପ୍ରାର୍ଥନା କରୁଅଛି ଏତେ ।
ତୁମ୍ଭେତ ମହାଋଷି ମହତ ପୁରୁଷ
ତୁମ୍ଭେ ଜାଣ ମୁଁ ଅଟଇ ଦଶରଥ ସୁତ ।
ଲକ୍ଷେ ରାଜା ଫେରିଲେ ଫେରିଲେ ଋଷିଗଣ
ଅସୁର ଦେବତାଗଣ ଫେରିଲେକ ଜାଣ ।
ସନମାନେ ବିଭାହେଲେ ଯଶ ଏଥୁ ଅଛି
ଆମ୍ଭେ ବିଭା ହୋଇଗଲେ ଲଜ୍ଜା ଉପୁଜିଛି ।
ପିତା ଦଶରଥ ଅର୍ଜିଲା ଆମ୍ଭ ଦେହି
ଏ ପିଣ୍ଡ ଅଧିକାରୀ ଅଟନ୍ତି ନା ସେହି ।
ତାହାଙ୍କୁ ନ କହିଲେ କେମନ୍ତେ ହେବି ବିଭା
ବିଭାଠାରେ ପିତାମାତା ଥିଲେ ଦିଶେ ଶୋଭା ।

ତୁମ୍ଭେ ଯେ ମନରେ ବିଚାର ମହାଋଷି
ଶୁଣିଣ ବିଶ୍ୱାମିତ୍ର ଜନକ ଦୁହେଁ ହସି ।
ଆସ୍ଥାନ ଲୋକମାନେ ଶୁଣିଣ ଉସତ
ଧନ୍ୟ ଧନ୍ୟ ଶ୍ରୀରାମ ହେ ପିତାରେ ଭଗତ ।
ନୋହିଲେ କି ଏଡ଼େ ଯଶ ପ୍ରାପତ ହୋଏ ତୋତେ
ସାଧୁ ସାଧୁ ବୋଲିଣ ବୋଇଲେ ସମସ୍ତେ ।
ଜନକ ବିଶ୍ୱାମିତ୍ର ଭାଳିଲେ ବେନିଜନ
କିଁନ୍ନରି ନିଜ ନବରେ କରନ୍ତି ଗମନ ।
ସଖୀଗଣ ଘେନିଣ ସୀତୟା ଚଳେ ଆଗେ
ପଛରେ ଉର୍ମିଳା ବିଜେ କଲେ ଦାସୀ ସଙ୍ଗେ ।
ଦେଖଣାହାରି ଲୋକ ଗୋଡ଼ାନ୍ତି ତାଙ୍କ ପଛେ
ଜନକ ରାଜା ନବରେ ପ୍ରବେଶ ସମସ୍ତେ ।
ଅନ୍ତଃପୁର ମଧରେ ବିଜୟେ ମହାସତୀ
ଜନନୀମାନେ ଆସି ମିଳିଲେ ତତ୍ପରତୀ ।
ଜନନୀଙ୍କପାଶେ ବେନି ଜେମାକଲେ ନମସ୍କାର
ଜନକ ରାଣୀମାନେ ବେଢ଼ିଲେ ସତ୍ୱର ।
କେଉଁ ମାତା ଧରି ନେଇ ମୁଖେ ଚୁମ୍ବଦେଇ
କେବୋଲନ୍ତି ତୁମ୍ଭେ ଗୋ କେତେ ପୁଣ୍ୟ ଦେହୀ ।
କେ ବୋଲନ୍ତି ଆମ୍ଭର ଅନ୍ନପୂର୍ଣ୍ଣା ତୁମ୍ଭେ
ଶ୍ରୀରାମ ପରା ବର ପାଇଲ ମାଏ ଏବେ ।
ସୀତୟା ଉର୍ମିଳା ଲଜ୍ଜାରେ ପୋତିଛନ୍ତି ମଥା
ହସ ହସ ହୋଇଣ ଯେ ନ କହିଲେ କଥା ।
କେ ବୋଲଇ ଆଗେ ଦେଖ ଗୋ କିନା ଆସି
ଏମନ୍ତ ସମୟରେ ଜନକ ରାଣୀ ବସି ।
ଜାନକୀ ଉର୍ମିଳାକୁ ପଲଙ୍କେ ବସାଇଲେ
ଦାସୀମାନେ ଆଲଟ ଚାମର ବିଞ୍ଚିଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଶ୍ରୀରାମ ଲକ୍ଷ୍ମଣ ପାଶେ ସତ୍ୟାନନ୍ଦ ଛନ୍ତି ।
ଜାନକୀ ଯିବାରୁ ଶ୍ରୀରାମ ଲକ୍ଷ୍ମଣ
କୋଦଣ୍ଡ ହସ୍ତେ ଧରି ଗଲେକ ବହନ ।
ଋଷିମାନେ ସଭାରେ ଯାଇଁ ବିଜେକଲେ
ମୁନିମାନଙ୍କର ସବୁ ହରଷ ଦେଖିଲେ ।
ପାର୍ବତୀ ବୋଇଲେ ଯେ କଥାଏ ରହିଲା
ତୁମ୍ଭର ପୁଣ ଧନୁ ବେନିଖଣ୍ଡ ହେଲା ।
ସେ ଧନୁ କିସ ହେଲା କହ ହେ ଦିଗମ୍ବର
ଶୁଣିକରି ସଦାଶିବ କରନ୍ତି ଉତ୍ତର ।

ସେ ଧନୁ ଭାଜିବାରୁ ଆଶ୍ରୟ ତାର ଗଲା
ମୋର ପାଶେ ଧନୁ ଶବଦ ଆସିଣ ମିଳିଲା ।
ଦେଖିଣ ହରଷ ମୁଁ ହୋଇଲି ତାହାକୁ
ଏକଧନୁ ଜାତ କଲି ବିଚାରି ମନକୁ ।
ସେ ଧନୁର ନାମ ଗୋଟି ପିନାକି ପୁଣ ଦେଲି
ବଜ୍ରକରି ସେହି ଧନୁ ଆପେ ମୁଁ ରଖିଲି ।
କାଳେଣ ସେ ଧନୁ ଯେ ପ୍ରାପତ ହେଲାତୋତେ
ଅକ୍ଷୟ ତ୍ରୋଣ ଧନୁ ଅଛି ତୋର ହସ୍ତେ ।
ବଳରାମ ଦାସ ଚିନ୍ତେ ଶ୍ରୀରାମ ପୟରେ
ଶରଣ ରଖ ମୋତେ କରୁଣା ସାଗରେ ।
ହର ପାର୍ବତୀଙ୍କର ସମ୍ବାଦ ମୁଁ ବିଚାରି
ଜାନକୀ ଶ୍ରୀରାମ ଚରଣେ ଆଶ୍ରୟ ମୋହରି ।
ଏଥୁ ଅନନ୍ତରେ ପୁଣ ପାର୍ବତୀ ବିଚାରି
ସେଠାରୁ କିସ ହେଲା କହହେ ଶୂଳଧାରୀ ।
ଈଶ୍ୱର ବୋଇଲେ ଶୁଣ ଗୋ ଦେବୀଉମା
ଶ୍ରୀରାମ ସଭାମଧେ ବସିବାରକିନା ।
ସକଳ ଜନେ ଆସି ବେଢ଼ିଣ ଦେଖନ୍ତି
ନାରୀଗଣେ ବେଢିଣ ହୁଳହୁଳି ଦ୍ୟନ୍ତି ।
କେ ବୋଲଇ ସାଧୁଜନ କେ ବୋଲଇ ଧନି
ପ୍ରଶଂସା କରି ସେଠାରୁ ବାହୁଡ଼ି କାମିନୀ ।
ଶ୍ରୀରାମ ସଙ୍ଗରେ ଯେ ଋଷିମାନେ ମେଳ
ପ୍ରଶଂସା କରିଣ ଯେ କହନ୍ତି ସକଳ ।
କଉଶିକ ବୋଇଲେ ଗଉତମ ଶିଷ୍ୟ
ଅଯୋଧା ଦେଶ ତୁମ୍ଭେ ଚଳହେ ତୁରିତ ।
ବିଶ୍ୱନାଥ ଧନୁ ଯେ ଶ୍ରୀରାମ ଆମଣ୍ଡିଲେ
ସୀତା ବିଭା କରିବାକୁ ଜନକ ବୋଇଲେ ।
ଶ୍ରୀରାମ ବୋଇଲେ ମୁଁ ଯେ ପିତାରେ ଭଗତି
ବିଭା ହୋଇବାକୁ ମୋର ନାହିଁ କେବେ ମତି
ପିତାମାତା ନ ଆସିଲେ ନୁହଁଇ ମୁଁ ବିଭା
ଉତ୍ସବରେ ସୁଲଭ ନୋହିଲେ କିସ ଶୋଭା ।
ଏକଥା କହିବ ଦଶରଥ ଆଗେ ଯାଇ
ଆସିବାର ହୋଇଲେ ଆସିବ ସଙ୍ଗ ହୋଇ ।
ନିଅ ବେଗେ ବାରତା ଯେ ଲେଉଟାଇ ଆଣ
ଆମ୍ଭଙ୍କୁ ସମ୍ବାଦ ଦେଉ ଅଯୋଧା ନୃପରାଣ ।
ଯେ ଦେବେ ବୋଲିବ ବିଶ୍ୱାମିତ୍ରଜନକଅଛନ୍ତି
ମୋହର ପୁତ୍ର କି ତାଙ୍କର ବୋଲ କରନ୍ତି ।
ଯେବେ ସେ ଅଛନ୍ତିଟି ଶ୍ରୀରାମଙ୍କ ପାଶ
ମୁଁ ଯାଇ ସେ ସ୍ଥାନରେ କରିବି ଯେ କିସ ।
ଏସନକ ବୋଇଲେ ଆସିବ ବେଗ ହୋଇ
ଶୁଣିଣ ସତ୍ୟାନନ୍ଦ ଆନନ୍ଦ ମନ ହୋଇ ।
ଅଯୋଧା ଯିବାକୁ ଯେ ସନମତ କଲା
ତୁମ୍ଭର ଆଜ୍ଞା ମୁହିଁ ପାଳିବି ବୋଇଲା ।
ସତ୍ୟାନନ୍ଦ ଯିବାର ଯହୁଁ ହୋଇଲା ପ୍ରମାଣ
ତାହା ଜାଣି ଶ୍ରୀରାମଙ୍କୁ କହନ୍ତି ଲକ୍ଷ୍ମଣ ।
ଆମ୍ଭ ସର୍ବ କୁଶଳ ବାରତା ମାନ ଲିହି
ଶ୍ରୀକରେ ଲେଖ ଗୋଟିଏ ପତ୍ର ରଘୁସାଇଁ ।
ଶୁଣିଣ ଶ୍ରୀରାମଚନ୍ଦ୍ର ଶ୍ରୀକରେ ପତ୍ର ଘେନି
ଦକ୍ଷିଣେ ଲେଖନକୁ ଧଇଲେ ରଘୁମଣି ।
ନିଜ ପିତା ଚରଣେ ବିନୟୀ ଉତ୍ତର
ଅତି କାର୍ପୁଣ୍ୟ ହୋଇ ବୋଲନ୍ତି ରଘୁବୀର ।
ଶ୍ରୀରାମ ଲକ୍ଷ୍ମଣଙ୍କର ପିତାଙ୍କୁ ନମସ୍କାର
ମିଥିଳା ନବରେ ଜନକ ଋଷି ପୁର ।
ବିଶ୍ୱାମିତ୍ରଙ୍କ ସଙ୍ଗରେ ଅଇଲୁ ବେନିଭାଇ
ମିଥିଳା ନବରରେ ରହିଲୁ ବନ୍ଦିହୋଇ ।
ଭୋ ତାତ ଉଦ୍ଧର କୋଶଳ ଅଧିପତି
ଅଯୋଧା ରାଜ୍ୟରେ ତୁମ୍ଭେ ବୀର ଚକ୍ରବର୍ତ୍ତୀ
ଭୁଜବଳ ପ୍ରତାପରେ ରାଜ୍ୟ ଯେ ବଳ ରଖ ।
ଦୟା ଧର୍ମରେ କୁଶଳ ଅଟନ୍ତି ହେ ସାକ୍ଷାତ
ଦାନରେ ଦୟାଳୁ ତୁମ୍ଭେ ବଳରେ ଗାରିମା
ଡ଼ରେ ଅଇରୀ ବଳ ନ ଲଙ୍ଘନ୍ତି ସୀମା ।
ଅନେକ ଗୁଣ ଯେ ଅଛଇଁ ତୁମ୍ଭ ତହିଁ
ମୁହିଁ କିସ ଜାଣିବି ହେ ବାଳୁତ ତନୟୀ ।
ତୁମ୍ଭ ଶ୍ରୀଚରଣରେ ଭକତି ଏ ଯେ ମୋର
ଏଠାକୁ ଆସିଣ ଉଦ୍ଧରି ମୋତେ ଧର ।
ଭୋ ପିତା ମୋତେ ଅର୍ଜିଲ ଦୁଃଖ ସହି
ବିଶ୍ୱାମିତ୍ର ମୁନି ମାଗେ ତୁମ୍ଭଙ୍କୁ ମୋତେ ଯାଇ
ତୁମ୍ଭେ ସତ୍ୟଶୀଳ ଓପ୍ରୋଧେ ସମର୍ପିଲ
ବହୁତ ଭାଳି ମନରେ ହୃଦରେ ଚିନ୍ତା କଲ ।
ମୁରୁଛି ନପାରି ଯେ ଋଷିଙ୍କ କର ଧରି
ମୋତେ ସମର୍ପିଲେ ଯେ ଅତି ଯତ୍ନକରି ।
ଏ ତୁମ୍ଭର ବଚନେ ମୁନିର ମନ ତୋଷ
ମୋତେ ଘେନିଅଇଲେ ଯେ ଗାଧିରାଜ ଶିଷ୍ୟ ।

ସରଜୁ ପାରି ହୋଇଣ ପଶିଲୁ ଘୋରବନେ
ସୁର ନଦୀ ଆଦି ଯେ ଭେଟିଲୁ ଦୁଇଦିନେ ।
ଗଙ୍ଗା ଜିଣି ଆମ୍ଭେ ଅଇଲୁ ଅରଣ୍ୟରେ
ତାଡ଼କୀ ରାକ୍ଷସୀକି ମାଇଲୁ ଧର୍ମ ବଳେ ।
ଦେଖିଣ ଦେବତାଏ ବେଦବରଙ୍କୁ ଘେନି
ବିଶ୍ୱାମିତ୍ର ମୁନିଙ୍କି କହିଲେ ଶୂନ୍ୟେବାଣୀ ।
ବୋଇଲେ ଯେତେ ବିଦ୍ୟା ଅଛି ତୁମ୍ଭଠାରେ
ଶ୍ରୀରାମ ଲକ୍ଷ୍ମଣଙ୍କୁ ଦିଅ ହେ ସତ୍ୱରେ ।
ଶୁଣି କରି ବିଶ୍ୱାମିତ୍ର ସକଳ ବିଦ୍ୟା ଦେଲେ
ମନ୍ତ୍ର ଆଘ୍ରାଣ କରନ୍ତେ ମିଳିଲା ସବୁମୋରେ ।
ସେଠାରୁ ବିଶ୍ୱାମିତ୍ରଙ୍କ ଆଶ୍ରମେ ପରବେଶ
ଯାଗ ଆରମ୍ଭ କଲେ ଯେ ଗାଧି ରାଜାଙ୍କଶିଷ୍ୟ ।
ଅନେକ ମୁନି ରାଜା ଅଣାଇଁ ଯାଗ କଲେ
ମୋତେ ଦେଖି ତୋଷେ ସେ ସୁକଲ୍ୟାଣକଲେ ।
ଯାଗ ରଖିଲି ଦେବ ଲକ୍ଷ୍ମଣ ସଙ୍ଗେ ଘେନି
ବହୁତ ଦୈତ ସେଠାରେ ପକାଇଲି ହାଣି ।
ତେଣୁ ତିନି ପକ୍ଷରେ ଯାଗ ଯେ ସମାପତ
ଲୋମପାଦ କହିବାର ଜାଣିଥିବ ଯେ ତୁମ୍ଭେତ ।
ସେଠାରୁ ପଶ୍ଚିମ ଦିଗେ ପଥ ବାହି ଗଲୁଁ
ବିପୁଳ ବନେ ଗୌତମ ନାରୀଙ୍କୁ ଦେଖିଲୁ ।
ଗଉତମ ଘରଣୀ ଅହଲ୍ୟା ନାମେ ନାରୀ ।
ଶାପରେ ଥିଲା ସେ ଯେ ପାଷାଣ ରୂପ ଧରି ।
ସେ ମୋର ପାଦ ଲାଗି ନିଜ ଅଙ୍ଗ ପାଇ
ମୋତେ ଅର୍ଘ୍ୟ ଦେଇଣ ମୁନିର ସଙ୍ଗେଯାଇ ।
ସେଠାରୁ ମିଥିଲା ପୁରେ ହେଲୁ ପରବେଶ
ଜନକର ଯାଗ ଦେଖି ହୋଇଲୁ ବଡ଼ତୋଷ ।
ସେଠାରେ ଥିଲେ ଲକ୍ଷେ ବତିଶକୋଟି ଋଷି
ହାଟୁଆ ବାଟୁଆ ଯେ ପଥୁକୀ ଜନ ମିଶି ।
କେହି ଧନୁକୁ ଯେ ନ ପାରିଲେ ତୋଳି
ଗୁହିଁଲେ ଛୁଇଁଲେ ରୁଧିର ମୁଖୁଁ ଗଳି ।
ବିଶ୍ୱାମିତ୍ର କହିବାରୁ ଧଇଲି କୋଦଣ୍ଡ
ଗୁଣ ଦେଇ ଆମଞ୍ଚନ୍ତେ ହୋଇଲା ବେନିଖଣ୍ଡ ।
ଧନୁଭାଙ୍ଗିବାରୁ ଆମ୍ଭେ ଦେଖି ଜନକ ମୁନି
ସୀତୟା ନାମରେ ତାଙ୍କର ଜ୍ୟେଷ୍ଠ ନନ୍ଦିନୀ ।
ସେ ଆସିଣ ମୋତେ ବରିଲା ମନ ତୋଷେ
ଜନକ ବୋଇଲା ତୁମ୍ଭେ ବିଭା ହୁଅ ଏଥେ ।
ଏତେ କହି ଜନକ ଅନୁକୂଳ ଖୋଜେ
ମୁଁ ବୋଇଲି ବିଭା ହେବି ପିତାଅଇଲେ ଶୁଭେ ।
ଏହି ସମୟରେ ନୃପତିଗଣ ଉଠି
ମୋହର ସଙ୍ଗରେ ଆସି କଳହ କଲେଟି ।
ସେକାଳେ ସୀତା ବରିଛିମୋର ଆୟତ ନୋହିଲା
ଲକ୍ଷ୍ମଣ ଶର ମାରିଣ ରାଜାଗଣଙ୍କୁ ମୋହ କଲା
ରାଜାମାନେ ପଡ଼ିବାରୁ ମୁଁ ଲକ୍ଷ୍ମଣେ କହିଲି
ଜିଆଅ ରାଜଗଣଙ୍କୁ ତୁ ବୋଲିଣ ବୋଇଲି ।
ଶୁଣିଣ ଜୀବ ନ୍ୟାଶର ଲକ୍ଷ୍ମଣ ପେଷି ଦେଲେ
ରାଜାମାନେ ଉଠି ନରହି ସମସ୍ତେ ପଳାଇଲେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ହେ ଭୋ ତାତ
ଲକ୍ଷ୍ମଣ ଜିଣିଲେ ଯେ ଲକ୍ଷେ ନୃପନାଥ ।
ଜନକ ବୋଇଲେ ବେନି ସତ୍ୟ ସିଦ୍ଧ ହେଲା
ବେନି ଦୁହିତାକୁ ମୋର ବିଭା ମୁଁ ଦେବିପରା ।
ଏତେ ବୋଲି ସାନଯେ ଉର୍ମିଳା ନାମେତାର
ଲକ୍ଷ୍ମଣେ ବରଣ କଲା ସେ ସତ୍ୱର ।
ବେନି ଦୁହିତା ବରିବାରୁ ଜନକ ହରଷିତ
ବୋଇଲେ କାଲି ବିଭାଘର ହେବାର ନିଯୁତ ।
ମୁଁ ବୋଇଲି ଅଣାଅ ପିତାଙ୍କୁ ମୋହର
ପିତା ନ ଅଇଲେ ମୁଁ ବିଭା ନୋହିବି ନିକର ।
ଶୁଣିକରି କଉଶିକ ଜନକ ସନ୍ତୋଷ
ଗଉତମଙ୍କ ଶିଷ୍ୟଙ୍କୁ ପେଷିଲେ ତୁମ୍ଭ ପାଶ ।
ଏ ଯାହା କହିବେୟାଙ୍କ ତୁଣ୍ଡରୁ ଶୁଣିବା ନୃପବର
ଆସ ବା ନ ଆସ ମନରେ ବିଚାର ।
ମୋହର ଦଇନିକି ନଘେନ ମନେ ଦୋଷ ତ
ଏଠାରୁ ଆସି ମୋତେ ଉଦ୍ଧରିନେବ ତାତ ।
ଏ ଯେଉଁ କଉଶିକ ପ୍ରତାପୀ ବ୍ରହ୍ମମୁନି
ବ୍ରହ୍ମା ବିଷ୍ଣୁ ଶିବ ଆଦି ଦେବେ ଡରେପୁଣି ।
ବିଶ୍ୱାମିତ୍ର ଆସି ବାରୁ ବହୁତ କାର୍ଯ୍ୟହେଲା ନାନାଦୀ
ବିଦ୍ୟାଦେଇମୋତେବହୁତଯଶକଲା ।
ସ୍ୱର୍ଗ ମଞ୍ଚ ପାତାଳେ ନାମ ଏହାଙ୍କ ବିଖ୍ୟାତ
ତୁମ୍ଭେମୋର ଜନ୍ମ ପିତାବିଦ୍ୟାଗୁରୁଏମୋତାତ ।
ତୁମ୍ଭେ ନ ଆସିଲେ ଆମ୍ଭେ ବିଭା ଯେ ନୋହିବୁ
ଏହାଙ୍କର ବଚନକୁ ଭାଙ୍ଗି ଯେ ନ ପାରିବୁ ।
ଆହୁରି କଥାଏ ଜାଣିବା ହେଉ ତୁମ୍ଭେ
ଜନକ ବେନି ଝିଅ ଅଯୋନି ଜାତ ଶୁଭେ ।

ଏକ ପତ୍ନୀ ବ୍ରତା ଯେ ଅଟନ୍ତି ଆମ୍ଭର
ଏହିଠାରୁ ବିଚାର ଉତ୍ସବ ସରିବାର ।
ଏମନ୍ତ ଲେଖି ଶ୍ରୀରାମ ଲେଖା ମୁଦକଲେ
ସତ୍ୟାନନ୍ଦ ହସ୍ତରେ ଦେଲେକ ମୁଦ ଭଲେ ।
ଏ ମୋହର ସମ୍ବାଦ ନୃପତିଙ୍କି ଦେବ
ସକଳ କଥା ତାଙ୍କୁ ଯେ କୁଶଳେ କହିବ ।
ଏମନ୍ତ କହି ମୁନିଙ୍କି ନମସ୍କାର କରି
ଦେଖିଣ ପ୍ରଶଂସା ଯେ କଲେ ସର୍ବେ ଘେରି ।
ସତ୍ୟାନନ୍ଦ ବୋଲେ ଶ୍ରୀରାମ ସୁକଲ୍ୟାଣ ପାଆସ
ଜାନକୀ ବିଭାହୋଇ ଏଥିରୁ ଯାଆସି ।
ଶୁଣିଣ ଶ୍ରୀରାମ ଯେ ଅଳପ ହୋଇ ହସି
ଲକ୍ଷ୍ମଣ ଭୁଜଧରି ଆନନ୍ଦେ ରଘୁଶିଷି ।
ସତ୍ୟାନନ୍ଦକୁ ପାଶକୁ ଡକାଇ ଜନକ
ଦୃଷ୍ଟାନ୍ତର କଥା ମାନ କହିଲେ ଅନେକ ।
ତୁମ୍ଭେ ମହାମୁନି ମନ୍ତ୍ରୀ ଯେ ମୋର ପୁଣି
କହିଣ ସର୍ବକଥା ଆସ ଯେ ସଙ୍ଗେ ଘେନି ।
ସେହି ଦଶରଥ ସୂର୍ଯ୍ୟ ବଂଶରେ ଅବତାର
ଭାଗ୍ୟ କାଳ ଆସିଣ ଯେ ହୋଇଲା ମୋହର ।
ସେହି ଯେ ରତ୍ନାକର ମୁହିଁ ଯେ ଗଙ୍ଗାନଦୀ
ତୁମ୍ଭର ଆଶ୍ରିତେ ସକଳ ମୋର ବୁଦ୍ଧି ।
ମୋହର ସମ୍ବାଦ ନେଇ ନୃପତି ଆଗେଦେବୁ
ସକଳ କୁଶଳ କଥା ବୋଲିଣ ବୋଲିବୁ ।
ତାଙ୍କର ପୁତ୍ରକୁ ଯେ ମୋହର ଝିଅ ଦେବି
ଅଯୋଧ୍ୟା ନୃପତିକି ସମନ୍ଧି ପାଇବି ।
ଏକଥା ସତ୍ୟାନନ୍ଦ ଭିଆଇ ଆସ ଯାଇ
ପଥେ ତୋତେ ରକ୍ଷା ଯେ କରନ୍ତୁ ଉମାସାଇଁ
ଶୁଭ ବେଳେ ଏବେ ତୁମ୍ଭେ କରନ୍ତୁ ଗମନ
ଶୁଣିଣ ସନ୍ତୋଷ ଯେ ହେଲେ ଅହଲ୍ୟା ନନ୍ଦନ ।
ଜନକ ବିଶ୍ୱାମିତ୍ର ଆବର ଯେତେ ମୁନି
ତାହାଙ୍କୁ ସତ୍ୟାନନ୍ଦ ଲମ୍ବାଏ ମୂର୍ଦ୍ଧନି ।
ନାଶା ପବନ ବାରି ଚରଣ ବଢ଼ାଇଲା
ଆନନ୍ଦ ଚିତ୍ତ ହୋଇ ପଥ ଯେ ବହିଗଲା ।
ପ୍ରଥମ ଦିନ ଯେ ବୈଶାଳି ନଗ୍ରେ ରହି
ଆରଦିନ ଶ୍ରୋଣିତ ନଦୀ କୂଳରେ ହୋଇ ।
ଉଦ୍‌ବେଗରେ ମୁନି ବେଗେ ଚଳିଗଲେ
ସିଦ୍ଧି ବନରେ ଯାଇ ପ୍ରବେଶ ହୋଇଲେ ।
ଚାରି ଦିନରେ ସେ ଅଗମ୍ୟ ବନେ ଯାଇ
ପାଞ୍ଚ ଦିନରେ ପିତା ଗୌତମ ଆଶ୍ରମରେହୋଇ ।
ନମସ୍କାର କରିଣ ଯେ ପିତାଙ୍କୁ କହିଲା
ଅଯୋଧ୍ୟା ଯାଉଅଛି ବୋଲିଣ ବୋଇଲା ।
ଜନନୀଙ୍କ ପାଦରେ ଶୋଇଲା ଲମ୍ବହୋଇ
ଶ୍ରୀରାମଙ୍କ କାର୍ଯ୍ୟେ ଗୋ ଯାଉଅଛି ମୁହିଁ ।
ଶିବଧନୁ ଜନକ ଯତନେ ଥୋଇଥିଲା
ଶୁଭବେଳରେ ଶ୍ରୀରାମ ଧନୁ ଆମଣ୍ଡିଲା ।
ପିତା ଅଇଲେ ଶ୍ରୀରାମ ହୋଇବେ ଯେ ବିଭା
କୌଶିକ ଜନକ ମୋତେ ଭେଦିଲେ ଆଣିବା ।
ଶୁଣିକରି ଗୌତମ ଅହଲ୍ୟା ତୋଷହେଲେ
କହିଣ ସତ୍ୟାନନ୍ଦ ପ୍ରଭାତୁ ଚଳିଗଲେ ।
ଜନନୀ ମୁକ୍ତ ହେବାଠାରୁ ସବୁଗଲା ଜଣା
ନାରାୟଣ ଅବତାର ଶ୍ରୀରାମ ଏବେ କିନା ।
ଏମନ୍ତ ବିଚାର ଯେ ପିତା ମାତାଙ୍କର
ବୋଇଲେକାରଣ ଯେ ହୋଇଲେ ପୁତ୍ରମୋର ।
ସେଦିନ ସତ୍ୟାନନ୍ଦ ଗଙ୍ଗା ପାରି ହୋଇ
ସରଯୁ ନଦୀ କୂଳରେ ସେଦିନ ଯାଇ ରହି ।
ପଂକ୍ଷକରେ ପ୍ରବେଶ ଅଯୋଧାରେ ଯାଇ
ପଶିଲେ କଟକରେ ଆନନ୍ଦ ମନ ହୋଇ ।
ଦେଖିଲେ ନଗ୍ର ଯେ ଅତିହିଁ ବିତପନ
ନେତ ଚିରାଳ ଯେ ଉଡ଼ଇ ଭିନ୍ନ ଭିନ୍ନ ।
କାହିଁରେ କାଚକଲଣ କାହିଁରେ ବୈଦୁର୍ଯ୍ୟ
କାହିଁରେ ଶୁଦ୍ଧ ସ୍ଫଟିକ ଚନ୍ଦ୍ରମା ପ୍ରାଏ ତେଜ ।
କାହିଁରେ ବସିଛି ସୁବର୍ଣ୍ଣ ପନ୍ତି ପନ୍ତି
ଦେଖିଣ ସତ୍ୟାନନ୍ଦ ମନରେ ତୋଷ ହୋନ୍ତି ।
ମେଢ଼ ମଣ୍ଡପ ଯେ ଦେଉଳ ଠାବ ଠାବ
ନଗ୍ର ପରିମଳ ଯେ ଦିଶେ ସ୍ୱର୍ଗପୁର ଭାବ ।
ରୂପ ଗୁଣେ ସୁନ୍ଦର ସକଳ ନରନାରୀ
ଦେଖିଣ ସନ୍ତୋଷ ଯେ ହେଲେ ତପଚାରୀ ।
ରାଜାର ସିଂହଦ୍ୱାରେ ମିଳିଲେ ଋଷିଯାଇ
ଦ୍ୱାରପାଳଙ୍କୁ ଦେଖିଣ ସତ୍ୟାନନ୍ଦ କହି ।
ଶୁଣହୋ ଦ୍ୱାରପାଳ ଆମ୍ଭଠାରୁ ବାଣୀ
ଶ୍ରୀରାମଙ୍କ ବାର୍ତ୍ତା ଆମ୍ଭେ ଆସୁଅଛୁ ଘେନି ।
ବୈଦେହୀ ମଣ୍ଡଳରେ ଯେ ମିଥିଳା ନାମେପୁରୀ
ଜନକ ମହାଋଷି ସେଥିରେ ଦଣ୍ଡଧାରୀ ।

ଶ୍ରୀରାମଙ୍କୁ ବିଭା ଯେ କରିବେ ଦୋହିତା
ତାହାଙ୍କର ଦୋହିତା ଯେ ନାମ ଅଟେ ସୀତା ।
ଈଶ୍ୱରଙ୍କ ଧନୁ ଯେ ଜନକ ଘରେ ଥିଲା
ଦଶରଥ ନନ୍ଦନ ଶ୍ରୀରାମ ଆମଞ୍ଚିଲା ।
ତେଣୁକରି ଶ୍ରୀରାମଙ୍କୁ ସୀତା ଦେବେ ମୁନିବର
ବିଶ୍ୱାମିତ୍ର ସହିତେ ବିଚାର ସକଳ ।
ମୋତେ ପେଷିଛନ୍ତି ଦଶରଥ ନେବା ପାଇଁ
ସକଳ ରାଜାଙ୍କୁ କଥା କହିବା ମଣାଇଁ ।
ନିକଟେ ଅନୁକୂଳ ଅଛନ୍ତି ବିଚାରି
ତେଣୁ ଆମ୍ଭେ ଆସିଅଛୁ ଶୁଣ ହେ ଦୁଆରୀ ।
ଗଉତମଙ୍କ ତନୟ ଆମ୍ଭେ ଅହଲ୍ୟା ଗର୍ଭୁଜାତ
ମୋର ନାମ ସତ୍ୟାନନ୍ଦ ଜନକ ପୁରୋହିତ ।
ଏମାନେ କହିଲେ ଜାଣନ୍ତି ସିନା ମୋତେ
ଶୁଣିକରି ଦ୍ୱାରପାଳ ଚଳିଲା ତୁରିତେ ।
ଆନନ୍ଦରେ ଦ୍ୱାରପାଳ ନୟନୁ ବହେ ଜଳ
ସତ୍ୟାନନ୍ଦଙ୍କୁ ରଖାଇ ଗଲାକ ସତ୍ୱର ।
ଭିତରେ ଦ୍ୱାର ପଡ଼ିହାରିଙ୍କି ଯାଇଁ କହି
ଶ୍ରୀରାମଙ୍କ ବାର୍ତ୍ତା ଆଣିଛନ୍ତି ଗୌତମ ତନୟୀ ।
ଶୁଣିକରି ପଡ଼ିହାରୀ ବେଗେ ଚଳିଗଲା
ବେହେରା ଖୁଣ୍ଟିଆ ଆଗରେ କହିଲା ।
ଶୁଣିକରି ବେହେରା ଖୁଣ୍ଟିଆ ଚଳିଗଲା
ରାଜାର ଆସ୍ଥାନ ଠାବରେ ଯାଇଁଣ ମିଳିଲା ।
କିସ କଥା ବୋଲି ଯେ ମନ୍ତ୍ରୀ ପଚାରଇ
ବେହେରା ବୋଇଲା ଶ୍ରୀରାମଙ୍କ ଦୂତ ଆସିଲାଇଁ
ବଶିଷ୍ଠଙ୍କ ପାଶରେ କହେ ଧୀର ଧରି
ଶୁଣିଣ ମହାଋଷି ଖୁଣ୍ଟିଆ କର କରି ।
ଖୁଣ୍ଟିଆର ତୁଲେ ବଶିଷ୍ଠ କଥା ହୋନ୍ତେ
ଆସିକରି ମିଳିଲେ ମନ୍ତ୍ରୀ ଯେ ସୁମନ୍ତେ ।
କିସ କିସ କଥା ଭାଳ ହେ ଗୁପତ
ବଶିଷ୍ଠ ବୋଇଲେ ତୁମ୍ଭେ ଶୁଣ ହେ ସୁମନ୍ତ ।
ଶ୍ରୀରାମ ବାର୍ତ୍ତା ଦୂତ ଅଛି ଆଣି
ଶୁଣିକରି ଭୟ ପୁଣି କଲେକ ନୃପମଣି ।
ରାମ ନାମ ଶବଦ ଯେ ଶୁଭିଲା ରାଜା କର୍ଣ୍ଣେ
ବଶିଷ୍ଠ ଚାହିଁଣ ଯେ ବୋଲନ୍ତି ରାଜନେ ।
କିସ ରାମ ବୋଲିଣ ବୋଲହେ ଋଷି ବାଣୀ
ଶୁଣିକରି ବଶିଷ୍ଠ ଖୁଣ୍ଟିଆଙ୍କୁ ସଙ୍ଗେଘେନି ।

ରାଜାର ଛାମୁରେ ଜଣାଏ ତପଚାରୀ
ଶୁଣ ତୁମ୍ଭେ ଅଯୋଧ୍ୟା ଠାକୁର ଦଣ୍ଡଧାରୀ ।
ଶ୍ରୀରାମଙ୍କ ବାର୍ତ୍ତା ଆଣିଛି ଏକ ଦୂତ
ସିଂହଦ୍ୱାରେ ଆସିଣ ହୋଇଛି ଉପଗତ ।
ଏ ବାର୍ତ୍ତା ପଡ଼ିହାରୀ ଖୁଣ୍ଟିଆକୁ ଚାହିଁ
ତେଣୁ ମନ୍ତ୍ରୀଙ୍କ ସଙ୍ଗରେ ରହି ଭାଳିଲୁଆମ୍ଭେ ରହି ।
ଶୁଣିକରି ନୃପବର ଖୁଣ୍ଟିଆକୁ ଚାହିଁ
କେଉଁ ଦୂତ ଆସିଅଛି ଦେଖିଲୁ କିରେ ତୁହି ।
ବେହେରା ଜଣାଇଲା ଦୁଆରୀ କହିଲା
ସିଂହଦ୍ୱାରେ ଦେବ ଅଛନ୍ତି ସେ ବୋଇଲା ।
ଶୁଣିକରି ନୃପବର ଉଦ୍‌ବେଗ ମନ
ବେଗ କରି ଦୂତକୁ ରେ ଅଣାଅ ବହନ ।
ଆଜ୍ଞାପାଇ ବେହେରା ଖୁଣ୍ଟିଆ ଗଲା ଖରେ
ତାହାର ପଛରେ ମନ୍ତ୍ରୀବର ଚଳେ ।
ଭ୍ରତ ଶତ୍ରୁଘନ ଯେ ଅନେକ ଲୋକ ଗଲେ
ମୁଦୁସୁଲୀ ଯାଇଣ ଭିତରେ ଜଣାଇଲେ ।
ଶୁଣିମା ମୋହଠାରୁ ରାଜାଙ୍କ ପାଟରାଣୀ
ଶ୍ରୀରାମଙ୍କର ବାର୍ତ୍ତା ଅଛଇ ମୁଁ ଯେ ଶୁଣି ।
ତେଣୁକରି ତୁମ୍ଭ ଆଗରେ ଆସିଣ କହିଲୁଁ
ଲୋକେ ଧାଇଁବାରୁ ଆମ୍ଭେ ଯତନେ ମଣିଲୁଁ ।
ଶୁଣିକରି କୌଶଲ୍ୟା ବେଗେ ଆସ୍ଥାନରୁ ଉଠି
ମନ ବିକଳ ହୁଏ ଯେ ଆତ୍ମା ହୁଏ ଘାଣ୍ଟି ।
ଦାସୀକି ଡାକି ବୋଇଲା ଶ୍ରୀରାମର ମାତା
ତଥ୍ୟ କରିଣ ମୋତେ କହ ଗୋ ବାରତା ।
ପୁତ୍ରଙ୍କର ମୁଖ ମୁଁ ଗୋ ଦେଖିବି କେମନ୍ତେ
କେ ଆଣି ଶ୍ରୀରାମର ବାର୍ତ୍ତା ଦେବ ମୋତେ ।
କୈକେୟୀର ଆନନ୍ଦ ଯେ କହିଲେ ନସରେ
ନୟନ ଯୁଗଳରୁ ଅଶ୍ରୁଜଳ ଗଳେ ।
ସୁମିତ୍ରାର ଉସତ ବଦନ ଶତେଚନ୍ଦ୍ର ଜାଣି
ଚାତକ ପାଇଲାକ ବରଷାର ପାଣି ।
ଆବର ଯେତେକ ଯେ ରାଣୀହଂସମାନ
ଶ୍ରୀରାମବାର୍ତ୍ତା ଶୁଣିବାକୁ ଟେକି ଯେଶ୍ରବଣ ।
କଉଶଲ୍ୟା ରାଣୀ ପୁରେ ସମସ୍ତେ ରୁଣ୍ଡ ହେଲେ
ବାରତା ଜାଣିବା ପାଇଁ ସମସ୍ତେ ଅଇଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଗଉରୀ
ଦୂତ ଅଇଲା ବୋଲି ନଗ୍ରରେ ପଡ଼େ ହୁରି ।

ଦ୍ୱାରପାଳ ବୋଲେ ଶୁଣଗୋ ତପୋବନ୍ତ
ରାଜା ଆଜ୍ଞାଦେଲେ ତୁମ୍ଭେ ଆସହେ ତୁରିତ ।
ଏ ମନ୍ତ ସମୟରେ ଖୁଣ୍ଟିଆମାନେ ଯାନ୍ତି
ଶ୍ରୀରାମଙ୍କର ଦୂତକେହୁସେବୋଲିଣବୋଲନ୍ତି ।
ଶୁଣିକରି ସତ୍ୟାନନ୍ଦ ଯୋଗବଳ ଘେନି
ରାଜାଙ୍କର ଆଗରେ ପ୍ରବେଶ ମହାମୁନି ।
ସୁମନ୍ତ ମନ୍ତ୍ରୀ ଦେଖି ଚିହ୍ନିଲେ ତତକ୍ଷଣି ।
ଚିହ୍ନିଣ ମନ୍ତ୍ରୀବର କଲେକ ନମସ୍କାର
କୁଶଳ ଅଛନ୍ତିଟିକି ଶ୍ରୀରାମ ଲକ୍ଷ୍ମଣ ମୋର ।
ସତ୍ୟାନନ୍ଦ ବୋଇଲେ ବହୁତ ଶୁଭକାର୍ଯ୍ୟ
କହ ତୁମ୍ଭେବେଗେଯାଇଁ ଅଯୋଧ୍ୟା ଦେଶରାଜ ।
ସୁମନ୍ତ ବୋଇଲେ ନୃପତି ଅବକାଶ
ଭୋରଷି କୁମର ତୁମ୍ଭେ ବେଗହୋଇ ଆସ ।
ଭ୍ରତ ଶତୃଘନ ଆସି ସତ୍ୟାନନ୍ଦକୁ ଭେଟି
ସୁମନ୍ତ କହିଲେ ଶ୍ରୀରାମ କନିଷ୍ଠ ଏହିଟି ।
ଶ୍ରୀରାମର ଦୂତ ବୋଲି ଅଇଲେ ଏବେଦେଖି
ସତ୍ୟାନନ୍ଦ ବୋଇଲେ ଏ ଦିଶନ୍ତି ଏକ ମୂର୍ତ୍ତି ।
ଧନ୍ୟ ହେ ଦଶରଥ ଧନ୍ୟ ତୋ ଚାରିପୁତ୍ର
ଦେବତା ସମାନ ତୁ ପାଇଲୁ ନନ୍ଦନ ତ
ଭ୍ରତ ଶତୃଘନ ଯେ ଋଷିର ପାଦେ ପଡ଼ି
କୁଶଳ ପଚାରନ୍ତି ଯେ ବେନିକର ଯୋଡ଼ି ।
ଶ୍ରୀରାମ ନନା ଆମ୍ଭର କ୍ଷେମେଣ ଛନ୍ତିଟିକି
ସୁକଲ୍ୟାଣ କରିଣ ବୋଇଲେ ତାଙ୍କୁ ଯତୀ ।
ସକଳ ଶୁଭେଛନ୍ତି ଶ୍ରୀରାମ ଲକ୍ଷ୍ମଣ
ତାଙ୍କର ଦୂତପଣେ ଆସିଛୁ ଆମେ ପୁଣ ।
ଏମନ୍ତ କହି ଋଷି ଯେ ଚଳିଲେ ତୁରିତ
ଚାରିଦ୍ୱାରେ ଜିଣିଯାନ୍ତେ ଦିଶିଲେ ତପୋବନ୍ତ
ଦେଖି ମନେ ବିଚାରିଲେ ବଶିଷ୍ଠ ଋଷିତ
ଗଉତମର ତନୟ ଅହଲ୍ୟାର ସୁତ ।
ଜନକ ଋଷିଙ୍କର ପୁରୋହିତ ମନ୍ତ୍ରୀ
ଏ ଆସିବାର ଜାଣିଲେ ଦଶରଥଙ୍କର ସମର୍ତ୍ତି ।
ଏ ଯେବେ ଅଇଲେ ହୋଇଲା ଶୁଭକାର୍ଯ୍ୟ
ଶୁଣିବା ହେଉ ତୁମ୍ଭେ ଅଯୋଧ୍ୟା ଦେବରାଜ ।
ଗଉତମ ନନ୍ଦନ ସତ୍ୟାନନ୍ଦ ଏ ମୁଁ ଚିହ୍ନଇ
ସପତ ଋଷି ସଙ୍ଗରେ ବିଧାତା ଗଣଇ ।

କୌଶିକ ଜନକ ବୋଲେଅଇଲେ ଏଢ଼େମୁନି
ବାବୁ ଦଶରଥ ଭାଗ୍ୟ ଯେ ତୋର ଧନି
ଶୁଣି କରି ରାଜନ ପାଛୋଟି ବେଗେ ଆଏ
ବଶିଷ୍ଠ ଅଇଲେ କିଛି ଦୂର ଯାଏଁ ।
ଦେଖିଣ ସତ୍ୟାନନ୍ଦ ବଶିଷ୍ଠ ମାନ୍ୟ କଲେ
ବହୁତ ଲୋକ ତାଙ୍କୁ ଦେଖିଣ ଅଇଲେ ।
ତାଙ୍କର ପଛକତିରେ ଅନେକ ସଇନି
ପଟୁଆର ପଡ଼ିଲା ଆନନ୍ଦ ରଙ୍ଗେ ପୁଣି ।
ରାଉତ ମାହୁନ୍ତ ଖୁଣ୍ଟିଆ ପଡ଼ିହାରୀ
ପାତ୍ର ମନ୍ତ୍ରୀ ସାମନ୍ତ ଯେ ବେହେରା ପରିବାରି ।
ମୁଦୁସୁଲି ଯାଇ ଭିତରେ ଦୁଆରେ ଦେଖନ୍ତି
କବାଟକୁ ଆଡଆଇ କଥାନ୍ତ ବୁଝୁଛନ୍ତି ।
ଏଥୁ ଅନନ୍ତରେ ଯେ ସତ୍ୟାନନ୍ଦ ଯାଇଁ
ବଶିଷ୍ଠଙ୍କ ମୁଖ ଚାହିଁ ଅଳପ ହସେ ସେହି ।
ନିକଟରେ ଯାଇଣ ମିଳିଲେ ମୁନିବର
କୋଳ କଲେ ବଶିଷ୍ଠ ଅହଲ୍ୟା କୁମର ।
ବୋଇଲେ କୁମରରେ ଚିରଞ୍ଜିବୀରେ ରହ
ଯଶ ପଉରୁଷ ସକଳ ସ୍ଥାନେ ପାଅ ।
ଦଶରଥ ରାଜା ଯେ ବେଗେ ପୁଣ ଆସି
ଶିରରେ ଲଗାଇଲେ ମୁନିଙ୍କର ପାଦଗୋଟି ।
ଏ ବିଧିରେ ରାଜା ଯେ କରିଣ ବସାଇଲେ
ସତ୍ୟାନନ୍ଦ କହେ ଶୁଣ ରାଜନ କର୍ଣ୍ଣରେ ।
ଯାବଳି ବାମଦେବ କଶ୍ୟପଙ୍କୁ ଯେ ଦେଖି
ପୂଜାବିଧି କଲେ କଥାନ୍ତ ଉପେକ୍ଷି ।
ବଶିଷ୍ଠ ଦକ୍ଷିଣ ପାଖରେ ଛନ୍ତି ରହି
ଏସନେକ ସମୟେ ଯେ ସତ୍ୟାନନ୍ଦ କହି ।
ଦଶରଥ ରାଜାଙ୍କୁ କହନ୍ତି ସତ୍ୟାନନ୍ଦ
ଶୁଣ ତୁମ୍ଭେ ନୃପତି ଶ୍ରୀରାମ ସମ୍ବାଦ ।
ତୁମ୍ଭର କୁମର ବେନି ଯେ ଶ୍ରୀରାମ ଲକ୍ଷ୍ମଣ
ବିଶ୍ୱାମିତ୍ରଙ୍କ ସଙ୍ଗରେ ବିଜୟେ କଲେ ପୁଣ ।
ଅଯୋଧ୍ୟା ପୁରୁ ଯାଇଁ ଯଶ କଲେ ତୁମ୍ଭ ସୁତ
ବାଟରେ ତାଡ଼କା ଅସୁରୀକି କଲେ ହତ ।
ସେଠାରୁ ବିଶ୍ୱାମିତ୍ରଙ୍କ ଯାଗକୁ ରଖିଲେ
ଅନେକ ଅସୁରଙ୍କୁ ସେଥିରେ ମାଇଲେ ।
ସେଠାରୁ ବିଶ୍ୱାମିତ୍ରେ ବିଦ୍ୟା ଦେଲେ ଜାଣ
ସକଳ ବିଦ୍ୟା ଯେ ମନ୍ତ୍ର ଯନ୍ତ୍ର ପୁଣ ।

ସେଠାରୁ ବିଶ୍ୱାମିତ୍ର ସଙ୍ଗରେ ଘେନି ଚଳି
ବାଟରେ ଜନନୀଙ୍କି ମୁକତ ମୋର କରି ।
ସେଠାରୁ ଶ୍ରୀରାମ ଲକ୍ଷ୍ମଣ ଚଳିଗଲେ
ମିଥିଳାରେ ପ୍ରବେଶ ବିଶ୍ୱାମିତ୍ର ତୁଲେ ।
ଶିବ ଧନୁ ରଖିଥିଲେ ଜନକ ସତ୍ୟ କରି
ଯେ ଶରାସନକୁ କେହି ନପାରିଲେ ତୋଳି ।
ତୁମ୍ଭର ପୁତ୍ର ତାହା ହେଲେ ଆମଈ୍ଥିଲେ
ଦୁଇ ଖଣ୍ଡ କରିଣ ଭାଙ୍ଗି ପକାଇଲେ ।
ଦେଖିଣ ଜନକ ଋଷି ମନରେ ତୋଷ ହୋଇ
ସୀତୟା ନାମରେ ତାର ଦୁହିତା ଅଟଇ ।
ଶ୍ରୀରାମଙ୍କୁ ଦେବ ବୋଲି ସନମତ କଲା
ରତ୍ନମାଳା ଶ୍ରୀରାମ କଣ୍ଠେ ସୀତା ଲମ୍ବାଇଲା ।
ଏମନ୍ତ ସମୟରେ ରାଜାଗଣମାନ
ଗୋଳ କଲେ ଉଠିଣ ଶ୍ରୀରାମ ସଙ୍ଗତେଣ ।
ଶ୍ରୀରାମଙ୍କୁ ବରିବାକୁ ଆଗେ ଉଭା ସୀତା
ଦେଖିକରି ଲକ୍ଷ୍ମଣ ମନରେ ମହାକ୍ରୋଧା ।
ମୋହଶର ଗୋଟିଏ ବିନ୍ଧିଲେ ଲକ୍ଷ୍ମଣ
ଲକ୍ଷେ ରାଜା ମୋହଗଲେ ଏକ ଶରେ ପୁଣ ।
ଦେଖିକରି ରାମଚନ୍ଦ୍ର ଲକ୍ଷ୍ମଣକୁ କହି
ଜଣାଇଦିଅ ରାଜାଗଣମାନଙ୍କୁ ତୁହି ।
ଶୁଣିକରି ଲକ୍ଷ୍ମଣ ସକଳେ ପଳାଇଲେ ।
ସାଧୁରେ ଲକ୍ଷ୍ମଣ ବୋଲି ଦେବତାଏ ବୋଲେ
କୁସୁମ ବୃଷ୍ଟିକରି ସ୍ୱର୍ଗପୁର ଗଲେ ।
ସେଠାରୁ ଜନକ ଋଷି ଶ୍ରୀରାମରେ କହି
ବେନି କାମନା ମୋହର ସିଦ୍ଧ ଏବେ ହୋଇ ।
କଉଶିକ ବୋଇଲେ କିସ ଯେ କାମନା
ଜନକ ଋଷି ବୋଇଲେ ଶୁଣ ତୁମ୍ଭେ କିନା ।
ବେନି ଦୁହିତା ମୋର ଅଯୋନି ସମ୍ଭୁତ
ଜାତ ହୋଇଲା ବେଳେ ନିୟମ କଲି ମୁଁ ତ ।
ଧନୁ ଯେ ତୋଳିବ ଜ୍ୟେଷ୍ଠ ନନ୍ଦିନୀକି ନେବ
ଲକ୍ଷେ ରାଜାଙ୍କୁ ଜିଣିଲେ କନିଷ୍ଠ ବିଭା ହେବ ।
ଶୁଣିକରି କଉଶିକ ବୋଇଲେ ଜନକକୁ
ଶ୍ରୀରାମକୁ ସୀତା ଯେ ଉର୍ମିଳା ଲକ୍ଷ୍ମଣଙ୍କୁ ।
ଜନକ ଋଷି କହେ କଉଶିକକୁ ଆସିଚି
ବୋଇଲେ ଆଜ ବିଭା କରିବା ଦୁହିତାଟି ।

ଶ୍ରୀରାମ ବୋଇଲେ ଏ ନୁହଇ ଉଚିତ
ପିତା ମାତା ନଜାଣିଲେ ନୁହଇ ଏ କୃତ୍ୟ ।
ଶୁଣିକରି ସାଧୁ ସାଧୁ ଶ୍ରୀରାମେ ସର୍ବେ କଲେ
ଉତ୍ସବରେ ବିଭାଘର କରିବା ବୋଇଲେ ।
ତୁ ଯେବେ ଯିବୁ ରାଜା ବେଗହୁଅ ସଜ
ହେଳା ନକର ଦଣ୍ଡେ ଅଯୋଧ୍ୟା ମହାରାଜ ।
ଏତେ କହି ଶ୍ରୀରାମଙ୍କ ଲେଖା ଗୋଟି ଦେଇ
ପୁଣି ବୋଇଲି କଉଶିକ ଜନକ ଛନ୍ତି କହି ।
ତୁମ୍ଭ କୁମର ଶ୍ରୀରାମଙ୍କୁ ବାରବରଷ ପୁଣ
ଋଷିମାନେ ବୋଇଲେ ଜାତ ନାରାୟଣ ।
ନୋହିଲେ କି ଶିବଧନୁ ତୋଳି ଏ ଭାଙ୍ଗଇ
ମୋ ଜନନୀ ମୁକ୍ତିରୁ ଜାଣିଲେ ସର୍ବେ ତହିଁ ।
ଏଗାର ବରଷ ପର୍ଯ୍ୟନ୍ତ ଧନୁ ଯାଗ ହେଲା
ଦେବ ଅସୁରନାଗବଳ ଧନୁଦେଖି ଫେରେଗଲା ।
ନର ବାନର ଯେ ଆବର ଋଷିଗଣ
ଧନୁ ଧରିବାକୁ କେହି ନୋହିଲେ ଭାଜନ ।
ଏମନ୍ତ କହି ଋଷି ଲେଖା ଯେ ସମର୍ପିଲେ
ଶୁଣିଣ ଦଶରଥ ପରମ ତୋଷ ହେଲେ ।
କୃତାଞ୍ଜଳି ହୋଇ ଘେନିଲେ ନରନାଥ
ହୃଦରେ ଲଗାଇ ଦେଲେ ବଶିଷ୍ଠଙ୍କ ହସ୍ତ ।
ବ୍ରହ୍ମାଙ୍କର ତନୟ ଲେଖାକୁ ହସ୍ତେ ଧରି
ଶ୍ରୀରାମର ସନ୍ତକ ମୁଦ ଠାବ କରି ।
ଚନ୍ଦନର ମୁଦ ଗୋଟି ପକାଇଲେ ଭାଙ୍ଗି
ତଳଯେ କରିଣ ଚିଟାଉ ଧରି ବେଗି ।
ମନେ ମନେ ଲେଖା ଯେ ଦେଖିଲେ ବିଚାରି ।
ପ୍ରସ୍ତାବମାନ ଶୁଣି ହସିଲେ ବ୍ରହ୍ମଚାରୀ ।
ପଢ଼ିଣ ବଚାରି ମନେ ମର୍ଯ୍ୟାଦା ସେ କଲେ
ନୃପତିଙ୍କ ମୁଖ ଚାହିଁ ବଚନ ବୋଇଲେ ।
ଶୁଣ ତୁମ୍ଭେ ଦଶରଥ ପୁତ୍ରଙ୍କର ଗୁଣ
ଧନୁ ଆମଈ୍ ଶ୍ରୀରାମ ରଖିଲେ ବଡ଼ପଣ ।
ଅଗମ୍ୟ ବନରେ ତାଡ଼କୀ ବଧ କଲେ
ବିଶ୍ୱାମିତ୍ର ମୁନିଙ୍କର ଯାଗ ଯେ ରଖିଲେ ।
ସୁବାହୁ ସଙ୍ଗେ ଅସୁରବଳ ନାଶକଲେ
ତେଣୁ ଯେ କଉଶିକ ଅନେକ ବିଦ୍ୟାଦେଲେ ।
ଅହଲ୍ୟା ମୁକତ କଲେ ଯେ ତୁମ୍ଭ ପୁତ୍ର
ସାଧୁ ସାଧୁ ପଦ ସେଠାରୁ ହେଲା ଯେ ପ୍ରାପତ ।

ମିଥିଳା ନଗରେ ପ୍ରବେଶ ଯାଇହେଲେ
ଜନକଙ୍କ ପୁରେ ଶିବଧନୁ ଯେ ଦେଖିଲେ ।
ତେଣୁ ଶିବଧନୁ ଯେ ଧଇଲେ ବାମକରେ
ଗୁଣ ଟଙ୍କାର ନାଦ ଶୁଭିଲା ବାହୁବଳେ ।
ଜନକଧନୁବଳ ଭାଙ୍ଗିଲେ ଯେ ବେଗ
ଦେଖିକରି ରାଜାମାନେ କଳିରେ ଉଦ୍‌ବେଗ ।
ଦେଖିଣ ଲକ୍ଷ୍ମଣ ବୀର ରାଜାଙ୍କୁ ମୋହ କଲା
ଶ୍ରୀରାମ କହିବାରୁ ଜିଆଇ ପୁର ଦେଲା ।
ଜାଣିଣ ଜନକ ବେନି ଦୁହିତା ଯେ ଆଣି
ବେନି ଭାଇଙ୍କି ବରଣ କଲେ ଯେ ସେଥିପୁଣି ।
ପଞ୍ଚରତ୍ନ ମାଳା ଦେଇ ବରଣ କରିଗଲେ
ସେ ଦିନ ଜନକ ବିଭା କରିଣ କରିଗଲେ ।
ଶ୍ରୀରାମ ଶୁଣିବାରୁ ବିଭା ଯେ ମନାକଲେ
ତୁମ୍ଭ ପାଖୁ ଲେଖାଲେଖି ଯାକୁ ବରଗିଲେ ।
ବିଶ୍ୱାମିତ୍ର ସନ୍ତୋଷରେ ସକଳ କାର୍ଯ୍ୟତୋର
ନଗଲେ ନିଷ୍ଠେ ବିଭା ଯେ କରିବେ ମୁନିବର ।
ବ୍ରହ୍ମା ବିଷ୍ଣୁ ଶିବ ଯେ ସକଳ ମୁନିଗଣ
ସେ ମୁନିକି ଭୟେ କରନ୍ତି ସର୍ବେ ଜାଣ ।
ସେ ବୋଲିବ ଯାହା ସେ କଥା ହେବ ପୁଣ
ସକଳ ଯଶ ସିନା ତାହାଙ୍କ ପ୍ରକାଶେଣ ।
ବିଶ୍ୱାମିତ୍ର ସହିତେ ଆବର ସର୍ବ ଋଷି
ସତ୍ୟାନନ୍ଦ ମୁନିଙ୍କି ଏ ସ୍ଥାନକୁ ପେଷି ।
ତୁମ୍ଭେ ଏକେ କିସ ଯେ ବିଚାରୁଛ ମନେ
ଶ୍ରୀରାମ ଲକ୍ଷ୍ମଣ ବିଭା ସରିବଟି ତେଣେ ।
ଅଯୋନି କନ୍ୟା ବେନି ସେ ଅଟନ୍ତି ପତିବ୍ରତା
କେବେବିଭାନୁହଁନ୍ତିଶ୍ରୀରାମଲକ୍ଷ୍ମଣଜଗତ୍‌ଜିତା ।
ଯେବେଣ ଲୋକକୁ ସର୍ବେ ପ୍ରଶଂସା କରନ୍ତି
ସେ ଲୋକକୁ ଦେବତା ବୋଲିଣ ଜାଣନ୍ତୁଟି ।
ଶ୍ରୀରାମ ତୋହର ବଂଶେ ଉତ୍‌ପତ୍ତି
ଜନକକୁ ସମ୍ବନ୍ଧି ପାଇଲେ ହେବ ଚକ୍ରବର୍ତ୍ତୀ ।
ବିଶ୍ୱାମିତ୍ରଙ୍କ ସଙ୍ଗରେ ଯିବାରୁ ତୁମ୍ଭ ପୁତ୍ର
କଉଶିକ ପ୍ରସନ୍ନରେ ଉଦ୍ଧାରି କୁଳ ଗୋତ୍ର ।
ଧନ୍ୟ ଗାଧିସୁତ ଯେ ମାମୁଁ ଭଣଜା ଜନ୍ମ ହେଲେ
ଭଣଜା ସପ୍ତପୁରେ ସବୁଙ୍କୁ ଜିଣିଲେ ।
ମାମୁଁ ଦେବତାଙ୍କୁ ଯେ ନମାନିଲେ ପୁଣ
ଯାହା ବିଚାରେ କଉଶିକ ଦେବେ କର ଶୂନ୍ୟ ।

ଶୁଣିଣ ଦଶରଥ ପରମ ସାନନ୍ଦ
ମୁଖ ବିକାଶିଲା କି ପୂର୍ଣ୍ଣମୀର ଚାନ୍ଦ ।
ଆନନ୍ଦରେ ଅଶ୍ରୁଜଳ ଗଳେ ଘନ ଘନ
ବଶିଷ୍ଠ ଋଷିଙ୍କି ଚାହିଁ ବୋଲଇ ରାଜନ ।
ଭୋ ମୁନି ଯାହା ହୋ ସତ୍ୟାନନ୍ଦ କହି
ଏହି କଥା ମୋତେ ଯେ ସଂଶୟ ଲାଗଇ ।
ତାଡକୀ ମାରିବାର ଯେ ଶୁଣିଥିଲି ମୁହିଁ
ଯାଗ ରଖିବାର ମୋତେ କୈକେୟୀଭାଇକହ ।
ଅହଲ୍ୟା ମୁକତ କଥା ଅଟେ ଅଗୋଚର
ସବୁହୁଁ ବଳିଲା ଶ୍ରୀରାମ ଧନୁ ଧରିବାର ।
ଅକଳ ବଳ ଧନୁ କେହି ନ ତୋଳିଲେ
ଈଶ୍ୱର କୋପରେ ସେ ଧନୁ ଜାତ ହେଲେ ।
ଦେବ ଅସୁର ନାଗବଳ ଯେ ଏମାନେ
ନର ବାନର ବାଣସୁର ବଜ୍ରଧର ଏଣେ ।
ପର୍ଶୁରାମ ବେଦବର ଦଶଦିଗପାଳେ
ଚାରିରାବଣ ସେ ଧନୁକୁ ତୋଳିନପାରନ୍ତିବଳେ ।
ନର ନାରାୟଣ ଦେଖିଣ ଗଲେ ଘୁଞ୍ଚି
ସେ ଧନୁକୁ ଶ୍ରୀରାମ କେମନ୍ତେ ଆମଞ୍ଚି ।
ବଶିଷ୍ଠ ବୋଇଲେ ସେ କଥା ଅଟେ ସତ
ନୋହିଲେ ଏତେ ପଥକି ଆସେ ଗଉତମଶିଷ୍ୟ ।
ଯାହାକୁ ବେଦବର ବରଷକେ ଥରେ
ଦେଖିବା ପାଇଁ ଆସଇ ମିଥିଳାରେ ।
ଶ୍ରୀରାମ ସମ୍ମତ କରନ୍ତେ ସରନ୍ତାଣି ବିଭା
ତୁମ୍ଭେ କିମ୍ପା ରାଜନ ବିଚାର ଏକଥାକୁ ଅବା
ଶ୍ରୀରାମ ତୋର ସକଳ ଗୁଣେ ଅଟେ ସର
ସ୍ୱୟଂ ନାରାୟଣ ସେ ହେଲେ ଅବତାର ।
ଲକ୍ଷ୍ମୀ ନାରାୟଣଙ୍କ ବିଭା ଦେଖିବା ଚାଲ
ଶୁଣିକରି ସନ୍ତୋଷ ଅଯୋଧ୍ୟା ଦଣ୍ଡଧର ।
ଯାବାଳି କଶ୍ୟପ ଆବର ବାମଦେବ
ସମସ୍ତ ମନରେ ଆନନ୍ଦ ସଦ୍‌ଭାବ ।
ଆସ୍ଥାନରେ ଲୋକ ଯେ କଲେ ଧନ୍ୟଧନ୍ୟ
ବାବୁ ଶ୍ରୀରାମ ଜାତ ହେଲୋ ଏ ମେଦିନୀ ।
କେତେ ଦିନରେ ତୋର ଯେ ଦେଖିବୁ ଶ୍ରୀମୁଖ
ତେବେ ସିନା ପାଶୋରଯିବ ସଂସାରଦୁଃଖ ।
ନଗ୍ର ନରନାରୀ ଶୁଣିଣ ତୋଷ ଚିତ୍ତ
ମୁଦୁସୁଲି ଯାଇଣ କହିଲେ ଭିତରେତ ।

ଶୁଣଗୋ ଅଯୋଧ୍ୟା ରାଜାଙ୍କ ପାଟରାଣୀ
ଶ୍ରୀରାମଙ୍କ କଥା ଗୋ ପୁରାଣେ ବଖାଣି ।
ବିଶ୍ୱାମିତ୍ରଙ୍କ ସଙ୍ଗରେ ଶ୍ରୀରାମ ଲକ୍ଷ୍ମଣ ଗଲେ
ବାଟରେ ତାଡ଼କୀକି ଶ୍ରୀରାମ ବଧ କଲେ ।
ବିଶ୍ୱାମିତ୍ରଙ୍କ ଯାଗ ରଖିଣ ତହୁଁ ଚଳି
ଗଙ୍ଗା କୂଳେ ଅହଲ୍ୟା ମୁକତ ସେ ଯେ କରି ।
ମିଥିଳା କଟକରେ ହେଲେ ପରବେଶ
ଶିବଧନୁ ସେଠାରେ ଭାଙ୍ଗିଲେ ରଘୁନାଥ ।
ଲକ୍ଷେ ରାଜାଙ୍କୁ ଯେ ଲକ୍ଷ୍ମଣ ଜିଣିଲେ
ଦେଖିକରି ଜନକ ଋଷି ତୋଷ ହେଲେ ।
ଅଯୋନି ସମ୍ଭୂତରେ ବେନି ଦୁହିତା ତାର
ସାକ୍ଷାତେ କମଳା ପାର୍ବତୀ ରୂପ ତାଙ୍କର ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ଋଷି ବରଣ କଲେ
ତେଣୁଟି ବେନିଭାଇ ହରଷ ମନ ହେଲେ ।
ଜନକ ଶ୍ରୀରାମଙ୍କୁ ବୋଇଲେ ହୁଅ ବିଭା
ଶ୍ରୀରାମବୋଇଲେପିତାନଥିଲେନୁହେଁଶୋଭା ।
ଶୁଣିକରି କଉଶିକ ଗଉତମ ପୁତ୍ର ଭେଦି
ଶୁଣିଣ ରାଜାମାନେ ଯିବାକୁ ଉଦ୍‌ବେଗି ।
ତେଣୁ ବଧାଇ ମୁଁ ମାଗିବାର ପାଇଁ
ଏହିକଥା ତୁମ୍ଭ ଆଗେ କହୁଛି ବୁଝାଇ ।
ଶୁଣି କରି ବୋଇଲେ ଯେ ଶ୍ରୀରାମର ଆଈ
ଶ୍ରୀମୁଖ ନଦେଖିଲେ ମୁଁ ମନ ମୋ ସୁସ୍ଥ ନୋହି ।
ମାର୍ଗଶିର ମାସରେ ଗଲା ମୋର ବଳା
ବୈଶାଖ ମାସକୁ ଏବେ ଷଡ଼ ମାସ ହେଲା ।
ଏତେ ବୋଲି ରୋଦନ କରନ୍ତେ ରାମମାତ
କେତେ ଦିନେ ଶ୍ୟାମଳ ବଦନ ଦେଖିବି ତ ।
ସାନ କାଳରୁ ଯେ ଗଲେ ଏକାକରି
କୋଳରେ ଶୁଆଇ ଯେ କେତେ ଗେଲ କରି ।
ଦେଖିଲେ ହେବି ତୋଷ ନ ଦେଖି ବିକଳ
ଏତେ ବୋଲି ଦାସୀକି ବଧାଇ ଦେଲେ ଖର ।
ଏଥୁ ଅନନ୍ତରେ ଯେ ଦଶରଥ ରାୟେ
ବଶିଷ୍ଠଙ୍କୁ ବୋଇଲେ କରହେ ଉପାୟେ ।
ଜନକ ଯେବେ ଶ୍ରୀରାମଙ୍କୁ ନିଶ୍ଚେ ଦେବେ ସୀତା
ଏସନେକ ବିଚାର ଯେ କରିଛି ବିଧାତା ।
ତୁମ୍ଭ ଆମ୍ଭ ବେଗଳରେ ନୁହେଁ ପୁଣ ଆନ
ଯାହା ସେ ପ୍ରଜାପତି କରିଛି ଲେଖନ ।

ସତ୍ୟାନନ୍ଦ ଯେବେ ଅଇଲେ ମୋତେ କହି
ରତ୍ନ ବେଦି ଉପରେ ଶ୍ରୀରାମଙ୍କୁ ବିଭା କରାଇ
ସୁମନ୍ତଙ୍କୁ ଚାହିଁଣ କହେ ନୃପବର
ଚତୁରଙ୍ଗ ବଳ ଯେ ଆମ୍ଭର ସଜକର ।
କାଲିର ପ୍ରଭାତରୁ ଆମ୍ଭେ ଯେ ପୁଣ ଯିବା
ଜନକ କଉଶିକ ଶ୍ରୀରାମଙ୍କୁ ଦେଖିବା ।
ତୁମ୍ଭେ ହେ ବଶିଷ୍ଠ ନିଅ ସତ୍ୟାନନ୍ଦ
ଗୌରବ କରିଣ ଯେ ରଖ ମୁନି ଇନ୍ଦ୍ର ।
ଏତେ ବୋଲିଣ ରାଏ ଆସ୍ଥାନକୁ ଉଠିଗଲେ
ଶ୍ରୀରାମର ଲେଖା ଗୋଟି ହସ୍ତରେ ଘେନି ଚଳେ ।
ମୃଦୁସୁଲି ଆସିଣ ମଣାଇଁ ଘେନିଗଲେ
ଅନ୍ତଃପୁରେ ରାୟେ ପ୍ରବେଶ ହୋଇଲେ ।
କୌଶଲ୍ୟା କୈକେୟୀ ସଙ୍ଗରେ ରାଣୀଗଣ
ରାଜାଙ୍କ ଚରଣରେ କଲେକ ମାନ୍ୟ ଧର୍ମ ।
ରାଜନ ବୋଇଲେ ଗୋ ସକଳ ରାଣୀ ପୁଣ
ଭାଗୀରଥିଙ୍କ ସଙ୍ଗେ ଶ୍ରୀରାମଙ୍କୁ ଲେଖ ପୁଣ ।
ଦେବତା ଅସୁର ଯେ ନରହିଁ ବାନର
ନାଗବଳ ଋଷି ଯେ ପ୍ରଜାଜନ ମେଳ ।
ତିନିପୁର ଲୋକେ ଯେ ଶ୍ରୀରାମରେ ପ୍ରଶଂସିଲେ
ଯେଣୁଟି ଶ୍ରୀରାମ ବିଶ୍ୱାମିତ୍ର ସଙ୍ଗେ ଗଲେ ।
ଯାଗ ରଖି ଅହଲ୍ୟାକୁ କଲେ ସେ ମୁକତ
ଶିବଧନୁ ଭାଙ୍ଗିବାରୁ ହରଷ ସମସ୍ତ ।
ତେଣୁଟି ଜନକର ବେନି ଦୁହିତା ବରି
ବିଭା ନ ହୋଇ ଶ୍ରୀରାମ ମୋଠାକୁ ଦୂତ ଚାଳି ।
ଆମ୍ଭେ ଗଲେ ବିଭାଘର ହେବ ସୁଲଭରେ
ଯିବାର ସମ୍ଭର୍ବ ଯେ କହିଲୁଁ ମନ୍ତ୍ୟବରେ ।
ଏତେ କହି ରାଜା ଯେ ସେଠାରୁ ଚଳିଗଲେ
ବାହାରେ ଅବକାଶ ଯେ ଯାଇଣ ହୋଇଲେ ।
ମାଜଣା ମର୍ଦ୍ଦନ ବିଧି ବେଗେ ରାଏ ସାରି
ଷଡ଼ରସେ ମଣୋହି ଯେ କଲେ ଯାଇକରି ।
ରଜନୀରେ କୌଶଲ୍ୟାପୁରେ ବିଜେ ମହୀପାଳ
ରଜନୀ ଶେଷେ ଶଙ୍ଖ ସ୍ୱରଇ ଦେବାଳ ।
ଶଯ୍ୟା ତେଜିଣ ଉଠିଲେ ମହୀପତି
ଅବକାଶ ହେଲା ଯାଇଁ ବାହାର ଜଗତୀ ।
ଦିହୁଡ଼ି ହୁଳାମାଳ ଜଳଇ ନିରନ୍ତର
ଖୁଣ୍ଟିଆକୁ ରାଇଣ ବୋଲଇ ନୃପବର ।

ଟମକ ଦିଆଅ ବେଗେ ଟମକିଆ ରାଇ
ଚତୁରାଙ୍ଗ ବଳ ଯେ ଆସନ୍ତୁ ସଜ ହୋଇ ।
ଶୁଣିକରି ଖୁଣ୍ଟିଆ ଯେ ବେଗେ ଚଳିଗଲେ
ଟମକିଆକୁ ଡାକକରି ସେ କହିଲେ ।
ଶୁଣିକରି ଟମକିଆ ଘୋଷଣା ବେଗେ ଦେଲା
ସୈନ୍ୟବଳ ସଜହୁଅ ବୋଲି ଯେ ବୋଇଲା ।
ଚଉଷଠି ଦାଣ୍ଡ ଯେ କନ୍ଦି ବିକନ୍ଦିରେ
ଦେଶ ଘୋଷେ ଧେଣ୍ଡୁରା ଫେରାଏ ସତ୍ୱରେ ।
ସିଂହଦ୍ୱାରେ ଆସିଣ ମିଳିଲା ତଡତି
କରଯୋଡ଼ି ଦର୍ଶନ କଲାକ ନୃପତି ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଡଗର କହଇ ଦେବ ଶୁଣ ଦଣ୍ଡଧାରୀ ।
ଧେଣ୍ଡୁରା ଦେଇଣ ଯେ ସବୁଙ୍କି ଜଣାଇଲି
ସଜହୋଇ ଆଇଲେ ସମସ୍ତେ ଶୁଣିକରି ।
ନୃପତି ପଚାରିଲେ ଶୁଣ ହେ ସୁମନ୍ତ
ବିଭାବିଧି ପଦାର୍ଥ ଯୋଗାଡ଼ ଯେମନ୍ତ ।
ସକଳ ଦ୍ରବ୍ୟମାନ ନେବ ଯେ ସଙ୍ଗରେ
ଏହି ସମୟରେ ଆସି ବଶିଷ୍ଠ ଋଷି ମିଳେ ।
ରାଜା ନିତ୍ୟ କର୍ମସାରି ତଡ଼ତି ଯେ ଆସେ
ବଶିଷ୍ଠଙ୍କୁ ମାନ୍ୟକରି ପାଶରେ ଯାଇଁ ବସେ ।
ରାଜନ କହେ ମିଥିଳା ପୁର ଚାଲ ଯିବା
ଶ୍ରୀରାମ ଲକ୍ଷ୍ମଣଙ୍କୁ ବିଭା କରାଇବା ।
ଜନକ ଋଷିମୋତେ ସୁଦୟା ଏବେ କଲେ
ମୋହର ଜୀବନ ଏବେ ସୁଫଳ ହୋଇଲେ ।
ବଶିଷ୍ଠ ବୋଇଲେ ତୁମ୍ଭେ ଶୁଣ ନୃପମଣି
ଆଜ୍ଞାଦିଅ ଥାଟ ଆଗରେ ଯାନ୍ତୁ ପୁଣି ।
ଏହି ସମୟରେ ବାମ କଶ୍ୟପ ବେଶେ ବଳି
ପ୍ରବେଶ ହୋଇଲେ ସତ୍ୟାନନ୍ଦ ତପଶାଳୀ ।
ଭରତ ଶତ୍ରୁଘନ ଯେ ଆସିଲେ ସଜ ହୋଇ
ଗଗନରେ ଉଦୟ ଯେ ହେଲେ ଛାୟାସାଇଁ ।
ରଥଗଜ ଅଶ୍ୱ ଯେ ପଳାନ୍ତି ଅପାର
ସମସ୍ତେ ମିଳିଲେ ଯେ ଆସି ସିଂହଦ୍ୱାର ।
ବାଜଇ ଟମକ ଯେ ନିଶାଣ ମର୍ଦ୍ଦଳ
ଦମା ଦାଉଣ୍ଡି ଯେ ମହୁରୀ ଶଙ୍ଖ ଗୋଳ ।
ଆଲମ୍ବ ବିଲମ୍ବ ପାଟଛତ୍ରମାନେ ପୁଣ
ଯେ ଯାହାର ସଜରେ ଅଇଲେ ସର୍ବଜନ ।

ବଶିଷ୍ଠଙ୍କୁ ଚାହିଁଣ ବୋଇଲେ ନୃପବର
ଗହଣଙ୍କ ସଙ୍ଗରେ ଆଗେ ତୁମ୍ଭେ ଚାଲ ।
ମନ୍ତ୍ରୀର ପୁଅ ଆଗୁଆଣି ଥାଟେ ଯାଉ
ନବ ସହସ୍ର ରଥ ଏହାର ସଙ୍ଗେ ନେଉ ।
ଅଇରାବତ ଗଜ ଯେ ତିରିଶି ସସ୍ର ଅଶ୍ୱ
ଦୁଇଲକ୍ଷ ପଦାତି ସଙ୍ଗରେ ଯାଆନ୍ତୁ ତ ।
ଆଜ୍ଞାପାଇଁ ମନ୍ତ୍ରୀର ପୁତ୍ର ଯେ ବାହାର
ବେଶ ହୋଇଣ ବେଗ ଚଢିଣ ହସ୍ତୀପୁର ।
ଆଗେଣ ନୃପତି ଯେଉଁ ହସ୍ତୀଥିଲେ ଦେଇ
ସେ ହସ୍ତୀରେ ମୟୀପୁଅ ଅମରୀବିଜେ ହୋଇ ।
ଶ୍ୱେତ ବର୍ଣ୍ଣ ହସ୍ତୀ ଯେ ଦିଶଇ ସୁନ୍ଦର
ଧୀରେ ଧୀରେ ଗମନ କରଇ କରୀବର ।
କାଚ କୁମ୍ଭ ଉପରେ ସୁବର୍ଣ୍ଣର ଝୁଲି
କଟୀରେ ଯେ ସୁବର୍ଣ୍ଣ କିଙ୍କିଣୀ ନାଦକରି ।
ପାଟ ଛତ୍ର ଧରାଇ ଚଳେ ମନ୍ତ୍ରୀର ସୁତ
ଆଗ ପଛରେ ବାଜେ ଟମକି ନିଶାଣ ତ ।
ପାଦ ଘାତରେ ସ୍ୱର୍ଗେ ନଦିଶେ ଆଖଣ୍ଡଳ
ଥାଟ ଚଳିବାରେ ଯେ ଚଳଇ ବନ ଘୋର ।
ଫରିକାର ପଦାତି ଯେ ଆଗରେ ଚଳିଯାନ୍ତି
ଛୁରିଖଣ୍ଡା ଧନୁଧରି ଆଗରେ ଝମକାନ୍ତି ।
ହସ୍ତୀମାନ ଚଢ଼ିଣ ମାହୁନ୍ତ ବେଗେ ଗଲେ
ଅଶ୍ୱପରେ ସିପାହୀ ଉଦ୍‌ବେଗେ ଚଳିଲେ ।
ଶାଟେର୍ଣୀ ଓଟ ଉପରେ ସରଦାର ଚାଲେ
ଶୋଭାକାର ରଥପରେ ଚଢ ରଥି ଗଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ନବକୋଟିସୈନ୍ୟ ଯେ ରାଜ୍ୟରେ ରଖିଲେ କରି ।
ଜଗାଇ ରାଜ୍ୟ ଘୋଷ ନୃପତି ଶିଖର
ମନ୍ତ୍ରୀଙ୍କି କହିଣ ଯେ ହୋଇଲେ ବାହାର ।
ସମ୍ଭର୍ବରେ ଯହୁଁ ଚଳିଲେ ସୈନ୍ୟଗଣ
ସ୍ୱର୍ଗର ଦେବତା ଦେଖିଲେ ସେ ଯେ ପୁଣ ।
ଦେଖିଣ ମନରେ ଯେ ବିଚାର କରନ୍ତି
ଶ୍ରୀରାମ ସୀତାବିଭା ଦେଖିବାଏ ଘାନ୍ତି ।
ଏଥୁ ଅନନ୍ତରେ ଯେ ଦଶରଥ ରାଏ
ଆପଣେ ସଜ ହେବାକୁ ନୃପତି ବିଜୟେ ।
ବିବିଧ ବସନ ଦେବାଙ୍ଗି ମଞ୍ଜୁଲା ପିନ୍ଧି
ଶିରର ଉପରେ ନେଇ ଜରିପାଗ ବାନ୍ଧି ।

ରତ୍ନମୟେ ମୁକୁଟ ଶୋହେ ସପ୍ତଶାଖା
ମୁକୁତାର କିରଣ ବିକାଶେ ତେଜ ଜିତା ।
କର୍ଣ୍ଣରେ କୁଣ୍ଡଳ ଯେ କଣ୍ଠରେ ମୋତିମାଳ
ପଦକ ଚନ୍ଦ୍ର ଦ୍ୱାରା ଝୁଲଇ ବକ୍ଷସ୍ଥଳ ।
ବାହାରେ ବାହୁଟୀ ଯେ ତେଜରେ ଝଟକନ୍ତି
ଅଙ୍ଗୁଷ୍ଠିରେ ରତ୍ନମୁଦି ତେଜ ବିରାଜନ୍ତି ।
କଟିରେ କଟି ମେଖଳା କରରେ କଙ୍କଣ
ବାମ ଭୁଜେ ବୀରନେତ ଦିଶେ ଶୋଭାବନ ।
ପୟରେ ତୋଡ଼ର ଯେ କ୍ଷତ୍ରୀଙ୍କର ସଲ
ଏହିରୂପେ ସଜହେଲେ ଅଯୋଧା ମହୀପାଳ ।
ବଶିଷ୍ଠ ନେଇଗଲେ ମଙ୍ଗଳ ଆଳତି
ମସ୍ତକରେ ଗୋରଚନା ଚିତା ବିରାଜନ୍ତି ।
ଦୂର୍ବାକ୍ଷତ ଅନୁକୂଳ ଶିରରେ ରାଏ ଘେନି
ବ୍ରାହ୍ମଣଙ୍କୁ ନମସ୍କାର କରିଣ ରାଜା ପୁଣି ।
ଯାତ୍ରା ଶୁଭ ନିମନ୍ତେ ଦଧିମାଛ ଆଗେ
ପୂର୍ଣ୍ଣକୁମ୍ଭ ନଟିକାଳେ ରମ୍ଭା ଯେ ବୃକ୍ଷ ସାଜେ ।
ଶ୍ୱେତ ପାରୁଆ ଯେ ରାଜହଂସ ପୁର
ମଙ୍ଗଳ ଶୁଭଅର୍ଥେ ରଖାଇ ବାଟେ ପୁଣ ।
ବିପ୍ରମାନେ ବେଦ ଯେ ଅଧ୍ୟାନ କରନ୍ତି
ଶାସ୍ତ୍ର ଶ୍ଳୋକ ଯେ ଚଣ୍ଡପୁତ୍ରେ ସୁମରନ୍ତି ।
ଭାଟେ କଏବାର ଯେ ଗୋବିନ୍ଦ ନାମ ଘୋଷି
ମଙ୍ଗଳାଷ୍ଟକ ଯେ ଜ୍ୟୋତିଷେ ପଢ଼ନ୍ତି ।
ନଗ୍ରରେ ନରନାରୀ ଦ୍ୟନ୍ତି ହୁଳହୁଳି
ନିଶ୍ୱାସ ବାରି ପାଦ ବଢ଼ାଏ ଦଣ୍ଡଧାରୀ ।
ଶୁଭ ଯୋଗରେ ବାହାର ହୋଇଲେ ଦଶରଥ
ସଙ୍ଗତରେ ଅଛନ୍ତି ଶତ୍ରୁଘନ ଭ୍ରତ ।
ସିଂହଦ୍ୱାରେ ରାଜନ ହୋଇଲେ ପରବେଶ
କନକ ଧ୍ୱଜ ରଥ ମଣ୍ଡି ଆଣିଲା ସୁମନ୍ତ ।
ଦଶରଥ ବୋଇଲେ ଅମରୀଶ ସଜକର
ବେନି ଅମରିଶରେ ବିଜେ କରିବେ ପୁତ୍ରମୋର
କଶ୍ୟପ ବାମଦେବ ଯାବାଳି ତିନିଜଣ
ବଶିଷ୍ଠ ସତ୍ୟାନନ୍ଦ ଯିବେ ଅମରୀରେ ପୁଣ ।
ଶୁଣିଣ ସୁମନ୍ତ ମନ୍ତ୍ରୀବେଗେ ଚଳିଗଲା
ଶ୍ୱେତ ହସ୍ତୀ ସାତଗୋଟା ଅମରୀ ସଜକଲା ।
ସାତ ଜଣକ ଆଗରେ ନିବେଶିଲା ପୁଣ
ବେନିପୁତ୍ର ସାମନ୍ତ ବସିଲେ ଅମରୀରେ ପୁଣ ।

ଦେଖିଣ ନୃପବର ବଶିଷ୍ଠରେ କହି
ତିନି ବର୍ଣ୍ଣରେ ଗହଣ ସଜକର ନେଇ ।
ବସନ୍ତନୀଳ ଆବର ରଙ୍ଗବର୍ଣ୍ଣ ଜାଣ
ଏମନ୍ତ ସଜକରି ଆଣ ମୋ ରାଣୀ ଗଣ ।
ଭରତ ଶତ୍ରୁଘନକୁ ବୋଇଲେ ରାଏ ରାଇ
ପଛୁଆଣି ଦଣ୍ଡେ ତୁମ୍ଭେ ରହ ବେନିଭାଇ ।
ଶୁଣିଣ ଶତ୍ରୁଘନ ଭରତ ଚଳିଗଲେ
ଥାଟଚାଳି ଦେଇଣ ପଛରେ ବିଜେ କଲେ ।
ଏଥୁ ଅନନ୍ତରେ ଯେ ରାଜାର ରାଣୀଗଣେ
ସମସ୍ତେ ବେଶହୁଅ ଗୋ ବୋଇଲେ ରାଜନେ
କୌଶଲ୍ୟା କୈକୟୀ ସୁମିତ୍ରା ତିନିରାଣୀ
ସକଳ ରାଣୀ ଘେନି ବେଶ ହେଲେ ପୁଣି ।
ନାସାରେ ସିନ୍ଧୁଫଳ ରତ୍ନଗୁଣା ଲାଇ
ଅଳକା ମଥାମଣି ମସ୍ତକେ ବିରାଜଇ ।
ନୟନେ ରଞ୍ଜନ କପୋଳେ ଶ୍ରୀଖଣ୍ଡି ଚନ୍ଦନ
ଯୁଡ଼ା ବାନ୍ଧି ଝରା ଝୁମ୍ପା ଲଗାଇ ବହନ ।
ପଞ୍ଚ ବର୍ଣ୍ଣ କୁସୁମର ଗଭାମାନ ବାନ୍ଧି
ଅଳକା ଉପରେ ଯେ ପୁଷ୍ପ ଧଣ୍ଡା ଛନ୍ଦି ।
କର୍ଣ୍ଣେ କାପ ମଲକଡ଼ି ଚନ୍ଦ୍ର ଯେ ଫାସିଆ
ହୀରା ନୀଳା ଜଡ଼ିତରେ ଫିରି ଫିରାକୁଆ ।
ହସ୍ତରେ ହୀରା ମାଣିକ୍ୟ ଚୁଡ଼ି ଶୋଭାବନ
ଆଗୁଆଳ କତୁରି ଦିଶେ ଭିନ୍ନ ଭିନ୍ନ ।
ତାଡ଼ ବିଦ ବାହୁଟି ବେନି ବାହେ ସାଜେ
କଟିରେ ମେଖଳା ଯେ ରତ୍ନମାନ ଖଞ୍ଜେ ।
ଗଳାରେ ଚାପସରି ବକ୍ଷସ୍ଥଳେ ମାଳା
ହେମ ମୟେ ମେଖଳା ବକ୍ଷସ୍ଥଳକୁ ତୋରା ।
ପଦକ ଚନ୍ଦ୍ରଦ୍ୱାରା ମୋତିମାଳ ମାନ
ପୁରଜନୀକୋଳେ ଯେହ୍ନେ ଉଦେ ଚନ୍ଦ୍ରପୁଣ ।
ଚରଣେ ନୁପୁର ଯେ ପାହୁଡ଼ି ବଳା ଶୋଭେ
ଅଙ୍ଗୁଷ୍ଠିମାନଙ୍କରେ ଝୁଣ୍ଟିଆ ଶୋଭାପାଏ ।
କର ଅଙ୍ଗୁଷ୍ଠିରେ ରତ୍ନମୁଦି ତୋରା
ପୁଞ୍ଜି ପୁଞ୍ଜି ହୀରା ନୀଳା ବସି ଅଛି ପରା ।
ଏହିମତି ବେଶ ହେଲେ ସକଳ ଯେ ରାଣୀ
ବସନ୍ତ ବର୍ଣ୍ଣ ପଟନି କୈକେୟୀ ପିନ୍ଧେ ପୁଣି ।
ବେନିଶତ ପଚାଶ ଯେ ବସନ୍ତବର୍ଣ୍ଣ ପୁଣ
ସହସେକ ଦାସୀ ପୁଣ ବେଶ ଏ ରୂପେ ଜାଣ ।

ବଡ଼ ପାଟ କୈକେୟୀ ତା ସଙ୍ଗେ ବାହାରିଲେ
ରତ୍ନ ହାନ୍ଦୋଳା ଭିତରେ ସମସ୍ତେ ବିଜେକଲେ ।
ରଙ୍ଗବର୍ଣ୍ଣ ପଟନି ଯେ କୌଶଲ୍ୟା ରାଣୀ ପିନ୍ଧି
ବେନିଶତ ପଚାଶ ରାଣୀ ଏହି ରୂପେ ବାନ୍ଧି ।
ସହସ୍ରେକ ଦାସୀ ଯେ ବେଶହେଲେ ପୁଣ
ରଙ୍ଗବର୍ଣ୍ଣ ହାନ୍ଦୋଳାରେ ବିଜେ କଲେ ଜାଣ ।
କୈକେୟୀ ରାଣୀ ଆଗେ ଧବଳ ଛତି ତୋରା
ଧବଳ ଶ୍ୱେତ ଚାମର ଆଲଟ ପଙ୍ଖା ତୋରା ।
କଉଶଲ୍ୟା ଆଗରେ ବସନ୍ତବର୍ଣ୍ଣ ଛତି
ଆଲଟ ଚାମର ଯେ ବସନ୍ତବର୍ଣ୍ଣ କାନ୍ତି ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ସୁମିତ୍ରା ପିନ୍ଧିଲେ ଯେ ନୀଳବର୍ଣ୍ଣ ଶାଢ଼ୀ ।
ଦୁଇଶତ ପଚାଶ ରାଣୀ ପିନ୍ଧି ପୀତ ବର୍ଣ୍ଣ
ରତ୍ନ ହାନ୍ଦୋଳା ଯେ ନୀଳବର୍ଣ୍ଣରେ ଶୋଭାବନ ।
ସହସ୍ରେକ ଦାସୀ ଯେ ବେଶ ହୋଇ ପୁଣ
ହାନ୍ଦୋଳାର ବିଜୟ କଲେକ ଯେ ଜାଣ ।
ରଙ୍ଗବର୍ଣ୍ଣରେ ଛତି ଯେ ଚାମର ରଙ୍ଗବର୍ଣ୍ଣ
ହାନ୍ଦୋଳାର ଆଗରେ ଦିଶଇ ଶୋଭାବନ ।
ଏରୂପେ ତିନିବର୍ଣ୍ଣ ସକଳ ରାଣୀ ଧରି
ଦାସୀଗଣମାନଙ୍କୁ ଘେନିଣ ବିଜେକରି ।
ହାନ୍ଦୋଳାମାନ ଚଢ଼ିଣ ଦାଣ୍ଡକୁ ବାହାର
ହୁଳହୁଳି ଶବଦ ଯେ ହୋଇଲା ଗହଳ ।
ଦେଖିଣ ଦଶରଥ ରାଜନ ହେଲେ ତୋଷ
ଜାବାଳି କଶ୍ୟପଙ୍କୁ ବୋଇଲେ ବେଗେ ଆସ ।
ଶୁଣିଣ ଜାବାଳି କଶ୍ୟପ ଚଳିଗଲେ
ରାଣୀହଂସ ଗହଣେ ଯେ ଆଗରେ ମିଳିଲେ ।
ବଶିଷ୍ଠଙ୍କୁ ବୋଇଲେ ସତ୍ୟାନନ୍ଦଙ୍କୁ ଘେନି
ଗହଣଙ୍କ ମଧ୍ୟରେ ବିଜେକର ପୁଣି ।
ଶୁଣିଣ ବଶିଷ୍ଠ ଯେ ସତ୍ୟାନନ୍ଦ ଗଲେ
ରାଣୀହଂସ ମଧ୍ୟରେ ବିଜୟେ କରିଚଳେ ।
ବାମଦେବଙ୍କୁ ରାଜନ ବୋଲେ ଧୀରେ ବାଣୀ
ତୁମ୍ଭଙ୍କୁ ଲାଗିଲା ଯେ ଏହୁ ରାଜ୍ୟଭାର ପୁଣି ।
ଆମ୍ଭେ ଆସିବା ଯାଏ ରାଜ୍ୟରକ୍ଷା କର
ଯେରୂପେ ପରରାଷ୍ଟ୍ର ନପଶେ ମୋର ପୁର ।
ରଥି ସରଦାର ପଦାତି ପଦାତି ପଏକାର
ହାଟୁଆ ବାଟୁଆ ପଥିକୀ ଯିବାର ।

ଦୁଃଖୀ ଦରିଦ୍ରଙ୍କୁ ଦେବେଟି ଅନ୍ନ ବସ୍ତ୍ର
ସଦାବର୍ତ୍ତ ଦେବେ ଯେ ଚଳନ୍ତି ପଥ ।
କଳି ଦ୍ୱନ୍ଦ୍ୱ ନିବର୍ତ୍ତ ଯେ କରିବ ବୁଝିକରି
ଏତେ କହି ରାଜନ ଯେ ରାଣୀଙ୍କ ପଛେ ଚଳି ।
ହୁଳହୁଳି ହରିବୋଲ ଶବଦ ଗହଳ
ରାମତାଳି ଉତ୍ସବ ଯେ ମଙ୍ଗଳ ବେଭାର ।
ଆଗରେ ଶ୍ୱେତ ପାରୁଆ ଉଡ଼ାନ୍ତି ରାଜନ
ଆଗରେ ରାଜହଂସ କରନ୍ତି ଗମନ ।
ଦଧିମାଛ ଘେନିଣ ଆଗେ କେହୁ ଯାନ୍ତି
ଭାଟେ କଏବାର ଆଗରେ ସୁମରନ୍ତି ।
ଭଣ୍ଡାର ଘେନାଇ ସୁମନ୍ତ ମନ୍ତ୍ରୀ ପୁଣ
ରାଜାଙ୍କଇ ପଛରେ କରଇ ଗମନ ।
ନଗ୍ରରୁ ବାହାର ହୋଇ ଗଲେ ସର୍ବେ ପୁଣ
ସରଯୁ ନଦୀ ତଟରେ ପ୍ରବେଶ ହେଲେ ଜାଣ ।
ରାଜାର ସଙ୍ଗେ ସର୍ବେ ଚଳନ୍ତି ନିଯୋଗ
ଯେ ଯାହାର ସେବାରେ ଅଛନ୍ତି ସଂଯୋଗ ।
କେହି ରଥେ ଯାଏ କେହୁ ଗଜକନ୍ଧେ ଚଢ଼ି
କେହୁଯାନ ସୁକାଶଳ ଚଢ଼ିଣ ଯାନ୍ତି ଚଳି ।
ସାରେଣୀ ଓଟ ଗଣ୍ଡା କେ ପିଠିରେ ଆରୋହି
କେବଣ ଫରିକାର ଯାଆନ୍ତି ସଜହୋଇ ।
ଖୁଣ୍ଟିଆ ପଡ଼ିହାରି କେ ଲଙ୍କା ଲମ୍ଭହତା
ପାଞ୍ଚ ସାତଜଣ ସଂଗହୋଇ ହେଉଛନ୍ତି କଥା ।
ନଟ, ନୃତ୍ୟ ଗଣିକାଏ ଆସନ୍ତି ଅପାର
ଅଛନ୍ତି ବିନୋଦିଆ ଘେନିଣ ସଙ୍ଗତର ।
ଥୋକାଏକ ପଛେ ଯେ ମାରନ୍ତି ବାଣ
ଆଦ୍ୟ ଆଷାଢ଼ରେ କି ମେଘ ଗରଜନ ।
ନ ଜାଣିବା ଲୋକେ ଯେ ହୁଅନ୍ତି ତରସ୍ତ
କେଉଁମାନେ ପଚାରନ୍ତି କେବଣ ଉତପାତ ।
ଭଣ୍ଡାର ଅଧିକାର ଭଣ୍ଡାର ଘେନି ଚଳି
ଦଶ ସହସ୍ର ପଦାତି ତାର ସଙ୍ଗେ ସଙ୍ଗେ ମେଳ ।
ସୈନ୍ୟଙ୍କର ମଧ୍ୟରେ ଚଳଇ ସେ ଯେ ପୁଣ
ଏକ ରଥରେ ସେ ସକଳ ସମ୍ପାଦିଣ ।
ଅନେକ ଅଳଙ୍କାର ରତ୍ନମାନ ଭରି
ଯେତେବେଳେ ଯାହା ଯେ ଲୋଡ଼ିଲେ ଦଣ୍ଡଧାରୀ ।
ଦଣ୍ଡ ସିଂହାସନ ସଙ୍ଗରେ ଅନେକ ରତ୍ନନେଇ
ଭଣ୍ଡାର ପରିଛା ଯେ କଶ୍ୟପଙ୍କର ଭାଇ ।

ସୁଜାଣ ନାମରେ ଯେ ପାତ୍ରଇ ବିଶ୍ୱାସ
ସେ ସମ୍ଭାଳି ରଖିଲା ଭଣ୍ଡାରଇ ବିଶେଷ ।
ତିନି ସେବାକାରୀ ରାଜନର ଯେତେ
ସଙ୍ଗରେ ଗଲେ ଯେ ସକଳ ନିଯୋଗିତେ ।
ବାମଦେବ ମୁନି ରାଜ୍ୟ ରଖିବାକୁ ରହେ
ଆଉ ସର୍ବେ ରାଜା ସଙ୍ଗେ ଚଳିଲେ ନିର୍ଭୟେ ।
କ୍ଷିତୀକି ଚଉକିଆ ଜଗିଲେ ନଗ୍ର ପୁଣ
ଏହି ଅନୁରୂପେ ରାଜ୍ୟ ଜଗିଥାନ୍ତି ପୁଣ ।
ସେନାପତିମାନେ ଶାରେଣୀ ଅଶ୍ୱ ଜଗିବାର
ତେର ଲକ୍ଷ ହସ୍ତୀ ଯେ ସମ୍ଭାଳେ ସରଦାର ।
ଠାବେ ଠାବେ ଠଣାକରି ରାଜ୍ୟକୁ ଘେରି ରହି
ବଶିଷ୍ଠଙ୍କର ପୁତ୍ରମାନେ ବେହରଣରେ ରହି ।
ସମସ୍ତଙ୍କୁ ଜାଗ୍ରତ କରିଣ ନୃପବର
ପର ଉପଦ୍ରବ ଯେମନ୍ତେ ନୋହିବ ରାଜ୍ୟର ।
ସମସ୍ତଙ୍କୁ କହିଣ ରାଜନ ଚଳିଗଲେ
ଭ୍ରତ ଶତ୍ରୁଘନ ପଛରେ ପୁଣ ଚଳେ ।
ସରଜୁ ପାରି ହୋଇ ଆର କୂଳେ ରହି
ଗଦ ଗଦ ଶବଦରେ ବନ ଗିରି ଚମକଇ ।
ଏଥୁ ଅନନ୍ତରେ ଗୋ ଶୁଣ ଶାକମ୍ଭରୀ
କଟକ ଶୂନ୍ୟ ହେଲା ଯିବାରୁ ଦଣ୍ଡଧାରୀ ।
ସରଜୁ ପାରି ହୋଇ ରାଜା ମନରେ ହରଷ
ସମସ୍ତଙ୍କ କୁଶଳ ଯେ ବିଚାରେ ନରେଶ ।
ଯେତେବେଳେ ଅଇଲେ ସକଳ ବୁଝି ପୁଣ
ରହିବାରେ ବଶିଷ୍ଠଙ୍କୁ ପୁଛିଲେ ରାଜନ ।
ସକଳ ବୁଝାଇ ଯେ ବଶିଷ୍ଠ ଋଷି କହି
ଶୁଣିକରି ରାଜନ ପରମ ତୋଷ ହୋଇ ।
ସରଜୁ ପାରି ହୋଇ ରହିଲେ ସର୍ବଜନ
ଦିବସ ଶେଷ ହୋଇ ରଜନୀ ପ୍ରବେଶିଣ ।
ଲାଗିଲାକ ଚନ୍ଦ୍ର ଦୀପ ହୁଲା ଯେ ଦିହୁଡ଼ି
ପାଞ୍ଚ ଯୂଣ ଯାଏ ଦିଶେ ଚନ୍ଦ୍ର ଉଇଁଲାର ପରି ।
ରାଜନ ଡକାଇ ଯେ ବଶିଷ୍ଠଙ୍କୁ ପୁଣ
ଯେ ରୂପେ ସକଳେ କରନ୍ତି ଭୋଜନ ।
ଶୁଣିକରି ବଶିଷ୍ଠ ସୁରଭି ସୁମରିଲେ
ଯାଇଣ ସୁରଭି ଯେ ସକଳ ଦ୍ରବ୍ୟ ଦେଲେ ।
ଯେ ଯାହା ଭୁଞ୍ଜଇ ଯେ ତାହାକୁ ତାହା ମିଳି
ଆନନ୍ଦରେ ଭୋଜନ ସକଳେ ସେଥିକରି ।

ଭୋଜନ ଶୟନ ସାରି ତହୁଁ ଚଳିଗଲେ
ସପ୍ତ ଦିନରେ ଗଙ୍ଗା ନଦୀ ପାର ହେଲେ ।
ଅହି ଅନୁକ୍ରମରେ ଥାଟ ଚଳିଯାନ୍ତି
ଶୋଣିତ ନଦୀ ଜିଣି ଗମନ କରନ୍ତି ।
ମିଥିଳାରେ ପ୍ରବେଶ ତେର ଦିନେ ଯାଇଁ
ଦେଖିଲେ ମିଥିଳା ଚହଳ ବଡ଼ ହୋଇ ।
ପାର୍ବତୀ ବୋଇଲେ ଶୁଣ ହେ ଈଶାନ
ଶୋଣିତ ନଦୀ ଗୋଟି କାହୁଁ ହେଲା ପୁଣ ।
ସେ କଥା ମୋର ଆଗେ ଫଳାଇ କହିବା
ଶୁଣିକରି ଈଶ୍ୱର ବୋଇଲେ ଶୁଣ ବାମା ।
ସହସ୍ରମୁଖା ବିଧାତା ଯେଉଁକାଳେ ପୁଣ
ସୃଷ୍ଟି କି ସର୍ଜିଲା ଯେ ନକଲା ବାରଣ ।
ସେକାଳେ ସପତପୁର ନିରୋଳାରେ କଲା
ପୁରକେ ଛପନ କୋଟି ଜୀବ ଭିଆଇଲା
ସାଗର ସେ କାଳରେ କେହୁଣି ପୁରେ ନାହିଁ
ସାଗର ନ ଥିବାରୁ ସୁରାସୁରି ଗଙ୍ଗା ଭିଆଇ ।
ଯେ ସୁରାସୁରି ଗଙ୍ଗା ଯେ ବ୍ୟାପିଲା ସପ୍ତପୁର
ତେଣୁ ସକଳ ଜୀବେ ଆହାର କଲେ ସ୍ଥିର ।
ନର ବାନର ଦେବ ହୋଇଲେକ ମେଳ
ସେକାଳେ ମଂସାସୁର ହୋଇଲା ଅବତାର ।
ଧରଣୀ ଗର୍ଭରୁ ସେହି ସେ ଜାତ ହେଲା ।
ଶୁମ୍ଭ ନିଶୁମ୍ଭ ଯେ ତାହାର ଭ୍ରାତ ପରା ।
ସେ ତିନିଭାଇ ଯେ ବେଦବରକୁ ବନ୍ଦି
ତେଣୁ ଯେ ବେଦବର ଜଳ ଦେଲେ ସିଧି ।
ତେଣୁ ଯେ ସପତ ପୁର ଜିଣିଲା ଅସୁର
ଦେବେ ଦେଖି ପଳାଇଲେ ନରହି ସ୍ୱର୍ଗପୁର ।
ତେଣୁ ସେ ବିଧାତା ଯେ ଦୁର୍ଗାଙ୍କୁ ଜାତ କଲା
ଅସୁରଙ୍କୁ ମାର ବୋଲି ଦେବୀଙ୍କି ଆଜ୍ଞାଦେଲା ।
ଶୁଣିଣ ଦୁର୍ଗା ନବକୋଟି ଦେବୀ ଜାତ କରି
ନବକୋଟିଦେବୀଠାରୁ ଚଉଷଠିଯୋଗ୍ନୀ ଅବତରୀ ।
ଚଉଷଠି ଯୋଗ୍ନିଠାରୁ ବାଉନକୋଟି ପିଚାଶୁଣି
ଜାତହୋଇ ସର୍ବେ ଅସୁରଙ୍କୁ ମାରି ପୁଣି ।
ଅସୁରଙ୍କ ରକ୍ତରେ ବହେ ରକ୍ତ ନଦୀ
ଶୋଣିତ ନଦୀ ବୋଲି ବିଧାତା ଦେଲେ ହେଜି ।
ଚଣ୍ଡୀ ଯୁଦ୍ଧକାଳୁ ସେ ନଦୀ ଉପୁଜି
ଶୁଣିକରି ପାର୍ବତୀ ଯେ ହୋଇଲେ ତୃପତି ।

ଏଥୁ ଅନନ୍ତରେ ଶାକମ୍ଭରୀ ଶୁଣ
ବାରତା ପାଇଲେ ଜନକ ଋଷି ପୁଣ ।
ଦଶରଥଙ୍କ ପାଶରୁ ସତ୍ୟାନନ୍ଦ ଯାଇ
ଦଶରଥ ଅଇଲେ ବୋଲିଣ ଯାଇ କହି ।
ବାରତା ପାଇଣ ଯେ ଜନକ ମହାଋଷି
ସମ୍ଭର୍ବରେ ଋଷି ଯେ ପାଛୋଟି ନେଲେ ଆସି ।
ଶ୍ରୀରାମ ଲକ୍ଷ୍ମଣ ଯେ କୌଶିକ ସହିତେ
ଦେଖିକରି ଆନନ୍ଦ ହୋଇଲେ ଦଶରଥେ ।
ପିତାଙ୍କୁ ନମସ୍କାର କଲେ ବେନି ଭାଇ
କୋଳ କରିଣ ରାଏ ମୁଖରେ ଚୁମ୍ବ ଦେଇ ।
ଭରତ ଶତୃଘନ ଯେ ଶ୍ରୀରାମ ପାଦେ ପଡ଼ି
କାର୍ପୁଣ୍ୟ ହୋଇଣ ଶିରେ କରଯୋଡ଼ି ।
ଲକ୍ଷ୍ମଣ ନମଇଁ ଯେ ଭ୍ରତର ଚରଣ
ଶତୃଘ୍ନ ଲକ୍ଷ୍ମଣଙ୍କ ପାଦରେ ନମିଣ ।
ଜନକ ଋଷିଙ୍କି ଦେଖି ଓଳଗେ ଦଶରଥ
ଋଷିଙ୍କ ପାଦେ ପଡ଼ିଲେ ଶତୃଘ୍ନ ଭରଥ ।
ବିଶ୍ୱାମିତ୍ରଙ୍କ ପାଦେ ଓଳଗିଲେ ପୁଣି
ଭରତ ଶତୃଘନକୁ ଘେନି ନୃପମଣି ।
ହସିଣ ବିଶ୍ୱାମିତ୍ର ବୋଇଲେ ଶୁଣ ରାଏ
ଶ୍ମୃଭେ ଦେଖିଲୁ କି ରାଜା ତୋ ବେନି ତନଯେ ।
ଦେବାର ବେଳ ରାଏ ଶୋକ କରୁଥିଲୁ
ଏବେ ତୋ ବେନି ପୁତ୍ରଙ୍କୁ ପାଇ ତୋଷ ହେଲୁ ।
ତୋ ବେନି ପୁତ୍ରକୁ ରାଜା ଦେଲୁ ମୋ ସଙ୍ଗରେ
ଏତେ ବିଚାରି ବଧୂ ଦେବି ମୁହିଁ ତୋତେ ଭଲେ ।
ଶତଷଠି ପୁରୁଷରେ ନଥିଲା ଯାହାପାଇ
ଏବେ ସେହି ପଦାର୍ଥ ତୋତେ ଭୋଗପାଇ ।
ଦଶରଥ ବୋଇଲେ ନକର ଋଷିମୋତେରୋଷ
ତୁମ୍ଭରେ ଉଦ୍ଧାର ଯେ ହେଲେ ସୂର୍ଯ୍ୟବଂଶ ।
ଜନକ ମହାଋଷି ମୋତେ ଦୟାକଲେ
ମୋହର ସମ୍ପଦ ଯେ ତୋହ ଯୋଗୁଁ ଭଲେ ।
ଯାହା କହିଲି ଚାରିବଧୂ ପାଇବାର ମିଛତ
ରାମ ଲକ୍ଷ୍ମଣ ବେନି କନ୍ୟା ଦେବାସତ ।
ଆରବେନି ପୁତ୍ରଙ୍କୁ ବେନି ବଧୂକାହିଁ
ଏହି ସକାସେ ମୋର ମନକୁ ନ ଆସଇ ।
ବିଶ୍ୱାମିତ୍ର କହିଲେ ଯେ କହିଲି ଯା ସତ
ନିଶ୍ଚୟେ ଚାରିବଧୂ ହେବେ ପରାପତ ।

ଏହା ଶୁଣି ଦଶରଥ ମନେ ତୋଷ ହେଲେ
ଦୋଷ କ୍ଷମା ହେଉ ବୋଲି ମୁନିଙ୍କି କହିଲେ ।
ଦେଖିବାକୁ ନରନାରୀ ହୋଇଲେ ଆସିରୁଣ୍ଡ
ଥାଟରେ ଗହଳ ହୋଇ ପୂରିଲାକ ଦାଣ୍ଡ ।
ଦିବ୍ୟ ନଗରେକ ଜନକ ତୁଛାକଲା
ଦଶରଥକୁ ନେଇଣ ସେଥିରେ ରଖାଇଲା ।
ପାତ୍ର ମନ୍ତ୍ରୀ ସାମନ୍ତଙ୍କୁ ବେଗଳ ଘର ଦେଇ
ଆବର ଯେତେ ସୈନ୍ୟ ସଙ୍ଗରେ ଥିଲେ ଯାଇ ।
ଯେଝା ଅନୁରୂପେ ଘର ଛାମୁଣ୍ଡିଆ ଦେଲେ
ଯୋଗାଡ଼ ସଞ୍ଜା ଦେଇଣ ଗଉରବ କଲେ ।
ରାଣୀହଂସ ଗହଣ ଯେ ଆଗେ ଚଳିଗଲେ
ତାହାଙ୍କୁ ଜନକ ଯେ ଚରଚା ବିଧିକଲେ ।
ଦଶରଥ ରାଣୀମାନେ ନିଶ୍ଚିନ୍ତେ ରହିଲେ
ଅନେକ ସୈନ୍ୟ ବଳ ମିଥିଲା ନଗ୍ରେ ଭଲେ ।
ଗହଳରେ ମିଥଲା ନଗ୍ର ଯାଗା ନାହିଁ
ସକଳ ସୈନ୍ୟବଳ ରହିଲେ ସେଥିପାଇଁ ।
ହସ୍ତୀ ଅଶ୍ୱ ଶାରେଣୀ ଗଣ୍ଡା ଯେ ପଏକାର
ମୁଖଧ୍ୱନି ରାବରେ ଶୁଭଇ ଗହଳ ।
କଉଶଲ୍ୟା କୈକେୟୀ ସୁମିତ୍ରା ସଙ୍ଗରେ
ସାତଶ ପଞ୍ଚାଶ ରାଣୀ ମିଳିଲେ ଯେ ପୁରେ ।
ଷଡ଼ ସସ୍ର ଦାସୀ ଯେ ପରିବାରି ଜନ
ଏକସ୍ଥାନେ ମିଳନ୍ତେ ଗହଳ ହେଲା ଜାଣ ।
ଶ୍ରୀରାମ ଲକ୍ଷ୍ମଣ ଯେ ମାତାଙ୍କ ପାଶେ ମିଳି
ନମସ୍କାର କରିଣ ରହିଲେ କରଯୋଡ଼ି ।
ଦେଖିଣ କଉଶଲ୍ୟା ଶ୍ରୀରାମଙ୍କୁ କୋଳକଲେ
ଲକ୍ଷ୍ମଣଙ୍କୁ ବସାଇଲେ ବାମ ଯେ ଜାନୁରେ ।
ବୋଇଲେ ଯାହା ମୋତେ କହିଲେ ନାରଦ
ସେ କଥାମାନ ମୋତେ ହୋଇଲା ସମ୍ପଦ ।
ଧନ୍ୟ ହେ ନାରଦ ତୁମ୍ଭେ ଆଗତ କଥାଜାଣ
ଭୂତ ଭବିଷ୍ୟ କଥା ତୁମ୍ଭେ ଯେ ପରିମାଣ ।
ଏତେ ବୋଲି ରାଣୀ ଯେ ମନରେ ଉଷତ
ଶ୍ରୀରାମ ଲକ୍ଷ୍ମଣଙ୍କୁ ଦେଖିଣ ପୁଲକିତ ।
ଦୁଇ ପୁତ୍ରଙ୍କ ମୁଖରେ ଦେଲାକ ଚୁମ୍ବନ
ସ୍ନେହଭରେ ଆଖି ଯେ କଲେ ଥନ ଥନ ।
ଶ୍ରୀରାମର ମୁଖ ଚାହିଁ ବୋଇଲେ କଉଶଲ୍ୟା
ଆଜଠାରୁ ବାବୁରେ ମୋର ଦୁଃଖ ଗଲା ।

ହୃଦରେ ଜୀବ ଗୋଟି ପଶିଲା ଆସି ମୋର
ଯେତେବେଳୁଁ ଶ୍ରୀମୁଖ କୁମୁଦ ଦେଖିଲିଣି ତୋର ।
ଦୁଃଖୀର ସଙ୍ଖାଳି ତୁରେ ରଙ୍କୁଣିର ଧନ
ତୋତେ ନଦେଖି ମୋହର ଅସ୍ଥିର ଜୀବନ ।
ଷଡ଼ ମାସ ହେଲା ବାବୁରେ ଛାଡ଼ିଣ ଅଇଲୁ
ନିରାଶ କରିଣ ମୋତେ ନିଶ୍ଚିନ୍ତେ ରହିଲୁ ।
କାହାର କୋଳରେ ରହି ବଞ୍ଚିଥିଲୁ ରାତି
କେ ତୋହର ଆର୍ଦ୍ଧୋଳୀରେ ସହଇପୁଣ ନିତି ।
କେମନ୍ତେ ଚାଲିବୁ ବାବୁ ଏତେଦୂର ପଥ
ଈଶ୍ୱରଙ୍କ ଧନୁ କେମନ୍ତେ ଧରିଲୁ ତୁ ହସ୍ତ ।
ଅତି କୋମଳ ଯେ ତୋହର କରସ୍ଥଳ
ବ୍ୟଥା ପାଇଲୁ ନା ଧନୁ ଧରିବାର ବେଳ ।
ଈଶ୍ୱରଙ୍କ ଧନୁ ଯେ ଅତିହିଁ ଗରିଷ୍ଠ ତ
କେମନ୍ତେ ବଳ ତାର କଳିଲୁ ଦେଖି ତୁତ ।
ମାତାର ବଚନ ଶୁଣି ବୋଲନ୍ତି ରଘୁନାଥ
ତୁମ୍ଭଙ୍କୁ ବଳିଷ୍ଠ ହେଲେ ଗାଧିରାଜା ସୁତ ।
ତାଙ୍କ ସଙ୍ଗେ ଥାଇଣ ରଜନୀ ଦିବସ ନ ଜାଣିଲୁ
ମନେ ଯାହା ବିଚାରିଲୁଁ ସେ କଥା ଭାବିଲୁ ।
ପିତାମାତାଙ୍କୁ ପାଶୋରି କରାଇଲେ ସେହି
ରାଜ୍ୟ ଘୋଷରେ ଆମ୍ଭମନର ଆଉ ନାହିଁ ।
ଶୁଣିଣ କଉଶଲ୍ୟା କୈକେୟୀ ସୁମିତ୍ରା
ବୋଇଲେ ଧନ୍ୟ ତୁମ୍ଭେ ଗାଧି ରାଜ ସୁତା ।
ଏମନ୍ତ କହି ରାଣୀମାନେ ମନରେ ହରଷ
ଏଥୁ ଅନନ୍ତରେ ଶୁଣିମା ଦିବ୍ୟରସ ।
ଦଶରଥ ରାଜା ଯେ ଦଣ୍ଡ ଦ୍ୱାରେ ଥିଲେ
ସକଳ ରାଣୀ ଭିତରେ ଯିବାର ଦେଖିଲେ ।
ଭିତରପୁରେ ରାଜା ଯାଇଣ ବିଜେ କଲେ
ସକଳ ରାଣୀଙ୍କି ନେଇ ନିଶ୍ଚିନ୍ତେ ରଖାଇଲେ ।
ଦାସୀ ପରିବାର ଯେ ରାଣୀଙ୍କ ସଙ୍ଗ ରହି
ଗହଳରେ ନବର ପୂରିଣ ଅଛନ୍ତି ।
ସମସ୍ତଙ୍କ ବେଶ ଦେଖି ରାଣୀ ଯେ ଆନନ୍ଦ
ବିଚାରିଲେ ସର୍ବ କାର୍ଯ୍ୟ ହେଲା ମୋର ସିଦ୍ଧ ।
ସକଳ ରାଣୀ ଉପରେ ଚାରି ରାଣୀ ସାର
କଉଶଲ୍ୟା କୈକେୟୀ ସୁମିତ୍ରା ନୀଳାବତୀଙ୍କର ।
ଚାରି ରାଣୀଙ୍କ କୋଳରେ ବସିଲେ ଚାରି ଭାଇ
ପୁତ୍ରଙ୍କୁ କୋଳକରି ରାଣୀମାନେ କହି ।

ବେଶ, ହାସ, ରସ ଯେ ଦେଖିଣ ରାଜନ
ମନରେ ହରଷ ଯେ ବହୁତ ହେଲେ ପୁଣ ।
ନୀଳାବତୀ ବୋଇଲେ ଶୁଣ ହେ ରାଜନ
ଆବର ଘେନି ପୁତ୍ର ବିଭା କେବେ ହେବେ ପୁଣ ।
ରାଜନ ବୋଇଲେ ତୁମ୍ଭେ ଶୁଣ ଗୋ ମହାଦେଈ
କଉଶିକ ଋଷି ମୋତେ କହିଲେ ମଣାଇ ।
ବୋଇଲେ ଚାରିପୁତ୍ର ଏଠାରେ ବିଭା ହେବେ
ଚାରିବଧୂ ଘେନିଣ ଚଳିବେ ରାଜା ଶୁଭେ ।
ମୁଁ ବୋଇଲି ମୁନିହେଁ ଚାରିବଧୂ ମନ ମୂଳ
ଶ୍ରୀରାମ ଲକ୍ଷ୍ମଣଙ୍କ ବରଣ କରିବାରୁ ଯେ ସୁଫଳ ।
ଆଉ ବେନି ବଧୂ ଯେ କେଉଁଠାରେ ଛନ୍ତି
ସେହିକଥା ଗୋଚର ନୋହିଲା ମୋତେ କିଛି ।
ବିଶ୍ୱାମିତ୍ର ବୋଇଲେ ଜନକର ଭାଇ
ତାହାର ବେନି ଦୁହିତା ଅଛନ୍ତି ଯୁବା ହୋଇ ।
ସେ କନ୍ୟା ସୁନ୍ଦର ଯେ ରୂପରେ ଗୁଣବନ୍ତ
ଚାହିଁଲେ ଦେବତାଏ ହେବେ ମୋହଗତ ।
ସେ ବେନି କନ୍ୟାଙ୍କୁ ବିଭା କରାଇବି ମୁହିଁ
ଦେବଙ୍କର ଲୋଭ ଯେ ସେ କନ୍ୟାଙ୍କୁ ନେବା ପାଇଁ ।
ତେତେବେଳୁ ଶୁଣିଣ ମୁଁ ହରଷ ହୋଇଲି
ତୁମ୍ଭେ ପଚାରିବାରୁ ମୁଁ ଫେଡ଼ିଣ କହିଲି ।
ଶୁଣିକରି ହରଷ ଯେ ହେଲେ ରାଣୀଗଣ
ଏଥୁ ଅନନ୍ତରେ ଗୋ ଶାକମ୍ଭରୀ ଶୁଣ ।
ଯେଣୁ ଦଶରଥ ଯେ ହେଲେ ପରବେଶ
ଜନକ ମହାମୁନି ମନରେ ହରଷ ।
ସତ୍ୟାନନ୍ଦ କଉଶିକ ଘେନିଣ ମୁନିଭାଳି
ବୈଶାଳୀ ନବରକୁ ଦେବା ଜଣେ ଚାଳି ।
କୁଶଧ୍ୱଜ ଭାଇଙ୍କି ଯେ ଆଣୁ ମୋର ଯାଇଁ
ବେନି ଦୁହିତା ରାଣୀହଂସ ଆସନ୍ତୁ ସଙ୍ଗ ହୋଇ ।
ଏମନ୍ତ ବିଚାରି ଯେ ମନ୍ତ୍ରୀଙ୍କୁ ଡକାଇଲେ
ଯାଅ ବୈଶାଳୀ ପୁରେ ବୋଲିଣ ଲେଖିଦେଲେ ।
ଶୁଣିଣ ଶଙ୍କର୍ଷଣ ମନ୍ତ୍ରୀ ଯେ ଚଳି ଯାଇ
ବୈଶାଳୀ ନଗରେ ପାଞ୍ଚଦିନେ ସେହି ପାଇ ।
କୁଶଧ୍ୱଜ ବୋଇଲେ ଶୁଣ ମନ୍ତ୍ରୀବର
କେହୁ ଧଇଲା କାର୍ମୁକ କାମନା ପୂରିଲା ମନର ।
ଶଙ୍କର୍ଷଣ ମନ୍ତ୍ରୀ କହେ ଶୁଣ ହେ ରାଜନ
ଦଶରଥ ନାମେ ଯେ ଅଯୋଧ୍ୟା ରାଜାପୁଣ ।

ତାଙ୍କର ଚାରିପୁତ୍ର ଅଟନ୍ତି ଯେ ପୁଣ
ବାର ବରଷ ଯେ ବଳରେ ବଳବାନ ।
ଜ୍ୟେଷ୍ଠ ନାମ ଶ୍ରୀରାମ କନିଷ୍ଠ ଶତ୍ରୁଘନ ।
ଭରତ ଲକ୍ଷ୍ମଣ ଯେ ଅଟନ୍ତି ବିଦ୍ୟମାନ ।
ବିଶ୍ୱାମିତ୍ର ଋଷି ଯେ ସିଦ୍ଧ ବନେପୁଣ
ଯାଗ ଆରମ୍ଭି ସେ ଯେ କଲେ ବିଚାରିଣ ।
ଯାଇକରି ଅସୁରେ ଯାଗ ନାଶ କଲେ
ଯୋଗବଳେ ଜାଣି ମୁନି ଅଯୋଧ୍ୟା ପୁରଗଲେ ।
ଦଶରଥଙ୍କୁ କହିଣ ଶ୍ରୀରାମ ଲକ୍ଷ୍ମଣ ଆଣି
ଗହନବନେ ଶ୍ରୀରାମ ତାଡ଼କା ବଧ କଲେ ପୁଣି ।
ବିଶ୍ୱାମିତ୍ରଙ୍କର ଯାଗ ରଖିଲେ ବେନିଭାଇ
ନଉ ସହସ୍ର ରାଜାଙ୍କୁ ମାଇଲେ ନିଠାଇ ।
ଯାଗସାରି ବିଶ୍ୱାମିତ୍ର ସଙ୍ଗରେ ଘେନି ଚଳି
ଗଙ୍ଗାକୂଳେ ଅହଲ୍ୟାଙ୍କୁ ଶ୍ରୀରାମ ମୁକ୍ତ କରି ।
ମିଥିଳା ନବରେ ଆସି ହେଲେ ପରବେଶ
ଶିବଧନୁ ଧରିଣ ଭାଙ୍ଗିଲେ ରଘୁଶିଷ୍ୟ ।
ଦେଖିଣ ଜନକ ରାୟେ ଦୁହିତା ବେନିଚଳି
ଶ୍ରୀରାମ କଣ୍ଠରେ ଲମ୍ବାଇଲେ ରତ୍ନମାଳି ।
ବରଣ କରିବାରୁ ଦେଖିଣ ରାଜାଗଣ
ମେଳି ହୋଇ ଶ୍ରୀରାମ ସଙ୍ଗେ କଳିକଲେ ପୁଣ
ଦେଖିଣ ଶ୍ରୀରାମ ଭାଇ ଲକ୍ଷ୍ମଣ ଶରମାରି
ଏକା ଶରକରେ ସବୁ ଲକ୍ଷେ ରାଜା ଦଳି ।
ରାଜାଗଣେ ମରିବାରୁ ଶ୍ରୀରାମ ଆଜ୍ଞାଦେଲେ
ଲକ୍ଷେ ରାଜାଙ୍କୁ ଜିଆଅ ଲକ୍ଷ୍ମଣେ କହିଲେ ।
ଶୁଣିଣ ଲକ୍ଷ୍ମଣ ଜୀବନ୍ୟାସ ଶର ମାରି
ଲକ୍ଷେ ରାଜା ଚେତା ପାଇ ପଳାଇଲେ ଫେରି ।
ତେଣୁ ସେ ଜନକ ରାୟେ କନିଷ୍ଠ ଝିଅ ହେଲେ
ଲକ୍ଷ୍ମଣଙ୍କ ଗଳାରେ ବରଣମାଳା ଦେଲେ ।
ସେହି ଦିନ ବିଭା ଯେ କରିତ ମନେ କଲେ
ଶ୍ରୀରାମ ବୋଇଲେ ପିତା ମୋ ଆସିଲେ ହେବଭଲେ ।
ତାହା ପୁଣି ଜନକ ରାୟେ ସତ୍ୟାନନ୍ଦଙ୍କୁ ଭେଦି
ଦଶରଥଙ୍କୁ କହି ଆଣିଲେ ତପୋନିଧି ।
ଦଶରଥ ଆସିବାରୁ ବିଭାର ଉତ୍ସବ
ତେଣୁକରି ମୋତେ ଯେ ଭେଦିଲେ ତୁମ୍ଭଠାବ ।
କୁଶଧ୍ୱଜ ବୋଲେ ଦଶରଥ ଚାରିପୁତ୍ର
କେତେକେତେ ବୟସ ଯେ ଅଟନ୍ତି ସମ୍ଭୂତ ।

ଶଙ୍କର୍ଷଣ କହନ୍ତି ବାର ଯେ ବରଷ
ଏକଦିନେ ଜନମ ହୋଇଛନ୍ତି ଗୁରୁଶିଷ୍ୟ ।
ଷଡ଼ମାସ ସାନ ଯେ ତାହାଙ୍କୁ ଜାନକୀ
ବରଷେ ସାନ ପୁଣି ଅଟନ୍ତି ଉର୍ମିଳାଟି ।
ବେନି ବର୍ଷ ସାନ ତୁମ୍ଭର ଜ୍ୟେଷ୍ଠ ଝିଅ
କନିଷ୍ଠ ଦୁହିତା ତିନି ବର୍ଷ ସାନ ପ୍ରିୟ ।
କୁଶଧ୍ୱଜ ବୋଇଲେ ମୋର ଦୁହିତା ବିଭାଦେବି
ପ୍ରସନ୍ନ ହେଲା ମନ ବୋଇଲେ ଋଷି ଭାବି ।
ମନ୍ତ୍ରିଙ୍କି ରଖାଇଣ ସେ ଅନ୍ତଃପୁର ଗଲେ
ଶତେକ ରାଣୀଙ୍କି ବୁଝାଇ କହିଲେ ।
ଶୁଣି ମହାଦେଈମାନେ ହରଷ ହୋଇଲେ
ଜାନକୀର ବିଭାଘର ଦେଖିବା ବୋଇଲେ ।
ଏଥୁ ଅନନ୍ତରେ କୁଶଧ୍ୱଜ ରାଜା ପୁଣ
ବନମାଳି ମନ୍ତ୍ରୀଙ୍କି ସେ ଡକାଏ ବହନ ।
କରୁଣାକର ଋଷିଙ୍କି ସେ ଆଣିଲେ ଡକାଇ
ସାମନ୍ତ ପାତ୍ର ଅଇଲେ ରାଜା ଆଜ୍ଞା ପାଇଁ ।
ବୋଇଲେ ଶିବଧନୁ ଶ୍ରୀରାମ ଆମଞ୍ଚିଲେ
ଜାନକୀ ବିଭା ଦେବାକୁ ଜନମ ମନ କଲେ ।
ମୋହର ପାଶକୁ ସେ ଭେଦିଲେ ମନ୍ତ୍ରୀବର
କାଲି ପ୍ରଭାତରୁ ଯିବା ସୈନ୍ୟ ସଜକର ।
ଶୁଣିକରି ମନବାଳୀ ମନ୍ତ୍ରୀ ବେଗେ ଗଲା
ନାଗରାକୁ ଡକାଇଣ ଧେଣ୍ଡୁରା ଫେରାଇଲା ।
ମିଥିଳାର ନବରକୁ ଯିବେ ସେ ରାଜନ
ରଜନୀର ସଜ ହୋଇ ଆସ ହୋ ବହନ ।
ତିରିଶି ଯୁଣ ପଥ ଅଟଇ ସେହୁ ରାଜ୍ୟ
ଶତେକ ଧେଣ୍ଡୁରା ଫେରାଇଲେ ସେ ରାଜ୍ୟ ।
ଶୁଣି ରଥି ପଦାତି ସରଦାର ପଏକାର
ହସ୍ତୀ ଅଶ୍ୱ ଶାରେଣୀ ଆବର ଓଟ ବଳ ।
ସଜ ହୋଇ ସମସ୍ତେ ଅଇଲେ ସିଂହଦ୍ୱାର
ଶଙ୍ଖମହୁରୀ ବାଦ୍ୟ ନିଶାଣ ବାଜେ ଘୋର ।
ଦେଖିଣ ରାଜନ ଯେ ପରମ ତୋଷ ହେଲେ
ତିନି ଭାଗ କରିଣ ସେ ସୈନ୍ୟଙ୍କୁ ବାଣ୍ଟିଲେ ।
କରୁଣାକର ଋଷିଙ୍କି ବେନି ଭାଗ ଦେଲେ
ମୋର ଆସିବା ଯାଏ ତୁମ୍ଭେ ରାଜ୍ୟରଖେ ଭଲେ ।
ବନମାଳି ମନ୍ତ୍ରୀଙ୍କି ସେ ବୋଇଲେ ରାଜନ
ସଜକରି ଭଣ୍ଡାରତକ ସୈନ୍ୟଙ୍କୁ ସଙ୍ଗେ ପୁଣ ।

ପାତ୍ରଙ୍କୁ ଡକାଇଣ ଯେ ବୋଇଲେ ରାଜନ
ଅଠର କୋଟି ବଳ ଘେନି ଚଳ ତୁ ବହନ ।
ଶୁଣିଣ ପାତ୍ର ସୈନ୍ୟଙ୍କୁ ଘେନିଣ ଚଳିଗଲା
ଭଣ୍ଡାର ଘେନି ମନ୍ତ୍ରୀସୈନ୍ୟ ସଙ୍ଗେ ବାହାରିଲା ।
ଶତେକ ରାଣୀ ସେ ଯେ ସହସ୍ରେକ ଦାସୀ
ହାନ୍ଦୋଳା ଚଢ଼ିଣ ସର୍ବେ ହରଷେ ଚଳିଯାନ୍ତି ।
କଳା, ଧଳା, ଛତୀ, ଯେ ବେନି ଶତ ଟେକି ।
ଆଗରେ ଚଳିଗଲେ ସେବାକାରି କ୍ଷେପି ।
ଭିନ୍ନ ଭିନ୍ନ ବେଶରେ ଦିଶଇ ଶୋଭାବନ
ତାଙ୍କର ପଛେ ରାଜନ କଲେକ ଗମନ ।
ବାଦ୍ୟରେ ନିଶାଣରେ କମ୍ପାଇ ବସୁନ୍ଧରୀ
ପଞ୍ଚମ ଦିନେ ମିଥିଳାର ନବରେ ଯାଇଁ ମିଳି
ବାଦ୍ୟର ନିଶାଣ ଯେ ତୁଣ୍ଡର ଚହଳ
ହସ୍ତୀର ଗରଜନ ଅଶ୍ୱଙ୍କ ହେର୍ଷା ବଡ଼ ।
ଶବଦରେ ମେରୁଗିରି କମ୍ପଇ ଥରହର
ବିଶ୍ୱାମିତ୍ରଙ୍କୁ ଦଶରଥ ପଚାରେ ସତ୍ୱର ।
ବୋଇଲେ ଏ ଶବଦ କିଏ କରି ଆସି
ଋଷି ବୋଇଲେ ତୋର ସାନ ସମ୍ବନ୍ଧି ଆସୁଛି ।
ଶୁଣିଣ ଦଶରଥ ସଜହୋଇ ଯାଇ
ବାଟରେ କୁଶଧ୍ୱଜ ଋଷିଙ୍କି ଭେଟ ହୋଇ ।
ରାଜନ ମାନ୍ୟଧର୍ମ ଋଷିଙ୍କି ପୁଣ କଲେ
କୁଶଧ୍ୱଜ ଋଷି ଯେ କଲ୍ୟାଣ ପୁଣ ଭଲେ ।
କୁଶଧ୍ୱଜ ବୋଇଲେ ଶୁଣ ହେ ରାଜନ
କେଉଁବେନି ପୁତ୍ର ଅବରେଣ ଛନ୍ତି ପୁଣ ।
ସେ ବେନି ପୁତ୍ରଙ୍କୁ ତୁମ୍ଭର ଘେନି ଆସ
ତାଙ୍କୁ ଦେଖି ଆମ୍ଭ ମନ ହୋଇବ ହରଷ ।
ଶୁଣିକରି ଦଶରଥ ଆନନ୍ଦ ମନ ହେଲେ
ଆସ୍ଥାନରୁ ଚାରିପୁତ୍ର ନିଅ ହେ ବୋଇଲେ ।
ଶୁଣିଣ ସୁମନ୍ତ ମନ୍ତ୍ରୀ ବେଗେ ଚଳିଗଲା
ରାମ ଲକ୍ଷ୍ମଣ ଭ୍ରାତା ଶତ୍ରୁଘନଙ୍କୁ କହିଲା ।
କୁଶଧ୍ୱଜ ସୈନ୍ୟବଳ ଘେନିଣ ଚଢ଼ିଯାଇ
ଆସ୍ଥାନର ତଳରେ ମିଳିଲେ ବେଗେ ଯାଇଁ ।
ଦଶରଥ ଚାରି ନନ୍ଦନଙ୍କୁ ନେତ୍ରେ ଦେଖି
ମନରେ ଆନନ୍ଦ ଯେ ହୋଇଲେ ଋଷି ସେଥି ।
ଜନକ, ବଶିଷ୍ଠ, ବିଶ୍ୱାମିତ୍ର ଯେ ଆସି
ସତ୍ୟାନନ୍ଦ ଛାମୁରେ ଅଛନ୍ତି ବହୁ ଋଷି ।

ଶୁଣିଣ ସତ୍ୟାନନ୍ଦ ବେଗେ ଚଳିଗଲେ
ଆସ୍ଥାନର ଉପରେ ସମସ୍ତେ ରୁଣ୍ଡ ହେଲେ ।
କୁଶଧ୍ୱଜ କାହାକୁ ବରିବି ବୋଇଲେ ।
ବିଶ୍ୱାମିତ୍ର ବୋଇଲେ କୁଶଧ୍ୱଜକୁ ଚାହିଁ
ଏଠାରେ କିମ୍ପା ହେ ଆସ୍ଥାନ ତଳେ ରହି ।
କୁଶଧ୍ୱଜ ବୋଇଲେ ଶୁଣିବା ମୁନିବର
କେଉଁ ବେନି ପୁତ୍ରଙ୍କୁ ବରଣ ଜନକ କରିବାର ।
କେଉଁ ପୁତ୍ର ଧନୁଭାଙ୍ଗେ କେ ଜିଣେ ଲକ୍ଷେରାଜା
ଶୁଣିକରି ବିଶ୍ୱାମିତ୍ର ବୋଲେ ଦୁଯା ଦୁଯା ।
ଶ୍ରୀରାମ ଦେଖାଇ କହିଲେ କଉଶିକ
ଏହି ଧନୁ ଭାଙ୍ଗିଛନ୍ତି ଦେଖ ହେ ବେନିନେତ୍ର ।
ଲକ୍ଷ୍ମଣଙ୍କୁ ଚିହ୍ନିଲେ ଏ ଲକ୍ଷେ ରାଜା ଜିଣି
ଏ ବେନି ଭାଇଙ୍କି ସୀତା ଉର୍ମିଳା ବରେ ପୁଣି ।
ଭ୍ରାତା ଶତ୍ରୁଘନ ତାଙ୍କଠାରେ କେବେ ହେଁ ମାୟାନାହିଁ
କୁଶଧ୍ୱଜ ବୋଇଲେ ଶୁଣିବା ମୁନିବର ।

× × × × ×

କୁଶଧ୍ୱଜ ବୋଇଲେ ବେନି ଭାଇଙ୍କି ପୁଣ
ମୋର ବେନି ଦୁହିତା ଯେ ଦେଲି ହେଏବେପୁଣ ।
ବିଶ୍ୱାମିତ୍ର ବୋଇଲେ ଦେବାର ଯେ ହେଲା ସତ
ଦେଖନ୍ତୁ ବେନି କନ୍ୟା ଅଣାଅ ତୁରିତ ।
ଶୁଣିଣ କୁଶଧ୍ୱଜ ଯାନରୁ ଓହ୍ଲାଇଲେ
ହାନ୍ଦୋଳା ଭିତରୁ ବେନି ଦୁହିତା ଅଣାଇଲେ ।
ଆସ୍ଥାନର ତଳରେ ଉଭା କଲେ ନେଇ
ଦେଖିଣ ସର୍ବଜନ ଯେ ତାହାଙ୍କୁ ମୋହ ହୋଇ ।
କଉଶିକ ବୋଇଲେ ବରଣ ବେଗେ କର
ତତକ୍ଷଣେ ବିଭାଘର କର ହେ ସତ୍ୱର ।
ଶୁଣିଣ କୁଶଧ୍ୱଜ ବେନି କନ୍ୟାରେ କହି
ରତ୍ନମାଳା ତୁମ୍ଭେ ନେଇ ବରଣ କର ଯାଇ ।
ଶୁଣିଣ ବେନି କନ୍ୟା ରତ୍ନମାଳା ଘେନି
ଆସ୍ଥାନର ଉପରେ ଉଠିଲେ ବେଗେ ପୁଣି ।
ଭରତ ଶତ୍ରୁଘନରେ ବରଣମାଳା ଦେଲେ
ଆସ୍ଥାନରୁ ଓହ୍ଲାଇ ହାନ୍ଦୋଳାରେ ବିଜେ କଲେ ।
ଜନକ ଋଷି ନବରେ ହେଲେ ପରବେଶ
ହୁଳହୁଳି ଶବଦରେ ପୁରଇ ଆକାଶ ।
ଦେଖିଣ ଜନକ ଯେ ପରମ ତୋଷ ହେଲେ
ସତ୍ୟାନନ୍ଦଙ୍କୁ କହ ସୈନ୍ୟ ସମ୍ଭାଳ ବୋଇଲେ ।

ଶୁଣିଣ ସତ୍ୟାନନ୍ଦ ବେଗେ ଚଳିଗଲେ
ସୈନ୍ୟବଳ ହସ୍ତୀ ଘୋଡ଼ା ସମ୍ଭାଳି ଯେ ନେଲେ ।
ଏଥୁ ଅନନ୍ତରେ ଯେ ଜନକ ଋଷି ପୁଣ
କୁଶଧ୍ୱଜ ଡକାଇ ବୋଇଲେ ରାଜନ ।
ବିଭାଘର ସଂଯୁକ୍ତ କରାଅ ବହନ
ଯେ ରୂପେ ଯେଉଁ କଥା କର ଯେ ଯତନ ।
ଦାସୀଗଣଙ୍କୁ ଡକାଇ ଜନକ ଋଷି କହି
ପୁର, ନଗ୍ର, ଉତ୍ସବ ମଣ୍ଡଣି କର ଯାଇ ।
ଅନ୍ତଃପୁରେ କହି ପୁଣି ବେଗେ ସେ ଅଇଲେ
ସତ୍ୟାନନ୍ଦଙ୍କୁ ଚାହିଁଣ ବିଚାରି କହିଲେ ।
ବୋଇଲେ ବଳୀବନକୁ ଚଳ ଯା ବହନ
ବାଲ୍ମୀକି ଋଷିଙ୍କି ଅଣାଅ ବହନ ।
ଶୁଣିକରି ସତ୍ୟାନନ୍ଦ ବେଗେ ଚଳିଗଲେ
ବଳିରାଜା ବନରେ ଚାରି ଦିନରେ ମିଳିଲେ ।
ଦେଖିଲେ ବାଲ୍ମୀକି ତପରେ ବସିଛନ୍ତି
ଋଷିଗଣମାନେ ମଢ଼ିଆରେ ରହିଛନ୍ତି ।
ବାଲ୍ମୀକି ଆଗରେ ମିଳିଲେ ମୁନି ଯାଇ
ଅନାମିକା ଶବଦରେ ଉଚ୍ଚରେ ମୁନି ଦେଇ ।
ଅନାମିକା ଶୁଣନ୍ତେ ଋଷିର ତପଭଙ୍ଗ
ଚାହିଁଲେ ବାଲ୍ମୀକି ସତ୍ୟାନନ୍ଦଙ୍କୁ ବେଗ ।
ସତ୍ୟାନନ୍ଦ ଋଷିଙ୍କି ନମସ୍କାର କଲେ
ଜନକ ପେଷିଲେ ମୋତେ ବୋଲିଣ ବୋଇଲେ ।
ଜାନକୀ ବିଭାଘର ଯିବ ଯେ ବେଗ ହୋଇ
ଶୁଣିକରି ବାଲ୍ମୀକି ପରମ ତୋଷ ହୋଇ ।
ବୋଇଲେ ଶ୍ରୀରାମ ଧଇଲେ ଶିବଧନୁ
ବାର ବରଷ ଯେ ଦଶରଥ ତନୁ ।
ସତ୍ୟାନନ୍ଦ ବୋଇଲେ ରାମ ଲକ୍ଷ୍ମଣ ବେନି
ବିଶ୍ୱାମିତ୍ର ସଙ୍ଗେ ଯାଇ ଭାଙ୍ଗିଲେ ଶିବଧନୁ ପୁଣି
ରାମ ଧନୁ ଭାଙ୍ଗିଲେ ଲକ୍ଷେ ରାଜାଙ୍କୁ ଜିଣି
ଜାନକୀ ଉର୍ମିଳା ତାଙ୍କୁ ବରଣ କଲେ ପୁଣି ।
ବିଭାଘର କରିବାକୁ ମନ କଲେକ ସେଦିନ
ଶ୍ରୀରାମ ବୋଇଲେ ପିତା ମୋ ଅଇଲେ ବିଭାପୁଣ ।
ଶୁଣି ଜନକ ରାୟେ ଦଶରଥଙ୍କୁ ରାଇ
କୁଶଧ୍ୱଜ ଭାଇଙ୍କି ଆଣିଲେ ଡକାଇ ।
ବୋଇଲେ ବାଲ୍ମୀକି ଋଷିଙ୍କି ଯାଇ ଆଣ
ସେ ଅଇଲେ ବିଭାଘର କରିବା ଆମ୍ଭେ ପୁଣ ।

ଶୁଣିଣ ବାଲ୍ମୀକି ବେଶହୋଇ ଚଳି
ମଢ଼ିଆରେ ପ୍ରବେଶ ହୋଇଲେ ବେଗକରି ।
ବାଲ୍ମୀକିଙ୍କ ଘରଣା ଶତେକ ପରିବାରି
ବେନି ସହସ୍ର ଶିଷ୍ୟ ଯେ, ଘେନିଣ ବାହାରି ।
ଦାସୀ ଋଷିଆଣି ଯେ, ହାନ୍ଦୋଳା ଚଢ଼ି ବଳି
ଶୁକାସନ ପରେ ବାଲ୍ମୀକି ବିଜେକରି ।
ମିଥିଳା ନବରେ ଯାଇ ହେଲେ ପରବେଶ
ଉତ୍ସବ ଦେଖିଣ ମୁନି ମନରେ ହରଷ ।
ଜାଣିଣ କଉଶିକ ଯେ, ଜନକ ମହାଋଷି
ବାଲ୍ମୀକି ଆସି ପାଛୋଟି ନିଅନ୍ତି ।
ବଶିଷ୍ଠ ଦଶରଥ ଚାରି ପୁତ୍ର ଯେ, ସଙ୍ଗରେ
ବାଲ୍ମୀକି ଋଷିଙ୍କି ଦର୍ଶନ ଯାଇ କଲେ ।
ବଶିଷ୍ଠଙ୍କୁ ବାଲ୍ମୀକି ଯେ, ପଚାରନ୍ତି ବାଣୀ
ଏ ଚାରିଗୋଟି ନନ୍ଦନ କାହାର ଅଟେ ପୁଣି ।
ବୋଇଲେ ଏ ଚାରିପୁତ୍ର ଦଶରଥର କି
ଅନନ୍ତ ବାସୁଦେବ ବିଜୟ କଲେ କିକି ।
ଚତୁର୍ଦ୍ଧା ମୂରତି ହୋଇ ଜନମ ନାରାୟଣ
ନୟନେ ଦେଖିଲେ ମୁଁ ଯେ ପାଇବି କାରଣ ।
ଶୁଣିଣ ଦଶରଥ ଚାରିପୁତ୍ର ଘେନି
ହୁଳହୁଳି ଶବଦ ଜନକ ପୁରେ ଧ୍ୱନି ।
ଜନକ ପଚାରିଲେ ବାଲ୍ମୀକିଙ୍କୁ ପୁଣି
ଦଶରଥ ଚାରିପୁତ୍ର ପୂର୍ବରେ କିସ ଜାଣି ।
ବାଲ୍ମୀକି ବୋଇଲେ ଶ୍ରୀରାମ ବାସୁଦେବ
ଲକ୍ଷ୍ମଣ ବୋଲି ଯେ ଅନନ୍ତ ନିଶ୍ଚେ ହେବ ।
ସୁଦର୍ଶନ ଚକ୍ର ଯେ, ଅଟଇ ଭରଥ
ଶତ୍ରୁଘନ ଅଟନ୍ତି ଡାହାଣ ବର୍ତ୍ତ ଶଙ୍ଖ ।
ଚତୁର୍ଦ୍ଧା ରୂପ ଧରିଣ ହେଲେ ଅବତାର
ଅସୁର ବଳ ମାରିଲେ ପୃଥ୍ୱୀ ହେବ ସ୍ଥିର ।
ପୂର୍ବ ଫଳେ ଦେଖିଲି କମଳା ନାରାୟଣ
ବଢ଼ିବେ ଯେ ଯେଉଁ କାର୍ଯ୍ୟ ଦେଖିବେ ନୟନ ।
ଏତେ କହି ଋଷି ଯେ, ହୋଇଲେକ ତୁନି
ଜନକ ରାଣୀକି ବାଲ୍ମୀକି ନାମେ ପୁଣି ।
କୁଶଧ୍ୱଜଙ୍କ ରାଣୀ ନମିଲେ ଆସି ପୁଣ
ସନମାନେ ସର୍ବେ ହରଷ ହୋଇ ଜାଣ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିଲୋଚନ
ଅଯୋଧ୍ୟା ନଗ୍ରରୁ ଆସେ ଦଶରଥ ପୁଣ ।

ବାମଦେବ ଋଷିଙ୍କି ସେ ରଖିଣ ଅଇଲେ
ସେହି ପୁଣି ରହି ପୁଣ କେମନ୍ତେ କୃତ୍ୟକଲେ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣଗୋ ଭଗବତୀ
ଦଶରଥ ଅଇଲେ ଯେ ସମର୍ପି ଦେଇ ପୃଥ୍ୱୀ
ତେଣୁ ଯେ ବାମଦେବ ବିଚାର କରି ପୁଣ
ନବକୋଟି ରଥିଙ୍କି ଜଣାଏ ରାଜା ଜାଣ ।
ଦେଶେଘୋଷ ପଦାତି ବଳ ଜଗାଇଲା
ଅପନ୍ତରା ପଥରେ ସେ ସଦାବର୍ତ୍ତ ଦେଲା ।
ଦୁଃଖି ଲୋକ ଦେଖି ଅନ୍ନ ବସ୍ତ୍ର ଦେଲେ ପରା
ମାଗନ୍ତା ଲୋକଙ୍କୁ ଧନ ଦେଲେ ହୋଇ ତ୍ୱରା ।
ଗଲାବେଳେ ଦଶରଥ ଯାଇଥିଲେ କହି
ନିମନ୍ତ୍ରଣ ଦେବ ବନ୍ଧୁମାନେ ପଠିଆଇ ।
ତେଣୁ ସେ ବାମଦେବ ବିଚାରି ଦୂତ ଭେଦି
ବେନି ସସ୍ର ଦୁଇ ଯେ ଭେଦିଲେକ ବେଗି ।
ରଥ ଚଢି ଦୂତମାନେ ବେଗେ ଚଳିଗଲେ
ଦଶଦିନରେ ସହସ୍ର ବନ୍ଧୁ ନିମନ୍ତ୍ରିଲେ ।
ବୋଇଲେ ମିଥିଲା ନଗ୍ରେ ବେଗେ ତୁମ୍ଭେ ଚଳ
ଶ୍ରୀରାମ ଲକ୍ଷ୍ମଣଙ୍କର ଅଟଇ ବିଭାଘର ।
ଶ୍ରୀରାମ ଧନୁ ଭାଙ୍ଗିଲେ ଲକ୍ଷ୍ମଣ ଜିଣି ରାଜା
ମିଥିଲା ଚଳିଗଲେ ଦଶରଥ ରାଜା ।
କହିଣ ଦୂତମାନେ ଫେରିଣ ଅଇଲେ
ସୈନ୍ୟ ଘେନି ଲୋମପାଦ ଗମନ କରିଗଲେ ।
ଚବିଶ ଦିନେ ଲୋମପାଦ ହେଲେ ପରବେଶ
ଦେଖିଣ ଦଶରଥ ହୋଇଲେ ହରଷ ।
ଏହି ସମୟରେ ଆସି କୈକେୟୀ ଭାଇମିଳି
କଉଶଲ୍ୟା ପିତା ଯେ ମିଳିବେ ଯାଇକରି ।
ସୁମିତ୍ରାର ଭାଇ ଯେ ନୀଳାବତୀର ପିତା
କଳାବତୀର ଭାଇଯେ କାଶୀରାଜାର ସୁତା ।
ମାସକ ସମ୍ପୂର୍ଣ୍ଣରେ ସମସ୍ତେ ଯାଇ ମିଳି
ଦେଖିଣ ଜନକ ଯେ ହରଷ ମନ କରି ।
ସକଳ-ରାଜାଙ୍କୁ ଯେ ନବର ପୁଣ ଦେଲେ
ସୈନ୍ୟବଳ ହସ୍ତୀ ଘୋଡ଼ା ସକଳ ରଖାଇଲେ ।
ଗହ ଗହ ଶବଦ ଯେ ମିଥିଲା ନବର
ଯେଣୁ ଯେ ସହସ୍ରେ ରାଜା ହୋଇଲେକ ଠୁଳ ।
ନାରଦଙ୍କୁ ବୋଇଲେ ଚଳ ମର୍ତ୍ତ୍ୟପୁର
ଲକ୍ଷେ ରାଜା ଅଛନ୍ତି ଚାରି ଯେ ଦିଗର ।
ବୋଲିବ ଶ୍ରୀରାମ ଯେ ଅଟନ୍ତି ନାରାୟଣ
ଅସୁର ମାରିବାକୁ ହୋଇଛନ୍ତି ଜନ୍ମ ।
ସେ ତୁମ୍ଭଙ୍କୁ ଜିଣିଲାକୁ ମାନକରି ଅଛ ବସି
ଦେବେ କାରଣ ହେବାରେ ଅଛ ଯେ ବିଶ୍ୱାସି ।
ତେବେ ମିଥିଲାରେ ତୁମ୍ଭେ ପ୍ରବେଶ ବେଗେ ହୁଅ
ନୋହିଲେ ଅସୁରଙ୍କ ସଙ୍ଗକୁ ତୁମ୍ଭେ ଥାଅ ।
ଶୁଣିକରି ନାରଦ ଯେ ବେଗେ ଚଳିଗଲେ ।
ଚାରିଦିଗ ରାଜାଙ୍କ ଚାରିଦିନରେ କହିଲେ ।
ବୋଇଲେ ଦେବତାଏ ବେଦବର ଶୁଣ
ଭେଦିଲେ ତୁମ୍ଭପାଶେ ମିଥିଲା ଯିବ ଜାଣ ।
ନଗଲେ ନିଶ୍ଚେ ତୁମ୍ଭଙ୍କୁ ମାରିବେ ରାମପୁଣ
ଗଲେ ନାରାୟଣ ବିଭା ଦେଖିବ ନେତ୍ରେଣ ।
ମରିଲେ ବୈକୁଣ୍ଠ ଯିବି ଜିଇଁଲେ ସୁଖଭାବ
ଅସୁରଙ୍କୁ ମାରିବାକୁ ଶ୍ରୀରାମ ଜନ୍ମ ବେଗ ।
ଶୁଣିକରି ରାଜାମାନେ ମନେ ବିଚାରିଲେ
ନାରାୟଣ ଶ୍ରୀରାମ ରୂପେ ଜନ୍ମିଲେ ମହୀପରେ ।
ମଲେତ ସ୍ୱର୍ଗଯିବା ଜିଇଲେ କାରଣ
ଦେବେ ଦୂତ ପଠିଆଇଲେ ଏବେ କହିଣ ।
ଏମନ୍ତ ବିଚାରି ଯେ ରଥ ସଜକରି
ସୈନ୍ୟଗଣ ଘେନିଣ ଯେ ଯାହା ମତେଚଳି ।
କେ ପାଞ୍ଚଦିନେ କେ ମିଳେ ସାତ ଦିବସରେ
କେ ମିଳେ ବାରତେର କୋଡ଼ିଏ ଦିବସରେ ।
ମାସକରେ ସମ୍ପୂର୍ଣ୍ଣ ଚାଳିଶି ସସ୍ରରାଜା
ଦେଖି ଜନକ ଋଷି ସୁରଭିକି କଲେ ପୂଜା ।
ବୋଇଲେ ରଜାଗଣଙ୍କୁ ଦେବା ସଞ୍ଚାବିଧି
କାମଧେନୁ ବୋଲେ ଚିନ୍ତା ନକର ନୃପନିଧି ।
ଖାଇବା ପିଇବାର ଯେତେକ ବିଧିମତ
ଏ ସକଳ ସବୁକଥା ଲାଗଇ ମୋତେ ତ ।
ଶୁଣି ଜନକ ଋଷି ହରଷ ହୋଇଲେ
ସତ୍ୟାନନ୍ଦଙ୍କୁ କହିଣ ଗ୍ରାମ ମଣ୍ଡାଇଲେ ।
ସଙ୍କର୍ଷଣ ମନ୍ତ୍ରୀ ଯେ ରାଜ୍ୟ ଘୋଷ ମଣ୍ଡି
ଦ୍ୱାରେ ପୂର୍ଣ୍ଣ କୁମ୍ଭ ରମ୍ଭା ବୃକ୍ଷ ବାନ୍ଧି ।
କନ୍ଦି ବିକନ୍ଦି ଯେ ବଡ଼ଦାଣ୍ଡ ନବର
ସକଳ ପୁରକୁ ମନ୍ତ୍ରୀ କରାଏ ବିଚିତ୍ର ସାର ।
ଉପରେ ଛାମୁଣ୍ଡିଆ ଚାନ୍ଦୁଆ ଟଣାଇ
ବତିଶ କୋଶ ନବର ସକଳ ସ୍ଥାନ ଛାଇ ।

ବନ ଗିରି ଲତା ଚାଳିଶି କୋଶ ଜାଣ
ଛାମୁଣ୍ଡିଆ ଚାନ୍ଦୁଆ ଟଣାଏ ରାଜନ ।
ଠାବେ ଠାବେ ବାଦ୍ୟ ବାଜେ ଶଙ୍ଖ ଯେ ମହୁରୀ
ଶବଦେ ମେରୁ ଗିରି କମ୍ପଇ ଆଦିକରି ।
ଅନେକ ଗହଳ ଯେ ଦେଖି କାମଧେନୁ
ଅଠର କୋଟି ରୂପ ଯେ ଜାତକଲା ମନୁ ।
ବୋଇଲା ଅମୃତ ଯୋଗାଡ଼ ତୁମ୍ଭେ ଦେବ
ରାଜା ପରଜା ଋଷିଙ୍କି ନେଇଣ ଚରଚିବ ।
ଶୁଣିଣ ମନୁ ଜାତ ପୁରୁଷ ଭାଗି ଗଲେ
ରାଜା ପରଜାଙ୍କ ଲୋଡ଼ା ଯାହାତାହା ତାଙ୍କୁ ଦେଲେ ।
ଋଷି ବ୍ରାହ୍ମଣ ଯେ ହାଟୁଆ ବାଟୁଆ
ସମସ୍ତଙ୍କୁ ଚରଚା କାମଧେନୁ ଛୁଆ ।
ଏଥୁ ଅନନ୍ତରେ ଯେ ବଶିଷ୍ଠ ମହାଋଷି
ଜନକଙ୍କୁ ଡକାଇ ବୋଲନ୍ତି ବିଶେଷି ।
ଶୁଣି ମିଥିଳା ନଗ୍ରର ଆହେ ମୁନିବର
ଦଶରଥ ରାଜା ଯେ ଅଯୋଧ୍ୟା ଈଶ୍ୱର ।
ଦେବତାଏ ପ୍ରଶଂସା କରନ୍ତି ତାହାଙ୍କୁ ।
ଧର୍ମରେ ଧାର୍ମିକ ଲେଖନ୍ତି ତାହାଙ୍କୁ ।
ବିଶେଷେ ଚକ୍ରବର୍ତ୍ତୀ ମଉଡମଣି ସେହି
ଗରିଷ୍ଠ ଏ ରାଜାର ଉପରେ କେହି ନାହିଁ ।
ବଡ଼ ଧାର୍ମିକ ଯେ ଅଟନ୍ତି ଶାନ୍ତଶୀଳ
ପରଶିମାନ ଘେନ ମାରନ୍ତି ଦୁଷ୍ଟବଳ ।
ଦାନେଣ ଦାତା ଅଟେ ମାନେଣ ଚକ୍ରବର୍ତ୍ତୀ
ଗାରିମା ରାଜନ ଏ ଦେବତା ନ ମାନନ୍ତି ।
ଜନକ ବୋଇଲେ କହ ଉପର ବଂଶ କଥା
ତପନ କୁଳରେ ଜାତ ଅନେକ ମହାରଥା ।
ଆଦ୍ୟରେ ଅବତାର ଏହାର ବଂଶ କାହୁଁ ।
ମୋହର ଆଗରେ କହ ମୋ ମନେ ପ୍ରତେ ଯାଉ
ବଶିଷ୍ଠ ବୋଇଲେ ତୁମ୍ଭେ ଶୁଣ ମନ ଦେଇ
କହୁଅଛି ବଂଶାନୁପ୍ରତେ ଯେଣେ ଯାଇ ।
ଯେତେବେଳେ ପ୍ରଳୟ କାଳ ଯେଣୁ ହେଲା
ବଟପୁଟେ ଶୟନ ଅନନ୍ତ ହେଲେ ପରା ।
ଜଳ ଭିତରେ ବୁଦୁ ବୁଦୁ ହେଲେ ଜାତ
ସେଠାରୁ ଅନେକ ବର୍ଣ୍ଣ ହୋଇଲା ସମ୍ଭୂତ ।
ରବିଙ୍କଠାରୁ ଯେ ଏହାଙ୍କ ବଂଶ ଜାତ
ତୁମ୍ଭର ଆଗରେ ସ୍ୱରୂପ କହଇ ତ ।

ଖରରୂପ ଯେତେବେଳେ ଧରିଲେ ନାରାୟଣ
ସେହି ପରା ସର୍ଜିଲା ଯେ ଜଗତ ହାଦେ ପୁଣ ।
ଅଣ୍ଡ ଗୋଟିକରୁ ସେ ସଂସାର ଜାତ ହେଲା
ଜନକ ମୁନି ଆଗେ ବଶିଷ୍ଠ କହେ ପରା ।
ସେ ଅଣ୍ଡ ଗୋଟି ଖଗରୁ ଜାତ ହେଲା
ଯେ ଅଣ୍ଡ ଗୋଟିକ ଖସି ଜଳରେ ସଞ୍ଚରିଲା ।
ସେ ଅଣ୍ଡରୁ ଯେବଣ ପୁରୁଷ ବାହାର
ଏହି ସୃଷ୍ଟି କରିବାକୁ କଲେକ ବିଚାର ।
ତାହାଙ୍କର ନାମ ହାଦେ ଅଟଇ ବିଧାତା
ସେହି ସେ ହୋଇଲେ ଯେ ଜଗତର ପିତା ।
ନବଖଣ୍ଡ ମେଦିନୀ ଚଉଦଖଣ୍ଡ ଭୁବନ ଯେ କଲେ
କେ ଆନ କରିବ ଏ କଥାକୁ ଭଲେ ।
ଅଶ୍ୱମାଳି ବୋଲିଣ ବିଧାତାର ସୁତ
ତାହାକୁ ପ୍ରଜାପତି କଲେକ ବିଧାତ ।
ମନୁଷ୍ୟ ଚାରିବର୍ଣ୍ଣ ପ୍ରଜାପତି କଲେ ଜାତ
ସେଥିରୁ ଋଷିଏ ଯେ ହୋଇଲେ ସମ୍ଭୂତ ।
ସେ ଋଷିଙ୍କର ନାମ କଶ୍ୟପ ବୋଲାଇଲେ
ଚେତା ହେବାରୁ ସେ ଋଷି ରତି ସଙ୍ଗ ମାଗିଲେ ।
ତେଣୁ ସେ ପ୍ରଜାପତି ଦୋହିତା ଏକ ଜାତ
ହେତି ପ୍ରହେତି ନାମ ବେନି ଦୋହିତା ସମ୍ଭୂତ ।
ସେ ଦେବତାଙ୍କୁ ସ୍ୱର୍ଗ ହେଲା ଯେ ପରାପତ
ସନ୍ତୋଷରେ ସେ ରହିଲେ ସ୍ୱର୍ଗପୁରେ ତ ।
ଆଗେ ଯେହୁ ଜାତ ହେଲେ ସେ ହେଲେ ସୁରରାଜା
ମଧ୍ୟରେ ଜାତ ହେବାରୁ ଦିଗପାଳ ହେଯା
ପଛେ ଜାତ ହେବାରୁ ଦେବଗଣ ହେଲେ
ତେଣୁଟି ଦେବତାଏ ସ୍ୱର୍ଗ ଭୋଗ କଲେ ।
ଦେବତାଙ୍କ ମାତା ହୋଇଲେକ ହେତୀ
ପ୍ରହେତୀ ସଙ୍ଗେ ପ୍ରୀତି କଶ୍ୟପ କରନ୍ତି ।
ପ୍ରହେତୀଠାରୁ ଜାତ ନଉସାଗର ଅଣ୍ଡା
ଅଣ୍ଡା ଫୁଟନ୍ତେ ଅସୁର ପରଚଣ୍ଡା ।
ସେ ଅସୁର ମଞ୍ଜପୁର ଆବୋରି ରହିଲେ
ଆବର ବେଳେ ହେତୀଠାରୁ ଅଣ୍ଡା ଜାତ ହେଲେ ।
ସେ ଅଣ୍ଡାରୁ ଜାତ ଯେ ମାନବ ଚାରିବର୍ଣ୍ଣ
ବିପ୍ର, କ୍ଷତ୍ରୀୟ, ବୈଶ୍ୟ, ଶୁଦ୍ର ଯେ ଚାରିବର୍ଣ୍ଣ ।
ପ୍ରହେତୀ ଋଷିଙ୍କ ସଙ୍ଗେ ହୋଇବାରୁ ମେଳ
ତାଠାରୁ ଚାରିବର୍ଣ୍ଣ ମୁନି ଜାତ ଯେ ହେବାର ।

ଏମାନଙ୍କୁ ବୋଇଲେ ସପତ ପୁରେ ରହି
ରାଜା ପରଜା ପଣେ ତୁମ୍ଭେ ଦିନ ନିଅ ।
ସେଠାରୁ ଖଗ ମୃଗ ଆବର ଜଳଚର
ଅନେକ ବର୍ଣ୍ଣ ସେ ହେଲେ ଅବତାର ।
ପଛରେ ମଣ୍ଡୁକୀ ନାଗ ହୋଇଲେକ ଜାତ
ଛପନକୋଟି ଜୀବଙ୍କର କଶ୍ୟପ ଯେ ତାତ ।
ତେଣୁ ସେ ସପତ ପୁରେ କ୍ଷତ୍ରୀୟ ଜାତ ହେଲେ
ପୁର ଗୋଟିକେ ଲକ୍ଷେରାଜା କ୍ଷତ୍ରୀଯେ ହୋଇଲେ ।
କଶ୍ୟପର ତନୟ ଯେ ହେଲେ ଅଶ୍ୱମାଳି
ଅଶ୍ୱମାଳିର ନାମ ଯେ ବୋଲାଏ ତେଜକାରୀ ।
ତେଜକାରୀ ସୁତ ଯେ ବୈବସୁତ ମନୁ
ତେଜବଳ ପ୍ରାକର୍ମରେ ଅଟେ ଦିତୀ ଭାନୁ ।
ଏହାର ତନୟେ ଯେ ଇକ୍ଷ୍ୱାକୁରୁ ବୋଲି ରାଏ
ଇକ୍ଷ୍ୱାବତୀ ନଗ୍ରରେ ରାଜନ ସେ ଯେ ହୁଏ ।
ରବିତଳେ ଚକ୍ରବର୍ତ୍ତୀ ଅଟଇ ଯେ ସେହି
ବାହୁବଳେ ପୃଥିବୀ ବୁଲଇ ସେ ଯାଇ ।
ଇକ୍ଷ୍ୱାକୁରୁ ବଂଶ ବୋଲି ନାମ ଦେଲେ ତାର
ଇକ୍ଷ୍ୱାକୁରୁ ବଂଶ ଯେ ଜଗତେ ବିସ୍ତାର ।
ଇକ୍ଷ୍ୱାକୁରୁଠାରୁ ଯେ ବିକୋଛି ହେଲେ ଜାତ
ଯୋଦ୍ଧାପଣେ ସାରି ତାଙ୍କୁ ନହେଁ ସପତ ଦ୍ୱୀପ ।
ତାହାର କୁମର ଯେ ଅଜୟେ ବୋଲି ଜାଣ
ଦ୍ୱାପର ଯୁଗ ଗୋଟି ଭୋଗ ଯେ କଲେ ଜାଣ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନିପୁର ଜିଣି
ନଗ୍ର ନାମ ଆପଣା ନାମ ଦେଲେ ପୁଣି ।
ସେହିଦିନୁ ସେ ରାଜ୍ୟଯେ ଅଯୋଧ୍ୟା ବୋଲାଇଲା
କାଳେ ପୁଣ ତାଙ୍କର ପୁତ୍ର ଜାତ ହେଲା ।
ସେ ରାଜା କୁମର ନାମ ଦେଲେ ମହୀପତି
ଚାରି ସମୁଦ୍ରେ ଯେ ରାଜା ସ୍ନାନକରି ନିତି
କାକୁସ୍ଥ ବୋଲି ଯେ ତାହାର ତନୟେ
ଏ ମହୀ ମଣ୍ଡଳରେ ସବୁକଳେ ଜଏ ।
ତାହାଙ୍କର ତନୟ କବିର ନାମେ ବୀର
ତାହାଠାରୁ ଜାତ ବିଶ୍ରବା ନାମେ ବୀର ।
ବିଶ୍ରବା ତନୁଜ ଯେ ଆରଣ୍ୟକ ନୃପତି ।
ସୁନାମ ନାମରେ ପୁଣି ତାହାର ଏକ ମନ୍ତ୍ରୀ ।
ସେ ରାଜାକୁ ଦଶମୁଖା ରାବଣ ନାଶକଲା
ସେ ରାଜା ମନ୍ତ୍ରୀର ବୋଲ କେବେହେଁ ନକଲା ।

ଆଦିତ୍ୟ ନାମେଣ ଯେ ସେ ରାଜା କୁମର
ପିତାର ଶତ୍ରୁ ବୋଲିଣ ଗଲା ଲଙ୍କାପୁର ।
ମନଭେଦି ଶରେ ସେ ଲଙ୍କାକୁ ପୋଡ଼ିଲା
ଉପର ଚାରିପାଖ ପାଷାଣେ ପୋତିଲା ।
ଦଶବରଷ ଯେ ସେ ଲଙ୍କା ଅନ୍ଧାର
ଦେଖିକରି ରାବଣ ବିଧାତାକୁ ସୁମରିବାର ।
ଡରିଣ ଦଇବ ଯେ ସେ ପୁର ନଗଲା
ବିଶ୍ରବା ଋଷି ଆସି ଅଗ୍ନିକି କହିଲା ।
ତେଣୁ ସେ ମନଭେଦୀ ଅଗ୍ନି ଦେଲେ କାଢ଼ି
ତେଣୁ ସେ ରବିତ୍ରାସ ଲଙ୍କା ଗଡ଼ରେ ପଡ଼ି ।
ସେହି ରାଜାଠାରୁ କୁବଳ ବୋଲି ପୁତ୍ର
ତିନି ଭୁବନରେ ତାର ମହିମା ବିଖ୍ୟାତ ।
କୁବଳୟା କୁମର ହୋଇଲା ପୂର୍ବସାର ।
ଶତ୍ରୁତ୍ରାସ ନମାନେ ତାହାର କୁମର ।
ପ୍ରସନ୍ନଜିତ୍ ବୋଲି ତାହାର ସନ୍ତତି
ଶତୃଜିତ ନାମରେ ପୁତ୍ରେକ ତାହାରଟି ।
ତାହାର କୁମର କୁରୁ ଯେ ନୃପତି
ଅତି ମାନରେ ରାଜା ହେଲା ଚକ୍ରବର୍ତ୍ତୀ ।
କୁରୁନାଥ ନନ୍ଦନ ଯେ ଜଗନ୍ନାଥ ମହୀଧର
ସେ ରାଜା ମହିମା ମୁନି ଅତିହି ଅଗୋଚର ।
ସେ ଜଗନ୍ନାଥ, ମହୀଧରର ଅନେକ କୀରତି
ପୁତ୍ର ତାର ନୋହିବାରୁ ଭାଳେ ସେ ନୃପତି ।
ଅଷ୍ଟବକ୍ର ଋଷିଙ୍କୁ ସେ ସେବାକରି ମନାଇଲା
ଭଗବତୀ ଦେଖିଣ ସେ ମୁନି ଦୟାକଲା ।
କାଲି ମୋ ଆଶ୍ରମକୁ ଆସିବୁଁ ବୋଇଲେ
ଅନ୍ଧକୁ ନୟନ କି ଦରିଦ୍ରେ ଧନ ଦେଲେ ।
ଶୁଣି ସେ ନୃପବର ପ୍ରଭାତ ବେଳେ ଯାଇ
ଅଷ୍ଟବକ୍ର ମୁନିଙ୍କର ଆଶ୍ରମେ ମିଳିଲେ ।
ଦେଖିଣ ଋଷି ବୋଲେ ଶୁଣରେ ନୃପବର
ଏମନ୍ତ ପାଣି ଘେନିଣ ବହନ ତୁ ଯେ ଚଳ ।
ମହାଦେଈମାନଙ୍କୁ ବାଣ୍ଟିଣ ତୁମ୍ଭେ ଦେବ
ପୁତ୍ର ଉପୁଜିବ ବଳିଣ ତୋର ତେଜ ।
ଏସନ କହିଣ ମୁନି ଅନ୍ତର୍ଦ୍ଧାନରେ ଗଲେ
ମନ୍ତ୍ରଜଳ ଘେନିଣ ନୃପତି ବାହୁଡ଼ିଲେ ।
ଦଇବର ମାୟାକୁ ବୁଝି ତ ନପାରି
ସେ ପାଣିକି ପିଇଲେ ନୃପତି ପାଶୋରି ।

ଆପଣେ ଗର୍ଭବାସ ହେଲେକ ରାଜନ
ପାଞ୍ଚ ମାସ ଅନ୍ତରେ ଗର୍ଭେ ବୁଲଇ ନନ୍ଦନ ।
ଅଷ୍ଟବକ୍ର ଋଷି ଜାଣି ଆସିଲେ ବେଗକରି
ରାଜାକୁ ବୋଇଲେ ତୁ ଅବିଚାର କରି ।
ରାଣୀକି ନ ଦେଇ ତୁ ଆପଣେ ଭକ୍ଷିଲୁ
ତେଣୁକରି ଏ କଷ୍ଟ ତୁ ଆପଣେ ଲଭିଲୁ ।
ଦଶମାସ ରାଜାର ପେଟ ସେହୁ ଚିରି
ତାର ଗର୍ଭୁ ପୁତ୍ର ଏକ ବାହାର ଯେ କରି ।
ସେ ପୁତ୍ର ନାମ ଯେ ଦେଲେ ମାନଧାତା
ଏ ମହୀମଣ୍ଡଳରେ ରୁହାଇଲେ କଥା ।
ମାନଧାତାଠାରୁ ଯେ ମୁଚୁକୁନ୍ଦ ହେଲେ ଜାତ
ବାଣ ନରନାଥ ହୋଇଲେ ତାର ପୁତ୍ର ।
ବାଣ ନରନାଥର ଯେ ପୁତ୍ର ବସୁ ନାମେ ବୀର
ସେହି ପୁଣି ହୋଇଲେ ଯେ ଅଯୋଧ୍ୟା ଈଶ୍ୱର ।
ସତ୍ୟବ୍ରତ ବୋଲିଣ ଯେ ତାହାର ତନୟେ
କୁମନ୍ତ ରାଜନ ସେ ତାଠାରେ ଉଦୟେ ।
ସେହି ରାଜାଠାରେ ଯେ ହରିଚନ୍ଦନ ଜାତ
ଦାନେଣ ଖାଣ୍ଡେବ ଦାତା ପଣରେ ବିଖ୍ୟାତ ।
ସେହି ରାଜା ଯାଗ କଲେ ବିଶ୍ୱାମିତ୍ର ରାଇ
ଅନେକ ଧନ ଦେବାରେ ନ ନେଲେ ମୁନି ତହିଁ ।
ବିକ୍ରି କରି ନେଲେ ଯେ ପୁତ୍ର ଭାରିଯା ଜାଣ
ସେହି ରାଜା ସାନ ପୁତ୍ର ହେଲେକ ରାଜନ ।
ତେଣୁଟି ବିଶ୍ୱାମିତ୍ର ଯୋଗବଳେ ଜାଣି
ଶ୍ରୀରାମ ଲକ୍ଷ୍ମଣରେ ଭକ୍ତୁସି ହେଲେ ପୁଣି ।
ହରିଚନ୍ଦନ ଦ୍ୱିତୀୟ ପୁତ୍ର ନାମ ଜାଣ
ସୌରଭ୍ୟ ନାମରେ ଅଟଇ ରାଜନ ।
ଭ୍ରଥ ନାମରେ ତାର ପୁତ୍ରେକ ଜାତ ହୋଇ
ଜମ୍ବୁଦୀପ ମଣ୍ଡଳେ ଏକାଙ୍ଗ ରାଜା ହୋଇ ।
ସେ ରାଜ୍ୟ ରାଜାମାନେ ଖଟିଣ ପାଦରେ
ଜମ୍ବୁଦ୍ୱୀପକୁ ଅସୁର ନ ଆସନ୍ତି ଡରେ ।
ତେଣୁ ଜମ୍ବୁ ଦ୍ୱିପକୁ ଭ୍ରଥଖଣ୍ଡ ନାମ ଦେଲେ
ଗଡକରି ଭକ୍ଷ୍ୟ ପୁର ରାଜ୍ୟରେ ରହିଲେ ।
କେତେହେ କାଳେକ ରାଜାର ଚାରିପୁତ୍ର ହେଲେ
ମଧୁବନହସ୍ତି ନାରେ ଭ୍ରଥ ଅଯୋଧ୍ୟାରେ ରାଜା ହେଲେ ।
ଇସିତ ସତେଜ ଅମଳ କମଳ
ଇସିତ କୁମର ବହୁଳ ନାମେ ବୀର ।

ବାହୁକର ପୁତ୍ର ଯେ ସଗର ନୃପତି
ସପତ ସାଗରକୁ ଖୋଳାଇଲେ କୀର୍ତ୍ତି ।
ସାତ ଯୁଗ ପରିଯନ୍ତେ ବଞ୍ଚିଲେ ରାଜନ
ସ୍ୱଦେହ ଘେନିଣ ଯେ ସ୍ୱର୍ଗକୁ ଗଲେ ପୁଣ ।
ଅଶ୍ୱଜୋଲା ନାମରେ ତାହାର କୁମର
ଦେବତାଏ ଭୟ କଲେ ଜାଣି ତାର ବଳ ।
ତାହାଠାରେ ଜାତ ଅଶ୍ୱବନ୍ତ ପୁତ୍ର ହୋଇ
ସେ ପୁତ୍ର ଅଶ୍ୱ ଚଢ଼ିଣ ଶୂନ୍ୟରେ ଉଡଇ ।
ତାର ପୁତ୍ର ଦିଲିପ ସାଧିଲା ସପ୍ତ ମହୀ
ତିନିପୁରେ ନାମ ବିଖ୍ୟାତ ତାର ହୋଇ ।
ଦିଲିପ ନନ୍ଦନ ଯେ ଭଗିରଥ ହୋଇଲା
ଆକାଶରୁ ଗଙ୍ଗା ଆଣି ମଞ୍ଚରେ ରୁହାଇଲା ।
ସେ ଭଗିରଥ ପୁତ୍ର ଅଟେ ସୁରସେନ
ନାଭ ନାମ ହୋଇଲା ଯେ ତାହାର ନନ୍ଦନ ।
ନାଭର ନନ୍ଦନ ଯେ ସିନ୍ଧୁଘୋଷ ହୋଇ
ସିନ୍ଧୁଘୋଷର ନନ୍ଦନ କୃତିକା ବୋଲାଇ ।
କୃତିକାର ନନ୍ଦନ ଅଖିଳ ନୃପତି
ଋତୁପନ୍ନ ନାମରେ ତାହାର ସନ୍ତତି ।
ଋତୁପନ୍ନ ରାଜା ନଳ ରାଜାକୁ ସମ୍ଭାଳିଲା
ଆଜହୁଁ କୀରତି ତାର ପୁରାଣେ ରହିଲା ।
ଋତୁପନ୍ନ କୁମର ଅଟଇ ବିଲମ୍ବର
ଲକ୍ଷେ ରାଜାକୁ ବନ୍ଦି କଲା ଏକବାର ।
ତାହାର ନନ୍ଦନ ଯେ କୁମ୍ଭ ନାମରାୟେ
ତ୍ରିଭୁବନ ମଧ୍ୟେ ପଟାନ୍ତର ନାହିଁ କିଏ ।
ନିକୁମ୍ଭ ନନ୍ଦନ ଅଳମ୍ବୁସା ହୁଏ
ତିନିପୁରରେ ତାକୁ ସରିସମ କେହି ନୁହେଁ ।
ଅଳମ୍ବୁତା ନନ୍ଦନ ତାକୁ ରାଜା ଯେ ପୁଣ
ସକଳ ନୃପତି ତାର ପାଦେ ଖଟେ ଜାଣ ।
ବାବୁ ରାଜାର ନନ୍ଦନ ଅଟେ ସୁତିକ୍ଷଣ
ପିତା ବିଯୋଗରେ ସେ ଅଯୋଧ୍ୟା ରାଜନ ।
ସୁତିକ୍ଷଣ ରାଜନ ଯେ ଅଗ୍ନି କେତୁ ହୋଇ
ସିଂହନାଦ ନନ୍ଦନ ଯେ ତାହାର ବୋଲାଇ ।
ସିଂହନାଦ ବୋଲିଣ ତାହାର ନାମ ହୋଏ
ରାଜାପଣ ଚାରିମାସ ସେହି ପୁଣ କଏ ।
ସ୍ୱର୍ଗରେ ଦେବତା ତପ କଲେ ଯେ ଚାରିମାସ
ପାତାଳେ ଧରଣୀଧର ଧଇଲେ ମହୀକି ତ ।

ସ୍ୱର୍ଗସନ ବୋଲି କରି ତାହାର କୁମର
ତାଠାରୁ ଜାତ ଅମୀୟ ରସ ନୃପବର ।
ତାର ଠାରୁ ଜାତ ଯେ ନ ଜାଣି ହୋଇଲା
ଯଯାତି ନନ୍ଦନ ହେ ଭାର୍ଗବି ବୋଲାଇଲା ।
କାମଦେବ ବୋଲିଣ ଯେ ତାହାର ତନୟେ
ସେହି ରାଜପଣ କଲେ କୁଳଦୀପ ରାୟେ ।
ମହିମା ଅଗୋଚର ପ୍ରଶଂସେ ସୁର ରାୟେ
ରଘୁବଂଶ ବୋଲିଣ ଯେ ସେହିଠାରୁ ହୁଏ ।
ତାହାର ନନ୍ଦନ ଅଜନାମେ ମହିପାଳ
ଦଶରଥ ନାମରେ ତାହାର ଦୁଲାଳ ।
ଏହି ଦଶରଥ ଅଯୋଧ୍ୟାର ରାଜା ପୁଣ
ବେନି ପ୍ରକାର ଯେ ଅଟଇ ଦେହ ଜାଣ ।
ନୟନ ଚରଣ ବେନି ଅଟଇ ବେନି ବେନି
ଶରୀର ମସ୍ତକରେ ଅଟଇ ଏକ ପୁଣି ।
ଅଷ୍ଟଗୋଟି ବାହୁ ତାର କରଇ ପଲ୍ଲବ
ଚାରିଗୋଟି ଧନୁଧରି ସର୍ମାଜଇ ବେଗ ।
ଋଷିଶୃଙ୍ଗ ପ୍ରସାଦରେ ଚାରି ଯେ ନନ୍ଦନ
ଶ୍ରୀରାମ ଲକ୍ଷ୍ମଣ ଭରତ ଶତ୍ରୁଘନ ।
ରାଜାର ଜ୍ୟେଷ୍ଠପାଟ କୈକେୟୀ ନାମେ ରାଣୀ
କୌଶଲ୍ୟା କନିଷ୍ଠ ଅଟେ ଶୁଣ ହେ ମହାମୁନି ।
ସୁମିତ୍ରା ନିଳା ତୁଳେ ସାତଶ ପଚାଶ
ଏହିମାନଙ୍କୁ ସାନରାଣୀରେ ଲେଖିତ ।
କଉଶଲ୍ୟା ଗର୍ଭରୁ ଶ୍ରୀରାମ ହେଲେ ଜାତ
କୈକେୟୀଙ୍କ ଗର୍ଭରୁ ଭରତ ସମ୍ଭୂତ ।
ସୁମିତ୍ରାଙ୍କର ଗର୍ଭରୁ ଲକ୍ଷ୍ମଣ ଶତ୍ରୁଘନ ।
ଏମନ୍ତ ଚାରିଗୋଟି ଦଶରଥ ନନ୍ଦନ ।
କୈକେୟୀ ରାଜା ଦୁହିତା ଅଟଇ ଚାପବନ୍ତି
ତାହାଙ୍କର ଗର୍ଭୁ ଭରଥ ଉତ୍ପତ୍ତି ।
ଦଶରଥଙ୍କର ସେହୁ ଅଟଇ ଜ୍ୟେଷ୍ଠରାଣୀ
ସେ ରାଣୀ ତଳରେ କଉଶଲ୍ୟା ପୁଣି ।
କଉଶଲ୍ୟା ତଳରେ ଅଟଇ ସୌମିତ୍ର
ଶୋଭା ସୁନ୍ଦର ସେ ସକଳ ରାଣୀ ସ୍ତୋତ୍ର ।
ଏ ରୂପେ ଶୁଣି ଋଷି ଦଶରଥ ମହିମା
ଯାହାକୁ ପ୍ରଶଂସା ଯେ କରନ୍ତି ପୁର ବ୍ରହ୍ମା ।
ସତଷଷ୍ଟୀ ପୁରୁଷ ଦଶରଥଙ୍କର ଏମନ୍ତ
ସେଦିନୁ ଅଟଇ ମୁଁ ଯେ କୁଳର ପୁରୋହିତ ।

ବଶିଷ୍ଠଙ୍କର ମୁଖରୁ ଏସନ ବାଣୀ ଶୁଣି
କୃତ କୃତ ହୋଇଲେ ଜନକ ମହାମୁନି ।
ବୋଇଲେ ଭୋ ମୁନି କହିଲେ ତୁମ୍ଭେ ଯାହା
ସର୍ବଗୁଣେ ସୁନ୍ଦର ଅଯୋଧ୍ୟା ନରନାହା ।
ତୁମ୍ଭେ କହିଲ ଏହାଙ୍କ ବଂଶାନୁ ଚରିତ
ଗତ ପାପମାନ ଗଲା ଏ ମୋହର ଗାତ୍ର ।
ମୋର କୁଳ ଗୋତ୍ର ଶୁଣ ହେ ମହାମୁନି
ବିଧିବିଧାନ କାଳେ ଅବଶ୍ୟ ଏହା ଜାଣି ।
ସତ୍ୟାନନ୍ଦ ଋଷି ମୋର କୁଳର ପୁରୋହିତ
ଏହାଙ୍କ ମୁଖରୁ ଶୁଣ ମୋହର କୁଳ ଗୋତ୍ର ।
ଅହଲ୍ୟା ନନ୍ଦନ କହେ ଏସନକ ଶୁଣି
ସାବଧାନ ହୋଇ ଶୁଣ ଅଯୋଧ୍ୟା ନୃପମଣି ।
ସାବଧାନ ହୋଇ ତୁମ୍ଭେ ଶୁଣ ହେ ବଶିଷ୍ଠ
ଇକ୍ଷ୍ୱାବରୁ ନାମେ ଏକ ନୃପତି ଗରିଷ୍ଠ ।
ନିଦ୍ରାର ବୋଲି ହେଲା ତାହାର ତନୟେ
ଚାରି ସାଗରେ ସେହୁ ହୋଇଲା ମହାରାୟେ ।
ସଇନ ସଙ୍ଗରେ ଘେନି ବୂଳିଲାକ ପୃଥ୍ୱୀ ।
ସମାନ ନୋହିଲେ ତାକୁ କଉଣସି କ୍ଷତ୍ରୀ
ସେ ରାଜାର ନନ୍ଦନ ଯେ ନିମି ଜାତ ହୋଇ
ମିଥିଲା ନାମରେ ତାର ନନ୍ଦନ ଉପୁଜଇ ।
ମିଥିଳାର ନୃପତି ଅଟେ ବଡ଼ାଇ ପ୍ରତାପୀ
ଆପଣାର ନାମରେ ଯେ ମେଦିନୀକି ସ୍ଥାପି ।
ତେଣୁ କରି ମିଥିଲା ନାମ ହେଲା ମହୀ
ଦଶରଥ ଆଗେ ଏହା ସତ୍ୟାନନ୍ଦ କହି ।
ମିଥିଲାର ନନ୍ଦନ ଯେ ଉଦ୍ୟାନକେ ରାୟେ
ଉଦାନ ବସୁ ନାମରେ ତାହାର ତନୟେ ।
ନନ୍ଦିବର୍ଦ୍ଧ ନାମରେ ତାହାର ଯେ ସୁତ
ସୁକେତ ନାମରେ ତାର ନନ୍ଦନ ହେଲା ଜାତ ।
ଏହାର ନନ୍ଦନ ଯେ କରଜ ଜାତ ହୁଏ
ତାହାଠାରେ ମହାଦେବ ଶିବଧନୁ ଦିଏ ।
ସେ ରାଜା ମହାଦେବ ଧନୁକୁ ପୂଜାକଲେ
ଭୋଗରାଗ ଭିଆଇଲେ ଭଣ୍ଡାରେ ରଖାଇଲ ।
ସେ ରାଜାର ନନ୍ଦନ ଯେ ବ୍ରହ୍ମବ୍ରତ ହୋଇ
ଆତ୍ମା ଦ୍ୱିଜ ବୋଲି ତାର ନନ୍ଦନ ଉପୁଜଇ ।
ସୁବତ୍ର ବୋଲି ହୋଇଲା ତାହାର ତନୟେ
ମୁକେରୁ ବୋଲିଣ ଯେ ନନ୍ଦନ ଉପୁଜାଏ ।

ଅକିର୍ତ୍ତିତ ନାମ ହେଲା ତାହାର ତନୟେ
କୃତିସେନ ନାମରେ ତାହାର ପୁତ୍ର ହୁଏ ।
ଧ୍ରୁବସେନ ନାମେଣ ଯେ ତାହାର କୁମର
ଭୋଜମନୁ ନାମେଣ ନନ୍ଦନ ଅବତାର ।
ପ୍ରେମ ନାମରେ ହୋଇଲା ତାହାର ତନୟେ
ସତ୍ୟ ପ୍ରେମ ବୋଲି ସେ ନନ୍ଦନ ଉପୁଜାଏ ।
କୃତପ୍ରେମ ବୋଲି ତାହାର ତନୁଜ
ତାହାର ତହୁଁ ହେଲା ସିଦ୍ଧ ପ୍ରେମ ରାଜ ।
ବମୁରୋମ ନାମରେ ଯେ ତାହାର ନନ୍ଦନ
ତାହାଠାରୁ ତିନି ପୁତ୍ର ହେଲେ ଉତ୍ପନ୍ନ ।
ଯେସନେ ବାଲ୍ମିକ କୁଶଧ୍ୱଜ ତିନି
ରାଜା ହୋଇଣ ସେହି ପାଳନ୍ତି ମେଦିନୀ ।
ଏହି ଜନକ ମିଥିଳାରେ କଲେ ରାଜପଣ
ଯାଗ ତପ କରି ବ୍ରହ୍ମମୁନି ହେଲେ ଜାଣ ।
ବାଲ୍ମିକ ସିଦ୍ଧବନେ ଯାଇଣ ତପ କଲା
ତେଣୁଟି ସିଦ୍ଧଋଷି ସଙ୍ଗରେ ଗଣା ହେଲା ।
ସାନଭାଇ କୁଶଧ୍ୱଜ ଅନେକ ତପ କରି
ଶୂଦ୍ରମୁନି ହୋଇଣ ସେ ବୈଶାଳ ପୁରେ ମିଳି ।
ବୈଶାଳ ରାଜା ଯେ ଅଟଇ ଦିନକର
ସୋମବଂଶ ଘେନିଣ ସ୍ୱର୍ଗକୁ ଗଲା ବୀର ।
ଗଲାବେଳେ କୁଶଧ୍ୱଜକୁ ରାଜ୍ୟ ଦେଇଗଲେ
ତେଣୁଟି କୁଶଧ୍ୱଜ ସେ ରାଜ୍ୟେ ରାଜା ହେଲେ ।
ସେ କୁଶଧ୍ୱଜର ଯେ ଦୁହିତା ଅଟେ ବେନି
ଜନକର ବଚନେ ଅଇଲେ ଯେ ଘେନି ।
ଭରତ ଶତୃଘନକୁ ଯେ ଦେଖି ଦୋଷ ହେଲା
ସେ ଦୁହିଁକି ବରିଣ ନିଜପୁରେ ଗଲା ।
ମାଳିନୀ ନାମରେ ତାର ଜ୍ୟେଷ୍ଠ ଯେ ତନୟୀ
ସେ ଦୁହିତା ବିଭା ଯେ ଭରତକୁ କରିବଇଁ ।
ଶୁଳିର୍ତ୍ତା କନ୍ୟାକୁ ସେ ଶତୃଘନରେ ଦେବ
ସେହି ତୁମ୍ଭ ସମୁନ୍ଧି ଶୁଣ ଅଯୋଧ୍ୟା ନରେନ୍ଦ୍ର ।
ଲକ୍ଷ୍ମଣକୁ ଉର୍ମିଳା ଯେ ଶ୍ରୀରାମରେ ସୀତା
ଯତନରେ ଏହା ଭିଆଇଣ ଅଛି ଧାତା ।
ତୁମ୍ଭ ତିନି ରାଣୀରୁ ଚାରିପୁତ୍ର ଜାତ
ସେ ବେନି ଭାଇଙ୍କଠାରୁ ଚାରିକନ୍ୟା ସମ୍ଭୂତ ।
ଶୁଣିକରି ଦଶରଥ ହୋଇଲେ ଆନନ୍ଦ
ମୁଖ ବିକାଶଇ ଯେହ୍ନେ ପୂର୍ଣ୍ଣମୀର ଚାନ୍ଦ ।

ବଶିଷ୍ଠଙ୍କ ମୁଖ ଚାହିଁ କହନ୍ତି ବଚନ
ଭୋ ମୁନି ହେ ବେଗ ଅନୁକୂଳ ତୁମ୍ଭେ ଘେନ ।
ଦଶରଥ ଜନକ ଦୁହିଁଙ୍କ ବାଣୀ ଶୁଣି
ବଶିଷ୍ଠ ସତ୍ୟାନନ୍ଦ ବିଚାରି ଯୋଗ ପୁଣି ।
ଜ୍ୟେଷ୍ଠମାସ ଶୁକ୍ଳପକ୍ଷ ଏକାଦଶୀ ଦିନ
ଚନ୍ଦ୍ରବାର ହସ୍ତା ନକ୍ଷତ୍ର ବିଦ୍ୟମାନ ।
ସ୍ୱାତି ନାମେ ଯୋଗ ଯେ କରଣ ଶଇତୁଲ୍ୟ
ଏଗାର ଘଡ଼ିରେ ହେବ ବରଣ ଅନୁକୂଳ ।
ଧନୁ ଲଗ୍ନ ପ୍ରବେଶ ଶ୍ରୀରାମ ହେବେ ବିଭା
ସେ ଦିବସ ସିଦ୍ଧ ନାମ ଯେ ମହାପ୍ରଭା ।
ଶ୍ରୀରାମ ଚନ୍ଦ୍ର ରାଶିକି ଅଟଇ ସିଦ୍ଧ ତାର
ତୃତୀୟ ଚନ୍ଦ୍ର ତାର ଅଟଇ ବଳିଆର ।
ଜାନକୀର ମିତ୍ର ତାର ଅଟଇ ଯେ ଦିନ ।
ଦ୍ୱାଦଶ ଚନ୍ଦ୍ରକୁ ମାତ୍ର ଦେବା ଶଙ୍ଖଦାନ ।
ଦଶମ ଚନ୍ଦ୍ର ଏହାକୁ ଅଟଇ ମହାପ୍ରୀତି
ବର କନ୍ୟାକୁ ଦୁହିଁଙ୍କର ଦେବତାଙ୍କ ଜାତି ।
ଦଶମ ଚନ୍ଦ୍ର ଯୋଗରେ ଦୋଷ ନାହିଁ କିଛି
ସପ୍ତ ମାଳାରେ ଦିଗ କହଇ ବ୍ରହ୍ମବଶି ।
ନାଗନକ୍ଷ ଚନ୍ଦ୍ର ଅଟେ ଅତି ବଳବାନ
ବିଭା ବିଧି ବିଧାନ ଅଟଇ ସେହି ଦିନ ।
ଭରଥ ଶତ୍ରୁଘନକୁ ଏହି ଶୁଭ ହୋଇ
ଅଶ୍ଳେଷା କକଡ଼ାରେ ହେ ଜନମ ବେନି ଭାଇ ।
ମାଳିନୀ କନ୍ୟାରେ ସେ ଜ୍ୟେଷ୍ଠା ବିଚ୍ଛାପୁଣ
ଦୁହେଁ ବ୍ରହ୍ମ ରାକ୍ଷସ ସେ ଦିନ ଶୁଭଦିନ ।
ଉର୍ମିଳା ନକ୍ଷତ୍ର ରେବତୀ ଯେ ମୀନ
ଲକ୍ଷ୍ମଣର ନକ୍ଷତ୍ର ଏହି ଅଟେ ପୁଣ ।
ବେନିଜନ ଦେବତା ଅଟନ୍ତି ସ୍ୱଜାତି
ଏ ରୂପେ ଯୋଗ ଲଗ୍ନ ନମିଲେ ନୃପତି ।
ଶୁଳିକର୍ତ୍ତାଙ୍କ କକଡ଼ା ରାଶିରେ ଅମୃର
ଶତୃଘନ ଏହାର ଯୋଗାଏ ଭଲ ବର ।
ଏ ଚାରିବରଙ୍କୁ ଯୋଗାଏ ସେହି ଦିନ
ବିଚାରିଣ ବଶିଷ୍ଠ କହିଲେ ସେ ତିଥି ଦିନ ।
ପ୍ରହରକ ପର୍ଯ୍ୟନ୍ତେ ଶୁକ୍ରଙ୍କର ବେଳ
ମିଥୁନ ଲଗ୍ନରେ ହେବ ବରଣ ଅନୁକୂଳ ।
କାଲି ତିଥି ବେନି ହୋଇବ ଶୁକ୍ରବାର
ବୁଧବାର ପରବେଶ ପହରେ ଭିତର ।

ମିଥୁନ ବେଳରେ ହେବ ସୀତାଙ୍କ ଦେଖୁଣି
ସଭାଜନେ ଆନନ୍ଦ ହୋଇଲେ ଏହା ଶୁଣି ।
ଏଥୁ ଅନନ୍ତରେ ଶୁଣ ସଭାଜନ ଆସ୍ଥାନ
ଯେ ଯାହାର ପୁରକୁ ଚଳିଲେ ସର୍ବଜନ ।
ବିବିଧ ବାଜଣା ମାନ ବାଜେ ବୀର ତୂର
ଲୋକ ମହା ଗହଳ ଯେ ଶବଦ ବୀର ତୂର ।
ନିଜ ନବରେ ଜନକ ପ୍ରବେଶ ହୋଇଲେ
ସତ୍ୟାନନ୍ଦ ରାଇ ସେ କଥାନ୍ତି ବିଚାରିଲେ ।
ନଗ୍ରକୁ ମଣ୍ଡନି କରାଇବ ଉତ୍ସବ
ବିଭା ବିଧି ବିଧାନ ଭିଆଇବ ସର୍ବ ।
ଶୁଣିଣ ସତ୍ୟାନନ୍ଦ କରାଇଲେ ସିଦ୍ଧି
ପୁରାଣରେ ଯେହ୍ନେ ମଙ୍ଗଳର ବିଧି ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଯେଉଁ କଥା ଶୁଣିଲେ ଦୂରିତ କ୍ଷୟକରି ।
ଆନନ୍ଦ ହୋଇଣ ଯେ କହେ ଦଶରଥ
କାଲି ଦେଖୁବା ହେବା ଚାରି ବଧୂ ସେତ ।
ତେବେକ ମୋର ମନ ହୋଇବାକୁ ସୁସ୍ଥ
ମୋ କୁଳ ଉଦ୍ଧିରିଲେ ଜନକ ତପୋବନ୍ତ ।
ଯାଙ୍କ ଯୋଗୁଁ ଚାରିପୁତ୍ର ପବିତ୍ର ମୋର ହେଲେ
ଜନକ ରାଜାଙ୍କର ଜୁଆଁଇ ବୋଲାଇଲେ ।
ବଶିଷ୍ଠ ବୋଇଲେ ତୁମ୍ଭେ ଶୁଣ ନୃପବର
ରବି ତଳରେ କୀରତି ରହିଲା ତୁମ୍ଭର ।
ଯେଉଁ ଭାଗ୍ୟେ ପାଇଲ ଶ୍ରୀରାମ ଚନ୍ଦ୍ର ପୁଣ
ତିନି ଭୁବନରୁ ଭୟ ମୋର ଗଲା ଜାଣ ।
ଜନକ ମହାଋଷି ସଙ୍ଗରେ ସତ୍ୟବାଦି
ତାହାର ମହିମା ତିନି ଭୁବନେ ଆଚ୍ଛାଦି ।
ଚାରି ନନ୍ଦନକୁ ତୋର ଚାରି ଝିଅ ଦେଲା
କନ୍ୟାଦାନ ହେଲେ ତାକୁ ସ୍ୱର୍ଗ ପ୍ରାପ୍ତି ପରା ।
ଋଷ୍ୟଶୃଙ୍ଗ ଆସିବାରୁ ଉଦୟ ତୋର ହେଲା
ଭଲଯୋଗେ ବିଭାଣ୍ଡକ ନନ୍ଦନ ଚଳୁଦେଲା ।
ଶୁଣିଣ ଦଶରଥ କୈକୟୀ ଭାଇ ରାଇ
ବୋଇଲେ ସୈନ୍ୟବଳ ଘେନି ଚଳ ତୁହି ।
କଉଶିକ ବନଯାଏ ବେଗ ହୋଇ ଯାଅ
ବିଭାଣ୍ଡକ ପୁତ୍ରବଧୂ ବରିଣ ଅଣାଅ ।
ଶୁଣିଣ କୈକୟୀ ରାଇ ବେଗ ହୋଇ ଗଲା
କଉଶିକ ବନରେ ପାଞ୍ଚ ଦିନରେ ମିଳିଲା ।

ଋଷ୍ୟଶୃଙ୍ଗଙ୍କୁ ଯାଇଣ ନମସ୍କାର କଲା
ଶ୍ରୀରାମ ବିଭାଘର ଯିବ ସେ ବୋଇଲା ।
ଶୁଣିକରି ଋଷ୍ୟଶୃଙ୍ଗ ଘରଣୀ ସଙ୍ଗେ ଘେନି
ପ୍ରବେଶ ହେଲେ ଆସି ମିଥିଳାରେ ପୁଣି ।
ବଶିଷ୍ଠ କଉଶିକକୁ ଦେଖି ଓଳଗିଲେ
ଜନକ କୁଶଧ୍ୱଜ ଚରଣେ ସ୍ତୁତି କଲେ ।
ଦଶରଥ ମନେଣ ମାନ୍ୟଧର୍ମ କଲେ
ସକଳ ନୃପତି ଉଠି ଚରଣେ ନମିଲେ ।
ଶ୍ରୀରାମ ଲକ୍ଷ୍ମଣ ଯେ ଭରତ ଶତୃଘନ
ବାରତା ପାଇଲେ ଯେ ମାତାଙ୍କ ପୁରେଣ ।
ଆସିଣ ଚାରିଭାଇ ନମସ୍କାର କଲେ
ସୁକଲ୍ୟାଣ କରିଣ ମୁନି ଚଳିଗଲେ ।
ସତ୍ୟାନନ୍ଦ ଆସିଣ ଗଉରବ କଲେ
ଜନକ ଋଷି ପୁରେ ପ୍ରବେଶ ହୋଇଲେ ।
ବେଗେ ଯାଇ ଜନକ ସୀତୟାରେ କହିଲେ
ନଣଦେଇ ଋଷ୍ୟଶୃଙ୍ଗ ଆସିଣ ମିଳିଲେ ।
ଶୁଣିଣ ଜାନକୀ ଚାରି ଭଗ୍ନି ଘରକରି
ଋଷ୍ୟଶୃଙ୍ଗ ଚରଣେ ଓଳଗେ ବେଗକରି ।
ସୁଲକ୍ଷଣୀ ହୁଅ ବୋଲି ବୋଇଲେ ମୁନିବର ।
ସେଠାରୁ ଚାରିଭଗ୍ନି ଚଳିଲେ ସତ୍ୱର ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଶାନ୍ତା ଋଷିଆଣୀ ମାତାଙ୍କ ପୁରେ ମିଳି ।
ସକଳ ଜନନୀକି କଲେକ ନମସ୍କାର
ତିନିଭାଇ ଘେନି ଶ୍ରୀରାମ ମିଳିଲେ ମାତାପୁର ।
ଜ୍ୟେଷ୍ଠ ଭଗ୍ନିକି ଦେଖିଣ ନମସ୍କାର କଲେ
ସୁକଲ୍ୟାଣ କରିଣ ସାଏନ୍ତା ଚଳିଗଲେ ।
ଜନକ ନବରେ ଚରଣେ ନମିଲେ ତୁରିତ
ବଧୂମାନଙ୍କୁ ଦେଖିଣ ସାଏନ୍ତା ହରଷ
ଜନକଙ୍କୁ ଋଷ୍ୟଶୃଙ୍ଗ ଘରଣୀ ନମିତ ।
ଏଥୁ ଅନନ୍ତରେ ଯେ ରଜନୀ ପରବେଶ
ଯେ ଯାହା ନବରେ ହୋଇଲେ ପ୍ରବେଶ ।
ଦଶରଥ ନୃପତି ନିତ୍ୟକର୍ମ ସାରି
ସକଳ ବିଧି ବଢ଼ାଇ ଶଯ୍ୟାରେ ପହୁଡ଼ି ।
କେତେବେଳ ଉତାରୁ ରଜନୀ ପ୍ରଭାତ
ଶୀତଳ ଗୁଣ ଘେନି ବହଇ ମରୁତ ।

ଶଯ୍ୟା ତେଜି ବହନ ଉଠିଲେ ନୃପବର
ଏବେ ବିଧି ବିଧାନ ସାରିଲେ ତତପର ।
ଏସନେକ ସମୟେ ଜନକ ଦୂତ ଆସି
ସଭାକୁ ବିଜେକର ବଚନ ପ୍ରକାଶି ।
ଶୁଣିଣ ଦଶରଥ ରାଜା ଦେବାର୍ଚ୍ଚନ ସାରି
ହୟ ପୃଷ୍ଠେ ଆରୋହଣ କଲା ଦଣ୍ଡଧାରୀ ।
ଶିରେ ବୀରଛତ୍ର ତାର ଉଡ଼େ ଫରହର
ଚତୁରଙ୍ଗ ବଳ ତା ସଙ୍ଗରେ ଅପାର ।
ଅଶ୍ୱପରୁ ଉତୁରି ସଭାରେ ପ୍ରବେଶ
ଜନକଙ୍କ ଚରଣେ ନମଇ ଅଜ ଶିଷ୍ୟ ।
ବଶିଷ୍ଠ ବିଶ୍ୱାମିତ୍ର ଆଦି ତପିଜନ
ଏମାନଙ୍କୁ ନମସ୍କାର ଦଶରଥ ରାଜନ ।
ଦେଖିଣ ସୁକଲ୍ୟାଣ କରନ୍ତି ସର୍ବ ଯତି
ଗଉରବ ପାଇଁ ତହିଁ ବସିଲେ ନୃପତି ।
ବଶିଷ୍ଠ କହନ୍ତି ଯେ ଜନକ ତୁମ୍ଭେ ଶୁଣ
ସଜକରି ଜାନକୀକି ବେଶକରି ଆଣ ।
ବୃଦ୍ଧବେଳ ପରବେଶ ହେଉଅଛି ଆସି
ସଜକରି ଘେନି ଆସ ସୀତା ଶୁଭ୍ରକେଶୀ ।
ଭୃଗୁବାର ଆଜି ତାର ପ୍ରଥମ ଚାରିଦଣ୍ଡ
ଉଭୟ ହୋଇ ଭୋଗ କଲେ ମାରତଣ୍ଡ ।
ଏବେ ତିନି ଘଡ଼ି ପରବେଶ ହେଲା ଆସି
ସଜକରି ଅଣାଅ ଜାନକୀ ଶୁଭ୍ରକେଶୀ ।
ଶୁଣିଣ ଜନକ କୁଶଧ୍ୱଜ ମୁଖ ଚାହିଁ
ବେଗକରି ଜାନକୀଙ୍କି ଘେନି ଆସ ଯାଇ ।
ଉର୍ମିଳା ସହିତରେ ତୁମ୍ଭ ଝିଅ ବେନି
ସଜ କରି ବେଗ କରି ଆସ ତୁମ୍ଭେ ଘେନି ।
ଜନକ ମୁଖରୁ ଶୁଣି କୁଶଧ୍ୱଜ ଯାଇ
ମୁଦୁସୁଲି ଆଗରେ ଭିତରକୁ ସେ କହି ।
ତୁ ବେଗେ ଯାଇ ଜଣାଅ ନୃପତିର ରାଣୀ
ଜାନକୀ ତିନି ଭଗ୍ନିକି ସଜ କରିଦିଅ ମୋତେଆଣି ।
ତକ୍ଷଣ ମୁଦୁସୁଲି କହିଲା ବେଗେ ଯାଇ
ଜାନକୀକି ସଜକରି ଦିଅସି ଗୋସାଇଁ ।
ନୃପତିଙ୍କ ଆଜ୍ଞାରେ ଦୁଆରେ କୁଶଧ୍ୱଜ
ଅନୁକୂଳ ବେଳ ହେଲା ବେଗେକର ସଜ ।
ଏମନ୍ତ ଶୁଣିକରି ଜନକ ରାଣୀମାନ
ମୁଦୁସୁଲି ବଚନେ ହରଷିତ ମନ ।

ସୁବର୍ଣ୍ଣ ପୀଢ଼ା ଉପରେ ବସାଇଲେ ସୀତା
ଚାରି ପାରୁଶରେ ବେଢ଼ିଛନ୍ତି ସର୍ବ ମାତା ।
ପବିତ୍ର ସ୍ୱଚ୍ଛ ଜଳକୁ ସୁବାଷିତ କରି
ତାହା ନେଇଣ ସୁବର୍ଣ୍ଣ ଗରିଆରେ ଭରି ।
ଶତେକ ଜଳଘଟ ବସାଇଲେ ନେଇ ।
ଜାନକୀ ମସ୍ତକେ ଦିବ୍ୟ ସୁଗନ୍ଧ ଲଗାଇ ।
ଶରୀରେ ମୂଳପାରନ ତୃପ ଲଗାନ୍ତି
ତିଳ ଅଏଁଳା ଘେନିଣ ଘଟକି ଛଡାନ୍ତି ।
ନବଗ୍ରହ ଅଏଁଳା କସ୍ତୁରୀ ଲଗାଇ
ଜାନକୀର ମସ୍ତକେ ଲେପିଲେ ତାହା ନେଇ ।
ଘଟି ଘଟି ମସ୍ତକେ ତଇଳ ରାବ ଲେଛି
ଦିବ୍ୟ ସରୁ ବସନ ଘେନିଣ ତାହା ପୋଛି ।
ମହା ସୁଗନ୍ଧ ପୁଣ ଲେପିଲେକ ନେଇ
ଅଷ୍ଟାଙ୍ଗ ଶରୀରେ ଦିବ୍ୟ ସୁଗନ୍ଧ ଲଗାଇ ।
ତୀର୍ଥଜଳ ଘେନିଣ ଧୋଇଲେ ପୁଣ କେଶ
ପୁଣିହିଁ ପୋଛିଲେ ଘେନି ଦିବ୍ୟ ସରୁ ବାସ ।
ସୁଗନ୍ଧ ହଳଦିରେ ଟଭା ରସ ଗୋଳି
ଜାନକିର ଶ୍ରୀଅଙ୍ଗରେ ଲେପିଲେ ନେଇ ବାଳି ।
ସୁବାସିତ ଜଳରେ ଧୋଇଲେ ପୁଣି କାୟେ
ବସନ ଘେନିଣ ଅଙ୍ଗ ପୋଛି ଦ୍ୟନ୍ତି ମାଏ ।
ଶୁଦ୍ଧ ସୁବର୍ଣ୍ଣ ଯେସନେ ଚିକ୍‌କଣ ଭସାଣି
ତହୁଁ ଶହେ ଗୁଣେ ଶୋଭା ଜନକ ଦୁଲଣୀ ।
କେଶକୁ ଶୁଖାଇଲେ ବିଞ୍ଚଣି ଘେନିବିଞ୍ଚି
ଚାଚେର ଚିକୁର କେଶ ବଂଶ ମହାଯୋଡ଼ି ।
କୃଷ୍ଣ ଚାମରୁ ଅଧିକ ଦିଶଇ ଯେ କଳା
ନବୀନ ଘନ ତମାଳ ଲତାକି ଭୃଙ୍ଗ ମେଳା ।
ମୟୂର କଡ଼ ପରାୟେ ଝଟ ଝଟ ଦିଶି
ଗୁଞ୍ଜାର ମୁଖ ମର୍କତ ପୁଚ୍ଛ ପରକାଶି ।
ଶିଖ ପରିଯନ୍ତେ ତାର କୟର ରାବ ନାହିଁ
ବସିଥିଲେ କୁନ୍ତଳ ଲାଗଇ ତାର ଭୂଇଁ ।
ଶ୍ରଦ୍ଧାକରି ବସନ୍ତି ବେଢ଼ିଣ ସର୍ବନାରୀ
ସୁବର୍ଣ୍ଣର କଙ୍କଣି ଯେ ଘେନିଣ କେଶ ଚିରି ।
ଭିତର ଉଦାଭାବ ଛାଡ଼ିଲାକ ଯହୁଁ
ବିବିଧ ପୁଷ୍ପ ଛାମୁରେ ଦେଲେକ ଯେ ତହୁଁ ।
ଚମ୍ପାବକୁଳ ସେବତୀ କୁସୁମ ସମକରି
ଆବରହିଁ ନାଗେଶ୍ୱର ମରୁଆକୁ ଭରି ।

ଗୋରଚନା କୁରୁବକ ରଖିଣ କୁରୁବେଲି
ଥୋକାଏ ବସି ମାରିଲେ ବସନ୍ତର ମଲ୍ଲୀ ।
କୁସୁମକୁ ଘେନିଲେ ସେ ସମଭାଗ କରି
ଉପରେ ରଞ୍ଜିଲେ ନେଇ କର୍ପୂର କସ୍ତୁରି ।
ଜାନକୀର ମସ୍ତକେ ନିରୋଳି ତାହା ଆସି
ତାରାଗଣ ଗଗନେ କି ଏକମେଳେ ଆସି ।
ଖୋସାକୁ ଖୋସିଲେ ସେ ଅତି ଯତ୍ନକରି
ଗଭା କେତକୀ ଦଳ ଯେ ଉପରକୁ ଡେରି ।
ପଛକୁ ଏହା ନେଇଣ ବସିଲେକ ଯହୁଁ
ସୁନ୍ଦର ମୁଖ ଅତି ସୁନ୍ଦର ଦିଶେ ତହୁଁ ।
ବେଲ ବଳିଲା ପରାୟ ଦିଶଇ ବଳିଣ
ସ୍ୱୟଂ ଏ ବିଶ୍ୱକର୍ମା କି କରିଛି ଘଟଣ ।
କିବା ଚିତ୍ରକାର ତାହା ଚିତ୍ରରେ ଲିହିଲା
ଖୋସିବାର ଖୋସାମଣି ସୁନ୍ଦର ଦିଶିଲା ।
ଖୋସାନାଭ ଭ୍ରମର ଛନ୍ଦରେଣ ବୁଲେ
ତହିଁରେ ଖୋସିଲେ ନେଇ କନକ ପଦ୍ମଫୁଲେ ।
ଦିବ୍ୟ ବସନ କୁଞ୍ଚିଣ ଦେଲାକ ସିଖାରି
ଦିବ୍ୟରଙ୍ଗ ବାନ୍ଧି ଯେ ପତନି ସବୁ ସାଡ଼ି ।
ତାରାମଣ୍ଡଳ ଜିଣି କୁସୁମ ପନ୍ତି ପନ୍ତି
ବସନ ଅଞ୍ଚଳରେ ଖୋସିଲେ ଗଜମୋତି ।
ସେ ବସନକୁ ବାଛିଣ ପିନ୍ଧାଇଲେ ନେଇ
ରତ୍ନପୀଠ ପରୁ ଦେବି ଅଇଲେ ଓହ୍ଲାଇ ।
ପାଟଖରଡ ଉପରେ ପଦ୍ମାସନେ ବସି
ଆଭରଣମାନ ଘେନି ଜନନୀମାନେ ଆସି ।
ବେନି କର୍ଣ୍ଣେ ଖଞ୍ଜିଲେ ମୁକୁତାର କାପ
ହରମୟକ ଦିଶଇ ମୁକୁତାର ଧାପ ।
ତଥି ଚାରି ପାରୁଶରେ ଶୋହେ ହିରାର ନାୟକ
ମୁକୁତା ବେଢ଼ ପାଖରେ ବସିଛି ମାଣିକ୍ୟ ।
କଳାମେଘ ବିଜୁଳି ଯେସନେ ଝକମକ
ତେସନେକ ଉପମାକି ଅବା କହିବାକ ।
କାହିଁଲେ ପଦ୍ମରାଜ କାହିଁରେ କୁରୁବିନ୍ଦ
ଚନ୍ଦ୍ରତାପ ଘଟଣ ଫୁଟିଲା ଅରବିନ୍ଦ ।
ନିଳମୟ କରେ ପୁଣ କୁନ୍ଦନର ଫୁଲ
ଶ୍ରବଣ ଭାଗ ମଧରେ ଦିଶିଲା ଅମୂଲ୍ୟ ।
ପୁଣ ତିଥି ଶିଖରେ ଯେ ଖଞ୍ଜିଲେ ବେଣ୍ଟୁଲା
ଶରୁମୋତି ଝୁମ୍ପିତାର ତହିଁକି ଘଟିଲା ।

ମାଳି ଶାଳିଅଁବଟଂଶ ଖଞ୍ଜିଲେ ପୁଣନେଇ
ଉପମା ଦେବାକୁ ଆଉ ବ୍ରାହ୍ମଣ୍ଡେ ନଦିଶାଇ ।
ଝିଲିମିଲି ଚନ୍ଦ୍ର ଝୁମ୍ପାମାଳୀ ପୁଣ ଦେଲେ
କସ୍ତୁରୀ ସିନ୍ଦୂର ଏକତ୍ର ଗୋଳି ଚିତ୍ର କଲେ ।
ତିଳଫୁଲ ସୁନ୍ଦର ନାଶା ଶୋଭାବନ
ପଞ୍ଚଗଜ ମୋତି ତହିଁ କଲେକ ମଣ୍ଡନ ।
ନାଶା ଆଉ ପଟେ ଶୋଭା ମରକତ ଗୁଣା ।
ଜଳି ଉଠୁଅଛି ହେମ ସୁନା ନାକଚଣା ।
କାର୍ତ୍ତୀକ ପୁଞ୍ଜାକୁ ଶୋଭା ଦିଶଇ ତାହାର
ଉପମା ଦେବାକୁ ନ ଦିଶଇ ବେନିପୁର ।
କଡ଼ଦେଶ ଖଞ୍ଜିଲେ ସପତ ସରି ମୋତି
ମଧେ ମାଣିକ ନାୟକ ଅଗଣ୍ଯର ଜ୍ୟୋତି ।
ପୁଣିତ ଥିଲେରେ ଜାଉଁଳି ସୂନା ସୂତା
ମଧଦେଶେ ଗୋଟି ଗୋଟି ଗୁନ୍ଥିଛି ମୁକୁତା ।
ପୂର୍ଣ୍ଣଚନ୍ଦ୍ରରୁ ଅଧିକ ଉଜ୍ଜ୍ୱଳ ତାହାର
ତହିଁର ତଳେ ଦେଲେ ନୀଳମଣି ହାର ।
ଚାରିଜାତି ରତ୍ନେ ଚଉସର ମାଳାଦେ଼ଲେ
ତଥି ତଳେ ମର୍କତ ପଦକ ଖଞ୍ଜିଲେ ।
ପୁଣ ସୁବର୍ଣ୍ଣ ଗଣ୍ଡି ପ୍ରବାଳ ମାଳ ଦେଇ
ଏକଗୋଟି ମୁକୁତା ମାଳାକୁ ଲମ୍ବାଇ ।
ପୁଣି ମଣ୍ଡିଲେ ନେଇ କନକ ପଦ୍ମମାଳ
ମହା ଶୋଭା ଦିଶିଲା ସୁନ୍ଦର ବକ୍ଷସ୍ଥଳ ।
ହିରାମୟ ପଦ୍ମକାପ କର୍ଣ୍ଣେଣ ଭୂଷଣ
ଶରତ ଆଦିତ୍ୟ ପରାଏ ତାହାର କିରଣ ।
ତାର ତଳେ ଅମୂଲ୍ୟ ସୁନ୍ଦର ବିଦମାଳି
ପାଟ ସୂତ୍ରେ ଗୁନ୍ଥିଣ ବାନ୍ଧିଲେ ନେଇ ବାଳୀ ।
ମର୍କତ କଙ୍କଣ ଯେ ସୁବର୍ଣ୍ଣ ସିକୁଳି
ରତନ ଚୂଡ଼ି ତେଜ ବିଜୁଳି ଜିଣି ଟଳି ।
ଅଙ୍ଗୁଷ୍ଠିମାନଙ୍କରେ ମୁଦ୍ରିକା ଆଭରଣ
କାହିଁରେ ବଂଶଧର କାହିଁରେ ମସ୍ୟଚିହ୍ନ ।
କଟିରେ କଟି ମେଖଳା ଖଞ୍ଜିଲେ ଯତ୍ନକରି
ବସିଲାକ ତାର ହାର ଆଣ୍ଠୁକୁ ଆବୋରି ।
କିଙ୍କିଣିରେ ଲାଜ ଶୋଭା ଗଜମୋତି ଝରା
ନୀଳମଣି ମାଣିକ୍ୟ ଦିଶଇ ଅତି ତୋରା ।
ବେନି ଚରଣେ ନୂପୁର ରତ୍ନମୟ କାମ
ପାଦ ଚାପନ୍ତେଣ ସେ ଶୁଭଇ ଝମଝମ୍ ।

ଚରଣ ଅଙ୍ଗୁଳିରେ ମୁଦ୍ରିକା ଝଟକନ୍ତି
ବିବିଧ ମଣିମାନ ତହିଁରେ ଲାଗିଛନ୍ତି ।
ଆବରହିଁ ନାନା ଜାତି ଅଳଙ୍କାର ଲାଇ
ମାତାଙ୍କ ମଧ୍ୟେ ବିଜେ ଶରଦଚନ୍ଦ୍ର ମୁହିଁ ।
ଶୀରେ ସୀମନ୍ତ ଯେ ଖଞ୍ଜିଲା ମୋତିମାଳି
ପୁଣି ମଣି ଖଞ୍ଜିଲେ ଯେ ଲଲାଟ ମୁକୁଳି ।
ତାମ୍ବୁଳ ଭୁଞ୍ଜାଇଲେ ଗଞ୍ଜିଲେ କଜ୍ଜଳ
ନୟନେ ବେନି ନିନ୍ଦଇ ନିଳ ଉତ୍ପଳ ।
କଜ୍ଜଳ କୁଳକୁ ରଞ୍ଜିବାରୁ ଦିଶିଲା ସୁନ୍ଦର
କୁସୁମ ଆବୋରି କି ବସିଲା ଭ୍ରମର ।
ଅଞ୍ଜନକୁ ରଞ୍ଜିଲେ ଯେ ଅତି ସରୁ କରି
ନୟନରେ ଲାଗନ୍ତେ ସେ ହୋଇଲା ବିସ୍ତାରି ।
ଦେଖିକରି ବିଚାର କରନ୍ତି ନାରୀଗଣ
ମଦନ ରାଜନ କି ଧଇଲା ଧନୁର୍ବାଣ ।
ସରୁ କଜ୍ଜଳରେ ଦେଖି ବ୍ୟାପିଗଲା ଆଖି
ସ୍ୱାମୀର ସଉଭାଗୀ ହୋଇବ ଶଶିମୁଖି ।
ଚନ୍ଦନର ଅର୍ଦ୍ଧ ଇନ୍ଦୁ କପୋଳେ ଦିଅନ୍ତି
ଅର୍ଦ୍ଧକରି ପୁଣି ସେ କସ୍ତୁରି ଚିତା ଦ୍ୟନ୍ତି ।
ସିନ୍ଦୁର ବିନ୍ଦୁ ତହିଁର ମଧ୍ୟେ ପୁଣ ସହେ
ଚନ୍ଦ୍ର କୋଳେ ଯେସନେ ଅରୁଣ ଶୋଭାପାଏ ।
ଅଳତା ରଙ୍ଗ ଘେନି ଚରଣେ ଚିତ୍ରକଲେ
କର୍ପୂର କସ୍ତୁରି ଅଙ୍ଗେ ମିଶାଇ ଘଷିଲେ ।
ଅଳକାକୁ ମଣ୍ଡିଲେ ଯେ କେରି କେରି କରି
ମଦନ କମଳ ଗୋଟି ଭ୍ରମର ଆବୋରି ।
ବିଚିତ୍ର ପାଟେକ ଉପରାଣ କରି ଦେଲେ
ଶ୍ରୀଫଳ ଗୋଟିଏ ଯେ ହସ୍ତରେ ସମର୍ପିଲେ ।
ଏହି ରୂପେ ଚାରିଭଗ୍ନୀ ବେଶ କରି ଦାସୀ
ଦେଖିକରି ମାତାମାନେ ମନେ ହେଲେ ତୋଷି ।
କୁଶଧ୍ୱଜକୁ କହିଲେ ଦାସୀମାନେ ଯାଇ
ଅଣାଅ ରତ୍ନ ହାନ୍ଦୋଳା ଯାଆନ୍ତୁ ଜେମା ଦୁଇ ।
ଶୁଣିକରି କୁଶଧ୍ୱଜ ହାନ୍ଦୋଳା ବେଗେ ଆଣି
ବିଜେକଲେ ଚାରିଭଗ୍ନି ହାନ୍ଦୋଳାରେ ପୁଣି ।
ହୁଳହୁଳି ଶବଦରେ ଶୁଭିଲା କୋଳାହଳ
ଶଙ୍ଖ ମହୁରୀ କାହାଳି ବାଜଇ ନିରନ୍ତର ।
ବୀର ବାଜା ଦୁନ୍ଦୁଭି ଢୋଲ ଦମା ବାଜେ
କମ୍ପିଲା ମିଥିଳାର ପୁର ଭୂମିଖଣ୍ଡିକ ଯେ ।

ଦାଣ୍ଡରେ ଚଳନ୍ତି ଯେ ନର ନାରୀ ଦେଖି
ହରିବୋଲ ରାମତାଳି ହୁଳହୁଳି ଦ୍ୟନ୍ତି ।
ସଭା ତଳରେ ନେଇ ହାନ୍ଦୋଳା ରୁହାଇଲେ
ଚାରିଭଗ୍ନି ଘେନି ଦାସୀ ସଭାରେ ଉଠିଲେ ।
ରତ୍ନ ଜଗତିପରେ ନେଇଣ ବସାଇଲେ
ଜନକ କୁଶଧ୍ୱଜ ବିଜୟ ପାଶରେ ।
ବୃତ୍ତପାଶେ ଦାସୀଗଣ ବେଢ଼ି ରହିଛନ୍ତି
କ୍ଷଣ କ୍ଷଣକରେ ପୁଣ ହୁଳହୁଳି ଦ୍ୟନ୍ତି ।
ଦେଖିକରି ଚମତ୍କାର ଲାଗିଲା ସବୁନ୍ତି
ପୂର୍ଣ୍ଣଚନ୍ଦ୍ର ଶିଶି କି ପଡିଲା ଆସି ଏଥି ।
କେ ବୋଲଇ ଧନ୍ୟ ଧନ୍ୟ ନାରୀ ଶିରୋମଣି
କେ ବୋଲଇ ଏ ସୁନ୍ଦରୀ ସମସ୍ତ ରୂପ ଖଣି ।
କେ ବୋଲଇ ବିଧାତା ଜଗତ ଚିନ୍ତା ଛାଡ଼ି
ଅନେକ ଯତନରେ ବସିଅଛି ଗଢ଼ି ।
କେ ବୋଲେ ଯେ ଜଗତ ସୁନ୍ଦର ପଣ ଥିଲା
ଭାଳି ଭାଳି ଧାତା ଏହା ଏକଠାବ କଲା ।
କେ ବୋଲଇ ଅଟଇ ସକଳ ଗୁଣ ନିଧି
ଧାତା ନିର୍ମା କରିଅଛି ଏ ସକଳ ସିଦ୍ଧି ।
କେ ବୋଲଇ ଅଟଇ ଏ କେବଣ ଦେବତା
ଅତି ଯତ୍ନେ ମର୍ତ୍ତ୍ୟପୁରେ ଆଣିଛି ବିଧାତା ।
କେ ବୋଲଇ ଅଟଇ ଏ ସ୍ୱୟଂ କମଳିନୀ
କେ ବୋଲଇ ପାର୍ବତୀ ଏ ଈଶ୍ୱର ଘରଣୀ ।
କେ ବୋଲଇ ରୋହିଣୀ ଚନ୍ଦ୍ରର ପ୍ରିୟବତୀ
କେ ବୋଲଇ ତାର ଏହୁ ଦେବଗୁରୁ ପ୍ରୀତି ।
କେ ବୋଲେ ଗଙ୍ଗା ଏ ବରୁଣ ଘରଣୀ
କେ ବୋଲଇ ଯମୁନା ଏ ଯମର ଭଉଣୀ ।
କେ ବୋଲଇ ସାବିତ୍ରୀ ବ୍ରହ୍ମାର ବନିତା
କେ ବୋଲଇ ଅରୁନ୍ଧତୀ ବିଧାତା ଦୋହିତା ।
କେ ବୋଲଇ ସତ ଏହି ଇନ୍ଦ୍ର ମନୋହାରୀ
କେ ବୋଲଇ ଏମାନେ କି ଅଟନ୍ତି ଏହାସରି ।
କେ ବୋଲେ ଅଟନ୍ତି ଏ ଅଷ୍ଟ ଅପସରି
ବିଧାତା ସର୍ଜନା କଲା ଏକ ଦେହ କରି ।
କେ ବୋଲଇ ଏହାକୁ କେହି ନୁହେଁ ପଟାନ୍ତର
ଏ ତିନିପୁର ସୁନ୍ଦରୀ ମଧ୍ୟରୁ ବାହାର ।
କେ ବୋଲଇ ତୁମ୍ଭେମାନେ ହୋଇଲ କି ବାଇ
ଯେ ଉପମାମାନ ଦେଲ ମନକୁ ନ ଆସଇ ।

ଏମାନଙ୍କୁ ଯାଙ୍କ ସଙ୍ଗେ ନକର ତୁଳନା
ମରକତ ସଙ୍ଗେ କର କାଚକୁ ଘଟନା ।
ସାକ୍ଷାତରେ ଲକ୍ଷ୍ମୀ ଏହୁ ଜଗତଜନମାତା
ଶ୍ରୀରାମଚନ୍ଦ୍ର ନାରାୟଣ ଜଗତ କରତା ।
ତାହାର ରମଣୀ ଏହୁ ସମ କେ ନୁହଁନ୍ତି
ଏ ସାଧବ ରମଣୀ ଯୁବତୀ ରତ୍ନାକାନ୍ତି ।
କେ ବୋଲଇ ଆମ୍ଭେମାନେ ଏହୁ ବେନିଚକ୍ଷୁ
ଘେନି ଅନେକ ଯୁବତୀମାନଙ୍କୁ ଦେଖିବୁ ।
ଜାନକୀର ଗୋଟିଏ ରୂପରୁ ଏକ ଗୁଣ
ସମାନ କେହୁ ନାରୀ ହୋଇବ କହ ପୁଣ ।
କେ ବୋଲଇ ଶରୀର ଶୁଦ୍ଧ ସୁବର୍ଣ୍ଣ ପରାଏ
କୁଙ୍କୁମ ଲେପନରେ ଅଧିକ ଶୋଭାପାଏ ।
ଛଣପଟ କୁସୁମର ପରାଏ ବିରାଜି
କୋମଳରେ ଶିରିଷ କୁସୁମ ହେବ ଗଞ୍ଜି ।
ଚମ୍ପା ଶମ୍ପା କେତକିରୁ ଦିଶଇ ଉଗୁଳି
ସୁବର୍ଣ୍ଣ କେଉଁ ଗୁଣେ ଥାପିବ ଏହା ଟାଳି ।
କେ ବୋଲଇ ଜାଣି ନାହିଁ ଏହି କଥାମାନ
ସୀତା ରୂପକୁ ଅହଙ୍କାର କରିଣ ସୁବର୍ଣ୍ଣ ।
ଏଥି ରହି ନପାରି ପଶିଲା ବନସ୍ତେ
ଲଜ୍ୟାରେ ଲୁଚିଲା ଯାଇ ହେମ ପରବତେ ।
ଜମ୍ବୁନଦ ଭିତରେ ଗୁପତ ହୋଇ ରହି
ତେଣୁ କର ଦେବେଅଙ୍ଗେ ଯେ ଆଭରଣ ହୋଇ ।
ଆପଣାର ମର୍ଯାଦା ଯେ ରଖିଲା ଆପଣ
ଧନ୍ୟ ଧନ୍ୟ ସୁବର୍ଣ୍ଣ ତୋହର ବଡ଼ ପଣ ।
ଯଯାତି ବଂଶରେ ହୋଇଲେ ଅବତାର
ଗର୍ବ ମନେ କରି ସେ ଛାଡ଼ିଲେ ବନ ଘର ।
ତୋହର ତିଆରିବାର ବଚନ ନକଲେ
ଚଞ୍ଚଳ ଜଳ ଶଙ୍ଖରେ ବହି ଯେ ଅଇଲେ ।
ଗ୍ରାମପାଶେ ପ୍ରବେଶ ହୋଇଲେ ଯହୁଁ ଆସି
କୋପେ ଶରକୁ ପିତାମହ ଦେଲେ ପେଷି ।
ଜାନକୀର ରୂପକୁ ଅହନ୍ତା ମନେ କରି
ନିଜସ୍ଥାନ ଛାଡ଼ିଣ ଅଇଲା ହେମଝରି ।
ଏବେ ଯାଇ ତୁମ୍ଭେ ତାକୁ ଧରି ଘେନି ଆସ
ଯେମନ୍ତେ ନାଶ ହେବ ତେମନ୍ତକରି ନାଶ ।
ଏହା ଶୁଣି ଧୋଆରଏ ବେଗ ହୋଇଗଲେ
ନଦୀ ମଧ୍ୟେ ପଶିଣ ସେ ସୁବର୍ଣ୍ଣ ଖୋଜିଲେ ।

ଖୋଜି ଖୋଜି ତାହାକୁ ଧଇଲେ ଯତ୍ନ କରି
ବିଧାତା କହିବା ବଚନ ମନେ ଧରି ।
ନଗ୍ରରେ ପ୍ରବେଶ ହୁନ୍ତେ ଦେଖିଲେ ସୁନାରୀ
ସୁନା ନାଶକ ଅସ୍ତ୍ରକୁ କରେ ଅଛି ଧରି ।
ତାହାର ଆଗରେ ଯାଇ କହିଲେ ସମ୍ବାଦି
ବୋଲନ୍ତି ତୋହର ଆମେ ଧରିଅଛୁ ବାଦି ।
କି ବଧାଇ ଦେବୁ ତାହା କହସି ତୁରିତ
ତେବେ ସିନା ଶତ୍ରୁ ସମର୍ପିବୁ ତୋ ପୁରେତ ।
ଶୁଣି କରି ସୁନାରୀ କହଇ ଦେବା ଫେଡ଼ି
କେତେମାନ ଶତ୍ରୁତାକୁ ଦେଖିବା ନିବାଡ଼ି ।
ଆୟ ଅନୁରୂପ କରି ଦେବାନା ବଧାଇ
ଏଡ଼େ ବଡ଼ଶତ୍ରୁ ଯେବେଦେବୁ ତୁ ଧରାଇ ।
ଶୁଣିଣ ଧୋଅରମାନେ ହୋଇଲେ ତୋଷମନ
ସୂନାରୀ କରେ ନେଇ ସମର୍ପି ସୁବର୍ଣ୍ଣ ।
କରେ ଧରି ସୂନାରୀ ତାକୁ ତୁଳକସ କଲା
ଅନଳରେ ପୋଡ଼ି ତାକୁ ବିକୋଡି କାଟିଲା ।
ବିବିଧ ପଦାର୍ଥମାନେ ଅନୁରୂପ କରି
ବିବିଧ ପଦାର୍ଥମାନ ଦେଲାକ ସୂନାରୀ ।
ସେ ସୁବଣ୍ଣ ସଙ୍ଗେ ମିଶାଇଲା କଂସା
ବେଦାନ୍ତ ବ୍ରାହ୍ମଣ ଯେହ୍ନେ ଶୁଣ୍ଡି ଘରେ ବସା ।
ତମ୍ବା ମିଶାଇଣ ତାକୁ ପୁଣ ଜାଳି ଦେଲା
ସୂରାପାନେ ଯେମନ୍ତେ ବିପ୍ର ନାଶ ଗଲା ।
ବହନ କଲା ତହୁଁ ଅଙ୍ଗାର ଜାଳି ଦେଇ
ଆବର ବହୁତ ରୂପେ କଷ୍ଟମାନ ଦେଇ
ବେଣୁ ଶୁତ ସୁବର୍ଣ୍ଣ ହୋଇଲା ନାରଖାର
ଷାଠିଏ ବାନନୀ ସନା ବିକ୍ରୟପଣ ବାର ।
ମନ୍ଦ ରୁପୁଲି ଯେ ଜାତି ବିନାଶ କଲେ
ସାତକୁମ୍ଭ ବୋଲି ଯାହା ନକରି ଅଇଲେ ।
ଜାନକୀ ରୂପକୁ ଯେ କଲାକ ଅହନ୍ତା
ବିଚାରିଣ ଦଣ୍ଡତାକୁ ବିହିଲା ବିଧାତା ।
ଯେ ଶୁଦ୍ଧ ସୁବର୍ଣ୍ଣ ଅତି ଜାଣିବା ପଣ କଲା
ଦେବତାମାନଙ୍କ ଅଙ୍ଗେ ଆଭରଣ ହେଲା ।
କେବୋଲେ ପବନଶୋଭା ଶରଦଚନ୍ଦ୍ର ଜ୍ୟୋତି
ନ ଜାଣି ଗଗନେ ଉଦେହେଲେ ନିଶାପତି ।
ଦେଖି ତାଙ୍କୁ ଧିକ୍କାର କରନ୍ତି ସର୍ବଜନ
ଜାନକୀର ମୁଖ ଶୋଭା ନଦେଖୁ ନୟନ ।

ତାକୁ ଚାହିଁ ମୁର୍ଖତ୍ଵ ଲଜ୍ଜା ନ ପାଇଲୁ
କେଉଁ ବିଚାରରେ ଗଗନେ ଉଦୟ ହୋଇଲୁ ।
ଏ କଥା ତୋହର ଯୋଗାଇଲା ନାହିଁ ଶଶି
ଚିର ହୋଇ ପୂର୍ଣ୍ଣରୂପେ ଉଦୟ ମୁହସି ।
ସେ ଚନ୍ଦ୍ର ମହାତମା ଅଟଇ ସାଧୁଜନ
ନଜାଣି ଉଦୟ ହୋଇଥିଲା ସେ ଗଗନ ।
ଜାନକୀର ମୁଖଚନ୍ଦ୍ର ଦେଖିଲାକ ଯହୁଁ
ବହନ ହୋଇ ପଳାଇ ନ ରହିଲା ତହୁଁ ।
ବିଚାର କରଇ କେଉଁକାର୍ଯ୍ୟେ ଉଦେହେବି
ଏ ମହୀ ମଣ୍ଡଳେ ଉପହାସକୁ ପାଇବି ।
ଜାନକୀର ଶ୍ରୀମୁଖତ ଭୁବନକୁ ମଣ୍ଡେ
ମହାଘୋର ଅନ୍ଧକାର କିଞ୍ଚିତରେ ଖଣ୍ଡେ ।
ମୋର ଉଦେ ଦେବାଫଳ ବିଫଳ ହୋଇଲା
ଏମନ୍ତ ବିଚାରି ତହୁଁ ଲାଜେ ପଳାଇଲା ।
ଯୋଗେ ପଥେଯାନ୍ତେସେ ଦେଖିଲା ଦେବହର
କିଛିହିଁ ନକହି ମଉନେ ଉଭା ନିଶାକର ।
ମହାଦେବ ପଚାରନ୍ତି କାହିଁ ଥିଲ ଶଶି
ସ୍ଵର୍ଗର ବଚନ ଆମ୍ଭ ଆଗରେ କହସି ।
ସୁଧାଂଶୁ କହନ୍ତି ତୁମ୍ଭେ ଶୁଣ ହେ ଗଙ୍ଗାଧର
ଗଗନେ ଉଦେ ହୋଇବା ସହଜେ ମୋହର
ଜଗତ ହିତ ନିମନ୍ତେ ଦେଇଯାଇ ଦେଖା
ଅତି ମଳିନ ଦିଶିଲା ଏ ମୋହର ଶିଖା
ଜାନକୀର ମୁଖଚନ୍ଦ୍ର ମର୍ତ୍ତ୍ୟେ ଅବତାର
କିଞ୍ଚିତ ତେଜରେ ତାର ନାଶେ ଅନ୍ଧକାର ।
ତାହା ଦେଖି ସ୍ଵାମୀ ମୁହିଁ ପଳାଇଲି ଲାଜେ
ଗଗନରେ ଉଦେ ହେବି କେଉଁ କାର୍ଯ୍ୟେ ।
ଶୁଣିଣ ମହାଦେବ ପ୍ରସନ୍ନ ମୁଖହୋଇ
ଚନ୍ଦ୍ରକୁ ପରଶଂସା କରନ୍ତି ଗୋସାଇଁ ।
ଧନ୍ୟ ଧନ୍ୟ ଏ ତୁମ୍ଭର ବଡ଼ପଣ ଶଶି
ଆସ ଆସ ଆମ୍ଭର ମସ୍ତକେ ଥାଅ ବସି ।
ଏମନ୍ତ ବୋଲି ଚନ୍ଦ୍ରକୁ ବସାଇଲେ ଶିରେ
ଚନ୍ଦ୍ରଶେଖର ନାମ ଯେ ବିଦିତ ସଂସାରେ ।
ଚନ୍ଦ୍ର ମହାତମା ଅତି ବଡ଼ପଣ କଲା
ଭବାନି ପତି ମସ୍ତକେ ଯାଇଣ ବସିଲା ।
ଏ ମହିମଣ୍ଡଳେ ତେଣୁ ଅଗ୍ରପୂଜା ପାଇ
ଦୁର୍ବାକ୍ଷତ ଶିରେ ଦେଇ ପ୍ରଥମେ ବନ୍ଦାଇ ।

ଷୋଳକଳା ଘେନିଣ ଯହୁଁ ହେଲା ବଡ଼
ସୀତା ମୁଖ ଦେଖି ଅଭିମାନ କଲା ରାଢ଼ ।
ତେଣୁ ଲୋକ ଶାପଦେଲେ ପୂଜା ତୁନପାଅ
ଅସୁରଙ୍କର ହସ୍ତରେ ତୁ ଗଞ୍ଜି ହୋଇଥାଅ
ପୂର୍ଣ୍ଣଚନ୍ଦ୍ର ବୋଲି କେହୁ ନକରୁ ଆଦର
ଯୁଗ୍ମଅର୍ଦ୍ଧ ହୋଇ ତୁ ବୋଲାଅ ଦେଶାକର
ଏସନେକ ବୋଲିଣ ଜଗତଜନ ଭାଳି
ସେ ପୂର୍ଣ୍ଣଚନ୍ଦ୍ରମୁଖରେ ଲଗାଇଲେ କାଳି ।
ତେଣୁକରି କଳଙ୍କ ହୋଇଲା ଶଶଧର
ଏମନ୍ତ ବୋଲିଣ ଜନେ କରନ୍ତି ବିଚାର ।
କେବଳ ନୟନ ବେନି ନିଳୋତ୍ପଳ ଜିଣି
କୁରଙ୍ଗୀଠାରୁ ବଡ଼ ହୋଇବ ଏଣୁ ପୁଣି ।
ବିସ୍ତାରି ନୟନ ଚଳଇ କର୍ଣ୍ଣଯାଏ
ଅଞ୍ଜନ ରଞ୍ଜନରେ ଅଧିକ ଶୋଭାପାଏ ।।
ଫୁଟିଲା କମଳକି ଭ୍ରମର ଅଶକତ
ନେତ୍ର ସୁନ୍ଦର ମୁଖି ସାକ୍ଷୀ ମାତ୍ର ସର୍ବ ଚିତ୍ତ ।
ନାଶାଦେଖି ବୋଲେ କେହୁ ଏ ତିଳ କୁସୁମ
କେ ବୋଲେ ସେ କେଉଁ ଗୁଣେ ହେବ ଏହାସମ
କେ ବୋଲଇ ଶ୍ରବଣ ମଦନ ଦେବ ଫାଶି
ଜଗତଜନକୁ ଏଥି ବାନ୍ଧଇ ଆକର୍ଷି ।
କେ ବୋଲଇ ଅଧର ବନ୍ଧୂକ ଫୁଲଜ୍ୟୋତି
ପକ୍ବବିମ୍ବ ଜବା କୁସୁମାଦି ନରପନ୍ତି ।
ଡ଼ାଳିମ୍ବ ବୀଜ କୁନ୍ଦ ହିରକ କ୍ଷୁଦ୍ରମୋତି
ସିନ୍ଦୂର ଛନ ଜାଣି ଦିଶଇ ଦନ୍ତପନ୍ତି ।
କେ ବୋଲଇ ଭ୍ରୂଲତା ମଦନ ଶରାସନ
ତହିଁକି ନାରାଚ ପରା ସୁନ୍ଦର ନୟନ ।
ତାହା ପୁରାଇଣ ବିନ୍ଧିବି ଯେବେ ଟାଣି
କାମିଜନ ହୃଦୟକୁ ପକାଇବ ହାଣି ।
ଏ ସହସ୍ର ମହାଦେବକୁ ମନମଥ କଲା
ହରକୋପାନଳରେ ଯେ ଦହନ ହୋଇଲା ।
ମଦନର ରୋଦେ ଭାଜିଲା ହର ତାପ
ବିରହରେ ଚଳିଲେ ଯେ ଉମାଙ୍କ ସମୀପ ।
ଯେବଣ ଠାବରେ କାମ ହୋଇଲା ଭସ୍ମରାଶି
କାମଦେବ ରମଣୀ ଦେଖିଲା ତାହା ଆସି
ଧନୁଶର ଘେନି ତହୁଁ ବାହୁଡ଼ିଲା ବାଳୀ
କାହିଁ ରଖିବ ବୋଲି ପଞ୍ଚମନେ ଭାଳି ।

ସ୍ତିରୀଙ୍କର ସ୍ତିରୀଏ ଅଟଇ ପ୍ରିୟବତୀ
ଜାନକୀର ପାଶରେ ମିଳିଲା ଦେବୀ ରତି ।
ଧନୁଶର ଯତନେ ଥୋଇଲା ତାର ତହିଁ
ତପ କରିବାକୁ ଗଲା ସ୍ୱାମୀ ହିତପାଇଁ ।
ସୀତା ସେ ସାୟକକୁ କଲା ଅତି ଯତ୍ନ
ଭୃଲତାରେ ଯତନେ ଥୋଇଲେ ସ୍ତିରୀରତ୍ନ ।
ନୟନରେ ଗୁପତେ ଥୋଇଲେ ପଞ୍ଚ ଶର
ଏମନ୍ତ ବୋଲିଣ ଜନେ କରନ୍ତି ବିଚାର ।
କପାଳରେ ଚନ୍ଦନ ମୋହର ଆଡକାର
ମଦନ ଭୋଗରେ କି ଫରକ ଫରହର ।
ସିନ୍ଦୂର ଚିତା ଏଥି ନିରୋଳେ ଅଛି ବସି
ପୂର୍ଣ୍ଣଚନ୍ଦ୍ର କୋଳେକି ଅରୁଣ ପରକାଶି ।
କେତେବା ଲେଖିବି ଅଳକା ପନ୍ତି ଦିଶଇ ସୁନ୍ଦର ।
ଫୁଟିଲା ପଦ୍ମକୁକି ବେଢ଼ି ଅଛନ୍ତି ଭ୍ରମର ।
କେ ବୋଲେ କି ସୁନ୍ଦର ସୀମନ୍ତୁ ମୋତିମାଳି
ମେରୁପରୁ ଗଙ୍ଗା କିବା ପଡୁଅଛି ଢଳି ।
କେ ବୋଲେ କି ଜନ ଦିଶଇ କେଡ଼େ ଶୋଭା
ନିନ୍ଦା କରୁଛି ଦକ୍ଷିଣା ବ୍ରତ ଶଙ୍ଖ ପ୍ରଭା ।
କେ ବୋଲେ ଭୁଜ ପଙ୍କଜ ମୃଣାଳକୁ ଜିଣି
ସୁବର୍ଣ୍ଣ କରିକରେ କହିଛି ଏହା ଆଣି ।
ମଦନରେ ବେନି ପାଶ ପରାଏ ସୁନ୍ଦର
ଏଣୁକରି ମନମଥ ବାନ୍ଧଇ ସଂସାର ।
ଚମ୍ପାକଳି ବଳି ଅତି ସୁନ୍ଦର ଅଙ୍ଗୁଳି
ନଖଶ୍ରେଣୀ ବିରାଜନ୍ତି ଜାଣି ଦଳବଳି ।
ନରକେ ନିନ୍ଦାକଲେ ଅମର ମନ୍ଦାର
ଊର୍ଦ୍ଧ୍ୱରେଖା ଯବଧ୍ୱଜ ମସ୍ତାଦଚାମର ।
ସଧବାର ଲକ୍ଷଣ ଅଟଇ ଏମାନ
କେ ବୋଲଇ ସାମୁଦ୍ରିକ ଲକ୍ଷଣରେ ପୂର୍ଣ୍ଣ ।
କେ ବୋଲଇ ହୃଦଦେଶ ଅତିହିଁ ବିଶାଳ
ଭୁଜମୂଳ କେକି ଦେଖ କେମନ୍ତେ ରସାଳ ।
କେ ବୋଇଲ ସ୍ତନ ବେନି ଅତିଶୟ ସରୁ
ଭାଜିପଡି ଥାଇଟିକି ମଧ୍ୟ ଦେଶଠାରୁ ।
କେ ବୋଲଇଟି ବନସିଂହ ଲୁଚିତା ଲାଜେ
ଏଥିରେ ରହିବ ଥାଉ କେବଣ ହିଁ କାର୍ଯ୍ୟେ
ଯେତେଦିନ ଯାଏ ସୀତା ହୋଇଥିଲା ଜାତ
କେଶରୀ ମଧ୍ୟ ପ୍ରଶଂସା କରନ୍ତି ଜଗତ ।

କେ ବୋଲଇ ତାହାଠାରୁ ସବୁ ଏହା ଆଣ
କେଶରୀକି ହେଲା ଏ ସପତଣି କଣ ।
ଜାନକୀ କଟି ଦେଖିଣ ସେ ଗଲା ପଳାଇ
କେ କହଇ ଦୁର୍ଗା ତାଙ୍କୁ ସମ୍ଭାଳିଲେ ନେଇ ।
କେ ବୋଲଇ ନିତମ୍ୱ ଦେଶ ଦିଶଇ ସୁନ୍ଦର
ବସନ ପରିଧାନରେ ବିଶେ ମନୋହର ।
କେ ବୋଲଇ ଯାନୁ ଦେଶ ଓଲଟ କରିକି
କେ ବୋଲଇ କି ସୁନ୍ଦର ବିଶେକ ପାଦସ୍ୱକି ।
କେ ବୋଲଇ ଚରଣ ଅଙ୍ଗୁଷ୍ଠି ଅନାଅତ
ଅଶୋକ କରି ସୁନ୍ଦର ହେବକି ଏମନ୍ତ ।
ତାର ଉଜ୍ୱଳକୁ ନିନ୍ଦା କରେ ନଖ ପନ୍ତି
ତିନିପୁର ମଧ୍ୟରେ ଏହି ସେ ରୂପବନ୍ତି
କେ କହଇ ସମସ୍ତ ଶୁଭହିଁ ଏହୁ ହେତୁ

× × × × ×

ଆଗକୁ ମହା ସୁନ୍ଦର ପଛକୁ ଶୋଭା ଦିଶି
କେତେକାଳ ବିଧାତା ରଚିଲା ଏହା ବସି ।
ଧନ୍ୟ ଧନ୍ୟ ସୁନ୍ଦରୀରେ ଜନକ ଦୁହିତା
ଭଲ କଲା ସୁନ୍ଦରୀଗୋ ନାମ ଗୋଟି ସୀତା ।
ଶ୍ରୀରାମଚନ୍ଦ୍ର ଏହାକୁ ଅନୁରୂପେ ବର
ଆନ କେବା ଶିବଧନୁ ଧରିବଟି କର ।
ବିଧାତା ଭିଆଣ କରିଅଛି ତାହା ଜାଣି
ବେଳକାଳ ସଂଯୋଗ ତାହା କରାଇଲା ଆଣି ।
ଏ ରୂପେ ପ୍ରଶଂସା କରନ୍ତି ସଭାଜନ
ଜାନକୀ ଦେହରେ ସର୍ବେ ନିବେଶି ନୟନ ।
ବଶିଷ୍ଠ କହନ୍ତି ତୁମ୍ଭେ ଶୁଣ ଦଶରଥ
ଏମନ୍ତ କନ୍ୟା ତୁମ୍ଭକୁ ପରାପତ ।
ଏହା ଶୁଣି ମହାରାଜା ଯୋଡ଼ି ବେନି କର
ସୁଦୟା କଲେ ମୋତେ ଜନକ ମୁନିବର ।
ବିଶ୍ୱାମିତ୍ର ପ୍ରସନ୍ନରେ ହେଲା ଏଡ଼େ କଥା
ସମସ୍ତ ତୁମ୍ଭ ସୁକଲ୍ୟାଣରେ ବ୍ରହ୍ମବେତା ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ପାର୍ବତୀ
ବେନି ପିତା କୋଳେ ଚାରିଭଗ୍ନି ବିଜେ କରିଛନ୍ତି ।
ପ୍ରହରେକ ପରବେଶ ହୋଇଲାକ ଯହୁଁ
ପାଟ ଜ୍ୟୋତିଷ ଅନୁକୂଳ ଜଣାଇଲେ ତହୁଁ ।
ନାଡ଼ି ଘଡ଼ିଅଙ୍କ କହେ ବିଭାର ବିଧାନ
ବଶିଷ୍ଠ ବୋଲନ୍ତି ତୁମ୍ଭେ ଶୁଣ ହେ ରାଜନ ।

ମାହେନ୍ଦ୍ର ବେଳ ହେଲା ଦେଖୁଣି ବିଧିସାରି
ଅଇଲେ ସର୍ବଜନ ନବରୁ ବାହାରି ।
ଚାରିପାଶେ ଲୋକମାନେ ବେଢ଼ିଣ ଦେଖନ୍ତି
ସାଧୁ ସାଧୁ ଜାନକୀ ବୋଲିଣ ପ୍ରଶଂସନ୍ତି ।
ନଟେକ ଏବାର ସେ କରନ୍ତି ଆଗେ ମିଳି
ବେଳ ଜାଣି ସୁନ୍ଦରୀ ଦିଅନ୍ତି ହୁଳହୁଳି ।
ମଙ୍ଗଳ ଅଷ୍ଟକମାନ ପଢ଼ନ୍ତି ପାଟଯୋଶୀ
ବ୍ରାହ୍ମଣମାନେ ମିଳି ବେଦବାକ୍ୟ ଘୋଷି ।
ଜପି ତପିମାନେ ମିଳି କଲ୍ୟାଣ କରନ୍ତି
ଅମୃତ ବେଳ ହେଲା ବୋଲିଣ ବୋଲନ୍ତି ।
ଉପହାର ଯୋଗାଡ଼ ସୁମନ୍ତ ଆଣିକରି
ବଶିଷ୍ଠ ମହାମୁନି ମନ୍ତ୍ରକୁ ଆଚରି ।
ନିଜେ କରେ ଚନ୍ଦନ ଘେନିଣ ଦଶରଥ
ନେଇ ଲଗାଇଲେ ଜାନକୀ ମସ୍ତକ ।
କପାଳ ପଟରେ ତାର ଶ୍ରୀଖଣ୍ଡି ଶୋଭିଲା
ଦେଖିଣ ନରପତି ଆନନ୍ଦ ହୋଇଲା ।
ଜାନକୀର ମୁଖ ଦେଖିବାକୁ ତାର ମନ
ବିଚାରି କପାଳ କର ତୋଳଇ ରାଜନ ।
ଅତି ଲାଜେ ଜାନକୀ ପୋତିଲେକ ଶିର
ଯତନରେ ଟେକେ ଦଶରଥ ନୃପବର ।
ଚନ୍ଦ୍ରମା ପାତାଳକୁ ଦିଶିଲା ପରି ଦିଶେ
ଦେଖି ଦଶରଥ ରାଜା ମନେ ମନେ ହସେ ।
ମଥାମଣି ଦେଲେ ନେଇ ଜାନକୀ ମସ୍ତକ
ତ୍ରିଭୁବନ ମୋହିଲା ଯେ ସ୍ତିରୀଙ୍କ ନାୟକ ।
ଚନ୍ଦନ ଲେପନ କରି ମସ୍ତକେ ପୁଷ୍ପ ଆସି
କଣ୍ଠରେ ରତ୍ନମାଳା ଲମ୍ବାଇ ଆଜ ଶିଷି ।
ନବରତ୍ନେ ଜଡ଼ିତ ଦୁଇବସ୍ତ୍ର ଦେଲା
କୋଟିଏକ ରତନ ମସ୍ତକେ ବରଷିଲା ।
ଜୟ ଜୟ ଶବଦ କରନ୍ତି ସ୍ୱର୍ଗବାସୀ
ଏହି ରୂପେ ଚାରିକନ୍ୟା ଦେଖି ରାଜା ତୋଷି ।
ବସ୍ତ୍ର ଅଳଙ୍କାର ଦେଇ ଚାରି ଯେ ବଧୂକୁ
ହରଷେ ବିଜୟେ ଯେ କଲେ ଆସ୍ଥାନକୁ ।
ବୋଇଲେ କଉଶିକ ହେ ଜୀବନ ମୋର ଧନ୍ୟ
ଚାରିବଧୂ ପାଇଲି ମୁଁ ତୁମ୍ଭର ପ୍ରସନ୍ନ ।
କମଳା ପାର୍ବତୀ ଯେ ଗାୟତ୍ରୀ ସାବିତ୍ରୀ
ଚାରି ଦେଖାଇଲୁ ସୁଦୟା କରି ତୁଟି ।

ଏଥୁ ଅନନ୍ତରେ ଯେ ପାର୍ବତୀ ଦେବୀଶୁଣ
ରାଜାଙ୍କର ଦେଖୁଣି ସରିଲା ଯହୁଁ ପୁଣ ।
ଦାସୀଗଣ ନବରରେ ବେଗେ ଯାଇ ମିଳି ।
ସକଳ ରାଣୀଙ୍କ ପୁରେ ଦେଖାଇଲେ ନେଇ
ଦେଖିଣ ରାଣୀମାନେ ପରମ ତୋଷ ହୋଇ ।
ନେଇ ବଧୂମାନଙ୍କୁ କୋଳରେ ବସାଇଲେ ।
ମୁଖରେ ଚୁମ୍ବନ ଯେ ରାଣୀମାନେ ଦେଲେ ।
କେ ବୋଲନ୍ତି ବିଧାତା ଗଢ଼ିଲା କେତେ କାଳେ
ସକଳ ତେଜ୍ୟା କରିଲି ଚିନ୍ତିଲା ଯାଙ୍କରେ ।
କେ ବୋଲନ୍ତି ଋଷ୍ୟଶୃଙ୍ଗ ଯୋଗରୁ ପ୍ରାପତ
କେ ବୋଲନ୍ତି କଉଶିକ ଧଇଲେ ଯେ ଗୋତ୍ର ।
କେ ବୋଲଇ ଦଇବ ଯେ ଭଲା ଘଟାଇଲା
କେ ବୋଲଇ ଭାଗ୍ୟ ଆମ୍ଭ ଏତେକାଳରେ ଦିଶିଲା ।
କେ ବୋଲଇ ବଧୂମାନେ କୁଳ ଉଦ୍ଧାରିଣ
କେବୋଲଇ ନାରାୟଣ ଶ୍ରୀରାମ ଯେ ଅଟେ ପୁଣ ।
କେ ବୋଲଇ ଏହିପରି ରୂପ ଗୁଣରେ ପୁଣି
ସକଳ ରାଣୀହଂସ ମୋହିତ ଦେଖି ଜାଣି ।
ଏହି ରୂପେ କୁହାକୁହି ହୁଅନ୍ତି ରାଣୀ ସର୍ବେ
ସାତଶ ପଚାଶ ରାଣୀ ଦେଖିଣ ତୋଷ ଏବେ ।
ଏଥୁ ଅନନ୍ତରେ ଯେ ଚାରି ବଧୂ ପୁଣ
ସକଳ ଶାଶୁମାନଙ୍କୁ ଓଳଗିଲେ ଜାଣ ।
ନୀଳାବତୀ ଚାରିବଧୂଙ୍କୁ ନେଇଣ କୋଳକଲେ
ମୁଖେ ଚୁମ୍ବନ ଦେଇଣ ହରଷ ହୋଇଲେ ।
ସେଠାକୁ ସୁମିତ୍ରା ଯେ ନେଲେକ ଚାରିବଧୂ
କୋଳେ ବସାଇଣ ଆଉଁସିଲେ କୁଳବଧୂ ।
ବୋଇଲି ତୁମ୍ଭ ଆଗ ଆମ୍ଭର ପ୍ରାଣ ଯାଉ
ଯୁଗେ ଯୁଗେ ତୁମ୍ଭର କଥା ରହିଥାଉ ।
ସେଠାରୁ ଚାରିବଧୂ ଓଳଗି ମେଲାଇଣ
କୈକୟୀ କୋଳରେ ବସିଲେ ଯାଇ ପୁଣ ।
ଦେଖିଣ କୈକେୟୀ ଯେ ପରମ ତୋଷ ଲଭି
ବେନି ଜାନୁରେ ବସିଲେ ଚାରିବଧୂ ବେଗି ।
ଶରୀର ଆଉଁସିଣ ମୁଖରେ ଚୁମ୍ବ ଦେଲେ
ଧନ୍ୟରେ ବିଧାତା ତୁ ବୋଲିଣ ବୋଇଲେ ।
ଧନ୍ୟ ହେ କଉଶିକ ଧନ୍ୟ ହେ ଋଷ୍ୟଶୃଙ୍ଗ
ଧନ୍ୟହେ ଜନକ ଧନ୍ୟ କୁଶଧ୍ୱଜରେ ପୁଣସଙ୍ଗ ।

ଧନ୍ୟ ହେ ଧରଣୀ ତୁମ୍ଭେ ଧନ୍ୟ ହେ ବୈଶ୍ୱାନର
ଧନ୍ୟ ଯେ ଯାର ଗର୍ଭୁ ଜନମ ଏହାଙ୍କର ।
ଧନ୍ୟ ହେ ଗର୍ଭଧାରୀ ଜନମାୟାଙ୍କୁ କଲେ
ବୃଦ୍ଧକାଳେ ଆମ୍ଭ ମନ ହରଷ କରାଇଲେ ।
ଏମନ୍ତ ବୋଲିଣ ଯେ ଦାସୀମାନଙ୍କୁ କହି
ବୋଲେ ଶାଶୁମାନଙ୍କୁ ବଧୂଙ୍କୁ ଦିଅ ନେଇ ।
ଶୁଣିଣ ଦାସୀମାନେ ଜାନକୀଙ୍କି ନେଲେ
କଉଶଲ୍ୟାଙ୍କ କୋଳରେ ନେଇଣ ବସାଇଲେ ।
ବଧୂ ଦେଖି ହରଷ ଦଶରଥ ରାଣୀ
ସେଠାରୁ ଦାସୀମାନେ ଯେ ଗଲେ ବେଗେ ପୁଣି ।
ଉର୍ମିଳାକୁ ନେଇଣ ସୁମିତ୍ରା କୋଳେ ଦେଲେ
ଦେଖିକରି ସୁମିତ୍ରା ଯେ ମନରେ ତୋଷ ହେଲେ ।
ସେଠାରୁ ଦାସୀମାନେ ଚଳିଗଲେ ପୁଣ
ସାନବଧୂ ସୁମାଳିକି ନେଲେକ ବହନ ।
ନୀଳାବତୀ କୋଳରେ ନେଇଣ ପୁଣ ଦେଲେ
ଦେଖିଣ ନୀଳାବତୀ ଯେ ହରଷ ମନ ହେଲେ ।
ଏଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ
କୈକେୟୀ ରାଣୀ ବୋଲେ ଶୁଣ ଗୋ ଦାସୀ ତୁଟି ।
ସୁପକାରେ ଆଣନ୍ତୁ ଅନ୍ନ ଯେ ବ୍ୟଞ୍ଜନ
ବଧୂମାନଙ୍କୁ ନିଉଛାଳି କରିବା ଆମ୍ଭେ ପୁଣ ।
ଶୁଣିକରି ଦାସୀମାନେ ସୁପକାରେ କହି
ସୁବର୍ଣ୍ଣର ଥାଳୀରେ ଅନ୍ନ ଯେ ଅଣାଇ ।
ଚାରିବଧୂଙ୍କଠାରେ ସକଳ ଶାଶୁ ରୁଣ୍ଡ
ନିଉଛାଳି କଲେ ଅନ୍ନ ବ୍ୟଞ୍ଜନରେ ପିଣ୍ଡ ।
ନିଉଛାଳି ସରନ୍ତେ ସକଳ ରାଣୀ ପୁଣି
ଚାରିବଧୂଙ୍କୁ ଘେନି ଭୋଜନ କଲେ ପୁଣି ।
ନାନାବର୍ଣ୍ଣେ ଅମୃତ ଭୋଜନ ସର୍ବେ କରି
ବଧୂମାନଙ୍କୁ ଭୁଞ୍ଜାଇଲେ ହସ୍ତ ଧରି ।
ଆଚମନ ସାରିଣ ବେଶ ଭୂଷଣ ହେଲେ
ଚାରିବଧୂଙ୍କୁ ସେ ସୁବେଶ କରାଇଲେ ।
ନବରତ୍ନ ମାଳା ଯେ ସଙ୍ଗରେ ମୋତିହାରା
ଚାରିବଧୂଙ୍କୁ ଦେଇଣ ସେ ହୋଇଲେକ ତୋରା ।
ହୁଳହୁଳି ଦେଇଣ ସେ ବନ୍ଦାପନା କଲେ
ଦୂର୍ବାକ୍ଷତ ନେଇଣ ବଧୂଙ୍କ ଶିରେ ଦେଲେ ।
ଦେଖଣା ଚାହାଣୀ ଯେ ସରିଲା ତାଙ୍କର
ବଧୂମାନଙ୍କୁ ଦାସୀ ଘେନି ଚଳିଲେ ସତ୍ୱର ।

ସିଂହଦ୍ୱାର ଦାଣ୍ଡରେ ନେଇଣ ସମର୍ପିଲେ
ରତ୍ନ ହାନ୍ଦୋଳାରେ ଚାରିବଧୂଯେ ବିଜେକଲେ ।
ଦାଣ୍ଡରେ ଗହଳ ଯେ ଶୁଭଇ ଶଙ୍ଖଧ୍ୱନି
ଜନକ ନବରେ ମିଳିଲେ ଜେମା ପୁଣି ।
ସୁଖାସନୁ ଓହ୍ଲାଇଣ ଭିତରକୁ ଗଲେ
ଜନନୀମାନଙ୍କୁ ସେ ଓଳଗି ମେଲାଇଲେ ।
ଦେଖିଲେ ଜନନୀମାନେ ନବରତ୍ନମାଳା
ମୋତିର ହାରମାଳ ଦିଶାଇ ତହିଁ ତୋରା ।
ଦେଖିଣ ଋଷି ଆସି ହରଷ ମନ ହେଲେ
ଉଦୟ ତାରା ପ୍ରାୟେ ଜେମା ଯେ ଦିଶିଲେ ।
ମନମାୟା କହେ ଶୁଣ ଜନକର ରାଣୀ
ହରଷ ହୋଇଲେ ଯେ ଦୋହିତା କଥା ଶୁଣି ।
ଏଥୁ ଅନନ୍ତରେ ଶୁଣ ଗଉରୀ ଦେବୀ ଏବେ
ଦୁଇଦିନ ଏଥିରେ ବହିଣ ଗଲା ଭାବେ ।
ତିନି ପକ୍ଷ ସେଥିରେ ରହିଲେ ଦଶରଥ
ଦେଖଣା ସରିବାରୁ ବିଭାର ଉତ୍ସବତ ।
ଜନକଙ୍କୁ ଦଶରଥ ବୋଇଲେ ତୁମ୍ଭେ ଶୁଣ
ଚାରିବଧୂଙ୍କୁ ଜନକ ସ୍ନାହାନ କରାଅ ପୁଣ ।
ଶୁଣିକରି ଜନକ ଭିତର ପୁରେ ଗଲେ
ପରିଛାଙ୍କୁ କହିଣ ସୁବର୍ଣ୍ଣ ଅଣାଇଲେ ।
ଲକ୍ଷେକ ସୁବର୍ଣ୍ଣରେ କରାଇଲେ ଜନକ ସ୍ନାନ
ଚାରି ଦୁହିତାଙ୍କୁ ବେଗେ ସ୍ନାନ କରାଇବେ ପୁଣ ।
ଦଶରଥ ବଶିଷ୍ଠ ବିଶ୍ୱାମିତ୍ର ଯେ ପୁଣ
ଜନମ କୁଶଧ୍ୱଜ ସତ୍ୟାନନ୍ଦ ଜାଣ ।
ଏ ସମସ୍ତ ଦେଖିଲେ ଯେ ଜନକର ସ୍ନାନ ।
ଦେଖିକରି ଦଶରଥ ହେଲେ ତୋଷମନ ।
ସେଠାରୁ ଦଶରଥ ନବରେ ମିଳିଲେ
ସୁମନ୍ତ ମନ୍ତ୍ରୀକି ଚାହିଁ ରାଜନ ବୋଇଲେ ।
ଅଣାଅ ଲକ୍ଷେ ସୁନିଆଁ ଭଣ୍ଡାରୁ ମୋର ଭଲେ
ଶ୍ରୀରାମ ଜନକ ସ୍ନାନ କରିବେ ସେଥିରେ ।
ଶୁଣିକରି ମନ୍ତ୍ରୀବର ବେଗେ ଅଣାଇଲା
ଚାରି ପୁତ୍ର ଡକାଇଲେ ନୃପତି ହୋଇ ତ୍ୱରା ।
ଚାରି ଭାଇଙ୍କି ନେଇଣ ଜନକ ସ୍ନାନ କଲେ
ସ୍ନାହାନ କରି ପୁତ୍ରେ ସେଠାରୁ ଚଳିଗଲେ ।
ସେ ଲକ୍ଷେ ସୁବର୍ଣ୍ଣକୁ ବଶିଷ୍ଠ ଘେନିଗଲେ
ବଧୂଙ୍କୁ ସ୍ନାନ ସୁନିଆଁ ସତ୍ୟାନନ୍ଦ ଦେଲେ ।

ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ
ଜନକ ସ୍ନାନ ସାରିଣ ଅଯୋଧା ଦଣ୍ଡଧାରୀ ।
ମନରେ ହରଷ ଯେ ହେଲେ ଦଶରଥ
ବିଚାରିଲେ ଭଗୀରଥ ଯେ ଘରେ ହେଲେ ଜାତ ।
ଏସନକ ସମୟରେ ଗହଳ ଭାଜିଗଲା
ଜନକ ରାଜନ ସେ ସେଠାରୁ ଚଳିଗଲା ।
ଏସନକ ସମୟରେ ମଉଳିଲା ସଭା
ଦଶରଥ ରାଜନ ମନ୍ଦିରେ ହେଲେ ଉଭା ।
ଯେ ଯାହାର ମନ୍ଦିରକୁ ବେଗେ ଚଳିଗଲେ
ଏକାଦଶୀ ଦିବସ ଯେ ପ୍ରବେଶ ଆସି ହେଲେ ।
ଶ୍ରୀରାମ ଚାରି ଭାଇ ବିଭା ବିଚାରି ଜନକ
ନାନା ଦ୍ରବ୍ୟ ସମ୍ପଦ ଯେ କଲେକ ଅନେକ ।
ସୁବର୍ଣ୍ଣର ମଣ୍ଡପ ସେ କଲେକ ନିର୍ମାଣ
ଉପରେ ଛାଇଲେ ଯେ ତେଜପତ୍ର ପୁଣ ।
ଏ ରୂପେ ଚାରି ମଣ୍ଡପ ରତ୍ନରେ ନିବାଡ଼ିଲା
ଚାରି ଚାରି ଅଶ୍ୱ ଯେ ରତ୍ନରେ ଦିଶେ ତୋରା ।
ଇନ୍ଦ୍ର ଗୋବିନ୍ଦ ଚାନ୍ଦୁଆ ଉପରେ ଟଣାଇଲା
ମୁକୁତା ମାଣିକ୍ୟରେ ଝାଲେରୀ ବାଡ଼ ଦେଲା ।
ବିବିଧ ବସନରେ ମଣ୍ଡିଲେ ଚଉପାଶ
ବେଦୀର ଚଉପାଶ ହୋଇଲେ ଅଦୃଶ୍ୟ ।
ସେଥିପରେ ଗଜମୋତି ଝରା ଲମ୍ବାଇଲା
ପଞ୍ଚ ବର୍ଣ୍ଣ ପୁଷ୍ପମାଳା ସେଥିରେ ଖଞ୍ଜିଲା ।
ଶ୍ୱେତ ଚାମର ଖଞ୍ଜିଲେ ଦର୍ପଣ ଠାବ ଠାବ
କି ଜାଣି ପଟାନ୍ତର ସୁଧର୍ମା ସଭା ହେବ ।
ଦେବୀ ଗୋଟି ପ୍ରମାଣ ଶତେକ ଆଙ୍ଗୁଳ
ଦିବା ପ୍ରତି ଚଉପାଢ଼ୀ ଅଟେ ସମତୁଲ ।
ସୁବର୍ଣ୍ଣ ମଣ୍ଡପରେ କନକରେ ବେଦୀ
ଅନେକ ସମ୍ଭର୍ବରେ କଲେ ସର୍ବସିଦ୍ଧି ।
ଚାରି ବେଦୀପରେ ଅଛି ସୁବର୍ଣ୍ଣ କଳସ
ଚୂତପତ୍ର ନଟିକାଳ କଲେ ବିଧିମତ ।
ରମ୍ଭାବୃକ୍ଷମାନଙ୍କୁ ଦ୍ୱାରେ ପୋତି ପୁଣ
ଚନ୍ଦନ ଛେରା ପକାଇ କଲେକ ଯତନ ।
ବେଦୀମାନଙ୍କ ଉପରେ କଳସ ବସାଇ
ନେତର ଚିରାଳ ଚଉପାଶରେ ଉଡ଼ାଇ ।
ଦେଖିକରି ପ୍ରଶଂସା କଲେ ଋଷିଗଣ
ରାଜା ପରଜା ଯେ ଆବର ବିପ୍ରଜନ ।
ଆସ୍ଥାନରେ ଆକୃତି ମର୍କତ ଦିଶି ତୋରା
ଯେସନେ ଦିଶନ୍ତି ଗଗନ ପଥେ ପରା ।
କର୍ପୂରର ଗୁଣ୍ଡି ଯେ ଛିଞ୍ଚିଲା ଅଛି ଧୂଳି
ସୁବାସ ବାସରେ ଯେ ମିଥିଲା ଉଛୁଳି ।
ମାଣିକ୍ୟର ଦୀପମାନ ଜଳଇ ଗହଳ
ନବ ରତ୍ନ ଝଟକନ୍ତି ବିଜୁଳି ପ୍ରକାର ।
ଦେଖିକରି ସନ୍ତୋଷ ହୋଇଲେ ଜନକ
ସତ୍ୟାନନ୍ଦଙ୍କୁ ପ୍ରଶଂସା କଲେକ ଅନେକ ।
ଏଥୁ ଅନନ୍ତରେ ଶୁଣ ଗୋ ଦେବୀ ଉମା
ରାତ୍ର ଥାଉଁ ବାହାର ହୋଇଲେ ରାଣୀ କିନା ।
ମଙ୍ଗଳ ଉତ୍ସବକୁ ବାହାରି ନାରୀବୃନ୍ଦ
କୈକେୟୀ ଆଦି ରାଣୀ ମନରେ ଆନନ୍ଦ ।
ସୁଖାସନେ ବିଜେକଲେ ସମସ୍ତ ରାଣୀହଂସ
ଦେବୀଙ୍କର ମନ୍ଦିରେ ହୋଇଲେ ପ୍ରବେଶ ।
ମର୍ଦ୍ଦନ ମାଜଣା କଲେକ ଯେ ଦେବୀରେ
ସ୍ନାନ ଶଉଚ ଯେ କଲେ ଗନ୍ଧ ପୁଷ୍ପ ବାସରେ ।
ସିନ୍ଦୂର କଜଳ ଯେ ନାନା ପୁଷ୍ପ ଦେଲେ
ସୁଗନ୍ଧ ଚନ୍ଦନ ଯେ ଶରୀରେ ଲେପିଲେ ।
ରଙ୍ଗକଳା ବସନ୍ତ ଯେ ଧଳା ବର୍ଣ୍ଣ ଚାରି
ଦେବୀମାନଙ୍କୁ ବନ୍ଦାଇ ଭୂଷଣ ବେଗେ କରି ।
ଅନ୍ନ ବ୍ୟଞ୍ଜନ ଆବର କ୍ଷୀରି ପିଠା
ଅମୃତ ଯୋଗାଡ଼ ଯେ ନାନା ବର୍ଣ୍ଣେ ମିଠା ।
ଅନେକ ସମ୍ଭବରେ ପୂଜା ବିଧି କଲେ
ପୂର୍ଣ୍ଣମାସୀ ତୋଷ ହୋଇ ରାଣୀରେ କହିଲେ ।
ବୋଇଲେ ପ୍ରସନ୍ନ ତୋତେ ହୋଇଲୁ ଆମ୍ଭେ ପୁଣ
ପାଷାଣ ଫିଟି ଦେବୀ ସ୍ୱରୂପ ବିଚପନ ।
ଗଙ୍ଗାଜଳ ନେଇ ଶିରେ ସାତଥର ଦେଲେ
ସେହି ତୋଳାପାଣି ରାଣୀମାନେ ଯେ ରଖିଲେ ।
ତୋଳା ପାଣି ଘେନି ଫେରିଲେ ରାଣୀଗଣ
ଆପଣା ନବରେ ଯାଇ ପ୍ରବେଶ ହେଲେ ପୁଣ ।
ଦାସୀମାନେ ହୁଳହୁଳି କଲେ ଯେ ଶବଦ
ମଙ୍ଗଳ ଉତ୍ସବ ଯେ କରାଇ ଆନନ୍ଦ ।
ଏଥୁ ଅନନ୍ତରେ ପୁଣ ରାମଚନ୍ଦ୍ର ମାଏ
ଚୋରି ପାଣି ଘେନିଣ ପୁଅକୁ ଗାଧୁଆଏ ।
ତୀର୍ଥ ଜଳକୁ ଯାହା ନିଶାକାଳରେ ଆଣି
ତେଣୁକରି ତାହାକୁ ବୋଲନ୍ତି ଚୋରି ପାଣି ।

ବିଷ୍ଣୁର ଚରଣରୁ ଝରନ୍ତି ସୁରାସୁରି
ରଜନୀ ନ ପାଉ ତାହା ଆଣନ୍ତି ସୁନ୍ଦରୀ ।
ସେ ଜଳ ବୋଲିଣ ନ ଜାଣନ୍ତି ରଘୁନାଥ
ତେଣୁ ଚୋରି ପାଣି ବୋଲନ୍ତି ଜଗତ ।
ସାଧବୀ ନାରୀମାନେ ଉନ୍ମୁକ ହୋଇମନେ
ରାତ୍ର ଥାଉ ଉଠିଣ ସେ ଚାହାଁନ୍ତି ଗଗନେ ।
ଏକକୁ ଆରେକ ନାମ ଧରି ଡାକନ୍ତି
ଏବେ ସଖି ଉଠବେଗେ ହେଲାଣି ପାହାନ୍ତି ।
ଦେବତାଙ୍କ ଆଳରେ ଶୁଭଇ ଶଙ୍ଖ ଧ୍ୱନି
କୁକୁଟ ପକ୍ଷୀ ଡାକଇ ନିକଟ ରଜନୀ ।
ପାଣ୍ଡୁର ବର୍ଣ୍ଣ ବାସବ ଦିଗ ପ୍ରକାଶଇ
କାଳ ନିଦ୍ରା ଭାଙ୍ଗି ଆସି ଡାଳରେ ବସଇ ।
ଚନ୍ଦ୍ର ଅସ୍ତ ହେବାରୁ ତ ଦୁଇ ଘଡ଼ି ହୋଏ
କେତେବେଳେ ସଜ ହୋଇବେଟି ଚାରିପୋଏ ।
ଏହା ଶୁଣି ସମସ୍ତ ଯୁବତୀମାନେ ଆସି
ସପତ ଜଣ କାଖରେ ଘେନିଲେ କଳସି ।
ରାଜଦାଣ୍ଡେ ବୁଲନ୍ତି ମଙ୍ଗଳ ଗୀତ ଗାଇ
ଘରେ ଘରେ ପାଣି ମାନ ମାଗନ୍ତି ସେ ଯାଇ ।
ଭିତରେ ଥାଇ ତାହା ଜାଣନ୍ତି ସର୍ବବାଳି
ବରଘର ଲୋକେ ଆସିଲେ ପାଣି ତୋଳି ।
ସାଧବୀ ଯୁବତୀମାନେ ଦିବ୍ୟ ବେଶ ହୋଇ
ଶୁଚିବନ୍ତ ହୋଇଣ ପାଣି ଦିଅନ୍ତି ବଢ଼ାଇ ।
ଏହି ରୂପେ ପ୍ରତି ଘରୁ ଜଳ ମାଗି ନେଲେ
ଯତ୍ନେ ତାହା ଏକଠୁଳ କରି ସମ୍ପାଦିଲେ ।
ସପତ ଗରିଆ ଯହୁଁ ପୁରିଲାକ ପାଣି
ବାହୁଡ଼ି ଆସନ୍ତି ଘେନି ଚତୁର କାମିନୀ ।
ଦିବସରେ ନ ଆଣି ଆଣନ୍ତି ଯହୁଁ ରାତି
ତେଣୁକରି ଚୋରି ପାଣି ତାହାକୁ କହନ୍ତି ।
ରତ୍ନପୀଢ଼ା ଉପରେ ରାମ ଲକ୍ଷ୍ମଣ ବସାଇ
ଭରତ ଶତ୍ରୁଘନ ବସାଇଲେ ପୁଣ ନେଇ ।
ନବଗ୍ରହ ଅଏଁଳା ସୁଗନ୍ଧ ଲଗାଇଲେ
ସାଧବ ଯୁବତୀମାନେ ହୁଳହୁଳି ଦେଲେ ।
ଦେବୀଙ୍କ ତୋଳାପାଣି ସ୍ନାନ କରାଇ ଚାରିଭାଇ
କେଶକୁ ପୋଛିଲେ ନେଇ ସବୁ ବସ୍ତ୍ର ଦେଇ ।
ଶ୍ରୀଅଙ୍ଗ ପୋଛନ୍ତି ପୁଣି ଦିବ୍ୟ ବସ୍ତ୍ର ଘେନି
ଚାରିପାଖେ ବେଢ଼ିଛନ୍ତି ସକଳ ଜନନୀ ।

ଦେବାଙ୍ଗ ପଟନୀ ସେ ପିନ୍ଧାଇଲେ ନେଇ
ଘର ମଧ୍ୟେ ଘେନିଗଲେ କଠାଉ ମଡ଼ାଇ ।
ଏଥୁ ଯାଇ ମାତା କୋଳେ ବିଜେ ଭାରିଭ୍ରାତ
ପଞ୍ଚ ଗ୍ରାସ କଲେ ଯେ ମଣୋହି ଚାରିପୁତ୍ର ।
ଆଚମନ ସାରି ଭୁଞ୍ଜି କର୍ପୁର ତାମ୍ବୂଳ
ସୁବର୍ଣ୍ଣ ପୀଢ଼ାରେ ବିଜେ ରଘୁବଂଶ ବାଳ ।
କଉଶଲ୍ୟା କୈକେୟୀ ସୁମିତ୍ରା ମେଳହୋଇ
ଆବର ହିଁ ମାତାଗଣମାନେ ବେଢ଼ି ରହି
ବେଶ କରିବାକୁ ମନେ ବିଚାରନ୍ତି ନାରୀ
ଚିକ୍କଣ ହଳଦୀରେ ଯେ ଟଭାରସ ଗୋଳି ।
ଶ୍ରୀରାମଚନ୍ଦ୍ର ଶ୍ରୀଅଙ୍ଗେ ଲେପିଲେ ନେଇ ତାହା
ଏକକୁ ଆରେକ ନାରୀ ହୋଇଣ ଉତ୍ସାହା ।
କେଉଁ ନାରୀ କୁଙ୍କୁମକୁ ଶ୍ରୀଅଙ୍ଗରେ ଘସି
କୋଳରେକେ କଣ୍ଠେକେ ମୁଖରେ ଶୁଭ୍ରକେଶୀ
କେହୁ ବକ୍ଷସ୍ଥଳେ କେହି ଚରଣେ ଲଗାଇ
ମହା ସୁଗନ୍ଧ ତଇଳ ଘେନିଣ ଛଡ଼ାଇ ।
ନୀଳ ଦେହ ଶ୍ରୀରାମର ସୁନ୍ଦର ଦିଶିଲା
ମର୍କତ ପ୍ରତିମାରେ କି ସୁବର୍ଣ୍ଣ ମିଳିଲା ।
କମଳ କୁସୁମରେ କି ଭ୍ରମର ବସିଥିଲା
କୁସୁମ ପରାଏ ତାର ଅଙ୍ଗରେ ଲାଗିଲା ।
ଅରୁଣ ପ୍ରକାଶେ ପୂର୍ବଦିଗେ ଯେହ୍ନେ ଦିଶି
ରଘୁନାଥ ଶରୀରେ ତେମନ୍ତ ପରକାଶି ।
ସୁନ୍ଦର ମହାସୁନ୍ଦର ରାମଚନ୍ଦ୍ର କାୟେ
ଶରଧାରେ ବେଢ଼ିଣ ଦେଖନ୍ତି ସର୍ବମାଏ ।
କେଶକୁ ଶୁଖାଇଲେ ଚିରୁଣୀ ଘେନିକରି
କୃଷ୍ଣ ଚାମରକୁ ଜିଣି ସୁନ୍ଦର କବେରୀ ।
ଅତିହିଁ ସୁଗନ୍ଧ ପୁଷ୍ପ ମାନକୁ ବାଛିଲେ
କର୍ପୁର ଗୁଣ୍ଡି ତହିଁ ଉପରେ ସିଞ୍ଚିଲେ ।
ଶ୍ରୀରାମର ମସ୍ତକେ ଖୋସିଲେ ତାହା ନେଇ
ବିଚିତ୍ର ଗଭା ମସ୍ତକ ଉପରେ ଶୋଭା ପାଇ ।
ବାହାର କରି ପୁଣ ଦେଖାଇ କେଶର
କି ଜାଣି ଗଗନରେ ଉଦୟ ଦିବାକର ।
ରାମଚନ୍ଦ୍ର ମସ୍ତକକୁ ଦିଶିଲା ବଡ଼ ଶୋଭା
ତାକୁପରୁ ଆବୋରି ବସିଲେ ଯହୁଁ ଗଭା ।
ସରୁ ବହଳ ନବୀନ ବସନ୍ତ ପଟନି
ଧଡିତାର ଦିବ୍ୟଗନ୍ଧ କୁସୁମ ଲେଖନି ।

ତାରା ମଣ୍ଡଳ ବାନ୍ଧି କୁସୁମ ପ୍ରକାଶଇ
ଦୀର୍ଘ ନବହାତ ତାର ପ୍ରତିଟିନି ହୋଇ ।
ମଧ୍ୟେଣ ସରୁ ସରୁ ଫୁଲ ଫୁଟି ପଡିଅଛି
ସେ ବସ୍ତ୍ର ଶ୍ରୀରାମଙ୍କୁ ମାଏ ପିନ୍ଧାଇଲେ ବାଛି ।
ନୀଳ ମେଘ ଯେସନେ ବିଜୁଳି ବିରାଜଇ
ଶ୍ରୀରାମଚନ୍ଦ୍ର ଶ୍ରୀଅଙ୍ଗୁଳି ଦିଶିଲା ତେମନ୍ତହିଁ ।
ମାତାର ମୁଖ ମୁକୁତା ଫେରି ଦିବ୍ୟ କାମ
ଶ୍ରବଣ ଦେଖେ ମୁକୁତା ଅତି ଅଭିରାମ ।
ପୂର୍ଣ୍ଣଚନ୍ଦ୍ର ପାଶେ ଯେହ୍ନେ ଶୁକ୍ର ଯେ ଦିଶଇ
ଶ୍ରୀରାମଚନ୍ଦ୍ର କର୍ଣ୍ଣେ କୁଣ୍ଡଳ ତେମନ୍ତ ବିରାଜଇ ।
କଣ୍ଠଦେଶେ ଖଞ୍ଜିଲେ ଯାଉଁଳି ସୁନା ସୂତା
ଦୋସରିଆ କଣ୍ଠିମାଳ ଦିଶଇ ମୁକୁତା ।
ନୀଳମଣି ମାଣିକ୍ୟ ଏମାନ ଚଉସରା
ରତ୍ନେ ମାୟା ପଦକେ ଲାଗିଛି ମୋତି ଝରା ।
ବାହୁରେ ଦିବ୍ୟ ବାହୁଟି ତାଡ ବିଦ ମୁଦି
କଟିରେ ମେଖଳା ଦେଲେ କିରଣ ପ୍ରସିଦ୍ଧି ।
ବାମ ପାଶେ ଛୁରୀ ବିରବର ନେତ ଫର ଫର
ଚରଣରେ ଦେଲେ ନେଇ ମର୍କତ ତୋଡର ।
ନୀଳପଦ୍ମ ଯେମନ୍ତ ବେଢ଼ି ରହି
ଶ୍ରୀରାମ ଚନ୍ଦ୍ର ଚରଣକୁ ତେମନ୍ତ ଶୋଭାପାଇ ।
ପୁଣି ବେନି ଚରଣରେ ଲେପିଲେ ଅଳତା
ତଳିପାର ଶତେଗୁଣ ଦିଶିଲା ଯେ ରତା ।
ରଘୁନାଥ ରୂପକୁ ବର୍ଣ୍ଣି କେହୁ ପାରି
କୋଟି କୋଟି କନ୍ଦର୍ପ ରୂପକୁ ନୋହି ସରି ।
ଅତି ଶରଧାରେ ମାଏ ବସାଇଲେ କୋଳେ
କଜ୍ଜଳକୁ ରଞ୍ଜିଲେ କମଳ ବେନି ଡୋଳେ ।
କର୍ଣ୍ଣ ପରିଯନ୍ତେ ତାର ମେଲିଦେଲେ ଲାଞ୍ଜି
କିବା ନିଳୋତ୍ପଳ ନାଡ ଉପରେ ଖଞ୍ଜି ।
ଚନ୍ଦନ କର୍ପୂର ମୃଗମଦ କସ୍ତୁରିରେ
ଦିବ୍ୟ କମଳ ଲେଖିଲେ ଶ୍ରୀରାମ କପାଳରେ ।
ଦେଲେ ମଣ୍ଡଳ ଆକାରରେ ସିନ୍ଦୂରରେ ଚିତା
ଉଦୟ କାଳେ ଯେସନେ ଦିଶଇ ସବିତା ।
ଶପତ ଶିଖା ଦିବ୍ୟ ମୁକୁଟ ମଣି ମଏ
ଶ୍ରୀରାମ ଚନ୍ଦ୍ର ମସ୍ତକେ ବାନ୍ଧିଲେ ନେଇ ମାଏ ।
ବେଶ କରି ବସାଇଣ ଦେଖନ୍ତି ଯୁବତୀ
ଅତି ଆନନ୍ଦେ ମଙ୍ଗଳ ହୁଳହୁଳି ଦ୍ୟନ୍ତି ।

ପୁଣି କଉଶଲ୍ୟା ଭରତକୁ ଘେନି କୋଳେ
ଶ୍ରୀରାମଚନ୍ଦ୍ର ଅନୁରୂପେ ବେଶ କଲେ ।
ବସାଇଲେ ନେଇଣ ଶ୍ରୀରାମ ଦକ୍ଷିଣ ପାଶେ
ବେଢ଼ି ଦେଖନ୍ତି ସୁନ୍ଦର ପଣ ଅନିମିଷେ ।
ତଦୁତ୍ତାରେ ମଧେ ସୌମିତ୍ରକୁ ବସାଇ
ବେଶ କରନ୍ତି ମହା ଆନନ୍ଦ ମନ ହୋଇ ।
ଶ୍ରୀରାମ ବାମ ପାର୍ଶ୍ୱେ ନେଇଣ ବସାଇଲେ
ତିନି ଶୋଭା ତିନି ପୁରେ ନାହିଁ ବିଚାରିଲେ ।
ଏଥୁ ଅନନ୍ତରେ କୌଶଲ୍ୟା ଆଣି ଶତ୍ରୁଘନ
ସଜ ହୋଇକରି ବିଜୟେ ଚାରି ନନ୍ଦନ ।
ଏହି ସମୟରେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ ।
ଜନକ ପୁରେ ବିଚାର ଯେ ଋଷିଆଣି କରି ।
ଆମ୍ଭେ ଆଣ ମଙ୍ଗଳ କୃତ୍ୟ କରିବାକୁ ଭଲେ
ଏମନ୍ତ ବିଚାରି ଯେ ଦାଉଣ୍ଡି ସଜକଲେ ।
ପୂର୍ଣ୍ଣକୁମ୍ଭେ ଗଙ୍ଗାଜଳ ନେଇଣ ରଖିଲେ
ଅତି ଆଦରେ ସେହୁ ଉତ୍ସବ ଯେ କଲେ ।
ଶଙ୍ଖ ମହୁରି ବାଦ୍ୟ ଶବଦ ଘୋର କରି
ହୁଳହୁଳି ଶବଦରେ ବସୁନ୍ଧରୀ ପୂରି ।
ରତନ ହାନ୍ଦୋଳାରେ ସମସ୍ତେ ବିଜେ କଲେ
ମହାମାୟା ସ୍ଥାନକୁ ସମସ୍ତେ ଚଳିଗଲେ ।
ହରିଦ୍ରା ସୁଗନ୍ଧ ଲଗାଇ ଦେବୀଙ୍କି ମାଜଣା
ସ୍ନାନ କରାଇଲେ ହୋଇକରି ତୋଷମନା ।
ସିନ୍ଦୂର କଜ୍ଜଳ ଯେ ଗନ୍ଧ ଚନ୍ଦନ ଦେଲେ
ସକଳ ଅଳଙ୍କାର ନେଇ ଛୁଆଁଇଲେ ।
ଦେଖିଣ ମହାମାୟା ପାଷାଣ ରୂପ ତେଜି
ପାର୍ବତୀ ସ୍ୱରୂପରେ ବିଜେ କଲେ ବେଗି ।
ଗଙ୍ଗା ଜଳ ତୋଳିଣ ସାତଥର ଦେଲେ
ଏ ପାଣିରେ ଜାନକୀ ସ୍ନାନ କରନ୍ତୁ ବୋଇଲେ ।
ଏତେ କହି ଅନ୍ତର୍ଦ୍ଧାନ ହେଲେ ଦେବୀ କିନା
ଅନ୍ତର୍ଦ୍ଧାନ ଦେଖି ସର୍ବେ ଲେଉଟି ଆସେ କିନା ।
ନବରେ ପ୍ରବେଶ ଯେ ହେଲେ ଯାଇକରି
ଚାରି ଦୁହିତାଙ୍କୁ ଅଣାଇ ବେଗିକରି ।
କୋଳେ ରତ୍ନ ପୀଢ଼ାରେ ନେଇ ବସାଇଲେ
ତୋଳା ଗଙ୍ଗା ଜଳରେ ସ୍ନାନ କରାଇଲେ ।
ଶରୀର ପୋଛିଣ ଯେ ନୂତନ ବସନ ପିନ୍ଧାଇ
ପଲଙ୍କ ଉପରେ ଯେ ବସାଇଲେ ନେଇ ।

ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଦଶରଥ ପୁତ୍ରଙ୍କର ହୋଇଲା କିସ ରୀତି ।
ପାର୍ବତୀ ବୋଇଲେ ଦେବ ସେଠାରୁ କିସ ହେଲା
ଦଶରଥ ପୁତ୍ରଙ୍କର ବାଳୁଓ ଅବସ୍ଥା ଗଲା ।
ତୋଳାପାଣି ସ୍ନାନ ଯେ କରିବାର ପୁଣ
ସେଠାରୁ ବାଳକ ଅଙ୍ଗ ତେଜିଲେ ଶ୍ରୀରାମ ।
ସେହୁଠାରୁ ଶ୍ରୀରାମ ଧରିଲେ ଯୁବା ତନୁ
ଦ୍ୱିତୀୟ ଦିନ ଯେସନେ ଉଦୟ ସ୍ୱର୍ଭାନୁ ।
ଶୁଣିଣ ଈଶ୍ୱର ଯେ କହନ୍ତି ପାର୍ବତୀଙ୍କି
ଶୁଣ ଗୋ ପାର୍ବତୀ ତୁ କାଳେ କାଳେ ସତୀ ।
ଯେଣୁ ସେ ତୋରି ପାଣି ଶ୍ରୀରାମ ସ୍ନାନ କଲେ
ଦେବତାଙ୍କୁ ବାସୁଦେବ ପରାଏ ଦିଶିଲେ ।
ଋଷିଙ୍କି ଦିଶିଲେ ଯେ ଶାନ୍ତଶୀଳ ମୂର୍ତ୍ତି
ରାଧାଙ୍କୁ ଦିଶିଲେ ଯେ କାଳ ବିକାଳ ପ୍ରାଏ
ମାନବଙ୍କୁ ଦିଶିଲେ ଯେ ଦେବତା ପରାଏ ।
ଦୁଷ୍ଟକୁ ଦିଶିଲେ ଯେ ଯମର ପ୍ରାଏ ମୂର୍ତ୍ତି
ସଜନକୁ ଦିଶିଲେ ଗୁରୁ ପରାଏତି ।
ସାଗରକୁ ଦିଶିଲେ ସେ ଗଙ୍ଗା ଜଳ ପ୍ରାୟେ
ପୃଥିବି ଉଶ୍ୱାସ ଯେସନେ ଫୁଲ ହୋଏ ।
ଶାନ୍ତି ଜନକୁ ଦିଶିଲେ ଯେ ମଦନ ପରାଏ
ନାଗବଳକୁ ଦିଶିଲେ ଈଶ୍ୱର ଯେହ୍ନେ ଧାଏ ।
ସମସ୍ତଙ୍କ ମନ ମୋହିଲେ ରଘୁରାଣ
ତେଣୁ ସେ ନୂତନ ଯୁବା ହୋଇଲେ ଦେବପୂଣ ।
ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନିପୁର କରି ତୋଷ
ବରବେଶ ହୋଇଲେ ଦଶରଥ ଶିଷ୍ୟ ।
ବିବିଧ ରଙ୍ଗରେ ବେଶକଲେ ମାତାମାନେ
ଆନନ୍ଦରେ ହୁଳହୁଳି ଦେଲେ ସେ ଯେ ଜନେ ।
ମଙ୍ଗଳ ଗୀତମାନ କରନ୍ତି ଗାୟେଣି
ସର୍ବଶୁଭ ଯୋଗବଳେ ଏ ମାନସେ ଜାଣି ।
ଶ୍ରୀରାମ ଲକ୍ଷ୍ମଣ ଯେ ଭରତ ଶତ୍ରୁଘନ
ଚାରିଭାଇ ବେଶ ହୋଇ ଅଇଲେ ବହନ ।
ମଙ୍ଗଳ ବିଧିମତେ ଆଳତି କଲେ ସର୍ବମାୟେ
ଦଧି ମାଛ ଘେନିଣ ଆଗରେ କେହୁ ଧାଏଁ ।
ରାଜହଂସ ପକ୍ଷୀ କେହୁ ଆଗରେ ଚଳାଇ
ଶ୍ୱେତ ପାରୁଆକୁ ଯେ ଗଗନେ ଉଡ଼ାଇ ।
କେଉଁ ମାତାଏ ଦେଇ ଗୋରଚର୍ନା ଚିତା
ହୁଳହୁଳି ଦେଲେ ଦାସୀମାନେ ହୋଇ ଶ୍ରୋତା ।
ମାତାଙ୍କୁ ନମସ୍କାର କଲେକ ଚାରିଭାଇ
ଚାଉଳ ଆଞ୍ଜୁଳି ଗୁଆ ମାତାମାନଙ୍କୁ ଦେଇ ।
ଦୃତୟ ତଣ୍ଡୁଳ ଆଞ୍ଜୋଳି ମାତାଏ ଦେଲେ
କନକ ଦୁର୍ଗାଙ୍କ ଚରଣେ ନମସ୍କାର କଲେ ।
ପୂର୍ଣ୍ଣକୁମ୍ଭ ଶ୍ରୀଫଳ ଦେଖିଣ ଚଳିଯାଇ
ପିତାଙ୍କର ପାଦେ ଯାଇ ନମସ୍କାର ହୋଇ ।
ଅପଲକ ହୋଇ ଚାହେଁ ଦଶରଥ ରାୟେଜାଣ
ମନେ ମନେ ଆନନ୍ଦ ହୋଇଲାକ ପୁଣ ।
ବିଚାରଇ ଧନ୍ୟ ଧନ୍ୟ ଏମାନଙ୍କ ମାତା
ପୁଣ ବୋଲେ ଧନ୍ୟ ଧନ୍ୟ ଜନକ ଦୁହିତା ।
ପୁଣ ବୋଲେ ଧନ୍ୟ ଧନ୍ୟ ମୋର ରବିକୁଳ
ଧନ୍ୟ ଧନ୍ୟ ଜନକ ଦୁହିତା ତପ ଫଳ ।
ଧନ୍ୟ ଧନ ଏହାକୁ ଦେଖନ୍ତି ଯେତେଜନ
ପୁଣି ମନେ ବିଚାରଇ ଗଗନ ଧନ୍ୟ ଧନ୍ୟ ।
ବଶିଷ୍ଠ ଚରଣରେ ଚାରିପୁତ୍ର ଘେନି
ପ୍ରଣାମ କଲେହିଁ ଅଯୋଧ୍ୟା ନୃପମଣି ।
ବିଶ୍ୱାମିତ୍ର ଆଦି ଯେତେ ମୁନିମାନେ ଥିଲେ
ପୁତ୍ର ଘେନି ଦଶରଥ ପାଦେ ପ୍ରଣମିଲେ ।
ବ୍ରାହ୍ମଣମାନଙ୍କ ମୁଖୁ ସୁକଲ୍ୟାଣ ପାଇ
ପୁତ୍ରଙ୍କୁ ଘେନି ବିଜେ ଅଯୋଧ୍ୟା ନରସାଇଁ ।
ବାଜେ ବାଜଣା ବସନ୍ତ ରାଗରେ ଯେ ଭେଦି
ମହୁର ଧ୍ୱନି ଯାଇ ଗଗନେ ଆଛାଦି ।
ଲକ୍ଷେକ ଶଙ୍ଖ ଆଗେ ସ୍ୱରଇ ଘନ ଘନ
ସମ୍ପର୍ବ ହୋଇ ବାହାର ଚତୁରଙ୍ଗ ସୈନ୍ୟ ।
ଦଶରଥ ରାଜା ଆରୋହିଲା ମତ୍ତଗଜ
ଶତ୍ରୁଜୟ ନାମ ତାର ବଳ ମହା ତେଜ ।
ସୁମନ୍ତ ମନ୍ତ୍ରୀ ତୋଳି ଧଇଲା ବୀର ଛତି
ଆରୋହଣ କରି ଅଛି ରଣସିଂହ ହସ୍ତୀ ।
ଯୋଦ୍ଧା କୁରୁମୁଖ ଦରପଣ ଅଛି ଧରି
ଆରୋହଣ କରିଣ ମହା ମେଘନାଦ କରି ।
ସୁମନ୍ତର ନନ୍ଦନ ଧରିଛି ଧୂପକାଠି
ଆରୋହଣ କରାଇ ବିଭାଣ୍ଡକ କୁମର ରାଜପିଠି ।
ଆବର ସାମନ୍ତମାନେ ଘେନିଣ ଚାମର
ସମସ୍ତେ ହେ ବସିଛନ୍ତି ଗଜ କନ୍ଧପର ।

ସିଂହଦ୍ୱାରେ ଉଭା ଯେ ହୋଇଲେ ଚାରିଭାଇ
ମଙ୍ଗଳ ଆଳତୀ ଯେ ବଶିଷ୍ଠ କଲେ ତହିଁ ।
ବଶିଷ୍ଠ ବିଶ୍ୱାମିତ୍ର ଆବର ଗୁରୁଜନ
ସମସ୍ତେ ହେ ଆରୋହଣ କଲେ ସୁଖାସନ ।
ସୁବର୍ଣ୍ଣମୟ ରଥେ ବିଜୟେ ରଘୁନାଥ
ଶରାସନ ନାରଦ ଘେନିଣ ବେନିହସ୍ତ ।
ଭରତ ଲକ୍ଷ୍ମଣ ଶତ୍ରୁଘନ ତିନି ଭାଇ
ରଥମାନ ଚଢ଼ିଣ ଶ୍ରୀରାମ ପାଖେ ଯାଇ ।
ଯୁବା ଯୁବତୀ ଥାଟରେ ପଶିଲେ ଝସାଇ
ଗହଳରେ ଠେଲି ହୋଇ ଦେଖନ୍ତି ସର୍ବେ ଚାହିଁ ।
କାହାର ବସନମାନ ଠିଆରେ ଗଲା ଚିରି
କାହାର ବସ୍ତ୍ର ଅଧେନାହିଁ ନଜାଣେ ସୁନ୍ଦରୀ ।
କାହାର କର୍ଣ୍ଣ ଭୂଷଣ ପଡ଼ିଲାକ ତଳେ
ଗଜ ମୋତିହାର ଛିଡ଼ି ପଡ଼ିଲା ଗହଳେ ।
କେବଣ ସୁନ୍ଦରୀର ତୁଟିଲାକ ବାହି
କାହାର ଗୋଡ଼ୁ ନୂପୁର ପଡ଼ିଲା ନଜାଣଇଁ ।
ଏହା ଶୁଣି କେଉଁ ନାରୀ ବସଣି କାଢ଼ିଲା
ହଜିବ ଏ ସିନା ବୋଲି ତୁଣ୍ଡରେ ଜାକିଲା ।
କାହାର କବରୀ ଥାଉଁ ଥାଉଁ ଗଲା ଫିଟି
ଫୁଲ ମାଳମାନ ସବୁ ଏଣେ ତେଣେଲୋଟି ।
କେ ବୋଲଇ ଜନନୀ ଗୋ ଆଁଗଦଣ୍ଡେ କେହ୍ନୁ
ବୀରଛତ୍ର ଧରାଇଣ ଯାଉଅଛି ସେହ୍ନୁ ।
ଜାଣିବାଲୋକେ ବୋଲନ୍ତି ଶୁଣଗୋ ତୁମ୍ଭେ ପୁଣ
ଦଶରଥ ମଇତ୍ର ଏ ଲୋମପାଦ ରାଣ ।
କେ ବୋଲଇ ଶ୍ରୀରାମଚନ୍ଦ୍ର କେଉଁଠାରେ ଅଛି
କେ ବୋଲଇ ଏହି କ୍ଷଣି ଜାଣିବାନା ପୁଛି ।
କେ ବୋଲଇ ସଖୀ ଆଗେ ସମଦଣ୍ଡେ ଦେଖ
ଗହଳ ହୋଇ ଯହିଁ ଉଡଇ ଉଲ୍ଲାଖ ।
ରତ୍ନମୟେ ରଥ ହେମ କଳସ ବସାନ୍ତି
ଝୀନ ପତାକାମାନ ଉଡ଼ଇ ପନ୍ତି ପନ୍ତି ।
ଏହି ସେ ଶ୍ରୀରାମଚନ୍ଦ୍ର ଶୁଣରେ ପ୍ରାଣସହୀ
ଏହାଙ୍କର ଦକ୍ଷିଣ ପାଶେ ଭରତ ନାମେଭାଇ
ଶ୍ରୀରାମଚନ୍ଦ୍ର ପରାଏ ଗୋ ଏହାର ତନୁବର୍ଣ୍ଣ
ଶୋଭା ଦିଶଇ ଏହାକୁ ସବନ୍ନ ବିମାନ ।
ବାମ ପାଶେ ଦେଖ ସଖୀ ଲକ୍ଷ୍ମଣ କୁମର
କରେ ଧରି ଅଛଇ ପ୍ରଚଣ୍ଡ ଅଶିବର ।

ନୀଳବର୍ଣ୍ଣ ରଥ ଗୋ ଏହାକୁ ଶୋଭା ପାଇ
ଚମ୍ପା ପୁଷ୍ପ ବର୍ଣ୍ଣ ଗୋ ଜଗତ ମୋହଇ ।
ଏହାର ପଛରେ ଗୋ ଲକ୍ଷ୍ମଣ ସାନ ଭାଇ
ଶତ୍ରୁଘନ ନାମ ଗୋ ଏହାକୁ ଶୋଭାପାଇ ।
ମାନିଛି ଏହାକୁ ଦେଖ ମର୍କତର ରଥ
ଏକୁ ଏକ ସୁନ୍ଦର ଅଟନ୍ତି ଚାରିଭ୍ରାତ ।
ଜନକର ଝିଅ ଏବେଗୋ କେବଣ ପୁଣ୍ୟକଲା
ରୂପ ଅନୁରୂପେ ଦେଖ ବରକୁ ପାଇଲା ।
ଧନ୍ୟ ଧନ୍ୟ ଶ୍ରୀରାମଚନ୍ଦ୍ର ସର୍ବାଙ୍ଗ ସୁନ୍ଦର
ଜାନକୀର ରୂପକୁ ଏ ଅନୁରୂପେ ବର ।
ସୀତାଦେବୀ କମଳା ଏ ସାକ୍ଷାତ ନାରାୟଣ
ଅବନୀରେ ଜାତ ହେଲେ ଦଇବ ଭିଆଣ ।
ଜନକର କି ପୁଣ୍ୟ କିଁ କହିଲେ ଶେଷ ଅଛି
ଦୁହିତା ପାଇଲା ଦେଖ ସ୍ୱୟଂ କମଳାକ୍ଷୀ ।
ଏମାନ ଆଉ କେ ନଥିବେ କରି ତପ
ଧନ୍ୟ ଧନ୍ୟ ଜନକ ତୁମ୍ଭେ ଜାନକୀଦେବୀବାପ ।
ଏସନକ ପ୍ରଶଂସା କରନ୍ତି ନରନାରୀ
କେ ବୋଲଇ କାହିଁ ଦଶରଥ ଦଣ୍ଡଧାରୀ ।
କେ ବୋଲଇ ସଖୀ ଗୋ ଧବଳ ଛତ୍ର ତଳ
ଗଜ କନ୍ଧେ ବିଜେ ଯେ କରିଛି ମହୀପାଳ ।
ପାଟ ଛତ୍ର ଗହଳରେ ନ ଦିଶେ ଗଗନ
ସହସ୍ରେ ଶ୍ୱେତ ଚାମର ଗଡଇ ଅବିଚ୍ଛିନ୍ନ ।
ଏବେ ଦଶରଥ ରାଜା ଶ୍ରୀରାମଚନ୍ଦ୍ର ପିତା
ତମୁରେ ଜାତ ଯାକୁ କରିଛି ବିଧାତା ।
ଏହା ଯୋଗୁ ମେଦିନୀ ଯେ ହୋଇବଉଦ୍ଧରି
ଯହୁଁ ଏ ବଂଶରେ ଶ୍ରୀରାମଚନ୍ଦ୍ର ଅବତରି ।
ଏହା କହୁଁ ଶ୍ରୀରାମ ଦାଣ୍ଡରେ ବିଜେ କରି
ଏଥୁ ଅନନ୍ତରେ ତୁମ୍ଭେ ଶୁଣଗୋ ଶାକମ୍ଭରୀ ।
ଜନକ କୁଶଧ୍ୱଜକୁ ରାଇଣ ଆଜ୍ଞା ଦେଲେ
ଦଶରଥ ଚାରିପୁତ୍ର ବରଣକରିଆଣ ବୋଇଲେ ।
ଶୁଣିକରି ସଜହେଲେ ଜନକ ଦୁଇ ଭାଇ
ବାହାର ହୋଇଲେ ସେ ବରଣ କରିଯାଇ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣଗୋ ହୈମବତୀ
ସତ୍ୟାନନ୍ଦ ମିଳିଲେ ଯେ ଜନକ ରାଜା କତି ।
ବୋଇଲେ ଶୁଣିମା ବଚନ ମୋ ମହାଯତୀ
ଚାରିଜାତି ବରଣ ଯେ ଯିବତାଙ୍କ କତି ।

ଜନକ ବୋଇଲେ ସଜାଣ ତୁମ୍ଭେ ଗଉତମବଳା
ଅହଲ୍ୟାର ପୁତ୍ର ମୋତେ ବହୁତ ହିତକଲା ।
ମନ୍ତ୍ରୀ ହୋଇଣ ସେ ବୁଦ୍ଧିବନ୍ତରେ ଥାଇ
ପାତ୍ର ହୋଇଣ ଯେବେରାଜାବଚନ ନଭାଙ୍ଗଇ ।
ବଣିଜାର ହୋଇଯେବେ ଲୋଡ଼ିଲେ ସର୍ବପାଇ
ପରଜା ହୋଇଣ ଯେବେ ରାଜାକୁ ଡରିଥାଇ ।
ଗୋରୁ ପୋଷି ଯେବେ ସଙ୍ଖୋଳି କରେ ନିତି ।
ଏତେ ଲୋକରେ ପ୍ରଶଂସା କରନ୍ତି ବେଦପତି ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଭଗବତୀ
ବାଜିଲା ଶଙ୍ଖ ମହୁରୀ ବୀରତୂର ଅତି ।
ହାତୀ ରଥ ପଦାତି ଯେ ସମ୍ବର୍ବରେ ଆସି
ବିପ୍ରମାନେ ବେଦଯେ ଘେନନ୍ତି ତହିଁ ଆସି ।
କୁଶଧ୍ୱଜ ସତ ଯେ ହୋଇଥିଲେ ପୁଣ
ସତ୍ୟାନନ୍ଦ ଯାଇଣ ମିଳିଲେ ସେଠାରେଣ ।
ବରଣ ବିଧିମାନ ସକଳ ଘେନାଇଁ
ନାପିତ ହାତେ ଧରାଇ ମିଳିଲେକ ଯାଇ ।
ଦେଖିଣ ସମ୍ବର୍ବରେ ହୋଇଲେ ବାହାର
ଆଗରେ ବାଜଇ ଯେ ବିବିଧ ବାଦ୍ୟସାର ।
ଯାଇଣ ମିଳିଲେ ଦଶରଥ ପାଶେ ପୁଣ
ଶ୍ରୀରାମ ଲକ୍ଷ୍ମଣ ଭରତ ଶତ୍ରୁଘନ ଭଲ ଜାଣ ।
ଦେଖିଣ ଜନକ କୁଶଧ୍ୱଜ ସତ୍ୟାନନ୍ଦ ତୋଷ
ମାଳବ ରାଗରେ ବେଦକଲେ ଯେ ଅଭ୍ୟାସ
ବଶିଷ୍ଠ ଓହ୍ଲାଇଣ ଅଇଲେ ତହିଁ ଜାଣ
ସତ୍ୟାନନ୍ଦ ପାଶରେ ମିଳିଲେକ ପୁଣ ।
ଦୁଇଋଷି ବେଦବାକ୍ୟ କଲେକ ଉଚ୍ଚାରଣ
ବରଣ କଲେ ଯେ ରାମକୁ ଜନକ ଋଷି ଜାଣ ।
ପ୍ରଥମେ ଶ୍ରୀଫଳ ଯେ ମସ୍ତକେ ଲଗାଇଲେ
ଦ୍ୱିତୀୟେ ନୂତନ ଅମଳାନ ପିନ୍ଧାଇଲେ ।
ପୁଷ୍ପ ଚନ୍ଦନ ଯେ ଦୁର୍ବାକ୍ଷତ ଦେଲେ
ନବରତ୍ନ ମାଳାନେଇ ଗଳାରେ ଲମ୍ବାଇଲେ ।
ବରଣବିଧି ସାରିଣ ବେଗେ ଚଳିଗଲେ
ଲକ୍ଷ୍ମଣଙ୍କ ପାଶରେ ଯାଇ ପ୍ରବେଶ ହୋଇଲେ ।
ସେହି ବିଧି ବରଣ ତାହାଙ୍କୁ ଯେ କଲେ
ନବରତ୍ନ ମାଳାନେଇ ଗଳାରେ ଲମ୍ବାଇଲେ ।
କୁଶଧ୍ୱଜ ରାଜା ଯାଇ ବରିଲେକ ଭରତ
ଗଳାରେ ମାଳାଦେଇ ହୋଇଲେ ଉସତ ।
ସେଠାରୁ ଶତ୍ରୁଘନ ପାଶରେ ମିଳିଲେ
ତାହାଙ୍କୁ ବରଣ କରି ତହିଁ ଚଳିଗଲେ ।
ଶ୍ରୀରାମଙ୍କୁ କରଧରି ଜନକ ଚଳିଗଲେ
ଭରତ କୁଶଧ୍ୱଜ କର ଧରି ନେଲେ ।
ରତ୍ନ ଚାରି ବେଦୀରେ ନେଇଣ ବସାଇଲେ
ସମସ୍ତ ବିଧି ବିଧାନରେ ବଶିଷ୍ଠ ଆସିଲେ ।
ଶ୍ରୀରାମ ରତ୍ନ ବେଦୀରେ ଜନକ ଦଶରଥ
ବଶିଷ୍ଠ ସତ୍ୟାନନ୍ଦ ବସିଲେ ତୁରିତ ।
ବରୁଣ ପୂଜା ସେଠାରେ ସାରିଲେ ଚାରିଜଣ
ସେଠାରୁ ଉଠି ତୃତୀୟ ବେଦୀପରେ ପୁଣ ।
ପ୍ରଥମ ବରଣ ଯେ ଲକ୍ଷ୍ମଣଙ୍କୁ କଲେ
ବ୍ରହ୍ମା ବରଣ ଯେ ଯେ ସେଠାରେ ସାରିଲେ ।
ଶ୍ରୀରାମଙ୍କ ପାଶରେ ଚାରିଜଣ ମିଳି
କଉଶିକଙ୍କୁ ଦଶରଥ ବୋଇଲେ କରଯୋଡ଼ି ।
ତୃତୀୟ ବେଦୀପରେ ତୁମ୍ଭେ ଆଚାର୍ଯ୍ୟ ହେବଯତି
ଜନକ ବୋଇଲେ ମୋର ମାରକଣ୍ଡ ଋଷି ।
ମୋର ଦୁହିତା ମଉଳା ଯାଆନ୍ତୁ ତୁମ୍ଭ ସଙ୍ଗରେଟି
ଶୁଣିଣ ଦଶରଥ ସୁମିତ୍ର ଭ୍ରଥ ଡାକି ।
ବୋଇଲେ ଲକ୍ଷ୍ମଣଙ୍କୁ ବିଭା କର ବସି
କଉଶଲ୍ୟା ରଥକୁ କହିଲେ ବିଶେଷି ।
ଶୁଣିକରି ବେନି ମଉଳା ମାରକଣ୍ଡ କଉଶିକ
ତୃତୀୟ ବେଦୀପରେ ବସିଲେ ଯାଇଣ ତ ।
ସେଠାରୁ ଦଶରଥ ବଶିଷ୍ଠ କୁଶଧ୍ୱଜ
ସତ୍ୟାନନ୍ଦ ଦ୍ୱିତୀୟ ବେଦୀପରେ ପରବେଶ ।
ଭରଥକୁ ଘେନିଣ ସେଥିରେ ବରୁଣପୂଜାକଲେ
ବରୁଣ ପୂଜା ସାରି ସେଠାକୁ ଚଳି ଗଲେ ।
ଚତୁର୍ଥ ବେଦିପରେ ହେଲେ ପରବେଶ
ବେଦି ବରଣକଲେ ମନରେ ହୋଇ ତୋଷ ।
ବରୁଣ ପୂଜା ସାରି ଋଷ୍ୟଶୃଙ୍ଗକୁ ଡାକି
ଲୀଳାବତୀ ଭାଇଙ୍କି ବସାଇଲେ ସେଥି ।
କୁଶଧ୍ୱଜଙ୍କ ଶଳା ଅଗସ୍ତି ତାଙ୍କ ପାଇଁ
କନ୍ୟାର ପାଇଁ ଅଚାର୍ଯ୍ୟବରଣ ସେ ଯେ ହୋଇ ।
ସେଠାରୁ କୁଶଧ୍ୱଜ ଅଷ୍ଟବକ୍ର ଋଷି ଘେନି
ଦ୍ୱିତୀୟ ବେଦୀପରେ ବସିଲେ ଯାଇ ପୁଣି ।

ଦେଖିଣ ଦଶରଥ କୈକେୟୀ ଭ୍ରାତ ଡାକି
ନାରଦଙ୍କୁ ବୋଇଲେ ଆଚାର୍ଯ୍ୟ ହୁଅ ନିକି ।
ଶୁଣିକରି କୈକେୟୀ ଭାଇ ନାରଦ ବସିଲେ
ବଶିଷ୍ଠ ଦଶରଥ ଶ୍ରୀରାମପାଶରେ ବସିଲେ ।
ଏରୂପେ ଚାରି ବେଦୀରେ ଅଚାର୍ଯ୍ୟହେଲେ ପୁଣ
ବସିଲେ ଷୋଳଜଣ ହରଷ ମନେ ପୁଣ ।
ସକଳ ଋଷିମାନେ ସେଠାରେ ବିଜେକଲେ
ଚାଳିଶି ସହସ୍ର ରାଜା ଆସ୍ଥାନେ ବସିଲେ ।
ପରଜା ପଥକି ଯେ ଆସନ୍ତା ଗଲା ଲୋକେ
ଏଥି ସରଦାର ପଦାତି ସୈନ୍ୟ ଯେତେ ।
ହସ୍ତୀ ଘୋଡ଼ା ପଏକାର ସାରେଣିଓଟ ଜାଣ
ଚାରିଦେବୀ ଚାରିପାଶେ ଘେରିଣ ରହିଲେଣ ।
ମଧରେ ଅପସରୀ ନୃତ୍ୟ ରଙ୍ଗ କରି
ଚଉପାଶେ ବାଦ୍ୟ ଯେ ବଜାନ୍ତି ବାଜନ୍ତରି ।
ବେଦୀର ଉପରେ ଯାଇ ବସିଲେ ବିପ୍ରବର
ଗହ ଗହ ଶବଦ ଶୁଭଇ ମହାଗୋଳ ।
ଏଥୁ ଅନନ୍ତରେ ପୁଣି ବଶିଷ୍ଠ ମହାଋଷି
ଜନକ ମୁଖ ଚାହିଁ ବଚନ ପରକାଶି ।
ପହରେ ଆସି ହେଲା ପରବେଶ ବେଳ
ଅମୃତ ଲଗ୍ନେ କର ବରଣ ଅନୁକୂଳ ।
ଏତେ ବୋଲି ଶ୍ରୀରାମଙ୍କୁ ବେଦୀରେ ବସାଇ
ପୂର୍ଣ୍ଣକୁମ୍ଭ ଆଗକରି ବସିଲେ ରଘୁସାଇଁ ।
ପୂର୍ବ ମୁଖ ହୋଇକରି ବସିଲେ ଜନକ
ବଶିଷ୍ଠ ମହାଋଷି ଯେ କରାବନ୍ତି ବାକ୍ୟ ।
ପୂର୍ଣ୍ଣକୁମ୍ଭ ରଖିଣ ବରୁଣ ପୂଜା କରି
ଇନ୍ଦ୍ରାଦି ଦଶଦିଗପାଳଙ୍କୁ ପୂଜା କରି ।
ନବଗ୍ରହ ପୂଜା ପୁଣ କଲେ ମହାମୁନି
ଦେଶ କାଳ ବାକ୍ୟରେ କରନ୍ତି ବେଦ ଧ୍ୱନି ।
ବାର ତିଥି ତାର ଯୋଗ କରିଣ ସୁମରି
ବିଧି ବିଧାନରେ ସମସ୍ତ ଯେ କରି ।
ବସନ ଅଳଙ୍କାର ଯେ ଶ୍ରୀଫଳ ସହିତେ
ଜନକ ସମର୍ପିଲେ ନେଇ ଶ୍ରୀରାମଙ୍କ ହସ୍ତେ ।
ମସ୍ତକରେ ଚନ୍ଦନ ତିଳକ ଦେଲେ ନେଇ
ସୁଗନ୍ଧ କୁସୁମ ମାଳା କଣ୍ଠରେ ଲମ୍ବାଇ ।
ବସନେ ପିନ୍ଧାଇଣ ବସନେ ଉପରାଣ
ବେନି କର୍ଣ୍ଣ କୁଣ୍ଡଳ ଦେଲାକ ଆଭରଣ ।

ସୁବର୍ଣ୍ଣ ପଇତା କଣ୍ଠରେ ମୋତିମାଳ
ଅଙ୍ଗୁଷ୍ଠିରେ ମୁଦ୍ରିକା ଯେ ଭୁଜକୁ ସରଳ ।
ଏ ଆଦି ସର୍ବ ଅଳଙ୍କାର ରମା ବରି
ଦୁହିତାକୁ ଦେବଇଁ କହଇ ସତ୍ୟ କରି ।
ଚାରି ବରଙ୍କୁ ରାଜା ବରିଲା ଏହି ମତେ
ବସନ ଅଳଙ୍କାର ବସନ ସହିତେ ।
ଏଥୁ ଅନନ୍ତରେ ପୁଣି ହରିଦ୍ରାଧି ବିଧି
ଆନନ୍ଦେ କାମିନୀମାନେ ବାଟନ୍ତି ହଳଦୀ ।
ବେଦୀପରୁ ଓହ୍ଲାଇଣ ଗଲେ ଚାରି ବର
ଜନକ ସାଜଇ ନଦୀ ଶ୍ରାଦ୍ଧର ବେଭାର ।
ସତ୍ୟାନନ୍ଦଙ୍କୁ ଘେନି କରଇ ସର୍ବ କାର୍ଯ୍ୟ
ପୁଣ ପୂଜା କରନ୍ତି ବାସୁକି ନାଗରାଜ ।
ଅଷ୍ଟକୁଳା ନାଗଙ୍କୁ ଯେ ପୂଜା ବିଧି ସାରି
ବୟସାଳା ପୋତି ବସି ପଞ୍ଚକୁ ବିଚାରି ।
ଶ୍ରାଦ୍ଧ ପୂର୍ଣ୍ଣକୁମ୍ଭ ଚୂତପତ୍ର ନଟିକାଳ
ବେଣୁପରେ ଉଡ଼ାଇଲେ କୁସୁମ ଚିରାଳ ।
ଏଥୁ ଉତ୍ତାରୁ ପୁଣ ସାଧବି ଯୁବତୀ
ଗ୍ରାମ ଦେବତୀଙ୍କି ଯାଇ ମଗୁଳି ଆସନ୍ତି ।
ଧୂପ ଦୀପ ନଇବେଦ୍ୟ ଗନ୍ଧ ପୁଷ୍ପ ଘେନି
ମଙ୍ଗଳ ଗୀତ ଗାଇଣ ଚଳନ୍ତି କାମିନୀ ।
ନଗର ପରିମଳ ବୋଲନ୍ତି ରାଜ ବାଟ
ଯୁବତୀ ଗମନ ସୁନ୍ଦର ବିଶିଷ୍ଟ ।
ଦେବତାଙ୍କୁ ମଗୁଳି ନିଜପୁରେ ଆସି
ବରକୁ ମଗୁଳିବାକୁ ଅଇଲେ ଶୁଭ୍ରକେଶି ।
ଶ୍ରୀରାମ ଲକ୍ଷ୍ମଣ ଯେ ଭରତ ଶତୃଘନ
ରତ୍ନ ପିଢ଼ାରେ ବସାଇ ବେଢ଼ି ବସି ନାରୀଗଣ ।
ସୁବର୍ଣ୍ଣ ଗରିଆରେ ଦିବ୍ୟ କୁସୁମ ପୂରାଇ
ଶ୍ରୀରାମଙ୍କୁ ବେଢ଼ି ବସି ହୁଳହୁଳି ଦେଇ ।
କପାଳରେ ହଳଦୀ ତିଳକ ଦେଲେ ନେଇ
ଏକ ଆରକରେ ଅଗ୍ରସର ସେହି ହୋଇ ।
କେ ଭୁଜରେ ଲଗାଏ କେ କଣ୍ଠରେ ଲଗାଇ
କେବଣ ତରୁଣ ବେନି ଚରଣରେ ଦେଇ ।
କେହୁ ବକ୍ଷସ୍ଥଳରେ କେ ଲଗାଏ ପିଠି
କନ୍ଧଦେଶେ ଲଗାଇଲେ କେବଣ ବିମ୍ବୋଷ୍ଠୀ ।
କେବଣହିଁ ଚତୁରି କୁଙ୍କୁମ ଘେନି କରେ
ନେଇଣ ଲଗାନ୍ତି ରାମଚନ୍ଦ୍ରଙ୍କ ମୁଖରେ ।

ଶ୍ରୀରାମଙ୍କ ଶ୍ରୀକର କୁଚପରେ ଦେଇ
ଆନନ୍ଦ ମନରେ ସେ ଭୁଜରେ କୁଙ୍କୁମ ଲଗାଇ ।
ମଦନେ ମତ ହୋଇ କେବଣ ଯୁବତୀ
ରାମଚନ୍ଦ୍ର ପୃଷ୍ଠଦେଶେ ସ୍ତନ ଆଉଯାନ୍ତି ।
କେହୁ ନେଇ ଶ୍ରୀପୟର ନିଜ ଜଙ୍ଘେ ଲଦି
ହୃଦରେ ହୃଦ ଲଗାଇ ହୁଅନ୍ତି ପ୍ରମୋଦି ।
କେହୁ କୋଳ କରନ୍ତି ଯେ ରମଣ ସଂଯୋଗେ
ହିଆ ଉର ଦେଇଣ କେ ଭିଡ଼ନ୍ତି ଅତି ସରାଗେ ।
ଶାଳି ଶଳା ଭାଉଜ ଯେ କରନ୍ତି ଢମାଳି
କେହୁ କାମଭର ହୋଇ ସତୀ ନ ସମ୍ଭାଳି ।
ସ୍ତମ୍ଭୀଭୂତ ହୋଇଣ ଚାହେଁ କେଉଁ ନାରୀ
ରମଚନ୍ଦ୍ର ମୁଖକୁ ଅନାଇ ନେତ୍ର ଢାଳି ।
ଲାଭିର ଭିତରକୁ କେ କାଢଇ ମଲକୁଟି
କେହୁ ନାରୀ ଗଣ୍ଡସ୍ଥଳୁ କୁଙ୍କୁମ ଉକୁଟି ।
ନେତ୍ର ଭଙ୍ଗିରେ ଶ୍ରୀରାମ ଚନ୍ଦ୍ରକୁ ଡ଼ାକନ୍ତି
ଶୂନ୍ୟେ ଶୂନ୍ୟେ ଚୁମ୍ବ କେହୁ ଦେଇଣ ହସନ୍ତି ।
କେ ବୋଲାଇ ସୀତାଙ୍କୁଇ ପାଳିବଟିକି ଭଲେ
କୋପ ନ କରିବ ନା କିଞ୍ଚିତ ଦୋଷ କଲେ ।
ଆବରହିଁ ବିଭାକୁ ନୋହିବଟିକି ପୁଣି
ଏକଥା ଅଟେ ଆମ୍ଭରି ସବୁରି ମାଗୁଣି ।
ଯହୁଁ ପରିହାସ ତାକୁ କରନ୍ତି ଯୁବତୀ
ତାହା ଶୁଣି ଅଳ୍ପ ଅଳ୍ପ ହସି ଦାଶରଥି ।
ଚାରି ବରଙ୍କର ଏ ବିଧି ସରିଲା ମଙ୍ଗଳନ
ଜାନକୀକି ମଙ୍ଗୁଳି ଆସନ୍ତି ନାରୀଗଣ ।
କନିଷ୍ଠ ତିନିଭଗ୍ନି ସହିତରେ ସତୀ
ଯେ ବିଧି ବିଧାନରେ ମଙ୍ଗୁଳି ହୁଅନ୍ତି ।
ଏଥୁ ଅନନ୍ତରେ ପୁଣ ମୁଦୁସୁଲିମାନେ
ହଳଦୀ ଘେନିଗଲେ ରାଜାଙ୍କ ସନ୍ନିଧାନେ ।
ଭରସାଇ ଭଲକରି ନ ପାରନ୍ତି ନେଇ
ଦେଖିଣ ଦଶରଥ ରାଜା ଆପଣେ କହଇ ।
ଆଣ ଆଣ ହଳଦି ଗୋ ନ କର ତୁମ୍ଭେ ଭୀତି
ଆମ୍ଭ ଶ୍ରୀଅଙ୍ଗରେ ଆଣି ଲେପରେ ଯୁବତୀ ।
ପୁତ୍ରମାନଙ୍କର ବିଭା ଉତ୍ସବ ମୋହର
ହଳଦୀକି ବିମୁଖ ଗୋ ନାହିଁ ନା ମନର ।
ରାଜା ଆଜ୍ଞା ପାଇଣ ଯେ ମୁଦୁସୁଲିମାନ
ରାଜାଙ୍କୁ ବେଢ଼ି କୁଙ୍କୁମ କରନ୍ତି ଲେପନ ।

ସର୍ବାଙ୍ଗରେ ଲେପନ୍ତେ ଦିଶିଲା ସୁନ୍ଦର
ସୁବର୍ଣ୍ଣ ଗୁଣା ପରାଏ ବାଢ଼ି ମନୋହର ।
ପକ୍ୱକେଶ ତାହାର ହଳଦୀ ରସ ମିଶି
ଦଶରଥ ରାଜନ ତହିଁ ଶୋଭା ଦିଶି ।
ବଶିଷ୍ଠ ବିଶ୍ୱାମିତ୍ର ବାମଦେବ ମୁନି
ହେଲେ ମଙ୍ଗଳ ସମସ୍ତ ଋଷି ଘେନି ।
ଲୋମପାଦ ଯୋଧ କୁରୁ ସୁମନ୍ତ ସହିତେ
ବରଯାତ୍ରୀ ପଣେ ଯେ ଯାଇଥିଲେ ଯେତେ ।
ନଗ୍ର ନର ନାରୀମାନେ ସର୍ବେ ମଙ୍ଗୁଳି ହୁଅନ୍ତି
କୁଙ୍କୁମ ବର୍ଣ୍ଣ ପରାଏ ଦିଶିଲାକ ପୃଥି ।
ଦାଣ୍ଡରେ ହଳଦୀ ପଡ଼େ ହାତେକ ବହଳ
ମଙ୍ଗଳ ଉତ୍ସବରେ ହୋଇଲା ନଗ୍ରେ ଗୋଳ ।
ଚାରିଦିଗ ରାଜାଙ୍କର ଯେତେ ସୈନ୍ୟ ଥିଲେ
ସମସ୍ତକୁ ଜନକ କୁଙ୍କୁମ ଦାନ ଦେଲେ ।
ଦଶରଥ ଲୋମପାଦ ଆଦି ରାଜା ଯେତେ
ମାଜଣା ବିଧି ନ ସାରିଲେ ସମସ୍ତେ ।
ସର୍ବାଙ୍ଗରେ ନଡ଼ପ ଘେନିଣ ବର ଯାତ୍ରୀ
ନଦୀ ପୁଷ୍କରିଣୀକି ସ୍ନାହାନ କରିଯାନ୍ତି ।
ଜନକର ମନ୍ଦିରେ ପ୍ରବେଶ ହେଲେ ଯାଇ
ଭୁଞ୍ଜିବାକୁ ବସିଲେ ଯେ ଗଉରବ ପାଇ ।
ଲୋମପାଦ ଦଶରଥ ଅଯୋଧ୍ୟା କୁରୁ ତିନି
ସଙ୍ଗରେ ସର୍ବ ରାଜା ସାମନ୍ତ ପାତ୍ର ଘେନି ।
ଅନୁରୂପେ ସମସ୍ତକୁ ଠାବ କରିଦେଲେ
ପତ୍ର ପାଣି ଦେଇଣ ସେ ଅନ୍ନ ପରଶିଲେ ।
ନାନାଦି ବ୍ୟଞ୍ଜନମାନ ଦିଅନ୍ତି କ୍ଷଣ କ୍ଷଣ
ଦଧି ଦୁଗ୍ଧ ଘୃତରେ ସେ ହୋଇଛି ନିର୍ମାଣ ।
ନାନା ଜାତି ପିଠା ପଣା ପଇଡ଼ କଦଳି
ଭାରି ଭୋଜନ ହେଲେ ଯେ ଜନକ ତପଶାଳି ।
ସନ୍ତୋଷ ହୋଇକରି ଉଠିଲେ ସର୍ବଜନ
ବାସ ପାଣି ଘେନି ସର୍ବେ କରନ୍ତି ଆଚମନ ।
ସମସ୍ତକୁ ଦେଲେ ନେଇ କର୍ପୁର ତାମ୍ବୁଳ
ଏସନେକ ସମୟେ ସବିତା ଅସ୍ତକାଳ ।
ଛାୟା ମଣ୍ଡପକୁ ସେ ମଣ୍ଡିଲେ ହୁଳା ଜାଳି
ଏକ ମଣି ତେଜ ଦିଶେ ଆରେକ ଉଗୁଳି ।
ବରବେଶ ହୋଇଣ ଅଇଲେ ଚାରି ଭାଇ
ଦ୍ୱିତୀୟ ବରଣକୁ ବେଦିପରେ ବିଜେ ଯାଇ ।

ଷୋଳଜଣ ବସିଲେ ଚାରି ବେଦିପରେ
ଶ୍ରୀରାମ ଲକ୍ଷ୍ମଣ ଭରତ ଶତୃଘ୍ନ ପାଶରେ ।
ଆଚାର୍ଯ୍ୟେ ଷଡ଼ ଅର୍ଘ୍ୟ ପୁଣ୍ୟ ବାଚନକରି
ସୁଗନ୍ଧ ପୁଣ୍ୟ ବାସରେ ଯେ ଚାରିବର ବରି ।
ମାତୃ ପୂଜା ବସୁଧାରା କଉତୁକ ସୁତ୍ର
ବେଦମନ୍ତ୍ର ପ୍ରମାଣେ କରନ୍ତି ସମସ୍ତ ।
ତୃତୀୟ ବରଣ ଯେ ବିଧିମତେ ସାରି
ଶିଳାବରଣ ଯେ କଲେ ବ୍ରହ୍ମଚାରୀ ।
ଶିଳା ବରଣ ସାରି ବେଦମନ୍ତ୍ର ଘୋଷି
ଅଗ୍ନିକି ଆରୋପଣ କଲେକ ମହାଋଷି ।
ତେତେବେଳେ ଜନକ ଖିରି ପାଞ୍ଚୁ ଆଣି
ଋଷିମାନେ ମନ୍ତୁରି ଦେଲେ ବେଗେ ପୁଣି ।
ଚାରି ଜ୍ୱାଇଁକି ନେଇ ଜନକ ସମର୍ପିଲେ
ଶ୍ରୀରାମ ଲକ୍ଷ୍ମଣ ଭ୍ରଥ ଶତୃଘ୍ନ ପିନ୍ଧିଲେ ।
ମୁକୁଟ ବାନ୍ଧିଲେ ନେଇ ମସ୍ତକ ଉପରେ
ଚାରିବେଦିରେ ବସିଲେ କଟକମ୍ପା ପରେ ।
ଏସନକ ସମୟରେ ଅଇଲେ ଦେବୀ ସୀତା
ସଙ୍ଗତରେ ତିନି ଭଗ୍ନି ବହୁତ ବନିତା ।
ଫଳ ପୁଷ୍ପ ଦେଇ ସୀତା ଶ୍ରୀରାମଙ୍କୁ ନମଇ
ସପ୍ତ ପାଦୁକାଦି ଉପଚାର କଲେ ତହିଁ ।
ଉଦୁଁ ଉର୍ମିଳା ମାଳିନି ସୁକ୍ରିତା ତିନି ଭଗ୍ନି
ଫଳ ପୁଷ୍ପ ନେଇ ତିନି ଭାଇଙ୍କି ଯେ ନମି ।
ଏଥୁ ଅନନ୍ତରେ ହେଲା ଲବଣ ଚାମରି
ପୂଜା ବଢାଇଲେ ଚାରିକନ୍ୟା ବୃନ୍ଦାନାରୀ ।
ଏଥୁ ଅନନ୍ତରେ ପୁଣ ହେଲା ବ୍ରାହ୍ମଣ ଭୋଜନ
ଭିତରକୁ ଡାକି ସେ ଦିଅନ୍ତି ବିଦ୍ୟୁଜନ ।
ଜାନକୀଙ୍କି ଆଣ ବେଗେ କନ୍ୟା ବେଶକରି ।
ମସ୍ତକରେ ମୁକୁଟ ଗଳାରେ ପୁଷ୍ପ ଭରି ।
କୁଶବିଟ ଆଦି କଲେ ବେଦର ବିଧାନ
ବେଶଭୂଷଣ କନ୍ୟାକୁ କଲେ ଦାସୀଗଣ ।
ଚାରିଭଗ୍ନି ସହିତେ ଅଇଲେ ଦେବୀ ସୀତା
ହୁଳହୁଳି ଧ୍ୱନିକଲେ ସାଧବି ବନିତା ।
ଅଞ୍ଜୁଳି ଶ୍ରୀକରେ ତଣ୍ଡୁଳାଦି ଧରି
ଶ୍ରୀରାମଙ୍କ ଉପରକୁ ପକାଇ ସୁନ୍ଦରୀ ।
ସେକାଳରେ ଋଷିମାନଙ୍କର ବେଦ ଧ୍ୟାନ
ହୁଳହୁଳି ଧ୍ୱନି ଦିବ୍ୟ ଯୁବତୀଙ୍କ ଗାନ ।

ଲୋକମାନଙ୍କ ଆନନ୍ଦ କଳନା ନ ଯାଇ
ଉପମା ଦେବାକୁ ତିନିପୁରେ ଯହିଁ ନାହିଁ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରି
ତିନି ଭଗ୍ନି ତଣ୍ଡୁଳ ବରଙ୍କୁ ଦେଇ କରି ।
ବେଦିର ଉପରେ ବସିଲେକ ଯାଇ
କୁଶଧ୍ୱଜ କୋଳରେ ମାଳିନି ଶୋଭାପାଇ ।
କୈକେଇର କୋଳରେ ଭରତ ବସିଲେ
ବେଦପତି ସାବିତ୍ରୀ ପରାଏ ଦିଶିଲେ ।
ଉର୍ମିଳା ବସିଲେ ଯାଇ ଜନକ ଶଙ୍କା କୋଳେ
ସୁମିତ୍ରା ଭାଇ କୋଳେ ଲକ୍ଷ୍ମଣ ସୁନ୍ଦରେ ।
କି ଅବା ହର ପାର୍ବତୀ ମଧପୁରେ ଆସି
ଧନ୍ୟ ଧନ୍ୟ ବୋଲି ସଭାଜନେ ପରଶଂସି ।
ମଉଳା କୋଳରେ ସୁମିତ୍ରା ବିଜେ କରି
ନୀଳାବତୀ ଭାଇ କୋଳେ ଶତୃଘନ ବସିକରି ।
ସଚି ବାସବ ପରାଏ ହୋଇଲେ ଭୂଷଣ
ନାହିଁ ନାହିଁ ପଟାନ୍ତର ଏ ତିନି ଭୁବନ ।
ଏଥୁ ଅନନ୍ତରେ ପୁଣ ଶୁଣ ଗୋ ଗଉରୀ
ବେଶ ହୋଇକରି ବିଜେ ଜନକ କୁମାରୀ ।
ଦଶରଥ କୋଳରେ ବିଜୟ ରଘୁସାଇଁ
ଜନକମୁନି କୋଳରେ ଜାନକୀ ଶୋଭା ପାଇ ।
ଶ୍ରୀରାମଚନ୍ଦ୍ର ଆଗରେ ଜାନକୀ ଦେବୀ ବସି
ବାକ୍ୟ କରାବନ୍ତି ବଶିଷ୍ଠ ମହାଋଷି ।
ଅସର ତୁଠରୁ ସୁବର୍ଣ୍ଣ ପାତ୍ରେ ପାଣି ଆଣି
ବର ପାଦ ଧୋଇଲେ ଜନକ ନୃପମଣି ।
ଦଧି ଦୁଧ ପଇଡ ଯେ ମଧୁରସ ଢାଳି
କନ୍ୟାର ଭାଇମାନେ ଦିଅନ୍ତି ପାଣି ଟୋଳି ।
ଚରଣ ତଳରେ ସୁବର୍ଣ୍ଣର ଖୁରା ଦେଇ
ପାଦଦକ ଯାଇ ସମ୍ଭାଳିଲା ପୂର୍ଣ୍ଣ ହୋଇ ।
ଏ ପ୍ରଭୁ ବାମନ ଅବତାର ଏହୁ ପାଦ
ପଖାଳି ନପାରି ଧାତା ମନରେ ବିଷାଦ ।
ଚଉରାସି କାଠି ଗଙ୍ଗା ପାଦକୁ ନ ଛୁଇଁ
ସେ ଚରଣର ଉଦକ ଶଙ୍କର ନ ପାଇ ।
ସେ ବିଷ୍ଣୁ ଚରଣକୁ ଧୋଇଲା ଜନକ
ପୂର୍ବକାଳେ ତପସ୍ୟା ସେ କଲେକ ଅନେକ ।
ଏଥୁ ଅନନ୍ତରେ ପୁଣ ବିଭାର ବିଧାନ
ଭିତରକୁ ଡାକି ଯେ ଦିଅନ୍ତି ବିଦ୍ୟୁଜନ ।

ଏଥୁଅନ୍ତେ ପୁଣ ମହାବାକ୍ୟ ଉଚ୍ଚାରି
ମନ୍ତ୍ରମାନ ସୁମରିଣ ମଧୁପର୍ବ ସାରି ।
ଜନକ ଋଷି କୋଳେ ଅଛଇ ନନ୍ଦିନୀ
ବରୁଣ କୋଳରେ ଯେହ୍ନେ ସୁନ୍ଦର କମଳିନୀ ।
ଶ୍ରୀରାମ ଚନ୍ଦ୍ର ବିଜେ ଦଶରଥ କୋଳେ
ନାହିଁ ନାହିଁ ପଟାନ୍ତର ଏ ମହିମଣ୍ଡଳେ ।
ଜନକ ରାଣୀମାନେ ଗଗନ ମାର୍ଗେ ଚାହିଁ
ଏକ ଆରକରେ ଠାରନ୍ତି ଆଙ୍ଗୁଳି ଦେଖାଇ ।
ଦେଖ ଶ୍ରୀରାମଚନ୍ଦ୍ର ସୀତାକୁ ହରଇ
ଏହାକୁ ଏହି କନ୍ୟା କନ୍ୟାକୁ ବର ଏହି ।
ଧନ୍ୟ ଧନ୍ୟ ଶ୍ରୀରାମ ଶ୍ୟାମଘନ ଜିଣି ବର୍ଣ୍ଣ
ବିଜୁଳି ଝଟକ ପରି ପିନ୍ଧିଲା ବସନ ।
ଅନେକ ସ୍ତିରୀ ପୁରୁଷ ସୁନ୍ଦର ପଣେ ଅଛି
ଏ ଦୁହିଁଙ୍କି ଅନାଇଲେ ନ ଯୋଗାଏ କିଛି ।
ଏ ସମୟେ ଇନ୍ଦ୍ରାଦି ଦେବଗଣମାନ
ମାତଳି ରାଇ ସେ କହନ୍ତି ବଚନ ।
ତୁମ୍ଭେ ଯାଇ ଶ୍ରୀରାମଚନ୍ଦ୍ର ବିଭା ଦେଖି ଆସ
ଏହା ଶୁଣି ଦେବ ସୁତ ମନରେ ହରଷ ।
ସେ ବିଧି ଅକ୍ଷତ ଘେନି ବେଗ ହୋଇଗଲା
ମିଥିଳା ମଣ୍ଡରେ ବିଭା ସ୍ଥାନରେ ମିଳିଲା ।
ଋଷିମାନଙ୍କ ଚରଣେ ନମସ୍କାର କରି
ପାଶେ ବସାଇଲେ ବିଶ୍ୱାମିତ୍ର ତପଚାରୀ ।
ଶୁଣ ଦେବୀ ଭଗବତୀ ଏଥୁ ଅନନ୍ତରେ
କୁଳ ଗୋତ୍ର ଉଚ୍ଚାରି ବଶିଷ୍ଠ ମୁନିବରେ ।
ମହାବାକ୍ୟେ ଦେଶ କାଳ ପାତ୍ରକୁ ସୁମରି
ଶ୍ରୀରାମଚନ୍ଦ୍ର ଦକ୍ଷିଣ ଭୁଜକୁ କରେ ଧରି ।
ଜାନକୀ ଦେବୀ ଦକ୍ଷିଣ କରତଳେ ନେଇ
ମନ୍ତ୍ର ପଢ଼ି କୁଶରେ ବାନ୍ଧିଲେ ତପ ଦେହି ।
ଶଙ୍ଖେ ପାଣି ତୋଳି ଜନକ ଋଷି ଦେଲେ
ଶ୍ରୀରାମଙ୍କୁ ନିଜ ଦୁହିତା ସମର୍ପିଲେ ।
ହୁଳହୁଳି ଶବଦ ଶୁଭଇ ଘୋର ତର
ମଙ୍ଗଳ ରାଗେ ବାହାରେ ବାଜେ ବୀର ତୁର ।
କୋଟିଏ ଶଙ୍ଖଧ୍ୱନି ଶୁଭଇ ଘନ ଘନ
ସୁସ୍ୱର ସ୍ୱରେ ସୁନ୍ଦରୀ କରନ୍ତି ଗାୟନ ।
ଦେବତାଏ ଆନନ୍ଦ ଅମର ପୁରେ ଥାଇ
କୁସୁମ ବରଷନ୍ତି ବର କନ୍ୟାଙ୍କ ଶିରେ ନେଇ ।

ଶ୍ରୀରାମ ସୀତାଙ୍କ କର ଗ୍ରହଣ ସେ କରି
କନକଙ୍କର କର ମର୍କତ କର କି ଅଛି ଧରି ।
କନ୍ୟା ଦାନ ଦେଇଣ ଦକ୍ଷିଣା ଋଷି ଦେଲା
ଲକ୍ଷ ଲକ୍ଷ ସୁବର୍ଣ୍ଣ ବିପ୍ରକୁ ସମର୍ପିଲା ।
ନାନା ଜାତି ଅଳଙ୍କାର ଦେବାଙ୍ଗ ବସନ
ହୀରା ନୀଳା ସୁନା ମରକତ ପାତ୍ରମାନ ।
ଗଡୁ ଗରୁଆ ନାକୁଆ ରତନର ଝରି
ଗୋଡ଼ ଧୁଆ ହାତଧୁଆ ଟାଟିକ ଖୁରା ଖୁରି ।
ବିବିଧ ପ୍ରକାର ପାତ୍ର ମୁଖ ମୁଖ ଦରପଣ
କାଣ୍ଡ ଖଣ୍ଡା ସାବେଳି ଯେ ଶରାସନ ତ୍ରୋଣ ।
ଲକ୍ଷେ ମହା ମତ୍ତଗଜ ସଜକରି ଆଣି
ଯୋଦ୍ଧାମାନେ ବସିଧରି ଅଛନ୍ତି ଯେ ପୁଣି ।
ଲକ୍ଷେକ ଅଶ୍ୱ ଦେଲା ଯେ ସୁଲକ୍ଷଣବନ୍ତ
ସୁବର୍ଣ୍ଣର ବାଗ ଘେନି ଚଢ଼ିଣ ରାଉତ ।
ଲକ୍ଷେକ ସୁରଭି ଦେଲା ସମକଛ କରି
ଲକ୍ଷେକ ପରିବାର ସର୍ବ ଅଳଙ୍କାର ଭରି ।
ନୃତ୍ୟ ଗୀତରେ କୁଶଳ ଅପୂର୍ବ ସୁନ୍ଦର
ପୂଜା ମୋହ କରିବାରେ ସର୍ବେ ଧୁରନ୍ଧର ।
ଅହି ବ୍ରତେ ରଥ ଦେଲା ରଥିଙ୍କ ସହିତ
ରତ୍ନମୟେ କଳସ ମଣ୍ଡନ ବୀର ନେତ ।
ଲକ୍ଷେ ଶ୍ୱେତ ଚାମର ଯେ ଲକ୍ଷେକ ଶ୍ୱେତଛତ୍ର
ଲକ୍ଷେକ ଦେଲା ପୁଣ ଯେ ସୁରଙ୍ଗିନୀ ବସ୍ତ୍ର ।
ଲକ୍ଷେକ ମୁକ୍ତା ଦେଲା ଚନ୍ଦ୍ରକାନ୍ତି ଜିଣି
ଲକ୍ଷେ ପୁଣ ଆଣିଦେଲା ଚନ୍ଦ୍ରକାନ୍ତି ମଣି ।
ଲକ୍ଷେ ହୀରା ପଦ୍ମରାଗ ଲକ୍ଷେକ ପୋଏଳା
ଲକ୍ଷେକ ବଇଡୁର୍ଯ୍ୟ ଲକ୍ଷେକ ପୁଷ୍ପରାଗ ମାଳା ।
ପାଦୁକା ବିଞ୍ଚଣା ପଙ୍ଖା ସବୁ ରତ୍ନମୟେ
ଗଜଦନ୍ତ ପଲଙ୍କ ସେ ନେତ୍ର ତୁଳି ଦିଏ ।
ରଙ୍ଗ ଶାଢ଼ୀ ପାଟରେ ଅପୂର୍ବ ମୁଚୁଳି
ଗଜଦନ୍ତ ନିର୍ମିତ ଅପୂର୍ବ ଖଟ ଦୋଳି ।
ବିଚିତ୍ର ଚାନ୍ଦୁଆମାନେ ମୁଚି କାମରେ ଟେରା
ନବରତ୍ନ ଚଉକି ମୁକୁତା ରତ୍ନ ଝରା ।
ତାଡ ବାହୁଟି ଶଙ୍ଖ କି କଙ୍କଣ ବିଦମାଳୀ
ଚରଣକୁ ତୋଡ଼ର ଯେ କଟିକି ମେଖଳି ।
ହୃଦୟକୁ ପଦକ କଣ୍ଠକୁ ରତ୍ନହାର
ଶ୍ରବଣକୁ କୁଣ୍ଡଳ ଆଦିତ୍ୟ ତେଜକର ।

ସମ୍ବର୍ଦ୍ଧ କରି ଅନେକ ଦେଲା ଯଉତୁକ
ଦେଇଣ ମନେ ନୃପତି ନୋହିଲା ଜନକ ।
ଭଣ୍ଡାର ସହିତେ ସବୁ ସଜ୍ଜକରି ଆଣି
ଚତୁରଙ୍ଗ ସୈନ୍ୟ ସବୁ ଦେଲା ନୃପମଣୀ ।
ସଭାତଳେ ଉଭା ହୋଇ ଯୋଡ଼ି ବେନିକର
ଦଶରଥ ମହାରାଜା ଅଯୋଧା ଈଶ୍ୱର ।
ଏ ମୋହର ଦୋହିତା ଜାନକୀ ନାମେ ବାଳି
ରୂପଗୁଣେ ସରିସମ ନାହିଁ ମହିଆଳି ।
ଏହାଙ୍କର ସୁତଙ୍କୁ ମୁଁ ବିଭା ତାଙ୍କୁ ଦେଲି
ରଘୁବଂଶ ନାଥଙ୍କୁ ମୁଁ ସମର୍ପି ହୋଇଲି ।
ଯଉତୁକ ଦେବାକୁ ମୁଁ ନୁହଇ ଭାଜନ
ସମର୍ପି ହୋଇଲି ତୁମ୍ଭେ ଶୁଣ ସର୍ବଜନ ।
ଏହାଶୁଣି ଦଶରଥ କରଯୋଡ଼ି କହି
ହୋଇଲି ପବିତ୍ର ତୁମ୍ଭେ ବସ ତପଦେହି ।
ମୋହନ ନନ୍ଦନଙ୍କୁ ନନ୍ଦିନୀ ବିଭାକଲ
ଅଯୋଧା ନବରେ ମୋର କାରେଣି ହୋଇଲ ।
ଏହା ଶୁଣି ଜନକ ପରମ ତୋଷ ହେଲେ
ଇଷ୍ଟବନ୍ଧୁ ଲୋକେ ଯଉତୁକ ନେଇଦେଲେ ।
କନ୍ୟାର ମାତାଦି ଉପମାତା ଖୁଡିଆଈ
ବନ୍ଦାଇ ଯଉତୁକ ଦିଅନ୍ତି ମୁଖ ଚାହିଁ ।
ଆସ୍ଥାନର ତଳରେ ହୋଇଲା ଦ୍ରବ୍ୟ ପୂର୍ଣ୍ଣ
ସୁମନ୍ତ ମନ୍ତ୍ରୀ କରେ ସମସ୍ତ ସମ୍ଭାଳିଣ ।
ସୁଲକ୍ଷଣି ଦ୍ୱିଜନାରୀ ହସ୍ତିଗଣ୍ଠି ଫେଡି
ଯେ ବିଧି ବିଧାନମାନ ସମସ୍ତ ନିବାଡ଼ି ।
ପୁଣି ଅଗ୍ନି ସ୍ଥାପନ କରନ୍ତି ବିଦ୍ୟୁଜନ
ଇଚ୍ଛା ହୋମକରିଣ ପୂଜନ୍ତି ହୁତାଶନ ।
ଦିଗପାଳଙ୍କୁ ଯେ ହବିର୍ଭାଗ ଦେଲେ ପୁଣି
ଇଷ୍ଟ ହୋମ କରନ୍ତି ଯେ ବିଧିବେଳ ଜାଣି ।
ଲଜ୍ୟା ହୋମ କଲେ ପୁଣି ଏଥୁ ଅନନ୍ତରେ
ଘୃତ ପାଇ ଆନନ୍ଦ ହୋଇଲେ ବୈଶ୍ୱାନରେ ।
ହେମ ଧୂମମାନ ଏକ ହୋଇଣ ଉଠାଇ
ଜାନକୀର ମୁଖପଦ୍ମ ପାଶରେ ମିଳଇ ।
ଫୁଟିଲା ପଦ୍ମରେକି ଭ୍ରମର ଅଣକତି
ମଧୁ ଲୋଭରେ ଯେମନ୍ତେ ହୋଇଥାଇ ମତି ।
ହୋମବିଧି ସାରିବାରୁ ଦକ୍ଷିଣାମାନ ଦେଇ
ଆଶୀର୍ବାଦ କରନ୍ତି ସକଳ ତପଦେହି ।

ଚଉଷଠି କାଣ୍ଡ ବିଭାର ବିଧି ପାଠ
ଆଦି ଅନ୍ତ କରି ତାହା ପଢ଼ନ୍ତି ବଶିଷ୍ଠ ।
ଏଥୁ ଅନନ୍ତରେ ସେ ତୃତୀୟ ବେଦିପରେ
କଉଶିକ ମାରକଣ୍ଡ ଆଚାର୍ଯ୍ୟ ସେଥିରେ ।
ଏହି ବିଧିରେ ଲକ୍ଷ୍ମଣ ଉର୍ମିଳା କଲେ ବିଭା
କୁଶଗ୍ରନ୍ଥି ବାନ୍ଧିଲେ ଋଷି ବେଦବାକ୍ୟେ ପୂର୍ବା ।
ଜନକ ଆସିଣ ଯେ ଯଉତୁକ ଦେଲେ
ସେହି ବିଧାନରେ ଅନେକ ଧନ ରତ୍ନ ଦେଲେ ।
ପୁଣି ତୃତୀୟ ବେଦିରେ ନାରଦ ଅଷ୍ଟବକ୍ର
ଭରତ ମାଳିନୀଙ୍କୁ କଲେ ବିଭା ସୂତ୍ର ।
କୁଶଗ୍ରନ୍ଥି ବାନ୍ଧିଲେ ବେଦବାକ୍ୟ ପଢ଼ି
କୁଶଧ୍ୱଜ ଯଉତୁକ ଦିଅନ୍ତି ପାଣି ତୋଳି ।
ରାମ ବିଧି ପରକାରେ ଦେଲେ ବହୁ ଧନ
କୁଶଗଣ୍ଠି ଫେଡ଼ି ଦେଲେ ସଧବା ନାରୀଗଣ ।
ତହୁଁ କୁଶଧ୍ୱଜ ଯେ ଚତୁର୍ଥ ବେଦିରେ ପରବେଶ
ଋଷ୍ୟଶୃଙ୍ଗ ଅଗସ୍ତି ସେଥିରେ ଆଚାର୍ଯ୍ୟତ ।
ଲକ୍ଷ୍ମଣ ସାନ ଭରତ ନାମ ତା ଶତ୍ରୁଘନ
ଦଶରଥ ନୃପତିରେ କୋଳର ନନ୍ଦନ ।
ସୁକିର୍ତ୍ତୀ ନାମରେ ଯେ ଅତି ମନୋହର
ଉପମା ଦେବାକୁ ନ ଦିଶଇ ତିନିପୁର ।
କୁଶଧ୍ୱଜ ଝିଅ ସେ ମାଳିନୀଠାରୁ ସାନ
ସେ କନ୍ୟା ବିବାହ ଯେ ହୋଇଲେ ଶତ୍ରୁଘନ ।
ବିଧି ବିଧାନରେ ବିଭା ବଢ଼ାଇ ବେନି ମୁନି
କନ୍ୟାବରଙ୍କର ହସ୍ତ ବାନ୍ଧି କୁଶ ବେନି ।
ବହୁତ ଧନ ରତ୍ନ ଦେଲେ କୁଶଧ୍ୱଜ ମୁନି ତ
କରଯୋଡ଼ି କହିଲେ ଅନେକ ବିନଇ ତ ।
ସନ୍ତୋଷ ହୋଇଲେ ଶୁଣିକରି ଶତ୍ରୁଘନ
ଏଥୁ ଅନନ୍ତରେ ଯେ ପାର୍ବତୀ ଦେବୀ ଶୁଣ
ସେଠାରୁ କୁଶରଙ୍କୁ ବିପ୍ରେ ଫେଡ଼ି ଦେଲେ
କଟକମ୍ପା ଉପରେ ନେଇଣ ବସାଇଲେ ।
ଅଗ୍ନିକି ସମର୍ପଣ କଲେକ ଆହୁତି
ସହସ୍ରେ ଆହୁତି ଲେଖାଏ ଦେବତାରେ ଦ୍ୟନ୍ତି ।
ଦେବକର୍ମ ସରନ୍ତେ ଘୃତ ଦେବାରେ ଥିରକଲେ
ବର କନ୍ୟା ଛିଡ଼ାକରି ଆଗପଛ ଭଲେ ।
ଅଗ୍ନିରେ ନିବେଶିଲେ ଶ୍ରୀଫଳଙ୍କୁ ନେଇ
ହୋମବିଧି ସାରିଲେ ବର କନ୍ୟାକୁ ବସାଇ ।

ଅଗ୍ନିକି ସନ୍ତୋଷ କଲେ ଅମୃତ ରସନେଇ
ଦେଖୁଣ ଦେବତାଏ ଶୂନ୍ୟରେ ତୋଷ ହୋଇ ।
କୁସୁମ ବୃଷ୍ଟିକଲେ ଚାରି ବେଦି ପରେ
ପାରିଜାତକ ପୁଷ୍ପେ ସର୍ବେ ଦେଖିଲେ ନେତ୍ରରେ ।
ସକଳ ଋଷିଏ ଯେ ମନେ ବିଚାରିଲେ
ନିଶ୍ଚୟ ନାରାୟଣ ଶ୍ରୀରାମ ଅଟେ ଭଲେ ।
ବିପ୍ରମାନେ ବିଚାରନ୍ତି ଅଟନ୍ତି ଶ୍ରୀହରି
ରାଜାଗଣେ ବିଚାରନ୍ତି ଅଟନ୍ତି ନରହରି ।
ସେନାବଳ ପରଜା ସମସ୍ତେ ବିଚାରନ୍ତି
ଲକ୍ଷ୍ମୀ ନାରାୟଣ ବିଭା ଦେଖି ତୋଷ ହୋନ୍ତି ।
ତେଣୁ ଅମଳାଣ ପୁଷ୍ପ ବୃଷ୍ଟି କଲେ ଜାଣ
ଏମନ୍ତ ବିଚାର ଯେ କଲେ ସର୍ବଜନ ।
ଚାରିବର ପାଶରେ ସୁନ୍ଦର ଚାରି ବାମା
ନାହିଁ ନାହିଁ ପଟାନ୍ତର ଦେବାକୁ ଉପମା ।
ସୀତା ପଛେ ଗମନ କରନ୍ତି ଦେବ ରାମ
ରତି ପାଶେ ଯେମନ୍ତେ ସୁନ୍ଦର ରୂପ କାମ ।
ମାଣ୍ଡବିନ ପଛରେ ବିଜୟ ଭରତ ।
ପୁଲମାକୁ ଆବୋରି ବାସବ ଯେମନ୍ତ ।
ଉର୍ମିଳାର ପଛରେ ବିଜୟ ସଉମିତ୍ରୀ
ସଦାଶିବ ଆଗରେ ଯେମନ୍ତ ପାର୍ବତୀ ।
ସେହି ଶିବ ପଛରେ ଯେମନ୍ତେ ନିଶାକର
ସୁମିତ୍ରା ଶତ୍ରୁଘନ ଯେ କେମନ୍ତ ସୁନ୍ଦର
ଜନକର ମନ୍ଦିର ମଧ୍ୟରେ ଯାଇ ମିଳି
ଆସିଣ ପରବେଶ ହୋଇଲେ ସର୍ବ ବାଳି ।
ନେତ ତୁଳି ଉପରେ ବିଜୟେ ବରକନ୍ୟା
ଯୂତ ଖେଳା ତହିଁ ଯେ କଲେକ ରଚନା ।
ଶୁଦ୍ଧ ସୁବର୍ଣ୍ଣ କଉଡ଼ି ବୁଡାଇଲେ ନେଇ
ବାଳି ବାଛନ୍ତି ସେ ବର କନ୍ୟାଙ୍କର ପାଇଁ ।
ଦୁଇ ବାଳି ମିଶାଇ ଜାନକୀ କରେ ଦେଲେ
ଖେଳଘର ଦ୍ୱାର ଜିତି ପରୀକ୍ଷା ସେ କଲେ ।
କନ୍ୟାର ଲୋକମାନେ ବୋଲନ୍ତି ନାହିଁ ଥାଇ
ଶ୍ରୀରାମଚନ୍ଦ୍ର ବିନେ ଆନ ମନେ ହେବ ନାହିଁ ।
ଏମନ୍ତ ନିଷ୍ଠେ ହେଲେ ଫେଡ଼ିବ ଆମ୍ଭବାଳି
ଶୁଣିଣ ହସନ୍ତି ବରଦିଗ ମୃଦୁସୁଲି ।
ସୀତା ଘେନି ସର୍ବକାଳେ ବଞ୍ଚିବ ହେ ଦିନ
ସୀତା ବିନେ ଆନଠାରେ ନ କରିବ ମନ ।
ଦୁଇ କୁଳରୁ ଯହୁଁ ହୋଇଲା ସନମତ
କଉଡିକି ପକାଇଲେ ଜନକ ଦୁହିତ ।
ଜାନକୀର ବାଳିତଳେ ପଡିଲାକ ଯହୁଁ
ନାରୀଗଣମାନେ ହୁଳହୁଳି ଦେଲେ ତହୁଁ ।
ଆମ୍ଭେ ଜିଣିଲୁ ବୋଲି ବୋଲନ୍ତି କନ୍ୟାଲୋକେ
ମଧ୍ୟସ୍ତ ହୋଇଣ ଯେ କହନ୍ତି ପୁଣ ଥୋକେ ।
ଆଉ ବେଳେ ପୁଣ ଶ୍ରୀରାମଚନ୍ଦ୍ର ପଡୁ ବାଳି
ତେବେ ସେ କଥାମାନ ଜାଣିବା ପରିକଳି ।
ଏକାବେଳକେ ଜଣାନାହିଁ ଶୁଦ୍ଧାଶୁଦ୍ଧି
ସମସ୍ତେ ବୋଲନ୍ତି ଏ ହେଲା ଭଲବୁଦ୍ଧି ।
ସୀତୟାର ହସ୍ତରୁ କଉଡ଼ି ଘେନିଗଲେ
ନାଗରୀମାନେ ଶ୍ରୀରାମ କରେ ଦେଲେ ।
ଶ୍ରୀରାମଚନ୍ଦ୍ର ସିଞ୍ଚିକରି ପାଡିଲେ ଯେ ବାଳି
ସେ ବେଳେ ଜିଣିଲେ ପୁଣ ଜନକ ଦୁଲାଳି ।
କନ୍ୟାଦିଗ ଲୋକମାନେ ହୁଳହୁଳି ଦ୍ୟନ୍ତି
କୋପଭର ହୋଇଣ କହନ୍ତି ରଘୁପତି ।
ଏବେଳ ଯେ ହାରିବ ତାହାର ସେବକ
ଏ କଥାକୁ ସାକ୍ଷୀ ହୋଇଥାଅ ସର୍ବଲୋକ ।
ଶୁଣିଣ ସମସ୍ତେ ଯେ ପରମ ତୋଷମତି
ଶ୍ରୀରାମ ଶ୍ରୀକରେ କଉଡ଼ି ଘେନିଛନ୍ତି ।
କନ୍ୟାର ଲୋକମାନେ ବୋଲନ୍ତି ତୁମ୍ଭେ ଛାଡ
ଆମ୍ଭର ସିନା ହୋଇବ ଏଘାନ୍ତର ପୀଡ଼ ।
ଜାନକୀ ପକାଇବେ ଜିଣିବୁ ସିନା ଆମ୍ଭେ
କଉଡ଼ି ନ ଛାଡ଼ି କିମ୍ପା ଧରିଅଛ ତୁମ୍ଭେ ।
ଶୁଣି ହସି ଶ୍ରୀରାମ କରରୁ କଉଡ଼ି ଛାଡ଼ିଲେ
ଯୁବତୀମାନେ ତୋଳି ଜାନକୀରେ ଦେଲେ ।
ବାଳିକରେ ଝମକାଇ ଘେନି ଯେ ସତୀ
ଅଳ୍ପ ଅଳ୍ପ ହସଇ ମନରେ ତୋଷମତି ।
ପକାନ୍ତେଣ ସେଥର ପଡିଲା ସୀତା ବାଳି
ଜଗତଜିତା ଜିଣିଲା ଜନକ ଦୁଲାଳି ।
ଏଥୁ ଅନନ୍ତରେ ଯୂତଖେଳ ବିଧି ସାରି
ବନ୍ଦାଇଣ ଅଇଲେ ଯେ ଜନକ ମନୋହାରି ।
ପଛକରେ ଏକୁ ଏକ ଆଗସରି ହୁନ୍ତି
ବରକନ୍ୟା କରଶିରେ ଦୁର୍ବାକ୍ଷତ ଦ୍ୟନ୍ତି ।
ହୁଳହୁଳି ଶବଦେ ଯେ ଶୁଭଇ ନିରନ୍ତର
ଲକ୍ଷ୍ମୀ ନାରାୟଣ ବିଜେ ଜନକ ମନ୍ଦିର ।

ଏମନ୍ତେ ବନ୍ଦାପନା ବିଧିରେ ଶିରେ ଯହୁଁ
ଭୁଞ୍ଜିବାକୁ ଠାବ ଆସିକରି ଦେଲେ ସେହୁ
ସୁବର୍ଣ୍ଣ ଥାଳିରେ ବାଢି ଅନ୍ନ ଆଣି ଦେଲେ
ଏକପାତ୍ରେ ବର କନ୍ୟା ଭୁଞ୍ଜିବ ବୋଇଲେ ।
ରତ୍ନ ଝରିର ପାଣି ଆଣିଦେଲେ ତୋଳି
ଅନେକ ଯୁବତୀମାନେ ଅଛନ୍ତି ତହିଁ ମିଳି ।
ମୁକୁତାରୁ ଅଧିକ ଦିଶଇ ଅନ୍ନ ବର୍ଣ୍ଣ
ପରଷନ୍ତି ଜନକ ରାଣୀହଂସମାନ ।
ଲବଣ ଚୂର୍ଣ୍ଣ ସୁବାସ ଘୃତ ଆଣିଦେଲେ
ଡାଳିମ୍ବ ଜମ୍ବିଲ ଜୀରା ଅଦା ପରଷିଲେ ।
କୃଷ୍ଣ ମୃଦୁ ବ୍ୟଞ୍ଜନ ସୁବର୍ଣ୍ଣ ପରି ଜ୍ୟୋତି
ଆନନ୍ଦରେ ଶ୍ରୀରାମ ମଣୋହି କରନ୍ତି ।
ସୀତା ଅନ୍ନ ଭୁଞ୍ଜିବାକୁ ବଢାବନ୍ତି ହାତ
ରତ୍ନ ବାହି ମଧ୍ୟରେ ଦିଶିଲେ ପ୍ରାଣନାଥ ।
ପିତ ବସ୍ତ୍ର ମୁକୁଟ କୁଣ୍ଡଳ ମଣିହାର ।
ରୂପିଲା ମର୍କତ ପରି ବିରାଜେ ଶରୀର ।
କୋଟି କୋଟି ପୂର୍ଣ୍ଣଚନ୍ଦ୍ର ନିନ୍ଦଇ ବଦନ
ରାଜିବ ବଦନ ପରାୟେ ସୁନ୍ଦର ନୟନ ।
ଜନକର ଲବ୍ଧେ ମୁଖେ ପୂରିଛି ପ୍ରସନ୍ନ
ଅଧର ହୋଇଛି ମନ୍ଦହାସେ ପରିପୂର୍ଣ୍ଣ ।
ଦେଖି ଦେବୀ ଲାଜେ କାଢ଼ି ନ ପାରି ହାତ
ମନେ ବିଚାରନ୍ତି ଏ ମୋହର ପ୍ରାଣନାଥ ।
ଧନ୍ୟ ଧନ୍ୟ ଶ୍ରୀରାମଚନ୍ଦ୍ର ସର୍ବାଙ୍ଗ ସୁନ୍ଦର
ଅନେକ ତପସ୍ୟାରେ ମୁଁ ପାଇଲି ଏ ବର ।
ଏତେ ବିଚାରିଣ ନିରୋପଇ ପୁଣି ପୁଣି
ତାହା ଦେଖି ବିଚାରନ୍ତି ସକଳ ତରୁଣୀ ।
କେ ବୋଇଲେ ଅନ୍ନ କିମ୍ପା ନ ଭୁଞ୍ଜଇ ସତୀ
କେ ବୋଲଇ ଆଗେ ଯା ଭୋଜନ କଲେ ପତି ।
ଉଚ୍ଛିଷ୍ଟ ବୋଲି ଅବା ନକରେ ଆହାର
ବିଭା ସମୟରେ ମାତ ନୁହଇ ଏ ବେଭାର ।
କେ ବୋଲଇ ଆମ୍ଭମାନଙ୍କୁ ଦେଖି ଲଜ୍ଜା କଲା
ବହୁତ ଲୋକ ଦେଖି ଅନ୍ନ ନ ଖାଇଲା
ଚାଲ ଏଠାରୁ ଆମ୍ଭେ ସମସ୍ତେ ଚାଲିଯିବା
ଜାନକୀର ଉପବାସ ଏଥିରେ କିମ୍ପା ଥିବା ।
ଏହାଙ୍କର ଉତ୍ସବ ଆମ୍ଭେ ଦେଖିଣ ଆନନ୍ଦ
ଏହାନ୍ତ ବିଚାରନ୍ତି ଏ ଆମ୍ଭର କର୍ମ ମନ୍ଦ ।

ବିଚାରି ବୋଲେ ତହିଁ ଏକ ନାରୀଜନ
ମୁହିଁ ଜାଣିଲିଣି ସଖୀ ଜାନକୀର ମନ ।
ଅନ୍ନ ଭୁଞ୍ଜିବାକୁ ଏ ବଢ଼ାଇଲା ହସ୍ତ
ରତ୍ନ ବାହି ମଧ୍ୟରେ ଦିଶିଲେ ପ୍ରାଣନାଥ ।
ସ୍ୱାମୀର ସୁନ୍ଦର ପଣ ଦେଖି ଅନୁସରି
ତେଣୁ ନିମଗ୍ନ ହୋଇ ଅନ୍ନ ନ ଭୁଞ୍ଜେ ସୁନ୍ଦରୀ ।
କର ଯେବେ କାଢ଼ିବି ମୁଁ ଦିଶିବେ ନାହା
ଏହି ଭୟେ ସୁନ୍ଦରୀ ଯେ ନ ଚାଳଇ ବାହା ।
ରୂପରେ କନ୍ୟା ଯହୁଁ ପ୍ରଘଟ ନୋହିଲା
ସୀତା ପ୍ରଶଂସନ୍ତି ମୋ ଜୀବନ ଭଲା କଲା ।
ତେଣୁ ପୁଣ ବଇଦେହୀ ଭୁଞ୍ଜିଲେକ ଭାତ
ଆମିଷାଦି ନିରାମିଷ ଅନେକ ପଦାର୍ଥ ।
ଝଡ଼ା ବଡ଼ା ବ୍ୟଞ୍ଜନରେ ଷଡରସ ବିଧି
ଯେଉଁ ପାକ ଯତ୍ନେ ମାୟେ କରିଛନ୍ତି ସିଦ୍ଧି ।
ଘୃତରେ କେ ପକ୍ୱ ପୁଣ କର୍ପୂରେଣ ତୁଲ୍ୟ
ଦୁଗ୍ଧ ହେଙ୍ଗୁଗୁଡ଼ି ଦଧି ମରିଚେ ଅମୂଲ୍ୟ ।
ଭୁଞ୍ଜିକରି ଶ୍ରୀରାମ ପ୍ରଶଂସା କରନ୍ତି
ଖିରି ଖିରିସାମାନ ଆଣି ପରଷନ୍ତି ।
ଦୁଗ୍ଧ ଲଡୁ ଗଙ୍ଗାଜଳେ ଲଭ ମନୋହର
ଚଣ୍ଡ ବଡ଼ା ପାପୁଡି ଯେ ସହକେଳିଶର ।
କାକରା ବଡ଼ବର ନାନାବର୍ଣ୍ଣ ପୁଳ
ମୋତି ଚୂର ଝୀଲି ପାରିଜାତ ଚନ୍ଦ୍ରକେଳି ।
ପକ୍ୱ ଆମ୍ବ ପଣସ ଡାଳିମ୍ବ ଆଦିକରି
କର୍ପୂର ଖଣ୍ଡ ମରିଚ ଶର୍କରାଦି ଭରି ।
ଗଙ୍ଗାବାଣ ପୟଡ ପେଟି ଅମୃତ ଦାନ କଲେ
ଚାରି ବିଧାନରେ ଭକ୍ଷ ଦ୍ରବ୍ୟ ପରସିଲେ ।
ମଣୋହି କରି ସନ୍ତୋଷ ହେଲେ ବର ଚାରି
ଏଥୁ ଅନନ୍ତରେ ଯେ ଆଚମନକୁ ବାହାରି ।
ଦାସୀମାନେ ନେଇଣ ସୁବାସ ଜଳ ଦେଲେ
ଆଚମନ ଶ୍ରୀରାମ ଯେ ଚାରିଭାଇ କଲେ ।
ସୁବର୍ଣ୍ଣ ଢୁବାଇଲେ କରନ୍ତି ଆଚମନ
ଝିନ ବସନରେ ଯେ ପୋଛିଲେ ମୁଖ ପୁଣ ।
ସେଠାରୁ ଉଠିଯାଇ ପଲଙ୍କେ ବିଜେ କଲେ
କର୍ପୂର ତାମ୍ବୁଳ ଆଦି ଦାସୀ ଭୁଞ୍ଜାଇଲେ ।
ସେଠାରୁ ଦାସୀମାନେ ଜାନକୀ ପାଶେ ଗଲେ
ମଣୋହି ଦ୍ରବ୍ୟଘେନି ପ୍ରବେଶ ହୋଇଲେ ।

ଆଚମନ କରାଇଲେ ଚାରି ଭଉଣୀକି
ସେଠାରୁ ଅନ୍ତପୁରେ ଚଳିଣ ଘେନି ଯାନ୍ତି ।
ଗଜଦନ୍ତ ପଲଙ୍କ ଉପରେ ବସାଇଲେ
କର୍ପୂର ତାମ୍ବୁଳ ଯେ ଦାସୀ ଭୁଞ୍ଜାଇଲେ ।
ଏଥୁ ଅନନ୍ତରେ ଯେ ଜନକ ମହାଋଷି
ଋଷି ବ୍ରାହ୍ମଣକୁ ଯେ ଭୋଜନେ ମନ ତୋଷି ।
ଅମୃତ ଭୋଜନ ସାରି କଲେ ଆଚମନ
କର୍ପୂର ବିଡ଼ିଆ ଦେଲେ ଜନକ ରାଜନ ।
ସେଠାରୁ ରାଜାଗଣେ ଭୋଜନ କଲେ ଆସି
ଅମୃତ ଭୋଜନ ସାରି ମନେ ମହାତୋଷି ।
କର୍ପୂର ବିଡ଼ିଆ ରାଜା ସମର୍ପିଲେ ନେଇ
ଭୁଞ୍ଜିଣ ରାଜାମାନେ ବାସକୁ ଚଳି ଯାଇ ।
ପାତ୍ର ମନ୍ତ୍ରୀ ସେନାପତି ରଥି ସରଦାର
ନିଯୋଗର ସେବାକରି ଡକାଇ ସତ୍ୱର ।
ଅମୃତ ସମାନରେ ଭୋଜନ ତାକୁ ଦେଲେ
କର୍ପୂର ବିଡ଼ିଆ ଯେ ନେଇଣ ସମର୍ପିଲେ ।
ପଦାତି ପୟକାର ସୈନ୍ୟବଳ ଆଣି
ଅମୃତ ସମାନରେ ଭୋଜନ ଦେଲେ ପୁଣି ।
ବିଡ଼ିଆ ଦେଇଣ ହରଷ କରାଇଲେ
ହାଟୁଆ ବାଟୁଆକୁ ଭୂରି ଭୋଜନ ସେ ଦେଲେ ।
ସମସ୍ତେ ତୋଷ ହୋଇ ଭୋଜନମାନ କରି
କାମଧେନୁ ପ୍ରସାଦେ ସକଳ ମିଳେ ଆସି କରି ।
ସମସ୍ତଙ୍କର ସରନ୍ତେ ଜନକ ଦଶରଥ
ଅମୃତ ସମାନରେ ଭୋଜନ କଲେ ସେ ତ ।
ବିଜୟ ପଲଙ୍କରେ ସାରିଣ ଆଚମନ
କର୍ପୂର ବିଡ଼ିଆ ଯେ ଭୁଞ୍ଜିଣ ତୋଷମନ ।
ଜନକ କୁଶଧ୍ୱଜ ଆନନ୍ଦ ହୋଇଲେ
ସକଳ ଜଞ୍ଜାଳ ସେ ସହିବାରୁ ଭଲେ ।
ତିନି ପ୍ରହର ରଜନୀ ହେଲା ଆସିକରି
ଋଷି ବିପ୍ର ରଜାଏ ଶୟନ ମାନ କରି ।
ସକଳ ଜନମାନେ ନିଦ୍ରାରେ ଅଚେତ
ସୈନ୍ୟବଳ ଶୟନ କଲେ ଯେଝା ମତ ।
ଏଥୁ ଅନନ୍ତରେ ଯେ ଦାସୀଗଣେ ମିଳି
ଜନକ ମନ୍ଦିରକୁ ଶ୍ରୀରାମ ଘେନି ଚଳି ।
ନବରତ୍ନ କମ ସେ ପୁରକେ ଦେବା ଉପମା
ନାହିଁ ନାହିଁ ପଟାନ୍ତର ଏ ତିନି ଭୁବନ ଜମା ।

ହଂସ କୁତୁକି ପୁରେ ମାଣ୍ଡି ଯେ ମୁଚୁକି
ଶ୍ରୀରାମ ଶୟନ ଯେ ସେଥିରେ ଯାଇ କରି ।
ତହୁଁ ଯାଇ ଦାସୀଗଣେ ଭରତ ଘେନିଗଲେ
ମାଣିକ୍ୟ ପଲଙ୍କରେ ନେଇଣ ବସାଇଲେ ।
କର୍ପୂର ବିଡ଼ିଆ ପାନ ଭୁଞ୍ଜାଇଲେ ନେଇ
ଭୁଞ୍ଜିଣ ଭରତ ଯେ ପଲଙ୍କେ ନିଦ୍ରା ଯାଇ ।
ସେଠାରୁ ଦାସୀମାନେ ବେଗେ ଚଳିଗଲେ
ଲକ୍ଷ୍ମଣକୁ ବ୍ରହ୍ମଜ୍ୟୋତିପୁରେ ନେଇ କଲେ ।
ପଲଙ୍କରେ ବସାଇଣ ବିଡ଼ିଆ ଯୋଗାଇଲେ ।
ନବରତ୍ନ ପଲଙ୍କରେ ଲକ୍ଷ୍ମଣ ନିଦ୍ରାକଲେ ।
ଅଙ୍ଗନ୍ତ ଶୟନ କିନା କରନ୍ତି ସେଠାରେ
ଦେଖିଣ ଦାସୀମାନେ ଚଳିଗଲେ ଖରେ ।
ଶତ୍ରୁଘନକୁ ଘେନିଣ ଚଳିଲେ ନିଜପୁର
ଯାଇଣ ବସିଲେ ପଞ୍ଚରତ୍ନ ପଲଙ୍କର ।
ବିଡ଼ିଆ ଭୁଞ୍ଜାଇଲେ ସେଥିରେ ନେଇ ଭଲେ
ଭୁଞ୍ଜିଣ ଶତ୍ରୁଘନ ଆଳସେ ନିଦ୍ରାଗଲେ ।
ଦେଖିଣ ଦାସୀଗଣ ଚଳିଲେ ଭିତରେ
ସୀତାକୁ ବେଶ କରିଣ ଶ୍ରୀରାମ ପାଶେନେଲେ ।
ଶେଯ ମଣ୍ଡାଇ ସଙ୍ଗରେ ଘେନିଣ ଚଳିଲେ ।
ସୀତାକୁ ଛାଡ଼ି ଉର୍ମିଳା ପୁରେ ପ୍ରବେଶିଲେ
ଉର୍ମିଳାକୁ ଦାସୀଗଣେ ଦେଲେ ବେଶକରି
ଲକ୍ଷ୍ମଣ ଶେଯ ଛୁଆଁଇ ଚଳିଲେ ସୁନ୍ଦରୀ ।
ସେଠାରୁ ମାଳିନିକି ଘେନିଣ ଦାସୀଗଲେ
ଭରତକୁ ମଧୁଶଯ୍ୟାକୁ ଛୁଇଁ ଫେରାଇଲେ ।
ସେଠାରୁ ଦାସୀମାନେ ସୁକ୍ରିତାକୁ ଘେନି
ଶତ୍ରୁଘନ ପୁରେ ବିଜୟ କଲେ ପୁଣି ।
ମଧୁଶଯ୍ୟାପୁରେ ଚଳିଲେ ଘେନି ବେଗେ
ଛୁଆଁଇ ସୁତ୍ରିତାକୁ ଫେରିଲେ ସେହିଲାଗେ ।
ଏଥୁ ଅନନ୍ତରେ ଯେ ଶୁଣ ଗୋ ଶାକମ୍ଭରୀ
ବିଭାର ରଜନୀ ଯେ ଏ ରୂପେ ଶେଷ କରି ।
ଗଗନେ ଉଦୟ ଯେଣୁ ଦିନମଣି ହେଲେ
ଜନକ ଦଶରଥ ନିଦ୍ରାରୁ ଉଠିଲେ ।
ସକଳ ଋଷିମାନଙ୍କୁ ମାନ୍ୟ ଧର୍ମ କଲେ
ବେନିକୋଟିଲେଖାଏ ସୁବର୍ଣ୍ଣଋଷିଗୋଟିକେ ଦେଲେ ।
ଏ ରୂପେ ବତିଶ କୋଟି ଋଷିଙ୍କି ମେଲାଣି
କରନ୍ତେ ଋଷିମାନେ ଆଶ୍ରମେ ଚଳେ ପୁଣି ।

କେବଳ ଶତେ ଋଷି ରହିଲେ ସେଥି ପୁଣ
ଜନକ ବନ୍ଧୁ ବର୍ଗ ଅଟନ୍ତି ଯେତେ ଜାଣ ।
ସେଠାରୁ ବିପ୍ରଗଣ ମେଲାଣି ପୁଣ ହେଲେ
ଜଣକେ ଦଶ ସୁନିଆ ଲେଖାଏଁ ରାଯେ ଦେଲେ ।
ସେଠାରୁ ଦ୍ୱିଜଗଣ କ୍ଷଣେ ଗଲେ ଚଳି
ଯେ ଯାହା ସଦନରେ ଯାଇଣ ବେଗେ ମିଳି ।
ସେଠାବରୁ ଜନକ ଦଶରଥ ଯେ ପୁଣ
ଚାଳିଶି ସହସ୍ର ରାଜାକୁ ମେଲାଣି କଲେ ଜାଣ ।
ଦଶସସ୍ର ଲେଖାଏଁ ସୁବର୍ଣ୍ଣ ଆଣି ଦେଲେ
ଘେନିଣ ରାଜାମାନେ ହରଷେ ଚଳିଗଲେ ।
କେବଳ ଦଶରଥଙ୍କ ବନ୍ଧୁମାନେ ରହେ
ଏ ରୂପେ ତିନିଦିନ ସେଠାରେ ବହିଯାଏ ।
ଚାରିଦିନେ ଚତୁର୍ଥୀ ଘର ଆସି ହୋଇ
ଚତୁର୍ଥୀ ବିଧି ସେଠାରେ ଜନକ କଲେ ତହିଁ ।
ଦିବସର ପିତୃ ବିଧି କଲେକ ଉପରାଣ
ପିତୃ ଲୋକଙ୍କୁ ଦେଲେକ ଶ୍ରାଦ୍ଧ ପୁଣ ।
ଦିବସରେ ବିଧି ସାରି ଭୋଜନ ସେ କଲେ
ଦିବସ ଶେଷ ଯାନ୍ତେ ରଜନୀ ହୋଏ ଭଲେ ।
ବେଦୀର ଉପରେ ଚାରି ବ୍ରାହ୍ମଣ ଯାଇ ବସି
ଚାରି ବେଦରେ ସର୍ବେ ଯେ ବେଦଧ୍ୱନି ଭାଷି
ବଶିଷ୍ଠ ବୋଇଲେ ତୁମ୍ଭେ ଶୁଣ ହେ ଦଶରଥ
ବନ୍ଧାପନା ଉତ୍ସବ ଯେ ଆଜିର ବ୍ୟହିତ ।
ଚାରିପୁତ୍ର ବେଶକରି ଆଣହେ ବେଦିକି
ଲାଜା ହୋମ ହୋଇବ ଯେ ବଧଙ୍କୁ ଅଣାଅ ଏଥିକି ।
ସତ୍ୟାନନ୍ଦ ବୋଇଲେ ଯେ ଜନକକୁ ରାଇ
ବେଶ କରିଣ ଚାରି ଦୁହିତା ଆଣ ଯାଇ ।
ଶୁଣିଣ ଦଶରଥ ପୁତ୍ରମାନଙ୍କୁ ଅଣାଇଲେ
ଶ୍ରୀରାମଚନ୍ଦ୍ର ସଙ୍ଗେ ଅଛନ୍ତି ଉତ୍ସବରେ ।
ବେନି ବେଦିରେ ବସିଲେ ଶ୍ରୀରାମ ଲକ୍ଷ୍ମଣ
ଆର ବେନି ବେଦିରେ ବସିଲେ ଭରତ ଶତ୍ରୁଘନ ।
ଦେଖିଣ ଜନକ ଯେ ଦୁହିତା ବେଗେ ଆଣି
ସୀତାଙ୍କ ସଙ୍ଗରେ ଯେ ଅଛନ୍ତି ଚାରିଭଗ୍ନି ।
ବେଶ କୁସୁମ ଯେ ହୋଇଣ ଅଇଲେ
ଶ୍ରୀରାମଙ୍କ ପାଶରେ ଜନକ ବସିଲେ ।
ଉର୍ମିଳା ବସିଲେ ଯେ ଲକ୍ଷ୍ମଣ ସଙ୍ଗତ
ଭରତ ସଙ୍ଗରେ ବସେ ଆସିଣ ମାଳିନି ତ ।

ଶତ୍ରୁଘନ ପାଶରେ ମିଳିଲେ ସୁକିର୍ତ୍ତି
ଯେପରି ଚାରିବେଦ ପଢ଼ିଲେ ଯେ ବିପ୍ର ଋଷି ଜାଣ ।
ବଶିଷ୍ଠ ଶାମବେଦ କଲେକ ଗାୟନ
ଅଗ୍ନି ଆରୋପଣ କରି ଥାପିଲେକ ପୁଣ ।
ଶ୍ରୀରାମ ଜାନକୀର କଲେ ଲାଜା ହୋମ
ଯେ ବିଧି ବିଧାନ ଯେ ସାରିଲେକ ପୁଣ ।
ପୂର୍ଣ୍ଣ ଆହୁତି ଯେ କଲେକ ସେ ସ୍ଥାନରେ
ବେଦ ମନ୍ତ୍ର କର୍ମ ଯେ ସାରିଲେ ନିଯୋଗରେ ।
ସଙ୍ଗରେ ବଶିଷ୍ଠଙ୍କୁ ଦଶରଥ ଦିଏ ପାଣି
ଆଚାର୍ଯ୍ୟ ଦକ୍ଷିଣା ଯେ ଲକ୍ଷେକ ସୁବର୍ଣ୍ଣ ପୁଣି ।
ସତ୍ୟାନନ୍ଦ ଋଷିଙ୍କି ଜନକ ପାଣି ଦେଲେ
ଆଚାର୍ଯ୍ୟ ଦକ୍ଷିଣା ଯେ ଲକ୍ଷେ ସୁବର୍ଣ୍ଣ ଭଲେ ।
ସେଠାରୁ ଅଗ୍ନିକି ସେ ଶୀତଳ କରି ପୁଣ
ପାଦ ଅର୍ଘ୍ୟ ଅକ୍ଷତ ହେଲେ ମୁନିଗଣ ।
ଲାଜା ହୋମ ବିଧି ଯେ ସାରିବାରୁ ପୁଣ
ଦାସୀଗଣେ ଘେନିଗଲେ ଜନକ ଶ୍ରୀରାମ ।
ପହଣ୍ଡ ମଣାଇ ଜାନକୀଙ୍କି ଘେନିଗଲେ
ଭିତର ଅନ୍ତପୁରେ ନେଇଣ ବସାଇଲେ ।
ଶ୍ରୀରାମଙ୍କୁ ବଇଦୁର୍ଯ୍ୟ ପୁରରେ ରଖାଇ
ଚଉପାଶେ ମାଣିକ୍ୟ ଦୀପାବଳୀ ଜଳାଇ ।
ସେ ବେଦିରୁ ଶ୍ରୀରାମ ଯେ ଯିବାରୁ ପୁଣ
ସେ ବେଦିରୁ ଦଶରଥ ଚଳିଲେ ବହନ ।
ଭରତର ପାଶରେ ହେଲେ ପରବେଶ
ଋଷ୍ୟଶୃଙ୍ଗ ମାରକଣ୍ଡ ସେଥିରେ ତପୋବନ୍ତ ।
ଯର୍ଜୁବେଦ ପଢ଼ିଣ କଲେକ ଲାଜା ହୋମ
ଅଗ୍ନିକି ସ୍ଥାପିଣ ଯେ ଆହୁତି ଦେଲେ ପୁଣ ।
ପୂର୍ଣ୍ଣ ଆହୁତି ଦେଇ ଲାଜା ହୋମ ସାରିଲେଣି
ଦେଖିଣ ଦଶରଥ ସଙ୍ଗେ ପାଣି ଦେଲେ ପୁଣି ।
ଲକ୍ଷେକ ସୁବର୍ଣ୍ଣ ଯେ ଋଷ୍ୟଶୃଙ୍ଗ ଦେଲେ
ଆଚାର୍ଯ୍ୟ ଦକ୍ଷିଣା ବୋଲି ଋଷିଙ୍କି କହିଲେ ।
ଜନକ ରାଜନ ଯେ ଦେଲେ ପାଣି ପୁଣ
ଅଗସ୍ତିଙ୍କି ଲକ୍ଷେ ମାଢ଼ ସୁବର୍ଣ୍ଣ ଦେଲେ ଜାଣ ।
ସେଠାରୁ ଋଷିମାନେ ହରଷ ମନ ହୋଇ
ଅଗ୍ନିକି ଶୀତଳ କରି ପାଦାର୍ଘ୍ୟ ଦେଲେ ନେଇ ।
ସେଠାରୁ ଦଶରଥ ଜନକ ଚଳିଗଲେ
ଲକ୍ଷ୍ମଣ ପାଶରେ ଯାଇ ପ୍ରବେଶ ହୋଇଲେ ।

ଦାସୀଗଣେ ଭରତ ମାଳିନିକି ଦେଲେ
ମାଣିକର ପୁରରେ ଭରତକୁ ବସାଇଲେ ।
ସେଠାରୁ ମାଳିନିକି ଭିତର ପୁରେ ନେଲେ
ହରଷରେ ଋଷିଆଣି ହୁଳହୁଳି ଦେଲେ ।
ଲକ୍ଷ୍ମଣ ଉର୍ମିଳାର କଲେକ ଲାଜ୍ୟାହୋମ
ଅଗ୍ନିକି ସ୍ଥାପିଣ ଘୃତ ଆହୁତି ଦେଲେ ପୁଣ ।
ଚାରି ବେଦ ସେଥିରେ କଲେକ ଗାୟନ
ଲଜ୍ୟାହୋମ ସାରି ପୂର୍ଣ୍ଣ ଆହୁତି ଦେଲେ ପୁଣ ।
ଦଶରଥ କୈକୟୀଙ୍କ କରେ ପାଣି ଦେଲେ
ଲକ୍ଷେକ ସୁବର୍ଣ୍ଣ ରତ୍ନ ଆଣି ସମର୍ପିଲେ ।
ଦେଖିକରି ଜନକ ସଙ୍ଗରେ ପାଣି ଘେନି
ମାରକଣ୍ଡ ହସ୍ତରେ ଦେଲେକ ନେଇ ପୁଣି ।
ଲକ୍ଷେକ ସୁବର୍ଣ୍ଣ ଯେ ଦକ୍ଷିଣା କରି ଦେଲେ
ସେଠାରୁ ମାରକଣ୍ଡ ହରଷ ମନ ହେଲେ ।
ଅଗ୍ନିକି ଶୀତଳ କରି ଦେଲେକ ପାଦ୍ୟ ଅର୍ଘ୍ୟ ।
ସେଠାରୁ ଦଶରଥ ଜନକ ଗଲେ ବେଗ ।
ଦାସୀଗଣ ମିଳି ବରକନ୍ୟା ଘେନିଗଲେ
ବ୍ରହ୍ମଜାତି ହୀରା ନେଇ ଶିରେରେ ଲଗାଇଲେ ।
ବର କନ୍ୟା ବନ୍ଧାପନା ସେଥିରେ ପୁଣ କରି
ଭିତର ପୁରକୁ ଉର୍ମିଳାକୁ ଘେନି ଚଳି ।
ନାରଦ ଅଷ୍ଟବକ୍ର ଶତ୍ରୁଘନ ପାଶେ ରହି ।
ଲାଜ୍ୟାହୋମ କଲେ ସେ ଅଥର୍ବ ବେଦ ଗାଇ ।
ଅଗ୍ନିରେ ଘୃତ ଦେଇ ପୂର୍ଣ୍ଣ ଆହୁତି କଲେ
ସରିବାରୁ ଦଶରଥ ଶଙ୍ଖରେ ଜଳ ଦେଲେ ।
ନାରଦେ ଲକ୍ଷେ ସୁବର୍ଣ୍ଣ ଦେଲେ ଦଶରଥ
ଦେଖିଣ ଜନକ ଯାଇ ଧଇଲେକ ଶଙ୍ଖ ।
ଅଷ୍ଟବକ୍ରଙ୍କ କରେ ଜଳ ନେଇ ଦେଲେ
ଲକ୍ଷେକ ସୁବର୍ଣ୍ଣ ଯେ ମେଲାଣି କରାଇଲେ ।
ଅଗ୍ନିକୁ ଶୀତଳ କରି ପାଦ୍ୟଅର୍ଘ୍ୟ ଦେଲେ ମୁନି
ହରଷ ମନ ହେଲେ ସକଳ ତପୋଧନୀ ।
ସେଠାରୁ ଦାସୀଗଣ ବରକନ୍ୟା ନେଲେ
ଧବଳ ପୁରେ ନେଇଣ ବନ୍ଧାପନା କଲେ ।
ସେଠାରୁ ସୁକିର୍ତ୍ତୀକୁ ଯେ ଘେନିଣ ଦାସୀଚଳି
ଅନ୍ତପୁର ଭିତରକୁ ନେଲେ ବେଗ କରି ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ
ଋଷି ବିପ୍ରେ ରାଜାଗଣେ ଚରଚା ବିଧିସାରି ।

ଅମୃତ ସମାନରେ ଭୁରି ଭୋଜନ ଦେଲେ
ପରଜା ସୈନ୍ୟବଳ ସମସ୍ତେ ଭୁଞ୍ଜିଲେ ।
ସେଠାରୁ ଜନକ ଦଶରଥ ଭୋଜନ ବସି କଲେ ।
ଦଶରଥ ରାଜନ ସେ ନବରେ ଚଳିଲେ ।
ସେଠାରୁ ଋଷିଆଣୀମାନେ ବେଗେ ଚଳି
ଚାରିକୁଅଁରଙ୍କି ଭୋଜନ ଦେଲେ ଗଉରବ କରି ।
ସୁଧା ସମାନେ ଅମୃତ ଭୋଜନ କରାଇଲେ
ସୁବାସିତ ଜଳ ପୁଣି ଦାସୀମାନେ ଦେଲେ ।
ଆଚମନ ସାରି ଚାରିଭାଇ ବସିଲେ ଯେ ପୁଣ
କର୍ପୂର ତାମ୍ବୁଳ ଯେ ଭୁଞ୍ଜାଇଲେ ଜାଣ ।
ସେଠାରୁ ଦାସୀମାନେ ଚାରି ବରଙ୍କୁ ନେଲେ
ଚାରି ପୁରେ ନେଇଣ ପଲଙ୍କେ ବସାଇଲେ ।
ସୁଗନ୍ଧ କୁଙ୍କୁମ ଯେ ଚନ୍ଦନ ଅଙ୍ଗେ ବୋଳି
ନାନା ପରିବନ୍ଧରେ ବେଶ ମାନ କରି ।
ପଲଙ୍କ ସୁପାତିରେ ବସାଇ ଚଳିଗଲେ
ଅନ୍ତପୁରେ ଯାଇଣ ସୀତାଙ୍କ ପାଶେ ମିଳେ ।
ଏଥୁ ଅନନ୍ତରେ ଦାସୀମାନେ ଗଲେ ପୁଣ
ମଣ୍ଡଣି ଘେନି ମିଳିଲେ ଚାରି ବରଙ୍କ ପୁରେଣ ।
ଶୟନ ମନ୍ଦିରେ ମଣ୍ଡିଲେକ ଯାଇ
ଚାନ୍ଦୁଆ ଟଣାଇଲେ ଉପରେକ ନେଇ ।
ଗଜଦନ୍ତ ପଲଙ୍କରେ ସୁବର୍ଣ୍ଣ ପିତୁଳି
ରତ୍ନମୟ କମ ଯେ ସବୁଠାରେ ଝଳି ।
ସେଥି ଉପରେ ଯେ ଅମଳାଣ ଶେଯପାଡି
ନାନା ବର୍ଣ୍ଣର ସେଥିରେ ଶଯ୍ୟା କରି ।
ନେତର ମୁଚୁଳି ଯେ ମଣ୍ଡି ଅନୁପମ
ଚାରି ପାଖରେ ଜାଳିଲେ ଅଗର ଧୂମପାନ ।
ସେ ନାରୀ ଚାରି ପାଖରେ ବେଢ଼ିଣ ପାଖୁଡି
ଶେଯ ଉପରେ ବିଞ୍ଚିଲେ କର୍ପୂରର ଧୂଳି ।
ଉପର ଚାନ୍ଦୁଆରେ ବିଚିତ୍ର ପଟାନ୍ତର
ତାରାଗଣ ମଧରେ କି ଉଦୟ ଶଶଧର ।
ଠାବେ ଠାବେ ପଦ୍ମ ରେଖା ଅଛଇ ଉକୁଟି
ହୀରା ଲୀଳା ସେଥିରେ ଜଡ଼ିତ ହୋଇ ମିଶି ।
ମାଣିକ୍ୟ ମୁକୁତା ମର୍କତ ଯେ ଝରା
ଚାମର ପନ୍ତିପନ୍ତି ଦର୍ପଣ ଲାଗି ପରା ।
ଅଷ୍ଟରତ୍ନ ପଲଙ୍କରେ ଝଲମଲ ପରି
ସେଥିରେ ଚାରି ଭାଇ ବିଜୟ ଯାଇ କରି ।

ସୁଗନ୍ଧ କୁଙ୍କୁମ ଯେ ଚନ୍ଦନ ଅଙ୍ଗେ ବୋଳି
ନାନା ପରିବନ୍ଧରେ ବେଶମାନ କରି ।
ପଲଙ୍କ ସୁପାତିରେ ବସାଇ ଚଳିଗଲେ
ଅନ୍ତଃପୁରେ ଯାଇ ସୀତା ପାଶେ ମିଳିଲେ ।
ଚାରିଭଗ୍ନିଙ୍କୁ ବସାଇ କରନ୍ତି ସୁବେଶ
ସୀତାଙ୍କୁ ବେଶ ଦାସୀ କରନ୍ତି ବିଶେଷ ।
ନବରତ୍ନ ଅଳଙ୍କାର ଦେହରେ ଖଞ୍ଜିଲେ
କେଶକୁ ସମାଳିଣ ଜୁଡ଼ା ଯେ ବାନ୍ଧିଲେ ।
ଝରା ଝୁମ୍ପା ଝିଞ୍ଜରୀ ଚଉଁରୀ ଭୁଣ୍ଡି ଦେଲେ
ପଞ୍ଚବର୍ଣ୍ଣ କୁସୁମ ଗଭାରେ ଖଞ୍ଜିଲେ ।
ମସ୍ତକରେ ଅଳକା ଯେ ମଥାମଣି ଦେଲେ
ନାଶାରେ ସିନ୍ଧୁଫଳ ରତ୍ନ ଗୁଣା ଦେଲେ ।
କପାଳରେ ଚନ୍ଦନ ଟିପା ବୋଳେ ନେଇ
ନୟନରେ ଅଞ୍ଜନ ରଚିଲେ ଚାନ୍ଦ ମୁହିଁ ।
କର୍ଣ୍ଣରେ ଖଞ୍ଜିଲେ ଚନ୍ଦ୍ରଫାସିଆ ଫିରୀଫିରା
କାପ ମଲ୍ଲୀକଢ଼ୀ ଯେ ତେଜରେ ଦିଶେ ତୋରା ।
ବକ୍ଷସ୍ଥଳେ କାଞ୍ଚଲା ଦେହମୟ ଜଡ଼ି
ଗଳାରେ ଚାପସରି ହୃଦରେ ମାଳ ଘେରି ।
ପଦକେ ଚନ୍ଦ୍ରହାର ବର୍ଣ୍ଣବାଳା ଶୋହେ
ଦେଖିଲେ ଦେବତା ଋଷି ପଡିବେ ଯେ ମୋହେ ।
ତାଡ଼ ବିଦ ବାହୁଟି ବାହାରେ ଶୋଭାବନ
ବ୍ରହ୍ମଜାତି ହୀରା ଯେ ଦିଶଇ ତେଜ ବର୍ଣ୍ଣ ।
ମାଣିକ୍ୟର ଚୁଡ଼ି ଯେ ବେନି କରେ ଶୋହେ
ନବରତ୍ନ ଝଟ ଝଟ ବିରାଜେ ତେଜମୟେ ।
କଟିରେ ମେଖଳା ଯେ ଦେଲେକ ନେଇ ପୁଣ
ଚରଣେ ବଳା ପାହୁଡ଼ ନୂପୂର ଶୋଭାବନ ।
ଖୁଣ୍ଟିଆ ଅଳତା ଯେ ଚରଣେ ନେଇ ଦେଲେ
ଅମଳାଣ କଳାମେଘି ପତନୀ ପିନ୍ଧାଇଲେ ।
ଅମଳାଣ ଖଣ୍ଡୁଆ ଯେ ଦେଲେ ଉପରାଣ
ବେଶକରି ଦାସୀମାନେ ହେଲେ ତୋଷ ମନ ।
ଏହି ପ୍ରାୟେ ଚାରି ଭଗ୍ନି ବେଶ ଶେଷ କଲେ
ରଜନୀରେ ରବି ପ୍ରାୟେ ତେଜ ପ୍ରକାଶିଲେ ।
ଏହି ପ୍ରାୟେ ବେଶ କଲେ ବେଢ଼ିଣ କାମିନୀ
ବହୁତ ତିଆରନ୍ତି ପୂର୍ବ କଥା ମାନି ।
ତୁମ୍ଭେ ଏବେ ଜାନକୀ ଗୋ ଆମ୍ଭର ବୋଲ କର
ଶ୍ରୀରାମଚନ୍ଦ୍ର ଅଟନ୍ତି ଜୀବନ ଠାକୁର ।
ତୁମ୍ଭେ ଆଜ ରଜନୀ ଗୋ ଅନାଅ ତାହାନ୍ତ
ଏହି କଥା ଭଲ ତୋତେ ହେବ ବଡ଼ ହିତ ।
ଯେମନ୍ତେ ସେ ମାନସରେ ନ ଧରିବେ ଆନ
ସେହି ରୂପେ ସ୍ୱାମୀ ସେବାରେ ହେବ ସାନ ।
ପ୍ରଥମ ଦିନ ସ୍ୱାମିଙ୍କି କରାଇଲେ ରୋଷ
ସର୍ବଦା ସେ ସ୍ତିରିଙ୍କି ନ ଥାଇ ସୁଖ ଲେଶ ।
ପ୍ରଥମ ଦିନରେ ସ୍ୱାମୀଙ୍କି ତୋଷ କରି
ଦେହ ଥିବା ଯାକେ ସର୍ବ କୁଶଳେ ଭୋଗକରି ।
ତୁତ ସର୍ବ ସୁଲକ୍ଷଣୀ ଜାଣୁ ସର୍ବ କଥା
ଯେଉଁ ରୂପେ ରଘୁନାଥ ନ ପାଇବେ ବ୍ୟଥା ।
ସେ ରସିକ ଶେଖର କରିବେ ଯାହା ଇଚ୍ଛା ।
ତୁମ୍ଭେ ଚନ୍ଦ୍ରମୁଖୀ ପୁରାଇବ ମନୋବାଞ୍ଛା ।
ଲଜ୍ଜାରେ ଅନାଦର ନ କରିବୁ କିଛି
ଧର୍ମଠାରେ ସମ୍ଭାବନା ରଖିବୁ ମୃଗାକ୍ଷୀ ।
ସେ ତୋହର ପ୍ରଭୁ ତୁ ତାହାଙ୍କର ନାରୀ
ଏକ ଦେହ ବେନି ରୂପ ବାରଣ ନ କରି ।
ଯେତେବେଳୁ କୁଶ ବାନ୍ଧିଲେଣି ଦ୍ୱିଜବର
ତୋ ଦେହରେ ରାମଚନ୍ଦ୍ର ପ୍ରାଣ ପରକାର ।
ତୁମ୍ଭେ ତାଙ୍କ ଚରଣରେ ଦାସୀ ଚନ୍ଦ୍ରମୁଖୀ
ଶ୍ରୀରାମଚନ୍ଦ୍ର ପ୍ରସାଦେ ହୋଇବ ମହାସୁଖୀ ।
ଏ ତୋହାର ସ୍ତନ ବେନି ବିଳସିବେ ରାମ
ସଂସାରରେ ଅନ୍ୟ ଜନ ଦେଖି ତ ନୋହେ କ୍ଷମ ।
ଏ ତୋହାର ଅଧର ଚୁମ୍ବିବେ ରଘୁନାଥ
ତେବେ ତୋହର ସୁନ୍ଦରପଣ ପୁରୁଷାର୍ଥ ।
ଯେବେ ତାଙ୍କ ହୃଦରେ ତୋ କୁଚ ଯତ୍ନେ ଲାଗି
ତେବେ ସିନା ଜାନକୀ ତୁ ହେବୁ ସୁଖଭୋଗୀ ।
ରଘୁନାଥ ସଙ୍ଗେ ଯେବେ କରିବୁ ତୁ କେଳି
ତେବେ ତୋ ଜୀବନ ସାର୍ଥକ ମହୀସ୍ଥଳୀ
ତୁ ତ ସଙ୍ଗୀତ ସାହିତ୍ୟ ପଠନ ସୁନ୍ଦରୀ
ରସ ବିଷୟରେ କେ ସମାନ ତୋହପରି ।
ଅଧିକ କରି ତୋତେ ଗୋ ତିଆରିବୁ କିସ
ସର୍ବ ଗୁଣେ ସୁଲକ୍ଷଣୀ ତୁ ଚଞ୍ଚଳା ସଦୃଶ୍ୟ ।
ଏମନ୍ତ ତିଆରିଣ ନାଗରୀ ନାରୀମାନେ
ସୀତାଙ୍କୁ ଘେନି ଗଲେ ଶ୍ରୀରାମ ସନ୍ନିଧାନେ ।
ଲଜ୍ଜାଭରେ ମଥା ପୋତି ଚାଲନ୍ତି ଧିରେ ଧିରେ
ଆଗରେ ଯୁବତୀମାନେ ଡାକନ୍ତି ସଧୀରେ ।

ଆସ ଆସ ମାଗୋ ନ ଧର ମନେ ଆନ
ଲାଜ ଶୋକ ଭୟ ଛାଡ଼ ଯୁବତୀ ରତନ ।
ଏମନ୍ତ କରିଣ ଘେନିଗଲେ ରାମ ପାଶ
ଶଯ୍ୟାପରେ ବିଜେ କରିଛନ୍ତି ରଘୁଶିଷ୍ୟ ।
ଜାନକୀଙ୍କି ଦେଖିଣ ପରମ ତୋଷ ମତି
ପଲଙ୍କରେ ତଳେ ଉଭା ହେଲେ ଯାଇ ସତୀ ।
ଅନେକ ଯୁବତୀମାନେ ଅଛନ୍ତି ତାଙ୍କ ମେଳେ
ଶ୍ରୀରାମଙ୍କୁ କଥା ସେ କହନ୍ତି କୁତୁହଳେ ।
ତୁମ୍ଭେ ରଘୁନାଥ ହେ ପୁରୁଷ ଉତ୍ତମ
ଜାନକୀ ବାଳିକା ଏହା ଦୋଷ ନ ଘେନିମ ।
ଜନକ ଋଷିଙ୍କର ଏ ଅଲିଅଳି ଜେମା
ଯେତେ ତୋଷ ଏହାଙ୍କର କରିବ ସର୍ବ କ୍ଷମା ।
ବାଳୁତ କୁମାରୀ ଏହୁ ନ ଜାଣଇ କିଛି
ପାଳିଣ ଭୋଗ ତୁମ୍ଭେ କରିବ ମୃଗାକ୍ଷୀ ।
ଅବୋଧ ଅଲିଅଳି ଅଳପ ବୟସ
ତୁମ୍ଭ ମନ ସନ୍ତୋଷକୁ କରିବ ଏ କିସ ।
ସ୍ୱପ୍ନେ କାମରସ ଏହୁ ନ ଜାଣଇ ବାଳୀ
ତୁମ୍ଭପରା ହୋଇ ଏ କି ଜାଣିବ ଢ଼ମାଳି ।
ତୁମ୍ଭେ ମହା ମହତ୍ତ୍ୱ ନ କର ମନେ ରୋଷ
ସ୍ୱଭାବେ ସ୍ତିରୀଙ୍କର ବହୁତ ରୂପେ ଦୋଷ ।
ନାଗର ଶେଖର ତୁମ୍ଭେ କହିବୁ କିବା ଆନେ
ଆଣନ୍ତେ ଜେମା ବିମନ ନ ଧରିବ ମନେ ।
ତ୍ରାସ ଦେଇ ଏହାଙ୍କୁ ନ କରିବ ହେ ଭାଗ
ଧାତା ତୁମ୍ଭ କର୍ମେ ଏହା କରିଛି ସଂଯୋଗ ।
ତୁମ୍ଭ ମନରୁଚି ଦ୍ରବ୍ୟ ଆଣି ସମର୍ପିଲୁ
ବଧାଇ କରି ଏହାର ଦୋଷକୁ ମାଗିଲୁ ।
କେ କହେ ଜାନକୀଙ୍କୁ ପାଇଲେ ସବୁଗଲା
କେବଣ ସୁନ୍ଦରୀ ଏହା କହିକରି ଗଲା ।
କେ କହେ ଗୋ ସତ୍ୟବ୍ରତ ନିଦ୍ରା ମୋତେ ମାଡ଼େ
ବ୍ୟାପାର ଝଗଡ଼ା ଗୋ ଅଳସ ନ ଛାଡ଼େ ।
ଅନିଦ୍ରା ହୋଇ ମୁହିଁ ଗୋ ନ ପାରିବି ରହି
ଅଳସରେ ବ୍ୟାକୁଳ ହେଲାଣି ମୋର ଦେହି
ଏତେ ବୋଲିକରି ବାଳୀ ଟାଳୀ ଦେଇଗଲା
ସଙ୍ଗରୁ ସଜନୀ ଜଣେ ହାତ ଧରି ନେଲା ।
କେଉଁ ସଖି କହଇ ଗୋ କ୍ଷଣେ ମାତ୍ର ରହ
ଶ୍ରୀରାମଙ୍କୁ ବୋଧ କରି ସୀତା ପାଇଁ କହ ।

କେ ବୋଲଇ ଆମ୍ଭର କହିଲେ କିସ ହୋଇ
ଯେ ଯାହାର ପଦାର୍ଥ ସେହି ସେ ପାଇତଇ ।
ଡିଆରିବା କଥା ଗୋ କେ ରଖଇ କେତେକାଳ
କିପାଇଁ ସଖୀ ଏହା ମନେ ତୁମ୍ଭେ ଭାଳ ।
ଶୁଣିକରି ହସିଣ କହନ୍ତି ରଘୁମଣି
ଆମ୍ଭେ ତ ବାଳୁତ ପୁଅ ଅଟୁ ଗୋ ତରୁଣୀ ।
କେ ଜାଣେ ପାଳିବାର କେ ଜାଣେ ଭୋଗ କରି
ଭୁଞ୍ଜିବା ବା ଖେଳିବା ବେଳ ପଡିଛି ଆମ୍ଭରି ।
ଏହା ଶୁଣି ହାସ୍ୟ ରସ ଦାସୀମାନେ କଲେ
ନାଗର ଚତୁର ଏ ଅଟନ୍ତି ବୋଇଲେ ।
ଏତେବେଳେ ଆମ୍ଭେ ଡିଆରି କହିବା
ରହିବାରେ ଦୁହିଁଙ୍କର ଦୁଃଖ ବଢ଼ାଇବା ।
ଆସ ଆସ ବୋଲି ହୋଇଲେ ଠରାଠରି
ଏକଇ ଆରେକ ସେ କର ଧରାଧରି ।
ଧାଡିକାରେ ସେଠାରୁ ବାହାରେ ଚଳିଗଲେ
ବାହାରେ ଥାଇ ଯତ୍ନରେ କିଳିଣି କିଳିଲେ ।
ଯହୁଁ ସଖୀମାନେ ଜାନକୀଙ୍କି ଗଲେ ଛାଡ଼ି
ଉଠି ରାମଚନ୍ଦ୍ର ବେନି ଭୁଜେ ସୀତା ଭିଡ଼ି ।
କୋଳ କରି ପଲଙ୍କରେ ବସାଇଲେ ସେ ଯେ
ବନ୍ଧୁଙ୍କ ଅଧର ତାର ଧଇଲେ ଶ୍ରୀଭୁଜେ ।
ମନୋହର ଚାଟୁ ତାଙ୍କୁ କହନ୍ତି ବହୁତ
କିମ୍ପା ସଖୀ ବିମନ ଧରି ଅଛୁ ଚିତ୍ତ ।
ତୁ ମୋହର ଦେହ ସଖୀ ମୁଁ ତୋହର ପ୍ରାଣ
ଏକଥାକୁ ନିଶ୍ଚୟ କରି ପ୍ରିୟା ଜାଣ ।
ନକର ଶୋଚନା ମୋର ପ୍ରାଣର ପଞ୍ଚଭୂତ
ତୁହି ଋଷି କୁମାରୀ ମୁଁ ଅଟେ ରାଜପୁତ୍ର ।
ଜାଣିଣ ବିଧାତା କରିଅଛି ଘଟସୂତ୍ର
ଆସ ଆସ ସୁନ୍ଦରୀରେ ହରଷ ମନରେ ତ ।
ତୁ ବାଳ କୁମାରୀ ମୁଁ ବୟସରେ ସାନ
ଏଥକୁ କିମ୍ପା ସଖିରେ ସଙ୍କୋଚ ସୁମନ ।
ମୁଁ ତୋତେ ବସ ହୋଇଲିରେ ପ୍ରାଣସହି
ଏକାନ୍ତର କଥା ତୋହର ଆଗରେ କହି ।
ଏ ତୋହର ମୁଖ ସଖୀ ବିକାଶ କମଳ
ଏଥି ବିହାରକୁ ମୁଁ ଅଟଇ ଭ୍ରମର ।
ଆସ ଆସ ସୁନ୍ଦରୀ ମୋହର ବୋଲକର
ଭୁଜେ ଭିଡ଼ି ମୋହର ଉରରେ ଲଗା ଉର ।

ତୋ ଚାରୁ ଅଧରୁ ସୁଧାପାନ ଦିଅସି
ଅନେକ କାଳରୁ ମୁଁ ସୁରତି ଉପବାସୀ ।
ତୋର ସଙ୍ଗ ବିନା ମୋର ପ୍ରାଣ ନୋହେ ସ୍ଥିର ।
ମୁଁ ତୃଷାର୍ତ୍ତ ଚାତକ ତୁ ଗଗନର ନିର ।
ମେଦିନିର ଜଳ ମୁଁ ଗୋ ନକରଇ ଗ୍ରାସ
ସର୍ବଦା କାଳେ ମୋହର ତୋର ସଙ୍ଗେ ଆସ ।
ତୁ କାଳ ଗରଳ ରୂପି ମୁହିଁ ସଦାଶିବ
ମୋହ ବିନା ଆନ ତୋତେ କେ ଭୋଗ କରିବ ।
ତୁମ୍ଭେ ସେ ଚାରିଦେବ ମୁଁ ଅଟଇ କୃଷପାଣି
ମୋର ବିନା ଆନ କେତେ ଗୁଣ ଗ୍ରାମ ଜିଣି ।
ମୁହିଁ ସୁରପତି ତୁ ଗୋ ଅଟୁ ସୁଧା ରସ
ଆନ ଜନେ କେବା ତୋତେ କରିପାରେ ଗ୍ରାସ ।
ମୁଁ ଅଗସ୍ତି ଋଷି ତୁ ସପତ ସାଗର
ତୁ ଯେ କୁମୁଦିନି ମୁଁ ଅଟଇ ସୁଧାକର ।
ତୋତେ ଦେଖି ମୋହର ଆନନ୍ଦ ପଞ୍ଚ ପ୍ରାଣ
ତୁ ବିକାଶ କମଳ ମୁଁ ଛାୟାର ରମଣ ।
ମୁଁ ଯେ କାମଦେବ ପ୍ରାଣ ସଜନି ତୁ ରତି
ଏ ତୋହର ରୂପକୁ ମୁଁ ଅନୁରୂପେ ଗତି ।
ଏ ତୋହର ନୟନ ମଦନ ଶର ଜିଣି
ଖଣ୍ଡ ଖଣ୍ଡ କରି ମୋ ହୃଦୟକୁ ହାଣି ।
ଯେତେବେଳେ ଶିବଧନୁ କରରେ ଧଇଲି
ଲକ୍ଷେ ନୃପତିଙ୍କର ଗରବ ଗଞ୍ଜିଲି ।
ତୁହି ରତ୍ନମାଳା ଦେଇ ବରି ମୋତେ ଗଲୁ
ଏ ମୋହର ପଞ୍ଚମଆତ୍ମା ହରି ତୁ ଆଣିଲୁ ।
ଅପଙ୍ଗ ନୟନରେ ଚାହିଁଲୁ ବକ୍ର କରି
ଏବେ ମୋତେ ପ୍ରାପତ ହୋଇଲୁ ମହିସ୍ଥଳି ।
ହସି ମୋତେ କଥା କହ ରହୁ ମୋର ପ୍ରାଣ
ତୁ ଯେ ମହାଲକ୍ଷ୍ମୀ ମୁଁ ଅଟଇ ନାରାୟଣ ।
ଦୈତ୍ୟବଳ ନିବାରଣେ ଦେବତାଙ୍କ ହିତେ
ମେଦିନୀରେ ଅବତାର ହୋଇ ମୁଁ ଅଛି ସତେ ।
ଦଶରଥ ରାଜା ଘରେ ଜନ୍ମ ମୁଁ ଦେହ ଧରି
ତୁ ସଖୀ ହୋଇଲୁ ଆସି ଜନକ କୁମାରୀ ।
ଶ୍ରୀରାମଚନ୍ଦ୍ର ଶ୍ରୀମୁଖୁ ଏମନ୍ତ ବାଣୀ ଶୁଣି
ଗତ ଜନ୍ମ ସୁମରିଲେ ଜନକ ଦୁଲଣୀ ।
ଶ୍ରୀରାମଚନ୍ଦ୍ର ଚରଣେ କଲେ ନମସ୍କାର
ପୁଣ ପୁଣ ବିନୟ କରିଣ ଶତେ ବାର ।

କରଯୋଡ଼ି ବଇଦେହୀ କହନ୍ତି ଉତ୍ତର
ଭୋ ସ୍ୱାମୀ ଦଇନି ଘେନନ୍ତୁ ମୋହର ।
ତୁମ୍ଭେ ମୋର ସ୍ୱାମୀ ଅଟ ପଞ୍ଚପ୍ରାଣନାହା
ସୁଦୟା କରି ମୋତେ ହୋଇଲେକ ବିଭା ।
ପୂର୍ବରେ ସତ୍ୟ ପୁଣି କରିଛି ଯେଉଁ କଥା
ସେ କଥା ତୁମ୍ଭ ମନରେ ଅଛି କି କରତା ।
ଯେତେବେଳେ ମୋତେ ଭେଦିଲ ମର୍ତ୍ତ୍ୟପୁର
ବୋଇଲେ ଏକବ୍ରତୀ ଦେବୁ ଅବତାର ।
ସେହି କଥା ମନରେ ଅଛି କି ତୁମ୍ଭର
ବହୁତ ଦିନରୁ ଦୁଃଖ ଅଛି ମୋ ମନର ।
ସେ କଥାକୁ ଅବେଭାର ନକର ଦେବ ଆନ
ସୁଦୟା କର ମୋତେ କରତା ନାରାୟଣ ।
ଯେତେଦିନ ଯାଏ ନ କରିଥିବ ଆନ ନାରୀ
ତେତେକାଳ ସୁଦୟା ମୋଠାରେ ଥିବ କରି ।
ଅନେକ ଯୁବତୀ କର ଧରି ଯହୁଁ ହସ୍ତ
ସେ କାଳର ଦୟା ଆଉ ନରଖିବ ନାଥ ।
ଅନେକ କାଳରୁ ମୁଁ ଯେ ଆଶା କରିଅଛି
ତପ କରି ତେଜିଲି ଏବେ ଦେହଗୋଟି ।
ତୁମର ସାମର୍ଥ ପଣ ଦେଖି ଦେବତା ଅସୁର
ରାଜାଗଣେ ଯାଚିଦେବେ ଦୁହିତା ତାଙ୍କର ।
ସପତ୍ନୀମାନେ ମୋତେ କହିବେ ମନ୍ଦବାଣୀ
ତୁମ୍ଭେ ମନ୍ଦ ବୋଲିବ ତାହାଙ୍କର କଥା ଶୁଣି ।
ଏ ସମୟ କଥାମାନ ପାଶୋରିବ ନାଥ
ଜ୍ୟେଷ୍ଠପତ୍ନୀ ହୋଇଣ ମୁଁ ହୋଇବି ଅନାଥ ।
ଏ ମାୟା ସଂସାର ଦେଖୁ ଦେଖୁ ହୋଏ ଆନ
ଥୋକାଏକ ଦିନେ ମୋ ଭାଙ୍ଗିବ ଯଉବନ ।
ନବଯୁବା ନାରୀ ସଙ୍ଗେ କରିବ ତୁମ୍ଭେ ପ୍ରୀତି
ସେ ମୋତେ ଅପମାନ ହୋଇବ ଦାଶରଥି ।
ଏବେ ଦିନା କେତେ ହୋଇଥିବି ମୁଁ ସୁଭାଗୀ
ଏ ଦେହ ଥିବ ପୁଣ ହୋଇବି ଦୁର୍ଭାଗୀ ।
ଲୋକନିନ୍ଦା କଥା ଯେ ହୋଇବ ମୋତେ ବ୍ୟଥା
ଏତେ ବୋଲି ଦେବୀ ପାଦେ ଲମ୍ବାଇଲେ ମଥା ।
ଥନ ଥନ ନୟନ କରିଣ ଚାନ୍ଦମୁହିଁ
ଏ ଜନ୍ମେ ସତ୍ୟବ୍ରତରେ ପାଳ ହେ ରଘୁସାଇଁ ।
ଏ ଶରୀର ଗୋଟି ମୋର ଅଟଇ ତୁମ୍ଭର
ଶୁଣିକରି ଶ୍ରୀରାମ ଯେ କହିଲେ ସତ୍ୱର ।

ତୁମ୍ଭେ ଯାହା କହିଲ ସେ କଥା ମୋର ମୂଳ
ଆଗେ କହିବା କଥା ଏବେ ନୁହଁଇ ନିବାର ।
ତୁମ୍ଭର ସଙ୍ଗକୁ ମୁଁ ନ କରିବି ସପତଣୀ
ଏହିକଥା ସତ୍ୟ ମୋର କହୁଅଛି ବାଣୀ ।
ନୋହିବି ବିଭା ମୁଁ ଯେ ନ ଛୁଇଁବି ଅନ୍ୟନାରୀ
ଆଜହୁଁ ମାତା ମୋହର ଥାଉ ସକଳ ନାରୀ ।
କେବଳ କଥାଏ ଗୋ ଶୁଣି ଥାଅ ତୁମ୍ଭେ
ଆମ୍ଭେ ଯେଣେ ଯିବୁ ଗୋ ଯିବ ତେଣେ ତୁମ୍ଭେ ।
ଅଲଘିତେ ତୁମ୍ଭେ ଯେବେ ହରାଇବ ପ୍ରାଣ
ତଥାପି ଅନ୍ୟ ନାରୀ ନାହିଁ ମୋ ରମଣ ।
ତୋର ନାମ ଦେଇ ମାତ୍ର ସୁବର୍ଣ୍ଣ ପ୍ରତିମା
ପତ୍ନି ଭ୍ରଷ୍ଟା ନିମନ୍ତେ ମୁଁ ଅଣାଇବି ବାମା ।
ସେ ପିତୁଳା ସଙ୍ଗେ ଯେବେ କରିବି ମୁଁ କେଳି
ପୂର୍ବବନ୍ତେ ଯେ ପିତୁଳା ତୋ ଦେହ ବଦଳି ।
ଅନେକ ଯୁବତୀ ମୋତେ ଭୋଗ କରାଇବ
ତେତେବେଳେ ତୁମ୍ଭର ଗୋ ସୁଆଗ ନ ରହିବ ।
ଏବେ ଯେତେକାଳ ତୁମ୍ଭେ ମୋର ସଙ୍ଗେଥିବ
ନବଯୁବା ରୂପରେ ଯେ ତୋହର ଦିନ ଯିବ ।
ନୋହିବ ବୃଦ୍ଧ ଶରୀର କହିଲୁ ତୁମ୍ଭଙ୍କୁ
ତୁମ୍ଭଙ୍କୁ ଦେଖିଲେ ମନ ନଟଳେ ଅନ୍ୟଙ୍କୁ ।
କେବଳ କଥାଏକ ଅଛଇ ଜାଣି
ଦେବଙ୍କର ଛଳେ ଜନମ ହେବୁ ପୁଣି ।
ପ୍ରବଳ ଅସୁର ମାରିବି ନିଶ୍ଚେ ମୁହିଁ
ଚଉଦ ମାସ ଅସୁର ପୁରେ ରହିବୁ ଚାନ୍ଦମୁହିଁ ।
ତେତେବେଳେ ଶୋକ ବିରୂପ ହେବ ତୋର
ଏକବ୍ରତି ବିଚାରିବାରୁ ଏତେକଷ୍ଟ ତୋହର ।
ତୁ ନିକି ମୋତେ ଛାଡ଼ି ଥାଉରେ ଚାନ୍ଦମୁଖୀ
ତେତେବେଳେ ସିନା ମୁହିଁ ହୋଇବିଟି ଦୁଃଖି ।
ସ୍ତିରୀମାନଙ୍କ ଚିତ୍ତ ଚଞ୍ଚଳ ଅସ୍ଥିର
ପ୍ରକୃତି ଅନ୍ୟାୟ ତ ଅଟଇ ତାହାଙ୍କର
ଯଦ୍ୟପି କାନ୍ତ ଜାଣିଥାଇ କାମକଳା
ବିଦ୍ୟାବନ୍ତ ପଣ ହୋଇଥାଇ ଅଶୃଙ୍ଖଳା ।
ନିର୍ମଳ ବଂଶରେ ହୋଇଥାଇ ଅବତାର
ଧନବନ୍ତ ଯୁବା ବୟସ ଅତ୍ୟନ୍ତ ସୁନ୍ଦର ।
ଅବିରତେ ଦାତାପଣ ଗୁଣରେ ଗରିଷ୍ଠ
ସର୍ବଜନେ ତାକୁ କରିଥାନ୍ତି ମହାରିଷ୍ଟ ।

ଯୁବତୀଙ୍କି ତିଆରେ ସେ ପରେ ବୋଧକରି
ଜୀବନରୁ ଅଧିକ କରନ୍ତି ତାକୁ ନାରୀ ।
ଏମନ୍ତ ନୋହିଲେ ପୁରୁଷ ଛାଡ଼ନ୍ତି ଯୁବତୀ
ଆନ ପୁରୁଷରେ ନେଇଣ ଦ୍ୟନ୍ତି ମତି ।
ତେଣୁ କରି ତୋତେ ରେ ତିଆରଇ ସୁନ୍ଦରୀ
ଏମନ୍ତ ବଚନ ଯହୁଁ କହିଲେ ଚାପଧାରୀ ।
ଶୁଣି କରଯୋଡ଼ି କହେ ଜନକ ଦୋହିତୀ
ତୁମ୍ଭ ବିନା ଅନ୍ୟ ମୋହର ନବଳଇ ମତି ।
ଯଦ୍ୟପି ହେ ନାଥ ମୋତେ ନେବ ଅନ୍ୟଜନ
ତେବେ ସେ ଦିନରୁ ମୁହିଁ ଛାଡ଼ିବଇଁ ଅନ୍ନ ।
ବେଶ ବସନ ମୋର ଛାଡ଼ିବି ସୁଖ ଭୋଗ
ପୁଣ ଯେବେ ସ୍ୱାମୀରେ ହୋଇବି ସଂଯୋଗ ।
ତେବେ ସେ ସ୍ନାନ ଭୋଜନ ସମସ୍ତ କରିବି
ଏ ତୁମ୍ଭର ପଦ୍ମ ପାଦେ ସେବା କରିଥିବି ।
ସତ୍ୟ ସତ୍ୟ ଏ ମୋହର କୁଳ ଦୀପ ସାକ୍ଷୀ
ଏତେ ବୋଲି ଅନଳ ଛୁଇଁଲେ ଚନ୍ଦ୍ର ମୁଖୀ ।
ଜାନକୀର ବଚନେ ଶ୍ରୀରାମ ପୁଣ ଗଲେ
ସୀତାହିଁ ରାମଚନ୍ଦ୍ର ବଚନେ ସତ୍ୟ କଲେ ।
ବୋଇଲେ ସଖୀ ତୁ ଗୋ ଶୁଣ ମୋ ବଚନ
ଆମ୍ଭେ କୁଳ ଦୀପ ଛୁଇଁ କରିଛୁ ନିୟମ ।
ଏ ଜନ୍ମରେ ମୋହର ନୋହିବ ଆନନାରୀ
ଏକଥା ଆନ ହେଲେ ନ ସହିବ ବସୁନ୍ଧରି ।
ସତ୍ୟ ସତ୍ୟ ଏ ମୋହର ଅଟଇ ଅଲଘିତ
ଏତେ ବୋଲି କୁଳ ଦିପ ଛୁଇଁଲେ ରଘୁନାଥ ।
ବେନି ଜନଙ୍କର ଯେ ଏରୂପେ ସତ୍ୟହେଲ
ସେଠାରୁ ଜାନକି ଶ୍ରୀରାମ ହେଲେ ମେଳ ।
ଶ୍ରୀରାମ ଜାନକିଙ୍କି ନେଇ ବସାଇଲେ କୋଳ
ସତ୍ୟରେ ସେ ଦୁହେଁ ଜାଣିଲେକ ବେନିଜନ ।
ଗଜଦନ୍ତ ପଲଙ୍କରେ କଲେକ ଶୟନ ।
ଜାନକୀ ଶୋଇଲେ ଶ୍ରୀରାମଙ୍କୁ ପିଠି ଦେଇ
ତାଙ୍କ ପଛେ ଶୟନ କଲେକ ରଘୁସାଇଁ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଗଉରୀ
ନିଦ୍ରାରେ ଅଚେତ ଯେ ଜନକ କୁମାରୀ ।
ଶ୍ରୀରାମଚନ୍ଦ୍ର ଚିଆଁଇ ଅଛନ୍ତି ତୁନି ହୋଇ
ତାହାଙ୍କର ନୟନରେ ନିଦ୍ରାହୋଇ ନାହିଁ ।

ଜାନକୀ ସୁନ୍ଦର ପଣ ମନରେ ସୁମରି
କରକୁ ଲେଉଟାଇ ଲୋଡ଼ନ୍ତି କୋଳକରି ।
ପୁଣ ପୁଣ ମାନସରେ ବିଚାରି ସଙ୍କୋଚ
ଶ୍ରୀରାମ ମର୍ଦ୍ଦନ୍ତି ଯେ ଜାନକିର କୁଚ ।
ଥୋକାଏକ ବେଳରେ ବିଭୋର ଭାବ ହୋଇ
ହେ ସଖୀ ହେ ସଖୀ ବୋଲି କର ଲେଉଟାଇ ।
ଅତି ଗାଢେ ତାହାଙ୍କୁ ଲୋଡ଼ନ୍ତି କୋଳକରି
କାମଭରେ ନିଦ୍ରାଭଙ୍ଗ ଜନକ କୁମାରୀ ।
ସଂକୋଚ ଛାଡ଼ିଣ ଶ୍ରୀରାମଙ୍କୁ କୋଳ କଲେ
ମୁଖେ ମୁଖ ଲଗାଇ ଉରରେ ଉର ଦେଲେ ।
ଚରଣକୁ ଚରଣ ସେ ଲଗାଇ ଛନ୍ଦିଲେ
କାମଦେବଙ୍କୁ ସେ ବଳ କରିଣ ବାନ୍ଧିଲେ ।
ଯେ ବେନିଜନ ମଦନ ରସରେ ରସେ ମାତି
ବିବିଧ ପ୍ରକାରେ ସେ କରନ୍ତି ସୁରତି ।
ଯାହା ନେତ୍ରାନ୍ତରୁ ଜାତ ହୋଇଛି ମଦନ
ସଦାକାଳେ ଶୃଙ୍ଗାର ଯେହ୍ନୁ ପୂର୍ଣ୍ଣ ।
କନ୍ଦର୍ପ ରତିରେ ଯହୁଁ ଲିଳା ଅଗୋଚର
ସୀତା ସଙ୍ଗେ ରଙ୍ଗେ ଆରମ୍ଭିଲେ ରଘୁବୀର ।
ଏକକୁ ଏକେ ରତିଶାସ୍ତ୍ରେ ଅଟନ୍ତି ସେ ପୂର୍ଣ୍ଣ
ବଚନରେ ନୁହଇ ତାଙ୍କ ଚରିତ ଲେଖନ ।
ଏଥୁ ଅନନ୍ତରେ ଆସି ରଜନି ହୁଏ ଶେଷ
ଦେବତାଙ୍କ ଆଳରେ ଶୁଭଇ ଶଙ୍ଖଘୋଷ ।
ବେଣୁ ବୀଣା ତାଳ ମର୍ଦ୍ଦଳ ଯେ ବଜାନ୍ତି
ଢୋଲ ଦମ ନିଶାରତା ଧ୍ୱନି ଉଛୁଳନ୍ତି ।
ଶ୍ରୀରାମଚନ୍ଦ୍ର ଜାନକି ବିଷାଦ ମନ ହୋଇ
ଆଜ କିମ୍ପା ରଜନି ଅଳପେ ଗଲା ପାହି ।
ଶ୍ରଦ୍ଧା ପୂର୍ଣ୍ଣ ନୋହିଲା ହୋଇଲା ମହାବ୍ୟଥା
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ରସ କଥା ।
ସେଠାରୁ ଦାସୀଗଣେ ଭିତରେ ମିଳିଲେ
ମାଳିନୀ ନାମେ କନ୍ୟାକୁ ଯାଇଣ ବେଶ କଲେ ।
ଜୋଡ଼ାବାନ୍ଧି ଝମ୍ପା ଝୁମ୍ପୀ ଚଉଁରି ଭୁଷିଦେଲେ
ଅଳକା ଫୁଲ ଗଭା କେତକି ରଞ୍ଜିଲେ ।
ଚନ୍ଦନ ପାଟି ନେଇ ସିନ୍ଦୂର ଟୋପା ଦେଲେ
ନୟନେ ଅଞ୍ଜନ ଦେଲେକ ନେଇ ଭଲେ ।
ଶିର ପରେ ଅଳକା ମଥାମଣି ପୁଣ
ନାଶାରେ ସିନ୍ଧୂଫଳ ଲୋଥ ଦଣ୍ଡିସ ଜାଣ ।
କାପ ମଲ୍ଲକଢି ଚନ୍ଦ୍ରଫାସିଆ ଫିରିଫିରା
ବେନି କର୍ଣ୍ଣେ ଖଞ୍ଜିବାରୁ ଦିଶିଲେ ବଡ଼ ଶୋଭା ।
ବେନି ବାହୁ ବାହୁଟି ବିଦ ତାଡ଼ ଶୋହେ
କର୍ଣ୍ଣରେ ରତ୍ନ ଚୂଡ଼ି ବିରାଜେ ଜ୍ୟୋତିର୍ମୟେ ।
ଗଳାରେ ଚାପସରି ହୃଦରେ ପଦକ
ବକ୍ଷ ସ୍ଥଳରେ ଚନ୍ଦ୍ର ହାର ହିରାର ନାୟକ ।
ଅଙ୍ଗୁଷ୍ଠିରେ ରତ୍ନ ମୁଦି କଟିରେ ମେଖଳା ।
ବଳା ପାହୁଡ଼ ନୂପୁର ଝୁଣ୍ଟିଆ ଦିଶେ ତୋରା ।
ଚର୍ଭୂସମ କୁଙ୍କୁମ ସର୍ବାଙ୍ଗେ ଲେପିଲେ ପୁଣ
ଚରଣେ ଅଳତା ଦିଶେ ବଡ଼ ଶୋଭାବନ ।
ନିଳ ଅମଳାଣ ଶାଢୀ ଯେ ପିନ୍ଧାଇଲେ
ଖଣ୍ଟୁଆ ଉପରାଣ ମସ୍ତକ ପରେ ଦେଲେ ।
ଘେନିକରି ଦାସୀଗଣ ଚଳିଲେ ଧୀରେ ଧୀରେ
ପ୍ରବେଶ ହେଲେ ହିରା ପ୍ରବଳାର ପୁରେ ।
ଭ୍ରଥଙ୍କର ପାଶରେ ନେଇଣ ଛିଡ଼ା କଲେ
ଏ ସ୍ତିରୀ ଭୋଗ ତୁମ୍ଭେ କରହେ ବୋଇଲେ ।
ଅଳପ ବୟସ ତ ଅଟଇ ରାଜଜେମା
ସୁନ୍ଦର ଚଞ୍ଚଳ ଚାରୁ ହଂସୀ ଅଟେ ରମ୍ଭା ।
ନବ ଯଉବନକୁ ଭୋଗକର ପୁଣ
ଆଜିଠାରୁ ତୁମ୍ଭର ଦାସୀ ଏହୁ ହେଲା ଜାଣ ।
ଏତେ କହି ସକଳ ନାରୀଗଣେ ଗଲେ
ବାହାରି କବାଟ ଦେଇଣ ଦାସୀ ଚଳିଗଲେ ।
ଉଠିକରି ଭରତ କୋଳ କଲେ ଆସି
ପଲଙ୍କ ଉପରେ ବସାଏ ଶଶିମୁଖୀ ।
ବେନି କୁଚ ମରଦିଣ ମୁଖରେ ଚୁମ୍ବ ଦେଲେ
ନାନା ପରିବନ୍ଧେ ସୁରତି ରତି କଲେ ।
ରତି କେଳି ସାରିଣ ପଲଙ୍କେ ବେନିଜନ
ମୁଖକୁ ମୁଖ ଲଗାଇ କଲେକ ଶୟନ ।
ବାହୁକୁ ବାହୁ ବେନି ଚରଣ ଛନ୍ଦା ଛନ୍ଦି
ଦୁଇକୁଚ ଯୁଗଳ ହୃଦରେ ନେଇ ଲଦି ।
ହେମମୟ ପଲଙ୍କରେ ନିଶ୍ଚିତେ ନିଦ୍ରା ଗଲେ
ଲଜ୍ଜାଭାବ ଛାଡ଼ିଣ ଶୃଙ୍ଗାର ରତି କଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଦାସୀଗଣମାନେ ଯେ ଭିତରେ ଯାଇ ମିଳି ।
ଉର୍ମିଳା କନ୍ୟାକୁ ବେଶ ଧାଈମାନେ କଲେ
ଚରଣ ଅଙ୍ଗୁଷ୍ଠିରେ ଝୁଣ୍ଟିଆ ଖଞ୍ଜିଲେ ।

ଅଳତା ପୟରେ ଯେ ଖଞ୍ଜିଲେ ତିନିଧାଡ଼ି
ପାହୁଡ଼ି ନୂପୁରବଙ୍କା ଖଞ୍ଜିଲେ ଯତ୍ନକରି ।
କଟିରେ ମେଖଳା ବକ୍ଷସ୍ଥଳରେ କାଞ୍ଚଲା
ଗଳାରେ ଚାପସରି ପଦକ ଦିଶେ ତୋରା ।
ଚନ୍ଦ୍ରହାର ବନମାଳା ନବରତ୍ନ ଖଞ୍ଜି
ସୁନ୍ଦରୀମାନଙ୍କୁ ସେହୁ ପକାଏ ଯେ ଗଞ୍ଜି ।
ହୀରାମାଣିକ୍ୟର ଚୁଡି ବେନି କରେ ଦେଲେ
ବାହୁଟି ବିଦ ତାଡ଼ ବାହାରେ ଖଞ୍ଜିଲେ ।
ଅଙ୍ଗୁଷୀରେ ରତ୍ନମୁଦି ନାଶାରେ ବସଣୀ
ରତ୍ନରେ ଲୋଥଦଣ୍ଡି ଗୁଣା ଦେଲେ ପୁଣି ।
କାପ ଯେ ମଲ କଡ଼ି ଚନ୍ଦ୍ର ଫାସିଆ ନେଇ
ଫିରାଫିଗ ବେନି କର୍ଣ୍ଣେ ଖଞ୍ଜିଲେ ତୋଷ ହୋଇ ।
ନୟନେ ଅଞ୍ଜନ ଦେଲେ ସିନ୍ଦୂର ମଣ୍ଡକର
ମଥାମଣି ଅଳକା ପାଟି ଚନ୍ଦନ ସାର ।
କେଶକୁ ଶାମଳିଣ ଯୋଡ଼ା ବାନ୍ଧି ଯତ୍ନେ
ଚଉଁରୀ ମୁଣ୍ଡରେ ଝୁମ୍ପୀ ଲଗାଇ ତୁରିତେ ।
ପଞ୍ଚବର୍ଣ୍ଣ ଫୁଲ ଗଭା ତାପରେ କେତକୀ
ପିତାମ୍ବର ପାଟ ଶାଢ଼ୀ ବାଛିଣ ପିନ୍ଧାନ୍ତି ।
ବସନ୍ତ ପତନି ଯେ ଉପରାଣ ଦେଲେ
ବେଶକରି ଦାସୀଗଣେ ଘେନି ଚଳିଗଲେ ।
ଶିତଳ ମାଣିକ୍ୟପୁରେ ହେଲେ ପରବେଶ
ଦେଖିଲେ ପଲଙ୍କରେ ଲକ୍ଷ୍ମଣ ନିଦ୍ରାଗତ ।
ଟାହି ଢମାଳିରେ ହରଷେ ଗୀତକଲେ
ଶୁଣିଣ ଲକ୍ଷ୍ମଣ ଯେ ହସିଣ ଉଠିଲେ ।
ଦେଖିଣ ଦାସୀଗଣେ ଉର୍ମିଳା ସମର୍ପିଣ
ଚଳିଲେ କବାଟକୁ ଦେଇଣ ବେଗେ ଜାଣ ।
ଭିତର ପୁରେ ଯାଇ ପ୍ରବେଶ ଦାସୀ ହେଲେ
ସେଠାରୁ ଲକ୍ଷ୍ମଣ ଉର୍ମିଳାକୁ କୋଳ କଲେ ।
ମୁଖରେ ଚୁମ୍ବ ଦେଇ କୁଚରେ ଦେଲେ ହସ୍ତ
ଉର୍ମିଳା ବୋଇଲେ ଶୁଣ ହେ ପ୍ରାଣନାଥ ।
ସପତଣି ନ କରିବ ନ କରିବ ରୋଷ
ଏହି କଥାମାନ ଥାଇ କର ହେ ସଙ୍କେତ ।
ତେବେ ମୁଁ ତୁମ୍ଭର ଦାସୀ ନିଶ୍ଚୟ ଯେ ଜାଣ
ନୋହିଲେ ମରିବି ଖାଇବି ବିଷ ପୁଣ ।
ଶୁଣିଣ ଲକ୍ଷ୍ମଣ ଯେ କୋମଳ ଭାଷା କହି
କୌଣସି ଦିନେ ଦୁଇ ଘରଣୀ ମୋର ନାହିଁ ।

ଏକ ପତିବ୍ରତା ଯେ ଅଟଇ ମୋର ଅଙ୍ଗ
ଅନନ୍ତ ଅଟଇ ମୁଁ ଯେ ନୁହଇ ପରେ ସଙ୍ଗ ।
କେବଳ ବାସୁଦେବ ସଙ୍ଗରେ ମୁଁ ଯେ ଥାଇ
ସେହି ଯେଣେ ଯାଆନ୍ତି ମୁହିଁ ତେଣେ ଯାଇ ।
ଏବେ ବାସୁଦେବ ଯେ ଶ୍ରୀରାମ ରୁପେ ଯାତ
ଜଗତ ଅତୁଟ ନାରୀ ମନରେ କିମ୍ପା ଦୁଃଖ ।
ସର୍ବକାଳେ ନବଯୁବା ଅଟ ଯେ ସୁନ୍ଦରୀ
ତୋତେ ଜିଣି ନାରୀ ଯେ ନାହାନ୍ତି ତିନିପୁରି ।
ଆଗତ ନିଗତ ଯେ ଜାଣ ତୁମ୍ଭେ ପୁଣ
ଶଶି ସୂର୍ଯ୍ୟ ହୁତାଶନ ତୋଷେ ଦେଖିଲେ ନୟନ ।
ପ୍ରଳୟେ ହେଲେ ମୋର ମନ ନଟଳଇ
ଅସୁର ମାରିବା ପାଇଁ ଅବତାର ମହି ।
ପୂର୍ବ କଥା ମନରେ ତୁମ୍ଭର ହେତୁକର
ତୁମ୍ଭେତ ବଡ଼ସୁନ୍ଦରୀ ପଲକୁ ନବଳା ମନ ତୋର ।
ମୋହର ନୟନ ରବି କୋଟିଏ ରବି ତେଜ
ତେବେ ତୋର ରୂପକୁ କରଇ ମୁଁ ଯେ ଭୋଗ ।
ଶୁଣିଣ ଉର୍ମିଳା ଯେ ମନରେ ପ୍ରତେଗଲେ
ବୋଇଲା ଏକଥା ସତ୍ୟ ଶୁଣିଲାଇ ଭଲେ ।
ଏତେ କହି ଚରଣ ଧଇଲେ ଉର୍ମିଳା ପୁଣ
ଦୋଷ କ୍ଷମାକର ମୋର କହିବା ଦୁର୍ଗୁଣ ।
ଶୁଣିକରି ଲକ୍ଷ୍ମଣ ଯେ ହରଷମନ ହେଲେ
କୋଳକରି ଆଣିଣ ପଲଙ୍କେ ଶୁଆଇଲେ ।
ଉଠି ରଙ୍ଗକେଳିରେ ବେନିଜନ ଭୋଳ
ରତିପ୍ରୀତି ସରିବାରୁ ଲଜ୍ୟା ହେଲା ଦୂର ।
ଲକ୍ଷ୍ମଣ ବୋଇଲେ ତୁମ୍ଭେ ଶୁଣ ପ୍ରାଣସହି
ଚଉଦ ବରଷ ବନବାସ କରିବୁ ଆମ୍ଭେ ଯାଇ ।
ଅସୁରମାରି ଉଶ୍ୱାସ କରିବୁ ପୃଥିଭାରା
ସେହିକାଳେ ତୋରମୋର ହୋଇବ ଯେ ଛଡ଼ା ।
ନ ଛୁଇଁବି ସ୍ତ୍ରୀରି ଅଙ୍ଗ ନ କରିବି ଯେ ଆହାର
ନକରିବି ଯେ ରତିପ୍ରୀତି ଚିନ୍ତାନୋହିବ ମୋହର ।
ତୁମ୍ଭଙ୍କୁ ଦେଖିଲେ ରତି ପ୍ରୀତିରେ ଶ୍ରଦ୍ଧା ହେବ
ଅନ୍ନମୁହିଁ ଭୁଞ୍ଜିବି ଯେ କହିଲି ତୁମ୍ଭ ଆଗ ।
ଶୁଣିକରି ଉର୍ମିଳା ଯେ ବଚନ ଧୀରେ କହେ
ତୁମେ ବନେ ଯିବାକାଳେ ମୁହିଁ ଅପୁଙ୍ଗକ ହୁଏ ।
ଚଉଦ ବରଷ ଯାଏ ମୁଁ ଅପୁଙ୍ଗକ ଥିବି
ତୁମ୍ଭଙ୍କୁ ଦେଖିଲାବେଳେ ପୁଷ୍ପବତୀ ହେବି ।

ତୁମ୍ଭେ ବନ ଗଲା ଦିନୁ ହେବ ନପୁଂସକ
ଲେଉଟି ମୋତେ ଦେଖିଲେ ମଦନେ ଉଚ୍ଛୁକ ।
ଏମନ୍ତେ କୁହାକୁହି ହେଲେ ବେନିଜନ
ଗଜଦନ୍ତ ପଲଙ୍କରେ କଲେକ ଶୟନ ।
କୁଚକୁ ବକ୍ଷସ୍ଥଳ ମୁଖକୁ ମୁଖ ପୁଣ
ବାହୁକୁ ବାହୁ ବନ୍ଧ ଚରଣ ଛନ୍ଦି ଜାଣ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ
ସୁକିର୍ତ୍ତୀ କନ୍ୟାକୁ ଦାସୀମାନେ ବେଶ କରି ।
ପୁଷ୍ପ ଚନ୍ଦନ ଯେ ସୁଗନ୍ଧ ଅଙ୍ଗେ ବୋଳି
କେଶ ସାମଳି ଯୁଡ଼ା ବାନ୍ଧିଲେ ଯତ୍ନକରି ।
ଝରା ଝୁମ୍ପା ଚଉଁରି ମୁଣ୍ଡିମାନ ଯେ ଖଞ୍ଜି
ତା ଉପରେ ପଞ୍ଚବର୍ଣ୍ଣ ପୁଷ୍ପମାଳା ଗଞ୍ଜି ।
କପୋଳରେ ବିନ୍ଦୁ ଦେଲେ ଶ୍ରୀଖଣ୍ଡି ଚନ୍ଦନ
ନୟନେ ଅଞ୍ଜନ ଦେଲେ ଲାଞ୍ଜି ଶୋଭାବନ ।
ନାଶାରେ ସିନ୍ଧୁଫଳ ରତ୍ନଗୁଣା ଲୋଥ
କର୍ଣ୍ଣରେ କପ ମଲ୍ଲକଢ଼ି ଚନ୍ଦ୍ରଫାସିଆ ଉଦଏତ ।
ଗଳାରେ ଚାପସରି ହୃଦରେ କାଞ୍ଚଲା
ଚନ୍ଦ୍ରହାର ପଦକ ଯୋଡ଼ି କରେ ବନମାଳା ।
ବାହାରେ ତାଡ଼ ବିଦ ବାହୁଟି ଯେ ଶୋହେ
ହସ୍ତରେ ରତ୍ନ ଚୁଡ଼ି ଜଗଜନ ମୋହେ ।
କଟିରେ ମେଖଳା ଯେ ଚରଣେ ନୂପୁର
ବାହୁବୋଳା ଅଳତା ଦିଶଇ ସୁନ୍ଦର ।
ଅଙ୍ଗୁଷ୍ଠ ମାନଙ୍କରେ ଲଗାଇ ଝୁଣ୍ଟିଆ
କଳାମେଘି ପଟନି ପିନ୍ଧାନ୍ତେ ନେଇ ନୂଆ ।
ତହିଁ ପରେ ଉପରାଣ ଦେଇଣ ନେଇଗଲେ
ଧବଳ ପୁରେ ଶତୃଘନ ପାଶରେ ଛିଡ଼ା କଲେ ।
ଧାଈ ପରିବାରି ଯେ ସଙ୍ଗରେ ଅପାର
ଦାସୀଗଣେ କଥାଏ ଯେ କହନ୍ତି ଆଛନ୍ଦର ।
କହିକରି ସେଠାରୁ ଦାସୀଗଣ ଗଣେ
ବାହାର କିଳିଣି ଯେ କବାଟରେ ଦେଲେ ।
ଶତୃଘନ ଉଠିଣ ନେଇଣ କୋଳ କଲେ
ମୁଖରେ ଚୁମ୍ବନ ଦେଇ କୁଚ ଯେ ମର୍ଦ୍ଦିଲେ ।
ନିବିଡ଼ ପ୍ରକାରେ ସେ କଲେ ରତି ଲୀଳା
କେତେବେଳେ ଉତ୍ତାରୁ ମନ ଭଗ୍ନ ପରା ।
ମନ ଭଗ୍ନ ହେବାରୁ ପଲଙ୍କେ ନିଦ୍ରାଗଲେ -
ମୁଖରେ ମୁଖ ଲଗାଇ ଚରଣେ ଛନ୍ଦିଲେ ।

ବାହାରେ ବାହା ଛନ୍ଦି ହିଆରେ ହିଆ ଜଡ଼ି
ଗଜଦନ୍ତ ପଲଙ୍କର ଉପରେ ପହୁଡ଼ି ।
ଏଥୁ ଅନନ୍ତରେ ଯେ ରଜନୀ ହେଲା ଶେଷ
ଦେବତାଙ୍କ ଆଳେ ଯେ ଶୁଭିଲା ଶଙ୍ଖଘୋଷ ।
ବେଣୁ ବୀଣା ତାଳ ଯେ କଂସାଳ ମର୍ଦ୍ଦଳ
ଢୋଲ ଦମା ଟମକ ନିଶାଣ ବୀର ବାଜା ସାର ।
ଉଠିଲେ ସୈନ୍ୟଗଣ ଯେ ରାଜାଗଣ ପୁଣ
ସେନାପତି ସରଦାର ଆବର ମନ୍ତ୍ରୀଗଣ ।
ପାତ୍ର ସାମନ୍ତ ଯେ ସିପାହୀ ମାହୁନ୍ତ
ବିପ୍ର ଋଷି ସମସ୍ତେ ହେଲେ ଚେତାବନ୍ତ ।
ଆସ ଆସ ଯାଅ ଯାଅ ଲାଗିଲା ଗହଳ
ଜାନକୀ ଶ୍ରୀରାମ ଉଠିଲେ ଜାଣିଣ ଚହଳ ।
ଭରଥ ଲକ୍ଷ୍ମଣ ଯେ ଶତୃଘନ ପୁଣ
ଶୟନ ତେଜିଣ ଯେ ଉଠିଲେ ବହନ ।
ଦାସୀଗଣମାନେ ଆସି ପାଶରେ ମିଳିଲେ ।
ଚାରି ଭଗ୍ନିକି ସେ ସଙ୍ଗରେ ଘେନିଗଲେ ।
ଅନ୍ତପୁରେ ପ୍ରବେଶ ହେଲେ ଚାରିଭଗ୍ନି
ଦେଖିଣ ହରଷ ଯେ ହୋଇଲେ ଜନନୀ ।
ଦାସୀମାନେ ସୁବାସ ଜଳ ଘେନିଗଲେ
ଶ୍ରୀରାମ ଲକ୍ଷ୍ମଣ ଭ୍ରଥ ଶତୃଘ୍ନ ପାଶେ ମିଳେ ।
ବାସି ପାଣି ଘେନିଣ ମୁଖ ପଖାଳିଲେ
ଚରଣ ପଖାଳିଣ ହରଷ ମନ ହେଲେ ।
ଦାସୀଗଣ ଫେରିଣ ଭିତର ପୁରେ ମିଳି ।
ସୁବାସ ଜଳ ନେଇ ସୀତାଙ୍କୁ ସ୍ନାନ କରି ।
ଶ୍ରୀଅଙ୍ଗ ପୋଛିଣ ପଟନି ପିନ୍ଧାଇଲେ
ନୂତନ ବେଶମାନ ବସିଣ ଦାସୀ କଲେ ।
ପୂର୍ବରୁ ଶତେଗୁଣ ଉଜ୍ଜ୍ୱଳ ବେଶ କରି
ଜନନୀମାନେ ଅମୃତ ଭୁଞ୍ଜାଇ ନେଇକରି ।
ଭୋଜନ ସାରିଣ ଆଚମନ କଲେ ଚାରିଭଗ୍ନି
ପଲଙ୍କର ଉପରେ ବସିଲେ ଯାଇ ପୁଣି ।
କର୍ପୂର ତାମ୍ବୁଳ ଯେ ବିଡ଼ିଆ ଭୁଞ୍ଜିଲେ
ଦାସୀମାନେ ଯେ ଯାହାର ନିଯୋଗ ଖଟିଲେ ।
ଏଥୁ ଅନନ୍ତରେ ଯେ ଶ୍ରୀରାମ ଚାରି ଭାଇ
ପଲଙ୍କ ତେଜି ବାହାର ମେଲାରେ ବସେ ଯାଇ ।
ଏହି ସମୟରେ ନିଯୋଗ ଲୋକେ ମିଳି
ମାଜଣା ମର୍ଦ୍ଦନ କଲେକ ବେଗକରି ।

ସୁବାସିତ ଜଳରେ ଯେ ସ୍ନାହାନ କରାଇଲେ
ଶ୍ରୀଅଙ୍ଗ ପୋଛି ନୂତନ ବସ୍ତ୍ର ପିନ୍ଧାଇଲେ ।
ଦେବାର୍ଚ୍ଚନ ତିଳକ ସାରିଲେ ରାମ ପୁଣ
ଭିତରପୁରେ ବିଜୟ କଲେକ ଯାଇଣ ।
ଦାସୀଗଣେ ଜାଣିଣ ମନାଇ ଘେନିଗଲେ
ଅନ୍ତପୁରେ ଜ୍ୟୋତି ଘରେ ନେଇଣ ବସାଇଲେ ।
ଜନକ ରାଣୀମାନେ ଯୁଆଁଇଙ୍କି ଦେଖି ପୁଣ
ଭୋଜନ କରାଇବାକୁ କଲେକ ଯତନ ।
ରତ୍ନପିଢ଼ା ଝରି ଶାଢ଼ୀ ଆଣିଣ ଦେଲେ
କନକ ଥାଳିରେ ଅନ୍ନବ୍ୟଞ୍ଜନ ପରଶିଲେ ।
ଖିରିଖିରିସା ବଡ଼ୁଝଡା ଯେ ମହୁର
ଅମୃତ ଭୋଜନ କଲେ ଚାରି ଭାଇ ଯେ ସତ୍ୱର ।
ଆଚମନ ସାରିଣ ବିଡ଼ିଆ ଲାଗ ହେଲେ
ସେଠାରୁ ଚଳିଯାଇ ପଲ୍ୟଙ୍କେ ବିଜେ କଲେ ।
ଏଥୁ ଅନନ୍ତରେ ଦଶରଥ ରାଣୀ
ଦଶରଥଙ୍କୁ ଡକାଇଣ କହନ୍ତି ବାଣୀ ।
ବୋଇଲେ ଋଷିଙ୍କ ପୁରକୁ ଆମ୍ଭେ ଯିବୁଁ
ବୃଦ୍ଧ ଋଷିଆଣୀ ମାନଙ୍କୁ ଦେଖିବୁଁ ।
ଶୁଣିଣ ଦଶରଥ ବେଗେ ଚଳିଗଲେ
ଜନକ ଋଷି ପୁରେ ପ୍ରବେଶ ହୋଇଲେ ।
ବୋଇଲେ ରାଣୀମାନେ ଆସିବେ ତୁମ୍ଭପୁର
ଦେଖା ହୋଇକରି ଯିବେ ନିଜପୁର ।
ଶୁଣିକରି ଜନକ ହରଷରେ କହି
ମୋଠାରେ ସୁଖ ଥିଲେ ଆସନ୍ତୁ ମହାମାୟୀ ।
ଶୁଣିଣ ଦଶରଥ ହରଷେ ଚଳିଗଲେ
ସକଳ ରାଣୀମାନଙ୍କୁ ଯାଇଣ କହିଲେ ।
ଶୁଣିଣ ରାଣୀମାନେ ବେଶ ଭୂଷଣ ହୋଇ
ରତ୍ନ ହାନ୍ଦୋଳାରେ ବସି ଜନକପୁରେ ଯାଇ ।
ଦେଖିଣ ଋଷିଆଣୀମାନେ ଆସି ପୁଣ
ରାଣୀହଂସମାନଙ୍କୁ ଘେନିଗଲେ ପହଣ୍ଡ ମଣାଇଣ ।
ସକଳ ପୁରମାନ ରାଣୀମାନଙ୍କୁ ଦେଖାଇଲେ
ବଇଦୂର୍ଯ୍ୟପୁରେ ନେଇଣ ବସାଇଲେ ।
ସେଠାରୁ ରାଣୀମାନେ ରାଣୀହଂସଙ୍କୁ ପୁଣ
ମାନ୍ୟ ଧର୍ମ କଲେ ଉଚିତରେ ଜାଣ ।
ଦେଖିକରି ଋଷିଆଣୀ ପରମ ତୋଷ ହେଲେ
ଉତ୍ସବ ହରଷରେ ମିଳନ ହୋଇଲେ ।

କେ କାହାକୁ କୋଳାଗ୍ରତ କରିଣ ଭିଡ଼ାଭିଡ଼ି
କେ କାହାକୁ ଘେନିଣ ବସିଲେ କୋଳକରି ।
କେହୁ ଏକଠାବେ ବସିଣ କଥା ହୋନ୍ତି
କେଉଁମାନେ ହାସ୍ୟ ହରିହାସେ ମାତି ।
କେହୁ କାହା ଅଙ୍ଗରେ କୁଙ୍କୁମ ଦ୍ୟନ୍ତି ବୋଳି
କେହୁ ଭିଡ଼ା ଭିଡ଼ିରେ ହୁଅନ୍ତି ଉଚ୍ଛୁଳି ।
ଏମନ୍ତେ ନାନା ଉତ୍ସବ ରାଣୀ ଋଷିଆଣୀ
ବେନି କୁଳ ରହସ୍ୟ କେ କହିପାରେ ପୁଣି ।
ଦାସୀଗଣମାନେ ବେନି କୁଳର ଜାଣ
ହାସ୍ୟରସ କଉତୁକ ହରଷ ହେଲେ ପୁଣ ।
ଏହି ସମୟରେ ଚାରିପୁତ୍ର ମିଳିଲେକ ଆସି
ମାତାମାନଙ୍କୁ ନମସ୍କାର ହୋଇଲେକ ସେଥି ।
ଦେଖିଣ ପରମ ଆନନ୍ଦ ମାତାଗଣ
ପୁତ୍ରମାନଙ୍କୁ କୋଳେ ବସାଇଲେ ପୁଣ ।
ଏହି ସମୟରେ ଶାନ୍ତା କନ୍ୟା ମିଳି
ଜନନୀମାନଙ୍କୁ ଓଳଗେ ଯାଇକରି ।
ଦେଖିଣ ଜନନୀମାନେ ପରମତୋଷ ହେଲେ
ଦୁହିତାଙ୍କୁ କୋଳରେ ନେଇଣ ବସାଇଲେ ।
ମୁଖରେ ଚୁମ୍ବନ ଦେଇ ଆଶ୍ୱାସନା କହି
ଦୁହିତାମାନଙ୍କୁ ପ୍ରଫୁଲ୍ଲ କରାଇ ।
ସେଠାରୁ ଭାଇ ଭଉଣୀ ଗଲେ ତହୁଁ ପୁଣ
ଏହି ସମୟରେ ଚାରିବଧୂ ମିଳେ ପୁଣ ।
ଶାଶୁମାନଙ୍କୁ ଓଳଗି ହୋଇଲେକ ସେଥି
ଦେଖିଣ ରାଣୀମାନେ କଲ୍ୟାଣ କରନ୍ତି ।
ବଧୂମାନଙ୍କୁ କୋଳରେ ବସାଇଲେ ପୁଣ
ମୁଖେ ଚୁମ୍ବନ ଦେଇ ଆନନ୍ଦ ହେଲେ ଜାଣ ।
ଏଥୁ ଅନନ୍ତରେ ଋଷିଆଣୀମାନେ କଲେ
ଆଚମନ ସାରିଣ ବିଡ଼ିଆ ଭୁଞ୍ଜିଲେ ।
ଋଷିଆଣୀମାନଙ୍କୁ କହି ହୋଇଲେ ବାହାର
ଜନକ ରାଣୀମାନେ ବିନୟ କହିବାର ।
ବୋଇଲେ ଦୁହିତା ଦେଇ ପଶିଲୁ ଶରଣ
ଦୁହିତାମାନଙ୍କୁ ମୋର ପାଳିବ ଯତନ ।
ଗେଲାଦୁଲା ଜେମା ମୋର ନ ଜାଣନ୍ତି କିଛି
ଆମ୍ଭେ ତେଜ୍ୟାକଲୁ ତାଙ୍କୁ ତୁମ୍ଭର ହେଲେ ସେଟି ।

ଏମନ୍ତ କହିଣ ବହୁତ ଶୋକ କଲେ
କଉଶଲ୍ୟା କୈକେୟୀ ସୁମିତ୍ରା ପ୍ରବୋଧିଲେ ।
ପ୍ରବୋଧ କରିଣ ବାହାର ନାରୀଗଣ
ଦାଉଣ୍ଡୀରେ ବସି ନବରକୁ ଗଲେ ପୁଣ ।
ପାର୍ବତୀ ବୋଇଲେ ଦେବ ସେଠାରୁ କିସହେଲା
ବିଭାର ଉତ୍ସବ ସେଠାରୁ ସରିଲା ।
ଏଥୁ ଅନନ୍ତରେ ଜନକ ମହାଋଷି
ଦଶରଥଙ୍କ ଛାମୁରେ ମିଳିଲେକ ଆସି ।
ଦେଖିଣ ଦଶରଥ ମାନ୍ୟଧର୍ମ କଲେ
ନିଜରାଜ୍ୟେ ଯିବୁ ଆମ୍ଭେ ମେଲାଣି ଦିଅ ଭଲେ ।
ଶୁଣିକରି ଜନକ ବହନ ଚଳିଗଲେ ।
ସମୁନ୍ଧା ସମୁନ୍ଧୀ ଯୋଗାଡ଼ ସାରିଲେ ।
ରଥ ଗଜ ଅଶ୍ୱ ବସ୍ତ୍ର ଅଳଙ୍କାର
ଅଷ୍ଟରତ୍ନେ ପାଣିଦ୍ରବ୍ୟ ଦେଲେକ ଅପାର ।
ଶ୍ରୀରାମ ଚାରି ଭାଇଙ୍କି ଚନ୍ଦନ ପୁଷ୍ପ ଦେଲେ
କୃତାଞ୍ଜଳି ହୋଇଣ ବଚନ କହିଲେ ।
ତୁମ୍ଭେ ଯେ ଦଶରଥ ସୂର୍ଯ୍ୟବଂଶେ ଜାତ
ସକଳ ନୃପତି ତୁମ୍ଭର ଅନୁଗତ ।
ସ୍ୱର୍ଗରେ ପ୍ରଶଂସା କରନ୍ତି ସୁରଗଣ
ଚତୁର୍ଦ୍ଦଶ ପୁରେ ବିଖ୍ୟାତ ବୀରସୁର ପଣ ।
ତୁମ୍ଭର କୁଳରେ ଉପୁଜେ ଚାରିପୁତ୍ର
ଶ୍ରୀରାମ ଲକ୍ଷ୍ମଣ ଅଟନ୍ତି କୁଳଦୀପ ।
ତାଙ୍କର ମହିମା ତ୍ରିପୁରେ ବିଖ୍ୟାତ
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଧନ୍ୟ ବୁଝୁଛିତ ।
ମହାଦେବ ଶରାଶନ ହେଲେ ଆମଞ୍ଚିଲେ
ସେହିଦିନୁ ବଳମାନେ ଗରବ ମୁଞ୍ଚିଲେ ।
ଧନୁଧରି ଯେଣୁ ପୂର୍ଣ୍ଣକଲେ ମୋର ବ୍ରତ
ତେଣୁକରି ବିବାହ ମୁଁ ଦେଲଇଁ ଦୁହିତ ।
ଏବେ ଦେଖ ଚାରିପୁତ୍ରଙ୍କୁ ମୋ ଚାରିଝିଅ ଦେଲି
ବରକୁଳ ବୋଲି ତୋତେ ଶରଣ ପଶିଲି ।
ତୁମ୍ଭେ ମହାଜନ ମୁଁ ଅଟଇ ସୁରନଦୀ
ତୋତେ ଆଶ୍ରୟ କରିବା ମୋହର ପ୍ରସିଦ୍ଧି ।
ମୋହର ଦୁହିତାଙ୍କର ଯେତେ ଅବିଗୁଣ
ସେ କଥା ମନେ ନ ବିଚାରିବ ମହାରାଣ ।
ତୋ ଚାରି ପୁତ୍ରକୁ ମୋ ଚାରିପୁତ୍ରୀ ଦାସୀ
ଭୋ ରାଜା ତୁ ସେମାନଙ୍କୁ ଥିବୁଟି ଆଶ୍ୱାସି ।
ଏ ମୋହର ଉକ୍ତକି ଘେନିଣ ନୃପବର
ମୋ ଦୁହିତାମାନଙ୍କର ଅପ୍ରାଧ କ୍ଷମାକର ।
ଏତେ ବୋଲି ବିନୟ ହୋଇଣ ବେଗେ ଉଠି
କୋଳକଲେ ତାଙ୍କୁ ଦଶରଥ ସତ୍ୱରେଟି ।
ଜନକ ଚରଣେ ପଡ଼ଇ ମହୀପତି
ପିତାମହ ସମାନେ ତୁ ଅଟୁ ମହାଯତି ।
ତୋ କଲ୍ୟାଣେ ମୋହପୁତ୍ରେ ହୋଇବେ ବର୍ଦ୍ଧମାନ
ସୁଖ ଭୋଗ ସମ୍ପଦ ଅର୍ଜିବେ ଯଶଧନ ।
ଧର୍ମବନ୍ତ ବଳବନ୍ତ ହୋଇବେ ମହାସୁର
ଏ ତୋହର ପରମ କଲ୍ୟାଣ ମୁନିବର ।
ଏଥୁ ଅନନ୍ତରେ ଶୁଣ ଶାକମ୍ଭରୀ ଭଲେ
ଦଶରଥ ଜନକ ବହନ ଚଳିଗଲେ ।
ଭିତରପୁରୁ ଆୟ ଅଳଙ୍କାର ଆଣିଲେ ।
କୈକେୟୀ ରାଜାର ତନୟ ଯୋଦ୍ଧାକୁ
ବିଧି ବିଧାନେ ପୂଜା କରନ୍ତି ତାହାଙ୍କୁ ।
ଦିବ୍ୟ ଅଳଙ୍କାର ଆଣି ଆଭରଣ କଲେ
ଦେଇଣ ଜନକ ଋଷି ପ୍ରବେଶ କରାଇଲେ ।
ସୁମିତ୍ରାଙ୍କର ପିଅର କୌଶଲ୍ୟାଙ୍କର ଭାଇ
ଅଳଙ୍କାର ଆଭରଣ ବେନି ଜନେ ଦେଇ ।
ଲୋମପାଦ ରାଜାଙ୍କର ଶତେ ପୁତ୍ରେ ପୁଣ
ରତ୍ନ ଅଳଙ୍କାର ତାଙ୍କୁ ଋଷି ଦେଲେ ଜାଣ ।
ସାତଶ ପଚାଶ ରାଜାଗଣ ଶାଳକଗଣ ପୁଣ
ସମସ୍ତଙ୍କୁ କଲେ ଯେ ରତ୍ନରେ ଆଭରଣ ।
ଷଡ଼ ଅର୍ଘ୍ୟ ଦେଇଣ ବଶିଷ୍ଠ ପୂଜା କରି
ସମର୍ପି ହୋଇଣ ବୋଇଲେ କରଯୋଡ଼ି ।
ବିଭା ବେଳରେ ତୁମ୍ଭେ ଦେଲ ଯେ ଅକ୍ଷତ
ରତ୍ନରେ ଭୂଷଣ କରିଣ ମୋର ଚିତ୍ତ ।
ବଶିଷ୍ଠ ବୋଇଲେ ତୁମ୍ଭର ଯେ ଇଚ୍ଛା
ଦିଅ ଅଳଙ୍କାର ହେ ପୁରୁ ମନୋବାଞ୍ଛା ।
ଶୁଣିଣ ଜନକ ରତ୍ନ ଆଭରଣ କଲେ
କଶ୍ୟପ ବାମଦେବ ସୁମନ୍ତ୍ରେ ରତ୍ନ ଦେଲେ ।
ବିଶ୍ୱାମିତ୍ର ମୁନିଙ୍କି କଲେ ପାଦ ପୂଜା
ଉପହାର ଅଳଙ୍କାର ଦେଲେକ ଋଷିରାଜା ।
ଏହି ସମ୍ପଦରେ ତୁମ୍ଭେ ଅଟ ହେ କାରେଣୀ
ଶୁଣିଣ ବିଶ୍ୱାମିତ୍ର ତୋଷ ହେଲେ ପୁଣି ।

ଆବର ଯେତେକ ସାମନ୍ତ ପାତ୍ର ଥିଲେ
ସରଦାର ସେନାପତିଙ୍କି ଅଳଙ୍କାର ଦେଲେ ।
ପଦାତି ପଏକାର ନାଟ୍ୟ ନୃତ୍ୟକାରୀ ।
ଭାଟେ କୟେବାର ଯେ ଆବର ବାଜନ୍ତରି ।
ରତ୍ନ ଅଳଙ୍କାର ସମସ୍ତଙ୍କୁ ଆଣିଦେଲେ
ଘେନିକରି ଅଯୋଧ୍ୟାବାସୀ ହରଷ ହୋଇଲେ ।
ସେଠାରୁ ଆପଣା ଯେ ବାଳବା ଋଷିଗଣ
ସର୍ବଙ୍କୁ ରତ୍ନ ଦେଇ ତୋଷ କଲେ ପୁଣ ।
ଆପଣା ସୈନ୍ୟ ସର୍ବେ ଯେତେ ନୃତ୍ୟକାରୀ
ସର୍ବଙ୍କୁ ରତ୍ନ ଦେଇ ତୋଷ ଋଷି କରି ।
ଋଷ୍ୟଶୃଙ୍ଗ ଘରଣୀ ଋଷ୍ୟଶୃଙ୍ଗଙ୍କୁ ପୁଣ
ରତ୍ନରେ ଭୂଷଣ ଜନକ କଲେ ଜାଣ ।
ବିଷ୍ଣୁ ଜନଙ୍କୁ ଧନ ଦେଇ ବୋଧ କଲେ
ଦୁଃଖୀ ଦରିଦ୍ରଙ୍କୁ ଅନ୍ନ ବସ୍ତ୍ର ଦେଲେ ।
ଦଶରଥ ରାଣୀହଂସ ଦାସୀ ପରିବାରି
ସମସ୍ତଙ୍କ ଅଳଙ୍କାର ଦେଲେ ଜନକ ଦଣ୍ଡଧାରୀ
ଅଷ୍ଟ ରତ୍ନେ ଭୂଷଣ ଚାରି ଦୁହିତାଙ୍କୁ କଲେ
ଚାରିଶତ ଦାସୀ ଯେ ଭୂଷଣେ ଅଳଙ୍କାରେ ।
ଚାରି ଦୁହିତାଙ୍କୁ ତିଆରି ବସାଇ
ତୁମ୍ଭେ କୁଳ ଉଦ୍ଧାରିଣ ଅଟ ଗୋ ତନୟୀ ।
ପ୍ରାଣଙ୍କୁ ଧାରଣା ତୁମ୍ଭେ ଅଟଗୋ ମୋର ମାୟେ
କିସ ବୋଲିଣ୍ ତୁମ୍ଭଙ୍କୁ ତିଆରିଣ କହେ ।
ଶ୍ରୀରାମ ଚାରି ଭାଇଙ୍କି ତୁମ୍ଭଙ୍କୁ ବିଭା କଲି
କନ୍ୟାଦାନ ଫଳ ମୁଁ ଯେ ଧର୍ମରେ ଅର୍ଜିଲି ।
ଯେତେକାଳ ଯାଏ ଗୋ ଥିଲ ମୋର ଘରେ
ସେ କାଳର କଥା ଏବେ ନ ଧର ମନରେ ।
ଶାଶୁ ଶ୍ୱଶୁର ଘର ଯିବ ଗୋ ଆଜ ଜେମା
ତୁମ୍ଭେ ସେଥି ନ କରିବ ଏଥିର ଗାରିମା ।
ଶାଶୁମାନଙ୍କୁ ଦେଖିଲେ ଆସନୁ ଉଠିବ
ଶ୍ୱଶୁରଙ୍କୁ ଦେଖିଲେ ନମସ୍କାର ହେବ ।
ବିଭଳିତ କଥା ତୁମ୍ଭେ ନ କହିବ କିଛି
ଅକାରଣରେ ହାସ୍ୟ ନ କରିବ ଗୋ ମୃଗାକ୍ଷୀ ।
ସାବତ ଶାଶୁମାନଙ୍କୁ ଥିବ ଭୟକରି
ଯେ ଯାହା କହିବେ କରିବ ବେଗ କରି ।
ଦାସୀଙ୍କର ସଙ୍ଗରେ ନୋହିବ ଅପ୍ରୀତି
ଅହର୍ନିଶି ସ୍ୱାମୀରେ ଯେ ହୋଇବ ଭକତି ।

ଅନୁକ୍ଷଣେ କଥାମାନ ନ କହିବ ସ୍ୱାମୀ ପାଶେ
ଯେମନ୍ତେ ସ୍ୱାମୀର ଗୋ ହୋଇବ ବିଶ୍ୱାସେ ।
ଯେଉଁ ଆଜ୍ଞା ତୁମ୍ଭଙ୍କୁ ଦେବେ ସ୍ୱାମୀ ରାଇ
ତାହାଙ୍କୁ କଥାରେ ଥିବ ସାବଧାନ ହୋଇ ।
ଅପୂର୍ବ ପଦାର୍ଥ ଗୋ ଦେଖିଲେ ନ ମାଗିବ
ରାତ୍ର ଦିବସରେ ଗୋ ବିନୟ ଭାବେ ଥିବ ।
ସ୍ୱାମୀର ଶରଧା ଗୋ ଯେଉଁ ଦ୍ରବ୍ୟରେ ଥାଏ
ସେ କଥାକୁ ଯତନେ ଗୋ ଦେବଟି ଗୋ ମାଏ ।
ଯେସନେ କୋପ ଯେ ନ କରନ୍ତି କାନ୍ତ
ତେସ୍ନନ କରିଣ ଖଟିଥିବ ମାତ ।
ପତି ହେଲେ ଇହ ଲୋକରେ ଠାକୁର
ଅନ୍ତଃକାଳେ ସ୍ୱାମୀ ସହ ସ୍ୱର୍ଗକୁ ଯିବାର ।
ମୁଁ କିସ ତିଆରିବି ଜାଣ ତୁମ୍ଭେ ପୁଣ
ଅଘଟ ମହିଳାରେ ପଚାରିବି ଜାଣ ।
ଚାରି ଦୁହିତାଙ୍କୁ ତିଆରି ଋଷି ଗଲେ
ମାଧୁର୍ଯ୍ୟରେ କହି ପୂର୍ବକଥା ବୁଝାଇଲେ ।
ସେଠାରୁ ଜନକ ଋଷିପୁଣ ଚଳିଗଲେ ।
ଶ୍ରୀରାମଙ୍କ ଆଗରେ ଯାଇଣ ମିଳିଲେ ।
ତୁମ୍ଭେ ଚାରି ଭାଇ ହେ ଦଶରଥଙ୍କ ସୁତ
ଈଶ୍ୱରଙ୍କ ଧନୁକୁ ଶ୍ରୀରାମ ବଳରେ କଲେହତ ।
ମୋର ଦୁହିତାମାନଙ୍କୁ ତୁମ୍ଭଙ୍କୁ ବିଭାକଲି
ବଡ଼କୁଳ ବୋଲିଣ ମୁଁ ଶରଣ ପଶିଲି ।
ଜାନକୀ ଚାରି ଭଗ୍ନି ବାଳୁତ କନ୍ୟା ମୋର
ସେବାକରି ନ ଜାଣନ୍ତି ଜେମା ଯେ ଅଳିଅଳ ।
ପୃଥି ଅନଳରୁ ଜାତ ହୋଇଲେ ଯଜ୍ଞକାଳେ
ବାର ବରଷ ବଢ଼ିଲେ ଏ ମୋର ପୁରେ ।
ପ୍ରାଣରୁ ଅଧିକକରି ପ୍ରତିପାଳିଲୁ ଏହାଙ୍କୁ
ଏବେ ପୂର୍ବ ଭାଗ୍ୟରେ ମୁଁ ପାଇଲି ତୁମ୍ଭଙ୍କୁ ।
ଏମାନଙ୍କୁ ସୁଦୟା ଯେ ତୁମ୍ଭେ କରିଥିବ
ଅପରାଧ ଦୋଷକଲେ ମନେ ନ ଧରିବ ।
ଏମାନେ ତୁମ୍ଭର ଯେ ହୋଇବେକ ଦାସୀ
ଏତେ କହି ଶୋକ ଯେ କଲେକ ମହାଋଷି ।
ଶ୍ରୀରାମ ଚରଣ ଯେ ଧରିଣ ପ୍ରବୋଧନ୍ତି
ଜନକ ଋଷିଙ୍କି ଶ୍ରୀରାମ ବୋଧିଣ କହନ୍ତି ।
ତେଣୁ ସେ ଚାରିଭାଇ ବିନୟ ଭାବ ହେଲେ
ଶୋକ ତେଜି ଜନକ ଭିତର ପୁର ଗଲେ ।

ପିତାଙ୍କୁ ଦେଖି ଜେମା ରୋଦନ ଯେ କଲେ
ଋଷିଆଣୀମାନେ ଉଚ୍ଚରେ ରୋଦନ କଲେ ।
ବୋଇଲେ ଅତି ଯତ୍ନେ ତୁମ୍ଭଙ୍କୁ ପାଳିଥିଲୁ
ଦଇବର ବଶରେ ପର ଘରେ ଦେଲୁ ।
ଆଜହୁଁ ଦଶ ଦିଗ ଦିଶୁଛି ଅନ୍ଧାର
ତୁମ୍ଭ ମୁଖ ଚାହୁଁଥାଉ ରଜନୀ ବାସର ।
ତୋର ମନ ଗୋ ରଞ୍ଜୁଥାଇ ନିତି
ତୋତେ ମୁଁ କହୁଛି ମାଗୋ ଶ୍ରୀରାମ ମନରଞ୍ଜିବୁଟି ।
ପୁରୁଷ ଅଭାଗୀ ଯେ ଧରନ୍ତି ଅବିଗୁଣ
ମିଛରେ କୋପ ପୁଣ କରୁଥାନ୍ତି ଜାଣ ।
ଏଥୁ ଅନନ୍ତରେ ଯେ ଜନକ ମହାଯତି
ଜାନକୀଙ୍କି ନେଇ ଶ୍ରୀରାମ ସମର୍ପନ୍ତି ।
ଉର୍ମିଳା ଦୁହିତାକୁ ଲକ୍ଷଣେ ସମର୍ପିଲେ
ଶୋକଭର ହୋଇଣ ଜନକ କହିଲେ ।
ଆଜଠାରୁ ତୁମ୍ଭର ଏ ହୋଇଲେ ଯେ ଦାସୀ
କିଛି ନ ବୋଲିବ ହେ ଦଶରଥ ବଂଶି ।
ଜନକ ରାଣୀହଂସ କରନ୍ତି ପୁଣ ଶୋକ
ଶୁଣିକରି ମନରେ ଲକ୍ଷ୍ମଣ ଦକ ଦକ ।
କୁଶଧ୍ୱଜ ଉଠିଣ ଯେ ରୋଦନ ପୁଣ କଲେ
ମାଳିନୀ ଦୁହିତା ନେଇ ଭ୍ରତେ ସମର୍ପିଲେ ।
କୁଶଧ୍ୱଜ ରାଣୀମାନେ କରନ୍ତି ରୋଦନ
କେଣେ ଗଲେ ଜେମାରେ ଆମ୍ଭର ପ୍ରାଣ ଧନ ।
ସୁକୀର୍ତ୍ତୀକୁ ନେଇଣ ଶତ୍ରୁଘନେ ସମର୍ପିଲେ
ଜନକ କୁଶଧ୍ୱଜ ଅଚେତା ସେଥି ହେଲେ ।
ଶ୍ରୀରାମ ଲକ୍ଷ୍ମଣ ଋଷିଙ୍କି ଚେତା କଲେ
ଭ୍ରଥ ଶତୃଘନ କୁଶଧ୍ୱଜରେ ତୋଳିଲେ ।
ଏଥୁ ଅନନ୍ତରେ ଯେ ଋଷିଆଣୀମାନେ
ରୋଦନ କରିଣ ଅଚେତ ହେଲେ ତେଣେ ।
ଦେଖିଣ ସାଏନ୍ତା ଯେ ଦାସୀଗଣେ ମିଳି
ଋଷିଆଣୀମାନଙ୍କୁ ତୋଳିଣ ଚେତା କରି ।
ଜନକ କୁଶଧ୍ୱଜ ଚେତା ହେଲେ ଜାଣ
ବିଚାରିଲେ ଦୁହିତାକୁ ପାଳିବେ ଏବେ ପୁଣ ।
ଋଷିଆଣୀ ବିଚାରିଲେ ଏ ଅଟନ୍ତି ଶାନ୍ତଶୀଳ
ନିଶ୍ଚୟ ଦୁହିତାମାନେ ହୋଇବେ ଅଲିଅଳ ।
ବିଚାରି ଚାରି ଦୁହିତା ସମର୍ପଣ କଲେ
ରୋଦନ ଶାନ୍ତ କରି ଶୀତଳ କହିଲେ ।

ଏଥୁ ଅନନ୍ତରେ ଯେ ଗଣ୍ଡିଆଳ ଲାଗିକରି
ପିନ୍ଧାଇଣ ଅଇଲେ ଯେ ସାଧବା ସୁନ୍ଦରୀ ।
ଚାରି ରଥ ମଣ୍ଡି ଯେ ଆଣିଲେ ବେଗକରି
ସୁବର୍ଣ୍ଣ କଳଶ ପରେ ସୁବର୍ଣ୍ଣ ମାଳ ଉଡ଼ି ।
ଯେ ରଥ ଉପରେ ଚାରି ଭଗ୍ନୀ ବିଜେ କଲେ
ବସନ୍ତ ବର୍ଣ୍ଣ ରଥରେ ଜାନକୀ ବିଜେ କଲେ ।
ଶତେକ ଦାସୀ ଘେନି ବିଜୟେ ବଇଦେହୀ ।
ଆଲଟ ଚାମର ଯେ ଢାଳନ୍ତି ତହିଁ ।
ସେ ରଥରେ ଯାଇଣ ବିଜେ କଲେ
କନକ ମଣ୍ଡାଇ ସିଂହାସନେ ଯେ ବସିଲେ ।
ନାରୀଗଣ ମିଳିଣ ଯେ ହୁଳହୁଳି ଦେଲେ
ହରି ବୋଲ ରାମ ତାଳି ଅନେକ ସେଥିପରେ ।
ଏଥୁ ଅନନ୍ତରେ ଯେ ମାଳିନୀ କନ୍ୟା ଗଲେ
ରଥର ଉପରେ ଯେ ଯାଇଣ ବିଜେ କଲେ ।
ସଙ୍ଗରେ ଦାସୀଗଣ ଯାଇଣ ସର୍ବେ ମିଳି
ଆଲଟ ଚାମର ଯେ ଢାଳନ୍ତି ଧୀର କରି ।
ଭରଥ ବିଜେ କଲେ ରଥରେ ଯାଇ ପୁଣ
ହୁଳହୁଳି ହରିବୋଲ ଶବଦ ଗରୁ ଟାଣ ।
ଉର୍ମିଳା ବିଜେ କଲେ ରଥରେ ଯାଇ ପୁଣ
ଶତେକ ଦାସୀ ଯେ ସଙ୍ଗରେ ନେଲେ ପୁଣ ।
ଦେଖିଣ ସଉମିତ୍ରୀ ରଥରେ ବିଜେ କଲେ
ଆଲଟ ଚାମର ଯେ ପଡ଼ଇ ଆଗରେ ।
ହୁଳହୁଳି ହରିବୋଲ ପଡ଼ଇ ନିରନ୍ତର
ଏଥୁଅନନ୍ତରେ ଶୁଣ ଗୋ ଦେବୀ ଭଲେ ।
ସୁକୀର୍ତ୍ତୀ ଶତେ ଦାସୀ ଘେନିଗଲେ ଚଳି
ନୀଳବର୍ଣ୍ଣ ରଥରେ ବିଜୟେ ଯାଇ କରି ।
ଦେଖିଣ ଶତୃଘନେ ସେ ରଥେ ବିଜେ କଲେ
ଆଲଟ ଚାମର ଯେ ପଡ଼ଇ ଆଗରେ ।
ଚାରି ଭାଇ ଯହୁଁ ରଥରେ ବିଜେ କଲେ
ଦେଖିଣ ସମସ୍ତେ ଯେ ହରଷ ମନ ହେଲେ ।
ଉପରେ ପାଟ ଛତ୍ର ଆଲମ୍ୱ ନିରନ୍ତର
ପଞ୍ଚମ ସ୍ୱର ଆଗେ ବାଜଇ ବୀର ତୁର ।
ଗଜ ଖେଳକରି ସେ ଆସନ୍ତି ବର ଚାରି
ବେଢ଼ିକରି ହୁଳହୁଳି ଦିଅନ୍ତି ସୁନ୍ଦରୀ ।
ଜାନକୀର ସଖୀମାନେ ଅଛନ୍ତି ଗୋଡ଼ାଇ
ଦେଖିଲା ଲୋକମାନେ ସ୍ୱର୍ଗସୁଖ ବିଚାରଇ ।

ଦୁର୍ବାକ୍ଷତ ଦେଇ ବଜାନ୍ତି ଘରେ ଘରେ
ପ୍ରବେଶ ହେଲେ ଯାଇ ଦଶରଥର ନବରେ ।
ଶୁକାସନୁ ଓହ୍ଲାଇଣ ଭିତରକୁ ଗଲେ
ନିଜ ମାତା ଉପମାତାମାନଙ୍କୁ ଓଳଗିଲେ ।
ପୁତ୍ରବଧୂ ମୁଖଦେଖି ଆନନ୍ଦ ଜନନୀ
ବେଗେ ଅକ୍ଷତ ନେଇଣ ବନ୍ଦାଇଲେ ପୁଣି ।
ଚାରିବର ଚାରି କନ୍ୟାକୁ କୋଳକରି
ଭିତରକୁ ନେଲେ ଦଶରଥ ମନୋହାରୀ ।
ହୁଳହୁଳି ଶବଦ ଶୁଭଇ ଉଚ୍ଚସ୍ୱର
ବାହାରେଣ ବଜାଇଣ ଅନେକ ବୀର ତୁର ।
ଆନନ୍ଦ ସିନ୍ଧୁ ମଧରେ ସମସ୍ତେ ହିଁ ଭାଷି
ବୋଇଲେ ମାନିଣ ଗଉରବ ମିଶାମିଶି ।
ଶ୍ରୀରାମଚନ୍ଦ୍ର ସୀତାଙ୍କୁ ବସାଏ ମାଏ କୋଳେ
ଆନନ୍ଦ ଶତ୍ରୁପୂର୍ଣ୍ଣ ତାହାଙ୍କର ବେନି ଡୋଳେ ।
ଅବନ୍ତି ପାଶେ ଯେହ୍ନେ ଶଚୀ ସୁରପାଳ
ତେମନ୍ତ ସୁନ୍ଦର କଉଶଲ୍ୟା ସୀତା ରଘବାଳ ।
ମସ୍ତକରେ ଚୁମ୍ବ ଦେଇ ଦେହ ଆଉଁସଇ
ମୋ କୁଳର ଚନ୍ଦ୍ରମା ବୋଲି ପ୍ରଶଂସଇ ।
ଏହି ସମୟରେ ଯେ ମନ୍ଥୁଡ଼ି ନାମେ ଦାସୀ
ଫୁଲ ଚନ୍ଦନ ନୂତନ ବସନ ପିନ୍ଧି ହସି ।
ତୁଣ୍ଡରେ ପାନ ଯାକି ମୁଣ୍ଡରେ ଫୁଲ ଗଭା
ତିନିକୁଳ ଘେନିଣ ସେ ଚାଲିବାର ଶୋଭା ।
ଟାହି ଢମାଳି ଗୀତ ଗାଇ ସେ ବିଡ଼ମ୍ବଣ
ନବର ଭିତରେ ସେ କରଇ ଗମନ ।
କେଉଁଠାରେ ନାଚଇ କେଉଁଠାରେ ଡେଇଁ
କେଉଁଠାରେ ହସଇ କାହାକୁ ଗାଳି ଦେଇ ।
ନାନା ପରିବନ୍ଧେ କଥାମାନ କହି
ମୁହଁକୁ ହଲାଇ ଢମାଳି ଗୀତ କହି ।
ବିଭାର ବିଧାନ ସେହୁ ପୂର୍ବୁ ଜାଣି
ଶ୍ରୀରାମଚନ୍ଦ୍ର ଯେ କୋପକଲେ ତାହା ଶୁଣି ।
ମାତାଙ୍କର କୋଳରୁ ଉଠିଲେ ରୋଷଭରେ
ପାଦ ପ୍ରହାରିଲେ ନେଇ ମନ୍ଥୁଡି ଉପରେ ।
କୁଜ ପିଠି ଉପରେ ପଡ଼ିଲାକ ନାତ
ମହା ଲଜ୍ଜା ପାଇ ଦାସୀ ହୋଇଲା ଚକିତ ।
ଶ୍ରୀରାମଚନ୍ଦ୍ର ମୁଖକୁ ଚାହିଁଲା ତରାଟି
ରକତ ବହଇ କିବା ବେନି ନେତ୍ର ଫାଟି ।
କୋପେ ବୋଲନ୍ତି ଶ୍ରୀରାମ କିମ୍ପା ମୋତେ ଚାହୁଁ
ଗୁରୁଜନ ମଧେ ବିଭଳିତ କଥା କହୁ ।
ପୁଣି ପାରିବେ ବୋଲି ଧାଇଁଲେ ରଘୁପତି
ମାତାମାନେ ବେଢ଼ିକରି ଧଇଲେକ ଧାତି ।
ଗାଳିଦେଇ ଭିତର ପୁରକୁ ପଳାଇଲା
ମନରେ ବିରସ ହୋଇ ମୁଖ ଶୁଖାଗଲା ।
ବୋଇଲା ଶ୍ରୀରାମରେ ତୋରେ ମୁଁ ହୋଇବି ବ୍ୟାଧି
ସମୟ କାଳେ ତୋତେ ଦେବି ମୁଁ ଔଷଧି ।
ମୋହ ଆୟତ୍ତରେ ଯାହା ହୋଇବାକ ପୁଣି
ବେନି ବରଷରେ ତାହା ଜାଣିବୁ ରଘୁମଣି ।
ଏତେ ବୋଲି ମନ୍ଥୁଡି ଭିତର ପୁରେ ରହି
ଶୁଣିକରି ଶ୍ରୀରାମ କ୍ରୋଧରେ ତାକୁ କହି ।
ବୋଇଲେ ଆଉବେଳେ ଯେବେ ତୁ ଆସିବୁ
ଜୀବନ ଘେନିଣ ତୁ ଯମପୁର ଯିବୁ ।
ଏମନ୍ତ କହି ଶାନ୍ତି ହୋଇଲେ ଶ୍ରୀରାମ
ବଳରାମ ଦାସ ଯେ ସେ ପାଦେ ଶରଣ ।
ଏଥୁ ଅନନ୍ତରେ ଯେ ଶୁଣ ଗୋ ଉମାଦେବୀ
ସକଳ ରାଣୀହଂସ ଆନନ୍ଦ ମନେ ଭାବି ।
ଅଯୋଧ୍ୟାକୁ ଯିବାକୁ ଦଶରଥ ରାଜା
ବିବିଧ ଛନ୍ଦରେ ଯେ ବାଜଇ ବୀର ବାଜା ।
ସକଳ ରାଣୀଗଣେ ପୁତ୍ରବଧୂଙ୍କୁ ଭୁଞ୍ଜାଇଲେ
ରାଜ୍ୟକୁ ଯିବାକୁ ସର୍ବେ ଉଦବେଗ ହେଲେ ।
ତହିଁ ଉତ୍ତାରୁ ରାଣୀମାନେ ଭୁଞ୍ଜିଣ ହେଲେ ତୋଷ
ଧାଇପଡିହାରୀମାନେ ଭୁଞ୍ଜି ହୋଇଲେ ସନ୍ତୋଷ ।
ବନ୍ଧୁଜନ ରାଜାମାନେ ନିତ୍ୟକର୍ମ ସାରି
ଯେ ଯାହାର ପୁରେ ଭୋଜନ ଯାଇକରି ।
ଦଶରଥ ଲୋମପାଦ କଲେକ ଭୋଜନ
ରାଉତ ମାହୁନ୍ତି ସିପାଇ ସକଳ ଜନ ।
ନିଯୋଗ ପଡିହାରି ସକଳ ସେବାକାରୀ
ପାତ୍ର ମନ୍ତ୍ରୀ ଋଷି ବିପ୍ର ଆଦିକରି ।
ସେନାପତି ସରଦାର ପଦାତି ବଳ ଯେତେ
ହସ୍ତି ଘୋଷ ସାରେଣୀ ଓଟ ଯେ ସହିତେ ।
ନଟ ନୃତ୍ୟକାରୀ ଭାଟ କାୟେବାର
ସମସ୍ତେ ଭୁଞ୍ଜି ସଜ ହେଲେ ଯେ ଯାହାର ।
ସମସ୍ତେ ସଜ ହେବାରୁ ଜଣାଏ ପଢ଼ିହାରି
ବିଜୟେ କର ଦେବେ ସମସ୍ତେ ବାହାରି ।

ଚାରି ପୁତ୍ର ଚାରିବଧୂ ରଥପରେ ବସେ
କିମ୍ପାଇ ଉଛୁରୁ ଯେ କରୁଛ ନରଈଶେ ।
ଶୁଣିକରି ରାଜନ ମନ୍ତ୍ରୀକି ଡକାଇଲେ
ତିନିରଥ ସଜକରି ଆଣ ହେ ବୋଇଲେ ।
ଶୁଣିଣ ସୁମନ୍ତ୍ର ମନ୍ତ୍ରୀ ବେଗେ ଚଳିଗଲା
ତିନିରଥ ସଜ କରିଣ ବେଗେ ଅଣାଇଲା ।
ଦେଖିଣ ଦଶରଥ ପରମ ସାନନ୍ଦ
ମୁଖ ବିକାଶଇ ଯେହ୍ନେ ପୂର୍ଣ୍ଣୀମାର ଚାନ୍ଦ ।
କୈକେୟୀ ରାଣୀ ଯେ କହିଲେ ରାଜନ
ଦୁଇଶ ପଚାଶ ରାଣୀ ଘେନିକର ପୁଣ ।
ଶୁଣିକରି କୈକେୟୀ ସପତଣୀ କି ଘେନି
ବସନ୍ତ ବର୍ଣ୍ଣ ରଥରେ ବିଜୟେ କଲେ ପୁଣି ।
ଧାଈ ପରିବାରି ଯେ ପରିଜନ ଯେତେ
ଆଲଟ ଚାମର ଢାଳନ୍ତି ଆଗରେ ସମସ୍ତେ ।
ଏଥୁ ଅନନ୍ତରେ ଯେ ରାଜନ ଯାଇ ପୁଣ
କଉଶଲ୍ୟା ପୁରରେ ପ୍ରବେଶ ତତ୍କ୍ଷଣ ।
ବୋଇଲେ ରଥରେ ଯାଇଣ ବିଜେକର
ଦୁଇ ପଚାଶ ରାଣୀ ଯେ ଘେନିଣ ସଙ୍ଗର ।
ଶୁଣିଣ କଉଶଲ୍ୟା ସପତଣୀଙ୍କୁ ଘେନି
ନୀଳବର୍ଣ୍ଣ ରଥରେ ବିଜୟ କଲେ ପୁଣି ।
ଆଲଟ ଚାମର ଯେ ଘେନିଣ ଦାସୀଗଣ
ରାଣୀମାନଙ୍କ ଆଗରେ ଢାଳିଲେ ନେଇ ପୁଣ ।
ଦେଖିଣ ରାଜନ ଯେ ବେଗେ ଚଳିଗଲେ
ସୁମିତ୍ରା ଆଗରେ ଯାଇ ପ୍ରବେଶ ହୋଇଲେ ।
ବୋଇଲେ ରଥରେ ଯାଇଣ ବିଜେକର
ବେନି ଶତ ରାଣୀ ଯେ ଘେନିଣ ସଙ୍ଗର ।
ଶୁଣିକରି ସୁମିତ୍ରା ଯେ ନୀଳାବତୀ ଚଳେ
ବେନିଶତ ପଚାଶ ରାଣୀ ଗଲେକ ସଙ୍ଗରେ ।
ମାଣିକ୍ୟ ବର୍ଣ୍ଣ ରଥରେ ଯାଇଣ ବିଜେକଲେ ।
ସକଳ ଦାସୀଗଣ ମିଳିଣ ଖଟିଲେ ।
ଚାମର ଆଲଟ ଯେ ଧରିଣ ପଖା ପୁଣ
ଖଟିଲେକ ଦାସୀ ଯେ ହରଷ ମନେ ଜାଣ ।
ଦେଖିଣ ରାଣୀମାନେ ହୁଳହୁଳି ଦେଲେ
ହରିବୋଲ ରାମତାଳି ଶବଦ ତହିଁ କଲେ ।
ନବର ଶୂନ୍ୟ ହେବାରୁ ଦଶରଥ ପୁଣ
ବଶିଷ୍ଠ ବିଶ୍ୱାମିତ୍ରଙ୍କୁ ବୋଇଲେ ରାଜନ ।
ଯାନର ଉପରେ ତୁମ୍ଭେ ଯାଇଣ ବିଜେକର
କଶ୍ୟପ ବାମଦେବ ଚଳନ୍ତି ସଙ୍ଗର ।
ଶୁଣିକରି ବଶିଷ୍ଠ କଉଶିକଙ୍କୁ ଘେନି
ହସ୍ତୀର ଅମରୀପରେ ବିଜୟ କଲେ ପୁଣି ।
କଶ୍ୟପ ବାମଦେବ ଅମରୀ ବିଜେ କଲେ
ସେଠାରୁ ଦଶରଥ ଚଳିଣ ବେଗେ ଗଲେ ।
ରାଜାଗଣମାନଙ୍କୁ କହିଲେ ଯାଇ କରି
ରଥପରେ ବିଜୟ କରହେ ମହୀଧାରୀ ।
ଶୁଣିକରି ରାଜାମାନେ ରଥରେ ବିଜେକଲେ
ଖଟିଣ ସାମନ୍ତମାନେ ଖଟିଲେ ଛାମୁରେ ।
ସରଦାର ସେନାପତି ଡାକିଣ ରାଜନ
ବୋଇଲେ ରଥରେ କରହେ ଗମନ ।
ପଛ ଭାଗରେ ତୁମ୍ଭେ ରହିବ ଯେ ଜାଣ
ଶୁଣିଣ ସଜ ହୋଇ ରଥରେ ଚଢ଼ିଲେକ ପୁଣ ।
ମାହୁନ୍ତ ସିପାହୀଙ୍କ ବୋଇଲେ ରାୟେ ଚାହିଁ
ହସ୍ତୀ ଅଶ୍ୱ ଶାରେଣୀ ଉପରେ ଚଢ଼ି ଯାଇ ।
ଶୁଣିକରି ମାହୁନ୍ତ ସିପାହୀ ବେଗେ ଗଲେ
ହସ୍ତୀ ଅଶ୍ୱ ସାରେଣୀ ଉପରେ ଚଢ଼ିଲେ ।
ସେଠାରୁ ପଦାତି ପଏକାରଙ୍କୁ ଡକାଇ
ବୋଇଲେ ସଜହୋଇ ବାହାର ବେଗେ ଯାଇ ।
ଶୁଣିଣ ପଦାତି ପଏକାର ଗଲେ
ସଜହୋଇ ଆଗରେ ବାହାର ହୋଇଲେ ।
ତାହାଙ୍କ ପଛରେ ହସ୍ତୀ ଅଶ୍ୱ ଓଟ
ଶାରେଣୀ ଉପରେ ଦମାଲୁ ଶବଦତ ।
ତାହାଙ୍କ ପଛରେ ଚଳନ୍ତି ଚାରି ମୁନି
ସରଦାର ସିପାହୀ ଗଲେ ଆଗେ ପୁଣି ।
ବାଜନ୍ତରିମାନେ ଆଗରେ ବାଜା କଲେ
ଭଟେ କଏବାର ଶବଦ ଆଗେ କଲେ ।
ଗୀତ ନୃତ୍ୟ ନଟକାରୀ ଗଲେକ ଆଗେଣ
କମ୍ପିଲା ମିଥିଳାପୁର ଯେ ବାଜଇ ନାଦେ ପୁଣ ।
ଦେଖିଣ ନରନାରୀଏ ହୁଳହୁଳି ଦେଲେ
ହରିବୋଲ ରାମତାଳି ପଡିଲା ଗହଳେ ।
ଶ୍ୱେତ ପାରୁଆ ରାଜହଂସ ଆଗରେ ଗମନ
ଦଧିମାଛ ପୂର୍ଣ୍ଣକୁମ୍ଭ ଠାବେ ଠାବେ ପୁଣ ।

ଆଗେ କୈକେୟୀ ରଥ ଚଳିଗଲା ପୁଣ
କଉଶଲ୍ୟା ରଥ ଚଳିଗଲା ମଧ୍ୟେରେଣ ।
ତାର ପଛେ ସୁମିତ୍ରାର ରଥ ଚଳିଯାଇ
ତାହାଙ୍କ ପଛେ ଶ୍ରୀରାମ ରଥ ଚଳେ ତହିଁ ।
ଶ୍ରୀରାମ ପଛେ ଭରତ ଲକ୍ଷ୍ମଣ ଶତ୍ରୁଘନ
ଚଳିଲାକ ରଥ ଯେ ମିଥିଳା ଦାଣ୍ଡେ ପୁଣ ।
ଗହଳରେ ଯନ୍ତାଜନ୍ତି ହୋଇଣ ଚଳିଯାନ୍ତି
ନର ନାରୀମାନେ ପଛରେ ଗୋଡ଼ାନ୍ତି ।
ସମସ୍ତେ ଚଳିଯିବାରୁ ରାଜନ ପଛେ ଗଲେ
ଜନକର ପୁରେ ଯାଇ ପ୍ରବେଶ ହୋଇଲେ ।
ଦେଖିଣ ଋଷ୍ୟଶୃଙ୍ଗ ରାଜନ ପାଶେ ମିଳି
ଦଶରଥ ରାଜା ବୋଲେ ବଚନ ଧୀର କରି ।
ଚଳବାବୁ ମଢ଼ିଆକୁ ନକରି ବିଳମ୍ବ
ଧନରତ୍ନ ଘେନି ସଙ୍ଗେ ଯାଆନ୍ତୁ ଲୋକ ସର୍ବ ।
ଶୁଣିକରି ଋଷ୍ୟଶୃଙ୍ଗ ହରଷ ହୋଇଲେ
ଅଣାଅ ଲୋକ ବୋଲି ରାଜାଙ୍କୁ କହିଲେ ।
ଶୁଣିଣ ଦଶରଥ ଲୋକ ବେନି ଶତ
ଅଣାଇ ଧନରତ୍ନ ସମର୍ପି ଦେଲା ସେତ ।
ଦେଖିଲା ଶୁକାସନ ଚଢ଼ିଲା ଋଷ୍ୟଶୃଙ୍ଗ
ଶାଏନ୍ତା ବିଜେ କଲେ ପିତାଙ୍କର ଆଗ ।
ଓଳଗି ମେଲାଇଣ ହାନ୍ଦୋଳାରେ ବସି
ଆୟ ଅଳଙ୍କାର ଦଶରଥ ହେଲେ ନିକି ।
ଲୋମପାଦ ଲକ୍ଷେ ସୁବର୍ଣ୍ଣ ନେଇ ଦେଲେ
ହରଷରେ ଶାଏନ୍ତା ସ୍ୱାମୀର ସଙ୍ଗେ ଚଳେ ।
ତିନିଦିନେ କଉଶିକ ନଦୀ ତୀରେ ହୋଇ
ମଢ଼ିଆରେ ପ୍ରବେଶ ହୋଇଲେକ ଯାଇ ।
ବିଭାଣ୍ଡକ ପିତା ଆଗେ ପ୍ରବେଶ ହୋଇଲେ
ଯାନରୁ ଉତୁରି ଯେ ନମସ୍କାର ହେଲେ ।
ଶାଏନ୍ତା ହାନ୍ଦୋଳାରୁ ଉତୁରିଲେ ପୁଣ
ଶ୍ୱଶୁରଙ୍କ ଚରଣେ ଓଳଗି ହେଲେ ଜାଣ ।
ନିଜପୁରେ ପ୍ରବେଶ ହୋଇଲେ ପୁତ୍ରବଧୂ
ଧନରତ୍ନ ସମ୍ଭାଦି ରଖିଲେ ମୁନି ସିନ୍ଧୁ ।
ସେଠାରୁ ଦଶରଥ ଜନକଙ୍କୁ କହି
କୁଶଧ୍ୱଜକୁ ଡକାଇ କହିଲେକ ତହିଁ ।
ବୋଇଲେ ମୋର କୁଳ ଉଦ୍ଧାର ଏବେ କଲ
ମେଲାଣି ଦେଲେ ଆମ୍ଭେ ଯିବୁ ନିଜପୁର ।

ଜନକ ବୋଇଲେ ତୁମ୍ଭେ ଅଟ ଯେ ସାଗର
ଗଙ୍ଗାଜଳ ଅଟଇ ମୁହିଁ ଯେ ନଦୀ ଧାର ।
ତୁମ୍ଭର ଯୋଗୁଁ ମୁଁ ଯେ କୃତାର୍ଥ ଲଭିଲି
ଲକ୍ଷ୍ମୀ ନାରାୟଣଙ୍କୁ ମୁଁ ଏ ଜନ୍ମେ ଦେଖିଲି ।
ଏବେ ମୋତେ ଦୟା ତୁମ୍ଭେ କର ଯେ ରାଜନ
ଦୁହିତା ଦେଇ ମୁଁ ଯେ ପଶିଲି ଶରଣ ।
ତପି ମୁନିମାନେ ଯେ ସବୁଦିନରେ ଜାଣ
ତୁମ୍ଭର ବାହୁକୁ ଯେ ଆମ୍ଭର ଆଶା ପୁଣ ।
ଫଳ ମୂଳ ଭୋଜନ ଯେ ଅଟଇ ଆମ୍ଭର
ଧନରତ୍ନ ଦେବାକୁ କ୍ଷମତା ନାହିଁ ମୋର ।
ଦୁହିତାମାନଙ୍କ ଦୋଷ ନ ଘେନିବ ମନେ
କେବଳ ପ୍ରାର୍ଥନା ତୁମ୍ଭେ ଘେନୁଥିବ ଏଣେ ।
ଏମନ୍ତ ବୋଲିଣ ଯେ ଜନକ କୁଶଧ୍ୱଜ ।
ଚଉଦୋଳା ଉପରେ ବିଜୟ କଲେ ବେଗ ।
ନବରୁ ବାହାର ହୋଇ ବେଗେ ଗଲେ
ଦେଖିକରି ଦଶରଥ ହରଷ ହୋଇଲେ ।
ଏମନ୍ତ ଦେଖିକରି ଯେ ଲୋମପାଦ ପୁଣ
ରଥର ଉପରେ ଯେ ବସିଲେ ଯାଇ ଜାଣ ।
ଶତେକ କୁମାର ଯେ ଶତେକ ହସ୍ତୀ ଚଢ଼ି
ଅମରୀ ଉପରେ ଯେ ଯାଇ ବିଜେ କରି ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଭଗବତୀ
ଯେ ଯାହା ବାହନ ଚଢ଼ି ସର୍ବେ ଚଳିଯାନ୍ତି ।
ଦେଖିକରି ଦଶରଥ ରଥ ପରେ ବସି
ସୁମନ୍ତ ହସ୍ତୀ ପରେ ଚଢ଼ିଲେ ତଡତି ।
ସୁଜାଣ ପାତ୍ର ହସ୍ତୀ ଉପରେ ବିଜେ କଲେ
ରାଜା ପରେ ବେନି ଛତି ଟେକିଣ ଧରିଲେ ।
ପୁତ୍ରବଧୂମାନଙ୍କ ପଛରେ ରାୟେ ଚଳି
ଲୋମପାଦ ପଛରେ ଯେ ଅଛନ୍ତି ତାଙ୍କରି ।
ଲୋକ ମହାଗହଳରେ ଯାଇତ ପଥ ନାହିଁ
ମିଥିଳାର ନର ନାରୀ ଅଛନ୍ତି ଗୋଡ଼ାଇ ।
ଜାନକୀର ଯେତେକ ସଖୀ ସଙ୍ଗାତୁଣୀ ଧାଈଦାସୀ
ଶ୍ରୀରାମଚନ୍ଦ୍ର ସୁକଶନ ଚାରି ପାଶେ ମିଶି ।
ଗୋଡ଼ାଇ ଅଛନ୍ତି ସର୍ବେ ସ୍ନେହଭର ହୋଇ
ଶ୍ରୀରାମଚନ୍ଦ୍ର ରୂପ ଦେଖିବାର ପାଇଁ ।
ଯୁବା ଯୁବତୀମାନେ ମଦନ ରସେ ବାଇ
କେ ଶ୍ରୀରାମଚନ୍ଦ୍ର ଦେହ ସ୍ନେହ ଆଉଁସଇ ।

କେହୁ ହସ୍ତ ଧରିଣ ସମର୍ପେ ନେଇ ସୀତା
ଆଜହୁଁ ତୁମ୍ଭେ ହେଲ ଏହାର ପିତା ମାତା ।
କେବଣ ସୁନ୍ଦରୀ କାମଭରେ ହେଲେ ଭୋଳ
ଜାନକୀଙ୍କି କହିଲେ ଶ୍ରୀରାମଙ୍କୁ କରେ କୋଳ ।
ସଖୀ ସଖୀ ବୋଲି ଶ୍ରୀରାମ ମୁଖକେ ଚୁମ୍ବନ୍ତି
ବିଳାସ ମତରେ ଶ୍ରୀରାମ ଜଙ୍ଘରେ ଆଉଁସନ୍ତି ।
ଲଜ୍ୟା ମନୁ ଛାଡ଼ିଲେ ମିଥିଳା ନର ନାରୀ
ଅଧୈର୍ଯ୍ୟ ହୋଇ ଅଙ୍ଗରେ ବସନ କର ହେକାହାରି ।
ଜାନକୀ ଶ୍ରୀରାମ ବେନି ବାହୁଡନ୍ତି ଯାଅ
ସୁକଲ୍ୟାଣ ହୋଇ ନିଜ ନବରରେ ଥାଅ ।
ଆସିବାକୁ ମନ ତ ନୁହଇ କାହାରି
ଝର ଝର ନୟନୁ ହୋଇ ବହେ ବାରି ।
ବିକଳରେ କାହାର ଅରୁଣ ବର୍ଣ୍ଣମୁଖ
ବାହୁଡ଼ି ଆସିବାକୁ କେ ମଣନ୍ତି ବିମୁଖ ।
ସୀତା ସୀତା ବୋଲି କେ ଆଉଁସେ ରାମ ପେଟ
ଯାଉଅଛି ବୋଲି କେ ଦେଖାଏ ନେତ୍ର ନାଟ ।
ନେତ୍ରାନ୍ତେ ହୋଇ ଠାରିଣ କେ ପଛ ହୋଇ ଯାଇ
ଯାଉଁ ଯାଉଁ କେଉଁ ନାରୀ ପଥ ଲେଉଟଇ ।
ମୁରୁଛି ନ ପାରି କେହୁ ହୁଅନ୍ତି ବିକଳ
ଦେଖିଣ କହନ୍ତି ତାଙ୍କୁ ରଘୁବଂଶ ବାଳ ।
କେତେଦୂର ଯାଏ ଏବେ ଅଇଲ ଗୋଡ଼ାଇ ।
କେ ବୋଲେ ଘର ବରେ ଆମ୍ଭର କାର୍ଯ୍ୟ ନାହିଁ
ତୁମ୍ଭର ସଙ୍ଗରେ ଆମ୍ଭେ ଯିବୁ ହେ ରଘୁସାଇଁ ।
ଦାସୀଙ୍କ ପରାୟେ ପାଶେ ଥିବୁ ସେବା କରି
ଏ କରୁଣା ଆମ୍ଭଠାରେ କର ଚାପଧାରୀ ।
ଶ୍ରୀରାମ ଚନ୍ଦ୍ର କହନ୍ତି ଏ ନ ଯୋଗାଏ କିଛି
ବହୁତ ଏଥି ବଡ଼ ପ୍ରପଞ୍ଚ କଥା ଅଛି ।
କୁଳବଧୂ ହୋଇକରି ଘର ଛାଡ଼ି ଆସ
ଇଷ୍ଟ ବନ୍ଧୁ କୁଟୁମ୍ବେ ବୋଲିବେ ଏବେ କିସ ।
ନିଗମ ବଚନ ଯହୁଁ କହିଲେ ଶ୍ରୀରାମ
ଯୁବତୀଙ୍କ ହୃଦୟ ହୋଇଲା ଦମ୍ ଦମ୍ ।
ନିରାଶ ହୋଇଣ ସର୍ବେ ବାହୁଡି ଆସନ୍ତି
ଥୋକେ ଦୂରେ ରହି ପୁଣ ଲେଉଟି ଚାହାନ୍ତି ।
ପ୍ରାଣ ଯିବାବେଳେ ଦେହ ଯେମନ୍ତେ ବିକଳ
ମିଥିଳାର ନର ନାରୀ ତେମନ୍ତ ସକଳ ।

ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଭଗବତୀ
ଆଗରେ ବଶିଷ୍ଠ ବିଶ୍ଵାମିତ୍ର ଯାଉଛନ୍ତି ।
ଆଗରେ ବାଦ୍ୟ ଭେଦୀ ପାଟ ଛତ୍ର ଉଢ଼େ
ଶଙ୍ଖ ମହୁରୀ କାହାଳୀ ଶୁଭେ ନିରନ୍ତରେ ।
ଶଗଡ଼ ବଳଦ ଯେ ଅଛନ୍ତି ପଛରେ
ସୁମନ୍ତ ମନ୍ତ୍ରୀଙ୍କି ଯେ ଦଶରଥ ବୋଲେ ।
ସମସ୍ତେ ଅଇଲଟିକି ବୁଝ ହେ ତଥ୍ୟରେ
ମନରୁ କଳ୍ମଷ ଏବେ ଯାଉ ହେ ସତ୍ୱରେ ।
ଶୁଣିକରି ମନ୍ତ୍ରୀବର କହଇ କରଯୋଡ଼ି
ସକଳ ସୈନ୍ୟବଳ ଗଲେଣି ଆଗେ ଚଳି ।
ଏହା ଶୁଣି ଦଶରଥ ଆନନ୍ଦ ହୋଇଲେ
ମିଥିଳାରୁ ବାହାରି ହରଷେ ଚଳିଗଲେ ।
ବିବିଧ ଛନ୍ଦରେ ଯେ ବାଜେ ବୀର ତୁର
ଆଲମ୍ବ ବିଲମ୍ବ ଯେ ଉଡଇ ଚିରାଳ ।
ପାଟ ଛତ୍ର ଗହଳରେ ନ ଦିଶେ ଗଗନ
ହରିବୋଲ ରାମ ତାଳି ଦିଏ ସର୍ବଜନ ।
କୁସୁମ ବିଞ୍ଚିଣ ଯେ ଚନ୍ଦନ ଛେରା ଦ୍ୟନ୍ତି
ନଗ୍ରରେ ବାଟରେ ବୃଷ୍ଟି କରିଣ ଯାଆନ୍ତି ।
ହସ୍ତୀଙ୍କର ଗରଜନ ଶୁଭେ ଘଣ୍ଟ ଧ୍ୱନି
ଅଶ୍ୱଙ୍କର ହ୍ରେସାରବ ସାଗର ପ୍ରାୟେ ପୁଣି ।
ପଦାତିଙ୍କ ମୁଖ ଗୋଳ ନାଦର ଚହଳ
ରଥଙ୍କର ଘୋଷ ହେ ଅତିହିଁ ଗହଳ ।
ସ୍ତିରୀଙ୍କର ହୁଳହୁଳି ବ୍ରାହ୍ମଣଙ୍କ ବେଦ
ସମସ୍ତଙ୍କ ରାବ ଘୋଷ ଯାତ୍ରାର ସମ୍ଭର୍ବ ।
ଧୂଳି ଉଡ଼ିବାରେ ଯେ ନ ଦିଶେ ଗଗନ ।
ଲୋକର ଗହଳେ ବୁଝି ନୋହେ କଥା ପୁଣ ।
ସତ୍ୟାନନ୍ଦ ମୁନି ଯେ ଜନକ କୁଶଧ୍ୱଜ ।
ଦୁହିତାଙ୍କ ମଉଳାଙ୍କୁ ବୋଇଲେ ଯାଅ ସଙ୍ଗ ।
ଶୁଣିଣ ବେନି ମଉଳା ବେନି ସଜ ହେଲେ
ବାଲ୍ମିକ ସତ୍ୟାନନ୍ଦ ସଙ୍ଗରେ ପୁଣି ଗଲେ ।
ଶ୍ୱେତ ହସ୍ତୀ ଉପରେ ଅମରୀ ବିଜେ କଲେ
ଚାରି ଦୁହିତାଙ୍କ ସଙ୍ଗରେ ଚଳନ୍ତି ଧୀରରେ ।
ଯଉତୁକ ପଦାର୍ଥ ତାଙ୍କର ସଙ୍ଗେ ଗଲା
ହସ୍ତୀ ଘୋଡ଼ା ପଦାତି ବଳ ଚଳନ୍ତି ଯେ ତୋଠା ।
ବରୁଣ ନବରୁ ଯେହ୍ନେ ମହାଲକ୍ଷ୍ମୀ ଚଳି
ନାରାୟଣଙ୍କ ସଙ୍ଗରେ ନନ୍ଦିଘୋଷରେ ଘେରି ।

ତେସନକ ପ୍ରାୟେ ଯେ ଜାନକୀ ରଘୁନାଥ
ଶୂନ୍ୟରେ ଦେବତାଏ ଦେଖିଣ ହରଷିତ ।
ମିଥିଳାର କଟକରୁ ହୋଇଲେ ବାହାର
ଦଶରଥଙ୍କ ଜନକ କହନ୍ତି ଯୋଡ଼ିକର ।
ଫେରିଣ ଜନକ ଋଷି ଲେଉଟି ଅଇଲେ
ଆପଣାର ମନ୍ଦିରରେ ପ୍ରବେଶ ହୋଇଲେ ।
କୁଶଧ୍ୱଜ ଜଣାଏ ଯେ ଜନକ ଛାମୁର
ମୋର ପୁରେ ଆଜ ଯେ ରହିବେ ସକଳ ।
ଜନକ ବୋଇଲେ ତୁମ୍ଭେ ରାଜ୍ୟକୁ ବେଗେ ଚଳ
ଅଯୋଧାର ରାଜନଙ୍କୁ ଚରଚା ଯାଇକର ।
ଶୁଣିକରି କୁଶଧ୍ୱଜ ଗହଣ ସୈନ୍ୟ ଘେନି
ଅତି ଶୀଘ୍ରେ ରାଜ୍ୟକୁ ଚଳିଲା ଚାର ପୁଣି ।
ଆପଣା ନବରେ ହେଲେ ପରବେଶ
ପାତ୍ର ମନ୍ତ୍ରୀଙ୍କି ରାଜା ଡକାଇଲେ ପାଶ ।
ସକଳ ପଦାର୍ଥ ଯେ ଲୋଡ଼ାଇ ଅଣାଇଲା
ଅନେକ ଦ୍ରବ୍ୟ ଅଣାଇ ନବରେ ଠୁଳ କଲା ।
ବୋଇଲା ଝିଅ ଜୁଆଇଁ ଆସନ୍ତି ସମ୍ଭର୍ବରେ
ସମସ୍ତଙ୍କୁ ଚରଚା କରାଇବା ଏଠାରେ ।
ଏମନ୍ତ କହି ରାଜା ଜାଗ୍ରତରେ ରହି
ଏଥୁ ଅନନ୍ତରେ ଗୋ ପାର୍ବତୀ ଶୁଣ ତୁହି ।
ସେଦିନ ଦଶରଥ ଜନକ ସୀମା ଡେଇଁ
ଅକାଦ ନବରେ ରହିଲେ ସର୍ବେ ଯାଇ ।
ବଶିଷ୍ଠ ସୁରଭିକି ସୁମରଣା କଲେ
ସକଳ ପଦାର୍ଥମାନ ସୁରଭୀ ଆଣିଦେଲେ ।
ଯେ ଯାହାର ଇଚ୍ଛାରେ ଯେ କଲେକ ଭୋଜନ
ଏଥୁ ଅନନ୍ତରେ ତୁମ୍ଭେ ଭଗବତୀ ଶୁଣ ।
ଆରଦିନ ବୈଶାଳୀ ପୁରରେ ଯାଇ ରହି
ଦେଖିଣ କୁଶଧ୍ୱଜ ଆନନ୍ଦ ମନ ହୋଇ ।
ଚାରି ଜ୍ୱାଇଁ ଚାରିଝିଅ ନବରକୁ ନେଇ
ସମସ୍ତ ବନ୍ଧୁମାନଙ୍କୁ ବସା ସଞ୍ଜା ଦେଇ ।
ଦେଖିଣ ଶାଶୁମାନେ ହୋଇଲେ ଆନନ୍ଦ
ମୁଖ ବିକାଶଇ ଯେହ୍ନେ ପୂର୍ଣ୍ଣିମାର ଚାନ୍ଦ ।
ଝିଅ ଜ୍ୱାଇଁକିଅନେକ ପ୍ରକାରେଭୋଜନ କରାଇଲେ
ରାଜା ସୈନ୍ୟମାନଙ୍କୁ ସଞ୍ଜାନେଇ ଦେଲେ ।
ହାଣ୍ଡିକାଠତଣ୍ଡୁଳ ଅନେକ ପଦାର୍ଥ ନେଇ ଦେଲେ
ରାନ୍ଧିକରି ଭୋଜନେ ସମସ୍ତେ ସୁସ୍ଥେ ହେଲେ ।

ରଜନୀ ପ୍ରଭାତରୁ ସେଠାରୁ ଚଳିଗଲେ
ଶୋଣିତ ନଦୀକୂଳେ ଯାଇଣ ରହିଲେ ।
ରଜନୀ ପ୍ରଭାତରୁ ସେଠାରୁ ଚଳିଯାଇ
ସିଦ୍ଧ ବନରେ ରହିଲେ ସେଦିନ ପୁଣ ଯାଇ ।
ଦେଖିଣ ବାଲମିକ ହସ୍ତୀରୁ ଉତୁରିଲେ
ନିଜ ଆଶ୍ରମେ ଯାଇ ପ୍ରବେଶ ହୋଇଲେ ।
ସୁରଭୀକି କହିଲେ ଯାଇଣ ତତ୍‌କାଳ
ଝିଅ ଜୁଆଇଁ ଅଇଲେ ଦିଅନ୍ତୁ ସମ୍ଭାର ।
ଶୁଣିକରି ସୁରଭୀ ଯେ ସକଳ ଦ୍ରବ୍ୟ କଲେ
ସମସ୍ତେ ଭୁଞ୍ଜି ସେଥି ହରଷ ମନ ହେଲେ ।
ରଜନୀ ପ୍ରଭାତରୁ ସେଠାରୁ ଚଳିଗଲେ
ବିଶ୍ୱାମିତ୍ର ଆଶ୍ରମରେ ଯାଇଣ ମିଳିଲେ ।
ଦେଖିଣ ବିଶ୍ୱାମିତ୍ର ସୁରଭୀ ସୁମରିଲେ
ସକଳ ସୈନ୍ୟଙ୍କୁ ଯେ ଭୋଜନ ସେଥି ଦେଲେ ।
ସକଳ ଗହଳ ପୁତ୍ରବଧୂ ସମସ୍ତଙ୍କ ତୁଲେ
ଗଉତମ ଋଷିଙ୍କି ଯାଇ ଦର୍ଶନ କଲେ ।
ଅହଲ୍ୟାଙ୍କ ପାଶରେ ମିଳିଲେ ସକଳ
ଦେଖିଣ ଅହଲ୍ୟା ମନରେ ହୋଇଲେ କୁଶଳ ।
ଶ୍ରୀରାମ ଜାନକୀଙ୍କି କୋଳରେ ବସାଇଲେ
ଆଜ ମୁଁ ନିସ୍ତରିଲି ବୋଲିଣ ବୋଇଲେ ।
ରଜନୀର ଶେଷରୁ ସେଠାରୁ ଚଳିଗଲେ
ଅଗମ୍ୟ ବନସ୍ତରେ ପ୍ରବେଶ ଯାଇ ହେଲେ ।
ସେଦିନ ଦଶରଥ ଦେଖିଲେ ବିପରୀତ
ପର୍ବତର ଉପରେ ପଡିଲା ନିର୍ଘାତ ।
ବାମ ନୟନ ରାଜାର ସ୍ଫୁରଇ ଘନ ଘନ
ଗୃଧ୍ର ପକ୍ଷୀମାନେ ଆସି ଉଡନ୍ତି ଗଗନ ।
ସୈନ୍ୟଗଣଙ୍କ ଉପରେ ବସନ୍ତି ଯାଇ କାଳ
ଉପଦ୍ରବ ପଡିବ ବୋଲି ବୋଇଲେ ସର୍ବଲୋକ ।
ଶୃଗାଳ ଯୁଥ ଆସି ଆଗରେ ଓଗାଳି
କୁହୁଡ଼ି ପରାୟକ ମେଘରୁ ରହେ ଝରି ।
ଦିବସରେ ତାରାମାନେ ଗଗନରେ ଉଦେ
ଧୂମକେତୁ ଉଦେ ହେଲେ ଆକାଶର ମାର୍ଗେ ।
କୁହୁଡ଼ିର ପ୍ରତାପରେ ନ ଦିଶେ ଦଶଦିଶ
ପ୍ରଳୟର କାଳପ୍ରାୟେ ବହିଲା ବତାସ ।
ଦଶରଥ ପଚାରିଲେ ଏକି ଉତ୍‌ପାତ କଥା
ବଶିଷ୍ଠଙ୍କୁ ଯାଇ ପଚାରିଲେ ମହାରଥା ।

ଆଜ ତ ବିପରୀତ ଶକୁନି ଦେଖାଯାଇ
ମୋହର ମନରେ ବଡ଼ ଭୟ ଉପୁଜଇ ।
ଅବଶ୍ୟ ପ୍ରମାଦ ଏ ପଡ଼ିବ ମୋତେ ଆଜ
ପ୍ରମାଦ ଉପୁଜିବାର ଦିଶୁଛି ଅଶୁଭ ।
ବିଶ୍ୱାମିତ୍ର ବୋଇଲେ ପ୍ରମାଦ ନାହିଁ କିଛି
ଏକା କଥାଏକ ମୁଁ ମନରେ ଭାବୁଛି ।
ମଉଳା ମୋହର ଯେ ଅଟଇ ପର୍ଶୁରାମ
ଗୋଲୋଖ ନାରାୟଣ କ୍ଷତ୍ରିଙ୍କ ଉତ୍ତମ ।
ଦେବତା ଅସୁର ଯେ ନର ନାରାୟଣ
ବ୍ରହ୍ମା ଶିବ କେହି ସରି ନୁହନ୍ତି ଯେ ପୁଣ ।
ତାହାଙ୍କୁ ଜିଣନ୍ତା ଯେ ସପତ ପୁରେ ନାହିଁ
ଦୁଷ୍ଟଙ୍କୁ ମାରି ସପତପୁର ସାଧ କଲା ସେହି ।
ଏହି ଘୋର ବିପିନରେ ଅଟେ ତାଙ୍କ ସ୍ଥାନ
ଏ ବନରେ ତପ ଯେ କରଇ ପର୍ଶୁରାମ ।
ସେ ପୁଣ ଭେଟ ଆଜ ପଡିଲେ ବାଟରେ
ପ୍ରମାଦ ଉପୁଜି ଏଡ଼େକ ଶୁଭ କାଳେ ।
ଶୁଣିକରି ଶ୍ରୀରାମ ଯେ ବୋଇଲେ ଉତ୍ତର
ଭେଟ ପଡିଲେ କ୍ଷତ୍ରିପଣ ଜାଣିବା ତାହାର ।
ସ୍ୱର୍ଗର ଦେବତାଏ ତାଙ୍କୁ ସାହା ହେଲେ
ନିଶ୍ଚୟ ମୁଁ କ୍ଷତ୍ରିପଣ ସାରିଦେବି ଭଲେ ।
ତୁମ୍ଭେ କିଛି ଭୟ ଏବେ ନ କର ସର୍ବଜନ
ଏତେ ବୋଲି ଶ୍ରୀରାମ କୋଦଣ୍ଡ ଧରେ ପୁଣ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ସ୍ୱର୍ଗର ଦେବତାଏ ବିଚାର କଲେ ବସି ।
ବୋଇଲେ ପର୍ଶୁରାମ ଆମ୍ଭର ଅଟେ କାଳ
ବଳପଣେ ତାହାଙ୍କୁ ଡରିଲେ ସକଳ ।
ଆଜ ଯେବେ ଶ୍ରୀରାମ ଆଗରେ ଭେଟକରି
ତେବେ ସେ ନିର୍ବଳ ହୋଇବ ପର୍ଶୁଧାରୀ ।
ଏମନ୍ତ ବିଚାରି ସେ ନାରଦଙ୍କୁ କହି
ମର୍ତ୍ତ୍ୟପୁରକୁ ତୁମ୍ଭେ ଯାଅ ବେଗ ହୋଇ ।
ପର୍ଶୁରାମଙ୍କୁ କହେ ପ୍ରତାପରେ ବଡ଼ ପଣ
ଶିବଧନୁ ଭାଙ୍ଗି ସୀତା ବିଭାହେଲେ ଜାଣ ।
ଦଶରଥ ନନ୍ଦନ ନାମ ଯେ ରଘୁନାଥ
କନ୍ୟା ଘେନି ଯାଉଛି ତା ରାଜ୍ୟକୁ ସେହିପଥ ।
ପାରିଲେ ଓଗାଳି ଜିଣିଯାଅ ତାକୁ
ନୋହିଲେ ଆଜଠାରୁ ନ ମାନୁ ତୁମ୍ଭଙ୍କୁ ।

ଶୁଣିକରି ନାରଦ ବେଗେ ଚଳିଗଲେ
ପର୍ଶୁରାମ ଆଗରେ ଯାଇଣ ମିଳିଲେ ।
ଦେଖିଣ ପର୍ଶୁରାମ ତପଶାନ୍ତି କଲା
ନାରଦଙ୍କ ଚରଣେ ପ୍ରଣିପାତ ହେଲା ।
ନାରଦ ବୋଇଲେ ବାବୁ ତୋତେ ଯେ ବଳବନ୍ତ
ଦଶରଥ ନନ୍ଦନ ଶ୍ରୀରାମ ନାମ ସେ ତ ।
ବିଶ୍ୱାମିତ୍ର ଯାଗରଖି ଅହଲ୍ୟା ନିସ୍ତରିଲା
ଶିବଧନୁ ଭାଙ୍ଗିଣ ସୀତାକୁ ବିଭା ହେଲା ।
ଏବେ ଶ୍ରୀରାମ ସୀତା ଘେନିଣ ନିଜ ରାଜ୍ୟେ ଚଳି
ବୀର ବାଜା ବାଜନ୍ତେ କମ୍ପଇ ବସୁନ୍ଧରୀ ।
ଆଜ ତୋ ମଢ଼ିଆ ବାଟେ କରିବ ଗମନ
ତେଣୁ ତୋତେ କହି ଅଇଲୁ ଆମ୍ଭେ ପୁଣ ।
ଏତେ କହି ନାରଦ ଶୂନ୍ୟରେ ଚଳିଗଲେ
ଅଧା ସ୍ୱର୍ଗେ ଯାଇ କଳି ଧୋକଡି ଝାଡ଼ିଲେ ।
ଲାଗୁ ଲାଗୁ ବୋଲି କଲେ ଧୂଳି ବୃଷ୍ଟି
ତେଣୁ ପର୍ଶୁରାମ ଯେ ଗଳଗାଜି ଉଠି ।
କୁଠାର ଗଦା କୋଦଣ୍ଡ ଧରିଣ ହସ୍ତର
କ୍ରୋଧରେ ତନୁ ତାର କମ୍ପଇ ଥରହର ।
ମେରୁଗିରି ପ୍ରାୟ ଶରୀର ବଢ଼େ ତାର
ଦେଖିଣ ଦେବତାଏ ହୋଇଲେ ଭୟଙ୍କର ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଦଶରଥ ଆଗେ କହିଲେ ବିଶ୍ୱାମିତ୍ର ଫେଡ଼କରି ।
ଶୁଣିଣ ଦଶରଥ ମନରେ କଲେ ଭୟେ
ଶ୍ରୀରାମଙ୍କୁ ଶୁଭ ପ୍ରାପତ ଆସି ହୁଏ ।
ଡାହାଣ ନୟନ ଶ୍ରୀଛାମୁର ସ୍ଫୁରେ ଘନ ଘନ
ଶଙ୍ଖଚିଲ ଆଗେ ଉଡ଼େ ଅସାର ଘେନି ପୁଣ ।
ବକପକ୍ଷୀ ଶ୍ୟାମଳଙ୍କୁ ଅଛଇ ମାଡ଼ିବସି
ଭଦଳଆ ଚଢ଼ାଇ ଆଗରେ ଡାକଦ୍ୟନ୍ତି ।
ଶୃଗାଳ ଡାହାଣ ବାମକୁ ଯାଏ ପୁଣ
ଶ୍ରୀରାମର ରଙ୍ଗ ବର୍ଣ୍ଣ ଦିଶଇ ନେତ୍ର ପୁଣ ।
ଶୁଭ ଯୋଗ ଦେଖିଣ ଶ୍ରୀରାମ ଆନନ୍ଦ
ବୋଇଲେ କ୍ଷତ୍ରୀ ହୋଇ କି କଲେ ଆଜ ଦ୍ୱନ୍ଦ୍ୱ ।
ଏହି ସମୟରେ ପବନ କର୍ଣ୍ଣେ ବହି
ବହୁ କ୍ରୋଧ ମନରେ ଶ୍ରୀରାମ ଚନ୍ଦ୍ର ତୁହି ।
ପର୍ଶୁରାମ ଅଟନ୍ତି ଯେ ଗୋଲୋକ ନାରାୟଣ
ଏକ ଅଙ୍ଗ ଗୋଟି ଯେ ନୁହଇ ଭିନ୍ନ ଭିନ୍ନ ।

ଏକ ଅଙ୍ଗ ଗୋଟି ଅଟ ଯେ ଏକାବେଳେ ତୁମ୍ଭେ
ଅବତାର ଭିନ୍ନ ଭିନ୍ନ ନ ଚିହ୍ନକି ଏବେ ।
ଷଷ୍ଠ ଅବତାରରେ ପର୍ଶୁରାମ ଜାତ
ସପ୍ତମ ଅବତାରେ ତୁମ୍ଭେ ହେ ସମ୍ଭୂତ ।
ସାତ ପୁରରେ ଯେ ଯେତେ ଦୁଷ୍ଟ ଥିଲେ
ସମସ୍ତେ ପର୍ଶୁରାମ ହସ୍ତରେ ସାଧ ହେଲେ ।
ପର୍ଶୁରାମ ଦର୍ପ ଯେ ନ ସହି ଦେବଗଣ
ଦେବେ ତୁମ୍ଭଙ୍କୁ କହି କରାଇଲେ ଜନ୍ମ ।
ସେ କଥାକୁ ଜାଣିଣ ଯେ ଗଲେକ ଶ୍ରୀକୃଷ୍ଣ
ପର୍ଶୁରାମକୁ ବୋଇଲେ ଅସୁର ନ କର ନାଶ
ସ୍ୱୟଂ ବାସୁଦେବ ମାରିବେ ଯେ ତହିଁ
ବେନିପୁର ଅସୁର ନ ମାର ଏବେ ତୁହି ।
ଶୁଣିଣ ପର୍ଶୁରାମ ଶାନ୍ତିକି ଭଜିଲା
ବେନିପୁରୁ ଅସୁର କେବେ ହେଁ ନ ମାରିଲା ।
ଏବେ ଆଜ ତୁମ୍ଭ ସଙ୍ଗରେ ହେବ ଭେଟ
ବଇଷ୍ଣବା ଧନୁ ତୁମ୍ଭଙ୍କୁ ଦେବ ରେଣୁକା ସୁତ ।
ଶ୍ରୀରାମ ବିଚାରିଲେ ଅନେକ ଭରା ହେଲା
ଦେବତାଙ୍କ ଯୋଗୁଁ ଦୁଃଖ ସହିବା ଆମ୍ଭେ ପରା ।
ଏମନ୍ତ କହି ପବନ ଶ୍ରୀରାମ ପାଶୁ ଗଲା
ଏ ସମୟେ ଜାନକୀରେ ଶୁଭ ପ୍ରାପ୍ତି ହେଲା ।
ଶ୍ୱେତ ନେଉଳ ତାଙ୍କ ରଥର ଆଗେ ଦେଖା
ଉଲ୍ଲସଇ ଅଙ୍ଗ ଯେ ଶୀତଳ ଲାଗେ ମଥା ।
ଜାନକୀବିଚାରିଲେ ହୋଇବ ମୋତେ ଶୁଭ
ଏମନ୍ତ ବିଚାର କରି ଗମନ୍ତି ବେଗ ବେଗ ।
ବୀର ବାଜା ବଜାଇ ଅତି ଟାଣେ ପୁଣ
ବାଜାର ଘାତେ କମ୍ପୁଅଛି ତ୍ରିଭୁବନ ପୁଣ ।
ବୀରବାଦ୍ୟ ଶୁଣିଣ ଆସଇ ପର୍ଶୁରାମ
ଘନ ଘନ ଗର୍ଜନ କରଇ କ୍ଷଣ କ୍ଷଣ ।
ମଢ଼ିଆ ଭିତରୁ ବେଗେ ବାହାର ହୋଇ ଆସି ।
କଳାମେଘ ବିଦାରକ ପ୍ରକାଶ ହୁଏ ଶଶି ।
ଶିରରେ ନାଗ ଫେଣି ତ୍ରିବେଣୀ ବାନ୍ଧି ଜଟା
ଲଲାଟରେ ତିଳକ ପିନ୍ଧିଛି କାଛଟା ।
ଶ୍ରବଣରେ ତମ୍ବାର କୁଣ୍ଡଳ ଝଟକେ
କଣ୍ଠରେ ତୁଳସୀ ମାଳ ଯେ ବିଶେଷେ ।
ପଦ୍ମ ପୁଷ୍କର ଯେ ସ୍ଫଟିକର ମାଳା
ପୁଇଁ ଚାନ୍ଦୁଆ ମାଳ ମିଶିଣ ସଙ୍ଗେ ତୋରା ।

କୃଷ୍ଣାଜିନ ଛାଲ ଯେ କଟିରେ ଓଢ଼ିଆଣି
କଟିପରେ ଭିଡ଼ିଣ ଅଛଇ ତାହା ଜାଣି ।
ପଇତା ଉତୁରି କନ୍ଧେ କରେ କୁଶ ବାନ୍ଧି
କନ୍ଧପରେ ପଇତା ଜ୍ୟୋତି ଯେ ଜଘି ଉଠି ।
କସ୍ତୁରୀ ରେଖା ପ୍ରାୟେ ସୁନ୍ଦର ଦିଶେ ଦାଢ଼ି
ଫରହର ବେନି ନିଶ ଅଛଇ ଉହାଡ଼ି ।
ପିଠିରେ ଉହାଡିଣ ଅଛଇ ବ୍ୟାଘ୍ରଛାଲ
କୋପଭରେ ତିନି ଖଣ୍ଡ ଧରିଅଛି ଭାଲ ।
ସ୍ୱାହାଶ୍ରୁବ ପ୍ରୋକ୍ଷଣୀ ଆବର ବେଦ ପୋଥି
ବାମ କାଖ ମୂଳରେ ଅଧାରି ଗୋଟି ସ୍ଥିତି ।
ବେଦ କରାଣ୍ଡି ଆବର ଯଦ୍ଧ ଗାବ ବଚ୍ଛା
ଝିମଣ୍ଡ ଖଣନ୍ତି କମଣ୍ଡଳ ଯେ ବ୍ରହ୍ମଚର୍ଯ୍ୟ ଦୀକ୍ଷା ।
ବାମକରେ ଶରାସନ ଡାହାଣେ କୁଠାର
ବେନି କନ୍ଧେ ସୁର ଅକ୍ଷୟ ତ୍ରୋଣ ଭାର ।
ବଇଷ୍ଣବା ଧନୁରେ କୋଦଣ୍ଡ ଗୁଣ ଦେଇ
ପଇତା ଛଳେ କାନ୍ଧରେ ଅଛଇ ପକାଇ ।
ନୟନ ତେଜ ତାର ମିଥୁନ ବିଜୁଳି
ଯେଣିକି ଅନାଇବ ଅନଳ ଉଠେ ଜଳି ।
ନିଶ୍ୱାସ ବହଇ ଯେହ୍ନେ ବଡ଼ବା- ପବନ
ରୋମ ଟାଙ୍କୁରାଇ କ୍ରୋଧଭରେ ପୁଣ ।
ସମୁଦ୍ର କୂଳରେ ଯେହ୍ନେ ଅଗସ୍ତି ଆସି ମିଳି
ତେସନ ପ୍ରାୟେକ ପର୍ଶୁରାମ ତେଜ ବଳି ।
ଏମନ୍ତ ବେଶ ହୋଇ ବାହାର ହେଲେ ପୁଣ
ଚାଲିବାରେ କମ୍ପଇ ଧରଣୀ ଦେବୀ ଜାଣ ।
ଆଗରେ କାଳସର୍ପ ଦେଖିଲେ ପର୍ଶୁରାମ
ବାମ ଚକ୍ଷୁ ଡେଇଁଲା ଅଶୁଭ ଦିଶେ ପୁଣ ।
ଦେଖିଣ ପର୍ଶୁରାମ ଯେ ମନରେ ବିଚାରି
ଆଜ ଅଶୁଭ ମୋତେ ଦିଶୁଛି ହେଲାପରି ।
ଏତେ ବିଚାରି ମନରେ ବେଗେ ଚଳିଗଲା
ସୈନ୍ୟ ବଳଙ୍କ ଆଗରେ ଯାଇଣ ମିଳିଲା ।
ପ୍ରଳୟ ଅନଳ ପ୍ରାୟେକ ତେଜ ଦିଶ
ବୀରଙ୍କର ଦେବତାକି ମେଦିନୀକି ଆସି ।
ସୁଚିତେ ସୈନ୍ୟ ରହିଣ କହିଲେ ନୃପବର
ହାଟରେ ବାଟ ଆସି ଓଗାଳେ ପର୍ଶୁବୀର ।
ଦ୍ୱିତୀ ଯମର ପ୍ରାୟେ ଦିଶଇ ତାର ମୂର୍ତ୍ତି
କୋପଭର ହୋଇଣ ଉଭା ଭୃଗୁପତି ।

ସତ୍ୟାନନ୍ଦ ବୋଇଲେ ଶୁଣ ଅଯୋଧ୍ୟା ରାଜନ
ନିଶ୍ଚୟ ଦ୍ୱନ୍ଦ୍ୱ ଆଜ କରିବ ରେଣୁକା ନନ୍ଦନ ।
ଶରୀର ଦଶରଥର ଉଡିଲା ସାହସ
ଶରୀର କମ୍ପିଲା ବହେ ଖର ନିଶ୍ୱାସ ।
ବିଧାତା ସୁମରିଣ କପୋଳେ କର ମାରି
ବଶିଷ୍ଠଙ୍କର ମୁଖକୁ ଚାହିଁଣ ଶୋକ କରି ।
ଭୋ ମୁନି ବିପରୀତ ଶୁଣ ଏବେ ବାଣୀ
ଆଗରେ ସୈନ୍ୟ ମୋର ଓଗାଳେ ପର୍ଶୁମଣି ।
କିମ୍ପାଇ ସେ ଓଗାଳେ ଅକାରଣେ ଏଥ
ଏଥକୁ ଉପାୟ ମୋତେ କହ ବ୍ରହ୍ମାସୁତ ।
ରୋଷଭରେ ପର୍ଶୁ ଅଛଇ ପୁଣି ଆସି
ମୋହର ପୁତ୍ରକୁ ସେ ନ ପୁଣ ଯାଏ ନାଶି ।
କି ବୁଦ୍ଧି କରିବି ମୁଁ କହ ହେ ବିଚାରି
ଶୁଣିକରି ବୋଇଲେ ବଶିଷ୍ଠ ତପଚାରୀ ।
ବିଶ୍ୱାମିତ୍ର ବୋଇଲେ ତରସ୍ତ କିମ୍ପା ହୁଅ
ବୁଝି ଚିହ୍ନି କଥା ବିଚାରିବା ଯେ ରହ ।
ଚାଲ ଆମ୍ଭେ ପ୍ରବୋଧ କରିବା ତାଙ୍କୁ ପୁଣି
ପର୍ଶୁରାମ ଆସିଥିବ ବୀର ବାଜା ଶୁଣି ।
ଯେବଣ ଅରିଷ୍ଟି ବାଟେ ଦେଖିଲେ ମହାରାଜା
ପ୍ରତ୍ୟକ୍ଷରେ ଆସିଣ ଫଳିଲା ନୋହିଲା ହେ ତେଜ୍ୟା ।
ମୁଁ ବୋଇଲି ପର୍ଶୁରାମ ଏଥେ ଥାଇ
ତାହା ଆଗେ ଭେଟ ଯେବେ ଆଜ ପଡିଲାଇଁ ।
ନିଶ୍ଚୟେ ଉତ୍ପାତ ଯେ କରିବ ପର୍ଶୁଧର
ଏ କଥାକୁ ମହାରାଜା ତୋର କି ବିଚାର ।
ସେ କଥା ଆନ ଯେ ନୋହିଲାକ ଆନ
ଚାଲ ଚାଲ ପ୍ରବୋଧିବା ରେଣୁକା ନନ୍ଦନ ।
ଯେବେ ଆମ୍ଭ ବଚନ ନ କରିବ ତପୋବନ୍ତ
ତେବେ ତାର ଗାରିମା ଯେ ହୋଇବାକ ହତ ।
ବିଶ୍ୱାମିତ୍ର କହିଲେ ରାଜ ଦମ୍ଭ ହେଲେ
ରଥର ଉପରୁ ସେ ରାଜନ ଓହ୍ଲାଇଲେ ।
ବଶିଷ୍ଠ ବୋଇଲେ ତୁମ୍ଭେ ଦଶରଥ ଶୁଣ
ଯାଉଁକି ଅବତାର ଆଜ ଭେଟ ହେବେ ଜାଣ ।
ଶିବଧନୁ ଭାଙ୍ଗିଲା ଦିନୁଁ ମୁହିଁ ସେ ଜାଣଇଁ
ପର୍ଶୁରାମ ଅବତାର ପ୍ରବଳ ଭାଙ୍ଗି ଦେଇ ।
ଏବେତ ପର୍ଶୁରାମ ଆଜ ଲଜ୍ଜା ପାଇ
ଶ୍ରୀରାମଙ୍କୁ ପ୍ରସନ୍ନ ହୋଇଣ ଯିବ ସେହି ।

ଶ୍ରୀରାମେ ଡାକ ଦେଲେ ଶୁଣ ହେ ରାଜନ
ପର୍ଶୁରାମଙ୍କୁ କିମ୍ପା ଡରୁଛ ତୁମ୍ଭେ ପୁଣ ।
କେତେ ବଳ ଅଛି ଯେ ଋଷିର ଦେହ ଦେଖି
ଜାଣିବା ଆଜ ଯେ ସେ କେଡ଼େ ପ୍ରତାପୀ ।
ବିଶ୍ୱାମିତ୍ର ବୋଇଲେ ଶୁଣ ହେ ରଘୁନାଥ
ପର୍ଶୁରାମ ଅଟନ୍ତି ଯେ ଗୋଲକର ନାଥ ।
ଅଧର୍ମ ନ କରି ଧର୍ମବନ୍ତରେ ଥାଇ
ଦୁଷ୍ଟପଣ କଲେ ସେ ନିଶ୍ଚୟ ମରଇ ।
ଶାନ୍ତଶୀଳ ହୋଇଣ ଯେ କହିବ ତାହାକୁ
ନ ବୁଝିଲେ ଦଣ୍ଡ ଯେ ଦେବେ ହେ ତାହାକୁ ।
ଶୁଣିକରି ଶ୍ରୀରାମ ଯେ ଶାନ୍ତଶୀଳ ହେଲେ
ପବନ କହିଲା କଥା ସତ ବିଚାରିଲେ ।
ବିଶ୍ୱାମିତ୍ରଙ୍କଠାରୁ ଶୁଣି ଦଶରଥଙ୍କ ଦମ୍ଭ
ବିଚାରିଲେ ପର୍ଶୁରାମ କରିବ କିସ ଦ୍ୱନ୍ଦ୍ୱ ।
ଯୋଗବଳେ ଋଷିମାନେ ଜାଣନ୍ତି ସକଳ
କେବଳ ମନ ମୋର ହେଉଛି ବିକଳ ।
ଗହ ଗହ ଶବଦ ଶୁଭଇ ଘୋର ଧ୍ୱନି
ପାଞ୍ଚ ଯୁଣ ପରିଯନ୍ତେ ପୁରେ ସେ ସଇନି ।
କେ ବୋଲଇ ପର୍ଶୁରାମ ଓଗାଳି ଅଛି ବାଟ
କେ ବୋଲଇ ଶ୍ରୀରାମଙ୍କୁ ନୁହଇ ଗରିଷ୍ଠ ।
କେ ବୋଲଇ ନୋହିଲେ ଯେ ହେବ ପରାଭବ
ଏମନ୍ତ କୁହା କୁହି ହୁଅନ୍ତି ତହିଁ ସର୍ବ ।
କଥା ହୁଅନ୍ତେଣ ମିଳିଲେ ପର୍ଶୁଧାରୀ
କାଳ ଦଣ୍ଡ ପ୍ରାୟେକ କୁଠାର ଅଛି ଧରି ।
କ୍ରୋଧରେ ପର୍ଶୁଧର କାମୋଡେ ଅଧର
ରାଗରେ ଦେହ ତାର କମ୍ପେ ଥର ହର ।
ଦେଖିଣ ଦଶରଥ ଆଗରେ ଉଭା ହେଲେ
ଭୃଗୁପତି ଚରଣେ ନମସ୍କାର କଲେ ।
ଶତେବାର ପ୍ରଣମିତ କଲେ ପାଦ ପଡ଼ି
କାର୍ପଣ୍ୟ ହୋଇ ଯେ ଆଗରେ କର ଯୋଡ଼ି ।
ଭୋ ମୁନି ହେ ଆଜ ଦିଶିଲା ମୋର ପୁଣ୍ୟ
କେଉଁ ଭାଗ୍ୟେ ମିଳିଲେ ଆସି ରେଣୁକା ନନ୍ଦନ ।
ଭୃଗୁକୁଳେ ଜନମ ତପିଙ୍କ କୁଳେ ଶ୍ରେଷ୍ଠ
କ୍ଷତ୍ରୀ ପଣରେ ଉତ୍ତମ ମନ୍ତ୍ରୀ ପଣରେ ଗରିଷ୍ଠ ।
ପ୍ରାକର୍ମରେ ବଳବନ୍ତ ନାମ ଗୋଟି ସାର
ବଳରେ ଅଜୟ ଯେ କୋପରେ ଅସମ୍ଭାଳ ।

ଦୟାଧର୍ମ ବୁଦ୍ଧିରେ ଯୁଦ୍ଧରେ ମେଦିନୀ
ଜୟ ଜୟ ପର୍ଶୁରାମ ମହିମା ତୋର ଧନି ।
ଯେତେ ପାପ ମୋହର ଅଙ୍ଗରେ ପୁଣ ଥିଲା
ତୁମ୍ଭର ଦରଶନେ ସକଳ କ୍ଷୟ ଗଲା ।
ତପବଳେ ବେଦବର ଯୋଗରେ ଈଶ୍ୱର
କ୍ଷତ୍ରୀ ପଣରେ ତୁମ୍ଭେ ଅଟ ଚକ୍ରଧର ।
ମୋହର ଉତ୍ସବ ତ ପୁତ୍ରଙ୍କର ବିଭା
ଦୟାକରି ଅଇଲ କି ତୁମ୍ଭେ ଦେଖିଯିବା ।
ସତ୍ୟ କହିଲୁ ବୋଲି କହିଲେ ପର୍ଶୁଧର
ତେଣୁକରି ତୋହର ମୁଁ କାଟି ନାହିଁ ଶିର ।
ଅପୁତ୍ରିକ ବୋଲିଣ ନ ଗଲି ତୋର ପାଶ
ତେଣୁକରି ବୀରବାଜା ବଜାଇ ମୋର ପାଶ ।
ଏ ମହିମଣ୍ଡଳେ ତୁ ଅଟୁ ମହାରାଜା
ଆମ୍ଭ ଉପରେ ଆସି ବଜାଇ ବୀର ବାଜା ।
ତୋ ସମାନେ କ୍ଷତ୍ରୀ ଏଥି ନାହିଁ କେହିଆନ
ଅତି ବଡ଼ ପ୍ରତାପୀତ ଅଯୋଧ୍ୟା ରାଜନ ।
ଯେତେ ରାଜାମାନେ ଛନ୍ତି ମେଦିନୀ ଭିତର
ସମସ୍ତଙ୍କ ଉପରେ ଗରିଷ୍ଠ ନୃପବର ।
ବୀରତୂର ବଜାଇ ତୁ ବୁଲୁଅଛି ମହି
ରବି ତଳେ ତୋତେ କେହି ସରିସମ ନାହିଁ ।
ଆଜ ସିନା ପରୀକ୍ଷା କରିବି ତୋର ବଳ
ପର୍ଶୁଘାତେ ମୁଣ୍ଡକୁ କରିବି ବେନି ଫାଳ ।
ତେବେ ସିନା ପ୍ରକାଶିବା ଉତ୍ତମ ନୃପତି
ଏହାକୁ ସମାନ ଆଉ ନାହିଁ କେହି ପୃଥ୍ୱୀ ।
ଯେତେକ ରାଜାମାନେ ଥିଲେ ସାତପୁରେ
ସମସ୍ତେ ସାଧ ହେଲେ ମୋର ହସ୍ତରେ ।
ଯେତେବେଳେ ନାରାୟଣ ପ୍ରସନ୍ନ ମୋତେ ହେଲେ
ଧନୁ ଗୋଟିଏ ମୋତେ ସେହି ସମର୍ପିଲେ ।
ବୋଇଲେ ସପତପୁରେ ଯେତେ ଦୁଷ୍ଟଗଣ
ସମସ୍ତଙ୍କୁ ମାରି ଯେ ନିଶୋଧ କର ପୁଣ ।
ଏତେ ବୋଲି ଶ୍ରୀହରି କହିଣ ଗଲେ ମୋତେ
ବୋଇଲେ ଦୁଷ୍ଟ ଦୈତ୍ୟ ନାମରେ ମୋର ହସ୍ତେ ।
ଯାଉଁଳି ଅବତାର ହୋଇବେ ନରହରି
ତେବେ ସେ ଅସୁରଙ୍କୁ ନିଶୋଧନ କରି ।
ଯେତେବେଳେ ଭେଟ ତୁହି ହେବୁ ଭୃଗୁପତି
ମହିଁ ଜନ୍ମ ହେଲାକାଳେ ତୁ ନିଷ୍ଟେ ହେବୁ ତପି ।

ଏତେ କହି ଶ୍ରୀହରି ଯେ ନିଜ ସ୍ଥାନେ ଗଲେ
ସେହିଦିନୁ ଧନୁ ଧରି ବୁଲଇ ମହୀରେ ।
ଯଶୋବନ୍ତ ପୁରକୁ ଗଲି ମୁହି ଏକଦିନ
ବିଧାତାକୁ ଜିଣିଣ ଦେଲି ମୁଁ କଷଣ ।
ସ୍ୱୟଂ ନାରାୟଣଙ୍କ ପୁରରେ ମିଳିଲି
ଚେତାକରି ଗଦାଗୋଟି ଛଡ଼ାଇ ଆଣିଲି ।
କପିଳାସ ପୁରେ ମିଳିଲି ଯାଇ ପୁଣ
ଡରି କୁଠାର ମୋତେ ଦେଲେ ପଞ୍ଚାନନ ।
ସ୍ୱର୍ଗପୁର ଦେବତାଙ୍କୁ ମୁହିଁ ସାଧ କଲି
ମଞ୍ଚରେ ରାଜା ରୁଧିରେ ତର୍ପଣ ସାରିଲି ।
ସେତେ ଏକ ଉତ୍ତର ଫେରିଲି ସପ୍ତପୁର
ଦୁଷ୍ଟଜନ ମାରିଣ ସନ୍ଥଙ୍କୁ ପାଳିବାର ।
ତିନିଲକ୍ଷ ବରଷ ଏଥିରେ ବହିଗଲା
ତୃତୀୟ ଯୁଗଗାଟି ମୋତେ ଯେ ଭୋଗ ହେଲା ।
ଦୁଷ୍ଟ ମାରି ସନ୍ଥରେ ମୋର ମନ ଶାନ୍ତି
ମୋହର ଆଗରେ ତୁ ବଜାଉ ବାବା କିକି ।
ନବସସ୍ର ବରଷ ଯେ ସ୍ତିରୀ ରୂପ ହୋଇ
ରାଣୀମାନଙ୍କ ସଙ୍ଗରେ ଲୁଚି ରହୁ ତୁହି ।
ଏବେ ଦଶା ଗଲା ଯେ ତୋହର କ୍ଷତ୍ରିପଣ
ବୀର ବାଜା ବଜାଇ ତୁ କରୁଛୁ ଗମନ ।
ବୀର ତୁର ବଜାଇ ତୁ ସାଧୁଅଛି ମହୀ
ଏ ରବି ତଳରେ ତୋତେ କ୍ଷତ୍ରୀ ସମ ନାହିଁ ।
ଜଣାଗଲା ତୋର କୋଳେ ଜନମ ବାସୁଦେବ
ପରୀକ୍ଷାରେ ଜିଣିବା ସେ କଥା ଅଟେ ସର୍ବ ।
ଏ ବଚନ କହୁ କହୁ କମ୍ପେ ତା ଶରୀର
ବଶିଷ୍ଠ ବିଶ୍ୱାମିତ୍ର ମିଳିଲେ ଆଗର ।
ବୋଇଲେ କ୍ରୋଧ ଶାନ୍ତ କର ହେ ଭୃଗୁପତି
ରାଜାର ଶୁଭବେଳେ ନକର ବିଘ୍ନ ଏଥି ।
ତୁମ୍ଭର ତୁଲେ ସରି ନୁହେଁ ଏ ରାଜନ
ସପତ ପୁର ରାଜା ହାରିଲେ ତୋତେ ପୁଣ ।
ଦୟାକରି ଏହାକୁ ଯାଅ ନିଜ ରାଜ୍ୟ
ଶୁଣିଣ ପର୍ଶୁରାମ ନ ଛାଡ଼େ ମନୁ ରାଗ ।
ବୋଇଲା ଏ ରାଜାକୁ କେହି ସରିସମ ନାହିଁ
ସଦାଶିବ ଧନୁକୁ ଯାର କେଉଁ ପୁତ୍ର ଭାଙ୍ଗିଲଇଁ ।
କେଉଁ ପୁତ୍ର ଲକ୍ଷେ ରାଜାଙ୍କୁ ଜିଣିଲା
ସେହି ପୁତ୍ର ଚାଲ ଦେଖିବା ବୋଲିଣ ବୋଇଲା ।

ତାହାଙ୍କର ବଳରେ ବଜାଇ ବୀର ତୁର
କାହିଁ ଅଣାଅ ପୁତ୍ର ଅଛି ଯେ ତୋହର ।
ଏତେ ବୋଲି ପର୍ଶୁରାମ ଭିତରେ ପଶେ ଯାଇ
ଯେଣେ ଯାଏ ପର୍ଶୁରାମ ସଇନ ପଳାଇ ।
ରଥ ଗଜ ଅଶ୍ୱ ସେ ସୈନ୍ୟ ପଳାବନ୍ତି
ଦୁଷ୍ଟପଣ ଦେଖି ତାର କେହି ନ ରହନ୍ତି ।
କେ ବୋଲଇ କୁଠାର ପିଟେଟି ପୁଣ ଆଣି
କେ ବୋଲେ ଶିର ଏହୁ ପକାଏକି ହାଣି ।
କେ ବୋଲଇ ପାଦେ ନିକି କରେ ମସିଗୁଣ୍ଡ
ବେ ବୋଲଇ ନୟନରେ ଦହଇ ଅବା ପିଣ୍ଡ ।
କେ ବୋଲଇ ପୁତ୍ରଙ୍କର ଏ ଅବା ନେବ ପ୍ରାଣ
ଭେଟ ପଡିଲା ଆସି ଦୁତି ନାରାୟଣ ।
ପଳାଇ ଗଲେ ସୈନ୍ୟ ପଛକୁ ନ ଚାହିଁ
ବନର ଭିତରେ ଅଲଗେ ରହେ ଯାଇ ।
ବଶିଷ୍ଠ ବିଶ୍ୱାମିତ୍ର ଦଶରଥ ରାୟେ
ଯେଣେ ଯାଏ ତେଣେ ଯେ ପଛରେ ଗୋଡ଼ାଏ ।
ଦେଖିଣ ରାଜାମାନେ ବିଚାର କଲେ ମନେ
ଏତେ ସୈନ୍ୟ ଡରିଲେ ଏକା ଭୃଗୁ ଜଣେ ।
କେ ବୋଲେ ସେ ନାରାୟଣ ଗୋଲଖ ଠାକୁର
କେ ବୋଲେ ସେ ସାତପୁର ସାଧକଲା ବୀର ।
କେହି ବୋଲେ ବିଧାତାର ଭଲ ଯନ୍ତ୍ର ଦେଲା
ଦୁହି ହାତ ତୁଚ୍ଛା ତାର ସୈନ୍ୟ ନାହିଁ ପରା ।
ଏମନ୍ତ କ୍ଷତ୍ରୀକି ଯେ କ୍ଷତ୍ରୀ ବୋଲି ମାନି
ଆମ୍ଭେମାନେ ସମସ୍ତେ ନିଲଜରେ ଦେହ ଘେନି ।
ଏମନ୍ତ କୁହାକୁହି ହେଲେ ରାଜାଗଣ
ଚଳଇ ପର୍ଶୁରାମ ଖର ହୋଇ ଯେ ପୁଣ ।
ଶ୍ରୀରାମର ସନ୍ନିଧିରେ ମିଳିଲାକ ଯାଇଁ
ପର୍ଶୁରାମ ଉଭା ହେଲେ କୋପମୁଖ ହୋଇ ।
ଦଶରଥ ଯାଇଣ ମିଳିଲେ ତା'ର ଆଗେ
କ୍ଷତ୍ରୀଙ୍କର ଶିରୋମଣି ରାଗ ଛାଡ଼ ଏବେ ।
ଅପୁତ୍ରିକ ଥିଲି ମୋ ପୁତ୍ରକୁ ମାରିବୁ କି ତୁହି
ନିନ୍ଦା ପାଇବୁ ନା ଲୋକଙ୍କ ମୁଖେ ରହି ।
ସୂର୍ଯ୍ୟବଂଶରେ ତୋତେ କେହି ନୁହେଁ ଦୋଷୀ
କିମ୍ପାଇ ମୋ ବାଳକ ପୁତ୍ର ଯିବୁ କି ନାଶି ।
ମୋ ପୁତ୍ରକୁ ମାଇଲେ ମୋର ବଂଶ ହିଁ ସରଇ
ଏତେ କହି ରାଜନ ପର୍ଶୁ ଚରଣେ ନମଇ ।

ଦନ୍ତରେ ତିରଣ ଧରି ବିନୟୀ କହେ ପୁଣି
ବିନତି ହୋଇଣ ଯେ କହେ ନୃପମଣି ।
ଏ ଥରକ ରକ୍ଷା ମୋତେ କର ହେ ବ୍ରହ୍ମମୁନି
ସୂର୍ଯ୍ୟବଂଶେ ରାଜା ହୁଅନ୍ତୁ ତୋର ଯୋଗୁ ପୁଣି ।
ପୁତ୍ରଙ୍କୁ ରକ୍ଷା କରି ଯାଅ ହେ ମୋତେ ମାରି
ମୋର ଦୋଷ ତୋତେ ନ କଲା ତପଚାରୀ ।
ରାଜାର ପ୍ରବୋଧ ନ ଶୁଣି ଯାନ୍ତେ ଋଷି
ଯାଇଣ ଶ୍ରୀରାମର ପାଶରେ ମିଳେ ତପି ।
ଶ୍ରୀରାମ ବସିଛନ୍ତି ବସନ୍ତ ବର୍ଣ୍ଣ ରଥେ
ତିନି ଭାଇ ଅଛନ୍ତି ଶ୍ରୀରାମର ପଛେ ।
ସେହି ତିନିରଥେ ଅଛନ୍ତି ପୁଣ ବସି
ରଥଙ୍କର ତେଜରେ ବନସ୍ତ ଫିଟି ଦିଶି ।
ଡାହାଣ କରେ କୋଦଣ୍ଡ ଚାରି ଭାଇଙ୍କର
ଲଲାଟରେ ମୁକୁଟ କୁଣ୍ଡଳ ଶୋଭାକର ।
ଦେଖିଣ ପର୍ଶୁରାମ ମନରେ ବିଚାରଇ
ନାରାୟଣ ଜନମ କି ହୋଇଛନ୍ତି ମହୀ ।
ପର୍ଶୁରାମ ବୋଇଲେ ତୁମ୍ଭେ ଶୁଣ ରଘୁନାଥ
ଈଶ୍ୱରଙ୍କର ଧନୁ ତୁମ୍ଭେ କଲ ପରା ହତ ।
ଯେଉଁ ଧନୁକୁ ଇନ୍ଦ୍ର ବିଧାତା ନ ତୋଳିଲେ
ସାମାନ୍ୟ ବଳ କି ବୋଲିବା ତୋହରେ ।
ମେରୁରୁ ଗରୁପଣ ବଜ୍ରରୁ ଅଟେ ଟାଣ
ତୁମ୍ଭର କର ଲାଗନ୍ତେ ତୁଟିଲା ଶରାସନ ।
ସେ ଧନୁ ଭାଙ୍ଗିଲା ତୁମ୍ଭେ ବେନି ଖଣ୍ଡ କରି
ତୋହର ବଳକି ସାମାନ୍ୟ କହିପାରି ।
ଶୁଣିଣ ରଘୁନାଥ ବୋଲେ ତୁମ୍ଭେ କିଏ
ଆମ୍ଭେ ତ ବାଳୁତ ଦଶରଥଙ୍କ ପୁଏ ।
ତୋତେ ଆମ୍ଭେ ନ ଚିହ୍ନୁ କେବଳ କୁଳେଜାତ
ରଣ କରିବାକୁ କି ହୋଇଛୁ ଉପଗତ ।
ଯେଉଁ ସେ ମେରୁ ଭାରି କହୁଛୁ ତୁଣ୍ଡରେ
ସେ ମେରୁବାସୁଦେବ ଧରେ ସାଗର ମନ୍ଥନରେ ।
ଯେଉଁ ଶିବଧନୁକୁ ପ୍ରଶଂସା ତୁ ଯେ କରୁ
ସେ ଶିବ ବାସୁଦେବ ଚରଣେ ଚିନ୍ତିବାରୁ ।
ତେଣୁ ସେ ବାସୁଦେବ ସୁଦୟାରେ ପୁଣ
ସେ ଧନୁକୁ ପାଇଣ ଜିଣିଲେ ଦେବଗଣ ।
ଯେଉଁ ବେଦବରକୁ କହୁ ତୁ ବଡ଼ କରି
ସେ ବେଦବରକୁ ବାସୁଦେବ ଯେ ଜନ୍ମକରି ।

ଯେଉଁ ଶୁର ରାଜାକୁ ତୁ ଟେକିଣ କହିଲୁ
ଋଷିପୁତ୍ର ସେ ଯେ ପାଇଲା ବଳ ଯେଣୁ ।
ଯେଉଁ ଦେବତାଏ ତୋ ତୋଡରେ ପୁଣ
ବାସୁଦେବ ଚରଣେ ସେବି ଅମରଗଣ ।
ତୋହର ବଡ଼ ପଣ ଜଣାଗଲା ଏବେ
ବାସୁଦେବ ଗଦା ମାଗି ଆଣିଲୁ ଯାଇ ଭାବେ ।
ଶତେ ବରଷ ପଶ୍ଚିମ ଦ୍ୱାରେ ରୋଦନ ତୁ କଲୁ
ସେ କଥା ଏବେ ମନରୁ ପାଶୋରିଲୁ ।
ପର୍ଶୁରାମ ବୋଇଲେ ଯେ କଥା ଅଛି ମନେ
ବାସୁଦେବ କହିଥିଲେ ମୋତେ ଯେ ପ୍ରସନ୍ନେ ।
ବୋଇଲେ ପାଞ୍ଚଲକ୍ଷ ବରଷ କ୍ଷତ୍ରୀ ପୁଣ
ସାତ ପୁର ସାଧିଣ ତୁ କରିବୁ ରଣ ଭଣ ।
କେତେଦିନ ଉତ୍ତାରୁ ଆମ୍ଭେ ଯେ ଜାତ ହେବୁ
ସେତେବେଳେ ତୁ ଯେ ନିଶ୍ଚିନ୍ତ ହୋଇବୁ ।
ଏବେତ କେତେଦିନ ହୋଇଲା ସମ୍ପୂର୍ଣ୍ଣ
ମୋତେ କିମ୍ପା ନିଶ୍ଚିତ ନ କରି ନାରାୟଣ ।
ଶ୍ରୀରାମ ବୋଇଲେ ରେ କହିଲୁ ଯେତେବେଳେ
ସମ୍ପ୍ରତେ ନ ଗଲୁ କି ବ୍ରହ୍ମାଣ୍ଡ ଠାକୁର କହିବାରେ ।
ପର୍ଶୁରାମ କହିଲେ ବୋଇଲ କେବଳ
ମୋତେ ଜିଣିଲେ ଜାଣିବୁ ଜନ୍ମ ମୋର ।
ଦଶରଥ ବୋଲେ ଶୁଣ ହେ ରଘୁନାଥ
ଏହି ଯେ ପର୍ଶୁରାମ ଋଷି କୁଳରେ ଜାତ ।
ଏହାଙ୍କର ଚରଣେ ଏବେ ନମସ୍କାର
ଋଷିଙ୍କ ପ୍ରସନ୍ନେ ସିନା ବିଭୂତି ଆମ୍ଭର ।
ଶୁଣିଲେ ଶ୍ରୀରାମ ଯେ ପିତାଙ୍କଠାରୁ ବାଣୀ
ରଥପରୁ ଓହ୍ଲାଇ ଆସିଲେ ରଘୁମଣି ।
ଆର ଭାଇ ଚାରି କୋଦଣ୍ଡ ଧରି ପୁଣ
ଯେସନେ ବ୍ରହ୍ମା ବିଷ୍ଣୁ ଅନନ୍ତ ଶିବ ଜାଣ ।
ଶ୍ରୀରାମ ଚାହିଁଣ ମୁନିଙ୍କି ପଚାରନ୍ତି ।
ତୁମ୍ଭେ ପରା ଗୋଲୋକ ଅଂଶରେ ଉତ୍ପତ୍ତି ।
ଅନେକ କାଳର ତୁମ୍ଭେ ପୁରାତନ ଋଷି
ପତା କହୁଥିଲେ ଯାହା ନେତ୍ରରେ ଆମ୍ଭେ ଦେଖି ।
କେବଣ କାରଣେ ବିଜୟେ ମୁନିବର
କହକିନା ଏବେ ମୋତେ ଶୁଣିବା ଉତ୍ତର ।

ପର୍ଶୁରାମ ବୋଇଲେ ତୁରେ ଜନକରେ ପୁରେ
ଶିବଧନୁ ଭାଙ୍ଗିଲୁ ତ ସ୍ୱୟଂମ୍ବର କାଳେ ।
ସେହି ଧନୁଗୁଣ ନ ଜାଣେ ରଘୁସୁତେ ।
ମୋହଠାରୁ ଶୁଣ ଏବେ କହୁଛି ମୁଁ ତୋତେ ।
ସ୍ୱର୍ଗରେ ବିଶ୍ୱକର୍ମା ଦୁଇ ଧନୁ ଗଢ଼ି
ବେନି ଯୁଗେ ବେନି ଧନୁ ତିଆରି ଯେ କରି ।
ଯେଉଁ ଧନୁ ଦ୍ୱାପର ଯୁଗର ନିର୍ମା ହେଲା
ସେ ଧନୁଗୋଟି ଆଗେ ଗୋଲକ କୃଷ୍ଣ ନେଲା ।
ଯେଉଁ ଧନୁ କଳିଯୁଗେ ହେଲା ଅବତାର
ସେ ଧନୁକୁ ଶିବଙ୍କୁ ଯେ ଦେଲା ଚିତ୍ରକାର ।
ଦ୍ୱାପର ଯୁଗରେ ଯେଉଁ ଧନୁ ଜାତ ହେଲା
ସେ ଧନୁକୁ ଗୋଲୋକ ନାରାୟଣେ ନେଲା ।
ସଦାଶିବ ଯେଉଁଧନୁ ଦେଇଥିଲେ ପୁଣ
ପ୍ରସନ୍ନରେ ଜନକ ବଂଶରେ ଦେଲେ ଜାଣ ।
ସେହି ଧନୁ ଗୋଟିକି ସେ ତୁମ୍ଭେ ଆମଞ୍ଛିଲ
ବେନିଖଣ୍ଡ କରିଣ ଯେ ଭାଙ୍ଗି ପକାଇଲ ।
ଗୋଲକ କୃଷ୍ଣ ଯେଉଁ ଧନୁକୁ ନେଇଥିଲେ
ସେ ଧନୁ ପ୍ରସନ୍ନରେ ମୋତେ ସମର୍ପିଲେ ।
ବିଚାରି ବୁଝିଲେ ଶିବ ଧନୁ ଯେ ନିର୍ବଳ
ଗୋଲେକ ଧନୁ ଗୋଟି ଅଟଇ ମେରୁତୁଲ ।
ସେ ଧନୁ ଗୋଟିକି ମୁଁ ଆୟତ୍ତେ ରଖିଲି
ସତ ଶାନ୍ତି ପଣକରି ତପରେ ମନ ଦେଲି ।
ପିତା ମୋର ତପରେ ଅଟନ୍ତି ଗରିଷ୍ଠ
ସହସ୍ରା ଅର୍ଜୁନ ମୋ ପିତାକୁ କଲେ ନାଶ ।
ସେହି କୋପରେ ମୁଁ କୃଷ୍ଣଙ୍କୁ ସୁମରିଲି
କଷ୍ଟ ସାଧ କରିଣ ବହୁତ ତପ କଲି ।
ପ୍ରସନ୍ନ ହୋଇଣ ବୋଇଲେ ଯେ କୃଷ୍ଣ
ପିତା ଶତ୍ରୁ ଅର୍ଜୁନଙ୍କୁ ବେଗେ କର ନାଶ ।
ମୁଁ ବୋଇଲି ସହସ୍ରର ମନ୍ତ୍ର ମୋଠାରେ ନାହିଁ
ଶୁଣିଣ ଦୟା କଲେ ରାଧିକାର ସାଇଁ ।
ଅନେକ ଶର ଦେଇଣ ମନ୍ତ୍ର କହି ଦେଲେ
ସେହିକାଳେ ସହସ୍ରାର୍ଜୁନଙ୍କୁ ମାରେ ବେଳେ ।
ସେହି କୋପେ ସପ୍ତପୁର ଦୁଷ୍ଟଙ୍କୁ ମାଇଲି
ବାଳବୃଦ୍ଧ ଥୋଇଣ ସମସ୍ତ ନାଶ କଲି ।
ଅନେକ ରାଜାଙ୍କର କାଟିଲି ମୁଁ ଯେ ଶିର
ଏକାବେଳେ ନୁହଇ ସତେ ଏକବାର ।

ତେଣୁ ରାଜାଗଣ ମୋତେ ନୁହଇ ସାମର୍ଥ
ଆଣ୍ଟୁକୁଡ଼ା ବୋଲି ମୁଁ ଯେ ନମାରେ ଦଶରଥ ।
ଆବର ଅପୁତ୍ରିକ ରାଜା ହୋଇଥିଲା
ତେଣୁକରି ମୋର ଦୟା ଯେ ତାକୁ ହେଲା ।
ତାହାର ପୁତ୍ର ଏବେ ଈଶ୍ୱର ଧନୁ ଭାଙ୍ଗି
ବୀର ତୁର ବଜାଇଣ ମୋହର ଦର୍ପ ଗଞ୍ଜି ।
ମୋର ଧନୁ ଏବେ ଧର ଯେ ତୁହି କର
ତେବେ ତୋର ବଳ ଜାଣିବା ରଘୁବର ।
ପଛେ ଯୁଦ୍ଧ କରିବା ଆଗେ କରିବା ପରୀକ୍ଷ
ଡରିଲେ କି ତୋତେ ମୁଁ ଛାଡ଼ିବି ରଘୁନାଥ ।
ଜନକର ଝିଅକୁ ଆଣିଲୁ ବିଭା ହୋଇ
ଏ ମହୀ ମଣ୍ଡଳେ ପ୍ରତିଜ୍ଞା ତୁ ଯେ ବିହି ।
ସେ ନାରୀକି ନେଇଣ କରିବୁ ଆଲିଙ୍ଗନ
ସେ ଜାନକୀ ତୋର ହୃଦେ ହୋଇବ ଭୂଷଣ ।
ଅଷ୍ଟରତ୍ନ ମାଳା ଯେ ତୋ କଣ୍ଠ ହାର ହୋଇ
ଏଣୁ ତୋ ଗଳାକୁ ଅମୂଲ୍ୟ ଶୋଭା ପାଇ ।
ଆଜ ଦୁଇ କଥାରୁ ହୋଇବ ପୁଣ ଏକ
ପଶୁର ପ୍ରାୟେ ତୋର ଛିଣ୍ଡାଇବି ବେକ ।
ଯେବେ ତୁ ଜିଣିବୁ ସୀତା ଭୋଗ କର
ନବ ଯଉବନ ଆବର ଯତ୍ନ ହାର ।
ଶ୍ରୀରାମ ବୋଇଲେ ଏବେ ଶୁଣ ହେ ଭୃଗୁପତି
ଯୁଦ୍ଧ କରିବାକୁ ବୋଇଲ କିମ୍ପା ଏତେ କୋପମତି ।
ହାଣିବା ଜିଣିବା ପୁଣ ସଂସାରେ ସିନା ଅଛି
ବଡ଼ିମା ପଣ ଗୋଟି ନୁହଇ ପୁଣ କିଛି ।
କ୍ଷତ୍ରୀ ହୋଇ ଯେବେ ନକରେ ପୁଣ ରଣ
ବ୍ରାହ୍ମଣ ହୋଇ ଯେବେ ନ ଘେନନ୍ତି ଦାନ ।
ରାଜା ହୋଇ ଯେବେ ଦୟାଶୀଳ ନୋହେ
ଋଷି ହୋଇ ଯେବେ ଘୃତ ଅନଳେ ନ ଦିଏ ।
ବଣିଜାର ହୋଇ ଯେବେ ସକଳ ନ ବିକଇ
ସ୍ତିରୀ ହୋଇ ଯେବେ ଶୀତଳ ଭାବ ନୋହି ।
ରାଉତ ମାହୁନ୍ତର ଯେବେ ନୁହଇ ରିପୁ
ଏ ସଂସାର ଥିବାର ଅକାରଣ ବାବୁ ।
ଶିବଧନୁ ଭାଙ୍ଗିଲାକୁ ଜାନକୀ ବିଭା ହେଲି
ତୋହଠାରୁ ମୁହିଁ ଏବେ ଏମନ୍ତ ଶୁଣିଲି ।
ଜନକ ଋଷି ମୋତେ ଜାନକୀ ଯାଚିଦେଲେ
ମୋର ବଳ ପ୍ରାକର୍ମ ସେହି ତ ଜାଣିଲେ ।

ତୋହର ଧନ ଯେବେ ଧରିବି ନିଶ୍ଚୟେ
କିସ ଦେବୁ ମୋତେ କହ ଯେ ଭୃଗୁରାୟେ ।
ଏତେ ବୋଲି ଶ୍ରୀରାମ କ୍ରୋଧରେ ଜର ଜର
ଜଣାଗଲା ଏବେ ଚଣ୍ଡାଳ ବୁଦ୍ଧି ତୋର ।
ସୀତୟା ତୋହର ଯେ ଦୁହିତା ସଙ୍ଗେ ସରି
କିମ୍ପୁତ ବଚନ ଯେ ବୋଇଲୁ ପର୍ଶୁଧାରୀ ।
ବିଚାରିଛୁ କି ମନେ ମୁହିଁ ଅଟେ ବଡ଼
ରାଜା ହୋଇ ଛେଦିଲା ତୋହର ପିତା ଶିର ।
ଏହିଠାରେ ତୋର ନିଅନ୍ତି ନିଶ୍ଚେ ପ୍ରାଣ
ଗୋ ବ୍ରାହ୍ମଣ କେବେ ମୁଁ ନମାରଇ ପୁଣ ।
ଜାତିରେ ଯତି ତୁରେ ରାଜାର ଆଶ୍ରିତ
ତପ କରିବା ଲୋକ ଧରିଛୁ କ୍ଷତ୍ରୀବୃତ ।
ତୋହର ଧନୁ ଧରି କରିବା ଆଜ ଯୁଦ୍ଧ
କେଉଁ ଗୋଲକ କୃଷ୍ଣ ରଖିବ ତୋତେ ଆଜ ।
ମତି ଭୋଳ ହୋଇକି ନ ପାରୁ କଥା ଚେତି
ପୂର୍ବର କଥାମାନ ପାଶୋରି କି ପର୍ଶୁପତି ।
ଶୁଣିକରି ପର୍ଶୁରାମ କ୍ରୋଧରେ ଅନାଇଲା
ଧ୍ରୁବମଣ୍ଡଳରେ ଶିର ଲାଗୁଛି ଦେଖିଲା ।
ଶ୍ରୀରାମ ବୋଇଲେ ବେକ ଛେଦିବି ତୋହରେ
ନୋହିଲେ କି ଋଷି ଆଜ ଯିବୁ ତ ସଜରେ ।
ଆଜଠାରୁ କ୍ଷତ୍ରୀପଣ ତୋର ଯେ ସରିବ
ବନସ୍ତରେ ତପ କରି ଦିନ ନ ସରିବ ।
ପର୍ଶୁରାମ ବୋଇଲେ ଶୁଣରେ ରଘୁନାଥ
ଚାରି ଭାଇ କିମ୍ପା ନୋହିଲ ମାନ୍ୟ କୃତ୍ୟ ।
ଶ୍ରୀରାମ ବୋଇଲେ ପର୍ଶୁ ତପିଗଣ ନୋହୁ
କ୍ରୋଧକୁ ଦେଖି ଆମ୍ଭେ ଓଲଗିତ ନୋହୁ ।
ତୋତେ ଓଲଗି ହେଲେ ହୁଅନ୍ତା ପରମାଦ
ନାମ ଶିରି ସମ୍ପତ୍ତି ତୋର କେ ହରନ୍ତା ଆଜ ।
ତୋତେ କ୍ରୋଧ ନାହିଁରେ ପର୍ଶୁଧାରୀ
ନୋହିଲେ କି ଏତେ କଥା କହନ୍ତୁ ମୋତେ ବଳି ।
ଶାନ୍ତି ହୋଇ ପର୍ଶୁଧର କହଇ ବଚନ
ମୋହର ବଚନ ତୁମ୍ଭେ ଶୁଣ ହେ ରଘୁରାଣ ।
ମୋର କୋଦଣ୍ଡରେ ଯେବେ ଦେଇପାରୁ ଗୁଣ
ସଉମିତ୍ରୀ ବୋଲନ୍ତି ହେ ଶୁଣ ପର୍ଶୁରାମ ।

ତୁ ପଛେ ଆମ୍ଭଙ୍କୁ ଜିଣି କରିଣ ସଂଗ୍ରାମ
ତୋର ସଙ୍ଗେ ବାଦ ଆମ୍ଭର ନୋହେ ଜାଣ ।
ବ୍ରାହ୍ମଣଙ୍କୁ କ୍ଷତ୍ରୀପଣେ ଆମ୍ଭେ ଯେ ନ ଗଣୁ ।
ତୋର ଭାଷାମାନ ସହିଅଛୁ ତେଣୁ
ଶୁଣିଣ ପର୍ଶୁରାମ କହଇ କୋପକରି
ବ୍ରାହ୍ମଣଙ୍କୁ କ୍ଷତ୍ରୀୟ ନୁହନ୍ତି ଯେବେ ସରି ।
ତପ ବଳେ ଆମ୍ଭେ ଯୁଦ୍ଧ କରିଣ ମାରିବୁ
ନୋହିଲେକ ଶ୍ୟାପେକ ଦେଇ ସଂହାରିବୁ ।
ଆଗହୁଁ ଦଶରଥଙ୍କୁ ମାରିଥିଲେ ମୁହିଁ
ଏ କଥାମାନଙ୍କୁ ମୁହିଁ ସହନ୍ତଟି କି କାହିଁ ।
ଶତ୍ରୁତାରେ କୃପା କରିବା ଅନୁଚିତ
ଏ ବଚନ ଶୁଣିଣ କହନ୍ତି ରଘୁନାଥ ।
ଲକ୍ଷ୍ମଣ ବୀର କଣ୍ଠାରେ ଯେ ହୁଅ କୋପ
ପର୍ଶୁରାମ କହଇ ଯେ ବିଷ କଣ୍ଠ ରୂପ ।
ଲକ୍ଷ୍ମଣ କହନ୍ତି ଯେ ନୋହିଲୁ ମହାଦେବ
ଆମ୍ଭ ସଙ୍ଗ ଯୁଦ୍ଧରେ ତ ଯଶ ନ ଦିଶିବ ।
ରଘୁନାଥ କହନ୍ତି ଶୁଣ ହେ ପର୍ଶୁରାମ
ଲକ୍ଷ୍ମଣ ବଚନରେ ନୁହ ତୁମେ ତମ ।
ମୋତେ କହ କିସ ତୁ କରିଅଛୁ ଆଜ୍ଞା
ସେ କଥାକୁ କହିବି ମୁଁ ନ କରି ଅବଜ୍ଞା ।
ଶ୍ରୀରାମଚନ୍ଦ୍ର ବଚନ ପର୍ଶୁରାମ ଶୁଣି
ଧନୁକୁ ବଢ଼ାଇଣ ଦେଲା ଭୃଗୁମଣି ।
କୋଦଣ୍ଡେ ଯେବେ ରାମ ଦେଇ ପାରୁ ଗୁଣ
ତେବେ ସିନା ଜାଣିବା ତୋର ବୀର ପଣ ।
ଶରାଶନ ଧରିଥିଲା ପର୍ଶୁରାମ ହସ୍ତ
ଦକ୍ଷିଣ କରେ ତାହା ଧରିଲେ ରଘୁନାଥ ।
ଗୁଣ ଦେବାକୁ ତହୁଁ ଲଦିଲେକ ପାଦ
ଦେଖିକରି ପର୍ଶୁରାମ ମନରେ ବିଷାଦ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ
ଜାନକୀ ଆଗରେ ଦାସୀ କହିଲେ ଯାଇକରି ।
ଦେଖଗୋ ସୀତା ତୋ ସ୍ୱାମୀ କୋଦଣ୍ଡଧରେ ଯାଇକରି
ତୋ ସଙ୍ଗକୁ ସପତଣୀ ନିଶ୍ଚେ ହେଲା ସହି ।
ଶୁଣିକରି ସୀତୟା ବିଚାରେ ମନେ ପୁଣ
କିଛିଦିନ ଯାଇନାହିଁ ନିକଟେ ହେଲା ଜାଣ ।
ମୋହର ପିତା ସେ ଧନୁକୁ ସମର୍ପିଲେ
ଶିବ ଧନୁ ଭାଙ୍ଗିବାରୁ ମୋତେ ସେ ବିଭା ହେଲେ ।
ଏବେ ସେହିକଥା ବାଟରେ ହେଲା ପୁଣ
ଧନୁ ଯେବେ ଧରିବେ କନ୍ୟା ବିଭା ଜାଣ ।
ମାସେ ପକ୍ଷେ ମୋତେ ବିହି ଦେଲା ନାହିଁ ସୁସ୍ଥ
ପୁଣି ସଙ୍ଗେ ସଙ୍ଗେ କଷ୍ଟ ଦେଲେ ଦଇବତ ।
ଏହି ରାମ ସତ୍ୟ କଲେ କୁଳଦୀପ ଛୁଇଁ
ଏ ଯେ ଧନୁ ଧରିଛନ୍ତି ଆଗୁସାର ହୋଇ ।
ବିଟପ ପୁରୁଷଙ୍କର ଏ ରୂପେ ବିଧାନ
କି ରୂପେ ଶ୍ରୀରାମଙ୍କୁ ବୋଲନ୍ତି ଭଲ ଜନ ।
ଏମନ୍ତ ବୋଲିଣ ମନେ ସୀତୟା ବିଚାରି
ଦାସୀ ବୋଇଲେ ଚଳ ଗୋ ବେଗକରି ।
ଉର୍ମିଳା ଭଉଣୀକି ପଚାରି ମୋର ଆସ
ଆଜ ଧନୁ ଧରିବାର କିସ ଯେ ଭବିଷ୍ୟ ।
ଶୁଣିଣ ମନମାୟା ରଥରୁ ଓହ୍ଲାଇଲା
ଲକ୍ଷ୍ମଣଙ୍କ ରଥରେ ବେଗେ ସେ ଚଢ଼ିଲା ।
ଉର୍ମିଳା ଆଗରେ ସେ ପ୍ରବେଶ ହେଲେ ଯାଇ
ବୋଇଲେ ଜ୍ୟେଷ୍ଠ ଭଗ୍ନୀ ଦେଲେ ପଠିଆଇ ।
ଆଜ ଯେ ଶ୍ରୀରାମଚନ୍ଦ୍ର ଧରିଲେ ଧନୁ ପୁଣ ।
କେବଳ କଥା ଏତ ନ ଯାଇ ବାରଣ ।
ଉର୍ମିଳା ବୋଇଲେ ନ ଜାଣନ୍ତି ସତୀ ନିକି
ପର୍ଶୁରାମ ଓଗାଳି ଯେ ଅଛନ୍ତି ସ୍ୱାମୀକି ।
ପର୍ଶୁରାମ ଗାରିମା ଭାଙ୍ଗିବେ ଏହିକ୍ଷଣି
ଏଥିପାଇଁ କିମ୍ପା ଚିନ୍ତା କରନ୍ତି ଠାକୁରାଣୀ ।
ଏ ଯେଉଁ କଥା ମନରେ ବିଚାର କରୁଛନ୍ତି
ଏଠାରେ ମୋତେ ସପତଣୀ କରିବେ ବିଚାରନ୍ତି ।
ସେ କଥା ଆଉ କେବେ ନୁହଇ ଯେ ପୁଣ
ମୋର କହିବା ବାଣୀ ଜାନକୀରେ କହିବ ପୁଣ ।
ଏହା ଶୁଣି ମନମାୟା ବେଗେ ଚଳିଗଲେ
ଜାନକୀର ଆଗରେ ସେ ଯାଇଣ କହିଲେ ।
ବୋଇଲେ ତୁମ୍ଭ ଭଗ୍ନିଙ୍କି ପଚାରିଲୁ ଯାଇ
ସେ ବୋଇଲେ ପର୍ଶୁରାମ ଓଗାଳି ଅଛଇଁ ।
ଆଜ ତାର ଗାରିମା ଭାଙ୍ଗିବେ ଯେ ଜ୍ୟେଷ୍ଠ ସ୍ୱାମୀ ପୁଣି
ଅଯୋଧ୍ୟା ଦେଶକୁ ବିଜେ କରିବେ ଏହିକ୍ଷଣି ।
ଯେଉଁ କଥା ଜନିତ ବିଚାରନ୍ତି ମନେ
ସେକଥା କେବେ ନୋହିବ ଶୁଣ ଗୋ ସାବଧାନେ ।
ଶୁଣିକରି ଜାନକୀ ହରଷ ମନ ହେଲେ
ତୁକାର ଭାଷା ସ୍ୱାମୀଙ୍କି ବୋଇଲି ବୋଇଲେ ।

ଏଥୁ ଅନନ୍ତରେ ଯେ ଶ୍ରୀରାମଚନ୍ଦ୍ର ଧନୁ ଧରି
ଦକ୍ଷିଣ କର୍ଣ୍ଣ ପରିଯନ୍ତେ ଆଣିଲେ ଓଟାରି ।
ପର୍ଶୁରାମ ନାରାଚ ଦେଲେକ ବଢ଼ାଇ
ତାହା ଦେଇଣ ଗୁଣରେ ବସାଏ ରଘୁସାଇଁ ।
ହସି ଆଜ୍ଞା ଦିଅନ୍ତେ ବିନ୍ଧିବା କାହିଁକି
ଇହଲୋକ ପରଲୋକ ବୋଲିବେ ଯହିଁକି ।
ପର୍ଶୁରାମ ବୋଇଲେ ଶ୍ରୀରାମ ପରଲୋକ ଭେଦ
ଏ ମୋହର ପାପଭରା ବେଗକରି ଛେଦ ।
ବ୍ରାହ୍ମଣ ହୋଇଣ ମୁଁ କ୍ଷତ୍ରୀ ବୃତ୍ତି କଲି
ଅହନ୍ତା କରି ଅନେକ ଜୀବ ମୁଁ ମାରିଲି ।
ସ୍ୱର୍ଗ ଗମନରେ ପାପ ଲଭିବି ଅବଶ୍ୟ
ତୁମ୍ଭେ ରଘୁନାଥ ତାହା ବେଗକରି ନାଶ ।
ପରଲୋକ ପଥ ମୋର ଭେଦ ରଘୁସାଇଁ
ଯେମନ୍ତେ ପାତକ କୁଳ ମୋର ନାଶ ହୋଇ ।
ସ୍ୱର୍ଗପୁର ଗଲେ ମୋତେ ଓଗାଳିବ ପାପ
ତୁମ୍ଭେ ଶ୍ରୀରାମ ସହିଲ କେତେ କୋପ ।
ରଘୁନାଥ ବୋଇଲେ ତୁମ୍ଭେ ଗୋଲକ ନାରାୟଣ
ତୁମ୍ଭର ଦେହେ କିସ ପାପ ଯେ ଭିଆଣ ।
ଯେଉଁ ରୂପ ଦେଖିଲେ ଦେବତା ନିସ୍ତରନ୍ତି
ଶୟନ ବିଷ୍ଣୁ ଦେଖିବାକୁ ଲାଗଇ ତାଙ୍କୁ ଭ୍ରାନ୍ତି ।
ଥରେକ ଶୟନ ଯେ ନାରାୟଣ ଗଲେ
ସହସ୍ର ବରଷରେ ଦର୍ଶନ ତାଙ୍କୁ ଦେଲେ ।
ସେହିଦିନୁ ଜନ୍ମିଣ ତୁମ୍ଭେ ହେଲ ବଡ଼
ରିପୁବନ୍ତ ପୁରୁଷ ନୁହନ୍ତି ଶାନ୍ତଶୀଳ ।
ପର୍ଶୁରାମ ବୋଇଲେ ତୁମ୍ଭେ ଶୁଣ ଦାଶରଥି
ତାମସ ପଣ ନଥିଲେ ସାଧ ନୋହେ ପୃଥ୍ୱୀ ।
ଶାନ୍ତଶୀଳ ହେଲେ ଜାଣ ପଡ଼େ ପରମାଦ
ସେଥିରେ ସମ୍ବାଦ ଶୁଣ ତୁମ୍ଭେ ରଘୁନାଥ ।
ଦୁଷ୍ଟପଣ କରି ମୁଁ ସପତ ପୁର ସାଧି
ଦୁଷ୍ଟ ଦେଖିଲି ମୁହିଁ ଗୋ ବ୍ରାହ୍ମଣ ଛେଦି ।
ଦେବତାଏ ଦୁଷ୍ଟପୁଣ ମୋହଠାରେ କଲେ
ଏହି ଗଦା ଘାତରେ ଅନେକ ଏବେ ମଲେ ।
ମୁହିଁ ଏକା ମୋ ସଙ୍ଗେ ନାହାନ୍ତି କେହି ପୁଣ
ବ୍ରହ୍ମା ଶିବ ବାସବ ନୋହିଲେ ଭାଜନ ।
ତୁ ଯେବେ ଶାନ୍ତଶୀଳ ହୋଇବୁ ଦାଶରଥି
ଅନେକ ଲୋକଙ୍କୁ ପୁଣ ନିଉନ ହେବୁଟି ।

ଏହି କଥା ମନେ ରଖିଥିବୁ ଦାଶରଥି
ପାତାଳ ଦିଗବିଜେ କାଳେ ହେବି ମୁହିଁ ସାଥି ।
ତୋର ଅସମୟ କାଳେ ଜଗିବି ତୋର ପୁର
ଆହୁରି ବତିଶ ବରଷ ହିଂସା ରାଗ ମୋର ।
ତୋହର ବିଚାରେ ଯେ କହିଲୁ ମୋତେ ମନ୍ଦ
ମେରୁର ବେନି ଝିଅ ଶୁଣ ହେ ରଘୁରାଜ ।
ବେଦମତୀ ଝରାମତୀ ନାମ ବୋଲି ଦେଇ
କମଳା ଅଂଶରେ ବେଦମତୀ ଜାତ ହୋଇ ।
ରାଧିକା ଅଂଶରେ ଜାତ ହେଲେ ଝରାମତୀ
ବାସୁଦେବ ଶ୍ରୀକୃଷ୍ଣ ଭାବିଲେ ବେନି ସତୀ ।
ତେଣୁ ବେଦମତୀ ହେଲେ ଜନକ ଘରେ ଜାତ
ଜ୍ୟେଷ୍ଠ ଭଏଣୀକି ବିଭା ହେଲେ ରଘୁନାଥ ।
ଶ୍ରୀରାମ ବୋଇଲେ ଜ୍ୟେଷ୍ଠ ଯେବେ ସେହି
ବିଡମ୍ବଣ କଥା କିମ୍ପା କହୁ ଭୃଗୁସାଇଁ ।
ପର୍ଶୁରାମ ବୋଇଲେ ଦ୍ୱିତୀୟ ଜନ୍ମ ହେଲେ
ତେଣୁ କନିଷ୍ଠ ଶାଳି ମୋହର ହୋଇଲେ ।
ଶ୍ରୀରାମ ବୋଇଲେ ଝରାମତୀ ନୁହେ ଜନ୍ମ
କିମ୍ପାଇଁ ବିଭା ତାଙ୍କୁ ନୋହିଲ ତୁମ୍ଭେ ପୁଣ ।
ପର୍ଶୁରାମ ବୋଇଲେ ସେଥିରେ କଥା ଅଛି
ଯେତେବେଳେ ଗଦାମୋତେ ଦେଲେକ ଶ୍ରୀବତ୍ସି ।
ମୋତେ ବୋଇଲେ ପାତାଳ ମଧୁପୁର ଦୈତ୍ୟ
ଏମାନେ ମୋହର ଭାଗେ ଶୁଣ ଦୂତିକୃଷ୍ଣ ।
ମୁହିଁ ଅବତାର ହୋଇବି ମଞ୍ଚେ ଯାଇ
ଶିବ ଧନୁକୁ ଭାଙ୍ଗି ଜାନକୀ ବିଭା ହୋଇ ।
ଅଯୋଧ୍ୟାକୁ ଆସିବାର ବେଳେ ମୋତେ ପୁଣ
ବାଟରେ ଭେଟ ହେବୁ କୋଦଣ୍ଡ ଦେବୁ ପୁଣ ।
କୋଦଣ୍ଡକୁ ଧରନ୍ତେ ଚିହ୍ନିବୁ ତୁ ମୋତେ
ବତିଶ ବର୍ଷେ ପାତାଳ ଯିବୁ ମୋ ସଙ୍ଗତେ ।
ଯେତେବେଳେ ଦୂତି ରାଧିକାକୁ ବିଭା ହେବୁ
ସେ ଦିନଠାରୁ ନଷ୍ଟିନ୍ତେ ତପ ତୁ କରିବୁ ।
ଶ୍ରୀରାମ ଶୁଣିକରି ପରମ ତୋଷ ହେଲେ
ଏକ ଅଙ୍ଗ ଜଣାଗଲା ବୋଲିଣ ବୋଇଲେ ।
ଏତେ କହି ରାମଚନ୍ଦ୍ର ବିନ୍ଧିଲେ ଯେ ଶର
ଛେଦି ପକାଇଲେ ପର୍ଶୁରାମ ପାପଭାର ।
ଉଛୁଡିବା ଘାତରେ ଯେ ଭାଜିଲା କୋଦଣ୍ଡ
ମଧଠାବରୁ ସେ ଯେ ହୋଇଲା ବେନି ଖଣ୍ଡ ।

ସ୍ୱର୍ଗପୁରେ ଦେବତାଏ ହୋଇଲେ ଅନଳ
ହୁଳହୁଳି ଦିଅନ୍ତି ଅପସରାକୁଳ ।
ପୁଷ୍ପ ବୃଷ୍ଟି କଲେ ନେଇ ଦୁଇ ରାମ ଶିରେ
ଦୁନ୍ଦୁଭି ବଜାଇଲେ ଅନେକ ପ୍ରକାରେ ।
ଦେଖିକରି ଆନନ୍ଦ ହୋଇଲେ ପର୍ଶୁଧର
ଶ୍ରୀରାମଙ୍କୁ ପ୍ରଶଂସା କଲେକ ଅପାର ।
ତୁମ୍ଭେ ସ୍ୱୟଂ ନାରାୟଣ ହୋଇଅଛ ଜାତ
ବିଷ୍ଣୁ କଳା ଆନ କେହୁ ହେବ ସାମରଥ ।
ତାଡ଼କି ମାରିବାର ଜାଣିଲୁ ଯେଉଁ ଦିନ
ବିଚାରିଲୁ ଅବତାର ହେଲେ ଭଗବାନ ।
ଯହୁଁ ରକ୍ଷା କଲେ ବିଶ୍ୱାମିତ୍ର ମୁନି ହୋତ୍ର
ବିଚାରିଲୁ ରାମଚନ୍ଦ୍ର ସ୍ୱୟଂ ପଦ୍ମନେତ୍ର ।
ଚରଣ ଲାଗି ଅହଲ୍ୟା ହୋଇଲା ମୁକତ
ବିଚାରିଲୁ ଅବତାର ହୋଇଲା ରଘୁନାଥ ।
ଶିବ ଧନୁ ଯେଉଁ ଦିନ କଲ ଆମଞ୍ଚନ
ବିଚାରିଲୁ ଶ୍ରୀରାମ ସାକ୍ଷାତେ ଜନାର୍ଦ୍ଦନ ।
ତୁମ୍ଭ ଦରଶନ ହେଲା ପିତୃଭକ୍ତି ବଳେ
ଏ ମୋହର ପାପନାଶ ହେଲା ଏତେକାଳେ ।
ନିଶ୍ଚୟେ ଜାଣିଲୁ ତୁମ୍ଭେ ବିଷ୍ଣୁ ଅବତାର
ଏବେ ସିନା ନାଶ ହେବ ଅବନିର ଭାର ।
ଚଳ ତୁମ୍ଭେ ଅଯୋଧ୍ୟାକୁ ବୋଲେ ପର୍ଶୁଧର
ଏହା ଶୁଣି ଶ୍ରୀରାମ ଯେ କରନ୍ତି ବିଚାର ।
ଗୋଲୋକ କୃଷ୍ଣ ଏ ହୋଇଛନ୍ତି ଜାତ
ମୋତେ ଜିଣି ସାମରଥ ଅଟନ୍ତି ହୁଏତ ।
ଏତେ ଭାଳି ଆନନ୍ଦ ହୋଇଲେ ରଘୁମଣି
ସଙ୍ଗତେ ଭରତ ଲକ୍ଷ୍ମଣ ଶତୃଘନ ଘେନି ।
ଭୃଗୁପତି ଚରଣରେ କଲେ ନମସ୍କାର
ଜାଣିଲେ ଅଙ୍ଗରୁ କ୍ରୋଧ ଗଲାଣି ଏହାର ।
ଭୋ ଭୃଗୁକୁଳ ମଣ୍ଡନ କରେ ମୋତେ ଦୟା
ପୂର୍ବ ପୁଣ୍ୟବଳେ ଦେଖିଲି ତୋର କାୟା ।
ତୁମ୍ଭେ ବ୍ରହ୍ମମୁନି ଯମଦଗ୍ନି ଋଷି ସୁତ
ପୁଣ ପୁଣ ପ୍ରଶଂସା କରନ୍ତି ରଘୁସୁତ ।
ସନ୍ତୋଷେ ସୁକଲ୍ୟାଣ କରନ୍ତି ଭୃଗୁପତି ।
ଦେଖିକରି ନମିଲେ ଯେ ସକଳ ନୃପତି ।
ବିଶ୍ୱାମିତ୍ର ସହିତେ ଯେତେକ ଋଷି ଥିଲେ
ପର୍ଶୁରାମ ପାଦେ ସର୍ବେ ନମସ୍କାର କଲେ ।

ସୈନ୍ୟବଳ ସହିତେ ଦଶରଥ ଲୋମପାଦ
ନମିବାରୁ ସନ୍ତୋଷ ହୋଇଲେ ଭୃଗୁରାଜ ।
ଶ୍ରୀରାମ ବୋଇଲେ ଶୁଣ ହେ ବ୍ରହ୍ମଚାରୀ
ମାତାଗଣେ ମୋହର ନମସ୍କାର କରି ।
ଜନକ ଚାରି ଦୁହିତା କଲେ ଧନ୍ୟ ପୁଣ
ଶୁଣିଣ ପର୍ଶୁରାମ ହରଷ ହେଲେ ମନ ।
ସୁକଲ୍ୟାଣ ସମସ୍ତଙ୍କୁ ପର୍ଶୁରାମ କଲେ
ପୂର୍ବର କଥାମାନ ମନରେ ଚେତାଇଲେ ।
ଋଚିକ ମୁନିଠାରେ ତା ଯତ୍ନରେ ଥୋଇଲେ ।
ସେ ଧନୁକୁ ପର୍ଶୁରାମ ଶ୍ରୀରାମଙ୍କୁ ଦେଇ
ଦିବ୍ୟ ଅସ୍ତ୍ର ଅକ୍ଷୟ ତ୍ରୋଣ ସମର୍ପଇ ।
ଦେବଶର ବ୍ରହ୍ମଶର ନାରାୟଣ ଶର
ଶିବସର ସହିତେ ଦେଲେକ ସକଳ ।
ବୋଇଲେ ଶିବ ଧନୁକୁ ଧରିଲେ ଶ୍ରୀରାମ
ଦୁହିତା ଦେଇ ଜନକ ପଶିଲେ ଶରଣ ।
ମୋହର କୋଦଣ୍ଡକୁ ଧରିଲେ ଏବେ ଆସି
ଧନୁ ଶସ୍ତ୍ର ତ୍ରୋଣ ମୁଁ ଦେଲି ଦାଶରଥି ।
ଏ ଧନୁ ଧରି ତୁମ୍ଭେ କରିବ ଦେବକାର୍ଯ୍ୟ
ଏ ଶରେ ସମସ୍ତଙ୍କୁ ଜିଣିବ ରାମ ରାଜ ।
କେବଳ ଗଦା କୁଠାର ମୋଠାରେ ରହିଲା
ଜନକ ଦେଲେ ଦୁହିତା ମୁଁ ଦେଲି ଶସ୍ତ୍ର ଚାରା ।
ଦୁଇ କଥା ସମାନରେ ହେଲା ରଘୁନାଥ
ଶୁଣିକରି ଶ୍ରୀରାମ ଯେ ହୋଇଲେ ହରଷ ।
ପର୍ଶୁରାମ ବୋଇଲେ ମୁଁ ଯାଉଛି ତପସ୍ଥାନ
ବୀର ବାଜା ବଜାଇ ଚଳ ଅଯୋଧ୍ୟା ଭୁବନ ।
ଆଜଠାରୁ ଭୟ ତେଜ୍ୟା କଲେ ଦେବତାଏ
ଦୁଷ୍ଟ ଅସୁରଙ୍କୁ ନଷ୍ଟ କର ରାମ ରାୟେ ।
ଏତେ ବୋଲି ପର୍ଶୁରାମ ତପସ୍ଥାନେ ଗଲେ
ନିଜ ଆଶ୍ରମରେ ଯାଇ ପ୍ରବେଶ ହୋଇଲେ ।
ବଳରାମ ଦାସ ଯେ ନବରରେ ଥିଲା
ସାମାନ୍ୟ ଜୀବ ଗୋଟିଏ ହୋଇଣ ଦେଖିଲା ।
ପର୍ଶୁରାମ ଶ୍ରୀରାମଙ୍କୁ ଚରଣେ ନମିଲା
ମାନବ ଜନ୍ମ ଦିଅ ବୋଲିଣ ବୋଇଲା ।
ପର୍ଶୁରାମ ଶ୍ରୀରାମ ଭେଟ ହେବାର କଥା
ବଳରାମ ଦାସକୁ ରଖ ହେ ଚଉମଥା ।

ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଭଗବତୀ
ପର୍ଶୁରାମ ଯିବାର ଯାହା କଲେ ଦାଶରଥି ।
ପର୍ଶୁରାମ ଶ୍ରୀରାମଙ୍କୁ କ୍ଷତ୍ରୀ ବୃତ୍ତି ଦେଇ ସେଥି
ନିଶ୍ଚିନ୍ତରେ ବନେ ଯାଇ ତପସ୍ୟା କରନ୍ତି ।
ଦେଖିଣ ଦଶରଥ ହୋଇଲେ ଆନନ୍ଦ
ରାଜାଗଣ ସହିତେ ସକଳ ଋଷି ବୃନ୍ଦ ।
ପଦାତି ସୈନ୍ୟବଳ ଯେତେ ସେଥି ଥିଲେ
ପର୍ଶୁରାମଙ୍କୁ ଜିଣିବାରୁ ଆନନ୍ଦ ସର୍ବେ ହେଲେ ।
ଏଥୁ ଅନନ୍ତରେ ଯେ ଶ୍ରୀରାମଚନ୍ଦ୍ର ଗଲେ
ବସନ୍ତ ବର୍ଣ୍ଣ ରଥରେ ଯାଇଣ ବିଜେ କଲେ ।
ଭରତ ଶତୃଘନ ଆବର ଲକ୍ଷ୍ମଣ
ଯେ ଯାହା ରଥରେ ଯାଇ ବସିଲେ ବହନ ।
ଋଷି ବିପ୍ର ପଦାତି ଯେତେକ ସୈନ୍ୟବଳ
ସମସ୍ତେ ଆରୋହିଣ ଯାନ ସୁକାଶନ ପର ।
ଏଥୁ ଅନନ୍ତରେ ସୀତୟା ପାଶେ ବେଗେ ଯାଇ
ସଖୀମାନେ କହିଲେ ଶୁଣ ଗୋ ପ୍ରାଣ ସହି ।
ପର୍ଶୁରାମ କ୍ଷତ୍ରିକୀ ଜିଣିଲେ ତୋର ସ୍ୱାମୀ
ତେଣୁ ସେ ପର୍ଶୁରାମ ପ୍ରସନ୍ନ ହେଲେ ପୁଣି ।
ଶ୍ରୀରାମ ଧନୁ ଭାଙ୍ଗିବାରୁ ନିଜ ସ୍ଥାନେ ଗଲା ।
ହରଷେ ବହୁତ ଶସ୍ତ୍ର ଶ୍ରୀରାମଙ୍କୁ ଦେଲା
ତୁମ୍ଭେ ଚିନ୍ତା କରୁଥିଲ ଦୁହିତା ଦେବ ବୋଲି
ଏବେ ତୋର ମନ ତୋଷ ହେଲା ଗୋ ସୁନ୍ଦରୀ ।
ସମସ୍ତେ ମନରେ ଯେ ସନ୍ତୋଷ ପୁଣ ହେଲେ
ବୀରତୁର ବଜାଇଣ ସେଠାରୁ ଚଳିଗଲେ ।
ସୈନ୍ୟଙ୍କର ହରଷ ଯେ କେ କରିବ ଅନ୍ତ
ତେଣୁ ଶ୍ରୀରାମ ଜିଣିଲେ ଯମଦଗ୍ନି ସୁତ ।
ସେଦିନ ରହିଲେ ଯେ ବଳି ବନରେ ଯାଇ
ଆରଦିନ ଗଲେ ଯେ ଗଙ୍ଗା ପାରି ହୋଇ ।
ଗୋମତୀ ନଦୀ କୂଳରେ ସେଦିନ ରହିଲେ
ରଜନୀ ପ୍ରଭାତରୁ ସେଠାରୁ ଚଳିଗଲେ ।
ଅଯୋଧ୍ୟା ରାଜ୍ୟର ଲୋକ ବାଟରେ ସେ ଥିଲେ
ଶ୍ରୀରାମ ଲକ୍ଷ୍ମଣ ସୀତା ଆସିବାର ଶୁଣିଲେ ।
ଅଯୋଧ୍ୟା ରାଜ୍ୟରେ ଯାଇ ଦୂତ ହିଁ କହିଲେ
ଘରେ ଘରେ ସୁବର୍ଣ୍ଣ କଳସ ବସାଇଲେ ।
ନେତର ଚିରାଳ ଯେ ଉଡଇ ଫର ଫର
ପ୍ରଜାମାନେ ଚାହୁଁଛନ୍ତି ଶ୍ରୀରାମ ଦେଖିବାର ।

ଦ୍ୱାରେ ଦ୍ୱାରେ କଦଳୀ ଦୁଇ ଦୁଇ ବୃକ୍ଷ
ପୂର୍ଣ୍ଣକୁମ୍ଭ ନଟିକାଳ ଆଦି ରୋହିମାଛ ।
ବିବିଧ ବସନ ଯେ ମଣ୍ଡିଲେ ସର୍ବଘରେ
ନାନା ପୁଷ୍ପମାଳ ଯେ ଲମ୍ବାଇ ସର୍ବଠାରେ ।
ମୁକୁତା ତ୍ରୋଣମାନ ଦର୍ପଣ ଚାମର
ଚନ୍ଦ୍ରକିରଣକୁ ଜିଣିଣ ଯେ ପଟାନ୍ତର ।
ବଡ଼ଦାଣ୍ଡ ବିଚିତ୍ର ଦିଶଇ ଶୋଭାବନ
ଦାଣ୍ଡ ପହଁରାଇଣ ଯେ ପବିତ୍ର ସିଞ୍ଚଣ ।
କର୍ପୂର ଧୂଳି ସଙ୍ଗେ ଦିଅନ୍ତି ଗନ୍ଧ ପୁଷ୍ପ
ଖାଲ ଢିପ ସମତୁଲ କଲେକ ବିଶେଷ ।
ଏସନ ସମୟରେ ଶୁଭିଲା ଟମକ
ହରଷ ହୋଇଲେ ଯେ ଅଯୋଧ୍ୟା ସର୍ବଲୋକ ।
କେ ବୋଲଇ ନିକଟରେ ବାଜିଲା ନିଶାଣ
ସୀତା ଘେନିଣ ଶ୍ରୀରାମ ଯେ ଆସିବେ ଏହିକ୍ଷଣ ।
ଏହି ସମୟରେ ଦିଶିଲେ ବଳ ପୁଣ
ଅଶ୍ୱ ଗଜ ପଦାତି ରଥ ରଥି ଜାଣ ।
ଲୋମପାଦ ସଙ୍ଗତରେ ଯେତେକ ରାଜନ
ସମସ୍ତେ ହରଷରେ ଆସନ୍ତେ ରଥରେଣ ।
ଶତେ ହସ୍ତୀ ଚଢ଼ିଣ ଲୋମପାଦ ପୋଏ ଆସି
ଋଷିଗଣ ସମସ୍ତେ ଚଢ଼ିଣଛନ୍ତି ହସ୍ତୀ ।
ଆଗଦଣ୍ଡ ପଦାତିରେ କୋଦଣ୍ଡ କାଣ୍ଡ ଘେନି
ଏଥୁ ଅନନ୍ତରେ ଶୁଣ ଗୋ କାହାଣୀ ।
ସରଯୁ ନଦୀକି ପାରି ହୋଇଲେ ସୈନ୍ୟବଳ
କଟକରେ ପଶନ୍ତେ ଅତିହିଁ ଚହଳ ।
ନଗ୍ରରେ ନରନାରୀ ଦେଖିଣ ଆସନ୍ତି
ଏହି ସେ ଲୋମପାଦ ବୋଲିଣ ବୋଲନ୍ତି ।
ଥୋକାଏ ଦୂରରେ ଦିଶିଲା ସର୍ବଋଷି
ତାହାଙ୍କ ସଙ୍ଗେ ଗହଣେ ସମସ୍ତେ ଆସନ୍ତି ।
ତାହାଙ୍କର ପଛରେ ବିଜୟେ ଦଶରଥ
ଶତେ ଛତ୍ର ଧରାଇ ଆସନ ନରନାଥ ।
ପାଟଛତ୍ର ଟେକାନ୍ତେ ଅଦୃଶ୍ୟ ଛାୟାପତି
ଦେଖିଣ ନରଲୋକେ ପ୍ରଶଂସା କରନ୍ତି ।
ରଥ ଗଜ ଅଶ୍ୱ ପଦାତି ନିରନ୍ତର
ସମ୍ଭର୍ବର ନବରେ ପଶିଲେ ନୃପବର ।
ଦଶରଥଙ୍କ ପଛରେ ଆସନ୍ତି ଚାରି ପୁଏ
ଆଗରେ ଶ୍ରୀରାମ ପଛେ ଶତୃଘନ ଆଏ ।

ଚାରିରଥ ଶୋଭାବନ ବିଶେ ବଡ଼ ତୋରା
ହସ୍ତୀ ଅଶ୍ୱ ରଥି ସଙ୍ଗରେ ହୋଇ ମେଳା ।
ଯାବାଳି ବାମଦେବ ବାଟରେ ଭେଟ ହେଲେ
ମଙ୍ଗଳ ଆରତି ରାଜାଙ୍କୁ ସେ କଲେ ।
ବଶିଷ୍ଠ ବିଶ୍ୱାମିତ୍ର କଶ୍ୟପାଦି ମୁନି
ରାଜା ଗହଣ ଘେନିଣ ଆଗରେ ଚଳନ୍ତି ପୁଣି ।
ତାଙ୍କ ପଛରେ ସେ ପୁତ୍ରବଧୂ ଚଳି
ଜାନକୀଙ୍କ ପଛରେ ତିନି ଭଗ୍ନି ଘେରି ।
ଦଶରଥ ସୁମନ୍ତ ମନ୍ତ୍ରୀଙ୍କି ଭେଦିଦେଲେ
ଚାରିପୁତ୍ର ଚାରିବଧୂ ବନ୍ଦାଣ ଯେ କଲେ ।
ତଦଅନ୍ତେ ରାଜାର ଯେତେ ନରନାରୀ
ବିଭାର କାଳରେ ଲଜ୍ଜା ନାହିଁ ଯେ କାହାରି ।
ଶୁଣିକରି ସୁମନ୍ତ ବେଗେ ଚଳିଗଲେ
ଚାରି ଭାଇଙ୍କର ରଥ ଯେ ରୁହାଇଲେ ।
ବୋଇଲେ ରାଜନ ଆଜ୍ଞା ଦେଲେ ପୁଣ
ବଧୂମାନେ ତୁମ୍ଭର କୋଳରେ ବସିବେ ଜାଣ ।
ରଥ ଘେନି ଆସିବ ସାରଥି ଧୀର ଧୀର
ନଗ୍ର ନରନାରୀ ଦେଖିବେ ସକଳ
ଶୁଣିଣ ଚାରିଭାଇ ଦାସୀଙ୍କୁ ଆଜ୍ଞା ଦେଲେ
ଜନକ ଦୁହିତା ସୀତା ଆଗରେ ଯାନ୍ତୁ ଧୀରେ ।
ଶ୍ରୀରାମ କୋଳେ ସୀତା ଯାଇଣ ବସିଲେ
ଲକ୍ଷ୍ମୀ ନାରାୟଣଙ୍କ ପ୍ରାୟେ ଶୋଭା ଭଲେ ।
ମଙ୍ଗଳ ଆରତି ବଶିଷ୍ଠ ଯାଇ କଲେ
ଅଭିଷେକ ଜଳ ଦେଲେ ଶ୍ରୀରାମ ସୀତା ଶିରେ ।
ଭରତ କୋଳେ ମାଳିନୀ କନ୍ୟା ବସେ
ସାବିତ୍ରୀ ବେଦବର ପରାଏ ସେ ଦିଶେ ।
ବଶିଷ୍ଠ ମଙ୍ଗଳ ଆରତି ପୁଣ କଲେ
ଅଭିଷେକ ଜଳ ବର କନ୍ୟାଙ୍କ ଶିରେ ଦେଲେ ।
ଲକ୍ଷ୍ମଣଙ୍କ ରଥରେ ହୋଇଲେ ପ୍ରବେଶ
ଉର୍ମିଳା ଲକ୍ଷ୍ମଣ କୋଳରେ ବସେତ ।
ଈଶ୍ୱର ପାର୍ବତୀ ପ୍ରାୟେକ ଶୋଭା ପାଇ
ଦେଖିଣ ବଶିଷ୍ଠ ସେଠାରେ ହେଲେ ଯାଇ ।
ମଙ୍ଗଳ ଆରତି ମୁନି ବେଗେ କଲେ
ଅଭିଷେକ ଜଳ ତାଙ୍କ ଶିରେ ଦେଲେ ।
ଶତ୍ରୁଘନ ରଥରେ ମିଳିଲେ ଯାଇ ପୁଣ
ସୁକୀର୍ତ୍ତି ଶତ୍ରୁଘନ ବସିବା ଦେଖିଣ ।
ମଙ୍ଗଳ ଆରତି ବଶିଷ୍ଠ ସେଥି କଲେ
ଅଭିଷେକ ଜଳ ଶିରରେ ନେଇ ଦେଲେ ।
ମଙ୍ଗଳ ଆରତି ସାରିଲେ ଅଭିଷେକ
ତଦନ୍ତେ ବଶିଷ୍ଠ ଚଳିଲେ ରାଜା ପାଶ ।
ଦଶରଥ ଆଗେ କହିଲେ ସର୍ବ ବିଧି
ଶୁଣିଣ ସନ୍ତୋଷ ହେଲେ ନୃପନିଧି ।
ରାମ ଲକ୍ଷ୍ମଣ ଭରତ ଶତ୍ରୁଘନ ଚାରି
ବହୁବରେ ବସିଣ ଗଲେ ନଗ୍ର ଫେରି ।
ଶ୍ରୀରାମଙ୍କ କୋଳେ ଅଛନ୍ତି ଦେବୀ ସୀତା
ବିଷ୍ଣୁଙ୍କର କୋଳେ ଯଥା ବରୁଣ ଦୁହିତା ।
ଲକ୍ଷ୍ମଣ କୋଳରେ ଉର୍ମିଳା ଛନ୍ତି ବସି
ହର ଗଉରୀ ପରାଏ ବେନି ଜନେ ଦିଶି ।
ଭରତ କୋଳରେ ମାଳିନୀ କନ୍ୟା ବସି
ବେଦବର ସାବିତ୍ରୀ ପରାଏ ସେ ଦିଶି ।
ଶତ୍ରୁଘନ କୋଳରେ ସୁକୀର୍ତ୍ତି ଯେ ପୁଣ
ଯେସନେକ ଅନନ୍ତ ଅତୁଟ ନାରୀ ଜାଣ ।
ଶ୍ରୀରାମଙ୍କ ପଛରେ ଚଳନ୍ତି ତିନି ଭାଇ
ସ୍ୱର୍ଗ ମର୍ତ୍ତ୍ୟ ତିନିପୁର ସୁନ୍ଦର ଦିଶଇ ।
ଚତୁର୍ଦ୍ଧା ମୂରତି ଯେସନେ ନାରାୟଣ
ହରଷରେ ଚାରି ଦାଣ୍ଡରେ ବିଜେ ପୁଣ ।
ନଗ୍ରରେ ନରନାରୀ ଦେଖିଣ ପ୍ରଶଂସନ୍ତି
ଆନନ୍ଦରେ ନାରୀଗଣ ହୁଳହୁଳି ଦ୍ୟନ୍ତି ।
ଦୂର୍ବାକ୍ଷତ ନେଇଣ ବନ୍ଦାଦି ନାରୀଗଣ
ସୀତୟାଙ୍କୁ ପ୍ରଶଂସା କରନ୍ତି ସର୍ବେ ପୁଣ ।
ଭଲାରେ ଶୁଭ ସୁନ୍ଦରୀ ତୁ ଜନକ କୁମାରୀ
ଶ୍ରୀରାମର ପାଇଁକି ବିଧାତା ଥିଲା ଗଢ଼ି ।
ଭାଇ ଭଉଣୀ ପ୍ରାୟେ ଦେଖିଣ ପ୍ରଶଂସନ୍ତି
ପୂର୍ବର ଭାଗ୍ୟେ ବିଧାତାର ଘଟଣା ଏହୁଟି ।
ନଗ୍ରର ଦାଣ୍ଡରେ ବାଜେ ବୀର ବାଜା
ସିଂହଦ୍ୱାର ନିକଟରେ ପ୍ରବେଶ ହେଲେ ରାଜା ।
ଦଶରଥ ରାଜନ ପାଟରାଣୀମାନେ
ରଥରୁ ଉତୁରୀ ଭିତରେ ଚଳେ ତେଣେ ।
ଆଗରେ କୈକେୟୀ ପଛରେ କଉଶଲ୍ୟା
ତାଙ୍କ ପଛେ ସୁମିତ୍ରା ସକଳ ରାଣୀ ତ୍ୱରା ।
ସକଳ ରାଣୀ ପଛେ ଚଳନ୍ତି ଦାସୀଗଣ
ବିଜୟ କଲେ ଯାଇ ଅନ୍ତଃପୁରେ ପୁଣ ।

ତାହାଙ୍କ ପଛରେ ଚଳିଲେ ଚାରିବଧୂ
ରଥରୁ ଓହ୍ଲାଇ ଚଳନ୍ତି ବିଧିମତେ ସବୁ ।
ଆଗରେ ଜାନକୀ ମଧ୍ୟରେ ମାଳିନୀ
ତାଙ୍କ ପଛେ ଉର୍ମିଳା ସୁକୀର୍ତ୍ତି ଚଳେ ପୁଣି ।
ଅନ୍ତଃପୁର ମଧ୍ୟରେ ହୋଇଲେ ପ୍ରବେଶ
ନଗ୍ର ଦେଖି ଜାନକୀ ଚାରି ଭଗ୍ନି ତୋଷ ।
ହୁଳହୁଳି ଶବଦ ଶୁଭଇ ଘନ ଘନ
ଚାରି ଭାଇ ଗଲେ ଆଗ ପଛେ ଏବେ ପୁଣ ।
ଭିତରପୁରେ ଯାଇ ଜନକ ମଣ୍ଡପରେ
ବିଜୟ କଲେ ରାମ ଭାଇଙ୍କ ସଙ୍ଗରେ ।
ସେଠାରୁ ଦାସୀମାନେ ମଣାଇଁ ଘେନିଗଲେ
ପ୍ରବାଳ ଘରରେ ନେଇଣ ବସାଇଲେ ।
ଏଥୁ ଅନନ୍ତରେ ଦଶରଥ ରାଏ
ବଶିଷ୍ଠ ବିଶ୍ୱାମିତ୍ରଙ୍କୁ ଘେନିଣ ବିଜୟେ ।
କନକ ମଣ୍ଡପରେ ବସିଲେ ସେ ଯାଇ
ସୁମନ୍ତ ମନ୍ତ୍ରୀକି ଡକାଇ ରାଜା କହି ।
ବୋଇଲେ ମନ୍ତ୍ରୀ ତୁମ୍ଭେ ବେଗ ହୋଇ ଚଳ
ସକଳ ସୈନ୍ୟମାନଙ୍କୁ ପଡ଼ି ଦେଇ ଚାଲ ।
ବ୍ରାହ୍ମଣଙ୍କୁ ଭୋଜନ ବେଗେ ଦିଅ ଯାଇ
ସର୍ଦ୍ଦାର ସେନାପତିଙ୍କି ହରଷେ ଧନ ଦେଇ ।
ରାଜାଗଣମାନଙ୍କୁ ମାଜଣା ବିଧି କର
ଶୁଣିକରି ମନ୍ତ୍ରୀବର ଚଳିଲେ ସତ୍ୱର ।
ଦେଖଣାହାରୀ ଲୋକଙ୍କୁ ସନମାନ କରି
ମାହୁନ୍ତ ସିପାହି ସବୁଙ୍କୁ ବୋଧ କରି ।
ରାଜାମାନଙ୍କୁ ମାଜଣା କରାଏ ଠାବେ ଠାବେ
ବିପ୍ରଗଣଙ୍କୁ ଭୋଜନ ଦେଲେ ସଦ୍‌ଭାବେ ।
ଭାଟ କଏବାର ନୃତ୍ୟକାରୀ ଜନ
ସମସ୍ତଙ୍କୁ ଚର୍ଚ୍ଚା କରି ଦେଲେକ ଭୋଜନ ।
ରାଜାଙ୍କ ଆଗରେ ଯାଇ ଜଣାଏଁ ସୁମନ୍ତ
ମେଲାଣି ହୋଇଣ ଗଲା ଆପଣା ପୁରେତ ।
ସକଳ ମୁନିଗଣ ଅଣାଇଁ ରାଜନ
କଶ୍ୟପ ସତ୍ୟାନନ୍ଦ ବାମଦେବ ପୁଣ ।
ବିଶ୍ୱାମିତ୍ର ବଶିଷ୍ଠଙ୍କୁ ବସାଇ ପାଶରେ
ପ୍ରଣମିତ କଲେ ରାଜା ଋଷିଙ୍କ ପାଦତଳେ ।
ବିଶ୍ୱାମିତ୍ର ମୁନିଙ୍କି ବହୁତ ପୂଜା କଲେ
ଚରଣ ଧରି ବିନୟୀ ହୋଇଣ କହିଲେ ।

ଭୋ ମୁନି ତୁମ୍ଭରେ ମୁଁ ଯେ ହୋଇଲି କୃତାର୍ଥ
ତୁମ୍ଭର ଦୟାରେ ସକଳ ମୋର ସୁସ୍ଥ ।
ବ୍ରହ୍ମ ଋଷି ହୋଇଣ ବ୍ରହ୍ମବିଦ୍ୟାକୁ ଆକର୍ଷିଲ
ଜଗତ ମନ୍ତ୍ର ବିଦ୍ୟା ତୁମ୍ଭେ ସର୍ବ କଲ ।
ଶ୍ରୀରାମ ଲକ୍ଷ୍ମଣେ ଦୟା କଲେ ମନ୍ତ୍ରଧାରୀ
ଏଣୁ ସର୍ବ ମୋହର ହୋଇଲା ଉଦ୍ଧାରି ।
ଏବେ ଭରତ ଶତ୍ରୁଘନରେ ଦୟାକର
ତେବେ ସେ ବେନି ହୋଇବେ ପାରିବାର ।
ବିଶ୍ୱାମିତ୍ର ବୋଇଲେ ଶୁଣ ହେ ଦଶରଥ
ଶ୍ରୀରାମ ଅଟନ୍ତି ସାକ୍ଷାତେ ବିଷ୍ଣୁନାଥ ।
ଅସୁର ମାରିବା ପାଇଁ ଯାଏ ମଧୁହାରୀ
ଅବତାର ହୋଇଲେ ମାନବ ତନୁ ଧରି ।
ସୀତା ପରମ ଲକ୍ଷ୍ମୀ କମଳା ଅଟଇ
ଅନ୍ତର ବାହାରେ ସମ ଦୟାଭାବ ବହି ।
ଲକ୍ଷ୍ମଣ ଅନନ୍ତ ଯେ ଉର୍ମିଳା ପାର୍ବତୀ
ଏହା ବିଶ୍ୱାମିତ୍ର ଦଶରଥଙ୍କୁ କହନ୍ତି ।
ଭରତ ଶତ୍ରୁଘନଙ୍କୁ ନେବାକୁ ନାହିଁ ମୋର
ସୁଦୟାରେ ବିଦ୍ୟା ଦେବେ ଅଗସ୍ତି ମୁନିବର ।
ଶୁଣିଣ ଦଶରଥ ଆନନ୍ଦ ମନରେ
ବୋଇଲେ ନିଜ ସ୍ଥାନେ କି ଯିବ ମୁନିବରେ ।
ସମସ୍ତ ମୁନିଙ୍କି ପୁଣି ବୋଇଲେ ଦଶରଥ
ସ୍ନାହାନ ଭୋଜନ ବେଗେ କରହେ ତପୋବନ୍ତ ।
ଶୁଣିଣ ସକଳ ମୁନି ସ୍ନାହାନ ଯାଇ କଲେ
ରାଜନ ହିଁ ସ୍ନାହାନ ବେଗେଣ ସାରିଲେ ।
ନିତ୍ୟକର୍ମ ସାରି ସର୍ବ ମୁନି ଭୁଞ୍ଜି ବସି
ସୁପକ୍ୱ ପଦାର୍ଥମାନ ଭୁଞ୍ଜି ଦେଲେ ତୋଷି ।
ବିଡ଼ିଆ ଲାଗି ହୋଇଣ ଶୟନ ମୁନି କଲେ
ରାଜନ ଭୁଞ୍ଜିଣ ପଲ୍ୟଙ୍କେ ପହୁଡ଼ିଲେ ।
ଶାଳକଗଣ ସର୍ବେ ଭଉଣୀ ପୁରେ ଭୁଞ୍ଜି
ହାତୀ ରଥ ପଦାତି ସକଳ ସମ୍ଭାଦି ।
ପ୍ରଭାତୁ ସକଳ ରାଜା ଚଳିଲେକ ପୁଣି
ଯାହାର ଯେଉଁ ରୂପେ ଉପହାର ଘେନି ।
ସୁମିତ୍ରା ପିଅର କୌଶଲ୍ୟାର ତାତ
ଏଗାର ଶତ ରାଜା ଚଳିଲେ ତ୍ୱରିତ ।
ଉପହାର ଘେନିଣ ଚଳିଲେ ମୁନିଗଣ
ସକଳ ମୁନି ମିଳିଲେ ଯେ ଯାହା ତପସ୍ଥାନ ।

ପଦାତି ବାଜନ୍ତରୀ ସକଳ ଗଲେ ଘର
ଧନ ବସ୍ତ୍ର ତାଙ୍କୁ ରାଜା ଦେଲେକ ଅପାର ।
ସରଦାର ସେନାପତି ସାମନ୍ତ ପାତ୍ରଗଣ
ମାହୁନ୍ତ ସିପାଇ ଯେତେକ ଥିଲେ ପୁଣ ।
ସମସ୍ତଙ୍କୁ ଅନ୍ନ ବସ୍ତ୍ର ଶାଢ଼ୀ ବିଳୋହିଲେ
ଭାଟ ନୃତ୍ୟକାରୀଙ୍କି ମେଲାଣି ବେଗେ ଦେଲେ ।
ବିଶ୍ୱାମିତ୍ର ବୋଇଲେ ଯିବୁଁ ଆମ୍ଭେ ବେଗେ
କୁଶଳେ ସର୍ବ ଶୁଭେ ବଞ୍ଚିଥାଅ ତୁମ୍ଭେ ।
ଶୁଣି ରାଜା ମୁନିଙ୍କି ଭିତରକୁ ନେଲେ
ରାଣୀହଂସ ଆସିଣ ସମସ୍ତେ ଓଳଗିଲେ ।
କୌଶଲ୍ୟା କୈକେୟାଦି କହନ୍ତି ସର୍ବ ରାଣୀ
ଚାରିପୁତ୍ରରେ ସୁଦୟା କରିଥିବ ପୁଣି ।
ତୁମ୍ଭର ଚରଣରେ ଶରଣ ଆମ୍ଭର
ଶୁଣିକରି ସନ୍ତୋଷ ହୋଇଲେ ମୁନିବର ।
ଜାନକୀ ଚାରିଭଗ୍ନୀ ଘେନିଣ ଅଇଲେ
ମୁନିଙ୍କର ଚରଣରେ ଓଳଗି ହୋଇଲେ ।
ବୋଇଲେ ସୁଦୟା ଆମ୍ଭଙ୍କୁ କରି ଯାଅ
ଆମ୍ଭେ ତୁମ୍ଭ ଦୁହିତା ତୁମ୍ଭେ ପିତାମହ ।
ଶ୍ରୀରାମ ସଙ୍ଗେ ଭାଇମାନଙ୍କୁ ଘେନି ଆସି
ମୁନିଙ୍କ ଚରଣେ ତଳରେ ଯାଇ ଲୁଟି ।
ସମସ୍ତଙ୍କୁ କଲ୍ୟାଣ କରି ହୋଇଲେ ବାହାର
ବେନି ଲକ୍ଷ ସୁନିଆଁ ଘେନିଣ ଉପହାର ।
ସୁକାଶନେ ଚଢ଼ିଣ ବହନ ଚଳିଗଲେ
ଦଶରଥ ରାଜନ ସଙ୍ଗରେ ଗୋଡ଼ାଇଲେ ।
ଅଯୋଧ୍ୟା ଛାଡ଼ି ମୁନି ମେଲାଣି ହୋଇଗଲେ
ମୁନିଙ୍କି ଛାଡ଼ି ରାଜା ବାହୁଡ଼ି ଅଇଲେ ।
ସତ୍ୟାନନ୍ଦଙ୍କୁ ଡାକି ଲକ୍ଷେକ ସୁବର୍ଣ୍ଣ
ଭଣ୍ଡାରକୁ ଅଣାଇଁ ଦେଲେକ ରାଜନ ।
ବୋଇଲେ ସମୁନ୍ଧିଙ୍କି କହିବ ତିଆରି
ସନ୍ତୋଷ ହୋଇଥିବେ ମୋତେ ଜନକ ତପଚାରୀ ।
ଏତେ ବୋଲି ମୁନି ଘେନି ଭିତରକୁ ଗଲେ
ଜାନକୀ ଭଗ୍ନି ସହିତେ ଆସି ଓଳଗିଲେ ।
ବୋଇଲେ ପିତାଙ୍କୁ କହିବ ତପଚାରୀ
ସୁଦୟା କରିଥିବେ ଆମ୍ଭଙ୍କୁ ନ ପାସୋରି ।
ଶ୍ରୀରାମ ଚାରି ଭାଇ କଲେକ ନମସ୍କାର
ସୁକଲ୍ୟାଣ କରିଣ ମେଲାଣି ହେଲେ ମୁନିବର ।

ଖଣ୍ଡେଦୂର ଦଶରଥ ଗଲେକ ପାଛୋଟି
ସତ୍ୟାନନ୍ଦଙ୍କୁ ଛାଡ଼ି ଅଇଲେ ଲେଉଟି ।
କଶ୍ୟପ ବାମଦେବ ଜାବାଳିଙ୍କି ପୁଣ
ଅଇବ୍ରତେ ଲେଖାଏଁ ଦେଲେକ ସୁବର୍ଣ୍ଣ ।
ମନ୍ତ୍ରୀଙ୍କି ଅଇବ୍ରତେ ରାଜା ଆଣି ଦେଲେ
ବଶିଷ୍ଠଙ୍କୁ ଲକ୍ଷେ ସୁବର୍ଣ୍ଣ ଦେଇଣ ବୋଧିଲେ ।
ଯେ ବିଧି ବିଧାନମାନ ସାରିଲେ ସକଳ
ପୁତ୍ରବଧୂ ଦେଖିବ ରାଜା ମନରେ କୁଶଳ ।
ବିଭା ବିଧି ବିଧାନ ଯେତେକ ପୁଣି ଥିଲା
ବ୍ରାହ୍ମଣଙ୍କୁ ପ୍ରାୟଶ୍ଚିତ ଧନ ଦିଆଗଲା ।
ଦୁଃଖି ଦରିଦ୍ରମାନଙ୍କୁ ଦେଲେ ଅନ୍ନ ବସ୍ତ୍ର
ସଁମସ୍ତେ ଚଳିଗଲେ ହୋଇଣ ହରଷ ।
ସମସ୍ତଙ୍କୁ ମେଲାଣି ଦେଇଣ ରାଜନ
ନିଶ୍ଚିନ୍ତ ହୋଇଣ ନିଜ ମନ୍ଦିରେ ଗଲେ ପୁଣ ।
ଅନ୍ତଃପୁର ଯାଇଣ ହେଲେ ପରବେଶ
କୈକେୟୀ କଉଶଲ୍ୟା ସୁମିତ୍ରାକୁ ଡାକି ପାଶ
ଆଜ ବଧୂମାନେ କରିବେ ରନ୍ଧନ
ସନ୍ତୋଷ ହେବ ମନ କରିଲେ ଭୋଜନ ।
ଏତେ କହି ରାଜନ ମାଜଣା ହୋଇଲେ
ରାଣୀମାନେ ଜାନକୀଙ୍କି ଡାକିଣ କହିଲେ ।
ବୋଇଲେ ପାକ ଆଜି କର ଯା ତତ୍‌ପର
ଶ୍ୱଶୁର ବୋଇଲେ ବଧୂପାକେ ମଣୋହିଁ ମୋହର ।
ଶୁଣିକରି ବଇଦେହୀ ପାକ ସମ୍ପାଦିଲେ
ଷଡ଼ରସେ ରନ୍ଧନ ଯତନରେ କଲେ ।
ସମସ୍ତଙ୍କୁ ଘେନିଣ ଭୁଞ୍ଜିଲେ ଦଶରଥ
ଆଚମନ ସାରି ବିଡ଼ିଆ ଭୁଞ୍ଜିଲେତ ।
ଚାରିବଧୂ ଭୁଞ୍ଜିଲେ ଶାଶୁମାନଙ୍କ ସଙ୍ଗେ
ଭୁଞ୍ଜିତ ତୃପୁତି ହୋଇଲେ ଯେ ସର୍ବେ ।
ଲୋମପାଦ ବୋଇଲେ ରାଜ୍ୟକୁ ଯିବୁ ଏବେ
ଶୁଣିଣ ଦଶରଥ ଆନନ୍ଦ ହେଲେ ଭାବେ ।
ଶତେକ କୁମରଙ୍କୁ ଅଳଙ୍କାର ଦେଲେ
ଶହେହସ୍ତୀ ଚଢ଼ିଣ ଶତେପୁତ୍ର ଗଲେ ।
ଉପହାର ଘେନିଣ ଚଳିଲେ ଲୋମପାଦ
କିଛିଦୂର ପାଛୋଟି ଗଲେକ ମିତ୍ରଭାବ ।
ଭରତର ମଉଳା କହିଲେ ରାଜାଙ୍କୁ
ମୋ ପିତା ଦେଖିବେ ପଠା ଭରତ ଶତ୍ରୁଘନଙ୍କୁ ।

ଦଶରଥ ବୋଇଲେ ତୁମ୍ଭେ ଯାଅ ଚଳି
ବରଷ ପୂର୍ଣ୍ଣ ହେଲେ ଯିବେ ସେ ତୁମ୍ଭ ପୁରୀ ।
ଶୁଣିକରି କୈକେୟୀ ଭାଇ ଚଳିଗଲେ
ଉପହାର ପଦାର୍ଥ ରାଜା ତାଙ୍କୁ ଦେଲେ ।
ଭାଜିଲା ଗହଳ ସମସ୍ତ ଗଲେ ପୁଣ
ମହାସୁଖେ ପରଜା ରାଜା ପାଳେ ଜାଣ ।
ଏମନ୍ତେ ବରଷେକ ସେଥିରେ ବହିଗଲା
ଜ୍ୟେଷ୍ଠ ମାସ ଶୁକ୍ଳପକ୍ଷ ଏକାଦଶୀ ହେଲା ।
ସେଦିନ ଉତ୍ସବ ରାଜନ ତହିଁ କଲେ
ବନ୍ଧୁଜନମାନଙ୍କୁ ନିମନ୍ତ୍ରି ଅଣାଇଲେ ।
ଚାରିପୁତ୍ର ଚାରିବଧୂ ବସାଇ ସ୍ଥାନେ ସ୍ଥାନେ
ଗଣ୍ଠିଆଳ ଫେଡ଼ି ବନ୍ଦାପନା ସୁଖ ମନେ ।
ଆରଦିନ ମେଲାଣି ବନ୍ଧୁମାନେ ହେଲେ
କୈକେୟୀ ଭାଇ ଶତୃଘନଙ୍କୁ ନେବାକୁ ବୋଇଲେ ।
ଶୁଣିଣ ଦଶରଥ ଭରତ ଶତୃଘନଙ୍କୁ କୋଳେ ଧରି
ଅଜାଘର ଯିବ ବୋଲି ମଉଳା ଶ୍ରଦ୍ଧା କରି ।
ପିତାଠାରୁ ଶୁଣି ଭରତ ହେଲେ ସଜ
ସଙ୍ଗରେ ଶତୃଘନ ହୋଇଲେ ବେଶ ବେଗ ।
ଦୁଇଭାଇ ଅତ୍ୟନ୍ତ ହରଷ ପୁଣ ହୋଇ
ପିତା ମାତାମାନଙ୍କୁ ଓଳଗିଣ କହି
ଶ୍ରୀରାମଙ୍କୁ କହିଣ ନମସ୍କାର କରି ।
ବିନୟ ଭକତି ହୋଇ ସୀତାଙ୍କୁ ଜୁହାରି ।
ରଘୁବର ଚଢ଼ିଣ ଅଯୋଧ୍ୟାରୁ ଗଲେ
ତାହାଙ୍କର ସଙ୍ଗରେ ମଉଳା ଚଳିଗଲେ ।
କୈକେୟୀ ରାଜନ ବାରତା ପାଇଲେ
ଭରତ ଆସିବା ଶୁଣି ନଗ୍ରେ ମଣ୍ଡାଇଲେ ।
ସାତଦିନେ ଯାଇ ହୋଇଲେ ପରବେଶ
ମନ୍ତ୍ରୀ ଅମନାତ୍ୟ ପାଛୋଟି ଆସିଲେତ ।
ରଥରୁ ଓହ୍ଲାଇ ବେନି ଭାଇ ଚଳିଗଲେ
ନବରେ ପ୍ରବେଶ ଯାଇ ବେଗେ ହେଲେ ।
ନୃପତିଙ୍କି ନମସ୍କାର କଲେ ବେନି ଭାଇ
ଭରତ ଶତ୍ରୁଘନଙ୍କୁ କୋଳେ ଧରିଲେ ନରସାଇଁ ।
ତୁମ୍ଭେ ଦୁଇଭାଇ ମୋତେ ଦେଖିତ ଅଇଲ
ତୁମ୍ଭଙ୍କୁ ଦେଖି ମୁଁ ଯେ ହୋଇଲି ତୋଷ ଭଲ ।
ଆଜ ଦେଖି ତୁମ୍ଭଙ୍କୁ ଦୁଃଖ ମୋର ଗଲା
ଦୁହିତାର ତନୟ ଦେଖିଲି ଆଜ ପରା ।
ଶ୍ରୀରାମ ଲକ୍ଷ୍ମଣଙ୍କର ପୁଛନ୍ତି ବାରତା
ଶୁଭରେ ଅଛନ୍ତିଟିକି କୁମର ବଳବନ୍ତା ।
ପୁତ୍ର ଯୋଦ୍ଧାଙ୍କର କହିବା କଥାମାନ
ଶୁଣିଣ କୈକେୟ ରାଜା ଆନ ମନେ ମନ ।
ଏଥୁ ଅନନ୍ତରେ ଶୁଣ ହେମବନ୍ତୀ
ଅପୂର୍ବ ରସ ଏ ଗୋ କର୍ଣ୍ଣରେ ଶୁଣନ୍ତି ।
ଅଯୋଧ୍ୟା ରାଜା ସେ ଦଶରଥ ରାୟେ
ଅନେକ ସୁସ୍ଥରେ ଯେ ପରଜା ତାର ରହେ ।
ଶ୍ରୀରାମ ସୀତାଙ୍କୁ ଘେନିଣ ଭୋଗ କରି
ଈଶ୍ୱର କହିବାରୁ ଶୁଣିଲେ ଶାକମ୍ଭରୀ ।
ଏ ଆଦ୍ୟକାଣ୍ଡ ଶାମବେଦରୁ ସମ୍ଭୂତ
ସଂସାର ନିସ୍ତାରିଣ ନିମନ୍ତେ ପ୍ରକାଶିତ ।
ବାଲମିକ ମୁନି ଯେ ପ୍ରସନ୍ନେ ଏହା କଲେ
ସେ ମହାମୁନି ପୁଣି ଗ୍ରନ୍ଥ ବଖାଣିଲେ ।
ଏଣୁ ଏ ସଂସାର ହୋଇବା ପାଇଁ ସୁସ୍ଥ
ବଳରାମ ଦାସ ମୁଁ ସୁମରେ ଶରଧାରେତ ।
ଚର୍ମର ନୟନେ ମୁଁ ଦେଖିଲି ଜଗନ୍ନାଥ
ଏଣୁ ସେ ବଖାଣିଲେ ଆଦ୍ୟକାଣ୍ଡ ଗ୍ରନ୍ଥ ।
ଶୁଣିଣ ସୁଜ୍ଞଜନେ ନଧର ମୋର ଦୋଷ
ଏଣୁ ମୁଁ ଏ ଗ୍ରନ୍ଥ ଯେ କରଇ ପରକାଶ ।
ସଂସାର ସାଗର ଏ ଯେ ଦୁର୍ଗମ ମାୟା ପୁଣି
ତରିବାକୁ ଭେଳା ଯେ ରାମ ନାମ ବାଣୀ ।
ବାସୁଦେବ ନାମ ଯେ ଅଟଇ ମହାରସ
ଶରଣ ଗଲା ଲୋକକୁ ଉଦ୍ଧର ପୀତବାସ ।
ଏ ଯେ ଆଦ୍ୟକାଣ୍ଡ ହୋଇଲା ସମ୍ପୂର୍ଣ୍ଣ
ଶ୍ରବଣରେ ଶୁଣନ୍ତେ ପାପ ବିମୋଚନ ।
ଜଗତ ମୋହନ ନାମ ଅଟଇ ତୋହର
ସେ ପାଦେ ସୁଜ୍ଞଜନେ ନିରତେ ସେବାକର ।
ରାମାୟଣ ଗ୍ରନ୍ଥ ଯେ ଅମୃତମୟ ରସ
ଶ୍ରୀରାମ ପାଦେ ଶରଣ ବଳରାମ ଦାସ ।
ଶ୍ରୀରାମ ଆଦ୍ୟକାଣ୍ଡ ଗ୍ରନ୍ଥ ସାରି
ନବସସ୍ର ପଦରେ ଏହା ମୁଁ ସମ୍ପୂର୍ଣ୍ଣ କରି ।

## ଆଦ୍ୟକାଣ୍ଡ ସମ୍ପୂର୍ଣ୍ଣ






ପ୍ରକାଶକ :

**ଧର୍ମଗ୍ରନ୍ଥ ଷ୍ଟୋର**

ଅଲିଶା ବଜାର, କଟକ - ୨

ଫୋନ୍ : (୦୬୭୧) ୨୬୦୮୨୯୬